# ନିୟତି ସହିତ ଅଭିସାର




ରବୀନ୍ଦ୍ର ପ୍ରସାଦ ପଣ୍ଡା



ରବୀନ୍ଦ୍ର ପ୍ରସାଦ ପଣ୍ଡାଙ୍କ ଜନ୍ମ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଭଦ୍ରକ ମହକୁମା ଅନ୍ତର୍ଗତ ଛତ୍ରପଦା ଗ୍ରାମରେ ୧୯୩୭ ନଭେମ୍ବର ୨୧ ତାରିଖରେ। ପାଠ ପଢ଼ିଛନ୍ତି ଚାନ୍ଦବାଲି ଗୁଲାମ ମହମ୍ମଦ ମଧ୍ୟ ଇଂରାଜୀ ଓ ଭଦ୍ରକ ହାଇସ୍କୁଲରେ, ପରେ ର୍‌ୟାଭେନ୍‌ଶ' କଲେଜ୍ ଓ ଲକ୍ଷ୍ନୌଠି। ପ୍ରଶାସନିକ ବୃତ୍ତିରୁ ଅବ୍ୟାହତି ପାଇଛନ୍ତି ୧୯୯୫ରେ।

ଛାତ୍ରାବସ୍ଥାରେ ସମ୍ପାଦନା କରିଛନ୍ତି ଜାଗରଣ ଓ ଛାତ୍ରସଂଘର ମୁଖପତ୍ର ଆଗାମୀ; ପରବର୍ତ୍ତୀ କାଳରେ କବିତା, ଓଡ଼ିଆ କବିତା ଓ ସମାଲୋଚନାର ଏକମାତ୍ର ତ୍ରୈମାସିକ।

ସଂପ୍ରତି ସେ କଲିକତାରେ ବାସ କରୁଛନ୍ତି।

୧୯୦୬ ମସିହା ଅଗଷ୍ଟ ୭ ତାରିଖ ଦିନ କଲିକତାର ପାର୍ସିବାଗାନ ସ୍କୋୟାର୍‌ଠାରେ ସାର୍ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଦ୍ୱାରା ଏଇ ବନ୍ଦେ ମାତରମ ପତାକାଟିର ଲୋକାର୍ପଣ କରା ଯାଇଥିଲା।

# ନିୟତି ସହିତ ଅଭିସାର

ପ୍ରତିବାଦ ଚେତନାର ଇତିବୃତ୍ତି

(Tryst with Destiny)

ରବୀନ୍ଦ୍ର ପ୍ରସାଦ ପଣ୍ଡା

ଲାର୍ନ ବୁକ୍ସ

# ସୂଚୀପତ୍ର

# ଅପୂର୍ଣ୍ଣ ଆକାଙ୍‌କ୍ଷା

## ।। ଏକ ।।

ଇତିହାସକୁ ଏକ୍ଷଣି କେହି ଦେବତାଙ୍କ ବର କି ଅଭିଶାପ ଭାବେନା; ମାର୍କ୍ସବାଦ କଲ୍ୟାଣରୁ ଉପଲବ୍ଧି କରିଛୁଁ ମଣିଷ ହିଁ ଗଢୁଛି ନିଜ ଭବିତବ୍ୟ, ଏବଂ ଏଇ ଗଢ଼ିବା ବାଟ ଦେଇ ନିଜେ ମଧ୍ୟ ଯାଉଛି ବଦଳି । ଅଥଚ, ଯେମିତି ଚାହୁଁଚି ସେମିତି ପାରୁନାହିଁ । ବାଦସାଧୁଚି ଫେର୍ ଇତିହାସ । ସେଥିପାଇଁ, ପଞ୍ଚଷଠିବର୍ଷ ଅତିବାହିତ ହୋଇଥିଲେ ସୁଦ୍ଧା, ସ୍ୱାଧୀନ ଭାରତ ନିଜ ଆକାଙ୍‌କ୍ଷାଗୁଡ଼ାକୁ ପୂରଣ କରିପାରୁନାହିଁ । ସ୍ଥାନୀୟ ଲୋକ ଅବଶ୍ୟ ଇତିହାସ ଲେଖିନାହାନ୍ତି ମୁଗଲରାଜତ୍ୱ ପୂର୍ବରୁ, କାହିଁକିନା, ଆମ କାଳଚେତନା ଚକ୍ରବତ୍, ଆରମ୍ଭ ଯୋଉଠି ଶେଷ ବି ସେଇଠି: ସତ୍ୟ-ଦ୍ୱାପର-ତ୍ରେତା-କଳି, ଆଉ ତହିଁ ଉତ୍ତାରୁ ମହାପ୍ରଳୟ; ଫେର୍ ଆରମ୍ଭ ସତ୍ୟଯୁଗରୁ ଆଉ ଫେର୍ ଶେଷ କଳିଯୁଗରେ । ଆବର୍ତ୍ତର ପୁନରାବୃତ୍ତି କେବଳ, ଅଗ୍ରଗତି ନୁହେଁ କି ଊର୍ଦ୍ଧ୍ୱଗତି ନୁହେଁ । ଗତିର ଏ ପ୍ରତୀତି ଯଦି ସାମୁହିକ ମଗ୍ନଚୈତନ୍ୟ, ପରିବର୍ତ୍ତନ କଥାଟା ମନେହେବ ଚିନ୍ତାବିଭ୍ରାଟ । ମାତ୍ର, ମଣିଷ ଯେହେତୁ ଏକମାତ୍ର ସର୍ଜନକ୍ଷମ ଜୀବ, ଜଗତକୁ ନ ବଦଳାଇ, ଏବଂ ସେଇ ସୂତ୍ରରେ ନିଜେ ନବଦଳି, ତାର ଗତି ନାହିଁ । ସେଥିପାଇଁ, ଅନ୍ୟତ୍ର ଯେମିତି ଭାରତରେ ସେମିତି, ଅଦଳ ବଦଳ ଚାଲିଛି ଅନୁକ୍ଷଣ, ମାତ୍ର ବିବାକ ପରିବର୍ତ୍ତନ ଯେହେତୁ ସ୍ୱତଃସ୍ଫୂର୍ତ୍ତ, ଐତିହାସିକ ତାତ୍ପର୍ଯ୍ୟ କି ମାତ୍ରା ଚେତନାକୁ କରୁନାହିଁ ଉଦ୍ଦୀପିତ, ଆଗକୁ ଯିବାକୁ ଅନୁପ୍ରେରିତ । ସ୍ଥିତାବସ୍ଥା ପ୍ରତି ଅସନ୍ତୋଷ ବିସ୍ଫୋରିତ ହେଉଛି କ୍ୱଚିତ୍ କଦାଚିତ୍, ମାତ୍ର ବିସ୍ଫୋରଣର ଅନୁକ୍ରମ ନାହିଁ କି ଅନ୍ୱୟ ନାହିଁ । ସିପାହୀବିଦ୍ରୋହ ହୋଇପାରେ ସେପରି ଏକ ଦୃଷ୍ଟାନ୍ତ, ଯା ସମକାଳର ଫରାସୀ ବିପ୍ଳବ ପରି ହୋଇପାରିନାହିଁ ସଚେତନ ଅଭ୍ୟୁତ୍ଥାନ । ଅବସ୍ଥା କେତେ ସାଂଘାତିକ, ଗୋଖଲେଙ୍କ ଏଇ ମନ୍ତବ୍ୟ ତାର ପ୍ରମାଣ, ଯେ, ଅସଂଖ୍ୟ ଶାଖାପ୍ରଶାଖାରେ ଖଣ୍ଡିତ ଭାରତର ଅଧିକାଂଶ ଲୋକ ଅଜ୍ଞତା ଅନ୍ଧକାରରେ ଏପରି ନିମଜ୍ଜିତ ଯେ ମାନ୍ଧାତା ଅମଳର ସଂସ୍କାର ଓ ଆବେଗକୁ ମୁଠାଇଧରି ବଞ୍ଚିରହିବାକୁ ଭାବୁଛନ୍ତି ମୋକ୍ଷଲାଭ; ଏ ମନୋଭାବ ପରିବର୍ତ୍ତନର ପରିପନ୍ଥୀ କହିଲେ କିଛିହେଲେ କୁହାଯିବ ନାହିଁ,

କାହିଁକିନା, ପରିବର୍ତ୍ତନ କି ଜିନିଷ ଲୋକଙ୍କ ମନକୁ ଛୁଇଁନାହିଁ । ଅଥଚ ଯେକୌଣସି ରାଜନୀତିକ ଆନ୍ଦୋଳନର ସାଫଲ୍ୟର ପୂର୍ବସର୍ତ୍ତ ଯେ ଜନସାଧାରଣଙ୍କ ଅଂଶଗ୍ରହଣ, ଜାତୀୟତାବାଦୀ ନେତା ଉପଲବ୍ଧି କରିପାରିନାହାଁନ୍ତି ବୋଲି, କଂଗ୍ରେସ୍‌ର ଆଦ୍ୟପର୍ବରେ ଲୋକଙ୍କ ପାଇଁ ଭୋଟ୍‌ଅଧିକାର ଦାବି କରାଯାଇନାହିଁ । ଏବଂ ଦେଶ ଯେତେବେଳେ ସ୍ୱାଧୀନ ହେଲା, ହାତରେ ଭୋଟଅଧିକାର ଧରାଇଦେଇ କାଢି ନିଆ ଯାଇଛି ଜୀବନର ଅଧିକାର; ଏବଂ ଏ ବୈପରୀତ୍ୟ ପ୍ରତି ବିଶ୍ୱବିଦ୍ୟାଳୟ ମଧ୍ୟ ରହିଛି ଉଦାସୀନ, ଯଦିଓ ଉଚ୍ଚଶିକ୍ଷାର ଏକମାତ୍ର ଲକ୍ଷ୍ୟ ମୌଳିକ ଚିନ୍ତାର ଧାତ୍ରୀତ୍ୱ । ଏ ଦୁରବସ୍ଥାର ସୁଯୋଗ ନେବାକୁ ଗାନ୍ଧିଙ୍କ ଭଳି ବିଚକ୍ଷଣ ଲୋକ ମଧ୍ୟ ଦ୍ୱିଧା କରିନାହାଁନ୍ତି;ଲୋକଙ୍କୁ କହିଚନ୍ତି, ୧୯୨୧ ଭିତରେ ହିଁ ଆସିଯିବ ସ୍ୱରାଜ । ରାହୁଲ ସାଂସ୍କୃତାୟନ ଆତ୍ମଜୀବନୀରେ ମନ୍ତବ୍ୟ କରିଚନ୍ତି: ବର୍ଷକ ଭିତରେ ଇଂରେଜ୍ ଛାଡ଼ି ପଳାଇଯିବେ, ଯାଦୁମନ୍ତ୍ରରେ ବିଶ୍ୱାସୀ ଗ୍ରାମ୍ୟଜନତା ପକ୍ଷରେ ମାନିନେବା କଠିନ ନଥିଲା; ମାତ୍ର ବୁଦ୍ଧିମାନ ଶିକ୍ଷିତ ସହବନ୍ଦୀଙ୍କ ପ୍ରତ୍ୟାଶା ମୋତେ ଅବାକ୍ କରିଚି, ୧୯୨୧ ଡିସେମ୍ବର୍ ୩୧ ତାରିଖ ମଧ୍ୟରାତ୍ରିରେ ଜେଲ୍‌ଖାନାର ଫାଟକ ଖୋଲିଯିବ ବୋଲି ପ୍ରତୀକ୍ଷାକରି ବସିରହିଚନ୍ତି ! ରବୀନ୍ଦ୍ରନାଥ ବ୍ୟଙ୍ଗକରି କହିଚନ୍ତି, ବିଶେଷ କୋଉ ତିଥିବାରରେ ସ୍ୱରାଜଲାଭ ପ୍ରତିଶ୍ରୁତି ମନ୍ତ୍ରବଳରେ ଲୁହାକୁ ସୁନା କରିଦେବା ଭଳି ଆଶ୍ୱାସ ମାତ୍ର ! ଜବାହରଲାଲ୍ ଲେଖିଚନ୍ତି, ଗାନ୍ଧି ଚାହିଁଥିଲେ ନିର୍ଯ୍ୟାତିତ ଭାରତବାସୀଙ୍କୁ ଭୟମୁକ୍ତ କରିବେ । ତାଙ୍କଠୁଁ ବେଶି ଭାବବାଦୀ କହୁଚନ୍ତି, ଗାନ୍ଧି ଚାହିଁଥିଲେ ଭାରତବାସୀ ହେବେ ଆତ୍ମଶକ୍ତିରେ ବଳୀୟାନ୍ । ମାତ୍ର କଥା ଓ କାମ ମଝିର ଦୁର୍ଲଂଘ୍ୟ ଦୂରତ୍ୱ ବୁଝାଇଦିଏ ସତ୍ୟାଗ୍ରହ ଥିଲା ପ୍ରତାରଣା । କାହିଁକିନା, ଗାନ୍ଧି କି କଂଗ୍ରେସ୍, କୃଷକ କି ଶ୍ରମିକଙ୍କୁ ଏକ ସାମାଜିକ ଶ୍ରେଣୀ ଭାବରେ ସଂଗଠିତ କରିବା କଥା ଦିନକ ପାଇଁ ବି ଭାବି ନାହାନ୍ତି; ସର୍ବକ୍ଷଣ ଡରିଛନ୍ତି ଶ୍ରେଣୀସଂଗ୍ରାମକୁ, ଯା ମାଧ୍ୟମରେ କେବଳ, ଭୟମୁକ୍ତି ସମ୍ଭବପର । ଆତ୍ମଶକ୍ତି ବି ଆକାଶରୁ ଖସେନା, ଇଟା ଉପରେ ଇଟା ବସାଇ ହର୍ମ୍ୟ ନିର୍ମାଣ କରିବା ଭଳି, ଶରୀର ଓ ମନର ମିଳିତ ସାମର୍ଥ୍ୟ ତିଆରିକରେ ଆତ୍ମଶକ୍ତି । ସେଥିରେ ପୁଷ୍ଟି ଓ ଶିକ୍ଷା, ଉଭୟର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ, କିନ୍ତୁ ଲୋକଙ୍କୁ ଆଇନଅମାନ୍ୟକାରୀ ସ୍ୱେଚ୍ଛାସେବକ ବା ଭୋଟର୍ ଭାବରେ ବ୍ୟବହାରକରିବା ଛଡ଼ା, ଗାନ୍ଧି କି ଗାନ୍ଧି-ପରବର୍ତ୍ତୀ ଖଦଡ଼ଧାରୀ, ଦେଶର ନାଗରିକ-ସମାଜର ବିକଚନ ଆଡ଼କୁ ମନ ବଳାଇନାହାନ୍ତି କେହିହେଲେ । ବସ୍ତି ସଫାଇ କି ଶାକାହାର ମଣିଷକୁ ଆତ୍ମଶକ୍ତି ଦିଏନା, ଦେଇପାରେନା । ମଣିଷର ମନୁଷ୍ୟତ୍ୱକୁ ଦେଶର ରାଜନୀତିରୁ ସ୍ୱୀକୃତି ମିଳିନାହିଁ ଯେମିତି, ଅର୍ଥନୀତି କି ବିଦ୍ୟାୟତନରୁ ସେମିତି ଜଣା ନୁହେଁ ତାର ଅବମାନନା । ଅଥଚ 'ମ୍ୟାଜିକ୍'

କାମକରୁଚି ଅଦ୍ୟାବଧି, ମେଣ୍ଢାହୋଇ ରହିଚନ୍ତି ଲୋକେ। ଗାନ୍ଧି ତ ଲୋକମାନସରେ ଅବତାର ବିଶେଷ, ତାଙ୍କ ପଛକୁ ବି ଦେବଦେବୀ ବାହାରିଲେଣି କାହୁଁ କାହିଁତକ୍ । ମାତ୍ର ବ୍ରିଟିଶ୍-ଭାରତର ପୁଲିସ୍ ପଦାଧିକାରୀ ଓ ବିଖ୍ୟାତ ଲେଖକ ଜର୍ଜ ଓରୱେଲ୍ ୧୯୪୯ରେ ଲେଖିଚନ୍ତି,... But one should, I think, realise that Gandhi's teachings cannot be squared with the belief that Man is the measure of all things and that our job is to make life worth living on this earth, which is the only earth we have. They make sense only on the assumption that God exists and the world of solid objects is an illusion to be escaped from... It was also apparent that the British were making use of him, or thought they were making use of him. Strictly speaking, as a Nationalist, he was an enemy, but since in every crisis he would exert himself to prevent violence – which, from the British point of view, meant preventing any effective action whatever – he could be regarded as 'our man'. In private this was sometimes cynically admitted... ପାଣି ଏତେ ଗୋଳିଆ ହୋଇଛି ଯେ ଇତିହାସବିଦ୍ ଏକ୍ଷଣି 'ଶ୍ରେଣୀ'ଶବ୍ଦଟିକୁ ନିର୍ବାସିତକରି, ତା ଜାଗାରେ ଲେଖୁଛନ୍ତି ସବଲ୍‌ଟନ୍ ବା ନିମ୍ନବର୍ଗ । ଅର୍ଥାତ୍ ଯୋଉ ଜାତୀୟ ଆନ୍ଦୋଳନକୁ ଏତେଦିନ ଭାବିଆସିଛୁଁ ଜନଯୁଦ୍ଧ, ସାମ୍ରାଜ୍ୟବାଦକୁ ବିରୋଧ କରି ସୁଦ୍ଧା, ଗ୍ରାମ୍‌ସିଙ୍କ ପରିଭାଷାରେ ତା କେବଳ 'ନିଷ୍କ୍ରିୟ ବିପ୍ଳବ' । ବିପ୍ଳବହୀନ ବିପ୍ଳବ, ସମାଜର ସବାଉପର ତାଳାରୁ ସଂଗଠିତ ଆନ୍ଦୋଳନ, ଯା ସର୍ବସାଧାରଣର ମୌଳିକ ଦାବିଗୁଡ଼ିକୁ କର୍ମସୂଚୀରେ ଅନ୍ତର୍ଭୁକ୍ତ କରେନା, ସଚେତନଭାବେ କରେନା । କରେନା ବୋଲି, ବିପ୍ଳବର ରଣନୀତି ହୁଏ ବୁର୍ଜୋୟାର କର୍ତ୍ତୃତ୍ୱ ପ୍ରତିଷ୍ଠା । ଏକ୍ଷଣି ଲିବରାଲାଇଜେସନ୍, ପ୍ରାଇଭେଟାଇଜେସନ୍ ଓ ଗ୍ଲୋବାଲାଇଜେସନ୍‌ର ଯେଉଁ ଆଦର୍ଶକୁ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର ସଚେତନଭାବେ ଆଲିଙ୍ଗନ କରିଚି, ପରିଣାମରେ ଜନସାଧାରଣଙ୍କ ମୌଳିକ ଦାବିଗୁଡ଼ିକ ପୂରଣ ହେବ କି ନାହିଁ, ଭାବିବା କଥା । ବୁର୍ଜୋୟା କର୍ତ୍ତୃତ୍ୱ ଦୃଢ଼ରୁ ଦୃଢ଼ତର ହେବ ନା ସାଧାରଣ ମଣିଷର ମ୍ୟାଜିକ୍-ନିର୍ଭରତାର ଅବସାନ ଘଟିବ, ଭାବିବା କଥା । କାହିଁକିନା, ଇଏ ମଧ୍ୟ ସମାଜର ସବାଉପର ତାଳାରୁ ଲଦି ଦିଆଯାଉଥିବା ଉନ୍ନୟନ କୃତ୍ୟସୂଚୀ ।

ବିଦେଶୀ ପର୍ଯ୍ୟଟକ ମୁଗଲଯୁଗର ଯୋଉ ଚିତ୍ର ଆଙ୍କିଚନ୍ତି, ସେଥିରେ ବିଶେଷଭାବେ ଫୁଟିଉଠିଛି ଆମ ସମାଜଜୀବନର ବିବିଧ ବୈପରୀତ୍ୟ; ଗୋଟେ ପଟରେ

ନବାବଙ୍କ ବିଳାସବହୁଳ ଦିନଯାପନ, ଆଉଗୋଟେ ପଟରେ ସାଧାରଣ ମଣିଷର ଅଭାବ ଅନଟନ, ଚରମ ଦାରିଦ୍ର୍ୟ । ଅଥଚ ମୁଗଲ ସମାଜବ୍ୟବସ୍ଥାର ମୂଳ ଚରିତ୍ର, ଯା ଭିତରେ ଲୁଚିରହିଥିଲା ଭବିଷ୍ୟତ ଅବକ୍ଷୟର ଅଙ୍କୁର, ବିଦେଶୀଙ୍କ ନଜରରେ ପଡ଼ିନାହିଁ । ଔରଙ୍ଗଜେବ୍‌ଙ୍କ ମୃତ୍ୟୁର ଅବ୍ୟବହିତରେ, ଶାସନବ୍ୟବସ୍ଥା ଯେତେବେଳେ ଉତ୍କଟ ସଂକଟ ଆବର୍ତ୍ତରେ ଭଉଁରୀ ଖାଇଲା, ସେତେବେଳେ ଯାଇ ବୁଝାପଡ଼ିଲା ଅବକ୍ଷୟ କେତେ ଗଭୀର ଓ ଗାଢ଼ । ଦେଖାଗଲା, ପର୍ତ୍ତୁଗୀଜ୍, ଓଲନ୍ଦାଜ୍, ଫରାସୀ ଓ ଇଂରେଜ୍‌ଙ୍କ ପାଖରେ ଦେଶ ହୋଇପଡ଼ିଛି କ୍ରମଶଃ ନତଶୀର । ଇଂରେଜ୍ ବଣିକଗୋଷ୍ଠୀ ଏ ଦୂରବସ୍ଥାର ପୂର୍ଣ୍ଣ ସଦୁପଯୋଗ କରି ଗଢ଼ିତୋଳିଛି ଭାରତ ତମାମ ସାମ୍ରାଜ୍ୟ । ଏଇ ଘଟଣା ଭିତରଦେଇ ଯା ପରିସ୍ଫୁଟ, ତା' ଖାଲି ଭାରତର ପରାଭବ ନୁହେଁ, ପ୍ରତୀଚ୍ୟ ସଭ୍ୟତା ପାଖରେ ପ୍ରାଚ୍ୟ ସଭ୍ୟତାର ପରାଜୟ । ଗୋଟାଏ ସଭ୍ୟତା ମୁଣ୍ଡ ଉଞ୍ଚକରି ଆଗକୁ ମାଡ଼ିଯାଉଚି, ଆଉ ଗୋଟାକ ବାର୍ଦ୍ଧକ୍ୟଭାରରେ ନଇଁପଡ଼ି ହୋଇଯାଇଚି ଭୂମିସଂଲଗ୍ନ । ଦୁଇ ସଭ୍ୟତାର ତୁଳନାତ୍ମକ ସମୀକ୍ଷା କରିଚନ୍ତି ତିନିଜଣ ମନୀଷୀ– ଭୋଲ୍‌ତେୟାର୍, ହେଗ୍‌ଲ୍ ଓ କାର୍ଲମାର୍କ୍ସ । ଭୋଲ୍‌ତେୟାର୍‌ଙ୍କ ବହିର ନାଁ *ଫ୍ରାଗ୍‌ମେଣ୍ଟ୍‌ଜ୍ ଅନ୍ ଇଣ୍ଡିଆ*, ହେଗ୍‌ଲ୍ ଲେଖିଚନ୍ତି *ଫିଲଜଫି ଅଫ୍ ହିଷ୍ଟ୍ରି*, ମାର୍କ୍ସ ଆଲୋଚନା କରିଛନ୍ତି *କ୍ୟାପିଟାଲ୍* ପ୍ରଥମଖଣ୍ଡରେ ।

ଭୋଲ୍‌ତେୟାରଙ୍କ ଅଭିମତ ହେଲା, ବାଣିଜ୍ୟଶକ୍ତିର ଆବିର୍ଭାବ ଯେହେତୁ ଦୁନିଆର ଚେହେରାକୁ ଦ୍ରୁତ ବଦଳାଇଦେଉଚି, ପଶ୍ଚିମରୁ ଆଗତ ବାଣିଜ୍ୟଶକ୍ତି ଭାରତମାଟିରେ ଗୋଡ଼ ଦେଉଁ ଦେଉଁ ରକ୍ତ ଚୁଷିବାକୁ କାର୍ପଣ୍ୟ କରୁନାହିଁ । ଚରମ ଏଇ ଦୁର୍ଦ୍ଦଶା ମୂଳରେ ରହିଛି ଅବଶ୍ୟ ପ୍ରଚଳିତ ବ୍ରାହ୍ମଣ୍ୟ ପରମ୍ପରା – ଜାତିଭେଦର କଠୋରତା, ଅସ୍ପୃଶ୍ୟତା ଓ ସତୀଦାହ ଭଳି ଘୃଣ୍ୟ କୁସଂସ୍କାର । ପ୍ରାଚ୍ୟ ସଭ୍ୟତାର ଅଧଃପତନର ପ୍ରଧାନ କାରଣ ତେଣୁ ମଣିଷର ନିହିତ ଶକ୍ତିର ଅବମାନନା, ଯୋଉଠି ଜୀବନ ଅପେକ୍ଷା ମରଣକୁ କରାଯାଏ ଅଧିକ ମହିମାମୟ । ମୁଗଲଶାସନ ସମ୍ବନ୍ଧରେ କହିଚନ୍ତି, ଏପରି ଏକ ବ୍ୟବସ୍ଥା, ଯୋଉଠି ସାମନ୍ତପ୍ରଭୁ ଭୋଗକରେ ସବୁତକ ସୁବିଧା ଓ ସ୍ୱାଛନ୍ଦ୍ୟ, ଏଣେ ସାମାନ୍ୟ ଗ୍ରାସାଚ୍ଛାଦନ ଯୋଗାଡ଼କରିବା ପ୍ରଜା ପକ୍ଷରେ ହୋଇଯାଏ ମର୍ମାନ୍ତିକ କଷ୍ଟ । ଔରଙ୍ଗଜେବ୍‌ଙ୍କ ଫରାସୀ ଚିକିତ୍ସକ ବର୍ନିୟେର୍ ଲେଖିଥିଲେ, ବ୍ୟକ୍ତିଗତ ସମ୍ପତ୍ତିର ଉଦ୍‌ଭବ ଭାରତରେ ଘଟିନାହିଁ । ଭୋଲ୍‌ତେୟାର୍ ସମ୍ମତ ହୋଇନାହାଁନ୍ତି, ବରଂ କହିଚନ୍ତି, ମୁଗଲ୍ ସମ୍ରାଟ୍‌ଙ୍କ ଐଶ୍ୱର୍ଯ୍ୟର ବହର ଓ ସ୍ୱେଚ୍ଛାଚାରୀ ଶାସନର ବେପରୁଆ ଆଚରଣ ଦେଖି ବର୍ନିୟେର୍ ହୁଏତ ଭାବିଚନ୍ତି ଦୁନିଆ ତମାମ ସମ୍ପତ୍ତିର ମାଲିକ ଏକମାତ୍ର ବାଦ୍‌ଶା', ବ୍ୟକ୍ତିଗତ ସମ୍ପତ୍ତି ବୋଲି ପ୍ରଜାଙ୍କର କୋଉ ହେଲେ ଅଧିକାର ନାହିଁ । ଭୋଲ୍‌ତେୟାର୍ ସେଥିପାଇଁ ଲକ୍ଷ୍ୟକରନ୍ତି, ଭାରତର ସାମନ୍ତତନ୍ତ୍ର

ଭିତରେ ବହୁବିଧ ବିରୋଧ; ଯେପରି ରାଜନ୍ୟବର୍ଗ ପରସ୍ପର ସହିତ ଯୁଦ୍ଧକରିବାକୁ ତତ୍ପର, ସେମାନେ ପୁଣି ବିଦେଶୀ ଶକ୍ତିଗୁଡ଼ିକର ସହଯୋଗୀ, ନାଳ କାଟି ନଈରୁ କୁମ୍ଭୀର ଆଣି ଘରେ ପୂରାଇବା ଧନ୍ଦାରେ ଧୁରନ୍ଧର ।

*ମନୁସଂହିତା* ର ଅନୁଶାସନ ନିରିଖରେ ହେଗ୍ଲ ଚେଷ୍ଟାକରିଚନ୍ତି ଭାରତୀୟ ସମାଜର ମର୍ମ ଉଦ୍‌ଘାଟନ କରିବାକୁ ଦାର୍ଶନିକସୁଲଭ ପରିଶୀଳିତ ରୀତିରେ । ବ୍ରହ୍ମାଣ୍ଡର ଉତ୍ପତ୍ତି ବିଷୟକ ଭାରତୀୟ ଭାବଜଗତକୁ କଟାକ୍ଷକରି ଲେଖିଚନ୍ତି, ସ୍ଥାବର-ଜଙ୍ଗମ ବିବାକ ଜିନିଷ ଭିତରେ ଭଗବାନଙ୍କୁ ଦେଖନ୍ତି ଭାରତୀୟ; ଏପରିକି, ଗାଈଗୋରୁ ଜନ୍ତୁଜାନୁଆର୍ ମଧ୍ୟ ତାଙ୍କ ଦେବଦେବୀ । ଯୁକ୍ତିଜ୍ଞାନ ଜୀବନଯାପନରୁ ଅନ୍ତର୍ହିତ, କାହିଁକିନା, ବ୍ୟକ୍ତିର ସ୍ୱତନ୍ତ୍ର ଅସ୍ତିତ୍ୱ/ଅଧିକାର ଯେହେତୁ ଅସ୍ୱୀକୃତ, ଚିନ୍ତାର ସ୍ୱାଧୀନତା ମଧ୍ୟ ଅବଜ୍ଞାତ । ଜାତିଭେଦ, ଅସ୍ପୃଶ୍ୟତା, ସତୀଦାହ, ନରବଳୀ ପ୍ରଭୃତି କୁସଂସ୍କାର ପ୍ରତି ତର୍ଜନୀ ନିର୍ଦ୍ଦେଶକରି ପୁଣି ଲେଖିଚନ୍ତି, ଯୋଉ ନୀତିବୋଧ ମଣିଷ ପ୍ରତି ଆନ୍ତରିକ ଶ୍ରଦ୍ଧାରୁ ଉତ୍ସାରିତ ହୁଏ, ହିନ୍ଦୁଙ୍କ ବିଶ୍ୱାସଜଗତରେ ସେ ନୀତିବୋଧ ଅପରିଚିତ । ସେଥିପାଇଁ ସାମାଜିକ ଓ ରାଜନୀତିକ କ୍ଷେତ୍ରରେ ଦୁର୍ନୀତି ଓ ସ୍ୱୈରତନ୍ତ୍ରର ଅବାରିତ ରାଜତ୍ୱ । ପ୍ରତିରୋଧ ଯେ ପ୍ରୟୋଜନ, ସେ ବୋଧ ମଧ୍ୟ ଜନଗଣଙ୍କ ଭିତରେ ଦେଖାଯାଏନା । ଏପରିକି, ଭାରତୀୟ ଉଚ୍ଚବର୍ଗ ଭିତରେ ସୁଦ୍ଧା ଇତିହାସଚେତନାର ଚିହ୍ନବର୍ଣ୍ଣ ଖୋଜି ପାଇବା ଦୁଷ୍କର ।

ଖୁବ୍ ସମ୍ଭବତଃ, ଭାରତ ବିଷୟରେ ପ୍ରାଥମିକ ଜ୍ଞାନ ମାର୍କ୍ସ ଆହରଣ କରିଚନ୍ତି ହେଗ୍ଲଙ୍କ ପାଖରୁ । କାହିଁକିନା, ମାର୍କ୍ସ ଲେଖିଚନ୍ତି, ପଶୁତ୍ୱ ଓ ମନୁଷ୍ୟତ୍ୱ ଭିତରେ ସୀମାରେଖା ଯୋଉଠି ଅନୁପସ୍ଥିତ, ଅସଂଖ୍ୟ ଅବିଚାର ଓ ଭେଦାଭେଦ ଆଘାତରେ ମନୁଷ୍ୟତ୍ୱ ଯୋଉଠି ଅବମାନିତ, ସମାଜଜୀବନ ନିଷ୍ପନ୍ଦ, ଚିନ୍ତା ଓ କର୍ମ ଯେ ସେଠି ନିର୍ଜୀବ ହୋଇପଡ଼ିବ, ସନ୍ଦେହ ନାହିଁ । ତଥାପି, ମାର୍କ୍ସଙ୍କ ଅବବୋଧ ଥିଲା ସ୍ୱତନ୍ତ୍ର, କାହିଁକିନା, ଭାରତୀୟ ସମାଜର ପଶ୍ଚାତ୍‌ପଦ ଅବସ୍ଥା ବର୍ଣ୍ଣନାକରିସାରି ହେଗ୍ଲ କ୍ଷାନ୍ତହୋଇଛନ୍ତି; ମାର୍କ୍ସ ଖୋଜିଛନ୍ତି ମୂଳକାରଣ । ସେଇ ମୂଳ ଖୋଜିବା ସୂତ୍ରରେ ଅଗ୍ରଗମନର ସମ୍ଭାବ୍ୟ ମାନଚିତ୍ର ମଧ୍ୟ ଆଙ୍କିଚନ୍ତି ନ୍ୟୁୟର୍କରୁ ପ୍ରକାଶିତ *ଡେଇଲି ଟ୍ରିବିଉନ୍* (୧୯୫୩) ପତ୍ରିକାରେ । ମାର୍କ୍ସ ଭାବିଚନ୍ତି, ଭାରତର ପଶ୍ଚାତ୍‌ପଦ ଅବସ୍ଥା ମୂଳରେ ଥିଲା ଗ୍ରାମସଂଗଠନ ଏବଂ ସେଇ ଗ୍ରାମସମାଜ ଥିଲା ସ୍ୱେଚ୍ଛାଚାରୀ ମୁଗଲ ଶାସନବ୍ୟବସ୍ଥାର ଭିତ୍ତିଭୂମି । ସେଇ କ୍ଷୁଦ୍ରାତିକ୍ଷୁଦ୍ର ଓ ବହୁପ୍ରାଚୀନ ଗୋଷ୍ଠୀଗୁଡ଼ିକର ଅବଶେଷ ଏବେସୁଦ୍ଧା ବିଦ୍ୟମାନ । ଏ ସଂଗଠନର ସୂତ୍ର ଥିଲା ଚାଷଜମି ଉପରେ ସବୁ ଗ୍ରାମବାସୀଙ୍କର ସମାନ ଭୋଗଦଖଲ । ଇଜମାଇଲି ଜମି ଛଡ଼ା ହସ୍ତଶିଳ୍ପ ଥିଲା ମଧ୍ୟ କୃଷିର ସମାନ୍ତର, ଅର୍ଥାତ୍ ଯିଏ କୃଷକ ସିଏ ମଧ୍ୟ

କାରିଗର, ଏବଂ କୃଷକ ଓ କାରିଗରର ଏ ସମନ୍ୱୟ ଶ୍ରମବିଭାଜନକୁ କରିଚି ଅପରିବର୍ତ୍ତନୀୟ, ଅଚଞ୍ଚଳ । କାହିଁକିନା, ଉତ୍ପନ୍ନ ଜିନିଷର ଅଧିକାଂଶ ଯେହେତୁ ପ୍ରତ୍ୟକ୍ଷ ବ୍ୟବହାର ସକାଶେ ନିର୍ଦ୍ଦିଷ୍ଟ, କୃଷିଜାତ ଦ୍ରବ୍ୟ କି ଶିଳ୍ପସାମଗ୍ରୀ 'କମୋଡିଟି' ବା ପଣ୍ୟର ଚରିତ୍ର ଧାରଣ କରିନାହିଁ । କରିନାହିଁ ବୋଲି, ଗାଁ ବାହାରକୁ ରପ୍ତାଣି କରାଯାଇନାହିଁ । ଲୋକ ଯାହା ଉତ୍ପାଦନ କରିଚନ୍ତି, ନିଜେ ସବୁଯାକ ଭୋଗକରିଚନ୍ତି; ବାହାରୁ ଆଣିଚନ୍ତି ଯତ୍‌ସାମାନ୍ୟ ଲୁଣ, ମସଲାପାତି ଓ ମୁଦ୍ରା । ମୁଦ୍ରା ପ୍ରଚଳନ ଥିଲା ଅବଶ୍ୟ ଅତିଶୟ ସୀମିତ । ଯା'ବାହାରେ ଅତିରିକ୍ତ ପଣ୍ୟର ଆମଦାନି ଆବଶ୍ୟକ ହୋଇନାହିଁ । ସ୍ୱୟଂସମ୍ପୂର୍ଣ୍ଣ ଏଇ ଗାଁଗୁଡ଼ିକ ସହିତ ରାଷ୍ଟ୍ରର ସଂଯୋଗ ଥିଲା ମଧ୍ୟ କ୍ଷୀଣ । ଯଦିଓ ଖଜଣାହାର ଥିଲା ଚଢ଼ା, ରାଜସ୍ୱ ପଇଠ କରିବାକୁ ତଥାପି ପ୍ରଜାଙ୍କୁ ବାଧ୍ୟ କରାଯାଇଛି, ଗାଁ ମୁଣ୍ଡିଆଳକୁ ଯେହେତୁ କରାଯାଇଚି ରାଷ୍ଟ୍ରର ପ୍ରତିନିଧି (ଯେପରି କାର୍ଜିକରଣ, ଗଉନ୍ତିଆ, ସର୍ବରାକାର); ସାଧାରଣ ପ୍ରଜା ସହିତ ରାଷ୍ଟ୍ରର ପ୍ରତ୍ୟକ୍ଷ ସଂସ୍ରବ ଦରକାର ପଡ଼ିନାହିଁ । ତେବେ ଗ୍ରାମସମାଜର ଦୋହନ/ଶୋଷଣ ଉପରେ ଗଢ଼ିଉଠିଛି ଶାସକଶ୍ରେଣୀର ବିଳାସବାହୁଲ୍ୟ, ଯା ମୁସଲମାନ ଜମାନାର ବିଶେଷତ୍ୱ । ଭୂରାଜସ୍ୱ ଅକୁଳାଣ ହେଲେ ଜିଜିୟା କର; ତେବେସୁଦ୍ଧା ନିଅଣ୍ଟପଡ଼ିଲେ ବେଠି ଭେଟି ବେଗାର । ରଜାରାଜୁଡ଼ା ଯାଇଚନ୍ତି ଆସିଚନ୍ତି; ମାତ୍ର ଗ୍ରାମସମାଜ ଉପରେ ଛାୟା ପଡ଼ିନାହିଁ, ରଜା ବଦଳିଗଲେ ସୁଦ୍ଧା ପ୍ରଜା ବଦଳିନାହିଁ । କିନ୍ତୁ ମାର୍କ୍ସ କହିଚନ୍ତି, ଗ୍ରାମସଂଗଠନରୁ ଅଚ୍ଛେଦ୍ୟ ଥିଲା ଧର୍ମର ଅନୁଶାସନ; ଅର୍ଥାତ୍ ଜାତିଭେଦ, ଅସ୍ପୃଶ୍ୟତା, ପଶୁହତ୍ୟା / ପଶୁପୂଜା ଓ ଦେବାଳୟରେ ଦେବଦାସୀ ନିଯୋଗ । ପ୍ରାତିଷ୍ଠାନିକ ଏ ବ୍ୟବସ୍ଥା ସମାଜକୁ କରିଚି ଗତିହୀନ, ଜୀବନଚର୍ଯ୍ୟାକୁ ରୁଦ୍ଧସ୍ରୋତ ଏବଂ ଏ ଗ୍ରାମଗୋଷ୍ଠୀ ସରଳ ଶାନ୍ତ ନିରୀହ ମନେହେବା ସତ୍ତ୍ୱେ ପ୍ରାଚ୍ୟ ସ୍ୱୈରାଚାରର ଭିତ୍ତି ହୋଇଆସିଚି ଚିରକାଳ; ଅର୍ଥାତ୍, ମଣିଷର ମାନସଲୋକକୁ ଯଥାସମ୍ଭବ କ୍ଷୁଦ୍ର ପରିଧିରେ ଆବଦ୍ଧକରି ରଖିଛି । 'କରିଚି କୁସଂସ୍କାରର ଅପ୍ରତିବାଦୀ କ୍ରୀଡ଼ନକ, ଚିରାଚରିତ ବିଧିବିଧାନର କ୍ରୀତଦାସ, ଏବଂ ତା ପାଖରୁ ହରଣକରିଛି ମାନବିକ ମହିମା ଓ ଇତିହାସସମ୍ମତ କର୍ମଦ୍ୟୋତନା' ।

ମାର୍କ୍ସ ଜମାରୁ ଆସିନାହାନ୍ତି ଭାରତ, ତଥ୍ୟ ସଂଗ୍ରହକରିଚନ୍ତି ବ୍ରିଟିଶ୍ ପାର୍ଲାମେଣ୍ଟ୍‌ରେ ହେଉଥିବା ତର୍କବିତର୍କରୁ, ବିଦେଶୀ ପର୍ଯ୍ୟଟକଙ୍କ ବିବରଣୀରୁ ଏବଂ ଗବେଷଣାପ୍ରସୂତ କତିପୟ ମୂଲ୍ୟବାନ ଗ୍ରନ୍ଥରୁ । ଏଗୁଡ଼ାକ ଅପ୍ରତ୍ୟକ୍ଷ ସୂତ୍ର । ଗ୍ରାମସମାଜର ଚିତ୍ରଟି ତେଣୁ ସର୍ବାଂଶରେ ସତ୍ୟ ନୁହେଁ । ପର୍ଯ୍ୟଟକ ଭୂମିବ୍ୟବସ୍ଥା ବିଷୟରେ ଯା ଲେଖିଚନ୍ତି, ସବୁଗୁଡ଼ାକ ଶୁଣାକଥା, ଯେପରି ବର୍ଣ୍ଣିୟେର୍ କହିଛନ୍ତି ରୟତର ସ୍ୱତ୍ୱ ଥିଲାନାହିଁ, ବ୍ୟକ୍ତିଗତ ମାଲିକାନାକୁ ରାଷ୍ଟ୍ର ଅଗ୍ରାହ୍ୟ କରିନାହିଁ, ଇତ୍ୟାଦି । ଅତିସରଳୀକୃତ ଏଇ ତଥ୍ୟ ଉପରେ ମାର୍କ୍ସ ଆରୋପ କରିଛନ୍ତି ଅତ୍ୟଧିକ ଗୁରୁତ୍ୱ ।

ପ୍ରଜାସ୍ୱତ୍ୱ ଥିଲା କି ନାହିଁ, *ଆଇନ୍‌-ଇ-ଆକ୍‌ବରୀ* ରେ ଆବୁଲ୍‌ ଫଜଲ୍‌ ସେ ବିଷୟରେ ଲେଖିଚନ୍ତି, କୃଷକ ଯୋଉ ଜମି ଚଷେ, ତା ଉପରେ ଭୋଗକରେ ସ୍ଥାୟୀ ଦଖଲସ୍ୱତ୍ୱ । ତେବେ, ଜମିର ମାଲିକ ହୁଏନା, କାହିଁକିନା, ମନକଲେ ଜମି ବିକ୍ରିକରି ପାରେନା କି ଜମି ଛାଡ଼ିଦେଇ ଚାଲିଯାଇ ପାରେନା । ଦଖଲସ୍ୱତ୍ୱ ଆବାଦ କରିବାକୁ ଚିରଜୀବନ ବାଧଥାଏ । ଅବଶ୍ୟ, ସବୁ ଚାଷୀଙ୍କ ସ୍ୱତ୍ୱାଧିକାର ସମାନ ରକମ ନୁହେଁ; ଯେପରି, ଏକ ଶ୍ରେଣୀର କୃଷକ କେବଳ ଜମିଦାରଙ୍କ ଜମି ଚାଷକରନ୍ତି । ପୁଣି ଆଉଏକ ଶ୍ରେଣୀ କ୍ଷୁଦ୍ରଚାଷୀ; ସଂଖ୍ୟାଗରିଷ୍ଠ ହେଲେସୁଦ୍ଧା, ବିହନ କି ଗାଈବଳଦ କିଣିବାକୁ ଯାଇ କରଜ ଭାରରେ ଅବନତ । ତା' ଛଡ଼ା, ଜାତିଭେଦ ପ୍ରଭାବରେ କୃଷକକୁଳର ବଡ଼ଅଂଶ ଥିଲେ ଅସ୍ପୃଶ୍ୟ, ଜମି କିଣି ରୟତହେବା ଅଧିକାର ପାଇବାକୁ ଅଯୋଗ୍ୟ । ପାଇନାହାଁନ୍ତି ବୋଲି, ଚାଷକାମ ଚାଲୁଥିବା ବେଳେ ମୂଲିଆହୋଇ ମାଲିକର ଜମି ଚଷନ୍ତି । ଅର୍ଥାତ୍‌, ମୁଗଲ ଜମାନାରେ ହିଁ କୃଷକଙ୍କ ଭିତରେ ସୃଷ୍ଟିହୋଇଚି ଯଥେଷ୍ଟ ସ୍ତରଭେଦ । ସେଥିପାଇଁ ଭାରତର ଗ୍ରାମସମାଜକୁ ନିଷ୍ଫଳ ନିସ୍ତରଙ୍ଗ, ମାର୍କ୍ସ ଯେମିତି ଭାବିଚନ୍ତି, ନିର୍ଭୁଲ୍‌ ନୁହେଁ । ବହୁସ୍ତର ବିଶିଷ୍ଟ ହେବା ମାନେ ସମାଜ ନାନାଦି ବିରୋଧରେ ବିଦୀର୍ଣ୍ଣ ହେବ । କୃଷକ ସହିତ ରାଷ୍ଟ୍ରର, ଗାଁମୁଣ୍ଡିଆଳ ସାମନ୍ତ ସହିତ ଅଧସ୍ତନ କ୍ଷୁଦ୍ରଚାଷୀର, ଉଚ୍ଚବର୍ଗ ଜମିମାଲିକ ସହିତ ନୀଚଜାତି ମୂଲିଆର ଦ୍ୱନ୍ଦ୍ୱ ତେଣୁ ଲାଗିରହିଥିଲା । ଏବଂ ଏ ଦ୍ୱନ୍ଦ୍ୱର ପରିଣାମ ହୋଇଛି କେତେବେଳେ ପ୍ରତିବାଦ, କେତେବେଳେ ପ୍ରତିରୋଧ, ପୁଣି କେତେବେଳେ ସଶସ୍ତ୍ର ବିଦ୍ରୋହ । ଆବୁଲ୍‌ ଫଜଲ୍‌ ସେଥିପାଇଁ ଲେଖିଚନ୍ତି, ସାରା ହିନ୍ଦୁସ୍ତାନର କୃଷକକୁଳ ପ୍ରଚଣ୍ଡ ପ୍ରତିରୋଧଶକ୍ତି ଓ ବୀରତ୍ୱ ସକାଶେ ସୁବିଦିତ । ଅତ୍ୟାଚାର ଅସହ୍ୟ ହେଲେ, ଗାଁ ଛାଡ଼ି ଚାଷୀ ପଳାଇଯାଇଛି । ଗାଁ ଛାଡ଼ି ଅନ୍ୟତ୍ର ପଳାଇବା ହୋଇଚି ସେତେବେଳେ ବସ୍ତୁତଃ ପ୍ରତିବାଦର ପରିଚିତ ମାଧ୍ୟମ ଏବଂ ଖଜଣା-ଆଦାୟକାରୀ ନିଜେ ଯଦି ଅତ୍ୟାଚାରୀ, ଗାଁ ଭିତରକୁ ପଶିବା ମାତ୍ରକେ ସମ୍ମୁଖୀନ ହୋଇଛି ତୀବ୍ର ପ୍ରତିରୋଧର । ଅତ୍ୟାଚାର ଚରମକୁ ଉଠିଲେ, ପ୍ରତିରୋଧ ହୁଏ ସଶସ୍ତ୍ର, ଯେପରି ଆଗ୍ରା ଅଞ୍ଚଳରେ ଜାଠ୍‌ଚାଷୀଙ୍କ ବିଦ୍ରୋହ । ଜାଗିରିଦାର ଫୌଜ୍‌ଦାର୍‌ ମାଡ଼ ଖାଇଛନ୍ତି, ଚାଷୀଙ୍କୁ ନେତୃତ୍ୱ ଦେଇଚନ୍ତି ଜାଠ୍‌-ଭୂସ୍ୱାମୀ । ଔରଙ୍ଗଜେବ୍‌ଙ୍କ ଶାସନକାଳରେ ଚାଷୀ ଗାଁଛାଡ଼ି ପଳାଇବା ଧରିଛି ଭୟଙ୍କର ଆକାର; ବାଧହୋଇ ସମ୍ରାଟ୍‌ ଆଇନ୍‌ ବଳରେ ଓଗାଳିଚନ୍ତି ପଳାତକ ଚାଷୀଙ୍କୁ । ସେମିତି, ସତ୍‌ନାମୀ ସମ୍ପ୍ରଦାୟର ବିଦ୍ରୋହ । ସତ୍‌ନାମୀ ନୀଚଜାତିର ମଣିଷ; କିଏ ଚଷା, କିଏ ବଢ଼େଇ, କିଏ ମୁଚି, ଆଉକିଏ ହାଡ଼ି କି ମେହେନ୍ତର । ହିନ୍ଦୁ-ମୁସଲମାନ୍‌ ଭେଦାଭେଦ ମାନନ୍ତିନାହିଁ; ନିଜ ସମ୍ପ୍ରଦାୟର ପତାକା ପୋତିଦେଇ ଆହ୍ୱାନକରନ୍ତି ଅତ୍ୟାଚାରୀକୁ ।

ମୁଗଲ୍‌ଯୁଗରେ ତେଣୁ ଅକାଳେ-ସକାଳେ ବିଦ୍ରୋହ ମୁଣ୍ଡଟେକିଚି ଯଦିଓ ପରିଣତି ହୋଇଚି ବିଡ଼ମ୍ବନା, କାହିଁକିନା, କୃଷକଚେତନା ପରିଣତହୋଇନାହିଁ, ରହିଚି ନିମ୍ନମାନ । ଚତୁର ଜମିଦାର ଢ଼େର୍ ଜାଗାରେ ବ୍ୟବହାରକରିଚନ୍ତି ବିଦ୍ରୋହୀଙ୍କୁ ସ୍ୱାର୍ଥସାଧନ କାମରେ; ଆଉ, ଜାତି-ବର୍ଣ୍ଣ ବିନା ବ୍ୟତିକ୍ରମରେ ହୋଇଚି ଐକ୍ୟ ପଥରେ ମସ୍ତବଡ଼ ଅନ୍ତରାୟ । ସ୍ୱତ୍ୱବାନ୍ କୃଷକ ତ ସବୁଠି ଉଚ୍ଚବର୍ଗ । ଭୂମିହୀନ ମୂଲିଆ ଅସ୍ପୃଶ୍ୟ କି ଆଦିବାସୀ । ପରସ୍ପର ପ୍ରତି ଘୃଣାରେ ଅଭ୍ୟସ୍ତ ଉଭୟ । ସଂହତି ଆସନ୍ତା ତେଣୁ କୁଆଡୁ ? ସେଥିପାଇଁ, କଦବା କେତେବେଳେ ପ୍ରଜାମେଳି କି ହାତହତିଆର ଲଗାଇ ପ୍ରତିରୋଧ ତିଆରି କରାଗଲେ ସୁଦ୍ଧା, ସମାଜର ସାମନ୍ତବାଦୀ ଗଢ଼ଣର ମୂଳ ଲକ୍ଷଣଗୁଡ଼ିକ ଉପରେ ବିଶେଷ ପ୍ରଭାବ ପଡ଼ିନାହିଁ, ଏବଂ ଗ୍ରାମୀଣ ଅର୍ଥନୀତି ସ୍ୱୟମ୍ଭର ହେବା ଫଳରେ ପଣ୍ୟଉତ୍ପାଦନ ଲାଭକରିନାହିଁ ପ୍ରସାର । ମାତ୍ର ସହରାଞ୍ଚଳର ଚିତ୍ର ସାମାନ୍ୟ ଅନ୍ୟରକମ, କାହିଁକିନା, କାରିଗରୀ ବୃତ୍ତି ସେଠି ଉତ୍ସାହପାଇଚି, ପଣ୍ୟସରବରାହ ତେଣୁ ଲାଭକରିଚି ବିସ୍ତାର । ଅର୍ଥାତ୍, ବଜାର ତିଆରିହୋଇଚି ବିଭିନ୍ନ ସହରରେ, ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ସକାଶେ କାରକାନା ବି ବସିଚି ନାନାଦି ପେଣ୍ଠ ଜାଗାରେ । ତା' ଭିତରେ ସର୍ବପ୍ରଧାନ କାର୍ପାସଜାତ ସାମଗ୍ରୀ । ଓଡ଼ିଶାରେ କପାଋଷ ବିସ୍ତାର ପାଇଥିଲା କି ନାହିଁ ଜଣାପଡୁନାହିଁ; କିନ୍ତୁ ପାଟ-ମଠା ବୁଣିବା ସକାଶେ ସୂତା ଥିଲା ସୁଲଭ । ଅବଶ୍ୟ ଉପକୂଳବର୍ତ୍ତୀ ଓଡ଼ିଶା ହିଁ ଥିଲା କେବଳ ମୋଗଲବନ୍ଦୀ । ମୋଟଉପରେ, କପା ହିଁ ଥିଲା ଭାରତର ଗର୍ବ, କାହିଁକିନା, ସୂତାଲୁଗା, ଛପା ଓ ରଙ୍ଗଲୁଗା, ମସ୍‌ଲିନ୍, ପାଟ-ମଠା, ଏତେ ପରିମାଣରେ ଉତ୍ପନ୍ନହୋଇଚି ଯେ ଅଭ୍ୟନ୍ତରୀଣ ଚାହିଦା ମେଣ୍ଟାଇବା ଉତାରୁ ଉଦ୍‌ବୃତ୍ତ ରପ୍ତାନୀ କରାଯାଇଚି ବିଦେଶକୁ, ବିଶେଷତଃ ଇଉରୋପ୍‌କୁ, ଏବଂ ରପ୍ତାନୀଯୋଗ୍ୟ ଜିନିଷ ଭିତରେ ରହିଚି ରେଶମ, ଗନ୍ଧକ, ନୀଳ, ତୈଜ୍ୟସପତ୍ର (ଧାତୁ, ମାଟି, ସେରାମିକ୍), ସୁଗନ୍ଧୀ ତୈଳ, ଲୁଣ, ଗୁଡ଼, ବଡ଼ଆକାରର ପଥରଖଣ୍ଡ(ସ୍ଲାବ୍), ସୁନା-ରୁପା ଅଳଙ୍କାର । ଦେଶଭିତରେ ସୌଖୀନ୍ ଜିନିଷର ଚିହ୍ନରା ଗ୍ରାହକ ଥିଲେ ଅବଶ୍ୟ ବିଳାସବ୍ୟସନରେ ଅଭ୍ୟସ୍ତ ମୁଗଲ୍ ସାମନ୍ତଶ୍ରେଣୀ, କିନ୍ତୁ ସବୁଠୁଁ ଭଲଜିନିଷଟା ଉପରେ ନଜର ଥିବାରୁ ସେମାନେ ନିଜ ନିଜ କାରଖାନାରେ ତିଆରି କରାଇଚନ୍ତି; ଯେପରି ଆକ୍‌ବର୍‌ଙ୍କ ଅମଳରେ ମୁଗଲ ଚିତ୍ରକଳା, ସଂଗୀତର ଘରାନା, ମୋଗଲାଇ ରନ୍ଧନ କି ଉଦ୍ୟାନ । ବର୍ନିୟେର୍‌ଙ୍କ ବିବରଣୀରେ ଏ କାରଖାନାଗୁଡ଼ିକର ବର୍ଣ୍ଣନା ରହିଛି । ବଜାରରେ ବିକ୍ରି ସକାଶେ ଯେହେତୁ ସେଠି କିଛିହେଲେ ତିଆରିହୁଏନା, ଶିଳ୍ପଗତ ନୈପୁଣ୍ୟ ଓ ଦକ୍ଷତା ରହିଯାଇଚି ଶାସକଶ୍ରେଣୀର ବ୍ୟକ୍ତିଗତ ସମ୍ପତ୍ତି । ଏକ୍ଷଣି ଯାହାକୁ କହୁଚୁଁ 'ଏକ୍ସକ୍ଲୁସିଭ୍' । ରହିଯାଇଚି ବୋଲି, ସେ କାରିଗରମାନଙ୍କୁ ତିମୁର୍ ବାନ୍ଧିନେଇଚନ୍ତି ସମରକନ୍ଦ୍ ।

ଖଣିଶିଳ୍ପର ମଧ୍ୟ ବିକାଶ ଘଟିଚି, ଯେପରି, ଟାଭର୍ନିୟରଙ୍କ ବିବରଣୀରେ ରହିଚି ଦାକ୍ଷିଣାତ୍ୟର ହୀରାଖଣି ବର୍ଣ୍ଣନା । ଦଳଦଳହୋଇ ଲୋକ ହୀରା ଖୋଳିଚନ୍ତି ଦିନରାତି, ଖାଲି କୋଲାର୍ ସୁନାଖଣିରେ ଖଟିଚନ୍ତି ଦିନକୁ ତିରିଶହଜାର ଶ୍ରମିକ । ସେମିତି ଜାହାଜନିର୍ମାଣ । ତା'ର ସବୁଠୁଁ ବଡ଼ କେନ୍ଦ୍ର ଥିଲା ସୁରାଟ୍ ଏବଂ ଜାହାଜ ଗୋଟାକୁ ଲାଗିଚନ୍ତି ଦିନକୁ ପଚାଶରୁ ଶହେ କାରିଗର । ସ୍ୱାଭାବିକଭାବେ, ବାଣିଜ୍ୟ ଓ ଶିଳ୍ପପ୍ରକ୍ରିୟା ସହିତ ଜଡ଼ିତରହିଛନ୍ତି ଅସଂଖ୍ୟ କାରିଗର, ଦଲାଲ୍, ସ୍ୱଳ୍ପବିତ୍ତ ଖୁଚୁରା ବେପାରୀ; ଯେପରି, ଫକୀରମୋହନ ଲେଖିଚନ୍ତି ବାଲେଶ୍ୱରର ଅଝାଳସିଲାଇ ଓ ନିମକମାହାଲ ସମ୍ବନ୍ଧରେ। ସନ୍ଦେହ ନାହିଁ, ଶିଳ୍ପପ୍ରକ୍ରିୟାର ପ୍ରାଣ ସ୍ୱରୂପ ଥିଲେ କାରିଗର: ବଢ଼େଇ-କମାର-କୁମ୍ଭାର-ତନ୍ତୀ-ବଣିଆ-ପଥରକଟାଳୀ, ନାବିକ ଇତ୍ୟାଦି । ଆବୁଲ୍‌ଫଜଲ୍ ଲେଖିଚନ୍ତି, ସାମନ୍ତତନ୍ତ୍ରକୁ ଯଦି ସ୍ଥାୟୀ କରିବାକୁ ହୁଏ, ଭାରତରେ ଯିଏ ବୃତ୍ତିଜୀବୀ କି ପେସାଦାର, ଯେମିତି ସୈନିକ-ବଣିକ-କାରିଗର-ପଣ୍ଡିତ-କୃଷକ ଓ ଗୃହଦାସ ତାଙ୍କରି ସ୍ୱାର୍ଥରକ୍ଷା ହେବ ଶାସନର ପ୍ରଧାନ ଦାୟିତ୍ୱ । ମଦମତ୍ତ ସାମନ୍ତ-ପ୍ରଭୁ କର୍ଣ୍ଣପାତ କରିନାହିଁ । ବରଂ, ବଣିକ କାରିଗର ଓ ଶ୍ରମିକଙ୍କ ଉପରେ ଅବ୍ୟାହତ ରହିଚି ନିର୍ଯାତନା । ବିଶେଷତଃ ବ୍ୟବସାୟ-ବାଣିଜ୍ୟ ଉପରେ ସରକାରୀ ହସ୍ତକ୍ଷେପର ଧରଣ ଥିଲା ନିତ୍ୟନୂତନ କର ଓ ଶୁଳ୍କ ପ୍ରବର୍ତ୍ତନ । ସେମାନେ ମଧ୍ୟ ସଂଘବଦ୍ଧହୋଇ ପ୍ରତିବାଦ କରିଚନ୍ତି, ଯେପରି ସପ୍ତଦଶ ଶତକ ଆରମ୍ଭରେ କ୍ୟାମ୍ବେଠି । ସେଇ ସପ୍ତଦଶ ଶତକର ମଧ୍ୟଭାଗରେ ଭାବନଗରର ସମସ୍ତ ଅମାନତ୍‌କାରୀ ଏକଜୁଟ୍‌ହୋଇ ଲେଣଦେଣ ବନ୍ଦକରିଦେଇ ସୃଷ୍ଟିକରିଚନ୍ତି ଅଚଳ ଅବସ୍ଥା । ଆଉଜଣେ ଫରାସୀ ପର୍ଯ୍ୟଟକ, ଆବେ କାରେ, ଲେଖିଚନ୍ତି ସ୍ୱର୍ଣ୍ଣକାର କର୍ମକାର ଓ ସୂତ୍ରଧରଙ୍କ ଭିତରେ ଏଇ ଥିଲା ଚିରାଚରିତ ପ୍ରଥା; ଜଣେହେଲେ ଯଦି କ୍ଷତିଗ୍ରସ୍ତ ହୁଏ, ସମ୍ପ୍ରଦାୟର ବିବାକ ଲୋକ ଦୋକାନରେ ତାଲା ଝୁଲାଇଦେଇ ଘୋଷଣା କରିବେ କର୍ମବିରତି । ଇତିହାସରୁ ଆହୁରି ଢେର୍ ଉଦାହରଣ ଦେଇହେବ । କିନ୍ତୁ ଯୋଉ କଥାଟା ସାବ୍ୟସ୍ତକରିବାକୁ ରହୁଁଚି, ତା କେବଳ ମାର୍କ୍ସ କହିବାଭଳି, ଭାରତର ପ୍ରାଚୀନ ସମାଜ ପ୍ରକୃତରେ ଅଚଳାୟତନ ଥିଲାନାହିଁ । କୃଷକ-କାରିଗର କେହିହେଲେ ନିର୍ଜୀବ ଥିଲେନାହିଁ; ସେମାନଙ୍କୁ ଦମିତକରି ରଖାଯାଇଥିଲା କ୍ରମାଗତ ଦୀର୍ଘକାଳ । ସମସ୍ୱାର୍ଥରେ ସଂଘବଦ୍ଧହେବା, ପ୍ରତିବାଦ-ପ୍ରତିରୋଧକୁ ସଶସ୍ତ୍ର ବିଦ୍ରୋହ ପର୍ଯ୍ୟନ୍ତ ଉନ୍ନୀତକରିବା ଅଜ୍ଞାତ ନଥିଲା ସେମାନଙ୍କୁ; କିନ୍ତୁ ଉତ୍ପାଦନବ୍ୟବସ୍ଥା ଥିଲା ପ୍ରାକ୍-ଧନତାନ୍ତ୍ରିକ ।

ଲକ୍ଷ୍ୟକରିବା କଥା, ମୋଗଲ୍ ଯୁଗର ପ୍ରଥମ ଶହେବର୍ଷ ଭିତରେ ସାମନ୍ତ-ସମାଜ ଗର୍ଭରେ ସଂଚାରିତ ହୋଇଚି କେତେ ଅଭିନବ ଉପାଦାନ; ଯେପରି,

ସହରାଞ୍ଚଳରେ ପଣ୍ୟଉତ୍ପାଦନ ବଢ଼ିଯାଇଚି ବହୁଗୁଣ, ଏବଂ ବୃଦ୍ଧିହାର ଏପରି ବ୍ୟାପକ ହୋଇଚି ଯେ ଲାହୋର୍, ଅହମଦାବାଦ, ସୁରାଟ, ଆଗ୍ରା, କାଶି ପ୍ରଭୃତି ସ୍ଥାନ ବାଣିଜ୍ୟକେନ୍ଦ୍ର ଭାବରେ ଖ୍ୟାତି ଲାଭକରିଚି, ଏବଂ ସହରଗୁଡ଼ିକ ଭିତରେ କ୍ରମାଗତ ଆଦାନପ୍ରଦାନ ଚାଲିବା ଫଳରେ ଯଥାକାଳେ ସଂଗଠିତ ହୋଇଚି ଏକ ସର୍ବଭାରତୀୟ ବଜାର । ଏବଂ ବାଣିଜ୍ୟକେନ୍ଦ୍ରଗୁଡ଼ିକରେ ଆବିର୍ଭାବ ଘଟିଚି ଏକ ପ୍ରଭାବଶାଳୀ ବଣିକ ଶ୍ରେଣୀର । ଏ ଏକ ସଚେତନ ସଂଗଠିତ ଶ୍ରେଣୀ; କୃଷକ ଭଳି ବିକ୍ଷିପ୍ତ ଓ ଅସଂଗଠିତ ନୁହେଁ । ଏ ଶ୍ରେଣୀର ଧନୋପାର୍ଜନର ଉପାୟ ଅଭ୍ୟନ୍ତରୀଣ ଓ ରପ୍ତାନି ବାଣିଜ୍ୟ ସାଙ୍ଗକୁ ମହାଜନୀ, ଦାଦାନି (ଆଗତୁରା ଟଙ୍କାଦେଇ କାରିଗର / ଉତ୍ପାଦକର ଭବିଷ୍ୟତ୍-ଉତ୍ପାଦନ ଉପରେ ଅଧିକାର ସାବ୍ୟସ୍ତ) ଇତ୍ୟାଦି । ବିଦେଶରୁ ସେତେବେଳେ ଯେତେ ପର୍ଯ୍ୟଟକ ଆସିଚନ୍ତି, ଏ ଶ୍ରେଣୀର ସାମାଜିକ ପ୍ରତିପତ୍ତି ଓ ରାଷ୍ଟ୍ର ଉପରେ ପ୍ରଭାବ କାହାରି ନଜର ଏଡ଼ାଇ ପାରିନାହିଁ । ମ୍ୟାଣ୍ଡେଲ୍‌ସ୍ଲୋ ଲେଖିଚନ୍ତି, ରାଜଧାନୀ ଦିଲ୍ଲୀରେ କେବଳ ବିଦେଶୀ ବଣିକଙ୍କ ଲାଗି ତିଆରିହୋଇଥିଲା ଅନ୍ୟୁନ ୮୦ଟି ସରାଇଖାନା, ଏବଂ ସେଥିରୁ ବେଶ୍ କେତେଟା ତ୍ରିତଳବିଶିଷ୍ଟ । ଦିନଯାପନର ବ୍ୟବସ୍ଥା ରାଜସିକ, ଅସ୍ତାବଲ ପ୍ରଶସ୍ତ । ଆଗ୍ରାର ବିତ୍ତବାନ ବଣିକଙ୍କ ସମ୍ପର୍କରେ ମାନ୍‌ରିକ୍ ଲେଖିଚନ୍ତି, ସୌଦାଗର ବା ଯାତ୍ରୀ ନାଁରେ ଏମାନେ ଥିଲେ ପରିଚିତ । ସୋରିଷଗଦା ଭଳି ଟଙ୍କାପଇସା ଗଦା ମାନ୍‌ରିକ୍ ଦେଖିଥିଲେ ଏମାନଙ୍କ ଘରେ । ସମୁଦ୍ର ଉପକୂଳ, ଯେପରି ଗୋଆ କରମଣ୍ଡଳ ଗୁଜୁରାଟ ଥିଲା 'ବେନିଆ'ମାନଙ୍କ ବିଚରଣ ଭୂମି, ଏବଂ ବହିର୍ଭାରତକୁ ଯାତାୟତ ଥିଲା ମଧ୍ୟ କାହାରି କାହାରି । ଏ ଯାତ୍ରୀଙ୍କ ଘରେ ଗଚ୍ଛିତ ସମ୍ପଦର ପରିମାଣ ଏତେ ଯେ ଦଣ୍ଡିପାଲାରେ ଓଜନକରି ଚାଲୁଥିଲା ଲେଣଦେଣ । ତା'ହେଲେ, ଶକ୍ତିଶାଳୀ ବଣିକଶ୍ରେଣୀର ଅଭ୍ୟୁଦୟ ସତ୍ତ୍ୱେ ବାଣିଜ୍ୟପୁଞ୍ଜିରୁ ଶିଳ୍ପପୁଞ୍ଜିର ଉଦ୍‌ଭବ ଘଟିଲାନାହିଁ କାହିଁକି ? ଏକା ପ୍ରଶ୍ନ ଉଠିପାରେ ଓଡ଼ିଶା ସମ୍ବନ୍ଧରେ, ପ୍ରଦେଶର ଏମୁଣ୍ଡରୁ ସେମୁଣ୍ଡ ମାରୁଆଡ଼ି-କଚ୍ଛି-କୁମୁଟିଙ୍କ ବିସ୍ତାରିତ ବାଣିଜ୍ୟ ସତ୍ତ୍ୱେ ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍ ଦେଖାଦେଲାନାହିଁ କାହିଁକି ଅଦ୍ୟାବଧି ? କାହିଁକିନା, ଯୋଉ ସମାଜର ମୂଳଭିତ୍ତି ଗ୍ରାମ ଏବଂ ଯୋଉ ଗ୍ରାମର ଅର୍ଥନୀତିକ ସଂଗଠନ ସ୍ୱୟଂସମ୍ପୂର୍ଣ୍ଣ, ବାଣିଜ୍ୟରେ ଲଗାଯାଉଥିବା ମୂଳଧନ ସେଠି ଶିଳ୍ପପୁଞ୍ଜିରେ ରୂପାନ୍ତରିତ ହୋଇପାରେନା; ହୋଇପାରେନା ବୋଲି, ସମଗ୍ର ପ୍ରାଚ୍ୟ-ଜଗତର ଅନଗ୍ରସର ଉତ୍ପାଦନବ୍ୟବସ୍ଥାକୁ ମାର୍କ୍ସ ନାମିତକରିଚନ୍ତି 'ଏସିଆଟିକ୍ ମୋଡ୍ ଅଫ୍ ପ୍ରଡକ୍‌ସନ୍' । ବଣିକପୁଞ୍ଜିର ଶିଳ୍ପପୁଞ୍ଜିକୁ ଉତ୍ତରଣ ଏକ ସାମାଜିକ ପ୍ରକ୍ରିୟା, ଅଥଚ ଗ୍ରାମ୍ୟ ଜନସାଧାରଣଙ୍କ ଜୀବନଯାତ୍ରା ଏତେ ପ୍ରାଥମିକ ଯେ ଗ୍ରାସାଚ୍ଛାଦନର ଅନିବାର୍ଯ୍ୟ

ରସଦ ଛଡ଼ା ସୌଦାଗରୀ ପଣ୍ୟର ଆବଶ୍ୟକତା ଅନୁଭୂତ ହୋଇନାହିଁ ବିଶେଷ। ସେଥିପାଇଁ, କୃଷକଶ୍ରେଣୀ ପାଖରୁ ଅନୁକୂଳ ଚାହିଦା ଅଭାବରେ, ବଣିକଙ୍କ ବଜାର ହୋଇରହିଲା ସହରରେ ହିଁ ସୀମାବଦ୍ଧ, ସଂକୀର୍ଣ୍ଣ ଓ ବୈଚିତ୍ର୍ୟହୀନ । ତା'ଉପରକୁ ଥିଲା / ଅଛି ଜାତିଭେଦ । ଜାତିଭେଦରେ ବିଭାଜିତ ସମାଜରେ ପୁଞ୍ଜିର ବିକାଶ ସୁଗମ ହୁଏନା, କାହିଁକିନା, କାରିଗରଶ୍ରେଣୀ ପେସାଗତ ନୈପୁଣ୍ୟକୁ ନିଜ ଜାତିବଳୟ ବାହାରକୁ ଯିବାକୁ ଦେବେନାହିଁ; ଏପରିକି, ଗୀତବାଦ୍ୟରେ ପାରଦର୍ଶିତାକୁ ମଧ୍ୟ ଓସ୍ତାଦ୍‌ମାନେ ସଯତ୍ନ ଆବଦ୍ଧକରି ରଖିଚନ୍ତି ପରିବାର ଭିତରେ, ଯେପରି ବ୍ରାହ୍ମଣ ବିଦ୍ୟାଚର୍ଚ୍ଚାରୁ କରିଚନ୍ତି ଇତରଜାତିଙ୍କୁ ବଞ୍ଚିତ । ଏମାନେ କେହି କୃଷକ କାରିଗର ଶିକ୍ଷକ ବୈଦ୍ୟ, 'ଶ୍ରେଣୀ' ଭାବିନାହାଁନ୍ତି ନିଜକୁ, କାହିଁକିନା, ଜାତିପରିଚୟର ଚିହ୍ନାୟନରେ ସମାଜ ଥିଲା ଅଭ୍ୟସ୍ତ।

ଭାରତରେ ଶିଳ୍ପପୁଞ୍ଜି ଗଢ଼ି ନଉଠିବାର ଆଉଗୋଟିଏ କାରଣ, ବଣିକ ସମ୍ପ୍ରଦାୟ ସମ୍ପଦଶାଳୀ ହେଲେସୁଦ୍ଧା, ରାଷ୍ଟ୍ରସଂଗଠନରେ ସେମାନଙ୍କ ପ୍ରଭାବ ଥିଲା ନଗଣ୍ୟ । ଏପରିକି, ମୁଗଲସାମ୍ରାଜ୍ୟ ଭାଙ୍ଗିପଡୁଥିବା ସମୟରେ ରାଜନ୍ୟବର୍ଗ ବଣିକଗୋଷ୍ଠୀ ଉପରେ ନିର୍ଭର କରିବାକୁ ବାଧହେଲେ ସୁଦ୍ଧା (ଯେପରି, ସିରାଜ୍‌ଉଦ୍ଦୌଲା ଜଗତ୍‌ସେଠ୍ ଉପରେ) ରାଷ୍ଟ୍ରର ଗଢ଼ଣରେ ଚୂଡ଼ାନ୍ତ କର୍ତ୍ତୃତ୍ୱ ରହିଚି ସାମନ୍ତପ୍ରଭୁଙ୍କ କବଳରେ ଏବଂ ସାମନ୍ତପ୍ରଭୁ ସ୍ୱଦେଶର ବଣିକସ୍ୱାର୍ଥ ପ୍ରତି ଥିଲେ ସଦାସର୍ବଦା ପ୍ରତିକୂଳ । ଯେପରି, ଓଡ଼ିଶାର ରାଜାମାନେ ରାଜସ୍ୱର ଉଦ୍‌ବୃତ୍ତକୁ ବାଣିଜ୍ୟପୁଞ୍ଜିରେ ରୂପାନ୍ତରିତ ନକରି ଦେଉଳ ତୋଳିଚନ୍ତି ଜାଗାବର ଜାଗା; ଅଧିକ ଉତ୍ପାଦନ ସକାଶେ କୃଷକଙ୍କୁ ସହାୟତା ନକରି ବ୍ରାହ୍ମଣ / ସେବାୟତଙ୍କ ପାଇଁ ଖଞ୍ଜିଦେଇଚନ୍ତି ନିଷ୍କର ଭୂ-ସମ୍ପତ୍ତି । ବଣିକର ଧନବୃଦ୍ଧିକୁ ସାମନ୍ତଶ୍ରେଣୀ ସୁନଜରରେ ଦେଖିନାହିଁ; ଯେପରି, ଗଙ୍ଗା ଉପତ୍ୟକା ସୁଫଳା ହୋଇଉଠିବା ଉତାରୁ ବଣିକ ଆସି ଶରଣପଶିଚନ୍ତି ବୁଦ୍ଧଙ୍କର; ସ୍ଥାନରୁ ସ୍ଥାନାନ୍ତରକୁ ପଣ୍ୟ ଚାଲାଣ କରିବାକୁ ବଣିକକୁ ଦେବାକୁ ପଡ଼ିଚି ଅଭ୍ୟନ୍ତରୀଣ ଶୁଳ୍କ; ତା'ଉପରକୁ ରହିଚି ରାସ୍ତାଘାଟର ଅପ୍ରତୁଳତା, ନିରାପତ୍ତା ଅଭାବ, ରାଜକର୍ମଚାରୀଙ୍କ ବଳାତ୍କାର । ବଣିକ ସେଥିପାଇଁ ଏକ ସଂଗଠିତ ସ୍ୱାଧୀନ ଶ୍ରେଣୀ ଭାବରେ ନିଜକୁ ତିଆରି କରିପାରିନାହିଁ, ଯେପରି କରିପାରିଚି ଇଉରୋପ୍‌ରେ । ସାମନ୍ତତନ୍ତ୍ରର ଉତ୍‌ଥାନପତନ ସହିତ ବଣିକର ଭାଗ୍ୟ ରହିଚି ତେଣୁ ବିଜଡ଼ିତ । ଓଡ଼ିଶାକୁ ଲକ୍ଷ୍ୟକଲେ ଲକ୍ଷଣଟା ଆହୁରି ସ୍ପଷ୍ଟ ଦିଶିବ, କାହିଁକିନା, ସାମନ୍ତତନ୍ତ୍ର ଓଡ଼ିଶାରେ ଅଦ୍ୟାବଧି ରହିଚି ବହାଲ୍ ତବିୟତ୍ ।

ଶିଳ୍ପପୁଞ୍ଜି ଯୋଉଠି ଗଢ଼ିଉଠିଚି, ମୂଳରେ କାମକରିଚି ବିଜ୍ଞାନର ଆବିଷ୍କାର; ଯେପରି, ବାଷ୍ପଶକ୍ତି କିମ୍ବା ବିଦ୍ୟୁତ୍, ଏବଂ ତା' ଫଳରେ, ଉତ୍ପାଦନରେ ଯନ୍ତ୍ରପାତିର ପ୍ରୟୋଗ, ପ୍ରଯୁକ୍ତିର ପ୍ରସାର, କାରିଗରୀକୌଶଳକୁ ବିଜ୍ଞାନଲବ୍ଧ ଜ୍ଞାନର ସହାୟତା ।

ମୁଗଲଯୁଗରେ ଆବିଷ୍କାର-ଉଦ୍‌ଭାବନ ଉତ୍ସାହ ପାଇନାହିଁ । କାରିଗରଙ୍କ ବ୍ୟକ୍ତିଗତ ଦକ୍ଷତା ଥିଲା ସିନା ଉଚ୍ଚମାନର, ସର୍ଜନପ୍ରତିଭା ଥିଲା ବ୍ୟକ୍ତିବିଶେଷରେ ସୀମାବଦ୍ଧ । ଯନ୍ତ୍ରପାତି ଉଦ୍‌ଭାବନର ଚେଷ୍ଟାହୋଇନାହିଁ ବୋଲି, ସେ ଦକ୍ଷତା ଉତ୍ପାଦନର ସାଧାରଣ ଗୁଣରେ ପରିଣତହୋଇନାହିଁ, ପରିବାର ଭିତରେ ଗୋପ୍ୟ ରହିଚି କଡ଼ାପହରା ଭିତରେ । ଶିଳ୍ପବିପ୍ଳବର ପ୍ରାରମ୍ଭିକ ପର୍ଯ୍ୟାୟରେ, ଇଉରୋପ୍‌ରେ କିନ୍ତୁ ଧାତୁବିଦ୍ୟା, ଜ୍ୟୋତିର୍ବିଦ୍ୟା ପ୍ରଭୃତିର ବିକାଶଘଟିଚି, ଏବଂ ତା ଫଳରେ ପ୍ରଯୁକ୍ତିକ୍ଷେତ୍ରରେ ସଂଗଠିତ ହୋଇଚି ଯୋଉ ଗୁଣଗତ ପରିବର୍ତ୍ତନ, ଭାରତରେ ସେ ଚିହ୍ନ ବି ଫୁଟିନାହିଁ । ଫୁଟିନାହିଁ, କାହିଁକିନା, ମୁଗଲ ଦରବାରରେ ସଂଗୀତ ଚିତ୍ରକଳା ସ୍ଥାପତ୍ୟ ପ୍ରଭୃତିର ଚର୍ଚ୍ଚାହୋଇଥିଲେ ସୁଦ୍ଧା, ଯନ୍ତ୍ରପାତି କି ବିଜ୍ଞାନ-ପ୍ରଯୁକ୍ତି ବିଷୟରେ କେହି ପାଟିଫିଟାଇନାହିଁ । ଆଉଯୋଉ କଥାଟା ସ୍ମରଣରେ ରଖିବା ଦରକାର, ସାଂସ୍କୃତିକ ଏଇ ଅନଗ୍ରସରତା ହିଁ ଥିଲା ମୁଗଲରାଜତ୍ୱର ସର୍ବମୟ ସଂକଟରୁ ଅବିଚ୍ଛେଦ୍ୟ । ଆର୍ଥସାମାଜିକ, ରାଜନୀତିକ, ସାଂସ୍କୃତିକ, ସଙ୍କଟ ଯେତେ ଉତ୍କଟ ହେଉ, ମୂଳରେ କାମକରିଚି ସେକାଳର ଉତ୍ପାଦନବ୍ୟବସ୍ଥା, ଯୋଉ ଉତ୍ପାଦନବ୍ୟବସ୍ଥା ଥିଲା ଏସିଆଟିକ୍ ସଭ୍ୟତାର ମୂଳଦୁଆ । ପ୍ରାକ୍-ଧନତାନ୍ତ୍ରିକ ସେଇ ଉତ୍ପାଦନବ୍ୟବସ୍ଥାର ବୈଶିଷ୍ଟ୍ୟ ଧରାପଡ଼ିଛି ମାର୍କ୍ସଙ୍କ ଅବଲୋକନରେ; ଏସିଆବ୍ୟାପୀ ଅଚଳାୟତନ ମୂଳରେ ସ୍ୱୟଂସମ୍ପୂର୍ଣ୍ଣ ଗ୍ରାମସମାଜ, ସହର ଓ ମଫସଲ ଭିତରେ ଯୋଉଠି ଅନୈକ୍ୟ ଅପେକ୍ଷା ଐକ୍ୟ ଥିଲା ବରଂ ଅଧିକ । ଆଉ, ଏଇ ସମାଜ ଶୀର୍ଷରେ ଅବସ୍ଥାନକରିଚି ମୁଗଲ ସ୍ୱୈରତନ୍ତ୍ର । ପଶ୍ଚାଦ୍‌ପଦ ଏକ ଉତ୍ପାଦନବ୍ୟବସ୍ଥା ଶୋଷଣ ଓ ସ୍ୱୈରାଚାରର ସହାବସ୍ଥାନକୁ ବ୍ୟାପକ ପ୍ରରୋଚନା କେମିତି ଯୋଗାଇ ଦେଇପାରେ, ଭାରତବର୍ଷ ହିଁ ତା'ର ଚମତ୍କାର ଉଦାହରଣ ।

ଧନତନ୍ତ୍ରର ରଥାରୂଢ଼ହୋଇ ଇଉରୋପ ଯେତେବେଳେ ଆପଣା ଉତ୍ପାଦନବ୍ୟବସ୍ଥାକୁ ସାରା ଦୁନିଆକୁ ପ୍ରସାରିତ କରିଦେବାକୁ ତତ୍ପର, ଏସିଆ ଏବଂ ଭାରତ ସେତେବେଳେ ପ୍ରେତପୂଜାରେ ବ୍ୟତିବ୍ୟସ୍ତ । ଧନତନ୍ତ୍ର-ପୂର୍ବବର୍ତ୍ତୀ ସମାଜନୀତି(ଜାତିଭେଦ), ଅର୍ଥନୀତି(କୃଷି ଉପରେ ସର୍ବାଧିକ ନିର୍ଭରଶୀଳତା), ରାଜନୀତି (ସାମନ୍ତତାନ୍ତ୍ରିକ ଆଧିପତ୍ୟ) ପ୍ରଭୃତି ଅସାମର୍ଥ୍ୟ ଛଡ଼ା ଧର୍ମ କଥାକୁ ଯାଇନାହାନ୍ତି ମାର୍କ୍ସ । ବହୁବର୍ଷ ଉତାରୁ ଜାତୀୟତାବାଦୀ ବିପ୍ଳବୀ ଭଗତ୍ ସିଂ ନାସ୍ତିକତା ସପକ୍ଷରେ ଯୁକ୍ତି ବାଢ଼ିଚନ୍ତି । ଭଗବାନଙ୍କ ପ୍ରତି ଅଚଳ ଭକ୍ତି ସତ୍ତ୍ୱେ, ବୈଷୟିକ କାରଣରୁ କେବଳ ଏସିଆ ଭୂଖଣ୍ଡ ଇଉରୋପ ସହିତ ପ୍ରତିଯୋଗିତାରେ ହାରିଯାଇଚି ବାରମ୍ବାର, ଏବଂ ଏ ପରାଜୟର ଗ୍ଲାନି ପ୍ରଥମେ ଭାରତ ଓ ତହିଁଉତାରୁ ଚୀନ୍ ପାଇଚି ଅର୍ଥନୀତି କ୍ଷେତ୍ରରେ । ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଉରୋପୀୟ ବଣିକ ନବାବ-ବାଦଶା'ଙ୍କ

କାନମୋଡ଼ି ଆଦାୟକରିଚି ନିତ୍ୟ-ନୂତନ ସୁବିଧା-ସୁଯୋଗ ସାଙ୍ଗକୁ କର ବା ଶୁଳ୍କ ଭାରରୁ କ୍ରମାଗତ ରିହାତି । ସାମନ୍ତଶ୍ରେଣୀ ଏଠି କ୍ରମେକ୍ରମେ ରାଷ୍ଟ୍ରର ସାର୍ବଭୌମ ଅଧିକାର ଛାଡ଼ିଦେବାକୁ ବାଧହୋଇଚି । ଏ 'ଅଧୀନତା' ସେଇଠି ସରିଯାଇନାହିଁ; ଉତ୍ତରୋତ୍ତର ଏପରି ବୃଦ୍ଧିପାଇଚି ଯେ, ଚକ୍ଷୁଷ୍ମାନ୍‌ଙ୍କୁ ଅଗୋଚର ରହିନାହିଁ, ଭାରତୀୟ ସାମନ୍ତରାଷ୍ଟ୍ରର ପତନ ଘଟିବ ଅଚିରାତ୍ । ଅର୍ଥାତ୍, ପଲାସୀର ରଣକ୍ଷେତ୍ରରେ ଇଂରେଜ୍ ବଣିକ କ୍ଲାଇଭ୍‌ଙ୍କ ବିଜୟର ବହୁପୂର୍ବରୁ ଭାରତୀୟ ସାମନ୍ତରାଷ୍ଟ୍ରର ପତନ ହୋଇଯାଇଚି ଅବଶ୍ୟମ୍ଭାବୀ । ଅନ୍ୟ ଶବ୍ଦରେ, ଧନତାନ୍ତ୍ରିକ ଉତ୍ପାଦନବ୍ୟବସ୍ଥା ହାତରେ ମାଡ଼ଖାଇଯାଇଚି ପ୍ରାକ୍-ଧନତାନ୍ତ୍ରିକ ଉତ୍ପାଦନବ୍ୟବସ୍ଥା, ଏବଂ ସେଇ ପରାଜୟ ଭିତରେ ପ୍ରଚ୍ଛନ୍ନ ରହିଚି ଇଂରେଜ୍‌ର ଆସନ୍ନ ଭାରତ-ଅଧିକାର ।

## ।। ଦୁଇ ।।

ତା'ହେଲେ, ଇଂରେଜ୍‌ଙ୍କ ସଂସ୍ପର୍ଶରେ କଣ ଶିଳ୍ପପୁଞ୍ଜିର ଘଟିଚି ବିକାଶ ? ବ୍ରିଟେନ୍ ତ ସେକାଳରେ ସର୍ବାପେକ୍ଷା ଉନ୍ନତ ଶିଳ୍ପପ୍ରଧାନ ଦେଶ, ମାତ୍ର ନିଜ ଶିଳ୍ପୋନ୍ନତି ସକାଶେ ଭାରତକୁ କରିଚି ନିଶୁଣି । ମୁଗଲ-ଭାରତ, ଇଉରୋପ୍ ତୁଳନାରେ ପଶ୍ଚାଦ୍‌ପଦ ହେଲେ ବି, ଥିଲା ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର । ଇଂରେଜ୍-ବଣିକ (ଇଷ୍ଟ୍‌ଇଣ୍ଡିଆ କମ୍ପାନୀ) ରାଜୁତିକରିବା ଫଳରେ ବୈଷୟିକ ବିକାଶର ନିଜସ୍ୱ ସେଇ ଧାରାଟି ମାଡ଼ଖାଇଚି; ଅଥଚ ଶିଳ୍ପତନ୍ତ୍ରର ଉନ୍ନତ ଧାରାଟି ରହିଚି ଆମ ଧରାଛୁଆଁ ବାହାରେ । ଏକ୍ଷଣି, ଏତେବଡ଼ ଏଇ ଉପମହାଦେଶର ଏକମାତ୍ର ପରିଚୟ, ଇଂରେଜ୍‌ର ଉପନିବେଶ । ସାଂଘାତିକ ଏଇ ଘଟଣାକୁ କେମ୍ବ୍ରିଜ୍ ଐତିହାସିକଗୋଷ୍ଠୀ କହୁଚନ୍ତି, ପ୍ରକୃତ ଲକ୍ଷ୍ୟ ନଥିଲା ଭାରତକୁ ଶୋଷଣ । ଇଂରେଜ୍ ଚେଷ୍ଟାକରିଚି ଯଥାସାଧ୍ୟ, କିନ୍ତୁ ଇଂରେଜ୍ ଆସିବା ଆଗରୁ ଭାରତ ଥିଲା ଅନଗ୍ରସର, ସେମାନେ ଚାଲିଯିବା ଉତାରୁ ମଧ୍ୟ ରହିଚି ଆପେକ୍ଷିକଭାବେ ପଶ୍ଚାଦ୍‌ପଦ । ତେଣୁ ଔପନିବେଶିକ ଶୋଷଣ ନୁହେଁ, ଅନଗ୍ରସରତାର ମୂଳ କାରଣ ନିହିତ ରହିଚି ଭାରତର ନାଡ଼ିରେ । ଅଛି ବୋଲି, ଇଂରେଜ୍ ଚେଷ୍ଟାକରିବା ସତ୍ତ୍ୱେ ଫଳିନାହିଁ ସୁଫଳ । ସାଧାରଣଲୋକର ଜୀବନମାନ ଏଠି ଏତେ ତଳେ, ମୁଣ୍ଡପିଛା ରୋଜଗାର ଏତେ ଅଳ୍ପ, ମୂଲ୍ୟବୋଧ ଏତେ ଆଦିମ ଯେ, ଭାରତୀୟଙ୍କୁ ନେଇ ଆଧୁନିକ ଶିଳ୍ପସଭ୍ୟତା ତିଆରିକରିବା ସମ୍ଭବପର ହୋଇନାହିଁ ।

ତେବେ, ଔପନିବେଶିକ ରାଜତ୍ୱର ଅସଲ ଚରିତ୍ରଟି ଅନୁଧାବନକରିଚନ୍ତି ପ୍ରଥମେ କାର୍ଲମାର୍କ୍ସ । ଇଉରୋପ୍‌ର ଉଦୀୟମାନ ରନ୍ଧନଶାଳାରେ ସେତେବେଳେ ଯା ଘଟିଚାଲିଚି,

ତା'ସହିତ ଥିଲା ମାର୍କ୍ସଙ୍କ ଘନିଷ୍ଠ ପରିଚୟ, ଏବଂ ସେଥିପାଇଁ, ବୁଝିପାରିଚନ୍ତି ଯେ ଧନତନ୍ତ୍ର ଯୋଉ ରୀତିରେ ଆତ୍ମପ୍ରକାଶକରୁଚି, ସେ ରୀତିରେ ତାର ରୂପ ହେବ ଅଚିରେ ଏକ ବିଶ୍ୱବ୍ୟବସ୍ଥା, ସ୍ଥାନୀୟ କୋଉ ଉପସର୍ଗ ନୁହେଁ, କାହିଁକିନା, ତାକୁ ଦରକାର ନିତ୍ୟ-ପ୍ରସାରମାନ ବଜାର; ଏବଂ ସେ ବଜାର ବିଶ୍ୱମୟ ବ୍ୟାପିଯିବା ପର୍ଯ୍ୟନ୍ତ ଦୁନିଆଯାକ ରାଷ୍ଟ୍ରଙ୍କୁ ଆବଶ୍ୟକ ଅନୁଯାୟୀ ବ୍ୟବହାରକରିବାକୁ ଧନତନ୍ତ୍ର ବଦ୍ଧପରିକର । ସେଇ ଉଦ୍ଦେଶ୍ୟରେ ବ୍ରିଟେନ୍ ସଂକଳ୍ପ ଗ୍ରହଣକରିଚି ଭାରତକୁ ଉପନିବେଶର ଏକ କ୍ଲାସିକ୍ ମଡେଲ୍ ରୂପରେ ନିର୍ମାଣକରିବାକୁ । ଅର୍ଥାତ୍, ବିଜେତା ଧନତନ୍ତ୍ରୀ ପ୍ରଭୁ ସ୍ଥିରକରିଦେବ ଶ୍ରମବିଭାଜନର ଧରଣ । ବ୍ରିଟେନ୍‌ରେ ଗଢ଼ିଉଠିବ ସହର, ଆଉ ସେଇ ନିର୍ମାଣର ଯାବତୀୟ ବ୍ୟୟଭାର ବହନକରିବ ଉପନିବେଶ; ଯୋଗାଇ ଦେବ କଞ୍ଚାମାଲ ଆଉ କିଣିବ କଳତିଆରି ପଣ୍ୟଦ୍ରବ୍ୟ । ଶ୍ରମବିଭାଜନର ଏଇ ଆଦର୍ଶକୁ ମାର୍କ୍ସ ନାଁଦେଇଚନ୍ତି ଉପନିବେଶବାଦ; ଅଧସ୍ତନ ଦେଶକୁ ଦୋହନ /ଦମନ / ଶୋଷଣ କରି ପ୍ରଭୁରାଜ୍ୟ ହେବ ସମ୍ପଦଶାଳୀ । ଅର୍ଥାତ୍, ଇଂରେଜ ଶାସନର ଅସଲ ଭୂମିକା ଥିଲା ଏଠି ଧ୍ୱଂସାତ୍ମକ, ଯଦିଓ ପାଟିଗଣିତ ପରି ଏ ଅଙ୍କ ସହଜ ନୁହେଁ । କାହିଁକିନା, ଇଂରେଜ୍ ଦେଖିଚି ଭାରତରେ ଅଛି ଅସରନ୍ତି ଜନସମ୍ପଦ; ମାତ୍ର ଖାଲି କୁଲିମୂଲିଆଙ୍କୁ କାମରେ ଲଗାଇ ଆଧୁନିକତାର ବିଶ୍ୱଯଜ୍ଞ ସମାଧା କରାଯାଏନା । ଦରକାର ହୁଏ ଆଧୁନିକ ବିଜ୍ଞାନପୁଷ୍ଟ କଳକାରଖାନା, କୋଇଲାଖଣି, ରେଳପଥ, ଟେଲିଗ୍ରାଫ୍, ରାସ୍ତାଘାଟ, ଦ୍ରୁତତର ପରିବହନ, ବନ୍ଦର, ଆଧୁନିକ କାୟଦାରେ ସୁସଜ୍ଜିତ ପୁଲିସ୍ ଓ ସୈନ୍ୟବାହିନୀ, ନୂତନ ଶିକ୍ଷାରେ ଶିକ୍ଷିତ ଡାକ୍ତର୍ ଇଞ୍ଜିନିୟର୍ ଓକିଲ ଶିକ୍ଷକ ବୁଦ୍ଧିଜୀବୀ । ଔପନିବେଶିକ ବନ୍ଦୋବସ୍ତକୁ ଫଳପ୍ରସୂ କରିବାକୁ ହେଲେ ଏଭଳି ଏକ ଦକ୍ଷ ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ ଅପରିହାର୍ଯ୍ୟ । ଶିଳ୍ପତାନ୍ତ୍ରିକ ବ୍ୟବସ୍ଥା ଚଳୁକରାହେଲା, ମାତ୍ର ସହାୟକ ଭୂମିକାରେ ସେ ବ୍ୟବସ୍ଥା ରହିଲା ବ୍ରିଟିଶ୍ ଶିଳ୍ପସଭ୍ୟତାର ଦାସାନୁଦାସ । ମାର୍କ୍ସଙ୍କ ବିବେଚନାରେ, ଔପନିବେଶିକତାର ବିଶିଷ୍ଟ ଲକ୍ଷଣ ।

ଏ ବ୍ୟବସ୍ଥା ମାଧ୍ୟମରେ ଭାରତବାସୀ ପରିଚିତହୋଇଚନ୍ତି ଶିଳ୍ପସଭ୍ୟତାର ଉପକରଣ ସହିତ; ଅର୍ଥାତ୍, ବୁଝିପାରିଚନ୍ତି, ସଭ୍ୟତାର ଏଇ ଉପକରଣ ସାହାଯ୍ୟରେ, ଜମି ଜଳ ଖଣି ଋକ୍ଷବାସ ବ୍ୟବସାୟ ବାଣିଜ୍ୟ ଶିଳ୍ପସଂଗଠନ–ସବୁଠି ସମ୍ଭବପର ଆମୂଳ ପରିବର୍ତ୍ତନ, ସବୁଠି ସମ୍ଭବପର ଯତ୍‌ପରୋନାସ୍ତି ଧନୋତ୍ପାଦନ । ମାତ୍ର ଉପକରଣଗୁଡ଼ିକ ଉପରେ ଅଧିକାର(ବ୍ୟବହାରକରିବା ସୁଯୋଗସୁବିଧା)କୁ ରଖିଦିଆଗଲା ତାଙ୍କ ଧରାଛୁଆଁ ବାହାରେ । ସତୃଷ୍ଣନୟନ ସମ୍ମୁଖରେ ବିକଟନର ଦ୍ୱାରଗୁଡ଼ିକୁ ଗୋଟିକ ପରେ ଗୋଟିଏ କିଳିଦିଆଗଲା ।

ଶିଳ୍ପସଭ୍ୟତାର ଉପକରଣରୁ ଭାରତକୁ ବଞ୍ଚିତକରିବା ମୂଳରେ କାମକରିଥିଲା

ସଂକୀର୍ଣ୍ଣ ସ୍ୱାର୍ଥବୁଦ୍ଧି; ହେଲେସୁଦ୍ଧା, ପରିଣାମରେ ଅନ୍ୟ ରକମ ସୁଫଳ ପାଇଚି ଭାରତ, ଯା ସୁଦୂରପ୍ରସାରୀ । ଇଂରେଜ୍‌ର ଉଦ୍ଦେଶ୍ୟ ଯା ହୋଇଥାଉ, ଶିଳ୍ପସଭ୍ୟତାର ଉପକରଣଗୁଡ଼ିକ ସହିତ ଘଟିଯାଇଚି ଭାରତବାସୀଙ୍କର ପ୍ରତ୍ୟକ୍ଷ ପରିଚୟ, ମାର୍କ୍ସଙ୍କ ପରିଭାଷାରେ ବ୍ରିଟିଶ୍‌ଶାସନର ତା 'ଜୀବନଦାୟୀ ଅନୁପ୍ରେରଣା' । ତେବେ, ଏକଥା ମଧ୍ୟ କହିଚନ୍ତି ଯେ, ଭାରତବାସୀ ଯଦି ସଦ୍‌ବ୍ୟବହାର କରିବାକୁ ମନକରିବେ ଉପକରଣଗୁଡ଼ିକୁ, ଦରକାର ପଡ଼ିବ ଉପକରଣ ଉପରେ ପ୍ରୟୋଗକାରୀର ସ୍ୱତ୍ୱ । 'ଇଂରେଜ୍‌ର ଜୁଆଳିକୁ କାନ୍ଧରୁ ଫୋପାଡ଼ିଦେବାକୁ ସମର୍ଥ ନହେବେ ଯେପର୍ଯ୍ୟନ୍ତ, ବ୍ରିଟିଶ୍ ବୁଣିଦେଇଚି ବୁର୍ଜୋୟା କର୍ତ୍ତୃତ୍ୱର ଯୋଉ ଅଭିନବ ସମାଜ-ଉପାଦାନ, ତଦ୍‌ଲଭ୍ୟ ସୁଫଳ ଭୋଗକରି ପାରିବେନାହିଁ ।' କିନ୍ତୁ ବ୍ରିଟିଶ୍‌ରାଜତ୍ୱର ପରମାୟୁ ଭାରତରେ ପ୍ରାୟ ଦୁଇଶ' ବର୍ଷ, ଔପନିବେଶିକ ଆଧିପତ୍ୟ ମଞ୍ଜିରୁ ମହୀରୁହ ହେବାକୁ ଯଥେଷ୍ଟ । ସମୟ କ୍ରମପର୍ଯ୍ୟାୟ ଭିତରଦେଇ ତେଣୁ ଗତିକରିବାକୁ ପଡ଼ିଚି, ଯେପରି, ପ୍ରଥମ ପର୍ଯ୍ୟାୟ ବଙ୍ଗ-ବିହାର-ଓଡ଼ିଶା ଲୁଣ୍ଠନ । ଏ ଲୁଣ୍ଠନକୁ କୁହାଯାଇପାରେ ପ୍ରିମିଟିଭ୍ ଆକିଉମ୍ୟୁଲେସନ୍ ବା ପୁଞ୍ଜିସଂଚୟର ଆଦିପର୍ବ । ଧନନିଷ୍କାସନର ସେ ପ୍ରକ୍ରିୟାକୁ କୁହାଯାଏ ଡ୍ରେନ୍ ଅଫ୍ ୱେଲ୍‌ଥ୍ । ଡ୍ରେନ୍ ଥିୟରିକୁ ରାଶିତତ୍ତ୍ୱ ସାହାଯ୍ୟରେ ପ୍ରତିଷ୍ଠାକରିଚନ୍ତି ଦାଦାଭାଇ ନାରୋଜୀ ଓ ରମେଶଚନ୍ଦ୍ର ଦତ୍ତ । ରାଜନୀତିକ କର୍ତ୍ତୃତ୍ୱ ଦୃଢ଼ କରିସାରି ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବୈଦେଶିକ ଓ ଅଭ୍ୟନ୍ତରୀଣ ବାଣିଜ୍ୟ ଉପରେ କାୟେମ୍‌କରିଚି ଏକଚାଟିଆ ପ୍ରଭୁତ୍ୱ, କାହିଁକିନା, ଅଫିମ ଲୁଣ ଓ ପାନ ଭଳି ନିତ୍ୟବ୍ୟବହାର୍ଯ୍ୟ ପଣ୍ୟର ବ୍ୟବସାୟ ଥିଲା ଅଫୁରନ୍ତ ମୁନାଫାର ଉତ୍ସ । ଇଂରେଜ୍ କର୍ମଚାରୀ(ଅର୍ଥାତ୍ କ୍ରେତା) ନିଜେ ଠିକ୍‌କରିଦିଏ କି ଦରରେ ଜିନିଷ କିଣାହେବ, ତହିଁଉତାରୁ ଚାଲେ ହତଭାଗ୍ୟ ଉତ୍ପାଦକ ଉପରେ ଜୁଲୁମ୍ । ବ୍ୟକ୍ତିଗତ ଏ ବାଣିଜ୍ୟରେ ପୁଣି ଅଂଶନିଅନ୍ତି ସ୍ୱୟଂ ବଡ଼ଲାଟ୍ । ଫକୀରମୋହନ ତ ବାଲେଶ୍ୱରରେ ପଙ୍ଗାଲୁଣ କାରବାର ବିଷୟରେ ସ୍ପଷ୍ଟ ଲେଖିଚନ୍ତି, କାରବାର ଶୀର୍ଷରେ ଥିଲେ ଜିଲ୍ଲାମ୍ୟାଜିଷ୍ଟ୍ରେଟ୍ । କିନ୍ତୁ ମାର୍କ୍ସ କହୁଚନ୍ତି, ବଡ଼ଲାଟ୍‌ଙ୍କ ପ୍ରୀତିଭାଜନ ଲୋକ ଏପରି ସର୍ତ୍ତରେ ଠିକାପାଇଚନ୍ତି ଯେ ଶୂନ୍ୟରୁ ସୁନାଫଳାଇବା ଆଲ୍‌କେମିଷ୍ଟ୍ ପକ୍ଷରେ ଅସାଧ୍ୟ ହେଲେସୁଦ୍ଧା ଠିକାଦାର ସକାଶେ ହୋଇନାହିଁ, ଏବଂ ଏଇ ପ୍ରକ୍ରିୟାରେ, ଅନତି ବିଳମ୍ବେ ଛତୁଫୁଟିବା ଭଳି ଜାଗାବର ଜାଗା ଗଜେଇଉଠିଚି ମୋଟା ମୋଟା ସଂପଦ । ଗୋଟିଏ ହେଲେ ସିଲିଙ୍ଗ୍ ବ୍ୟୟ ନକରି ଅବାଧରେ ଚାଲିଚି ପ୍ରିମିଟିଭ୍ ଆକିଉମ୍ୟୁଲେସନ୍, ଏବେ କରୁଚନ୍ତି ଯେମିତି ପଲିଟିସିଆନ୍ । ବ୍ରୁକ୍ ଆଡାମ୍‌ସ୍ ପୁଣି ଲେଖିଚନ୍ତି, ପଲାସୀଯୁଦ୍ଧ ସରିଯିବା ସଙ୍ଗେସଙ୍ଗେ ଭାରତରୁ ଛଡ଼ାଇଆଣିଥିବା ରତ୍ନଭଣ୍ଡାର ପୁଞ୍ଜି-ସଂଗ୍ରହକୁ ଏପରି

ବଢ଼ାଇଦେଇଥିଲା ଯେ ବିଲାତରେ ଶିଳ୍ପବିପ୍ଳବ ଗଢ଼ିତୋଳିବା ସକାଶେ ଭାରତୀୟ ଧନ ଗ୍ରହଣକରିଥିଲା ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା, (ଦ୍ର.ରଜନୀ ପାଲ୍‌ମା ଦତ୍ତ: *ଇଣ୍ଡିଆ ଟୁଡେ*, ପୃ.୯୫-୯୬) । ଏବଂ ଶିଳ୍ପବିପ୍ଳବ ଘଟିଯିବା ଉତାରୁ, କଳକାରଖାନା ଯୋଉ ବିପୁଳପରିମାଣ ପଣ୍ୟ ଉତ୍ପନ୍ନକଲେ, ତାକୁ ବିକିବାକୁ ଦରକାର ହେଲା ଦୁନିଆଯାକ ବଜାର । ୧୮୧୩ରୁ ସେଥିପାଇଁ ବ୍ରିଟିଶ୍‌ରାଜତ୍ୱର ଚରିତ୍ର ବଦଳିଯିବାକୁ ଲାଗିଲା, କାହିଁକିନା, ଇଷ୍ଟ୍‌ଇଣ୍ଡିଆ କମ୍ପାନୀର ଏକଚ୍ଛଟିଆ ବାଣିଜ୍ୟ-ଅଧିକାର ସେବର୍ଷ ଶେଷହୋଇଯାଇଚି; ତା ଜାଗାରେ ଅନୁପ୍ରବେଶ ଘଟିଚି ଶିଳ୍ପପୁଞ୍ଜିର । ମର୍‌ଚ୍ୟାଣ୍ଟ୍ କ୍ୟାପିଟାଲ୍‌କୁ ହଟାଇଦେଇଚି ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍ । ଅର୍ଥାତ୍, ଶୋଷଣ ଧାରଣକରିଚି ନୂଆ ଏକ ପର୍ଯ୍ୟାୟ । ଦୁଇ ପର୍ଯ୍ୟାୟ ଭିତରେ ତେବେ ପାର୍ଥକ୍ୟ କ'ଣ ? ବଣିକପୁଞ୍ଜି ଯେତେବେଳେ ଦରିଆପାରିରେ ଏକାଧିକାର ଖୋଜିଚି, ବ୍ରିଟେନ୍‌ରେ ସେତେବେଳେ ଶିଳ୍ପପୁଞ୍ଜିର ଘଟିନାହିଁ ବିକାଶ; ଘଟିନାହିଁ ବୋଲି, ଭାରତରେ ଉତ୍ପନ୍ନ କାର୍ପାସ୍ / ରେଶମବସ୍ତ୍ର ଓ ମସଲାପାତି ବିଦେଶକୁ କରାଯାଇଚି ଚାଲାଣ; ଜାହାଜରେ ଲଦି ନେଇଯାଇପାରିଲେ ବେଜାଏ ଲାଭ, ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଆଉ କିଛି କରିନାହିଁ । ଆଡାମ୍ ସ୍ମିଥ୍ ତାକୁ ହିଁ କହିଚନ୍ତି 'ପୁରାତନ ଔପନିବେଶିକ ବ୍ୟବସ୍ଥା' । ଶିଳ୍ପବିପ୍ଳବ ଘଟିଯିବା ସଙ୍ଗେସଙ୍ଗେ ପୁଞ୍ଜିପତିଙ୍କ ପ୍ରଭାବ ସରକାର ଉପରେ କ୍ରମଶଃ ବଢ଼ିଚି, ଏବଂ ୧୮୫୭ର ସିପାହୀବିଦ୍ରୋହ ଉତାରୁ ବ୍ରିଟିଶ୍ ପାର୍ଲାମେଣ୍ଟ୍ ଭାରତ ଶାସନର ସର୍ବମୟ କର୍ତ୍ତୃତ୍ୱ ନେଇଯାଇଚି ହାତକୁ; ଅର୍ଥାତ୍, ବଣିକପୁଞ୍ଜିର ମିଆଦ ପୁରିଯାଇ ଆରମ୍ଭହୋଇଚି ଶିଳ୍ପପୁଞ୍ଜିର କର୍ତ୍ତୃତ୍ୱ । ଏ ବ୍ୟବସ୍ଥାରେ ବିଲାତରେ ତିଆରି ଜିନିଷର ସୁରକ୍ଷିତ ବଜାର ଭାବରେ ଆଗଭଳି ରହିଚି ଭାରତ, ମାତ୍ର ବିଲାତର କଳକାରଖାନାକୁ କଞ୍ଚାମାଲ୍ ଯୋଗାଇବା ସକାଶେ ତାକୁ ବ୍ୟବହାର କରାଯାଇଚି ଏଥର । କଞ୍ଚାମାଲ୍‌ର ଉତ୍ସ ଓ ଉତ୍ପାଦିତ ପଣ୍ୟର ବଜାର, ଉଭୟ ସୂତ୍ରରେ, ଭାରତକୁ ଏକାଠିକରିଚି ଶିଳ୍ପପୁଞ୍ଜି । ଡାଲ୍‌ହୌସୀଙ୍କ 'ରେଲ୍‌ଓ୍ୱେ ମିନିଟ୍'(୧୮୫୩) ଓ ଉଡ୍‌ଙ୍କ ଶିକ୍ଷାବିଷୟକ 'ଡେସ୍‌ପ୍ୟାଚ୍'(୧୮୫୪)ରେ ସ୍ପଷ୍ଟ ବିବୃତହୋଇଚି ଏ ଉଦ୍ଦେଶ୍ୟ ।

ପ୍ରାୟ କୋଡ଼ିଏବର୍ଷ ଆଗରୁ, କଞ୍ଚାମାଲ୍‌ର ଉତ୍ସଭାବରେ ଭାରତକୁ ନିର୍ମାଣ କରିବାକୁ ଉଦ୍ୟମ ଆରମ୍ଭହୋଇଚି, ୧୮୩୩ରୁ ଚା, କଫି, ରବର୍ ଚାଷପାଇଁ ବଣିକଙ୍କୁ ପଟା ଦିଆଯାଇଚି ବିସ୍ତର ଜମିଜମାର, ଏବଂ ସେଇଦିନଠୁଁ ତୁଳା ଝୋଟ ପଶମ ଓ ଖାଦ୍ୟଶସ୍ୟର ରପ୍ତାନି ବଢ଼ିବାକୁ ଲାଗିଚି । ବିଲାତର ଲୁଗାକଳ ମାଲିକ ବି ଭାରତୀୟ କୃଷକଙ୍କୁ ଏଗୁଡ଼ାକ ଫଳାଇବାକୁ ଉତ୍ସାହ ଦିଅନ୍ତି । ବଣିକପୁଞ୍ଜିରୁ ଶିଳ୍ପପୁଞ୍ଜିକୁ ଏ ଉତ୍ତରଣର ମୂଲ୍ୟ ଚୁକାଇବାକୁ ପଡ଼ିଚି ଭାରତୀୟ ତନ୍ତୁବାୟଙ୍କୁ । କରମଣ୍ଡଳ ଉପକୂଳରୁ

ବଙ୍ଗରାଜ୍ୟର ଅନ୍ତରୀପ ପର୍ଯ୍ୟନ୍ତ ବିସ୍ତୃତଥିଲା ବୟନଶିଳ୍ପ, ଏବଂ ସେଥିରେ ନିଯୁକ୍ତଥିଲେ ଅସୁମାରୀ ସ୍ତ୍ରୀ-ପୁରୁଷ-ବାଳକ-ବାଳିକା । କିନ୍ତୁ ୧୭୦୦ ଓ ୧୭୨୦ ଖ୍ରୀଷ୍ଟାବ୍ଦରେ ଆଇନ୍ ପାସ୍‌କରି ବ୍ରିଟିଶ୍ ପାର୍ଲାମେଣ୍ଟ୍ ଭାରତରୁ ବସ୍ତ୍ରଆମଦାନିକୁ କରିଦିଏ ନିଷିଦ୍ଧ । ସେଇ ସୁଯୋଗରେ ବ୍ରିଟିଶ୍ ପୁଞ୍ଜିପତି, ବିନା ଶୁଳ୍କରେ ନିଜ କାରଖାନାରେ ପ୍ରସ୍ତୁତ ଲୁଗାପଟାକୁ ଭାରତରେ ବିକିବାକୁ ଅଧିକାର ଆଦାୟ କରିନିଏ; ଯା ଫଳରେ, ବିଲାତି କପଡ଼ା ପ୍ଳାବିତକରିଚି ଭାରତକୁ ଏମୁଣ୍ଡରୁ ସେମୁଣ୍ଡ । ଏବଂ ସୁପରିକଳ୍ପିତ ଏଇ ଆକ୍ରମଣ ବିଧ୍ୱସ୍ତ କରିଦେଇଚି ଆମ ବୟନଶିଳ୍ପକୁ । ଅର୍ଥାତ୍, ବିପୁଳ ସଂଖ୍ୟକ ଗ୍ରାମୀଣ କାରିଗର ନିଃସ୍ୱ ଓ କର୍ମହୀନ ହେବାକୁ ବାଧହୋଇଚନ୍ତି କ୍ରମାଗତ । କ୍ଷେତଖମାରରେ କାମ କରିବେନାହିଁ, କାହିଁକିନା, ଲଙ୍ଗଳଧରିବା ତନ୍ତୀ ପକ୍ଷରେ ଅପମାନ । ସହରକୁ ଆସି କୁଲିକାମ କରିବାକୁ କିନ୍ତୁ ଆପତ୍ତିନାହିଁ । ଏ ଭାବରେ ଲୋକସଂଖ୍ୟାର ଏକଷଷ୍ଠାଂଶ ଭିଟାମାଟିରୁ ହୋଇଯାଇଚନ୍ତି ଉଚ୍ଛନ୍ନ ।

ବଣିକପୁଞ୍ଜିର ଶିଳ୍ପପୁଞ୍ଜିକୁ ରୂପାନ୍ତର ଓ ତଜ୍ଜନିତ ଆନ୍ତର୍ଜାତିକ ଶ୍ରମବିଭାଜନ ପୃଥିବୀ ଇତିହାସର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟ । ଭାରତ ପାଇଁ ପରିଣାମ ମର୍ମନ୍ତୁଦ ହେଲେ ବି ଏଇ ପ୍ରଥମ ତା ଇତିହାସ ଯୁକ୍ତହେଲା ଆଧୁନିକ ପୃଥିବୀର ପ୍ରବହମାନ ଇତିହାସ ସହିତ; ଏବଂ ତା ଫଳରେ, ସମାଜକୁ ଗଠିତକଲା, ଆମୂଳଚୂଳ ରାଜନୀତି । ସେ ଉପସର୍ଗକୁ ଲକ୍ଷ୍ୟକରି ମାର୍କ୍ସ ଲେଖିଚନ୍ତି, 'Constant revolutionising of production, uninterrupted disturbance of all social relations, everlasting uncertainty and agitation distinguish the bourgeois epoch from all earlier times. All fixed, fastfrozen relationships, with their train of venerable ideas and opinions, are swept away, all new-formed ones become obsolete before they can ossify. All that is solid melts into air, all that is holy is profaned and men at last are forced to face with sober senses the real conditions of their lives and their relations with their fellow men'. କିନ୍ତୁ ସତକୁ ସତ ବାସଚ୍ୟୁତ ତନ୍ତୁବାୟ ନିଜ ଦୁର୍ଦ୍ଦଶା ସହିତ ଅପରାପର ବଞ୍ଚିତବର୍ଗଙ୍କ କଷଣକୁ ଯୋଡ଼ି ବିପର୍ଯ୍ୟୟର ସ୍ୱରୂପକୁ ଚିହ୍ନିବାକୁ ଚେଷ୍ଟାକରିଥିଲେ କି ? କାହିଁକିନା, ଖାଲି କାରିଗର ନୁହଁ, ବଣିଆ-ବେପାରୀ ବି କ୍ଷତିଗ୍ରସ୍ତ ହୋଇଚନ୍ତି ଅପର୍ଯ୍ୟାପ୍ତ, ବୁଲାବିକାଳୀ ପାଖରୁ ହାଟୁଆବାଟୁଆ ପର୍ଯ୍ୟନ୍ତ ନିସ୍ତାର ପାଇନାହିଁ କେହି। ଚେଷ୍ଟା କରିନାହାଁନ୍ତି, ଯେହେତୁ କୌମଚେତନା ଥିଲା ଜାତିଭେଦ ଦ୍ୱାରା ଗଠିତ ଓ ଚାଳିତ । ବଣିକ ଅବଶ୍ୟ ଗୁହାରିକରିଚନ୍ତି; ୧୮୩୧ରେ ଆବେଦନପତ୍ରରେ ସ୍ୱାକ୍ଷରକରିଚନ୍ତି ଗଣ୍ୟମାନ୍ୟ ୧୧୭

ଜଣ ଲୁଗାବ୍ୟବସାୟୀ । ଆବେଦନର ମର୍ମ ହେଲା: 'ଆମେ ମଧ୍ଯ ବ୍ରିଟିଶ୍‌ସାମ୍ରାଜ୍ୟର ପ୍ରଜା, ମେସିନ୍‌ତିଆରି ତୁଳାଜାତ ଦ୍ରବ୍ୟ ବିନା ଶୁଳ୍କରେ ବ୍ରିଟେନ୍‌ରୁ ଆମଦାନି କରାଯାଉଚି, ଆମ ତୁଳା ଓ ରେଶମଜାତ ଦ୍ରବ୍ୟକୁ ବିନା ଶୁଳ୍କରେ ବିଲାତରେ ପ୍ରବେଶକରିବାକୁ ଅନୁମତି ଦିଆଯାଉ ।' ଆବେଦନର କଣ୍ଠସ୍ୱର ଦୁର୍ବଳ, ମାତ୍ର ପ୍ରତିଧ୍ୱନି ରହିଚି ଜାତୀୟତାବାଦର । ବେପାରୀ ସଂଗଠିତ ହୋଇଚନ୍ତି, ଆଦିଉତ୍ପାଦକ ହୋଇପାରିନାହିଁ । ରାଜନୀତି ଯେହେତୁ ଗଣତାନ୍ତ୍ରିକ ନୁହେଁ, ସଂଖ୍ୟାଧିକ୍ୟର ଗୁରୁତ୍ୱ ବୁଝିପାରିନାହିଁ କାରିଗର । ଲକ୍ଷ୍ୟଣୀୟ ବିଷୟ ହେଲା, ବୁର୍ଜୋୟା ଉତ୍ପାଦନବ୍ୟବସ୍ଥା ସହିତ ସାମ୍ରାଜ୍ୟବାଦର ମେଳବନ୍ଧନ । ବ୍ରିଟିଶ୍ ଶିଳ୍ପପୁଞ୍ଜିର ଲକ୍ଷ୍ୟ ଏକକ କୋଉ ଶିଳ୍ପର ଧ୍ୱଂସସାଧନ ନୁହେଁ, ଭାରତ ସକାଶେ ସୁପରିକଳ୍ପିତ ସୁଦୂରପ୍ରସାରୀ ଏକ ଶିଳ୍ପାୟନ ନୀତି; ଅର୍ଥାତ୍ ଭାରତରେ କଳକାରଖାନା ବସିବନାହିଁ, ଉତ୍ପାଦନ ସଂଗଠିତହେବ ବିଲାତରେ; ଭାରତ କଞ୍ଚାମାଲ୍ ଉତ୍ପାଦନକରିବ ଓ ରପ୍ତାନିକରିବ ବିଲାତକୁ । ଶିଳ୍ପଜାତ ପଣ୍ୟ ବିଲାତରୁ ଆସିବ ଓ ଭାରତ ଯୋଗାଇଦେବ ବଜାର; ଉପନିବେଶର ଅଧିବାସୀ କଷ୍ଟକରି କଳକାରଖାନା ଚଳାଇବେନାହିଁ, ତାଙ୍କ ତରଫରୁ ବ୍ରିଟେନ୍ ସେଇ କଷ୍ଟସାଧ୍ଯ କାମଟି କରିଦେଉଥିବ । ଏ ନୀତିକୁ କଟାକ୍ଷକରି ଏଙ୍ଗେଲ୍ସ ଲେଖିଥିଲେ, ଇଂଲ୍ୟାଣ୍ଡ୍ ହେବ ପୃଥିବୀର ଏକମାତ୍ର କାରଖାନା, ଆଉ ତା'ର ପଦାନତ ଦେଶଗୁଡ଼ାକ ହେବେ ଇଂଲ୍ୟାଣ୍ଡର agrarian appendage ! ଏ ଶିଳ୍ପନୀତି ଫଳରେ ଲାଭନୁକ୍‌ସାନ୍ ଯା ହେଉ, ଭାରତରେ ଆରମ୍ଭ ହୋଇଯାଇଚି, ଇର୍‌ଫାନ୍ ହବିବ୍‌ଙ୍କ ଭାଷାରେ, ଅବଶିଳ୍ପାୟନ ବା ଡିଇଣ୍ଡଷ୍ଟ୍ରିଆଲାଇଜେସନ୍ ।

କାରିଗର ଭଳି କୃଷକ ମଧ୍ଯ ହୋଇଚି ଅବଶିଳ୍ପାୟନର ଶରବ୍ୟ । ସାମ୍ରାଜ୍ୟବାଦ ବୃହତ୍ତର ପୃଥିବୀ ସହିତ ରାଜନୀତି ସାହାଯ୍ୟରେ ଭାରତକୁ ଯୋଡ଼ିଦେଇଚି, ମାତ୍ର ଅର୍ଥନୀତିରେ କରିଦେଇଚି ପୃଥିବୀଠାରୁ ବିଚ୍ଛିନ୍ନ । ଭାରତବାସୀ ସେତେବେଳେ ମଧ୍ଯ ବୁଝିପାରିନାହାଁନ୍ତି, ଅର୍ଥନୀତି ସ୍ୱୟଂଚାଳିତ କୋଉ ଯନ୍ତ୍ର ନୁହେଁ, ତାର ମତିଗତି ସ୍ଥିରକରିଦିଏ ରାଜନୀତି, ଅର୍ଥାତ୍ ରାଷ୍ଟ୍ର । ୧୭୫୯ ବେଳକୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବଙ୍ଗ-ବିହାର-ଓଡ଼ିଶାରୁ ଭୂରାଜସ୍ୱ ଆଦାୟକରିବା ଅଧିକାର ଆଦାୟକରିନେଇଚି, ନବାବ ପାଖରୁ । ନବାବ ଅମଳରେ ବି ଜମିଦାର ଥିଲେ, ମାତ୍ର ପ୍ରଜାସ୍ୱତ୍ୱ ଉପରେ ଅଧିକାର ନଥିଲା, ଖଜଣା ଆଦାୟକରି ନବାବଙ୍କ କଚେରୀରେ ଜମାଦିଅନ୍ତି, କମିଶନ୍ ପାଆନ୍ତି । ଉତ୍ତରାଧିକାର ସୂତ୍ରରେ ଏ କ୍ଷମତା ଭୋଗକରୁଥିଲେ ଜମିଦାର । କମ୍ପାନୀ କିନ୍ତୁ ଖଜଣା ବଢ଼ାଇବା ସକାଶେ ଫି ବର୍ଷ ନିଲାମ ଡାକିଲା । ପୁରୁଣା ଜମିଦାର ଆଉ ପାରିଉଠିଲେ ନାହିଁ । ଅଧିକ ଟଙ୍କାରେ ଯିଏ ନିଲାମ ଧରିଲା; ସେଇ ହେଲା ନୂଆ

ଜମିଦାର । ଏମାନେ ସାଧାରଣତଃ ଦୁର୍ଦ୍ଧର୍ଷ ପ୍ରଜାପୀଡ଼କ । ଏମାନଙ୍କ ସହିତ ପ୍ରତିଯୋଗିତା କରିବା ଦୁରାଶା ମାତ୍ର । କାହିଁକିନା, ଏମାନେ ଥିଲେ କମ୍ପାନୀର ଅନୁଗ୍ରହପୁଷ୍ଟ ଏକ ନବ୍ୟଧନିକ ଶ୍ରେଣୀ । କୃଷକଙ୍କୁ କ୍ରମାଗତ ଶୋଷଣକରିବା ଫଳରେ ଏଇ ସମୟରୁ ଦେଖାଦେଇଚି ଜଗାବରଜାଗା ଦୁର୍ଭିକ୍ଷ । କମ୍ପାନୀର ନୂଆ ରାଜସ୍ୱନୀତି ଚାଲୁହେବା ମାତ୍ର ନ'ମାସ ଭିତରେ ଜନସଂଖ୍ୟାର ଏକତୃତୀୟାଂଶ ଅନାହାରରେ ମରିଚନ୍ତି । ତଥାପି ୧୭୭୦-୭୧, ଦୁର୍ଭିକ୍ଷ ଯୋଉ ବର୍ଷ ଭୟାବହ ଆକାର ଧରିଚି, ଆଗବର୍ଷ ତୁଳନାରେ ସେ ବର୍ଷ ଦୁଇଲକ୍ଷ ପଚିଶହଜାର ଟଙ୍କା ଅଧିକ ଖଜଣା କମ୍ପାନୀ ଆଦାୟକରିଚି ରୟତ୍ ପାଖରୁ । ତା' ପରବର୍ଷ ଖଜଣା ଆଦାୟହୋଇଚି ତେରଲକ୍ଷ ଟଙ୍କା ବେଶି । ଜୋର୍ ଜୁଲମ୍ ମାରଧରକରି କୃଷକଙ୍କୁ କରାଯାଇଚି ସର୍ବସ୍ୱାନ୍ତ । ସବୁଠୁଁ ବେଶି ନିର୍ଯାତିତ ପ୍ରଜା ଭୋକଉପାସରେ ମରିଯାଇଚି କିମ୍ୱା ଗାଁଛାଡ଼ି ପଳାଇଯାଇଚି । ଯିଏ ରହିଗଲେ, ତାଙ୍କରି ପାଖରୁ ଆଦାୟହୋଇଚି ପଳାତକ ରୟତ୍‌ର ଖଜଣା । ୧୭୭୨ରେ ଓୟାରେନ୍ ହେଷ୍ଟିଙ୍ଗ୍‌ସ୍, ଫି ବରଷ ନିଲାମ ପରିବର୍ତ୍ତେ ପାଞ୍ଚବର୍ଷ ସକାଶେ ଜମିର ବନ୍ଦୋବସ୍ତ ଚାଲୁକରିଚନ୍ତି । ଏଥର ବାହାରିଲେ କଣ୍ଟ୍ରାକ୍ଟର୍, କମ୍ପାନୀ କାଗଜରେ ଇଜାରାଦାର୍ । ଯିଏ ସବୁଠୁଁ ଅଧିକ ଖଜଣାଦେବାକୁ କଣ୍ଟ କଲା, ପାଞ୍ଚବର୍ଷ ପାଇଁ ହୋଇଗଲା ଜମିଦାର । ଶୋଷଣ ଏତେ ଚରମକୁ ଉଠିଚି ଯେ, ୧୭୮୩ ବେଳକୁ ପୂର୍ବବଙ୍ଗରେ ହିନ୍ଦୁ-ମୁସଲ୍‌ମାନ୍ ଚାଷୀ ବିଦ୍ରୋହକରିଚନ୍ତି ଇଜାରାଦାରି ପ୍ରଥା ବିରୋଧରେ । କମ୍ପାନୀ ଦେଖିଲା ଇଜାରାଦାର୍ ମାରିପଟି ଆଦାୟକରୁଚି ବହୁତ, ମାତ୍ର ଚୁକ୍ତିକରିଥିବା ପରିମାଣରୁ ପଇସାଟିଏ ବେଶି ଦେଉନାହିଁ କମ୍ପାନୀକୁ । ଚାଲୁହେଲା ଚିରସ୍ଥାୟୀ ବନ୍ଦୋବସ୍ତ । ୧୭୭୬ରେ ସର୍ ଫିଲିପ୍ ଫ୍ରାନ୍‌ସିସ୍ ଜମିଦାରଙ୍କୁ ଜମିର ସ୍ୱତ୍ୱାଧିକାର ଅର୍ପଣକରିବାକୁ ସୁପାରିଶ୍ କରନ୍ତି । ଏବଂ ୧୭୯୩ ଖ୍ରୀଷ୍ଟାବ୍ଦରେ ଲର୍ଡ୍ କର୍ନଓୟାଲିସ୍ ଜମିଦାରିର ମାଲିକାନା ଜମିଦାର ହାତରେ ଅର୍ପଣକରି ସରକାରୀ ଘୋଷଣା ବଳରେ ଜାରିକରନ୍ତି ପର୍‌ମାନେଣ୍ଟ୍ ସେଟ୍‌ଲ୍‌ମେଣ୍ଟ୍ । କୃଷକ ହାତରୁ ଜମିର ସ୍ୱତ୍ୱ କାଢ଼ିନେଇ ଜମିଦାର ହାତରେ ନ୍ୟସ୍ତକରିବା ଫଳରେ ତଦବଧି ପ୍ରଚଳିତ ଭାରତର ଭୂମିବ୍ୟବସ୍ଥାର ଘଟିଯାଇଚି ମୂଳଗତ ପରିବର୍ତ୍ତନ । କାହିଁକିନା, ପୁରୁଷାନୁକ୍ରମେ ଭୋଗଦଖଲ କରୁଥିବା ଜମିର ମାଲିକ ଏବେଠୁଁ ହେଲା ଭୂମିଦାସ, ସର୍ଫ୍ । ମୁଗଲ-ଶାସନରେ ମଧ୍ୟ ଜମିଦାରିପ୍ରଥା ପ୍ରଚଳିତ ଥିଲା, କର୍ନଓୟାଲିସ୍‌ଙ୍କ ବନ୍ଦୋବସ୍ତ କିନ୍ତୁ ଏକେବାରେ ବିପରୀତ, କାହିଁକିନା, ମୁଗଲ୍ ଅମଳର ଜମିଦାର ଥିଲା ଖଜଣା-ଆଦାୟକାରୀ କର୍ମଚାରୀ ମାତ୍ର; ଜମିର ସ୍ଥାବର-ଅସ୍ଥାବର ସ୍ୱତ୍ୱ ରହିଥିଲା କର୍ଷଣକାରୀଙ୍କ ଦଖଲ । ତା ଉପରେ ରାଷ୍ଟ୍ରର ମଧ୍ୟ ସ୍ୱତ୍ୱାଧିକାର ନଥିଲା । ଚିରସ୍ଥାୟୀ ବନ୍ଦୋବସ୍ତ ଇତିହାସକୁ କରିଦେଲା ପଶ୍ଚାତ୍‌ଗାମୀ, କାହିଁକିନା,

ରାଷ୍ଟ୍ରର ପ୍ରଜା ଏବେ ହେଲା ଜମିଦାରର କିଙ୍କର, ଯେପରି ଗ୍ରୀକ୍ ସେବାଦାସ ବା ସ୍ଲେଭ୍ । ଦେଶବ୍ୟାପୀ ଏ ବିପର୍ଯ୍ୟୟର ସମ୍ମୁଖୀନ ହୋଇସୁଦ୍ଧା ଜମି-କର୍ଷଣକାରୀ ଏକ ଦୁର୍ଗତ ସାମାଜିକ ଶ୍ରେଣୀ ଭାବରେ ସଂଗଠିତ କରିପାରିନାହିଁ ନିଜକୁ । ଅସଂହତିର କାରଣ ହୋଇପାରେ ଧର୍ମ ଜାତି ଭାଷା, ପୁଣି ଆଞ୍ଚଳିକ ବୈଷମ୍ୟ । ସର୍ବୋପରି ଭୟ । ସଶସ୍ତ୍ର ଦମନ ଓ ସମ୍ପତ୍ତିନାଶକୁ ଭୟ । ଗଣତନ୍ତ୍ର ଦେଶକୁ ଆସିଚି ୧୯୪୭ରେ । ମୁହ୍ୟମାନ ପ୍ରଜା, ଅସ୍ପଷ୍ଟଭାବରେ ଅନ୍ତତଃ, ବୁଝିପାରିଚନ୍ତି 'ଭୋଟ୍'ର କରାମତି, ଯା ରାଷ୍ଟ୍ରଶକ୍ତି ପ୍ରତି, କ୍ଷେତ୍ରବିଶେଷରେ ପ୍ରବଳ ଆହ୍ୱାନ । ୧୭୯୩ ବେଳକୁ ଏକମାତ୍ର ରାଷ୍ଟ୍ରଶକ୍ତି ହିଁ ନିର୍ଦ୍ଧାରିତକରିଚି ଲୋକଙ୍କ ରାଜନୀତିକ ଚେତନା । ସନ୍ଦେହ ନାହିଁ, ଚିରସ୍ଥାୟୀ ବନ୍ଦୋବସ୍ତ ବିଜାତୀୟ ସାମ୍ରାଜ୍ୟବାଦୀ ଶକ୍ତିର ଥିଲା ସମ୍ପୂର୍ଣ୍ଣ ସ୍ୱାର୍ଥାନୁକୂଳ, କାହିଁକିନା, ଅଷ୍ଟାଦଶ ଶତାବ୍ଦୀ ବେଳକୁ ସାମ୍ରାଜ୍ୟବାଦ ପୃଥିବୀକୁ ବିଭକ୍ତ କରିଦେଇଚି ଦୁଇଭାଗରେ, ଗୋଟିଏ ଶିଳ୍ପପ୍ରଧାନ, ଅନ୍ୟଟି କୃଷିନିର୍ଭର । ଏବେକା ପରିଭାଷାରେ ସେଣ୍ଟର୍ ଆଉ ପେରିଫେରି । ବିଜିତ ଦେଶମାନଙ୍କ ଅବସ୍ଥାନ ମେଟ୍ରପଲିଟାନ୍ ଶିଳ୍ପକେନ୍ଦ୍ରର ସୀମାନ୍ତରେ, ଏବଂ ସେଥିପାଇଁ, ସେମାନେ ଯେପରି ପ୍ରଭୁଶକ୍ତିର ସମକକ୍ଷ ହୋଇ ନପାରିବେ, ଖାଲି କଞ୍ଚାମାଲ୍ ଓ ଆମଦାନୀ ପଣ୍ୟର ବଜାର ହୋଇରହିଥିବେ, ଅନନ୍ତକାଳ ରହିଥିବେ ମେଟ୍ରପଲିଟାନ୍ କ୍ୟାପିଟାଲ୍‌ର ଆଗ୍ରାରିଆନ୍ ଆପେଣ୍ଡେଜ୍-ସେଇ ରଣକୌଶଳ ଥିଲା ସାମ୍ରାଜ୍ୟବାଦର ପ୍ରାଥମିକ ପର୍ଯ୍ୟାୟର ମୂଳନୀତି । ମାତ୍ର ସେଇ ଉଦ୍ଦେଶ୍ୟରେ ପେରିଫେରିକୁ ସଂଗଠିତକରିବା ପ୍ରକ୍ରିୟାରେ ଭାରତରେ ମୁଣ୍ଡଟେକିଛି ଏକ ମଧ୍ୟବିତ୍ତ ସମ୍ପ୍ରଦାୟ, ଯାର ଶ୍ରେଣୀଚରିତ୍ର ବୁର୍ଜୋୟା ।

ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନକରି ଖଜଣାଆଦାୟ ଭଳି ଦୁଃସ୍ୱପ୍ନରୁ ରାଷ୍ଟ୍ର ରକ୍ଷାପାଇଚି, ଏକାସାଙ୍ଗରେ ପାଇଯାଇଚି ଏକ ସାମନ୍ତଶ୍ରେଣୀ ଯିଏ ସାମ୍ରାଜ୍ୟର ସ୍ୱାର୍ଥକୁ ଖାଲି ଜଗିବେନାହିଁ, ଉପନିବେଶର ଶ୍ରମଜୀବୀ ପ୍ରଜାଙ୍କ ପାଖରେ ରାଷ୍ଟ୍ରର କରିବେ ପ୍ରତିନିଧିତ୍ୱ । ନବ୍ୟ-ଜମିଦାରଶ୍ରେଣୀ ତେଣୁ ଯୋଗାଇଦେଇଚି ରାଷ୍ଟ୍ରକୁ ଶାସନର ସାମାଜିକ ଭିତ୍ତି; ଯଦିଓ ରୟତ୍ ମାନିନେଇନାହିଁ ସେ ଭିତ୍ତିର ବୈଧତା । କାହିଁକିନା, ଯୁଗଯୁଗଧରି ଯୋଉ ଅଧିକାର ପୁରୁଷାନୁକ୍ରମେ ପ୍ରଜା ଭୋଗକରି ଆସିଚି, ହଠାତ୍ ସେ ଅଧିକାର ତା' ହାତରୁ ଛଡ଼ାଇ ନେଇଗଲା ଇଂରେଜ୍, ପ୍ରତ୍ୟକ୍ଷ ହସ୍ତକ୍ଷେପ ପରିବର୍ତ୍ତେ ଭାରତୀୟ ସାମନ୍ତଙ୍କ ମଧ୍ୟସ୍ଥତାରେ । ସ୍ଥାନୀୟ ଲୋକଙ୍କ ମଧ୍ୟସ୍ଥତାରେ ଶୋଷଣ ମଧ୍ୟ ଔପନିବେଶିକତାର ଅନ୍ୟତମ ପ୍ରଧାନ ଉପସର୍ଗ । ଏବଂ, ସ୍ଥାନୀୟ ସେଇ ପରିବାରଗୁଡ଼ିକ ଏକ୍ଷଣି ଭାରତର ଶାସକଶ୍ରେଣୀର ପ୍ରଧାନ ଅଂଶ । ଚଷୀ, ଅନେକ ଜାଗାରେ, ଜମିଦାରକୁ ମାନିନାହାନ୍ତି; ସେମାନଙ୍କ ଦାବିକୁ କେନ୍ଦ୍ରକରି ହଜାରହଜାର ମାଲିମୋକଦ୍ଦମା ରୁଜୁହୋଇଚି

ଅଦାଲତରେ । ପଟା-ପାଉତି ଭିତ୍ତିରେ ଗାଁମୁଖିଆ ନେତୃତ୍ୱରେ ନୂଆ ଜମିଦାର ବିରୋଧରେ ଦୀର୍ଘସ୍ଥାୟୀ ଆନ୍ଦୋଳନ ମଧ୍ୟ ସଂଗଠିତ ହୋଇଚି । ମାତ୍ର ଆଇନ୍ ବଳରେ ଇଂରେଜ୍ ଜମିଦାରର କ୍ଷମତା ବଢ଼ାଇଦେଇଚି । ଏପରିକି, କନିକାର ଜମିଦାର କିଛିଦିନ ସକାଶେ ହୋଇଚି ବିହାର-ଓଡ଼ିଶାର ଗଭର୍ଣ୍ଣର୍ । ଏଇମାନେ ଗଢ଼ିଥିଲେ ଉତ୍କଳ-ସମ୍ମିଳନୀ, ଯାର ମଞ୍ଚଉପରୁ ମଧୁବାବୁ ତଡ଼ିଦେଇଥିଲେ ଗୋପବନ୍ଧୁ ଦାସଙ୍କୁ । ୧୮୫୯ରେ ଖଜଣାଆଇନ୍ ବଳବତ୍ ହେବାଯାଏଁ କୃଷକ-ବିଦ୍ରୋହ ନାନାଦି ଆକାର-ପ୍ରକାରରେ ଫାଟିପଡ଼ିଚି, କେତେବେଳେ ଗଣଜମାୟେତ୍ ଓ ଦରଖାସ୍ତ, କେତେବେଳେ ପ୍ରଜାମେଳି, କେତେବେଳେ ଧର୍ମଘଟ । ଧର୍ମଘଟ ଭାଙ୍ଗିଦେବାକୁ ଜମିଦାର ଲାଠିଆଳ ପଠାଇଚନ୍ତି; ପ୍ରତିକ୍ରିୟାରେ ସଂଘର୍ଷ ହୋଇଚି ସଶସ୍ତ୍ର ।

ଶୋଷଣର ଏ କଦର୍ଯ୍ୟତାରୁ ଆଦିବାସୀ (ବନବାସୀ) ମଧ୍ୟ ନିସ୍ତାର ପାଇନାହାନ୍ତି । ଜଙ୍ଗଲ ଆବାଦକରି ଚାଷବାସ କରୁଥିଲେ ଆବହମାନ କାଳରୁ; ସମାଜ ଥିଲା ତେଣୁ ଆଦିମ । ଗାଁମୁଣ୍ଡିଆଳ ଯତ୍‌ସାମାନ୍ୟ ଖଜଣା ବିନିମୟରେ ଜମିର ବନ୍ଦୋବସ୍ତ କରିଦିଏ; ଜମିଦାର କି ସାଆନ୍ତ ତ ନଥିଲେ; ପରସ୍ୱ ଅପହରଣକାରୀ ଅନ୍ୟକେହି ରାଜକର୍ମଚାରୀ ମଧ୍ୟ ନଥିଲେ । ଅର୍ଥାତ୍, ରାଷ୍ଟ୍ରର ଅକ୍ତିଆରରୁ ଆଦିବାସୀ ଥିଲା ସ୍ୱାଧୀନ । ଇଂରେଜ୍ ଚିରାଚରିତ ସେଇ ସମାଜ ସଂଗଠନକୁ ଭାଙ୍ଗିଦେଲା । ଇଂରେଜ୍-ସୃଷ୍ଟ ଜମିଦାର, ଇଂରେଜ୍-ସୃଷ୍ଟ ମହାଜନ, ଇଂରେଜ୍-ସୃଷ୍ଟ ବଜାର-ଅର୍ଥନୀତି, ଇଂରେଜ୍-ସୃଷ୍ଟ ଆଇନ୍-ଅଦାଲତ୍ ପ୍ରାଚୀନ ସେଇ ଜୀବନଚର୍ଯ୍ୟାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଚି; ଏବଂ ସେଇ ସୁଯୋଗରେ ବହିରାଗତ ଚଲାକ୍ ଲୋକ ('ଦିକୁ') ଆଦିବାସୀଙ୍କୁ ଠକାଇ-ଭୁଲାଇ ଜମିଗୁଡ଼ାକୁ କରିଚନ୍ତି ଆତ୍ମସାତ୍ । ଦଖଲ ହରାଇ ଆଦିବାସୀ ହେଲା ମୂଲିଆ, ନିଜ ଭିଟାରେ ଅପର । ରାଷ୍ଟ୍ର ତାକୁ ରକ୍ଷା କଲାନାହିଁ । ଦରିଦ୍ରକୁ ଲୋଭ ଦେଖାଇ ଖ୍ରୀଷ୍ଟାନ୍ କଲା । ଖ୍ରୀଷ୍ଟାନ୍ ହୋଇ ବିଜାତୀୟ ଶୋଷଣ ଓ ଆଧିପତ୍ୟକୁ ସିଏ ଆଉ ପ୍ରଶ୍ନକଲାନାହିଁ । ଆଦିବାସୀର ସାମ୍ରାଜ୍ୟ-ଆନୁଗତ୍ୟ ହୋଇଗଲା ଧର୍ମାନୁଗତ୍ୟର ନାମାନ୍ତର ।

ବମ୍ବେ ଓ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ରୟତ୍‌ୱାରି ବନ୍ଦୋବସ୍ତ ପ୍ରବର୍ତ୍ତନକରିଥିଲେ ଯଥାକ୍ରମେ ଏଲ୍‌ଫିନ୍‌ଷ୍ଟୋନ୍ ଓ ଟମାସ୍ ମୁନ୍‌ରୋ । ସେ ବନ୍ଦୋବସ୍ତରେ ଜମିର ଦଖଲସ୍ୱତ୍ୱ ଲାଭକରିଚି ପ୍ରଜା; ଖଜଣା ପଇଠକରିବାରେ ଖିଲାପ୍ ନକଲେ ଚାଷୀକୁ ଉଚ୍ଛେଦକରିବା ବେଆଇନ୍ । ଚିରସ୍ଥାୟୀ ବନ୍ଦୋବସ୍ତର କୁଫଳ ବେଙ୍ଗଲ୍ ପ୍ରେସିଡେନ୍ସିରେ ଲକ୍ଷ୍ୟକରିବା ଉତାରୁ ଇଂରେଜ୍ ଏଠି ଆଉ ମଧ୍ୟସ୍ୱତ୍ୱାଧିକାରୀ ରଖିଲାନାହିଁ । ମାତ୍ର ଖଜଣା ଧାର୍ଯ୍ୟକଲା ଚଢ଼ାହାରରେ । ରୟତ୍‌ୱାରି ଯେହେତୁ ଅସ୍ଥାୟୀ, ବେଳକୁ ବେଳ ଖଜଣା ବୃଦ୍ଧି ନିର୍ଭରକରିଚି ରାଷ୍ଟ୍ରର ମର୍ଜିଉପରେ । ସ୍ୱୟଂ ଜମିଦାର ରାଜା ରାମମୋହନ ରାୟ

ପାର୍ଲାମେଣ୍ଟାରି କମିଟିକୁ କହିଚନ୍ତି, ମାନ୍ଦ୍ରାଜର ରୟତ୍ ଓ ବଙ୍ଗଳାର ଚିରସ୍ଥାୟୀ ବନ୍ଦୋବସ୍ତାଧୀନ ପ୍ରଜା, ଖଜଣାଭାର ବିଚାରରେ କେହି କାହାଠାରୁ କମ୍ ଦୁର୍ଗତ ନୁହେଁ । ଉଭୟଙ୍କ ସଂସାରର ଅବସ୍ଥା ଶୋଚନୀୟ । ରୟତ୍ୱାରୀ, ପ୍ରଜାଙ୍କ ଦୁଃଖ ଖାଲି ବଢ଼ାଇନାହିଁ, ଦେଶର ସମ୍ପଦକୁ ମଧ୍ୟ ଶୋଷିନେଇଚି କ୍ରମାଗତ । ସେକାଳର ପ୍ରଖ୍ୟାତ ସିଭିଲିଆନ୍ ରମେଶଚନ୍ଦ୍ର ଦତ୍ତ ରୟତ୍ୱାରିର ତୀବ୍ର ସମାଲୋଚନାକରି ଭାଇସ୍‌ରୟ କର୍ଜନ୍‌ଙ୍କୁ ଲେଖିଚନ୍ତି, ଖଜଣାହାର ଏତେ ଚଢ଼ା ଯେ ରୟତ୍‌କୁ ଆୟର ପ୍ରାୟ ଅଧାଅଧି ରାଜସ୍ୱ ବାବଦକୁ ଦେବାକୁ ପଡୁଚି; ତଥାପି ବର୍ଷକୁ ବର୍ଷ ଖଜଣାବୃଦ୍ଧି ହୋଇଚି ନିୟମିତ । ଅନିଶ୍ଚୟତା ତେଣୁ ଚାଷୀର ମୁଣ୍ଡଉପରେ ଖଣ୍ଡା ଭଳି ଝୁଲୁଚି । ଚାକିରିରୁ ଇସ୍ତଫାଦେବା ଉତାରୁ ପୁଣି ଲେଖିଚନ୍ତି, ଖଜଣା ବର୍ଷକୁ ବର୍ଷ ଯେମିତି ବଢୁଥିଲା, କୋଉହେଲେ କୃଷକ ପକ୍ଷରେ ସେ ବର୍ଦ୍ଧିତ ହାରକୁ ସମ୍ଭାଳିବା ସମ୍ଭବପର ନୁହେଁ; ସରକାରୀ କର୍ମଚାରୀ ସେଥିପାଇଁ କୃଷକ ଉପରେ ଦୈହିକ ନିର୍ଯାତନା ଚଳାଇବାକୁ ବାଧହୋଇଚନ୍ତି । ଏବଂ ସମସ୍ୟା ଏପରି ବୀଭତ୍ସ ଆକାର ଧାରଣକରିଚି ଯେ ରାଷ୍ଟ୍ର ଅନୁସଂଧାନ କମିଟି ବସାଇବାକୁ ବାଧ ହୋଇଚି । ମାତ୍ର ତିନିମାସ ଭିତରେ ଅଭିଯୋଗ ମିଳିଚି ୧୯୫୯, ଦୈହିକ ନିର୍ଯାତନାର ବିବରଣ ସେଥିରେ ବିବିଧ ଓ ବିଚିତ୍ର । ଆଶ୍ଚର୍ଯ୍ୟହେବା ଉଚିତ ନୁହେଁ ଯେ କୃଷିକର୍ମ ଲାଭଜନକ ନହେବା ଫଳରେ ବିସ୍ତୀର୍ଣ୍ଣ ବିଲବାଡ଼ି ପଡ଼ିଆ ପଡ଼ିଚି, କୃଷିଉତ୍ପାଦନରେ ଅବନତି ଘଟିଚି କ୍ରମାଗତ । ବାଧହୋଇ ଖଜଣା ମକୁବ୍‌କରି ରାଷ୍ଟ୍ର ଆଦେଶ ଜାରିକରିଚି ବେଳକୁ ବେଳ । ତଦ୍‌ସତ୍ତ୍ୱେ ରାସ୍ତାକଡ଼ରେ ମୃତଦେହ ପଡ଼ିଥିବା ଦୃଶ୍ୟ ବିରଳ ହୋଇନାହିଁ । ବମ୍ବେ ପ୍ରେସିଡେନ୍ସିର ଆଡ୍‌ମିନିଷ୍ଟ୍ରେସନ୍ ରିପୋର୍ଟ(୧୮୭୨-୭୩) ମଧ୍ୟ ସ୍ୱୀକାର କରିଚି: ନିଃସ୍ୱ କୃଷକଙ୍କ ପାଖରୁ ଆଇନ୍-ବେଆଇନ୍ ସବୁରକମ କୌଶଳରେ ଯେତେ ବେଶି ସମ୍ଭବପର, ନିଗାଡ଼ିନେବାକୁ କସୁର୍ କରିନାହିଁ ପ୍ରଶାସନ। କୃଷକ ତେଣୁ ଘରଦ୍ୱାର ଛାଡ଼ି ପଳାଇଯାଇଚନ୍ତି । ଏକର୍ ପରେ ଏକର୍ ଚାଷଜମି ଅକର୍ଷିତ ପଡ଼ିରହିଚି । ଏପରିକି, କେତେକ ଜିଲ୍ଲାରେ କର୍ଷଣଯୋଗ୍ୟ ବିଲର ତିନିଭାଗରୁ ଭାଗକରେ ହଳଧରର ଦର୍ଶନମିଳିବା ଦୁଷ୍କର । ଏ ବନ୍ଦୋବସ୍ତର ନିତ୍ୟନିପୀଡ଼ନ କୃଷକଜୀବନକୁ ଦୁର୍ବିସହକରିଚି ଯେହେତୁ, ଅଭାବବେଳେ କୃଷକ ଦ୍ୱାରସ୍ଥ ହୋଇଚି ମହାଜନର, କ୍ରମାଗତ ଦ୍ୱାରସ୍ଥହେବା ଫଳରେ ମହାଜନର ଅତ୍ୟାଚାର ହୋଇଯାଇଚି ରୟତ୍ୱାରି ଠାରୁ ବସ୍ତୁତଃ ଅଚ୍ଛେଦ୍ୟ ।

ମୁଗଲ୍-ସ୍ୱୈରତନ୍ତ୍ରର ଅଚଳାୟତନ ଅଗ୍ରଗତି ପଥରେ କଣ୍ଟକ ହୋଇଥିଲା ବୋଲି, ଅଗ୍ରଗତିର ଅବଧାରିତ ସର୍ତ୍ତ ଥିଲା ପ୍ରାକ୍-ଧନତାନ୍ତ୍ରିକ ଉତ୍ପାଦନପଦ୍ଧତିରୁ ଶିଳ୍ପପ୍ରଧାନ ଉତ୍ପାଦନପଦ୍ଧତିକୁ ଆଶୁଉତ୍ତରଣ; ଅଥଚ ଭାରତକୁ ସଭ୍ୟକରିବା ବାହାନାରେ ଇଂରେଜ୍

ଯା କରିଚି, ତା ପ୍ରକୃତରେ ପ୍ରାକ୍-ଧନତାନ୍ତ୍ରିକ ଉତ୍ପାଦନପଦ୍ଧତିରୁ ଔପନିବେଶିକ ଉତ୍ପାଦନପଦ୍ଧିତିକୁ ଉତ୍ତରଣ, ଯୋଉ ଉତ୍ପାଦନପଦ୍ଧତି ଶିଳ୍ପତନ୍ତ୍ରର ବିକୃତ ରୂପ । ମୁଗଲ୍ଲ ଜମାନାରେ ହସ୍ତଶିଳ୍ପ ଓ କୃଷିର ସମନ୍ୱୟରେ ଯୋଉ ଭାରସାମ୍ୟ ଗଢ଼ିଉଠିଥିଲା, ଇଂରେଜ୍‌ର ସ୍ପର୍ଶଦୋଷରୁ ତା ନଷ୍ଟହୋଇଗଲା, କାରିଗର ଜାତିବ୍ୟବସାୟରୁ ଉତ୍‌ଖାତ ହୋଇଗଲେ, ଜମି ଉପରେ କୃଷକର ପୁରୁଷାନୁକ୍ରମିକ ଭୋଗଦଖଲ ମଧ୍ୟ ଲୋପପାଇଗଲା । ଅର୍ଥାତ୍ ଶ୍ରମଜୀବୀଶ୍ରେଣୀ, ସମ୍ପଦର ଯିଏ ଅସଲ ଉତ୍ପାଦକ, ନୂତନ ଶିଳ୍ପ ଓ କୃଷି ଉତ୍ପାଦନରୀତି କାରଣରୁ ଜୀବନଧାରଣର ନ୍ୟୂନତମ ସ୍ତରକୁ ଠେଲିହୋଇ ଚାଲିଗଲେ । ଧନୋତ୍ପାଦନର ସ୍ୱାଭାବିକ ପ୍ରକ୍ରିୟା ଏକେବାରେ ଅବରୁଦ୍ଧ ହୋଇଗଲା । ଶ୍ରମ ସହିତ ପୁଞ୍ଜିର ଏଇ ସାମ୍ରାଜ୍ୟବାଦୀ ବୈପରୀତ୍ୟ ବ୍ରିଟିଶ୍‌ଶାସନକୁ କରିଚି ନିରନ୍ତର ପ୍ରତିକ୍ରିୟାଶୀଳ ଏବଂ ପରିଣାମରେ, ଗଢ଼ିଉଠିଚି ନାଗରିକ ପ୍ରତିରୋଧ ।

କିନ୍ତୁ ନଗରାୟନ ମଧ୍ୟ ମାଡ଼ଖାଇଚି ନଗର-ସଭ୍ୟତାର ରସିକ ଇଂରେଜ୍ ହାତରେ । ମାଡ଼ଖାଇଚି ବୋଲି, ସହରରୁ ଆନ୍ଦୋଳନ ପରିଚାଳନା କରୁଥିଲେ ସୁଦ୍ଧା ଗାନ୍ଧି ଗାଁକୁ ମନେକରିଚନ୍ତି ଭବିଷ୍ୟତ୍ ସମାଜସଂଗଠନର ନମୁନା । ଅଥଚ ଦେଶର ଏକଚତୁର୍ଥାଂଶ ଲୋକ ରହୁଚନ୍ତି ଏବେ ସହରରେ, ଯଦିଓ ରାସ୍ତାଘାଟର ନାଁଗୁଡ଼ିକ ଆସିଚି ଇତିହାସରୁ, ଭୁବନେଶ୍ୱରରେ ଯେମିତି ଅଶୋକ ଖାରବେଳ ଭୌମ ଇତ୍ୟାଦି । ସହର ପ୍ରତି ଆକର୍ଷଣ ନିଃସନ୍ଦେହରେ ଆଧୁନିକତାର ଲକ୍ଷଣ, କାହିଁକିନା, ଆଧୁନିକତା ଯୋଉ ସୁଯୋଗ-ସୁବିଧା ଦୁନିଆସାରା ସୃଷ୍ଟିକରିଚି, ତା' ପ୍ରତି ଆଗ୍ରହ ଜନ୍ମିବା ସ୍ୱାଭାବିକ । ତାକୁ ଭୋଗବାଦ କହିବା ବାତୁଳତା । ଗାନ୍ଧି ଯେତେବେଳେ ଗ୍ରାମ-ସ୍ୱରାଜର ସ୍ୱପ୍ନଦେଖିଚନ୍ତି, ଆମ୍ବେଡକର ପରିହାସକରିଚନ୍ତି: 'The love of the intellectual Indians for the village community is of course infinite if not pathetic... What is the village but a sink of localism, a den of ignorance, narrowmindedness and communalism?' ମତାନୈକ୍ୟ ଉର୍ଦ୍ଧ୍ୱରେ ଯୋଉ ଏକମାତ୍ର କାରଣ ଗାଁରୁ ସହରକୁ ଲୋକଙ୍କୁ ଟାଣିଆଣିଚି, ତା' କେବଳ ନାଗରିକ ଜୀବନଚର୍ଯ୍ୟାରେ ଅର୍ଥନୀତିକ ଗତିଶୀଳତା । ସେ ଗତିଶୀଳତାକୁ କ୍ୱଚିତ୍-କଦାଚିତ୍ ଭାବୁକ ଭାବିଚନ୍ତି ମରୀଚିକା, ଏବଂ ତା ମଧ୍ୟ ଆଧୁନିକତା ନାମକ ମୁଦ୍ରାର ଅପରପାର୍ଶ୍ୱ । ଅର୍ଥାତ୍, ଆଧୁନିକ ପୃଥିବୀ କହିଲେ ନାନାବିଧ ଯୋଉ କଣ୍ଟ୍ରାଡିକ୍ସନ୍‌କୁ ଇଙ୍ଗିତକରେ, ସେଗୁଡ଼ିକର ଉତ୍ପତ୍ତି ଓ ବିନାଶସ୍ଥଳ ଏଇ ସହର । ଅଖଣ୍ଡ ଓ ଅସାମ୍ୟହୀନ 'ଭାରତ' ଯୋଉ ମେଧାବୀ ପ୍ରତୀତି, ତା'ର ରାଜନୀତିକ ସଂଜ୍ଞା ନିରୂପିତହୁଏ ଏଇଠି, ଖଣ୍ଡିତହୁଏ ମଧ୍ୟ ଏଇଠି । ବ୍ରିଟିଶ୍ ଆସିବା ଆଗରୁ ଭାରତରେ ସହର ଥିଲା ଯଥେଷ୍ଟ, ଯେପରି, ପାଟନା ପ୍ରୟାଗ

ମୁର୍ଶିଦାବାଦ, କିନ୍ତୁ ଇଂରେଜ୍ ସେଗୁଡ଼ାକୁ ଭାବିଚି ଆଧୁନିକତାର ଅନୁପଯୁକ୍ତ, ଯୋଉ ଆଧୁନିକତା ଭାରତକୁ ଯୁକ୍ତକରିବ ବହିର୍ବିଶ୍ୱ ସାଙ୍ଗରେ; ଅର୍ଥାତ୍ କ୍ୟାପିଟାଲିସ୍ମ ସାଙ୍ଗରେ । ସେଥିପାଇଁ, ସପ୍ତଦଶ ଶତକରେ ପ୍ରତିଷ୍ଠାକରିଚି ବନ୍ଦର-ନଗର, ମାନ୍ଦ୍ରାଜ କଲିକତା ବମ୍ବେ । ଉଦ୍ଦେଶ୍ୟ, ସୌଦାଗରୀ ନିଷ୍କାସନ ସାଙ୍ଗକୁ ପ୍ରାଚୁର୍ଯ୍ୟ-ପ୍ରଦର୍ଶନ । ସେଇ ବାଟଦେଇ ଉତ୍ତର-ଇଉରୋପ୍‌ର କ୍ରମପ୍ରସାରଣଶୀଳ ଅର୍ଥନୀତି ସହିତ ଯୁକ୍ତହୋଇଚି ଭାରତୀୟ ଉପମହାଦେଶର ଆପାତଃ-ସ୍ଥାୟୀ ଅଧସ୍ତନତା । ଅଧସ୍ତନତା ବାଟଦେଇ ଭାରତ ପ୍ରବେଶକରିବ ବହିର୍ବିଶ୍ୱକୁ; ଅର୍ଥାତ୍, ଆଧୁନିକତା-ପରିମଣ୍ଡଳକୁ । ଉନବିଂଶ ଶତକର ଶେଷପର୍ଯ୍ୟାୟରେ ପୁଣି ତିଆରିହୋଇଚି ସୁପରିକଳ୍ପିତ ଅନେକ ସହର, ନାଁ ଦିଆଯାଇଚି କ୍ୟାଣ୍ଟନ୍‌ମେଣ୍ଟ୍ ସିଟି, ଯେପରି କଟକ । ପ୍ରକୃତରେ ସୈନ୍ୟଛାଉଣି, ସିପାହୀବିଦ୍ରୋହ ଅବ୍ୟବହିତରେ ସେଗୁଡ଼ିକର ଆବଶ୍ୟକତା ହୋଇଚି ଅବଶ୍ୟମ୍ଭାବୀ । କିନ୍ତୁ ଦେଶର ଜନସାଧାରଣଙ୍କ ସହିତ ଏଗୁଡ଼ିକର ସମ୍ପର୍କ ବିବଦମାନ କିମ୍ବା ଅଦୃଶ୍ୟ, କାହିଁକିନା, ଉତ୍ପାଦନବ୍ୟବସ୍ଥା ସହିତ ଏ ସହର ଅସଂମୃକ୍ତ। ପୁରାତନ ସହର କିନ୍ତୁ ଉତ୍ପାଦନବ୍ୟବସ୍ଥା ସହିତ ଅଙ୍ଗାଙ୍ଗୀ, ବସ୍ତୁତଃ ଗ୍ରାମସମାଜର ଊର୍ଦ୍ଧ୍ୱମୁଖୀ ପ୍ରସାରଣ । ଔପନିବେଶିକ ସହର କିନ୍ତୁ ରାଜନୀତିକ ଓ ସାମରିକଶକ୍ତି ପ୍ରଦର୍ଶନକରିଚି ସ୍ଥାପତ୍ୟରେ, ନଗର-ପରିକଳ୍ପନାରେ ଏବଂ ସ୍ଥାନୀୟ ଲୋକଙ୍କ ପାଖରୁ ଯତ୍‌ପରୋନାସ୍ତି ଦୂରତ୍ୱ ସୃଷ୍ଟିକରିବାରେ । ଟେନିସ୍‌କୋର୍ଟ, କ୍ରିକେଟ୍‌ପିଚ୍, କ୍ଲବ୍ କି ରେସ୍‌କୋର୍ସ ତିଆରିହୋଇଚି ଦେଶବାସୀଙ୍କ ଦୃଷ୍ଟିରେ ଯା ବିଜାତୀୟ । ଅକ୍ସଫୋଡ୍ କି କେମ୍ବ୍ରିଜ୍ ଭଳି ବିଶ୍ୱବିଦ୍ୟାଳୟସହର ଇଂରେଜ୍ ଏଠି ବସାଇନାହିଁ କିମ୍ବା ହାଇଡ୍‌ପାର୍କ ଭଳି ମୁକ୍ତଅଙ୍ଗନ, ସର୍ବସାଧାରଣ ଯୋଉଠି ମିଳିତହୋଇ ଚର୍ଚ୍ଚାକରିବେ ଦେଶର ହାଲ୍‌ଚାଲ । ମାତ୍ର ତିଆରିକରିଚି ଫୋର୍ଟ୍ ଆଉ ତଦ୍‌ସଂଲଗ୍ନ ମଇଦାନ, ସୈନ୍ୟମାନେ ଶରୀରଚର୍ଚ୍ଚା କରିବାପାଇଁ। ଅର୍ଥାତ୍, ଔପନିବେଶିକ ନଗରାୟନ ବିଜାତୀୟ ଆଧିପତ୍ୟକୁ ଦେଇଚି ସଂଜ୍ଞା ଓ ଶରୀର । ଭାରତୀୟ ସହର ଥିଲା କିନ୍ତୁ ସାହି କି ପଡ଼ା ଆକାରରେ ସଂଗଠିତ; ଲୋକ ନିଜ ଜାତିଭାଇ କି ସମଧର୍ମାବଲମ୍ବୀଙ୍କ ସାଙ୍ଗରେ ଏକାଠି ବସବାସକରି ଜାତିବେଉସା ଚଳାଇଚନ୍ତି । ଯେପରି, କଟକର ବଣିଆସାହି କି ଉଗରପଡ଼ା । ପରସ୍ପରଠାରୁ ଅଲଗାଭାବିନାହାଁନ୍ତି ନିଜକୁ ଯେପର୍ଯ୍ୟନ୍ତ ଜନଗଣନା ପ୍ରବର୍ତ୍ତନକରି ଇଂରେଜ୍ ଅଲଗା କରିଦେଇନାହିଁ । ଓଡ଼ିଶାର ସବୁରକମ ସହରରେ ବେପାରବଣିଜରେ ତେଣୁ ମାରୁଆଡ଼ିଙ୍କୁ ଦେଖିହେବ ସାବଲୀଳ । ଆସିଚନ୍ତି କିନ୍ତୁ ରାଜସ୍ଥାନରୁ । ଇଂରେଜ୍ ଭାରତ ଛାଡ଼ିବା ବେଳକୁ କ୍ୟାଣ୍ଟନ୍‌ମେଣ୍ଟ ସିଟି ସଂଖ୍ୟା ଥିଲା ଅନ୍ୟୂନ ୧୭୦ । ଭୂଗୋଳରୁ ଅବିଚ୍ଛେଦ୍ୟ କିନ୍ତୁ ଆଧିପତ୍ୟର 'କମାଣ୍ଡ୍ ଷ୍ଟ୍ରକ୍‌ଚର୍'; ଅର୍ଥାତ୍ ରେଲ୍‌ଲାଇନ୍ ଟେଲିଗ୍ରାଫ୍

ପ୍ରଶସ୍ତରାସ୍ତା; ସର୍ବୋପରି, ଗୋରା ଓ କଳା ଲୋକଙ୍କ ସକାଶେ ନିର୍ଦ୍ଧାରିତ ଅଲଗା ବସତି । ଯା ବାହାରେ ସୃଷ୍ଟିକରିଚନ୍ତି ଭିନ୍ନରକମ ଗାଁ, ଯାହାକୁ କହୁଛୁଁ ହିଲ୍‌ଷ୍ଟେସନ୍, ସିମ୍‌ଲା ଉଟି ଦାର୍ଜିଲିଙ୍ଗ୍ । ଆଦୌ ଗାଁ ନୁହେଁ, ଇଂଲିଶ୍ କଣ୍ଟ୍ରିସାଇଡ୍‌ର ଅକ୍ଷମ ଅନୁକରଣ । ଅନ୍ୟ ଶବ୍ଦରେ, ଏଇ ସହର ଓ ଗାଁ ଏପରି ଏକ ପରିସର, ଯୋଉଠି ଭାରତୀୟଙ୍କ ଜାଗା ନାହିଁ, ଭାରତୀୟ ଅବଶ୍ୟ ଶାସିତହୁଏ ସେଇ ପରିସରରୁ । ପ୍ରକୃତ ପରିଚୟ ତେଣୁ ରାଜଧାନୀ, ସହର ନୁହେଁ । ରାଜଧାନୀ ବୋଲି, ନିରନ୍ତର ଘୋଷଣାକରେ ସାମ୍ରାଜ୍ୟର ଗୌରବ, ଭାରତୀୟର ପରାଧୀନତା ।

ଏତେକଥା ଲେଖନ୍ତିନାହିଁ ସ୍ୱାଧୀନ ଭାରତ ଯଦି ନଗରାୟନରେ ଏ ଆଦର୍ଶକୁ ବର୍ଜନ କରିଥାଆନ୍ତା । ନୂଆ ସହର ଭୁବନେଶ୍ୱରକୁ ଖାଲି ଦେଖନ୍ତୁ । ଆୟତକ୍ଷେତ୍ର ଆକାରରେ ପରିକଳ୍ପିତ, ସବୁଠୁଁ ଉଚ୍ଚା ଜାଗାରେ ରହନ୍ତି ଗଭର୍ଣ୍ଣର; ତାଙ୍କ ଘର ଆଗରେ ଚଉଡ଼ାରାସ୍ତା, ତା ଦିକଡ଼ରେ ଯେତେ ଉଦ୍ୟାନବେଷ୍ଟିତ ବଡ଼ବଡ଼ ଘର, ସେଥିରେ ରହନ୍ତି ମନ୍ତ୍ରୀ କି ସେକ୍ରେଟାରୀ । ସେ ଲାଇନ୍ ଯୋଉଠି ସରିଚି, ସେଠି ରହିଚି କ୍ଲବ୍ । ଋକିରି ଅନୁସାରେ ଘରର ଆକାର ଓ ଅବସ୍ଥାନ । କିରାଣୀ ରହନ୍ତି ଟୁଙ୍ଗୀଘରେ ଓ ସେକ୍ରେଟାରୀଙ୍କ ଘର ପାଖରୁ ବେଜାଏ ଦୂରରେ । ରାଜଭବନରୁ ରାଜମହଲ ଛକଯାଏଁ ଘରଗୁଡ଼ାକ କ୍ରମଶଃ ସାନହୋଇଯାଇ ବୁଝାଇଦେଉଛି ଅନ୍ତେବାସୀର ଆପେକ୍ଷିକ ସାମାଜିକ ଅବସ୍ଥାନ । ସେକ୍ରେଟାରିଏଟ୍ ପଛକୁ ରହିଚି ସୈନ୍ୟଛାଉଣି । ଫାଙ୍କାଜାଗା ଅବସରପ୍ରାପ୍ତ ହାକିମମାନଙ୍କ ଅକ୍ତିଆରରେ; ତାଙ୍କରି ଲାଗି ପାର୍କ ଆଉ କ୍ଲବ୍ । ସର୍ବସାଧାରଣ ଏ ସହରରେ ଅପାଙ୍‌କ୍ତେୟ, କାହିଁକିନା, ଦେଶର ଉତ୍ପାଦନବ୍ୟବସ୍ଥା ସହିତ ସହରର ଯୋଗାଯୋଗ ନାହିଁ । ଗଣତନ୍ତ୍ରରେ ଏ ସହରର ଅଧିବାସୀମାନଙ୍କ ଆତ୍ମପରିଚୟ ଉପର-ତଳ କ୍ରମରେ ସଜ୍ଜିତ ସାହେବ-ବିବି-ଗୁଲାମ୍, ଭୋଟର୍ ଆଉ କନ୍‌ସିଉମର୍ । ସମଗ୍ର ଓଡ଼ିଆସମାଜର ଦର୍ପଣ ଏଇ ରାଜଧାନୀ, ଓଡ଼ିଶାର ଆଧୁନିକତାର ପ୍ରତିଚ୍ଛବି । ଅର୍ଥାତ୍, ଇଂରେଜ୍‌ର ଗ୍ରାମ୍ୟ ପ୍ରତିରୂପ, ଔପନିବେଶିକ ପ୍ରଜାର ଆତ୍ମସନ୍ତୁଷ୍ଟ ସଂସ୍କରଣ । କେହି ଋହେଁନା ପରିବର୍ତ୍ତନ, କାହିଁକିନା, ସ୍ଥିତାବସ୍ଥାକୁ ବଞ୍ଚାଇରଖିବା ମଧ୍ୟବିତ୍ତର ଅଭିପ୍ରେତ । ନ୍ୟସ୍ତସ୍ୱାର୍ଥ ଶିକ୍ଷିତ ମଧ୍ୟବିତ୍ତର ଜୀବନଦର୍ଶନ: ଆପେ ବଞ୍ଚିଲେ ବାପର ନାଁ ! ସେଥିପାଇଁ, ଲାଲ୍‌କୃଷ୍ଣ ଆଡଭାନୀ ସହର ଭିତରଦେଇ ରଥଯାତ୍ରା କରନ୍ତି, ଗାନ୍ଧି କି ବିନୋବା ପଦଯାତ୍ରା କରୁଥିଲେ ଗାଁଗହଳରେ । ପରିବର୍ତ୍ତନର ମାନସିକତା ଘୁଞ୍ଚିଯାଉଚି ପଛକୁ । ସହର ଏକ୍ଷଣି ମଧ୍ୟବିତ୍ତର ବସତି, ଜାତୀୟତାବାଦୀ ମଧ୍ୟବିତ୍ତ କିନ୍ତୁ କଳ୍ପନାକରିଚି ନୂଆରକମ ବସତି । ଜାତୀୟତାବାଦୀ ମଧ୍ୟବିତ୍ତକୁ ଅସ୍ୱୀକାର କରୁନାହିଁ ନୂତନ ପ୍ରଜନ୍ମ,କିନ୍ତୁ ଅସଲ କାମବେଳକୁ କରୁଚି ପ୍ରତାରଣା । କାରଣ

ହୋଇପାରେ, ଆଧୁନିକତାର ଯୋଉ ବିଶ୍ୱଜନୀନ ବିବର୍ତ୍ତନ ଘଟୁଚି, ତା' ସହିତ ଆମେ ଜଡ଼ିତହେଉଛୁଁ ଦିନକୁ ଦିନ ଅଧିକରୁ ଅଧିକ । ମାତ୍ର ଇଉନିଭର୍ସାଲ୍ ମଡର୍ନିଟି ଯେମିତି ଜାତିରାଷ୍ଟ୍ର ଓ ଜାତୀୟତାବାଦକୁ ମାନେନା, ସେମିତି ସର୍ବମାନବର ସାମ୍ୟ ଓ ସବୁପ୍ରକାର ଆଧିପତ୍ୟର ଅବସାନକୁ ମଧ୍ୟ କରିଚି ଅନ୍ତିମ ଅଭିପ୍ରାୟ ।

ଆଧୁନିକ ଯୁଗରେ ପ୍ରବେଶକରିଛୁଁ ଇଂରେଜ୍‌ର ହାତଧରି, ଅଥଚ ଇଂରେଜ୍ ଆସିନଥିଲା ଏଠି ରହିଯିବ ବୋଲି । ସେଥିପାଇଁ, ରାଜନୀତି ଓ ଅର୍ଥନୀତିକୁ କ୍ରମାଗତ ଦୁଇଶବର୍ଷ ନିୟନ୍ତ୍ରଣକରିଚି ସିନା, ସିଭିଲ୍ ସୋସାଇଟି ଭିତରକୁ ପ୍ରବେଶ କରିନାହିଁ । କରିନାହିଁ ବୋଲି, ରାଷ୍ଟ୍ର ନିର୍ଣ୍ଣୟକରିଚି ରାଜନୀତିର ଆକାର-ପ୍ରକାର, ସିଭିଲ୍ ସୋସାଇଟି କରିନାହିଁ । ଆଧୁନିକ ଯୁଗରେ, ଇଂରେଜ୍ ଛାଡ଼ିଯାଇଥିବା ରାଷ୍ଟ୍ରସଂଗଠନକୁ ଭାରତ ବଦଳାଇ ପାରିନାହିଁ । ଦେଶ ସ୍ୱାଧୀନହେବା ଉତାରୁ ଗଣତନ୍ତ୍ର ଅବଶ୍ୟ ଆସିଚି, ଦରିଦ୍ର ନିରକ୍ଷର ନିର୍ବିତ୍ତ ଜନସାଧାରଣ ପାଇଚନ୍ତି ଅବଶ୍ୟ ପ୍ରତିନିଧି ନିର୍ବାଚନର ଅଧିକାର, ମାତ୍ର ସେ ଅଧିକାର ବଳରେ ରାଷ୍ଟ୍ରର ଗଠନତନ୍ତ୍ର ଓ ରାଜନୀତି ବଦଳିଯିବା କଥା । ଗଣତନ୍ତ୍ର କିନ୍ତୁ ପୌରସମାଜକୁ ଉଦ୍ଦୀପିତ କରିପାରିନାହିଁ ଆଶାନୁରୂପ । ତଥାପି ପ୍ରତିବେଶୀ ରାଷ୍ଟ୍ର ଗୁଡ଼ିକ ଯେତେବେଳେ ଗଣତନ୍ତ୍ରକୁ ରକ୍ଷାକରି ପାରୁନାହାଁନ୍ତି, ଅନୁରୂପ ସଂକଟ ଏଠି ଦେଖାଦେଇନାହିଁ ଅଦ୍ୟାବଧି; ଏପରିକି, ଇନ୍ଦିରାଗାନ୍ଧିଙ୍କ ଜରୁରୀକାଳୀନ ଉତ୍ପାତକୁ ସୁଦ୍ଧା ପରାଭୂତକରିଚନ୍ତି ଆସାମର ଜନସାଧାରଣ । ସାମାନ୍ୟ କୃତିତ୍ୱ ନୁହେଁ ସିଭିଲ୍ ସୋସାଇଟି ପକ୍ଷରେ । କିନ୍ତୁ ଶାସକଶ୍ରେଣୀ ଯେହେତୁ ମଧ୍ୟବିତ୍ତ, ତାହାରି ସ୍ୱାର୍ଥରେ ରାଷ୍ଟ୍ର ମଧ୍ୟ କାମନାକରୁଚି ଇଉନିଭର୍ସାଲ୍ ମଡର୍ନିଟିରେ ନିମଜ୍ଜିତ ହେବାକୁ । ସେଇ ପ୍ରତ୍ୟାଶୀ ଗଠନକରୁଚି ରାଷ୍ଟ୍ରର ଚରିତ୍ର, ଯୋଉ ଚରିତ୍ର ଜନସାଧାରଣଙ୍କ ପାଇଁ ସଦର୍ପ ଏକ ଧମକ, କାହିଁକିନା, ରାଷ୍ଟ୍ର ଚାହୁଁଚି ଯୋଉ ଆଧୁନିକତା, ତା' ପ୍ରକୋପରେ ନିର୍ବିତ୍ତ ଶ୍ରମଜୀବୀ ଉଜୁଡ଼ିଯିବା ଅନିବାର୍ଯ୍ୟ । ଅନ୍ୟ ଶବ୍ଦରେ, ରାଜନୀତି ମାଧ୍ୟମରେ ହିଁ ଦେଶବାସୀଙ୍କ ଅଭିଜ୍ଞତା ଭିତରକୁ ପଶିଚି ଆଧୁନିକତା; ରାଜନୀତି ତେଣୁ ମାଗିଆଣିଥିବା ତିଅଣ ନୁହେଁ, ରାଜନୀତି ହିଁ ଇଟା ଉପରେ ଇଟା ଥୋଇ ଘର ତିଆରିକରିବା ଭଳି ଗଢ଼ିଚି ଦେଶଟାକୁ । ଗଢ଼ିଚି ବୋଲି, ଦେଶଟା ଆଉ ସିଭିଲ୍‌ସୋସାଇଟି ହୋଇ ରହିନାହିଁ, ପରିଣତ ହୋଇଚି ଆପାଦମସ୍ତକ ରାଜନୀତିକ ସମାଜ । ହୋଇଚି ବୋଲି, ରାଜନୀତି ଯେମିତି ବିଦୀର୍ଣ୍ଣକରୁଚି ସମାଜକୁ, ଏକାବେଳକେ ସେମିତି ସଂଗଠିତକରୁଚି ଦରିଦ୍ରକୁ ବଞ୍ଚିତକୁ ନିର୍ଯାତିତକୁ । ସନ୍ଦେହ ନାହିଁ, ଏ କାମରେ ସହାୟ ହୋଇଚି ଗଣତନ୍ତ୍ର, ଯା ଆଧୁନିକତାର ଅବଦାନ । ଦେଶବତ୍ସଳ ସଚେତନ ମଣିଷର ଆକାଂକ୍ଷା ତେଣୁ ରାଷ୍ଟ୍ରର ପ୍ରତିରୋଧ, ସଂଗଠିତ ଉତ୍ତପ୍ତ ପ୍ରତିରୋଧ ।

◘◘◘

# ବନ୍ଦେ ମାତରମ୍

'ପ୍ରତିରୋଧ' ରାଜନୀତିକ ପ୍ରତୀକ ହେଲେସୁଦ୍ଧା, ପ୍ରତ୍ୟେକ ଦେଶର ଇତିହାସର ରହିଚି ନିଜସ୍ୱ ମୌଳିକତା । ଭାରତରେ ଯେତେ ଗଣସଂଗ୍ରାମ ସଂଘଟିତ ହୋଇଚି, ତା'ର ବିବିଧ ପଦ୍ଧତି ସେଇ ମୌଳିକତାର ନିଦର୍ଶନ । ସଶସ୍ତ୍ର ପ୍ରତିରୋଧର ଢେର୍ ନଜିର୍ ରହିଚି, କିନ୍ତୁ ଭାରତର ବୈଶିଷ୍ଟ୍ୟ ହେଲା, ସଶସ୍ତ୍ର ପ୍ରତିରୋଧର ସମାନ୍ତରାଳ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ । ଆନ୍ଦୋଳନ ଶାନ୍ତିପୂର୍ଣ୍ଣ ହେବା ମାନେ, ଜନଶକ୍ତି ଉପରେ କର୍ତ୍ତୃପକ୍ଷକୁ ନିରସ୍ତକରି ଦାବିହାସଲ । ବିଶାଳ ଜମାୟତ୍‌ର ଶୃଙ୍ଖଳାବଦ୍ଧ ଆଚରଣ ଏଇ ଶକ୍ତିର ଉତ୍ସ । ଶାନ୍ତିପୂର୍ଣ୍ଣ ମାନେ ଅବଶ୍ୟ ଅହିଂସ ନୁହେଁ । କର୍ତ୍ତୃପକ୍ଷ ଅଯଥା ବଳପ୍ରୟୋଗ କଲେ ଲୋକ ବି ଢେଲାପଥର ଫିଙ୍ଗିବେ, ଠେଙ୍ଗାବାଡ଼ି ଶାବଳକୁରାଢ଼ୀ କାଢ଼ିବେ । ଲୋକଙ୍କ ଚିରପୋଷିତ ଧାରଣା, ଅତ୍ୟାଚାରୀ ରାଜଶକ୍ତି ବିରୋଧରେ ଏଭଳି ବଳପ୍ରୟୋଗ ଖାଲି ନ୍ୟାୟସଂଗତ ନୁହେଁ, ଏକାବେଳକେ ପୁରୁଷକାର । ବଳପ୍ରୟୋଗ ବିନା ଜୟଲାଭ ତେଣୁ ସେନାବାହିନୀ ବିରୋଧରେ ଯୁଦ୍ଧରେ ଅବତୀର୍ଣ୍ଣହେବା ନୁହେଁ । ସଂଗ୍ରାମପଦ୍ଧତି ସଶସ୍ତ୍ର ନୁହେଁ ମାନେ ବିନା ଯୁଦ୍ଧରେ ଆତ୍ମସମର୍ପଣ ନୁହେଁ । ଅସ୍ତ୍ରଧାରଣ କେବଳ ଅବସ୍ଥା ଦେଖି ବ୍ୟବସ୍ଥା ମାତ୍ର । ଶାନ୍ତିପୂର୍ଣ୍ଣ ଜମାୟତ୍‌କୁ ଓଡ଼ିଆରେ କହନ୍ତି ମେଳି କି ହରତାଳ, କ୍ଷେତ୍ରବିଶେଷରେ ଧର୍ମଘଟ । ବନାରସରେ କହନ୍ତି ଧର୍ଣ୍ଣା, ମହାରାଷ୍ଟ୍ରରେ ବନ୍‌ଧ, କର୍ଣ୍ଣାଟକରେ କୁଟା, ପଞ୍ଜାବରେ ଡାମ୍, ଆସାମରେ ମେଳ । ଇଂରେଜୀରେ ପିକେଟିଙ୍ଗ୍ । ପ୍ରଜାମେଳି ବେଳେ ଗଛକାଟି କିମ୍ବା ବ୍ୟାରିକେଡ୍ ପୋତି ଶତ୍ରୁର ଗତିରୋଧ କରାଯାଇଚି, ମୁଣ୍ଡବୁଲା ଜାଲ ଫୋପାଡ଼ି ଲାଠିଆଳକୁ କରାଯାଇଚି ନିଷ୍କ୍ରିୟ । ପ୍ରଚଳିତ ଏଇ ପଦ୍ଧତିଗୁଡ଼ିକୁ ଗାନ୍ଧି ନିଜ ରୀତିରେ ବ୍ୟବହାର କରିଚନ୍ତି । ମାତ୍ର ଯୋଡ଼ିଦେଇଚନ୍ତି ଅହିଂସା-ମନ୍ତ୍ର । ଅର୍ଥାତ୍ ଛିଡ଼ାହୋଇ ମାଡ଼ଖାଇବାର ବିକଳ୍ପ ନାହିଁ । ଇତିହାସର ସମର୍ଥନ କିନ୍ତୁ ମିଳିବ ନାହିଁ; ମିଳିବ ନାହିଁ ବୋଲି, ୧୯୪୨ ଅଗଷ୍ଟ-ଆନ୍ଦୋଳନ ବେଳେ କହିଚନ୍ତି, ଡୁ ଅର୍ ଡାଏ । ଟିଳକ୍ ମଧ୍ୟ ଇଂରେଜ୍-ସଂହାରକୁ ତୁଳନାକରିଚନ୍ତି ଶିବାଜିଙ୍କ ଆଫ୍‌ଜଲ୍ ଖାଁ ବଧ ସାଙ୍ଗରେ । ତା'ଛଡ଼ା, ବିଶ୍ୱାସଘାତକକୁ ନିଆଁ-ପାଣି ବାସନ୍ଦକରିବା କି ଏକଘରକିଆ କରିବା ଥିଲା ପରିଚିତ ପଦ୍ଧତି । ଫକୀରମୋହନଙ୍କ ଏକ ଗଳ୍ପରେ ଲୁଣମରା ଜଗୁଥିବା

ବାରିକ-ପୁଲିସ୍‌କୁ ଜାତିଚ୍ୟୁତ କରାଯାଇଚି । ଏ ପଦ୍ଧତିଗୁଡ଼ାକ ସାଙ୍ଗରେ ରହିଚି ଦେଶର ମାଟିର ଯୋଗ ।

କିନ୍ତୁ ଆଧୁନିକତାରେ ଶିକ୍ଷିତ ବଙ୍କିମ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟ, ଦେଶର ପ୍ରଥମ ଗ୍ରାଜୁଏଟ୍ ଓ ଡେପୁଟି ମ୍ୟାଜିଷ୍ଟ୍ରେଟ୍; ସିପାହୀବିଦ୍ରୋହର କୋଡ଼ିଏବର୍ଷ ପୂର୍ବରୁ ଜନ୍ମହୋଇଥିଲେ ମଧ୍ୟ, ବିହ୍ୱଳହୋଇ ହଠାତ୍ ଲେଖୁଚନ୍ତି, 'ଏ ଜୀବନକୁ ନେଇ ମୁଁ କରିବି କ'ଣ?' କ'ଣ ଅବା କରାଯାଇପାରେ? ସଦୁତ୍ତର ପାଇବାକୁ ଲେଖୁଚନ୍ତି *ଆନନ୍ଦମଠ* ଉପନ୍ୟାସ । ରାଜନୀତିରେ ପ୍ରବେଶ କରିନାହାଁନ୍ତି ଆମୃତ୍ୟୁ, ଅଥଚ ତାଙ୍କ ସାହିତ୍ୟକର୍ମର ମୂଳପ୍ରେରଣା ରାଜନୀତି । ଆଖ୍ୟାନ ଶୁଣାଇବାକୁ ତେଣୁ ଲେଖୁନାହାଁନ୍ତି ଉପନ୍ୟାସ; ଅଭିପ୍ରାୟ, ରହସ୍ୟମୟ ଏକ 'ଭିସନ୍'ର ଅନୁସରଣ । ବିଶେଷତଃ ବଙ୍କିମ୍ ଯେହେତୁ ସେକାଳର ମଧ୍ୟବିତ୍ତର ପ୍ରତିନିଧି ତଥା ଆଖ୍ୟାନର କଥକ, ମାନଚିତ୍ରର ଜଡ଼ତ୍ୱରୁ ଦେଶକୁ ଉଠାଇଆଣି ଉଭାକରିଦେଇଚନ୍ତି ଦେଶବାସୀଙ୍କ ଆଖିଆଗରେ, ବିମୂର୍ତ୍ତ ମାତୃମୂର୍ତ୍ତି, ଯା ନିରକ୍ଷବୃତ୍ତ ପରି ଭୌଗୋଳିକ ଧାରଣା ନୁହେଁ, ସକଳ ଭାରତସନ୍ତାନଙ୍କ ଜନନୀ, ଭାରତମାତା । ତାଙ୍କରି ପୂଜାମନ୍ତ୍ର — 'ବନ୍ଦେ ମାତରମ୍' । ଅରବିନ୍ଦ ସେଥିପାଇଁ କହନ୍ତି, ମା' ଛାତି ଉପରେ ବିଦେଶୀ ଚଢ଼ିବସିଚି ଦେଖି ଯୋଉ ସନ୍ତାନ ଅସ୍ତ୍ର ଉତ୍ତୋଳନକରେନା, ସିଏ ସାନ୍ତ୍ୱନାପ୍ରୟାସୀ ନପୁଂସକ । ଅର୍ଥାତ୍, ଇଂରେଜ୍‌କୁ ସଶସ୍ତ୍ର ପ୍ରତିରୋଧ ଆଣିପାରେ ଦେଶବାସୀଙ୍କ ଭିତରେ ଭାତୃତ୍ୱର ଐକ୍ୟ, ସଂକଳ୍ପ ଓ ଆତ୍ମଦାନର ଆକୁତି । ସଶସ୍ତ୍ର ପ୍ରତିରୋଧ ସାକ୍ଷାତ୍ କର୍ମଧାରା ହେଲେସୁଦ୍ଧା, ମୂଲ୍ୟମାନ ବା ଭ୍ୟାଲିଉ ନୁହେଁ, ବଙ୍କିମ୍ ଯୋଉ ମୂଲ୍ୟମାନ ଭାରତୀୟ ମନନ ପରମ୍ପରାରେ ରୋପଣକଲେ, ତା' ପ୍ୟାଟ୍ରିଅଟିକ୍ସ, ସ୍ଥାନ-କାଳ ନିର୍ବିଶେଷରେ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ । ସେ ଭ୍ୟାଲିଉ ମଣିଷର ସହଜାତ ନୁହେଁ, କାହିଁକିନା, ମାନବଶିଶୁ ଯେତେବେଳେ ଭୂମିଷ୍ଠହୁଏ, ଚେତନାର ରୂପ ଥାଏ ଶୂନ୍ୟପରିସର । ବସ୍ତୁ, ବିଷୟ, ଭାଷା ଇତ୍ୟାଦିର ସଂସର୍ଗରୁ ସେ ପରିସରରେ ଭାବ ଭୟ ବର୍ଣ୍ଣ ଗନ୍ଧ ଶବ୍ଦ ଇତ୍ୟାଦି ହୁଏ କ୍ରମାଗତ ପ୍ରତିଭାତ । ପୁଣି ବିପରୀତ ସଂସର୍ଗରୁ, ସଞ୍ଚିତ ଅଭିଜ୍ଞତା ଭିତରେ ସୃଷ୍ଟିହୁଏ ଆବର୍ତ୍ତନ କି ମନ୍ଥନ । ଚେତନା ପାଇଯାଏ ନିରନ୍ତର ଗତିଶୀଳତା । ଭ୍ୟାଲିଉ(ଯେପରି, ଅହିଂସା) ତେଣୁ କୋଉ ଜୈବିକ ଉତ୍ତରାଧିକାର ନୁହେଁ; ଯା ଉତ୍ତରାଧିକାର, ତା କେବଳ ପ୍ରଜାତିଗତ ସ୍ୱଭାବ ବା ନେଚର୍ । ବିପରୀତ ମେରୁରେ କଲଚର୍ ବା କୃଷ୍ଟି । କୃଷ୍ଟି ମାନେ ଚିତ୍ତକର୍ଷଣ, ଅର୍ଥାତ୍ ମୂଲ୍ୟ ଓ ମର୍ମାର୍ଥକୁ କ୍ରମାଗତ ଅର୍ଜନ ଓ ସଂଚୟ । ଏଇ ପ୍ରେକ୍ଷିତରୁ ବଙ୍କିମ୍‌ଙ୍କ ଅବଦାନ ବିବେଚ୍ୟ, କାହିଁକିନା, ପରାଧୀନତା ଯେପରି ଏକ ରାଜନୀତିକ ସୀମାବଦ୍ଧତା, ପ୍ରତିବାଦ ପ୍ରତିରୋଧ-ଚେତନା

ସେହିପରି ସୀମାବଦ୍ଧତାକୁ ଅତିକ୍ରମ କରିବା ପ୍ରେରଣା । ଏବଂ ସେଇ ବ୍ୟଞ୍ଜନାରେ ସନ୍ତ୍ରାସ ମଧ୍ୟ ଏକ ଭ୍ୟାଲିଉ, ସୀମାବଦ୍ଧତାକୁ ଅତିକ୍ରମକରିବା ସକାଶେ ଚିତ୍ତବୃତ୍ତିର ବିସ୍ଫୋରଣ । ସେଇ ଭ୍ୟାଲିଉ(ଉଭୟ ପ୍ରାଇସ୍ ଓ ମୂଲ୍ୟବୋଧ) ଫରାସୀ ବିପ୍ଳବରୁ ଆରମ୍ଭକରି ଆଧୁନିକ ଇରାକ୍‌ଯାଏଁ ପରିବ୍ୟାପ୍ତ । ଅର୍ଥାତ୍, ପଛରେ ରହିଚି ଇତିହାସର ଅନୁମୋଦନ । ଏକ୍ଷଣି, ଅବନତ ଭାରତର ସଚେତନ ଓ କ୍ରୁଦ୍ଧ ସନ୍ତାନ ବଙ୍କିମ୍‌ଙ୍କ ପ୍ରତିକ୍ରିୟାକୁ ଦେଖାଯାଉ; *ଆନନ୍ଦମଠ*କୁ ଇଂରେଜୀକୁ ଅନୁବାଦ କରିଚନ୍ତି (୧୯୧୦?) ଅରବିନ୍ଦ, ମାତ୍ର ସେ ତର୍ଜମା ଅସଂପୂର୍ଣ୍ଣ । ଆଖ୍ୟାନଅଂଶକୁ ତେଣୁ ମୂଳରଚନାରୁ ଉଦ୍ଧାର କରୁଚି : —'ଅଗନାଗ୍ନି ବନସ୍ତ, ଏତେ ନିଘଞ୍ଚ ଯେ ଭୂଇଁରେ ଖରାପଡ଼େନା; "ବିଚ୍ଛେଦଶୂନ୍ୟ ଛିଦ୍ରଶୂନ୍ୟ... ପଲ୍ଲବେର୍ ଅନନ୍ତସମୁଦ୍ର କ୍ରୋଶେର୍ ପର୍ କ୍ରୋଶ୍... ପାତାର୍ ଅନନ୍ତ ମର୍ମର୍ ଏବଂ ବନ୍ୟ ପଶୁପକ୍ଷୀର୍ ରବ୍ ଭିନ୍ନ ଅନ୍ୟ ଶବ୍ଦ ତାହାର୍ ଭିତର ଶୁଣାଯାୟନା । ...ତାହାତେ ରାତ୍ରିକାଲ୍... କାନନେର ଭିତରେ ତମୋରାଶି ଭୂଗର୍ଭସ୍ଥ ଅନ୍ଧକାର୍ ନ୍ୟାୟ୍ । ...ସେଇ ଅନନୁଭବନୀୟ ନିସ୍ତବ୍ଧ ମଧେ ଶବ୍ଦ ହଇଲ୍ 'ଆମାର୍ ମନଷ୍କାମ୍ କି ସିଦ୍ଧ ହଇବେ ନା?' ...ଏଇରୂପ୍ ତିନିବାର୍ ସେଇ ଅନ୍ଧକାରସମୁଦ୍ର ଆଲୋଡ଼ିତ୍ ହଇଲ । ତଖନ୍ ଉତ୍ତର୍ ହଇଲ 'ତୋମାର୍ ପଣ୍ କି?' ପ୍ରତ୍ୟୁତ୍ତରେ ବଲିଲ, 'ପଣ୍ ଆମାର୍ ଜୀବନସର୍ବସ୍ୱ ।' ପ୍ରତିଶବ୍ଦ ହଇଲ, 'ଜୀବନ୍ ତୁଚ୍ଛ, ସକଲେଇ ତ୍ୟାଗ୍ କରିତେ ପାରେ ।' 'ଆର୍ କି ଆଛେ? ଆର୍ କି ଦିବ ।' ତଖନ୍ ଉତ୍ତର୍ ହଇଲ, 'ଭକ୍ତି' ।"

ଏଇ ହେଲା ବଙ୍କିମ୍‌ଙ୍କ ଭିସନ୍, ପାଟ୍ରିଅଟିଜ୍ମର ଭିସନ୍। ଦେଶମାତୃକା ଦାବିକରିଚନ୍ତି ଜୀବନ ନୁହେଁ, ଅଟଳା ଭକ୍ତି ।

୧୭୭୦ ଖ୍ରୀଷ୍ଟାବ୍ଦ। ଗାଁ ନାଁ ପଦଚିହ୍ନ । ମୁଣ୍ଡଫଟା ଖରା । ଘରଗୁଡ଼ାକ ଖାଁ ଖାଁ କରୁଚି । ଜନମାନବଶୂନ୍ୟ ସେଇ ଜନପଦରେ ଆଜି ଭିକଦେବା ପାଳି, କିନ୍ତୁ ଭିକାରୀ ଦିଶୁନାହାଁନ୍ତି ଗାଁଦାଣ୍ଡରେ । ସଙ୍ଗାକୁ ତନ୍ତ ଟେକିଦେଇ ତଳେପଡ଼ି ତନ୍ତୀ କାନ୍ଦୁଚି । ଦୋକାନୀ ତାଟି କିଳିଦେଇଚି, ଅବଧାନ କୁଞ୍ଚିପକାଇ ଛାଡ଼ିଦେଇଚି ଚାଟଶାଳୀ । ଏପରିକି, କୋଡ଼ପିଲା କାନ୍ଦିବାକୁ ଡରୁଚି । ବିଲରେ ଗୋରୁ ଚରୁନାହିଁ, ମଶାଣିରେ ଖାଲି ଶିଆଳ ଶାଗୁଣା । ସେଇଠି ବିଭବଶୂନ୍ୟ ଗୋଟେ ପକାଘରେ ମଧ୍ୟାହ୍ନ ଅନ୍ଧାରରେ ମୁହଁଢ଼ାଙ୍କି ଏକ ଦମ୍ପତି ବସି ଭାଳୁଚି, ଆଖି ଆଗରେ ଦୁର୍ଭିକ୍ଷ ।

୧୭୬୮ରେ ପଡ଼ିଲା ଅପାଳକ, ତହିଁ ଆରବର୍ଷ ଚାଉଳ ହେଲା ମହଙ୍ଗା, ମାତ୍ର ଖଜଣା କମିଲାନାହିଁ କି ଜୋରଜୁଲୁମ୍ କମିଲା ନାହିଁ । ଦିନରେ ଗୋଟିଏ ବକ୍ତ ଖାଇ ଲୋକ ପ୍ରାଣ ବଞ୍ଚାଇଲେ ।

ଏ ବିବରଣ କାଳ୍ପନିକ ନୁହେଁ, ବେଙ୍ଗଲ୍ ପ୍ରେସିଡେନ୍ସିର ଏକତୃତୀୟାଂଶ ଲୋକ ଯେ ଦୁର୍ଭିକ୍ଷର ଶିକାର ହୋଇଚନ୍ତି, ହଣ୍ଟର୍ ସେକଥା ଲେଖିଚନ୍ତି *Annals of Rural Bengal* ରେ : All through the stifling summer of 1770 the people went on dying. The husbandmen sold their cattle, they sold their implements of agriculture, they devoured their seed-grain, they sold their sons and daughters, till at length no buyer of children could be found, they ate the leaves of trees and grass of the field, and in June 1770 the Resident at the Durbar affirmed that the living were feeding on the dead. Day and night a torrent of famished and diseasestricken wretches poured into great cities.

ପଦଚିହ୍ନ ଗାଁର ସେଇ ଦମ୍ପତି ମହେନ୍ଦ୍ର ଓ କଲ୍ୟାଣୀ; ଖାଦ୍ୟାନ୍ୱେଷଣରେ ଯାଉଚନ୍ତି ଗାଁଛାଡ଼ି ସହରକୁ; ବାଟରେ ହାବୁଡ଼ିଚନ୍ତି ଡକେଇତ । ଫାଙ୍କାପଡ଼ିଥିବା ସରାଇଘରେ ସ୍ତ୍ରୀକୁ ବସାଇରଖି ଶିଶୁକନ୍ୟାପାଇଁ ଦୁଧ ଖୋଜିବାକୁ ବାହାରିଯାଇଚି ମହେନ୍ଦ୍ର । ମାତ୍ର କ୍ଷୁଧାକାତର ଶୀର୍ଣ୍ଣ ଦେହ ଦସ୍ୟୁ ଓରଉଣ୍ଡି ଧରିନେଇଯାଇଚନ୍ତି ମା-ଝିଅଙ୍କୁ । ଫେରିଆସି ମହେନ୍ଦ୍ର ଆଉ ଖୋଜି ପାଇନାହିଁ । ମାତ୍ର ଦସ୍ୟୁଙ୍କୁ ଦରକାର ଚାଉଳ । ଚାଉଳ ଜାଗାରେ ପାଇଚନ୍ତି ଗହଣାଗାଣ୍ଠି । ଭାଗବଣ୍ଟାବେଳେ ମରାମରି ହୋଇଚନ୍ତି । ସେଇ ଅବସରରେ ଝିଅକୁ ଧରି କଲ୍ୟାଣୀ ପଳାଇଯାଇଚି ଜଙ୍ଗଲ ଭିତରକୁ । ଡକାୟତ ତାକୁ ଖୋଜୁଚନ୍ତି, କଣ୍ଟାଝଟା ମାଡ଼ି ସିଏ ଦୌଡୁଚି ଲହୁଲୁହାଣ ହୋଇ, ଶେଷକୁ ଅଚେତହୋଇ ପଡ଼ିଯାଇଚି ଝଙ୍କାଳିଆ ଗୋଟାଏ ଗଛତଳେ । ହଠାତ୍ ଆବିର୍ଭୂତ ହୋଇଚନ୍ତି ମହାପୁରୁଷ । ଅଦୂରରେ ରହିଚି ପ୍ରାଚୀନ ବୌଦ୍ଧବିହାରର ଭଗ୍ନାବଶେଷ; ତାକୁହିଁ ମଠ କରିଚନ୍ତି ତାଙ୍କ ଶିଷ୍ୟ ସନ୍ତାନଦଳ । ମଠକୁ ଯାଇ କଲ୍ୟାଣୀ ସାଷ୍ଟମ ହୋଇଚି; ଏଣେ ମହେନ୍ଦ୍ର ଖୋଜୁଚି ତାକୁ ଜଙ୍ଗଲ ସାରା ।

୧୭୭୦ ବେଳକୁ ସୁଦ୍ଧା ବୀରଭୂମ୍ ପ୍ରଭୃତି ଅଂଚଳ ଇଂରେଜ୍ ଶାସନାଧୀନ ହୋଇନାହିଁ, ଇଂରେଜ୍ କେବଳ ଦେଓ୍ୱାନି ପାଇଚି । ଇଂରେଜ୍ ଖଜଣା ଆଦାୟକରେ, ପ୍ରଜାଙ୍କ ପ୍ରାଣରକ୍ଷା ଦାୟିତ୍ୱ ନବାବ୍ ମିର୍‌ଜାଫର୍‌ର, ଯିଏ ଆତ୍ମରକ୍ଷାକୁ ମଧ୍ୟ ଅକ୍ଷମ । 'ଗୁଲି ଖାୟ୍ ଆର୍ ଘୁମାୟ୍' । 'ଇଂରେଜ୍ ଟାକା ଆଦାୟକରେ ଆର୍ ଡେସ୍‌ପାଚ୍ ଲେଖେ' । 'ବାଙ୍ଗାଲୀ କାନ୍ଦେ ଆର୍ ଉତ୍‌ସନ୍ନ ଯାୟ୍' । ସେଇ ଖଜଣାଟଙ୍କା କଲିକତା ନିଆଯାଉଥିଲା ଶଗଡ଼ରେ, ସଶସ୍ତ୍ର ପ୍ରହରୀଙ୍କୁ ନେତୃତ୍ୱ ଦେଇଚି ଜଣେ ଗୋରା ପଲ୍‌ଟଣ୍ । ଖରା ଟାଣ ବୋଲି, ରାତିରେ ବାହାରିଚନ୍ତି ରାସ୍ତାକୁ, ଆଉ ମଝିବାଟରେ ମହେନ୍ଦ୍ରକୁ ଦେଖି ଭାବିଚନ୍ତି ଡକାୟତ୍; ଶଗଡ଼ଚକରେ ବାନ୍ଧିଦେଇଚନ୍ତି । ମହାପୁରୁଷଙ୍କ ଆଜ୍ଞାରେ

ସନ୍ତାନ ଭବାନନ୍ଦ ମହେନ୍ଦ୍ରକୁ ଖୋଜିଖୋଜି ଶଗଡ଼ ଆଗରେ ଆସି ପହଞ୍ଚିଚି। ମାତ୍ର ଭାରି ସତର୍କ, କାହିଁକିନା, ଜହ୍ନରାତିରେ ସନ୍ତାନଦଳ ଶଗଡ଼ର ଗତିବିଧି ଲକ୍ଷ୍ୟକରିଚନ୍ତି । ମିଳିତ ଆକ୍ରମଣକରି ଗୋରା-ପଲ୍‌ଟଣ୍‌କୁ ହତ୍ୟାକରିଚନ୍ତି, ଖଜଣାବାକ୍ସକୁ ମଧ୍ୟ ଲୁଟ୍ କରିଚନ୍ତି । ମହେନ୍ଦ୍ର ଭାବିଚି, ଏମାନେ ପରସ୍ୱ ଅପହରଣକାରୀ ଠଗ; ଭବାନନ୍ଦର ସଂସର୍ଗ ତ୍ୟାଗକରିବାକୁ ଉଦ୍ୟତ ହୋଇଚି; ମାତ୍ର ସ୍ତ୍ରୀ ଓ କନ୍ୟାକୁ ଫେରି ପାଇବାକୁ ହେଲେ ଭବାନନ୍ଦକୁ ଅନୁଧାବନ କରିବା ଛଡ଼ା ଗତ୍ୟନ୍ତର ନାହିଁ । ମଠକୁ ଯାଉଁଯାଉଁ, ମହେନ୍ଦ୍ର ମନମାରି ଚାଲୁଚି ଦେଖି, ଭବାନନ୍ଦ ଗାଇଚି *ବନ୍ଦେମାତରଂ* ଗୀତର ପ୍ରଥମ ତିନିଲାଇନ୍ । ବିସ୍ମିତ ମହେନ୍ଦ୍ର କହିଚି, 'ଏ ତ ଦେଶ, ଏ ତ ମା ନୟ୍ ।' ଭବାନନ୍ଦ ଜବାବଦେଇଚି, 'ଆମ୍‌ରା ଅନ୍ୟ ମା ଜାନିନା- ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । ଆମ୍‌ରା ବଲି, ଜନ୍ମଭୂମିଇ ଜନନୀ, ଆମାଦେର୍ ମା ନାଇ, ବାପ୍ ନାଇ, ଭାଇ ନାଇ, ବନ୍ଧୁ ନାଇ, ସ୍ତ୍ରୀ ନାଇ, ପୁତ୍ର ନାଇ, ଘର୍ ନାଇ, ବାଡ଼ି ନାଇ, ଆମାଦେର୍ ଆଛେ କେବଲ୍ ସେଇ ସୁଜଲା, ସୁଫଲା, ମଲୟଜଶୀତଲା, ଶସ୍ୟଶ୍ୟାମଲା- ।' ତହିଁଉତାରୁ ମହେନ୍ଦ୍ର ଜିଗର୍‌କରିଚି, ଭବାନନ୍ଦ ଗାଇଚି ପୁରା ଗୀତଟି

ବନ୍ଦେ ମାତରଂ
ସୁଜଲାଂ, ସୁଫଲାଂ, ମଲୟଜଶୀତଲାଂ,
ଶସ୍ୟଶ୍ୟାମଲାଂ, ମାତରଂ ।
ଶୁଭ୍ର ଜ୍ୟୋସ୍ନା ପୁଲକିତ – ଯାମିନୀଂ
ଫୁଲ୍ଲକୁସୁମିତ - ଦ୍ରୁମଦଳ-ଶୋଭିନୀଂ
ସୁହାସିନୀଂ ସୁମଧୁରଭାଷିଣୀଂ
ସୁଖଦାଂ ବରଦାଂ ମାତରଂ ।
ସପ୍ତକୋଟିକଣ୍ଠ-କଲକଲନିନାଦ-କରାଲେ
ଦ୍ୱିସପ୍ତକୋଟି ଭୁଜୈର୍ଧୃତ ଖରକରବାଲେ
କେ ବଲେ ମା ତୁମି ଅବଲେ
ବହୁବଲଧାରିଣୀଂ ନମାମି ତାରିଣୀଂ
ରିପୁଦଲବାରିଣୀଂ ମାତରଂ ।
ତୁମି ବିଦ୍ୟା ତୁମି ଧର୍ମ
ତୁମି ହୃଦି ତୁମି ମର୍ମ
ତ୍ୱଂହି ପ୍ରାଣାଃ ଶରୀରେ ।
ବାହୁତେ ତୁମି ମା ଶକ୍ତି

ହୃଦୟେ ତୁମି ମା ଭକ୍ତି
ତୋମାରଇ ପ୍ରତିମା ଗଡ଼ି
ମନ୍ଦିରେ ମନ୍ଦିରେ ।
ତ୍ୱଂହି ଦୁର୍ଗା ଦଶପ୍ରହରଣଧାରିଣୀ
କମଳା କମଳଦଳ-ବିହାରିଣୀ
ବାଣୀ ବିଦ୍ୟାଦାୟିନୀ
ନମାମି ତ୍ୱାଂ
ନମାମି କମଲାଂ ଅମଲାଂ ଅତୁଲାଂ
ସୁଜଲାଂ ସୁଫଲାଂ ମାତରଂ
ବନ୍ଦେ ମାତରଂ
ଶ୍ୟାମଲାଂ ସରଲାଂ ସୁସ୍ମିତାଂ ଭୂଷିତାଂ
ଧରଣୀଂ ଭରଣୀଂ ମାତରଂ ।

ଗୀତବୋଲିବା ସରିଗଲେ, ମହେନ୍ଦ୍ର ଦେଖିଲା ଭବାନନ୍ଦ ଆଖିରେ ଲୁହ। ଆଶ୍ଚର୍ଯ୍ୟହୋଇ ପଚାରିଲା, 'ତମେ କିଏ?' ଜବାବ ମିଳିଲା, 'ସନ୍ତାନ' । 'କାହାର ସନ୍ତାନ?' 'ଆଉ କାହାର, ମା'ର ହିଁ ସନ୍ତାନ' । 'ଯୋଉ ସନ୍ତାନ ମା'ର ପୂଜା କରିବାକୁ ଚୋରି ଡକାୟତି କରେ?' 'ନା, ଚୋରି ଡକାୟତି ନୁହେଁ; ଯା ଦେଖିଲ, ଟଙ୍କାଲୁଟ୍, ସେ ଟଙ୍କା କାହାର?' 'କାହିଁକି, ରଜାର!' 'ସିଏ ଫେର୍ କିଏ? କି ଅଧିକାର ତାର ଏ ଟଙ୍କା ଉପରେ? ରଜାର ତ ପ୍ରାପ୍ୟ ରାଜସ୍ୱ!' ବଙ୍କିମ୍‌ଙ୍କ ଟେକ୍ସ୍‌ଟ୍‌ରୁ ସଂଳାପଟାକୁ ଉଦ୍ଧାର କରାଯାଉ ଅତଃପର:

ଭବାନନ୍ଦ : ହିନ୍ଦୁର୍ ରାଜ୍ୟେ ଆବାର୍ ମୁସଲ୍‌ମାନ୍ ରାଜା କି?

ମହେନ୍ଦ୍ର : ତୋମ୍‌ରା ସିପାହୀର୍ ତୋପେର୍ ମୁଖେ କୋନ୍‌ଦିନ୍ ଉଡ଼ିୟାଯାଇବେ ଦେଖିତେଛି ।

ଭବାନନ୍ଦ : ଅନେକ୍ ଶାଲା ସିପାହୀ ଦେଖିୟାଛି- ଆଜଓ ଦେଖିଲାମ୍ ।

ମହେନ୍ଦ୍ର : ଭାଲକରେ ଦେଖନି, ଏକଦିନ୍ ଦେଖିବେ ।

ଭବାନନ୍ଦ : ନାହୟ ଦେଖିଲାମ୍, ଏକ୍‌ବାର୍ ବଇ ତ ଦୁବାର୍ ମର୍‌ବନା ।

ମହେନ୍ଦ୍ର : ତା ଇଚ୍ଛାକରିୟା ମରିୟା କାଜ୍ କି?

ଭବାନନ୍ଦ : ତୋମାକେ ମାନୁଷେର୍ ମତ ମାନୁଷ୍ ବଲିୟା ଆମାର୍ କିଛୁ ବୋଧ୍ ଛିଲ, କିନ୍ତୁ ଏଖନ୍ ଦେଖିଲାମ୍, ସବାଇ ଯା ତୁମିଓ ତା । ଦେଖ ସାପ୍ ମାଟିତେ ବୁକ୍‌ଦିୟା ହାଁଟେ, ତାହାର

ଋଇତେ ନୀଚ୍ ଜୀବ୍ ଆମି ତ ଆର୍ ଦେଖିନା; ସାପେର୍ ଘାଡ଼େ ପା ଦିଲେ ସେଓ ଫଣା ଧରିୟା ଉଠେ । ତୋମାର୍ କି କିଛୁତେଇ ଧୈର୍ଯ୍ୟ ନଷ୍ଟ ହୟନା । ଦେଖ ଯତ ଦେଶ୍ ଆଛେ, -ମଗଧ୍, ମିଥିଲା, କାଶୀ, କାଞ୍ଚି, ଦିଲ୍ଲୀ, କାଶ୍ମୀର୍ -କୋନ୍ ଦେଶେର୍ ଏମନ୍ ଦୁର୍ଦ୍ଦଶା, କୋନ୍ ଦେଶେ ମାନୁଷ୍ ଖେତେ ନା ପେୟେ ଘାସ୍ ଖାୟ୍? କାଁଟା ଖାୟ୍? ଉଇମାଟି ଖାୟ୍? ବନେର୍ ଲତା ଖାୟ୍? କୋନ୍ ଦେଶେ ମାନୁଷ୍ ଶିଆଲ୍ କୁକୁର୍ ଖାୟ୍, ମଡ଼ା ଖାୟ୍? କୋନ୍ ଦେଶେର୍ ମାନୁଷେର୍ ସିନ୍ଦୁକେ ଟାକା ରାଖିୟା ଶୋୟାସ୍ତି ନାଇ, ସିଂହାସନେ ଶାଲଗ୍ରାମ୍ ରାଖିୟା ଶୋୟାସ୍ତି ନାଇ, ଘରେ ଝି ବଉ ରାଖିୟା ଶୋୟାସ୍ତି ନାଇ, ଝି ବଉୟେର୍ ପେଟେ ଛେଲେ ରେଖେ ଶୋୟାସ୍ତି ନାଇ? ପେଟ୍‌ଚିରେ ଛେଲେ ବାର୍ କରେ । ସକଲ୍ ଦେଶେ ରାଜାର୍ ସଙ୍ଗେ ରକ୍ଷଣାବେକ୍ଷଣେର୍ ସମ୍ବନ୍ଧ । ଆମାଦେର୍ ରାଜା ରକ୍ଷାକରେ କଇ? ଧର୍ମ ଗେଲ, ଜାତି ଗେଲ, ମାନ୍ ଗେଲ, କୁଲ୍ ଗେଲ, ଏଖନ୍ ତ ପ୍ରାଣ୍‌ପର୍ଯ୍ୟନ୍ତଓ ଯାୟ୍ । ଏ ନେଡ଼େଦେର୍ ନା ତାଡ଼ାଇଲେ ହିନ୍ଦୁର୍ ହିନ୍ଦୁୟାନୀ ଥାକେ?

ମହେନ୍ଦ୍ର : ତାଡ଼ାବେ କେମନ୍ କରେ?

ଭବାନନ୍ଦ : ମେରେ ।

ମହେନ୍ଦ୍ର : ତୁମି କି ଏକା ତାଡ଼ାବେ? ଏକ୍ ଚଡ଼େ ନା କି?

ଦସ୍ୟୁ ଗାୟିଲ୍ : ସପ୍ତକୋଟୀ କଣ୍ଠ- କଲକଲ-ନିନାଦ କରାଲେ
ସପ୍ତକୋଟୀ ଭୁଜୈର୍ଧୃତ କରବାଲେ
କେ ବଲେ ମା ତୁମି ଅବଲେ-

ମହେନ୍ଦ୍ର : କିନ୍ତୁ ଦେଖିତେଛି ତୁମି ଏକା ।

ଭବାନନ୍ଦ : କେନ ଏଖନି ତ ଦୁଶଲୋକ ଦେଖିୟାଛ ।

ମହେନ୍ଦ୍ର : ତାହାରା କି ସକଲେ ସନ୍ତାନ୍?

ଭବାନନ୍ଦ : ସକଲେଇ ସନ୍ତାନ୍ ।

ମହେନ୍ଦ୍ର : ଆର୍ କତ ଆଛେ?

ଭବାନନ୍ଦ ଏଖନ୍ ହଜାର୍ ହଜାର୍, କ୍ରମେ ଆରଓ ହବେ ।

ମହେନ୍ଦ୍ର : ନାହୟ୍ ଦଶ ବିଶ୍ ହଜାର୍ ହଲ, ତାତେ କି ମୁସଲ୍‌ମାନ୍‌କେ ରାଜ୍ୟଚ୍ୟୁତ କରିତେ ପାରିବେ ?

ଭବାନନ୍ଦ : ପଲାଶୀତେ ଇଂରେଜ୍‌ର୍ କଜନ୍ ଫୌଜ୍ ଛିଲ ?

ମହେନ୍ଦ୍ର : ଇଂରେଜ୍ ଆଉ ବାଙ୍ଗାଲୀତେ ?

ଭବାନନ୍ଦ : ନୟ୍ କିସେ ? ଗାୟେର୍ ଜୋରେ କତ ହୟ- ଗାୟେ ଜିୟାଦାଜୋର୍ ଥାକିଲେ ଗୋଲା କି ଜିୟାଦା ଛୋଟେ ?

ମହେନ୍ଦ୍ର : ତବେ ଇଂରେଜେ ମୁସଲମାନେ ଏତ ତଫାତ୍ କେନ ?

ଭବାନନ୍ଦ : ଧର, ଏକ ଇଂରେଜ୍ ପାଲାୟ୍‌ନା, ମୁସଲ୍‌ମାନ୍ ଗା ଘାମିଲେ ପାଲାୟ୍-ଶର୍‌ବତ୍ ଖୁଁଜିୟା ବେଡ଼ାୟ୍- ଧର ତାର୍ ପର୍, ଇଂରେଜ୍‌ର୍ ଜିଦ୍ ଆଛେ- ଯା ଧରେ ତା କରେ, ମୁସଲ୍‌ମାନେର୍ ଏଲାକାଡ଼ି । ଟାକାର୍ ଜନ୍ୟ ପ୍ରାଣ୍‌ଦେଓୟା, ତାଓ ସିପାହୀରା ମାହିୟାନା ପାୟ୍‌ନା । ତାର୍ ପର୍ ଶେଷ୍‌କଥା ସାହସ୍, କାମାନେର୍ ଗୋଲା ଏକ୍‌ଜାଗା ବଇ ଦଶ୍ ଜାଗାୟ ପଡ଼େନା–ସୁତରାଂ, କଟା ଗୋଲା ଦେଖେ ଦୁଶଜନ୍ ପାଲାଇବାର ଦରକାର୍ ନାଇ । କିନ୍ତୁ ଏକ୍‌ଟା ଗୋଲା ଦେଖିଲେ ମୁସଲ୍‌ମାନେର୍ ଗୋଷ୍ଠୀଶୁଦ୍ଧ ପାଲାୟ୍–ଆର୍ ଗୋଷ୍ଠୀଶୁଦ୍ଧ ଗୋଲା ଦେଖିଲେ ତ ଏକ୍‌ଟା ଇଂରେଜ ପାଲାୟନା ।

ମହେନ୍ଦ୍ର : ତୋମାଦେର୍ କି ଏ ସବ୍ ଗୁଣ୍ ଆଛେ ?

ଭବାନନ୍ଦ : ନା । କିନ୍ତୁ ଗୁଣ୍ ଗାଛ୍‌ଥେକେ ପଡ଼େନା । ଅଭ୍ୟାସ୍ କରିତେ ହୟ୍ ।

ମହେନ୍ଦ୍ର : ତୋମ୍‌ରା କି ଅଭ୍ୟାସ୍ କର ?

ଭବାନନ୍ଦ : ଦେଖିତେଛ ନା ଆମ୍‌ରା ସନ୍ନ୍ୟାସୀ ? ଆମାଦେର୍ ସନ୍ନ୍ୟାସ୍ ଏଇ ଅଭ୍ୟାସେର୍ ଜନ୍ୟ । କାର୍ଯ୍ୟ ଉଦ୍ଧାର୍ ହଇଲେ- ଅଭ୍ୟାସ୍ ସମ୍ପୂର୍ଣ୍ଣ ହଇଲେ- ଆମ୍‌ରା ଆବାର୍ ଗୃହୀ ହଇବ । ଆମାଦେର୍ ଓ ସ୍ତ୍ରୀ କନ୍ୟା ଆଛେ ।

ମହେନ୍ଦ୍ର : ତୋମ୍‌ରା ସେ ସକଲ୍ ତ୍ୟାଗ୍ କରିୟାଛ- ମାୟା କାଟାଇତେ ପାରିୟାଛ ?

ଭବାନନ୍ଦ : ସନ୍ତାନକେ ମିଥ୍ୟାକଥା କହିତେ ନାଇ- ତୋମାର୍ କାଛେ

ମିଥ୍ୟା ବଡ଼ାଇ କରିବନା । ମାୟା କାଟାଇତେ ପାରେ କେ? ଯେ ବଲେ ଆମି ମାୟା କଟାଇୟାଛି, ହୟ୍ ତାର୍ ମାୟା କଖନ ଛିଲନା, ବା ସେ ମିଛାବଡ଼ାଇ କରେ । ଆମ୍ରା ମାୟା କାଟାଇନା- ଆମ୍ରା ବ୍ରତ ରକ୍ଷାକରି । ତୁମି ସନ୍ତାନ୍ ହଇବେ?

ମହେନ୍ଦ୍ର : ଆମାର୍ ସ୍ତ୍ରୀ କନ୍ୟାର ସମ୍ବାଦ୍ ନା ପାଇଲେ ଆମି କିଛୁ ବଲିତେ ପାରିନା ।

ଭବାନନ୍ଦ : ଚଲ, ତବେ ତୋମାର ସ୍ତ୍ରୀ କନ୍ୟାକେ ଦେଖିବେ ଚଲ ।

* * *

ମହେନ୍ଦ୍ର : ଯଦି ସ୍ତ୍ରୀ କନ୍ୟା ତ୍ୟାଗ୍ ନା କରିତେ ହୟ୍ ତବେ ଏ ବ୍ରତ ଆମାକେ ଗ୍ରହଣ୍ କରାଓ ।

ଆଖ୍ୟାନ ଆରମ୍ଭରେ ଦେଶମୁକ୍ତିର ଏକମାତ୍ର ସର୍ତ୍ତ ବୋଲି 'ଭକ୍ତି'କୁ ଚିହ୍ନଟ କରିଥିଲେ ବଙ୍କିମ୍, ଏଥର ଭକ୍ତି ସାଙ୍ଗରେ ଯୋଡ଼ିଦେଲେ 'ଶକ୍ତି' । ଫେର୍ ବ୍ରହ୍ମଚର୍ଯ୍ୟ ଓ ସନ୍ନ୍ୟାସ, କାହିଁକିନା, ଦେଶୋଦ୍ଧାର କୋଉ ପ୍ରକଳ୍ପ ନୁହେଁ, ରୀତିମତ ବ୍ରତଯାପନ, ସଂଘବଦ୍ଧ ବ୍ରତଯାପନ । ମାତୃଭୂମି ପ୍ରତି ସନ୍ତାନର ଦାୟବଦ୍ଧତା ଯେହେତୁ ପରମାର୍ଥ ସଂଧାନ ଭଳି ଏକ ଏକାଗ୍ର ଆଧ୍ୟାତ୍ମିକ ପ୍ରକ୍ରିୟା, ଅସ୍ତ୍ରଧାରଣ କେବଳ ଆନୁଷଙ୍ଗିକ । ମାତ୍ର, ପ୍ରକୃତରେ ଆନୁଷଙ୍ଗିକ କି? ତେବେ ତ 'ଦିସପ୍ତକୋଟୀ ଭୁଜୈର୍ଧୃତ ଖରକରବାଳ' ହୋଇଯିବ ଅକ୍ଷମର ଆସ୍ଫାଳନ ! ଶାସ୍ତ୍ର ସହିତ ଶସ୍ତ୍ରର ଇଉନିଟି ତେଣୁ ଅପସୃତ କରିପାରେ ପାରସ୍ପରିକ ପାରକ୍ୟ (ଏଲିଏନେସନ୍) । ଦେଶବାସୀଙ୍କ ମଧ୍ୟସ୍ଥ ପାରସ୍ପରିକ ପାରକ୍ୟର ଉତ୍ସ ସଂଧାନକରିନାହାଁନ୍ତି ବଙ୍କିମ୍ ଆର୍ଥ-ସାମାଜିକ ଭେଦାଭେଦ ଭିତରେ । କରିଥିଲେ, ମୁସଲ୍‌ମାନ୍ ରାଜତ୍ୱ ମୁଣ୍ଡରେ ଅଠାବୋଳିଦେବା ମନେହୋଇଥାନ୍ତା ଅଯୌକ୍ତିକ, ପଲାସୀଯୁଦ୍ଧକୁ ଖାଲି ମୁସଲମାନ୍ ଓ ଇଂରେଜ୍ ଭିତରେ ବଳକଷାକଷି ବୋଲି ଚିତ୍ରଣକରିବାକୁ ମନରେ ଆସିଥାନ୍ତା ସ୍ୱାଭାବିକ କୁଣ୍ଠା । କାହିଁକିନା, କ୍ଲାଇଭ୍‌ଙ୍କ ପକ୍ଷରେ ଲଢ଼ିଥିଲେ ହିନ୍ଦୁ ସିପାହୀ, ଏବଂ ସେମାନେ ଯେହେତୁ ହିନ୍ଦୁସମାଜରେ ବ୍ରାତ୍ୟ ବା ଅସ୍ପୃଶ୍ୟ, ଆମ୍ବେଡ଼କର୍ ଭାଇସ୍‌ରୟଙ୍କୁ ଚିଠିଲେଖି ଦାବିକରିଥିଲେ ଋଣପରିଶୋଧ । ଇଂରେଜ୍‌ଙ୍କ ସଂଖ୍ୟା ଥିଲା ନଗଣ୍ୟ, ଯୋଉ ଲୋକ ଗଛଡାଳରେ ବସି ଯୁଦ୍ଧ ଦେଖୁଥିଲେ, ଗୋଟାଏ ଗୋଟାଏ ପଥର ଫୋପାଡ଼ିଥିଲେ, କ୍ଲାଇବ୍ ସହଜରେ ପରାସ୍ତ ହୋଇଥାନ୍ତେ । ସର୍ବବ୍ୟାପୀ ଏଇ ତାମସ୍‌ର କାରଣ ଖୋଜିନାହାଁନ୍ତି ବଙ୍କିମ୍, ଯଦିଓ ତାମସ୍‌ର ବି ଗୋଟାଏ ଷ୍ଟ୍ରକ୍‌ଚର୍ ରହିଚି । ଖୋଜିଥିଲେ

ଦେଖିଥାନ୍ତେ କଳ୍ପିତ ମାତୃମୂର୍ତ୍ତି ସହିତ ସନ୍ତାନମାନଙ୍କ ବାସ୍ତବ ଜୀବନଯାପନର ଦ୍ୱାନ୍ଦ୍ୱିକ ଯୋଗସୂତ୍ର । ତେବେଯାଇ ସମାଜ ରୂପକ ସମଗ୍ର ଗଢ଼ଣ ଭିତରେ ସ୍ପଷ୍ଟହୋଇ ବାହାରିପଡ଼ିଥାନ୍ତା ସନ୍ତାନମାନଙ୍କ ଭକ୍ତି(+) ଶକ୍ତିର ଭୂମିକା । ସାମନ୍ତତାନ୍ତ୍ରିକ ବିଧିବ୍ୟବସ୍ଥା ଭିତରୁ ସମାଜ ସେତେବେଳେ ପ୍ରତିସାରିତ ହୋଇଆସୁଛି ଧନତାନ୍ତ୍ରିକ ଅଭିସରଣକୁ । ସେକଥାଟିକୁ ମୁଣ୍ଡରେ ରଖିଲେ, ଦୁର୍ଭିକ୍ଷ ଅନାହାରର କାରଣ ଯେ ମିର୍‌ଜାଫର୍ ନୁହେଁ, ସେ ବିଭ୍ରମ ଆପେ ଆପେ ଧରାପଡ଼ିଥାନ୍ତା ଚଳମାନ ଚେତନାରେ ।

*ଆନନ୍ଦ ମଠ* ରେ ବିବୃତ ବିଦ୍ରୋହ ବଙ୍କିମ୍‌ଙ୍କ ଅପୂର୍ଣ୍ଣ ଆକାଙ୍‌କ୍ଷା, ମାତ୍ର ପ୍ରକୃତ ବିଦ୍ରୋହର ସୂତ୍ରପାତ ଘଟିଚି ୧୮୫୭ରେ, ତାଙ୍କ ଜନ୍ମର ୨୦ ବର୍ଷ ଉତାରୁ, ଯାର ପାତ୍ରପାତ୍ରୀ କେହି ସନ୍ନ୍ୟାସୀ ନୁହେଁ, ବ୍ରିଟିଶ୍ ଦ୍ୱାରା ନିଯୁକ୍ତ ସିପାହୀ କି ଭୂସ୍ୱାମୀ । ସମସ୍ତେ ହିନ୍ଦୁ ନୁହଁନ୍ତି, ମୁସଲମାନ୍ ବି ଅନେକ । ତିନିଟିଯାକ ପ୍ରେସିଡେନ୍ସିର ଅଲଗା ଅଲଗା ସୈନ୍ୟସାମନ୍ତଙ୍କ ଭିତରେ ରାଜଧାନୀ କଲିକତାର ଅବସ୍ଥିତ ଶାଖା, ବେଙ୍ଗଲ୍ ଆର୍ମି, ଆରମ୍ଭ କରିଚି ବିଦ୍ରୋହ । ସିପାହୀ କେହି ବଙ୍ଗାଳୀ ନୁହେଁ । ଅଯୋଧ୍ୟା, ବିହାର ଓ ଉତ୍ତର-ପଶ୍ଚିମ ଭାରତର ବ୍ରାହ୍ମଣ, ଜାଠ୍, ରାଜପୁତ୍ ଓ ମୁସଲ୍‌ମାନ୍ । ଏମାନେ ସମ୍ପନ୍ନ ପରିବାରର ସନ୍ତାନ, ଭାଷା ବି ସମସ୍ତଙ୍କର ହିନ୍ଦୁସ୍ଥାନୀ । ନିଜ ଗାଁ ସହିତ ଯୋଗାଯୋଗ ମଧ୍ୟ ରହିଚି ଅବ୍ୟାହତ । ବେତନ କମ୍ ନୁହେଁ, କିନ୍ତୁ ସର୍ଜେଣ୍ଟ୍ ଉପରକୁ ପଦୋନ୍ନତି ନିଷିଦ୍ଧ । ବୟସ ଓ ଅଭିଜ୍ଞତାରେ ଅପରିପକ୍ୱ ଇଂରେଜ୍ ନବାଗତ ଏମାନଙ୍କ ମୁରବୀ । ତାଙ୍କର ରହିବାଘର ବଡ଼, ଖିଆପିଆ ପାଇଁ ସ୍ୱତନ୍ତ୍ର ମେସ୍ । ପ୍ରତିତୁଳନାରେ ସିପାହୀର ଅବସ୍ଥା ଶୋଚନୀୟ । ଅକାଳକୁଷ୍ମାଣ୍ଡ ଇଂରେଜ୍-କମାଣ୍ଡର୍ ପ୍ୟାରେଡ୍ ଚଳିବା ବେଳେ ସିପାହୀଙ୍କୁ ମା'-ଭଉଣୀ ନେଇ ଗାଳିଗୁଲଜ କରେ । ସେମାନଙ୍କ ଧୂମାୟିତ ବିକ୍ଷୋଭ ତେଣୁ କ୍ରମଶଃ 'ଷ୍ଟ୍ରାଇକ୍'ରେ ହୁଏ ପରିଣତ ଏବଂ ସ୍ଥିରହୁଏ ଯେ ପଲାସୀଯୁଦ୍ଧର ଶତବର୍ଷ ଉଦ୍‌ଯାପନ ଦିବସରେ ଆରମ୍ଭହେବ ବିଦ୍ରୋହ ।

ସେବର୍ଷ (୧୮୫୭) ମେ' ୧୦ ତାରିଖ ଦିନ ମିରଟ୍‌ରେ ଦଳେ ସିପାହୀ ଓ ତାଙ୍କ ସର୍ଜେଣ୍ଟଙ୍କୁ ଗୋରାଅଫିସର୍ ପ୍ରକାଶ୍ୟରେ ଲାଞ୍ଛିତକରେ ଏବଂ ଦୀର୍ଘ ନିର୍ବାସନଦଣ୍ଡ ଭୋଗିବାକୁ ହୁଏ ଭାରତୀୟଙ୍କୁ । ଘଟଣାଟା ବେଙ୍ଗଲ୍ ଆର୍ମି ପାଇଁ ନିଆଁରେ ଘିଅ । ସ୍ଥାନୀୟ ଗୋରାଅଫିସରଙ୍କୁ ହତ୍ୟାକରିସାରି, ମେ' ୧୧ ତାରିଖ ଦିନ ଦିଲ୍ଲୀ ଅଭିମୁଖେ ସେମାନେ ବାହାରିପଡ଼ନ୍ତି । ଦିଲ୍ଲୀ ଗ୍ୟାରିସନ୍ ମଧ୍ୟ ତାଙ୍କ ସାଙ୍ଗରେ ଯୋଗଦିଏ । ମିଳିତ ବାହିନୀ ଦିଲ୍ଲୀ ସହର ଦଖଲକରି ଲାଲ୍‌କିଲ୍ଲା ଭିତରକୁ ପଶନ୍ତି ଏବଂ ବ୍ରିଟିଶ୍ ପେନ୍‌ସନ୍‌ଭୋଗୀ ବୃଦ୍ଧ ବାହାଦୁର ଶା' ଜାଫରଙ୍କୁ ବାଧ୍ୟକରନ୍ତି ସେମାନଙ୍କ ସ୍ମାରକପତ୍ରରେ

ଦସ୍ତଖତ୍‌କରି ନିଜକୁ ଭାରତର ଶାସକ ବୋଲି ଘୋଷଣାକରିବାକୁ । ବିଦ୍ରୋହୀଙ୍କ ନଜରରେ ବାହାଦୁର ଶା' ହୋଇଗଲେ ପୁନରାଧିକୃତ ସ୍ୱାଧୀନତାର ପ୍ରତୀକ ।

ଛରିଜଣ ନାଗରିକ ଓ ଛ'ଜଣ ସିପାହୀ ଯୋଉ ପ୍ରଶାସନିକ ଅନୁଷ୍ଠାନ ଗଢ଼ିଥିଲେ, ତା ନାଁ ଜଲ୍‌ସା, ମାତ୍ର ଦିଲ୍ଲୀର ଜଟିଳ ରାଜନୀତିକ ଆବର୍ତ୍ତକୁ ସମ୍ଭାଳିପାରିବା ସାମର୍ଥ୍ୟ ତାର ନଥିଲା, କାହିଁକିନା, ନିଜ କମାଣ୍ଡର୍ ଛଡ଼ା ଆଉ କା ଆଦେଶ ମାନିବାକୁ ସିପାହୀ ଅଭ୍ୟସ୍ତ ନୁହେଁ । ବିଦ୍ରୋହୀ-ସରକାର ଉପରେ ପୁରାପୁରି ଭରସା କରିପାରିନାହାଁନ୍ତି ସିପାହୀ । ସଂଗଠନ ତେଣୁ ମୂଳରୁ ରହିଚି ଦୁର୍ବଳ । ତଥାପି ଦୋଆବ୍ ଅଂଚଳ ଓ ମଧ୍ୟଭାରତ ହୋଇଚି ବିଦ୍ରୋହର ନାଭିକେନ୍ଦ୍ର; ଯେପରି, ଆଲିଗଡ଼ (ମେ'୨୯), ବେରିଲି ଓ ଲକ୍ଷ୍ନୌ (ମେ'୩୧), କାନ୍‌ପୁର୍ (ଜୁନ୍ ୪), ଏହ୍ଲାବାଦ (ଜୁନ୍ ୬), ପ୍ରତ୍ୟେକ ଜାଗାରେ ଗଠିତହୋଇଚି ବିଦ୍ରୋହୀ ସରକାର, କାନ୍‌ପୁର୍‌ର ଶାସକ ନିଯୁକ୍ତ ହୋଇଚନ୍ତି ନାନା ସାହେବ୍, ତାଙ୍କ ଦେହରକ୍ଷୀ ଥିଲେ ତାନ୍ତିଆ ଟୋପୀ । ଏହ୍ଲାବାଦରେ ମୌଲବୀ ଲିୟାକତ୍ ଅଲି, ଲକ୍ଷ୍ନୌରେ ପ୍ରାକ୍ତନ ନବାବବଂଶ, ଝାନ୍‌ସୀରେ ନେତୃତ୍ୱନେଇଛନ୍ତି ରାଣୀ ଲକ୍ଷ୍ମୀବାଈ (ଆଦିବାସୀ) । ଇଂରେଜ୍-ଐତିହାସିକ ସିପାହୀଙ୍କୁ ବର୍ଣ୍ଣନାକରିଛନ୍ତି 'ଉର୍ଦିପରିହିତ ଗାଉଁଲିଲୋକ' । ପ୍ରକୃତରେ ସିପାହୀ ଥିଲେ ଗ୍ରାମବାସୀ ଏବଂ ସେଥିପାଇଁ ସେମାନଙ୍କ ଆତ୍ମୀୟ-ପରିଜନଙ୍କ ମାଧ୍ୟମରେ ବିଦ୍ରୋହର ବାର୍ତ୍ତା ପ୍ରସାରିତହୋଇଚି ତଡ଼ିତ୍‌ବେଗରେ । ମିରଟ୍‌ରେ ସିପାହୀ ଯୋଉଠି ବିଦ୍ରୋହ ଘୋଷଣାକରନ୍ତି ପ୍ରଥମ (ମେ, ୧୦), ଗାଁଗଣ୍ଡାରେ ନାଗରା ପିଟି ତହସିଲ୍ ଲୁଟ୍ କରାଯାଇଚି, ମହାଜନକୁ ଖୁନ୍ କରାଯାଇଚି । ଏହ୍ଲାବାଦରେ ରେଲ୍‌ଲାଇନ୍ ଓ ଟେଲିଗ୍ରାଫ୍ ଖୁଣ୍ଟି ଉପାଡ଼ିନେଇଚନ୍ତି । ଟ୍ରେସରି ଲୁଟ୍‌ହୋଇଚି ସର୍ବତ୍ର । ବାରାଣାସୀରେ ଯିଏ ଜମିଦାରି କିଣିଥିଲେ ନିଲାମରେ, ଜମିଯାକ ଫେରାଇ ଦେଇଚନ୍ତି ପୁରୁଣା ଜମିଦାରଙ୍କୁ । ବାଲିଆରେ ବି ଏକାକଥା । ବିହାର ଦାନାପୁରରେ ସିପାହୀ ପଶିଛନ୍ତି ୨୫ ଜୁଲାଇ, ଆଗ୍ରାରେ ୨୭ ଜୁଲାଇ । ଗୋରାକୋଠି ପୋଡ଼ିଦେଇଚନ୍ତି, ଗ୍ରାମ୍ୟ ଜମିଦାରଙ୍କୁ ଘୋଷଣାକରିଚନ୍ତି 'ରାଜା' । ସାସାରାମ ସିଭିଲ୍-କୋର୍ଟରେ ପଶି କାଗଜପତ୍ର ନଷ୍ଟକରିଚନ୍ତି । ସେତିକିବେଳେ ଗୁଜବ ଉଠିଚି, ଉତ୍ତରଦିଗରୁ ରାଜା ବାହାରି ଗୋରାଙ୍କୁ କରିବ ସଂହାର, ଆଉ ମହାଜନଙ୍କ ଧନସମ୍ପତ୍ତି କାଢ଼ିନେବ ବଳପୂର୍ବକ । ସ୍ପଷ୍ଟତଃ, ଦେଶର ଶତ୍ରୁ ଭାବରେ ଚିହ୍ନିତହୋଇଚନ୍ତି ଇଂରେଜ୍, ଜମିଦାର ଓ ମହାଜନ, ଅଥଚ ହିନ୍ଦୁପ୍ରଧାନ ଇଲାକାରେ ମଧ୍ୟ ଗୋଟାଏହେଲେ ମୁସଲ୍‌ମାନ୍ ଘର ସ୍ପର୍ଶକରିନାହାଁନ୍ତି ବିଦ୍ରୋହୀ । ସନ୍ଦେହ ନାହିଁ, ଯା'କୁ ଗଣଅଭ୍ୟୁତ୍‌ଥାନ କହିବା ସଙ୍ଗତ, ବିଶେଷତଃ ହିନ୍ଦୁ-ମୁସଲ୍‌ମାନ୍-ଆଦିବାସୀ ଐକ୍ୟ ପାଇଚି ଯେହେତୁ ସଂହତି ।

ବାହାଦୁର୍ ଶା' ଶିଖ୍‌ସିପାହୀଙ୍କ ସହଯୋଗ ମଧ୍ୟ ଚାହିଁଛନ୍ତି, କାହିଁକିନା, ବିଦ୍ରୋହ ଦମନକରିବା ସକାଶେ ଇଂରେଜ୍ ନିର୍ଭରକରିଚି ତାଙ୍କରି ଉପରେ । ଅନ୍ୟ ଶିଖ୍ ତାଙ୍କୁ ଏକଘରିଆ କରିଚନ୍ତି, ନିଆଁ-ପାଣି ବାସନ୍ଦହୋଇଚି । ଗ୍ରାମବାସୀ, ଅର୍ଥାତ୍ କୃଷକ, ବିନା ବ୍ୟତିକ୍ରମରେ ଅଂଶଗ୍ରହଣ କରିଥିଲେ ସୁଦ୍ଧା, ଇନ୍‌ସରେକ୍ସନ୍-କୁ କୃଷକବିଦ୍ରୋହ କହିହେବନାହିଁ । ବରଂ ଏରିକ୍ ଷ୍ଟୋକସ୍ ଠିକ୍ ଧରିଚନ୍ତି, (ଦ୍ର. The Peasant Armed) ଯେ ଖାଲି ସିପାହୀ ବା ରୟତ୍ ନୁହେଁ, ନାନାରକମ ପ୍ରତିରୋଧ ସାମୟିକ ଭାବେ ଇଂରେଜ୍ ବିରୋଧରେ ତରଙ୍ଗ ପଛକୁ ତରଙ୍ଗ ଭଳି ଉଠି ଏକାଠି ହୋଇଥିଲା । କିନ୍ତୁ ଲକ୍ଷ୍ୟକରିବା କଥା, ନେତୃତ୍ୱର ଚରିତ୍ର । ନେତୃତ୍ୱ ଆସିଚି ସମାଜର ଅଭିଜାତ ଅଂଶରୁ, ସିପାହୀ ହୁଏତ ଛପପକାଇଚନ୍ତି, ଏବଂ ଇଂରେଜ୍ ହାତରେ ଯାର ରାଜ୍ୟ ଯାଇଚି, ମର୍ଯ୍ୟାଦା ଯାଇଚି, ପ୍ରତିପତ୍ତି ଯାଇଚି, ସହଜରେ ଶୁଣିଚି ସିପାହୀଙ୍କ ଆହ୍ୱାନ । ପୁରୋହିତ ଓ ମୌଲବୀ, ପୁରାତନ ଜୀବନଶୈଳୀରେ ଯିଏ ଅଭ୍ୟସ୍ତ ଏବଂ ଇଂରେଜ୍ ଜମାନାରେ ହୋଇଯାଇଚନ୍ତି କର୍ମହୀନ କିମ୍ବା ହୃତସର୍ବସ୍ୱ, ସେମାନଙ୍କ ଆଗ୍ରହ ଥିଲା ମଧ୍ୟ ପ୍ରତ୍ୟାଶିତ । ତେଣୁ ବିଦ୍ରୋହ ବଳରେ ଇଂରେଜ୍‌ର କର୍ତ୍ତୃତ୍ୱକୁ ଧୂଳିସାତ୍ କରିବାକୁ ଯେମିତି ଉଦ୍ୟମ ହୋଇଚି, ପ୍ରଚଳିତ ସମାଜବ୍ୟବସ୍ଥାକୁ ପୁନଃପ୍ରତିଷ୍ଠିତ କରିବା ଆଶ୍ୱାସ ମଧ୍ୟ ଦିଆଯାଇଚି ସେମିତି । ଘୋଷଣାପତ୍ର ଗୁଡ଼ିକରେ ରହିଚି ଜମିଦାର, ବଣିକ, ସରକାରୀ କର୍ମଚାରୀ, କାରିଗର, ପଣ୍ଡିତ ଓ ଫକୀରଙ୍କ ଅସନ୍ତୋଷ ଦୂରୀକରଣ ପ୍ରତିଶ୍ରୁତି । ଅର୍ଥାତ୍ ଜୋର୍‌ପଡ଼ିଚି ପୁରାତନ ମୂଲ୍ୟବୋଧ ଉପରେ; ଯେପରି କୁହାଯାଇଚି, ଅଦାଲତରେ ଜମିଦାର୍ ଓ ରୟତ୍‌କୁ ଯେମିତି ଏକା ତୁଳାଦଣ୍ଡରେ ଓଜନକରାଯାଉଚି, ତା ଘୋର୍ ଅନ୍ୟାୟ । ଅର୍ଥାତ୍, ସ୍ୱଜାତି ସ୍ୱଧର୍ମ ଦେଶାଚାର, ଲୋକାଚାର ପ୍ରଭୃତି ସଂକଟକୁ କେନ୍ଦ୍ରକରି ଗଢ଼ିଉଠିଚି ବିଦ୍ରୋହ । ତାକୁ ନିଛକ ଦେଶପ୍ରେମ ଆଖ୍ୟାଦେବା ଠିକ୍ ନୁହେଁ । ମାର୍କ୍ସ ସେଥିପାଇଁ କହିଚନ୍ତି, ୧୮୫୭ର ବିଦ୍ରୋହ ଭାରତର ପ୍ରଥମ ଜନଜାଗରଣ ଔପନିବେଶିକତା ବିପକ୍ଷରେ, କିନ୍ତୁ ପୁରୁଣା ଧରଣର ବିଦ୍ରୋହ, ତା ଭିତରେ ଇଉରୋପୀୟ ବୈଶିଷ୍ଟ୍ୟ ଖୋଜି ଲାଭ ନାହିଁ ।

କିନ୍ତୁ ବଙ୍କିମ୍ ଯୋଉ ଶୋଷଣକୁ ସନ୍ତାନମାନଙ୍କ ଅସ୍ତ୍ରଧାରଣର କାରଣ ବୋଲି ଦେଖାଇଚନ୍ତି, ସେ ଶୋଷଣ ସାମୟିକ ଦୁର୍ଭିକ୍ଷ ନୁହେଁ, କି ମୁସଲ୍‌ମାନ୍ ନବାବର ହିନ୍ଦୁୟାନୀ ଉପରେ ଆକ୍ରମଣ ନୁହେଁ । ସେ ଶୋଷଣର ଚରିତ୍ରକୁ ଚିହ୍ନଟକରିଥିଲେ ସେକାଳର ସର୍ବବରିଷ୍ଠ ଭାରତୀୟ ସିଭିଲିଆନ୍ ରମେଶଚନ୍ଦ୍ର ଦତ୍ତ । *ଏନ୍‌ସାଇକ୍ଲୋପିଡିଆ ଅବ୍ ବ୍ରିଟାନିକା* ର ଏକାଦଶ ସଂସ୍କରଣରେ ନିବନ୍ଧ ଲେଖିଚନ୍ତି ବଙ୍କିମଚନ୍ଦ୍ରଙ୍କ ଉପରେ । ମାତ୍ର ଯୁଯୁତ୍ସୁ ଜାତୀୟତାବାଦକୁ କହିଚନ୍ତି ନିରୀହ କ୍ଲାସିସିଜ୍ମ । ସତେ ଅବା *ଶ୍ରୀମଦ୍*

*ଭଗବଦ୍ ଗୀତା* ର ପ୍ରତିଧ୍ୱନି । କିନ୍ତୁ ଉକିରିରୁ ସ୍ୱେଚ୍ଛା ଅବସର ନେବା ଉତାରୁ ଲେଖୁଚନ୍ତି ଦୁଇଖଣ୍ଡରେ *ଇକନମିକ୍ ହିଷ୍ଟ୍ରି ଅବ୍ ଇଣ୍ଡିଆ ଅଣ୍ଡର୍ ଆର୍ଲି ବ୍ରିଟିଶ୍ ରୁଲ୍* (ଲଣ୍ଡନ୍, ୧୯୦୧), ଯୋଉଥିରେ ସର୍ବପ୍ରଥମ ଉଦ୍‌ଘାଟିତ ହୋଇଚି ଔପନିବେଶିକ ଶୋଷଣର ସ୍ୱରୂପ । *ଆନନ୍ଦମଠ* ରେ ଭବାନନ୍ଦ କହିଚି, 'ଏ ନେଡ଼େଦେର୍ ନା ତାଡ଼ିୟିଲେ ଆର୍ କି ହିନ୍ଦୁର ହିନ୍ଦୁୟାନୀ ଥାକେ ?' ହିନ୍ଦୁୟାନୀ ରକ୍ଷାକରିବା କିନ୍ତୁ ରମେଶଚନ୍ଦ୍ରଙ୍କ ଲକ୍ଷ୍ୟ ନୁହେଁ, ମନନର ପରିଧି ସମ୍ପୂର୍ଣ୍ଣ ସେକ୍ୟୁଲାର୍, କାହିଁକିନା, ଯା ପ୍ରତିପନ୍ନ କରିଚନ୍ତି, ପରବର୍ତ୍ତୀ କାଳରେ ବହୁଚର୍ଚ୍ଚିତ ଏକମାତ୍ରିକ୍ ଡ୍ରେନ୍ ଥିୟରି ନୁହେଁ କି ଭାରତୀୟଙ୍କ ପ୍ରତି ଇଂରେଜ୍‌ର ଜାତିବିଦ୍ୱେଷ ନୁହେଁ, ଏକେବାରେ କ୍ୟାପିଟାଲିଜ୍ମର ମୂଳମନ୍ତ୍ର, ଉଦ୍‌ବୃତ୍ତ ସଂଗ୍ରହ । ଯୋଉ ଉଦ୍‌ବୃତ୍ତକୁ କାମରେ ଲଗାଇ ନିଜ ଦେଶରେ ଇଂରେଜ୍ ସଂଗଠିତ କରିଚି ଶିଳ୍ପବିପ୍ଳବ । ଉପନିବେଶକୁ କ୍ରମାଗତ ଦୋହନ ତେଣୁ ସାମ୍ରାଜ୍ୟବାଦର ବାଧ୍ୟବାଧକତା, ମୂଳଧନର ସ୍ତୂପୀକରଣ ଯେପରି କ୍ୟାପିଟାଲିଜ୍ମର ଜୈବିକ ବାଧ୍ୟତା । ସେ ପ୍ରବଣତାକୁ ଅଟକାଇପାରେ ଉପନିବେଶବାସୀଙ୍କ ଜାତୀୟ ଐକ୍ୟଚେତନା, କାହିଁକିନା, ଶୋଷଣର ଭୁକ୍ତଭୋଗୀ ଏକମାତ୍ର ସେଇମାନେ । ଶୋଷଣର ପ୍ରାତ୍ୟହିକ ଅଭିଜ୍ଞତା ଐକ୍ୟବଦ୍ଧ କରିପାରେ କେବଳ ଭୁକ୍ତଭୋଗୀଙ୍କୁ । ୧୯୦୧ରେ ବହିବାହାରିଚି ବିଲାତରୁ; ରମେଶଚନ୍ଦ୍ର ସ୍ୱଚକ୍ଷୁରେ ଦେଖିଚନ୍ତି ସେତେବେଳେ ଶିଳ୍ପବିପ୍ଳବର ଆଦିପର୍ବ, ଏବଂ ଅଙ୍କକଷି ଦେଖାଇଦେଇଚନ୍ତି ଶୋଷଣର ଗତି ଓ ସ୍ୱଭାବ। ଅଥଚ, ଉରିବର୍ଷ ଆଗରୁ ୧୮୯୬ର କଂଗ୍ରେସ୍ ଅଧିବେଶନରେ ସମବେତ ଜାତୀୟତାବାଦୀଙ୍କୁ, 'ବନ୍ଦେ ମାତରଂ' ଗୀତଗାଇ ମୁଗ୍ଧକରିଚନ୍ତି ସ୍ୱୟଂ ରବୀନ୍ଦ୍ରନାଥ । ଏପରିକି, ରମେଶଚନ୍ଦ୍ରଙ୍କ ବ୍ୟାଚ୍‌ମେଟ୍ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ (ପରେ'ରାଷ୍ଟ୍ରଗୁରୁ') ଲେଖିଚନ୍ତି, Bankim Chandar Chatterjee could hardly have anticipated the part it(Bande Mataram) was destined to play in the Swadeshi movement... Dante, when he sang of Italian unity, had no conception of the practical use to which his song would be put by Mazzini and Garibaldi... । ସାମ୍ରାଜ୍ୟବାଦକୁ ଆହ୍ୱାନ ଜଣାଇବାର ଏ ଏକ ସମାନ୍ତରାଳ ଧାରା, ଗୋଟିଏ ବସ୍ତୁବାଦୀ, ଅନ୍ୟଟି ଭାବବାଦୀ । ନିରକ୍ଷର ଅର୍ଦ୍ଧନଗ୍ନ ନିରନ୍ନ ଭାରତବାସୀଙ୍କୁ ଭାବବାଦର ଆବେଦନ ଯେ ବେଶି ଉଦ୍‌ବୁଦ୍ଧ କରିବ, ସେ ପ୍ରତ୍ୟାଶା ସ୍ୱାଭାବିକ । କିନ୍ତୁ ଭାବବାଦ କ୍ରମଶଃ ନିସ୍ତେଜ କରିଦେଇଚି ଯୁୟୁତ୍ସୁ ଜାତୀୟତାବାଦକୁ, ଯେପରି, ରବୀନ୍ଦ୍ରନାଥଙ୍କ ହାତରେ ଦଶପ୍ରହରଣଧାରିଣୀ ମାତୃମୂର୍ତ୍ତିର ରୂପାନ୍ତର :

ଅୟି ଭୁବନମନୋମୋହିନୀ, ମା,
ଅୟି ନିର୍ମଲସୂର୍ଯ୍ୟକରୋଜ୍ଜ୍ୱଳ ଧରଣୀ ଜନକଜନନିଜନନୀ ।।
ନୀଳସିନ୍ଧୁଜଳଧୌତଚରଣତଳ, ଅନିଲବିକମ୍ପିତ-ଶ୍ୟାମଳ-ଅଞ୍ଚଳ,
ଅମ୍ବରଚୁମ୍ବିତଭାଲହିମାଚଳ, ଶୁଭ୍ରତୁଷାରକିରୀଟିନୀ ।।
ପ୍ରଥମ ପ୍ରଭାତ ଉଦୟ ତବ ଗଗନେ, ପ୍ରଥମ ସାମରବ ତବ ତପୋବନେ,
ପ୍ରଥମ ପ୍ରଚରିତ ତବ ବନଭବନେ ଜ୍ଞାନ ଧର୍ମ କତ କାବ୍ୟକାହିଣୀ ।
ଚିରକଲ୍ୟାଣମୟୀ ତୁମି ଧନ୍ୟ, ଦେଶ ବିଦେଶେ ବିତରିଛ ଅନ୍ନ-
ଜାହ୍ନବୀଯମୁନା ବିଗଲିତ କରୁଣା ପୁଣ୍ୟପୀୟୂଷସ୍ତନ୍ୟବାହିନୀ ।।

ଭକ୍ତିରୁ କାଢ଼ିନେଲେ ଶକ୍ତି, ମା ହୋଇଗଲେ ସ୍ୱାତ୍ତିକ ରମଣୀ, ତାଙ୍କ ସ୍ତନରୁ ନିର୍ଗତହୁଏ କେବଳ ପୁଣ୍ୟ ଆଉ କରୁଣା । ବଙ୍କିମ୍ କହିଥିଲେ, 'କେ ବଲେ ମା ତୁମି ଅବଲେ' ? ରବୀନ୍ଦ୍ରନାଥ ଇଂରେଜ୍‌କୁ କହିବାକୁ ଚାହାଁନ୍ତି, ତମେ ଅର୍ବାଚୀନ, ଆମେ ସବୁକଥାରେ ପ୍ରଥମ, ଅବହେଳାର ଯୋଗ୍ୟ ନୁହେଁ । ରବୀନ୍ଦ୍ରନାଥଙ୍କ ଜୀବିକା ଥିଲା ଅବଶ୍ୟ ଜମିଦାରି । ପ୍ରତିରୋଧ ପ୍ରାକୃତ ହେବ, ନା ଅପ୍ରାକୃତ, ଅଧିକାଂଶ କ୍ଷେତ୍ରରେ ନିର୍ଭରକରିବ ପ୍ରତିବାଦୀର ଶ୍ରେଣୀଚରିତ୍ର ଓ ଆପେକ୍ଷିକ ସାମାଜିକ ଅବସ୍ଥାନ ଉପରେ, ବ୍ୟତିକ୍ରମ ଯଦିଓ ବିରଳ ନୁହେଁ । ଯେପରି, ଆଇସିଏସ୍‌ରେ ପଶୁପଶୁଁ ୧୮୭୪ରେ ରମେଶ ଦତ୍ତ ଲେଖିଚନ୍ତି The Peasantry of Bengal ଏବଂ ମୁଖବନ୍ଧରେ, It is an unfortunate fact-and we write this in shame and sorrow-that the welfare of the country is identified by our educated countrymen with the interests of the zamindars. Patriotism is another name for the advocacy of zamindars' rights and interests, and a word spoken in favour of the claims of the cultivators is regarded and branded as a certain slight of denationalisation। ଏଇ ପ୍ରେକ୍ଷିତରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ରଜାଜମିଦାରପ୍ରୀତି ନିଶ୍ଚୟ ସ୍ମରଣୀୟ; ଅର୍ଥାତ୍, ରାଜନୀତିରେ କରୁଥିଲେ କୋଉ ଶ୍ରେଣୀର ପ୍ରତିନିଧିତ୍ୱ ।

ଔପନିବେଶିକ ଅର୍ଥନୀତି ଓ ପରିପୋଷକ ରାଜନୀତିର ନିର୍ମୋହ ବିଶ୍ଲେଷଣ ଦ୍ୱାରା ରମେଶଚନ୍ଦ୍ର ବୁଝିବାକୁ ଚାହିଁଚନ୍ତି ପ୍ରାକ୍-ଧନତାନ୍ତ୍ରିକ ଭାରତର କୃଷି, ଶିଳ୍ପ ଓ ବାଣିଜ୍ୟ ମଧ୍ୟସ୍ଥ ପାରସ୍ପରିକ ଯୋଗସୂତ୍ର, ଏବଂ ବୁଝିବାକୁ ଯାଇ ବାଟରେ ହାବୁଡ଼ିଚନ୍ତି ଆଡାମ୍ ସ୍ମିଥ୍ ପ୍ରବର୍ତ୍ତିତ ଉଦ୍‌ବୃତ୍ତ (=ସରପ୍ଲସ୍) ତତ୍ତ୍ୱ । ଅର୍ଥାତ୍ ଉଦ୍‌ବୃତ୍ତ ଆସିପାରେ କେବଳ କୃଷି ଓ ମ୍ୟାନୁଫ୍ୟାକ୍‌ଚର୍‌ରୁ ଲବ୍ଧ ଉତ୍ପାଦନର ଅତିରିକ୍ତ ଅଂଶରୁ । ସେଇ ଅତିରିକ୍ତର ବିପଣନଯୋଗ୍ୟ ଆକୃତି ନିର୍ଦ୍ଧାରଣକରିଦିଏ ଅର୍ଥନୀତିର ସ୍ୱଭାବ;

ସମାଜବିକାଶର ଚରିତ୍ର । ବିଦେଶୀ ପ୍ରଭୁ ଯଦି ଉଦ୍‌ବୃତ୍ତର ସେଇ ଉତ୍ସମୁଖକୁ କ୍ରମାଗତ ଅବରୁଦ୍ଧ କରିରଖେ, ଲଗ୍ନିଯୋଗ୍ୟ ପୁଞ୍ଜିର ଅନଟନ ପ୍ରକଟହେବ ପ୍ରଜାରାଷ୍ଟ୍ରର ପ୍ରତ୍ୟେକ ସାମାଜିକ ସ୍ତରରେ । ପ୍ରାକ୍-ଉପନିବେଶ ଭାରତରେ କୃଷିଲବ୍ଧ ଉଦ୍‌ବୃତ୍ତ ନିର୍ଦ୍ଧାରଣକରିଚି ମ୍ୟାନୁଫାକ୍‌ଚର୍ ଓ ବିପଣନର ସଂଗଠନ । କୃଷି ଯେହେତୁ ଅର୍ଥନୀତିର ଚାଳିକାଶକ୍ତି, ଚାଳିକାଶକ୍ତି ଜନ୍ମଦେଇଚି ଉଦ୍‌ବୃତ୍ତ ବଢ଼ାଇବା ପ୍ରଯୁକ୍ତିକୁ(ଯେପରି, ହଳକରିବା ପାଣିମଡ଼ାଇବା ଶସ୍ୟ ଅମଳ ଓ ସଂରକ୍ଷଣରେ ଉନ୍ନତି) । ପ୍ରଯୁକ୍ତିପ୍ରୟୋଗ ନୈପୁଣ୍ୟରୁ କୃଷକର ଭରଣପୋଷଣ ଓ ସାମାଜିକ ସୁରକ୍ଷା, ଏବଂ ଶେଷକୁ, ବିଳାସ-ଉପକରଣର ଉତ୍ପାଦନ, ଯା ଭୂସ୍ୱାମୀ କରିଚି ଉପଭୋଗ । ଅର୍ଥନୀତିର ଏଇ ଷ୍ଟ୍ରକ୍‌ଚର୍ ପ୍ରାକ୍-ଉପନିବେଶ ଭାରତରେ ସ୍ୱାଭାବିକ ଜୀବନଯାତ୍ରା ସକାଶେ ଥିଲା ଉପଯୁକ୍ତ, ଏବଂ ସେ ବ୍ୟବସ୍ଥାରେ ସ୍ଥଳପଥରେ ବାଣିଜ୍ୟ ଥିଲା ମଧ୍ୟ ସ୍ୱାଭାବିକ । କୃଷିର ଅଭିବୃଦ୍ଧି ତେଣୁ ମ୍ୟାନୁଫ୍ୟାକ୍‌ଚର୍ ଓ ସ୍ଥଳପଥରେ ପରିବହନକୁ ସମୃଦ୍ଧ ଓ ସଂପ୍ରସାରିତ କରିବା କଥା । ସଂଗୃହୀତ ଆଞ୍ଚଳିକତଥ୍ୟରୁ ଦତ୍ତ ଦେଖାଇଚନ୍ତି, ଇଂରେଜ୍‌ର ଆବିର୍ଭାବ ଆଗରୁ ଭାରତରେ ଯେ କେବେହେଲେ ଅପାଳକ ପଡ଼ିନାହିଁ, ତା' ନୁହେଁ; ମାତ୍ର ବନ୍ଧବାଡ଼ କୂଅପୋଖରୀ ଯା ପ୍ରଜାଙ୍କ ଖଜଣାରୁ ରାଷ୍ଟ୍ର ତିଆରିକରିଦେଇଚି, ଜଳାଭାବ ମେଣ୍ଟାଇବାକୁ ସହାୟକ ହୋଇଚି ସବୁଠି, ଚାଷୀ ଉପାସରେ ମରିନାହିଁ । ରାଷ୍ଟ୍ର ଆପଣା ସ୍ୱାର୍ଥରେ ଚାଷୀକୁ ବଞ୍ଚାଇଚି । ଅନାବୃଷ୍ଟି ସତ୍ତ୍ୱେ ବଡ଼ଆକାରର ମରୁଡ଼ି ମଧ୍ୟ ଦେଖାଦେଇନାହିଁ । କୃଷିର ବିକାଶରୁ ଘଟିଚି କାରିଗରୀ ଓ କିଣାବିକା (ବିନିମୟ)ର ପ୍ରସାର; ଫଳରେ, ସଂଚୟ ବାଣ୍ଟି ହୋଇଯାଇଚି କାରିଗର ଓ ଅନ୍ୟାନ୍ୟ ପାଟକଜାତି ଭିତରେ । ଦତ୍ତ ତାକୁ ନାଁ ଦେଇଚନ୍ତି 'ଅକୁପେସନାଲ୍ ଷ୍ଟ୍ରକ୍‌ଚର୍' । ବହିରାଗତ ଆଧିପତ୍ୟ ଭଳି ଅସ୍ୱାଭାବିକ ହସ୍ତକ୍ଷେପ ଘଟିନଥିଲେ ଭାରତ ନିଜ ସ୍ୱାଭାବିକ ରୀତିରେ ଶିଳ୍ପସମୃଦ୍ଧିରେ ମଧ୍ୟ ପହଞ୍ଚିପାରିଥାଆନ୍ତା । କିନ୍ତୁ ବିଜାତୀୟ ପ୍ରଭୁର ଉଦ୍ଦେଶ୍ୟ ଥିଲା ଅଲଗା; ଭାରତ ଚିରକାଳ କୃଷିନିର୍ଭର ହୋଇ ରହିଥିବ ଆଉ ସ୍ୱଳ୍ପମୂଲ୍ୟରେ 'ମଦର୍‌କଣ୍ଟ୍ରି'କୁ ଖାଦ୍ୟ ଓ କଞ୍ଚାମାଲ ଯୋଗାଇଦେଉଥିବ । ପୁଣି, ଇଂଲଣ୍ଡରୁ ପ୍ରେରିତ ଶିଳ୍ପଜାତ ପଣ୍ୟକୁ ମଧ୍ୟ ଶୋଷିନେଇପାରୁଥିବ କ୍ରମାଗତ । ଉଭୟ ଭୂମିକାରେ ପାରଙ୍ଗମହେଲେ ଯାଇ ଉପମହାଦେଶ ହୋଇପାରିବ ଇଂଲଣ୍ଡର ଶିଳ୍ପବିକାଶ ସକାଶେ ସହାୟକ । ଦତ୍ତ ଏଇଠି କହିଚନ୍ତି, ପଶ୍ଚାତ୍‌ଗାମୀ ଓ ଅନୁନ୍ନତ ଅବସ୍ଥାରେ ଭାରତକୁ ସ୍ଥାଣୁକରିରଖିବା ଇଂରେଜ୍‌ର ପୂର୍ବକଳ୍ପିତ ଅଭିସନ୍ଧି । (ସ୍ୱାଧୀନ ଭାରତର କୋଉ ହାକିମ ଦେଖାଇବ ଏ ସାହସ !) ସେ ଅଭିସନ୍ଧିକୁ ଚରିତାର୍ଥକରିବାକୁ ନିୟମାବଦ୍ଧ ପ୍ରଣାଳୀରେ ଭାରତରେ ଶିଳ୍ପଉତ୍ପାଦନକୁ ଧ୍ୱଂସ କରିଦିଆଯାଇଚି, ଯେପରି, ରେଶମବସ୍ତ୍ର ଉପରେ

ଅଭ୍ୟନ୍ତରୀଣ ପୁଣି ଆମଦାନୀ ଶୁଳ୍କ, ଯେତେବେଳେ ଇଂଲଣ୍ଡରୁ ରପ୍ତାନୀ ସମ୍ପୂର୍ଣ୍ଣ ଶୁଳ୍କମୁକ୍ତ । ସେମିତି ନୀଳକର ଇଂରେଜଙ୍କ ଧାନଜମି ଦଖଲ, ଆଉ ଇଷ୍ଟଇଣ୍ଡିଆ କମ୍ପାନୀର ସାହେବ-ସୌଦାଗରଙ୍କ ଚଢ଼ାସୁଧରେ ମହାଜନୀ କାରବାର । ଅସଂଖ୍ୟ କର ଭାରରେ ଅବନତ ଭାରତ କ୍ରମଶଃ ସର୍ବସ୍ୱାନ୍ତହେବା ଉତାରୁ ସଡ଼କପଥରେ ଚାଲୁଥିବା ବେପାରବଣିଜ ବି ହୋଇଯାଇଚି ସ୍ତିମିତ, ନୌପଥର ବାଣିଜ୍ୟ ଭଳି । ଫଳରେ ପୁରାତନ ଜଳପଥ ପୋତିପଡ଼ିଛି । ସେଗୁଡ଼ିକୁ ପୁନର୍ଜୀବିତ କରିବା ଇଂରେଜର ଶୀରଃପୀଡ଼ା ନୁହେଁ, କାହିଁକିନା, ଇଂରେଜ୍ ବସାଇଛି ରେଲପଥ ଏବଂ ରେଳରାସ୍ତା ପକାଇବାକୁ ଚଷଜମିରୁ କୃଷକକୁ କରିଚି 'ଉଚ୍ଛେଦ', ବେକାର । ସମ୍ମିଳିତ ପରିଣାମ ତେଣୁ ଅକୁପେସନାଲ୍ ଷ୍ଟ୍ରକ୍‌ଚର୍‌ର ଅବଲୁପ୍ତି । ତା' ଫଳରେ କୃଷି ହୋଇଯାଇଚି ଲୋକଙ୍କର ଏକମାତ୍ର ଆଶ୍ରୟସ୍ଥଳ । ଅକୁପେସନାଲ୍ ଷ୍ଟ୍ରକ୍‌ଚର୍ ଜନସାଧାରଣଙ୍କ ଜୀବନନିର୍ବାହ (=ଜୀବିକା ଅର୍ଜନ)ରେ ଯୋଉ ଭାରସାମ୍ୟ ରଖୁଥିଲା, ନଷ୍ଟହୋଇଯାଇଚି ସେ ଭାରସାମ୍ୟ । ଫଳରେ, ବିବାକଲୋକ ରୁଣ୍ଡହୋଇଚନ୍ତି ଜମିଜମା ଉପରେ; ଅନ୍ୟଥା ଖାଇବେ କ'ଣ ? ମାତ୍ର, ଜନସଂଖ୍ୟାର ଚପ ଛଡ଼ା ଆଉ ଯା ଘଟିଚି, ଆହୁରି ମାରାତ୍ମକ । କାରିଗର ଓ ପାଟକଜାତି ମଧ୍ୟ ଚଷକୁ ଅଙ୍ଗୁରିଚନ୍ତି ଉପାୟ ନପାଇ । କୃଷିରେ ପ୍ରୟୋଗଯୋଗ୍ୟ ପ୍ରଯୁକ୍ତିର ତେଣୁ ଉନ୍ନତି ହେଉନାହିଁ, ଏବଂ ଭାରତରେ ଏକମାତ୍ର ଅବଶିଷ୍ଟ ଜୀବିକା, କୃଷି, ରହିଯାଇଚି ପ୍ରଯୁକ୍ତିବିକାଶରୁ ବିଚ୍ଛିନ୍ନ । ତଥାପି ଜମି ସକାଶେ କ୍ଷୁଧା ବଢ଼ିଚି ଦିନକୁ ଦିନ, କାହିଁକିନା, ମାନବ-ଜମି ଅନୁପାତ ଏକ୍ଷଣି ଚଷୀ ସପକ୍ଷରେ ଯାଉନାହିଁ । କ୍ରମବର୍ଦ୍ଧମାନ ଚାହିଦାକୁ ନଜରରେ ରଖି ଖଜଣା ମଧ୍ୟ ବଢୁଚି, ଏତେ ବେଶି ବଢୁଚି ଯେ ଖଜଣା ପଇଠକରିବାକୁ ଚଷୀକୁ ଶରଣ ନେବାକୁ ପଡୁଚି ମହାଜନର, ମୂଳ ଋଣ ଶୁଝିଦେଲେ ବି କଳନ୍ତର ହିସାବ ନିକାଶକରିବାକୁ ଚଷୀର ପ୍ରାଣ ହେଉଚି କଣ୍ଠାଗ୍ରତ । ଦତ୍ତ ଏଇଠି ଇଂରେଜ୍‌ର ଭୂମିବିଧିକୁ ତୁଳାଭିଣା କରିଚନ୍ତି । ରୟତ୍‌ୱାରୀବିଧି ସାରାଭାରତରେ ପ୍ରଚଳନକରିବାକୁ ଦେଇଚନ୍ତି ପରାମର୍ଶ । କାହିଁକିନା, ସେଇ ସୂତ୍ରରେ କେବଳ ରାଜା ଓ ପ୍ରଜା ମଧ୍ୟସ୍ଥ ସମ୍ପର୍କ ହୋଇପାରେ ପ୍ରତ୍ୟକ୍ଷ, ଆଉ କୃଷକ ନିସ୍ତାରପାଇପାରେ ଜମିଦାର/ମହାଜନ କବଳରୁ । ସେ ପରାମର୍ଶ ୧୯୦୦ ଖ୍ରୀଷ୍ଟାବ୍ଦରେ ଲଣ୍ଡନ୍‌ରୁ ମୁଦ୍ରିତ ୩୨୩ ପୃଷ୍ଠାସମ୍ବଳିତ *Open letters to Lord Curzon on Faminies and Land Assessment in India* ରେ ଦେଇଚନ୍ତି ଚାକିରିରେ ଥିବା ଅବସ୍ଥାରେ । ତେବେ, ଔପନିବେଶିକତା ଯେ ସାକ୍ଷାତ୍ ସାମ୍ରାଜ୍ୟବାଦ, ବହିର୍ବିଶ୍ୱରେ ଧନତନ୍ତ୍ରର ବଜାର-ଅନ୍ୱେଷଣ, ସେ ସମଗ୍ରତାକୁ ଉପଲବ୍ଧିକରିନାହାନ୍ତି ରମେଶଚନ୍ଦ୍ର, ଦେଶବାସୀଙ୍କ ଦୁର୍ଗତି ସକାଶେ ଡେପୁଟି

କଲେକ୍ଟର୍ ବଙ୍କିମ୍ ଯେତେବେଳେ ନବାବ ମିର୍ ଜାଫର୍ ମୁଣ୍ଡରେ ପଣସଅଠା ବୋଳିଛନ୍ତି, ରମେଶଚନ୍ଦ୍ର କହିଚନ୍ତି, A strong ruler had no place in the scheme of British domination in the East; a weak ruler was permitted to live and to borrow, and to pay interest out of revenues of his kingdom ।

ସେଇ ସୂତ୍ରଧରି, ବହୁବର୍ଷ ଉତାରୁ, ହ୍ୟାରି ମ୍ୟାଗ୍‌ଡଫ୍ ଚିହ୍ନଟକରିଚନ୍ତି ସାମ୍ରାଜ୍ୟବାଦର ବିବିଧ ବିଭାବ, ଏବଂ ସାମ୍ରାଜ୍ୟବାଦକୁ କହିଚନ୍ତି ସୁପରଷ୍ଟ୍ରକ୍‌ଚର୍ ମାତ୍ର, କାହିଁକିନା, ଅସଲ ଭିତ୍ତି(ବେସ୍) ହେଉଚି କ୍ୟାପିଟାଲିସ୍ମ । ସେଥିପାଇଁ, ଖାଲି ଅର୍ଥନୀତିକ ଶୋଷଣକୁ କେନ୍ଦ୍ରକରି ସମସ୍ୟାଟାକୁ ବୁଝିବାକୁ ମନକଲେ କ୍ଷମତା-ଷ୍ଟ୍ରକ୍‌ଚର୍‌ର ପୂର୍ଣ୍ଣାଙ୍ଗ ପରିଚୟ ମିଳିବନାହିଁ । ସୁପରଷ୍ଟ୍ରକ୍‌ଚର୍ ହେଲେସୁଦ୍ଧା, ସାମ୍ରାଜ୍ୟବାଦ ଯେହେତୁ କ୍ଷମତାର ଭାବାଦର୍ଶ, ସବୁ ଭାବାଦର୍ଶ ଭଳି ତାର ମଧ୍ୟ ଏକ ଗଢ଼ଣ ରହିଚି, ଦିନକରେ ତିଆରିହୋଇନାହିଁ, ମୂଳ-ମଝି-ଚୂଳ ସବୁ ଅଛି । ସେଇ ଗୁଣ ଭିତରେ ଭାରତକୁ, ଅନ୍ତତଃ ପ୍ରଥମ ମହାଯୁଦ୍ଧ ଆରମ୍ଭ ପର୍ଯ୍ୟନ୍ତ, ଠାବକରିବାକୁ ବାହାରି ମ୍ୟାଗ୍‌ଡଫ୍ ଲେଖିଚନ୍ତି, India has assumed in the twentyfive years under discussion (1890-1914) the role of a protagonist of the international settlements system; her trade surplus with rest of the world and her trade deficit with England allowed the latter to square her international settlements on current account. This enabled her to use the income from her overseas investment for further investment income. This, however, was not the only reason why India had an important place in international monetary system. The reserves on which the Indian monetary system was based provided a large masse manoeuvre which British monetary authorities could use to supplement their own reserves and keep London the centre of the international monetary system । ଏଇ ଯଦି ବାସ୍ତବ ଅଭିପ୍ରାୟ, ଉପନିବେଶର ରକ୍ତ ନିଗାଡ଼ିନେବା ଛଡ଼ା କି ବିକଳ୍ପ ବାକି ଥିଲା ? ରକ୍ତ ନିଷ୍କାସନର ସେଇ ନୃଶଂସତାକୁ ପ୍ରତିରୋଧ କରିବାର ଏକମାତ୍ର ଉପାୟ ଯେ ଗୋପନ ସନ୍ତ୍ରାସ, ସେ ବିଷୟରେ ଦ୍ୱିମତର ଅବକାଶ ନାହିଁ, କାହିଁକିନା, ବାହୁବଳରେ ଯିଏ ରାଜ୍ୟ ଜିଣିଚି, ସିଏ ବୁଝିପାରେ ଏକମାତ୍ର ବାହୁବଳର ଭାଷା । ସମକାଳର ଭାବୁକଙ୍କ ତୁଳନାରେ ତେଣୁ ବଙ୍କିମଙ୍କ ଉପଲବ୍ଧି ଢେର୍ ବେଶି ବାସ୍ତବାଭିମୁଖୀ । ଅ୍ୟାକାଡେମିକ୍ ଜ୍ଞାନଚର୍ଚ୍ଚାରେ ଏକ୍ଷଣି ବିପରୀତ ଯୁଗ୍ମପଦ

(=ବାଇନାରି) ସାହାଯ୍ୟରେ କୁହାଯାଉଛି ବଙ୍କିମ୍ ମୁସଲ୍‌ମାନ୍ ରାଜତ୍ୱ ବିପକ୍ଷରେ, କିନ୍ତୁ ଇଂରେଜ୍ ରାଜତ୍ୱ ସପକ୍ଷରେ । ଏ ବିଚାର ଗଜମୂର୍ଖଙ୍କ ମଗଜପ୍ରସୂତ, କାହିଁକିନା, ଖାଲି ସାହିତ୍ୟ ରଚନାକରି କୋଉହେଲେ ଶିଳ୍ପୀ ବାସ୍ତବକୁ ବଦଳାଇଦେଇ ପାରେନା; ମାତ୍ର ବଙ୍କିମ୍ ଯେହେତୁ ମନନକ୍ଷେତ୍ରରେ ବିପ୍ଳବୀ, ସ୍ଥିତ ବାସ୍ତବ ଓ ତା'ର ଐତିହାସିକ ସମ୍ଭାବନା ସମ୍ବନ୍ଧରେ ସଚେତନ କରିଚନ୍ତି ସମାଜକୁ । ଶିଳ୍ପୀ ଜାଣେ, ସମାଜ ବିମୂର୍ତ୍ତ ନୁହେଁ, ଅର୍ଥାତ୍ ରିଆଲିଟି ଜମାରୁ ଧ୍ୟାନଲବ୍ଧ କଳ୍ପଲୋକ ନୁହେଁ, ଗୋଟାପଣେ ଅର୍ଗାନିକ୍ ସତ୍ତା ଏବଂ ସେଥିପାଇଁ, କ୍ଷୟ-ବୃଦ୍ଧି ତାର ପ୍ରାକୃତିକ ନିୟମ । ଏଇ ପରିପ୍ରେକ୍ଷୀରେ ବଙ୍କିମ୍‌ଙ୍କ ଶିଳ୍ପଚେତନାର ଗତିଶୀଳତା ଏଠି ବିବେଚ୍ୟ ।

ମହେନ୍ଦ୍ରକୁ ସାଙ୍ଗରେ ଘେନି ଭବାନନ୍ଦ ମଠରେ ପହଞ୍ଚିବା ବେଳକୁ ସର୍ବବରିଷ୍ଠ ବ୍ରହ୍ମଚାରୀ ସତ୍ୟାନନ୍ଦ ଆହ୍ନିକରେ ବସିଚନ୍ତି; ନେଇଗଲେ ମହେନ୍ଦ୍ରକୁ ସ୍ତ୍ରୀ ଓ ଝିଅ ପାଖକୁ, ଯାଉଯାଉଁ ବାଟରେ ଦେଖାଇଲେ ପଛକୁ ପଛ ତିନିଟି ମାତୃପ୍ରତିମା, 'ମା ଯା ଛିଲେନ୍', 'ମା ଯା ହଇୟାଛେନ୍' ଆଉ 'ମା ଯା ହଇବେନ୍', ଦେଶର ଅତୀତ-ବର୍ତ୍ତମାନ-ଭବିଷ୍ୟତ୍ । ପ୍ରଥମ ପ୍ରତିମା ଜଗଦ୍ଧାତ୍ରୀ, ଅରଣ୍ୟବାସିନୀ ପଶୁସଂହାରିଣୀ ମାତୃକା । ଦ୍ୱିତୀୟ ପ୍ରତିମା ମହାକାଳୀ, ହତସର୍ବସ୍ୱା; ତେଣୁ ନଗ୍ନିକା । ଦେଶ ଆଜି ଶ୍ମଶାନ, ମା ତେଣୁ କଙ୍କାଳମାଳିନୀ, ସନ୍ତାନ ତାଙ୍କ ହାତରେ ଧରାଇଦେଇଚି ଖଡ୍ଗଖର୍ପର । ତୃତୀୟ ପ୍ରତିମା ସପରିବାର ଦୁର୍ଗା, ସର୍ବମଙ୍ଗଳମାଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ / ଶରଣ୍ୟେ ତ୍ରିମ୍ବିକେ ଗୌରି ନାରାୟଣୀ ନମୋସ୍ତୁତେ । ଦଳରେ ଅନ୍ତର୍ଭୁକ୍ତକରି ମହେନ୍ଦ୍ରକୁ ଦୀକ୍ଷାଦେବା ଉତାରୁ ସଂଗଠନ ଓ ବିପ୍ଳବୀର ବ୍ୟକ୍ତିଗତ ଆଚରଣର ଯୋଉ ନକ୍ସାଟି ସତ୍ୟାନନ୍ଦ ଆଙ୍କିଦେଇଚନ୍ତି, ଗାନ୍ଧିଙ୍କ ଆବିର୍ଭାବ (୧୯୧୭) ପର୍ଯ୍ୟନ୍ତ ତାହାହିଁ ରହିଚି ଭାରତରେ ବିପ୍ଳବୀରାଜନୀତିର ଅବିଚଳ ଆଦର୍ଶ, ଯେପରି, ଆଗ୍ନେୟାସ୍ତ୍ର ତିଆରି ସକାଶେ ନିଜ ଉଦ୍ୟମରେ କାରଖାନା ସ୍ଥାପନ । ବଜାରରୁ ଗୋଳାବାରୁଦ କିଣିବା ସପକ୍ଷରେ ସତ୍ୟାନନ୍ଦ ସମ୍ମତି ଦେଇନାହାଁନ୍ତି, କାହିଁକିନା, ପରନିର୍ଭରହୋଇ ଜୀବନପଣ ସଂଗ୍ରାମ, ବାଇ ଡେଫିନେସନ୍ ଆ କଣ୍ଟ୍ରାଡିକ୍ସନ୍ । ସ୍ୱଦେଶରେ ଲଭ୍ୟ କାରିଗରୀ ନୈପୁଣ୍ୟକୁ ସେ କାମରେ ସଦୁପଯୋଗ, ବିତ୍ତବାନର ସମ୍ପତ୍ତି ଲୁଟ୍‌କରି ଅର୍ଥସଂଗ୍ରହ, ଏବଂ ପ୍ରୟୋଜନ ସ୍ଥଳେ, ରୂପଭେକ ବଦଳ । ତା'ଛଡ଼ା, ବ୍ୟକ୍ତିଗତ ଜୀବନଚର୍ଯ୍ୟାରେ ସନ୍ତାନ ହେବ ସର୍ବସ୍ୱତ୍ୟାଗୀ, ସଂସାରକର୍ମରୁ ସ୍ୱେଚ୍ଛାପ୍ରତ୍ୟାହୃତ ବ୍ରହ୍ମଚାରୀ । ତ୍ୟାଗର ସୀମା ଆତ୍ମବଳି । ଏପରିକି, ଗୁରୁ ସମକ୍ଷରେ ମଧ୍ୟ 'ଅବାଚ୍ୟ'କୁ ଗୋପନ କରେନା । ସନ୍ନ୍ୟାସୀ ଭଳି ପୂର୍ବସଂସ୍କାର ଛାଡ଼ିଆସିବାକୁ ହୁଏ, କାହିଁକିନା, ଜାତି କୁଳ ଭେଦାଭେଦ ଊର୍ଦ୍ଧ୍ୱରେ ସନ୍ତାନର ଅବସ୍ଥାନ, ମାନସିକ

ଅବସ୍ଥାନ । ମା'ର ମୁକ୍ତି ସାଧିତ ନହେବା ଯାଏଁ ଇନ୍ଦ୍ରିୟ ସମ୍ବରଣ କରିବ, ସ୍ତ୍ରୀଲୋକ ସହିତ ଏକାସନରେ ବସିବନାହିଁ । ନିଜ ପାଇଁ କିମ୍ବା ସ୍ୱଜନ ପାଇଁ ଅର୍ଥ ଉପାର୍ଜନ କରିବନାହିଁ, ଯା ପାଇବ ମଠର ଧନାଗାରରେ ଅର୍ପଣ କରିବ । ସନାତନ ଧର୍ମକୁ ରକ୍ଷାକରିବାକୁ ସ୍ୱହସ୍ତରେ ଅସ୍ତ୍ର ଧାରଣକରି ଯୁଦ୍ଧକରିବ । ରଣରେ ଭଙ୍ଗଦେବା ଯେମିତି ଅକ୍ଷମଣୀୟ ଅପରାଧ, ପ୍ରତିଜ୍ଞା ଭଙ୍ଗ ତଦପେକ୍ଷା ଊଣା ନୁହେଁ । ଉଭୟ ଅପରାଧର ପ୍ରାୟଶ୍ଚିତ ଜ୍ୱଳନ୍ତ ଚିତାରେ ପ୍ରବେଶ ଅଥବା ବିଷପାନ । ଦେବ ଅନୁଗ୍ରହ ସାଫଲ୍ୟର ସହାୟକ ହେବ ପୁରୁଷକାର ଯଦି ଶିଥିଳ ନହୁଏ; ସନ୍ତାନମାନଙ୍କ ଏକତା ତେଣୁ ଅପରିହାର୍ଯ୍ୟ । ଅନୈକ୍ୟ ମଧ୍ୟ ପାପାଗ୍ରେର । ଏ ପରୀକ୍ଷାରେ ଉତ୍ତୀର୍ଣ୍ଣହେବା ଦୁଃସାଧ; ମାତ୍ର ହୃଦୟରେ ଯଦି ଭକ୍ତି ଦୃଢ଼ହୁଏ, ଶକ୍ତି ଆସେ ଅନଳସ ଅଭ୍ୟାସରୁ । ସବୁ ସନ୍ତାନ ତେଣୁ ରହିବେ ଏକାଜାଗାରେ ଏବଂ ସେ ଜାଗା ହେବ 'ଗଡ଼' ପରି ଦୁର୍ଭେଦ୍ୟ । ଗାନ୍ଧି ବି ଅଳ୍ପବିସ୍ତର ମାନି ଚଳିଚନ୍ତି ଏ ଅନୁଶାସନ, ଖାଲି ଗଡ଼ ଜାଗାରେ ଥିଲା କୁଟୀର । ଟଙ୍କା ବି ଲୁଟ୍ କରିନାହାଁନ୍ତି, ଗ୍ରହଣକରିଚନ୍ତି ଭିକ୍ଷା, ମାତ୍ର 'ବନ୍ଦେ ମାତରଂ' ନିର୍ଘୋଷ ଛାଡ଼ିନାହାଁନ୍ତି ସତ୍ୟାଗ୍ରହୀ; ଆଉ ମଝିବାଟରୁ ଗୋଠଖଣ୍ଡିଆ ହୋଇ ସୁଭାଷ ବୋସ ଗଢ଼ିଚନ୍ତି ଆଜାଦ୍ ହିନ୍ଦ୍ ଫୌଜ୍ ।

ଗୁରୁଙ୍କ ଦ୍ୱାରା ଆଦିଷ୍ଟ ମହେନ୍ଦ୍ର ନିଜ ଗାଁ 'ପଦଚିହ୍ନ'କୁ ଫେରିଯାଇ ପରିତ୍ୟକ୍ତ ଅଟ୍ଟାଳିକାରେ ବସାଇଚି ସନ୍ତାନଦଳର ଅସ୍ତ୍ରାଗାର ଆଉ ଧନାଗାର; ସତ୍ୟାନନ୍ଦଙ୍କ ଦ୍ୱାରା ପ୍ରେରିତ କାରିଗର ସେଠି ତିଆରିକରିଚନ୍ତି ତୋପ ଓ ତଦୁପଯୋଗୀ ଗୋଳାବାରୁଦ, ଯା ଇଂରେଜ୍ ଛଡ଼ା ଆଉକାହା ପାଖରେ ମିଳିବନାହିଁ । ରଜା-ଜମିଦାରଙ୍କ ତହବିଲ୍, ଇଂରେଜ୍‌ର ରେଶମକୁଠି, ସିପେଇ-ପିଆଦା ସଦରକୁ ଘେନିଯାଉଥିବା ଖଜଣା, ନିର୍ବିଘ୍ନରେ ଲୁଟ୍‌କରି ସନ୍ତାନ ନିଜ ଧନାଗାରକୁ ପୁଷ୍ଟ କରିଚନ୍ତି କ୍ରମାଗତ; ସଂଖ୍ୟା ବଢ଼ିବଢ଼ି ହେଲେଣି ସେମାନେ ଦଶହଜାର । ଇଂରେଜ୍ ତାଙ୍କ ଦୃଷ୍ଟିରେ ଯବନ / ମ୍ଳେଚ୍ଛ । ମ୍ଳେଚ୍ଛ ନିଧନର ଧର୍ମସମ୍ମତ ପ୍ରେରଣା ଆସୁଚି *ଗୀତଗୋବିନ୍ଦ* ରୁ : ମ୍ଳେଚ୍ଛନିବହନିଧନେ କଳୟସି କରବାଳଂ/ ଧୂମକେତୁମିବ କିମପି କରାଳଂ/ କେଶବଧୃତ କଳ୍କିଶରୀର... । ଅର୍ଥାତ୍, ଧର୍ମବିଦ୍ୱେଷ ହିଁ ସନ୍ତାନର ଶୈଳଦୃଢ଼ ପ୍ରତ୍ୟୟ, କାହିଁକିନା, ଯବନ ଓ ମ୍ଳେଚ୍ଛ ମାତୃଭୂମିକୁ କରୁଚି କଳୁଷିତ । ସିପାହୀବିଦ୍ରୋହ ବେଳେ ମଧ୍ୟ ଖ୍ରୀଷ୍ଟାନ୍‌ଙ୍କ ଉପରେ ହୋଇଚି ଆକ୍ରମଣ । ଯୁଦ୍ଧ ତେଣୁ ଅନିର୍ବାର୍ଯ୍ୟ । ଆକ୍ରମଣ ଆଶଙ୍କାରେ ସନ୍ତ୍ରସ୍ତ ସାମନ୍ତଶ୍ରେଣୀ (ଇଂରେଜ୍ ବଣିକ, ମୁସଲମାନ୍ ରାଜୁଡ଼ା, ହିନ୍ଦୁ ଜମିଦାର) । ସନ୍ତାନମାନଙ୍କ ବିରୋଧରେ ଗଭର୍ଣ୍ଣର୍ ଜେନେରାଲ୍ ୱାରେନ୍ ହେଷ୍ଟିଙ୍ଗ୍‌ସ୍‌ଙ୍କ ପାଖରେ ଗୁହାରି କରିଚନ୍ତି । ତୋପବନ୍ଧୁକ ସୈନ୍ୟସାମନ୍ତ ଧରି ଆଗଦଫାରେ ଆସିଲେ

ସେନାଧ୍ୟକ୍ଷ ଟମାସ୍, ମାତ୍ର ଗୋରିଲା ଆକ୍ରମଣକୁ ମୁକାବିଲାକରିବା ବ୍ୟାରାକ୍‌ରେ ପାଳିତ ସିପାହୀଙ୍କ ପାଇଁ ହେଉଛି ଅସମ୍ଭବ, ବଣରେ ପଶି ବାରହା ମିରିଗ ମାରିଲେ, ଏକୁଟିଆ ଦେଖିଲେ ସାନ୍ତାଳ ଝିଅଙ୍କୁ ଭିଡ଼ିନେଲେ । ଟମାସ୍ ଦେଖିଲେ, ଏଗୁଡ଼ାଙ୍କ ଉପରେ ଭରସାକରିବା ନିର୍ବୋଧତା, କଲିକତାରୁ ମଗାଇଲେ ଗୋରା ପଲ୍‌ଟଣ । ଆଉ ତୋପ । ଘମାଘୋଟ ଯୁଦ୍ଧରେ ମରିଚନ୍ତି ପାଞ୍ଚଜଣ ସନ୍ତାନ । ମାତ୍ର ମହେନ୍ଦ୍ର ସତରଟା ତୋପ ନେଇଆସି ସମ୍ମୁଖୀନହୋଇଚି ଯୋଉ ସମ୍ମିଳିତ ଶତ୍ରୁବାହିନୀଙ୍କୁ, ସେମାନେ ଖାଲି ଗୋରା ପଲ୍‌ଟଣ କି ତେଲଙ୍ଗା-ବିହାରୀ-ମୁସଲ୍‌ମାନ୍ ସିପାହୀ ନୁହେଁ, ସାଙ୍ଗରେ ଅଛନ୍ତି ରଜା-ଜମିଦାର-କୁଠିମାଲିକଙ୍କ ବନ୍ଧୁକଧାରୀ ପଦାତିକ ଓ ଅଶ୍ୱାରୋହୀ । ପରାସ୍ତ ହୋଇଚନ୍ତି ସମସ୍ତେ । ଏପରିକି କ୍ୟାପ୍ଟେନ୍ ଟମାସ୍ ବନ୍ଦିହୋଇ ନିହତହୋଇଚନ୍ତି ସନ୍ତାନଙ୍କ ହାତରେ । ବିବ୍ରତ ହେଷ୍ଟିଙ୍ଗ୍‌ସ୍ ଏଥର ପଠାଇଲେ ମେଜର୍ ଉଡ୍‌ଙ୍କୁ । ତୋପ ଖଞ୍ଜି ଉଡ୍ ଯମାଳୟକୁ ପଠାଇଦେଲେ ପଚିଶହଜାର ସନ୍ତାନଙ୍କୁ, କିନ୍ତୁ ଅନ୍ତିମ ମୁହୂର୍ତ୍ତରେ ସ୍ୱୟଂ ସତ୍ୟାନନ୍ଦ ଅବତୀର୍ଣ୍ଣ ହୋଇଚନ୍ତି ରଣକ୍ଷେତ୍ରରେ, ଏବଂ ଯୁଦ୍ଧ ଏମିତି ଭୟାବହ ହୋଇଉଠିଚି ଯେ ଉଡ୍‌ସାହେବଙ୍କ ମରିବା ଖବର ହେଷ୍ଟିଙ୍ଗ୍‌ସ୍‌ଙ୍କ ପାଖରେ ପହଞ୍ଚାଇଦେବାକୁ ଜଣେହେଲେ ଇଂରେଜ୍ ବାକି ରହିନାହିଁ । ଜଣେ ବିବାହିତା ରମଣୀକୁ ପୁରୁଷ ବେଶରେ ସନ୍ତାନଦଳରେ ପୂରାଇଦେଇ ବଙ୍କିମ୍ କରିଚନ୍ତି ଅସାଧ୍ୟସାଧନ । ତାଙ୍କ ମୁସଲମାନ୍ ବିଦ୍ୱେଷ ପ୍ରକୃତ ହେଉ କି ଛଳନା (ଇଂରେଜ୍‌କୁ ଭୁଆଁବୁଲାଇବା ସକାଶେ), ମାନବୀମୁକ୍ତିର ଋତ୍ୱିକ୍‌ର ମର୍ଯ୍ୟାଦା କିନ୍ତୁ ଏକମାତ୍ର ତାଙ୍କରି ପ୍ରାପ୍ୟ । *ଆନନ୍ଦ ମଠ* ଆଖ୍ୟାନ କିନ୍ତୁ ଶେଷହୋଇଚି ଇଂରେଜ୍‌ରାଜତ୍ୱ ସପକ୍ଷରେ (ଡେପୁଟି କଲେକ୍ଟର୍ ଚାକିରୀ ଦେଇଥିଲେ ବଙ୍କିମ୍‌ଙ୍କୁ!), କାହିଁକିନା, ଆର୍ଯ୍ୟ-ଧର୍ମର ପୁନରୁଦ୍ଧାରର ପୂର୍ବସର୍ତ୍ତ କୁଆଡ଼େ ଇଂରେଜ୍ ପାଖରୁ ଲଭ୍ୟ ବହିର୍ବିଷୟକ ଜ୍ଞାନ ଓ ଲୋକଶିକ୍ଷା । ଅନ୍ୟ ଶବ୍ଦରେ, ଶ୍ୱେତାଙ୍ଗ ଯେ କହୁଥିଲେ ପ୍ରାଚ୍ୟଦେଶର ଲୋକଙ୍କୁ ସଭ୍ୟକରିବା ସକାଶେ ତାଙ୍କର ଏଇ କଷ୍ଟସ୍ୱୀକାର, ଭାରତବର୍ଷର ପ୍ରଥମ ଗ୍ରାଜୁଏଟ୍ ଓ ଆଦ୍ୟ-ଉପନ୍ୟାସିକ ତାର ପ୍ରତିବାଦ କଲେନାହିଁ ବିନ୍ଦୁମାତ୍ର ।

ଯୁଦ୍ଧ ଶେଷ, କପାଳରେ ଜୟତିଳକ ଚିତାକାଟି ଆନନ୍ଦ ମଠକୁ ଲେଉଟି ଆସିଚନ୍ତି ସତ୍ୟାନନ୍ଦ ମାଘପୂର୍ଣ୍ଣିମୀ ରାତିରେ । ବିଷ୍ଣୁମଣ୍ଡପରେ ଧ୍ୟାନରେ ବସିବେ, ଠିକ୍ ସେତିକିବେଳେ ସମ୍ମୁଖରେ ଉଭାହେଲେ ଆସି ଦିବ୍ୟକାନ୍ତି ମହାପୁରୁଷ; କହିଲେ, 'ସତ୍ୟାନନ୍ଦ, ଆଜି ମାଘପୂର୍ଣ୍ଣିମା' । ତତ୍‌କ୍ଷଣାତ୍ ବୁଝିଗଲେ ବ୍ରହ୍ମଚାରୀ-ବିପ୍ଳବୀ, ଆଦେଶ ଆସିଗଲା, କର୍ମଲୋକ ଛାଡ଼ି ଏଥର ବାଛିନେବାକୁ ପଡ଼ିବ ଭିନ୍ନ ଏକ ସାଧନମାର୍ଗ । (ସ୍ମରଣ କରାଯାଇପାରେ, ବହୁବର୍ଷ ଉତାରୁ ୧୯୧୦ ଖ୍ରୀଷ୍ଟାବ୍ଦରେ

ଅରବିନ୍ଦଙ୍କ କଲିକତାରୁ ପଣ୍ଡିଚେରୀ ଅଭିମୁଖେ ନିଷ୍କ୍ରମଣ) । ଆଜ୍ଞାପାଳନ ପାଇଁ ସତ୍ୟାନନ୍ଦ ପ୍ରସ୍ତୁତ, ଅଥଚ ମନକୁ ଆସୁଚି ଦ୍ୱିଧା । ପ୍ରତ୍ୟାଗମନ କି ପ୍ରତ୍ୟାହାର ପାଇଁ ଉପଯୁକ୍ତ ସମୟ କ'ଣ ଏଇ ମୁହୂର୍ତ୍ତ ? ମରଣ ପଣକରି ଯୋଉ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ, ତା କଣ ସିଦ୍ଧହୋଇଚି ଅଦ୍ୟାବଧି ? ହିନ୍ଦୁରାଜ୍ୟ ପ୍ରତିଷ୍ଠାକରି ସନାତନ ଧର୍ମକୁ କଣ ଚିରଦିନ ପାଇଁ କରାଯାଇଚି ନିଷ୍କଣ୍ଟକ ? ସଂଶୟ ଭଞ୍ଜନକରି ସେଇ ଜ୍ୟୋତିର୍ମୟ ପୁରୁଷ କହିଚନ୍ତି, ମୁସଲମାନ୍‌ରାଜ୍ୟ ଆଉ ନାହିଁ, ସତ୍ୟାନନ୍ଦ ପାଇଁ ତେଣୁ କରଣୀୟ କିଛିନାହିଁ । ଗୁରୁବାକ୍ୟକୁ ଅକାଟ୍ୟ ଜାଣିସୁଦ୍ଧା ସନ୍ତାନ କହିଚି 'ମୁସଲମାନ୍ ରାଜ୍ୟ ଧ୍ୱଂସହଇଯାଛେ, କିନ୍ତୁ ହିନ୍ଦୁରାଜ୍ୟ ସ୍ଥାପିତ ହୟ୍‌ନାଇ, ଏଖନଓ କଲିକାତାୟ୍ ଇଂରେଜ୍ ପ୍ରବଲ୍ ।' ସତ୍ୟଦ୍ରଷ୍ଟା ଋଷି (ବଙ୍କିମ୍) ନିଶ୍ଚୟ ଜାଣନ୍ତି, ଏକାଧିକ୍ବାକେ ବିବାକ ମ୍ଳେଚ୍ଛସଂସର୍ଗରୁ ମାତୃଭୂମିକୁ ମୁକ୍ତକରିବାର ଆଶୁସମ୍ଭାବନା ଏକ୍ଷଣି ଆସିନାହିଁ, ଚିରବାଞ୍ଛିତ ହିନ୍ଦୁରାଜ୍ୟର ପୁନାର୍ବିଭାବ ବିଳମ୍ବିତ ହେବ, ତା ଆଗରୁ ଇଂରେଜ୍ ହେବ ରାଜା । ପୁରୁଣା ମ୍ଳେଚ୍ଛ ଜାଗାରେ ନୂଆ ମ୍ଳେଚ୍ଛର ଅଧିକାର ଦେଶରେ ବଳବତ୍ ହେବ । ଶୁଣିବା ମାତ୍ରକେ ସତ୍ୟାନନ୍ଦଙ୍କ ପତନ ଓ ମୂର୍ଚ୍ଛା । ଅବୋଧ ଶିଷ୍ୟକୁ ପ୍ରବୋଧଦେବା ସକାଶେ 'ଅପୂର୍ବଦୃଶ୍ୟ ପ୍ରକାଣ୍ଡକାୟ ଜଟାଜୁଟଧାରୀ' ଉନ୍ମୋଚିତ କରିଦିଅନ୍ତି ଅଧିକାର-ଅନଧିକାରର ଗୂଢ଼ରହସ୍ୟ ତତ୍‌କ୍ଷଣାତ୍ 'ଯା ହଇବେ ତାହା ଭାଲଇ ହଇବେ । ଇଂରେଜ୍ ରାଜା ନାହଇଲେ ସନାତନ୍ ଧର୍ମେର୍ ପୁନରୁଦ୍ଧାର୍ ସମ୍ଭାବନା ନାଇ ।'

'ପୁନରୁଦ୍ଧାର', ଇଂରେଜୀରେ ରନେସାଁସ୍, ଏକ ସାଂସ୍କୃତିକ ପ୍ରତ୍ୟୟ; ଆମଦାନି କରାଯାଇଚି ଇଉରୋପ୍‌ରୁ; ଭାରତର ମନନପରମ୍ପରାରେ ପଶ୍ଚାଦ୍‌ଗମନ ଇତିପୂର୍ବରୁ ପରିଲକ୍ଷିତ ହୋଇନାହିଁ । ପୁରାତନ ଓ ନୂତନର ସଂଯୋଗ ଓ ସଂଘାତ ବିନ୍ଦୁହିଁ ଇତିହାସର ସଂଧିକ୍ଷଣ; ସେଇ କ୍ଷଣରେ ମୁଣ୍ଡଟେକେ ଏଇ ବିଶେଷ ପୂର୍ବପଦ 'ପୁନଃ', ଇଂରେଜୀରେ ପ୍ରିଫିକ୍ସ 're'; ଯେପରି, ରେଷ୍ଟୋରେସନ୍, ରିକଭର୍, ରିନିଉ, ରିଟର୍ଣ୍ଣ, ରିଭାଇଭାଲ୍, ରେନେସାଣ୍ଟ୍ । ଭାରତୀୟ ଭାଷାରେ ତୁଳନୀୟ ପ୍ରତିଶବ୍ଦର ଅଭାବ ନାହିଁ; ମାତ୍ର ଯୋଉ ଗୋଟିକ ଅନ୍ୟସବୁ ପ୍ରତିଶବ୍ଦ ଅପେକ୍ଷା ଅଧିକତର କୌଳୀନ୍ୟ ଆହରଣକରିଚି, ତା' 'ପୁନର୍ଜାଗରଣ' (ରନେସାଁସ୍) । ଅର୍ଥାତ୍, ସ୍ଥିତିସ୍ଥାପକତା, 'ପୁନଃ' ସେଇ ବ୍ୟଞ୍ଜନାରେ, ଯେକୌଣସି ବୟାନକୁ ଆତ୍ମସ୍ଥ କରିପାରେ, ଅନାୟାସ ଦାକ୍ଷିଣ୍ୟରେ ଅନ୍ତର୍ଭୁକ୍ତ କରିପାରେ ଯେକୌଣସି ରାଜନୀତିକ ଅବସ୍ଥାନ ବା ପ୍ରେକ୍ଷିତକୁ । ପୁନର୍ଜାଗରଣର ପ୍ରୟୋଗ-ବୈଚିତ୍ର୍ୟ ବୁଝାଇଦେଉଚି, ଭାରତୀୟ ବୁଦ୍ଧିଜୀବୀ ମହଲରେ ରନେସାଁସ୍ ସମ୍ବନ୍ଧରେ ଏକପ୍ରକାର ଐକମତ ତିଆରି ହୋଇସାରିଚି । କିନ୍ତୁ, ପରିବର୍ତ୍ତିତ ପରିସ୍ଥିତିରେ, ନିର୍ବିଶେଷ

ଏଇ ପ୍ରୟୋଗ କ'ଣ ପୁରାତନ ଯୁକ୍ତିବଳୟ ସହିତ ସଦ୍‌ଭାବ ଅତୁଟ ରଖି ଗଢ଼ିଦେଇପାରେ ନୂତନ ଯୁକ୍ତିପଟ ?

ବଙ୍କିମ୍‌ଙ୍କ ବିଗ୍ଭରରେ ଇଂରେଜ୍‌ର ରାଜତ୍ୱ ଭଳି ଯୁଗାନ୍ତକାରୀ ଘଟଣା ଆଦୌ ଆପାତିକ ନୁହେଁ, ବରଂ ଆବଶ୍ୟକ । ବିଧାତାଙ୍କ ସଂକଳ୍ପ ସାଧିତ ହେଉଚି ଯେହେତୁ ତାହାରି ମଧ୍ୟସ୍ଥତାରେ, ସନାତନ ଧର୍ମର ହତଶ୍ରୀ ଫେରାଇଆଣିବାର ପଥ ସୁଗମ କରୁଚି ଔପନିବେଶିକତା । ଅପୂର୍ବ ଏ ଯୋଗାଯୋଗ କାଳେ ସତ୍ୟାନନ୍ଦଙ୍କୁ ହତଚକିତ କରିଦେବ, କାର୍ଯ୍ୟକାରଣର ଅମୋଘ ନିବନ୍ଧନ ଫିଟାଇଦେଇଚନ୍ତି ଜଟାଜୁଟଧାରୀ; ଯଥାର୍ଥ ସନାତନ ଧର୍ମ, ମ୍ଲେଚ୍ଛଙ୍କ ଭାଷାରେ ହିନ୍ଦୁଧର୍ମ, କାଳଗତିରେ ଲିଭିଯିବାକୁ ବସିଛି; ତା' ଜାଗାକୁ ମାଡ଼ିବସିଚି ଅପକୃଷ୍ଟ ଲୌକିକ ଧର୍ମାଗ୍ଭର, ଲୋକେ ଭୁଲିଯାଇଚନ୍ତି ତେତିଶିକୋଟି ଠାକୁରଠାକୁରାଣୀଙ୍କ ମାର୍ଜନା ମୂଳରୁ ସନାତନ ଧର୍ମ ନୁହେଁ । ପ୍ରକୃତ ଧର୍ମ ଜ୍ଞାନାତ୍ମକ, କର୍ମାତ୍ମକ ନୁହେଁ । ଜ୍ଞାନାତ୍ମକ ବିଷୟ ଦୁଇପ୍ରକାର, ବହିର୍ବିଷୟକ ଆଉ ଅନ୍ତର୍ବିଷୟକ । ଅନ୍ତର୍ବିଷୟକ ଜ୍ଞାନ କିନ୍ତୁ ସାରବସ୍ତୁ । ତଥାପି ପାରମ୍ପର୍ଯ୍ୟବିଧାନ ଏପରି ଅଲଂଘ୍ୟ ଯେ ବହିର୍ବିଷୟକ ଜ୍ଞାନକୁ ପଛରେ ପକାଇ ଅନ୍ତର୍ବିଷୟକ ଜ୍ଞାନକୁ ଆୟତ୍ତକରାଯାଏନା, ସ୍ଥୁଳକୁ ଉପଲବ୍ଧି ନକଲେ ସୂକ୍ଷ୍ମ ପ୍ରତିଭାତ ହୁଏନା । ଅଥଚ ବହିର୍ବିଦ୍ୟାଚର୍ଚ୍ଚା ଦେଶରୁ ଉଠିଯାଇଚି, ରହିଯାଇଚି ଖାଲି ଗାଣିତିକ ନିୟମରେ ଅନ୍ତଃସାରକୁ ଅବଗତହେବା ଚେଷ୍ଟା । ବହିର୍ବିଷୟକ ଜ୍ଞାନର ପୁନଃପ୍ରଚଳନ ନହେଲେ ସନାତନଧର୍ମର ଭବିଷ୍ୟତ ଅନ୍ଧକାର । ଲୋକଶିକ୍ଷା ବିନା ପୁଣି ଆଧ୍ୟାତ୍ମିକ ଶିକ୍ଷା ମଧ୍ୟ ବିକଚିତ ହୋଇପାରେନା, ମାତ୍ର ଦେଶ ଭିତରେ ଏପରି ଲୋକ ଦିଶୁନାହିଁ ଯିଏ ଲୋକଶିକ୍ଷାରେ ନିପୁଣ । ବହିସ୍ତତ୍ତ୍ୱର ରିକ୍ତତା ଦୂରକରିବାକୁ ତେଣୁ ବିଦେଶରୁ ଆମଦାନି କରିବାକୁ ପଡ଼ିବ ଲୋକଶିକ୍ଷା । ସେ ଶିକ୍ଷା ପରଶିକ୍ଷା କି ନୁହେଁ, ସେ ବିଗ୍ଭର ସନ୍ତାନକୁ କରିବାକୁ ପଡ଼ିବନାହିଁ, କାହିଁକିନା, ପରମପୁରୁଷଙ୍କ ନିର୍ଦ୍ଦେଶରେ ସତ୍ୟର ସ୍ୱରୂପ ଭାରତଭୂମିରେ ଅବତୀର୍ଣ୍ଣ ହୋଇଚି, 'ବର୍ହିବିଷୟକ୍ ଜ୍ଞାନେ ଅତି ସୁପଣ୍ଡିତ୍, ଲୋକଶିକ୍ଷାୟ୍ ବଡ଼ ସୁପଟୁ' ଇଂରେଜ୍ । ଇଂରେଜୀଶିକ୍ଷା ଗୁଣରେ ବହିସ୍ତତ୍ତ୍ୱରେ ପାରଙ୍ଗମ ହୋଇପାରିଲେ, ପ୍ରପଞ୍ଚମୟ ବିଶ୍ୱର ରାସ୍ତାଘାଟ ଚିହ୍ନିପାରିଲେ 'ପ୍ରକୃତ ଧର୍ମ ଆପ୍‌ନାଆପ୍‌ନି ପୁନରୁଦ୍ଦୀପିତ ହଇବେ' । ଅର୍ଥାତ୍, ଇଂରେଜ୍ ରାଜତ୍ୱର ପରମାୟୁ ନସରିବା ଯାଏଁ ହିନ୍ଦୁ ହେବ 'ଜ୍ଞାନବାନ୍, ଗୁଣବାନ୍ ଆଉ ବଳବାନ୍'; ଜ୍ଞାନବାନ ଗୁଣବାନ ବଳବାନ ହୋଇ ଇଂରେଜ୍‌ରାଜତ୍ୱର ଘଟାଇବ ଅବଲୁପ୍ତି । କଥା ଶେଷକରି ସତ୍ୟାନନ୍ଦଙ୍କ ହାତ ଧରିଚନ୍ତି ଗୁରୁଦେବ । ସେ ଯାଦୁସ୍ପର୍ଶରେ ଧର୍ମ ଓ କର୍ମ, ଭକ୍ତି ଓ ଜ୍ଞାନ, ବିସର୍ଜନ ଓ ପ୍ରତିଷ୍ଠା ହୋଇଯାଏ ଏକୀଭୂତ; ବିସର୍ଜନ ହାତଧରି ଟାଣିନିଏ;

ପ୍ରତିଷ୍ଠାକୁ । ଦ୍ୱିଧାମୁକ୍ତ ସତ୍ୟାନନ୍ଦ ପ୍ରମା ଅନ୍ୱେଷଣରେ ବାହାରିପଡ଼ନ୍ତି ହିମାଳୟ ଅଭିମୁଖରେ । ମାତ୍ର ସଶସ୍ତ୍ର ସଂଗ୍ରାମକୁ ବିସର୍ଜନଦେବାକୁ ଚାହିଁନାହାଁନ୍ତି; ଗୁରୁବାକ୍ୟର 'ଆପାତିକ ଶାନ୍ତି-କଲ୍ୟାଣ' କର୍ଣ୍ଣକୁହରରେ ପ୍ରବେଶକରିବା ମାତ୍ରକେ ଚକ୍ଷୁଦ୍ୱୟରୁ ନିଃସୃତହୁଏ ଗର୍ଜମାନ ଅଙ୍ଗୀକାର; 'ଶତ୍ରୁ ଶୋଣିତେ ସିକ୍ତ କରିୟା ମାତାକେ ଶସ୍ୟଶାଳିନୀ କରିବ' । ଆଖ୍ୟାନର ପରିସମାପ୍ତି ବେଳେ ବାଜିଉଠେ ପ୍ରତିମାବିସର୍ଜନର ବାଦ୍ୟ, ସନ୍ନ୍ୟାସୀ ଓ ସତ୍ୟାନନ୍ଦଙ୍କ ବାଦ-ପ୍ରତିବାଦ ମୀମାଂସା ହୁଏନା ।

୧୮୮୨ରୁ ୧୮୯୨, ଦଶବର୍ଷ ଭିତରେ *ଆନନ୍ଦ-ମଠ* ର ବାହାରିଚି ପାଞ୍ଚଟି ସଂସ୍କରଣ, ଏବଂ ରାଜଦ୍ରୋହ ଅପବାଦରୁ ଆତ୍ମରକ୍ଷା କରିବାକୁ ବଙ୍କିମ୍ ପ୍ରତି ସଂସ୍କରଣରେ ଘଟାଇଚନ୍ତି ସୁଚିନ୍ତିତ ପରିବର୍ତ୍ତନ; ପୁରାତନ ଦ୍ୱନ୍ଦ୍ୱ ତଥାପି ରହିଯାଇଚି ଅସମାଧିତ, କାହିଁକିନା, ପ୍ରକୃତ ଓ ଗୂଢ଼ ଅଭିପ୍ରାୟ, ସମଗ୍ର ଅହିନ୍ଦୁ ସମ୍ପ୍ରଦାୟକୁ ବାଦ୍‌ଦେଇ ବିଶୁଦ୍ଧ ହିନ୍ଦୁରାଷ୍ଟ୍ରର ସଂସ୍ଥାପନ । ଏବଂ ବାହୁବଳରେ ଘଟିବ ସେଇ ବିଶୋଧନ । ବ୍ରିଟିଶ୍-ଆନୁଗତ୍ୟର ଦସ୍ତାବିଜ୍ ହୋଇସୁଦ୍ଧା ସଂଘାତର ସମ୍ଭାବନାକୁ ଅସ୍ୱୀକାର କରେନା *ଆନନ୍ଦମଠ* । କିନ୍ତୁ କି ଯୁକ୍ତିରେ ଇଂରେଜ୍ ଓ ମୁସଲମାନ୍ ସ୍ଥାନ ବିନିମୟ କରନ୍ତି ଆଖ୍ୟାନର ପ୍ରବାହରେ ? ପ୍ରଶ୍ନଟା ତାତ୍ପର୍ଯ୍ୟପୂର୍ଣ୍ଣ, କାହିଁକିନା, ବ୍ରିଟିଶ୍-ସୂର୍ଯ୍ୟ ଯେତେବେଳେ ଅସ୍ତମିତ ହେବ ଭାରତ-ଗଗନରୁ, ଜାତୀୟତାବାଦର ଆକରଗ୍ରନ୍ଥ *ଆନନ୍ଦମଠ* ର ଦୀକ୍ଷାମନ୍ତ୍ର ସେଦିନ କଣ ପ୍ରାସଙ୍ଗିକ ହୋଇ ରହିଥିବ ତଥାପି ? ହିନ୍ଦୁ-ମୁସଲ୍‌ମାନ୍-ଇଂରେଜ୍ ଏଇ ତ୍ରିକୋଣ ସମ୍ବନ୍ଧ ଗଠିତକରିଚି ଆଖ୍ୟାନର ଯୋଡ଼ କଳେବର, ତା' ଭିତରେ ସକ୍ରିୟ କି ରକମ ଇତିହାସ-ଭାବନା ? ସନ୍ଦେହ ନାହିଁ, ଇଂରେଜ୍-ସଂସ୍ପର୍ଶ ଓ ଇଂରାଜୀଶିକ୍ଷା କଲ୍ୟାଣରୁ ମନନର ମାନଚିତ୍ର ପ୍ରସାରିତ ହୋଇଥିଲା ଦେଶର ଏକାଂଶର, ମାତ୍ର ଚକ୍ରବାଳର ବ୍ୟାପ୍ତି ସତ୍ତ୍ୱେ ଇଉରୋପ୍ ବ୍ୟତୀତ ପୃଥିବୀର ଅଧିକାଂଶ ଭୂଖଣ୍ଡ ରହିଯାଇଚି ସେ ବ୍ୟାପ୍ତିପରିସୀମା ବାହାରେ, ଏବଂ ସେଥିପାଇଁ, ଏକମାତ୍ର ଇଂଲ୍ୟାଣ୍ଡ୍‌କୁ ଘେରି ଭାରତୀୟ ଶିଷ୍ଟମଣ୍ଡଳୀ ମନରେ ଇଉରୋପ୍ ସମ୍ବନ୍ଧରେ ଯେ ଏକ ଅଭିଭବ ସୃଷ୍ଟିହେବ, ଅସ୍ୱାଭାବିକ ସେଇ ବିହ୍ୱଳତା କିନ୍ତୁ ସ୍ୱାଭାବିକ । ବାବୁମାନେ ଧରିନେଇଚନ୍ତି (ରାମମୋହନ ରାୟଙ୍କ ପାଖରୁ ଜବାହର୍‌ଲାଲ୍ ନେହ୍‌ରୁ ପର୍ଯ୍ୟନ୍ତ), ଇଉରୋପ୍‌ର ଇତିହାସ ସତେ ଯେମିତି ଏକ ଧାରାବାହିକ ଉନ୍ମୋଚନ, ଯାର ପ୍ରତି ପର୍ଯ୍ୟାୟରେ ସ୍ପଷ୍ଟରୁ ସ୍ପଷ୍ଟତର ହେଉଚି ବିଶାଳ ଏକ ପରିକଳ୍ପନା, ଅନିବାର୍ଯ୍ୟଭାବେ ପ୍ରକଟହେଉଚି ଅଖଣ୍ଡ ଅଦ୍ୱିତୀୟ ଏକ ବିଷୟୀସତ୍ତାର କ୍ରମବିକାଶ, ଏବଂ ବିକାଶଗତିର ପ୍ରତ୍ୟେକ ବାଙ୍କ ଚିହ୍ନିତକରୁଚି ପ୍ରଗତିର ଚିହ୍ନସ୍ତମ୍ଭ; ଭାରତରେ ସେ ନିୟମର ବ୍ୟତିକ୍ରମ ହୋଇପାରେନା । ଯୁଗଟା ଅବଶ୍ୟ ଥିଲା ଇଂଲଣ୍ଡର

ଅଭିଭାବକତ୍ୱର ସମ୍ପ୍ରସାରଣ କାଳ, ଏବଂ ସେଇ ଦମ୍ଭରେ ଇଉରୋପ୍ ଦାବିକରିଚି ପୃଥିବୀର ଇତିହାସରେ ଇଉରୋପୀୟ ଆଖ୍ୟାନ ହିଁ ଆଦିଆଖ୍ୟାନ,ଏବଂ ଯେହେତୁ ଆଦିଆଖ୍ୟାନ, ମାନବସମାଜର ଅନନ୍ୟ ସମ୍ବଳ । ପୁଣି, ଇତିହାସର ଯୁକ୍ତି ଯେହେତୁ ସର୍ବତ୍ର ଏକନିୟମ, ଗ୍ରେକୋ-ରୋମାନ୍ ଧ୍ରୁପଦୀ ଯୁଗ, ତମସାଛନ୍ନ ମଧ୍ୟଯୁଗ, ଆଉ ଆଲୋକଭାସ୍ୱର ଆଧୁନିକ ଯୁଗ- ପର୍ବତ୍ରୟର ସମରୂପ ହେବାକୁ ବାଧ ତମାମ ଜଗତର ଇତିହାସ । ସାମ୍ରାଜ୍ୟବାଦର ପ୍ରରୋଚନାରେ ରନେସାଁସ୍ ଆଖ୍ୟାନଟି ତେଣୁ ପାଲଟିଯାଏ ଏକ ମେଟାନ୍ୟାରେଟିଭ୍ ବା ଅଧିଆଖ୍ୟାନ ।

ସମାଜଜୀବନ ବିବର୍ତ୍ତିତହେବା ପ୍ରକ୍ରିୟାରେ ଇତିହାସ ବିଷୟରେ ନାନାଦି ଦାର୍ଶନିକ ତତ୍ତ୍ୱ ଗଢ଼ିଉଠିଚି, ମାତ୍ର ସେଥିରୁ କୋଉ ଗୋଟାକୁ ସବୁପ୍ରଶ୍ନର ଉତ୍ତର ବୋଲି ଗ୍ରହଣକଲେ ପାଣି ଗୋଳିଆହେବ ସିନା, ଆଲ୍ଲାଦୀନ୍‌ର ଚିରାଗ୍ ରହିଯିବ କେବଳ ମିଥ୍ । କାହିଁକିନା, ସେଇ ମିଥ୍‌କୁ ପ୍ରଚ୍ଛଦକରି, ତତ୍ତ୍ୱ ନିୟନ୍ତ୍ରଣ କରିପାରେ ଇତିହାସଚେତନାକୁ, ଛଳନାକରିପାରେ କାମନା ଓ କର୍ମକୁ । ଭାରତର ଐତିହ୍ୟ ବୋଲି ଯୋଉ ମିଥ୍ ପ୍ରଚଳିତହୋଇଚି ଔପନିବେଶିକ ଜମାନାରେ, ସେ ପଦାର୍ଥର ରାଜନୈତିକ ପରିଚୟ ଆଜି 'ହିନ୍ଦୁତ୍ୱ' । ଆଦି-ମଧ୍ୟ-ଅନ୍ତ ସମ୍ବଳିତ ସେଇ ଭାରତ-ଆଖ୍ୟାନ (ଜନ୍ ଷ୍ଟୁଆର୍ଟ ମିଲ୍, ୧୮୦୬-୭୩, ରଚିତ ଇତିହାସ) ଯେତେବେଳେ ଗୃହୀତ ହୁଏ ସାଡ଼ମ୍ବର, ପର୍ବତ୍ରୟର ନାମକରଣ ହୋଇଚି ହିନ୍ଦୁ, ମୁସଲ୍‌ମାନ୍ ଆଉ ବ୍ରିଟିଶ୍ । ଇଉରୋପୀୟ ନଜିର୍‌ରେ ତିଆରିହେଲେ ସୁଦ୍ଧା, ଏତେ ସ୍ୱାଭାବିକ ଓ ସଂଗତ ଲାଗିଚି ସମସ୍ତଙ୍କୁ ଯେ ପର୍ବବିନ୍ୟାସ ସମ୍ବନ୍ଧରେ ସାମାନ୍ୟତମ ମତାନୈକ୍ୟ ଦେଖାଦେଇନାହିଁ । ସରକାରୀ ଆନୁକୂଲ୍ୟରେ ପ୍ରଚାରିତ ଏ ଇତିହାସର ପ୍ରଥମପର୍ବ ବିଷୟରେ ମୃଦୁଆପତ୍ତି ଶୁଣାଯାଇଚି ବହୁପରେ (ଏ.ଏଲ୍.ବାସମ୍) ଯେ, ପରାଧୀନ ଭାରତର କୀର୍ତ୍ତିକଳାପ ହୁଏତ ନିସ୍ତେଜ ଦିଶୁଚି, ସୁଦୂର ଅତୀତରେ ହିନ୍ଦୁ ଥିଲେ କିନ୍ତୁ ପୃଥିବୀର ବିସ୍ମୟ । ଧ୍ରୁପଦୀ ସେଇ ଅତୀତକୁ ନେଇ ଆମ ଗର୍ବ ଓ ଗୌରବ । ପ୍ରତିପକ୍ଷ କିନ୍ତୁ ଇଉରୋପ୍ ଛଡ଼ା ସଭ୍ୟତାର ଅସ୍ତିତ୍ୱକୁ ଅନ୍ୟତ୍ର ଚିହ୍ନଟକରିବାକୁ ଜମାରୁ ରାଜିନୁହେଁ, କାହିଁକିନା, ପ୍ରତୀଚ୍ୟପନ୍ଥୀଙ୍କ ଦୃଷ୍ଟିରେ ହିନ୍ଦୁଙ୍କ ଶାସ୍ତ୍ରପୁରାଣ / ଗଳ୍ପଗାଥା / ପାଲାପାର୍ବଣ / ଶିଳ୍ପକଳା / ସାହିତ୍ୟ ପ୍ରଭୃତି ଯାବତୀୟ କ୍ରିୟାକାଣ୍ଡ ଚୂଡ଼ାନ୍ତ ବର୍ବରତା ଓ ଶୋଚନୀୟ ଆଦିମତାର ନିଦର୍ଶନ କେବଳ । ମଧ୍ୟକାଳ ବିଷୟରେ କିନ୍ତୁ ମତଭେଦ ନାହିଁ, କାହିଁକିନା, ମଧ୍ୟଯୁଗରେ ଇଉରୋପ୍ ଯେତେବେଳେ ଭୋଗକରିଚି ଅବର୍ଣ୍ଣନୀୟ ଦୁର୍ଦ୍ଦଶା, ଭାରତରେ ହେବ କେମିତି ଅନ୍ୟଥା ! ବ୍ରିଟିଶ୍ ଯୁଗ ବିଷୟରେ କିନ୍ତୁ, ପ୍ରାଚ୍ୟ ପ୍ରତୀଚ୍ୟ ଉଭୟ ଶିବିରର ଭାରତପଥିକ ଏକମତ, ଅର୍ଥାତ୍ ଭାରତ ପାଇଁ ବ୍ରିଟିଶ୍‌ରାଜତ୍ୱ

ଏକ ସୌଭାଗ୍ୟ । ଔପନିବେଶିକ ଅଧୀନତା ସତ୍ତ୍ୱେ, ଏବଂ ସେଇ ଏକା କାରଣରୁ, ପୁଞ୍ଜୀଭୂତ ଜାଡ଼୍ୟ ଅତିକ୍ରମକରି ଭାରତବାସୀ ହୋଇଚନ୍ତି ସଭ୍ୟଭବ୍ୟ। ସେକଥା ଅବଶ୍ୟ ମ୍ୟାକଲେ ଘୋଷଣା କରିଚନ୍ତି ୧୮୩୫ରେ ଯେ, ସରକାରଙ୍କ ଦୃଢ଼ ନୀତି, ଗାତ୍ରବର୍ଣ୍ଣ ଛଡ଼ା ଅବଶିଷ୍ଟ ଚିହ୍ନାୟନରେ ଭାରତୀୟ ବାସ୍ତବିକ ଇଂରେଜ୍‌ର ତୁଲ୍ୟମୂଲ୍ୟ । *ଆନନ୍ଦମଠ* ର ତ୍ରିକାଳଦର୍ଶୀ ଋଷି (ବଙ୍କିମ୍)ଙ୍କ ଭାରତ-ଜିଜ୍ଞାସା ଏଇ ଆପୋଷର ସର୍ତ୍ତସାପେକ୍ଷ ସମର୍ଥନ ନୁହେଁ କି ? ଯେପରି, ବିଶ୍ୱାୟନ ପର୍ବରେ ଭାରତୀୟ ବୁଦ୍ଧିଜୀବୀ ଋହୁଁଚନ୍ତି ଦେଶଟା ହେବ ଆମେରିକା। ଭ୍ରାନ୍ତ ଇତିହାସଚେତନା କେମିତି ବହୁବିଧ ମଧୁର ମିଥ୍ୟାକୁ ପ୍ରସବକରିପାରେ ବେଳକୁ ବେଳ, ଏ ତାର ପ୍ରତ୍ୟକ୍ଷ ନଜିର୍ । ଧରିନେଇଛୁଁ, ବସ୍ତୁଜ୍ଞାନ ଓ ବହିସ୍ତତ୍ତ୍ୱର ନାଡ଼ିନକ୍ଷତ୍ର ସାହେବ ଜାଣନ୍ତି ଏକମାତ୍ର; ମୁସଲମାନ୍-ବିଦ୍ୱେଷ ପ୍ରତି ଅକୁଣ୍ଠ ସମର୍ଥନ ତେଣୁ ନୈତିକ ସମସ୍ୟା ନୁହେଁ (ବ୍ରହ୍ମଋରୀ ସତ୍ୟାନନ୍ଦ ଶିଷ୍ୟଙ୍କୁ କହିଚନ୍ତି ମସ୍‌ଜିଦ୍ ପୋଡ଼ିଦେଇ, ସେଠି କୃଷ୍ଣମନ୍ଦିର ତୋଳିବାକୁ । ୧୯୯୨ର ବାବ୍‌ରିମସ୍‌ଜିଦ୍ ଆକ୍ରମଣ ତେଣୁ ଭାରତଜିଜ୍ଞାସାରୁ ବିଛିନ୍ନ କୋଉ ଦୁର୍ଘଟଣା ନୁହେଁ) । ମାତ୍ର ହିନ୍ଦୁ-ଅତୀତର ପୁନରୁଦ୍ଦୀପନ ଉଦ୍ରେକ କରିପାରେ ରାଜରୋଷ, କାହିଁକିନା, ଆଶଙ୍କା ରହିଛି, ପୁନରୁଦ୍ଦୀପନ ଧକ୍କାରେ ସାମ୍ରାଜ୍ୟର ମୂଳଦୁଆ ଯଦି ଟଳିଯାଏ! ଭବିଷ୍ୟତ୍‌ବେତ୍ତା ସନ୍ନ୍ୟାସୀ ତେଣୁ ସାବଧାନ; ପ୍ରଭୁ(ଇଂରେଜ)ଙ୍କୁ ଭୟରୁ ତ୍ରାହିଦେବାକୁ କହିଲେ, ବହିସ୍ତତ୍ତ୍ୱ ଆୟତ୍ତକୁ ଆସିଗଲେ ସନ୍ତାନକୁଳ ତୁଚ୍ଛ କର୍ମମାର୍ଗକୁ ପଛରେ ପକାଇଦେଇ ପ୍ରବେଶକରିବେ ଜ୍ଞାନମାର୍ଗକୁ (ଯେପରି ଅରବିନ୍ଦ), କାହିଁକିନା ଭୂମିସ୍ୱତ୍ୱର ଭୋଗଦଖଲ ଭଳି ସ୍ଥୂଳ ପାର୍ଥିବତାରେ ଘାଣ୍ଟିହେବା ଭୂମାସଂଧିତ୍ସୁର କର୍ତ୍ତବ୍ୟ ନୁହେଁ । ଅର୍ଥାତ୍, ବ୍ୟାବହାରିକ ଜୀବନଯାତ୍ରାରେ ସାହେବଙ୍କ ସାଙ୍ଗରେ ଅଭେଦାତ୍ମା ହୋଇସୁଦ୍ଧା, ହୃଦୟରେ ହିନ୍ଦୁ ଧାରଣକରିବ ରକ୍ଷାକବଚବତ୍ ଭେଦଚିହ୍ନ: ଭେଦ-ଅଭେଦର ଦ୍ୱାନ୍ଦ୍ୱିକତା, ପର-ଆରୋପିତ ଚିହ୍ନବିନ୍ୟାସ ଭିତରୁ ଦିନେ ନା ଦିନେ ଜନ୍ମଦେବ ସ୍ୱୋପାର୍ଜିତ ଚିହ୍ନଶୃଙ୍ଖଳା, ବିଜାତୀୟ ସଭ୍ୟତାର ବଦାନ୍ୟତାରୁ ପୁନଃପ୍ରତିଷ୍ଠିତ ହେବ ସନାତନ 'ସଦାଋର', ଆଧୁନିକତାର କଣ୍ଠଲଗ୍ନହୋଇ ପୁନଃସ୍ଥାପିତ ହେବ 'ଐତିହ୍ୟ' । ଗୋଟିଏ ଶବ୍ଦରେ, ହିନ୍ଦୁଜାତୀୟତା ।

ସତ୍ୟାନନ୍ଦଙ୍କୁ କିନ୍ତୁ ଗୁରୁଦେବ କହିଚନ୍ତି, ନାନାରକମ ଅପକୃଷ୍ଟ ଲୌକିକ ଧର୍ମାଋର କଳୁଷିତ କରିଦେଇଚି ହିନ୍ଦୁଧର୍ମର ବିଶୁଦ୍ଧତା; କଳ୍ପିତ ହିନ୍ଦୁଜାତୀୟତା କ'ଣ ଖଣ୍ଡବିଖଣ୍ଡିତ ସେଇ ଲୌକିକ ସଂସ୍କୃତି ଉପରେ ଚଳାଇଦେବ ବୁଲ୍‌ଡୋଜର୍ ? ହିନ୍ଦୁ କ'ଣ ତେବେ ଫେରିଯିବେ ସେଇ ବିନ୍ଦୁକୁ କାଳ ଯୋଉଠି ନିଶ୍ଚଳ ? ଆଗକୁ ଯିବାକୁ ହେଲେ ହିନ୍ଦୁର ଗତି ହେବ ସମୟର ବିପ୍ରତୀତ ? ହିନ୍ଦୁ ଯୋଉ ପ୍ରସ୍ଥାନମୁଖରୁ ଦିନେ

ନିଷ୍କ୍ରାନ୍ତ ହୋଇଥିଲେ, ସେଇ ପ୍ରସ୍ଥାନବିନ୍ଦୁ କ'ଣ ଫେର୍ ତାଙ୍କ ଗନ୍ତବ୍ୟ ? ସ୍ପଷ୍ଟବାକ୍ ସ୍ୱାମୀ ବିବେକାନନ୍ଦ, ତତ୍ତ୍ୱ ଓ କର୍ମର ଐକ୍ୟ ଭିତରଦେଇ ବାଟ ଦେଖାଇବାକୁ ଚେଷ୍ଟାକରିଚନ୍ତି । ସେ ଯୁକ୍ତିପଟ ବିଷୟରେ, ତାଙ୍କ ରଚନାବଳୀ ଭୂମିକାରେ, ଭଗିନୀ ନିବେଦିତା ଲେଖନ୍ତି, 'ବର୍ତ୍ତମାନ ଯୁଗର ବ୍ୟାପକ ଅବକ୍ଷୟ ଭିତରେ ହିନ୍ଦୁଧର୍ମର ଦରକାର ଥିଲା ଶୈଳଦୃଢ଼ ଏକ ଆଶ୍ରୟ, ହିନ୍ଦୁଧର୍ମ ଯୋଉଠି ଲାଭକରିପାରେ ଏକ ସ୍ଥିରଭୂମି, ଦରକାର ଥିଲା ପ୍ରାମାଣିକ ଏକ ଆପ୍ତବାକ୍ୟ, ଯା ଭିତରଦେଇ ଧର୍ମ ଉପଲବ୍ଧି କରିପାରେ ନିଜ ସ୍ୱରୂପ... ସେଇ ସଙ୍କଟକାଳରେ (ବିବେକାନନ୍ଦ) ଜାତୀୟ ଚେତନାକୁ ଆହରଣପୂର୍ବକ କରିପାରିଥିଲେ ବାଙ୍ମୟ ।... ଶାସ୍ତ୍ର, ଗୁରୁ ଏବଂ ମାତୃଭୂମି- ସତେ ଅବା ତିନିଟି ସ୍ୱର, ମିଳିତହୋଇ ସୃଷ୍ଟିକରିଚି ତାଙ୍କ ରଚନାବଳୀର ମହାନ୍ ସଙ୍ଗୀତ ।' ଅର୍ଥାତ୍ ଚୂର୍ଣ୍ଣ-ଉଦ୍ଧୃତି ଜାଲରେ ବାଟବଣା ନହୋଇ, 'ପ୍ରାମାଣିକ ଆପ୍ତବାକ୍ୟ', 'ଶୈଳଦୃଢ଼ ଆଶ୍ରୟ' ଓ 'ଏକ ସ୍ଥିରଭୂମି'ର ଅନ୍ୱୟକୁ ହୃଦୟଙ୍ଗମ କରିବାକୁ ହେବ ବିବେକାନନ୍ଦଙ୍କ ସମଗ୍ରତାରୁ । କାହିଁକିନା, ଯେତେ ବିପୁଳ ବା ବହୁଳ ହେଉପଛେ ତାଙ୍କ ରଚନା, ନିଜ ଜାତି ଓ ଧର୍ମ ବିଷୟରେ ତାଙ୍କ ଦାର୍ଶନିକ ଭାଷ୍ୟର ଭିତ୍ତି ଅଙ୍ଗୁଳିମେୟ କତିପୟ ପ୍ରତୀତି । ଠିକ୍ ଯେମିତି ଅରବିନ୍ଦଙ୍କ 'ପ୍ରଜ୍ଞାପୁରାଣ', (ଦ୍ର. *ଦି ରନେସାଁସ୍ ଇନ୍ ଇଣ୍ଡିଆ* )। ସେ ପ୍ରତୀତି ଭିତରେ ପ୍ରଥମ ଓ ପ୍ରଧାନ: ପ୍ରତ୍ୟେକ ନ୍ୟାସନାଲିଟି ଗୋଟିଏ ଗୋଟିଏ ବିଶିଷ୍ଟ ଭାବର ବାହନ । ସେ ଭାବ ଅବସ୍ଥାଚକ୍ରରେ କେତେବେଳେ ମଳିନ ଦିଶିବ ତ କେତେବେଳେ ଭାସ୍ୱର । ମାତ୍ର, ପ୍ରକାଶ ପୂର୍ଣ୍ଣତାରେ ଉପନୀତ ନହେବା ଯାଏଁ ତାର ବିଲୟ ନାହିଁ । ଆଖ୍ୟା ଭିନ୍ନ ହେଲେ ମଧ୍ୟ, ଜାତୀୟ ଭାବର ଏଇ ପ୍ରତୀତି ପୁନରାବୃତ୍ତ ହୋଇଚି ଅରବିନ୍ଦଙ୍କ 'ପ୍ରଜ୍ଞା ପୁରାଣ'ରେ ଆହୁରି ଉଦାର ଭାଷାରେ ।

ବିବେକାନନ୍ଦଙ୍କ ବିଶ୍ୱାସ, ସମସ୍ୱଭାବ ବ୍ୟକ୍ତିବିଶେଷଙ୍କ ସମଷ୍ଟି ଅପେକ୍ଷା ଜାତି(ନେସନ୍) ଅଧିକ ନୁହେଁ । ବ୍ୟକ୍ତିର ଆଚାର-ବିଚାର-ସଂସ୍କାର, ଆଶା-ଆକାଙ୍କ୍ଷା ବିମ୍ବିତହୁଏ ସମଷ୍ଟିଗତ ଜୀବନଧାରାରେ, ଏବଂ ସେଇ ଗୂଢ଼ ଉଦ୍ଦେଶ୍ୟ, ଯା ପ୍ରାଗନିଷ୍ପନ୍ନ, ସାଧିତହେଉଚି ଜାତିର ମତିଗତିରେ: 'ଐ ଉଦ୍ଦେଶ୍ୟ ଓ ତଦୁପଯୋଗୀ ଉପାୟରୂପ୍ ଆଚାର ଛାଡ଼ା, ଆର୍ ସମସ୍ତ ରୀତିନୀତିଇ ବାଡ଼ାର୍ ଭାଗ୍' । (ଦ୍ର. *ପ୍ରାଚ୍ୟ ଓ ପ୍ରାଶ୍ଚାତ୍ୟ* ।) ତେଣୁ ଯା ଅତିରିକ୍ତ, ତା ବଦଳିଯାଇପାରେ, ମାତ୍ର ମୂଳଉଦ୍ଦେଶ୍ୟ ଉପରେ ହାତପଡ଼ିଲେ ଲାଗିଯିବ ଧୁନ୍ଧୁମାର କାଣ୍ଡ; ଆସିବ ଅବତାର-ପୁରୁଷ, ଧ୍ରୁବ ଆଦର୍ଶର ସର୍ତ୍ତାନୁସାରେ ନିର୍ଦ୍ଧାରଣ କରିବ ଜାତିର ନିୟତି । ନିୟତିର ସେଇ ଅନୁଶାସନରୁ ଗୋଷ୍ଠୀଭୁକ୍ତ ସଦସ୍ୟର ମୁକ୍ତି ନାହିଁ । ସେଇ ଶୁଭଲଗ୍ନ ଉଦୟହେବା ପର୍ଯ୍ୟନ୍ତ ପ୍ରାଗନିଷ୍ପନ୍ନ ଜାତୀୟଭାବର ପରିବର୍ଦ୍ଧନ ଏକାନ୍ତ କର୍ତ୍ତବ୍ୟ । ବିବେକାନନ୍ଦ କଲେଜ୍‌ରେ ଦର୍ଶନ ପଢ଼ିଚନ୍ତି; ଏ ପ୍ରତ୍ୟୟ

ପଛରେ ତେଣୁ ହେଗ୍‌ଲ୍‌କୁ ଚିହ୍ନିହେବ; ତେବେ ନକଲ ଜିନିଷ ବଇଳନ୍ତରିଯାଏନା; ପ୍ରାଚ୍ୟ-ପାଶ୍ଚାତ୍ୟର ଏଭଳି ପାଚନ ଦେଖିଥିଲେ ହେଗ୍‌ଲ୍ ନାକଟେକିଥାଆନ୍ତେ ହୁଏତ । ଦ୍ୱିତୀୟ ପ୍ରସ୍ତାବ, ଭାରତରେ ଜାତୀୟଭାବ (ସ୍ୱଭାବ) ମୋକ୍ଷଲାଭ ଆକାଙ୍‌କ୍ଷା । ପାଶ୍ଚାତ୍ୟର ସ୍ୱଭାବ ପ୍ରବୃତ୍ତିମୂଳକ, ସୁଖଭୋଗ । ସୁଖଭୋଗ, ପ୍ରବୃତ୍ତିକୁ ଯୋଉ ଉତ୍ସାହଦିଏ, ତା' କ୍ରିୟାମୂଳକ; ସେ କ୍ରିୟାର ଅପର ନାମ 'ଧର୍ମ' । ଚମତ୍କାର ଏଇ ସମୀକରଣ, ଗୋଟେ ପଟରେ 'ମୁମୂକ୍ଷୁ' ଭାରତୀୟ (ହିନ୍ଦୁ), ଅନ୍ୟ ପ୍ରାନ୍ତରେ 'ଧାର୍ମିକ' ପ୍ରତିଚ୍ୟବାସୀ । ପରସ୍ପର ବିରୋଧୀ ଏଇ ଯୁଗ୍ମପଦ ଉପରେ ନିତ୍ୟବିପରୀତ ଆରୋପକରି ବିବେକାନନ୍ଦ ସଜାଇଦେଇଚନ୍ତି ଆପଣା ପ୍ରାଚ୍ୟ-ପାଶ୍ଚାତ୍ୟ ଏପିସୋଡ୍ । ସନ୍ନ୍ୟାସୀ ଭାବିଚନ୍ତି, ମୋକ୍ଷକାମନା ଖାଲି ଭାରତର ଥିଲା, ରହିଚି, ରହିବ । ଆଉକୁଆଡ଼େ ନାହିଁ । ମୋକ୍ଷ ପାଇଁ କେହି ଯଦି ବ୍ୟାକୁଳ ହୁଏ, ପ୍ରାକୃତିକ ଶରୀର ବନ୍ଧନକୁ ଡେଇଁପଡ଼ିବାକୁ ଆଗେଇଯାଏ । ଭାରତର ଶରଣନେବା ଛଡ଼ା ନାନ୍ୟଃ ପନ୍ଥା ବିଦ୍ୟତେ । ଉତ୍କର୍ଷବିଉରରେ ମୋକ୍ଷ ଯେହେତୁ ଶ୍ରେଷ୍ଠ ଜାତୀୟଭାବ, ଜାତି ମଧ୍ୟରେ ହିନ୍ଦୁ ନିଶ୍ଚୟ ସର୍ବୋତ୍ତମ । ପ୍ରସ୍ତାବରେ ଲଜିକ୍ ଅଛି; କିନ୍ତୁ କଣପାଇଁ ତେବେ 'ଭାରତବର୍ଷ, ଦୁର୍ଭିକ୍ଷେର୍ ମହୋତ୍ସବ, ରୋଗ୍‌ଶୋକେର୍ କୁରୁକ୍ଷେତ୍ର, ଆଶା-ଉଦ୍ୟମ୍-ଆନନ୍ଦ-ଉତ୍ସାହେର୍ କଙ୍କାଲ୍-ପରିପ୍ଲୁତ ମହାଶ୍ମଶାନ୍ ?' ପ୍ରତିଶ୍ରୁତି ଓ ପ୍ରାପ୍ତି ମଧ୍ୟସ୍ଥ ବିସଂଗତିକୁ ବୁଝାଇବାକୁ ତୃତୀୟ ଏକ ପ୍ରସ୍ତାବ ଅବତାରଣା କରିଚନ୍ତି ସ୍ୱାମୀଜୀ: ସତ୍ତ୍ୱଃ-ରଜଃ-ତମଃ ତ୍ରିଗୁଣ ମଧ୍ୟରେ ଭାରସାମ୍ୟ ଅଭାବ ହିଁ ଦୁର୍ଗତିର କାରଣ । ମୁକ୍ତପୁରୁଷର ଲକ୍ଷଣ ସତ୍ତ୍ୱଃ; ତା ବାହାରେ ମୋକ୍ଷଲାଭ ଅସମ୍ଭବ ନୁହେଁ, ମାତ୍ର ସେ ମୋକ୍ଷ ନିଷ୍କ୍ରିୟ । ମୋକ୍ଷଭୂମି ଭାରତରେ ଏକ୍ଷଣି ତମୋଗୁଣର ପ୍ରାଦୁର୍ଭାବ; କିନ୍ତୁ ଖାଲି ମନରେ ପାଞ୍ଚିଲେ ତମଃରୁ ସତ୍ତ୍ୱଃକୁ ଉତ୍ତରଣ ଘଟନା, ମଝିରେ ରହିଚି ରଜଃଗୁଣ । ରଜଃଗୁଣ ଉପରେ ଅଧିକାର ନଆସିଲେ ତମଃରୁ ସତ୍ତ୍ୱଃକୁ ଯାଇହୁଏନା, କାହିଁକିନା, 'ବୀରଭୋଗ୍ୟା ବସୁନ୍ଧରା-ବୀର୍ଯ୍ୟ ପ୍ରକାଶ୍ କର, ସାମ୍-ଦାନ୍-ଭେଦ୍-ଦଣ୍ଡ ନୀତି ପ୍ରକାଶ୍ କର, ପୃଥିବୀ ଭୋଗ୍ କର, ତବେ ତୁମି ଧାର୍ମିକ୍' । ଭାରତରେ ତାମସିକତାର ପ୍ରାବଲ୍ୟ ସକାଶେ ବିବେକାନନ୍ଦ ଦାୟୀକରିଚନ୍ତି ବୌଦ୍ଧ ଆଉ ଜୈନଙ୍କ ଅପଶିକ୍ଷାକୁ- ଧର୍ମ ନୁହେଁ, ଅର୍ଥ ନୁହେଁ, କାମ ନୁହେଁ, କେବଳ ମୋକ୍ଷ । ଏଣେ ପ୍ରତୀଚ୍ୟରେ ଯୀଶୁଖ୍ରୀଷ୍ଟଙ୍କ ଶିକ୍ଷାନୁସାରେ, ବାଁ ଗାଲରେ ଚପୁଡ଼ା ଖାଇଲେ ଡାହାଣ ଗାଲ ପତାଇଦିଅ, ଭଜିଭଜି ନାଭିଶ୍ୱାସ ଉଠିଚି ଯେତେବେଳେ ଇଉରୋପ୍‌ର, ପ୍ରୋଟେଷ୍ଟାଣ୍ଟ୍ ଆସି ଝାଡ଼ି ସଫାକରିଦେଇଚି କ୍ଲେଦ ଆଉ ଗ୍ଲାନି । ଜାତିଗତ ଭାବେ ନିବୃତ୍ତିର ମର୍ମ ବୁଝିନାହାଁନ୍ତି ହୁଏତ, ରଜଃଗୁଣର ବିକାଶହୋଇଚି କିନ୍ତୁ ଯଥେଷ୍ଟ । ତାଆରି ବଳରେ ତ ଇଂରେଜ୍ କରିପାରିଚି ନିଜକୁ ରଜାଜାତି !

ମାନସିକ ଅବରୋଧ ବିରୋଧରେ ବିବେକାନନ୍ଦଙ୍କ ଓଜସ୍ୱୀ ପ୍ରତିବାଦ ଜାତୀୟତାବାଦୀ ଚେତନାକୁ ପୁଷ୍ଟକରିଥିଲା ଅବଶ୍ୟ, ମାତ୍ର ଜାତୀୟତାବାଦ ସହିତ ହିନ୍ଦୁଧର୍ମର ସମୀକରଣ ବହୁବିଧ ଆତ୍ମଘାତୀ ସ୍ୱବିରୋଧ ସୃଷ୍ଟି କରିନାହିଁକି ? ଯେପରି, ରଜଃଗୁଣ ଭାରତରୁ ଅନ୍ତର୍ହିତ ହେଲେସୁଦ୍ଧା ପଶ୍ଚିମ ତାହାରି ବଳରେ ଆଗେଇଯାଇଚି ଉତ୍ତରୋତ୍ତର, ହିନ୍ଦୁ ତେବେ ଉପେକ୍ଷାକରିବେ କେମିତି ପଶ୍ଚିମର ଦୃଷ୍ଟାନ୍ତ ? ବିବେକାନନ୍ଦଙ୍କ ପରିଭାଷା ଅବଶ୍ୟ ବଙ୍କିମ୍‌ଙ୍କ ଠାରୁ ଅଲଗା, ମାତ୍ର 'ଅନ୍ତସ୍ତତ୍ତ୍ୱ' ପ୍ରବର୍ତ୍ତନ ଲାଗି ବିଜାତୀୟ 'ବହିସ୍ତତ୍ତ୍ୱ' କଣ ଅପରିହାର୍ଯ୍ୟ ନୁହେଁ ବିବାକାନନ୍ଦଙ୍କ ଭାରତ-ଭାବନାରେ ? ପ୍ରତ୍ୟୟସମୂହକୁ ଏକତ୍ର ବିବେଚନାକଲେ ଦେଖାଯିବ, ପ୍ରାଚ୍ୟବାଦୀ ପରିକଳ୍ପ, ଔପନିବେଶିକ ଆଧିପତ୍ୟର ଯା ଅବଦାନ, ସହିତ ବିବେକାନନ୍ଦଙ୍କ ବ୍ୟବଧାନ ବା ବିରୋଧ ଅକିଞ୍ଚିତ୍‌କର, ବରଂ ତାହାରି ଭିତ୍ତିରେ ତିଆରିହୋଇଚି ତାଙ୍କ ପ୍ରତ୍ୟୁତ୍ତର, କାଉଣ୍ଟର୍-ଡିସ୍‌କୋର୍ସ । ପ୍ରାଚ୍ୟବାଦୀ ପ୍ୟାରାଡାଇମ୍ ପୃଥିବୀକୁ ଦେଖେ ଦୁଇଶିବିରରେ ବିଭକ୍ତ, ଗୋଟେ ପଟରେ ପ୍ରାଚ୍ୟଭୂଖଣ୍ଡ (ଓରିଏଣ୍ଟ) ପରମାର୍ଥ ଧ୍ୟାନରେ ବିଭୋର, ସଦା ଅଚଳ; ଆରପଟଟି ବିଷୟବୁଦ୍ଧିରେ ବିଚକ୍ଷଣ, ସଦାଚଞ୍ଚଳ ପଶ୍ଚିମ । ସ୍ଥିତି ଓ ଗତିର ଏଇ ବୈପରୀତ୍ୟ କୁଆଡ଼େ ବଜାୟରଖିଚି ଜଗତର ଭାରସାମ୍ୟ ! ଅର୍ଥାତ୍, ପୂର୍ବଗୋଲାର୍ଦ୍ଧର ଜନମାନବ ପରଲୋକ ଚିନ୍ତାରେ ଏପରି ନିମଗ୍ନ ଯେ ପାରିପାର୍ଶ୍ୱିକ ସମ୍ବନ୍ଧରେ ସ୍ୱଚ୍ଛ ଅବବୋଧରୁ ସ୍ଖଳିତ, ଜୀବନବୀକ୍ଷା ତେଣୁ ବାୟବୀୟ, ଦୃଷ୍ଟିଶକ୍ତି ଧୂମ୍ରାଭ । ସେଥିପାଇଁ ସ୍ୱଭାବତଃ ନିଶ୍ଚେଷ୍ଟ, ଇହଲୋକ ପ୍ରତି ଉଦାସୀନ । ପକ୍ଷାନ୍ତରେ, ପ୍ରତୀଚ୍ୟବାସୀ ଜାଗତିକ ପ୍ରପଞ୍ଚକୁ ତଦ୍‌ଗତ ଚିତ୍ତରେ ମାନିନିଏନା, ପରିପାର୍ଶ୍ୱ ପ୍ରତି ନିର୍ବିକାର ରହେନା, ଇହଲୋକ ସମ୍ବନ୍ଧରେ ବିଷୟୀର କୌତୂହଳ ତେଣୁ ଅସୀମ, ଜିଜ୍ଞାସା ମଧ୍ୟ ଅନନ୍ତ । କୌତୂହଳ ଓ ଜିଜ୍ଞାସା ବଳରେ ଜ୍ଞାନ ଓ କ୍ଷମତାର ପରିଧିକୁ ପ୍ରସାରିତ କରୁଚି ଅବିରାମ, ଏପରିକି, ତୃପ୍ତିହୀନ ଜିଜ୍ଞାସା ତାକୁ ଟାଣିଆଣି ପହଞ୍ଚାଇଦେଇଚି ଭାରତବର୍ଷ ଉପକୂଳରେ । ବିପରୀତଧର୍ମୀ ହୋଇସୁଦ୍ଧା, ଏ ଜ୍ଞାନତତ୍ତ୍ୱ ଯେ ସର୍ତ୍ତାଧୀନ ଓ ପରସ୍ପର ପରିପୂରକ, ସିକାଗୋ ପ୍ରତ୍ୟାଗତ ସନ୍ନ୍ୟାସୀ ସେକଥାକୁ ସ୍ୱୀକାରକରିବା ସତ୍ତ୍ୱେ ପାଶ୍ଚାତ୍ୟର ପ୍ରଶ୍ନାତୀତ ଶ୍ରେଷ୍ଠତାକୁ ପ୍ରତ୍ୟାଖ୍ୟାନ କରିଦେଇଚନ୍ତି, କାହିଁକିନା, ଅନ୍ତର୍ମୁଖୀ ହିନ୍ଦୁଙ୍କ ସାଙ୍ଗରେ ବହିର୍ମୁଖୀ ପଶ୍ଚିମର ତୁଳନା ହୁଏତ ଏକ୍ଷଣି ବିସଦୃଶ, ମାତ୍ର ଦିନ ଆସିବ ଭାରତର 'ଜାତୀୟଭାବ' ଯେତେବେଳେ ସାରା ସଂସାରକୁ ଦେଖାଇବ ପରିତ୍ରାଣର ଆଲୋକ ବର୍ତ୍ତିକା । ଏବଂ ସେଇ ତୁଙ୍ଗ ମୁହୂର୍ତ୍ତ ଉପଗତହେବା ପର୍ଯ୍ୟନ୍ତ ଗ୍ରହଣ-ବର୍ଜନ ଭିତରଦେଇ ହିନ୍ଦୁଙ୍କ ଜୀବନରେ ଚାଲୁଥିବ ଜଡ଼-ଅଜଡ଼ ଡାୟଲେକ୍‌ଟିକ୍‌ର ଲୀଳା, ଏବଂ ଦ୍ୱାନ୍ଦ୍ୱିକତାର ଅନିବାର୍ଯ୍ୟତାରୁ ହିନ୍ଦୁ ହେବ

ରଜଃଗୁଣସମ୍ପନ୍ନ । ଭୋଗ ବିନା ତ୍ୟାଗ ସିଦ୍ଧହୁଏନା, ବହିସ୍ତତ୍ତ୍ୱରେ ସୁପଟୁ ନହେଲେ ଅନ୍ତସ୍ତତ୍ତ୍ୱ ସିଦ୍ଧହୁଏନା । ମାତ୍ର, ବଙ୍କିମ୍ କି ବିବେକାନନ୍ଦ, କେହିହେଲେ କହନ୍ତିନାହିଁ ବହିସ୍ତତ୍ତ୍ୱର ଅନ୍ତର୍ଗତ କି ପ୍ରକାର ବିଦ୍ୟାନୁଶୀଳନ, ଯା ହିନ୍ଦୁଙ୍କ ପାଇଁ ହେବ ଅଭ୍ୟାସଯୋଗ୍ୟ । ସ୍ୱାମୀଜୀ ଅବଶ୍ୟ ଦେଖିଆସିଚନ୍ତି, 'ଇଂରେଜ୍-ଚରିତ୍ରେ ବ୍ୟବସାୟବୁଦ୍ଧି ଆଦାନ୍-ପ୍ରଦାନ୍ ପ୍ରଧାନ୍; ଯଥାଭାଗ୍ ନ୍ୟାୟବିଭାଗ୍- ଇଂରେଜେର୍ ଆସଲ୍ କଥା' । ଭାରତ ସହିତ ଆଦାନପ୍ରଦାନରେ ନ୍ୟାୟବୁଦ୍ଧିର ପରିଚୟ କୋଉଠି ମିଳିବ, ସେ ଠିକଣା ବତାଇନାହାନ୍ତି ସ୍ୱାମୀଜୀ; ମାତ୍ର ଫେର୍ କହିଚନ୍ତି, 'ରାଜନୈତିକ୍ ସ୍ୱାଧୀନତା ଫରାସୀ ଜାତିର୍ ମେରୁଦଣ୍ଡ', 'ରାଜ୍ୟଶାସନେ ସାମାଜିକ୍ ସ୍ୱାଧୀନତାର୍ ସମାନାଧିକାର୍ ଫରାସୀ ଚରିତ୍ରେର୍ ମେରୁଦଣ୍ଡ' । ଫରାସୀ ପ୍ରଜା କୁଆଡ଼େ 'ସବ୍ ଅତ୍ୟାଚର୍ ଅବାଧେ ସୟ୍', କରଭାରରେ ପିଷ୍ଟହେଲେ ସୁଦ୍ଧା ପାଟିରୁ ବଚନ ବାହାରେନା । ସାମାଜିକ ସ୍ୱାଧୀନତା କେମିତି ତାଙ୍କ ଜାତୀୟ ଚରିତ୍ରର ମେରୁଦଣ୍ଡ, ସେକଥା ତେଣୁ ଉହ୍ୟ ରହିଯାଏ । ସ୍ପଷ୍ଟତଃ, ବଙ୍କିମ୍-କଥିତ 'ସ୍ୱାତନ୍ତ୍ର୍ୟପ୍ରିୟତା' ଧାରଣାଟାକୁ ଦୋହରାଇଚନ୍ତି ବିବେକାନନ୍ଦ, ଏବଂ ଲେଖିଚନ୍ତି 'ପାଶ୍ଚାତ୍ୟେର୍ ଉଦ୍ଦେଶ୍ୟ-ବ୍ୟକ୍ତିଗତ୍ ସ୍ୱାଧୀନତା । ଭାଷା-ଅର୍ଥକରୀ ବିଦ୍ୟା, ଉପାୟ-ରାଷ୍ଟ୍ରନୀତି । ଭାରତେର୍ ଉଦ୍ଦେଶ୍ୟ-ମୁକ୍ତି । ଭାଷା-ବେଦ୍, ଉପାୟ-ତ୍ୟାଗ୍ । ବର୍ତ୍ତମାନ୍ ଭାରତ୍ ଏକ୍‌ବାର୍ ଯେନ ବୁଝିତେଛେ, ବୃଥା ଭବିଷ୍ୟତ୍-ଆତ୍ମକଲ୍ୟାଣେର୍ ମୋହେ ପଡ଼ିୟା ଇହଲୋକେର୍ ସର୍ବନାଶ୍ କରିତେଛେ' । *(ଦ୍ର. ବର୍ତ୍ତମାନ ଭାରତ ।)* ପୁଣି ଲେଖିଚନ୍ତି ଆଲସିଙ୍ଗା ପେରୁମଲ୍‌ଙ୍କୁ ୧୮୯୪ରେ, 'ଆମାର୍ କଥା କି ବୁଝିତେଛ ? ଭାରତେର୍ ଧର୍ମ ଲଇୟା ଇଉରୋପେର୍ ସମାଜେର୍ ମତୋ ଏକ୍‌ଟି ସମାଜ୍ ଗଡ଼ିତେ ପାରୋ ?' *(ଦ୍ର. ପତ୍ରାବଳୀ ।)* ଜାତୀୟତାବାଦର ଯୋଉ ବୟାନ ବଙ୍କିମ୍‌ଙ୍କ ପାଖରୁ ମିଳିଚି, ତା ମୂଳ ଏକକ; ଶ୍ରେଣୀ ନୁହେଁ, ବର୍ଗ ନୁହେଁ, ଲିଙ୍ଗ ନୁହେଁ, ଏକ ଓ ଅଦ୍ୱିତୀୟ 'ଜାତି' । ମାତ୍ର ଜାତୀୟସତ୍ତା ନିର୍ମାଣର ଆଦିକଳ୍ପ ଯୋଉଠୁ ଆମଦାନିହୋଇଚି ଅଷ୍ଟାଦଶ ଶତକର ଅନ୍ତିମ ପର୍ବରେ, ସେଇ ଇଉରୋପ୍‌ରେ ଜାତୀୟ ସାରୂପ୍ୟର ମୂଳଉପାଦାନ ଧର୍ମାନୁଷଙ୍ଗ ନୁହେଁ । ତା' ପଛରେ ରହିଚି ଇଟାଲିର ରନେସାଁସ୍ ଠାରୁ ଫରାସୀ ବିପ୍ଳବ ପର୍ଯ୍ୟନ୍ତ ମହାଦେଶବ୍ୟାପୀ ଦୀର୍ଘକାଳର ସଂଗ୍ରାମ, ରାଜତନ୍ତ୍ର ଦେବତନ୍ତ୍ର ସାମନ୍ତତନ୍ତ୍ର ଭଳି ପ୍ରାକ୍-ପୁଞ୍ଜିବାଦୀ ସାମାଜିକ ପ୍ରତିଷ୍ଠାନଗୁଡ଼ିକର କ୍ରମାଗତ ବିଲୁପ୍ତିସାଧନ । ଅଖଣ୍ଡ ପ୍ରତୀଚ୍ୟସତ୍ତା ତେଣୁ ଏକ ରାଜନୀତିକ ମିଥ୍, ଯା ପୁଞ୍ଜିବାଦର ମାନସପୁତ୍ର । କାଳ୍ପନିକ ସେଇ ଅଖଣ୍ଡତା ପକ୍ଷରେ ପ୍ରତିସ୍ଥାପିତ ହୋଇଚି ଅଖଣ୍ଡ ହିନ୍ଦୁସତ୍ତାର ମିଥ୍ । ସାମ୍ରାଜ୍ୟବାଦ ବିରୋଧରେ ସଂଘର୍ଷ ସଂଘଟିତ କରିବାକୁ ସେ ମିଥ୍ ଇନ୍ଧନ ଯୋଗାଇଥିଲେ ମଧ୍ୟ,

ଲଂଘନ କରିପାରିନାହିଁ ପୁଞ୍ଜିର ନିୟମ । ଯେତିକି ପାରିଚି, ତା ଆନ୍ତର୍ଜାତିକ ପୁଞ୍ଜି ସହିତ ଜାତୀୟ ପୁଞ୍ଜିର ଚଳମାନ ଦ୍ୱନ୍ଦ୍ୱ । ନିଜ ଅଲକ୍ଷ୍ୟରେ, ଜାତୀୟତାବାଦୀ କ'ଣ ତେବେ ଚାହିଁଥିଲେ ଭାରତରେ ପୁଞ୍ଜିବାଦର ପ୍ରତିଷ୍ଠା, ପୁନରୁଦ୍ଦୀପନ ଯାର ଅନ୍ୟ ନାମ ? ନିମ୍ନବର୍ଗ ଦରିଦ୍ର, ପିତୃତନ୍ତ୍ରରେ ଦମିତ ନାରୀ, ସଂଖ୍ୟାଲଘୁ ଅ-ହିନ୍ଦୁଙ୍କର କି ଦଶା ହେବ ସେଇ ସ୍ୱପ୍ନରାଜ୍ୟରେ, କେହି ଚିନ୍ତାକରିନାହିଁ ସେ ପରିଣତିର ସ୍ୱରୂପ । ଗାନ୍ଧି ବରଂ ପରାଧୀନତା ଲାଗି ଦାୟୀ କରିଚନ୍ତି ଭାରତବାସୀଙ୍କ 'ନୈତିକ' ଅଧଃପତନକୁ । କେହି ବୁଝିନାହିଁ, ଭାରତର ପରାଧୀନତା ସାମ୍ରାଜ୍ୟବାଦରୁ ଅଚ୍ଛେଦ୍ୟ, ଅଥବା ସାମ୍ରାଜ୍ୟବାଦ ପୁଞ୍ଜିବାଦର ଶୀର୍ଷ ପର୍ଯ୍ୟାୟ ।

ବିବେକାନନ୍ଦଙ୍କ ପ୍ରକୃତ ଉତ୍ତରସୂରୀ ଅରବିନ୍ଦ । ତାଙ୍କ ରଚନାବଳୀ ଆଦ୍ୟରେ ରହିଚି କଂଗ୍ରେସ ଦଳର ସମାଲୋଚନା । ବମ୍ବେରେ ବସିଥିଲା କଂଗ୍ରେସ୍ ଅଧିବେଶନ ୧୮୮୫ରେ ସର୍ବପ୍ରଥମ, ପରବର୍ତ୍ତୀ କୋଡ଼ିଏବର୍ଷରେ କଂଗ୍ରେସ୍ ଯା କହିଚି ବା କରିଚି, ତା ମୂଳରେ କାମକରିଚି ବଦ୍ଧମୂଳ ଧାରଣା ଯେ ଏ ଦେଶର ସ୍ଥାୟୀତ୍ୱ ଓ ବିକାଶ ଲାଗି ବ୍ରିଟିଶ୍‌ରାଜତ୍ୱ ଅପରିହାର୍ଯ୍ୟ । ଅନ୍ୟାୟର ପ୍ରତିରୋଧ ହେବ ତେଣୁ ଆଇନ-ସମ୍ମତ ଉପାୟରେ, ଅର୍ଥାତ୍ ପ୍ରତିବାଦ ହେବ ସର୍ବଦା ନିରୁପଦ୍ରବ । ଇଂରେଜୀ-ଶିକ୍ଷାରେ ପରିଶୀଳିତ ନେତୃତ୍ୱ ବିଶ୍ୱାସକରିଚି, ଭଦ୍ରଭାବରେ ଅଭିଯୋଗ ଜଣାଇଲେ ନ୍ୟାୟପରାୟଣ ଇଂରେଜ୍ ପ୍ରତିକାର ବିଧାନକରିବ ନିଶ୍ଚୟ । ୧୮୯୩ରେ ଅରବିନ୍ଦ ଫେରିଆସିଲେ ବିଲାତରୁ; ସେବର୍ଷ ଜୁନ୍‌ମାସରେ *ଇନ୍ଦୁପ୍ରକାଶ* ରେ ଲେଖିଲେ, If indeed we have to renovate our country, we must no longer hold out supplicating hands to the English parliament, like an infant crying to its nurse for a toy, but must recognise the hard truth that every nation must beat out its own path to salvation with pain and difficulty, and not only on the tutelage of another । ଫେର୍ ଦି'ମାସ ଉତ୍ତାରୁ, I say, of the Congress, then, this–that its aims are mistaken, that the spirit in which it proceeds towards their accomplishment is not a spirit of sincerity and whole-heartedness, and that the methods it has chosen are not the right methods, and the leaders in whom it trusts, not the right sort of men to be leaders; in brief, that we are at present the blind led, if not by the blind, at any rate by the one-eyed । କଂଗ୍ରେସ୍‌ସଂଗଠନର କର୍ଣ୍ଣଧାରଙ୍କୁ ଚକ୍ଷୁଷା କାଣଃ କହିବା ଉତାରୁ, ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍‌ଙ୍କୁ କହିଚନ୍ତି quite unprincipled and

in no way to be relied upon । ଅଥଚ, ସୁରେନ୍ ବାଁଡୁଜେ (ପରେ ରାଷ୍ଟ୍ରଗୁରୁ) ପ୍ରଭୃତି ନେତୃବର୍ଗ (ଓଡ଼ିଶାରେ ଯେମିତି ରାଧାନାଥ-ମଧୁରାଓ ଭଳି କବିବର କି ଭକ୍ତକବି) ରାଣୀ ଭିକ୍ଟୋରିଆଙ୍କୁ ସେତେବେଳେ ବର୍ଣ୍ଣନାକରୁଚନ୍ତି, ଭାରତ-ଭାଗ୍ୟ ବିଧାତ୍ରୀ କିମ୍ବା ଭାରତସନ୍ତାନଙ୍କ ସ୍ତନ୍ୟଦାୟିନୀ ଜନନୀ । ଅତିଶୟୋକ୍ତି ପ୍ରୟୋଗର ଏ ଅକୃପଣତାକୁ ଅରବିନ୍ଦ କହନ୍ତି, bare-faced hypocracy, କାହିଁକିନା, Queen-Empress,- an old lady so called by way of courtesy, but about whom few Indians can know or care anything. ପରିଶେଷରେ, ଇଂରେଜ୍‌ଗୁଡ଼ାକ are really not worth being angry with ଯେହେତୁ our actual enemy is not any force exterior to ourselves... । ଏଇ ଉକ୍ତିରୁ ପରବର୍ତ୍ତୀ କାଳରେ ଭୟଶୂନ୍ୟ ହେବାକୁ ଗାନ୍ଧିଙ୍କ ଆହ୍ୱାନ, ସ୍ୱାବଲମ୍ବୀ ହେବାକୁ ପରାମର୍ଶ, ସ୍ୱାର୍ଥ ତ୍ୟାଗକରିବାକୁ ଉଦ୍‌ବୋଧନ ଇତ୍ୟାଦିକୁ ଚିହ୍ନଟକରିବା ଯେମିତି ସହଜ, ସେମିତି ରଜୋଗୁଣ ଉପରେ ବିବେକାନନ୍ଦଙ୍କ ଗୁରୁତ୍ୱ ଆରୋପକୁ । ତହିଁଉତାରୁ ଅରବିନ୍ଦ ଲେଖିଚନ୍ତି, The mantra (ବନ୍ଦେ ମାତରଂ) had been given and in a single day a whole people had been converted to the religion of patriotism. The mother had revealed herself. Once that vision has come to the people, there can be no rest, no peace, no further slumber till the temple has been made ready, the image installed and the sacrifice offered. A great nation which has had that vision can never again be placed under the feet of the conqueror । *Rishi Bankim Chandra*(1814) । ୧୮୯୪ ଏପ୍ରିଲ୍‌ମାସରେ ଅବଶ୍ୟ ଦେହରକ୍ଷାକରିଚନ୍ତି ବଙ୍କିମ୍ । ଏଇ ମା'ଙ୍କୁ, ସମ୍ପ୍ରସାରିତ ବର୍ଣ୍ଣନାରେ ମାତୃଭୂମିକୁ, ମନରେ ରଖି ଦେଶବାସୀଙ୍କୁ ସ୍ମରଣ କରାଇଦେଇଥିଲେ ବିବେକାନନ୍ଦ: 'ଭୁଲିଓନା-ଜନ୍ମ ହଇତେଇ ତୁମି ମାୟେର୍ ଜନ୍ୟ ବଲିପ୍ରଦତ୍ତ' । (ଦ୍ର. *ବର୍ତ୍ତମାନ୍ ଭାରତ୍ ।*) ଭୁଲିଥିଲେ କି ଅରବିନ୍ଦ ?

ଭୁଲନ୍ତୁ କି ନାହିଁ, ମନେରଖିଥିଲେ ସାରାଜୀବନ ଗୋଟିଏ କଥା ଯେ ଦେଶକାମ କରିବା ସକାଶେ ଏକମାତ୍ର ପୂର୍ବସର୍ତ୍ତ 'କ୍ଷମତା' ପାଖରୁ ଅଲଂଘ୍ୟ ଦୂରତ୍ୱ । ଅସହ୍ୟ ଅନ୍ତର୍ଦାହ ସତ୍ତ୍ୱେ ବଙ୍କିମ୍ କି ରମେଶଚନ୍ଦ୍ର ଇଂରେଜ୍‌କୁ ଆକ୍ରମଣ କରିପାରିନାହାଁନ୍ତି ଯେହେତୁ ଥିଲେ ପେନ୍‌ସନ୍‌ଭୋଗୀ । ବିବେକାନନ୍ଦ ବାବାଜି ହେଲେ ବି, ମଠ ଓ ମିଶନ୍ ଚାଲୁଥିଲା ବିଦେଶରୁ ଆସୁଥିବା ଦାନଦକ୍ଷିଣା ଉପରେ । ବୈଷୟିକ ଏଇ ନିର୍ଭରତା ସହିତ ଦେଶପ୍ରେମର ଦ୍ୱାନ୍ଦ୍ୱିକତା ତେଣୁ ଜନ୍ମଦେଇଚି ରକ୍ଷଣଶୀଳ ଭୀରୁତା । ଅରବିନ୍ଦ କିନ୍ତୁ ପ୍ରଥମ ଭାରତୀୟ, ଯିଏ କେମ୍ବ୍ରିଜ୍‌ରେ ଆଇସିଏସ୍

ପ୍ରୋବେସନର୍ ଥିବାବେଳେ କୌଶଳକରି ଏଡ଼ାଇଯାଇଚନ୍ତି ଚାକିରୀରେ ନିଯୋଗ । ପରବର୍ତ୍ତୀ କାଳରେ ତାଙ୍କୁ ଅନୁଧାବନକରିଚନ୍ତି ସୁଭାଷଚନ୍ଦ୍ର ବସୁ ଓ ହରିବିଷ୍ଣୁ କମଠ, ଏବଂ ଇଂଲ୍ୟାଣ୍ଡ-ପ୍ରତ୍ୟାଗତ ଏକୋଇଶିବର୍ଷ ବୟସ୍କ ଏଇ ଯୁବକର ନଜରରେ ପ୍ରଥମେ ଧରାପଡ଼ିଚି ଶ୍ରେଣୀଚେତନା। ବଙ୍କିମ୍ ଓ ରମେଶଚନ୍ଦ୍ରଙ୍କ ମନର ପରିଧି ଯେହେତୁ ବୁର୍ଜୋୟା ବିଧିନିଷେଧରେ ରହିଚି ଆକ୍ରାନ୍ତ, ଦାୟବଦ୍ଧତା ପହଞ୍ଚିପାରିନାହିଁ ନ୍ୟାୟସଙ୍ଗତ ପରିଣତିରେ । ୧୮୯୪, ୫ ଫେବୃୟାରୀ ସଂଖ୍ୟା *ଇନ୍ଦୁପ୍ରକାଶ* ରେ ଅରବିନ୍ଦ ତେଣୁ ଲେଖିଚନ୍ତି, In us, the Indian *Burgess* or the middle class emerges from obscurity, perhaps from nothingness, and strives, between a strong and unfeeling bureaucracy and an inert and imbecile *proletariat*, to possess itself of rank, consideration and power । ତା ଆଗରୁ ୧୮୯୩ର ଅଗଷ୍ଟ ୨୮ ସଂଖ୍ୟାରେ, The congress which represents a single and a very limited *class*... could not honestly be called national.. It consists of journalists, barristers, doctors, officers, graduates and traders who have grown up and are increasing with prurient rapidity under aegis of the British rule, and this class I call the middle class । ଏଇ ନବ୍ୟମଧ୍ୟବିତ୍ତର ଅନ୍ୟ ଏକ ବିଭାବ (ଦ୍ର. *ଇନ୍ଦୁପ୍ରକାଶ,* ଡିସେମ୍ବର୍ ୪, ୧୭୯୩) : a small contingent of aristocrats and smaller contingent of more well-to-do *royts*, these are only the fly-wheels in the great middle class machine । ମନେରଖିବା ଦରକାର, ରସିଆରେ ବିପ୍ଳବ ଘଟିବାକୁ ଡେରି ଅଛି ଆହୁରି ପଚିଶବର୍ଷ; ୧୮୯୩ ସେପ୍ଟେମ୍ବର୍ ୧୮ ସଂଖ୍ୟାରେ 'ପ୍ରଲେତାରିଏତ'ର ଅର୍ଥ ବୁଝାଇଚନ୍ତି ଅରବିନ୍ଦ : the vast and ignorant(French) proletariat that emerged from prolonged and almost coequal apathy and blotted in five terrible years the accumulated oppression of thirteen centuries । ପ୍ରତିତୁଳନାରେ ଭାରତରେ the vast unhappy proletariat, about which everybody talks and nobody cares, is the real key to the situation. Torpid he is and immobile; he is nothing as an *actual* force, but he is very good potential force, and whoever succeeds in understanding and affiliating his strength, becomes by the very fact, master of the future । ଅବଶ ଓ ମନ୍ଥର ଲୋକଶକ୍ତିକୁ ନିହିତସାମର୍ଥ୍ୟ ବୋଲି ଚିହ୍ନଟକରିବା ଉତାରୁ ସେଇ ସୁପ୍ତଶକ୍ତିକୁ ଜାଗ୍ରତ କରିବାକୁ ବୈପ୍ଳବିକ

କୋଉହେଲେ ଆନ୍ଦୋଳନ, ନା କରିଚନ୍ତି ଯୋଗାବିଷ୍ଟ ଅରବିନ୍ଦ, ନା ଦକ୍ଷିଣ-ଆଫ୍ରିକାରୁ ନିଗୃହୀତହୋଇ ଫେରିଆସିଥିବା ମୋହନଦାସ । ଏକମାତ୍ର ଆଲ୍ଲାଦୀନ୍ ଚିରାଗ୍ ତେଣୁ, ଉଭୟଙ୍କ ସକାସେ, ଆଧ୍ୟାତ୍ମିକତା କାହିଁକି ? କାରଣ, ଫରାସୀ ପ୍ରେକ୍ଷିତ ଯେହେତୁ ପ୍ରରୋଚିତ କରିଚି ଯୁବକ ଅରବିନ୍ଦଙ୍କୁ, ଚିହ୍ନଟ କରାଯାଇପାରେ ମାର୍କ୍ସଙ୍କ ଦି ଏଇଟିନ୍ଥ ବ୍ରୁମେୟାର ଅଫ୍ ଲୁଇ ବୋନାପାର୍ଟେ ଅନ୍ତର୍ଗତ ଅନ୍ତର୍ଦୃଷ୍ଟିରେ : The tradition of all the dead generations weighs like a nightmare on the brain of the living. And just when they seem engaged in revolutionizing themselves and things, in creating something that has never yet existed, precisely in such periods of revolutionary crisis they anxiously conjure up the spirit of the past.. Thus Luther donned the mask of the Apostle Paul, the Revolution of 1789 to 1814 draped itself alternately as the Roman Republic and The Roman Empire, and the Revolution of 1848 knew nothing better to do than parody, now 1789, now the revolutionary tradition of 1793 to 1795. In like manner a beginner who has learnt a new language always translates it back into his mother tongue । ଅର୍ଥାତ୍, ଉତ୍ପାଦନର ସଂଗଠନ ନିର୍ବିଶେଷ ହୋଇପାରେ, ଯେପରି ଇଉରୋପ୍ କି ଜାପାନରେ ପୁଞ୍ଜିବାଦ, କିନ୍ତୁ ଇଉରୋପ୍‌ର ବିଭିନ୍ନ ଦେଶର ଇତିହାସ ବିଭିନ୍ନ, ଜାପାନ ସହିତ ମଧ୍ୟ ସମାନ ନୁହେଁ । ଇତିହାସର ସ୍ତରବିନ୍ୟାସରେ ଯେହେତୁ ନାନାଦି ଭେଦାଭେଦ, ଅର୍ଥନୀତିର ଭିତ୍ତି ବଦଳିଗଲେ ସୁଦ୍ଧା, ସମାଜ ରୂପକ ସଂଗଠନ (ଫର୍ମେସନ୍) ନିଜ ଅବୟବରେ ବହନକରୁଚି ପୂର୍ବବର୍ତ୍ତୀ ଐତିହାସିକ ପର୍ଯ୍ୟାୟଗୁଡ଼ିକର ସ୍ତରବିନ୍ୟାସ । ବ୍ୟାପକ ବ୍ୟଞ୍ଜନାରେ ସେ ଇତିହାସ ହୋଇପାରେ ସମଗ୍ର ମାନବପ୍ରଜାତିର ଇତିହାସ, ମାତ୍ର ସ୍ଥାନ-କାଳ ମାତ୍ରାରେ ବିଭିନ୍ନ ବୋଲି, ଚରିତ୍ର ସବୁବେଳେ ଆପେକ୍ଷିକ ଓ ବିଚିତ୍ର । ସମାଜଚେତନା ତେଣୁ ବିମୂର୍ତ୍ତ ଅବବୋଧ ନୁହେଁ, ଏକାଧାରରେ ଚେତନାରେ ବାହିତ ସ୍ମୃତି । ଅର୍ଥନୀତି ପୂର୍ଣ୍ଣମାତ୍ରାରେ ଉନ୍ମୋଚିତ କରିପାରେନା ସେ ସଂଶ୍ଳେଷକୁ, ଚେତନା ଯେହେତୁ ସ୍ପଷ୍ଟତଃ ଏକ ଐତିହାସିକ ଉତ୍ତରାଧିକାର । ତାକୁ ଗଠିତକରୁଚି ନିର୍ଦ୍ଦିଷ୍ଟ ସମାଜବ୍ୟବସ୍ଥାର ଅତୀତ-ବର୍ତ୍ତମାନ-ଭବିଷ୍ୟତର ଅବିଭାଜ୍ୟ ଅନ୍ୱୟ । ଯେପରି, ଧନତନ୍ତ୍ରର ସୁପରଷ୍ଟ୍ରକ୍‌ଚର୍ ଉତ୍ପାଦନର ଭିତ୍ତି (ବେସ୍) ସବୁଠି ପୁଞ୍ଜିବାଦ, ଅଥଚ ସୁପରଷ୍ଟ୍ରକ୍‌ଚର୍ ନାନାବିଧ, ଇଉରୋପ୍‌ରେ ଖ୍ରୀଷ୍ଟଧର୍ମ, ଜାପାନରେ ସିଣ୍ଟୋବୁଦ୍ଧିଜ୍ମ, ଇଂଲଣ୍ଡରେ ରଜା, ଆମେରିକାରେ ପ୍ରେସିଡେଣ୍ଟ(ରିପବ୍ଲିକ୍) । ସୁପରଷ୍ଟ୍ରକ୍‌ଚର୍‌ର

ଭଗ୍ନାଂଶଗୁଡ଼ାକ ଦେଶର ସର୍ବସାଧାରଣ ଚେତନାରେ ଶକ୍ତିଶାଳୀ ହେବା ଅନିବାର୍ଯ୍ୟ । ଅରବିନ୍ଦ କାମନାକରିଚନ୍ତି ଚିନ୍ତାର ପ୍ରଚରଣ, ମାଇଗ୍ରେସନ୍ ଅବ୍ ଆଇଡିଆଜ୍ । ଯେମିତି ଭାରତୀୟ କମ୍ୟୁନିଷ୍ଟ ଭାବିଚିନ୍ତି, ଦେଶକୁ କରିବେ ରସିଆ । ହେଲେସୁଦ୍ଧା ଅରବିନ୍ଦଙ୍କ ପୂର୍ବରୁ ଦେଶବାସୀଙ୍କ ଶ୍ରେଣୀପରିଚୟ ବୁଝିନାହାଁନ୍ତି ଆଉକେହି । ଦେଶବାସୀଙ୍କ ସମ୍ଭାବ୍ୟ ସାମର୍ଥ୍ୟକୁ ବି କଳ୍ପନା କରିପାରିନାହାଁନ୍ତି । ଭାବିଚିନ୍ତି, ସାମର୍ଥ୍ୟ ମାନେ ଖାଲି ତୋପ ବନ୍ଧୁକ କିମ୍ବା ସତ୍ତ୍ୱଃ-ରଜଃ-ତମଃ ଭଳି କାଳ୍ପନିକ ଗୁଣାଗୁଣ । ଶ୍ରେଣୀସ୍ୱାର୍ଥକୁ ଠାବକରିବା ଉତାରୁ କର୍ତ୍ତବ୍ୟ ହେବାକଥା ଶ୍ରେଣୀସ୍ୱାର୍ଥର ବିଲୁପ୍ତି, ଅନ୍ୟଥା ସାମ୍ରାଜ୍ୟବାଦକୁ ଐକ୍ୟବଦ୍ଧ ପ୍ରତିରୋଧ ଅସମ୍ଭବ । କାମର ପରିସର ହେବାକଥା ତେଣୁ ସିଭିଲ୍ ସୋସାଇଟି ବା ପୌରସମାଜ, ଉପନିବେଶବାଦ ଯାହାକୁ ଭାଙ୍ଗି କରିଦେଇଚି ଚୂର୍‌ମାର୍ । ସେକାମ ନିଶ୍ଚୟ ଡାକିଆଣିଥାନ୍ତା ଗୃହଯୁଦ୍ଧ; ମାତ୍ର ଦେଶବାସୀ ଏକାଠିହୋଇ ଲଢ଼ିପାରିଥାନ୍ତେ ସାମନ୍ତତନ୍ତ୍ର ସାଙ୍ଗରେ ଯେତିକି ଇଂରେଜ୍ ସାଙ୍ଗରେ ତତୋଧିକ, ଏବଂ ଏକମାତ୍ର ସେଇ ଉପାୟରେ ନିର୍ମିତ ହୋଇପାରିଥାନ୍ତା ବାଞ୍ଛିତ ଭବିଷ୍ୟତ୍ । ଏକମାତ୍ର ଧାରାବାହିକ ଓ ସଂଗଠିତ ସଂଗ୍ରାମ ହିଁ ଜନସାଧାରଣଙ୍କୁ କରିପାରିଥାନ୍ତା ଭୟମୁକ୍ତ । ରବୀନ୍ଦ୍ରନାଥ ଯେତେ କହୁଥାନ୍ତୁ 'ଚିତ୍ତ ଯେଥା ଭୟଶୂନ୍ୟ / ଉଚ୍ଚ ଯେଥା ଶିର୍', ଆଖିବୁଜି ବସି ମାଡ଼ଖାଇଲେ ଚିତ୍ତରୁ ଭୟ ଦୌଡ଼ିପଳାଏନା, ଜମିଦାରର ଲାଠିଆଳ ମାରେ, ମହାଜନର ଗୋମସ୍ତା ମାରେ, ଦେଉଳରେ ବ୍ରାହ୍ମଣ ମାରେ, ଏବେ ନହେଲେ ସିପେଇ-ଦାରୋଗା ମାରିବେ, ନୂଆକଥା କଣ ହୋଇଗଲା ଯେ ଭୟ ଭୟପାଇଯିବ ? ଅଥଚ ଗାନ୍ଧି କଡ଼ା ନିଷେଧ ଜାରିକରିଚନ୍ତି ସତ୍ୟାଗ୍ରହୀଙ୍କ ଉପରେ, ଗଡ଼ଜାତ କି ଜମିଦାରିରେ ଆଇନ୍‌ଅମାନ୍ୟ ଚଳିବନାହିଁ । ଅଥଚ ଭାଇସ୍‌ରୟଙ୍କୁ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ବେଳେ ଛାତ୍ରଛାତ୍ରୀ ଯେତେବେଳେ ଘେରିପକାଇଲେ, ଦେଖାଗଲା, ବର୍ଦ୍ଧମାନ୍ ମହାରାଜା ବିପୁଳ ବପୁକୁ ସାଷ୍ଟାଙ୍ଗ ଭାବରେ ଅର୍ପଣକରି କୁଣ୍ଡାଇଧରିଚନ୍ତି ବ୍ରିଟିଶ୍ ରାଜପୁରୁଷକୁ ।

କଂଗ୍ରେସ୍-ନେତୃତ୍ୱ ଉପରେ କ୍ରୁଦ୍ଧ ଅରବିନ୍ଦ, ଶତ୍ରୁକୁ ବାହ୍ୟଶକ୍ତି ନକହି, ଚିହ୍ନିତ କରିଥିଲେ 'ଅନ୍ତର୍ଗତ ଦୁର୍ବଳତା' । ଅର୍ଥାତ୍ ଫରାସୀବିପ୍ଳବ ଢଙ୍ଗରେ ଗଣଆନ୍ଦୋଳନ ସଂଗଠିତ ହୋଇନାହିଁ । *ଇନ୍ଦୁପ୍ରକାଶ* ର ମାଲିକ ପାଇଚନ୍ତି ତତ୍‌କ୍ଷଣାତ୍ ରାଜଦ୍ରୋହ ଅଭିଯୋଗ; ଇଂରେଜ୍ ପାଖରୁ ନୁହେଁ, ନ୍ୟାୟମୂର୍ତ୍ତି ଏମ୍ ଜି ରାଣାଡେଙ୍କ ପାଖରୁ । ବୁଝିପାରନ୍ତି କେମ୍ବ୍ରିଜ୍-ପ୍ରତ୍ୟାଗତ ଅରବିନ୍ଦ, ପ୍ରଥାବିରୁଦ୍ଧ ଚିନ୍ତା ବା କର୍ମ ସକାଶେ ଦେଶ ତଥାପି ପ୍ରସ୍ତୁତହୋଇନାହିଁ, ଆତ୍ମଗୋପନ ଛଡ଼ା ଏକ୍ଷଣି ଅନ୍ୟ ଉପାୟ ନାହିଁ । ବରୋଦା ଓ କଲିକତାରେ ସ୍ଥାପନକରିଚନ୍ତି ଗୁପ୍ତ ସଂଗଠନ । ପ୍ରକାଶ୍ୟ ପ୍ରତିରୋଧ

ଯେହେତୁ ଶାସ୍ତିଯୋଗ୍ୟ ଅପରାଧ, ସଭାସମିତି ଲେଖାଲେଖି ଯେହେତୁ ଗର୍ହିତ ଆଚରଣ, ଗୋପନ ସନ୍ତ୍ରାସ ହିଁ ଏକମାତ୍ର ଅବଶିଷ୍ଟ ପନ୍ଥା । ଦେଶର ସୈନ୍ୟବାହିନୀ ପାଖରୁ ଆଗେ ସମର୍ଥନ ଲୋଡ଼ିଚନ୍ତି । ବରୋଦାର ଗାଏକୱାଡଙ୍କ ପାଖରୁ ଅର୍ଥ-ସାହାଯ୍ୟ । ଚେଲାମାନଙ୍କୁ ନିଜ ସୈନ୍ୟବାହିନୀରେ ପୁରାଇ ଅସ୍ତ୍ରଶିକ୍ଷା ଦେବାକୁ ରାଜିହେଲେ ସୁଦ୍ଧା, ଟଙ୍କାପଇସା ଦେଇନାହାଁନ୍ତି ଗାଏକ୍‌ୱାଡ । ରମେଶ ଦତ୍ତଙ୍କ ବହି ଯୋଉବର୍ଷ ବାହାରିଚି ବିଲାତରୁ, ସେଇ ୧୯୦୧ରେ ବିପ୍ଳବୀ ସଂଗଠନ ଆରମ୍ଭକରିଚନ୍ତି କଲିକତାରେ ଅସ୍ତ୍ରବିଦ୍ୟାରେ ତାଲିମ୍‌ପ୍ରାପ୍ତ ଅରବିନ୍ଦ-ଶିଷ୍ୟ, ଏବଂ ଦି'ବର୍ଷ ନପୂରୁଣୁ ଅନୁଜ ବାରୀନ୍ଦ୍ରକୁମାର ବରୋଦାରୁ ଆସି ଗ୍ରହଣକରିଚନ୍ତି ଦାୟିତ୍ୱ, ମାତ୍ର ଅନ୍ତର୍କଳହ ବିପ୍ଳବୀଙ୍କୁ କରିଦେଇଚି ଅନ୍ତର୍ଘାତୀ । ଅରବିନ୍ଦ ଅବଶ୍ୟ ପ୍ରଚ୍ଛନ୍ନ ରହିଚନ୍ତି। କଂଗ୍ରେସ୍ ଉପରେ ଭରସା ନାହିଁ, ବର୍ଷକୁ ଥରେ ମେଳାବସାଇ 'Burgess' କରୁଚି ଖାଲି ବାକ୍‌ବିସ୍ତାର; ପୁଣି କଂଗ୍ରେସ୍ ସଭାପତି ସୁରେନ୍ ବାଁଡୁଜେ ୧୯୦୨ ଅଭିଭାଷଣରେ କହିସାରିଲେଣି, We plead for the permanence of British rule in India; ବୈବକ୍ରୁ କର୍ଜନ୍‌ଙ୍କ ୧୯୦୫ର ବଙ୍ଗଭଙ୍ଗକୁ ବିରୋଧକରି ସଂଗଠିତ ଦେଶବ୍ୟାପୀ ପ୍ରତିବାଦ ଗୋପନ ସନ୍ତ୍ରାସକୁ ଟାଣିନେଇଯାଇଚି ପ୍ରତ୍ୟନ୍ତ ଅଞ୍ଚଳକୁ, ଏବଂ ସାଧାରଣ ଗ୍ରାମବାସୀଙ୍କ ଉତ୍ସାହ ଦେଖି ଅରବିନ୍ଦ ଲେଖିଚନ୍ତି, *No Compromise* । ମୁଦ୍ରିତ କରି ବଣ୍ଟାଯାଇଚି । ସେଇ ଅବକାଶରେ ବାରୀନ୍ଦ୍ରକୁମାର *ଆନନ୍ଦମଠ* ଆଦର୍ଶରେ ପ୍ରତିଷ୍ଠାକରିଚନ୍ତି ସନ୍ତ୍ରାସବାଦୀ ସନ୍ନ୍ୟାସୀ ସମ୍ପ୍ରଦାୟ । ତାଙ୍କ ଇସ୍ତେହାର, ସଶସ୍ତ୍ର ସଂଗ୍ରାମର ମ୍ୟାନୁଆଲ୍, *ଭବାନୀ ମନ୍ଦିର*, ଲେଖିଦେଇଚନ୍ତି ସ୍ୱୟଂ ଅରବିନ୍ଦ ।

ସିପାହୀବିଦ୍ରୋହ ଅବ୍ୟବହିତରେ ୧୮୭୦ରୁ ୮୦ଲଡ଼ ଲିଟନ୍ ହୋଇଚନ୍ତି ଭାଇସ୍‌ରୟ୍ ଏବଂ ପ୍ରବର୍ତ୍ତନ କରିଚନ୍ତି ଆର୍ମଜ୍ ଆ୍ୟାକ୍ଟ; ସେ ଅସ୍ତ୍ରଆଇନ୍ ଅଦ୍ୟାବଧି ବଳବତ୍ ରହିଚି ସ୍ୱାଧୀନ ସାର୍ବଭୌମ ଭାରତବର୍ଷରେ । ସେଇ ଆଇନ୍ ବଳରେ ଭାରତବାସୀଙ୍କୁ କରାଯାଇଚି ନିରସ୍ତ୍ର, ଅସ୍ତ୍ରଧାରଣ ଓ ରକ୍ଷଣକୁ କରାଯାଇଚି ଦଣ୍ଡନୀୟ ଅପରାଧ । ପ୍ରକାଶ୍ୟ ଅବରୋଧ ତେଣୁ ଅରବିନ୍ଦଙ୍କ ସକାଶେ ଆଇନ୍‌ଅମାନ୍ୟ । ଗାନ୍ଧିଙ୍କ ଆଇନ୍‌ଅମାନ୍ୟ କିନ୍ତୁ ନିରସ୍ତ୍ର ଓ ଅହିଂସ; ଅସ୍ତ୍ର ବ୍ୟବହାରକଲେ ଗାନ୍ଧି ଉପାସ ରହିବେ ଆମରଣ । ଅଥଚ ସଶସ୍ତ୍ର ପ୍ରତିରୋଧ, ଯେପରି ସିପାହୀବିଦ୍ରୋହ, କେବଳ ସୃଷ୍ଟିକରିପାରେ ଇଂରେଜ୍‌ର ଆତଙ୍କ । ନ୍ୟାୟତଃ ସେଇ ଶିକ୍ଷା ଗ୍ରହଣକରିଚନ୍ତି ଅରବିନ୍ଦ ଇତିହାସରୁ, ଯୋଉ ଶିକ୍ଷା ଗ୍ରହଣକଲେ ମରଣ ବି ଡରେ ମଣିଷକୁ । ଗାନ୍ଧି ରହିଁଥିଲେ ଯଥାସମ୍ଭବ ଶସ୍ତାଦରରେ କିଣିଆଣିବେ ଖ୍ରୀଷ୍ଟାନ୍ ଅନୁକମ୍ପା, କାହିଁକିନା, ଜାତି-ଧର୍ମ-

ଭାଷା ଓ ଶ୍ରେଣୀ ଦ୍ୱାରା ବିଭାଜିତ ଏଇ ସମାଜ ଚରମ କୋଉ ଉତ୍ସର୍ଗ ସକାଶେ ପ୍ରସ୍ତୁତନୁହେଁ; ନିଷ୍କ୍ରିୟ (ପ୍ୟାସିଭ୍) ପ୍ରତିରୋଧ ତେଣୁ ଏକମାତ୍ର ବିକଳ୍ପ; ତାକୁ ନୈତିକ ବୈଧତା ପ୍ରଦାନକରିବାକୁ ପ୍ରୟୋଗକରିଚନ୍ତି ଗାନ୍ଧି ଧର୍ମର ଆଭରଣ । ଇଂରେଜ୍ ବି ଆଶ୍ୱସ୍ତହୋଇଚି । ସେ ବାଟରେ ସ୍ୱାଧୀନତା ଆସିନାହିଁ, ଆସିଚି କେବଳ କ୍ଷମତାହସ୍ତାନ୍ତର । *ଆନନ୍ଦମଠ* ର ବ୍ରହ୍ମଚାରୀ ସତ୍ୟାନନ୍ଦ ଈଶ୍ୱରପ୍ରାପ୍ତି ପାଇଁ ହିମାଳୟ ନଯାଇ ବ୍ୟାକୁଳହୋଇଚନ୍ତି ଶତ୍ରୁଶୋଣିତରେ ସିକ୍ତକରି ମା'କୁ ସଶ୍ୟଶାଳିନୀ କରିବେ । ଗାନ୍ଧି, କ୍ଷମତାର ବଡ଼ଅଂଶଟା ପାଇବାକୁ ମା'କୁ କରିଚନ୍ତି ଦି'ଗଡ଼ ! ଆଉ, ମନେରଖିବାକୁ ହେବ, ଇଂରେଜ୍ ସ୍ୱଇଚ୍ଛାରେ ଯାଇନଥିଲେ, ଅହିଂସସତ୍ୟାଗ୍ରହର ବାପର ଚରା ନଥିଲା ଦେଶକୁ ସ୍ୱାଧୀନ କରିବ । ଅହିଂସ ସତ୍ୟାଗ୍ରହ ଚାଲୁଥିବା ବେଳେ ସଶସ୍ତ୍ର ପ୍ରତିରୋଧ ଖାଲି ସମାନ୍ତରାଳ ଧାରାରେ ପ୍ରବାହିତହୋଇନାହିଁ, ହିନ୍ଦୁମୌଳବାଦ ମଧ୍ୟ ଫଣାଟେକି ଉଠିଚି ମହାରାଷ୍ଟ୍ରରେ; (ଦ୍ରଷ୍ଟବ୍ୟ, ୧୯୨୩ରେ ପ୍ରଚାରିତ ବିନାୟକ ଦାମୋଦର ସାଭାର୍‌କର୍ ପ୍ରଣୀତ *ହିନ୍ଦୁତ୍ୱ ହୁ ଇଜ୍ ଆ ହିନ୍ଦୁ* ।) ଦ୍ୱିପାନ୍ତର ଶାସ୍ତିଭୋଗରୁ ମୁକୁଳିଆସି ଅନୁଚରଙ୍କୁ ଯୋଉ ଶପଥବାକ୍ୟ ପଢ଼ାଇଚନ୍ତି ସାଭାର୍‌କର୍ ୧୯୨୧ରେ, ନବ୍ୟହିନ୍ଦୁତ୍ୱର ତା ବୀଜମନ୍ତ୍ର: ଏକ ଈଶ୍ୱର, ଏକ ଦେଶ, ଏକ ଲକ୍ଷ୍ୟ, ଏକ ଜାତି, ଏକ ଜୀବନ, ଏକ ଭାଷା । ସେଇ 'ଏକ' ତାଡ଼ନାରେ ୧୯୨୫ରେ ସ୍ଥାପିତ ହୋଇଚି 'ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ', ଯାର ଅନ୍ୟତମ ପୃଷ୍ଠପୋଷକ ଥିଲେ, ଆଉକେହି ନୁହେଁ, ସ୍ୱୟଂ ଘନଶ୍ୟାମ ଦାସ ବିଡ଼ଲା (ବିପଦଆପଦରେ ଗାନ୍ଧିଙ୍କ ସହାୟ !) । ସେଇ ସଂଗଠନର ଏକତନ୍ତ୍ର ଆଜି, ଏକ୍ ଦେଶ୍‌ମେ ଏକ୍ ବିଧାନ୍, ଏକ୍ ନିଶାଣ୍, ଏକ୍ ପ୍ରଧାନ୍ । ହିନ୍ଦୁ ଡିକ୍ଟେଟର୍‌ସିପ୍, ଯୋଉ ଡିକ୍ଟେଟର୍‌ସିପ୍ ଜମାରୁ ନିରସ୍ତ୍ର ନୁହେଁ । ଗୋଇନ୍ଦା ବିଭାଗର ଗୋପନ ରିପୋର୍ଟ ଅନୁସାରେ ଅରବିନ୍ଦଙ୍କ *ଭବାନୀମନ୍ଦିର* ବହନକରିଚି the germ of the hidden revolutionary movement in Bengal । ୧୯୧୬ ମାର୍ଚ୍ଚମାସରେ ବରୋଦା ଛାଡ଼ି କଲିକତା ଚାଲିଆସିଚନ୍ତି ଅରବିନ୍ଦ, ଏବଂ ୧୯୧୦ରେ ପଣ୍ଡିଚେରୀ ଅଭିମୁଖେ ନିଷ୍କ୍ରମଣ ପର୍ଯ୍ୟନ୍ତ ରହିଚନ୍ତି ସଶସ୍ତ୍ର ଆନ୍ଦୋଳନର କର୍ଣ୍ଣଧାର; ବେଦ-ଉପନିଷଦ-ଗୀତା-ଧର୍ମସୂତ୍ର, ଯା ଧର୍ମକର୍ମକୁ ଏତେଦିନ ଉଦ୍‌ବୁଦ୍ଧକରିଚି, ତାହାରି ଅନ୍ତରାଳରୁ ଏକାନ୍ତଭାବେ ପ୍ରେରିତକରିଚି ତାଙ୍କୁ ଫରାସୀବିପ୍ଳବର ଐତିହାସିକ ନିଦର୍ଶନ ।

କଲିକତାରୁ ଏକାଧିକ ଇଂରେଜୀ ଖବରକାଗଜ ବାହାରିଚି, ଏବଂ ସାହେବ୍‌ଙ୍କ କାଗଜ ଭଳି ବଙ୍ଗାଳୀଙ୍କ କାଗଜ ବି ହୋଇଚି ସମାନ ପ୍ରଭାବଶାଳୀ; କିନ୍ତୁ ବେନାମରେ ସମ୍ପାଦନାକରିଚନ୍ତି ଅରବିନ୍ଦ ବଙ୍ଗଳା *ଯୁଗାନ୍ତର* ସାଙ୍ଗକୁ ଇଂରେଜୀ *ବନ୍ଦେମାତରଂ*,

ଆଉ ଏକାବେଳକେ, ବଙ୍ଗାଳୀ ବିପ୍ଲବୀଙ୍କୁ ମିଳିତକରିଚନ୍ତି ମରାଠୀ ବିପ୍ଲବୀଙ୍କ ସାଙ୍ଗରେ । ମରାଠୀଙ୍କ ନେତା ଥିଲେ ଟିଳକ । *ବନ୍ଦେମାତରଂ* ସମ୍ପାଦକୀୟରେ ଲେଖନ୍ତି, Political freedom is the life-break of a nation; to attempt social reform, educational reform, industrial expansion, the moral improvement of the race without aiming first and foremost at political freedom, is the very hight of ignorance and futility.. healthy national thought and action... is impossible in a state of servitude, କାହିଁକିନା, କଂଗ୍ରେସ୍-ସଭାପତି ଦାଦାଭାଇ ନଓରୋଜୀ ଘୋଷଣା କରିଥିଲେ, ବ୍ରିଟିଶ୍‌ସାମ୍ରାଜ୍ୟର ଅନ୍ତର୍ଭୁକ୍ତଥାଇ ଭାରତ ରହେଁ ସ୍ୱରାଜ । ଅରବିନ୍ଦଙ୍କ ପାଇଁ 'ସ୍ୱରାଜ' ମାନେ ପୂର୍ଣ୍ଣ ସ୍ୱାଧୀନତା, ବ୍ରିଟିଶ୍ ରାଜତ୍ୱର ଅବଲୁପ୍ତି । ଗାନ୍ଧି ବି ଆରମ୍ଭକରିଚନ୍ତି 'ସ୍ୱରାଜ' ଡାହାଣପଟରୁ, ସାରିଚନ୍ତି ବାଁପଟରେ । ଅରବିନ୍ଦ ତେଣୁ ରାଜନୀତିକୁ କରିଦେଇଚନ୍ତି ପ୍ରକାଶ୍ୟ, ସଂଗଠନ ରହିଚି ଗୋପନୀୟ । ଲେନିନ୍ ମଧ୍ୟ ଧରିଚନ୍ତି ଏକାବାଟ, ପଲିଟିକ୍ସ ଓପେନ୍, ଅର୍ଗାନାଇଜେସନ୍ ସିକ୍ରେଟ୍ । ପ୍ରକାଶ୍ୟ ସେଇ ରାଜନୀତି 'ବୟକଟ୍'; ମାନେ, ବିଦେଶୀବର୍ଜନ, ଯାର ପୁରୋଭାଗରେ ରହିଚନ୍ତି ବାଳଗଙ୍ଗାଧର ଟିଳକ, ବିପିନ୍‌ଚନ୍ଦ୍ର ପାଲ୍ ଓ ଲାଲା ଲଜପତ୍ ରାୟ, ଗାନ୍ଧିଙ୍କ ଆବିର୍ଭାବ ଘଟିନାହିଁ ସେତେବେଳକୁ ଭାରତରେ; ତେବେ, ଦକ୍ଷିଣ-ଆଫ୍ରିକାରେ ତାଙ୍କ ନିଷ୍କ୍ରିୟ (ଅହିଂସ) ପ୍ରତିରୋଧର ଖବର କର୍ଣ୍ଣଗୋଚର ହୋଇଚି କଂଗ୍ରେସ୍‌ର ମୁରବୀମାନଙ୍କର । ଅରବିନ୍ଦ ତେଣୁ *The Ideal of Passive Resistance* ନିବନ୍ଧରେ ଆଲୋଚନାକରିଚନ୍ତି, ଲକ୍ଷ୍ୟ, ପଦ୍ଧତି ଓ ସୀମାବଦ୍ଧତା; ଏବଂ ଉପସଂହାରରେ କହିଚନ୍ତି, ଅକର୍ମକ ପ୍ରତିରୋଧ ବିପ୍ଲବୀ ପାଇଁ ଏକ ଗୌଣ ଉପାୟ ମାତ୍ର । ଅସହଯୋଗ ଓ ବିଦେଶୀବର୍ଜନ ଭଳି ଆଇନ୍‌ସଂଗତ ପ୍ରତିବାଦ ଅବଶ୍ୟ ଜନପ୍ରିୟହେବା ଅଧିକ ସମ୍ଭବ । ଗାନ୍ଧି ଫେରିଚନ୍ତି ୧୯୧୪ରେ ପ୍ରଥମ ମହାଯୁଦ୍ଧ ଲାଗିଗଲା ଉତାରୁ। ପାଞ୍ଚବର୍ଷ ଉତାରୁ ୧୯୧୯ରେ କଂଗ୍ରେସ୍ ଗ୍ରହଣକରିଚି ଅକର୍ମକ ପ୍ରତିରୋଧ ପଦ୍ଧତି । ଇଂରେଜ୍ ବୁଝିଯାଇଚି, ଡରଡରହେବା ଆଉ ଦରକାର ନାହିଁ; ନିଜ ସୁବିଧା ଅନୁସାରେ, ନିଜ ସର୍ତ୍ତରେ ବେଳକାଳ ବୁଝି ଭାରତ ଛାଡ଼ିବା ନିର୍ଭରକରେ ସେମାନଙ୍କ ମର୍ଜି ଉପରେ । କଂଗ୍ରେସ୍ ତାଙ୍କ ବାଳ ବଙ୍କାକରି ପାରିବନାହିଁ । ଏ କଥାର ସାକ୍ଷୀ ଇତିହାସ ।

ତଥାପି ୧୯୦୭ ବେଳକୁ, ପଞ୍ଜାବରେ କୃଷକବିଦ୍ରୋହ ସୈନ୍ୟବାହିନୀ ଉପରେ କରିଚି ଛାୟାପାତ । ଶିଖ୍-ଅଭ୍ୟୁତ୍ଥାନର ସମ୍ଭାବନା ସିପାହୀବିଦ୍ରୋହକୁ ପ୍ରଜ୍ୱଳିତ କରିଥିଲା ମିରଟରେ ମାତ୍ର ଅର୍ଦ୍ଧଶତକ ପୂର୍ବରୁ । ପଞ୍ଜାବର କୃଷକବିଦ୍ରୋହ ତେଣୁ

ନିଦ କାଢ଼ିନେଇଚି ଇଂରେଜ୍ ଆଖିରୁ, ଲଜପତ୍ ରାୟ ହୋଇଚନ୍ତି ନିର୍ବାସିତ । କ୍ଷିପ୍ତ ଅରବିନ୍ଦ ଲେଖିଚନ୍ତି : The hour for speeches and fine writing is past. The bureaucracy has thrown down the gauntlet. We take it up । 'we' କିନ୍ତୁ ଏକମାତ୍ର ଅରବିନ୍ଦ ନୁହଁନ୍ତି, ଗାନ୍ଧିମାର୍ଗରେ ସେମାନେ ଯାଇନାହାଁନ୍ତି ସତ, କିନ୍ତୁ ତାଙ୍କରି ପ୍ରାଣୋତ୍ସର୍ଗ ସମ୍ଭବକରିଥିଲା ମର୍ଲି-ମିଣ୍ଟୋ ଓ ମଣ୍ଟେଗୁ-ଚେମ୍ସ୍‌ଫୋର୍ଡ଼ ଶାସନସଂସ୍କାର, ଯୋଉଥିରୁ ସୁବିଧା ଉଠାଇ ବୁର୍ଜୋୟା କରୁଥିଲା ଏମ୍ଏଲ୍ଏ, କାଉନ୍‌ସିଲର୍, ଆଲ୍‌ଡର୍‌ମ୍ୟାନ୍ । ବାରୀନ୍ ଘୋଷ ସେଥିପାଇଁ ଗାନ୍ଧିଙ୍କ ଆନ୍ଦୋଳନକୁ କହିଚନ୍ତି 'ବୈଶ୍ୟଙ୍କ ଆନ୍ଦୋଳନ' । ମୋଟ୍ କଥା, ଅସହଯୋଗ ଆନ୍ଦୋଳନ, ବିପ୍ଳବୀ-ସନ୍ତ୍ରାସ ପ୍ରତିତୁଳନାରେ, ନୂଆ କୋଉ ବାଣୀ ଶୁଣାଇନାହିଁ କି ଅଭିନବ କୋଉ ପଦ୍ଧତି ଉପସ୍ଥାପିତ କରିନାହିଁ, ଅପରିଚିତ ଅଜ୍ଞାତ ପଥରେ ବାଟକଢ଼ାଇ ଆଗକୁ ନେଇଯାଇନାହିଁ ପରିବର୍ତ୍ତନକାମୀଙ୍କୁ । ପ୍ରଥମ ମହାଯୁଦ୍ଧ କାଳରେ(୧୯୧୪-୧୮) ବିରାଟ ଏକ ସାମରିକ ଅଭ୍ୟୁତ୍ଥାନର ଚେଷ୍ଟା ସେଥିପାଇଁ ବ୍ୟର୍ଥହୋଇଯାଇଚି, କୋଉହେଲେ ଶ୍ରେଣୀ ଆଗେଇ ଆସିନାହିଁ, ପୁରୁଣା ଅଭିଜାତ ଆଉ ନୂଆ ବୁର୍ଜୋୟା ହାତମିଳାଇଚନ୍ତି ସାମ୍ରାଜ୍ୟବାଦ ସାଙ୍ଗରେ । ବାକି ରହିଲେ ଜନଗଣ, ବିପ୍ଳବୀ ତାଙ୍କୁ ଡାକିନାହାଁନ୍ତି । ବିପ୍ଳବୀ ତ ବାବୁ ! ବିପ୍ଳବବାଦର ଉଚ୍ଛିଷ୍ଟ ଏଇ ବାବୁସଂପ୍ରଦାୟ ଗାନ୍ଧିଙ୍କ ଅନୁଚର । 'ମ୍ୟାଞ୍ଚେଷ୍ଟର୍ ଗାଡ଼ିଆନ୍'ର ପ୍ରତିନିଧି ନେଭିନ୍‌ସନ୍ ୧୯୦୭ରେ ଭେଟିଚନ୍ତି ଅରବିନ୍ଦଙ୍କୁ, ଏବଂ ଲେଖିଚନ୍ତି ଏଇ 'ଆନ୍ ଇଂଲିଶ୍ ଗ୍ରାଜୁଏଟ୍' ସ୍ୱଦେଶୀ କହିଲେ ବୁଝନ୍ତି, not limited to goods but including every phase of life । ପ୍ରବୀଣ ସାଂସଦ ନେଭିନ୍‌ସନ୍‌ଙ୍କ ଦୃଷ୍ଟିରେ ଅରବିନ୍ଦ ପ୍ରତିଭାତହୁଅନ୍ତି Grave with intensity, careless of fate or opinion, and one of the most silent men I have known, he was of the stuff that dreamers are made of, but dreamers who will act their dream, indifferent to the means । ଉଦ୍ଦେଶ୍ୟ ବନାମ ଉପାୟ, ଆଜି ବି ଚାଲୁଚି ଏ ବିତର୍କ, କାହିଁକିନା, ଗାନ୍ଧି ବର୍ଜନକରିଚନ୍ତି ଉଗ୍ର ଜାତୀୟତା ସାଙ୍ଗକୁ ପ୍ରତିହିଂସା । ଫଳରେ, ଯୁଯୁତ୍ସୁ ଜାତୀୟତାବାଦୀ ଠେଲିହୋଇ ଚାଲିଯାଇଚନ୍ତି ଆନ୍ଦୋଳନର ସୀମାନ୍ତକୁ, ଏବଂ ସେଇ ସୀମାନ୍ତରୁ ଆଜି ବି ଚଳାଇଚନ୍ତି ନିଃସଙ୍ଗ (?) ସଂଗ୍ରାମ । ୧୯୪୭ରେ ସୁଦ୍ଧା ଯୋଗୀ ଅରବିନ୍ଦ ନିଜକୁ ବର୍ଣ୍ଣନାକରିଚନ୍ତି, neither an impotent moralist nor a weak pacifist, କାହିଁକିନା, ରାଷ୍ଟ୍ର ଯେତେବେଳେ ନ୍ୟାୟ-ଅନ୍ୟାୟ ବୁଝେନା, ପ୍ରତିବାଦୀ ଉପରେ ଭୟାବହ ବଳପ୍ରୟୋଗ କରିବାକୁ କୁଣ୍ଠିତ ହୁଏନା, ଅହିଂସ ପ୍ରତିକ୍ରିୟା

ସେତେବେଳେ ନିର୍ବୀର୍ଯ୍ୟ କାପଟ୍ୟ ମାତ୍ର । ଏକଥା ସାଙ୍ଗରେ, ବୋମାତିଆରି ଓ ଗୁପ୍ତହତ୍ୟା ଦାୟିତ୍ୱରେ ଥିଲେ ଯୋଉ ବାରିନ୍ ଘୋଷ, ଯୋଗକରିଚନ୍ତି, 'ଆମେ କେମିତି ବଞ୍ଚିବୁଁ ଠିକଣାକରୁଚି ବିଦେଶୀ; ତାହେଲେ ମରିବୁ କେମିତି, ପୁରାପୁରି ଆମ ନିଜ ହାତରେ । ମଣିଷ ହୋଇ ଜନ୍ମିଛୁଁ, ପୋକ ଭଳି ମରିବୁ କାହିଁକି ?' ଅର୍ଥସଂଗ୍ରହ ସକାଶେ କରିଚନ୍ତି ଡକାୟତି । ଇଂରେଜ୍-ନିଧନ ଯଜ୍ଞର ପ୍ରଥମ ସହୀଦ୍ ଦୁଇ କିଶୋର, ପ୍ରଫୁଲ୍ଲ ଚକୀ ଓ ଖୁଦିରାମ ବସୁଙ୍କୁ ଜେରାକରି ପୁଲିସ୍ ପାଇଚି ଅସ୍ତ୍ରଭଣ୍ଡାରର ହଦିସ୍ । ଅରବିନ୍ଦ ଗିରଫ୍ ହୋଇଚନ୍ତି । ଖାନତଲାସ୍ କରି ପୁଲିସ୍ ପାଇଚି ତାଙ୍କ ଟେବୁଲ୍ ଉପରୁ ଟେଳାଏ ଗଙ୍ଗାମାଟି । ବିବେକାନନ୍ଦ-ଅନୁଜ ଓ ଅରବିନ୍ଦ-ଶିଷ୍ୟ ଭୂପେନ୍ଦ୍ରନାଥ ଦତ୍ତ କହିଚନ୍ତି, ରାମକୃଷ୍ଣ ମିଶନର ବାବାଜି ଦେଇଚନ୍ତି ଯୋଗୀଙ୍କୁ; ମାତ୍ର ସତକଥା ହେଲା, ସେଇ ମାଟିଛୁଆଁଇ ଅରବିନ୍ଦ ଦେଉଥିଲେ ଆତ୍ମଦାନର ଦୀକ୍ଷା (ଶତ୍ରୁଶୋଣିତେ ସିକ୍ତକରିୟା ମାତାକେ ସଶ୍ୟଶାଳିନୀ କରିବ) । ନିଜେ ଭୂପେନ୍ଦ୍ରନାଥ ନେଇଥିଲେ ସେଇ ଦୀକ୍ଷା, ଅରବିନ୍ଦଙ୍କୁ ଅଭିଯୁକ୍ତ କରାଯାଇଚି ରାଜଦ୍ରୋହ ଅପରାଧରେ, ବିଶେଷତଃ ଯେହେତୁ ଅନ୍ୟତମ ବିପ୍ଳବୀ ନରେନ୍ ଗୋସାଇଁ ପାଲଟିଯାଇଚି ରାଜସାକ୍ଷୀ । ଅଧିକ ଖବରାଖବର ଯୋଗାଡ଼କରିବାକୁ ପୁଲିସ୍ ତାକୁ ଛାଡ଼ିଦେଇଚି; ନରେନ୍ ଗୋସାଇଁ ଜେଲ୍ ଭିତରକୁ ପିସ୍ତଲ୍ ଆଣି ଦେଇଚି ଅଟକବନ୍ଦୀଙ୍କୁ, ତାଙ୍କ ପାଖରୁ ଚିଠି ନେଇଯାଇଚି ଜେଲ୍ ବାହାରକୁ । ହେଲେସୁଦ୍ଧା, ବିଶ୍ୱାସଘାତକର କ୍ଷମା ନାହିଁ; ନରେନ୍ ଅବା ବଞ୍ଚନ୍ତା କେମିତି ? ତେବେ, ପ୍ରମାଣ ଅଭାବରେ ଅରବିନ୍ଦ ବିବେଚିତ ହୋଇଚନ୍ତି ନିର୍ଦ୍ଦୋଷ । କିନ୍ତୁ, ଇତିମଧ୍ୟରେ, ରାଜଦ୍ରୋହ ଅପରାଧରେ ଟିଳକ ନିର୍ବାସିତ ହୋଇଚନ୍ତି ବ୍ରହ୍ମଦେଶକୁ ଛ'ବର୍ଷ; ପ୍ରଫୁଲ୍ଲ ଚକୀ ଓ ଖୁଦିରାମଙ୍କୁ ସମର୍ଥନକରି ଲେଖାଲେଖି କରିଥିଲେ ବିସ୍ତର । ଅରବିନ୍ଦ ବନ୍ଦୀ ହେବାରୁ *ବନ୍ଦେମାତରଂ* ଓ *ଯୁଗାନ୍ତର* ଖବରକାଗଜ ବି ଉଠିଯାଇଚି । ଜେଲ୍ ବାହାରକୁ ଆସି ବାହାରକଲେ *କର୍ମଯୋଗିନ୍* । *ବନ୍ଦେ ମାତରଂ* ର ଜୁଲାଇ ୨୬, ୧୯୦୭ ସଂଖ୍ୟାରେ ଭୂପେନ୍ଦ୍ରନାଥଙ୍କ ବେନାମରେ ଅରବିନ୍ଦ ଲେଖିଥିଲେ ଯୋଉ ଦୁଇଟି ସମ୍ପାଦକୀୟ, ଶିରୋନାମ ଥିଲା ଯଥାକ୍ରମେ Away withe fear ଏବଂ Stick-medicine । *ଯୁଗାନ୍ତର* ସାପ୍ତାହିକରେ ବଙ୍ଗାନୁବାଦ ବାହାରିଥିଲା 'ଭୟଭାଙ୍ଗା' ଓ 'ଲାଠୌଷଧି' । ତାକୁ ଭିତ୍ତିକରି ଭୂପେନ୍ଦ୍ରନାଥଙ୍କ ବିଚାରହୁଏ ଅଦାଲତରେ, ଅଭିଯୋଗ ରାଜଦ୍ରୋହ । ଆତ୍ମପକ୍ଷ ସମର୍ଥନକଲେନାହିଁ, ଜମାରୁ ମାନିଲେନାହିଁ ବିଚାରକରିବାକୁ ବିଦେଶୀର ଅଧିକାର । ଗୁରୁନିର୍ଦ୍ଦେଶ ଥିଲା, ସାମ୍ରାଜ୍ୟବାଦକୁ ଅମାନ୍ୟକରି କାରାବରଣ ଯେପରି ଭୟକୁ ଜୟକରିବା ଉପାୟ, ସାମ୍ରାଜ୍ୟବାଦୀ ପ୍ରତିଷ୍ଠାନକୁ ସଶସ୍ତ୍ର ପ୍ରତିରୋଧ ସେଇପରି

'ଲାଠୌଷଧି' (ଲାଠି+ଔଷଧି) । ଭୂପେନ୍ଦ୍ରନାଥ ମଧ୍ୟ ପ୍ରତ୍ୟାଖ୍ୟାନ କରିଚନ୍ତି କଲିକତା କର୍‌ପୋରେସନ୍‌ର ଆଲ୍‌ଡର୍‌ମ୍ୟାନ୍ ନିଯୁକ୍ତି, କାହିଁକିନା, ବିଦେଶୀ ରଜାପ୍ରତି ଆନୁଗତ୍ୟର ଶପଥ ନେବେନାହିଁ ବିପ୍ଳବୀ । ଚିତ୍ତରଂଜନ ଦାସ ଓ ସୁଭାଷ ବସୁ ନେଇଚନ୍ତି ସେ ଶପଥ ବିନା ଆପତ୍ତିରେ; ବ୍ରିଟିଶ୍ ଅଦାଲତର କର୍ତ୍ତୃତ୍ୱକୁ ଅସ୍ୱୀକାର କରିନାହାଁନ୍ତି, ଯେପରି କରିନାହାଁନ୍ତି ସ୍ୱୟଂ ଗାନ୍ଧି । ଅଥଚ ଅବାଧ୍ୟତାର ମୂଲ୍ୟ ଚୁକାଇବାକୁ ଦେହ-ମନ ପ୍ରସ୍ତୁତ ନହେଲେ ଭୟ ଭାଙ୍ଗେନା । ସର୍ତ୍ତାଧୀନ ଭୟମୁକ୍ତି ସେଥିପାଇଁ ଭୀରୁତା; ଅହିଂସା ବା ସତ୍ୟାଗ୍ରହ ଭଳି ଧର୍ମୀୟ ପ୍ରଲେପ ଭୀରୁତା ଭିତରେ ବଳ ସଞ୍ଚାର କରିପାରେନା, ପାରିନାହିଁ । କଂଗ୍ରେସ୍ ଦଳ ଭିତରେ ସୁଭାଷ ବସୁଙ୍କୁ କୁହାଯାଏ ର୍‍ୟାଡିକ୍ୟାଲ୍ । ଭୁଲ୍ ବିଶ୍ଳେଷଣ, କାହିଁକିନା, ତାଙ୍କ ଭାବମୂର୍ତ୍ତିକୁ ଯା ଗଠିତକରିଚି, ତା ପ୍ରଧାନତଃ ଆଜାଦ୍ ହିନ୍ଦ୍ ଫୌଜ; ଆଉକୋଉ ଭିନ୍ନ ମତାଦର୍ଶର ବାହାକ ଭାବରେ ସୁଭାଷଚନ୍ଦ୍ର ଦେଖାଦେଇନାହାଁନ୍ତି କଂଗ୍ରେସ୍ ଭିତରେ । ଅଥଚ ନିଜେ ବ୍ରାହ୍ମ ପରିବାରରେ ଜନ୍ମହୋଇ 'ବ୍ରାହ୍ମସମାଜ'କୁ ଅରବିନ୍ଦ କହିଚନ୍ତି ଭିକ୍ଟୋରୀୟ ବୁର୍ଜୋୟା ପ୍ରତିଷ୍ଠାନର ଭାରତୀୟ ସଂସ୍କରଣ ! ସେଥିପାଇଁ *ବନ୍ଦେମାତରଂ, ଯୁଗାନ୍ତର, କର୍ମଯୋଗୀନ୍* ପ୍ରଭୃତି ଶବ୍ଦାବଳୀକୁ ଘେରି ହିନ୍ଦୁ ପୁନରୁଜ୍ଜୀବନର ଯୋଉ ମତାଦର୍ଶ ଆଜି ଖାଡ଼ାକରାଯାଉଚି, ନେତିବାଚକ ଦିଗ ପୀଡ଼ାଦାୟକ ହେଲେସୁଦ୍ଧା, ତାର ଐତିହାସିକ ମୂଲ୍ୟ ଓ ଭୂମିକା ତାତ୍ପର୍ଯ୍ୟମୟ । ସେ ଭୂମିକାର ବସ୍ତୁନିଷ୍ଠ ମୂଲ୍ୟାୟନ ଭାରତରେ ହୋଇନାହିଁ, ଯେପରି ମାର୍କ୍ସ କରିଚନ୍ତି ଏଇଟିନ୍‌ଥ୍ ବ୍ରୁମେୟା ସନ୍ଦର୍ଭରେ ।

ଜୁନ୍‌ମାସରେ ବାହାରକରିଥିଲେ *କର୍ମଯୋଗିନ୍*; ଅଗଷ୍ଟ୍‌ମାସରେ ଫେର୍ କାଢ଼ିଚନ୍ତି *ଧର୍ମ* । କାହିଁକି ? ତାଙ୍କ ନିଜ ଜବାନୀରେ ଶୁଣାଯାଉ : The task we set before ourselves is not mechanical but moral and spiritual. We aim not at the alternation of a form of government, but at the building up of a nation. Of that task politics is a part, but only a part. We shall devote ourselves not to politics alone, nor to social questions alone, nor to theology or philosophy or literature or science by themselves, but we include all these in one entity which we believe to be all-important, the *dharma,* the national religion which we also believe to be universal... To understand the heart of this *dharma,* to experience it as truth, to feel the high emotions to which it rises and to express and execute it in life is what we understand by *Karmayoga.* We believe that it is to make the

*yoga* the ideal of human life that India rises today, by the *yoga* she will get the strength to realise her freedom, unity and greatness, by the *yoga* she will keep the strength to preserve it । ଅର୍ଥାତ୍, *ଆନନ୍ଦ ମଠ* ର ମହାପୁରୁଷ ରଣକ୍ଳାନ୍ତ ବ୍ରହ୍ମଚାରୀଙ୍କ ସମ୍ମୁଖରେ ଆବିର୍ଭୂତହୋଇ କହିଲେ, 'ସତ୍ୟାନନ୍ଦ, ଆଜି ମାଘୀପୂର୍ଣ୍ଣିମା ।' ମାତ୍ର, ଅରବିନ୍ଦ କହିପାରିଲେନାହିଁ, ଭୂମାନନ୍ଦ ଦରକାର ନାହିଁ; 'ଶତ୍ରୁ ଶୋଣିତେ ସିକ୍ତକରିୟା ମାତାକେ ସଶ୍ୟଶାଲିନୀ କରିବ ।' *କର୍ମଯୋଗିନ୍* ରେ ଲେଖିଲେ, *To my Countrymen* । ମୋର୍‌ଲି-ମିଣ୍ଟୋ ସଂସ୍କାରକୁ ତୁଳାଭିଣା କଲେ ମୁସଲ୍‌ମାନ୍‌ଙ୍କ ସକାଶେ ଯେହେତୁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳି ସୁପାରିଶ୍‌କରି ଦେଶାଭିମାନୀଙ୍କ ମନରେ ପୋତାଯାଇଥିଲା ସାଂପ୍ରଦାୟିକତାର ବୀଜ । ସେତିକିବେଳେ ୧୯୧୦ ଜାନୁଆରୀ ୨୪ ଦିନ ପୁଲିସ୍ ଇନ୍‌ସପେକ୍ଟର୍ ସାମ୍‌ସୁଲ୍ ରହମାନ୍ ଖାସ୍ ହାଇକୋର୍ଟ ଚତ୍ୱରରେ ନିହତହେଲେ ବିପ୍ଳବୀଙ୍କ ଗୁଳିମାଡ଼ରେ । ସାମ୍‌ସୁଲ୍ ଭାରି ନିଷ୍ଠାଦେଖାଇ ଆଲିପୁର୍ ଷଡ଼ଯନ୍ତ୍ର (ମାଣିକତଲା ବୋମାକେସ୍) ତଦନ୍ତକରୁଥିଲେ ସାହେବଙ୍କ ପରିତୋଷ ପାଇଁ । ଆତତାୟୀ ଧରାପଡ଼ିଚି, କିନ୍ତୁ ଇଂରେଜ୍ ଜାଣିପାରିନାହିଁ ତା ପରିଚୟ । ଖବରପାଇ ଅରବିନ୍ଦ ପଚାରିଚନ୍ତି ସମବେତ ଶିଷ୍ୟବର୍ଗଙ୍କୁ, 'କୁହ ତ ଦେଖି, ପିରେନ୍‌ତିର ନାଚ୍‌ତତ୍‌ତ କୋପ୍‌ନତା ମାନେ କଣ ?' ବିପ୍ଳବୀଙ୍କୁ ନିର୍ବାକ୍ ଦେଖି, ନିଜେ ଜବାବ୍‌ଦେଇଚନ୍ତି, 'ତାମିଲ୍ ଭାଷାରେ, ବୀରେନ୍ଦ୍ରନାଥ ଦତ୍ତଗୁପ୍ତ' । ସେଇ ସଂଧ୍ୟାରେ ବାହାରିଯାଇଚନ୍ତି ଚନ୍ଦନନଗର, ସେଠୁ ଯାଇ ପଣ୍ଡିଚେରିରେ ପହଞ୍ଚିଚନ୍ତି ଏପ୍ରିଲ୍ ୪ ତାରିଖରେ । ସାମସୁଲ୍ ମରିବା ପରଦିନ, ଜାନୁଆରୀ ୨୫ ତାରିଖ, ବଡ଼ଲାଟ ମିଣ୍ଟୋ କହିଚନ୍ତି, 'ଯୋଉ ସ୍ପିରିଟ୍ ଏକ୍ଷଣି ଦେଖିବାକୁ ମିଳୁଚି ଭାରତସାରା, ଆଇନ୍‌କୁ ବୃଦ୍ଧାଙ୍ଗୁଷ୍ଠ ପ୍ରଦର୍ଶନ, ଶାସନକଳକୁ ପୋଡ଼ି ପାଉଁଶକରିଦେବା ଉଦ୍ୟମ, ଇତିପୂର୍ବରୁ ଦେଖାଯାଇନାହିଁ କଦାପି । ଖାଲି ବ୍ରିଟିଶ୍‌ଶାସନ ତ ଏମାନଙ୍କର ଲକ୍ଷ୍ୟ ନୁହେଁ, ନେଟିଭ୍ ପ୍ରିନ୍ସଙ୍କ ହାତରୁ ମଧ୍ୟ କ୍ଷମତା କାଢ଼ିନେବାକୁ ଚେଷ୍ଟାକରୁଚନ୍ତି, ଅଥଚ ପ୍ରିନ୍ସମାନଙ୍କ ରାଜଭକ୍ତି ପାଖରେ ମୁଁ ଯଥେଷ୍ଟ ଋଣୀ ।'

ଅରବିନ୍ଦଙ୍କ ମହାନିଷ୍କ୍ରମଣ ତେଣୁ ଆକସ୍ମିକ ନୁହେଁ; ମାତ୍ର ତାଙ୍କ ଭାରତଚିନ୍ତାର ପ୍ରତୀତି ଅଙ୍ଗୁଳିମୟ, ଯେମିତି ବିବେକାନନ୍ଦଙ୍କର । ଉଦାହରଣ ସ୍ୱରୂପ, ୧୯୦୭ ଅଗଷ୍ଟ ୩୦ ତାରିଖ ଦିନ ପତ୍ନୀ ମୃଣାଳିନୀଙ୍କୁ ଲେଖିଚନ୍ତି

ଏଖନ୍ ସେଇ କଥାଟି ବଲି । ତୁମି ବୋଧହୟ୍ ଏର୍‌ମଧ୍ୟେ ଟେର୍‌ପେୟେଛ, ଯାହାର୍ ଭାଗ୍ୟେର୍ ସଙ୍ଗେ ତୋମାର୍ ଭାଗ୍ୟ ଜଡ଼ିତ, ସେ ବଡ଼ ବିଚିତ୍ର ଧରଣେର୍ ଲୋକ୍ । ... ସାମାନ୍ୟ ଲୋକ୍, ଅସାଧାରଣ ମତ୍, ଅସାଧାରଣ

ଚେଷ୍ଟା, ଅସାଧାରଣ ଉଚ୍ଚ ଆଶାକେ ଯାହା ବଲେ ତାହା ତୁମି ବୋଧହୟ୍ ଜାନ । ଏଇ ସକଲ୍ ଭାବ୍‌କେ ପାଗ୍‌ଲାମି ବଲେ... ପାଗଲ୍ ତାହାର୍ ସ୍ତ୍ରୀକେ ସୁଖ୍ ଦିବେନା, ଦୁଃଖଇ ଦେୟ । ... ତାହାର୍ ଜୀବନେର୍ ଅର୍ଦ୍ଧାଂଶଟା ବୃଥା ଗେଲ୍, ପଶୁଓ ନିଜେର୍ ଓ ନିଜେର୍ ପରିବାରେର୍ ଉଦର୍ ପୁରିୟା କୃତାର୍ଥ ହୟ୍ ।

... ଏଇ ଦୁର୍ଦ୍ଦିନେ ସମସ୍ତ ଦେଶ୍ ଆମାର୍ ଦ୍ୱାରେ ଆଶ୍ରିତ, ଆମାର୍ ତ୍ରିଶ୍‌କୋଟୀ ଭାଇବୋନ୍ ଏଇ ଦେଶେ ଆଛେ, ତାହାଦେର୍ ମଧ୍ୟେ ଅନେକେ ଅନାହାରେ ମରିତେଛେ, ଅଧିକାଂଶ କଷ୍ଟେ ଓ ଦୁଃଖେ ଜର୍ଜ୍ଜରିତ୍ ହଇୟା କୋନମତେ ବାଁଚିୟା ଥାକେ, ତାହାଦେର୍ ହିତ କରିତେ ହୟ୍ । କି ବଲ, ଏଇ ବିଷୟେ ଆମାର୍ ସହଧର୍ମିଣୀ ହଇବେ ? କେବଲ୍ ସାମାନ୍ୟ ଲୋକେର୍ ମତ ଖାଇୟା ପରିୟା ଯାହା ସତ୍ୟି ଦରକାର୍ ତାହାଇ କିଣିୟା ଆର୍‌ସବ୍ ଭଗବାନ୍‌କେ ଦିବ, ଏଇ ଆମାର୍ ଇଚ୍ଛା, ତୁମି ମତ୍ ଦିଲେଇ, ତ୍ୟାଗ୍ ସ୍ୱୀକାର୍ କରିତେ ପାରିଲେଇ ଆମାର୍ ଅଭିସନ୍ଧି ପୂର୍ଣ୍ଣ ହଇତେ ପାରେ ।...

ଦ୍ୱିତୀୟ ପାଗ୍‌ଲାମି ସମ୍ପ୍ରତି ଘାଡ଼େ ଚେପେଛେ, ପାଗ୍‌ଲାମିଟା ଏଇ, ଯେକୋନମତେ ଭଗବାନେର୍ ସାକ୍ଷାତ୍-ଦର୍ଶନ୍ ଲାଭକରିତେ ହଇବେ, ...ଈଶ୍ୱର୍ ଯଦି ଥାକେନ୍, ତାହା ହଇଲେ ତାଁହାର୍ ଅସ୍ତିତ୍ୱ ଅନୁଭବ୍ କରିବାର୍ ତାଁହାର୍ ସଙ୍ଗେ ସାକ୍ଷାତ୍ କରିବାର୍ କୋନ-ନା-କୋନ୍ ପଥ୍ ଥାକିବେ, ସେ ପଥ୍ ଯତଇ ଦୁର୍ଗମ୍ ହୋକ୍ ଆମି ସେ ପଥେ ଯାଇବାର ଦୃଢ଼ ସଂକଳ୍ପ କରିୟା ବସିୟାଛି ।...

ତୃତୀୟ ପାଗ୍‌ଲାମି ଏଇ ଯେ, ଅନ୍ୟ ଲୋକେ ସ୍ୱଦେଶ୍‌କେ ଏକ୍‌ଟା ଜଡ଼ ପଦାର୍ଥ, କତଗୁଲୋ ମାଠ କ୍ଷେତ୍ର ବନ୍ ପର୍ବତ୍ ନଦୀ ବଲିୟା ଜାନେ, ଆମି ସ୍ୱଦେଶ୍‌କେ ମା ବଲିୟା ଜାନି, ଭକ୍ତି କରି, ପୂଜା କରି । ମା'ର ବୁକେର୍ ଉପରେ ବସିୟା ଯଦି ଏକ୍‌ଟା ରାକ୍ଷସ୍ ରକ୍ତପାନେ ଉଦ୍ୟତ୍ ହୟ୍, ତାହା ହଇଲେ ଛେଲେ କି କରେ ? ନିଶ୍ଚିନ୍ତଭାବେ ଆହାର୍‌କରିତେ ବସେ, ସ୍ତ୍ରୀ ପୁତ୍ରେର ସଙ୍ଗେ ଆମୋଦ୍ କରିତେ ବସେ, ନା ମା'କେ ଉଦ୍ଧାରକରିତେ ଦୌଡ଼ାଇୟା ଯାୟ୍ ? ... କାର୍ଯ୍ୟସିଦ୍ଧି ଆମି ଥାକିତେଇ ହଇବେ ତାହା ଆମି ବଲିତେଛି ନା, କିନ୍ତୁ ହଇବେ ନିଶ୍ଚୟଇ ।

ଏ ଅଭିସନ୍ଧି ସାଙ୍ଗରେ ମିଳାଇ ପଢ଼ିବା ଦରକାର ୧୯୨୦ ଏପ୍ରିଲ୍ ୭ ତାରିଖରେ, ଦ୍ୱୀପାନ୍ତର ଦଣ୍ଡରୁ ସଦ୍ୟମୁକ୍ତ ଅନୁଜ, ବାରୀନ୍ଦ୍ରକୁମାରଙ୍କୁ ଯା ଲେଖିଚନ୍ତି ପଣ୍ଡିଚେରୀରୁ ଏବଂ ଲେଖିଚନ୍ତି ସବିସ୍ତାର, ରାଓଲଟ୍ ଆକ୍ଟ୍(୧୯୧୯) ଜାରିହେବା ମାତ୍ରକେ, ତଦବଧି ବ୍ରିଟିଶ୍-ଭକ୍ତ ଗାନ୍ଧି ଆଘାତପାଇଚନ୍ତି ପ୍ରଚଣ୍ଡ, ଏବଂ ସେଇଦିନଠୁ, ଇଂରେଜ୍-ରାଜତ୍ୱକୁ 'ସ୍ୟାଟାନିକ୍ ଗଭର୍ଣ୍ଣମେଣ୍ଟ' ବୋଲି ଗାଳିଦେଇଚନ୍ତି । ଅର୍ଥାତ୍,

୧୯୧୦ରେ ଅରବିନ୍ଦ ବାବାଜିହୋଇ ପଣ୍ଡିଚେରି ପଳାଇଯିବା ଉତାରୁ ୧୯୧୯ ପର୍ଯ୍ୟନ୍ତ ଦେଶର ରାଜନୀତିକ ରଙ୍ଗମଞ୍ଚ ପ୍ରାୟ ଶୂନ୍ୟ ହୋଇଯାଇଚି । ୧୯୦୭ରେ ଅରବିନ୍ଦ ପ୍ରଥମେ 'ପୂର୍ଣ୍ଣ ସ୍ୱାଧୀନତା' ଦାବିକରିଚନ୍ତି, ପୁଣି ସେଇ ବର୍ଷ ସେପ୍ଟେମ୍ବର୍‌ରେ ଦାବିକରିଚନ୍ତି ଗଣତନ୍ତ୍ର ଓ ସମାଜବାଦ । *ବନ୍ଦେ ମାତରଂ* ର ଏପ୍ରିଲ୍ ୨୬, ୧୯୦୭ ସଂଖ୍ୟାରେ ଲେଖିଚନ୍ତି, There are at present not two parties in India, but three, the loyalists, the moderates and the Nationatists ।The Loyalists would be satisfied with good government by British rulers and a limited share in administration; the Moderates desire self-government within the British Empire, but are willing to wait for it indefinitely; the Nationalists would be satisfied with nothing less than independence... । ଅଗଷ୍ଟ ୧୯-୨୦, ୧୯୦୭ ସଂଖ୍ୟାରେ ଫେର୍, This is what swaraj unmistakably means. It at once embodies the ideals of independence, unity, liberty । ବାରିନ୍ ଘୋଷଙ୍କୁ ଲେଖିଥିବା ଚିଠି ତେଣୁ ଏଇ ସମସ୍ୟାପଟରେ ହିଁ ବିବେଚ୍ୟ । ବିଶେଷତଃ ଗାନ୍ଧିପନ୍ଥୀ ଯେହେତୁ ପ୍ରଚାରକରୁଚନ୍ତି ଯେ ରଙ୍ଗମଞ୍ଚରେ ମୋହନଦାସ ଅବତୀର୍ଣ୍ଣ ହେବାକ୍ଷଣି ନରମ-ଗରମ, ଉଭୟ କୁଆଡ଼େ ଫାଟିଗଲେ ପାଣିଫୋଟକା ଭଳି ! ରଜାଜମିଦାରଙ୍କୁ ଉଚ୍ଛେଦକରିବାକୁ ଆଗ୍ରହୀ ହୋଇଚନ୍ତି ଅରବିନ୍ଦ, କିନ୍ତୁ ସେମାନେ ତ ବହିରାଗତ ଇଂରେଜ୍ ନୁହେଁ କି ଦେଶର ଅସଲ ଶାସକ ନୁହେଁ । ଆଗ୍ରହ ତେବେ କାହିଁକି ? ୧୯୦୭ର ନଭେମ୍ବର୍ ଆଠତାରିଖ ଦିନ ଛୋଟଲାଟ୍ ଫ୍ରେଜର୍‌କୁ ଜଣେ ଛାତ୍ର ଗୁଳିକରିବାକୁ ପିସ୍ତଲ ଉଞ୍ଚାଇଚି ଯେତେବେଳେ, ଘାତକ ଆଡ଼କୁ ପିଠିକରି ମହାରାଜା ବିଜୟଚନ୍ଦ୍ ମହତାବ୍ କୁଣ୍ଢାଇଧରିଚନ୍ତି ଫ୍ରେଜର୍‌କୁ । ତହିଁଉତାରୁ, ମହାରାଜା ପ୍ରଦ୍ୟୋତ୍‌କୁମାର ଠାକୁର୍‌ଙ୍କ ସାଙ୍ଗରେ ମେଣ୍ଟବାନ୍ଧି ଲର୍ଡ଼ ଲାନ୍ସଡାଉନ୍‌ଙ୍କ ସାଙ୍ଗରେ ମସୁଧାକରିଚନ୍ତି, ଅରାଜକତା ସୃଷ୍ଟିକରୁଥିବା ଯୁବକଙ୍କୁ କେମିତି ନିପାତକରିବେ ସବଂଶ । ବୁର୍ଜୋୟା ଓ ଅଭିଜାତ ଯେ ମାତୃଭୂମିର ମୁକ୍ତିପଥରେ ପ୍ରଧାନ ଅନ୍ତରାୟ, ଅରବିନ୍ଦ ପ୍ରଥମେ ଉପଲବ୍ଧିକରିଚନ୍ତି ଶ୍ରେଣୀସ୍ୱାର୍ଥର ସେଇ ଅଭିଘାତ । ଯାହାଙ୍କୁ ଲୟାଲିସ୍ଟ କି ମଡରେଟ୍ ଆଖ୍ୟାଦେଇଚନ୍ତି, ଛାତ୍ର ଓ ଯୁବକଙ୍କୁ ସେମାନେ ଦୂରରେ ରଖିଚନ୍ତି ସବୁବେଳେ, କାହିଁକିନା, ଅପୋଗଣ୍ଡ ଅଜାତଶ୍ମଶ୍ରୁ ଫେର୍ ସମାନହୋଇ ଲଢ଼ିବେ ବ୍ରିଟିଶ୍‌ସିଂହ ସାଙ୍ଗରେ ! ବିଦ୍ୟା ଅଛି ନା ବୁଦ୍ଧି ଅଛି, ଧନ ଅଛି ନା ବଂଶଗୌରବ ? ଅରବିନ୍ଦ ହିଁ ପ୍ରଥମେ ଟୋକାଟାକରାଙ୍କୁ ନେଇ ଦଳ ଗଢ଼ିଚନ୍ତି, ଏବଂ ସେଇ ଧାରାର ଅନୁସରଣରେ, ଗାନ୍ଧି ଡାକଦେଇଚନ୍ତି ଛାତ୍ରସମାଜକୁ । ଆତ୍ମପ୍ରତ୍ୟାହୃତ ଅରବିନ୍ଦ ବିପ୍ଳବୀ ଅନୁଜକୁ ଲେଖିଚନ୍ତି:

ଆମି ଆର୍ କାରୁର୍ ଡାକ୍ ଶୁନବ୍ ନା; ଭଗବାନ୍ ଯଖନ୍ ଚଲାବେନ୍ ତଖନ୍ ଚଲ୍‌ବ । ବାଙ୍ଗ୍‌ଲା ଯେ ଠିକ୍ ପ୍ରସ୍ତୁତ୍ ନୟ, ଆମି ଜାନି । ... ଭେଦ୍‌ପ୍ରତିଷ୍ଠ ସମାଜ୍ ଚଇନା, ଆତ୍ମପ୍ରତିଷ୍ଠ- ଆତ୍ମାର୍ ଐକ୍ୟେର୍ ମୁକ୍ତି - ସଂଘ ଚଇ । ... ରାଜ୍‌ନୀତିକେ ଛେଡ଼େଛି କେନ ? ଆମାଦେର୍ ରାଜନୀତି ଭାରତେର୍ ଆସଲ୍ ଜିନିଷ୍ ନୟ୍ ବଲେ, ବିଲାତୀ ଆମ୍‌ଦାନୀ, ବିଲାତୀ ଢଙ୍ଗେର୍ ଅନୁକରଣ୍ ମାତ୍ର । ତବେ ତାରଓ ଦରକାର୍ ଛିଲ । ଆମ୍‌ରାଓ ବିଲାତୀ ଧରଣେର୍ ରାଜ୍‌ନୀତି କରେଛି; ନା କର୍‌ଲେ ଦେଶ୍ ଉଠ୍‌ତନା; ଆମାଦେର୍ ଅଭିଜ୍ଞତାଲାଭ୍ ଓ ପୂର୍ଣ୍ଣବିକାଶ୍ ହତୋନା । ଏଖନ୍‌ଓ ତାର୍ ଦରକାର୍ ଆଛେ, ବଙ୍ଗଦେଶେ ତତ ନାଇ, ଯେମନ୍ ଭାରତେର୍ ଅନ୍ୟ ପ୍ରଦେଶେ ।...

ଲୋକେ ଏଖନ୍ ରାଜ୍‌ନୀତିକେ spiritualise କର୍‌ତେ ଚାୟ୍... ତାର୍ ଫଲ୍ ହବେ, ଯଦି କୋନ ସ୍ଥାୟୀ ଫଲ୍ ହୟ୍, ଏକ ରକମ Indianised Bolshevism । ସେ ରକମ୍ କର୍ମେଓ ଆମାର୍ ଆପତ୍ତି ନାଇ; ଯାଁର ସେ ପ୍ରେରଣା, ତିନି ତାଇ କରୁନ୍ । ତବେ ଏଟା ଆସଲ୍ ବସ୍ତୁ ନୟ୍, ... ଆମ୍‌ରା କିନ୍ତୁ ଭାରତ୍-ମନ୍ଦିରେ ଚଇ ହନୁମାନ୍ ନୟ୍- ଦେବତା, ଅବତାର୍, ସ୍ୱୟଂ ରାମ୍ ।...

...ସର୍ବତ୍ର ଦେଖି inability ବା unwillingness to think ବା ଚିନ୍ତାଫୋବିୟା, ମଧ୍ୟଯୁଗେ ଯାଇ ହୋକ୍, ଏଖନ୍ କିନ୍ତୁ ଏଇ ଭାବଟି ଘୋର୍ ଅବନତିର୍ ଲକ୍ଷଣ । ... ୟୁରୋପ୍ ଦେଖ, ଦେଖିବେ ଦୁଟି ଜିନିଷ୍- ଅନନ୍ତ ବିଶାଲ୍ ଚିନ୍ତାର୍ ସମୁଦ୍ର, ଆର୍ ପ୍ରକାଣ୍ଡ ବେଗବତୀ ଅଥଚ୍ ସୁଶୃଙ୍ଖଲ୍ ଶକ୍ତିର୍ ଖେଲା । ... ଲୋକେ ବଲେ ୟୁରୋପ୍ ଧ୍ୱଂସେର୍ ମୁଖେ ଧାବିତ । ଆମି ତା ମନେକରିନା । ଏଇ ଯେ ବିପ୍ଲବ୍, ଏଇ ଯେ ଓଲଟ୍‌ପାଲଟ୍- ଏସବ୍ ନବସୃଷ୍ଟିର୍ ପୂର୍ବାବସ୍ଥା । ...ସାମାନ୍ୟ କୁଲିମଜୁର୍‌ଓ ଚିନ୍ତାକରେ, ସବ୍ ଜାନ୍‌ତେ ଚାୟ୍, ମୋଟାମୁଟି ଜେନେଓ ସନ୍ତୁଷ୍ଟ ନୟ୍, ତଳିୟେ ଦେଖ୍‌ତେ ଚାୟ୍ । ... ଆମ୍‌ରା କିନ୍ତୁ ଶକ୍ତିର୍ ଉପାସକ୍ ନଇ, ସହଜେର୍ ଉପାସକ୍, ସହଜେ ଶକ୍ତି ପାଓୟା ଯାୟ୍‌ନା । ...ଏଇ ଅବସ୍ଥା ଯତଦିନ୍ ଥାକିବେ, ତତଦିନ୍ ଭାରତେର୍ ସ୍ଥାୟୀ ପୁନରୁତ୍ଥାନ୍ ଅସମ୍ଭବ୍ ।...

... ଦେଶେ ଏଖନି ଯାଚ୍ଛିନା, ଦେଶ୍ ତୟାରି ହୟ୍‌ନି ବଲେ ନୟ୍, ଆମି ତୟାରି ହଇନି ବଲେ । ଅପକ୍ୱ ଅପକ୍ୱେର୍ ମଧେ ଗିୟା କି କାଜ୍ କର୍‌ତେ ପାରେ ?

ବିବେକାନନ୍ଦଙ୍କ ଚିନ୍ତାଧାରାରୁ ବ୍ୟତିକ୍ରମ ନୁହେଁ; ସ୍ୱାମୀଜି ବି ଢେର୍ ଉଦ୍‌ଭଟ କଥା କହିଚନ୍ତି: ଭାରତର ଧର୍ମ (+) ଇଂରେଜ୍‌ର ସମାଜ; ହିନ୍ଦୁ ମୁଣ୍ଡ (+) ମୁସଲ୍‌ମାନ୍ ଗଣ୍ଡି ! ଏକମାତ୍ର ପାର୍ଥକ୍ୟ, ଅରବିନ୍ଦ ସ୍ୱୀକାରକରିଚନ୍ତି, ନିଜେ ସିଏ ପ୍ରସ୍ତୁତ ନୁହେଁ, ଭଗବାନ୍ ଯୁଆଡ଼କୁ ଟାଣିନେଇଯିବେ, ସିଆଡ଼କୁଯିବେ, କର୍ମ କି କର୍ମଫଳ ଏକ୍ଷଣି

ତାଙ୍କ ଆୟତ୍ତରେ ନାହିଁ । ତା ଛଡ଼ା, ସିଏ ତ ବସ୍ତୁତଃ ଏକ୍ଷଣି ବିଦେଶରେ ! ଭାରତର କୁଲିମୂଲିଆ ଯେତେବେଳେ ଇଉରୋପର ଲୋକଙ୍କ ଭଳି କର୍ମଠ ଓ ଚିନ୍ତାଶୀଳହେବେ, ହନୁମାନଙ୍କ ଭିତରେ ଅବତାରହୋଇ ହୁଏତ ହେବେ ଅବତୀର୍ଣ୍ଣ । କିନ୍ତୁ ସମାଜରେ ଖାଲି ହିନ୍ଦୁ ନାହାଁନ୍ତି; ବିଭିନ୍ନ ଧର୍ମାବଲମ୍ବୀଙ୍କ ମାତୃଭୂମି ଭାରତ, ନିର୍ଦ୍ଦିଷ୍ଟ କୋଉ ଧର୍ମମତକୁ ଅଗ୍ରାଧିକାର ଦେଲେ, ଉପସ୍ଥିତ ହେବ ଧର୍ମସଂକଟ; ଏବଂ ସେତେବେଳେ, ବିବେକାନନ୍ଦ ହୁଅନ୍ତୁ କି ଗାନ୍ଧି, କହିବେ ହିନ୍ଦୁଧର୍ମ ପ୍ରକୃତରେ ସନାତନ, ତେଣୁ ସର୍ବଜନୀନ । ମାତ୍ର ବାସ୍ତବ ଜୀବନଯାପନ ସହିତ ଏ ଧାର୍ମିକତାର କ୍ରମାଗତ ଦ୍ୱନ୍ଦ୍ୱକୁ ଲକ୍ଷ୍ୟକଲେ ବୁଝାପଡ଼ିବ, ଖଜୁରିଗଛ ମୂଳରୁ ପାହାଚ ପାହାଚ ଭଳି, ସାଂପ୍ରଦାୟିକତା କେମିତି ଭାରତବର୍ଷର ରାଜନୀତିରେ ଗଢ଼ିଉଠିଚି ଊନବିଂଶ ଓ ବିଂଶ ଶତକ ତମାମ୍ । ଅଥଚ ସାମ୍ପ୍ରଦାୟିକତା ଭାବାଦର୍ଶର ପ୍ରବକ୍ତା ବିବାକ ବୁର୍ଜୋୟା; ଆଉ, ଅରବିନ୍ଦ ଯାହାଙ୍କୁ 'କୁଲିମଜୁର୍' କହିଚନ୍ତି, ତାଙ୍କ ସହିତ କୋଉହେଲେ ଅର୍ଗାନିକ୍ ସମ୍ବନ୍ଧରେ ଯୁକ୍ତନୁହେଁ । ଅଥଚ ବୁର୍ଜୋୟା କାମନାକରେ କୁଲିମୂଲିଆଙ୍କ ଆତ୍ମୋତ୍ସର୍ଗ ବିଜାତୀୟ ଆଧିପତ୍ୟ ବିରୋଧରେ ! ଇଂରେଜ୍ ଆଣିଚି ପୁଞ୍ଜିବାଦ, ଭାରତର ସ୍ଥିତ ସାମନ୍ତତନ୍ତ୍ରକୁ କାବୁକରିବାକୁ, ଯା ସତତ ଉଦ୍ୟମଶୀଳ; ଯେପରି, ଚିରସ୍ଥାୟୀ ବନ୍ଦୋବସ୍ତ, ଟିପୁ ସୁଲ୍‌ତାନ୍‌ଙ୍କ ସହିତ ଯୁଦ୍ଧ ଅଥବା ଅଯୋଧ୍ୟା ନବାବ୍‌ଙ୍କ ଗାଦିଚ୍ୟୁତି, ଏବଂ ସେ ପ୍ରକ୍ରିୟାରେ, ଦେଶର ସାଧାରଣ ଶ୍ରମଜୀବୀ ହୋଇଚି ନିତ୍ୟନିଷ୍ପେଷିତ । ତାକୁ ସଂଗ୍ରାମୀ ଶକ୍ତିରେ ପରିଣତକରିବା ବେଦାନ୍ତର କାମ ନୁହେଁ କି ଯୋଗ ବା ଅହିଂସାର । ବଙ୍କିମ୍‌ଙ୍କ ପାଖରୁ ଗାନ୍ଧି ପର୍ଯ୍ୟନ୍ତ କ୍ରାନ୍ତଦର୍ଶୀ କଣପାଇଁ ତେବେ ହୋଇଯାଇଚନ୍ତି ଅନ୍ଧାରକଣା ? ଏକମାତ୍ର କାରଣ, ଆପଣା ଶ୍ରେଣୀଗତ ସୀମାବଦ୍ଧତାକୁ ଅତିକ୍ରମକରିବା ଏମାନଙ୍କ ପକ୍ଷରେ ସମ୍ଭବପର ହୋଇନାହିଁ । ଯେପରି ହୋଇନାହିଁ ଫରାସୀ ବିପ୍ଳବୀଙ୍କ ପକ୍ଷରେ ଲୁଇ ବୋନାପାର୍ଟେଙ୍କ ଅମଳରେ । ସାମାଜିକ ସୀମାବଦ୍ଧତାକୁ ଅତିକ୍ରମକରିବା ଅକ୍ଷମତା ନେତୃତ୍ୱକୁ ବାଧକରେ କେବଳ ତାଙ୍କରି ପ୍ରତିନିଧିତ୍ୱ କରିବାକୁ ଯିଏ ନିଜ ସମଶ୍ରେଣୀ । ଏକମାତ୍ର ସମଶ୍ରେଣୀର ପ୍ରତିନିଧିତ୍ୱକରେ ବୋଲି ମାର୍କ୍ସ ଲେଖନ୍ତି, What makes them (the democratic elements) representatives of the petty-bourgeoisie is the fact that in their minds they do not get beyond the limits which the latter do not get beyond in life, that they are consequently driven theoretically to the same problems and solutions to which material interest and social position drive the latter practically ।

ବାରିନ୍ ଘୋଷଙ୍କ ସହିତ ମତାନ୍ତର ସତ୍ତ୍ୱେ, ସଶସ୍ତ୍ର ସଂଗ୍ରାମ କିନ୍ତୁ ଚଳାଇଯାଇଚନ୍ତି

ଅରବିନ୍ଦ-ଶିଷ୍ୟ ଯତୀନ୍ ମୁଖାର୍ଜୀ (ବାଘା ଯତୀନ୍) 'ହନୁମାନ'ଙ୍କୁ ହିଁ ସମ୍ବଳକରି, ଗୁରୁ ଯେହେତୁ କହିଚନ୍ତି, 'ଯାଁର ସେ ପ୍ରେରଣା, ତିନି ତାଇ କରୁନ୍ ।' ୧୯୦୮ ମେ' ୨ ତାରିଖ ଦିନ ଅରବିନ୍ଦ ଗିରଫ୍‌ହୋଇଚନ୍ତି ପୁନର୍ବାର । ବୋମା ତିଆରିହେଉଥିଲା ମାଣିକତଲାର ଯୋଉ ବଗିଚ୍ଚରେ, ଘେରାଉକରି ପୁଲିସ୍ ଧରିନେଇଚି ପରିଚ୍ଚଳକ ବାରିନ୍ ଘୋଷ ଓ ପ୍ରଯୁକ୍ତିବିଦ୍ ଉଲ୍ଲାସକର ଦତ୍ତ ପ୍ରଭୃତି ତେତିଶଜଣ ବିପ୍ଲବୀଙ୍କୁ ଏବଂ ଜବତ୍‌ହୋଇଚି ବୋମାତିଆରି ସରଞ୍ଜାମ ଓ ଫର୍ମୁଲା । ଏକା ଫର୍ମୁଲା ଜବତ୍‌ହୋଇଚି ନାସିକ୍‌ରେ ଗଣେଶ ସାଭାର୍‌କର୍‌ଙ୍କ ଆଖଡ଼ାରୁ । ବିଧ୍ୱସ୍ତ ବାରୀନ୍ ଘୋଷ ଭାବିଚନ୍ତି, ବିପ୍ଲବ ଯେହେତୁ ଶେଷହୋଇଗଲା, ଫାଶିକାଠରେ ଝୁଲିବା ଆଗରୁ ଦେଶବାସୀଙ୍କୁ ନିଜ ବୀରତ୍ୱର ବୃତ୍ତାନ୍ତ ଜଣାଇଦେଇ ଯିବେ; ପୁଲିସ୍‌କୁ ଯୋଉ ବିବୃତି ଦିଅନ୍ତି, ତାହାରି ବଳରେ ବହୁତ କର୍ମୀଙ୍କ ନାଁ-ଠିକଣା ସରକାରଙ୍କ ହସ୍ତଗତ ହୋଇଯାଏ । ଅରବିନ୍ଦ ସ୍ତବ୍ଧହୋଇଯାଆନ୍ତି ଖବର ଶୁଣି; ମାତ୍ର ଯତୀନ୍ ମୁଖର୍ଜୀ ଯେହେତୁ ସରକାରୀ ଚ୍ଚକିରୀରେ ବହାଲ୍‌ଥିଲେ, ବାରୀନ୍ ତାଙ୍କୁ ବିପ୍ଲବୀ ବୋଲି ଲେଖାକରିନାହାଁନ୍ତି କେତେବେଳେ । ନା-ଠିକଣା ଦେଇନାହାଁନ୍ତି ବିବୃତିରେ । ବାକିତକ ଯାବଜ୍ଜୀବନ ଦ୍ୱୀପାନ୍ତର କିମ୍ବା ୫-୭ ବର୍ଷ ସଶ୍ରମ କାରାଦଣ୍ଡ ପାଇଚନ୍ତି । ନିଜେ ଅରବିନ୍ଦ କେବେହେଲେ ବିବୃତି ଦେଇନାହାଁନ୍ତି । ୧୯୦୯ରେ କାରାମୁକ୍ତ ଅରବିନ୍ଦ ବାହାରକୁ ଆସି ଦେଖିଲେ, ସଭାସମିତି ନିଷିଦ୍ଧ ହୋଇଯାଇଚି; ଜେଲ୍‌ରୁ ବାହାରି କେହି ଯେମିତି ରାଜଦ୍ରୋହକୁ ଫେରି ନଯିବେ, ସେଥିପାଇଁ ମଧ୍ୟ ନିଷେଧ ଜାରିକରାଯାଇଚି । ଏ ପରିସ୍ଥିତିରେ ବିପ୍ଲବୀ, ଘାଟି ଉଠାଇନେଇଚନ୍ତି ମୟୂରଭଞ୍ଜର କପ୍ତିପଦା ଜଙ୍ଗଲକୁ, ଆଉ ବିଦାୟ-ସମ୍ଭାଷଣ ଜଣାଇ ରବୀନ୍ଦ୍ରନାଥ ଲେଖିଚନ୍ତି, *ଅରବିନ୍ଦ, ରବୀନ୍ଦ୍ରେର୍ ଲହୋ ନମସ୍କାର୍ ।*

* * * * * * * * * * *

ତାର୍‌ପରେ ତାରେ ନମି ଯିନି କ୍ରିଡ଼ାଚ୍ଛଲେ
ଗଡ଼େନ୍ ନୂତନ ସୃଷ୍ଟି ପ୍ରଳୟ-ଅନଲେ,
ମୃତ୍ୟୁ ହତେ ଦେନ୍ ପ୍ରାଣ୍, ବିପଦେର୍ ବୁକେ,
ସମ୍ପଦେରେ କରେନ୍ ଲାଲ୍‌ନ, ହାସିମୁଖେ
ଭକ୍ତେରେ ପାଠାୟ୍ ଦେନ୍ କଣ୍ଟକକାନ୍ତାରେ
ରିକ୍ତହସ୍ତେ ଶତ୍ରୁମାଝେ ରାତ୍ରି ଅନ୍ଧକାରେ;
ଯିନି ନାନା କଣ୍ଠେ କନ୍, ନାନା ଇତିହାସେ
ସକଲ୍ ମହତ୍ କର୍ମ ପରମ୍ ପ୍ରୟାସେ,
ସକଲ୍ ଚରମ୍ ଲାଭେ, 'ଦୁଃଖ କିଛୁ ନୟ୍

 କ୍ଷତ ମିଥ୍ୟା, କ୍ଷତି ମିଥ୍ୟା, ମିଥ୍ୟା ସର୍ବ ଭୟ୍
* * * * * * * * * *

ଓରେ ଭୀରୁ, ଓରେ ମୂଢ଼, ତୋଲୋ ତୋଲୋ ଶିର୍,
ଆମି ଆଛି, ତୁମ ଆଛ, ସତ୍ୟ ଆଛେ ସ୍ଥିର୍ ।'
* * * * * * * * * * * * *

ହେ ବନ୍ଧୁ, ହେ ଦେଶବନ୍ଧୁ, ସ୍ୱଦେଶ୍ ଆତ୍ମାର୍
ବାଣୀମୂର୍ତ୍ତି ତୁମି । ତୋମା ଲାଗି ନହେ ମାନ୍,
ନହେ ଧନ୍, ନହେ ସୁଖ୍; କୋନ କ୍ଷୁଦ୍ର ଦାନ
ଚାହନାଇ କୋନ କ୍ଷୁଦ୍ର କୃପା; ଭିକ୍ଷା ଲାଗି
ବାଡ଼ାଓନି ଆତୁର୍ ଅଞ୍ଜଲି । ଆଛ ଜାଗି
ପରିପୂର୍ଣ୍ଣତାର ତରେ ସର୍ବବାଧାହୀନ୍
* * * * * * * * * * * * * * * *

ଭାରତେର୍ ବୀଣାପାଣି, ହେ କବି,
ତୋମାର୍ ମୁଖେ ରାଖି ଦୃଷ୍ଟି ତାଁର୍
ତାରେ ତାରେ ଦିୟେଛେନ୍ ବିପୁଲ୍ ଝଙ୍କାର୍-
ନାହି ତାହେ ଦୁଃଖତାନ୍, ନାହି କ୍ଷୁଦ୍ର ଲାଜ୍,
ନାହି ଦୈନ୍ୟ, ନାହି ତ୍ରାସ୍ । ତାଇ ଶୁଣି ଆଜ୍
କୋଥା ହତେ ଝଂଞ୍ଝା-ସାଥେ ସିନ୍ଧୁର ଗର୍ଜନ୍,
ଅନ୍ଧବେଗେ ନିର୍ଝରେର୍ ଉନ୍ମତ୍ତ ନର୍ତ୍ତନ୍
ପାଷାଣପିଞ୍ଜର ଟୁଟି, ବଜ୍ରଗର୍ଜରବ୍
ଭେରିମନ୍ଦ୍ରେ ମେଘପୁଞ୍ଜ ଜାଗାୟ ଭୈରବ୍ ।
ଏ ଉଦାତ୍ତ ସଂଗୀତେର୍ ତରଙ୍ଗ-ମାଝାର୍
ଅରବିନ୍ଦ, ରବୀନ୍ଦ୍ରେର୍ ଲହୋ ନମସ୍କାର୍ ।।

(ଶାନ୍ତିନିକେତନ, ୭ ଭାଦ୍ର, ୧୯୦୯)

ପୁଲିସ୍ ଆଖିରେ ଧୂଳିଦେବାକୁ ଯତୀନ୍ ମୁଖର୍ଜୀ କଲିକତା ସହରର ବିଭିନ୍ନ ପ୍ରାନ୍ତରେ ଖୋଲିଚନ୍ତି ନୈଶବିଦ୍ୟାଳୟ, ହୋମିଓପାଥି ଚିକିତ୍ସାଳୟ, ପାଠାଗାର, ସମବାୟ ସମିତି । କେନ୍ଦ୍ରଗୁଡ଼ିକରେ ନବନିଯୁକ୍ତ ବିପ୍ଳବୀ ତାଲିମ୍‌ପାଇଚନ୍ତି ଗେରିଲା ରଣକୌଶଳରେ । ଫେରାରି କର୍ମୀଙ୍କୁ ଲୁଚାଇରଖିବା, ସେମାନଙ୍କ ପରିବାରର

ଅନ୍ନଜଳସଂସ୍ଥାନ ପ୍ରଭୃତି ଦାୟିତ୍ୱ ମଧ୍ୟ ନେଇଚନ୍ତି ଏଇ ଅନୁମାନ । ଅନେକ ଧନାଢ୍ୟ ଲୋକ ଆଗଭର ହୋଇ ଦେଇଚନ୍ତି ଅର୍ଥ ଆଉ ଅସ୍ତ୍ର; ଏବଂ ସେଇ ସୂତ୍ରରେ, ମୟୂରଭଞ୍ଜର ଦେଓ୍ୱାନ୍ ଦେବେନ୍ ସିଂହଙ୍କ ସାଙ୍ଗରେ ଘଟିଯାଇଚି ଯୋଗାଯୋଗ । କପ୍ତିପଦାର ପ୍ରଭାବଶାଳୀ ଠିକାଦାର ମଣୀନ୍ଦ୍ର ଚକ୍ରବର୍ତ୍ତୀ ବିପ୍ଳବୀଙ୍କ ରକ୍ଷଣାବେକ୍ଷଣ ଦାୟିତ୍ୱ ନେବାକୁ ଆଗେଇଆସିଛନ୍ତି ଅକୁଣ୍ଠ । ସେଇ ୧୯୦୯ରେ ଅବଶ୍ୟ ମଦନଲାଲ ଧିଙ୍ଗ୍ଡ଼ା ଲଣ୍ଡନ୍‌ସହରରେ ଗୁଳିକରି ମାରିଚି ଛୋଟଲାଟ କର୍ଜନ୍-ଓୟାଲିକୁ । ଅବସରନେଇ ସ୍କଟ୍‌ଲ୍ୟାଣ୍ଡରେ ରହୁଥିବା ଫ୍ରେଜର୍ ମଧ୍ୟ ସମ୍ମୁଖୀନହୋଇଚି ଆତତାୟୀଙ୍କୁ । ବଡ଼ଲାଟ ମିଣ୍ଟୋଙ୍କ ଉପରକୁ ବୋମା ନିକ୍ଷିପ୍ତହୋଇଚି ଅହମଦାବାଦରେ । ନାସିକ୍ ଜିଲ୍ଲାର କଲେକ୍ଟର୍ ଜ୍ୟାକ୍‌ସନ୍, ଯିଏ ସାଭାର୍‌କର୍‌ଙ୍କୁ ଦେଇଥିଲେ ଦ୍ୱୀପାନ୍ତର ଦଣ୍ଡ ନିହତହୋଇଚନ୍ତି ଅଚାନକ, ଏବଂ ପୁଲିସ୍‌ର ଡେପୁଟି କମିଶନର୍ ପାଇଚନ୍ତି ପାର୍ସେଲ୍ ଭିତରେ ବୋମା । ତଦନ୍ତକରି ପୁଲିସ୍ ଜାଣିପାରିଚି, ବିପ୍ଳବୀଙ୍କ ସଂଖ୍ୟା ପହଞ୍ଚିଲାଣି ପାଞ୍ଚରୁ ଛ'ହଜାର । ସେମାନଙ୍କୁ ନେତୃତ୍ୱ ଦେଉଚନ୍ତି ଯିଏ, ମାଣିକତଲା ବଗିଚା ଉପରେ ପୁଲିସ୍ ଚଢ଼ାଉ କରିବା ପୂର୍ବମୁହୂର୍ତ୍ତରେ ତିନିଟା ଟ୍ରଙ୍କ୍‌ରେ ରିଭଲ୍‌ଭର୍ ଭର୍ତ୍ତିକରି ହୋଇଯାଇଥିଲେ ପଳାତକ; ସେମାନଙ୍କୁ ଆଗାମୀ ଖବର ଯୋଗାଇଦେଉଚନ୍ତି କେତେକ ବଙ୍ଗାଳୀ ଆଉ ପଞ୍ଜାବୀ ହାବିଲ୍‌ଦାର୍ ।

୧୯୧୦ ଜାନୁଆରୀ ୨୩ ତାରିଖ ଦିନ ବାଘା ଯତୀନ୍ ଜାଣିବାକୁ ପାଇଲେ ପୁଲିସ୍ ଇନ୍‌ସ୍ପେକ୍ଟର୍ ଶାମ୍‌ସୁଲ୍ ଆଲମ୍ ତାଙ୍କୁ ଧରିବାକୁ ଆସୁଚି, ତହିଁଆରଦିନ ଶାମସୁଲ୍ ନିହତହୋଇଚି ହାଇକୋର୍ଟ ପ୍ରାଙ୍ଗଣରେ । ଅରବିନ୍ଦଙ୍କ ଅଗୋଚରରେ ସଂଘଟିତ ହୋଇନାହିଁ ଏ ସଂହାର । କାହିଁକିନା, ଘାତକର ନାଁ ତାମିଲ୍‌ରେ ଉଚ୍ଚାରଣକଲେ କେମିତି ଶୁଭିବ, ସେ ବାଗ ନିଜେ ବତାଇଦେଇଚନ୍ତି ଅନୁଚରଙ୍କୁ । ଧରପକଡ଼ ହୋଇଚି ବ୍ୟାପକ ଓ କ୍ରମାଗତ, ଗୁପ୍ତ ସମିତିର ଅନେକ କର୍ମୀ ଧରାପଡ଼ିଚନ୍ତି, ଏବଂ ତାଙ୍କ ଭିତରେ ରହିଚନ୍ତି ନରେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ (ପରବର୍ତ୍ତୀ କାଳରେ ମାନବେନ୍ଦ୍ରନାଥ ରାୟ, ଓରଫେ ଏମ୍.ଏନ୍.ରାୟ) । ସବୁଠୁଁ ମାରାତ୍ମକ ଅଭିଯୋଗ ଯେ ଗୁପ୍ତ ସମିତିର କର୍ମୀ ଦେଶୀୟ ସୈନ୍ୟବାହିନୀ ଭିତରକୁ ଅନୁପ୍ରବେଶ କରିଚନ୍ତି, ମଧ୍ୟ ପ୍ରମାଣିତ ହୋଇଯାଇଛି; ଜାଠ୍ ରେଜିମେଣ୍ଟ୍‌ରୁ ସୁର୍ଜନ୍ ସିଂ ପ୍ରଭୃତି ଦଶଜଣ ଗିରଫ୍ ହୋଇଚନ୍ତି । ଏପରିକି, ଜର୍ମନ୍ ଓ ରସିଆନ୍ କନ୍‌ସିଉଲେଟ୍ ବିପ୍ଳବୀଙ୍କ ପରାକ୍ରମ ବିଷୟରେ ନିଜ ସରକାରଙ୍କୁ ଅବଗତ କରିବାକୁ ଜରୁରୀ ମନେକରିଚନ୍ତି ।

ରାଓଲଟ୍ ଆକ୍ଟ ପ୍ରବର୍ତ୍ତନ ଫଳରେ ରାଜନୀତିକ କର୍ମୀଙ୍କୁ ବିନା ବିଚାରରେ ଅଟକରଖିବା ଯେମିତି ଆଇନର ଅନୁମୋଦନ ପାଇଚି, ସେମିତି ଖବରକାଗଜ ଉପରେ

ଜାରି ହୋଇଚି କଡ଼ା କଟକଣା । ଗାନ୍ଧି ସେତେବେଳେ ସରକାରକୁ ଆଖ୍ୟାଦେଇଚନ୍ତି 'ସଇତାନ୍' । ମାତ୍ର ରାଓଲଟ୍ କମିଶନ୍‌ର ରିପୋର୍ଟ ଯେତେବେଳେ ବାହାରିଲା, ଦେଖାଗଲା, 'ଅସଲ କ୍ରିମିନ୍ୟାଲ୍' ଯତୀନ୍ ମୁଖର୍ଜୀ, କାହିଁକିନା, ଅରବିନ୍ଦ ପଣ୍ଡିଚେରୀ ଚାଲିଯିବା ଉତାରୁ ବିପ୍ଲବୀ ଯଦି ଧରାପଡ଼ି ବିଶ୍ୱାସଘାତକତା କରିଚି, ଅଥବା ଭାରତୀୟ ମ୍ୟାଜିଷ୍ଟ୍ରେଟ୍ କି ପୁଲିସ୍ ଯଦି ବିପ୍ଲବୀଙ୍କ ପ୍ରତି ନିର୍ମମହୋଇଚି, ପ୍ରାଣଧରି କେହି ବଞ୍ଚିରହିନାହିଁ; *ଆନନ୍ଦମଠ* ରୀତିରେ କରିବାକୁ ପଡ଼ିଛି ପ୍ରାୟଶ୍ଚିତ । ଦେଶପାଇଁ ଆତ୍ମୋତ୍ସର୍ଗ କରିବାକୁ ଯିଏ ବାହାରିବେ, ଅରବିନ୍ଦ ରଖିଯାଇଚନ୍ତି ତାଙ୍କ ପାଇଁ ଏଇ ଦୃଷ୍ଟାନ୍ତ: ମାତୃଭୂମି ପ୍ରତି ବିଶ୍ୱାସଭଙ୍ଗର ପ୍ରାୟଶ୍ଚିତ ନିର୍ବିକଳ୍ପ ପ୍ରାଣଦଣ୍ଡ, କାହିଁକିନା, ନିଜ ଜୀବନ ଅପେକ୍ଷା ଆହୁରି ବଡ଼, ଆହୁରି ମହତ୍, ମାତୃଭକ୍ତି । ଆଧୁନିକ ବ୍ୟଞ୍ଜନାରେ ସେ 'ଭକ୍ତି' ମାତୃଭୂମି, ମାତୃଭାଷା ବା ମାତୃଜାତି ପ୍ରତି ଉଦ୍ଦିଷ୍ଟ ହୋଇପାରେ । ମାତ୍ର ମାଣିକତଲା ବୋମାତିଆରି କେନ୍ଦ୍ରଟି ଧୂଳିସାତ୍ ହୋଇଯିବା ଘଟଣାରୁ ବାଘା ଯତୀନ୍ ବୁଝିଚନ୍ତି ସଂଗଠନ-ବିକେନ୍ଦ୍ରିକରଣର ମହତ୍ୱ; ବିଭକ୍ତ କରି ଦେଇଛନ୍ତି ସଂଗଠନକୁ ନାନାଦି ଆଞ୍ଚଳିକ ଦଳରେ, ଯଦିଓ ସବୁଯାକ ଦଳ ସମାନଭାବରେ ପ୍ରସ୍ତୁତ ହୋଇନାହିଁ । କର୍ମୀଥିଲେ ତିନିରକମ, (୧) 'ଦାଦା' ଆଉ 'ଗଦା' ଛଡ଼ା କିଛି ଜାଣନ୍ତିନାହିଁ; (୨) କାମିନୀ-କାଞ୍ଚନ ମାୟା ପୁରାପୁରି ଛାଡ଼ିନାହାଁନ୍ତି; (୩) ପୁଲିସ୍‌ର ଗୁପ୍ତଚର, ଅର୍ଥାତ୍, ସମ୍ଭୋଗପ୍ରବଣ ଦୁନିଆରେ ଆତ୍ମବିଶ୍ୱାସର ଅଭାବ । ଅରବିନ୍ଦ ଯେ ଏମାନଙ୍କୁ ହନୁମାନ କହିବେ, ସେଥିପାଇଁ, ବିଚିତ୍ର ନୁହେଁ । ବାଘା ଯତୀନ୍‌ଙ୍କ ଅନ୍ତିମ ଅଭିଳାଷ କିନ୍ତୁ ଫୋର୍ଟ୍ ଉଇଲିୟମ୍ ଦଖଲ । ହନୁମାନ ପାରିବେ କି ? ହନୁମାନ ସେଥିପାଇଁ କ୍ୟାନାଡାରେ ଗଢ଼ିଚନ୍ତି ଗଦରଦଳ । ଅଧିକାଂଶ ପଂଜାବୀ କୃଷକ, ଇଂରେଜୀ ବୁଝନ୍ତି ସାମାନ୍ୟ । ମାତ୍ର ବାଘାଯତୀନ୍‌ଙ୍କ ଶିଷ୍ୟ ଓ ସମରବିଦ୍ୟାରେ ଶିକ୍ଷିତ ତାରକନାଥ ଦାସ, ତାଙ୍କୁ ଦେଇଚନ୍ତି ବିପ୍ଲବର ଦୀକ୍ଷା, ବିଶେଷତଃ ଯେହେତୁ ୧୯୧୧ ବେଳକୁ ଦେଖାଦେଇଚି ପ୍ରଥମ ମହାଯୁଦ୍ଧର ସମ୍ଭାବନା । ବିପ୍ଲବୀ ଭାବିଚନ୍ତି, ଇଂରେଜ୍ ଓ ଜର୍ମନ୍‌ଙ୍କ ଭିତରେ ଯୁଦ୍ଧ ଲାଗିଗଲେ, ଫୋର୍ଟ୍ ଉଇଲିୟମ୍ ଆଉ କେତେ ବାଟ !

ଯୁଦ୍ଧଲାଗିଲା ୧୯୧୪ ଅଗଷ୍ଟ୍ ୪ ତାରିଖ ଦିନ, ଏବଂ ସେତିକିବେଳେ *Berliner Tageblatt* ରେ ଖବରବାହାରିଚି, ଇଉରୋପ୍ ବାହାରେ କିଛି ଗୁପ୍ତସମିତିକୁ ଜର୍ମନ୍‌ସରକାର ଅର୍ଥ ଓ ଅସ୍ତ୍ର ସାହାଯ୍ୟ କରୁଚି; ଯତୀନ୍ ମୁଖର୍ଜୀ ତତ୍‌କ୍ଷଣାତ୍ ସଂଯୋଗସ୍ଥାପନ କରିଚନ୍ତି ଆମେରିକା ଓ ଜର୍ମାନୀରେ ରହୁଥିବା ପ୍ରବାସୀ ବିପ୍ଲବୀଙ୍କ ସାଙ୍ଗରେ ଏବଂ ଜର୍ମନ୍ ପରରାଷ୍ଟ୍ରମନ୍ତ୍ରକ ସହାୟତାରେ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ

ଗଢ଼ିଚନ୍ତି 'ବର୍ଲିନ୍ କମିଟି' । (ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ଓରଫେ 'ଚାଟୋ', ସରୋଜିନୀ ନାଇଡୁଙ୍କ ଭାଇ । ଭାରତକୁ ଫେରିନାହାଁନ୍ତି, ଷ୍ଟାଲିନ୍‌ଙ୍କ ଜମାନାରେ ମସ୍କୋରେ ଘଟିଚି ରହସ୍ୟମୟ ଜୀବନାବସାନ ।) ଚୋରାବଜାର ବାଟଦେଇ କିଛି ଅସ୍ତ୍ରଶସ୍ତ୍ର ବି ଭାରତକୁ ଆସିଚି, ଧରାପଡ଼ିଚି ଯୋଉଠି ପୁଲିସ୍ ଦେଖିଚି, ବିଦେଶରୁ ଆମଦାନି । ହେଲେସୁଦ୍ଧା, ମୀରଟ୍ କ୍ୟାଣ୍ଟନ୍‌ମେଣ୍ଟରେ ଜଳିଉଠିଚି ବିଦ୍ରୋହର ହୁତାଶନ, ଏବଂ ୨୩ ନମ୍ବର ଅଶ୍ୱାରୋହୀବାହିନୀ, ୧୨୮ ନମ୍ବର୍ ପାଇଓନିୟର୍ସ, ୭ ନମ୍ବର ରାଜପୁତ୍—ବିବାକ ରେଜିମେଣ୍ଟକୁ ବ୍ୟାପିଯାଇଚି ବିଦ୍ରୋହର ଅଗ୍ନିଶିଖା; ମାତ୍ର ବ୍ୟର୍ଥହୋଇଯାଇଚି ସାମରିକ ବିଦ୍ରୋହ; ଭଗ୍ନମନୋରଥ ରାସବିହାରୀ ବସୁ ପଳାଇଯାଇଚନ୍ତି ଜାପାନ । ବିଦେଶ ସହିତ ସମ୍ପର୍କରଖିବା ଦାୟିତ୍ୱ ପାଇଚନ୍ତି ନରେନ୍ ଭଟ୍ଟାଚାର୍ଯ୍ୟ(ଏମ୍.ଏନ୍.ରାୟ ହୋଇନାହାଁନ୍ତି ସେ ପର୍ଯ୍ୟନ୍ତ) । ସିଏ ବି ଦିନେ ଧରାପଡ଼ିଚନ୍ତି ପୁଲିସ୍ ଇନ୍‌ସ୍ପେକ୍ଟର୍ ସୁରେଶ ମୁଖୁର୍ଜେ ହାତରେ । ଗୁରୁ ଯତୀନ୍ ମୁଖର୍ଜୀ ଶପଥ ନେଲେ, ସୁରେଶ୍ ମୁଖୁର୍ଜେ ବଞ୍ଚିରହିଥିବାଯାଏଁ ଜଳ ସ୍ପର୍ଶକରିବେନାହିଁ । ୧୯୧୫ ଫେବୃୟାରୀ ୨୮ ତାରିଖ ଦିନ ସୁରେଶ୍ ମୁଖୁର୍ଜେର ଭବଲୀଳା ସାଙ୍ଗ କରିଦେଲେ 'ଦାଗୀ' ବିପ୍ଳବୀ ଚିତ୍ତପ୍ରିୟ ରାୟଚୌଧୁରୀ । ସେଇ ଜାଗାରେ ଏବେ ବସିଚି ବାଘାଯତୀନ୍‌ଙ୍କ ପ୍ରତିମୂର୍ତ୍ତୀ । ଏବଂ ବଞ୍ଚିଥିବା ଯାଏଁ, 'ବର୍ଲିନ୍ କମିଟିର ଅନ୍ୟତମ ମୁଖ୍ୟ, ଜର୍ମାନୀରୁ ସମାଜବିଦ୍ୟାରେ ଡକ୍ଟରେଟ୍ ବିବେକାନନ୍ଦ-ଅନୁଜ, ଅରବିନ୍ଦଶିଷ୍ୟ, ଅକୃତଦାର ଭୂପେନ୍ଦ୍ରନାଥ ଦତ୍ତ, ପ୍ରାତଃଭ୍ରମଣରେ ବାହାରି ସେଇ ମୂର୍ତ୍ତି ବେକରେ ପିନ୍ଧାଇଦେଇଚନ୍ତି ଫୁଲମାଳ ପ୍ରତିନିୟତ ।

ଭାରତରକ୍ଷା ଆଇନ୍ ଚାଲୁକରିଚନ୍ତି ହାର୍ଡିଞ୍ଜ୍, ୧୯୧୯ ମାର୍ଚ୍ଚମାସରୁ ପୁଲିସ୍ ପାଇଯାଇଚି ନିରଙ୍କୁଶ ପ୍ରତାପ। ଦେଖିବାମାତ୍ରକେ ଗୁଳିକରିବ, ଅଦାଲତକୁ ଚାଲାଣକରିବା ଦରକାରନାହିଁ । ଗଦର୍‌ଦଳ ନେତା ଜିତେନ୍ ଲାହିଡ଼ି, ସେଇ ମାର୍ଚ୍ଚମାସରେ ଆସି ଖବରଦେଲେ (୧)ଓ୍ୱାସିଂଟନ୍‌ରେ କର୍ମରତ ଜର୍ମନ୍ ରାଷ୍ଟ୍ରଦୂତ ୧୧୦୦୦ ରାଇଫଲ୍, ୪୦ ଲକ୍ଷ କାର୍ଟୁଜ୍, ୫୦୦ ରିଭଲ୍‌ଭର୍ ଆଉ ୨୫୦ ମାଉଜର୍ ପିସ୍ତଲ୍ ଗଚ୍ଛିତରଖିଚନ୍ତି ଭାରତକୁ ପଠାଇବା ପାଇଁ; (୨) ଚୀନ୍‌ରେ ଅବସ୍ଥିତ ଜର୍ମନ୍‌ରାଷ୍ଟ୍ରଦୂତ ଭାରତୀୟ ବିପ୍ଳବୀଙ୍କ ପାଇଁ ଗୋଟାଏ ଆସ୍ଥାନ ମଧ୍ୟ ପ୍ରସ୍ତୁତକରିଚନ୍ତି ସାଂଘାଇରେ, କଲିକତା ପେନାଙ୍ଗ୍ ବାଟାଭିୟା ଓ ବ୍ୟାଙ୍କକ୍‌କୁ ଯାତାୟତ କରିପାରିବେ ବିପ୍ଳବୀ; (୩) ଫେବୃୟାରୀ ୧୯୧୫ରେ 'ଆନି ଲାର୍ସେନ୍' ଜାହାଜରେ ମେକ୍ସିକୋର ସାନ୍‌ଦିଏଗୋ ବନ୍ଦରରୁ ପ୍ରଥମକିସ୍ତି ଅସ୍ତ୍ରଶସ୍ତ୍ର ପଠାଯାଇଚି, ଇୟେବ୍‌ସେନ୍ କମ୍ପାନୀର ଷ୍ଟିମର୍ 'ଲେଓନର୍' ମେକ୍ସିକୋର ପତାକା ଉଡ଼ାଇ ବାଲେଶ୍ୱରରେ ଖଲାସକରିବ ।

ଯତୀନ୍ ମୁଖର୍ଜୀ ସ୍ଥିରକଲେ, ନରେନ୍ ଭଟଚାଜ୍ ଆଗେ ଚାଲିଯାଉ ବାଟାଭିୟା, ଜର୍ମନ୍ ରାଷ୍ଟ୍ରଦୂତଙ୍କ ସାଙ୍ଗରେ ପରାମର୍ଶକରି ଅସ୍ତ୍ରଖଲାସର ବ୍ୟବସ୍ଥାକରି ଫେରିଆସିବ । ଯିବା ଆଗଦିନ ନରେନ୍ ଭଟଚାଜ୍ ଆସିଲେ ବାଲେଶ୍ୱର, ଏବଂ ନରେନ୍ ବାଟାଭିୟା ଯାତ୍ରାକରିବା ଉତାରୁ ୧୯୧୫ର ଚୈତ୍ରମାସରେ ଦଳବଳନେଇ ବାଘା ଯତୀନ୍ ଆସିଚନ୍ତି କପ୍ତିପଦା; ମହୁଲଡିହା ଗାଁର ପାହାଡ଼ ଉପରେ ଆଶ୍ରମବସାଇ ଅପେକ୍ଷା କରିଚନ୍ତି ଜାହାଜକୁ । ନରେନ୍ ଭଟଚାଜ୍‌ଙ୍କ ଛଦ୍ମନାମ ଏକ୍ଷଣି ଚାର୍ଲସ୍ ମାର୍ଟିନ୍, ଜାହାଜରେ ଉଠିଚନ୍ତି ମାନ୍ଦ୍ରାଜରୁ । ବାଟାଭିୟାରେ ଅସ୍ତ୍ରଖଲାସ ବନ୍ଦୋବସ୍ତ ପକ୍କାକରି ମାନ୍ଦ୍ରାଜ୍ ଫେରିଆସିଚନ୍ତି ୧୫ ଜୁନ୍, କଲିକତା ପଠାଇଚନ୍ତି ସାଙ୍କେତିକ ଏକ ଟେଲିଗ୍ରାମ୍ ଡାକ୍ତର ଯାଦୁଗୋପାଲ୍ ମୁର୍ଖଜୀଙ୍କ ଠିକଣାକୁ । ଏବଂ ବାଲେଶ୍ୱର ପହଞ୍ଚି ଗୁରୁଙ୍କ ପାଦତଳେ ଢ଼ାଳିଦେଇଚନ୍ତି ଥଳିଏ ସୁନାମୋହର ସାଙ୍ଗକୁ ଆଠହଜାର ଟଙ୍କାର ବ୍ୟାଙ୍କ୍‌ଡ୍ରାଫ୍ଟ, ଦି-ତିନି ସପ୍ତାହ ଲାଗିବ ଜାହାଜ ବାଲେଶ୍ୱରରେ ଲାଗିବାକୁ । ନରେନ୍ ବୁଝାଇଚନ୍ତି ଅସ୍ତ୍ରଖଲାସର ଟିକିନିଖି ବ୍ୟବସ୍ଥା, ମାତ୍ର ଯତୀନ୍ ମୁଖର୍ଜୀ ସ୍ୱପ୍ନଦେଖୁଚନ୍ତି, ଫୋର୍ଟ ଉଇଲିୟମ୍ ବିପ୍ଳବୀଙ୍କ ଦଖଲକୁ ଆସିଗଲା ପରା ! କୂଟନୀତି ସ୍ଥିରହୋଇଚି: ଶତ୍ରୁର ମିତ୍ର ମଧ୍ୟ ଶତ୍ରୁ, ଶତ୍ରୁର ଶତ୍ରୁ କିନ୍ତୁ ମିତ୍ର । କିନ୍ତୁ ଆମେରିକାରେ ପ୍ରବାସୀ ଚେକୋସ୍ଲୋଭାକିଆର ବିପ୍ଳବୀ, ଫରାସୀଦୂତାବାସ ମାର୍ଫତ୍ ଇଂରେଜ୍‌କୁ ଜଣାଇଦେଇଚନ୍ତି ଭାରତୀୟଙ୍କ ଅସ୍ତ୍ରଆମଦାନି ବିବରଣ । ଆମେରିକା ଉପକୂଳରେ ବ୍ରିଟିଶ୍ ଗୋଏନ୍ଦାଜାହାଜ ଟହଲମାରେ ପ୍ରଶାନ୍ତମହାସାଗର ଆଡ଼କୁ ମୁହଁକରି, ସତର୍କକରିଦେଇଚି ଓଲନ୍ଦାଜ ଉପନିବେଶ, ଜାପାନ, ଅଷ୍ଟ୍ରେଲିଆ ଓ ନିଉଜିଲ୍ୟାଣ୍ଡ୍ ଉପକୂଳରେ ପ୍ରହରାରତ ବ୍ରିଟିଶ୍ ନେଭିକୁ । 'ମ୍ୟାଭେରିକ୍' ଜାହାଜ ଖାନ୍‌ତଲାସ୍ ହୋଇଚି ବାଟାଭିୟାରେ, କିନ୍ତୁ ଗଦରଦଳ ଲୋକ ଅସ୍ତ୍ରଶସ୍ତ୍ର ଫୋପାଡ଼ିଦେଇଚନ୍ତି ସମୁଦ୍ରକୁ, କପ୍ତାନ୍ ଗିରଫ୍ ହୋଇଚନ୍ତି ସିଙ୍ଗାପୁରରେ । ମିତ୍ରଶକ୍ତିର ଗୋଏନ୍ଦା ବିଭାଗ ଜୁନ୍ ୩୦ ତାରିଖ ଦିନ ଜବତ୍‌କରିଚି ସମୁଦ୍ରଗାମୀ ବିପ୍ଳବୀଙ୍କୁ । ବାଘା ଯତୀନ୍ ସିଦ୍ଧାନ୍ତନେଇଚନ୍ତି, ଧରା ଦେବେନାହିଁ, ଅସ୍ତ୍ରହାତରେ ହିଁ ମରିବେ । ସାଙ୍ଗୋପାଙ୍ଗଙ୍କୁ କହିଚନ୍ତି, 'ଭୁଲ୍‌କରତେ ଚଲେଛିଲାମ୍ ଆମ୍‌ରା । ଭଗବାନ୍ ସୁଧ୍‌ରେ ଦିଲେନ୍ । ବିଦେଶେର୍ ସାହାଯ୍ୟ ନିୟେ ଭାରତେର୍ ସ୍ୱାଧୀନତା ଆନ୍‌ତେ ଚେୟେଛିଲାମ୍, କିନ୍ତୁ ଦେଶ୍ ଦାଁଡ଼ାବେ ନିଜେର୍ ଶକ୍ତିତେ । Country's salvation from within, not from without । ଇଂରେଜ୍ ମଧ୍ୟ ଡେରିକରିନାହିଁ, ସେପ୍ଟେମ୍ବର୍ ବେଳକୁ ଗୋରାପଲ୍‌ଟଣ ପହଞ୍ଚିଯାଇଚନ୍ତି କପ୍ତିପଦା । ବିପ୍ଳବୀ ଅନୁନୟକରିଚନ୍ତି, ହାତରେ ଅଛି ଢେର୍ ସମୟ; ଚାହିଁଲେ, ଜଙ୍ଗଲ ବାଟଦେଇ ବାହାରିଯାଇ ପାରିବେ, ମାତ୍ର ଗୁରୁଙ୍କ ଦୃଢ଼ ଉତ୍ତର, 'ତା ହୟନା ।

ଆମାଦେର୍ ସମସ୍ତ ପରିକଳ୍ପନା ତାସେର୍ ପ୍ରାସାଦେର୍ ମତ ଧ୍ୱସେପଡ଼େଛେ । ଜାତିର ସାମ୍‌ନେ ଏଖନ୍ ଯଦି ଏକ୍‌ଟା କିଛୁ ଆଦର୍ଶ ରେଖେଯେତେ ପାରି, ଦେଶେର୍ ଲୋକ୍ ଫିରେପାବେ ଆତ୍ମବିଶ୍ୱାସ୍; ତାରା ନିଜେରାଇ ଚଲ୍‌ତେ ପାର୍‌ବେ ଏର୍‌ପର୍ ଆମାଦେର୍ ଦେଖାନୋ ବିପ୍ଲବେର୍ ପଥେ । ଏଖନ୍ ସୁଧୁ ଦର୍‌କାର୍- ତାଦେର୍ ମନ୍‌ଥେକେ ମୃତ୍ୟୁଭୟ୍ ମୁଛେଫେଲା । ଆମ୍‌ରା ମର୍‌ବ । ଆମାଦେର୍ ବୁକେର୍ ତାଜାରକ୍ତେ ନେୟେ ଉଠ୍‌ବେ ଦେଶେର୍ ମାଟି । ସେଇ ମରଣ୍ ଦେଖେ ସମସ୍ତ ବ୍ୟର୍ଥତାର୍ କଥା ଭୁଲେ ଦେଶେର୍ ଲୋକେ ଛୁଟେଯାବେ ଭବିଷ୍ୟତେର୍ ଦିକେ ।' ତହିଁଆରଦିନ ସକାଳୁ ଆଶ୍ରମ ଉପରେ ଚାଲିଚି ଆକ୍ରମଣ; ଠିକାଦାର ମଣି ଚକ୍ରବର୍ତ୍ତୀଙ୍କ ପାଖରୁ ମିଳିଚି ବିପ୍ଳବୀଙ୍କ ନାମଧାମ । ସେଥିରୁ ଗୋଟାଏ ପୁଣି ଯୋଗାନନ୍ଦ । ପୁଲିସ୍ ସାହେବ୍ ଡେନ୍‌ହ୍ୟାମ୍ ଚମକିପଡ଼ି ପଚାରିଚନ୍ତି, 'ଏଠି ବି ଆନନ୍ଦମଠ ?' ମଣି ଚକ୍ରବର୍ତ୍ତୀ ନିଜ ଡାଏରୀରେ ଲେଖିଚନ୍ତି, 'ବନ୍ଦେ ମାତରଂ । ଆଜ୍ ଆମାର୍ ଆନନ୍ଦମଠ୍ ଶୂନ୍ୟ ହୟେଗେଲ୍ ।'

ସେପ୍ଟେମ୍ବର୍ ୯ ତାରିଖ, ବୁଢ଼ାବଳଙ୍ଗ ନଈକୂଳଧରି ଚାଲିଚି ଗୁଳିବିନିମୟ, ଚଷାଖଣ୍ଡ ଗାଁମୁଣ୍ଡରେ ଢ଼ିପପଛରେ ଲୁଚିବସି ବିପ୍ଳବୀ ଚଳାଉଚନ୍ତି ବନ୍ଧୁକ । ଗୁଳିମାଡ଼ରେ ଯତୀନ୍ ମୁଖର୍ଜୀଙ୍କ ତଳିପେଟ ଓ ନାହି କଣାହୋଇଯାଇଚି, ଡାହାଣହାତର ବୁଢ଼ାଆଙ୍ଗୁଳି ଛିଡ଼ିଯାଇଚି, ରକ୍ତବାନ୍ତି କରୁଥିବାବେଳେ ଧରାହୋଇ ଆସିଚନ୍ତି ବାଲେଶ୍ୱର ସଦର ଡାକ୍ତରଖାନାକୁ । ଅସ୍ତ୍ରୋପଚାର କରି ଦେହରୁ ଗୁଳିବାରୁଦ ବାହାରକରିଚନ୍ତି ଡାକ୍ତର; ମାତ୍ର ତହିଁଆରଦିନ ସକାଳେ ଆସି ଦେଖନ୍ତି, ନିଜ ହାତରେ ସବୁଯାକ ଷ୍ଟିଚ୍ ଛିଡ଼ାଇଦେଇଚନ୍ତି ବାଘା ଯତୀନ୍; ଜୀବନଜ୍ୟୋତି ଲିଭିଯାଇଚି ୧୧, ସେପ୍ଟେମ୍ବର୍ ୧୯୧୫ । ଡାକ୍ତର ଯାଦୁଗୋପାଲ୍ ମୁଖର୍ଜୀଙ୍କ ମନ୍ତବ୍ୟ, 'ଏଇ ପରିଣତିତେ ଦେଶ୍ ଏକ୍‌ଦିନ୍ ପେଲ ସୂର୍ଯ୍ୟ ସେନେର୍ ଅଧିନାୟକତ୍ୱ' (ଅର୍ଥାତ୍ ଚଟ୍ଟଗ୍ରାମ ଅସ୍ତ୍ରାଗାରଲୁଣ୍ଠନ ପାଇଁ ପ୍ରସ୍ତୁତି) । କିନ୍ତୁ ଆଖ୍ୟାନର ଉପସଂହାରରେ ବଙ୍କିମ୍ ଲେଖିଚନ୍ତି :

ସତ୍ୟାନନ୍ଦ — ହେ ମହାତ୍ମନ୍-ଆମି ଜ୍ଞାନ୍‌ଲାଭେର୍ ଆକାଙ୍କ୍ଷା ରାଖିନା- ଜ୍ଞାନେ ଆମାର୍ କାଜ୍ ନାଇ-ଆମି ଯେ ବ୍ରତେ ବ୍ରତୀ ହଇୟାଛି ଇହାର୍ ପାଲନ୍ କରିବ। ଆଶୀର୍ବାଦ୍ କରୁନ୍ ଆମାର୍ ମାତୃଭକ୍ତି ଅଚଲା ହଉକ୍ ।

ମହାପୁରୁଷ — ବ୍ରତ ସଫଲ୍ ହଇବେନା-କେନ ତୁମି ନିରର୍ଥକ୍ ନରଶୋଣିତେ ପୃଥିବୀ ପ୍ଲାବିତ୍ କରିତେ ଚାଓ ? ଯୁଦ୍ଧବିଗ୍ରହ ପରିତ୍ୟାଗ୍ କର, ଲୋକେ

କୃଷିକାର୍ଯ୍ୟେ ନିଯୁକ୍ତ ହଉକ୍, ପୃଥିବୀ ସଶ୍ୟଶାଲିନୀ ହଉନ୍, ଲୋକେର୍ ଶ୍ରୀବୃଦ୍ଧି ହଉକ୍ ।

ସତ୍ୟାନନ୍ଦେର୍ ଚକ୍ଷୁ ହଇତେ ଅଗ୍ନିସ୍ଫୁଲିଙ୍ଗ ନିର୍ଗତ ହଇଲ, ତିନି ବଲିଲେନ୍, 'ଶତ୍ରୁଶୋଣିତେ ସିକ୍ତ କରିୟା ମାତାକେ ସଶ୍ୟଶାଲିନୀ କରିବ ।'

ମହାପୁରୁଷ    ତୁମି ଆର୍ କିଛୁ କରିତେ ପାରିବେ ନା- ତୋମାର୍ ଦୁଇ ବାହୁ ଛିନ୍ନ ହଇୟାଛେ- ତୋମାର୍ ଆର୍ ପରମାୟୁ ନାଇ ।

ସତ୍ୟାନନ୍ଦ    ନା ଥାକେ, ଏଇଖାନେ, ଏଁଇ ମାତୃପ୍ରତିମା ସମ୍ମୁଖେ ଦେହତ୍ୟାଗ୍ କରିବ ।

ସତ୍ୟାନନ୍ଦଙ୍କ ହାତଧରିଲେ ଯେତେବେଳେ ମହାପୁରୁଷ, ବଙ୍କିମ୍ ଲେଖିଚନ୍ତି, 'ଜ୍ଞାନ ଆସିୟା ଭକ୍ତିକେ ଧରିୟାଛେ- ଧର୍ମ ଆସିୟା କର୍ମକେ ଧରିୟାଛେ... ।' ସେଇ ବାଟଦେଇ ଅରବିନ୍ଦ ପାଇଚନ୍ତି ନିଷ୍କ୍ରମଣର ଆଦେଶ; ମାତ୍ର ତସ୍ୟ ଶିଷ୍ୟ ଯତୀନ୍ଦ୍ରନାଥ ଜ୍ଞାନକୁ କରିଚନ୍ତି ସତ୍ୟାନନ୍ଦଙ୍କ ଭଳି ପ୍ରତ୍ୟାଖ୍ୟାନ, ମାତୃପ୍ରତିମା ସମ୍ମୁଖରେ ହିଁ ଦେହ ତ୍ୟାଗକରି ରଖିଯାଇଚନ୍ତି ଆଗନ୍ତୁକ ପ୍ରଜନ୍ମଗୁଡ଼ିକ ପାଇଁ ତ୍ୟାଗର ପରିମାପ ।

ବାଘା ଯତୀନ୍ କିମ୍ବା ପରବର୍ତ୍ତୀ ପର୍ଯ୍ୟାୟରେ ସୂର୍ଯ୍ୟ ସେନ୍ଙ୍କ ଦୃଷ୍ଟାନ୍ତରୁ ସ୍ପଷ୍ଟ ଦେଖିହେବ ସାମ୍ରାଜ୍ୟବାଦର ଚରିତ୍ରକୁ ହୃଦୟଙ୍ଗମକରିବା ଅକ୍ଷମତା; ଭାବିଚନ୍ତି, ଗ୍ରୀକ୍-ଶକ-ହୁନ, ତୁର୍କ୍-ମୋଗଲ-ପଠାଣଙ୍କ ଭଳି ଇଂରେଜ୍ ଆସିଚନ୍ତି ରଜାହୋଇ ଶୋଷଣକରିବାକୁ । ତାହେଲେ, ଇଂରେଜ୍ ଆମେରିକା ଛାଡ଼ି ଆସିଲା କାହିଁକି ? ସେଠି ତ ଯୁଦ୍ଧ କରିଚି ଶ୍ୱେତାଙ୍ଗଙ୍କ ସାଙ୍ଗରେ ଏବଂ ଘରବାନ୍ଧି ରହିବା ପାଇଁ ଜଳବାୟୁ ବି ଥିଲା ଅନୁକୂଳ । ଅତିଦୃଶ୍ୟମାନ ଏଇ ବାସ୍ତବ, ବିପ୍ଳବୀଙ୍କ ବିବେଚନାରେ, ଧରାପଡ଼ିନାହିଁ, ୧୯୨୦ରେ ମାନବେନ୍ଦ୍ରନାଥ ରାୟ ତାସ୍‌ଖନ୍ଦ୍‌ରେ ଭାରତର କମ୍ୟୁନିଷ୍ଟ୍ ପାର୍ଟି ସ୍ଥାପନକରିବା ପର୍ଯ୍ୟନ୍ତ । ଉପନିବେଶ ଯେ ବୃହତ୍ତର ସାମ୍ରାଜ୍ୟର ଅଂଶବିଶେଷ, ଏକଥା ବୁଝିପାରିଥିଲେ, ଅନାଇଥାନ୍ତେ ବର୍ହିଭାରତକୁ, ଦେଖିଥାନ୍ତେ ଇଂରେଜ୍‌ର ଆଧିପତ୍ୟବିସ୍ତାର ଜମାରୁ ସ୍ଥାୟୀ ପରିକଳ୍ପନା ନୁହେଁ; ଏକମାତ୍ର ଉଦ୍ଦେଶ୍ୟ, ମୁନାଫା ସଂଗ୍ରହ ପୂର୍ବକ ନିଜ ଦେଶର ଶିଳ୍ପବିକାଶ ସକାଶେ ଅଧିକରୁ ଅଧିକ ପୁଞ୍ଜି ସରବରାହ, ଏବଂ ସେଇ ପୁଞ୍ଜିର ଦ୍ରୁତ ସ୍ଫୁରାୟନ ସକାଶେ ପ୍ରଜାଙ୍କ ବ୍ୟୟରେ ରେଳପଥରୁ ଟେଲିଗ୍ରାଫ୍ କି ଇଂରେଜିଶିକ୍ଷାର ଭାରତବ୍ୟାପୀ ପ୍ରସାର । ସେମାନେ ଜାଣନ୍ତି, ଦିନେ ନା ଦିନେ ଚାଲିଯିବେ, କାହିଁକିନା, ଭାରତରେ ଘରବାନ୍ଧି ରହିବା ତାଙ୍କ ଉଦ୍ଦେଶ୍ୟର ପ୍ରତିକୂଳ, ମାତ୍ର ସେତିକିବେଳେ ଯିବେ, ଅର୍ଜିତ ମୁନାଫା ଅପେକ୍ଷା ଆଇନଶୃଙ୍ଖଳାର

ରକ୍ଷଣାବେକ୍ଷଣ ବ୍ୟୟ ଯେତେବେଳେ ହେବ ମାତ୍ରାଧିକ । ଭାରତରେ, ସେଥିପାଇଁ, ବର୍ଣ୍ଣବୈଷମ୍ୟ ଚଳାଇନାହାଁନ୍ତି, ଚଳାଇଚନ୍ତି ଦକ୍ଷିଣଆଫ୍ରିକାରେ, ଯୋଉଠି ଘରବାନ୍ଧି ରହିଚନ୍ତି ଅଦ୍ୟାବଧି । ଗାନ୍ଧି ହୋଇଥିଲେ ସେଇ ବର୍ଣ୍ଣବିଦ୍ୱେଷର ଶିକାର; ନହେଲେ, ଇଂରେଜ୍‌କୃପାରୁ ଗୁଜୁରାତି ବଣିଆ ବି ସେଠିକି ଯାଇଥିଲେ କୃଷ୍ଣକାୟଙ୍କୁ ଶୋଷଣକରିବାକୁ । ଏବେ ମଧ୍ୟ ଯାଉଚନ୍ତି । ଏଗୁଡ଼ାକୁ ବୁଝିବାକୁ ଦରକାର କ୍ୟାପିଟାଲଇଜ୍ମର ଚାରିତ୍ରିକ ଲକ୍ଷଣଗୁଡ଼ାକ ସହିତ ପରିଚୟ । ସେ ଶିକ୍ଷାଦୀକ୍ଷା, ଅରବିନ୍ଦଙ୍କ ଛଡ଼ା ଅନ୍ୟ ବିପ୍ଳବୀଙ୍କର ନଥିଲା; ମାତ୍ର ମାଟି ପାଗହୋଇନାହିଁ ଦେଖି, ସିଏ ମଧ୍ୟ ଲାଙ୍ଗଳଜୁଆଳି ଟେକିଦେଲେ ସଙ୍ଗାକୁ । ବିଦେଶରୁ ଗୁଳିବାରୁଦ ଆଣି ପୃଥିବୀର ବୃହତ୍ତମ ସାମ୍ରାଜ୍ୟ ସାଙ୍ଗରେ ମୁଷ୍ଟିମେୟ ଭାରତୀୟ ଲଢ଼ିବେ ଗେରିଲା କାୟଦାରେ, ଆଉ ଶେଷକୁ ଦଖଲକରିନେବେ ଫୋର୍ଟ୍ ଉଇଲିୟମ୍, ତେଣୁ ଉତ୍ତପ୍ତ ମସ୍ତିଷ୍କର ଉଚ୍ଛ୍ୱାସ ମାତ୍ର । ତାକୁ ବି ଇଂରେଜ୍ ତାଚ୍ଛଲ୍ୟକରିନାହିଁ, ଯୋଗାଡ଼କରିଚି 'ସେଫ୍‌ଟି ଭଲ୍ଭ', ଯା ଚରମ ଅରାଜକତାର ବାଟ ଓଗାଳିବ, ମୁନାଫା ଉପରେ ତାଙ୍କ ଅଧିକାରକୁ ରଖିବ ଅକ୍ଷୁଣ୍ଣ, ସାମ୍ରାଜ୍ୟବାଦର କୋଲାବରେଟର୍ ରଜାଜମିଦାରଙ୍କ ଦିହରେ ଟିପ ଛୁଇଁବନାହିଁ । ଉପରନ୍ତୁ, ଇଂରେଜ୍ ଯଦି ଅପର କୋଉ ସାମ୍ରାଜ୍ୟବାଦୀ ଶକ୍ତି ସହିତ ଯୁଦ୍ଧରେ ପ୍ରବୃତ୍ତହୁଏ, ଯୋଗାଇଦେବେ ଲୋକବାକ (କ୍ୟାନନ୍‌ଫଡ଼ର୍) ସାଙ୍ଗକୁ ସୈନ୍ୟସାମନ୍ତଙ୍କ ପାଇଁ ଖାଦ୍ୟପେୟ । ତେଣୁ, ସାମ୍ରାଜ୍ୟବାଦବିରୋଧୀ ସନ୍ତ୍ରାସ ସୀମାବଦ୍ଧହୋଇ ରହିବ ଭାରତର ପେସାଦାରଶ୍ରେଣୀ ମଧ୍ୟରେ । ପେସାଦାରଶ୍ରେଣୀ ମାନେ, ଓକିଲ ଡାକ୍ତର ସାମ୍ବାଦିକ ଶିକ୍ଷକ ଭଳି ମଧ୍ୟବିତ୍ତ । ଏଇ ସର୍ତ୍ତଗୁଡ଼ିକ ଅ–ରୁ କ୍ଷ– ପର୍ଯ୍ୟନ୍ତ, ସଜ୍ଞାନରେ ହେଉ କି ନହେଉ, ପୂରଣକରିଚନ୍ତି ମୋହନଦାସ ଗାନ୍ଧି (ମହାତ୍ମା ହୋଇନାହାଁନ୍ତି ସେ ପର୍ଯ୍ୟନ୍ତ) ।

ସେଫ୍ଟିଭଲ୍‌ଭ୍ ବା ବାଷ୍ପଯନ୍ତ୍ର ତତ୍ତ୍ୱ କିନ୍ତୁ ଲେଖକର ଉଦ୍‌ଭାବନ ନୁହେଁ । ୧୮୩୫ରୁ ୮୩, ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି, ବିଦ୍ରୋହର ବହ୍ନି ଧୂମାୟିତ ହୋଇଚି ଭାରତର ଅଭ୍ୟନ୍ତରରେ, ଏବଂ ଗୋଏନ୍ଦା ବିଭାଗ ରିପୋର୍ଟରୁ ଇଂରେଜ୍ ବୁଝିଚି, ଧୂଆଁ ଅପେକ୍ଷା କରୁଚି ଶିକ୍ଷିତ ନେତୃତ୍ୱକୁ ନିଆଁସ୍ତରକୁ ଉଠିବାକୁ । ସେ ଶିକ୍ଷିତ ଅବଶ୍ୟ ଅସନ୍ତୁଷ୍ଟ, ଇଂରେଜ୍‌ର ସ୍ତାବକ ନୁହେଁ । ସିଏ ଯେତେବେଳେ ଜମାୟେତ୍ ପରିଚାଳନା କରିବ, ଅଗ୍ନ୍ୟୁତ୍ପାତ ଅବଶ୍ୟମ୍ଭାବୀ । ସେ ରିପୋର୍ଟ ପଢ଼ିସାରି ହିଉମ୍, ଗଭର୍ଣ୍ଣର୍-ଜେନେରାଲ୍ ଡଫ୍‌ରିନ୍‌ଙ୍କ ସାଙ୍ଗରେ ମସୁଧାକରିଚନ୍ତି । ପ୍ରକାଶଥାଉ କି, ଅ୍ୟାଲାନ୍ ଅକ୍ଟାଭିଆନ୍ ହିଉମ୍(୧୮୨୯-୧୯୧୨), ବ୍ରିଟିଶ୍ ସିଭିଲିଆନ୍; ତାଙ୍କ ଭାରତପ୍ରୀତିର ଉତ୍ସ ଥିୟସଫି ଓ ପକ୍ଷୀପ୍ରେମୀ, ଡଫ୍‌ରିନ୍‌ଙ୍କ ପରାମର୍ଶ: ଶିକ୍ଷିତ ଭାରତୀୟ ଯଦି ସମିତି

ଗଠନକରି ଅଭିଯୋଗ ବ୍ୟକ୍ତକରନ୍ତି, ଗଭର୍ଣ୍ଣମେଣ୍ଟ୍ ପ୍ରତିକାର ଚେଷ୍ଟାକରିବ ନିଶ୍ଚୟ । ହିଉମ୍‌ଙ୍କ ଅଧକ୍ଷତାରେ ତେଣୁ ୧୮୮୬ରେ ସ୍ଥାପିତ ହୁଏ 'ଭାରତୀୟ ଜାତୀୟ କଂଗ୍ରେସ୍' । ହିଉମ୍-ଡଫ୍‌ରିନ୍ ଗୋପନ ପରାମର୍ଶର ଖବର ଦେଇଚନ୍ତି ପ୍ରଥମ କଂଗ୍ରେସ-ସଭାପତି ଡବ୍ଲ୍ୟୁ ସି ବୋନର୍ଜୀ (ଉମେଶଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ): ମିଷ୍ଟର୍ ହିଉମ୍‌କେ ଦିଯେ ଡାଫ୍‌ରିନ୍ କଡ଼ାରକରିଯେ ନିୟେଛିଲେନ୍ ଯେ, ତିନି ଯତଦିନ୍ ଦେଶେ ଆଛେନ୍, ତତଦିନ୍ ତାଁର ନାମ୍ ପ୍ରକାଶ କରା ହବେନା ।' ରଜନୀ ପାଲ୍‌ମାମଦତ୍ତ ମଧ ଏକାକଥା ଲେଖିଚନ୍ତି *ଇଣ୍ଡିଆ* ଟୁଡେ ଗ୍ରନ୍ଥରେ । ଅନ୍ୟ ଶବ୍ଦରେ, ଜାତୀୟ କଂଗ୍ରେସ୍ ପ୍ରକୃତ ସ୍ୱାଧୀନତା-କ୍ଷୁଧାକୁ ମେଣ୍ଟାଇ ପାରିନାହିଁ, ଦେଶର ଅଭାବ-ଅଭିଯୋଗ ଜ୍ଞାପନକରିବାକୁ କର୍ତ୍ତୃପକ୍ଷ ହାତରେ ହୋଇଚି ଉତ୍ତେଜନାନିରସନ ଯନ୍ତ୍ର ମାତ୍ର । ଏବଂ ସେଥିପାଇଁ, ଗୋପନ ସନ୍ତ୍ରାସ ଓ ଶସସ୍ତ୍ର ଅଭ୍ୟୁତ୍‌ଥାନର ସମ୍ଭାବନା ମୁଣ୍ଡଟେକିଚି ବାରମ୍ବାର । ପ୍ରକୃତ ସେଇ କ୍ଷୁଧା ଯେହେତୁ ସମାଜତନ୍ତ୍ର ପ୍ରତିଷ୍ଠା ବିନା ମେଣ୍ଟିବନାହିଁ, ରାଷ୍ଟ୍ରକୁ ସଶସ୍ତ୍ର ପ୍ରତିରୋଧ ମଧ ସରିଯିବନାହିଁ ।

ଅରବିନ୍ଦ ଅବଶ୍ୟ ଭାବିଚନ୍ତି, ରାଜନୀତିକୁ 'ସ୍ପିରିଚୁଆଲାଇଜ୍' କରିପାରେ ଅବତାର ପୁରୁଷ, କିନ୍ତୁ ଅବତାର ପ୍ରତୀତି ଇତିହାସ-ସଂଜାତ ଭାବାଦର୍ଶ ନୁହେଁ । ଧର୍ମୀୟ ଭାବବଳୟରେ ନିମଜ୍ଜିତହୋଇ ଅବତାର ଆବିର୍ଭାବ ପ୍ରତ୍ୟାଶା କରାଯାଇଚି ଯୋଉଠି ଓ ଯେତେବେଳେ, ପୁରୁଷଟି ନିଜକୁ ପ୍ରମାଣିତ କରିଚି 'ଫଲ୍ସ ପ୍ରଫେଟ୍' । ଅବତାର ତେଣୁ ଭ୍ରାନ୍ତଚୈତନ୍ୟ-ପ୍ରସୂତ ମରୀଚିକା, ଐତିହାସିକ ସତ୍ୟ ନୁହେଁ, କାହିଁକିନା, କି ରକମ ଭବିଷ୍ୟତ ଅଭିପ୍ରେତ, ନିର୍ଭରକରେ ବିଦ୍ୟମାନ ଅବସ୍ଥା ଉପରେ । ବର୍ତ୍ତମାନ ଯଦି 'ବଲ୍‌ସେଭିକ୍', ତା ଭିତରୁ ଦେବୋପମ ଅଲୌକିକତା ବାହାରିପାରେନା କସ୍ମିନ୍‌କାଳେ । ତେଣୁ ୧୯୨୦ରେ ଅରବିନ୍ଦ ଯେତେବେଳେ ଲେଖିଚନ୍ତି, 'ରାଜନୀତିକୁ ସ୍ପିରିଚୁଆଲାଇଜ୍ କରିବାକୁ ଲୋକ ଚାହୁଁଚନ୍ତି, ସେଥିରୁ ଯଦି ସ୍ଥାୟୀ ଫଳାଫଳ ଉଦ୍‌ଗତହୁଏ, ତା ହେବ ଏକପ୍ରକାର ଇଣ୍ଡିଆନାଇଜ୍‌ଡ୍ ବଲ୍‌ସେଭିଜ୍ମ', କଟାକ୍ଷକରିଚନ୍ତି ଯାହାକୁ, ସିଏ ଆଉକେହି ନୁହେଁ, ସ୍ୱୟଂ ଗାନ୍ଧି । ଅରବିନ୍ଦ ଅବଶ୍ୟ 'ଗାନ୍ଧି' ନଲେଖି, ଲେଖିଚନ୍ତି 'ହନୁମାନ'; ଅର୍ଥାତ୍ ଅବତାରପୁରୁଷ 'ରାମ' ନୁହେଁ । ୧୯୧୭ରେ ରସିଆରେ ଘଟିଯାଇଚି ଅକ୍ଟୋବର୍ ବିପ୍ଲବ, ଅନ୍ୟଥା 'ବଲ୍‌ସେଭିକ୍' ଶବ୍ଦ ପ୍ରୟୋଗକରନ୍ତେନାହିଁ ଅରବିନ୍ଦ । ବଲ୍‌ସେଭିକ୍ ନେତୃତ୍ୱରେ ଘଟିଚି ସେଇ ବିପ୍ଲବ; ମେନ୍‌ସୁଭିକ୍ ଅଲଗା ହୋଇଯାଇଚନ୍ତି ଲେନିନ୍‌ଙ୍କ ଅର୍ଥନୀତି ଯେହେତୁ କ୍ୟାପିଟାଲିଜ୍ମ ସହିତ କରିଚି ଆପୋଷ; ଯେପରି ପଶ୍ଚିମବଙ୍ଗରେ କରୁଚନ୍ତି କମ୍ୟୁନିଷ୍ଟ୍ । ମାତ୍ର 'ବଲ୍‌ସେଭିକ୍'ର ଆକ୍ଷରିକ ଅର୍ଥ 'ସଂଖ୍ୟାଗରିଷ୍ଠ' । ରାଜନୀତିରୁ

ସଶସ୍ତ୍ର ସଂଗ୍ରାମକୁ ନିଷ୍କାଷିତ କରି, ସ୍ପିରିଚୁଆଲାଇଜ୍ କରିବାକୁ ଚାହିଁଚନ୍ତି ଗାନ୍ଧି; ଅରବିନ୍ଦଙ୍କ ବିଚାରରେ କିନ୍ତୁ, ରାଷ୍ଟ୍ରପ୍ରବର୍ତ୍ତିତ ସଶସ୍ତ୍ର ଦମନ ସହିତ ସେକାମ ଅପମାନଜନକ ଆପୋଷ, ବିଦେଶୀ ସମରଶକ୍ତି ପାଖରେ ଆତ୍ମସମର୍ପଣ । ସେ ଆପୋଷ ଫଳରେ ଅବଶ୍ୟ ସତ୍ୟାଗ୍ରହୀଙ୍କ ସଂଖ୍ୟା ବଢ଼ିଚି; ମନନର ପରିସର ବିସ୍ତାର ପାଇନାହିଁ । ଗୋଠ ମାତିଲେ ଖଣ୍ଡିଆମାତେ ନ୍ୟାୟରେ କୋଳାହଳ କରିଚନ୍ତି 'ବାନରସେନା' । ସେ କୋଳାହଳକୁ ଗାନ୍ଧିଭକ୍ତ ଏବେ କହୁଚନ୍ତି, ନୂଆମଣିଷ ସାଙ୍ଗକୁ ନୂଆସମାଜ ଗଢ଼ିବା ପ୍ରୟାସ । ସେ ନୂଆମଣିଷ ଏକ୍ଷଣି ପେନ୍‌ସନ୍ ପାଇବାଲାଗି ମିଛ-ସତ ଲେଖି ଦୌଡୁଚନ୍ତି ମନ୍ତ୍ରୀଙ୍କ ପାଖକୁ । ତାଙ୍କ ପରିଚୟ 'ସ୍ୱାଧୀନତା-ସଂଗ୍ରାମୀ' ବା ଫ୍ରିଡମ୍ ଫାଇଟର୍ । ନୂଆସମାଜ ଗଢ଼ିବା ପ୍ରୟାସ ଗାନ୍ଧି କରିଚନ୍ତି ଦୀର୍ଘ ତିରିଶବର୍ଷ, ମାତ୍ର ସମାଜ ଗତିକରିଚି ବୁର୍ଜୋୟାକରଣ ଆଡ଼କୁ । କରିଚି ଓ କରୁଚି ବୋଲି, କ୍ଷମତା ହସ୍ତାନ୍ତରର ପଞ୍ଚଷଠିବର୍ଷ ଉତାରୁ ମଧ୍ୟ ଜାଗାବରଜାଗା ମୁଣ୍ଡଟେକୁଚି ଅସ୍ମିତାର ରାଜନୀତି ଏବଂ ଆକୁମାରୀହିମାଳୟ ଶିକ୍ଷିତସମ୍ପ୍ରଦାୟର ଧ୍ୟେୟ ହୋଇଚି ଲଗାମହୀନ ଭୋଗବାଦ ।

ସାମ୍ରାଜ୍ୟବାଦର ଦମନପୀଡ଼ନ ଘନୀଭୂତହେବା ସଙ୍ଗେସଙ୍ଗେ, ଦମିତ ଓ ଅନ୍ତ୍ୟଜ ହୋଇଯାଇଚି ଜଡ଼ବତ୍ ନିଶ୍ଚଳ, କାହିଁକିନା, ଭାରତୀୟ ସମାଜବ୍ୟବସ୍ଥା ତାକୁ ନିର୍ବାକ୍‌କରି ରଖିଚି ଚିରକାଳ । ଆମ୍ବେଡ୍‌କର, ସେଥିପାଇଁ ସମ୍ବିଧାନ ବଳରେ ସମାଜରେ ନୈତିକତା ପ୍ରତିଷ୍ଠା ପାଇପାରେ କି ନାହିଁ, ପ୍ରଶ୍ନର ଉତ୍ତର ଦେଇ କହିଥିଲେ, Democracy in India is only a top-dressing on an Indian void which is essentially undemocratic । ଗାନ୍ଧିବିଚାର ତା' ଉପରେ ଲେପିଦେଇଚି ଭାବବାଦୀ ଜ୍ଞାନାଞ୍ଜନ । ନିକମାଙ୍କ ଲାଗି ପ୍ରହେଳିକାର ଆକର୍ଷଣ ଥାଇପାରେ, ମାତ୍ର ଇତିହାସ ଗତିରେ ସମାଜ କେମିତି ଗଢ଼ିହୋଇଯାଏ, ସେ ଇତିହାସକୁ ମଣିଷ କେମିତି ନିଜ ହାତରେ ଗଢ଼େ, ଫେର୍ ଇତିହାସ କେମିତି ମଣିଷକୁ ଗଢ଼େ, ଭାବବାଦ ସେ ନିୟମ ବତାଇପାରେନା । କାହିଁକିନା, ଦ୍ୱନ୍ଦ୍ୱ ବା ଦ୍ୱାନ୍ଦ୍ୱିକତାକୁ ସ୍ୱୀକାରକରେନା ଭାବବାଦ । ଯିଏ ରାମ, ସେଇ ରହିମ୍ । ବାବ୍‌ରି ମସ୍‌ଜିଦ୍ ତେବେ ଭଙ୍ଗାହୁଏ କାହିଁକି ? ଦ୍ୱାନ୍ଦ୍ୱିକତା ଯେ ଗତିଶୀଳତାର ଲକ୍ଷଣ, ଏବଂ ସେଇ ଲକ୍ଷଣ ମଣିଷ ପ୍ରଜାତିର ଚଳିକାଶକ୍ତି, ବୁଝିନାହିଁ ବୋଲି, ଗାନ୍ଧିବିଚାର ସର୍ବାଂଶରେ ଅକ୍ଷମର ଆସ୍ଫାଳନ । ତଥାପି, ଅନ୍ତତଃ ଅରବିନ୍ଦ ଭାବିଚନ୍ତି, ତା'ର ବି ଦରକାର ଥିଲା, ଯେମିତି ବୁଦ୍ଧଙ୍କ ଅନିତ୍ୟବାଦ ବି ଦରକାରଥିଲା; ମାତ୍ର ପୃଥିବୀ ଏତେ ଆଗକୁ ଚାଲିଆସିଚି ଯେ, ଏଗୁଡ଼ାକ ଆଉ କାମକୁ ଆସୁନାହିଁ, କାହିଁକିନା, ଯିବାକୁ ହେବ ଆହୁରି ଆଗକୁ, ଆହୁରି ଦୂରକୁ । ଖାଲି ଆଚାରଶୁଦ୍ଧି ତେଣୁ ମନନକୁ ପ୍ରସାରିତ କରିପାରୁନାହିଁ

କୋଉଠିହେଲେ, ଅଥଚ ସମାଜ ଓ ମଣିଷର ନବୀକରଣ ପ୍ରତୀକ୍ଷାକରୁଚି ଚେତନାର ଅବାଧ ବିକଚନ । ସନ୍ଦେହ ନାହିଁ, ଚେତନା ଆକାଶରୁ ଖସିବନାହିଁ, ଉଠିଆସିବ ଅନୁକ୍ଷଣ ସଂଘର୍ଷରତ ଜୀବନଚର୍ଯ୍ୟା ଭିତରୁ । ସଂଖ୍ୟାତତ୍ତ୍ୱରେ ବିଶ୍ୱାସୀ ଲେନିନ୍‌ଙ୍କୁ ତେଣୁ କହିବାକୁ ପଡ଼େ, Fewer but better । ସତ୍ୟାଗ୍ରହୀଙ୍କ ମାନସିକ ବିକାଶକୁ ଯଦି କେବେ ଗୁରୁତ୍ୱଦେଇଥାନ୍ତେ, ସୁଭାଷ ବସୁ କଂଗ୍ରେସ୍ ସଭାପତି ନିର୍ବାଚିତ ହେଲେବୋଲି ଗାନ୍ଧି କେବେ କହିନଥାନ୍ତେ, "ପଟ୍ଟାଭି'ଜ୍ ଡିଫିଟ୍ ଇଜ୍ ମାଇଁ ଡିଫିଟ୍ ।" ବିଦେଶୀ ପ୍ରଭୁ ଦୃଷ୍ଟିରେ, ଭାରତୀୟ ଜନଗଣଙ୍କ ଏକମେବାଦ୍ୱିତୀୟମ୍ ପ୍ରତିନିଧି ବୋଲି ନିଜକୁ ପ୍ରତିଭାତକରିବା ଥିଲା ଗୂଢ଼ ଉଦ୍ଦେଶ୍ୟ । ସଶସ୍ତ୍ର ପ୍ରତିରୋଧର ଭୂମିକା ଯେ ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ, ମୁକ୍ତକଣ୍ଠରେ ତେଣୁ ସ୍ୱୀକାରକରିନାହାଁନ୍ତି ଗାନ୍ଧି । ପୁଣି, 'ହିନ୍ଦ୍-ସ୍ୱରାଜ୍' ରୂପକ ଯୋଉ ଆଦର୍ଶ-ସମାଜର ନକ୍ସା ଆଙ୍କିଚନ୍ତି, ବ୍ୟାବହାରିକ-ପ୍ରୟୋଗ ପରୀକ୍ଷାରେ ସେ ମଡେଲ୍ ଉତ୍ତୀର୍ଣ୍ଣହୋଇନାହିଁ କୁତ୍ରାପି, କାହିଁକିନା, ସମାଜ କେମିତି ତଳରୁ ଉପରକୁ ଗଢ଼ିଉଠେ, ନିର୍ଦ୍ଦିଷ୍ଟ କୋଉ ରାଷ୍ଟ୍ରଚିନ୍ତା ଉପରେ ନିର୍ଭରକରେନା । ଅନ୍ତିମ ଲକ୍ଷ୍ୟ ଯଦି ସମାଜତନ୍ତ୍ର, ଦେଖାଇବାକୁ ପଡ଼ିବ ଜାତୀୟ ସ୍ୱାଧୀନତାପ୍ରୟାସ ସହିତ ସେ ଲକ୍ଷ୍ୟ କିଭଳି ସୁସମଞ୍ଜସ । ସଶସ୍ତ୍ର ବିପ୍ଳବୀ ଦେଖାଇପାରିନାହାଁନ୍ତି । ଗାନ୍ଧି ବି ପାରିନାହାଁନ୍ତି, ଏପରିକି, କମ୍ୟୁନିଷ୍ଟ୍ ମଧ୍ୟ ପାରିନାହାଁନ୍ତି । ଏକମାତ୍ର କାରଣ, ସଂହତ ଦୂରଦୃଷ୍ଟିର ଅଭାବ; ମାର୍କ୍ସଙ୍କ ପରିଭାଷାରେ, ଦର୍ଶନର ଦାରିଦ୍ର୍ୟ ।

ଇଂରେଜ୍ ପଳାଇଯିବା ଉତାରୁ ଦେଶ କଣ ହୋଇରହିଥିବ ଆନନ୍ଦମଠ ? ନା, ଅତୀତର ପ୍ରେତକୁ କାନ୍ଧରୁ ଓହ୍ଲାଇଦେଇ ଅନୁସରଣକରିବ ଯୁଗୋପଯୋଗୀ ସ୍ୱତନ୍ତ୍ର କର୍ମଧାରା ? ଜାତୀୟତାର ଆବେଗ ଯେ ଯଥେଷ୍ଟ ନୁହେଁ, ଅରବିନ୍ଦ ମଧ୍ୟ ବୁଝିଥିଲେ, ମାତ୍ର ତାଙ୍କ ଭବିଷ୍ୟତ୍ କୃତ୍ୟସୂଚୀ ଥିଲା ଆଧ୍ୟାତ୍ମିକ । ବୈଜ୍ଞାନିକ ବିଶ୍ୱବୀକ୍ଷା ଭିତ୍ତିରେ ତା କଦାପି ହୋଇପାରେନା ଗଣସଂଗଠନର ଆଦର୍ଶ । ଏପରିକି, କଂଗ୍ରେସ୍ ଭିତରେ ଯିଏ ନିଜକୁ ସମାଜବାଦୀ ବୋଲି ଦାବିକରୁଚନ୍ତି, ଦେଇପାରିନାହାଁନ୍ତି ସେଇ ଭବିଷ୍ୟତ୍ ବିକଳ୍ପର ସଂଧାନ । ମଠରୁ ମଠ, ଘାଟରୁ ଘାଟ ପରିକ୍ରମଣର ପଥଶ୍ରମ କ୍ଳାନ୍ତକରିଚି ସଂଗ୍ରାମୀଙ୍କୁ, କାହିଁକିନା, ଅରବିନ୍ଦଙ୍କ ପାଖରୁ ଗାନ୍ଧିଙ୍କ ପର୍ଯ୍ୟନ୍ତ ଦାସ୍ୟବୃତ୍ତି ହୋଇଚି କର୍ମୀଙ୍କ ଉତ୍କର୍ଷର ଅଭିଜ୍ଞାନ । ଧନାଢ଼୍ୟ କର୍ମୀଥିଲେ ଅବଶ୍ୟ, ବାକିଯାକ ସେମାନଙ୍କ ଅନୁଗତ । ସ୍ୱାଧୀନଚିନ୍ତା କି ସ୍ୱାଧୀନ କର୍ମଧାରା କଥା ଋକର ସ୍ଥିରକରିପାରେନା । ସ୍ଥିରକଲେ, ହେବ ସୁଭାଷ ବସୁଙ୍କ ଦଶା । ମାନସିକ ଦାସତ୍ୱର ଏଇ ପ୍ରାଦୁର୍ଭାବ ଏପରି ଭୟାନକ ଯେ ନବକୃଷ୍ଣ ଚୌଧୁରୀ ଆଶଙ୍କା କରିଚନ୍ତି, ଗାନ୍ଧି ଯଦି ଜେଲ୍‌ଖାନାରେ ଉପାସରେ ମରିଯିବେ, ସେଇ ଜଣେ ଲୋକର ଅଭାବରେ ଅଚଳ

ହୋଇଯିବ ଦେଶବ୍ୟାପୀ ସଂଗ୍ରାମ, ଈଶ୍ୱରଙ୍କ ନିର୍ଦ୍ଦେଶ ଆଉ ଶୁଣାଇବ କିଏ ? ଏବଂ ସଂଗ୍ରାମର ଅନ୍ତିମ ଲକ୍ଷ୍ୟ ଯେହେତୁ ଅଦୃଶ୍ୟ ଈଶ୍ୱରଙ୍କ ଇଚ୍ଛା-ଅନିଚ୍ଛା ଉପରେ ନିର୍ଭରଶୀଳ, କଳ ଭଳି ପିକେଟିଙ୍ଗ୍ କି ଆଇନ୍ ଅମାନ୍ୟ କରି ମାଡ଼ଖାଇବା ହିଁ ହେବ ନିମିତ୍ତମାତ୍ରଂ ଭବ ସବ୍ୟସାଚୀ ! ଯେମିତ ସଶସ୍ତ୍ର ବିପ୍ଳବୀଙ୍କପାଇଁ ଦାଦା ଆଉ ଗଦା । ଯେକୌଣସି ବୁର୍ଜୋୟା ଆନ୍ଦୋଳନ ତେଣୁ, ଖୁବ୍ ବେଶି ହେଲେ, ଜନ୍ମଦିଏ କିଛି ମଧମେଧା ମଣିଷଙ୍କୁ ଯିଏ ଆମୂଳ ପରିବର୍ତ୍ତନର ପରିପନ୍ଥୀ, କାହିଁକିନା, ଆମୂଳ ପରିବର୍ତ୍ତନ ମାନେ ଅସ୍ତିତ୍ୱର ସଂକଟ; ବୁର୍ଜୋୟା ବ୍ୟକ୍ତିତ୍ୱର, ପୁଣି ବୁର୍ଜୋୟା ସମାଜର । ତା'ଛଡ଼ା, ଜାର୍ ଅମଳର ରସିଆରେ ଏମାନେ ଲକ୍ଷ୍ୟକରିଚନ୍ତି ଟଲ୍‌ଷ୍ଟୟବାଦୀ ଅହିଂସାନୀତିର ପ୍ରଭାବ । ସେ କ୍ଳୀବତ୍ୱ ପ୍ଳାବନରେ ଭାରତ ସେତେବେଳେ ଭାସମାନ । ବ୍ୟତିକ୍ରମ ତେଣୁ ଘୃଣ୍ୟ ଓ ନିନ୍ଦନୀୟ । ଏପରିକି, କରାଚି କଂଗ୍ରେସ୍ (୧୯୩୦)ରେ ମୌଳିକଅଧିକାର ସଂକ୍ରାନ୍ତ ଯେତେ ପ୍ରସ୍ତାବ ଗୃହୀତହୁଏ, 'ଧର୍ମଘଟର ଅଧିକାର' ପ୍ରସ୍ତାବଟିକୁ ଗାନ୍ଧି ତା ଭିତରୁ ସ୍ୱହସ୍ତରେ କାଟିଦିଅନ୍ତି । ପୁରୁଷପୁଙ୍ଗବ କେହି ପାଟିଫିଟାଇବାକୁ ମଧ ସାହସକରିନାହିଁ । ଏକଥା ସମ୍ଭବପର ଥିଲା କେବଳ ଫ୍ୟାସିଷ୍ଟ୍ ଇତାଲିରେ । ଅସଲ କଥା ହେଲା, ବିପ୍ଳବ କହିଲେ ଯେ ଖାଲି ଇଂରେଜ୍-ବିତାଡ଼ନ ନୁହେଁ, ସ୍ୱୟଂ ଗାନ୍ଧିଙ୍କ ମୁଣ୍ଡକୁ ବି ପଶିନାହିଁ, ଆଉ ତାଙ୍କ ପଛରେ ଯିଏ ଗୋଡ଼ାଇଚନ୍ତି ବିପ୍ଳବକରିବେ ବୋଲି, ଅଧିକାଂଶ ବୁର୍ଜୋୟାତନୟ; ଦରିଦ୍ର ଚଷାଭୁଷା କୁଲିମୁଲିଆ କି ପାଣକଣ୍ଡରାଙ୍କ ପ୍ରତି ଘୃଣା ତାଙ୍କ ଅସ୍ଥିମଜ୍ଜାଗତ । ନିମ୍ନବର୍ଗ ଲୋକ କୋଉହେଲେ ସଦର୍ଥରେ ବିପ୍ଳବୀ ନୁହେଁ ଯେ ଡାକିଦେଲେ କୁକୁର ଭଳି ଦୌଡ଼ିଆସିବେ, ବାବୁଙ୍କ ବୋଲମାନି ଇଂରେଜ୍ ମାରିବେ କି ପଟୁଆରରେ ଯାଇ ପୁଲିସ୍‌ହାତରୁ ପାହାରଖାଇବେ; କିନ୍ତୁ ତାହାହିଁ ଥିଲା ବୁର୍ଜୋୟାଙ୍କ ବିପ୍ଳବର ଦର୍ଶନ । ରାଜନୀତି ଯେମିତି ବୁର୍ଜୋୟାର ଚଉପାଢ଼ୀ, ବିପ୍ଳବ ସେମିତି ତାର ଉନ୍ମାଦନା । ଆପଣା ଶ୍ରେଣୀସ୍ୱାର୍ଥ ବାହାରେ ଯୋଉ ଜଗତ୍, ତାକୁ ପର୍ଯ୍ୟବେକ୍ଷଣର ଇଚ୍ଛା ବା ଅବସର ନାହିଁ କାହାରି । ଆଜି ମଧ ନାହିଁ-ଲୋକଟି କଂଗ୍ରେସ୍ ବିଜେପି କମ୍ୟୁନିଷ୍ଟ, ଯିଏ ହେଉ । ଆଜି ରାଜନୀତିକ ହିନ୍ଦୁତ୍ୱକୁ ନିନ୍ଦାକରୁଛୁଁ; ଜନସମର୍ଥନ ଆଦାୟକରିବାକୁ 'ମହାତ୍ମା' କଣ ହିନ୍ଦୁଧର୍ମକୁ ବ୍ୟବହାର କରିନାହାଁନ୍ତି ? ଗଣଆନ୍ଦୋଳନ, ଯୋଉଠି ହେଉ, ଯେତେବେଳେ ଧର୍ମାଶ୍ରୟୀ ହୋଇଯାଏ, ପ୍ରତ୍ୟକ୍ଷ ରାଜନୀତିରେ କିମ୍ବା ପରୋକ୍ଷ ପ୍ରରୋଚନାରେ, ସାଧାରଣଲୋକଙ୍କ ଭିତରେ ବିପ୍ଳବ ଚେତନା ପରିବର୍ତ୍ତେ ସେତେବେଳେ ଫ୍ୟାସିଷ୍ଟ୍ ପ୍ରବଣତା ଦାନାବାନ୍ଧେ; କି ମତବାଦ ଯଦି ବିଜ୍ଞାନକୁ ପ୍ରତ୍ୟାଖ୍ୟାନକରେ, ଅର୍ଥବିଦ୍ୟା ଓ ସମାଜବିଦ୍ୟାର ରୀତିନୀତିକୁ କରେ ଅଗ୍ରାହ୍ୟ, ରସିଆର ଟଲ୍‌ଷ୍ଟୟଙ୍କ ପାଖରୁ

ଅହିଂସନୀତି, ଆମେରିକାର ଥରୋଙ୍କଠୁଁ ଆଇନ୍-ଅମାନ୍ୟ କି ଯନ୍ତଶିଳ୍ପର ବିରୋଧିତା, ଆଉ ଫରାସୀ ସିଣ୍ଡିକ୍ୟାଲିଷ୍ଟଙ୍କ ପାଖରୁ ନିଷ୍କ୍ରିୟ ପ୍ରତିରୋଧ ଉଧାରଆଣି ଗାନ୍ଧି ବନାଇଦେବେ ନୂଆସମାଜ ଆଉ ନୂଆମଣିଷ ! ଅନ୍ୟ ଶବ୍ଦରେ, ଉନବିଂଶ ଶତକ ଇଉରୋପ୍‌ରେ ଯାହାକୁ କହୁଥିଲେ ଇଉଟୋପିୟାନ୍ ସୋସାଲିସ୍ମ, ବିଂଶଶତକରେ ଇଉରୋପ୍ ତାକୁ ବର୍ଜନକରିଥିଲେ ସୁଦ୍ଧା, ଭାରତର ପଶ୍ଚାଦ୍‌ପଦ ବୁର୍ଜୋୟା ପୁନଃପ୍ରବର୍ତ୍ତନ କରିଚି 'ଗାନ୍ଧିବାଦ' ନାମକ ଅଭିନବ ପ୍ୟାକେଜ୍ । ସେଥିରେ ବେଦ ନାହିଁ କି କୁରାନ୍ ନାହିଁ, ତଥାପି ଜାତୀୟତାବାଦ ନିର୍ବିକଳ୍ପ ଆଉ ଗାନ୍ଧି ମଧ୍ୟ କଳ୍କୀ ଅବତାର ! ଶ୍ରେଣୀସ୍ୱାର୍ଥ କେତେ ବିଚିତ୍ର ରୂପ ପରିଗ୍ରହ କରିପାରେ, ଏ ତାର ଆଭାସ ମାତ୍ର । *ଗୀତା* ରେ କିନ୍ତୁ ହିଂସା ପାଇଚି ମହିମା, ଅରବିନ୍ଦଙ୍କ ଭାଷାରେ ତା କର୍ମଯୋଗ । ହିଂସା, ଅହିଂସା, ଉଭୟ ପ୍ରଣାଳୀକୁ ତେଣୁ ପ୍ରୟୋଗକରାଯାଇଚି ସମାନ୍ତରାଳ ଧାରାରେ । ସ୍ୱାଧୀନତା ପାଇଁ ସଂଗ୍ରାମରେ, ସେଥିରୁ ଗୋଟାକୁ ରାମଚନ୍ଦ୍ର, ଆରଟାକୁ ରାମାଭଣ୍ଡାରୀ କହିବା ଅନ୍ୟରକମ ଶ୍ରେଣୀଗତ ପକ୍ଷପାତ ।

ତୁର୍କୀ ସମାଜର ପତନ, ଅମୃତସର୍ ହତ୍ୟାକାଣ୍ଡ ପ୍ରଭୃତି ଆକସ୍ମିକତା ଭାରତସାରା ସୃଷ୍ଟିକରିଚି ଋଞ୍ଚଲ୍ୟ, ଏବଂ ସେଇ ସୁଯୋଗରେ ଗାନ୍ଧି ଖିଲାପତ୍ ସାଙ୍ଗରେ ଯୋଡ଼ିଦେଇଚନ୍ତି ସ୍ୱରାଜ; ହିନ୍ଦୁ-ମୁସଲ୍‌ମାନ୍ ଭାତୃତ୍ୱ ନାଁରେ ଆରମ୍ଭହୋଇଯାଇଚି କଂଗ୍ରେସ୍‌ର ନବଯୁଗ; ଅର୍ଥାତ୍, ଧର୍ମରକ୍ଷା ବାହାନାରେ ସାଧାରଣଲୋକକୁ ତତାଇ ମତାଇ ଗଣଆନ୍ଦୋଳନ । ନିର୍ବାକ୍ ନିରକ୍ଷର ଗଣଶ୍ରେଣୀକୁ, ଏଇ ବାଟରେ, ରାଜନୀତି ଭିତରକୁ ଟାଣିଆଣିଚି ବୁର୍ଜୋୟା; ଗାନ୍ଧିଙ୍କ ଆସରକୁ ପ୍ରଲୁବ୍ଧ ଗଣଶ୍ରେଣୀର ଆଗମନ ଏଇ ପ୍ରଥମ । ସ୍ୱରାଜ ଓ ଖିଲାପତ୍‌ର ଏଇ ପାଚନ ତେଣୁ ସାଧାରଣଲୋକକୁ ଇକ୍ସ୍‌ପ୍ଲଇଟ୍ କରିବାର ଅବ୍ୟର୍ଥ ଉପାୟ । ଅଥଚ ୧୯୨୧ ମସିହାରେ ହିଁ ଭାରତମାଟିରେ ରୋପିତହୋଇଚି ପାକିସ୍ତାନ ରୂପକ ବିଷବୃକ୍ଷ; ପରେ ଅବଶ୍ୟ ଗଣଶ୍ରେଣୀର ଦୁର୍ଦ୍ଦଶାମୋଚନ ସକାଶେ ମହାତ୍ମା ତାଙ୍କୁ ଦେଇଚନ୍ତି ଋରଖା ଖଦଡ଼ ପ୍ରଭୃତି ଉପଢ୍ୱୌକନ । ମାତ୍ର ଦେଶର ଦରିଦ୍ରଙ୍କ ଭିତରେ ମୁସଲ୍‌ମାନ୍ କୃଷିଜୀବୀ ଥିଲେ ପ୍ରଧାନ; ଜମିଦାର କି ମହାଜନ ବିରୋଧରେ କିଛି କରିବାକୁ ଯଦି ବାହାରିଚନ୍ତି, ବୁର୍ଜୋୟା ପ୍ରତିଷ୍ଠାନଗୁଡ଼ିକର ଅସନ୍ତୋଷ ବନ୍ଧ ଭାଙ୍ଗିଚି । ଜାତୀୟ କଂଗ୍ରେସ୍ ତେଣୁ ଅବସ୍ଥାପନ୍ନ ଶ୍ରେଣୀର ପ୍ରତିଷ୍ଠାନ; ଅପରାପର ପ୍ରତିଷ୍ଠାନ ସେଇ ଶ୍ରେଣୀର ଆୟତ୍ତାଧୀନ । କଂଗ୍ରେସ୍ ବାର୍ତ୍ତା ସେଥିପାଇଁ : ଋରିଅଣା ଦେଇ ମେମ୍ବର୍ ହୁଅ, ଲକ୍ଷେ ଚରଖା ଆଉ ଲକ୍ଷେ ସତ୍ୟାଗ୍ରହୀ ଦିଅ, ପାଇଯିବ ସ୍ୱରାଜ, ଖଦଡ଼ ପିନ୍ଧ । ଏ ଉପଋର ଗରିବଙ୍କ ଅକ୍ତିଆର ବାହାରେ । ହେଲେସୁଦ୍ଧା, ହିନ୍ଦୁ-ମୁସଲ୍‌ମାନ୍ କୃଷକ-ଶ୍ରମିକ ଯେତେବେଶି

ଉଦ୍‌ବୁଦ୍ଧହେଲେ, ସେତେ ବାହାରିଲା ଆଧ୍ୟାତ୍ମିକ ଅର୍ଥନୀତି, The rich are the trustees of the wealth of the poor । ଶୋଷିତ ନିପୀଡ଼ିତର ପେଟର ଭୋକକୁ ପ୍ରଶମିତ କରିପାରିନାହିଁ ଏ ଆଧ୍ୟାତ୍ମିକ ଖାଦ୍ୟ । ମୁସ୍‌ଲିମ୍ ବୁର୍ଜୋୟା ଦେଖୁଚି, ତା ଶ୍ରେଣୀସ୍ୱାର୍ଥ ବିପନ୍ନ; ଦରିଦ୍ର ମୁସଲ୍‌ମାନ୍ ତାକୁ ଛାଡ଼ି ଚାଲିଯିବାକୁ ଉଦ୍ୟତ । ସୃଷ୍ଟିକରିଚି ଦ୍ୱିଜାତି-ତତ୍ତ୍ୱ, ଗାନ୍ଧି ଅବଶ୍ୟ ଘୋଷଣା କରିଚନ୍ତି; Pakistan over my deadbody । ପ୍ରତିଶ୍ରୁତିଟା ଯଦି ରକ୍ଷାକରିଥାନ୍ତେ, କସ୍ମିନ୍‌କାଳେ ଇଂରେଜ୍ ଦ୍ୱିଖଣ୍ଡକରି ପାରିନଥାନ୍ତା ଏ ଦେଶକୁ; ରାଜନୀତିର ବୁର୍ଜୋୟାକରଣ ମଧ୍ୟ ବାଛିଥାନ୍ତା ଭିନ୍ନ ଗତି । ସେହିପରି, ବର୍ଣ୍ଣାଶ୍ରମ-ବହିର୍ଭୂତ ଦରିଦ୍ରଙ୍କୁ 'ହରିଜନ' ଭୂଷଣରେ ମଣ୍ଡନ; ଅଥଚ ଏମାନଙ୍କ ସ୍ୱାର୍ଥରେ ରାଜନୀତି-କ୍ଷେତ୍ରକୁ ଯଦି ପୃଥକ୍ କରାଯାଏ, ଉଚ୍ଚବର୍ଣ୍ଣର କି ସର୍ବନାଶ ଉପସ୍ଥିତହେବ ଗାନ୍ଧି ନିଶ୍ଚୟ ବୁଝିଥିଲେ, କିନ୍ତୁ ବୁନିଆଦି ସ୍ୱାର୍ଥର ପ୍ରତିଭୂ ବ୍ରାହ୍ମଣ-ବୁର୍ଜୋୟାଙ୍କୁ ଅସନ୍ତୁଷ୍ଟକରିବା ଥିଲା ତାଙ୍କ ସାଧ୍ୟାତୀତ । ସେଥିପାଇଁ, ତାଙ୍କ ବିଚାରଧାରାରେ ତଥାକଥିତ ହରିଜନଙ୍କ ପାଇଁ ନିର୍ଦ୍ଦିଷ୍ଟ କୌଣସି ସାମାଜିକ କି ଅର୍ଥନୀତିକ କୃତ୍ୟସୂଚୀ ନାହିଁ । ଅସ୍ପୃଶ୍ୟତାକୁ ନିଷିଦ୍ଧକରି ସାମାଜିକ ବ୍ୟବଧାନକୁ ସଙ୍କୁଚିତକରିବାକୁ ଚେଷ୍ଟାହୋଇଚି ମାତ୍ର; ମାନସିକ ବ୍ୟବଧାନ କିନ୍ତୁ ଆଜି ବି ରହିଚି ବିସ୍ତର ।

ଗଣବିଦ୍ରୋହର ଅସଲ ଚେହେରା କିନ୍ତୁ ଫୁଟିଉଠିଚି ଅଗଷ୍ଟ୍ ୧୯୪୨ ବେଳେ । ଗାନ୍ଧି ଜେଲ୍‌ଖାନାରେ, କଂଗ୍ରେସ୍ ଓ୍ୱର୍କିଙ୍ଗ୍‌କମିଟି ବି ଜେଲ୍‌ଖାନାରେ, ଅଗଷ୍ଟ୍ ବିପ୍ଲବକୁ କଂଗ୍ରେସ୍-ଆନ୍ଦୋଳନ କହିବା ତେଣୁ ପ୍ରଚାର ମାତ୍ର । ଆଦର୍ଶନିଷ୍ଠା କାରଣରୁ ସ୍ୱାର୍ଥତ୍ୟାଗ, ଅତ୍ୟାଚାରକୁ ସବଳ ମୁକାବିଲା, ଦଳୀୟ ରାଜନୀତିରେ ଖାଲି ଆବଦ୍ଧହୋଇ ରହିନାହିଁ; କୃଷକ-ଶ୍ରମିକ-ଛାତ୍ର, ଏପରିକି ସୈନ୍ୟବାହିନୀ, ଲାଭ-ନୁକ୍‌ସାନ୍ ହିସାବକରିନାହିଁ, ନିଜ କର୍ମପନ୍ଥା ନିଜେ ସ୍ଥିରକରି ଲାଠି-ବନ୍ଧୁକ-ଜେଲ୍-ଜରିମାନାକୁ ସାମ୍ନାକରିଚି ଦୃଢ଼ ଆତ୍ମପ୍ରତ୍ୟୟରେ ନିର୍ଭୀକ ଗଣଶ୍ରେଣୀ । ଏପରିକି, ଅତ୍ୟାଚାରର ପ୍ରତିଶୋଧ ମଧ୍ୟ ନେଇଚି ପ୍ରାଣବିନିମୟରେ ଗୃହବଧୂ । ଏଇ କର୍ମଯୋଗ, ଏଇ ଆଦର୍ଶନିଷ୍ଠା, ଏଇ ନିର୍ଭୀକତା, ଏଇ ଆତ୍ମତ୍ୟାଗ, ଇତିହାସକୁ ଆଶ୍ୱସ୍ତକରିଚି; ଭାରତର ଭବିଷ୍ୟତ ଆଉ ବୁର୍ଜୋୟା ହାତରେ ନାହିଁ ।

□□□

# ବିଶ୍ୱକୁ ଗବାକ୍ଷ

୧୮୭୦ ବେଳକୁ ପୁଞ୍ଜିତନ୍ତ୍ର ଉଠିଆସିଚି ସାମ୍ରାଜ୍ୟବାଦ ସ୍ତରକୁ, ପ୍ରତିକ୍ରିୟାରେ ଇଉରୋପ୍‌ରେ ଆତ୍ମପ୍ରକାଶ କରିଚି ଉଗ୍ର ଜାତୀୟତାବାଦ ସାଙ୍ଗକୁ ଅସ୍ତ୍ରପ୍ରତିଯୋଗିତା, କାହିଁକିନା, ଫରାସୀବିପ୍ଳବ-ପ୍ରସୂତ ସାମ୍ୟ-ମୈତ୍ରୀ-ମୁକ୍ତି ଇତ୍ୟାଦି ଭାବାଦର୍ଶ ପାଶ୍ଚାତ୍ୟ ଗୋଲାର୍ଦ୍ଧର ଜନଚିତ୍ତରେ ରହିଚି ସଦ୍ୟ ଓ ପ୍ରଜ୍ଜ୍ୱଳ । ୧୮୭୧ରେ ତେଣୁ ସ୍ଥାପିତହୁଏ 'ପ୍ୟାରି କମିଉନ୍' । ଭାରତରେ ସେ ଖବର ଅବଶ୍ୟ ପହଞ୍ଚୁନାହିଁ । କମ୍ୟୁନିଷ୍ଟ୍ ଇଣ୍ଟରନ୍ୟାସନାଲ୍ କିନ୍ତୁ ସ୍ଥାପିତହୋଇଚି, ଯାର ଲକ୍ଷ୍ୟ : ଦୁନିଆର ଖଟିଖିଆ ମଣିଷର ରାଜନୈତିକ ଐକ୍ୟ, ଆଉ ବ୍ୟକ୍ତିଗତ ସମ୍ପତ୍ତିର ଅବଲୁପ୍ତି । ମାତ୍ର ପ୍ରଥମ ମହାଯୁଦ୍ଧ ଅବ୍ୟବହିତରେ ଦ୍ୱିତୀୟ କୋମିନ୍‌ଟର୍ନ ଭାଙ୍ଗିପଡ଼ିଚି ଜାତୀୟତାବାଦ ଆକ୍ରମଣରେ । ଲକ୍ଷ୍ୟକରିବା କଥା, ପ୍ରଥମ ମହାଯୁଦ୍ଧ ଆରମ୍ଭହେବା ବର୍ଷକ ଭିତରେ ଘଟିଚି ଯତୀନ୍ ମୁଖର୍ଜୀଙ୍କ ଜୀବନାବସାନ । ଜାତୀୟତାବାଦ ବାଟ ଛାଡ଼ିଦେଇଚି ଆନ୍ତର୍ଜାତିକତାକୁ, ଏବଂ ମାନବେନ୍ଦ୍ରନାଥ ରାୟ ସ୍ଥାନପାଇଚନ୍ତି ତୃତୀୟ ଆନ୍ତର୍ଜାତିକରେ । ଅନତିବିଳମ୍ବେ ୧୯୨୦ରେ, ପ୍ରବାସରେ ସଂଗଠିତ କରିଚନ୍ତି ଭାରତର କମ୍ୟୁନିଷ୍ଟ୍ ପାର୍ଟି । ବୋଲିବା ବାହୁଲ୍ୟ, ତୃତୀୟ ଆନ୍ତର୍ଜାତିକର ପ୍ରେରଣା ଆସିଚି ୧୯୧୭ର ଅକ୍ଟୋବର୍ ବିପ୍ଳବରୁ, ଯାର ଅଧିନାୟକ ଭ୍ଲାଦିମିର୍ ଲେଲିନ୍ ।

୧୯୧୫ରେ ଯତୀନ୍ ମୁଖର୍ଜୀଙ୍କ ତିରୋଧାନ ସହିତ ଲିଭିଯାଇଚି ସଶସ୍ତ୍ର ସଂଘର୍ଷରେ ବିଶ୍ୱାସୀ ଜାତୀୟତାବାଦୀଙ୍କ ଅଗ୍ନ୍ୟୁତ୍ପାତ; ବିଶେଷତଃ ଯେହେତୁ ଦୁଇବର୍ଷ ଉତାରୁ ରସିଆକୁ ଆସିଯାଇଚି ସମାଜତନ୍ତ୍ର । ବିପ୍ଳବ ଯେ ଉଲ୍ଲାସ କି ଦୂରକଳ୍ପନାକୁ ପୁଞ୍ଜିକରି ଆଗକୁ ବେଶିବାଟ ଯିବନାହିଁ, ସେ ଶିକ୍ଷା ମିଳିଚି ଅକ୍ଟୋବର୍ ଅଭ୍ୟୁତ୍ଥାନରୁ, ଏବଂ ସେଇ ଉପଲବ୍ଧିରୁ ଜନ୍ମନେଇଚି ଶ୍ରେଣୀହୀନ ସମାଜର ପରିକଳ୍ପନା ସାଙ୍ଗକୁ ତଦୁପଯୋଗୀ ସଂଗଠନର ଧାରଣା । ପରିବର୍ତ୍ତନକାମୀ ବୁଝିପାରିଚନ୍ତି, ସ୍ୱାଧୀନ ଭାରତରେ ରାଷ୍ଟ୍ର ଯଦି ବାହ୍ୟଆକୃତିରେ ଖାଲି 'ଜାତୀୟ' ହୁଏ, ପର୍ଯ୍ୟାପ୍ତ ହୋଇପାରିବନାହିଁ ଅଭ୍ୟନ୍ତରୀଣ ଉପାଦାନଗୁଡ଼ିକୁ ସମାଜତନ୍ତ୍ରର ଉପଯୋଗୀ କରିବାକୁ; ଜାତି ଧର୍ମ ଭାଷା ଭେଦାଭେଦ, ଅଭିନ୍ନ ଏକକ ଜାତୀୟଚେତନାକୁ ପଦେ ପଦେ କରିବ ପ୍ରତିହତ । ଏମ୍.ଏନ୍.ରାୟ ସାମ୍ୟବାଦୀଦଳ ତିଆରିକରିବା ଢେର୍ ଆଗରୁ

ଜାତୀୟତାବାଦରୁ ଆନ୍ତର୍ଜାତିକତାକୁ ଘଟିସାରିଚି ତେଣୁ ଉତ୍ତରଣ 'ବର୍ଲିନ୍ କମିଟି' ମାଧ୍ୟମରେ । ମାନବେନ୍ଦ୍ରନାଥ ସାମ୍ୟବାଦ ଶିଖିଥିଲେ ମେକ୍ସିକୋରେ ରସିଆନ୍ ବିପ୍ଳବୀ ମାଇକେଲ୍ ବରୋଦିନ୍‌ଙ୍କ ପାଖରୁ; ତାଙ୍କ ପ୍ରବାସୀ ମିଉନିସ୍ଟ ପାର୍ଟି, ୧୯୨୧ରୁ ୨୬ ଭିତରେ କଂଗ୍ରେସ୍‌ର ଅହମଦାବାଦ, ଗୟା ଓ ଗୁଆହାଟୀ ଅଧିବେଶନକୁ ପଠାଇଚି ତିନିଟି ଇସ୍ତିହାର ଯଦିଓ ଆକୁମାରୀହିମାଳୟ ଜାତୀୟ କଂଗ୍ରେସ୍ ସୃଷ୍ଟିକରିଚି ସେତେବେଳକୁ ବ୍ୟାପକ ପ୍ରତ୍ୟାଶା; ଲୋକ ଉନ୍ମୁଖହୋଇ ଅପେକ୍ଷାକରୁଚନ୍ତି ସଂଗ୍ରାମରେ ବୀରତ୍ୱପୂର୍ଣ୍ଣ ନେତୃତ୍ୱ; ଅଥଚ ଦଶ-ପନ୍ଦର ବର୍ଷ ଭିତରେ କଂଗ୍ରେସ୍ ଭିତରେ ଦେଖାଦେଇଚି ଆଇନ୍‌ସଭାରେ ସଂଖ୍ୟାଗରିଷ୍ଠତା ଅର୍ଜନପାଇଁ ସକାତର ବ୍ୟାକୁଳତା । ସଂସଦୀୟ ବ୍ୟବସ୍ଥାର କ୍ଳୀବତ୍ୱ ପ୍ରତି କଟାକ୍ଷକରିଚି ଏଇ ଇସ୍ତିହାର, କାହିଁକିନା, ଔପନିବେଶିକ ପରିମଣ୍ଡଳରେ ଅବଧାବିତଭାବେ ଆଇନ୍‌ସଭା ହୀନବଳ । ତାଆରି ମାଧ୍ୟମରେ ଜନଗଣଙ୍କ ଭିତରେ ଶକ୍ତି ସଂଚାରକରିବା ଅଭିପ୍ରାୟ ସଂଗ୍ରାମ ପ୍ରତି ବିଶ୍ୱାସଘାତକତା ମାତ୍ର ବିଶେଷତଃ ଯେହେତୁ ପ୍ରଜାପୁଞ୍ଜର ମାତ୍ର ୨.୨% ପାଇଚି ଭୋଟ୍‌ଅଧିକାର । ଦେଶର ୯୭.୮% ଅଧିବାସୀଙ୍କୁ ଭୋଟ୍ ଅଧିକାରରୁ ବଞ୍ଚିତକରି ଆଇନ୍‌ସଭା ଜନଗଣଙ୍କ ଆଶା ଆକାଙ୍‌କ୍ଷାର ପ୍ରତିନିଧିତ୍ୱ କରିପାରେ ନା, ଆଉ, ସଂଗ୍ରାମର ସାମାଜିକ ଭିତ୍ତି ଯେହେତୁ ଏପରି ସଂକୀର୍ଣ୍ଣ ଓ ସଙ୍କୁଚିତ, ଏକମାତ୍ର ଆଇନ୍‌ସଭାରେ ସଂଖ୍ୟାଗରିଷ୍ଠତା ସାମ୍ରାଜ୍ୟବାଦୀ ଶକ୍ତିକୁ ଆହ୍ୱାନଜଣାଇବାକୁ ଯଥେଷ୍ଟ ନୁହେଁ; ଆଇନ୍‌ସଭା କରିପାରେ କେବଳ ସାମ୍ରାଜ୍ୟବାଦୀ ଶକ୍ତି ସହିତ ସନ୍ଧିବିଗ୍ରହ; ଏବଂ ରାଷ୍ଟ୍ରଶକ୍ତି ସାମ୍ରାଜ୍ୟବାଦୀ ହେଲେସୁଦ୍ଧା, ମାତ୍ର ୨.୨% ନାଗରିକଙ୍କ ପ୍ରତିନିଧିଙ୍କ ପାଖରେ ଉତ୍ତରଦାୟୀ ହୁଏନା; ଅଥଚ ଦେଶର ଅଧିକାଂଶ ଲୋକଙ୍କୁ ଭୋଟ୍ ଅଧିକାରଦେବା କୋଉହେଲେ ଜାତୀୟତାବାଦୀ ସଂଗଠନର ମୌଳିକଦାବି ନୁହେଁ । ନୁହେଁ ବୋଲି, ପ୍ରତିନିଧିମୂଳକ ସରକାରକୁ ପ୍ରତିପକ୍ଷ ବିବେଚନାକରିବ ଆପଣା କ୍ଷମତା-ଷ୍ଟ୍ରକ୍‌ଚରର ପରିପୂରକ ଅଂଶ ମାତ୍ର । ଅର୍ଥନୀତିରେ ଶୋଷଣ ଓ ରାଜନୀତିରେ ନିଷ୍ପେଷଣ ତେଣୁ ସାଧାରଣରେ ପ୍ରତିଭାତହେବ ଦେଶ ପକ୍ଷରେ ଗ୍ରହଣଯୋଗ୍ୟ । କାହିଁକିନା, ଭୋଟ୍ ଅଧିକାର ପାଇଥିବା ଅଭିଜାତ ଓ ମଧ୍ୟବିତ୍ତ ଶ୍ରେଣୀଦ୍ୱୟର ଅନୁମୋଦନ ଆଇନ୍‌ସଭା ମାଧ୍ୟମରେ ଆଦାୟକରିବା ପ୍ରତିପକ୍ଷପାଇଁ ସେତେବେଳେ କଠିନ ହେବନାହିଁ ।

ମାତ୍ର ୧୯୨୫ ବେଳକୁ ଜାତୀୟ କଂଗ୍ରେସ୍ ଓ ସ୍ୱରାଜପାର୍ଟି ଭିତରେ ଲାଗିଯାଇଚି ଅଧିକାର ଲଢ଼ାଇ, ଅଥଚ ଭୋଟ୍-ଅଧିକାରରୁ ବଞ୍ଚିତ ରହିଚନ୍ତି ଶତକଡ଼ା ଅଠାନବେ ଭାରତବାସୀ । ସେ ବିବାଦକୁ ଘେରି କଂଗ୍ରେସ୍ ଡାକିଚି ଗୁଆହାଟି

ଅଧିବେଶନ, କାହିଁକିନା, ସ୍ୱରାଜପାର୍ଟି ଯଦି ହାରିଯାଏ, ଜାତୀୟତାବାଦର ମଞ୍ଚ ହୋଇଯିବ ଅବିଭାଜିତ ଏବଂ ସେଇ ଅବସ୍ଥାରେ, ନିମ୍ନଶ୍ରେଣୀର କର୍ମୀବାହିନୀକୁ କରାଯାଇପାରିବ ଏକଛତ୍ର । ଏବଂ ସତକୁ ସତ, ସ୍ୱରାଜପାର୍ଟି ଛାଡ଼ି ଚାଲିଯାଇଚନ୍ତି ସଚେତନ ବୁର୍ଜୋୟା । ଜଣକ ପଛକୁ ଜଣେ । ନେତୃତ୍ୱ କିନ୍ତୁ ବଦଳିନାହିଁ । କର୍ମୀ ଓ ନେତାଙ୍କ ଭିତରେ ଦ୍ୱନ୍ଦ୍ୱ ରହିଚି ପୂର୍ବବତ୍ ଆବିଳ। ନେତା ବିବାକ ଜମିଦାର କି ଧନାଢ୍ୟ ବ୍ୟବହାରଜୀବୀ; କର୍ମୀଯାକ ଆସିଚନ୍ତି କିନ୍ତୁ ସମାଜର ତଳସ୍ତରରୁ । ହେଲେସୁଦ୍ଧା, ପାର୍ଟିର ଅନୁସୃତ ନୀତି ଥିଲା ବୁର୍ଜୋୟାର ସ୍ୱାର୍ଥରକ୍ଷା; ଥିଲାବୋଲି, 'ସ୍ୱରାଜ' ମାନେ ପାର୍ଟି ବୁଝିଚି ବ୍ରିଟିଶ୍ ଅଭିଭାବକତ୍ୱରେ ଡମିନିୟନ୍ ଷ୍ଟ୍ୟାଟସ୍ । ଇଂରେଜ୍ ସାଙ୍ଗରେ ଏପରି ଏକ ଚୁକ୍ତି, ଯା ଭାରତୀୟ ପୁଞ୍ଜିତନ୍ତ୍ରର ଅଗ୍ରଗତିକୁ ସାମ୍ରାଜ୍ୟବାଦର ଛତ୍ରଛାୟା ତଳେ କରିପାରିବ ସୁନିଶ୍ଚିତ ।

କମିଉନିଷ୍ଟ୍ ପାର୍ଟି ଯୋଉ ଇସ୍ତିହାର ପଠାଇଚି, ବୁର୍ଜୋୟା ଜାତୀୟତାବାଦର ଦେଉଳିଆ କର୍ମନୀତିକୁ ବ୍ୟାଖ୍ୟାକରି ନକଲ ସଂସଦୀୟ ରାଜନୀତି ଜାଗାରେ ଯୁଯୁତ୍ସୁ ଗଣଆନ୍ଦୋଳନକୁ ସମର୍ଥନ କରାଯାଇଚି ସେଥିରେ ଏବଂ କୁହାଯାଇଚି, ଯୁଯୁତ୍ସୁ ଗଣଆନ୍ଦୋଳନ ହିଁ ସାମ୍ପ୍ରଦାୟିକ ଦଙ୍ଗାହେଙ୍ଗାମର ସ୍ଥାୟୀ ପ୍ରତିଷେଧକ । ଅଭିଜାତଶ୍ରେଣୀ ନିଜ ସୁବିଧାସୁଯୋଗକୁ ଅତୁଟ ରଖିବାକୁ ଯେତେବେଳେ ରାଜନୀତି କରେ, ବିଭିନ୍ନ ଧର୍ମୀୟ ସମ୍ପ୍ରଦାୟର ସାଧାରଣ ଲୋକଙ୍କ ଭିତରେ ଯୋଉ ଗୋଟିଏ ବିଷୟରେ ଐକ୍ୟ ପରିଲକ୍ଷିତ ହୁଏ, ତା' କେବଳ ଶୋଷଣ । ଏକା କଳକାରଖାନାରେ ହିନ୍ଦୁ-ମୁସଲ୍‌ମାନ୍-ଆଦିବାସୀ ଗତରଖଟି ଗଳଦ୍‌ଘର୍ମ ହୁଅନ୍ତି, ପାଖକୁ ପାଖ ଲାଗିଥିବା ଖେତଖମାରରେ ଦିନ ପରେ ଦିନ ହଳ ବେଉଷଣ କାମରେ ଏକାଠି ଲାଗିଥାଆନ୍ତି, ଆଉ ଏକାଭାବରେ ଲୁଣ୍ଠିତହୁଅନ୍ତି ଜମିଦାର ମହାଜନ ଆଉ ସାମ୍ରାଜ୍ୟବାଦର ଭଳିକିଭଳି ଦଲାଲ୍‌ଙ୍କ ହାତରେ । ମୁସଲ୍‌ମାନ୍ ମାଲିକ ମୁସଲ୍‌ମାନ୍ ମୂଲିଆକୁ ଅପେକ୍ଷାକୃତ ଅଧିକ ମଜୁରି ଦିଏନା, ହିନ୍ଦୁ ଜମିଦାର ହିନ୍ଦୁ ପ୍ରଜାଠୁଁ କମ୍ ଖଜଣା ନିଏନା, ମହାଜନ କାହାରି ପାଖରୁ ନିଏନା କମ୍ କଳନ୍ତର । ଏଇ ନିୟମରୁ ଶୋଷିତ ମଧ୍ୟବିତ୍ତ, ଯେପରି, କାରିଗର ଶିକ୍ଷକ କି ଦୋକାନୀ, ଜଣେହେଲେ ବ୍ୟତିକ୍ରମ ନୁହେଁ । ଅର୍ଥନୀତିକ ସ୍ୱାର୍ଥବୋଧରେ ସେମାନଙ୍କୁ ସଚେତନ କରାଯାଉ, ତା' ହେଲେଯାଇ ଅଭିନ୍ନ ଶୋଷଣଜାଲରେ ଛନ୍ଦିପଡ଼ିଥିବା ଦେଶର ୯୮ ଶତାଂଶ ଲୋକଙ୍କ ପାଇଁ ସାମ୍ପ୍ରଦାୟିକ ଦଙ୍ଗାରେ ଲିପ୍ତହେବାର କୋଉହେଲେ ସଂଗତ କାରଣ ରହିବନାହିଁ; ସାଧାରଣ ଶତ୍ରୁ ବିପକ୍ଷରେ ସମବେତଭାବେ ସଂଗ୍ରାମକରିବାକୁ ସାହସିକ ନେତୃତ୍ୱ ବି ମିଳିବ, ନିର୍ମୂଳ ହୋଇପାରିବ ଶୋଷଣର ଶକ୍ତି ସାଙ୍ଗକୁ ଦଙ୍ଗାହେଙ୍ଗାମର ଧର୍ମୀୟ ପ୍ରରୋଚନା । ବିଶେଷତଃ ହିନ୍ଦୁ ଓ

ମୁସଲ୍‌ମାନ୍‌ଙ୍କ ଭିତରେ ପାରସ୍ପରିକ ଅବିଶ୍ୱାସର ପଟଭୂମି ଯେହେତୁ ଐତିହାସିକ, ସାମ୍ପ୍ରଦାୟିକ ସମସ୍ୟାକୁ ଜାତୀୟ ସଂଖ୍ୟାଲଘୁସମସ୍ୟା ଭାବରେ ବିବେଚନାକରିବା ଦରକାର, କାହିଁକିନା, ଜାତୀୟତାବାଦୀ ଆନ୍ଦୋଳନର ପ୍ରାଣଶକ୍ତିକୁ ରକ୍ତଶୂନ୍ୟ କରିଦେଇପାରେ ସାମ୍ପ୍ରଦାୟିକତା ଭଳି ସଂକ୍ରାମକ ବ୍ୟାଧି । ଏବେ ଯେତେବେଳେ ସାର୍ବିକ ଜାତୀୟତାବାଦରୁ ସଂଗ୍ରାମ ଘୁଞ୍ଚିଯାଉଚି ସଂସଦୀୟ ରାଜନୀତିକୁ ହରେକ୍ ରକମ ବିଭେଦସୃଷ୍ଟିକାରୀ ସଂକୀର୍ଣ୍ଣତା ମଦତ୍‌ପାଇବା ସହଜ । ସେ ପ୍ରବଣତାକୁ ପ୍ରତିହତ କରିପାରେ ଯୁଯୁତ୍ସୁ ଗଣଆନ୍ଦୋଳନ ସାହାଯ୍ୟରେ ଜାତୀୟତାବାଦର ପୁନର୍ଗଠନ । ବିଶେଷତଃ ଯେହେତୁ ଅସହଯୋଗ ଓ ଖିଲାଫତ୍, ରାଜନୀତିକ ସଚେତନତା ବିନିମୟରେ, ଧର୍ମାନ୍ଧତାକୁ କରିଚି ତ୍ୱରାନ୍ୱିତ । ଆତ୍ମଘାତୀ ସେ ତ୍ରୁଟିକୁ ସଂଶୋଧନ କରିବାକୁ ହେଲେ ଭୂମିସ୍ୱତ୍ୱ, ଖଜଣା ହାର, ବନ୍ଧକୀ ମୂଲ୍ୟ, ନିତ୍ୟାବଶ୍ୟକ ପଣ୍ୟର ଦରଦାମ୍, ଦିନମଜୁରୀ, ପ୍ରାଥମିକ ଶିକ୍ଷା ପ୍ରଭୃତି ତାତ୍‌କ୍ଷଣିକ ଓ ସେକିଉଲାର୍ ଦାବିର ପତାକା ତଳେ ଦେଶବାସୀଙ୍କୁ ଏକତ୍ରକରିବା ଦରକାର, କାହିଁକିନା, ପ୍ରାତ୍ୟହିକ ଜୀବନନିର୍ବାହ ସହିତ ଦାବିଗୁଡ଼ାକ ଓତପ୍ରୋତଃ । ମୌଳିକ ଏ ବିଷୟଗୁଡ଼ିକ ଯେହେତୁ ଚିହ୍ନିତକରେ ଶ୍ରେଣୀସ୍ୱାର୍ଥ, ଆପାମର ଜନସାଧାରଣଙ୍କୁ ତାର ରାଜନୀତିକ ତାତ୍ପର୍ଯ୍ୟ ବୁଝାଇବା ମଧ୍ୟ ଅନାୟାସ । ତା'ଛଡ଼ା, ଗଣତାନ୍ତ୍ରିକ ଆଦର୍ଶ ଯେହେତୁ ନିର୍ବିଶେଷ, କେବଳମାତ୍ର ସଂଖ୍ୟାଲଘୁ ସ୍ୱାର୍ଥର ପ୍ରତୀକ ହେବାକୁ ଅଯୋଗ୍ୟ । ଜାତୀୟତାବାଦର ପ୍ରଧାନ ସ୍ତମ୍ଭ ହେବ ତେଣୁ ସଂଖ୍ୟାଲଘୁର ନିରାପତ୍ତା । ସେଇ ନିରାପତ୍ତାକୁ ନିଶ୍ଚିତକରିବାକୁ ସଂଗ୍ରାମ ଯଦି ବ୍ୟର୍ଥହୁଏ, ସାମ୍ରାଜ୍ୟବାଦ ସୁବିଧା ପାଇଯାଏ ସାମ୍ପ୍ରଦାୟିକତାକୁ ଜାତୀୟତାବାଦ ବିପକ୍ଷରେ ବ୍ୟବହାରକରିବାକୁ । ଏକମାତ୍ର ଗ୍ୟାରେଣ୍ଟି, ସେ ଆପଦ ବିରୋଧରେ, ଆନ୍ଦୋଳନର ଅର୍ଥନୀତିକ ଭିତ୍ତି; କାହିଁକିନା, କୃତ୍ରିମ ଓ ଅସ୍ପଷ୍ଟ ସାମ୍ପ୍ରଦାୟିକତାକୁ ଯା ଚୂର୍‌ମାର୍ କରିପାରେ, ତା ଏକମାତ୍ର ଶ୍ରେଣୀଗତ ରଣକୌଶଳ, କ୍ଲାସ୍-ଷ୍ଟ୍ରାଟେଜି ।

ତେବେ, ଭାରତରେ ଲୋକଙ୍କ ଶ୍ରେଣୀପରିଚୟ ବିବିଧ, ସାମ୍ରାଜ୍ୟବାଦର ସଂପର୍କ ତାଙ୍କ ସାଙ୍ଗରେ ସବୁଠି ତେଣୁ ଏକାରକମ ନୁହେଁ, ଏବଂ ସମାନନୁହେଁ ବୋଲି, ବ୍ରିଟିଶ୍ ନିପୀଡ଼ନର ଚାପ ମଧ୍ୟ ଜନସଂଖ୍ୟାର ସର୍ବସ୍ତରରେ ସମାନ ନୁହେଁ । ଆପଣାର ଶ୍ରମଶକ୍ତିକୁ ପ୍ରୟୋଗକରି ଯୋଉ ଶ୍ରେଣୀ ଧନ ଉତ୍ପାଦନକରେ, ଶୋଷଣର ଶରବ୍ୟ ସର୍ବଦା ସେଇ ଶ୍ରେଣୀ; ଯେପରି କୃଷକ ଓ ଶ୍ରମିକ, ଭାରତର ଜନସଂଖ୍ୟାର ନବେ ଶତାଂଶ । ଅଭିଜାତଶ୍ରେଣୀ ସହିତ ବି ଇଂରେଜ୍‌ର କଳହ ରହିଚି; କିନ୍ତୁ କଳହକେନ୍ଦ୍ରରେ ରହିଚି କେବଳ ନିଷ୍କାଷିତ ସଂପଦର ଭାଗବଣ୍ଟା । ରଜାଜମିଦାର କି କଳକାରଖାନାର

ମାଲିକ ଶ୍ରମଜୀବୀଙ୍କୁ ଶୋଷଣକରି ଅୟସ କରନ୍ତି; ସାମ୍ରାଜ୍ୟବାଦର ଏକ ମୁଖ୍ୟ ନୀତି କିନ୍ତୁ ଭୂସ୍ୱାମୀ ବା ଶିଳ୍ପପତିଙ୍କୁ ଅର୍ଥନୀତିକ ବିକାଶର ସୁଯୋଗ ଦିଏନା, କାହିଁକିନା, କୃଷକ-ଶ୍ରମିକଙ୍କ ଉପାର୍ଜନର ବଡ଼ ଅଂଶଟା ଖର୍ଚ୍ଚହୁଏ ସାମ୍ରାଜ୍ୟବାଦର ପୁଷ୍ଟିସାଧନ ନିମନ୍ତେ; ବୁର୍ଜୋୟା ଭାଗରେ ଯା ପଡ଼େ ମଧ୍ୟସ୍ୱତ୍ୱଭୋଗୀର ସାମାନ୍ୟ କମିଶନ୍ ମାତ୍ର; ଅଥଚ ବୁର୍ଜୋୟା ଚାହେଁ ଶୋଷଣର ଏପରି ଅଂଶ ଯା ବଢୁଥିବ କ୍ରମାଗତ; ଅର୍ଥାତ୍, ଭାରତୀୟ ଜନଗଣର ଶ୍ରମଶକ୍ତି ଉପରେ ଏକାଧିକାର । ବୁର୍ଜୋୟା ତେଣୁ ବୁଝିପାରିନାହିଁ, ସାମ୍ରାଜ୍ୟବାଦକୁ ଆଘାତ ନକଲେ, ଏକଚାଟିଆ ମୁନାଫାକୁ ଓଗାଳି ହେବନାହିଁ । ଅର୍ଥାତ୍, ସର୍ବଶ୍ରେଣୀର ଲୋକ ଏକଜୋଟ୍‌ହୋଇ ପ୍ରତିଘାତ ନକଲେ ବିଦେଶୀ ଅପଶାସନରୁ ଦେଶକୁ ମୁକୁଳାଇ ହେବନାହିଁ । ବ୍ୟାପକ ସେଇ ଆନ୍ଦୋଳନ ସଂଗଠିତ ହେଉନାହିଁ ବୁର୍ଜୋୟା ଯେହେତୁ ଏକମାତ୍ର ଆପଣା ସ୍ୱାର୍ଥରେ ସାମ୍ରାଜ୍ୟବାଦୀ ଶକ୍ତି ସାଙ୍ଗରେ ସନ୍ଧିକରି ଚାଲିଚି ଅନବରତ । ହେଲେସୁଦ୍ଧା, ବିପ୍ଳବର ରହିଚି ନିଜସ୍ୱ ସ୍ୱାଭାବିକ ନିୟମ, କାହିଁକିନା, ପରିସ୍ଥିତି ଅସହଣୀୟ ହେଲେ ଯାଇ ଆବାଳବୃଦ୍ଧବନିତା ଶୋଷଣ ବିରୋଧରେ ଅଣ୍ଟାଭିଡ଼ି ବାହାରିପଡ଼ନ୍ତି, କିନ୍ତୁ ଜାତୀୟତାବାଦୀ ବୁର୍ଜୋୟା ଚାହେଁ, ଦେଶ ସ୍ୱାଧୀନହେଲେ, ସେଇ ଏକା ହେବ ସର୍ବମୟ କର୍ତ୍ତା; ଏଣେ ଜନଶକ୍ତି ରୂପକ ଅମୋଘ ଅସ୍ତ୍ରକୁ ବ୍ୟବହାରକରିବାକୁ ସାହାସ କୁଳାଏନା । କିନ୍ତୁ ଏକମାତ୍ର ଲୋକଶକ୍ତି ହିଁ ଏକକଭାବେ ମୁଷ୍ଟିମେୟ ସାମ୍ରାଜ୍ୟବାଦୀଙ୍କୁ ସନ୍ତ୍ରସ୍ତ କରିପାରେ, ଯଦିଓ ବୁର୍ଜୋୟା ଯେହେତୁ ଯୌଥଭାବେ ସାମ୍ରାଜ୍ୟବାଦ ସହିତ ଚୁକ୍ତିବଦ୍ଧ, ସେଇ ୨% କୋଲାବରେଟରଙ୍କ ସ୍ୱାର୍ଥରକ୍ଷାକରିବାକୁ ସାମ୍ରାଜ୍ୟବାଦର ଯୂପକାଠରେ ବଳିପଡୁଚି ଅବଶିଷ୍ଟ ୯୮%ଙ୍କ ସ୍ୱାର୍ଥ, ଯା ପ୍ରକୃତ ଜାତୀୟ ସ୍ୱାର୍ଥ ।

କିନ୍ତୁ, ସାମ୍ରାଜ୍ୟବାଦ କାହିଁକି ଅବା ବୁର୍ଜୋୟା ସାଙ୍ଗରେ ଚୁକ୍ତିକରିବାକୁ ଆସେ ? ଧନତନ୍ତ୍ରର ସାଧାରଣ ସଂକଟ ତାକୁ ବାଧ୍ୟକରେ; ସେଇ ସଂକଟ ହିଁ ଦୁର୍ବଳକରିଦେଇଚି ପୁରୁଣା ଉପନିବେଶ-ନୀତିକୁ, ଭାରତୀୟ ପଣ୍ୟର ବଜାରକୁ ଆକ୍ରାନ୍ତକରିଚି ଜାପାନ ଯୁକ୍ତରାଷ୍ଟ୍ର ଓ ଜର୍ମାନୀ ପ୍ରଭୃତି ରାଜ୍ୟ । ଅନୁପ୍ରବେଶକାରୀ ସେଇ ଶକ୍ତି ସାଙ୍ଗରେ ପ୍ରତିଦ୍ୱନ୍ଦ୍ୱିତା କରିପାରେ ଶସ୍ତାଶ୍ରମ ମାଧ୍ୟମରେ ଉତ୍ପନ୍ନ ଭାରତୀୟ ପଣ୍ୟ, ଏବଂ ସେଥିପାଇଁ, ଲଗ୍ନିପୁଞ୍ଜିର ତାଡ଼ନାରେ ବ୍ରିଟେନ୍ ଗ୍ରହଣକରିଚି ଭାରତର ଶିଳ୍ପୋନ୍ନୟନ ପରିକଳ୍ପନା, ଏବଂ ଫଳତଃ, ବ୍ରିଟିଶ୍ ସାମ୍ରାଜ୍ୟସାରା ମୂଳଧନ ସଂଚୟର ଅବକ୍ଷୟ ଘଟିଚି କ୍ରମଶଃ, ପରିକଳ୍ପିତ ଶିଳ୍ପୋନ୍ନୟ ଆଗେଇପାରିନାହିଁ । ବ୍ରିଟେନ୍ ତେଣୁ ଭାରତର ଶିଳ୍ପୋନ୍ନୟନ ସକାଶେ ଭାରତରୁ ହିଁ ନିଷ୍କାଷିତକରିଚି ବିନିଯୋଗଯୋଗ୍ୟ ମୂଳଧନ । ପରିଶେଷରେ, ପ୍ରଥମ ମହାଯୁଦ୍ଧ ସରିଯିବା ସଙ୍ଗେ ସଙ୍ଗେ ଜାତୀୟବାଦୀ ଆନ୍ଦୋଳନ ଯେତେବେଳେ

ଆହରଣକରିଚି ଗଣଚରିତ୍ର, ସାମ୍ରାଜ୍ୟବାଦ ବାଧହୋଇଚି ଉପନିବେଶର ସର୍ବଶ୍ରେଣୀର ଲୋକଙ୍କୁ ସ୍ୱପକ୍ଷରେ ମୋବିଲାଇଜ୍ କରିବାକୁ ।

ପ୍ରଜାରାଷ୍ଟ୍ରର ପ୍ରଭାବଶାଳୀ ଲୋକଙ୍କ ମଦତ୍ ବିନା କୌଣସି ବିଦେଶୀଶକ୍ତି ରାଜତ୍ୱ କରିପାରେନା ବେଶିଦିନ, କାହିଁକିନା, ସ୍ଥାୟୀ ଶାସନ ସକାଶେ ଅପରିହାର୍ଯ୍ୟ ସ୍ଥାୟୀ ସାମାଜିକ ଭିତ୍ତି । ଯୁଦ୍ଧଲାଗିବା ପର୍ଯ୍ୟନ୍ତ ଇଂରେଜ୍‌କୁ ସେ ଭିତ୍ତି ଯୋଗାଇଦେଇଚି ଜମିଦାର ଓ କୃଷକ, ଜନସଂଖ୍ୟାର ବୃହଦଂଶ । ମାତ୍ର ଏ ଦୁଇଟି ବର୍ଗର ସମର୍ଥନର ପ୍ରେକ୍ଷିତ ଅଲଗା । ଭୂସ୍ୱାମୀର ସମର୍ଥନ ଇତିବାଚକ ଓ ଆତ୍ମସଚେତନ; କୃଷକର ସମର୍ଥନ ଅନ୍ଧ-ଆନୁଗତ୍ୟ । ସାମନ୍ତବାଦୀ ପରିମଣ୍ଡଳରେ ତା'ର ଶ୍ରେଣୀଚେତନା ଜାଗ୍ରତ ହୋଇନାହିଁ; ଯୁଦ୍ଧ ଉତାରୁ ସେ ଆନୁଗତ୍ୟ ଫିକାପଡ଼ିଯାଇଚି, ବହୁକାଳର ଅବଦମିତ ବିକ୍ଷୋଭ ଧାରଣକରିଚି କ୍ୱଚିତ୍ କଦାଚିତ୍ ବିଦ୍ରୋହର ଚେହେରା, ସାମ୍ରାଜ୍ୟବାଦ ନିଶ୍ଚିନ୍ତ ହୋଇପାରିନାହିଁ; ଖୋଜିଚି ନୂତନ ଶ୍ରେଣୀ-ମିତ୍ର; ଏବଂ ସେଇ ମିତ୍ର ହିଁ ବୁର୍ଜୋୟା(ବ୍ୟାଙ୍କର୍, ସୌଦାଗର, ଶିଳ୍ପପତି, ଉଚ୍ଚପଦସ୍ଥ ଅମଲା ଆଉ ପେସାଦାରଗୋଷ୍ଠୀ ଯିଏ ଅବଶିଷ୍ଟ ଲୋକଙ୍କ କର୍ମଧାରା ସହିତ ଅଙ୍ଗାଙ୍ଗୀ) । ଯୁଦ୍ଧପରବର୍ତ୍ତୀ କେତେବର୍ଷ ପୁରାଦମ୍‌ରେ ଚାଲିଚି ସାମ୍ରାଜ୍ୟବିରୋଧୀ ଆନ୍ଦୋଳନ; ମାତ୍ର ବିସ୍ଫୋରଣ ଆଶଙ୍କାକରି ବୁର୍ଜୋୟା ହୋଇପଡ଼ିଚି ଭୀତତ୍ରସ୍ତ; ଏବଂ ସେତିକିବେଳେ ବାଛିନେଇଚି ସାମ୍ରାଜ୍ୟବାଦର କନିଷ୍ଠ ଅଂଶୀଦାରର ଭୂମିକା । ବୁର୍ଜୋୟାର ଏ କର୍ତ୍ତବ୍ୟଚ୍ୟୁତି କିନ୍ତୁ ଜାତୀୟତାବାଦୀ ସଂଗ୍ରାମ ଦିହରେ ଲଗାଇଦେଇଚି କଳଙ୍କ, କାହିଁକିନା, ଆପୋସ ଆଉ ଆତ୍ମସମର୍ପଣ ୧୯୨୨ ପାଖରୁ ଜନସାଧାରଣଙ୍କ ଆତ୍ମବଳିକୁ ବୁର୍ଜୋୟା ସ୍ୱାର୍ଥରେ କରିଯାଉଚି ଅପବ୍ୟୟ । ସେଥିପାଇଁ, ଆଇନ୍‌ସଭା କି କାଉନସିଲ୍ ବସିଲା ଉତାରୁ ବାହାରିପଡ଼ିଚି ଇଂରେଜ୍‌କୁ ବିରୋଧକରିବା ପ୍ରହସନ, His Majesty's Oposition ! ମାନେ, ବୁର୍ଜୋୟା ପ୍ରତିନିଧି କୁଆଡ଼େ ସାମ୍ରାଜ୍ୟବାଦକୁ ତଥାପି କରୁଚି ପ୍ରତିରୋଧ ! ହେଲେସୁଦ୍ଧା, ବୁର୍ଜୋୟା ସ୍ୱାର୍ଥ ଓ ସାମ୍ରାଜ୍ୟବାଦର ସାମଞ୍ଜସ୍ୟବିଧାନ, ଆଉ ଯା କରୁ, ଜାତୀୟ ସଂଗ୍ରାମର ମୂଳକାରଣକୁ ବିଦୂରିତ କରିପାରେନା । ଜନମାନସରେ ଧୂମାୟିତ ସ୍ୱାଧୀନତା ଆକାଂକ୍ଷାକୁ ମୁଷ୍ଟିମେୟ ବୁର୍ଜୋୟା ଚକ୍ରାନ୍ତକରି ଲିଭାଇଦେଇପାରେନା ।

ସାମ୍ରାଜ୍ୟବାଦ ସହିତ ଜାତୀୟ ବୁର୍ଜୋୟାର ଅଲିଖିତ ଚୁକ୍ତି ଯେହେତୁ ରାଜନୀତିର ନିଷ୍ପେଷଣ ଓ ଅର୍ଥନୀତିକ ଦୋହନ ଦେଶର ଅଠାନବେ ଶତାଂଶ ଲୋକଙ୍କୁ ମୁକ୍ତିର ବାଟ ଦେଖାଇପାରେନା, ସାମ୍ରାଜ୍ୟର ପ୍ରାପ୍ୟାଂଶକୁ ହ୍ରାସକରି ଦେଶୀୟ ପୁଞ୍ଜିପତିଙ୍କୁ କିଛିହେଲେ ରିହାତି ଦିଆଯାଏନା । ଏ ପରିସ୍ଥିତିରେ ଶୋଷଣର ତୀବ୍ରତା ବଢ଼ିବ,

କାହିଁକିନା, ଗତରଖଟି ପେଟପୋଷୁଥିବା ଲୋକ ଶ୍ୱେତାଙ୍ଗ ପ୍ରଭୁ ସକାଶେ ଯେତେ ଉଦ୍‌ବୃତ୍ତ ଉତ୍ପାଦନକରନ୍ତି, ତଦପେକ୍ଷା ଅଧିକ ମୂଲ୍ୟ ତିଆରିକରିବାକୁ ପଡ଼ିବ ସ୍ୱଦେଶର ପୁଞ୍ଜିତନ୍ତ୍ର ସକାଶେ । ତାହେଲେ ଅବଶ୍ୟ, ସଂଗ୍ରାମ ବି ପାଇବ କ୍ଷିପ୍ରଗତି, ସଂଖ୍ୟାଗରିଷ୍ଠ ମଣିଷଙ୍କ ସ୍ୱାର୍ଥରକ୍ଷା ସକାଶେ ବଦଳିଯିବ ମୁକ୍ତିସଂଗ୍ରାମର କର୍ମସୂଚୀ । ଯୋଉ ଅସ୍ପଷ୍ଟତା ଓ ସ୍ୱାର୍ଥକାତରତା ସ୍ୱରାଜ୍‌ପାର୍ଟିର କାର୍ଯ୍ୟକ୍ରମକୁ କରିଚି ଆବିଳ, ଆନ୍ଦୋଳନ ହୋଇପାରିବ ସେଥିରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । କୃଷିସମସ୍ୟା ସମ୍ବନ୍ଧରେ ଆନ୍ଦୋଳନର ବକ୍ତବ୍ୟ ତେଣୁ ସର୍ବାଦୌ ସ୍ୱଚ୍ଛହେବା ଦରକାର, କାହିଁକିନା, ଦେଶର ୭୦ ଶତାଂଶ ଲୋକ ଯେହେତୁ କୃଷକ, କୃଷକର ସ୍ୱାର୍ଥରକ୍ଷା ଜାତୀୟ ସଂଗ୍ରାମର ପ୍ରଧାନ କର୍ତ୍ତବ୍ୟ । କୃଷକକୁ ପାଖକୁ ଆଉଜେଇବାକୁ ଚେଷ୍ଟାକରୁଚି ସାମ୍ରାଜ୍ୟବାଦୀ, ଅନ୍ତତଃ ଏକାଧିକ ପ୍ରଦେଶରେ ରୟତୀସ୍ୱତ୍ୱର ସଂସ୍କାରକରିବାକୁ ଚାପଦେଉଚି ଜମିଦାରଙ୍କ ଉପରେ, କାହିଁକିନା, ସ୍ୱତ୍ୱ-ସଂସ୍କାରର ଆଇନ୍‌ଯୋଗୁଁ ୧୯୧୯-୨୧ ଭିତରେ ମେଳିଆ ଯୋଉ ଭୀତିପ୍ରଦ ପରିସ୍ଥିତି ସୃଷ୍ଟିକରିଚନ୍ତି, ସେଥିରେ ହସ୍ତକ୍ଷେପ କରିବାକୁ ଆଗେଇଆସିଚି ଇଂରେଜ୍ । କୃଷକର ଆନୁଗତ୍ୟ ଫେରିପାଇବାକୁ ପରବର୍ତ୍ତୀ ପଦକ୍ଷେପ ତେଣୁ ରୟାଲ୍ କମିଶନ୍ ସ୍ଥାପନ । ସାହାଯ୍ୟକରିବା ଆଳରେ କେବଳ ପ୍ରତାରଣା, କାହିଁକିନା, ମୁନାଫାଅର୍ଜ୍ଜନର ମୂଳଉତ୍ସ, କୃଷକକୁ ନିଷ୍ଠୁର ଶୋଷଣ, ତଥାପି ରହିଚି ଅବ୍ୟାହତ । ଗ୍ରହଣକରିବାକୁ ହେବ ତେଣୁ ବୈପ୍ଳବିକ କର୍ମସୂଚି, ମୁଖାଫାଡ଼ି ଦେଖାଇଦେବାକୁ ପଡ଼ିବ ଗୃହୀତ ବା ପ୍ରସ୍ତାବିତ ଆଇନ୍‌ର ଅସଲ ଚେହେରା । ୧୯୨୩ ନିର୍ବାଚନବେଳେ, ସ୍ୱରାଜପାର୍ଟି ଇସ୍ତିହାରରେ ଲେଖିଥିଲା, 'ସନ୍ଦେହନାହିଁ, ପ୍ରଜାଙ୍କ ତରଫରୁ ପାର୍ଟି ଦାବିକରିବ ନ୍ୟାୟବିଚାର; ମାତ୍ର ପ୍ରଜା ଯଦି ଜମିଦାର ପ୍ରତି ଅନ୍ୟାଯ୍ୟ ବିଚାରରେ ଲିପ୍ତହେବେ, ପ୍ରତ୍ୟାଶିତ ନ୍ୟାୟବିଚାରର ପ୍ରକୃତି ହୋଇଯିବ ଦୁର୍ବଳ ।' ଜାତୀୟତାବାଦୀ ଆନ୍ଦୋଳନ ଯଦି କୃଷକର ସକ୍ରିୟ ସହଯୋଗ କାମନାକରେ, ଏଇ ପ୍ରତିକ୍ରିୟାଶୀଳ ଆଭିମୁଖ୍ୟରୁ ନିଜକୁ ଆଗେ ମୁକ୍ତକରିବ । ମଧ୍ୟମବର୍ଗ ଭୂସ୍ୱାମୀ-ଭୋଟ୍‌ପ୍ରାର୍ଥୀଙ୍କ ସକାଶେ ଏ କର୍ମସୂଚୀ ଏକାନ୍ତ ଜରୁରୀ, ଯଦିଓ ପ୍ରତ୍ୟକ୍ଷଭାବରେ ପାର୍ଟି ପାଇଁ କ୍ଷତିକର । କିନ୍ତୁ ଜମିମାଲିକ ଦିହରେ ଟିପ ଲାଗିବନାହିଁ, ଏମିତି ହୁଏ ଯଦି ପାର୍ଟିର ଉତ୍କଣ୍ଠା, ତେବେ କୃଷକ ପ୍ରତି ଯୋଉ ନ୍ୟାୟବିଚାର କରାଯିବ, ଗୋଟାପଣେ ତା' ଅବିଚାର । ଜମିଦାରଗୋଷ୍ଠୀ ଏକ ପରାଙ୍ଗପୁଷ୍ଟ ସାମାଜିକ ଶ୍ରେଣୀ, ଚାଷୀ ଦିହରୁ ରକ୍ତ ନଚୂଷିଲେ ବଞ୍ଚିପାରିବ ନାହିଁ; ମାତ୍ର ଦେଶର ଅର୍ଦ୍ଧାଧିକ ଅଞ୍ଚଳରେ ଗଭର୍ଣ୍ଣମେଣ୍ଟ୍ ହିଁ ଜମିଦାର: ନ୍ୟାୟବିଚାରର ନିକିତି ନିଶ୍ଚୟ ତାହାରି ଆଡ଼କୁ ଝୁଲିପଡ଼ିବ । ସ୍ୱରାଜ ପାର୍ଟିର କୃଷିନୀତି ନିର୍ମୂଳୀଲଟା ମୂଳରେ ପାଣି ଖାଲି ଢ଼ାଳେନା, ସାମ୍ରାଜ୍ୟବାଦକୁ ମଧ୍ୟ ପ୍ରଦାନକରେ ଅନନ୍ତ ଆୟୁଷ ।

ଜାତୀୟତାବାଦୀ ସଂଗ୍ରାମର କାର୍ଯ୍ୟକ୍ରମ ତେଣୁ ବିଚାରର ମାନଦଣ୍ଡକୁ ଭାରିକରିବ କୃଷକ ସପକ୍ଷରେ, ଅନ୍ୟଥା ସଂଗ୍ରାମ ହୋଇପାରେନା ସବେଗ ।

ଅନ୍ୟଭାବରେ କୁହାଯାଇପାରେ, ସବେଗ ଆନ୍ଦୋଳନକୁ ନେତୃତ୍ୱ ଦେଇପାରେ କେବଳ ଜନଗଣଙ୍କ ପାର୍ଟି; ଏବଂ ସ୍ପଷ୍ଟ ଓ ବିଶ୍ଳେଷିତ କାର୍ଯ୍ୟସୂଚୀ ଆନ୍ଦୋଳନକୁ ପରିଚାଳନା ନକଲେ, ଲକ୍ଷ୍ୟଭ୍ରଷ୍ଟ ତରୀ ପରି ଜାତୀୟତାବାଦୀ ସଂଗ୍ରାମ ତୀର ଖୋଜି ପାଇବନାହିଁ । ଆନ୍ଦୋଳନର ଉଦ୍ଦେଶ୍ୟ ସମ୍ବନ୍ଧରେ କିନ୍ତୁ ସ୍ପଷ୍ଟ କିଛି କୁହାଯାଉନାହିଁ, ସ୍ୱରାଜର ସର୍ବାଙ୍ଗୀନ ବାଖ୍ୟା କରାଯାଉଚି 'ଜାତୀୟ ସ୍ୱାଧୀନତା' । ଏ ବ୍ୟାଖ୍ୟା ଏପରି ଅମୋଘ ଯେ ତା'ର ସାମ୍ବିଧାନିକ ଭାଷ୍ୟ ଏକେବାରେ ଅବାନ୍ତର । ସ୍ୱାଧୀନତା କିନ୍ତୁ ସ୍ୱକୀୟ ସରକାର ପ୍ରତିଷ୍ଠାକରିବା ଅଧିକାର, ଯୋଉ ଅଧିକାର ନିର୍ଦ୍ଧାରଣକରିବ ସମଗ୍ର ଦେଶବାସୀଙ୍କ ରାଜନୀତିକ, ଅର୍ଥନୀତିକ, ସାଂସ୍କୃତିକ କର୍ମଧାରା । ସହଜ ଏଇ କଥାଟାକୁ କିନ୍ତୁ ଦ୍ୟର୍ଥହୀନ ଭାଷାରେ ଲୋକସମାଜରେ ଉପସ୍ଥାପିତ କରାଯାଉନାହିଁ, ଯଦିଓ ଏଇ ସ୍ପଷ୍ଟୀକରଣ ହୁଅନ୍ତା ଜାତୀୟତାବାଦକୁ ପୁନର୍ଗଠିତ କରିବା ଦିଗରେ ପ୍ରଥମ ପଦକ୍ଷେପ । କି କି ସର୍ତ୍ତରେ ଗୃହୀତହେବ କ୍ଷମତା, ସେ ବାଦାନୁବାଦର ଧୂମ୍ରପଟଳରେ ପ୍ରଧାନ ଉଦ୍ଦେଶ୍ୟକୁ ଆଚ୍ଛନ୍ନ କରିପକାଇଲେ ଚଳିବନାହିଁ, କାହିଁକିନା, ଏକ୍ଷଣି ତ ଯାବତୀୟ ଜାତୀୟତାବାଦୀ ଡମିନିୟନ୍ ଷ୍ଟ୍ୟାଟସ୍ ଆଦାୟକରିବାକୁ ପ୍ରତିଶ୍ରୁତିବଦ୍ଧ, ଯଦିଓ ସେ ଦାବି ମଧ୍ୟ ପ୍ରତ୍ୟକ୍ଷ କି ଦୃଢ଼ଭାବରେ କେହି କରୁନାହିଁ । ପ୍ରତିନିଧିତ୍ୱହୀନ ଆଇନ୍‌ସଭାରେ ଏଭଳି କିଛି ବ୍ୟବସ୍ଥାଗ୍ରହଣ ଚରମ ସଂସ୍କାରପନ୍ଥୀଙ୍କୁ ହୁଏତ ଶାନ୍ତକରିବ ସତ୍‌ସାମାନ୍ୟ, ମାତ୍ର ଏଗୁଡ଼ାକ ପ୍ରହସନ ମାତ୍ର, ଜାତି ପ୍ରତି ପୁରାଦସ୍ତୁର ବିଶ୍ୱାସଘାତକତା । ପୂର୍ଣ୍ଣ ଓ ନିଃସର୍ତ୍ତ ସ୍ୱାଧୀନତା ଭିନ୍ନ ଅନ୍ୟକୋଉ ସ୍ୱାଧୀନତା ଜନଗଣର ସ୍ୱାଧୀନତା ହୋଇପାରେନା; ଏବଂ ଏ ଦାବି ହାସିଲ୍‌କରିବାକୁ ସଂଗ୍ରାମ କରିବାକୁ ହେଲେ ଆବଶ୍ୟକ ଏକ ଲୋକତନ୍ତ୍ର (ପିପିଲ୍ସ ପାର୍ଟି) । ତା' ହେଲେସୁଦ୍ଧା ଜାତୀୟ ସ୍ୱାଧୀନତା ହୋଇପାରେନା ସ୍ୱୟଂସମ୍ପୂର୍ଣ୍ଣ; କାହିଁକିନା, ଯୋଉ ସ୍ୱାଧୀନତା ସକାଶେ ସଂଗ୍ରାମର ଅଭ୍ୟୁତ୍ଥାନ, ତା'ର କଡ଼ାକର ମୂଲ୍ୟ ରହିବନାହିଁ ଯଦି ଜନସାଧାରଣଙ୍କ ସେଇ ରାଜନୀତିକ, ଆର୍ଥସାମାଜିକ, ସାଂସ୍କୃତିକ ଅଧିକାରଗୁଡ଼ିକ ସ୍ୱାଧୀନତା ସାବ୍ୟସ୍ତ ନକରେ, ଯୋଉ ଅଧିକାରଗୁଡ଼ିକରୁ ସେମାନଙ୍କୁ ବଞ୍ଚିତକରାଯାଉଚି କ୍ରମାଗତ ।

ଜାତୀୟ ସ୍ୱାଧୀନତାକୁ ନିଖୁଣଭାବେ ରୂପାୟିତ କରିପାରିବ କେବଳ ପ୍ରାଗ୍ରସର ଗଣତାନ୍ତ୍ରିକ ଭିତ୍ତି ଉପରେ ଗଠିତ ରିପବ୍ଲିକ୍ୟାନ୍ ରାଷ୍ଟ୍ର; ସର୍ବଜନୀନ ପ୍ରାପ୍ତବୟସ୍କ (ପୁରୁଷ ଓ ନାରୀ) ଭୋଟାଧିକାର ବଳରେ ନିର୍ବାଚିତ ବିଧାନସଭା । ତେବେଯାଇ ଆଇନ ସଭା ହୋଇପାରିବ ଜନଗଣଙ୍କ ସର୍ବୋଚ୍ଚ ସଂଗଠନ, ଯା ସବୁରକମ ବର୍ଣ୍ଣ ଓ ଶ୍ରେଣୀଗତ

ପ୍ରିଭିଲେଜ୍‌କୁ ବିଦାୟ ଦେଇପାରିବ; ତେବେଯାଇ ଗଣତନ୍ତ୍ରିକରଣ ହୋଇପାରେ ଅର୍ଥବହ । ଅନ୍ୟ ଶବ୍ଦରେ, ମୌଳିକ ଅର୍ଥନୀତିକ ଅଭାବ-ଅଭିଯୋଗକୁ ଦୂରକରି, 'ସ୍ୱାଧୀନତା' ଦେଇପାରିବ ଅପେକ୍ଷାକୃତ ଉଚ୍ଚତର ଜୀବନମାନର ଗ୍ୟାରେଣ୍ଟି । ଯିଏ ଜମି ଚଷେ, ସେଇ କେବଳ ହେବ ଜମିର ମାଲିକ, ଆଉ ଜମାରୁ ଦିହଖଟଣି ନ ଖଟି ଯୋଉ ଶ୍ରେଣୀ ଜମିର ଆୟରୁ କରୁଚି ଆମୋଦ-ପ୍ରମୋଦ, ତାକୁ କରିବାକୁ ହେବ ନ୍ୟସ୍ତସ୍ୱାର୍ଥ ଓ ଭୋଗବିଳାସରୁ ବଞ୍ଚିତ । ତା'ହେଲେଯାଇ, ଯୋଉ ଅତିରିକ୍ତ ବ୍ୟୟ ଜମିଦାରର ବିଳାସ ଲାଗି ଦରକାର, କୃଷକର ଆର୍ଥିକ ଭାର ଲାଘବକରିବାପାଇଁ ସେଇ ଟଙ୍କାର ହୋଇପାରିବ ସଦୁପଯୋଗ । ଚୁକ୍ତିବଦ୍ଧ ସମସ୍ତ କୃଷକଙ୍କୁ ଋଣଦାୟରୁ ରିହାତିଦେବାକୁ ପଡ଼ିବ, ଏବଂ ସୁଧଖୋର ମହାଜନର ଅମିତାଘରରୁ ରକ୍ଷାକରିବାକୁ ପ୍ରଚଳନକରିବାକୁ ପଡ଼ିବ ବ୍ୟାପକ କୃଷିଋଣ ବ୍ୟବସ୍ଥା । ସେଇଭଳି, କୃଷିକର୍ମରେ ଯନ୍ତ୍ରବ୍ୟବହାରକୁ ଉତ୍ସାହିତକରି ଏବଂ ପ୍ରାଥମିକ ଶିକ୍ଷାକୁ ଅବୈତନିକ ଓ ବାଧ୍ୟତାମୂଳକ କରି, କୃଷକର ସାଂସ୍କୃତିକ ସଚେତନତାକୁ କରାଯିବ ଉନ୍ନତ ।

ଶିଳ୍ପଶ୍ରମିକ ସକାଶେ ଦିନକୁ ଆଠଘଣ୍ଟା ପରିଶ୍ରମ ସାଙ୍ଗକୁ ଜୀବନଧାରଣସାପେକ୍ଷ ନ୍ୟୁନତମ ମଜୁରି ସୁନିଶ୍ଚିତ କରିବାକୁ ପଡ଼ିବ, ଏବଂ ତାଙ୍କପାଇଁ ଶ୍ରମ ପରିବେଶକୁ କରିବାକୁ ପଡ଼ିବ ସ୍ୱାସ୍ଥ୍ୟସମ୍ମତ । ବାସଗୃହ ଓ ବେକାର ଶ୍ରମିକଙ୍କ ଜୀବନରକ୍ଷା ସକାଶେ ମଧ୍ୟ ଆଇନ୍ ପ୍ରଣୟନକରିବା ଦରକାର । ସେହିପରି, ରେଳପରିବହନ, ଜଳସରବରାହ, ଟେଲିଗ୍ରାଫ୍ ଭଳି ସର୍ବସାଧାରଣ ଉପଯୋଗ, ବିବେଚିତ ହେବ ଜାତୀୟ ସମ୍ପତ୍ତି; ସେଗୁଡ଼ିକୁ ବ୍ୟକ୍ତିଗତ ମାଲିକାନା ହାତକୁ ଛାଡ଼ିଦିଆଯିବ ନାହିଁ । ଶ୍ରମିକ ଓ କୃଷକ ସଂଘବଦ୍ଧ ହେବାକୁ ପାଇବେ ପୂର୍ଣ୍ଣ ସ୍ୱାଧୀନତା ଓ ସୁଯୋଗ ଏବଂ ଆପଣା ଶ୍ରେଣୀର ସ୍ୱାର୍ଥରକ୍ଷାର୍ଥେ ଧର୍ମଘଟ କରିବା ଅଧିକାର ।

ଧର୍ମାଚରଣର ବ୍ୟକ୍ତିଗତ ସ୍ୱାଧୀନତା ସାଙ୍ଗକୁ, ଜାତୀୟ ଓ ଧର୍ମୀୟ ସଂଖ୍ୟାଲଘୁ ଭୋଗକରିବେ ସ୍ୱାୟତ୍ତଶାସନ ଅଧିକାର ।

ମୌଳିକ ଏଇ ପ୍ରସ୍ତାବ, କର୍ମସୂଚୀରେ ପରିଣତହେଲେ ଦେଶର ସଂଖ୍ୟାଗରିଷ୍ଠ ଜନଗଣ ଦୁର୍ନିବାର ସଂଗ୍ରାମରେ ହୋଇପାରିବେ ସଂଗଠିତ । ବୁର୍ଜୋୟା ଜାତୀୟତାବାଦର କର୍ମଧାରା (ବିତ୍ତବାନ୍ ଓ ଭୂମ୍ୟଧିକାରୀଙ୍କ ସ୍ୱାର୍ଥରକ୍ଷା) ଜାତି ସାଙ୍ଗରେ ବିଶ୍ୱାସଘାତକତା କରିଚି ଅଦ୍ୟାବଧି; ଜାତି ଏକ୍ଷଣି ପ୍ରୟୋଗକରିବ ନିଜ ଗଣତାନ୍ତ୍ରିକ ଅଧିକାର, ବୁର୍ଜୋୟାର ଶଠତା ଓ ଭୀରୁତା ସତ୍ତ୍ୱେ ଦେଶ ଆଗେଇଯିବ ମୁକ୍ତିର ବନ୍ଧୁର ଶିଳାମୟ ବାଟ ଧରି । ଜାତୀୟ କଂଗ୍ରେସ୍ ତେଣୁ ନିଜକୁ ମୁକ୍ତକରୁ ଭଣ୍ଡ ବୁର୍ଜୋୟାର କରାଳ କବଳରୁ; ତା ହେଲେ ଯାଇ, ଯିଏ ସତ୍ ଓ ସାହସୀ, ଯିଏ ପରାର୍ଥପର ଓ

ସଂଗ୍ରାମୀ, ସେଇ ହୋଇପାରିବ ଜନସାଧାରଣଙ୍କ ମୁଖପାତ୍ର । ଏ ସଂଗ୍ରାମରେ ନେତୃତ୍ୱ ଦେଇପାରିବ ଯୋଉ ପାର୍ଟି, ସେହି କେବଳ ଜନଗଣଙ୍କ ପାର୍ଟି । କାହିଁକିନା, ସେ ପାର୍ଟି କତିପୟ ସୌଭାଗ୍ୟବାନ୍ ନିର୍ବାଚକଙ୍କ ପ୍ରତିନିଧିତ୍ୱ କରିବନାହିଁ, ପ୍ରତିନିଧିତ୍ୱ କରିବ ଭୋଟାଧିକାରରୁ ବଞ୍ଚିତ ସଂଖ୍ୟାଗରିଷ୍ଠ ଦରିଦ୍ର ଦେଶବାସୀଙ୍କର । ଜନଗଣଙ୍କ ପାର୍ଟି ପାଇଁ କାଉନ୍‌ସିଲ୍ କକ୍ଷଦ୍ୱାର ଏକ୍ଷଣି ଅବରୁଦ୍ଧ; ଖୋଜିହେବ ତେଣୁ ଆନ୍ଦୋଳନର ଅନେକ ବେଶି ପ୍ରଶସ୍ତ କର୍ମକ୍ଷେତ୍ର ।

ଜାତୀୟଜୀବନର ଯାବତୀୟ କ୍ଷେତ୍ରରେ ଜାତୀୟ ମୁକ୍ତି ଓ ନିରଙ୍କୁଶ ଗଣତନ୍ତ୍ର ହେବ ଏ ଭାବରେ ଜାତୀୟବାଦୀ ମଞ୍ଚର ପ୍ରଧାନ ସ୍ତମ୍ଭ, ଏବଂ କୃତ୍ୟସୂଚିକୁ ବାସ୍ତବାୟିତ, କରିବାଲାଗି ସ୍ଲୋଗାନ୍ ହେବ: ଜମି, ଜୀବିକା, ଶିକ୍ଷା ।

ଇସ୍ତିହାର ଶେଷରେ ତାରିଖ ପଡ଼ିଚି ଡିସେମ୍ବର୍ ୧, ୧୯୨୬ । ମାତ୍ର ଡିସେମ୍ବର୍ ୧୯୨୯ରେ ମାନବେନ୍ଦ୍ରନାଥ ବିତାଡ଼ିତ ହୋଇଚନ୍ତି କମ୍ୟୁନିଷ୍ଟ୍ ଆନ୍ତର୍ଜାତିକରୁ; ତା ଆଗରୁ ୧୯୨୭ରେ ଭାରତର କମ୍ୟୁନିଷ୍ଟ୍ ପାର୍ଟି ଉଠିଆସିଚି କାନପୁର । ଭାରତର ଜାତୀୟ କଂଗ୍ରେସ୍ ଏ ପ୍ରସ୍ତାବଗୁଡ଼ିକ ପ୍ରତି କର୍ଣ୍ଣପାତ କରିଥିଲା କି ନାହିଁ, ଆଜି ସର୍ବଜନବିଦିତ; ମାତ୍ର କି ଦୃଷ୍ଟିରେ କୋମିନ୍‌ଟର୍ନ ଦେଖିଥିଲା ଭାରତକୁ, ସେ ବୃତ୍ତାନ୍ତ ଗର୍‌ବାସଫ୍ ପେରେସ୍ତ୍ରୋଇକା ପ୍ରବର୍ତ୍ତନକରିବାଯାଏଁ ରହିଥିଲା ଗୋପନ । କୋମିନ୍‌ଟର୍ନର ଭାବାଦର୍ଶ ସଂସ୍କାରପନ୍ଥୀ ନୁହେଁ, ମାର୍କ୍ସବାଦର ଭାବଧାରାରେ ପୁଷ୍ଟ; ଏବଂ ସେଥିପାଇଁ, ଜନ୍ମଲଗ୍ନରୁ (୧୯୧୯) ପୁଞ୍ଜିବାଦୀ ଦୁନିଆ ସହିତ ସଂଘାତ ଥିଲା ଅନିର୍ବାର୍ଯ୍ୟ । ସେ ପ୍ରତିଷ୍ଠାନର କର୍ମସୂଚି ପ୍ରତି ଏକନିଷ୍ଠ ଆନୁଗତ୍ୟ ହିଁ ଥିଲା ସଦସ୍ୟପଦ ପ୍ରାପ୍ତିର ପୂର୍ବସର୍ତ୍ତ, ଏବଂ ପୃଥିବୀର ଅନ୍ୟାନ୍ୟ ଦେଶର କମ୍ୟୁନିଷ୍ଟ୍ ପାର୍ଟି ଭଳି ଭାରତର ସିପିଆଇ ମଧ୍ୟ ହୋଇଚି ତାର ଅଂଶବିଶେଷ । କୋମିନ୍‌ଟର୍ନର କର୍ମସୂଚି କି ରଣକୌଶଳରେ ଅଦଳବଦଳ ହେଲେ, ସଦସ୍ୟ-ପାର୍ଟିଗୁଡ଼ିକର କର୍ତ୍ତବ୍ୟକର୍ମ ମଧ୍ୟ ବଦଳିଯାଇଚି । ଯେହେତୁ ନିଜ ଜାତି-ରାଷ୍ଟ୍ର ବାହାରୁ ଆସୁଚି ପରିବର୍ତ୍ତନ (ବିଦ୍ରୋହ / ବିପ୍ଳବର) ନିର୍ଦ୍ଦେଶ, ପାଶ୍ଚାତ୍ୟ ଧନତାନ୍ତ୍ରିକ / ସାମ୍ରାଜ୍ୟବାଦୀ ରାଷ୍ଟ୍ର କୋମିନ୍‌ଟର୍ଣ୍ଣ ପ୍ରତି ନିଜ ଦେଶର ରାଜନୀତିକ ଆନୁଗତ୍ୟକୁ ସୁନଜରରେ ଦେଖିନାହାଁନ୍ତି । କିନ୍ତୁ ଭାରତ ଥିଲା ଉପନିବେଶ, ଅଥଚ ଜାତୀୟତାବାଦୀ । ଏପରିକି, କଂଗ୍ରେସ୍ ସୋସାଲିସ୍ଟପାର୍ଟି ରସିଆ ପ୍ରତି ଭାରତୀୟ କମ୍ୟୁନିଷ୍ଟଙ୍କ ନିଃସର୍ତ୍ତ ଆତ୍ମସମର୍ପଣକୁ ଅନୁମୋଦନ କରିପାରିନାହିଁ । ସେମାନେ ବି ଜାଣିଥିଲେ ଅକ୍ଟୋବର୍ ବିପ୍ଳବର କର୍ମଧାରା ଓ ପରିଣତି, ଉଦ୍‌ବୁଦ୍ଧ ହୋଇଥିଲେ ମଧ୍ୟ ମାର୍କ୍ସ-ଚିନ୍ତାରେ, ଯେପରି ନବକୃଷ୍ଣ

ଚୌଧୁରୀ । ହେଲେ ସୁଦ୍ଧା, ପ୍ରାକ୍-ସ୍ୱାଧୀନତା ପର୍ବରେ କୋମିନ୍‌ଟର୍ନର ପ୍ରଭାବ ଭାରତବର୍ଷରେ ଥିଲା ସୁଦୂରପ୍ରସାରୀ । କାହିଁକିନା, ରୁସ୍-ବିପ୍ଳବ ଆଦର୍ଶରେ ଉଦ୍‌ବୁଦ୍ଧ ଅନ୍ତତଃ ଚାରିଟି ଗୋଷ୍ଠୀ ଲେନିନ୍‌ଙ୍କ ସହିତ ସମ୍ପର୍କ ସ୍ଥାପନକରିବାକୁ ନେଇଚନ୍ତି ଉଦ୍ୟୋଗ । ପ୍ରଥମଗୋଷ୍ଠୀରେ ଥିଲେ ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ମହମ୍ମଦ ବରକତୁଲ୍ଲା, ତିରୁମଲ୍ଲ ଆଚାର୍ଯ୍ୟ, ମାନବେନ୍ଦ୍ରନାଥ ରାୟ ଓ ଅବନୀ ମୁଖର୍ଜୀ, ଯିଏ ବିଭିନ୍ନ ବାଟଦେଇ ପହଞ୍ଚିଚନ୍ତି ମସ୍‌କୋରେ । ଦ୍ୱିତୀୟ ଗୋଷ୍ଠୀ, ଖିଲାଫତ୍ ଆନ୍ଦୋଳନରୁ ବାହାରିଆସିଥିବା ମହମ୍ମଦ ଅଲ୍ଲି ସେପାସି, ଅବଦୁଲ୍ ମଜିଦ୍ ଓ ଶଓକତ୍ ଉସ୍‌ମାନି । ତୃତୀୟ ଗୋଷ୍ଠୀ, ପଂଜାବର ଗଦରପାର୍ଟିରୁ ରତନ ସିଂ, ସନ୍ତୋଖ୍ ସିଂ ପ୍ରମୁଖ, ଏବଂ ଚତୁର୍ଥଗୋଷ୍ଠୀ କଲିକତାରୁ ମୁଜାଫର୍ ଅହମ୍ମଦ୍, ମାନ୍ଦ୍ରାଜରୁ ସିଙ୍ଗାରାଭେଲୁ ଚେଟିଆର୍, ବମ୍ବେରୁ ଶ୍ରୀପାଦ ଅମୃତ ଡାଙ୍ଗେ । ଚତୁର୍ଥଗୋଷ୍ଠୀ କିନ୍ତୁ ମାନବେନ୍ଦ୍ରନାଥ ରାୟଙ୍କ ମଧ୍ୟସ୍ଥତାରେ ମସ୍‌କୋ ଯାଇଚନ୍ତି । ଏତିକିବେଳେ, ୧୯୧୯ ମସିହାରେ ପ୍ରତିଷ୍ଠିତହୋଇଚି ତୃତୀୟ ଆନ୍ତର୍ଜାତିକ, ଏବଂ ପ୍ରଥମ ତିନିଟିଗୋଷ୍ଠୀ ତା ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନକରିବାକୁ ହୋଇଚି ସମର୍ଥ; ମାତ୍ର ସେମାନଙ୍କ ଭିତରେ ଦେଖାଦେଇଚି ଅନ୍ତର୍ଦ୍ୱନ୍ଦ୍ୱ । କାହିଁକିନା, ପ୍ରତ୍ୟେକ ଗୋଷ୍ଠୀ ଦାବିକରିଚି ଏକକଭାବେ କୋମିନ୍‌ଟର୍ନର ସ୍ୱୀକୃତି; କାହିଁକିନା, ତାଙ୍କରି ଗୋଷ୍ଠୀ ହିଁ ଏକମାତ୍ର ପ୍ରତିନିଧି ଭାରତବର୍ଷର ସାମ୍ରାଜ୍ୟବାଦ-ବିରୋଧୀ ସଂଗ୍ରାମର । କୋଡ଼ିଏ ଦଶକରେ ମଧ୍ୟ ଏ ଅବସ୍ଥାର ନିରସନ ହୋଇନାହିଁ, ଯଦିଓ କୋମିନ୍‌ଟର୍ଣ୍ଣ ଶେଷପର୍ଯ୍ୟନ୍ତ ଭାରତବର୍ଷର ଦାୟିତ୍ୱ ଦେଇଚି ଏମ୍.ଏନ୍.ରାୟଙ୍କୁ; ସମ୍ଭବତଃ ୧୯୧୯ରୁ ୧୯୨୪ ସ୍ୱୟଂ ଲେନିନ୍ ଯେହେତୁ ଥିଲେ ଆନ୍ତର୍ଜାତିକ କର୍ଣ୍ଣଧାର ।

୧୯୧୯ରେ, ଭାରତରେ ଯେତେବେଳେ ପାର୍ଟି ତିଆରି ହୋଇନାହିଁ, 'ଦୁନିଆର ସର୍ବହରା ପ୍ରତି' ଶୀର୍ଷକ ଏକ ଦଲିଲ୍ ପ୍ରଚାରକରେ କୋମିନଟର୍ଣ୍ଣ; ସ୍ପଷ୍ଟ ବୁଝାଇଦିଆହୁଏ ଉପନିବେଶରେ ଜାତୀୟ ମୁକ୍ତିଆନ୍ଦୋଳନର ଗୁରୁତ୍ୱ; ଏବଂ କୁହାଯାଏ, ଉପନିବେଶରେ ଆନ୍ଦୋଳନ ଆରମ୍ଭହେଲେ, ସମାଜତାନ୍ତ୍ରିକ ଇଉରୋପ୍ କରିବ ସର୍ବବିଧ ସହାୟତା । ରାଜନୀତି କ୍ଷେତ୍ରରେ ଇଉରୋପ୍ ସାଙ୍ଗରେ ଯେମିତି, ଅପରାପର ଉପନିବେଶ ସହିତ ସେମିତି, ଭାରତ ଯୋଡ଼ିହୋଇଯାଏ ଫଳତଃ । ବର୍ଷକ ଉତାରୁ ୧୯୨୦ରେ ବସେ କୋମିନ୍‌ଟର୍ଣ୍ଣର ଦ୍ୱିତୀୟ କଂଗ୍ରେସ୍, ଏବଂ ସେଇଠି ଆଲୋଚିତହୁଏ କୋମିନ୍‌ଟର୍ଣ୍ଣ କି ନୀତି ଅବଲମ୍ବନକରିବ ସମଗ୍ରଭାବେ, ଉପନିବେଶରେ ଚାଲୁଥିବା ସ୍ୱାଧୀନତା-ସଂଗ୍ରାମ ପ୍ରେକ୍ଷିତରେ । ବିସ୍ତାରିତ ବିଶ୍ଳେଷଣ ଚାଲିବାବେଳେ ଲେନିନ୍‌ଙ୍କ ପ୍ରସ୍ତାବରୁ ଭିନ୍ନପ୍ରସ୍ତାବ ଆଗତକରନ୍ତି ଏମ୍.ଏନ୍.ରାୟ; ସେଥିରେ କୁହାଯାଏ, ପର୍ଯ୍ୟାପ୍ତ

ଶିକ୍ଷପ୍ରସାର କାରଣରୁ ଭାରତର ଶ୍ରମିକଶ୍ରେଣୀ ସମାଜତାନ୍ତ୍ରିକ ସଂଗ୍ରାମକୁ ନେତୃତ୍ୱଦେବାକୁ ଏକ୍ଷଣି ପ୍ରସ୍ତୁତ; ଜାତୀୟତାବାଦୀ ଶକ୍ତିସମୂହ ଯେହେତୁ ସାମ୍ରାଜ୍ୟବାଦର ଦଲାଲ୍ ମାତ୍ର, ଶ୍ରମିକଶ୍ରେଣୀ ସାମ୍ରାଜ୍ୟବାଦ ଓ ଜାତୀୟତାବାଦ, ଉଭୟ ବିରୋଧରେ ଏକାବେଳକେ ଚଳାଇପାରେ ମିଉନିଷ୍ଟପାର୍ଟି ନେତୃତ୍ୱରେ ଆପୋସହୀନ ସଂଘର୍ଷ । ରେଜ୍‌ନିକଭ୍ ଆର୍କାଇଭ୍-ର କାଗଜପତ୍ର ଘାଣ୍ଟି ଦେଖାଯାଇଚି, ରାୟଙ୍କ ଏ ପ୍ରସ୍ତାବର ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଅଂଶକୁ ସ୍ୱହସ୍ତରେ ସଂଶୋଧନ କରିଦିଅନ୍ତି ଲେନିନ୍; ଏବଂ ପରିଣାମରେ, ସଂଶୋଧିତ ଦଲିଲ୍ ଯେତେବେଳେ ଲେନିନ୍‌ଙ୍କ ନିଜ ପ୍ରସ୍ତାବ ସହିତ ଏକାସାଙ୍ଗରେ ଗୃହୀତ ହୁଏ, ଦୃଷ୍ଟିଭଙ୍ଗୀରେ ପାର୍ଥକ୍ୟ ଥିବାସତ୍ତ୍ୱେ, ଲେନିନ୍ ଓ ମାନବେନ୍ଦ୍ରନାଥଙ୍କ ମଧ୍ୟସ୍ଥ ବ୍ୟବଧାନ ହ୍ରାସପାଇଚି ଯଥେଷ୍ଟ ।

ଲେନିନ୍ ଯେତେବେଳେ କୋମିନ୍‌ଟର୍ଣ୍ଣର ସର୍ବେସର୍ବା, ଉପନିବେଶରେ ପ୍ରଚଳିତ ଜାତୀୟତାବାଦକୁ ଅବଜ୍ଞା ସାଙ୍ଗକୁ ଜାତୀୟତାବାଦୀଙ୍କୁ ସାମ୍ରାଜ୍ୟବାଦର ଦଲାଲ୍ ବିବେଚନାକରିବା ପ୍ରବଣତା, ଏମ୍.ଏନ୍.ରାୟଙ୍କ ଭଳି ଅନେକ ସଦସ୍ୟଙ୍କ ଚିନ୍ତାର ବିଶେଷତ୍ୱ ବୋଲି ପ୍ରତିପନ୍ନ ହୁଏ; ମାତ୍ର ମୂଳରୁ ଲେନିନ୍ ସାମ୍ରାଜ୍ୟବାଦବିରୋଧୀ ଯୁକ୍ତଫ୍ରଣ୍ଟ ଗଠନକରିବା କଥା କହିଆସିଚନ୍ତି ଏମାନଙ୍କୁ । କାହିଁକିନା, ଜାତୀୟତାବାଦ ଯେ ସାମ୍ରାଜ୍ୟବାଦର ପ୍ରତିପକ୍ଷ, ସେକଥା ସ୍ୱୀକାରକରିବା ବିପ୍ଳବୀଙ୍କର ଅବଶ୍ୟକର୍ତ୍ତବ୍ୟ; ତହିଁଉତାରୁ ଦେଖିବା କଥା ଉପନିବେଶର ଅଭ୍ୟନ୍ତରୀଣ ଦୁର୍ବଳତା ଓ ସୀମାବଦ୍ଧତାର ଆକାରପ୍ରକାର । ଦୁର୍ବଳତା ଓ ସୀମାବଦ୍ଧତାକୁ ଚିହ୍ନଟକରିବା ଉତାରୁ ବିପ୍ଳବୀ କରିବେ ଜାତୀୟତାବାଦୀଙ୍କ ସହିତ ମିଳିତସାମ୍ମୁଖ୍ୟ ଗଠନ, ମାତ୍ର କମିଉନିଷ୍ଟ ନିଜ ସ୍ୱାତନ୍ତ୍ର୍ୟ ବଜାୟରଖିବାକୁ ରହିବେ ସଦାସର୍ବଦା ସତର୍କ । କିନ୍ତୁ ସାମ୍ରାଜ୍ୟବାଦବିରୋଧୀ ସଂଗ୍ରାମରେ ଜାତୀୟତାବାଦୀଙ୍କ ସହିତ ସାମିଲ୍ ନହେଲେ ମିଳିତସାମ୍ମୁଖ୍ୟ ଭିତରେ ନିଜ ବିଚାର ଓ ରଣକୌଶଳର ଉତ୍କର୍ଷ ପ୍ରତିପାଦନ କରିହେବନାହିଁ । ସନ୍ଦେହ ନାହିଁ, ଲେନିନ୍‌ଙ୍କ ଚିନ୍ତାରେ ରହିଚି ଦ୍ୱାନ୍ଦ୍ୱିକତା, ମାତ୍ର ନବ୍ୟ-କମ୍ୟୁନିଷ୍ଟ ସେ ଚିନ୍ତାକୁ ଭାବିନାହାଁନ୍ତି ଗ୍ରହଣଯୋଗ୍ୟ; ଦରକାର ରାତିପାହିଲେ ବିପ୍ଳବ, ସାମ୍ରାଜ୍ୟବାଦର ସମୂଳ ଉତ୍ପାଟନ । ତଥାପି, ରାୟଙ୍କ କଣ୍ଠରୋଧ କରିନାହିଁ କୋମିନ୍‌ଟର୍ଣ୍ଣ, ଲେନିନ୍‌ଙ୍କ ଲିଖିତ ଦଲିଲ୍ ସାଙ୍ଗରେ ସ୍ଥାନପାଇଚି ବିକଳ୍ପ ପ୍ରସ୍ତାବ । ଅର୍ଥାତ୍, ଲେନିନ୍ ଯେତେଦିନ ଜୀବିତ ଥିଲେ, ସ୍ୱୀକୃତିପାଇଚି ରାୟଙ୍କ ବିକଳ୍ପ ପ୍ରସ୍ତାବ । ଅର୍ଥାତ୍, ଲେନିନ୍ ଯେତେଦିନ ଜୀବିତ ଥିଲେ, ସ୍ୱୀକୃତିପାଇଚି କୋମିନ୍‌ଟର୍ଣ୍ଣରେ ଭିନ୍ନମତ । ଲେନିନୋତ୍ତର ପର୍ବରେ କିନ୍ତୁ ଧାରାଟି କ୍ରମଶଃ ଶୁଖିଯାଇଚି । ବୋଲିବା ବାହୁଲ୍ୟ, ରାୟ ମାନିନେଇଚନ୍ତି ଲେଲିନ୍‌ଙ୍କ ପ୍ରସ୍ତାବ ଏବଂ ଅକ୍ଟୋବର୍ ୧୭, ୧୯୨୦ରେ ସ୍ଥାପନକରିଚନ୍ତି

ତାସ୍‌ଖନ୍ଦରେ ଭାରତର କମ୍ୟୁନିଷ୍ଟ ପାର୍ଟି । ୧୯୨୧ ଡିସେମ୍ବର୍‌ରେ ଅହମ୍ମଦାବାଦରେ ଅନୁଷ୍ଠିତ ଜାତୀୟ କଂଗ୍ରେସ୍‌ର ଛବିଶତମ ଅଧିବେଶନକୁ ଯୋଉ ଇସ୍ତିହାର ପଠାଇଚନ୍ତି ନଳିନୀ ଗୁପ୍ତଙ୍କ ହାତରେ, ସେଇ ଦଲିଲ୍‌କୁ ଧରାଯାଇପାରେ ଭାରତରେ ଚାଲୁଥିବା ଜାତୀୟତାବାଦୀ ଆନ୍ଦୋଳନ ସହିତ କୋମିନ୍‌ଟର୍ଣ୍ଣର ସମ୍ପର୍କସ୍ଥାପନର ସର୍ବପ୍ରଥମ ଉଦ୍ୟୋଗ, କାହିଁକିନା ଏଇ ଦଲିଲ୍‌ରେ କଂଗ୍ରେସ୍‌କୁ ଆବେଦନ କରାଯାଇଚି ଜାତୀୟତାବାଦୀ ଆନ୍ଦୋଳନ ସହିତ ଶ୍ରମଜୀବୀ ମଣିଷର ସଂଗ୍ରାମକୁ ଯୋଡ଼ିଦେବାକୁ । ୧୯୨୨ରେ କୋମିନ୍‌ଟର୍ଣ୍ଣର ତୃତୀୟ କଂଗ୍ରେସ୍‌ରେ ଭାରତବର୍ଷ ବିଷୟରେ ବଡ଼ କୋଉ ସିଦ୍ଧାନ୍ତ ନିଆହୋଇନାହିଁ ସତ, ମାତ୍ର ଭାରତୀୟ ବିପ୍ଳବୀ ପେଶ୍‌କରିଚନ୍ତି ଅନ୍ତତଃ ତିନୋଟି ପ୍ରସ୍ତାବ ଯଦିଓ ଗୋଟାକହେଲେ ସୁଦ୍ଧା ଗୃହୀତ ହୋଇନାହିଁ । ଗୋଟିଏ ପ୍ରସ୍ତାବ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ରଚନା, ଦ୍ୱିତୀୟଟିର ଉଦ୍ୟୋକ୍ତା ଭୂପେନ୍ଦ୍ରନାଥ ଦତ୍ତ, ତୃତୀୟଟିର ମାନବେନ୍ଦ୍ରନାଥ ରାୟ । ଏକ୍ଷଣି ଏ ଦଲିଲ୍‌ଗୁଡ଼ିକୁ ମସ୍କୋରୁ ଅଣାଯାଇ କଲିକତା ଏସିଆଟିକ୍ ସୋସାଇଟି ସଂଗ୍ରହଶାଳାରେ ରଖାଯାଇଚି । ପ୍ରଥମ ଦି'ଜଣ ଜାତୀୟତାବାଦୀ ଆନ୍ଦୋଳନକୁ ସମର୍ଥନ/ସହଯୋଗ କରିବା ବିଷୟରେ ଏକେବାରେ ବିରୂପ; ରାୟଙ୍କ ଅବସ୍ଥାନ ମଧ୍ୟବର୍ତ୍ତୀ । ବୀରେନ୍ଦ୍ରନାଥ ଓ ଭୂପେନ୍ଦ୍ରନାଥଙ୍କ ଅବସ୍ଥାନକୁ କୁହାଯାଇପାରେ ବାମପନ୍ଥୀ; ହେଲେସୁଦ୍ଧା ସଂକୀର୍ଣ୍ଣ ଓ ଚରମପନ୍ଥୀ । ସେବର୍ଷ କୋମିନ୍‌ଟର୍ଣ୍ଣର ଚତୁର୍ଥ କଂଗ୍ରେସ୍‌ରେ ଗୃହୀତ 'ପ୍ରାଚ୍ୟଦେଶ ସଂକ୍ରାନ୍ତ ପ୍ରଶ୍ନ' ଦଲିଲ୍‌ରେ ସାମ୍ରାଜ୍ୟବାଦବିରୋଧୀ ଜାତୀୟ ସାମ୍ମୁଖ୍ୟଗଠନ ଆଇଡିଆକୁ ସମର୍ଥନ କରାଯାଇଚି, ଏବଂ ତା ଫଳରେ, ମାନବେନ୍ଦ୍ରନାଥ 'ୱାର୍କର୍ସ ଆଣ୍ଡ୍ ପିଜାଣ୍ଟସ୍' ପାର୍ଟିର ସାଫଲ୍ୟ କାମନାକରି ୧୯୨୩ ଜୁନ୍ ୨୩ ତାରିଖରେ ଜାତୀୟ କଂଗ୍ରେସ୍‌କୁ ଚିଠିଲେଖିଚନ୍ତି କୋମିନ୍‌ଟର୍ଣ୍ଣ ପକ୍ଷରୁ । ଉଦ୍ଦେଶ୍ୟ ଥିଲା, ନବଗଠିତ ଏଇ ପାର୍ଟି ମାଧ୍ୟମରେ କଂଗ୍ରେସ୍ ଉପରେ ଚାପ ସୃଷ୍ଟିକରି ବାମପନ୍ଥୀ ମତାଦର୍ଶକୁ ଜାତୀୟତାବାଦୀଙ୍କ ପାଇଁ ଗ୍ରହଣଯୋଗ୍ୟ କରିବା । ଏ ପାର୍ଟି କିନ୍ତୁ ସଂଗଠିତ ହୋଇପାରିନାହିଁ, କାହିଁକିନା, ୧୯୨୫ର ମେ'-ଜୁନ୍ ମାସରେ ନେତାମାନେ ଗିରଫ୍‌ହୋଇଯାଇଚନ୍ତି କାନ୍‌ପୁର୍ ବଲ୍‌ସେଭିକ୍-ଷଡ଼ଯନ୍ତ୍ର ମୋକଦ୍ଦମାରେ । ଜାତୀୟତାବାଦୀଙ୍କର ସେଥିରେ ଭୂମିକା ଥିଲାନାହିଁ; ଯା କରିବା କଥା, ବ୍ରିଟିଶ୍ ସରକାର କରିଚି । ମାତ୍ର, ସାନଭାଇ ବାରୀନ୍ ଘୋଷଙ୍କୁ ପଣ୍ଡିଚେରୀରୁ ଯୋଉ ଚିଠିଲେଖିଚନ୍ତି ଅରବିନ୍ଦ, ସେଥିରେ 'ବଲ୍‌ସେଭିକ୍' ବା 'ବାନର' ଭଳି ଶବ୍ଦ କାହିଁକି ବ୍ୟବହାର କରାଯାଇଚି, ଏଥର ଅନୁମାନ କରିହେବ ଅକ୍ଳେଶରେ ।

ଲେନିନ୍‌ଙ୍କ ମୃତ୍ୟୁ ଉତାରୁ ଅନୁଷ୍ଠିତହୁଏ କୋମିନ୍‌ଟର୍ଣ୍ଣର ପଞ୍ଚମ କଂଗ୍ରେସ୍ ୧୯୨୪ରେ । ସେଦିନ୍‌ଠୁ ୧୯୪୩ରେ କୋମିନ୍‌ଟର୍ଣ୍ଣ ଉଠିଯିବାଯାଏଁ ସୋଭିଏତ୍

ଇଉନିଅନ୍‌ର ଆପଣା ରାଜନୈତିକ ପ୍ରେକ୍ଷାପଟ, ଅର୍ଥାତ୍ ଅଭ୍ୟନ୍ତରୀଣ ଦ୍ୱିଧାଦ୍ୱନ୍ଦ୍ୱ, ପ୍ରଭାବିତ କରିଛିଲିଚି ଭାରତବର୍ଷ ପ୍ରତି କୋମିନ୍‌ଟର୍ଣ୍ଣର ଆଚରଆଚରଣ । ଲେନିନ୍ ମଞ୍ଚଉପରୁ ଅନ୍ତର୍ହିତହେବା ଉତାରୁ ସୋଭିଏତ୍ ଇଉନିଅନ୍‌ର କମିଉନିଷ୍ଟ୍‌ପାର୍ଟି ଭିତରେ ନେତୃତ୍ୱ ସକାଶେ ଲାଗିଚି ପ୍ରତିଯୋଗିତା; ପ୍ରଥମେ ଷ୍ଟାଲିନ୍‌ଙ୍କ ସହିତ ତ୍ରତ୍‌ସ୍କୀଙ୍କର, ତହିଁଉତାରୁ ଷ୍ଟାଲିନ୍‌ଙ୍କ ସହିତ ବୁଖାରିନ୍‌ଙ୍କର । ପରିଣାମରେ ୧୯୨୭ ଓ ୧୯୨୯ରେ କୋମିନ୍‌ଟର୍ଣ୍ଣରୁ ବିତାଡ଼ିତହୁଅନ୍ତି ଯଥାକ୍ରମେ ତ୍ରତ୍‌ସ୍କୀ ଓ ବୁଖାରିନ୍ ଏବଂ କୋମିନ୍‌ଟର୍ଣ୍ଣ ଉପରେ ଷ୍ଟାଲିନ୍‌ଙ୍କ କର୍ତ୍ତୃତ୍ୱ ହୋଇଯାଏ ନିରଙ୍କୁଶ । ସେ କର୍ତ୍ତୃତ୍ୱ ବଳରେ ସୋଭିଏତ୍ କମିଉନିଷ୍ଟ୍‌ପାର୍ଟି ଓ କୋମିନ୍‌ଟର୍ଣ୍ଣ ମଧ୍ୟରେ ପାର୍ଥକ୍ୟ କ୍ରମଶଃ ଲିଭିଗଲା, ଏବଂ ସୋଭିଏତ୍ କମ୍ୟୁନିଷ୍ଟ୍‌ପାର୍ଟି ହିଁ ପାଲିଟିଗଲା କମିଉନିଷ୍ଟ୍ ଆନ୍ତର୍ଜାତିକ; ଭିନ୍ନ ମତାବଲମ୍ବୀଙ୍କୁ ଶୋଧନବାଦୀ ଅଭିହିତକରି କରିଦିଆଗଲା ଅପସୃତ, ଯେପରି, ୧୯୨୯ରେ ମାନବେନ୍ଦ୍ରନାଥ ରାୟଙ୍କୁ । ଲେନିନ୍ ବଞ୍ଚିଥିବାବେଳେ କୋମିନ୍‌ଟର୍ଣ୍ଣ ଯେତେବେଳେ କୋଉ ସିଦ୍ଧାନ୍ତ ନେଇଚି, ପରାମର୍ଶ ଦେଇଚନ୍ତି ମୁଖ୍ୟତଃ ତ୍ରତ୍‌ସ୍କୀ ଓ ଜିନୋଭିୟେଭ୍ । ତୃତୀୟ ଆନ୍ତର୍ଜାତିକରେ ଷ୍ଟାଲିନ୍‌ଙ୍କ ଅନୁପ୍ରବେଶ ଓ ଦ୍ରୁତ-ଉତ୍‌ଥାନ ଘଟିଥିଲା, ଲେନିନ୍ ମରିବା ଉତାରୁ, ଆଗରୁ ନୁହେଁ । ତୃତୀୟ ଆନ୍ତର୍ଜାତିକର ପଞ୍ଚମ କଂଗ୍ରେସ୍‌ରେ ହିଁ ସଂଶୟ ପ୍ରକାଶକରାଯାଇଚି ସାମ୍ରାଜ୍ୟବାଦ-ବିରୋଧୀ ସାମ୍ମୁଖ୍ୟ ଗଠନ ସମ୍ପର୍କରେ; ଏପରିକି, ଜାତୀୟତାବାଦୀ ଶକ୍ତିଗୁଡ଼ିକ ପ୍ରତି ଇତିବାଚକ ଦୃଷ୍ଟିଭଙ୍ଗୀ ପୋଷଣ ମଧ୍ୟ ବିବେଚିତ ହୋଇଚି ସମାଜତନ୍ତ୍ରର ପରିପନ୍ଥୀ । ଫଳତଃ, ପ୍ରାଚ୍ୟଭୂଖଣ୍ଡ ବିଷୟରେ ନିର୍ଦ୍ଦିଷ୍ଟ କୌଣସି ସିଦ୍ଧାନ୍ତ ଗ୍ରହଣକରିପାରିନାହିଁ କୋମିନ୍‌ଟର୍ଣ୍ଣ । ପ୍ରକାଶଥାଉ କି, ଏମ୍.ଏନ୍.ରାୟ, ଷ୍ଟାଲିନ୍‌ଙ୍କୁ ଖୁସୀକରିବାକୁ ହେଉ କି ନହେଉ, ତ୍ରତ୍‌ସ୍କୀଙ୍କୁ କରିଥିଲେ ବିରୋଧ । ସେଥିପାଇଁ, ଉପନିବେଶରେ ସମାଜତନ୍ତ୍ର ପ୍ରତିଷ୍ଠା ବିଷୟକ ଯୋଉ ପ୍ରସ୍ତାବ ଲେନିନ୍ ସ୍ୱହସ୍ତରେ ସଂଶୋଧନକରିଚନ୍ତି, ତାର ତତ୍ତ୍ୱଗତ ଅବସ୍ଥାନ ଦ୍ୱିତୀୟ କଂଗ୍ରେସ୍‌କୁ ଦେଇଥିବା ରାୟଙ୍କ ଦଲିଲ୍‌ର ଥିଲା ନିକଟତମ, ଯେପରି, ଭାରତର ଜାତୀୟ ବୁର୍ଜୋୟା ଭିତରେ ବିଭାଜନ ସୃଷ୍ଟିକରିବା ଦରକାର, ଯେହେତୁ ତାର ଗୋଟିଏ ଅଂଶ ପ୍ରଗତିଶୀଳ ଓ ଅନ୍ୟଟି ପ୍ରତିକ୍ରିୟାଶୀଳ । ଏକାରକମ ମନ୍ତବ୍ୟକରିଚନ୍ତି ଷ୍ଟାଲିନ୍ ୧୯୨୫ରେ ଶ୍ରମଜୀବୀଙ୍କ ପାଇଁ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟରେ ।

କୋମିନ୍‌ଟର୍ଣ୍ଣର ଷଷ୍ଠକଂଗ୍ରେସ୍ ବସିଚି ୧୯୨୮ରେ, ଏବଂ ଯୋଉ ସିଦ୍ଧାନ୍ତ ଗୃହୀତହୋଇଚି, ତାର ମର୍ମ ହେଲା, ଭାରତବର୍ଷରେ ଚାଲୁଥିବା ଜାତୀୟତାବାଦୀ ଆନ୍ଦୋଳନ ସାମ୍ରାଜ୍ୟବାଦକୁ ବିରୋଧ କରୁଚି ସତ, ମାତ୍ର ସେ ଜାତୀୟତାବାଦର ଚରିତ୍ର ମୂଳତଃ ପ୍ରତିକ୍ରିୟାଶୀଳ; ଏବଂ ପ୍ରତିକ୍ରିୟାଶୀଳ ବୋଲି, ସାମ୍ରାଜ୍ୟବାଦ ସ୍ୱାର୍ଥକୁ

ବିରୋଧ କଲାବେଳେ ଯୁଯୁତ୍ସୁ ଅବସ୍ଥାନ ଗ୍ରହଣକରିବାକୁ ଅକ୍ଷମ । ଅଥଚ ପୃଥିବୀର ଅନ୍ୟାନ୍ୟ ଦେଶରେ ପ୍ରଲେତାରିଏତ୍ ଓ ସ୍ଥାନୀୟ ବୁର୍ଜୋୟା ମଧ୍ୟସ୍ଥ ପୋଲାରାଇଜେସନ୍ (ମେରୁକରଣ) ଏତେ ତୀବ୍ର ହେଲାଣି ଯେ ରସିଆରେ ଯେମିତି ହୋଇଚି, ସେଇ ଧରଣର ପ୍ରଲେତାରିଏତ-ବିପ୍ଳବ ଘଟିଯାଇପାରେ ଅନତି ବିଳମ୍ବେ; ସମାଜତନ୍ତ୍ର ପ୍ରତିଷ୍ଠା ତେଣୁ ଆସନ୍ନ । ବୋଲିବା ବାହୁଲ୍ୟ, ଏଭଳି ନିଷ୍ପତ୍ତି ମୂଳରେ ଥିଲା ନିର୍ଦ୍ଦିଷ୍ଟ କାରଣ, ଯେପରି (୧) ଧନତନ୍ତ୍ରର ଘନୀୟମାନ ସଂକଟ, (୨) ପ୍ରାୟ ସବୁ ଉପନିବେଶ୍ଗରେ ସଂଘାତର ଧରଣ ଥିଲା ନିଷ୍କ୍ରିୟ ବା ଅହିଂସ, (୩) ଭାରତରେ ସହିଂସ ଶ୍ରମିକ ଆନ୍ଦୋଳନ ପ୍ରତି ଗାନ୍ଧିଙ୍କ ନେତିବାଚକ ଅବସ୍ଥାନ, (୪) ଜାତୀୟ କଂଗ୍ରେସ୍‌ର ୧୯୨୮ ଅଧିବେଶନରେ ପୂର୍ଣ୍ଣସ୍ୱାଧୀନତା ପରିବର୍ତ୍ତେ ଡମିନିୟନ୍ ଷ୍ଟାଟସ୍‌କୁ ଆଲିଙ୍ଗନ, (୫) ସେତିକିବେଳେ ଚୀନ୍‌ରେ ଭାଙ୍ଗିଯାଇଚି କୁୟୋମିନ୍‌ଟାଂ-କମ୍ୟୁନିଷ୍ଟ୍ ମିଳିତସାମୁଖ୍ୟ ଏବଂ ଜାତୀୟତାବାଦୀ କୁୟୋମିନ୍‌ଟାଂ, କମ୍ୟୁନିଷ୍ଟଙ୍କ ଉପରେ ଚଳାଇଚି ଅକଥ୍ୟ ଅତ୍ୟାଚାର, (୬) ସେତିକିବେଳେ ପୁଣି ବୁଖାରିନ୍-ଷ୍ଟାଲିନ୍ କଳହ ଉଠିଚି ତୁଙ୍ଗକୁ, ବୁଖାରିନ୍ ଚିହ୍ନିତହୋଇଚନ୍ତି ଶୋଧନବାଦୀ ଦକ୍ଷିଣପନ୍ଥୀ । କାହିଁକିନା, ବୁଖାରିନ୍ କହିଚନ୍ତି, ପୃଥିବୀର ସବୁଦେଶ ଯେ କେବଳ ସୋଭିଏତ୍ ଆଦର୍ଶରେ ବିପ୍ଳବ କରିବେ କିମ୍ବା ଏକରୂପ ପାର୍ଟି ଗଢ଼ିବେ, ଏ ପ୍ରତ୍ୟାଶା ଚରମ ସଙ୍କୀର୍ଣ୍ଣତା । ସେଇଭଳି, ଧନତନ୍ତ୍ରର ଆସନ୍ନ ପତନ ସାଙ୍ଗକୁ ସମାଜତନ୍ତ୍ରର ଆଶୁ-ଅଭ୍ୟୁଦୟ ପୃଥିବୀସାରା । କିମ୍ବା, ଜର୍ମାନୀର ସୋସାଲ୍ ଡେମୋକ୍ରାସି ସହିତ ଫ୍ୟାସିବାଦର ସମୀକରଣ । ବୁଖାରିନ୍‌ଙ୍କ ମତରେ ଏଗୁଡ଼ାକ ଅତିସରଳୀକରଣ । ବୁଖାରିନ୍ ଶେଷପର୍ଯ୍ୟନ୍ତ ଷ୍ଟାଲିନ୍‌ଙ୍କ ସଂଶୋଧନ ମାନିନେଇଚନ୍ତି, ମାତ୍ର ତାଙ୍କ ମୂଳବକ୍ତବ୍ୟ ଥିଲା, ଗଭୀର ସଙ୍କଟ ସତ୍ତ୍ୱେ ପୁଞ୍ଜିବାଦ ନିର୍ମୂଳ ହୋଇଯିବନାହିଁ, ବଞ୍ଚିଉଠିବ ଫ୍ୟାସିବାଦ ସହିତ । ଆପାତତଃ ନୈକଟ୍ୟ ସତ୍ତ୍ୱେ ସୋସାଲ୍ ଡେମୋକ୍ରାସି ଭିନ୍ନ ଏକ ରାଜନୀତିକ ପ୍ରତ୍ୟୟ, ଦୁହିଁଙ୍କୁ ଏକାକାର ଭାବିବା ବିଚାରବିଭ୍ରାଟ, ବିଭିନ୍ନ କମ୍ୟୁନିଷ୍ଟପାର୍ଟି ନିଜ ଦେଶର ବାସ୍ତବ ପରିସ୍ଥିତିକୁ ଚାହିଁ ସଂଗ୍ରାମର ରଣକୌଶଳ ସ୍ଥିରକରିବେ, ସଂଗ୍ରାମ ସକାଶେ ସାଧାରଣ କୋଉ ନିୟମ ବାହାରୁ ଲଦିଦିଆଯାଇ ପାରେନା । କିନ୍ତୁ ଷଷ୍ଠକଂଗ୍ରେସ୍‌ର ଡେଲିଗେଟ୍‌ମାନଙ୍କ ପାଖରେ ପହଞ୍ଚିପାରିନାହିଁ ବୁଖାରିନ୍‌ଙ୍କ ଖସଡ଼ା ପ୍ରସ୍ତାବ । (ଦ୍ର. ମସ୍କୋ ଆରକାଇଭ୍‌ର ଦଲିଲ୍ ନମ୍ବର ୪୯୩/୧/୩୬, କଲିକତା ଏସିଆଟିକ୍ ସୋସାଇଟି ସଂଗ୍ରହଶାଳାରେ ରଖାଯାଇଚି) । ତେବେ, କୋମିନ୍‌ଟର୍ଣ୍ଣର କାର୍ଯ୍ୟକାରୀ ସମିତିର ସଦସ୍ୟ ଏମ୍.ଏନ୍.ରାୟ ନିଶ୍ଚିତ ଅବଗତଥିଲେ ଉପନିବେଶ ବିଷୟରେ କି ପ୍ରସ୍ତାବ ପଠାଇଥିଲେ ବୁଖାରିନ୍ ଷ୍ଟାଲିନ୍‌ଙ୍କ ପାଖକୁ । ମାତ୍ର, ନିଜ ଦେଶର ଇତିହାସକୁ ନଜରରେ ରଖି ସଂଗ୍ରାମୀ ଯଦି

ସ୍ଥିରକରିବେ ରଣକୌଶଳ, ମସ୍କୋରେ ବସି ଉପନିବେଶର ତଥାକଥିତ ବିପ୍ଳବୀ କଣପାଇଁ ଅନ୍ନ ଧ୍ୱଂସକରିବେ ସୋଭିଏତ୍ ଇଉନିୟନ୍‌ର ? ଏମ୍.ଏନ୍.ରାୟ କିନ୍ତୁ ନିଜ ପୂର୍ବବର୍ତ୍ତୀ ତତ୍ତ୍ୱରୁ ଓହରିଆସିଥିଲେ ଯଥେଷ୍ଟ; କ୍ରମେ ଷ୍ଟାଲିନ୍‌ଙ୍କ ଚରମ ବାମପନ୍ଥା ବିଷୟରେ ସଂଶୟ ପ୍ରକାଶକରିଚନ୍ତି । ଷଷ୍ଠକଂଗ୍ରେସ୍‌ରେ ଉପସ୍ଥିତ ଥିଲେନାହିଁ ଅବଶ୍ୟ, ତାଙ୍କ ଅନୁପସ୍ଥିତିରେ ଭାରତର ପ୍ରତିନିଧିତ୍ୱ କରିଚି କମ୍ୟୁନିଷ୍ଟ୍ ପାର୍ଟି ଅବ୍ ଗ୍ରେଟ୍ ବ୍ରିଟେନ୍ (ସିପିଜିବି) । ଏବଂ ସେତିକିବେଳରୁ ୧୯୪୭ ପର୍ଯ୍ୟନ୍ତ ଭାରତୀୟ-କମିଉନିଷ୍ଟ୍‌ଙ୍କ ଅଭିଭାବକତ୍ୱ କରିଚି ବ୍ରିଟିଶ୍ କମିଉନିଷ୍ଟ ପାର୍ଟି ।

କୋମିନ୍‌ଟର୍ଣ୍ଣ ପରିଚାଳନାରେ ଷ୍ଟାଲିନ୍‌ଙ୍କ ସର୍ବମୟ କର୍ତ୍ତୃତ୍ୱ ଭାରତବର୍ଷ ପକ୍ଷରେ ଶୁଭ ହୋଇନାହିଁ, କାହିଁକିନା, ଜାତୀୟତାବାଦୀ ସଂଗ୍ରାମର ଆଭିମୁଖ୍ୟ ସୀମିତ ହେଲେସୁଦ୍ଧା, ଆନ୍ଦୋଳନ ଥିଲା ଇତିବାଚକ, ତାକୁ ପ୍ରତିକ୍ରିୟାଶୀଳ କହିବା ମାନେ ଗାନ୍ଧି, ନେହେରୁ, ସୁଭାଷ ବୋଷ, ବିବାକ ଚିହ୍ନିତହେଲେ ସାମ୍ରାଜ୍ୟବାଦର ଦଲାଲ୍; ଅର୍ଥାତ୍ ଅକ୍ଟୋବର୍‌ବିପ୍ଳବ ଛାଞ୍ଚରେ ଭାରତରେ ଗଣଅଭ୍ୟୁତ୍‌ଥାନ ପରିଣତ ହୋଇଥିଲା ଦୁଃସ୍ୱପ୍ନ । ସ୍ୱାଧୀନତା ସଂଗ୍ରାମର ମୂଳଧାରାରୁ କମ୍ୟୁନିଷ୍ଟ୍ ଖାଲି ବିଚ୍ଛିନ୍ନ ହୋଇଗଲେ ନାହିଁ, ଓ୍ୱାର୍କର୍‌ସ୍ ଆ୍ୟାଣ୍ଡ ପିଜାଣ୍ଟ୍‌ସ୍ ପାର୍ଟି ଉପରେ ମଧ୍ୟ ଘଟିଗଲା ମୀରଟ ଷଡ଼ଯନ୍ତ୍ରର ବଜ୍ରାଘାତ । ସମଗ୍ର କୋଡ଼ିଏଦଶକ ବ୍ୟାପି ସମାଜତାନ୍ତ୍ରିକ ଆନ୍ଦୋଳନ ପଙ୍ଗୁ ହୋଇଯାଇଚି ଯେମିତି, କମ୍ୟୁନିଷ୍ଟ୍ ସେମିତି ପର୍ଯ୍ୟୁଦସ୍ତ । ଏଣେ, ବୁଖାରିନ୍ ଆଉ ଫେରିନାହାଁନ୍ତି କୋମିନ୍‌ଟର୍ଣ୍ଣକୁ, ଏମ୍.ଏନ୍.ରାୟ ମଧ୍ୟ ବିତାଡ଼ିତ, ଯେପରି ଜର୍ମନ୍ ପ୍ରତିନିଧି ବ୍ରାଣ୍ଡଲର୍ କି ଥାଲ୍‌ହାଇମର୍ । କୋମିନ୍‌ଟର୍ଣ୍ଣ ଅଭ୍ୟନ୍ତରରେ ବିକଳ୍ପ ଭାବନା-ଚିନ୍ତାର ସମ୍ଭାବନା ତେଣୁ ନିଃଶେଷ, ଫଳରେ ନିଜ ଚରମ ମତାଦର୍ଶକୁ 'ଲେନିନ୍‌ବାଦ୍' ଆଖ୍ୟାଦେଇ ଚଳାଇଦିଅନ୍ତି ଷ୍ଟାଲିନ୍ । ଷଷ୍ଠକଂଗ୍ରେସ୍ ପାଖରୁ ଭାରତ ସଂକ୍ରାନ୍ତ ସମସ୍ୟାର ତତ୍ତ୍ୱାବଧାନ କରିଚନ୍ତି ବ୍ରିଟିଶ୍ ପାର୍ଟିର ବ୍ରାଡ୍‌ଲି; ଅର୍ଥାତ୍ ରାୟ ବିତାଡ଼ିତହେବା ପରେ ତିରିଶଦଶକ ମୂଳରୁ ଭାରତ କଥା ବୁଝୁଚି ବ୍ରିଟିଶ୍ ପାର୍ଟି । ଫଳତଃ, ଭାରତବର୍ଷର ବାସ୍ତବ ଅବସ୍ଥା କଣ, କୋମିନ୍‌ଟର୍ଣ୍ଣ ଜାଣିଚି ବ୍ରିଟିଶ୍ ପ୍ରତିନିଧିଙ୍କ ମାଧ୍ୟମରେ, ଏବଂ ପରିଣାମରେ, ସିପିଆଇ ଓ ଗ୍ରେଟ୍ ବ୍ରିଟେନ୍‌ର କମ୍ୟୁନିଷ୍ଟ୍ ପାର୍ଟି ମଧ୍ୟସ୍ଥ ସମ୍ପର୍କ ହୋଇଯାଇଚି ଜଟିଳ, କାହିଁକିନା, ଭାରତର ଗଣଆନ୍ଦୋଳନ ପ୍ରତି ବ୍ରିଟିଶ୍ ପାର୍ଟିର ଏକାଂଶର ଔଦାସୀନ୍ୟ ହୋଇଚି ଭାରତୀୟ କମ୍ୟୁନିଷ୍ଟ୍‌ଙ୍କ କ୍ଷୋଭର କାରଣ । ଶୋଚନୀୟ ଏ ଅବସ୍ଥାର ନିରସନ ହୋଇନାହିଁ ୧୯୩୬ରେ କୋମିନ୍‌ଟର୍ଣ୍ଣର ସପ୍ତମ କଂଗ୍ରେସ୍ ବସିବା ପର୍ଯ୍ୟନ୍ତ, ସପ୍ତମ କଂଗ୍ରେସ୍ ବସିବାବେଳକୁ ପୃଥିବୀର ଚେହେରାକୁ ବଦଳାଇଦେଇଚନ୍ତି ମୁସୋଲିନି ଆଉ ହିଟ୍‌ଲର୍ । ଫ୍ୟାସିବାଦ ଇଉରୋପରେ

ମୁଣ୍ଡଟେକିବା ଅବ୍ୟବହିତରେ ଦେଖାଦେଇଟି ବିଶ୍ୱଯୁଦ୍ଧର ସମ୍ଭାବନା, କମ୍ୟୁନିଷ୍ଟ୍ ମରିଚନ୍ତି ଜାଗାବର ଜାଗା, ନେତାମାନେ ପ୍ରାଣଭୟରେ ପଳାଇ ଆସି ଆଶ୍ରୟନେଇଚନ୍ତି ସୋଭିଏତ୍ ଇଉନିୟନ୍‌ରେ । ଷ୍ଟାଲିନ୍‌ଙ୍କ ବିରୋଧରେ ପାଟିଫିଟାଇବା ଏକ୍ଷଣି ଗୋହତ୍ୟା କି ବ୍ରହ୍ମହତ୍ୟା ! ତଥାପି, ବିଶ୍ୱପରିସ୍ଥିତି ଉପରେ କୋମିନ୍‌ଟର୍ଣ୍ଣର ପରିଚାଳକ ନିର୍ବାଚିତ ହୋଇଚନ୍ତି ଜର୍ଜି ଦିମିତ୍ରଫ୍ ଏବଂ ପ୍ରବର୍ତ୍ତନକରିଚନ୍ତି ଲେନିନ୍-ପ୍ରଦର୍ଶିତ ଯୁକ୍ତଫ୍ରଣ୍ଟ୍ ରଣନୀତି, କାହିଁକିନା, ପ୍ରତିପକ୍ଷ ଖାଲି ସାମ୍ରାଜ୍ୟବାଦ ନୁହେଁ, ତା ସାଙ୍ଗକୁ ଆସିଯାଇଚି ଫ୍ୟାସିବାଦ, ସ୍ୱୟଂ ସୋଭିଏତ୍ ଇଉନିୟନ୍‌ର ଅସ୍ତିତ୍ୱ ଏକ୍ଷଣି ଟଳମଳ । ଦରକାର ସେଥିପାଇଁ ଉଭୟ ସାମ୍ରାଜ୍ୟବାଦ ଓ ଫ୍ୟାସିବାଦକୁ ମିଳିତ-ସାମ୍ମୁଖ୍ୟ ଜରିଆରେ ପ୍ରତିରୋଧ । ମନେରଖିବା ଦରକାର, ଭାରତ ସ୍ୱାର୍ଥରେ ସୁଭାଷ ବୋସ୍ ମଧ୍ୟ ସମର୍ଥନ କରିଚନ୍ତି ଫ୍ୟାସିବାଦକୁ; ଏପରିକି ରବୀନ୍ଦ୍ରନାଥ ମଧ୍ୟ ଏଡ଼ାଇପାରିନାହାଁନ୍ତି ତାର ଆକର୍ଷଣ, ଇଉରୋପ୍‌ରେ ଯେମିତି ଏଜ୍‌ରା ପାଉଣ୍ଡ୍ ଓ ଏଲିୟଟ୍; ଏବଂ ଖାଲି ଜର୍ମାନୀରେ ନୁହେଁ, ହିଟ୍‌ଲର୍‌ଙ୍କ ସମର୍ଥକ ଏବେ ବି ରହିଚନ୍ତି ଆର୍ଯ୍ୟଭୂମି ଭାରତ ଓ ଇରାନ୍‌ର ରାଜନୀତିରେ । ତେବେ, ଦିମିତ୍ରଫ୍‌ଙ୍କ ସାମ୍ମୁଖ୍ୟକୁ ଯୁକ୍ତଫ୍ରଣ୍ଟ୍ ନକହି ଗଣଫ୍ରଣ୍ଟ୍ କହିବା ଅଧିକ ଯଥାର୍ଥ, କାହିଁକିନା, ସେଥିରେ ଅନ୍ତର୍ଭୁକ୍ତ ହୋଇଚନ୍ତି ସୋସାଲ୍ ଡେମୋକ୍ରାସିକୁ ବିରୋଧକରୁଥିବା ଲୋକ, ସାମ୍ରାଜ୍ୟବାଦ ଓ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାକୁ ବିରୋଧକରୁଥିବା ଲୋକ; ବସ୍ତୁତଃ ସମସ୍ତ ଗଣତାନ୍ତ୍ରିକ / ଜାତୀୟତାବାଦୀ ଲୋକ । ମାତ୍ର କୋମିନ୍‌ଟର୍ଣ୍ଣ ଘୋଷଣାକରିନାହିଁ ଷଷ୍ଠକଂଗ୍ରେସ୍‌ର ରାଜନୀତିକ ଲାଇନ୍‌ରୁ ପ୍ରସ୍ଥାନ । ଅଥଚ ସେ ଲାଇନ୍‌କୁ ନଛାଡ଼ିଲେ ଗଣସାମ୍ମୁଖ୍ୟ ଧାରଣାଟା, କମ୍ୟୁନିଷ୍ଟ୍‌ଙ୍କ ବିଚାରରେ ଅନ୍ତତଃ, ପ୍ରତିଭାତହେବ କଣ୍ଟ୍ରାଡିକ୍‌ସନ୍ ।

ଏ ସ୍ୱବିରୋଧ ଭାରତରେ ସୃଷ୍ଟିକରିଚି ଗୁରୁତର ସମସ୍ୟା । ରଜନୀ ପାଲ୍‌ମା ଦତ୍ତ ଓ ବେନ୍ ବ୍ରାଡ୍‌ଲି ପ୍ରମୁଖ ଅବଶ୍ୟ ବାମପନ୍ଥୀ ସଂକୀର୍ଣ୍ଣତା ପରିହାରକରି ଜାତୀୟତାବାଦୀ ଶକ୍ତିଗୁଡ଼ିକ ସହଯୋଗରେ ଜାତୀୟଫ୍ରଣ୍ଟ୍ ସଂଗଠିତକରିବାକୁ ପରାମର୍ଶ ଦେଇଚନ୍ତି, କିନ୍ତୁ ଭାରତୀୟ କମ୍ୟୁନିଷ୍ଟ୍ ଥିଲେ ନିରୁଦ୍‌ବିଗ୍ନ, ଷ୍ଟାଲିନ୍‌ଙ୍କ ମଗଜଧୋଲାଇର ପରାକ୍ରମ ଭାରତୀୟ ବିପ୍ଳବୀଙ୍କ ସକାଶେ ହୋଇଚି ଏପରି ଅଲଂଘ୍ୟ ଓ ଅଭେଦ୍ୟ ! ଅକର୍ମଣ୍ୟ-ମସ୍ତିଷ୍କ ଏଇ କମ୍ୟୁନିଷ୍ଟ୍, କଂଗ୍ରେସ୍-ସୋସାଲିସ୍ଟ୍‌ପାର୍ଟି ସହିତ ମଧ୍ୟ ସ୍ଥାପନ କରିପାରିନାହାଁନ୍ତି ସହଯୋଗର ସମ୍ପର୍କ, ଅଥଚ ନେହରୁ ପ୍ରକାଶ୍ୟରେ କରିଚନ୍ତି ଫ୍ୟାସିବାଦର ବିରୋଧ, ମୁସୋଲିନିଙ୍କ ଆମନ୍ତ୍ରଣକୁ ମଧ୍ୟ ଇଉରୋପ୍‌ଯାତ୍ରା କାଳରେ କରିଚନ୍ତି ପ୍ରତ୍ୟାଖ୍ୟାନ । ମାତ୍ର ତିରିଶଦଶକ ମଝିରେ ସବୁରକମ ପ୍ରତିରୋଧ ଓ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଖତମ୍‌କରି ଷ୍ଟାଲିନ୍ ହୋଇଚନ୍ତି ସୋଭିଏତ୍ ଇଉନିଅନ୍‌ର ଏକାଙ୍ଗ ଚକ୍ରବର୍ତ୍ତୀ । ଦିମିତ୍ରଫ୍

ଲାଗିଚନ୍ତି ଗଣସାମ୍ମୁଖ୍ୟ ତତ୍ତ୍ୱକୁ ପ୍ରତିଷ୍ଠାକରିବେ କମିଉନିଷ୍ଟ୍ ପାର୍ଟିମାନଙ୍କ କର୍ମସୂଚି ଭାବରେ, କୋମିନ୍‌ଟର୍ଣ୍ଣ କାର୍ଯ୍ୟକାରୀ ସମିତିରୁ ଆରମ୍ଭକରି ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଅଧିଷ୍ଠିତ ହୋଇଚନ୍ତି ଖାଲି ସୋଭିଏତ୍ ପାର୍ଟିର କର୍ମକର୍ତ୍ତା । କୋମିନ୍‌ଟର୍ଣ୍ଣର ଅସଲ ନିୟନ୍ତ୍ରଣ ତେଣୁ ସୋଭିଏତ୍ ପାର୍ଟି ଅକ୍ତିଆରରେ; ସୋଭିଏତ୍ ଇଉନିଅନ୍‌ର ସମାଜ ଓ ରାଷ୍ଟ୍ରନୀତିରେ ସେକାଳ ଥିଲା ଏକ ବେଦନାଦାୟକ ଅଧ୍ୟାୟ । କାହିଁକିନା, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ରୀତିନୀତିର ଜାଗା ଦଖଲକରିଚି କ୍ଷମତାର ପ୍ରବଳ କେନ୍ଦ୍ରୀକରଣ ଓ ରାଷ୍ଟ୍ରନୀତିରେ ଅମଲାତନ୍ତ୍ରର ସର୍ବବ୍ୟାପୀ ପ୍ରାଦୁର୍ଭାବ । କୋମିନ୍‌ଟର୍ଣ୍ଣରେ ରହିଚନ୍ତି ତୋଗଲିଆତ୍ତି ଓ ଦିମିତ୍ରଫ୍‌ଙ୍କ ଭଳି ପ୍ରଭାବଶାଳୀ ମାର୍କ୍ସବାଦୀ; କାର୍ଯ୍ୟତଃ କିନ୍ତୁ ଅସହାୟ ନିର୍ବାକ୍ ଦର୍ଶକ । ପ୍ରାଣକୁ ଭୟନାହିଁ ପୁଣି କାହାର ! ଇଉରୋପ୍‌ରୁ ପଳାଇଆସି ଆତ୍ମଗୋପନ କରିଚନ୍ତି ରସିଆରେ, ଏଣେ କୋମିନ୍‌ଟର୍ଣ୍ଣର କେନ୍ଦ୍ରୀୟ ଦପ୍ତର ରହିଚି ମସ୍କୋରେ । ଭାରତ-ଫାରତ ଭଳି ପାର୍ଟି ତ ସୋଭିଏତ୍ ଇଉନିୟନ୍‌ର ପୋଷ୍ୟ; ପୁଣି ଷ୍ଟାଲିନ୍‌ଙ୍କ ପାଖରେ ନତଜାନୁ କିଙ୍କର । ଅବସ୍ଥା ଏତେ ଖରାପ ଯେ, କୋମିନ୍‌ଟର୍ଣ୍ଣ ଭାଙ୍ଗିଦେଇ ଷ୍ଟାଲିନ୍ ଯେତେବେଳେ ଘୋଷଣାକଲେ, 'ସୋସାଲିଜ୍ମ ଇନ୍ ଓଆନ୍ କଣ୍ଟ୍ରି', ଭୂପେନ୍ଦ୍ରନାଥ ଦତ୍ତ କହିଲେ, 'ଭଲ ହେଲା, ସାଇବେରିଆକୁ ଟଙ୍କା ପଠାଇଲେ କଣ ବିପ୍ଳବ ହୁଅନ୍ତା ।' ଲକ୍ଷ୍ୟକରିବା କଥା, ସିପିଆଇ କିପରି ସୋଭିଏତ୍ ଇଉନିଅନ୍‌ର କ୍ରୀଡ଼ନକରେ ପରିଣତହୋଇଥିଲା ତାର ପ୍ରମାଣ: କୋମିନ୍‌ଟର୍ଣ୍ଣର ସପ୍ତମକଂଗ୍ରେସ୍ ଶେଷରେ କାର୍ଯ୍ୟକାରୀ ସମିତିରେ ନିଃସର୍ତ୍ତରେ ସ୍ଥାନପାଇଚନ୍ତି ରସିଆର ନିରାପତ୍ତା ଆଉ ଗୋଏନ୍ଦା ବିଭାଗରୁ ମସ୍‌କଭିନ୍, ଏଝଭ୍, ଝଦାନଭ୍, ମଲୋତଭ୍ । ତା ଫଳରେ କୋମିନ୍‌ଟର୍ଣ୍ଣର ଅଭ୍ୟନ୍ତରୀଣ ସଂଗଠନରେ ଯୋଉ ଗୁଣଗତ ଓଲଟପାଲଟ ଘଟିଥିଲା, ତା'ର ମୂଲ୍ୟ ଚୁକାଇବାକୁ ପଡ଼ିଚି ଭାରତ ଭଳି ଅଧିକାଂଶ କମ୍ୟୁନିଷ୍ଟ୍ ପାର୍ଟିକୁ । ଗାନ୍ଧିଙ୍କୁ କହିବେ ସାମ୍ରାଜ୍ୟବାଦର ଦଲାଲ୍; ତେଣୁ ଜାତୀୟତାବାଦୀଙ୍କ ସହିତ ଗଢ଼ିବେନାହିଁ ଫ୍ୟାସିଷ୍ଟ୍-ବିରୋଧୀ ସାମ୍ମୁଖ୍ୟ । ଖାଲି ହରତାଳ ଡାକିବେ କି ଟ୍ରେଡ୍‌ଇଉନିଅନ୍ ଗଢ଼ିବେ, ସେଥିରୁ ପଇସା ମିଳିବ । ଏଇଥିଲା ବାମପନ୍ଥୀ ରାଜନୀତି । ବ୍ୟକ୍ତିଗତ ବ୍ୟତିକ୍ରମ ସତ୍ତ୍ୱେ ଏବଂ ସିପିଆଇ ଯେହେତୁ ନିଜ ଅସ୍ତିତ୍ୱ ରକ୍ଷାକରିବାକୁ ରସିଆ ଉପରେ ଏକାନ୍ତଭାବେ ନିର୍ଭରକରେ, ଷ୍ଟାଲିନ୍‌ଙ୍କ ଭାଷ୍ୟ ଛଡ଼ା ବିକଳ୍ପ କୋଉ ମତାମତ ହୋଇପାରିନାହିଁ ଗ୍ରହଣଯୋଗ୍ୟ । ଭୟାନକ ଏଇ ବୁଦ୍ଧିବୈକଲ୍ୟ, କାହିଁକିନା, ରସିଆନ୍ ବିପ୍ଳବୀ ଭେରା ଜାସୁଲିକ୍‌ଙ୍କ ପ୍ରଶ୍ନର ଉତ୍ତରରେ ୧୮୭୭ରେ ମାର୍କ୍ସ ଲେଖିଚନ୍ତି, We have to come down from the realm of pure theory to Russian reglity to discuss this... those who

believe in the historical necessity of the dissolution of communal property in Russia cannot under any circumstance prove that necessity using my exposition of the inevitable course of events in western Europe. They would have to provide new arguments, quite independent of the developments I advanced.

ଏ ଉଦାରତା, ଲେନିନ୍-ପରବର୍ତ୍ତୀ କୋମିନ୍‌ଟର୍ଣ୍ଣ ଦିନକପାଇଁ ବି ଦେଖାଇନାହିଁ, ଏବଂ ସେଥିପାଇଁ, ୧୯୪୧ ଜୁନ୍ ୨୨ ଦିନ ହିଟ୍‌ଲର୍ ରସିଆ ଆକ୍ରମଣକରିବା ସଙ୍ଗେ ସଙ୍ଗେ କୋମିନ୍‌ଟର୍ଣ୍ଣ କାହାରିକୁ ନପଚାରି ଘୋଷଣାକରିଚି 'ଜନଯୁଦ୍ଧ', ଅର୍ଥାତ୍ ଜାତୀୟ ସ୍ୱାର୍ଥକୁ ଉପେକ୍ଷାକରି ମିତ୍ରଶକ୍ତି ଓ ସୋଭିଏତ୍ ଇଉନିଅନ୍‌କୁ ନିଃସର୍ତ୍ତ ସମର୍ଥନ । ସିପିଆଇ ବି ଆଖିବୁଜି ଯାଇଚି ସେଇ ବାଟରେ । ପରିଣାମରେ ଜାତୀୟ କଂଗ୍ରେସ୍ ସହିତ ଜାତୀୟ ଫ୍ରଣ୍ଟଗଢ଼ିବା ରାଜନୀତି ଶେଷହୋଇଯାଇଚି, କାହିଁକିନା, ସାମ୍ରାଜ୍ୟବାଦ ବିରୋଧରେ ୧୯୪୨ରେ ସଂଗଠିତ ହୋଇଚି 'ଭାରତଛାଡ଼' ଆନ୍ଦୋଳନ । ସେଥିରେ ମଧ୍ୟ ଅଂଶଗ୍ରହଣ କରିନାହିଁ ସିପିଆଇ । ତୃତୀୟ ଆନ୍ତର୍ଜାତିକର ଅବଲୁପ୍ତି ଘୋଷଣାକଲେ ଯେତେବେଳେ ୧୯୪୩ରେ ଷ୍ଟାଲିନ୍, କୋଉହେଲେ ଭାରତୀୟ କମ୍ୟୁନିଷ୍ଟର ମତାମତ ପଚାରିନାହାଁନ୍ତି, କାହିଁକିନା, ଆଗରୁ ଜାଣନ୍ତି, ବସ୍ କହିଲେ ବସିବେ, ଉଠ୍ କହିଲେ ଉଠିବେ, ଜାତିର ମୂଳସ୍ରୋତରୁ ବିଛିନ୍ନ ଏଇ ଭୂଇଁଫୋଡ଼ । ଭୂଇଁଫୋଡ଼, କାହିଁକିନା, ଏମାନେ ଭାବିଚନ୍ତି, ସଶସ୍ତ୍ର ବିଦ୍ରୋହକୁ ବ୍ୟର୍ଥକରିଦେବାକୁ ଗାନ୍ଧି କରିଥିଲେ ନିଜ ଆନ୍ଦୋଳନକୁ ଅହିଂସ । ଅଥବା, ୧୯୪୭ରେ ସ୍ୱାଧୀନତା ଯେତେବେଳେ ଆସିଗଲା, ଏମାନେ କହିଲେ, ଯେ ଆଜାଦୀ ଝୁଟା ହୈ । ସନ୍ଦେହ ନାହିଁ, ସ୍ୱାଧୀନତା ସଂଗ୍ରାମ ସାଙ୍ଗରେ ଶ୍ରେଣୀସଂଗ୍ରାମକୁ ଗାନ୍ଧି ଯୋଡ଼ିନାହାଁନ୍ତି, ମାତ୍ର ସାମ୍ରାଜ୍ୟବାଦ ସ୍ୱାର୍ଥରେ କରିନାହାଁନ୍ତି ସେ କାମ । ଶ୍ରେଣୀସଂଗ୍ରାମ କି ହିଂସାକୁ ପ୍ରଶ୍ରୟଦେଲେ ଭାରତରେ ଘଟିଥାନ୍ତା ଗୃହଯୁଦ୍ଧ, ଯୋଉଥିରୁ ଲାଭଉଠାଇବାକୁ ଇଂରେଜ୍ ଥିଲା ଅତିଶୟ ତତ୍ପର । ଜାତୀୟତାବାଦୀ ଆନ୍ଦୋଳନର ଏଇ ଇତିବାଚକ ଦିଗ କମ୍ୟୁନିଷ୍ଟଙ୍କ ଦୃଷ୍ଟିରେ ପଡ଼ିନାହିଁ, ଯେହେତୁ ଶ୍ରେଣୀସଂଗ୍ରାମ ପ୍ରତ୍ୟୟଟା ଥିଲା ତାଙ୍କ ପାଇଁ ଇତିହାସର କ୍ରମବିକାଶ ନୁହେଁ, ଏକେବାରେ ଯାନ୍ତ୍ରିକ 'ଯାହା ଶିଖାଇଚି ଜଟାଧାରୀରେ, ବରାଙ୍ଗୀ !' ମାର୍କ୍ସ ତ ସେଥିପାଇଁ ସ୍ପଷ୍ଟ କରିଦେଇଚନ୍ତି, ରସିଆର ସର୍ବସାଧାରଣ ସଂପଦ ବ୍ୟକ୍ତିଗତ ମାଲିକାନାରୁ ମୁକ୍ତହେବ କି ନାହିଁ, ନିର୍ଭରକରୁଚି ଐତିହାସିକ ପ୍ରୟୋଜନ ଉପରେ (ଶ୍ରେଣୀସଂଗ୍ରାମ ଉପରେ ନୁହେଁ) । ସେ ଐତିହାସିକ ପ୍ରୟୋଜନ ପ୍ରମାଣକରିବାକୁ ହେବ ବିପ୍ଲବୀଙ୍କୁ ନିଜସ୍ୱ ଯୁକ୍ତି ବଳରେ, ମାର୍କ୍ସବାଦୀ ଫର୍ମୁଲା ବଳରେ ନୁହେଁ । ବ୍ୟକ୍ତିଗତ ମାଲିକାନା

ଉପରେ ଟିପ ଲାଗିନାହିଁ ବୋଲି, ବ୍ରିଟିଶ୍ ଆଧିପତ୍ୟରୁ ଦେଶର ମୁକ୍ତି ହେବ 'ଝୁଟା' ? ସମାଜର ମୌଳିକ ପରିବର୍ତ୍ତନ ଅବଶ୍ୟ ସମାଧା ହୋଇନାହିଁ, କିନ୍ତୁ କମିଉନିଷ୍ଟ୍ ଯେତେବେଳେ ଶ୍ରମିକ-କୃଷକଙ୍କୁ ଶ୍ରେଣୀଭିତ୍ତିରେ ସଂଗଠିତକରିବାକୁ ଉଦ୍ୟମକରିଚନ୍ତି, ଅନ୍ତରାୟ ହୋଇ ଛିଡ଼ାହୋଇଚି କାଷ୍ଟ୍ ଷ୍ଟ୍ରଗ୍ଲ । ମାର୍କ୍ସବାଦୀ ଜାତୀୟଆନ୍ଦୋଳନ ସହିତ ଶ୍ରେଣୀସଂଗ୍ରାମକୁ ଯୋଡ଼ିପାରିନାହାଁନ୍ତି ଯେମିତି, ଜାତିଭେଦ / ଧର୍ମଭେଦ / ଭାଷାଭେଦ ସହିତ ମଧ୍ୟ ଶ୍ରେଣୀ ବିଦ୍ୱେଷକୁ ଯୋଡ଼ିପାରିନାହାଁନ୍ତି ସେମିତି । କିଛିଦୂର ଆଗେଇଯାଇ ଝୁଣ୍ଟିପଡ଼ିଚନ୍ତି । ଦରକାର ଥିଲା ସେତେବେଳେ ଦ୍ୱାନ୍ଦ୍ୱିକ ବିଚାର, ପାର୍ଟିଲାଇନ୍ ନୁହେଁ ।

ଗ୍ରାମ୍‌ସିଙ୍କୁ ପଚରାଯାଇଚି, ଇଟାଲିରେ କମିଉନିଷ୍ଟ୍ ଆଶାନୁରୂପ ଅଗ୍ରସର ହେଉନାହାଁନ୍ତି କାହିଁକି ? କହିଚନ୍ତି, 'କାହିଁକିନା, ଦେଶର ମାଟି ସାଙ୍ଗରେ ପରିଚୟ ସଂପୂର୍ଣ୍ଣ ହୋଇନାହିଁ, ପ୍ରତ୍ୟେକ ଦେଶର ରହିଚି ନିଜସ୍ୱ ମୌଳିକତା । ତା ସାଙ୍ଗକୁ ଯଦି ପ୍ରାଚୀନ କୋଉ ସଭ୍ୟତାର ଉତ୍ତରାଧିକାର ଲାଗିଥିବ, ତେବେ ସେ ମୌଳିକତା ହୁଏ ଏକେବାରେ ଅନନ୍ୟ । ସେଇ ଜଟିଳତାକୁ ବୁଝିନପାରିଲେ ବେଶିଦୂର ଆଗେଇବା ସମ୍ଭବପର ନୁହେଁ ।' ସନ୍ଦେହ ନାହିଁ, ଆମ ମାର୍କ୍ସବାଦୀ ସେଦିଗରେ ଯଥୋପଯୁକ୍ତ ପରିଶ୍ରମ କରିନାହିଁ; କୋମିନ୍‌ଟର୍ଣ୍ଣର ଲାଇନ୍‌କୁ ବେଦବାକ୍ୟ ଭାବି ଏଠୁ ସେଠିକି ସେଠୁ ଏଠିକି ଯାଇଯାଇ ପଥଶ୍ରମରେ କ୍ଲାନ୍ତ ହୋଇଚି; ଆଜି ରୁଷ୍-ବିପ୍ଲବର ମଡେଲ୍, କାଲି ଚୀନ୍-ବିପ୍ଲବର ମଡେଲ୍‌କୁ ଘେରି ତନାଘନା ତର୍କକରିଚି; ଆପଣା ଦେଶପାଇଁ ବିପ୍ଲବର ମଡେଲ୍ ଠିକ୍ କି ରକମ ହେବା ଦରକାର ସେକଥାକୁ ଗୁରୁତ୍ୱ ଦେଇନାହିଁ ବେଶି । ଦେଇଥିଲେ, ବୁଝିଥାନ୍ତା ଫରାସୀବିପ୍ଳବ କିମ୍ବା ରୁଷ୍-ବିପ୍ଳବ ପୃଥିବୀରେ ଘଟିଚି ମାତ୍ର ଦୁଇଥର ଏବଂ କେବଳ ଇଉରୋପରେ । ଭାରତରେ ପ୍ରତିନିୟତ ଯା ଘଟେ, ବିଦ୍ୟାଧର ନାଇପଲ୍ ତାକୁ ଲକ୍ଷ୍ୟକରି ୧୯୯୦ରେ ଲେଖିଚନ୍ତି ବିରାଟକାୟ ଗ୍ରନ୍ଥ: *ଇଣ୍ଡିଆ, ଆ ମିଲିଅନ୍ ମିଉଟିନିଜ୍ ନାଓ* । ଅର୍ଥାତ୍, ସ୍ୱତଃସ୍ଫୂର୍ତ୍ତ ବିଦ୍ରୋହ ଯା ଅନେକ, କିନ୍ତୁ ପରସ୍ପର ବିଚ୍ଛିନ୍ନ, କାହିଁକିନା, ଯା ସ୍ୱତଃସ୍ଫୂର୍ତ୍ତ, ତା ସଚେତନ ହୋଇପାରେନା । ଏବଂ ଯେହେତୁ ସଚେତନ ନୁହେଁ, ଆପାତଃ ଓ ଅସ୍ଥାୟୀ ସ୍ୱତଃସ୍ଫୂର୍ତ୍ତତାରୁ ସଚେତନତାକୁ ଉତ୍ତରଣ, ବିଦ୍ରୋହରୁ ବିପ୍ଳବକୁ ଉତ୍ତରଣ ଭଳି ବିରଳ ଘଟଣା; ମାତ୍ର ସେ ଘଟଣାକୁ ଘଟାଇବା ମାର୍କ୍ସବାଦୀଙ୍କ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । କର୍ତ୍ତବ୍ୟ ପାଳିତହେବ କି ବାଗବର୍ଗରେ, କୋମିନ୍‌ଟର୍ଣ୍ଣ ବତାଇନାହିଁ, କାହିଁକିନା, ସ୍ୱୟଂ ଷ୍ଟାଲିନ୍ ସେ ବିଷୟରେ ଥିଲେ ଉଦାସୀନ କିମ୍ବା ଅନଭିଜ୍ଞ । ସମାଜର ରୂପାନ୍ତର ବିଷୟରେ ମାର୍କ୍ସଚିନ୍ତାର ଦୃଷ୍ଟିକେନ୍ଦ୍ର ତେଣୁ ଇତିହାସ, ଯୋଉ କେନ୍ଦ୍ରିକତାକୁ ସ୍ପଷ୍ଟକରିଚନ୍ତି ଗ୍ରାମ୍‌ସି କୋମିନ୍‌ଟର୍ଣ୍ଣର ବ୍ୟାଖ୍ୟାକୁ ଉପେକ୍ଷାକରି । କାହିଁକିନା, ଅର୍ଥନୀତିକ ସାମ୍ୟ କୋଉ ସ୍ୱାଧୀନ ପ୍ରତୀତି ନୁହେଁ, ଇତିହାସର ହିଁ ଅନୁଷଙ୍ଗ ।

ଏକ୍ଷଣି ଦେଶରେ ଦେଖାଦେଇଚି ବ୍ୟାପକ ରାଜନୀତିକ ଅନିଶ୍ଚୟତା । ଲୋକ ବୁଝିଲେଣି ବୁର୍ଜୋୟା ଜାତୀୟତାବାଦ ଆଉକିଛି ଦେଇପାରିବନାହିଁ । କଂଗ୍ରେସ୍ ଓ ରାଜନୀତିକ ହିନ୍ଦୁତ୍ୱ ପାଖରୁ ମୁହଁଫେରାଇ ନେଉଚନ୍ତି ଜନଗଣ; ଶୂନ୍ୟସ୍ଥାନ କିନ୍ତୁ ପୂରଣକରି ପାରୁନାହିଁ ବାମପନ୍ଥୀ; ଶିବିର ବହୁଧା ବିଭକ୍ତ । କିନ୍ତୁ ଅନ୍ତର୍ମନ୍ଥନ ଚାଲୁଚି । କୋମିନ୍‌ଟର୍ଣ୍ଣ ଅନୁଶାସନ ବାହାରେ ମାର୍କ୍ସବାଦୀ ବୁଦ୍ଧିଜୀବୀଙ୍କ ଅନ୍ତର୍ମନ୍ଥନର ଇତିହାସ ଯଦି କୋଉହେଲେ ଭବିଷ୍ୟତକୁ ବାଟକଢ଼ାଏ, ତେବେ ମାନବେନ୍ଦ୍ରନାଥ ରାୟଙ୍କୁ ଦୃଷ୍ଟାନ୍ତ କରାଯାଇପାରେ, ବିଶେଷତଃ ଯେହେତୁ, ଦେଶକୁ ଫେରିଆସି ରାୟ କୋମିନ୍‌ଟର୍ନ ବହିର୍ଭୂତ ବୈପ୍ଳବିକ ରାଜନୀତିରେ ଲିପ୍ତରହିଚନ୍ତି ଆମୃତ୍ୟୁ । ଆତ୍ମଗୋପନ କରିଥିବା ବେଳେ ୧୯୩୦ରେ ଇଂରେଜ୍ ହାତରେ ଭୋଗିଚନ୍ତି ଏକକାଳୀନ ଛ'ବର୍ଷ କାରାଦଣ୍ଡ । ତାଙ୍କ ଗୁରୁ ଯତୀନ୍ ମୁଖର୍ଜୀଙ୍କ ଗୁରୁ ଅରବିନ୍ଦ କାରାଗାରରେ ହିଁ ଲାଭକରିଥିଲେ ଆଧ୍ୟାତ୍ମିକ ଉପଲବ୍ଧି; ରାୟ ସେପରି କୋଉ ପରମାର୍ଥ ପାଇନାହାଁନ୍ତି; ମାତ୍ର ମାର୍କ୍ସୀୟ ଜୀବନଦର୍ଶନ ମନେହୋଇଚି ଅସମ୍ପୂର୍ଣ୍ଣ । କୋମିନ୍‌ଟର୍ଣ୍ଣରେ ଭାରତର ପ୍ରତିନିଧିତ୍ୱ କରିବାବେଳେ ଲେନିନ୍‌ଙ୍କୁ କହିଥିଲେ, ସମାଜତାନ୍ତ୍ରିକ ବିପ୍ଳବର ସୂତ୍ରପାତହେବା ଉଚିତ ପ୍ରାକ୍-ପୁଞ୍ଜିବାଦୀ ସମାଜରୁ, ଇଉରୋପରୁ ନୁହେଁ । ଇଉରୋପର ବୁର୍ଜୋୟା ପୁଞ୍ଜିସଂଗ୍ରହ ସକାଶେ ଉପନିବେଶକୁ ଦୋହନ କରୁଚି; ନିଜ ଦେଶର ଶ୍ରମିକ-କୃଷକଙ୍କୁ ସେଇ ସଂଚିତ ଉଦ୍‌ବୃତ୍ତରୁ ଏକାଂଶ ଉତ୍କୋଚଦେଇ କରିଦେଉଚି ପରିବର୍ତ୍ତନ-ବିମୁଖ, ଏବଂ ସେଥିପାଇଁ, ଉପନିବେଶର ଶ୍ରମଜୀବୀଶ୍ରେଣୀ ସହିତ ସମସ୍ୱାର୍ଥରେ ଏକଜୋଟ୍‌ହେବା ସେମାନଙ୍କ ପକ୍ଷରେ ସମ୍ଭବପର ନୁହେଁ । ଏ ଯୁକ୍ତି କିନ୍ତୁ ଲେନିନ୍‌ଙ୍କ ମନକୁ ପାଇନାହିଁ, କାହିଁକିନା, ବିପ୍ଳବ କହିଲେ ଶ୍ରମଜୀବୀର ସ୍ୱାର୍ଥରକ୍ଷା ଖାଲି ବୁଝାଏନା, ତା ସାଙ୍ଗକୁ ରହିଚି ଚେତନା-ବିକାଶର ସଂଯୋଗ । ପ୍ରାକ୍-ଧନତାନ୍ତ୍ରିକ ସମାଜରେ ପୁଞ୍ଜିବାଦ ପାକଳ ହେବାଯାଏଁ ପ୍ରତିବାଦ କି ପ୍ରତିରୋଧ ଭାବାବେଗ ପର୍ଯ୍ୟାୟକୁ ଅତିକ୍ରମ କରିପାରେନା । ଅନ୍ତତଃ ମାର୍କ୍ସଙ୍କ ଦୃଷ୍ଟିରେ । ଋସିଆନ୍ ବିପ୍ଳବୀ ଆନେନ୍‌କଫ୍ ଲେଖିଚନ୍ତି, ମାର୍କ୍ସ ଯେତେବେଳେ ବ୍ରସେଲ୍‌ସ୍‌ରେ ପ୍ରବାସୀ, ବାମପନ୍ଥୀଙ୍କ ଏକ ପାଠଚକ୍ରରେ ଏଙ୍ଗେଲ୍ସ କହିଚନ୍ତି, ଯେକୌଣସି ଜଙ୍ଗୀ ଆନ୍ଦୋଳନକୁ ଯଥାଯଥ ପରିଚାଳନା କରିବାକୁ ସର୍ବାଦୌ ଆବଶ୍ୟକ ତତ୍ତ୍ୱଗତ ସ୍ୱଚ୍ଛତା । ଦେଶରୁ ଦେଶ ଇଉରୋପ୍‌ରେ ଦେଖାଯାଉଚି ବିପ୍ଳବର ଅଙ୍କୁରୋଦ୍‌ଗମ, ମାତ୍ର ତତ୍ତ୍ୱଗତ ସ୍ୱଚ୍ଛତା ନଥିଲେ, ଦେଶ-ଦେଶ ଭିତରେ ଐକମତ ଗଢ଼ିହେବନାହିଁ । ହଠାତ୍ ଶ୍ରମିକନେତା ଓୟେଟ୍‌ଲିଙ୍ଗ୍‌ଙ୍କୁ ମାର୍କ୍ସ ପଚାରିଦେଲେ, ଶୁଣୁଚି, ଆପଣମାନଙ୍କ ପ୍ରଚାର ଜୋର୍‌ରେ ହୁଲ୍‌ସ୍ଥୁଲ୍ ପଡ଼ିଗଲାଣି ଜର୍ମାନୀରେ, ଢେର୍ ଶ୍ରମିକ ବି ଆନ୍ଦୋଳନ କାରଣରୁ

ରୁଜିରୋଜଗାର୍ ହରାଇଲେଣି । ବିପ୍ଳବୀ କର୍ମଧାରାର ମୂଳ ସାମାଜିକ ପ୍ରେରଣା କି ରକମ ଆପଣମାନଙ୍କର ? ଓୟେଟ୍‌ଲିଙ୍ଗ୍ ହଡ଼ବଡ଼େଇ ଗଲେ; କହିଲେ, ଶ୍ରମିକର ଜୀବନଯାତ୍ରା ଯେହେତୁ ଦୁଃସହ, ବିପ୍ଳବର ଆବଶ୍ୟକତା ବୁଝିବାକୁ ବିମୂର୍ତ୍ତ କୋଉ ତତ୍ତ୍ୱ ଦରକାର ହୁଏନା; ଏବଂ ଦୁର୍ଗତି ଯେହେତୁ ଋକ୍ଷୁଷ, ଦୁର୍ଗତି ଯିଏ ଅଙ୍ଗେ ନିଭାଇନାହିଁ, ଦୁର୍ଗତକୁ ଶିଖାଇବ କୋଉ ନୂଆ କଥା ? ମାର୍କ୍ସ ତାଙ୍କୁ ଥମାଇଦେଇ କହିଚନ୍ତି, ଜର୍ମାନୀ ଗୋଟାଏ ସଭ୍ୟସମାଜ, ବିଜ୍ଞାନସମ୍ମତ ଚିନ୍ତା ଓ ଯୁକ୍ତିସଂଗତ ମତାମତ ଛଡ଼ା ବିପ୍ଳବକୁ ଡକରାଦେବା ସେଠି ସୁଆଙ୍ଗ ଭଳି ! ନିଜକୁ ଭାବୁଚ ମନ୍ତ୍ରଦାତା, ଲୋକଗୁଡ଼ାଙ୍କୁ ଗଜମୂର୍ଖ । ଏଇ ଭଦ୍ରଲୋକ ଆନେନ୍‌କଫ୍ ଆସିଚନ୍ତି ରସିଆରୁ । ରସିଆ ଆଜି ମଧ୍ୟ ଅନେକାଂଶରେ ଅସଭ୍ୟ, ତମ ଭଳି ଉଦ୍‌ଭଟ ପ୍ରଚାରକ ସେଠି ହୁଏତ ସଭାକୁ ଲୋକ ଟାଣିପାରିବ; ଜର୍ମାନୀରେ ନୈବ ନୈବଚ । ଓୟେଟ୍‌ଲିଙ୍ଗ୍ ଉତ୍ତେଜିତହୋଇ କହୁଥିଲେ, ମେଧାବୀଙ୍କ ମନଗଢ଼ା ତତ୍ତ୍ୱ କି କାମରେ ଲାଗିବ ଆମର ? ଆମେ ନିଜେ ଶ୍ରମିକ, ସେଇ ଅଭିଜ୍ଞତା କରିଚି ଆମକୁ ନେତା, ପୋଥିପଢ଼ା ବିଦ୍ୟା ନୁହେଁ... । ମାର୍କ୍ସ କିନ୍ତୁ ଉଠିପଡ଼ିଚନ୍ତି, 'ନିରାଟ ନିର୍ବୋଧତା କାହାରି କିଛି ଉପକାର କରିନାହିଁ ଅଦ୍ୟାବଧି' । ସଭା ଭାଙ୍ଗିଯାଇଚି, ମାତ୍ର ଓୟେଟ୍‌ଲିଙ୍ଗ୍ ଶ୍ରମିକସଂଗଠନ ସଦସ୍ୟ ମୋସେସ୍ ହେସ୍‌ଙ୍କୁ ଲେଖନ୍ତି; 'ମାର୍କ୍ସ ଭାବୁଚନ୍ତି, ବୁର୍ଜୋୟସି ଯେପର୍ଯ୍ୟନ୍ତ ଶିଳ୍ପାୟନର ବୁନିଆଦକୁ ଦୃଢ଼ କରିନାହିଁ, ସାମ୍ୟବାଦୀ ପ୍ରତିରୋଧ ସଫଳ ହେବନାହିଁ । ମାତ୍ର ଶ୍ରମିକକାରିଗର ସକାଶେ ବୁର୍ଜୋୟା-ବିରୋଧିତାର ଫେର୍ ବେଳକାଳ ଅଛିନା କଣ ?' ଅନତି ବିଳମ୍ବେ ଏମାନଙ୍କୁ ବାଦ୍‌ଦେଇ ଯୁକ୍ତି ଓ ସଂକଳ୍ପ ସମନ୍ୱୟରେ ଗଠିତ କମିଉନିଷ୍ଟ ଲିଗ୍ ପ୍ରଚାର କରିଛି *କମିଉନିଷ୍ଟ୍ ମ୍ୟାନିଫେଷ୍ଟୋ* । ତାର ମୂଳବକ୍ତବ୍ୟ: ସମାଜର ବୁର୍ଜୋୟାକରଣ ଅର୍ଥବ୍ୟବସ୍ଥାରେ ସୃଷ୍ଟିକରିଚି ଯୋଉ ଯୁଗାନ୍ତକାରୀ ଓଲଟପାଲଟ, ସେଥିରୁ ଉଦ୍‌ଗତହେଉଚି ସାଂଘାତିକ ସାମାଜିକ ଅନ୍ତର୍ଦ୍ୱନ୍ଦ୍ୱ, ଏବଂ ସେଇ ଅନ୍ତର୍ଦ୍ୱନ୍ଦ୍ୱ, ସମାଜର ସାମ୍ୟବାଦୀ ରୂପାନ୍ତରକୁ କରୁଚି ଅବଶ୍ୟମ୍ଭାବୀ, ମାତ୍ର ସେ ରୂପାନ୍ତରକୁ ବାସ୍ତବାୟିତ କରିପାରେ କେବଳ *ବିପ୍ଳବସମ୍ଭାବନା ଚେତନାରେ ଉଦ୍‌ବୁଦ୍ଧ ନିର୍ଦ୍ଦିଷ୍ଟ ଶ୍ରମଜୀବୀଶ୍ରେଣୀର ଉଦ୍ୟୋଗ ଓ ସଂଗଠନ ।*

୧୯୨୦ ବେଳକୁ କୃଷକ-ଶ୍ରମିକର ଶୋଷଣ ଭାରତର ଅର୍ଥବ୍ୟବସ୍ଥାରେ ଥିଲା ପ୍ରତ୍ୟକ୍ଷ, କାହିଁକିନା, ଶୋଷଣଲବ୍ଧ ଉଦ୍‌ବୃତ୍ତର ରପ୍ତାନି, ଧନତନ୍ତ୍ରକୁ, ଅବିକଶିତ ପର୍ଯ୍ୟାୟରେ ମଧ୍ୟ, ରାଷ୍ଟ୍ରକ୍ଷମତାରେ କରିଚି ଅଧିଷ୍ଠିତ; ଦେଶୀୟ ବୁର୍ଜୋୟାର ସହାୟତାରେ ଅବଶ୍ୟ । ଆର୍ଥ-ରାଜନୀତିକ ଔପନିବେଶିକ ପ୍ରକଳ୍ପରେ ବୁର୍ଜୋୟା ରହିଚି ଚିରକାଳ କୋଲାବରେଟର୍ । ଭାରତର ବୁର୍ଜୋୟା ତେଣୁ ଔପନିବେଶିକତାର ସୃଷ୍ଟି;

ଅର୍ଥନୀତିକ ବିକାଶର ସ୍ୱାଭାବିକ ପରିଣତି ନୁହେଁ । ପ୍ରତିରୋଧର ଲକ୍ଷ୍ୟ ତେଣୁ ଔପନିବେଶିକତା, ବୁର୍ଜୋୟା-ବିରୋଧ ସେଇ ଲକ୍ଷ୍ୟର ଉପଜାତ ମାତ୍ର । ଏଭଳି ଦ୍ୱୈତବିରୋଧର ସମ୍ଭାବନା ନିର୍ବିତ୍ତ ଶ୍ରେଣୀର ଚେତନାକୁ ପଶିନାହିଁ ସେତେବେଳକୁ, କାହିଁକିନା, ଧନୋତ୍ପାଦନର ଧରଣ ରହିଚି ପ୍ରାକ୍-ଧନତାନ୍ତ୍ରିକ । ନିର୍ବିତ୍ତର ଶ୍ରେଣୀସଂଗଠନ ତେଣୁ ଗଢ଼ିଉଠିନାହିଁ । ଉଠିନାହିଁ ବୋଲି, ପ୍ରତିରୋଧ ରହିଚି ସୀମାବଦ୍ଧ; ଅର୍ଥାତ୍, ସ୍ୱତଃସ୍ଫୂର୍ତ୍ତ ଓ ଜାତିଭିତ୍ତିକ । ସର୍ବଭାରତୀୟ ଏଇ ପ୍ରେକ୍ଷାପଟରେ ସାମ୍ୟବାଦୀ ବିପ୍ଳବକୁ ଯିଏ ମନେକରିବ ଆସନ୍ନ, ବାସ୍ତବ ପାଖରୁ ତାଙ୍କ ନିଜ ସଚେତନତାର ବ୍ୟବଧାନ ନିଶ୍ଚୟ ଦୁସ୍ତର । ମାନବେନ୍ଦ୍ରନାଥ ରାୟଙ୍କ ଭଳି ମେଧାବୀ ବିପ୍ଳବୀ ପାଖରୁ ଏଭଳି ବ୍ୟବଧାନ ତେଣୁ ଅପ୍ରତ୍ୟାଶିତ । ଉପନିବେଶକୁ ବିରୋଧ ମାନେ ବ୍ରିଟିଶ୍ ରାଜଶକ୍ତିକୁ ବିରୋଧ, ଏବଂ ସେ ରାଜଶକ୍ତି ଯେହେତୁ ଅସ୍ତ୍ରବଳ ଉପରେ ଅଧିଷ୍ଠିତ, ତା'ର ପ୍ରତିରୋଧ ମଧ୍ୟ ଅବଧାରିତଭାବେ ହେବାକଥା ସଶସ୍ତ୍ର । ଜାଣିଥିଲେ ବୋଲି, ପ୍ରାକ୍-କମିଉନିଷ୍ଟ୍ ଅବତାରରେ ମାନବେନ୍ଦ୍ରନାଥ ଥିଲେ ଜାତୀୟତାବାଦରେ ଦୀକ୍ଷିତ ସନ୍ତ୍ରାସବାଦୀ । ମାର୍କ୍ସବାଦକୁ ଏକ ଉଚ୍ଚତର ଜୀବନାଦର୍ଶ ଭାବରେ ଗ୍ରହଣକରିବା ଫଳରେ ଚେତନାର ପ୍ରେକ୍ଷିତ ହୋଇଯାଇଚି ଆନ୍ତର୍ଜାତିକ; ନବଲବ୍ଧ ସେଇ ଚେତନା ଆଲୋକରେ ଦେଶର ନିର୍ବିତ୍ତ ଲୋକଙ୍କୁ ବଞ୍ଚନାଚେତନାରେ ଉଦ୍‌ବୁଦ୍ଧକରି ସଶସ୍ତ୍ର ଶକ୍ତିରେ ରୂପାନ୍ତରିତ କରିବା ହୋଇଥାନ୍ତା ତେଣୁ ଯଥାର୍ଥ କର୍ତ୍ତବ୍ୟ, ବଲ୍‌ସେଭିକ୍ ସମର୍ଥନ କି ସାହାଯ୍ୟ ମଧ୍ୟ ଦୁର୍ଲଭ ହୋଇନଥାନ୍ତା ସେ ପରିସ୍ଥିତିରେ । *ମ୍ୟାନିଫେଷ୍ଟୋ* ଲେଖାହେବା ବେଳକୁ (୧୮୪୮-୪୯) ଇଉରୋପ୍‌ସାରା କମ୍ ପ୍ରତିରୋଧ ମୁଣ୍ଡଟେକିନାହିଁ; ସେଥିରୁ ଦେଖିହେବ ପ୍ରତିରୋଧର କିଛି ସାଧାରଣ ଲକ୍ଷଣ । ଯେପରି, ପ୍ରସ୍ତୁତିର ଦୁଇଟି ପର୍ଯ୍ୟାୟ: (୧) ସାମନ୍ତତନ୍ତ୍ରର ବିଲୋପ ସକାଶେ ଶ୍ରମଜୀବୀ ପ୍ରଥମେ ସହଯୋଗୀ ହେବେ ବୁର୍ଜୋୟସିର, ମାତ୍ର ସେକାମରେ ସଫଳହେବା ମାତ୍ରକେ ବୁର୍ଜୋୟସିକୁ କରିବେ ଆକ୍ରମଣ । ଅର୍ଥାତ୍ ପ୍ରତିରୋଧ ଘଟିବ ପର୍ଯ୍ୟାୟକ୍ରମେ, ଗୋଟାକ ଉତାରୁ ଆଉଗୋଟାଏ । ଏକାସାଙ୍ଗରେ ନୁହେଁ କି ଏକାବେଳକେ ନୁହେଁ । ସେ ପ୍ରକାର ତତ୍ପରତାକୁ ତ୍ରତ୍ସ୍କି କହିଚନ୍ତି ଚିରସ୍ଥାୟୀ ବିପ୍ଳବ(ପର୍‌ମାନେଣ୍ଟ୍ ରେଭୋଲିଉସନ୍), (୨) ରାଷ୍ଟ୍ରକ୍ଷମତା ଦଖଲକରିବା ଯଦି ଉଦ୍ଦେଶ୍ୟ, ରାଷ୍ଟ୍ରଶକ୍ତିର ଦମନପୀଡ଼ନ ସହିତ ନିତ୍ୟମୁକାବିଲା ଅନିବାର୍ଯ୍ୟ; ଦରକାରହେବ ତେଣୁ ଆର୍ମସ୍ ଗାର୍ଡ, ଆର୍ମଡ୍ କୋର୍, ଅଣ୍ଡରଗ୍ରାଉଣ୍ଡ୍ ଭଳି ସାଂଗଠନିକ ପ୍ରସ୍ତୁତି । ଭୟରୁ ମୁକ୍ତି ଏକମାତ୍ର ସେଇ ସାମୂହିକ ପ୍ରସ୍ତୁତି ଭିତରଦେଇ ସମ୍ଭବପର; ଈଶ୍ୱରଙ୍କ ପାଖରେ ଆତ୍ମସମର୍ପଣକରି ବିଷାଦଯୋଗରେ ନିମଗ୍ନ ହୋଇ ନୁହେଁ । ଏ ଆଦର୍ଶ ମିଳିଚି ଫରାସୀ ବିପ୍ଳବରୁ,

ପୁରାତନକୁ ଭାଙ୍ଗିଦେଇ ତା' ଜାଗାରେ ନୂତନସମାଜ ପ୍ରତିଷ୍ଠା । ଯୁଗାନ୍ତକାରୀ ସେ ଅଭିଜ୍ଞତା ସେତେବେଳକୁ (୧୯୨୦-୨୧) ସମଗ୍ର ମାନବପ୍ରଜାତିର ଉତ୍ତରାଧିକାର । ବାଧାବିଘ୍ନ ଅବଶ୍ୟ ଅସଂଖ୍ୟ । ସେଥିପାଇଁ, ରାଷ୍ଟ୍ରକ୍ଷମତା ଦଖଲକରିବା ବାଟଦେଇ ଯୋଉ ପ୍ରକାର ସମାଜବ୍ୟବସ୍ଥା ସାମ୍ୟବାଦୀଙ୍କ ଅଭିପ୍ରେତ, ତାର ଆଭାସ ଦେଶର ଜନଜୀବନକୁ ଆକର୍ଷିତ କରିପାରିନାହିଁ । ପାରିନାହିଁ ବୋଲି, ସ୍ଥିତ ସମାଜକୁ ଭାଙ୍ଗିପକାଇବାକୁ ଆଗଭର ହୋଇନାହାଁନ୍ତି ଅଧିକାଂଶ । ଅର୍ଥାତ୍, ଖାଲି ଦାରିଦ୍ର୍ୟ କି ଅସ୍ପୃଶ୍ୟତା ଦେଇପାରେନା ଏକକଭାବେ ଶ୍ରେଣୀ-ସଚେତନତା; ଆର୍ଥ-ସାମାଜିକ ଆଭିମୁଖ୍ୟ ହିଁ ତିଆରିକରେ ଶ୍ରେଣୀ-ପରିଚୟ । ଆର୍ଥ-ସାମାଜିକ ଆଭିମୁଖ୍ୟ ଯଦି ହୁଏ ସାମ୍ୟବାଦ, ସ୍ଥିତ ସମାଜ ବିଭକ୍ତହୋଇଯିବ ସଂରକ୍ଷଣବାଦୀ ଓ ଧ୍ୱଂସକାମୀ ଦୁଇ ଶିବିରରେ; ଏବଂ ସେଥିରୁ ବୁଝିହେବ ଶ୍ରେଣୀସ୍ୱାର୍ଥ, ଶ୍ରେଣୀସ୍ୱାର୍ଥରୁ ଶ୍ରେଣୀପରିଚୟ । ଶ୍ରେଣୀଚରିତ୍ର ମଧ୍ୟ ଚିରକାଳ ସ୍ଥିରହୋଇ ରହେନା; ଯେପରି, ୧୯୨୦ର ମଧ୍ୟବିତ୍ତ ଋହିଁଚି ପରିବର୍ତ୍ତନ, ବୁର୍ଜୋୟାର ବିରୋଧ, ରାଷ୍ଟ୍ରଶକ୍ତିକୁ ବିରୋଧ । ଆଜିର ମଧ୍ୟବିତ୍ତ ନିଜେ ହୋଇଯାଇଚି ବୁର୍ଜୋୟା, ରାଷ୍ଟ୍ରଯନ୍ତ୍ରରେ ତା'ର ପ୍ରତିନିଧିତ୍ୱ ସର୍ବାଧିକ । ତାର ପରିବର୍ତ୍ତନ-କାମନା ତେଣୁ ଭୋଗବାଦର ଅନୁସାରୀ । ଅନ୍ୟ ଶବ୍ଦରେ, ଭାଙ୍ଗିବା ଆଗେ, ଗଢ଼ିବା ପରେ କୋଉ ତତ୍ତ୍ୱ ନୁହେଁ ଜମାରୁ । ଉଭୟ ଏକକାଳୀନ ଓ ସମାନୁପାତିକ । ପ୍ରତିବାଦୀ ସେଇ ସମାଜଚେତନାକୁ ପୁଷ୍ଟକରିପାରେ ଏକମାତ୍ର ରାଜନୀତିକ ସଂଗ୍ରାମ, ରାଷ୍ଟ୍ରକ୍ଷମତା ଦଖଲ କରିବା ଲାଗି ସଂଗ୍ରାମ । କାହିଁକିନା, ନାଗରିକସମାଜ, ସ୍ପନ୍ଦିତ ଆଲୋଡ଼ିତ ନାଗରିକସମାଜ ହିଁ ଗଠନକରେ ରାଷ୍ଟ୍ରକୁ । ରାଷ୍ଟ୍ର ଗଠନକରେନା ସମାଜକୁ; ନିୟନ୍ତ୍ରଣକରେ । ବିଦେଶରେ ନିଜକୁ ଭାରତର ସାମ୍ୟବାଦୀଙ୍କ ମୁଖପାତ୍ର ପ୍ରମାଣକରିବାକୁ ମାନବେନ୍ଦ୍ରନାଥ ସଚେଷ୍ଟ ହୋଇଚନ୍ତି ସିନା, ଜନଚେତନାକୁ ଜାଗ୍ରତକରିବାକୁ ଯତ୍ନ କରିନାହାଁନ୍ତି ବୋଲି, ଷ୍ଟାଲିନ୍ ତାଙ୍କୁ ଖାଲି ରଙ୍ଗମଞ୍ଚ ଉପରୁ ଓହ୍ଲାଇଦେଇନାହାଁନ୍ତି, ୧୯୨୯ରୁ ୪୩ ପର୍ଯ୍ୟନ୍ତ କୋମିନ୍‌ଟର୍ଣ୍ଣରେ ଜାଗାପାଇନାହାଁନ୍ତି ଅନ୍ୟକେହି ଭାରତୀୟ; ଭାରତର ପ୍ରତିନିଧିତ୍ୱକରିବାକୁ ଇଂରେଜ୍ ବିବେଚିତ ହୋଇଚି ଯୋଗ୍ୟତର । କୋମିନ୍‌ଟର୍ଣ୍ଣରୁ ପ୍ରତ୍ୟାଖ୍ୟାତ ହେବାପରେ କିନ୍ତୁ ମାର୍କ୍‌ସବାଦ ପ୍ରତିଭାତ ହୋଇଚି ଜୀବନଦର୍ଶନର ପ୍ରତିକୂଳ । ଛ'ବର୍ଷର ବନ୍ଦୀଜୀବନ ଯେ ବିପ୍ଳବୀକୁ ଦନ୍ତହୀନ କରିଦେଇପାରେ, ତାର ପ୍ରମାଣ ତାଙ୍କ ର୍ୟାଡିକ୍ୟାଲ୍ ହିଉମ୍ୟାନିଜ୍ମ । ମାର୍କ୍ସବାଦ ଅପେକ୍ଷା ବୃହତ୍ତର; କାହିଁକିନା, ମାନବପ୍ରଜାତିର କ୍ରମଉତ୍ତରଣ ପ୍ରବାହରେ ସାମ୍ୟବାଦ ଖାଲି ଏକ ପର୍ଯ୍ୟାୟମାତ୍ର; ଏବଂ ମଣିଷ ଯେହେତୁ ନିଜେ ଭଗବାନ୍, ଇତିହାସର ନିର୍ଦ୍ଧାରକ ସେଇ ନରନାରାୟଣ ଅର୍ଥନୀତିନୁହେଁ କି

ଉତ୍ପାଦନଧରଣ ନୁହେଁ । ବିପ୍ଳବ ଦରକାର ତେଣୁ ଆଉକୋଉଠି ନୁହେଁ, ଜୀବନଦର୍ଶନରେ କେବଳ । ଜାଗରଣ ହେବ ତା'ହେଲେ ସମଗ୍ର ମାନବଜାତିର ନବଜାଗରଣ । ଅନୁରୂପ ବା ପ୍ରତିରୂପ 'ଭାବ'ର ସମ୍ପ୍ରସାରଣରେ, ଭକ୍ତ କହୁଚନ୍ତି ଗାନ୍ଧି ମଧ୍ୟ ରହିଁଥିଲେ ତିଆରିକରିବେ 'ନୂଆମଣିଷ'! ଅଥଚ ମାର୍କ୍ସବାଦ କହୁଚି, ମଣିଷ ଭିତରେ ନିହିତରହିଚି ବିକଟନର ଅସୀମ ସମ୍ଭାବନା; ସମ୍ଭାବନାଗୁଡ଼ିକ କିନ୍ତୁ ବହୁବିଧ ବୈପରୀତ୍ୟରେ ବିଦୀର୍ଣ୍ଣ । ପ୍ରତ୍ୟେକ ବୈପରୀତ୍ୟକୁ ବିଗଳିତକରିବା ତେଣୁ ମଣିଷର ଆନ୍ତରିକ ଉଦ୍‌ବେଗ; ଏବଂ ସୋପାନଲଙ୍ଘନର ଏଇ ପ୍ରକ୍ରିୟା ହିଁ ଇତିହାସର ଅନ୍ତଃସାର । ଅର୍ଥାତ୍, କମିଉନିଜ୍ମ ଯଦି ସୃଷ୍ଟିକରିବ ବୈପରୀତ୍ୟ, ମଣିଷ ତାକୁ ଅତିକ୍ରମକରିଯିବା ଅବଶ୍ୟମ୍ଭାବୀ । ସୀମାବଦ୍ଧତାର ଏବଂବିଧ ଅତିକ୍ରମଣ କେବେହେଲେ ସରିଯାଏନା । ସରିଯାଏନା ବୋଲି, ଇତିହାସ ମଧ୍ୟ ସରିଯାଏନା । ଅର୍ଥାତ୍ ମାର୍କ୍ସବାଦ ସ୍ୱୟଂସମ୍ପୂର୍ଣ୍ଣ ଏକ ଜୀବନଦର୍ଶନ, ସାର୍ତ୍ରଙ୍କ ପରିଭାଷାରେ, ଲିମିଟ୍‌ଲେସ୍ ହୋରାଇଜନ୍ । ମାନବେନ୍ଦ୍ରନାଥଙ୍କ ବୋଧୋଦୟ ତେଣୁ ପ୍ରଡିଗାଲ୍‌ର ପ୍ରତ୍ୟାବର୍ତ୍ତନ, ବିବେକାନନ୍ଦ-ଅରବିନ୍ଦଙ୍କ ଭାବଜଗତକୁ ପ୍ରତ୍ୟାବର୍ତ୍ତନ, ସ୍ୱାଧୀନତା ଯୋଉଠି ରାଜନୀତିକ ସ୍ୱାଧୀନତାଠାରୁ ଅଧିକ । ଗାନ୍ଧି ମଧ୍ୟ ରାଜନୀତିକ ସ୍ୱାଧୀନତା ସାଙ୍ଗରେ ମିଶାଇଚନ୍ତି ଆତ୍ମଶକ୍ତି ନିର୍ମାଣ ଭଳି ଆଧ୍ୟାତ୍ମିକତା; ମାତ୍ର ର୍‍ୟାଡିକ୍ୟାଲ୍ ହିଉମାନିଜ୍ମ କେନ୍ଦ୍ରରେ ମାନବେନ୍ଦ୍ରନାଥ ଥୋଇଦେଇଚନ୍ତି ସଂପଦର ପୁନର୍ବଣ୍ଟନ ଓ ପ୍ରିଭିଲେଜ୍‌ର ବିଲୋପ । ଏତଦ୍‌ସତ୍ତ୍ୱେ, ର୍‍ୟାଡିକାଲ୍ ହିଉମାନିଜ୍ମ କେବଳ ଏକ ଉପଲକ୍ଷ୍ୟ । ଅସଲ ଲକ୍ଷ୍ୟ 'ସ୍ପିରିଚୁଆଲ୍ ଫ୍ରିଡମ୍' । ହେଲେସୁଦ୍ଧା, ୧୯୪୬ର ସାଧାରଣ ନିର୍ବାଚନରେ ମୂଳପୋଛ ହୋଇଯାଇଚି ତାଙ୍କ ପାର୍ଟି; ଏବଂ ସେତେବେଳେ ନିର୍ବାଚନକୁ କହିଚନ୍ତି 'ଫ୍ୟାସିଷ୍ଟ୍'! କାହିଁକିନା, ନିର୍ବାଚନ କୁଆଡ଼େ ବ୍ୟକ୍ତିକୁ ବଳିଦେଇଚି ସାମୂହିକ ଔଦ୍ଧତ୍ୟର ଯୂପକାଠରେ! ପରିଶେଷରେ, Call this an idealistic deviation, if you please, I would plead guilty to the charge । ଭାରତର ଭଗ୍ନଜାନୁ ବାମପନ୍ଥୀଙ୍କ ସ୍ଖଳନର ଏ ଦୃଷ୍ଟାନ୍ତ ବୁଝାଇଦିଏ, ପରିବର୍ତ୍ତନର କାମନା ଯେ ପୁରାପୁରି ନିର୍ଭରକରେ ସାମାଜିକ ବାସ୍ତବକୁ ନିର୍ଭୁଲ୍ ଉପଲବ୍ଧିକରିବା ଉପରେ, ସେଇ ସତ୍ୟ ଭେଦିନାହିଁ ମଗ୍ନଚୈତନ୍ୟକୁ । ଯେପରି, ପରବର୍ତ୍ତୀ କାଳରେ, ରାୟଙ୍କ ପ୍ରିୟଶିଷ୍ୟ ଶ୍ରୀପାଦ ଅମୃତ ଡାଙ୍ଗେ ଚେଷ୍ଟାକରିଚନ୍ତି ତଥାକଥିତ ଏଇ ମାନବତାବାଦକୁ ମାର୍କ୍ସଙ୍କ ଇତିହାସଭାବନାର ସମାନ୍ତରାଳ ପ୍ରତିପନ୍ନକରିବାକୁ ସ୍ୱରଚିତ *ଇଣ୍ଡିଆ, ଫ୍ରମ୍ ପ୍ରିମିଟିଭ୍ କମିଉନିଜମ୍ ଟୁ ସ୍ଲେଭେରି* (୧୯୪୯) ଗ୍ରନ୍ଥରେ । ପ୍ରଖ୍ୟାତ ଇତିହାସବିଦ୍ ଦାମୋଦର ଧର୍ମାନନ୍ଦ କୋସମ୍ବି ସେ ବହି ସମ୍ବନ୍ଧରେ ଲେଖିଚନ୍ତି, This painfully disappointing

book by one of the founders of the Communist Party of India would not have been worth reviewing, but for the fact that to let such a performance go unchallenged would bring Marxism into disrepute । ତହିଁଉତାରୁ କୋସମ୍ବି ଦେଖାଇଚନ୍ତି, ଆଦିମ ସାମ୍ୟବାଦ କହିଲେ ମୋର୍‌ଗାନ୍ ଯା ବୁଝନ୍ତି, ଭାରତରେ ଥିଲା ତା ସାତସପନ; ଏବଂ ଦାସ (=ଦସ୍ୟୁ) ଥିଲେ ସୁଦ୍ଧା, ସ୍ଲେଭରି (ହାଟରେ ମଣିଷକୁ କିଣାବିକା) ଅଜ୍ଞାତ ଥିଲା ଏ ଭୂଖଣ୍ଡରେ । ମାର୍କ୍ସବାଦର ଏବଂବିଧ ଅପପ୍ରୟୋଗକୁ କଟାକ୍ଷକରି ମନସ୍ୱୀ ମାର୍କ୍ସବାଦୀ ଶେଷକୁ କହନ୍ତି, Marxism is not a substitute for thinking, but a tool for analysis which must be used, with a certain minimum of skill and understanding, upon the proper material. Interlarding groundless conjectures with quotations from Engles do not suffice... । ଭାରତର କମିଉନିଷ୍ଟ୍ ପାର୍ଟିର ପ୍ରତିଷ୍ଠାତା ତଥା ଲେନିନ୍‌ଙ୍କ କମିଉନିଷ୍ଟ ଆନ୍ତର୍ଜାତିକର ଏକମାତ୍ର ଭାରତୀୟ ସଦସ୍ୟ ଏମ୍.ଏନ୍.ରାୟଙ୍କଠୁଁ ଆରମ୍ଭକରି ପରବର୍ତ୍ତୀ କାଳର ସେକ୍ରେଟାରୀଜେନେରାଲ୍ ଡାଙ୍ଗେଙ୍କ ଯାଏଁ ଜୀବନଯାପନ ଓ ରାଜନୀତିରେ ମାର୍କ୍ସବାଦକୁ ଯେପରି ଉପଯୋଗ କରାଯାଇଚି, ଅଦ୍ୟାବଧି ସେ ଧାରା ରହିଯାଇଚି ଆଗଭଳି ଅଗଭୀର, ବାତୁଳ ଓ ଅବିନୀତ । ତାର ବଲ୍‌ସେଭିକ୍ ପ୍ରବଣତାର କୁଫଳ ଖାଲି ରାୟ ବା ଡାଙ୍ଗେ ଭୋଗିନାହାଁନ୍ତି, ଭୋଗିଚନ୍ତି ଦେଶର ଅଗଣିତ ମେହନତୀ ମଣିଷ, ଛାତ୍ର ଓ ଯୁବକଯୁବତୀ । ସମାଜକୁ ବଦଳାଇଦେବା ବାସନା ପଛରେ ଭାବାବେଗ ରହିବା ସ୍ୱାଭାବିକ, ମାତ୍ର କୋସାମ୍ବୀ କହିବା ଭଳି, ଭାବାବେଗ ହୋଇପାରେନା ମନନଚିନ୍ତନର ପ୍ରତିକଳ୍ପ । ଚେଷ୍ଟା ତ କରିଚନ୍ତି ଲୋକ ପ୍ରଜନ୍ମ ଉତାରୁ ପ୍ରଜନ୍ମ; ସବୁରକମ ମଣିଷ, ପାଠୁଆ-ଅପାଠୁଆ, ଅଭିଜାତ-ଅସ୍ପୃଶ୍ୟ, ଧାର୍ମିକ-ନାସ୍ତିକ, ସନ୍ନ୍ୟାସୀ-ଗୃହସ୍ଥ, ମାତ୍ର ସମସ୍ତଙ୍କୁ ପଛରୁ ଟାଣିଧରିଚି ଯୋଉ ବାଧା, ତା କୋଉନାକୋଉ ସଂସ୍କାର, ଅର୍ଜିତ ହେଉ କି ଯଥାପ୍ରାପ୍ତ । ସେଇ ସଂସ୍କାର, ତତ୍ତ୍ୱର ସ୍ୱଚ୍ଛତା ପ୍ରତି ମେଘମାୟା । ତାକୁ କାଟିଦେଇପାରେ କେବଳ କର୍ମ ଓ ମନନର ଧାରାବାହିକ ଦ୍ୱାନ୍ଦ୍ୱିକତା, ଏବଂ ସେଇ ଧାରାବାହିକତାରୁ ଯଥାକାଳେ ଜନ୍ମନେଇପାରେ ଏପରି ଅମ୍ଳାନ ଓ ନିରୁଦ୍‌ବିଗ୍ନ ବିଶ୍ୱବୀକ୍ଷଣ / ଜୀବନଦୃଷ୍ଟି, ବିଷାଦ କି ହତାଶା ଯୋଉଠି ସ୍ୱବିରୋଧ ।



# ସୁଶୀଳ ସମାଜ/ସିଭିଲ୍ ସୋସାଇଟି

ଷ୍ଟାଲିନ୍ ଜମାନାରେ ରସିଆରେ ଘଟିଛି ବ୍ୟାପକ ଶ୍ରମିକପୀଡ଼ନ କୃଷକଦମନ; ଅନ୍ୟଥା ରସିଆ ଭଳି ଅନୁନ୍ନତ ଅର୍ଥବ୍ୟବସ୍ଥାରେ ଦ୍ରୁତ ଶିଳ୍ପାୟନର ସମ୍ଭାବନା ଥିଲା ସୁଦୂର ପରାହତ । ହିଟ୍‌ଲର୍‌ଙ୍କୁ ଯୁଦ୍ଧରେ ପରାସ୍ତକରି ଲୋକ ଭୁଲିଯାଇଛନ୍ତି କଷ୍ଟକଷଣ । ଜାତୀୟ ଶ୍ରେଷ୍ଠତ୍ୱ ଭଳି ଅବବୋଧ ମଧ୍ୟ ସଂଚାରିତ ହୋଇଯାଇଚି ସର୍ବତ୍ର, କାହିଁକିନା, ଯୁଦ୍ଧୋତ୍ତର ପୃଥିବୀରେ ରସିଆ ପରିଣତହୋଇଛି ଦ୍ୱିତୀୟ ଶିଳ୍ପପ୍ରଧାନ ରାଷ୍ଟ୍ର । କିନ୍ତୁ ଷ୍ଟାଲିନ୍‌ଙ୍କ ଅତିପ୍ରଖର ଶିଳ୍ପାୟନ ଓ ସମରସଜ୍ଜା ସାଧାରଣ ନାଗରିକକୁ ସମାଜାଭିମୁଖୀ କରିବା ପରିବର୍ତ୍ତେ ଟାଣିନେଇଛି ସ୍ୱାର୍ଥପର ବ୍ୟକ୍ତିସର୍ବସ୍ୱତା ଆଡ଼କୁ । ଜୀବନଦର୍ଶନରେ ପ୍ରାଧାନ୍ୟ ପାଇଛି ପ୍ରତିଯୋଗିତା । ପ୍ରତିଯୋଗିତାରୁ ପ୍ରସୂତ ଭୋଗବାଦ ନାଗରିକ ସମାଜକୁ ଏପରି ଅଧୈର୍ଯ୍ୟ କରିପକାଇଛି ଯେ ସଙ୍କଟକୁ ମୁକାବିଲା କରିନପାରି ଗର୍‌ବାସଫ୍ ଖଣ୍ଡଖଣ୍ଡ କରିଦେଇଛନ୍ତି ସୋଭିଏତ୍ ସଂଘକୁ । ସମାଜତନ୍ତ୍ରର ଭବିଷ୍ୟତ ସମ୍ବନ୍ଧରେ ସେତେବେଳେ ପ୍ରଶ୍ନଉଠିଛି: କଣ ପାଇଁ ମଣିଷ ଚାହେଁ ବିପ୍ଳବ? ଭଲ ଖାଇ, ଭଲ ପିନ୍ଧି, ଆମୋଦ କରିବାକୁ? ରସିଆର ନାଗରିକ କିନ୍ତୁ ଖାଇବା ପିନ୍ଧିବା କଷ୍ଟରୁ ବହୁଆଗରୁ ଛାଡ଼ପାଇଛନ୍ତି! ପ୍ରକୃତରେ ଚାହିଁଥିଲେ ପୁଞ୍ଜିବାଦୀ ରାଷ୍ଟ୍ରର ନାରିକତୁଲ୍ୟ 'କ୍ଷମତା' । ପ୍ରୟୋଜନ ତେଣୁ ବିପ୍ଳବର କାରଣ ନୁହେଁ । କିନ୍ତୁ କ୍ଷମତା ଯଦି ହୁଏ ଅଭିପ୍ରାୟ, ସମାଜତନ୍ତ୍ର ଜାଗାରେ ଭୋଗବାଦ ପ୍ରବଳହେବା ଅବଧାରିତ । ମାର୍କ୍ସ କିନ୍ତୁ ଭାବିଛନ୍ତି, ଅବାଟକୁବାଟରେ ଯିବାକୁ ବାଧାଦିଏ ଇତିହାସଚେତନା । ସଙ୍କଟମୁହୂର୍ତ୍ତରେ ସେ ଚେତନା ହୋଇଉଠେ ଗଣଅଭିଜ୍ଞତା: ଆଜି ଯା ଅଛି, କାଲିକି ରହିବନାହିଁ-ଦ୍ରୁତ ଏଇ ଉତ୍ଥାନପତନ ସହିତ ଯୁକ୍ତହୁଏ ଯଦି ଏଇ ସଂବିତ୍ ଯେ ସୁଖଦୁଃଖ ଖାଲି ବ୍ୟକ୍ତିବିଶେଷର ଅଭିଜ୍ଞତା ନୁହେଁ, ଦୁନିଆସାରା ଲାଗିରହିଛି ଏମିତି ଭଙ୍ଗାଗଢ଼ା, ଲୋକଙ୍କ ମନରେ ତେବେ ଏଇ ବୋଧ ଉଦୟହୁଏ ଯେ ଇତିହାସ ବୋଲି ଗୋଟାଏ ବ୍ୟାପାର ଅଛି, ଯା ଅବିରତ ପରିବର୍ତ୍ତନର ପ୍ରକ୍ରିୟା, ଏବଂ ସେଥିପାଇଁ, ପ୍ରତ୍ୟେକ ବ୍ୟକ୍ତିବିଶେଷର ଜୀବନଯାପନରେ ମଧ୍ୟ ପ୍ରତ୍ୟକ୍ଷ । ବ୍ୟକ୍ତିସ୍ୱାତନ୍ତ୍ର୍ୟବୋଧ ଓ ଭୋଗଲାଳସାକୁ ଆକଟ କରିପାରେ ସେଇ ସଚେତନତା । ମାତ୍ର ଷ୍ଟାଲିନ୍ ଥିଲେ

କର୍ମବୀର, ଦାର୍ଶନିକତା ପ୍ରତି ବିରକ୍ତ । ଉଗ୍ର ଜାତୀୟତାବାଦକୁ ବୁର୍ଜୋୟା ଯେମିତି ବ୍ୟବହାରକରେ, ସେ ପ୍ରକ୍ରିୟାରେ 'ଜାତୀୟତା' ହୋଇଉଠେ ବୃହତ୍ତର ସିଭିଲ୍‌ସୋସାଇଟିର ସଂପତ୍ତି, ଠିକ୍ ଯେମିତି ମୁସୋଲିନିଙ୍କ ଫ୍ୟାସିବାଦ । ସୋଭିଏତ୍ ଇଉନିୟନ୍ ମଧ୍ୟ ବ୍ୟତିକ୍ରମ ନୁହେଁ; ଷ୍ଟାଲିନ୍ ନିଜେ ଲେଖିଯାଇଛନ୍ତି, And it was possible to do that because it was a revolution from above, becasue the revolution was accomplished on the initiative of the existing power... ସେଥିପାଇଁ, ସମାଜତନ୍ତ୍ରକୁ କେନ୍ଦ୍ରକରି କୋଉହେଲେ ପୁନର୍ଜିଜ୍ଞାସା ସେଠି ଗଢ଼ିଉଠିନାହିଁ । ପୁଞ୍ଜିବାଦୀ ଦୁନିଆର ସମକକ୍ଷ ହେବାପାଇଁ ଷ୍ଟାଲିନ୍ ଯେମିତି କୃଷକ-ଶ୍ରମିକର ରକ୍ତ ନିଗାଡ଼ିଛନ୍ତି ଉଦ୍‌ବୃତ୍ତ ସଂଚୟବାଟଦେଇ, ପୁଞ୍ଜିବାଦ ନିର୍ମାଣକରିବାକୁ ବ୍ରିଟିଶ୍ ସେମିତି ଭାରତର କୃଷକକୁ ପୈତୃକ ଭୂସ୍ୱତ୍ୱରୁ କରିଛି ଉଚ୍ଛେଦ, କାରିଗର ହାତରୁ କାଢ଼ିନେଇଛି ନୈପୁଣ୍ୟ, ଏବଂ ସେଇ ପ୍ରକ୍ରିୟାରେ, ଉଦ୍‌ବୃତ୍ତ ସଂଚୟହୋଇଛି ବିପୁଳ । ମାତ୍ର ଉଭୟ କ୍ଷେତ୍ରରେ ଆବହମାନ ନାଗରିକସମାଜର ସଂଗଠନ ଓ ସଂହତି ଯାଇଛି ଭୁଷୁଡ଼ି । ପୃଥିବୀର ସର୍ବତ୍ର, ନାଗରିକସମାଜ ହିଁ ତିଆରିକରିଛି ରାଜନୀତିକସମାଜ ବା ରାଷ୍ଟ୍ରଯନ୍ତ୍ର; ମାତ୍ର ଭାରତର ଇତିହାସରୁ ଦିଶୁଚି, ରାଜନୀତି(=ରାଷ୍ଟ୍ର) ହିଁ ସ୍ଥିରକରିଛି ନାଗରିକ ସମାଜର ଆକୃତିପ୍ରକୃତି, ଯେପରି ଷ୍ଟାଲିନ୍‌ଙ୍କ 'existing power' ସ୍ଥିରକରିଛି ବିପ୍ଳବର ରୂପରେଖ । ଜନଗଣଙ୍କ ଇତିହାସଚେତନା ହୋଇଚି ତେଣୁ ରାଷ୍ଟ୍ରକେନ୍ଦ୍ରିକ । ରାଷ୍ଟ୍ରକ୍ଷମତାର ଅପେକ୍ଷାକୃତ ବୃହଦଂଶ ଦଖଲକରିବାକୁ ଜନସାଧାରଣଙ୍କ ଭିତରେ ପ୍ରତିଯୋଗିତା, ଧର୍ମ ଭିତ୍ତିରେ ହେଉ, ବର୍ଣ୍ଣଭିତ୍ତିରେ ହେଉ କି ଭାଷା ଭିତ୍ତିରେ ହେଉ, ସେଇ କେନ୍ଦ୍ରିକତାର ପ୍ରତିଫଳ; ସମାଜତନ୍ତ୍ର ତେଣୁ ଅରଣ୍ୟରୋଦନ । ଅଥଚ ବୈଷମ୍ୟଜର୍ଜର ଏକ ପ୍ରାଚୀନ ସମାଜ ଯଦି ସମାଜତନ୍ତ୍ରକୁ ଗ୍ରହଣ ନକରେ, ଅବଶ୍ୟମ୍ଭାବୀ କିନ୍ତୁ ଗୃହଯୁଦ୍ଧ, ଯାର ଆଭାସ ଏକ୍ଷଣି ରାଜନୀତିରେ ପ୍ରତ୍ୟକ୍ଷ । ଧନତନ୍ତ୍ର କିନ୍ତୁ ଗୋଟାଏ ଟୋଟାଲାଇଜିଙ୍ଗ୍ ସିଷ୍ଟେମ; ଉଦ୍‌ବୃତ୍ତ ଉତ୍ପାଦନ ଯେହେତୁ ପ୍ରଧାନ ଉଦ୍ଦେଶ୍ୟ, ଆର୍ଥସାମାଜିକ ସମସ୍ତ ଅନୁଷ୍ଠାନ ସେ ଉଦ୍ଦେଶ୍ୟକୁ ଚରିତାର୍ଥକରିବାକୁ ଏପରି ବିନ୍ୟାସରେ ସଂଗଠିତ ଯେ, ମୋଟ ଯୋଗଫଳ ହେବ ସର୍‌ପ୍ଲସ୍ ଭ୍ୟାଲିଉ । 'ସିଭିଲ୍ ସୋସାଇଟି' ବୋଲି ଅଲଗା ପରିସର ତେଣୁ ବର୍ଜନୀୟବାହୁଲ୍ୟ । ରାଜନୀତିକସମାଜ(=ରାଷ୍ଟ୍ର) ଆଉ ନାଗରିକସମାଜ ଉଭୟ ତେଣୁ ଧନତନ୍ତ୍ରର ଅନୁଶାସନରେ ସମାର୍ଥକ । କ୍ୟାପିଟାଲିଜ୍ମର ସୁଦ୍ଧା ବିକାଶପର୍ଯ୍ୟାୟ ରହିଚି; କୋଉହେଲେ ପର୍ଯ୍ୟାୟ ଯଦି ବାଧାବିଘ୍ନ ସମ୍ମୁଖୀନହୁଏ, ସଂଘାତର ଉତ୍ସକୁ ଚିହ୍ନଟକରାଯାଏ 'ସିଭିଲ୍ ସୋସାଇଟି' । ଆଇନ୍ ଅଦାଲତର ପରିଭାଷାରେ, ଜନସ୍ୱାର୍ଥ

ବା 'ପବ୍ଲିକ୍ ଇଣ୍ଟରେଷ୍ଟ୍' । ଅର୍ଥାତ୍, ଏପରି କିଛି ନୈତିକ ବିବେଚନା, ଯା ରାଷ୍ଟ୍ରସ୍ୱାର୍ଥର ପରିପନ୍ଥୀ । ସେଭଳି ଏକ ସ୍ୱାର୍ଥ ବ୍ୟକ୍ତିଗତ ସଂପତ୍ତି । ସଂପତ୍ତିର ଭୋଗଦଖଲକୁ ଘେରି, ଇତିହାସ ପ୍ରବାହରେ ତିଆରିହୋଇଛି 'ସର୍ବସାଧାରଣ' ଓ 'ନିଜସ୍ୱ', ସରକାରୀ ଓ ବେସରକାରୀ, ପବ୍ଲିକ୍ ଓ ପ୍ରାଇଭେଟ୍ ଭଳି ବିପରୀତ ଯୁଗ୍ମପଦ ଜ୍ଞାପକ ଅବବୋଧ । 'ପ୍ରପର୍ଟି ରିଲେସନ୍' କହିଲେ ବୁଝୁଛୁଁ ସଂପତ୍ତିର ମାଲିକାନାରେ ତାରତମ୍ୟ, ସମାଜଜୀବନରେ ଯା ତିଆରିକରେ ନାନାବିଧ ଅସମ ସଂପର୍କ । ସେବ୍ୟ-ସେବକ / ମାଲିକ-ମୂଲିଆ / ପୁରୋହିତ-ଯଜମାନ ଭଳି ଅଜସ୍ର ସ୍ତର ଓ ବିଭାଜନ । ମାତ୍ର ଏ ଭେଦାଭେଦ ପ୍ରାକୃତିକ ନୁହେଁ, ନିର୍ଦ୍ଦିଷ୍ଟ ସ୍ୱାର୍ଥକୁ ତୁଷ୍ଟକରିବା ସକାଶେ ତିଆରିକରିଛି ରାଷ୍ଟ୍ର । ତେଣୁ ନାଗରିକସମାଜ ଓ ରାଷ୍ଟ୍ର ମଧ୍ୟସ୍ଥ ପ୍ରଭେଦ 'ପରିବାର' ଓ 'ବଜାର' ମଧ୍ୟସ୍ଥ ପ୍ରଭେଦ ନୁହେଁ; ଏ ପ୍ରଭେଦ ମୂଳତଃ ଆର୍ଥସାମାଜିକ, ଯା ପୁନରୁତ୍ପାଦିତ ହୋଇଚାଲିଛି ରାଷ୍ଟ୍ରଶକ୍ତିର ଆନୁକୂଲ୍ୟରେ । ରାଷ୍ଟ୍ରର ଆଭିମୁଖ୍ୟ ଯଦି ଧନତନ୍ତ୍ରକୁ ଅନୁଧାବନକରେ, ସିଭିଲ୍‌ସୋସାଇଟିରେ ଜାଲପରି ବିଛାଇହୋଇରହିଛି, ସଂପତ୍ତିସଂପର୍କରୁ ଉଦ୍‌ଭୂତ ଯେତେ ଅବମାନନା, ନିଷ୍ପେଷଣ ଓ ଆଧିପତ୍ୟର ଷ୍ଟ୍ରକ୍‌ଚର୍, ପୁଞ୍ଜି ସ୍ୱାର୍ଥରେ ସେଗୁଡିକ ମଧ୍ୟ ହେବ ପୁନରୁତ୍ପାଦିତ । ଦମନ କି ଶୋଷଣ କିନ୍ତୁ ରହିଯିବ ଅଦୃଶ୍ୟ, କାହିଁକିନା ଏଗୁଡାକ କୋଉ ନିର୍ଦ୍ଦିଷ୍ଟ ସେବ୍ୟ-ସେବକ ସଂପର୍କ ଭିତରେ କେନ୍ଦ୍ରୀଭୂତହୋଇ ରହିନାହିଁ, ସମଗ୍ର ସାଂସ୍କୃତିକ ପରିମଣ୍ଡଳ ଭିତରେ ବିଛୁଡିହୋଇ, ହୋଇଯାଇଛି ଅପ୍ରକଟ । ଅପ୍ରକଟ ରହିଯାଇଛି ବୋଲି, ଜାତିଭେଦ କି ପିତୃତନ୍ତ୍ର ଭଳି ପରିବ୍ୟାପ୍ତ ନିଷ୍ପେଷଣ ମନେହୁଏନା ଅନୈତିକ । ଏଗୁଡିକ ମଧ୍ୟ ଗୋଟିଏ ଗୋଟିଏ ଷ୍ଟ୍ରକ୍‌ଚର୍, ସିଭିଲ୍ ସୋସାଇଟିର ଷ୍ଟ୍ରକ୍‌ଚର୍, ରାଷ୍ଟ୍ରଯନ୍ତ୍ରର ଯନ୍ତ୍ରାଂଶ ନୁହେଁ । ବିଦ୍ୟମାନ ସମାଜକୁ ନିୟନ୍ତ୍ରଣକରୁଛି ଅର୍ଥନୀତିରେ ଧନତନ୍ତ୍ର, ସମାଜନୀତିରେ ରାଷ୍ଟ୍ର; ଏବଂ ସେଥିପାଇଁ, ସିଭିଲ୍ ସେସାଇଟିର ପ୍ରତିପକ୍ଷ ଉଭୟ ଧନତନ୍ତ୍ର ଓ ରାଷ୍ଟ୍ର । ଧନତନ୍ତ୍ର ଅବଶ୍ୟ ରାଷ୍ଟ୍ରର ମଧ୍ୟସ୍ଥତାରେ ହିଁ ପଶୁଚି ସିଭିଲ୍ ସୋସାଇଟି ଅଭ୍ୟନ୍ତରକୁ ।

ହେଲେସୁଦ୍ଧା, ଜାତିପ୍ରଥା କି ପିତୃତନ୍ତ୍ର, ରାଷ୍ଟ୍ର କି କ୍ୟାପିଟାଲିସ୍ମର ଉଦ୍‌ଭାବନ ନୁହେଁ, ନାଗରିକସମାଜର ସାଂସ୍କୃତିକ ବୈଶିଷ୍ଟ୍ୟ । ବରଂ କ୍ୟାପିଟାଲିସ୍ମର ହସ୍ତକ୍ଷେପ ପିତୃତନ୍ତ୍ରକୁ କରିଚାଲିଛି ଶିଥିଳ ଓ ଶୀତଳ । ମାତ୍ର ଜାତିପ୍ରଥା ମଣିଷର କର୍ମ, ପେସା ଓ ସାମାଜିକ ମର୍ଯ୍ୟାଦାକୁ ଚିରକାଳ ସକାଶେ ସ୍ଥିରକରିଦିଏ ଜନ୍ମସୂତ୍ରକୁ ନିର୍ଦ୍ଧାରକ କରି । ଇସ୍ପାତ-କଠିନ ଏ ନିୟମ ନାଗରିକ ସମାଜର ଅଧିକାଂଶ ଲୋକଙ୍କ ଅଗ୍ରଗତିକୁ ଖାଲି ଅବରୁଦ୍ଧ କରିନାହିଁ, କୃତ୍ରିମ ଏକ କ୍ରମୋଚ୍ଚ ସ୍ତରବିନ୍ୟାସରେ ପରସ୍ପର ପାଖରୁ ମଣିଷକୁ କରିଦେଇଛି ବିଛିନ୍ନ । 'ସିଭିଲ୍' (ସୁଶୀଳ) ବିଶେଷଣ ପାଇବାକୁ

ଏଇ ସମାଜ ତେଣୁ ଅଯୋଗ୍ୟ । ପାରମ୍ପରିକ ସମାଜତନ୍ତ୍ର କିନ୍ତୁ 'ଶ୍ରେଣୀ' ଓ 'ଅର୍ଥନୀତି' ଛଡ଼ା, ବହୁତ୍ୱ ଓ ବିବିଧତା ଭଳି ସାମାଜିକ ସମସ୍ୟାଗୁଡ଼ିକୁ ଜରୁରୀ ମନେକରିନାହିଁ । ସଂପତ୍ତିସଂପର୍କ ଯଦିଓ ଅର୍ଥନୀତିର ଅନ୍ତର୍ଗତ, ଜାତି କି ଲିଙ୍ଗ ଭେଦାଭେଦ ଶ୍ରେଣୀବିଦ୍ୱେଷ ହୋଇପାରେନା । କାହିଁକିନା, ଏଗୁଡ଼ିକ ସାଂସ୍କୃତିକଗଢ଼ଣ; ଯୋଉ ସଂସ୍କୃତି ନାରୀକୁ ମନେକରେ ବ୍ୟକ୍ତିଗତ ସଂପତ୍ତି କିମ୍ବା କ୍ରୟବିକ୍ରୟର ମାଧ୍ୟମ । ସେହିପରି , ପରିବେଶ-ଦୂଷଣ । ରାଷ୍ଟ୍ର ନାଗରିକସମାଜକୁ ଶାସନକରେ ଯୋଉ କ୍ଷମତା ବଳରେ, ତା ରାଜନୀତିକ କିମ୍ବା ଅର୍ଥନୀତିକ; ସେ କ୍ଷମତା ପ୍ରକୋପରେ ସଂସ୍କୃତିରେ ବଦ୍ଧମୂଳ ପାତର-ଅନ୍ତର ବିଗଳିତହୁଏନା; ନାଗରିକସମାଜ ତେଣୁ ପାଇଯାଏ ସ୍ୱଶାସନର ପରିସର । ପରିସରର ପରିଚାଳନା ପାଇଁ ନାଗରିକସମାଜ କିନ୍ତୁ କାହାରି ପାଖରେ ଉତ୍ତରଦାୟୀ ନୁହେଁ । ନୁହେଁ ବୋଲି, ତିଆରିହୁଏ ଅସ୍ପୃଶ୍ୟତା, ନାରୀନିର୍ଯ୍ୟାତନା, ଏପରିକି ବ୍ୟକ୍ତିଗତ ସଂପତ୍ତିର ପବିତ୍ରତା, ସତୀତ୍ୱର ମହିମା, ଦେବଦ୍ୱିଜରେ ଭକ୍ତି; ଏବଂ ଏଗୁଡ଼ାକ ଯଦି ବଜାର-ସଂପ୍ରସାରଣର ସହାୟକ ହୁଏ, ପାଇଯାଏ ଅଚିରାତ୍ ପୁଞ୍ଜିବାଦର ମଦତ୍ । ଏ ବିଚାରରେ, ପୁଞ୍ଜିବାଦ ଓ ରାଷ୍ଟ୍ରଶକ୍ତି ଦୃଶ୍ୟତଃ ନାଗରିକସମାଜର ପ୍ରତୀପ; ମାତ୍ର ଶକ୍ତିତ୍ରୟ ମଧ୍ୟସ୍ଥ ସହଯୋଗର ଉପାଦାନ ମଧ୍ୟ ଅନୁପସ୍ଥିତ ନୁହେଁ । ବିଶେଷତଃ ଏଇ କାରଣରୁ ଯେ, ରାଷ୍ଟ୍ରର ଗଠନ ଓ ଚରିତ୍ର ସବୁଜାଗାରେ ସମାନ ନୁହେଁ, କ୍ଷେତ୍ରବିଶେଷରେ ବରଂ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ; କିନ୍ତୁ ପୁଞ୍ଜିବାଦର ଗଠନ ଓ ଚରିତ୍ର ଦୁନିଆସାରା ସମରୂପ । ସେଇଭଳି, ନାଗରିକ ସମାଜର ଗଠନତନ୍ତ୍ର ମଧ୍ୟ ନିର୍ବିଶେଷ ନୁହେଁ, କାହିଁକିନା, ପ୍ରକୃତ ପ୍ରସ୍ତାବରେ ସଂସ୍କୃତି ଗୋଟାଏ ରଣକ୍ଷେତ୍ର । ରାଷ୍ଟ୍ରର ହସ୍ତକ୍ଷେପ କେବେ ଦରକାରହେବ ତ, ସବୁବେଳେ ଦରକାର ହେବ 'ମାର୍କେଟ୍'ର ସହଯୋଗ । ଅନ୍ୟ ଶବ୍ଦରେ, ରାଷ୍ଟ୍ର ହେଉ କି ମାର୍କେଟ୍, ଉଭୟର ଭୂମିକା 'କୋଅରସିଭ୍' ବା ଦମନପ୍ରବଣ । ମଦତ୍ କରିବା ବି ଗୋଟେରକମ ଦମନ ଯା ଗଠିତକରେ ନାଗରିକ ସମାଜକୁ; ବିଶୃଙ୍ଖଳା ସୃଷ୍ଟିକରେନା କେବଳ । ଅଥଚ ସମାଜତନ୍ତ୍ର ଦୃଷ୍ଟିରେ, ଦମନ ଏକମାତ୍ର ରାଷ୍ଟ୍ରର ହିଁ ଉପସର୍ଗ, ଆଉ ଦମନରୁ ମୁକ୍ତି ନାଗରିକସମାଜର ଅଭୀପ୍ସା । ତା ହେଲେ, ଭାରତୀୟ ନାଗରିକସମାଜରେ, ମାର୍କ୍ସ ଯାହାକୁ କହିଛନ୍ତି 'ବଂଶାନୁକ୍ରମିକ ଶ୍ରମବିଭାଗଭିତ୍ତିକ' ଜାତିଭେଦପ୍ରଥା, ତାର ପରିଣତି କି ପ୍ରକାର ? ପ୍ରଥମେ ଆଖିରେ ପଡ଼ିବ ଦକ୍ଷିଣ-ଭାରତରେ ବ୍ରାହ୍ମଣ-ବିରୋଧ, ଯାର ପୁରୋଭାଗରେ ପେରିୟର୍ ଇ.ଭି. ରାମସ୍ୱାମୀ । ଏକ୍ଷଣି ତାଙ୍କରି ଶିଷ୍ୟ-ପ୍ରଶିଷ୍ୟ ତାମିଲ୍‌ନାଡୁରେ କ୍ଷମତାରାଜନୀତିର କର୍ଣ୍ଣଧାର । କିନ୍ତୁ ମାର୍କ୍ସ ଭାବିଥିଲେ, ଶିଳ୍ପବିକାଶ ଜନ୍ମଦିଏ ଯୋଉ ବୁର୍ଜୋୟା-ଅର୍ଥନୀତି, ସଂପତ୍ତି-ସଂପର୍କ, ନଗରାୟନ ଓ ଆଇନ୍‌ର

ଅନୁଶାସନ, ହିନ୍ଦୁସମାଜର ସେଇ ଇସ୍ପାତବର୍ମକୁ କ୍ରମଶଃ ଚୂନାକରିଦେବ । ମୋଟେ ଯେ ଭାଙ୍ଗିନାହିଁ, ତା ମଧ୍ୟ ନୁହେଁ; ମାତ୍ର 'ସାମାଜିକ ନ୍ୟାୟ' ନାମକ ସାଂପ୍ରତିକ ଆନ୍ଦୋଳନ ନାଗରିକସମାଜକୁ କରିଦେଇଛି ବହୁଧାବିଦୀର୍ଣ୍ଣ । ତା ଫଳରେ,ରାଜନୀତିରେ ତିଆରିହୋଇଛି ଦୁଇଟି ଶିବିର, 'ବୃହତ୍ତର ରାଜନୀତି' ଓ 'କ୍ଷୁଦ୍ର / ଆଞ୍ଚଳିକ ରାଜନୀତି' । ପ୍ରଥମଟିର ଉତ୍ସ ଧର୍ମ ଓ ସମାଜ-ସଂସ୍କାର; ଜାତିଭେଦପ୍ରଥାର ବିଲୁପ୍ତି ମଧ୍ୟ ଥିଲା ଏ ଆନ୍ଦୋଳନର ଅନ୍ୟତମ ଲକ୍ଷ୍ୟ; ମାତ୍ର ଆର୍ଯ୍ୟସମାଜ ଜାତିପ୍ରଥାର ବିରୋଧ କରିନାହିଁ, ଶୁଦ୍ରକୁ ଶାସ୍ତ୍ରପାଠର ଅଧିକାର ଦେଇଛି । ମାତ୍ର ମୁଦ୍ରାଯନ୍ତ୍ରର ଆଗମନ ଓ ମୁଦ୍ରଣଶିଳ୍ପର କ୍ରମବିସ୍ତାର ସାଙ୍ଗକୁ ପାଶ୍ଚାତ୍ୟଶିକ୍ଷା ସେ ଅଧିକାରକୁ କରିଦେଇଛି ସର୍ବଜନୀନ । ଅର୍ଥାତ୍ ସଂସ୍କୃତି ଭିତରକୁ ପଶିଯାଇଛି ଗଣତନ୍ତ୍ର । ସେଇ ଅନୁପ୍ରବେଶ ଚେତନାର ଯୋଉ ଉନ୍ମେଷ ଘଟାଇଦେଇଛି, ସେଇଥିରୁ ବାହାରିଚି 'କ୍ଷୁଦ୍ର ରାଜନୀତି' । ସେ ରାଜନୀତି ସାମ୍ରାଜ୍ୟବାଦକୁ (=ଇଂରେଜ୍‌କୁ) ସମର୍ଥନକରିଚି ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ସକାଶେ । ଫଳତଃ, ସଂକଟ ସୃଷ୍ଟିହୋଇଚି 'ବୃହତ୍ତର ରାଜନୀତି' କ୍ଷେତ୍ରରେ । ତେବେ, ସେ ସଂକଟ ସାମ୍ରାଜ୍ୟବାଦକୁ ନିଃସର୍ତ୍ତ ସମର୍ଥନ ନୁହେଁ; କ୍ଷୁଦ୍ର ରାଜନୀତି ମଧ୍ୟ ଜାତୀୟତାବାଦକୁ ବ୍ୟବହାରକରିଚି ବେଳକାଳ ଉଣ୍ଡି; ଅର୍ଥାତ୍, ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ସକାଶେ । ଏ ଦ୍ୱନ୍ଦ୍ୱ ତେଣୁ ଶ୍ରେଣୀଦ୍ୱନ୍ଦ୍ୱ ନୁହେଁ, ଗୋଟାପଣେ ଜାତିଭିତ୍ତିର ପ୍ରତିରୋଧ । ଏ ଦେଶରେ ଯେହେତୁ ଗଣତନ୍ତ୍ରରେ ରାଶିତତ୍ତ୍ୱର ଗୁରୁତ୍ୱ ସର୍ବାଧିକ, ଜାତିଗତ ସଂଖ୍ୟାଗରିଷ୍ଠତା କ୍ଷମତାର ନିକିତିକୁ ଶୂଦ୍ର ଆଡ଼କୁ ଝୁଲାଇଦେବା ସ୍ୱାଭାବିକ; ମାତ୍ର ତା ଫଳରେ, ଆଦିବାସୀ-ହରିଜନଙ୍କ ଆର୍ଥିକ ଅବସ୍ଥାନରେ ଉନ୍ନତି ଘଟିଥିଲେ ସୁଦ୍ଧା, ନାଗରିକସମାଜରେ ସେମାନେ ରହିଛନ୍ତି ବ୍ରାତ୍ୟ ଓ ଅନ୍ତ୍ୟଜ । ବ୍ରାହ୍ମଣ-ବିରୋଧ ଯେ ଅନ୍ୟାୟର ସେଇ ଷ୍ଟ୍ରକ୍‌ଚର୍‌କୁ ଛୁଇଁପାରିନାହିଁ, ଖବରକାଗଜରେ ବାହାରୁଥିବା ପାତ୍ର-ପାତ୍ରୀ ବିଜ୍ଞାପନ ତାର ଚାକ୍ଷୁଷ ପ୍ରମାଣ, ବିଶେଷତଃ ବିବାହେଚ୍ଛୁ ପାତ୍ରପାତ୍ରୀ ଯେହେତୁ ସମସ୍ତେ ଶିକ୍ଷିତ ଓ ସ୍ୱଚ୍ଛଳ । ଅନ୍ୟ ଶବ୍ଦରେ, ଯତ୍‌ସାମାନ୍ୟ ହେଲେସୁଦ୍ଧା, ରାଜନୀତିକ କ୍ଷମତାର ପୁନର୍ବଣ୍ଟନ, ସଂପତ୍ତିର ପୁନର୍ବଣ୍ଟନ, ଶିକ୍ଷାର ପୁନର୍ବଣ୍ଟନ ନାଗରିକସମାଜର କେଶ ସୁଦ୍ଧା ସ୍ପର୍ଶକରିପାରୁନାହିଁ । ପାରୁନାହିଁ ବୋଲି, ମାୟାବତୀ ତିଆରିକରିଛି କ୍ଷମତାର ତ୍ରିଭୁଜ: ବ୍ରାହ୍ମଣ-ଦଳିତ-ମୁସଲ୍‌ମାନ୍ । ଅର୍ଥାତ୍, କ୍ଷୁଦ୍ରରୁ ବୃହତ୍ତର ରାଜନୀତିକୁ ଅଭିସରଣ । ନାଗରିକସମାଜ କୋଳରେ ଲାଳିତ ଏଇ ତିନି ସଂପ୍ରଦାୟର ଜୀବନ ଓ ଜଗତ୍ କିନ୍ତୁ ଭିନ୍ନ ଭିନ୍ନ । ଅଥଚ ଏମ୍.ଏନ୍.ଶ୍ରୀନିବାସଙ୍କ ଭଳି ସମାଜବିଜ୍ଞାନୀ କହୁଚନ୍ତି, ଜାତିପ୍ରଥା କୁଆଡ଼େ ଅଧସ୍ତନ ନିମ୍ନବର୍ଗଙ୍କୁ ସଚଳକରେ ସାମାଜିକ ଉପେକ୍ଷାକୁ ଅତିକ୍ରମକରିବାକୁ ।

ଉଚ୍ଚଜାତିର ଜୀବନଶୈଳୀ, ଆଚାରଅନୁଷ୍ଠାନ ତଥା ସଂସ୍କୃତିକୁ ଅନୁକରଣପୂର୍ବକ ସାମାଜିକ ମର୍ଯ୍ୟାଦାକୁ ଉନ୍ନତକରିବା ପ୍ରୟାସ କୁଆଡ଼େ ବିଶେଷ ଗତି ଲାଭକରୁଚି । ଏ ପ୍ରକ୍ରିୟାକୁ ଶ୍ରୀନିବାସ ନାଁ ଦେଇଚନ୍ତି Sanskritization । ମାତ୍ର ପ୍ରକ୍ରିୟାର ଜନପ୍ରିୟତା ସତ୍ତ୍ୱେ ନାଗରିକ ସମାଜରେ ସ୍ଥିତ ଜାତିସଂଗଠନ ବଦଳିନାହିଁ କି ବଦଳୁନାହିଁ; ଦଳିତନେତା ଅବଶ୍ୟ ରାଜନୀତିରେ ଅର୍ଜନକରୁଚନ୍ତି ସ୍ୱାତନ୍ତ୍ର୍ୟ । ଦରକାର କିନ୍ତୁ ଜାତିପ୍ରଥାର ସମୂଳ ଉତ୍ପାଟନ, କାହିଁକିନା, ଏଯାବତ୍ ଘଟିଚି ଯେତେ ଆନ୍ଦୋଳନ, ଶ୍ରେଣୀସଂଗ୍ରାମକୁ ଦୁର୍ବଳକରିଚି ଯେତିକି ନାଗରିକ ସମାଜର ସଂହତିକୁ ତଦପେକ୍ଷା ଊଣା ନୁହେଁ । ଅଥଚ ଦଳିତଙ୍କ ନେତା ଚାହୁଁଚନ୍ତି, ଦଳିତ 'ଦଳିତ'ହୋଇ ରହିଥାନ୍ତୁ ଚିରକାଳ; ନହେଲେ, 'ସାମାଜିକ ନ୍ୟାୟ'କୁ ପୁଞ୍ଜିକରି କ୍ଷମତାରାଜନୀତିକୁ ବଞ୍ଚାଇରଖିବା ଦୁଃସାଧ୍ୟ । ମାର୍କ୍ସବାଦ ବିବେଚନାରେ, ଜାତିପରିଚୟରେ ମଣିଷକୁ ସୀମିତକରି ରଖିବା ଏକ ଇତିହାସ-ପର୍ଯ୍ୟାୟ ମାତ୍ର, ଯେପରି ଦାସପ୍ରଥା କି ସାମନ୍ତତନ୍ତ୍ର । ଇତିହାସ ଯେହେତୁ ସୀମାବଦ୍ଧତାକୁ ପ୍ରମାଗର ଉଲଂଘନର ପ୍ରକ୍ରିୟା, ଯୋଉ ଚିହ୍ନାୟନ ମଣିଷର ଅଗ୍ରଗତିକୁ ଅବରୁଦ୍ଧକରେ, ସ୍ଥାୟୀ ହୋଇପାରେନା । ନିତ୍ୟଶାଶ୍ୱତ ଭଳି ଅବବୋଧକୁ ଇତିହାସ ଯେହେତୁ ସମ୍ମାନକରେନା, ଜାତିସଂସ୍କାର ନାଗରିକସମାଜରେ କୃତ୍ରିମ ଓ ଅସ୍ୱାଭାବିକ । ଅଥଚ ରାଷ୍ଟ୍ର ହଉ କି ସୁଶୀଳ ସମାଜ, ହେହିହେଲେ ଭାବନ୍ତିନାହିଁ ବହୁକାଳରୁ ପ୍ରଚଳିତ ଏ କୁପ୍ରଥା କାହାର କ୍ଷତି କରୁଚି । ଆଉକାହାରି କ୍ଷତି କରୁ କି ନକରୁ, ସାମ୍ୟବାଦୀ ଆନ୍ଦୋଳନର ଯେ ପ୍ରଭୂତ କ୍ଷତି କରୁଚି, ସେ ବିଷୟରେ ଦ୍ୱିମତର ଅବକାଶ ନାହିଁ । ମାର୍କ୍ସ ଭାବିଚନ୍ତି, ବ୍ରିଟିଶ୍ ଯୋଉ ଆଧୁନିକତା ଆଣିଚି ଭାରତକୁ, ତା ପ୍ରଭାବରେ 'ଏସିଆଟିକ୍ ମୋଡ୍ ଅବ୍ ପ୍ରଡକ୍ସନ୍' ଲୋପପାଇଯିବ, ତା ଜାଗାରେ ଯୋଉ ନାଗରିକସମାଜ ଗଢ଼ିଉଠିବ, ସେ ସମାଜର ମୌଳିକ ଆବଶ୍ୟକତା ମେଣ୍ଟାଇବାକୁ ଯାଇ ଜାତିପ୍ରଥା ରୂପକ ସୁପରଷ୍ଟ୍ରକ୍‌ଚର୍ ଛାଏଁଛାଏଁ ଧ୍ୱଂସ ପାଇଯିବ; ଅର୍ଥାତ୍ ତାର ସାମାଜିକ ପ୍ରତିପତ୍ତି ପ୍ରାସଙ୍ଗିକତା ହରାଇବ । ବାସ୍ତବ ଅଭିଜ୍ଞତା କିନ୍ତୁ ଅନ୍ୟରକମ । ଜାତିପ୍ରଥା ଏକ୍ଷଣି ନାନାଦି ସୁଯୋଗସୁବିଧା ଆଣିଦେଉଚି ନିମ୍ନଜାତିବର୍ଗକୁ, ଏବଂ ସେଇ ନୂତନ ବ୍ୟବସ୍ଥାରେ, ସାମାଜିକ ସ୍ତରରେ ସେମାନେ ହୋଇପାରୁଚନ୍ତି ସଚଳ । ଜାତିପିରାମିଡ୍ ଏବାଟରେ ନିଜକୁ ପରିଣତକରିଚି ଯୁଗୋପଯୋଗୀ ସାମାଜିକ ପ୍ରତିଷ୍ଠାନ । ତରଳ ରାଜନୀତି ଯଦିଚ ପ୍ରଧାନ କାରଣ, ଇତିହାସ ଗତିରେ ଇଂରେଜ୍ ମଧ୍ୟ ଦେଇଯାଇଚି ଆଦମ୍‌ସୁମାରି ବା ସେନ୍‌ସସ୍ । ତା ଭିତ୍ତିରେ ଜାତି-ଜାତି ଭିତରେ ଲାଗିଯାଇଚି ଘମାଘୋଟ ପ୍ରତିଯୋଗିତା । ସେନ୍‌ସସ୍ ପଛକୁ ଆସିଚି ଇଲେକ୍ସନ୍, ନିଆଁକୁ ଘିଅ ! ଜାତି ଭିତ୍ତିରେ ଦଳ-ଉପଦଳ ଗଜୁରିଉଠିଚି;

ମାତ୍ର ଏ କୃତ୍ରିମ ସଂହତି ବାସ୍ତବରେ ଭ୍ରାନ୍ତଚେତନା, ଯାର ଭୂତଉପାଦାନ ଯଥାକ୍ରମେ ଜାତିଐକ୍ୟ, ପ୍ରତିଦ୍ୱନ୍ଦ୍ୱିତା ଆଉ ଉଚ୍ଚଜାତିଙ୍କୁ ଅନୁଗମନ । ତେଣୁ 'ଶ୍ରେଣୀ' ଭାବରେ ସଂଗଠିତ ହୋଇପାରିନାହିଁ କୋଉହେଲେ ନିମ୍ନଜାତି କିମ୍ବା ଉପଜାତି । ବ୍ରାହ୍ମଣଙ୍କୁ ଅନୁକରଣକରି ପଇତା ପିନ୍ଧୁଚନ୍ତି, ଗୋରୁ କି ଘୁଷରୀ ମାଂସ ଛାଡ଼ିଦେଇଚନ୍ତି, ମଦ ବି ଛାଡ଼ିଚନ୍ତି ଉଚ୍ଚାଭିଳାଷୀ । ଜୀବନଚର୍ଯ୍ୟାରେ ପ୍ରକଟହୋଇଚି ସାଂସ୍କ୍ରିଟାଇଜେସନ୍, ମାତ୍ର ନାଗରିକସମାଜରେ ରହିଚନ୍ତି ଅପାଙ୍କ୍ତେୟ ଅଧମ । ଚେଷ୍ଟାକରିଚନ୍ତି ମୁନି-ଋଷିଙ୍କୁ ନିଜ ପୂର୍ବପୁରୁଷ ପ୍ରମାଣକରିବାକୁ, ଏପରିକି ଜଗନ୍ନାଥଙ୍କ ଦଇତା, ବ୍ରାହ୍ମଣ ବିଦ୍ୟାପତିଙ୍କୁ ବାପ ବୋଲି ମାନିଚନ୍ତି । ଶ୍ରମସାଧ କାମଗୁଡ଼ାକ ପଡ଼ିଚି ଅବଶ୍ୟ ତାଙ୍କରି ଭାଗରେ, ଆପତ୍ତି କରିନାହିଁ କେହିହେଲେ । ନାଗରିକସମାଜ ଯେ ଅସମସତ୍ତ୍ୱ, ଏବଂ ସର୍ବବିଧ ଆଧୁନିକତାର ଅନୁପ୍ରବେଶ ସତ୍ତ୍ୱେ, ଏଇ ଲକ୍ଷଣ (ଅସମସତ୍ତ୍ୱ)କୁ ମାନିନେଲେ ଆଖିରେ ପଡ଼ିବ ତାଙ୍କ ଭିତରେ ଏକ ମଧ୍ୟବିତ୍ତଶ୍ରେଣୀର ଅଭ୍ୟୁଦୟ । ଜାତିସତ୍ତାର ପରିମଣ୍ଡଳ ବାହାରେ ସେମାନେ ଏକାଧାରରେ ରକ୍ଷଣଶୀଳ, ପୁଣି ସଂସ୍କାରବାଦୀ; ସ୍ୱାଧୀନତାରୁ ଷାଠିଏବର୍ଷ ଭିତରେ ଏ ଶ୍ରେଣୀର ସଂଖ୍ୟାବୃଦ୍ଧି ହୋଇଚି ଯେତିକି, ଶ୍ରୀବୃଦ୍ଧି ହୋଇଚି ତତୋଧିକ । ଫଳରେ, ନାଗରିକସମାଜ ମଝିରେ ଏକ୍ଷଣି ଅଗ୍ରସର ଯୋଉ ମଧ୍ୟବିତ୍ତଶ୍ରେଣୀ, ତା ଭିତରେ ରହିଚିନ୍ତି ବିବାକ ଜାତି, ଧର୍ମ ଓ ଭାଷାର ଧାରକ / ବାହକ ଆତ୍ମସନ୍ତୁଷ୍ଟ କ୍ରମବର୍ଦ୍ଧମାନ ଏକ ସଂପ୍ରଦାୟ । ବିଦ୍ରୋହ ବିପ୍ଲବ ସେମାନଙ୍କର କାମ୍ୟ ନୁହେଁ । ତାଙ୍କ ଭିତରୁ ଯିଏ ନିଚ ଜାତିରୁ ଆସିଚନ୍ତି, 'ସାମାଜିକ ନ୍ୟାୟ' ମାନେ ପ୍ରତ୍ୟେକ ମଣିଷ ପ୍ରତି ସମଦୃଷ୍ଟି ନଭାବି, ଭାବନ୍ତି ନିଜ ଜାତି ସକାଶେ ସବୁଠି 'ସଂରକ୍ଷଣ' ବା ରିଜରଭେସନ୍ । ଅର୍ଥାତ୍, ପାର୍ଥକ୍ୟ ବଞ୍ଚିଥାଉ ଚିରକାଳ । ସେ ପାର୍ଥକ୍ୟ, ପେରିୟର୍ ଇ.ଭି.ରାମସ୍ୱାମୀଙ୍କ ପରିଭାଷାରେ, 'ଆତ୍ମମର୍ଯ୍ୟାଦା' । ବ୍ରାହ୍ମଣଙ୍କୁ ଅନୁକରଣକରିବା କିନ୍ତୁ ଆତ୍ମମର୍ଯ୍ୟାଦା ନୁହେଁ । ଜାତୀୟତାବାଦ ତେଣୁ ବ୍ରାହ୍ମଣ୍ୟଆଧିପତ୍ୟର ସମାର୍ଥକ । ସେଥିପାଇଁ ଦରକାର ପୃଥକ୍ ଭୋଟାଧିକାର । ମୁସଲ୍‌ମାନଙ୍କ ଭଳି ସେମାନେ ମଧ୍ୟ ସଂଖ୍ୟାଲଘୁ । ଏକଥା କହିଚନ୍ତି ଅବଶ୍ୟ ଆମ୍ବେଦ୍‌କର ।

କିନ୍ତୁ, ମଧ୍ୟବିତ୍ତ ଦଳିତର ସଚଳତା ଶୋଷିତ ଶ୍ରେଣୀସମୂହର ସଂଗ୍ରାମକୁ ବାସ୍ତବିକ୍ ସଚଳକରେ କି? ନାଗରିକସମାଜର ଜାତିପିରାମିଡ୍ ମୂଳରେ ମଧ୍ୟବିତ୍ତ ଦଳିତ ଆଘାତ ହାଣେ କି? ନିଷ୍ପେଷିତ ଯେତେଜାତି ଆନ୍ଦୋଳନକରିଚନ୍ତି, ସେ ଆନ୍ଦୋଳନର ଚରିତ୍ର କିନ୍ତୁ କେତେବେଳେ ପ୍ରଗତିଶୀଳ ତ କେତେବେଳେ ପ୍ରତିକ୍ରିୟାଶୀଳ (=ଜାତୀୟତାବିରୋଧୀ) । ଦ୍ୱୈତଚରିତ୍ରର ପ୍ରଧାନ ଲକ୍ଷଣ, ସମାଜର

ଏକାଂଶ ସକାଶେ ବିଶେଷ ସୁବିଧାସୁଯୋଗ ଦାବି, ଅବଶିଷ୍ଟ ଅଂଶ ପାଇଁ ନାନାଦି କଟକଣା ଯୋଗାଡ଼ । ସିଧା କଥାରେ, ସାଂପ୍ରଦାୟିକତା । ଏ ସାଂପ୍ରଦାୟିକତାର ଅବସାନ ଘଟିବ ନିଷ୍ପେଷିତ ଗୋଷ୍ଠୀ ଯେତେବେଳେ ପ୍ରକୃତ ଗଣତାନ୍ତ୍ରିକ ସ୍ୱାଧୀନତା ଭୋଗକରିପାରିବେ, ସମାଜତନ୍ତ୍ର ଛଡ଼ା ଅନ୍ୟ କୌଣସି ବ୍ୟବସ୍ଥାରେ ଯା ସମ୍ଭବପର ନୁହେଁ । ଅନ୍ୟ ସବୁ ତନ୍ତ୍ର ମାନିନେଇପାରେ ପୃଥକ୍ ନିର୍ବାଚନମଣ୍ଡଳୀ ଭଳି ପ୍ରତିକ୍ରିୟା; ସମ୍ପ୍ରଦାୟ ଭିତ୍ତିରେ ସମାଜର ବିଭାଜନ ।

ପୁଞ୍ଜିବାଦର ବିକାଶ ଶ୍ରେଣୀ ଭିତ୍ତିରେ ସମାଜକୁ ପୁନର୍ଗଠିତ କରିବା କଥା; ଜାତିପରିଚୟ ଯୋଉଠି ଆଦୌ କୋଉ ପରିଚୟ ନୁହେଁ । ମାତ୍ର ନିର୍ବାଚନରାଜନୀତି ହୋଇଚି ତାର ଅନ୍ତରାୟ । ହୋଇଚି ବୋଲି, ଜାଠ୍ ଭୂମିହାର ରାଜପୁତ୍ ଜମିଦାର ସ୍ୱଜାତିର ଭୂମିହୀନ କୃଷକର ଭୋଟ୍ ପାଇଯାଏ ଘରେ ବସି । ରାଜନୀତିକ ଦଳ ଅଭିନେତା-ଅଭିନେତ୍ରୀଙ୍କୁ ଡାକିଆଣନ୍ତି ନିର୍ବାଚନ ପ୍ରଚାରକରିବାକୁ; ମଧ୍ୟବିତ୍ତ କିନ୍ତୁ ନିର୍ବିକାର । ଏକମାତ୍ର ସମାଜତନ୍ତ୍ର ପ୍ରତ୍ୟକ୍ଷକରିପାରେ ଶୋଷଣ ଓ ଆଧିପତ୍ୟକୁ ସମଗ୍ରତାରେ, ପରିବ୍ୟାପ୍ତ ସିଷ୍ଟେମ୍ ରୂପରେ । କିନ୍ତୁ ତଥାକଥିତ ଦଳିତ ଯେହେତୁ ମଧ୍ୟବିତ୍ତ ଶ୍ରେଣୀଭୁକ୍ତ ହେଉଚି କ୍ରମଶଃ, ସଂଗ୍ରାମ ପ୍ରତି ତାର ଆଗ୍ରହ ହ୍ରାସପାଇବା ସ୍ୱାଭାବିକ । ପାର୍ଥକ୍ୟରେ ହିଁ ନ୍ୟସ୍ତ ତାର ସ୍ୱାର୍ଥ, ସମାନତାରେ ନୁହେଁ । ରାଷ୍ଟ୍ରଯନ୍ତ୍ରରେ ତାର ଅଂଶ ତେଣୁ ଆଉ ବଢ଼ୁନାହିଁ, କାହିଁକିନା, ଉଚ୍ଚଜାତି ମଧ୍ୟ ଆରମ୍ଭକରିଚନ୍ତି ସଂଘବଦ୍ଧ ପ୍ରତିରୋଧ; ଯା ଫଳରେ, ମାୟାବତୀ ସକାଶେ ପର୍ଶୁରାମ ଏକ୍ଷଣି ହିରୋ । ଲୋହିଆ ଗୋଟେ ସମୟରେ 'ଜାତି' ଓ 'ଶ୍ରେଣୀ'କୁ ଭାବିଥିଲେ ସମାର୍ଥକ; ତା ହୋଇଥିଲେ, ନାଗରିକ ସମାଜରେ, ସୃଷ୍ଟି ହୁଅନ୍ତା ମେରୁକରଣ । କିନ୍ତୁ ହେଉନାହିଁ । ଉଚ୍ଚଜାତିଙ୍କ ହାତରେ ଅଛି ଜମି, ନିଚଜାତିଙ୍କ ହାତରେ ଅଦୃଷ୍ଟ ବା ଭାଗ୍ୟରେ ବିଶ୍ୱାସ । ପ୍ରତିନିଧିମୂଳକ ଗଣତନ୍ତ୍ରୀ ମାନେ ନିର୍ବାଚନ । ନାଗରିକସମାଜ ଜାଣେ, ଟଙ୍କା ଦିହବଳ ଓ ଜାତିବଳ ଏକତ୍ରହୋଇ ରହିଚି କାହା ହାତରେ । ସଂରକ୍ଷଣ ଥାଉ କି ନଥାଉ, ରାଷ୍ଟ୍ର କେବେ ମନକରିନାହିଁ ନାଗରିକସମାଜର ଏ ଫ୍ର୍ୟାଗ୍ମେଣ୍ଟେସନ୍ । ରିଜର୍ଭେସନ୍କୁ ସୁପ୍ରିମ୍କୋର୍ଟ ୫୦%ରେ ଅଟକାଇ ରଖିଚି । ମାତ୍ର ପାର୍ଲାମେଣ୍ଟ୍ ଚାହୁଁଚି ଆହୁରି ବଢୁ । ଉଚ୍ଚଶିକ୍ଷା ପ୍ରତିଷ୍ଠାନଗୁଡ଼ିକରେ ଛାତ୍ରଛାତ୍ରୀଙ୍କ ଭିତରେ ବି ପଶିଗଲାଣି ଫ୍ର୍ୟାଗ୍ମେଣ୍ଟେସନ୍ । ପରିବର୍ତ୍ତନ ଚାହୁଁଚି ତେବେ କିଏ? ପରିବର୍ତ୍ତନ ମାନେ ଫରାସୀ ବିପ୍ଳବରୁ ଗୃହୀତ ସେଇ ଆଦର୍ଶ, ସାମ୍ୟ ମୈତ୍ରୀ ମୁକ୍ତି । ପରିବର୍ତ୍ତନ ଯଦି କେହି ଚାହୁଁନାହିଁ, ତା ହେଲେ ଫୁକୁୟାମା ଯାହାକୁ କହିଚନ୍ତି 'ଏଣ୍ଡ୍ ଅବ୍ ହିଷ୍ଟ୍ରି'(ଇତିହାସର ଇତି), ସେଇଠି ଆସି ପହଞ୍ଚିଯାଇଛୁଁ । ଅନ୍ୟ ଶବ୍ଦରେ, ଚେତନାର

ଜଡତା ଇତିହାସନିର୍ମାଣ କାମରୁ ନାଗରିକସମାଜକୁ କରିଦେଇଚି ନିରୁଦ୍ୟମ । ମାତ୍ର ଏ ନୈରାଶ୍ୟ ନେତିବାଦ ନୁହେଁ । ନୁହେଁ ବୋଲି, ସ୍ଥିତାବସ୍ଥା ପ୍ରତି ଅସନ୍ତୋଷ ଜୀବନକୁ ରକ୍ଷା କରୁଚି ସ୍ଥବିରତା କବଳରୁ । ସମାଜତନ୍ତ୍ର ଭଳି ପରିବର୍ତ୍ତନ ପ୍ରସ୍ତାବ ମନକୁ ଆଣୁଚି ଆତ୍ମସମାଲୋଚନା । କାହିଁକିନା, ଜନ୍ମମରଣ ସୀମାବଦ୍ଧତା ଭିତରେ ମଣିଷ ଖାଲି ଅଭିଜ୍ଞତା ସଞ୍ଚୟକରେନା; ଜୀବନରେ ଯା ଘଟେ କି ଘଟିପାରେ, ସବୁଠି କର୍ତ୍ତା ହେବାକୁ ଚାହେଁ । ଏବଂ ନିରନ୍ତର ସେଇ ଜିଜ୍ଞାସାରୁ ଗଢ଼ିଉଠେ ଚିନ୍ତା ଓ କର୍ମ ମଧ୍ୟସ୍ଥ ସଙ୍ଗତି ।

ଆମ ଛାତ୍ର ଅବସ୍ଥାରେ, ଆଖି ଯେତେଦୂର ଯିବ, ଦେଖୁଛୁଁ ଘରଗୁଡ଼ାକର ଚାଳ ଉଡ଼ିଯାଇଚି, କାନ୍ଥ ନଇଁପଡ଼ିଚି, ଅଧିକାଂଶ ସ୍ତ୍ରୀପୁରୁଷଙ୍କ ଦିହରେ ଛିଣ୍ଡା ଲେଙ୍ଗୁଡ଼ି, କଲେଜ୍‌ପିଲାଙ୍କ ଅସ୍ଥିଚର୍ମସାର ଦେହରେ ବି ମଳୀନ ଦୁର୍ଗନ୍ଧ ଜାମା, କଟକ ଭଳି ରାଜଧାନୀସହରରେ କି ପୁରୀ ଭଳି ତୀର୍ଥକ୍ଷେତ୍ରରେ ବିତ୍ତ ଓ ବୁଭୁକ୍ଷାର ଭୟାବହ ସହାବସ୍ଥାନ । ଆଜି ବି ସବୁଠି ଘିଅ-ମହୁ ଲହଡ଼ି ଭାଙ୍ଗୁନାହିଁ, କିନ୍ତୁ ପଚାଶବର୍ଷ ତଳର ଅବସ୍ଥା ସାଙ୍ଗରେ ତୁଳନାକଲେ ଦିଶୁଚି , ସବୁଆଡ଼େ ଅଗ୍ରଗତି । ପ୍ରତ୍ୟେକ ପିଲା ସ୍କୁଲ୍‌କୁ ଯିବାକୁ ସୁଯୋଗ ପାଏ । ଗୋଟି ଖଟି ପେଟପୋଷୁଥିବା ଲୋକଙ୍କ ପାଇଁ କାମ ଅଭାବ ନାହିଁ; ଜିନିଷପତ୍ରର ଦରଦାମ ବଢ଼ିଚି, ମାତ୍ର କ୍ରୟକ୍ଷମତା ବଢ଼ିଚି ଢ଼େର ବେଶି । ଶିଶୁମୃତ୍ୟୁ କମିଚି, ହଇଜା-ବସନ୍ତ ଲାଗୁନାହିଁ, ଝିଅମାନେ ଅଫିସ୍-ଅଦାଲତରେ କାମକରୁଚନ୍ତି ବହୁ ସଂଖ୍ୟାରେ । ସ୍ଥୂଳ ଉପକରଣଗତ ପରିବର୍ତ୍ତନ ନୁହେଁ ଏଗୁଡ଼ାକ, ସାମାଜିକ ବିବେକ ସୂକ୍ଷ୍ମ ଓ ପ୍ରଖର ହୋଇଚି ବୋଲି, ପରିବର୍ତ୍ତନ ହୋଇଚି ସକ୍ରିୟ । ଓଡ଼ିଶାରେ ଏ ବିବର୍ତ୍ତନ ଘଟିଚି ଯେତେବେଳେ ଗଙ୍ଗା ନାହିଁ କି ଗୋଦାବରୀ ନାହିଁ, ସାଧବ ନାହାଁନ୍ତି କି ବୋଇତ ନାହିଁ । ବଢ଼ିମରୁଡ଼ି ଝଡ଼ବତାସ ଲାଗିରହିଚି, ଲୋକ କିନ୍ତୁ ମେରୁଦଣ୍ଡ ସିଧାରଖି ବାଟଚାଲୁଚନ୍ତି । ଏ କଣ ନାଗରିକସମାଜର ନୈତିକ ପ୍ରାଣଶକ୍ତିର ପରିଚାୟକ ନୁହେଁ? ପୂର୍ବକାଳରେ ଲୋକଙ୍କୁ ଏକାଠି କରୁଥିଲା ଧର୍ମ, ତହିଁଉତାରୁ କଲା ଜାତୀୟତା, କାହିଁକିନା, ଜାତୀୟତାବାଦ ଉପରେ ଗଢ଼ିଉଠିଥିବା ଜାତିରାଷ୍ଟ୍ର ଉତ୍ସାହଦେଇଚି ସେଇ ପ୍ରବଣତାକୁ । ନାଗରିକ ତେଣୁ କର୍ତ୍ତାନୁହେଁ, କର୍ତ୍ତା ସ୍ୱୟଂ ରାଷ୍ଟ୍ର । ସପକ୍ଷ ବିପକ୍ଷରେ ନାନାଦି ଦାର୍ଶନିକ ଅଭିମତ ବଜାରରେ ମିଳିବ, କାହିଁକିନା ଦର୍ଶନ(ଫିଲଜଫି) କୋଉ ବିଚକ୍ଷଣ ଲୋକର ଅନନ୍ୟ ଚିନ୍ତାବଳୀ ନୁହେଁ । ସମାଜର ସମଷ୍ଟିଗତ ଚରିତ୍ର ଯେମିତି ନିରୂପଣକରେ ଦର୍ଶନକୁ, ଭଳିକିଭଳି ଦର୍ଶନତତ୍ତ୍ୱ ସେମିତି ଆପଣା ସମାଜର ଭାବଜଗତକୁ ଦିଏ ବୈଶିଷ୍ଟ୍ୟ । ମାତ୍ର, ବାହାର ଓ ଅନ୍ତରର ଐକ୍ୟ ବା ଇଣ୍ଟେଗ୍ରିଟି ହିଁ ସାର୍ଥକ ଜୀବନର ପ୍ରଧାନ ସର୍ତ୍ତ । ସେ ଇଣ୍ଟେଗ୍ରିଟିର ପ୍ରରୋଚନା

ଦର୍ଶନ ବା ତତ୍ତ୍ୱକୁ ମଧ୍ୟ ଅସ୍ୱୀକାର କରିପାରେ । ଯେପରି, ଧନତନ୍ତ୍ରକୁ । ଜୀବନର ସମସ୍ତ ମୂଲ୍ୟବୋଧକୁ ଧନତନ୍ତ୍ର ଚାହେଁ ଉଦ୍‌ବୃତ୍ତସଂଗ୍ରହର କରିବ ସେବାଦାସ । ଦେଶର ନାଗରିକସମାଜ ଓ ରାଜନୀତିକ ସମାଜ(=ରାଷ୍ଟ୍ର) ଉଭୟ ଏକ୍ଷଣି ସେଇ ପ୍ରତିଯୋଗିତାରେ ଉର୍ଦ୍ଧ୍ୱଶ୍ୱାସ । ମଣିଷର ଇଣ୍ଟେଗ୍ରିଟିର ତାଡ଼ନା ତେଣୁ ବିରୋଧ କରିପାରେ ରାଷ୍ଟ୍ରକୁ ଯେତିକି, ସୁଶୀଳ ସମାଜକୁ ତାଠୁଁ ଊଣା ନୁହେଁ । ଆପଣା ସତତା ପ୍ରତି ବିଶ୍ୱସ୍ତ ରହି ରାଷ୍ଟ୍ର କି ସୁଶୀଳସମାଜକୁ ବିରୋଧ ମାନେ ସମଗ୍ର ଦେଶର ସ୍ଥିତିଶୀଳତା ବା ଷ୍ଟେବିଲିଟି ସପକ୍ଷରେ ସଂଗ୍ରାମ । ନୈତିକତାର ଉତ୍ସ କେବେ ଜାତି ଧର୍ମ ଭାଷା ଭଳି ବିଭାଜକ ଚିହ୍ନ ନୁହେଁ, କାହିଁକିନା, ମଣିଷ ଜୀବନରେ ଯା ସବୁଠୁଁ ଦୁର୍ବହ, ତା ଆତ୍ମିକ ନିଃସଙ୍ଗତା । ଏକମାତ୍ର ଗଭୀର ଅନୁଭୂତି, ଅକୃତ୍ରିମ ଆବେଗ ଓ ଭଲପାଇବାର ତୀବ୍ରତା ଭିତରଦେଇ ଜଣେ ଅନ୍ୟଜଣକର ଏକାକୀତ୍ୱର କେନ୍ଦ୍ରକୁ ସ୍ପର୍ଶକରିପାରେ । ଏଭଳି ଆତ୍ମୀୟତାସାଧନ ଯାବତୀୟ ମାନବିକ ସଂପର୍କର ସଙ୍ଗତ ଉଦ୍ଦେଶ୍ୟ । ଜାତି/ ଧର୍ମ/ଭାଷା/ଏପରିକି ଜାତୀୟତା, ଅନତିକ୍ରମ୍ୟ କୋଉ ଏକାକୀତ୍ୱ ନୁହେଁ; ସ୍ୱତଃସ୍ଫୂର୍ତ୍ତ ଆବେଗର ଦ୍ୟୋତକ ସୁଦ୍ଧା ନୁହେଁ । ଆଧିପତ୍ୟପରାୟଣ ଏକ ପ୍ରତିଦ୍ୱନ୍ଦ୍ୱୀ ବାସନା, ହୁଏତ ଯୁକ୍ତିସିଦ୍ଧ ଓ ପ୍ରତ୍ୟକ୍ଷ, ମାତ୍ର ଚରମ ନୁହେଁ କି ପ୍ରଶ୍ନାତୀତ ନୁହେଁ । ତା ଭିତରେ ନିରନ୍ତର ସକ୍ରିୟ ଯେହେତୁ ସ୍ୱବିରୋଧ, ତାହାରି ଭିତ୍ତିରେ ତିଆରି ଯେକୌଣସି ସମଷ୍ଟିବାଦ ହୋଇପାରେନା ଆତ୍ମନିୟନ୍ତ୍ରଣର ସହାୟକ । ମିଳେ କେବଳ ଅସହାୟତାର ଗ୍ଲାନି । ବୁଦ୍ଧିବିଦ୍ୟା ଖଟାଇ ଯେତେରକମ ବାଟ ବାହାରକରାଯାଇଚି ସେ ଗ୍ଲାନିରୁ ମୁକୁଳିବାକୁ, ସବୁଗୁଡ଼ାକ ଦିଶିବ ପରିବର୍ତ୍ତନସାପେକ୍ଷ; ସାମାନ୍ୟ ନୁହେଁ କି ସ୍ୱତଃସିଦ୍ଧ ନୁହେଁ । ଯା ପରିବର୍ତ୍ତନସାପେକ୍ଷ, ତା ସୀମାବଦ୍ଧ । ତେଣୁ ପରିବର୍ତ୍ତନର ପ୍ରବାହ ଯେତେବେଳେ ପୃଥିବୀକୁ ପ୍ରମାଣକରୁଚି ଅନିତ୍ୟ, ଜାତି ଧର୍ମ ବୃତ୍ତି ସଂପତ୍ତି, କୋଉ ଗୋଟାକହେଲେ ଦେଇପାରେନା ନିଶ୍ଚିତ ଆଶ୍ରୟ । ନିତ୍ୟନୂତନ ଅଭିଜ୍ଞତାର କଷଟିପଥରରେ ଘଷି ତଥାକଥିତ ଏଇ ଆଶ୍ରୟଚିହ୍ନ ଗୁଡ଼ିକର ପରୀକ୍ଷାହେବା ଦରକାର । କାହିଁକିନା, ନିର୍ଦ୍ଦିଷ୍ଟ କୌଣସି ଆକାଙ୍କ୍ଷା ଖାଲି ନିଜ ଗୁଣରେ ଭଲ କି ନାକରା ହୋଇପାରେନା, ଅପରାପର ନାନାଦି ଆକାଙ୍‌କ୍ଷା ସହିତ ଯୋଡ଼ିହୋଇ ସାର୍ଥକତା ପାଏ । ସବୁଯାକ ମଣିଷଙ୍କୁ ଅବଶ୍ୟ ଜାଣିହେବନାହିଁ; ବିଚାରକୁ ସେଥିପାଇଁ ଜ୍ଞାତ ଜନସମଷ୍ଟି ଭିତରେ ସୀମିତ ରଖିବାକୁ ପଡ଼ିବ ଏବଂ ସାମଞ୍ଜସ୍ୟ ନିରୂପଣକରିବାକୁ ସ୍ଥାୟୀ କିଛି ମନଦଣ୍ଡକୁ ମଧ୍ୟ ଗ୍ରହଣକରିବାକୁ ପଡ଼ିବ । ସ୍ଥାୟୀ ମାନେ ଜୀବନଯାତ୍ରାର ନିତ୍ୟପ୍ରୟୋଜନ ସହିତ ଯା ଅଙ୍ଗାଙ୍ଗୀ । ଜାତୀୟତା, ଧର୍ମ, ଜାତି ଇତ୍ୟାଦି ପୃଥିବୀର ଅଶେଷ କ୍ଷତି କରିଚି । ଆଜି ମଧ୍ୟ କରୁଚି; ଯେପରି ଅଧ୍ୟାପକ ହଣ୍ଟିଙ୍ଗ୍‌ଟନ୍‌ଙ୍କ କ୍ଲାଶ୍

ଅବ୍ ସିଭିଲାଇଜେସନ୍ନ ଥିୟରି । ସ୍ୱଜାତିର ମନ୍ତ୍ର ବ୍ୟକ୍ତିର ସହଜବୁଦ୍ଧି(କମନ୍‌ସେନ୍ସ)କୁ ସକ୍ରିୟହେବାକୁ ବାଧାଦିଏ; ବାଧାଦିଏ ବୋଲି, ଗଣତନ୍ତ୍ରର ପରିପନ୍ଥୀ; ଏବଂ ପରିପନ୍ଥୀ ବୋଲି, ରାଷ୍ଟ୍ର ଏତେ ଦୁର୍ବଳ । ସେ ଦୁର୍ବଳତା ନଜରରେ ପଡୁନାହିଁ, ସୁଶୀଳସମାଜର ଦୃଷ୍ଟି ଯେହେତୁ ମେଘାଚ୍ଛନ୍ନ । ମାତ୍ର ସମାଜତନ୍ତ୍ର ପ୍ରତିଷ୍ଠାକରିବାକୁ ହେଲେ ଜାତୀୟତାବାଦକୁ ଏକ୍ଷଣି କାମରେ ଲଗାଇବାକୁ ପଡ଼ିବ, କାହିଁକିନା, କ୍ୟାପିଟାଲିଜ୍ମ ଏକ ବିଶ୍ୱଆଦର୍ଶ ହେଲେସୁଦ୍ଧା, ତାର ଅଛି ନିଜସ୍ୱ 'ଟେରିଟରି', ଯେପରି ଜାତୀୟତାବାଦ ଉପରେ ପ୍ରତିଷ୍ଠିତ ଜାତିରାଷ୍ଟ୍ରର ଅଛି ଟେରିଟେରି ଯା, ପ୍ରକୃତ ପ୍ରସ୍ତାବରେ, ଏକ ରଣକ୍ଷେତ୍ର । ରଣକ୍ଷେତ୍ରର ପ୍ରତ୍ୟେକ ସୈନିକ ତେଣୁ ଜଣେ ଜଣେ କର୍ତ୍ତା ବା ସବ୍‌ଜେକ୍ଟ୍ ।

ସେ କର୍ତ୍ତା ଅବଶ୍ୟ ସୁଶୀଳସମାଜର ଅଧିବାସୀ । କିନ୍ତୁ 'ରାଷ୍ଟ୍ର' ନାମକ ବିମୂର୍ତ୍ତ ସତ୍ତାକୁ ଯିଏ ମୂର୍ତ୍ତିମନ୍ତ କରନ୍ତି, ସେଇ ସେନାବାହିନୀ ପୁଲିସ୍ ଅମଲାତନ୍ତ୍ର ଅଦାଲତ ସେଣ୍ଟ୍ରାଲ୍‌ବ୍ୟାଙ୍କ୍ ଇତ୍ୟାଦି ଅନ୍ୟ ଏକ ପରିସରର ବାସିନ୍ଦା । ସେ ପରିସରର ପରିଚୟ ରାଜନୀତିକ ସମାଜ(=ରାଷ୍ଟ୍ର) । ଉଭୟ ପରିସର ମଧ୍ୟସ୍ଥ ସମ୍ପର୍କ ଦ୍ୱାନ୍ଦ୍ୱିକ ହେଲେସୁଦ୍ଧା, ଗଣତନ୍ତ୍ର ଯୋଉଠି ଦୁର୍ବଳ, ରାଜନୀତିକ ସମାଜ ସେଠି ନିୟନ୍ତକ; ଅର୍ଥାତ୍ ରାଷ୍ଟ୍ର ସେଠି ପୀଡ଼ନପ୍ରବଣ । ନାଗରିକସମାଜ ତେଣୁ, କ୍ଷେତ୍ର ବିଶେଷରେ, ରାଷ୍ଟ୍ରର ପ୍ରତିପକ୍ଷ । କାହିଁକିନା, ରାଜନୀତିକସମାଜ ସାଧାରଣତଃ ଶାସକଶ୍ରେଣୀର ଜୀବନାଦର୍ଶର ଧାରକ ଓ ବାହକ । ସେଇ ଜୀବନାଦର୍ଶକୁ 'ହିଗେମେନି'ରେ ରୂପାନ୍ତରିତ କରି ସୁଶୀଳସମାଜର ସମ୍ମତି ଆଦାୟକରେ ରାଷ୍ଟ୍ର ସଚରାଚର । ଏଇ ଦ୍ୱାନ୍ଦ୍ୱିକତା ପ୍ରେକ୍ଷିତରେ ଲେନିନ୍‌ଙ୍କ ମନକୁ ଆସିଚି 'ଗୃହଯୁଦ୍ଧ'ର ପ୍ରତ୍ୟୟ । ଶାସକଶ୍ରେଣୀର ଆଧିପତ୍ୟକୁ ଯିଏ ମାନିବେନାହିଁ, ସେମାନଙ୍କୁ ଶୃଙ୍ଖଳା ଶିଖାଇବା ରାଷ୍ଟ୍ରର ଯଥୋଚିତ କର୍ତ୍ତବ୍ୟ । କାହିଁକିନା, ରାଷ୍ଟ୍ରଗଠନ ମୂଳରେ ଆଶଙ୍କା କରାଯାଇଚି ଅବାଧତାର ସମ୍ଭାବନା; କରାଯାଇଚି ବୋଲି, ରାଷ୍ଟ୍ରଯନ୍ତ୍ରକୁ ମଧ୍ୟ କରାଯାଇଚି ପ୍ରତିଶୋଧପରାୟଣ । ପ୍ରତିଶୋଧ ନେବାପାଇଁ ରାଷ୍ଟ୍ର ତେଣୁ ଆଦାୟକରିଚି ସୁଶୀଳସମାଜର ସମ୍ମତି, ଯୋଉଥିରୁ ଆଇନ୍-ବେଆଇନ୍ ଭଳି ସ୍ଥାୟୀ ମୂଲ୍ୟମାନର ଉଦ୍‌ଭବ । ସେଇ ମୂଲ୍ୟମାନର ପ୍ରୟୋଗରୁ ନାଗରିକସମାଜରେ ତିଆରିହୁଏ ଏପରି ଏକ ଶ୍ରମବିଭାଜନ ଯା ସହିତ ଉତ୍ପାଦନଜନିତ ଶ୍ରମବିଭାଜନର ପ୍ରତ୍ୟକ୍ଷ କୋଉ ସମ୍ବନ୍ଧ ନାହିଁ । ଯେପରି କାଷ୍ଟ୍ ବା ଜାତି । ଏବଂ କାଷ୍ଟ୍ ଖାଲି ଶ୍ରମବିଭାଜନର ପରିଣାମ ନୁହେଁ, ଯୁଗପତ୍ ଏକ ଷ୍ଟ୍ରକ୍‌ଚର୍ । ଅର୍ଥାତ୍, ବର୍ଣ୍ଣ ବା ଜାତି ଉପରତଳ କ୍ରମରେ ବିନ୍ୟସ୍ତ ଏକ ସାମାଜିକ ହାଇଆର୍କୀ, ଯୋଉ ହାଇଆର୍କୀ ସାମାଜିକ ଉତ୍ପାଦନକୁ ସାହାଯ୍ୟ ନକଲେ ସୁଦ୍ଧା କ୍ଷମତାବାନ୍‌ର ଆଧିପତ୍ୟକୁ ଦେଇପାରେ ଦାର୍ଶନିକତାର ଆଚ୍ଛାଦନ । ଉଚ୍ଚ-ନୀଚ ଭେଦାଭେଦ ତେଣୁ

ଉତ୍ପାଦନସଂପର୍କରୁ ସ୍ୱାଧୀନ ଏକ ସଂଗଠନ । ଯୋଗ୍ୟତା-ଅଯୋଗ୍ୟତାର ଏ ମୂଲ୍ୟମାନ (ଫିଲଜଫି) କୁ ତିଆରିକରନ୍ତି ରାଷ୍ଟ୍ରାନୁଗତ ବା ରାଷ୍ଟ୍ରଦ୍ୱାରା ପ୍ରତିପାଳିତ ବୁଦ୍ଧିଜୀବୀ । ଆଧିପତ୍ୟର ଏ ଷ୍ଟ୍ରକ୍‌ଚର୍‌କୁ ବିରୋଧକରିବା ମାନେ ତେଣୁ ଗୁଣାତ୍ମକ ସାମାଜିକ ପରିବର୍ତ୍ତନର ଉନ୍ମେଷ, ସୁଶୀଳସମାଜରେ ଶ୍ରେଣୀଆଧିପତ୍ୟର ପୁନର୍ବିନ୍ୟାସ । ଅର୍ଥାତ୍, ମୌଳିକ ଉତ୍ପାଦକଶ୍ରେଣୀକୁ ସ୍ୱୀକୃତି । ଏବଂ ଉତ୍ପାଦନକ୍ଷମ ଶ୍ରମର ମହତ୍ତ୍ୱକୁ ମୂଲ୍ୟମାନରେ ପରିଣତକଲେ ଗଣତନ୍ତ୍ରର ଧରଣଧାରଣ ବି ବଦଳିଯିବାକୁ ବାଧ । ଉଚ୍ଚ-ନୀଚ, ଛୁଆଁ-ଅଛୁଆଁ, ସାଆନ୍ତ-ହଳିଆ ସ୍ତରଭେଦ ପ୍ରବର୍ତ୍ତନକରି ତାକୁ ସୁରକ୍ଷିତ ରଖନ୍ତି ଯିଏ, ଲୋକ ତାଙ୍କୁ ଭୋଟ୍ (ସମ୍ମତି) ଦିଅନ୍ତି । ଦିଅନ୍ତି ବୋଲି, ଅନ୍ୟାୟ-ଅବିଚାର ନିର୍ବିରୋଧରେ ପୁଷ୍ଟ ହୋଇଥାଏ; ଅଥଚ ମୌଳିକ ଉତ୍ପାଦନବ୍ୟବସ୍ଥାରେ ଏମାନଙ୍କ ଭୂମିକା ଯେମିତି, ବୁଦ୍ଧିଜୀବୀଙ୍କ ଭୂମିକା ସେମିତି କେବଳ ଉପଭୋକ୍ତା (କନ୍‌ସିଉମର୍) । ଆଦିବାସୀ ଅଧ୍ୟୁଷିତ ପ୍ରତ୍ୟନ୍ତ ଅଂଚଳରେ ଉତ୍ପାଦନର ମର୍ଯ୍ୟାଦାକୁ ପୁନଃପ୍ରତିଷ୍ଠା କରିବାକୁ ପରାର୍ଥବାଦୀ ଯୋଉ ଯୁବକଯୁବତୀ ସଶସ୍ତ୍ର ପ୍ରତିରୋଧରେ ଲିପ୍ତ ରହିଛନ୍ତି, ହେଲିକପ୍ଟର୍‌ରୁ ତାଙ୍କ ଉପରେ ବୋମାପକାଇବାକୁ ସିଦ୍ଧାନ୍ତନେଇଛି ରାଷ୍ଟ୍ର । ସିଦ୍ଧାନ୍ତଟା ପ୍ରତିଶୋଧ ନା ଶୃଙ୍ଖଳାରକ୍ଷା, ନାଗରିକସମାଜ ବିଚାରକରିବା କଥା, କାହିଁକିନା, ସୁଶୀଳ ସମାଜର ଅକୁଣ୍ଠ ଅନୁମୋଦନ ପାଉଛନ୍ତି ବୋଲି ବଣଜଙ୍ଗଲରେ ନଖାଇ ନପିଇ ହୃଷ୍ଟଚିତ୍ତରେ ବୁଲୁଚନ୍ତି ଏ ପିଲା । ବିଶ୍ୱାୟନ ଛଳରେ କ୍ୟାପିଟାଲିସ୍ମ ଯେତେବେଳେ ଦୁନିଆଟାକୁ ଗ୍ରାସକରିବାକୁ ଉଦ୍ୟତ, ଜାତିରାଷ୍ଟ୍ରର ପ୍ରତିରକ୍ଷା ଯେତେବେଳେ ଛିଦ୍ରମୟ(ଯେପରି ଇରାକ୍) ନିଃସଙ୍ଗତାରେ ଉଦ୍‌ଭ୍ରାନ୍ତ ନହୋଇ ଦେଶର ଅସଂଖ୍ୟ କର୍ମହୀନ ପୁଅଝିଅ ଏଇ ଆଲୋଡ଼ନରୁ ଗ୍ରହଣକରନ୍ତୁ ଶିକ୍ଷା ।

କି ଛାଞ୍ଚରେ ନାଗରିକସମାଜକୁ ପକାଇବାକୁ ଉଦ୍ୟତ ରାଷ୍ଟ୍ର, ସେ ଛାଞ୍ଚ ଯୋଗାଇଦେଇଚି ସେନାବାହିନୀ । ସେଠି ଅବଶ୍ୟ ନାରୀର ଭୂମିକାକୁ ସ୍ୱୀକାର କରାଯାଏନା । ପୁରୁଷ କେବଳ ଉଚ୍ଚ-ନୀଚ, ସେବ୍ୟ-ସେବକ କ୍ରମରେ ସଂଗଠିତ । ଦରମାପାତି ବି ତଦନୁସାରେ ବେଶି କି କମ୍ । ମାନମର୍ଯ୍ୟାଦା କି ପ୍ରତିପତ୍ତିର ସୋପାନ ମଧ୍ୟ ବେତନର ଆପେକ୍ଷିକତା ଦ୍ୱାରା ନିର୍ଦ୍ଧାରିତ । ସବାତଳେ ଯେହେତୁ ପଦାତିକ, ଅସଲ ସୈନ୍ୟ, ସଂଗଠନ ଭିତରେ ତାଙ୍କ ମର୍ଯ୍ୟାଦା ଯେମିତି ନଗଣ୍ୟ, ଉପାର୍ଜନ ସେମିତି ସମାନୁପାତିକ । ଅଥଚ ତଳୁ ଉପରକୁ ବିବାକ ଲୋକ ଅନୁଭବକରନ୍ତି ଅଭେଦ୍ୟ ଐକ୍ୟ, ସାଂଗଠନିକ ସଲିଡାରିଟି । ଏ ଐକ୍ୟର ବିଚିତ୍ର ଏକ ଲକ୍ଷଣ ହେଲା, ଯିଏ ସମସ୍ତଙ୍କ ସେବକ, ଇଉନିଫର୍ମ୍ କି ବନ୍ଧୁକ ପାଇଚି ବୋଲି ଅନୁଭବ କରେ

ବିଶେଷ ଗୌରବ । ଗ୍ରାମ୍‌ସି ତାକୁ ନାମିତକରିଚନ୍ତି ସବ୍‌ଲ୍ଟନ୍, ଓଡ଼ିଆରେ 'ନିମ୍ନବର୍ଗ' । ଜାତି-ବର୍ଣ୍ଣ ଆଧାରିତ ସମାଜ ଏଇ ମଡେଲ୍‌ର ଅବିକଳ ପୁନରୁତ୍ପାଦନ ଏବଂ ସାମ୍ୟ ପ୍ରତିଷ୍ଠା ବାଟରେ ଦୁର୍ଗମ ପ୍ରତିବନ୍ଧକ । କାହିଁକିନା, ସେନାବାହିନୀର ରୀତିନୀତି ଓ ସାଂଗଠନିକ ଶୃଙ୍ଖଳା ସଂପ୍ରସାରିତ ହୋଇଚି ଅମଲାତନ୍ତ୍ରକୁ, ପୁଲିସ୍ ସଂଗଠନକୁ, ଏପରିକି, ରାଜନୀତିକ ଦଳଗୁଡ଼ିକ ଭିତରକୁ (ସ୍ମରଣକରନ୍ତୁ, ହାଇକମାଣ୍ଡ) । ରାଜନୀତିକ ଦଳ, ଅମଲାତନ୍ତ୍ର, ପୁଲିସ୍ ସଂଗଠନ, ଆଇନ୍-ଅଦାଲତ୍, ବ୍ୟବସାୟବାଣିଜ୍ୟ ସବୁଠି ରହିଚି ସେନାବାହିନୀର ଏଇ କମ୍ୟାଣ୍ଡ୍-ଷ୍ଟ୍ରକ୍‌ଚର୍; ସବୁଠି ଅଛନ୍ତି ତେଣୁ ସବଲ୍‌ଟନ୍ ବା ନିମ୍ନବର୍ଗ । ନାଗରିକସମାଜରୁ ଯାଇଚନ୍ତି ସମସ୍ତେ, ଏବଂ ସେଥିପାଇଁ, ନାଗରିକ ସମାଜ ଆହରଣକରିଚି ରାଜନୀତିକ ସାମାଜର ପ୍ରତିରୂପ । ପରିବାର, ସ୍କୁଲ୍, ଡାକ୍ତରଖାନା, ଦେଉଳ, କ୍ଲବ୍ କି ଆସୋସିଏନ୍- ସବୁଠି ଦେଖିହେବ କମାଣ୍ଡ୍‌ଷ୍ଟ୍ରକ୍‌ଚର୍ ସାଙ୍ଗକୁ ସବଲ୍‌ଟନ୍ । ଅର୍ଥାତ୍, ଅସାମ୍ୟର କ୍ରମୋଚ୍ଚ ସୋପାନଶ୍ରେଣୀ ପରି ଐତିହ୍ୟବାହୀ ସମାଜରେ ଏ ଅସାମ୍ୟ ଗଭୀର ଓ ପ୍ରଗାଢ଼ । ଏବେ କ୍ୟାପିଟାଲିସ୍ମ ଚାହୁଁଚି, ଏଇ ସମାଜକୁ କରିବ 'ଗ୍ଲୋବାଲାଇଜଡ୍'; ଅର୍ଥାତ୍, ପରିବ୍ୟାପ୍ତ ଏକ ବଜାର । କାହିଁକିନା, ବଜାରର ବିଧିବିଧାନ ସକଳମାନବ ସକାଶେ ଅଭିନ୍ନ । ସାମାଜିକ ନ୍ୟାୟ ତେଣୁ ଅତିକଥା । ଏଇ କଥା କହୁଚନ୍ତି ରାଜନୀତିକ ନେତା ଓ ବୁଦ୍ଧିଜୀବୀ; ଅର୍ଥାତ୍, ମଧ୍ୟବିତ୍ତ ବଜାରକୁ ବୃହତ୍‌କରିବାକୁ ହେଲେ ଧନୋତ୍ପାଦନକୁ କରିବାକୁ ହେବ ମୁକ୍ତକଚ୍ଛ ଓ ନିଷ୍କଣ୍ଟକ, ଯେପରି କରାଯାଇଚି ପାଶ୍ଚାତ୍ୟ ଗୋଲାର୍ଦ୍ଧରେ । ଧନୋତ୍ପାଦନକୁ ପ୍ରୋତ୍‌ସାହନ ଯୋଗାଇବାକୁ ଶିଳ୍ପପତିଙ୍କ ଉପରୁ ଟ୍ୟାକ୍ସ ହ୍ରାସକରାଯାଉଚି; ଚାଷୀହାତରୁ ଧାନଜମି କାଢ଼ିନେଇ ସୁବିଧା ଦିଆଯାଉଚି କଳକାରଖାନା ବସାଇବାକୁ, ହାଟବଜାର ଉଠାଇଦେଇ ବସାଯାଉଚି ସପିଙ୍ଗ-ମଲ୍, ଯୋଉଠି ଛୁଞ୍ଚିଠୁଁ ହାତୀ ପର୍ଯ୍ୟନ୍ତ ମିଳିବ ଅଣ୍ଟାରେ ପଇସା ଥିଲେ । ଏଭଳି ବଜାରର ଉପଯୋଗୀକରି ଲୋକଙ୍କୁ ଗଢ଼ିବାକୁ, ଶିକ୍ଷାବ୍ୟବସ୍ଥା ଭିତରକୁ ପଶୁଚି ତଥ୍ୟପ୍ରଯୁକ୍ତି । ଯିଏ ଭଲ ପାଠପଢ଼ିଲା, ପାଞ୍ଚୁଚି କୋଉଦିନ ଯିବ ଆମେରିକା । ଉଚ୍ଚଶିକ୍ଷା ତେଣୁ ଦୁର୍ମୂଲ୍ୟ । ଧନୀଘରର ପିଲାଙ୍କ ଛଡ଼ା ପାଠପଢ଼ିବା ଯେହେତୁ ବାକି ପିଲାଙ୍କ ସକାଶେ ବିଳାସ, ଦାଣ୍ଡରେ-ହାଟରେ ବୁଲୁଚନ୍ତି ଶିଶୁଶ୍ରମିକ । କଳକାରଖାନା ଯା ବସୁଛି ବା ବସିବ, ଉତ୍ପନ୍ନପଣ୍ୟର ବଜାର ଯେହେତୁ ସାରାପୃଥିବୀ, ଏପରି ପ୍ରଯୁକ୍ତି ବିନିଯୋଗ କରିବ / କରୁଚି, ଶରୀରଶ୍ରମର ଚାହିଦା ଯୋଉଠି ସର୍ବନିମ୍ନ । ଏଞ୍ଜିନିୟରିଙ୍ଗ୍ କି ମ୍ୟାନେଜ୍‌ମେଣ୍ଟ୍ ବିଦ୍ୟାରେ ପାରଦର୍ଶିତା ଦେଖାଇ ନ ପାରିଲେ ସେଠି କାମ ମିଳେନା । ସାଧାରଣ ସ୍କୁଲ୍‌କଲେଜ୍ ବର୍ଷକୁବର୍ଷ ଯୋଉ ହଜାରହଜାର 'ଶିକ୍ଷିତ' ସୃଷ୍ଟିକରୁଚନ୍ତି, ଅଧିକାଂଶ ବୁଲୁଚନ୍ତି ବେକାରହୋଇ ।

ବେକାରଙ୍କୁ କନିଆ ମଙ୍ଗୁନାହାଁନ୍ତି ବାହାହେବାକୁ, ଅଭିଆଡ଼ିହୋଇ ଝିଅ ବସିଚନ୍ତି ବାପଘରେ । ବାକି ରହିଲା ସରକାରୀ ଦପ୍ତର । ଉଦାରୀକରଣ ଆଳରେ ଉତ୍ପାଦନ-ବଣ୍ଟନ ପ୍ରକ୍ରିୟାରୁ ହାତ ଗୋଟାଇନେଉଚି ରାଷ୍ଟ୍ର । ଉତ୍ପାଦନବଣ୍ଟନ ତେଣୁ ଉଦ୍ୟୋଗପତିଙ୍କ ଆୟତ୍ତରେ । ଏଣେ କର୍ମଚାରୀଙ୍କ ଦରମା ଓ ଋଣପରିଶୋଧ ବାବଦକୁ ବଜେଟ୍‌ର ଅଧିକାଂଶ ବରାଦ ଖର୍ଚ୍ଚହୋଇଯାଉଚି; କରଭାର ଅଧିକ ହେଲେ ଭୋଟ୍ ମିଳିବନାହିଁ ବୋଲି ଯଥାସମ୍ଭବ ସଂଯମ ମଧ ରକ୍ଷାକରିବାକୁ ପଡ଼ୁଚି । ଚାକିରୀର ତେଣୁ ଅନଟନ; ଚାହିଦାର ଅନ୍ତନାହିଁ, ଯୋଗାଣ ସମୁଦ୍ରକୁ ସଂଙ୍ଖେ ପଣା; 'ଆସନ ସଂରକ୍ଷଣ' ପାଇଁ ନାଗରିକସମାଜରେ ତେଣୁ ତଣ୍ଟିକଟା ପ୍ରତିଯୋଗିତା, ସବ୍‌ଲଟନ୍‌ର ପ୍ରତିଯୋଗିତା । ସବ୍‌ଲ୍‌ଟନ୍ ଦାବିକରୁଚି ସାମାଜିକ ନ୍ୟାୟ; ସାମାଜିକ ନ୍ୟାୟ ପାଇଲେ ଅଂଶଗ୍ରହଣ କରିପାରିବ ସଂପ୍ରସାରିତ ବଜାରରେ । ବଜାର ଓ ସାମାଜିକନ୍ୟାୟ ଭିତରେ ସଦ୍‌ଭାବ୍ ସ୍ଥାପନକରିପାରେ ଏକମାତ୍ର ରାଷ୍ଟ୍ରର ହସ୍ତକ୍ଷେପ; ସେ ହସ୍ତ ଏକ୍ଷଣି ଅଦୃଶ୍ୟ । କିନ୍ତୁ ସାମାଜିକନ୍ୟାୟର ପ୍ରତିନିଧିତ୍ୱକରେ ନାଗରିକସମାଜ, ରାଷ୍ଟ୍ର ନୁହେଁ । ରାଷ୍ଟ୍ର ଓ ସୁଶୀଳସାମଜ ମଧରେ ସଂଘାତ ତେଣୁ ଅନିର୍ବାଯ୍ୟ । ସମ୍ଭାବ୍ୟ ସଂଘାତକୁ ଆଗୁସାରହୋଇ ଓଗାଳୁଚି କିନ୍ତୁ ମଧବିତ୍ତ, ଯିଏ ବଜାର ସଂପ୍ରସାରଣର ପକ୍ଷପାତୀ; ମାତ୍ର ମଧବିତ୍ତ ସମଗ୍ର ଜନସଂଖ୍ୟାର ଏକଦଶମାଂଶ ମାତ୍ର । ହେଲେସୁଦ୍ଧା, ଅବଶିଷ୍ଟ ନବେଶତାଂଶର ଭାବଜଗତ ଉପରେ ତାର ଆଧିପତ୍ୟ, କାହିଁକିନା, ମଧବିତ୍ତ କୋଉ ବିଧିବଦ୍ଧ 'ଶ୍ରେଣୀ' ନୁହେଁ କି ଇଉରୋପ୍‌ର ବୁର୍ଜୋୟା ଭଳି ଉଦ୍‌ଭାବନଶୀଳ ଗୋଷ୍ଠୀ ନୁହେଁ । ତାକୁ ଜନ୍ମଦେଇଚି ଔପନିବେଶିକତା; ତା ଭିତରେ ତେଣୁ ବିକ୍ଷିପ୍ତହୋଇ ରହିଚନ୍ତି କୃଷକ, ଦୋକାନୀ, ଓକିଲ, ଡକ୍ଟର୍, ଅମଲା, ଶିକ୍ଷକ, ସାମ୍ବାଦିକ, ଲେଖକ, ଶିଳ୍ପୀ, ଅଭିନେତା-ଅଭିନେତ୍ରୀ, ଗୁଣ୍ଡା, ବେଶ୍ୟା, ଚୋର ତସ୍କର । ଟଙ୍କା ଦେଇ ଏମାନଙ୍କୁ କିଣିହେବ । ନବ୍ୟ ସାମ୍ରାଜ୍ୟବାଦ ତେଣୁ ମଧବିତ୍ତର ଉପାସ୍ୟ, ଏବଂ ସେଥିପାଇଁ, ଜାତି ଧର୍ମ ଭାଷା ଭଳି ବିଭାଜକ ଉପାଦାନକୁ ପଣ୍ୟରେ ପରିଣତକରିବାକୁ ମଧବିତ୍ତ ବିବେକକୁ ବାଧେନା । ବାଧେନା, ଯେହେତୁ ମୂଳପରିଚୟରେ ମଧବିତ୍ତ ପରାଙ୍ଗପୁଷ୍ଟ ଓ ସୁଯୋଗସଂଧାନୀ; ଏବଂ ମୂଳପରିଚୟରେ ଯେହେତୁ ଅନୈତିକ, ଭୋଟ୍-ରାଜନୀତିରେ ପରିବର୍ତ୍ତନର ପରିପନ୍ଥୀ, ପଙ୍ଗପାଳ । ହେଲେସୁଦ୍ଧା, ପେସାଗତ ସ୍ୱାର୍ଥଦ୍ୱାରା ମଧବିତ୍ତ ବହୁଧାବିଭକ୍ତ, ସଂଖ୍ୟାରେ ମଧ ଯତ୍‌କିଞ୍ଚିତ୍ । 'ମଧବିତ୍ତ' ତେଣୁ ଏକପ୍ରକାର ଆ୍ୟାବ୍‌ଷ୍ଟ୍ରାକ୍ସନ୍ ବା ବିମୂର୍ତ୍ତ ଧାରଣା; ମାତ୍ର ଶାସକଶ୍ରେଣୀ ହିସାବରେ ସତତ ପ୍ରତ୍ୟକ୍ଷ । ତଥାପି ଶାସକଶ୍ରେଣୀ ମଧ କୋଉ ଅବିଭାଜ୍ୟ ସଲିଡୋରିଟି ନୁହେଁ, ବିଭିନ୍ନ ଗୋଷ୍ଠୀ ଭିତରେ ଚାଲୁଚି ପ୍ରତିଯୋଗିତା । ଅର୍ଥାତ୍ ଶାସକଶ୍ରେଣୀ ଜମାରୁ

ଅଭେଦ୍ୟ ନୁହେଁ ଯଦି ରାଷ୍ଟ୍ରଯନ୍ତ୍ର କି ସୈନ୍ୟବାହିନୀ ତାକୁ ରକ୍ଷାକରିବାକୁ ଆଗେଇ ନଆସେ । କିନ୍ତୁ ସୈନ୍ୟବାହିନୀରେ ମଧ୍ୟ ରହିଚନ୍ତି ସବଲ୍‌ଟନ୍, ପ୍ରକୃତ ଯୋଦ୍ଧା । ନାଗରିକସମାଜ ଓ ପ୍ରକୃତ ସୈନିକ / ପୁଲିସ୍‌କୁ ଏକତ୍ରକରିପାରେ ଏକମାତ୍ର କ୍ରୋଧ,କ୍ରମବର୍ଦ୍ଧମାନ 'ମାର୍କେଟ୍'କୁ ମୁକାବିଲାକରିବାର ବହ୍ନିଗର୍ଭ ପ୍ରରୋଚନା । କ୍ରୋଧ ଆସିବ ଅବଶ୍ୟ ଘୃଣାରୁ, ଧନତନ୍ତ୍ରର ଅଭିସନ୍ଧି ପ୍ରତି ଘୃଣାରୁ ।

ସମାଜତନ୍ତ୍ର ଯୋଉ ରକମ ସାମ୍ୟ ସ୍ଥାପନକରିବାକୁ ଚାହେଁ, ମଣିଷ-ମଣିଷ ଭିତରେ ତା ଜୈବିକ ସମାନତା ନୁହେଁ । ଇତିହାସ ଗତିରେ ସମାଜ ବଦଳିଯାଇଚି, ଯାଉଚି । ବଦଳିବାର ସେଇ ପ୍ରକ୍ରିୟାରେ ମଣିଷ ଆହରଣ କରିଚି ଅନେକ ଗୁଣ; ଏବଂ କରିଚି ବୋଲି, ସମାନତାର ତାତ୍ପର୍ଯ୍ୟତା ବୁଦ୍ଧିବୃତ୍ତିର ଅଗମ୍ୟ ନୁହେଁ । କଥାକଥାକେ କହୁଛୁଁ, ଲଙ୍ଗଳାହୋଇ ସଂସାରକୁ ଆସିଛୁଁ, ଲଙ୍ଗଳାହୋଇ ସଂସାରରୁ ଯିବୁଁ । ଏ ସମାନତାକୁ ମାନୁଥିଲେ ମଣିଷ ଲୁଗା ପିନ୍ଧନ୍ତାନାହିଁ । ଶଙ୍କରାଚାର୍ଯ୍ୟ ଜଗତକୁ ଯେତେବେଳେ 'ମିଥ୍ୟା' କହନ୍ତି, ଜାଣନ୍ତି ଯେ ଦର୍ଶନବିଦ୍ୟା ଏକ ଗଣତାନ୍ତ୍ରିକ ଅନୁଶୀଳନ; ଯୁକ୍ତିର ଆବେଦନ ଯେହେତୁ ସକଳ ମାନବର କାଣ୍ଡଜ୍ଞାନ ପ୍ରତି ସମାନଭାବେ ପ୍ରଯୋଜ୍ୟ, ଜଗତ୍ ଯେ ସତକୁସତ ମିଥ୍ୟା, ସମସ୍ତେ ଏକାଭଳି ଉପଲବ୍ଧି କରିବାକଥା । ତାଙ୍କ ପ୍ରତିପାଦ୍ୟର ଭାଷା କିନ୍ତୁ ସଂସ୍କୃତ; ବୁଝନ୍ତି କେବଳ ବ୍ରାହ୍ମଣ । ବ୍ରାହ୍ମଣ୍ୟ ଆଧିପତ୍ୟ, ସେଯୁଗରେ, ଶିକ୍ଷାକୁ ରଖିଚି ସଂଖ୍ୟାଗରିଷ୍ଠ ଶୂଦ୍ରଙ୍କ ଆୟତ୍ତ ବାହାରେ । ଚିନ୍ତାରେ ସମାନତା ଅନୁମାନକଲେ ସୁଦ୍ଧା, ପ୍ରୟୋଗ ରହିଚି ତେଣୁ ଶ୍ରେଣୀକେନ୍ଦ୍ରିକ । ସମାଜତନ୍ତ୍ର କିନ୍ତୁ ଚିନ୍ତା ଓ ପ୍ରୟୋଗର ସମନ୍ୱୟ; ବ୍ୟବଧାନ ମୂଳରେ ତେଣୁ ସମାନତା ଅଭାବ । ବୈଷୟିକ ସଂପଦକୁ କିନ୍ତୁ ସମାନଭାବରେ ବାଣ୍ଟିଦେଲେ ସମାଜତନ୍ତ୍ରର ଲକ୍ଷ୍ୟ ପୂରଣହେବନାହିଁ; ମଣିଷ ଭିତରେ ଅନ୍ତର୍ନିହିତ ସମ୍ଭାବନାଗୁଡ଼ାକର ଉନ୍ମୋଚନ ଛାଏଁ ଛାଏଁ ଘଟିଯିବନାହିଁ । ସେଥିପାଇଁ, ଅବସ୍ଥା ଅଛି କିଭଳି, ହୋଇପାରେ କି ପ୍ରକାର, ସେ ଭାବନା ମନକୁ ଛୁଇଁବନାହିଁ ଆପେ ଆପେ । ସମାଜ ଓ ଇତିହାସ ରହିଯିବ ବୈଷୟିକ ଓ ଜୈବିକ ସମାନତା ମଧ୍ୟରେ ସୀମାବଦ୍ଧ । ଏ ସୀମାବଦ୍ଧତା ଗଣତନ୍ତ୍ରର ସମ୍ଭାବନାକୁ ଯୋଉ ରୂପରେ ପ୍ରତିଭାତ କରିବ, ବିଦ୍ୟମାନ ଗଣତନ୍ତ୍ରରୁ ତାର ଦୂରତ୍ୱ ବେଶି ନୁହେଁ । ବଞ୍ଚନା, ଅମର୍ଯ୍ୟାଦା, ବଳବାନ୍‌ର ପ୍ରଭୁତ୍ୱରୁ ମୁକ୍ତକରିବା ଯେମିତି ସମାଜତନ୍ତ୍ରର ପ୍ରତିଶ୍ରୁତି, ତାର ଦାୟିତ୍ୱ ସେମିତି ଆତ୍ମିକ ବିକଚନର ଅଶେଷ ସମ୍ଭାବନାର ବାସ୍ତବତାକୁ ଉପଲବ୍ଧି-ପରିଧି ଭିତରେ ଅବସ୍ଥାପିତ କରିବା । ଅନ୍ୟଥା, ଅନ୍ୟାନ୍ୟ ଅନେକ ପ୍ରାପ୍ତି କାଳକ୍ରମେ ମନେହେବ ବେକରେ ବାଲିକଳସୀ । ଏକାମ ଅଦ୍ୟାବଧି କୋଉଠିହେଲେ ହୋଇନାହିଁ, କାହିଁକିନା, ସମାଜତନ୍ତ୍ରକୁ ବାନ୍ଧିଦିଆଯାଇଚି

ରାଜନିତୀକ କ୍ଷମତାଦଖଲ ଲାଞ୍ଚରେ । ରାଜନୀତିକ କୃତ୍ୟସୂଚୀ ହେଲେସୁଦ୍ଧା, ସମାଜତନ୍ତ୍ରର ପ୍ରଧାନ ଅଭିପ୍ରାୟ ଖଟିଖିଆ ମଣିଷକୁ ପାରକ୍ୟ ବା ଆଲିଏନେସନ୍‌ରୁ କାଢ଼ିଆଣି ଏପରି ଭବିଷ୍ୟତର ସଂଧାନ ବତାଇବା, ଯା କାଳ୍ପନିକ ନୁହେଁ କି ଅସାଧ୍ୟସାଧନ ନୁହେଁ । ଅର୍ଥାତ୍ ଅଭିପ୍ରେତ ପରିବର୍ତ୍ତନ ପରିମାଣାତ୍ମକ ଯେତେ ନୁହେଁ, ଗୁଣାତ୍ମକ ତତୋଧିକ । ମଧ୍ୟବିତ୍ତ ମଧ୍ୟ ଦରିଦ୍ର ନୁହେଁ କି ନିର୍ବୋଧ ନୁହେଁ, ବରଂ ଶିକ୍ଷିତ ଓ ସମ୍ପନ୍ନ; ମାତ୍ର ସମାଜତନ୍ତ୍ର ପ୍ରତି ନିସ୍ପୃହ । କାହିଁକିନା, ଇତିହାସ ମଧ୍ୟବିତ୍ତକୁ ଯେମିତି ଗଢ଼ିଚି, ସେଥିରେ ଗୁଣ ନାହିଁ କି ସାମାଜିକତା ନାହିଁ; ସ୍ମୃତି ନାହିଁ କି ସତ୍ତା ନାହିଁ; ଭବିଷ୍ୟତ ମଧ୍ୟ ଦୋଦୁଲ୍ୟମାନ । ତାର ପରିମାଣଗତ ଅଭିବୃଦ୍ଧି, ସେଥିପାଇଁ, ଧନତନ୍ତ୍ରର ପରିହାସ । ପଳାୟନତତ୍ପର ଏଇ ଲୋକଗୁଡ଼ାଙ୍କ ପାଖରୁ କାର୍ଯ୍ୟକାରୀ ପ୍ରତିରୋଧ ପ୍ରତ୍ୟାଶାକରିବା ତେଣୁ ଦୁରାଶା ।

ମଧ୍ୟବିତ୍ତ ତଥାପି ଅଭିନିବେଶ ଦାବିକରଚି, କାହିଁକିନା, ବିଶ୍ୱାୟନ ଆଦର୍ଶକୁ ନିଃସର୍ତ୍ତରେ ଗ୍ରହଣକରିବା ଉତାରୁ ରାଷ୍ଟ୍ର ତାର କୃତ୍ୟସୂଚୀକୁ ବିସ୍ତାରକରୁଚି ଏପରି କୌଶଳରେ ଯେ ସୁଶୀଳସମାଜକୁ କ୍ଷମତାର ବିକେନ୍ଦ୍ରୀକରଣ ହୋଇଯିବ ଅବରୁଦ୍ଧ । ଅର୍ଥାତ୍, ଅମଲାତାନ୍ତ୍ରିକ ନିୟନ୍ତ୍ରଣ ହେଉଚି ଯେତେବେଳେ କ୍ରମଶଃ କଠୋର ଜନମଙ୍ଗଳ ସକାଶେ ବରାଦ ସମ୍ବଳର ଉପଯୋଗ ଉପରେ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକର ତଦାରଖ ହୋଇପଡୁଚି ଶିଥିଳ । ସମାଜତନ୍ତ୍ରରେ ଆସ୍ଥାବାନ ମଧ୍ୟବିତ୍ତ ତେଣୁ ନିର୍ବୋଧ ବଜାର ପ୍ରତି ରାଷ୍ଟ୍ରର ପକ୍ଷପାତକୁ ମାନିନେବାକୁ ରାଜି ନୁହେଁ, କାହିଁକିନା, ଯୋଉ ଭାବଗତ ଭିତ୍ତି ନାଗରିକସମାଜର ବାଞ୍ଛିତ ଆଦର୍ଶ, ତା ଦୋହଲିଯାଉଚି ଦିନକୁ ଦିନ । ଏ ସମାଜରେ କ୍ରୟକ୍ଷମତାର ବଣ୍ଟନ ଦୃଶ୍ୟତଃ ଅସମାନ, ଏତେ ଅସମାନ ଯେ ଅଧିକାଂଶ ନାଗରିକ ବଜାରଦେଉଥିବା ସୁବିଧାରୁ ଉପକୃତହେବା ଅସମ୍ଭବ । ଖୋଲାବଜାର ବା ଫ୍ରି ମାର୍କେଟ୍ ତେଣୁ ଦେଇପାରିବନାହିଁ ସୁଶୀଳ ସମାଜକୁ ଇପ୍ସିତ ସଂହତି । ଏ ଅପୂର୍ଣ୍ଣତାର ପ୍ରତିକାର କରିପାରେ ରାଷ୍ଟ୍ର କିମ୍ବା ସୁଶୀଳସମାଜର ନିର୍ବାଚିତ ଅନୁଷ୍ଠାନ । ଅପର ବିକଳ୍ପ ତେଣୁ ଖୋଲାବଜାର ନୀତିର ପ୍ରତ୍ୟାହାର ସାଙ୍ଗକୁ ଜନସ୍ୱାର୍ଥର ସୁରକ୍ଷା ସକାଶେ ସୁଶୀଳସମାଜ ଦ୍ୱାରା ମାର୍କେଟ୍‌କୁ ନିୟନ୍ତ୍ରଣ । କିନ୍ତୁ ପ୍ରତିକାର ପ୍ରତି ରାଷ୍ଟ୍ର ଯେହେତୁ ଉଦାସୀନ ବିରୋଧକୁ ସମ୍ଭାଳିବା ଲାଗି ଦରକାର ନାନାଦି ନୂଆ କ୍ଷମତା । ଖାସ୍ ସେଇ କାରଣରୁ ରାଷ୍ଟ୍ର ବିରୋଧରେ ନାଗରିକର ଅଧିକାର ମଧ୍ୟ ନିଜକୁ କରିବ ସଂଗଠିତ ଓ ଶକ୍ତିଶାଳୀ । ଏବଂ ରାଜନୀତିକ ସମାଜ ଓ ନାଗରିକସମାଜର ଚରିତ୍ରଗତ ପରିବର୍ତ୍ତନ ଉଭୟମଧ୍ୟସ୍ଥ ଆନ୍ତଃସଂପର୍କକୁ, ସମାଜତନ୍ତ୍ରର ଆଭିମୁଖ୍ୟ ନିରିଖରେ ଆଣି ଠିଆକରିଦେବ ରାଜନୀତି, ଅର୍ଥନୀତି, ଇଣ୍ଟେଲେକ୍‌ଚୁଆଲ୍-

ଫ୍ରିଡମ୍ ଭଳି ଜଟିଳ ସମସ୍ୟା ଗୁଡ଼ିକର ମୁହାଁମୁହିଁ । କାହିଁକିନା, ନାଗରିକସମାଜ ନିଜ ଭିତରେ ଏପରି କିଛି ମୂଲ୍ୟ, ମର୍ମାର୍ଥ ଓ ବିରୋଧକୁ ବହନକରେ ଯା ବ୍ୟକ୍ତିବିଶେଷ, ଗୋଷ୍ଠୀ ଓ ଆନୁଷ୍ଠାନିକ କ୍ରିୟାକଳାପକୁ ରାଜନୀତିକ ଅଦଳବଦଳ ଆଡ଼କୁ ଟାଣିନେଇଯାଏ । ସେ ବିଶ୍ୱାସ ଓ ବିତର୍କ ଉଠିଆସେ ଅବଶ୍ୟ ରାଜନୀତିକ ଶକ୍ତି ସମ୍ବନ୍ଧରେ ଅନୁଚିନ୍ତନରୁ, ଏବଂ ସେଥିପାଇଁ, ଉଭୟ ରାଷ୍ଟ୍ର ଓ ନାଗରିକସମାଜ ଏଭଳି ରୀତିରେ ସକ୍ରିୟହୁଅନ୍ତି ଯେପରିକି ଉଠିଆସୁଥିବା ମେଧାବୀ ପ୍ରଶ୍ନଗୁଡ଼ାକର ବାଗବର୍ଗ ମଧ୍ୟ ବଦଳିଯିବ; ଏପରି ବଦଳିଯିବ ଯେ ରାଷ୍ଟ୍ର ଓ ନାଗରିକସମାଜର ଭାବଜଗତ ଓ କର୍ମଜଗତ ମଧ୍ୟରେ ସୃଷ୍ଟିହେବ ଅଭେଦ । ରାଷ୍ଟ୍ର ଓ ସୁଶୀଳସମାଜର ଏ ଦ୍ୱାନ୍ଦ୍ୱିକ ଅନ୍ୱୟକୁ ମନୁଷ୍ୟନିରପେକ୍ଷ ବିଷୟମୁଖୀ ତତ୍ତ୍ୱ ସାହାଯ୍ୟରେ ବ୍ୟାଖ୍ୟାକରିବା ତେଣୁ ବୃଥାଶ୍ରମ । ଦେଖିବା ଦରକାର, ଯୋଉ ଭାବପରମ୍ପରା ଜନଗଣଙ୍କ ଭିତରେ ବିବର୍ତ୍ତିତହୋଇ ଚାଲୁଚି, ତାଆରି ଆୟତନ ଭିତରେ ରାଷ୍ଟ୍ର ଓ ସମାଜ କି ଉପାୟରେ ଚରମପନ୍ଥାରୁ ନିଜକୁ ନିବୃତ୍ତକରୁଚି । ଇତିହାସର ସେ ଶିକ୍ଷାକୁ ନିୟାମକ ନକଲେ, ପରିବର୍ତ୍ତନଶୀଳ ଦୁନିଆରେ ଦେଶହିତୈଷୀର କର୍ମଧାର ହୋଇପଡ଼ିବ ଉନ୍ମାର୍ଗଗାମୀ । ଏଇ ଇତିହାସ ଜନ୍ମଦେଇଚି ଭିନ୍ନ ଭିନ୍ନ ନାଗରିକସମାଜ ଓ ଏକାବେଳକେ ରାଷ୍ଟ୍ର । ସେଇ ଇତିହାସରୁ ଦେଖିହେବ ବିଭିନ୍ନ ଜନଗୋଷ୍ଠୀର ବିଶ୍ୱାସର ଗଢ଼ଣ ଓ ସେଥିରୁ ଉଦ୍‌ଗତହେଉଥିବା ତର୍କବିତର୍କ । ଅଠରଶତକ ବେଳକୁ ଜ୍ଞାନଗରିମାର ଆବଦ୍ଧତା ଭାଙ୍ଗିଯାଇଚି ଦୁନିଆସାରା; ଏବଂ ବିଶ୍ୱାସ ଜନ୍ମିଚି, ରାଜନୀତିର ହସ୍ତକ୍ଷେପ ବିନା ବଜାରନିର୍ଭର ଅର୍ଥବ୍ୟବସ୍ଥା ନିଜକୁ ଯେହେତୁ କରୁଚି ପରିଚାଳିତ, ସମାଜ ଓ ରାଷ୍ଟ୍ର ମଧ୍ୟରେ ହୁଏତ ସ୍ଥାପିତହୋଇପାରେ ସଙ୍ଗତି, କାହିଁକିନା, ଅର୍ଥନୀତିରେ ରାଷ୍ଟ୍ରର ଭୂମିକାକୁ ହ୍ରାସକରିବା ଫଳରେ, ନାଗରିକ ଜୀବନନିର୍ବାହକୁ ମୁକ୍ତବାଣିଜ୍ୟର ଅନୁବର୍ତ୍ତୀକରିବା ଫଳରେ, ଆତ୍ମଉନ୍ମୋଚନର ସୁଯୋଗ ପାଇଚି ଅବଦମିତ ଉଦ୍ୟୋଗଶକ୍ତି । ମାତ୍ର, ଏ ଉନ୍ମୋଚନର ଲକ୍ଷ୍ୟ ଯେହେତୁ କେବଳ ସଂପଦର ସମୃଦ୍ଧି, ଆତ୍ମିକଉନ୍ନତି ନୁହେଁ, ସମାଜତନ୍ତ୍ରରେ ବିଶ୍ୱାସୀ ଭାବୁକ 'ରାଷ୍ଟ୍ର' ଓ 'ନାଗରିକସମାଜ' ଭଳି ପ୍ରତ୍ୟୟକୁ ଅନତିବିଳମ୍ବେ କରିଚନ୍ତି ପୁନର୍ବିନ୍ୟସ୍ତ । ସେଇ ବିନ୍ୟାସରୁ ଗଢ଼ିଉଠିଚି ଊନବିଂଶ ଶତକର ସମାଜତାନ୍ତ୍ରିକ ଗଣତନ୍ତ୍ର । ସ୍ୱାଧୀନହୋଇ, ଭାରତ ମଧ୍ୟ ଗ୍ରହଣକରିଚି ଅନୁରୂପ ବୌଦ୍ଧିକ ଶୃଙ୍ଖଳା । ପ୍ରାଇଭେଟ୍ ଇଣ୍ଡଷ୍ଟ୍ରୀର ସମାନ୍ତରାଳହୋଇ ଗଢ଼ିଉଠିଚି ବିପୁଳାୟତନ ପବ୍ଲିକ୍ ସେକ୍ଟର । ଇସ୍ପାତ୍, ବିଦ୍ୟୁତ୍, ରେଳପରିବହନ, ଖଣିଜ ତୈଳ – ସବୁଠି ସ୍ଥାୟୀତ୍ୱ ପାଇଚି ରାଷ୍ଟ୍ରର କର୍ତ୍ତୃତ୍ୱ । ପରିଣାମରେ ସୁଶୀଳସମାଜ କଣ ବଦଳିଯାଇନାହିଁ ? ବଦଳିଯାଇଚି ବୋଲି, ଜନସାଧାରଣଙ୍କ ଆଶା-ଆକାଙ୍‌କ୍ଷା ଭାବନା-ଚିନ୍ତାରେ ମଧ୍ୟ

ଘଟିଯାଇଚି ଅଦଳବଦଳ; ତିଆରିହୋଇଚି ବିତର୍କର ପରିମଣ୍ଡଳ । ବୈଷମ୍ୟ ଓ ଭ୍ରଷ୍ଟାଚାର ସ୍ପଷ୍ଟହୋଇ ଆଖିକୁ ଦିଶୁଚି । ଲୋକ ଯା ଦେଖୁଚନ୍ତି ସେଥିରୁ ଉଠିଆସୁଚି ମର୍ମାର୍ଥ ଓ ମୂଲ୍ୟବୋଧ । ନିହିତବିଶ୍ୱାସର ଜଗତ ସହିତ ଏ ମୂଲ୍ୟବୋଧର ଦ୍ୱାନ୍ଦ୍ୱିକତାରୁ ତିଆରିହୋଇଚି ବିତର୍କ । ମାର୍କେଟ୍ ଉତ୍ସାରିତ କରିପାରେନା ଏଭଳି ବୌଦ୍ଧିକ ବିକାଶ ।

ଅନ୍ୟ ଶବ୍ଦରେ, ନାଗରିକସମାଜ ଏକ ମଧ୍ୟବର୍ତ୍ତୀ ପରିସର; ଗୋଟେ ପାଖରେ ବଂଶ କୁଳ ଜାତି ଗୋଷ୍ଠୀ, ଆରପାଖରେ ସ୍ୱୟଂ ରାଷ୍ଟ୍ର; ମଝିରେ ଯେତେ ସାମାଜିକ ଅନୁଷ୍ଠାନ କି ସେକିଉଲାର୍ ସଂହତି, ତାକୁହିଁ ସମ୍ବଳକରି ତିଆରିହୋଇଚି ସୁଶୀଳସମାଜ । ଏ ବିନ୍ୟାସରେ, ସୁଶୀଳସମାଜ, ପରିବାର ଓ ରାଷ୍ଟ୍ର ପରସ୍ପର ସମାନ୍ତରାଳ । କଠିନ କୋଉ ପ୍ରଭେଦ ତେଣୁ ଅସମୀଚୀନ । ହେଲେ ସୁଦ୍ଧା, ସୁଶୀଳସମାଜ ରୂପକ ଅବବୋଧର ସ୍ଥୂଳ ହେହରେଖା ଅଦୃଶ୍ୟ କି ଅସ୍ପଷ୍ଟ ନୁହେଁ । ସ୍ଥୁଳ ସେଇ ପ୍ରତୀତିର ଅର୍ଥନୀତିକ ଅନୁଷ୍ଠାନ, ଯେପରି ବଜାରଅର୍ଥନୀତି, ମଧ୍ୟ ଅଂଶବିଶେଷ । ଅର୍ଥନୀତିକ ଅନୁଷ୍ଠାନ ଅବଶ୍ୟ ନାଗରିକସମାଜର ସଂଗଠନକୁ ନିର୍ଦ୍ଧାରିତ କରେନା, କାହିଁକିନା, ନାଗରିକସମାଜର କାର୍ଯ୍ୟକଳାପରେ କିଣାବିକା ବଡ଼କଥା ନୁହେଁ । ମାତ୍ର ଧନତାନ୍ତ୍ରିକ ଉତ୍ପାଦନ-ଧରଣକୁ ରାଷ୍ଟ୍ର ଯେହେତୁ ଅଙ୍ଗେଜିଚି, ମାର୍କେଟ୍ ହୋଇଯାଇଚି ନାଗରିକସାମାଜର ଗୁରୁତ୍ୱପୂର୍ଣ୍ଣ ଉପାଦାନ, ଏବଂ ହୋଇଚି ବୋଲି, ସାମାଜତନ୍ତ୍ର ସକାଶେ ହୋଇପାରେନା ଅଭିପ୍ରେତ ଉପାଦାନ । ଅର୍ଥାତ୍, ନାଗରିକସମାଜର ଗଢ଼ଣରେ ବଜାରଅର୍ଥନୀତିକୁ ଉଦାରବାଦୀ ଭାବୁକ ଯୋଉ ଭୂମିକା ଦେଇଥିଲେ, ସମାଜତନ୍ତ୍ର ପ୍ରତ୍ୟାଖ୍ୟାନ କରିଚି ସେ ଭୂମିକା । କରିଚି ବୋଲି, ଧ୍ରୁପଦୀ ଉଦାରବାଦରୁ ସମାଜବାଦୀ ଗଣତନ୍ତ୍ରକୁ ଉତ୍ତରଣ ପ୍ରକ୍ରିୟାରେ ବଜାର-ଅର୍ଥନୀତି ହୋଇଯାଇଚି ବିତର୍କର କେନ୍ଦ୍ର । ପ୍ରାକ୍-ଧନତାନ୍ତ୍ରିକ ସମାଜରେ ଏ ବିତର୍କ ଉଠନ୍ତାନାହିଁ, କାହିଁକିନା, ଭାବାଦର୍ଶ ଓ ସଂସ୍କୃତିରେ ସେଠି ସଂପ୍ରଦାୟର ପ୍ରାଧାନ୍ୟ; ଅର୍ଥନୀତି ସଂପ୍ରଦାୟର ଅନୁବର୍ତ୍ତୀ ମାତ୍ର । କାହିଁକିନା, ସଂସ୍କୃତିକୁ ଗଠିତକରିଚି କୌମଚେତନା । ଆଧୁନିକ ସମାଜଗଠନରେ ସେକିଉଲାର୍ ଭିନ୍ନ ଅନ୍ୟ ପ୍ରବଣତା କିନ୍ତୁ ପ୍ରଶ୍ରୟପାଏନା । ସେଥିପାଇଁ, ନାଗରିକ ପାଖରୁ ରାଷ୍ଟ୍ର ଯୋଉ ଆନୁଗତ୍ୟ ପ୍ରତ୍ୟାଶାକରେ, ସେ ଆନୁଗତ୍ୟ ବାହାରେ ସୁଶୀଳସମାଜର ସଂସ୍ଥାନ ବିଶିଷ୍ଟ ଏକ ସିଦ୍ଧି । ସେ ସିଦ୍ଧି ରାଷ୍ଟ୍ର ଦେଇନାହିଁ, ଦେଇଚି ଇତିହାସ । ଧର୍ମର ଅନୁଶାସନରୁ ନୀତିବୋଧକୁ ମୁକ୍ତକରିଚି ଇତିହାସ, ପ୍ରତିଷ୍ଠାକରିଚି ଯୁକ୍ତିର ପ୍ରୟୋଗକୁ ବ୍ୟାବହାରିକ ଜୀବନଚର୍ଯ୍ୟାରେ । କୃଷକ, କାରିଗର, ବଣିକ ପାଇଚନ୍ତି ଇଚ୍ଛାନୁସାରେ କାମକରିବା ସ୍ୱାଧୀନତା; ବ୍ୟକ୍ତିସ୍ୱାଧୀନତ

ପ୍ରସାରିତହୋଇଚି ଖାଲି ଧର୍ମାଚାରକୁ ନୁହେଁ, ଅର୍ଥନୀତିକ କ୍ରିୟାକଳାପକୁ ମଧ୍ୟ; ଏବଂ ଅର୍ଥନୀତିକ କ୍ରିୟାକଳାପ ସକାଶେ ସ୍ୱାଧୀନତାର ଦାବି ଉଠିଚି ରାଷ୍ଟ୍ର ଯେହେତୁ ବୈଦେଶିକ ବାଣିଜ୍ୟରେ ଅବଲମ୍ବନ କରିଚି ସାମରିକ କୌଶଳ । ବ୍ୟକ୍ତିର ଆଚାରଆଚରଣ ଉପରେ ଚାପ ପଡ଼ିଚି; ଧନତନ୍ତ୍ର-ସଂପର୍କିତ ବାଦାନୁବାଦରେ ତେଣୁ ଗୁରୁତ୍ୱପାଇଚି ଉତ୍ପାଦନକ୍ଷମ ନାଗରିକ; ସବୁ ନାଗରିକଙ୍କୁ ଉତ୍ପାଦନଶୀଳ କରିବାକୁ ଦରକାର କିନ୍ତୁ ଏକ ଦୃଢ଼ମୂଳ ଉଦାର ସିଭିଲ୍ ସୋସାଇଟି । ଜନପଦ-ଭିତ୍ତିକ ଏଇ ନାଗରିକସମାଜ ଗଢ଼ିଉଠିଚି ଗଙ୍ଗା-ଉପତ୍ୟକାରେ ଖ୍ରୀଷ୍ଟପୂର୍ବ ପଞ୍ଚମ-ଷଷ୍ଠ ଶତକରେ ଯେତେବେଳେ ରାଷ୍ଟ୍ର ସହିତ ନାଗରିକର ସମ୍ବନ୍ଧ ଭିତରକୁ ପଶିଆସିଚି ସେବ୍ୟ-ସେବକ ବ୍ୟବଧାନ । କିନ୍ତୁ ଅଷ୍ଟାଦଶ ଶତକ ବେଳକୁ ଇଉରୋପ୍ ଭାବିଚି, ସ୍ୱାର୍ଥସିଦ୍ଧି ସକାଶେ ହେଉ କି ଚିରାଚରିତ ସଂସ୍କାର ବଶତଃ, ବ୍ୟକ୍ତିଗତ ଉଦ୍ୟମ ହିଁ କେବଳ ଧନୋତ୍ପାଦନକୁ କରିପାରେ ତ୍ୱରାନ୍ୱିତ, ଏବଂ ସେଇ ସୂତ୍ରରେ, ଘଟାଇପାରେ ସାମାଜିକ ଉପଭୋଗର ଅଭିବୃଦ୍ଧି । ଉତ୍ପାଦନ-ବଣ୍ଟନ ଜନିତ କାର୍ଯ୍ୟକଳାପ ଉପରେ ରାଷ୍ଟ୍ରର ନିୟନ୍ତ୍ରଣ ତେଣୁ ଅବାଞ୍ଛିତ । ଅର୍ଥାତ, ମାର୍କେଟ୍ ଇକନମି ବା ଖୋଲାବଜାର, ଅରାଜକତା ସୃଷ୍ଟିକରିବା ପରିବର୍ତ୍ତେ ନାଗରିକ ସମାଜକୁ କରିବ ନିରପରାଧ ଓ ନିବିଡ଼ । 'ସିଭିଲ୍ ସୋସାଇଟି' ଅବବୋଧ ତେଣୁ ରାଜନୀତିକ ବାଧ୍ୟବାଧକତାର ଉପଜାତ ନୁହେଁ, ସଙ୍ଗତ ଅର୍ଥନୀତିକ ଯୁକ୍ତିର ପରିଣାମ ମଧ୍ୟ ନୁହେଁ, ମୁଖ୍ୟତଃ ଏକ ସାଂସ୍କୃତିକ ଆଲୋଡ଼ନର ପ୍ରତିଫଳ । ତଥାପି, ନିର୍ବାଧ ଏଇ ସମାଜବ୍ୟବସ୍ଥାର ଭାବାଦର୍ଶକୁ ଅତିରଞ୍ଜିତ କରିବା ଉଚିତ ହେବନାହିଁ । କାହିଁକିନା, ସେତେବେଳେ ମଧ୍ୟ ସିଭିକ୍ ଭର୍ଟିଉ ତାଲିକାରେ ସ୍ଥାନପାଇଚି ବ୍ୟକ୍ତିସ୍ୱାଧୀନତା । ଭର୍ଟିଉ ବା ନୈତିକ ଉତ୍କର୍ଷର ଧାରଣା ଇଉରୋପ୍ ପାଇଚି ସୋକ୍ରତିଜ୍‌ଙ୍କ ଚିନ୍ତାରାଜ୍ୟରୁ, ଗଣତନ୍ତ୍ରକୁ ଯେତେବେଳେ ବିରୋଧକରିଚନ୍ତି ସୋକ୍ରତିଜ୍ ଆଥେନ୍ସ ନଗର-ରାଷ୍ଟ୍ରରେ । ଆଥେନ୍ସର ସେଇ ନଗରରାଷ୍ଟ୍ରକୁ ପରବର୍ତ୍ତୀ କାଳର ଦାର୍ଶନିକ ଧରିନେଇଚନ୍ତି ନିଜ ସୁଶୀଳସମାଜର ପୂର୍ବପୁରୁଷ ଏବଂ ଅନୁରୂପ ଭର୍ଟିଉକୁ ଖୋଜିଚନ୍ତି ଯା ଦେଇପାରିବ ସମାଜକୁ ନୈତିକ ବୈଧତା । ସେ ନୈତିକତାର ଭିତ୍ତି, ମନେହୋଇଚି ସ୍ୱାୟତ୍ତଶାସନର ବିବିଧ ଅନୁଷ୍ଠାନ, ଏପରିକି, ଆଭିଜାତ୍ୟକୁ ଅଗ୍ରାଧିକାର । ଆଭିଜାତ୍ୟ, କାହିଁକିନା, ଲୋକପ୍ରତିନିଧି-ମୂଳକ ଶାସନରେ ଆଭିଜାତ୍ୟ-ପ୍ରାଧାନ୍ୟ ଜନହିତକୁ ଦେଇପାରେ ଧର୍ମର ମହିମା । ପ୍ରାଚୀନପନ୍ଥୀ ଏ ଭାବୁକ ଫ୍ରି-ମାର୍କେଟ୍ ପ୍ରଭାବକୁ ମଧ୍ୟ ସୁନଜରରେ ଦେଖିନାହାଁନ୍ତି, କାହିଁକିନା, ନାଗରିକ ଜୀବନନିର୍ବାହରେ ବିଳାସବାହୁଲ୍ୟ ମନେହୋଇଚି ଅପସଂସ୍କୃତି; ଜନ୍ ଷ୍ଟୁଆର୍ଟ ମିଲ୍ ଲେଖିଚନ୍ତି, the most serious danger to the future

prospects of mankind is in the unbalanced influence of the commercial spirit । ମାନେ, ସୌଦାଗରୀ ମାନସିକତା ନାଗରିକସୁଲଭ ସଦ୍‌ଗୁଣର ସଂପୂର୍ଣ୍ଣ ବିପରୀତ । ତଦ୍‌ସତ୍ତ୍ୱେ, ଆଡାମ୍ ସ୍ମିଥ୍ ସମର୍ଥନକରିନାହାଁନ୍ତି ରାଷ୍ଟ୍ରର ହସ୍ତକ୍ଷେପ; ବରଂ ମାର୍କେଟ୍ ଉପରେ ସ୍ଥାପନକରିଚନ୍ତି କୁଣ୍ଠିତ ଭରସା । ସମାଜତନ୍ତ୍ରରେ ବିଶ୍ୱାସୀ ବୁଦ୍ଧିଜୀବୀ ଅବଶ୍ୟ ବିରୋଧକରିଚନ୍ତ; କହିଚନ୍ତି, ଯୋଉ ମୂଲ୍ୟମାନ ଅବହମାନ କାଳରୁ ସମାଜକୁ ଦେଇଚି ଐକ୍ୟ ଓ ସଂହତି, ଫ୍ରି ମାର୍କେଟ୍ ସେ ମୂଲ୍ୟମାନକୁ ଆଘାତକରୁଚି କ୍ରମାଗତ । ଏ ଆପତ୍ତି ସ୍ପଷ୍ଟତଃ ନୈତିକ, ଅର୍ଥନୀତିକ ନୁହେଁ । କିନ୍ତୁ ୧୮୫୦ରୁ ୧୮୬୦, ଦଶବର୍ଷ ଭିତରେ ଗଢ଼ିଉଠିଚି ଟ୍ରେଡ୍‌ଇଉନିଅନ୍ ଆନ୍ଦୋଳନ, ଜନସଂଖ୍ୟା ବୃଦ୍ଧି ସାଙ୍ଗକୁ ଶିଳ୍ପବିପ୍ଳବର ସଂପ୍ରସାରଣ ଜୀବନମାନରେ ଆଣିଦେଇଚି ଅପେକ୍ଷାକୃତ ଅଧିକ ଉପଭୋଗ; ଏବଂ ସମାଜବାଦୀ ସେତେବେଳେ ଆଖିରେ ଆଙ୍ଗୁଳିଗେଞ୍ଜି ଉଦାରପନ୍ଥୀଙ୍କୁ ଦେଖାଇଦେଇଚନ୍ତି ମାର୍କେଟ୍ କେମିତି ପ୍ରତିହତକରୁଚି ଗୋଷ୍ଠୀଜୀବନର ଧାରାବାହିକତାକୁ । ମାତ୍ର ଉଦାରପନ୍ଥୀ ଭାବିଚନ୍ତି, ଅନାଚାର-କଦାଚାରର କାରଣ ବଜାରନିର୍ଭରତା ନୁହେଁ, ରାଜନୀତିକ ଭ୍ରଷ୍ଟାଚାର । ଜମିଜାଗାର ସାମାଜିକ ବଣ୍ଟନରେ ଏଭଳି ବୈଷମ୍ୟ ଦେଖାଦେଇଚି ଯେ ଅଧିକାଂଶ ଲୋକ ଦାରିଦ୍ର୍ୟ ଭୋଗକରିବାକୁ ବାଧ୍ୟ ହେଉଚନ୍ତି । ସମାଜବାଦୀ ସେତେବେଳେ ପ୍ରଚଳିତ ବ୍ୟବସ୍ଥାକୁ ନାଁ ଦେଇଚନ୍ତି 'କ୍ୟାପିଟାଲିଜ୍ମ' । ଅର୍ଥାତ୍ ମାର୍କ୍ସବାଦୀ ଦୃଷ୍ଟିକୋଣରୁ ପ୍ରୟୋଗକରିଚନ୍ତି 'ଶୋଷଣ' ଆଇଡିଆ । ଶୋଷଣ, କାହିଁକିନା, ପୁଞ୍ଜିବାଦୀ ବିକାଶର ଏ ପ୍ରକ୍ରିୟା ସାମାଜିକ ସଂପଦ ସୃଷ୍ଟିକରିବା ପରିବର୍ତ୍ତେ ଉତ୍ପନ୍ନ କରୁଚି ଅନାବଶ୍ୟକ ପଣ୍ୟ, ଶ୍ରମିକକୁ ଦେଉଚି ଦୁର୍ଭୋଗ, ଆଉ ଦେଶକୁ ଘେଷାରିନେଉଚି ସାମ୍ରାଜ୍ୟବାଦୀ ପ୍ରତିଦ୍ୱନ୍ଦ୍ୱିତାର ବ୍ୟୁହଭିତରକୁ । ଏବଂ ସେଥିପାଇଁ,କ୍ୟାପିଟାଲିଜ୍ମର ନୈତିକ ବ୍ୟର୍ଥତା ରାଷ୍ଟ୍ରର ହସ୍ତକ୍ଷେପକୁ କରୁଚି ଅନିବାର୍ଯ୍ୟ । ଅର୍ଥାତ୍, ଐକ୍ୟ ଓ ସଂହତି ସ୍ୱାର୍ଥରେ ନାଗରିକସମାଜକୁ ସୁରକ୍ଷା ପ୍ରଦାନ ରାଷ୍ଟ୍ରର ଏକାନ୍ତ କର୍ତ୍ତବ୍ୟ । ମାର୍କେଟ୍ ବ୍ୟକ୍ତିବିଶେଷକୁ ଯୋଉ ସ୍ୱାଧୀନତା ଦିଏ, ଗଣତାନ୍ତ୍ରିକ ରାଜନୀତି ମଧ୍ୟ ଦେଇପାରିବ ଏକାରକମ ସିଷ୍ଟେମ୍ । ଏବଂ ଜନମତ ଯଦି ଗଣତନ୍ତ୍ରର ନିର୍ଦ୍ଧାରକ, ହାଉସ୍ ଅବ୍ ଲର୍ଡ଼ସ୍‌ର ବିଲୋପ ମଧ୍ୟ ଅବଶ୍ୟମ୍ଭାବୀ । ସମାଜବାଦୀ ପୁଣି ଦାବିକରିଚନ୍ତି ବର୍ଷକୁ ବର୍ଷ ନିର୍ବାଚନ, କ୍ଷମତାର ବିକେନ୍ଦ୍ରୀକରଣ; ଏପରିକି, ନିର୍ବାଚନ ମାଧ୍ୟମରେ ସିଭିଲ୍ ସର୍ଭିସ୍‌କୁ ନିଯୁକ୍ତି(ତା ହେଲେଯାଇ, ଅମଲାତନ୍ତ୍ର ଉପରେ ରହିବ ସୁଶୀଳ ସମାଜର କର୍ତ୍ତୃତ୍ୱ) । ସନ୍ଦେହ ନାହିଁ, ନିର୍ବିରୋଧରେ କାମଗୁଡ଼ାକ କରିପାରିବ ରାଷ୍ଟ୍ର, କିନ୍ତୁ ଏ ବାଟରେ କଣ ରୋକିହେବ କ୍ୟାପିଟାଲିଜ୍ମର ଅଗ୍ରଗତିକୁ ? ରୋକିହେବ କି ନାହିଁ, ଏ ପର୍ଯ୍ୟନ୍ତ ସେ

ଅଭିଜ୍ଞତା ଇତିହାସ ଭିତରକୁ ପଶିନାହିଁ । କାହିଁକିନା, ପୃଥିବୀର କୁତ୍ରାପି ରାଷ୍ଟ୍ର କରିନାହିଁ ପ୍ରସ୍ତାବଗୁଡ଼ିକୁ ପରୀକ୍ଷା । ତେବେ, ଅର୍ଥନୀତିବିଦ୍ ଅସ୍କାର୍ ଲାଙ୍ଗେ ଦେଖାଇସାରିଚନ୍ତି, କ୍ୟାପିଟାଲିସ୍ମ ଏକ ସ୍ୱତଃସ୍ଫୂର୍ତ୍ତ ସ୍ୱୟଂଚାଳିତ ସିଷ୍ଟେମ୍ । ତା ଉପରେ ରାଷ୍ଟ୍ରର ହସ୍ତକ୍ଷେପ, ସିଷ୍ଟେମ୍‌ଟାକୁ ଅକାମୀ କରିଦେବା ଅବଧାରିତ ।

ମୂଳୁ ମାରିଲେ ଯିବ ସରି ନୀତିରେ ସମାଜବାଦୀ ଖୋଜିଚନ୍ତି ତେଣୁ କ୍ୟାପିଟାଲିସ୍ମର ଜନ୍ମସୂତ୍ର, ଏବଂ ଦେଖୁଚନ୍ତି, ମାର୍କେଟ୍ କେବଳ ସୁପରସ୍ଟ୍ରକ୍‌ଚର୍, ଯୋଉ ମୂଳଦୁଆ ଉପରେ ଗଢ଼ିଉଠିଚି, ତା ସଂପତ୍ତିର ବ୍ୟକ୍ତିଗତ ମାଲିକାନା । ସାମାଜିକ ବୈଷମ୍ୟର ଅସଲ କାରଣ ତେଣୁ ପ୍ରପର୍ଟି-ରିଲେସନ୍ସ ଓ ତଦ୍‌ଜନିତ ଭେଦାଭେଦ । ଉତ୍ପାଦନର ସାଧନସମୂହରୁ ବ୍ୟକ୍ତିଗତ ମାଲିକାନା ଯେହେତୁ ଅଧିକାଂଶ ଲୋକଙ୍କୁ, ଅର୍ଥାତ୍ ଅସଲ ଉତ୍ପାଦକକୁ କରୁଚି ବଂଚିତ, ସୁଶୀଳସମାଜରୁ ସଂପତ୍ତିର ବ୍ୟକ୍ତିଗତ କର୍ତ୍ତୃତ୍ୱର ବିଲୁପ୍ତି ସମାଜକୁ କରିପାରେ ଐକତାନ, ଆତ୍ମନିୟନ୍ତ୍ରଣକ୍ଷମ ସଂଗଠନ । ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ, ସେଥିପାଇଁ, କି ଆକାର ଧାରଣକରିବ ଉତ୍ପାଦନର ସାଧନସମୂହ ଉପରେ ସମଷ୍ଟିଗତ ଅଧିକାର । କିଛି ଲୋକ ଭାବିଚନ୍ତି, ଏ ଅଧିକାର ଗଣତାନ୍ତ୍ରିକ । ରାଷ୍ଟ୍ର ହାତରେ ହିଁ ନ୍ୟସ୍ତହେବା ଉଚିତ । ଅନ୍ୟମାନେ କହିଚନ୍ତି, ସଂପତ୍ତି ନଥିଲେ ବିବାଦ ବି ଥିବନାହିଁ; ରାଷ୍ଟ୍ର ଫେର୍ ଜାରିକରିବ ସାଧନ ଉପରେ କି ଅଧିକାର ? ନିଜ ଭଲମନ୍ଦ ନାଗରିକସମାଜ ନିଜେ ବୁଝିପାରିବ । ଯାକୁ କୁହାଯାଇପାରେ ନୈରାଜ୍ୟବାଦ । କାହିଁକିନା, ଧରିନିଆଯାଇଚି, ବ୍ୟକ୍ତିଗତ ମାଲିକାନାର ବିଲୁପ୍ତି ମାନେ ବସ୍ତୁତଃ ରାଜନୀତିର ଅବସାନ । କାହିଁକିନା, ସଂଘାତ ବ୍ୟତିରେକେ ରାଜନୀତି ଅକଳ୍ପନୀୟ; ମାତ୍ର ଉତ୍ପାଦନରୁ ଉପୁଜିବ ଯୋଉ ଉଦ୍‌ବୃତ୍ତ(ସରପ୍ଲସ୍), ତା ଦଶା କଣ ହେବ ରାଷ୍ଟ୍ରର ଅନୁପସ୍ଥିତିରେ ? ପୁଣି, ଅପଚୟ ନିରୋଧ କିମ୍ବା ସମରୂପ ଉତ୍ପାଦନକୁ ନିୟନ୍ତ୍ରଣକରିବ କିଏ ? ସୁଶୀଳସମାଜ, ଭୌଗୋଳିକ ଅବସ୍ଥାନରେ, ବିକ୍ଷିପ୍ତ; ତନ୍ମଧ୍ୟସ୍ଥ ସମନ୍ୱୟ ସକାଶେ କେନ୍ଦ୍ରୀୟ କୋଉ କର୍ତ୍ତୃତ୍ୱ ନ ରହିଲେ, ଉତ୍ପାଦନ ପରିଚାଳନାରେ ଦକ୍ଷତା ବଢ଼ିବନାହିଁ । ସମାଜବାଦୀ ପଚାରୁଚନ୍ତି, ଦକ୍ଷତା ଉଦ୍‌ଗତହୁଏ କୋଉଠୁ, କେନ୍ଦ୍ରୀଭୂତ ମ୍ୟାନେଜ୍‌ମେଣ୍ଟରୁ ନା ବ୍ୟକ୍ତିବିଶେଷର ନିହିତ ସୃଷ୍ଟିଶୀଳତାରୁ ? ଉଦ୍‌ବୃତ୍ତ ମୂଲ୍ୟ (ସରପ୍ଲସ୍ ଭ୍ୟାଲିଉ) ତ ପୁଞ୍ଜିବାଦୀ ଉତ୍ପାଦନର ନିୟାମକ, ସୃଷ୍ଟିଶୀଳ ମଣିଷର ପରିଶ୍ରମ ସେଠି କିଣାହୁଏ କି ବିକାହୁଏ । ଉତ୍ପାଦନର ସାଧନସକଳ ସମାଜର ସଂପତ୍ତି; ରାଷ୍ଟ୍ର ଥାଉ କି ନଥାଉ, ଉଦ୍‌ବୃତ୍ତମୂଲ୍ୟ ସମସ୍ୟାଟା ଏକେବାରେ ଅବାନ୍ତର; ଲୋକପ୍ରତିନିଧିମୂଳକ ଗଣତାନ୍ତ୍ରିକ ରାଷ୍ଟ୍ରବ୍ୟବସ୍ଥା ହିଁ ତେଣୁ ସ୍ପୃହଣୀୟ । କିନ୍ତୁ ବୁଝାଗଲାନାହିଁ, ସେ ବ୍ୟବସ୍ଥାରେ ରାଷ୍ଟ୍ରର ଆଜ୍ଞାବହଙ୍କ ଉପରେ ଜନସାଧାରଣଙ୍କ

କର୍ତ୍ତୃତ୍ୱ ଧାରଣକରିବ କି ଆକାର-ପ୍ରକାର ।

ମାତ୍ର ସମାଜବାଦୀଙ୍କ ମାର୍କେଟ୍‌ବିରୋଧ ଗୋଟାପଣେ ନୈତିକ, କ୍ୟାପିଟାଲିସ୍ଟର ଏଥିକ୍ସକୁ ସମୂଳ ପ୍ରତ୍ୟାଖ୍ୟାନ । ଏଥିକ୍ୟାଲ୍ ସୋସାଲିଷ୍ଟଙ୍କ ଭିତରେ ଅଛନ୍ତି ଜନ୍ ରସ୍କିନ୍, ଗାନ୍ଧିଙ୍କ ଅନ୍ୟତମ ଗୁରୁ । ପ୍ରତିଯୋଗିତା, ଯା ଖୋଲାବଜାରକୁ ବଞ୍ଚାଇରଖେ, ରସ୍କିନ୍ ତା ଜାଗାରେ ବସାଇଚନ୍ତି ସହଯୋଗ । କାହିଁକିନା, ସମାଜରେ ସ୍ଥିରତା ସୃଷ୍ଟିକରିବା ପରିବର୍ତ୍ତେ ମାର୍କେଟ୍ ଜନ୍ମଦେଇଚି ଦାରିଦ୍ର୍ୟ, ଆବର୍ଜନା ଓ ପ୍ରଦୂଷଣ । ଚିରାଚରିତ ସାମାଜିକ ସଂପର୍କ ଦେହରେ ସ୍ୱାର୍ଥପରତା ସୃଷ୍ଟିକରିଚି ଦୁର୍ବିସହ ଛିଦ୍ର ଆଉ ବ୍ୟଭିଚାର । ଏଗୁଡ଼ାକ ସୋସାଲ୍ କଷ୍ଟ୍; ରସ୍କିନ୍‌ଙ୍କ ବିବେଚନାରେ ଭୟାନକ । ଆଉଜଣେ ସୋସାଲିଷ୍ଟ୍, ଏଡ଼ୱଇନ୍ କାର୍ପେଣ୍ଟର୍ ମଣିଷ ଭିତରେ ଆତ୍ମସଚେତନତାକୁ କହିଚନ୍ତି almost a disease, when the desire of acquiring and grasping objects, or enslaving men and disease animals, in order to administer to the self, becomes one of the main motives of life । ସ୍ୱଷ୍ଟତଃ, ଅର୍ଥନୀତିକ ପ୍ରକ୍ରିୟାର ବିଶ୍ଳେଷଣ ଏଠି ଉଦ୍ଦେଶ୍ୟ ନୁହେଁ; ସେ ପ୍ରକ୍ରିୟାରୁ ଉତ୍ପନ୍ନ ଇନ୍ଦ୍ରିୟଗ୍ରାହ୍ୟ ପରିଣାମ ଓ ତାର ନୈତିକ ଗ୍ରହଣଯୋଗ୍ୟତା କେବଳ ଜ୍ଞାନ ଆଉ ଧ୍ୟାନ । ଆତ୍ମସୁଖ ଓ ଦୁର୍ବାର ଲୋଭ, ଜୀବନଯାତ୍ରା ଭିତରଦେଇ ତିଆରିହୁଏ କେମିତି କି ନଷ୍ଟହୁଏ କେମିତି, ତାର ବସ୍ତୁନିଷ୍ଠ କାରଣ ତେଣୁ ଆଖିରେ ପଡ଼ିନାହିଁ । କି ଜିନିଷ ଗ୍ରହଣଯୋଗ୍ୟ, କି ଜିନିଷ ନୁହେଁ – ପୁରାପୁରି ସାଂସ୍କୃତିକ ପ୍ରଶ୍ନ । ଅସମ ସମାଜରେ ସଂସ୍କୃତି ନିଜେ ଏକ କୁରୁକ୍ଷେତ୍ର । ଉଇଲଫ୍ରିଡ୍ ରିଚ୍‌ମଣ୍ଡ୍ କିନ୍ତୁ ପୁରେଇଦେଇଚନ୍ତି ଆଧ୍ୟାତ୍ମିକତା : economies are within the sphere of conscience । କ୍ୟାପିଟାଲିସ୍ଟ କଣ ତେବେ ବିବେକବର୍ଜିତ ଅର୍ଥନୀତି ? ଆଉ, ପୁଞ୍ଜିପତି ପାଷଣ୍ଡ ବର୍ବର ? ପ୍ରକୃତ ପ୍ରସ୍ତାବରେ ଏଗୁଡ଼ାକ ଧର୍ମୀୟ ଉତ୍କଣ୍ଠା, ଯୋଉ ଉତ୍କଣ୍ଠା ସୁଶୀଳସମାଜକୁ ଆଉ ପୀଡ଼ିତ କରେନା, କାହିଁକିନା, ପ୍ରାକୃତିକ ପରିବର୍ତ୍ତନର ନିୟମ ଜଣାଇସାରିଚନ୍ତି ନିଉଟନ୍ । କିନ୍ତୁ ଏମାନେ ଯେହେତୁ ସମାଜବାଦୀ, ସମାଜତାନ୍ତ୍ରିକ ବ୍ୟବସ୍ଥାରେ ରାଷ୍ଟ୍ରର ଭୂମିକା କି ରକମ ହୋଇପାରେ, ଭାବିବାକୁ ବାଧ୍ୟ; ମାତ୍ର ଭାବିନାହାଁନ୍ତି । ହିନ୍ଦ୍-ସ୍ୱରାଜ୍‌ରେ ଗାନ୍ଧି ସୁଦ୍ଧା ନୀରବ । ରାଷ୍ଟ୍ର ସକାଶେ ସଂଜ୍ଞାବଦ୍ଧ କୋଉହେଲେ ଭୂମିକା ମନେହୋଇଛି ହୁଏତ ଅଳୀକ, କାହିଁକିନା, ବ୍ୟକ୍ତିମଣିଷର ନୈତିକ ଚରିତ୍ର ନାଗରିକ ସମାଜର ରୂପାନ୍ତର ସକାଶେ ଯଥେଷ୍ଟ; କାହିଁକିନା, ଅର୍ଥନୀତିକ କ୍ରିୟାକଳାପ ଯଥାର୍ଥ ନୈତିକ ବିବେଚନା ଦ୍ୱାରା ଯଦି ପରିଚାଳିତ ହୁଏ, ଦରକାର ହୁଏନା ରାଷ୍ଟ୍ରର ହସ୍ତକ୍ଷେପ । ନୈତିକତା ବିଚାରରେ

ଅଭିଭୂତ ଏଇ ପରାର୍ଥବାଦୀ ଯୀଶୁଖ୍ରୀଷ୍ଟଙ୍କୁ ବି କ୍ଷାନ୍ତି ଦେଇନାହାଁନ୍ତି : Our Lord... preached no system of political economy. He never for a moment would allow us to suppose that changes in the machinery of political life or in the distribution of wealth would remedy the fundamental evils of society. What he required was a profound ethical change based on thoughts about God and about man । ଗାନ୍ଧିଙ୍କ ସମାଜବାଦକୁ ନ ଘାଣ୍ଟିଲେ ଏକ୍ଷଣି ଚଳିବ, କାହିଁକିନା, ମାପ କଛ ଛାଞ୍ଚ - ସବୁତକ ଆସିଚି ବିଲାତରୁ ।

ତେବେ, ନୀତିବାଦୀ ହୁଅନ୍ତୁ କି ମାର୍କ୍ସବାଦୀ, ମାର୍କେଟ୍‌କୁ ଭାବିଚନ୍ତି ସୁଶୀଳସମାଜ ପକ୍ଷରେ କ୍ଷତିକାରକ । ଗାନ୍ଧି କିନ୍ତୁ ସ୍ପଷ୍ଟ କରିଦେଇଚନ୍ତି ନିଜ ଅବସ୍ଥା (ଦ୍ର. ଇୟଙ୍ଗ୍ ଇଣ୍ଡିଆ, ମାର୍ଚ୍ଚ ୨୬, ୧୯୩୧) : I believe in private enterprise and also in planned production. If you have only State production, men will become moral and intellectual perhaps. They will forget their responsibilities. I would therefore allow the capitalist and the *Zamindar* to keep their factory and their land, but I would make them consider themselves trustees of their property. We invite the capitalist to regard himself as a trustee of those on whom he depends for the making, the retention and the increase of his capital. Those who own money now, are asked to behave like trustees holding their riches on behalf of the poor. By the non-violent method, we seek not to destroy the capitalist, we seek to destroy capitalism.... । ହାସ୍ୟକର ଏ ପ୍ରସ୍ତାବ ଶୁଣିବାମାତ୍ରେ ବୁଝିବା କଷ୍ଟହୁଏନା, ଗାନ୍ଧି କାହିଁକି ଓକିଲାତି ପେସାରେ ନିଜକୁ ପ୍ରମାଣ କରିଥିଲେ ଅପଦାର୍ଥ । ଜମିଦାର ରହିବେ, ପୁଞ୍ଜିପତି ବି ରହିବେ, କ୍ୟାପିଟାଲିସ୍ମ କିନ୍ତୁ ଧ୍ୱଂସହୋଇଯିବ । କାହିଁକିନା, ବାଘ ହେବ ବଳଦର ଧମରବାପ ! କୋଉ ଇନ୍ଦ୍ରଜାଲ ବଳରେ ? ଅହିଂସା ? ତା ପରାକ୍ରମରେ ଶଙ୍କିଯାଇ ଇଂରେଜ୍ କଣ ପଳାଇଯାଇଚି ? ସାମ୍ପ୍ରଦାୟିକ ଦଙ୍ଗା ବନ୍ଦହୋଇଚି ନା ନାଥୁରାମ ଗଡ୍‌ସେ ତିଆରିହେଉନାହାଁନ୍ତି ? ଅସଲ କଥା, ଗାନ୍ଧି ଜମାରୁ ସୋସାଲିଷ୍ଟ୍ ନୁହେଁ, ଗାନ୍ଧିଚିନ୍ତା ଓ ସମାଜବାଦ ଦୁଇଟି ଭିନ୍ନ ଜିନିଷ; ଏବଂ ଭିନ୍ନ ବୋଲି, ତାଙ୍କ ଜୀବଦ୍ଦଶାରେ କଂଗ୍ରେସ୍ ଭିତରେ ତିଆରିହୋଇଚି କଂଗ୍ରେସ୍‌ସୋସାଲିଷ୍ଟ୍ ଦଳ । ଆଉ କେତେଦୂର ଅବା ଯାଇପାରିଥାନ୍ତା ଭାରତର ସୁଶୀଳସମାଜ ? ଯାଇ ଯାଇ ପହଞ୍ଚିଚି ଭୂଦାନ ସଂକୀର୍ତନରେ । ଯଥାର୍ଥ ସମାଜବାଦୀ

କିନ୍ତୁ ବଜାରଅର୍ଥନୀତିକୁ ବିରୋଧକରିଚନ୍ତି, ଚାହିଁଚନ୍ତି ରାଷ୍ଟ୍ରର ସକ୍ରିୟ ଭୂମିକା । ରାଷ୍ଟ୍ରଯନ୍ତ୍ରକୁ ଶଗଡ଼ଗୁଳାରେ ନଚଳାଇ ପ୍ରଶାସନ ଏପରି ର୍‍ୟାଡିକ୍ୟାଲ୍ କୃତ୍ୟସୂଚୀ ଗ୍ରହଣକରିବ ଯଦ୍ଦ୍ୱାରା ସୁଶୀଳସମାଜ ଉପରେ ଖୋଲାବଜାରର ଅଶୁଭ ପ୍ରଭାବ ହୋଇପାରିବ ପ୍ରତିହତ । ଅଶୁଭ ପ୍ରଭାବକୁ ଚିହ୍ନିତକରାଯାଇଚି ଉତ୍କଟ ପ୍ରତିଯୋଗିତା । ତା ଜନ୍ମଦିଏ ଯୋଉ ପ୍ରକାର ବ୍ୟକ୍ତିସ୍ୱାତନ୍ତ୍ର୍ୟ ଆଉ ଧନତାନ୍ତ୍ରିକ ଉତ୍ପାଦନରୀତି, ସାମାଜିକ ସଂପର୍କଗୁଡ଼ିକରେ ତା ଘଟାଇପାରେ ଅଧୋଗତି । ତେଣୁ, ଖାଲି ଶୃଙ୍ଖଳାରକ୍ଷା ନୁହେଁ, ରାଷ୍ଟ୍ରର ଦାୟିତ୍ୱ ମଧ୍ୟ ଗଣତାନ୍ତ୍ରିକ ପଦ୍ଧତିରେ ସୁଶୀଳସମାଜର ପୁନର୍ଗଠନ । ପୁନର୍ଗଠନ ମାନେ ଅଶୁଭ ଉପସର୍ଗ ଓ ଉତ୍ପାଦନର ଉତ୍ପାଟନ, କାହିଁକିନା, ଖୋଲାବଜାରର ଛଦ୍ମବେଶରେ ପ୍ରତିଯୋଗିତା ଯଦି ଆଧିପତ୍ୟକରେ ସୁଶୀଳସମାଜ ଉପରେ, ଫିଲିପ୍ ସ୍ମୋଡେନ୍ କହୁଚନ୍ତି, ମାର୍କେଟ୍ makes men hard, cruel, selfish, acquisitive economic machines । ଅନିୟନ୍ତ୍ରିତ ସୁଶୀଳସମାଜ, ସେଥିପାଇଁ, ସମାଜତନ୍ତ୍ରର ଲକ୍ଷ୍ୟ ନୁହେଁ; ଆବଶ୍ୟକସ୍ଥଳେ ରାଷ୍ଟ୍ରର ହସ୍ତକ୍ଷେପ ମଧ୍ୟ ଅଭିପ୍ରେତ; ଯେପରି ଅନୁପାର୍ଜିତ ଆୟ ଉପରେ ଅଧିକତର କରଧାର୍ଯ୍ୟ । ନାଗରିକସମାଜ ନିଜ ଚେଷ୍ଟାରେ କରିପାରିବନାହିଁ, ଅଥଚ ସଂପତ୍ତିଗତ ତାରତମ୍ୟ ହ୍ରାସକରିବା ରାଷ୍ଟ୍ରର ଅନ୍ୟତମ ଆଭିମୁଖ୍ୟ । ସେଇପରି, ଉତ୍ପାଦିତ ଉଦ୍‌ବୃତ୍ତକୁ ଜନହିତ ସକାଶେ ଉପଯୋଗ ସୁଶୀଳସମାଜର କର୍ତ୍ତବ୍ୟ; କିନ୍ତୁ ପୂର୍ବସର୍ତ୍ତ ସଂପତ୍ତିର ସୀମାନିର୍ଦ୍ଧାରଣ ଏବଂ ଉତ୍ପାଦନର ସାଧନଗୁଡ଼ିକ ଉପରେ ସାମାଜିକ ନିୟନ୍ତ୍ରଣ । ରାଷ୍ଟ୍ର ଓ ସୁଶୀଳସମାଜ ଯୌଥଉଦ୍ୟମରେ ଏ କାମ କରିପାରିଲେ, ଉତ୍ପାଦନକ୍ଷେତ୍ରରେ କ୍ୟାପିଟାଲିସ୍ମ ଯୋଉ ଅରାଜକତା ସୃଷ୍ଟିକରିଚି, ଖାଲି ପ୍ରତିଷେଧ ନୁହେଁ, ସାମାଜିକ ଉତ୍ପାଦନର ବାଗବର୍ଗ ବି ବଦଳିଯିବ ଏକାସାଙ୍ଗରେ । ଅର୍ଥାତ୍, ଆବଶ୍ୟକତାଠାରୁ ଅଧିକ ଉତ୍ପାଦନ ଦରକାରପଡ଼ିବ ନାହିଁ, କର୍ମନିଯୁକ୍ତିର ପରିସର ହେବ ପ୍ରସାରିତ । ରାଷ୍ଟ୍ର ଯଦି ଏ ବାଟରେ ଅର୍ଥନୀତି ଉପରେ କର୍ତ୍ତୃତ୍ୱ ପ୍ରତିଷ୍ଠାକରେ, ସୁଶୀଳସମାଜ ମଧ୍ୟ ଚାହିଦା ମୁତାବିକ୍ ଯୋଗାଣକୁ କରିପାରିବ ନୟମାନୁବର୍ତ୍ତୀ ।

ବୁଦ୍ଧିବାଦୀ କିନ୍ତୁ ଆଶଙ୍କାକରିଚନ୍ତି, ଏତେ ପରିମାଣ କ୍ଷମତା ଯଦି ରାଷ୍ଟ୍ରର କୁକ୍ଷିଗତ ହୁଏ, ସେଇ ଅନୁପାତରେ ନାଗରିକର ପୌରସ୍ୱାଧୀନତା ହୋଇଯାଇପାରେ ସଙ୍କୁଚିତ । କିନ୍ତୁ ଗଣତନ୍ତ୍ର ଯଦି ସବଳ, ନୀତିବୋଧ ହିଁ ହେବ ରାଷ୍ଟ୍ରକ୍ଷମତାର ନିରୂପକ । ଅଭିଜାତଶ୍ରେଣୀ କ୍ଷମତାରେ ଆଧିପତ୍ୟକଲେ, ଇତିହାସରୁ ଦିଶୁଚି, ଭ୍ରଷ୍ଟାଚାର ଓ ଦୁର୍ନୀତି ମୁଣ୍ଡଟେକେ ଚାରିଆଡେ । ସେଥିପାଇଁ, ଖୋଲାବଜାରକୁ ପ୍ରତ୍ୟାଖ୍ୟାନ ମାନେ 'ଲିବର୍ଟି'ର ପୁନର୍ବିଚାର । ସଂଜ୍ଞାଗତ ପୁନର୍ବିଚାର, କାହିଁକିନା, ପ୍ରଥିତଯଶା ବୁଦ୍ଧିବାଦୀ

ଆଡାମ୍ ସ୍ମିଥ୍ ଭାବିଥିଲେ, ମୁକ୍ତବଜାର କେବଳ ସମାଜକୁ ଦେଇପାରେ ସମୃଦ୍ଧି ଓ ସ୍ୱସ୍ତି; ପୂର୍ବପରିକଳ୍ପିତ ଶୃଙ୍ଖଳାବଦ୍ଧ କର୍ମଧାରା ମାଧ୍ୟମରେ ନୁହେଁ, ଅଦୃଶ୍ୟ ହାତର ଇଙ୍ଗିତରେ । ଏ ଭାବବାଦ ମିଛ ହୋଇଯିବା ଉତାରୁ, ଏବଂ ଫଳତଃ ବଜାର ଉପରେ ରାଷ୍ଟ୍ରର ହସ୍ତକ୍ଷେପ ଅନିବାର୍ଯ୍ୟ ବିବେଚିତହେବା ଉତାରୁ 'ଲିବର୍ଟି' ଆଉ ଫରାସୀବିପ୍ଳବ ପ୍ରସୂତ ଲିବର୍ଟି ହୋଇ ରହିନାହିଁ । ସ୍ଥଳବିଶେଷରେ ସେ ସ୍ୱାଧୀନତାକୁ କୁହାଯାଉଚି 'ଲାଇସେନ୍ସ' । ଲିବର୍ଟି ମାନେ ଏକ୍ଷଣି କ୍ଷୁଧାରୁ ମୁକ୍ତି, ଅଶିକ୍ଷାରୁ ମୁକ୍ତି, କର୍ମହୀନତାରୁ ମୁକ୍ତି, ଶୋଷଣପୀଡ଼ନରୁ ମୁକ୍ତି, ଜାତି-ଧର୍ମ ଆସ୍ଫାଳନରୁ ମୁକ୍ତି; ଗୋଟିଏ ଶବ୍ଦରେ, 'ପରାଧୀନତା'ରୁ ମୁକ୍ତି । ଏ ଉପାଦାନଗୁଡ଼ିକୁ ବାସ୍ତବାୟିତ କରିବା ସକାଶେ 'ରାଷ୍ଟ୍ର'କେବଳ ଏକ କେନ୍ଦ୍ରୀଭୂତ ପ୍ରଣାଳୀ ବା ଯୋଗସୂତ୍ର । ମାତ୍ର, ଇତିମଧ୍ୟେ, ମାର୍କ୍ସବାଦୀ ଉଠାଇଚନ୍ତି ଆପତ୍ତି ଯେ, ରାଷ୍ଟ୍ରର ଚରିତ୍ର ଖାଲି ବଦଳିଗଲେ କ୍ୟାପିଟାଲିସ୍ମ ଭଳି ବ୍ୟାଧିର ଚିକିତ୍ସା ସମ୍ଭବହୁଏନା, ସାମାଜ ଓ ଇଣ୍ଡଷ୍ଟ୍ରିକୁ ମଧ୍ୟ ବଦଳାଇବାକୁ ପଡ଼ିବ, କାହିଁକିନା, ବିଗତ ଦୁଇଶବର୍ଷ ଭିତରେ କ୍ୟାପିଟାଲିସ୍ମ ରାଜନୀତିକୁ ପରିଣତକରିଚି ଗୋଟାପଣେ କ୍ଷମତାଦଖଲର କାରସାଦି । ପାର୍ଲାମେଣ୍ଟାରୀ ପଦ୍ଧତିରେ, ସେଥିପାଇଁ, ସମାଜତନ୍ତ୍ର ଆସିପାରିବ ନାହିଁ, କାହିଁକିନା, ଇତିହାସରୁ ଦିଶୁଚି, ପାର୍ଲାମେଣ୍ଟାରୀ ରାଜନୀତିରେ ଯେକୌଣସି ନେତୃତ୍ୱ ଅଚିରେ ରୂପ ପରିଗ୍ରହକରେ ଆତ୍ମସ୍ୱାର୍ଥରେ ଆପ୍ଳୁତ ସଂଖ୍ୟାଲଘୁର । ଅମଲାତନ୍ତ୍ରକୁ ଦୃଢ଼ କରିବାକୁ ହେଲେ, ଖାଲି ଲୋକପ୍ରତିନିଧିଙ୍କ ପ୍ରଭୁତ୍ୱ ବି ଚଳିବନାହିଁ, ରହିବ କୃଷକ-ଶ୍ରମିକଙ୍କ ପ୍ରତିନିଧିତ୍ୱ ଏବଂ ମହତ୍ତ୍ୱପୂର୍ଣ୍ଣ କୋଉହେଲେ ସିଦ୍ଧାନ୍ତ ବିନା ରେଫର୍‌ଯ୍ୟାଣ୍ଡମ୍‌ରେ ଗୃହୀତ ହେବନାହିଁ । ରେଫର୍‌ଯ୍ୟାଣ୍ଡମ୍ ମାନେ ସିଧାସଳଖ ଲୋକମତ ଗ୍ରହଣ, ପ୍ରତିନିଧିଙ୍କ ଜରିଆରେ ନୁହେଁ । ତଥ୍ୟପ୍ରଯୁକ୍ତି ଦୌଲତରୁ ସେ କାମ ଏକ୍ଷଣି ଦୁଃସାଧ୍ୟ ନୁହେଁ; କିନ୍ତୁ ଭାରତୀୟ ଉପମହାଦେଶର ଚରିତ୍ର ଯେହେତୁ ପ୍ଳୁର୍ଯ୍ୟାଲ୍ ବା ବହୁମାତ୍ରିକ, ନାଗରିକସମାଜର ସଂଗଠନ ମଧ୍ୟ ବିବିଧ ଓ ବିଚିତ୍ର । ପ୍ରତିନିଧିତ୍ୱ ଯେହେତୁ ସାବାଳକ ଭୋଟ୍‌ପ୍ରଥା ଉପରେ ଆଧାରିତ, ସବୁରକମ (ଯେପରି, କୃଷକ ଶ୍ରମିକ ଜନଜାତି ସଂଖ୍ୟାଲଘୁ ଇତ୍ୟାଦି) ସ୍ୱାର୍ଥର ପ୍ରତିନିଧିତ୍ୱ କରୁଚି ଆପାତତଃ । ତେଣୁ ମାର୍କେଟ୍‌ର ଅଶୁଭ ପରିଣାମକୁ ମୁକାବିଲା କରିବାକୁ ସମର୍ଥ । ଯୁକ୍ତି ହିସାବରେ ଅକାଟ୍ୟ, ବାସ୍ତବ ଅଭିଜ୍ଞତା କିନ୍ତୁ ବିପରୀତ । କାହିଁକିନା, ସିଭିଲ୍ ସୋସାଇଟି ଏଠି ଅଚେତନ । ସେ ଅଚୈତନ୍ୟ ଶାସକଶ୍ରେଣୀର ସହାୟକ, କାହିଁକିନା, ଭାରତୀୟ ରାଷ୍ଟ୍ର ଗ୍ଲୋବାଲ୍ କ୍ୟାପିଟାଲିସ୍ମର କୋଲାବୋରେଟର୍ । ସେଥିପାଇଁ, ତିଆରିହୁଏ 'ରଙ୍ଗ୍ ଦେ ବାସନ୍ତି' ଭଳି ଫିଲ୍ମ; ଅର୍ଥାତ୍ ଅଚେତନ ହେଉ କି ନହେଉ, ନାଗରିକସମାଜ ରହିଚି ଏକ ଉନ୍ମୁକ୍ତ ପ୍ରାନ୍ତର;

ଇଂରେଜ୍ ଅମଳରେ ଯେମିତି, ଏବେ ମଧ୍ୟ ସେମିତି ଡିସେଣ୍ଟ୍ରାଲାଇଜଡ୍ । ଅନ୍ୟ ଶବ୍ଦରେ, ନାଗରିକସମାଜର ପରିଜନସୁଲଭ ଆତ୍ମୀୟତାକୁ ମାର୍କେଟ୍ ତଥାପି ବିଧ୍ୱସ୍ତ କରିପାରିନାହିଁ । ରାଷ୍ଟ୍ରଶକ୍ତି ମଧ୍ୟ ନିରଙ୍କୁଶ ନୁହେଁ, କାହିଁକିନା, ନାଗରିକସମାଜ କୋଉହେଲେ ରାଜନୀତିକ ଦଳକୁ ଦେଇନାହିଁ ଏକକ ସଂଖ୍ୟାଗରିଷ୍ଠତା । କ୍ୟାପିଟାଲିସ୍ମ ପ୍ରତି ନାଗରିକସମାଜର ମନୋଭାବ ତେଣୁ ଦ୍ୱିଧାବିଭାଜିତ, କାହିଁକିନା, ଇଂରେଜ୍-ଫରାସୀ-ପର୍ତ୍ତୁଗୀଜ୍ ବିପକ୍ଷରେ ସ୍ୱାଧୀନତା ପାଇଁ ଲଢ଼ିବାର ଦୀର୍ଘ ଅଭିଜ୍ଞତା ମଗ୍ନଚୈତନ୍ୟରେ ବହନକରୁଚି ଏ ସମାଜ । ନଗରବାସୀ ମଧ୍ୟବିତ୍ତର ଚେତନାରୁ ସେ ଅଭିଜ୍ଞତା ନିଷ୍ପ୍ରଭ ହୋଇଯାଇଥାଇପାରେ, ଲୋକଚେତନାରେ ବଞ୍ଚିଚି ବୋଲି, ରଙ୍ଗ୍ ଦେ ବାସନ୍ତୀ !

କୋଲାବୋରେଟର୍ ରାଷ୍ଟ୍ର କବଳରୁ ଏ ସମାଜକୁ ବଞ୍ଚାଇବାର ଏକମାତ୍ର ଉପାୟ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକୁ ଆହୁରି ଗଭୀରଭାବେ ଗଣତାନ୍ତ୍ରିକ, ଆହୁରି ଅଧିକ ସ୍ୱନିର୍ଭରକରି ଗଢ଼ିତୋଳିବା । ତା ପାଇଁ ଶିକ୍ଷା ଯେପରି ମୌଳିକ ସର୍ତ୍ତ, ସେମିତି ପରାର୍ଥବାଦୀ ଯୁବନେତୃତ୍ୱ । ତା ହେଲେ ଯାଇ, ଅନୈକ୍ୟର ପ୍ରତିରୋଧ ହୋଇପାରେ ସ୍ୱତଃସ୍ଫୂର୍ତ୍ତ ଓ ସ୍ୱେଚ୍ଛାଧୀନ । ସୁଶୀଳସମାଜ ଉଦ୍ଦେଶ୍ୟମଣ୍ଡିତ ସ୍ୱପରିଚାଳିତ ସଂଗଠନ । ଯୁଦ୍ଧୋତ୍ତର ପୃଥିବୀରେ କୋଉହେଲେ ରାଷ୍ଟ୍ର ସମାଜବିକାଶର ସୂତ୍ର ଭାବରେ କ୍ୟାପିଟାଲିସ୍ମକୁ ବରଣକରିନାହିଁ । ବାସ୍ତବମଣ୍ଡିତ ସ୍ୱପରିଚାଳିତ ସଂଗଠନ । ବାସ୍ତବ ଆଚରଣରେ ଯିଏ ଯାହା କରୁ ପଛେ, ତୃତୀୟ ବିଶ୍ୱର ଅଧିକାଂଶ ରାଷ୍ଟ୍ର ସମାଜତନ୍ତ୍ରକୁ କରିଚନ୍ତି ପଥନିର୍ଦ୍ଦେଶକ । ଭାରତ ମଧ୍ୟ ବ୍ୟତିକ୍ରମ ନୁହେଁ । ଏ ଭାବରେ ଅବଶ୍ୟ ବିତିଗଲାଣି ଷାଠିଏବର୍ଷ । ପୂର୍ଣ୍ଣମାତ୍ରାରେ ସମାଜତନ୍ତ୍ର ଆସିନାହିଁ, କିନ୍ତୁ ଅର୍ଦ୍ଧଶତାବ୍ଦୀ ପୂର୍ବରୁ ସମାଜତନ୍ତ୍ରକୁ ଯିଏ ବିରୋଧକରୁଥିଲେ, ଏକ୍ଷଣି ଖୋଜୁଚନ୍ତି ତାର ଛତ୍ରଛାୟା । ଖୋଜୁଚନ୍ତି ବୋଲି, ରାଷ୍ଟ୍ର ଆଡ଼କୁ ଅନିଷାକରି ବସିଚନ୍ତି । ରାଷ୍ଟ୍ର କରିବ ହସ୍ତକ୍ଷେପ । ସେଇ ପ୍ରତ୍ୟାଶାରୁ ରାଷ୍ଟ୍ରର କ୍ଷମତା ଯେମିତି ସଂପ୍ରସାରିତ ହୋଇଚି, ସେମିତି ଗଣତନ୍ତ୍ର । ରାଷ୍ଟ୍ର ମଧ୍ୟ ଅର୍ଥନୀତିରେ କରିଚି ବ୍ୟାପକ ହସ୍ତକ୍ଷେପ, ସୃଷ୍ଟିହୋଇଚି ପବ୍ଲିକ୍ ସେକ୍ଟର୍ । ମାତ୍ର ଗ୍ଲୋବାଲାଇଜେସନ୍ ତାଡ଼ନାରେ ନବେଦଶକରୁ ରାଷ୍ଟ୍ର ଧରିଚି ଉଦାରୀକରଣ ନୀତି; ଅର୍ଥାତ୍ ସୁଶୀଳସମାଜ ପ୍ରତି ନିଜ କର୍ତ୍ତବ୍ୟକୁ ଅସ୍ୱୀକାର । କେମିତି ହେବ ତେବେ ନାଗରିକସମାଜର ବିଶ୍ୱାସଭାଜନ ? ଉତ୍ପାଦନ-ବଣ୍ଟନ କ୍ଷେତ୍ରରୁ ନିଜକୁ ପ୍ରତ୍ୟାହୃତକରି ରାଷ୍ଟ୍ର ଯଦି ସୃଷ୍ଟିକରେ ରାଜନୀତିକ ଶୂନ୍ୟତା, ମାର୍କେଟ୍ ସେ ଶୂନ୍ୟତାର ସୁଯୋଗ ନେବା ସ୍ୱାଭାବିକ । ମାର୍କେଟ୍ ମାନେ ତ ପ୍ରୋଫିଟ୍ (ମୁନାଫା), ୱେଜ୍ (ମଜୁରୀ) ଆଉ ପ୍ରାଇସ୍ (ଦ୍ରବ୍ୟମୂଲ୍ୟ) । ଅଥଚ ପ୍ରଭାତ ପଟ୍ଟନାୟକ, ସଂପ୍ରତି ଅଙ୍କକଷି

ଦେଖାଇଚନ୍ତି, ପ୍ରୋଫିଟ୍ ବଢୁଚି, କିନ୍ତୁ ମଜୁରୀ ବଢୁନାହିଁ; ଉଦ୍‌ବୃତ୍ତ-ଉତ୍ପାଦନ ବଢ଼ିଛି, କିନ୍ତୁ କର୍ମସଂସ୍ଥାନର ସୁଯୋଗ ବଢ଼ିନାହିଁ । (ଦ୍ର.*ଇକନମିକ୍ ଆଣ୍ଡ୍ ପୋଲିଟିକ୍ୟାଲ୍ ଉଇକ୍ଲୀ*, ଜୁନ୍ ୨-୮, ୨୦୦୭ ସଂଖ୍ୟା, ପୃ.୨୦୭୭-୮୦) । ରାଷ୍ଟ୍ର ତେବେ ହସ୍ତକ୍ଷେପ କରିବ କେତେବେଳେ ? ଏ ପ୍ରଶ୍ନର ଗୁରୁତ୍ୱ ସମଧିକ, କାହିଁକିନା, ନ୍ୟାସନ୍ୟାଲ୍ ସ୍ୟାମ୍ପଲ୍ ସର୍ଭେ ଦେଖାଉଚି, ୧୯୯୯-୨୦୦୦ ବେଳକୁ ବେକାରଙ୍କ ସଂଖ୍ୟା ଥିଲା ୬.୫ ଲକ୍ଷ, ୨୦୦୪-୦୫ରେ ହୋଇଚି ୩୩.୩୭ଲକ୍ଷ ଖାଲି କମ୍ୟୁନିଷ୍ଟ୍-ଶାସିତ ପଶ୍ଚିମବଙ୍ଗରେ । ସାରା ଭାରତ ସକାଶେ ଏ ସଂଖ୍ୟା ଯଥାକ୍ରମେ ୨.୬୫ କୋଟି ଓ ୩.୫୨ କୋଟି । ବେକାରତ୍ୱ ଓ ତଜ୍ଜନିତ ଦାରିଦ୍ର୍ୟ ଯେ କ୍ରମବର୍ଦ୍ଧମାନ, ଅର୍ଥବ୍ୟବସ୍ଥାର ବିଶ୍ୱାୟନ ସତ୍ତ୍ୱେ, ଏକ୍ଷଣି ଏକେବାରେ ଅବିସମ୍ବାଦିତ । ଏ ପରିସ୍ଥିତିକୁ ମୁକାବିଲା କରିନପାରିଲେ ରାଷ୍ଟ୍ରର ଆପଣା ଅସ୍ତିତ୍ୱ ମଧ୍ୟ ବିପନ୍ନ ଏବଂ ମନେରଖିବା ଦରକାର, ତିନିକୋଟି ବାଉନଲକ୍ଷ ବେକାର ମାନେ, ସାରା ଓଡିଶା ପ୍ରଦେଶର ଜନସଂଖ୍ୟା । ଭାବିଲେ ଅବାକ୍ ଲାଗେ, ଖାଲି ରାଜନୀତିକ ଦଳର ନେତା ନୁହେଁ, ଲେଖକ ଓ ବୁଦ୍ଧଜନ ମଧ୍ୟ ଏ ପରିସ୍ଥିତିରେ ବିଚଳିତ ନୁହେଁ ।

ରାଜନୀତିକ ସମାଜ (=ରାଷ୍ଟ୍ର) ଓ ସୁଶୀଳ ସମାଜର ପାରସ୍ପରିକ ଯୋଗସୂତ୍ରର ଘଟମାନ ପରିବର୍ତ୍ତନକୁ ପ୍ରାସଙ୍ଗିକତା ଦେଇପାରେ କାଳମାତ୍ରିକ ଇଣ୍ଟେଲେକ୍‌ଚୁଆଲ୍ ପୃଷ୍ଠପଟ, ଅର୍ଥାତ୍ ସମସ୍ୟାପଟ ସହିତ ଦୃଶ୍ୟପଟର ଦ୍ୱାନ୍ଦ୍ୱିକତା । ତେବେ, ପରିବର୍ତ୍ତନକୁ ତ୍ୱରାନ୍ୱିତ କରିଚି ପ୍ରଧାନତଃ ପୁଞ୍ଜିବାଦୀ ଉତ୍ପାଦନରୀତି । ତା ସହିତ ଯୋଡ଼ିହୋଇ ରହିଚି ଖୋଲାବଜାର ମାଧ୍ୟମରେ ପଣ୍ୟବିପଣନ ଓ କର୍ମସଂସ୍ଥାନ । ପଶ୍ଚିମ ଗୋଲାର୍ଦ୍ଧରେ, ଏପରିକି ସୋଭିଏତ୍ ଇଉନିଅନ୍ କି ଜାପାନରେ ସୁଦ୍ଧା, ପରିବର୍ତ୍ତନର ଧାରାକୁ କେତେକାଂଶରେ ପ୍ରଭାବିତକରିଚି ଯୁଦ୍ଧ ସକାଶେ ସୈନ୍ୟସଂଗ୍ରହ । ସମାନ୍ତରାଳ ଧାରା ହୋଇପାରେ ପରାଧୀନ ଭାରତରେ ସ୍ୱାଧୀନତାସଂଗ୍ରାମ ସକାଶେ ମୋବିଲାଇଜେସନ୍ । ଉଭୟ କ୍ଷେତ୍ରରେ ଜାତୀୟତାବାଦ ହୋଇଚି ଚାଳିକଶକ୍ତି । ଲୋକଙ୍କ ଉପରେ କେହି କିଛି ଲଦିଦେଇନାହିଁ । ବିଶ୍ୱାସ କି ବିତର୍କ ଭଳି ଇଣ୍ଟେଲେକ୍‌ଚୁଆଲ୍ ଅନୁଶୀଳନ ମାଧ୍ୟମରେ ଲୋକ ସ୍ଥିରକରିଚନ୍ତି କର୍ତ୍ତବ୍ୟ, ପରିବର୍ତ୍ତନକୁ ଗ୍ରହଣକରଚନ୍ତି କିମ୍ବା ସହ୍ୟ କରିଚନ୍ତି । ସେଇ ସୂତ୍ରରେ, ସମାଜବାଦୀ ମଧ୍ୟ ଧନତାନ୍ତ୍ରିକ ମୋବିଲାଇଜେସନ୍‌କୁ ବିରୋଧକରିଚନ୍ତି, କେତେବେଳେ ପ୍ରକାଶ୍ୟ ତର୍କବିତର୍କ, କେତେବେଳେ ପାରସ୍ପରିକ ଆଲୋଚନା, କେତେବେଳେ ଅବା ବ୍ୟକ୍ତିବିଶେଷର ଧ୍ୟାନଧାରଣା ହୋଇଚି ସମ୍ବଳ; ଏବଂ ଧନତାନ୍ତ୍ରିକ ମୋବିଲାଇଜେସନ୍ ଯେହେତୁ ସୁଶୀଳସମାଜକୁ ଲକ୍ଷ୍ୟଭ୍ରଷ୍ଟ କରେ, ସାମାଜିକ ସଂହତିକୁ ବିପନ୍ନକରେ, କର୍ମସଂସ୍ଥାନ

ଓ ପଣ୍ୟବଣ୍ଟନରୁ କାଢ଼ିନିଏ ଭାରସାମ୍ୟ, ସମାଜବାଦୀଙ୍କୁ ପ୍ରେରିତକରିଚି ବୈଷୟିକ ବିବେଚନା ତୁଳନାରେ ନୀତିବୋଧ ଅଧିକ । ରାଜନୀତିକ ନେତା, ସମାଜବାଦୀ ଜାଣନ୍ତି, ଲୋକଙ୍କୁ ମୋବିଲାଇଜ୍ କରିପାରନ୍ତେ ନାହିଁ, ଲୋକଚେତନାରେ ଧନତନ୍ତ୍ର ଯଦି ପ୍ରତିଭାତ ହୁଅନ୍ତା ବିଷବତ୍ । ଗଣବିରୋଧ ଆକାରରେ ଆକୁମାରୀହିମାଳୟ ଗାନ୍ଧି ଯେ ଲୋକଙ୍କୁ ମୋବିଲାଇଜ୍ କରିପାରିଲେ, ତାର ଏକମାତ୍ର କାରଣ ସାଧାରଣ ମଣିଷର ଚେତନାର ବିକାଶ; ଶିକ୍ଷାଦୀକ୍ଷା ନୁହେଁ କି ଲାଭ-ନୁକ୍‌ସାନ ନୁହେଁ । କ୍ଷମତାହସ୍ତାନ୍ତର ଉତାରୁ ରାଷ୍ଟ୍ର ତେଣୁ ବର୍ଜନକରିଚି ପ୍ରହରୀର ଭୂମିକା । ଗ୍ରହଣକରିଚି ଗଣତନ୍ତ୍ର-ସମାଜତନ୍ତ୍ର-ଧର୍ମନିରପେକ୍ଷତା ନୀତି । ଅଥଚ ବଜାର-ଅର୍ଥନୀତିର ଅଭ୍ୟୁଦୟ ଘଟିଚି ଗଙ୍ଗା-ଉପତ୍ୟକାରେ ରାଷ୍ଟ୍ରନିର୍ମାଣର ନୀତି ଯେତେବେଳେ ହୋଇଚି ଶୋଷଣପ୍ରବଣ (ଦ୍ର.ଚାଣକ୍ୟଙ୍କ *ଅର୍ଥଶାସ୍ତ୍ର* ), ଦମନପ୍ରବଣ(ଦ୍ର.*ମନୁସ୍ମୃତି* ) ଓ ନାଗରିକ-ସ୍ୱାଧୀନତାର ପ୍ରତୀପ (ଗୁପ୍ତଚର, ବେଶ୍ୟା, ଜ୍ୟୋତିଷ ନଜରରଖିଚନ୍ତି ଲୋକଙ୍କ ଗତିବିଧି ଉପରେ), ଯଦିଓ ରାଷ୍ଟ୍ର ଥିଲା ସ୍ୱାଧୀନ ଓ ଅର୍ଥନୀତି ମୁକ୍ତକଚ୍ଛ । ଅର୍ଥାତ୍, ସିଭିଲ୍ ସୋସାଇଟି ଥିଲାନାହିଁ ଅଟୋନୋମସ୍ କିମ୍ବା ରାଷ୍ଟ୍ର ଜନକଲ୍ୟାଣ ପ୍ରତି ଦାୟବଦ୍ଧ । ମହାବୀର କି ବୁଦ୍ଧ ପ୍ରତିବାଦ କରିଚନ୍ତି ଅବଶ୍ୟ, ମାତ୍ର ରାଷ୍ଟ୍ର ସେମାନଙ୍କୁ କରିନେଇଚି ଆତ୍ମସାତ୍ । ବିଂଶଶତକରେ ପହଞ୍ଚି ତତ୍ତ୍ୱଜ୍ଞ ତେଣୁ ଭାବିଚନ୍ତି, ତଥାକଥିତ ଏଇ ଗଣତନ୍ତ୍ର ସମାଜତନ୍ତ୍ର ନୀତି ସୁଶୀଳସମାଜକୁ ସ୍ୱନିର୍ଭରକରିନାହିଁ ଜମାରୁ । ନାଗରିକସମାଜ ବରଂ ରାଷ୍ଟ୍ର ଉପରେ ବୋଝହୋଇ ରହିଚି କ୍ରମାଗତ, ଏବଂ ଫଳତଃ, ଲୋକଙ୍କ ଭିତରେ ପରିଜନସୁଲଭ ଆତ୍ମୀୟତା ହ୍ରାସପାଇଚି ସମାନୁପାତରେ । ସେ ବ୍ୟବଧାନକୁ ପୁଣି ପ୍ରସାରିତକରୁଚି ଜନକଲ୍ୟାଣର ବହୁବିଧ ପ୍ରକଳ୍ପ, ଯା ରାଷ୍ଟ୍ରର ଅର୍ଥାନୁକୂଲ୍ୟରେ ରାଷ୍ଟ୍ରଦ୍ୱାରା ହିଁ ହୁଏ ସଂପାଦିତ । ନାଗରିକ ତେଣୁ ନିଜ ଅଜାଣତରେ ହୋଇଯାଇଚି ରାଜାର ପ୍ରଜା କିମ୍ବା ଅମଲାତନ୍ତ୍ରର ଖାତକ । କର୍ତ୍ତାର ସିଂହାସନରୁ ଗ୍ରହୀତାର ଅଧସ୍ତନତାକୁ ଅବତରଣ ତେଣୁ ସମକାଳର ସୁଶୀଳସମାଜର ଦୃଷ୍ଟିକଟୁ ଲକ୍ଷଣ । ଐକ୍ୟ ବା ସଲିଡାରିଟିର ଅନ୍ତରାୟ ନୁହେଁ କେବଳ, ଏ ଲକ୍ଷଣ ନାଗରିକସମାଜର ସାମୂହିକ ଚେତନାବିକାଶର ଅବକ୍ଷୟ । ଜନମଙ୍ଗଳ ରାଷ୍ଟ୍ରର ଚରିତ୍ର ବଦଳିଯିବା ମାନେ ସମସ୍ତ ଜନକଲ୍ୟାଣ ପ୍ରକଳ୍ପର ପରିଚାଳନାକୁ ନାଗରିକସମାଜ ହାତରେ ଛାଡ଼ିଦେବା, ଏବଂ ସଂଜ୍ଞା ଓ ସାରବତ୍ତା ମଧ୍ୟସ୍ଥ ସଂକଟରୁ ସୁଶୀଳସମାଜକୁ ଉଦ୍ଧାରକରିବାକୁ ରାଷ୍ଟ୍ରଠୁଁ ସ୍ୱାଧୀନ ଅବସ୍ଥାନରୁ ପରାର୍ଥବାଦୀ ଦେଶହିତୈଷୀଙ୍କ ଉଦ୍ୟୋଗଉଦ୍ୟମ । ଆନୁପୂର୍ବିକ ଏ ବର୍ଣ୍ଣନାରୁ ସୁସ୍ପଷ୍ଟ ଯେ କର୍ତ୍ତା ଭୂମିକାରେ ବ୍ୟକ୍ତି-ମନୁଷ୍ୟ ଆଦୌ ଅପରିବର୍ତ୍ତନୀୟ ନୁହେଁ । ତାର ସ୍ୱାଧୀନ କର୍ତ୍ତୃତ୍ୱର ଧାରଣାଟା ତେଣୁ ସମର୍ଥନଯୋଗ୍ୟ ନୁହେଁ ।

ଏବଂ ବିଦ୍ୟମାନ ଓଡ଼ିଶାକୁ ଏକ ଅବିଭାଜ୍ୟ ନାଗରିକସମାଜ ଗଣ୍ୟକଲେ, ଦେଖିହେବ, ତାର ରାଜନୀତିକ ସମାଜ (ରାଷ୍ଟ୍ର ପରିଚୟ) ପ୍ରତିଷ୍ଠାପାଇଛି ୧୯୩୬ ଖ୍ରୀଷ୍ଟାବ୍ଦରେ, ବାରବର୍ଷ ଉତାରୁ ସେଥିରେ ଅଙ୍ଗୀଭୂତ ହୋଇଛି ଅଠର ଗଡ଼ଜାତ । ୧୯୪୭ ପର୍ଯ୍ୟନ୍ତ ଭାରତ ଥିଲା ଇଂରେଜ୍ ଉପନିବେଶ, ସ୍ଥାନୀୟ ବୁଦ୍ଧିଜୀବୀ ତେଣୁ ରାଷ୍ଟ୍ରପରିସରରେ ଆପଣା ନେତୃତ୍ୱକୁ ପରୀକ୍ଷାକରିବାକୁ ସୁଯୋଗ ପାଇନାହାଁନ୍ତି; ରାଷ୍ଟ୍ରକ୍ଷମତାରୁ ବଞ୍ଚିତ ସ୍ୱନିର୍ଭର ନାଗରିକସମାଜକୁ ହିଁ କରିଚନ୍ତି କର୍ମକ୍ଷେତ୍ର । ୧୯୧୧-୧୨ ପର୍ଯ୍ୟନ୍ତ ଏ ନାଗରିକସମାଜ ରହିଚି ବେଙ୍ଗଲ୍ ପ୍ରେସିଡେନ୍ସିର ଅଂଶବିଶେଷ, ଏବଂ କଲିକତା ଯେହେତୁ ତଦବଧି ଥିଲା ଭାରତବର୍ଷର ରାଜଧାନୀ, କଲିକତାରେ ଯେତେବେଳେ ଯା ଘଟିଚି, ତା ପ୍ରତିଧ୍ୱନିରେ ମୁଖରିତହୋଇଚି ଓଡ଼ିଶା । ସେଇ ଅର୍ଥରେ, ବଙ୍ଗ ଓ ଓଡ଼ିଶାର ପ୍ରଚଳିତ ଆତ୍ମପରିଚୟ ଗଢ଼ିଉଠିଚି ଉନବିଂଶଶତକ ମଧ୍ୟଭାଗରୁ । ଆଗରୁ ନୁହେଁ, କାହିଁକିନା, ୧୯୦୫ରେ କର୍ଜନ୍ ବଙ୍ଗଭଙ୍ଗ କରିବା ପର୍ଯ୍ୟନ୍ତ ଭାଷାଭିତ୍ତିରେ ଆତ୍ମପରିଚୟ ଗଠନ ଅଜ୍ଞାତ ଥିଲା ଭାରତରେ । ଅର୍ଥାତ୍ ଭାଷା ଏକ କ୍ଷମତା- କଥାଟା ସୁଶୀଳସମାଜର ଚେତନାକୁ ଛୁଇଁନାହିଁ । ଏବେ ଯେତେବେଳେ ବୁଝିପାରିଲେ, ଭାଷାଜନିତ କ୍ଷମତା ହୋଇଗଲା କ୍ଷମତାରାଜନୀତିର ଉପାଦାନ, କାହିଁକିନା, କ୍ଷମତା ମାତ୍ରକେ ସ୍ୱଭାବତଃ ରାଜନୀତିକ ସାମର୍ଥ୍ୟ । ପରାଧୀନ ସମାଜରେ ରାଜନୀତି ଥିଲା ସାଧାରଣଲୋକର ଧରାଛୁଆଁ ବାହାରେ, କ୍ଷମତା ଅର୍ଜନକରିବାକୁ ତେଣୁ ଚେଷ୍ଟାକରାଯାଇଚି ନାଗରିକସମାଜ ଭିତରୁ, ଏବଂ ସେ ଉଦ୍ୟମକୁ କହନ୍ତୁ ସମାଜସଂସ୍କାର । ଯେପରି, ସତୀଦାହ ବିରୋଧ, ବିଧବାବିବାହ ପ୍ରବର୍ତ୍ତନ, ପିତୁଳାପୂଜା ବର୍ଜନ, ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି । ବଙ୍ଗାଳୀ କି ଓଡ଼ିଆ ନାରୀର ଚିରାଚରିତ ଅବସ୍ଥାନରେ ହେରଫେର୍ ହୋଇନାହିଁ ଅବଶ୍ୟ; ନବଜାଗରଣ ବୋଲି ଯାହାକୁ କୁହାଯାଉଚି, ସବର୍ଣ୍ଣ ହିନ୍ଦୁଙ୍କ ଛଡ଼ା ସ୍ପର୍ଶକରିନାହିଁ ଅନ୍ୟ କାହାରିକୁ । କରିଚି, ସ୍ୱାଧୀନତା ଆସିବା ଉତାରୁ ନାରୀ ଯେତେବେଳେ ପାଇଲେ ସାବାଳକ ଭୋଟ୍-ଅଧିକାର । କିନ୍ତୁ ଉନବିଂଶ ଶତକ ପ୍ରାରମ୍ଭରେ ଘଟିଥିଲା ଯୋଉ ଶିକ୍ଷାବିସ୍ତାର, ସୁଶୀଳସମାଜ ଉପରେ ତାର ପ୍ରଭାବ ଥିଲା ସୁଦୂରପ୍ରସାରୀ, କାହିଁକିନା, ଚାଟଶାଳୀ ମାଦ୍ରାସା ସଂସ୍କୃତଟୋଲ୍ ବଦଳରେ ଆସିଚି ନୂଆ ରକମ ଇସ୍କୁଲ୍ । ଓଡ଼ିଆ ସର୍ବସାଧାରଣ ବିବାକ ନିରକ୍ଷର ନଥିଲେ କି ମରହଟିଆ; ମାତ୍ର ଏ ଯୋଉ ଶିକ୍ଷାବ୍ୟବସ୍ଥା ଚାଲୁହେଲା, ସେଇଥିରୁ ତିଆରିହେଲା ଆଧୁନିକ ଓଡ଼ିଆ ଗଦ୍ୟ । ଚିନ୍ତାଭାବନା, ଆଳାପ-ଆଲୋଚନା, ତର୍କ-ବିତର୍କର ମାଧ୍ୟମ ସଦାସର୍ବଦା ଗଦ୍ୟ । ଅତୀତରେ ଯୋଉ ଗଦ୍ୟ ଥିଲା, ତା ସହିତ ଏଇ ନୂଆ ମାଧ୍ୟମର ସାମଞ୍ଜସ୍ୟ ଅକିଞ୍ଚିତକର, ଅସାମଞ୍ଜସ୍ୟ ହିଁ ଅଧିକ ଓ ପ୍ରକଟ । ଦରକାରପଡ଼ିଚି ସେଥିପାଇଁ ବର୍ଣ୍ଣପରିଚୟ, ବ୍ୟାକରଣ, ରୁଢ଼ୀପ୍ରୟୋଗର

ଉଦାହରଣ (ବାଚ୍ୟାର୍ଥ-ଭାବାର୍ଥର ଲୌକିକ ଭିନ୍ନତା) । ଏ ଉଦ୍ୟମର ପଥିକୃତ୍, ବେଙ୍ଗଲ୍ ପ୍ରେସିଡେନ୍ସିରେ ଅନ୍ତତଃ, ଖ୍ରୀଷ୍ଟାନ୍ ମିଶନାରୀ; କିନ୍ତୁ ଉଦ୍ଦେଶ୍ୟ ଥିଲା ଲୋକଶିକ୍ଷା ନୁହେଁ, ଧର୍ମାନ୍ତରଣ । ମେକଲେଙ୍କ ମିନିଟ୍ (୧୮୩୫) କାର୍ଯ୍ୟକାରୀ ହେବା ଉତାରୁ ମଧ୍ୟବିତ୍ତର ଦମ୍ଭ ବଢ଼ିଚି, କାହିଁକିନା, ଇଂରେଜୀ ଭାଷାରେ ପାରଦର୍ଶିତା ହୋଇଚି ଚାକିରିବାକିରି ସକାଶେ ପାସ୍‌ପୋଟ୍ । ହେଲେସୁଦ୍ଧା, ଛପାଖାନା ଦୌଲତରୁ ବ୍ରାତ୍ୟଜନ ଓ ଗୃହବନ୍ଦୀ ନାରୀ ମଧ୍ୟ ଆସିଚି ଖବରକାଗଜ ସଂସ୍ପର୍ଶରେ । ସାହିତ୍ୟ ଏଥର କୃଷ୍ଣଙ୍କ ରତିକ୍ରୀଡ଼ା କି ସୀତାଙ୍କ ବନବାସ ବର୍ଣ୍ଣନାକରିବା ପରିବର୍ତ୍ତେ ଧରିଚି ଅଧର୍ମୀୟ (ସେକିଉଲାର୍) ପ୍ରସଙ୍ଗ । ଇଂରେଜୀ ଓ ସଂସ୍କୃତରୁ ମଧ୍ୟ ଅନୁବାଦକରିଚନ୍ତି ନବଶିକ୍ଷିତ । ତହିଁଉତାରୁ, ନ'ଅଙ୍କ ଦୁର୍ଭିକ୍ଷ ହେଉ, ବଢ଼ିମରୁଡ଼ି ହେଉ କି ଜମିଦାରି / ଗଡ଼ଜାତରେ ପ୍ରଜାମେଳି ହେଉ, ଆଲୋଚିତହୋଇଚି ଖବରକାଗଜରେ ନିୟମିତ ଓଡ଼ିଆଭାଷାରେ । ସଂସ୍କୃତରେ ନୁହେଁ, ଫାର୍ସୀରେ ନୁହେଁ କି ଇଂରେଜୀରେ ନୁହେଁ । ସଂଖ୍ୟା କି ପରିମାଣ ବିଚାରକଲେ ବୁଝିବା ସହଜ ନୁହେଁ; ମାତ୍ର ରାଷ୍ଟ୍ରର ଅନ୍ୟାୟ ଅବହେଳା ବିରୋଧରେ ନାଗରିକସମାଜକୁ ଭାଷା ଯେ ଐକବଦ୍ଧ କରିଚି ଊନବିଂଶତକ ଦ୍ୱିତୀୟାର୍ଦ୍ଧରେ, ସେକଥା ସ୍ୱତଃସିଦ୍ଧ । ଗୋପବନ୍ଧୁ ଦାଶ ବୁଝିଥିଲେ ବୋଲି, କାଢ଼ିଥିଲେ *ସମାଜ* (ନାମକରଣରେ ତାତ୍ପର୍ଯ୍ୟ ଅଛି), ସତ୍ୟବାଦୀରେ ବସାଇଥିଲେ ହାଇସ୍କୁଲ୍ । ଅନ୍ୟ ଶବ୍ଦରେ, ଶିକ୍ଷା ଯେ ନାଗରିକ ସଚେତନତାର ମୂଳ ଉପାଦାନ ଏବଂ ତାର ବାହନ ଯେ ଏକମାତ୍ର ମାତୃଭାଷା, ଏ ଉପଲବ୍ଧି ଓଡ଼ିଶା ଇତିହାସରେ ପ୍ରଥମେ ଦେଖାଦେଇଚି ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ । ରାଷ୍ଟ୍ରର ବିନା ସହାୟତାରେ । ଉଦ୍ୟମ କରିଥିଲେ ନିଃସଙ୍ଗ କେତେ ପଦାର୍ଥବାଦୀ । ତାଙ୍କ ଭିତରେ ଓଡ଼ିଆ, ବଙ୍ଗାଳୀ ଉଭୟ ରହିଥିଲେ । ରକ୍ଷଣଶୀଳ ଓ ବିଦ୍ରୋହୀଙ୍କ ଭିତରେ ଦଳାଦଳି ମଧ୍ୟ ଲାଗିଥିଲା, ମାତ୍ର ଲଢ଼ାଇର ଭାଷା ଥିଲା ଏକମାତ୍ର ଓଡ଼ିଆ । ଅର୍ଥାତ୍, ଏଇ ପ୍ରଥମ, ନିଜକୁ ଏକ ସ୍ୱତନ୍ତ୍ର 'ଜାତି'(ନେସନ୍) ଭାବରେ ଚିହ୍ନିବାକୁ ଶିଖିଲେ ଓଡ଼ିଆ । 'ନେସନ୍' ପସନ୍ଦ ନହେଲେ, ପଢ଼ନ୍ତୁ ନ୍ୟାସନାଲିଟି । କହିବା ଦରକାରପଡୁଚି, କାହିଁକିନା, ଇତିପୂର୍ବରୁ ଓଡ଼ିଶାର ନାଗରିକସମାଜ ଥିଲା, ଏରିକ୍ ହବ୍‌ସ୍‌ବଅମ୍ ଯାହାକୁ କହିଚନ୍ତି 'ପ୍ରି ପୋଲିଟିକାଲ୍' । ପ୍ରାକ୍‌ରାଜନୀତିକ ଜାଗାରେ ଆତ୍ମପ୍ରକାଶ କରିଚି ବିଧିବଦ୍ଧ ରାଜନୀତି । ରାଜଦରବାରର ଚକ୍ରାନ୍ତ ନୁହେଁ, ସାଧାରଣଲୋକ ଯୋଉଥିରେ ଅଂଶ ନେଇପାରନ୍ତି, ସେଇଭଳି ଗଣରାଜନୀତି; ସାହିତ୍ୟ ସେ କାମର ସହଯୋଗୀ ମାତ୍ର । ସେକିଉଲାର୍ ଏଇ ମାନସଲୋକ ଭିତରକୁ ବେଙ୍ଗଲ୍ ପ୍ରେସିଡେନ୍ସିରେ ଜନସାଧାରଣଙ୍କୁ ଯିଏ ହାତଧରି ନେଇଯାଇଥିଲେ ସବାଆଗେ, ତାଙ୍କ ନାଁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ।

## ବିଦ୍ୟାସାଗର

ବେଙ୍ଗଲ୍ ପ୍ରେସିଡେନ୍ସିର ସୂତ୍ରପାତ ୧୮୦୦ ଖ୍ରୀଷ୍ଟାବ୍ଦରେ, ୧୮୦୩ ରେ ମରାଠାଙ୍କୁ ହଟାଇଦେଇ ଇଂରେଜ୍ ଦଖଲକରିଚି ଓଡ଼ିଶା । ବଙ୍ଗ-ବିହାର-ଓଡ଼ିଶାର ସୁବେଦାର୍ ମୁର୍ସିଦ୍ କୁଲି ଖାଁ ମରଠାଙ୍କ ସାଙ୍ଗରେ ସନ୍ଧିକଲାବେଳେ, ଓଡ଼ିଶାକୁ ସିନା ସମର୍ପଣକରିଚନ୍ତି, ମେଦିନୀପୁରକୁ ରଖିଚନ୍ତି ନିଜ ଅକ୍ତିଆରରେ । ସେଇ ମେଦିନୀପୁରର ଘାଟାଲ ମହକୁମାର ବୀରସିଂହ ଗାଁରେ ବିଦ୍ୟାସାଗରଙ୍କ ଜନ୍ମ ୧୮୨୦ ଖ୍ରୀଷ୍ଟାବ୍ଦରେ, ସେତେବେଳକୁ ରୂପନାରାୟଣ ନଦୀ ପର୍ଯ୍ୟନ୍ତ ଅଂଚଳ ତଥାପି ରହିଚି ଓଡ଼ିଶା ଡ଼ିଭିସନ୍ ଅନ୍ତର୍ଗତ । ସେଥିପାଇଁ ବିଦ୍ୟାସାଗର ବଟୁଆ ରଖିଥିଲେ ପାନଖାଇବାକୁ, ବେଣ୍ଟି ରଖିଥିଲେ, ଜାମା ପିନ୍ଧୁନଥିଲେ, ଏବଂ କାରଣ ପଚାରିଲେ କହୁଥିଲେ 'ଆମି ତ ଉଡ଼େ' । ମାତ୍ର ସୋକ୍ରଟିଜ୍‌ଙ୍କ ତଥାକଥିତ 'ଭରଟିଉ' ଜନ୍ ଷ୍ଟୁଆର୍ଟ ମିଲ୍ (୧୮୦୬-୭୯) ଙ୍କ ପାଖରେ ପହଞ୍ଚିବା ବେଳକୁ ଘଟିଯାଇଛି ସଦ୍‌ଗୁଣର ଆମୂଳ ରୂପାନ୍ତର; ଆତ୍ମୋନ୍ନତି ସକାଶେ ଉଦ୍ୟମ ଓ ସାମାଜିକ ଦାୟିତ୍ୱପାଳନ ବିବେଚିତହୋଇଛି ସଦ୍‌ଗୁଣ । ୧୮୨୯, ଅର୍ଥାତ୍ ନ'ବର୍ଷ ବୟସରେ ବୀରସିଂହରୁ କଲିକତା ଆସିଛନ୍ତି ଈଶ୍ୱରଚନ୍ଦ୍ର ଆଉ ପଢ଼ିଚନ୍ତି, ଇଂରେଜୀ ନୁହେଁ, ସଂସ୍କୃତ । ସେଇ ସଂସ୍କୃତ କଲେଜ୍‌ର ଅଧ୍ୟକ୍ଷ ମଧ୍ୟ ହୋଇଚନ୍ତି ଯଥାକାଳେ । ଏବଂ ଆମୃତ୍ୟୁ (୧୮୯୧) ରହିଯାଇଚନ୍ତି କଲିକତା ନଗରୀରେ । ସେତେବେଳେ (୧୮୯୧) ରବୀନ୍ଦ୍ରନାଥ ଲେଖନ୍ତି: ତିନି ଯେ ବାଙ୍ଗାଲି ବଡ଼ଲୋକ୍ ଛିଲେନ୍ ତାହା ନହେ, ତିନି ରୀତିମତ ହିନ୍ଦୁ ଛିଲେନ୍ ତାହାଓ ନହେ– ତିନି ତାହା ଅପେକ୍ଷାଓ ଅନେକ୍ ବେଶି ବଡ଼ୋ ଛିଲେନ୍, ତିନି ଯଥାର୍ଥ ମାନୁଷ୍ ଛିଲେନ୍ । ...ବିଶ୍ୱକର୍ମା ଯେଖାନେ ଚାର୍‌କୋଟି ବାଙ୍ଗାଲି ନିର୍ମାଣ କରିତେଛିଲେନ୍ ସେଖାନେ ହଠାତ୍ ଦୁଇଏକ୍‌ଜନ୍ ମାନୁଷ୍ ଗଡ଼ିୟା ବସେନ୍ କେନ, ତାହା ବଲା କଠିନ୍ । ବିଦ୍ୟାସାଗର୍ ଏଇ ବଙ୍ଗଦେଶେ ଏକକ୍ ଛିଲେନ୍ । ଏଖାନେ ଯେନ ତାଁହାର୍ ସ୍ୱଜାତି ସୋଦର୍ କେଉ ଛିଲନା ।

ଏକକ, ଭାବ ଆଉ କର୍ମଜଗତ ଯେହେତୁ ଥିଲା ଆଦ୍ୟୋପାନ୍ତ ସେକିଉଲାର୍ । ମନନ ଓ କର୍ମତତ୍ପରତାର ସେଇ ନିରନ୍ଧ୍ର ଅନ୍ୱୟ ତାଙ୍କ ଚରିତ୍ରର ଇଣ୍ଟେଗ୍ରିଟି । ଅଥଚ ଯୋଉ ପରିବାରରେ ଜନ୍ମିଥିଲେ, ଯୋଉ ଶିକ୍ଷାଦୀକ୍ଷାରେ ଯୌବନ ହୋଇଥିଲା ଅତିବାହିତ, ଯୋଉ ମେଧାବୀ ପରିବେଶରେ ନିଜ କୃତ୍ୟସୂଚି ସ୍ଥିରକରିଥିଲେ ଶିକ୍ଷା ଓ ସମାଜସଂସ୍କାର ସକାଶେ, କୋଉ ଗୋଟିକହେଲେ ଥିଲାନାହିଁ ସେକିଉଲାର୍ । 'ସେକିଉଲାର୍'ର ତର୍ଜମା କରାଯାଇଚି 'ଧର୍ମନିରପେକ୍ଷ', ଭାରତ ଭଳି ବହୁମାତ୍ରିକ ସମାଜକୁ ଆଖିରେ ରଖି, ଆଉଏକ ଅତିରିକ୍ତ ମାତ୍ରା ସେଥିରେ ଯୋଡିଦିଆଯାଇଚି:

ଅସାମ୍ପ୍ରଦାୟିକ ବା ନନ୍‌କମିଉନାଲ୍ । ମାତ୍ର ଏ ବ୍ୟାଖ୍ୟା ଅର୍ବାଚୀନ, ଶହେବର୍ଷରୁ ବେଶି ନୁହେଁ ତା ବୁନିଆଦ୍ । ନୂତନ ବ୍ୟାଖ୍ୟାର ଅର୍ଥ: ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନନିର୍ବାହରେ ଲୋକ ଧର୍ମବିଶ୍ୱାସୀ ହୋଇପାରେ, ବାଧାନାହିଁ; ଖାଲି ରାଜନୀତି ସାଙ୍ଗରେ ଧର୍ମକୁ ଗୋଳାଇପକାଇଲେ ହୋଇଯିବ କମିଉନାଲ୍ । ବୁଦ୍ଧିଜୀବୀ ସେଥିପାଇଁ ସେକିଉଲାରିଜ୍ମ ମାନେ ବୁଝନ୍ତି କେବଳ ରାଜନୀତିକ୍ଷେତ୍ରରେ ଧର୍ମନିରପେକ୍ଷତା; ସେଇ ଭାବର ସଂପ୍ରସାରଣରେ ରାମକୃଷ୍ଣ ପରମହଂସ ଓ ତସ୍ୟ ଶିଷ୍ୟ ବିବେକାନନ୍ଦଙ୍କୁ କୁହାଯାଏ ସେକିଉଲାର୍ । ଲାଟିନ୍ *suecularis* କିନ୍ତୁ ନିଷ୍ପନ୍ନହୋଇଚି saeculum ଧାତୁରୁ । ଆକ୍ଷରିକ ଅର୍ଥ, ଇଂରେଜିରେ, ଜେନେରେସନ୍ ବା ପ୍ରଜନ୍ମ । 'ଯୁଗ' ମଧ୍ୟ କୁହାଯାଇପାରେ । ଖ୍ରୀଷ୍ଟାନ୍ ଧର୍ମମଣ୍ଡଳି *ସେକିଉଲାରିସ୍* କହିଲେ ବୁଝନ୍ତି 'ଜଗତ୍ ସଙ୍କ୍ରାନ୍ତ'; ମାନେ, ପରଲୋକ ନୁହେଁ, ସାକ୍ଷାତ୍ ଇହଲୋକ ସଂକ୍ରାନ୍ତ । କିନ୍ତୁ ଫରାସୀ ଭାଷାରେ *seculer* କହିଲେ ବୁଝାଏ, ସାହିତ୍ୟ, ଇତିହାସ କିମ୍ବା ଶିଳ୍ପକଳା ଯା, ସାଧାରଣତଃ, ଧର୍ମୀୟ ଅଭିବ୍ୟକ୍ତି ବାହାରେ ରହିଥିବା ସର୍ଜନାକର୍ମ । ସେଥିପାଇଁ, ଅଧର୍ମୀୟ ଶିକ୍ଷାବ୍ୟବସ୍ଥାକୁ କୁହାଯାଏ ସେକିଉଲାର୍ ଏଡୁକେସନ୍ । ଏ ମର୍ମାର୍ଥ ଚାଲୁହୋଇଚି ଷୋଡ଼ଶ ଶତାବ୍ଦୀରୁ, ଉନବିଂଶ ଶତକରୁ ଯୋଡ଼ାଯାଇଚି ନୂତନ ଭାବାର୍ଥ, ଯେପରି, ଜର୍ଜ ଜେକବ୍ ହୋଲିୟକ୍ (୧୮୧୯-୧୯୦୬) ଡିସେମ୍ବର୍ ୧୮୫୧ରେ ଲେଖିଚନ୍ତି, ସେକିଉଲାର୍ ସେଇ ମତାଦର୍ଶ ନୀତିବୋଧ ଯୋଉଠି ଇହଜୀବନର ଶୁଭାଶୁଭର ନିର୍ଦ୍ଧାରକ; ଏବଂ ସେଥିପାଇଁ, ଈଶ୍ୱର ବା ପରଲୋକ ବିଷୟକ କଳ୍ପନାଜଳ୍ପନା ନିରର୍ଥକ । ଏ ଆଦର୍ଶ ଅନୁସରଣରେ ଶିକ୍ଷାକ୍ଷେତ୍ରରେ ଏଇ ମତ ଜୋର୍‌ପାଇଚି ଯେ, ସାଧାରଣ ଶିକ୍ଷାକୁ, ବିଶେଷତଃ ରାଷ୍ଟ୍ର-ବ୍ୟୟରେ ପରିଚାଳିତ ଶିକ୍ଷାକୁ, ହେବାକୁ ପଡ଼ିବ ଶତକଡ଼ା ଶହେ ଅ-ଧର୍ମୀୟ । ଅ-ଧର୍ମୀୟ ମାନେ, ବୋଲିବା ବାହୁଲ୍ୟ, ନୀତିନିରପେକ୍ଷ ନୁହେଁ, କାହିଁକିନା, ସୋକ୍ରେଟିଜ୍‌ଙ୍କ ଅମଳରୁ ଶିକ୍ଷା ସାଙ୍ଗରେ ଯୋଡ଼ିହୋଇ ରହିଚି virtue ଭଳି ବିମୂର୍ତ୍ତ ନାଗରିକ ଗୁଣାବଳୀ ।

'ଭାରତ-ପଥିକ' ଆଖ୍ୟାରେ ଭୂଷିତ ରାଜା ରାମମୋହନ ରାୟଙ୍କ ଜନ୍ମ ୧୭୭୪ ଖ୍ରୀଷ୍ଟାବ୍ଦରେ; ଅର୍ଥାତ୍ କ୍ଲାଇଭ୍ ପଲାସୀଯୁଦ୍ଧରେ ସିରାଜ୍-ଉ-ଦୌଲାଙ୍କୁ ହରାଇ ଭାରତରେ ଇଂରେଜ୍‌ଶାସନ ପ୍ରତିଷ୍ଠାକରିବା ମାତ୍ର ସତରବର୍ଷ ଉତାରୁ, ଏବଂ ବିଦ୍ୟାସାଗରଙ୍କ ଦି'ପୁରୁଷ ପୂର୍ବରୁ । ରାମମୋହନ ସର୍ବପ୍ରଥମ ଭାରତୀୟ ଇଉରୋପ ଯାଇ ସ୍ୱଚକ୍ଷୁରେ ଯିଏ ଦେଖିଆସିଥିଲେ ହାଲ୍‌ହକିକତ୍ । ଧର୍ମ ଓ ଦର୍ଶନ ଥିଲା ସେତେବେଳେ ଇଣ୍ଟେଲେକ୍‌ଚୁଆଲ୍ ସକାଶେ ପ୍ରଧାନ ପ୍ରଶ୍ନ; ଜାତୀୟତାବାଦର ଉନ୍ମେଷ ଘଟିଚି ବିଂଶଶତକ ଅୟମାରମ୍ଭରେ । ଏବଂ ସେତେବେଳେ, ରାମମୋହନ ଯେହେତୁ

ଇଂରେଜୀଶିକ୍ଷାକୁ ପୂର୍ଣ୍ଣପ୍ରାଣରେ ସମର୍ଥନକରିଥିଲେ, କଟାକ୍ଷକରି ଗାନ୍ଧି କହିଚନ୍ତି ତାଙ୍କୁ 'ବାମନ' । ସନ୍ଦେହନାହିଁ, ଇଉରୋପୀୟ ଶିକ୍ଷାଦୀକ୍ଷାର ପକ୍ଷପାତୀ ରାମମୋହନ ବ୍ରାହ୍ମଧର୍ମ ପ୍ରବର୍ତ୍ତନକରି ବିଜାତୀୟ ଏକ ଦାର୍ଶନିକତାକୁ ପ୍ରତିଷ୍ଠାଦେବାକୁ ଚେଷ୍ଟାକରିଚନ୍ତି; ଏପରିକି, ବିଲାତରେ ମଧ୍ୟ ରବର୍ଟ ଓୟେନ୍ (୧୭୭୧-୧୮୫୮)ଙ୍କ ସଭାକୁ ଯିବାକୁ ପୂର୍ବସର୍ତ୍ତ ଆରୋପକରିଚନ୍ତି: ସଭା ଆରମ୍ଭରେ ଭଗବାନଙ୍କ କଥା ଆଲୋଚନା କରିବାକୁ ପଡ଼ିବ, କାହିଁକିନା, ଓୟେନ୍ ଥିଲେ ସମାଜବାଦୀ, ଯଦିଓ ଇଉଟୋପିଆନ୍ । ଅନ୍ୟ ଶବ୍ଦରେ, ସମାଜବାଦୀ ଭାବଧାରା ସଂସ୍ପର୍ଶରେ ଆସି ସୁଦ୍ଧା ରାମମୋହନ ଈଶ୍ୱରଙ୍କୁ ଛାଡ଼ିବାକୁ ରାଜିନୁହନ୍ତି । ଚେତନାର ଏ ସୀମାବଦ୍ଧତା ଲଦିଦେଇଚି ତାଙ୍କ ସମକାଳ; ଯେପରି ଆରିଷ୍ଟୋଟ୍ଲଙ୍କ ଭଳି ମନୀଷୀ ମଧ୍ୟ ମାନିନେଇଚନ୍ତି ଆଥେନ୍ସର ଦାସପ୍ରଥା । ମାର୍କ୍ସ ତଥାପି କହିଚନ୍ତି, ଆରିଷ୍ଟୋଟ୍ଲ ଥିଲେ ପୂର୍ବକାଳର ଚିନ୍ତାଶୀଳ ଲୋକଙ୍କ ଭିତରେ ମହତ୍ତମ । ସମାଜ-ବିବର୍ତ୍ତନ ଉପରେ କାଳର ପ୍ରଭାବକୁ ହସି ଉଡ଼ାଇ ନଦେଲେ, ବ୍ୟକ୍ତିଗତ ଏଇ ସୀମାବଦ୍ଧତାକୁ ବୁଝିବା ଦୁଷ୍କର ନୁହେଁ । ଅର୍ଥାତ୍, ରାମମୋହନ ଯେ ଜମାରୁ କୂପମଣ୍ଡୁକ ନୁହେଁ ଏବଂ ମନନ ଓ କର୍ମଜଗତରେ ବିଦ୍ୟାସାଗରଙ୍କ ପୂର୍ବସୂରୀ, ସେଇ ସ୍ୱୀକୃତିରୁ ତାଙ୍କୁ ବଞ୍ଚିତକରିବା ଗାନ୍ଧି ଭଳି ଜାତୀୟତାବାଦୀଙ୍କୁ ଶୋଭାପାଏନା । ରବୀନ୍ଦ୍ରନାଥଙ୍କ ଉଷ୍ମାର ଜବାବରେ ଗାନ୍ଧି ଲେଖିଚନ୍ତି, (ଦ୍ର. *ଇୟଙ୍ଗ୍ ଇଣ୍ଡିଆ* ତା ୫.୧୧.୧୯୨୫) This was on the Cuttack's sands now four years ago. What I do remember having said was that it was possible to attain highest culture without western education. And when someone mentioned Ram Mohun Roy, I remember having said that he was a pigmy compared to the unknown authors, say, of the *Upanishads* । ରାମମୋହନ କି ଗାନ୍ଧି, କେହିହେଲେ ତେଣୁ ସେକିଉଲାର୍ ନୁହେଁ; ଜଣେ ଖାଲି ପ୍ରତୀଚ୍ୟବାଦୀ, ଆରଜଣକ ଖାଲି ପ୍ରାଚ୍ୟବାଦୀ । ଖାସ୍ ସେଇ କାରଣରୁ ଶିକ୍ଷାକ୍ଷେତ୍ରରେ ରାମମୋହନଙ୍କ କୃତିତ୍ୱକୁ ଉପେକ୍ଷାକରିବା ଅନ୍ୟାୟ । ସତୀଦାହନିରୋଧ ଇତ୍ୟାଦି ଯା କରିଚନ୍ତି, ରାଷ୍ଟ୍ରର ହସ୍ତକ୍ଷେପ ବିନା ପାରିନାହାଁନ୍ତି; ସୁଶୀଳସମାଜ ରହିଯାଇଚି ନେପଥ୍ୟରେ । ମାତ୍ର, ଯୋଉ ଭାଷାରେ 'ଲେଖା' କହିଲେ ବୁଝାଉଥିଲା ଖାଲି ଜମିର ପଟ୍ଟା କି ଖଜଣାର ପାଉତି କି ପୁରୋହିତ ଲେଖିଥିବା ଦାନସାମଗ୍ରୀର ତାଲିକା, ସେ ଭାଷାରେ ଖାଲି ବ୍ୟାକରଣ ନୁହେଁ, ଜ୍ୟାମିତି ଓ ଭୂଗୋଳବହି ଲେଖିବା ରୀତିମତ ଦୁଃସାହସିକତା । ସେଇ ବାଟରେ ନାଗରିକସମାଜକୁ ଶିଖାଇଚନ୍ତି ଗଦ୍ୟ କେମିତି ପଢ଼ିବାକୁ ହୁଏ ।

ତହିଁଉତାରୁ ନେଇଯାଇଚନ୍ତି ଦର୍ଶନ ଓ ବିଜ୍ଞାନର କ୍ଷେତ୍ରକୁ । ଆଧୁନିକଶିକ୍ଷା କହିଲେ ନିଜେ କଣ ବୁଝନ୍ତି, ରାମମୋହନ ଲେଖିଜଣାଇଚନ୍ତି (୧୧ ଡିସେମ୍ବର୍, ୧୮୨୩) ଲର୍ଡ୍ ଆମ୍ହର୍ଷ୍ଟ୍‌ଙ୍କୁ : ପାଠ୍ୟତାଲିକାରେ ରହିବ ଗଣିତ ପଦାର୍ଥବିଦ୍ୟା ରସାୟନ ଶରୀରବୃତ୍ତ ଓ ଅନ୍ୟାନ୍ୟ ଉପଯୋଗୀ ବିଜ୍ଞାନ; ନବ୍ୟନ୍ୟାୟ ଓ ବେଦାନ୍ତ ପଢ଼ାଯିବନାହିଁ ଜମାରୁ । ନିଜେ ଅଦ୍ୱୈତ ବୈଦାନ୍ତିକ, ଜଡ଼ ବିଜ୍ଞାନକୁ କରିବାକୁ ଚାହାଁନ୍ତି ବାଧ୍ୟତାମୂଳକ ପାଠ୍ୟ । ଏବେ ଯେତେବେଳେ ହିନ୍ଦୁତ୍ୱବାଦୀଙ୍କ ଉପରମହଲରେ ଫଳିତ ଜ୍ୟୋତିଷ ଭଳି ଅ-ବିଜ୍ଞାନକୁ ଛାତ୍ରପାଠ୍ୟ କରିବାକୁ ଉତ୍ସାହ ଦେଖାଯାଉଚି, ପ୍ରାୟ ଦୁଇଶ'ବର୍ଷ ଆଗରୁ ରାମମୋହନଙ୍କ ଏ ଶିକ୍ଷାନୀତିକୁ ଦୁଃସାହସିକ ନକହି ଚାରା ନାହିଁ । ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ପ୍ରସ୍ତାବ ଆମ୍ହର୍ଷ୍ଟ୍‌ଙ୍କୁ ଦେଇନାହାଁନ୍ତି ଅବଶ୍ୟ; ମାତ୍ର ନିଜେ ଲେଖିଚନ୍ତି ବଙ୍ଗଳାଭାଷାରେ ପାଠ୍ୟପୁସ୍ତକ, ଅନୁବାଦକରିଚନ୍ତି *ଉପନିଷଦ* ମାତୃଭାଷାକୁ ସର୍ବପ୍ରଥମ, ଏବଂ ତା ଭିତରେ ରହିଚି ଅଖ୍ୟାତ ଏକ ଉପନିଷଦ *ବଜ୍ରସୂଚୀ* । ଏକମାତ୍ର ପ୍ରତିପାଦ୍ୟ ସେଠି, ଜନ୍ମସୂତ୍ରରେ କେହି ବ୍ରାହ୍ମଣ ହୁଏନା । ରାମମୋହନ ଜନ୍ମସୂତ୍ରରେ ନିଶ୍ଚୟ ବ୍ରାହ୍ମଣ; କିନ୍ତୁ କଳାପାଣି ପାରହୋଇ ମ୍ଳେଚ୍ଛଦେଶକୁ ଯାଇଥିଲେ ବୋଲି ସ୍ୱଭୂମିରେ ବାସନ୍ଦ । ପ୍ରତିକ୍ରିୟାରେ ପଇତା ଛିଡ଼ାଇ ଫିଙ୍ଗିଦେଇଚନ୍ତି ଗଙ୍ଗାକୁ । ହୋଇପାରେ ଜାତିପ୍ରଥା ବିରୋଧରେ ପ୍ରତିବାଦ, ମାତ୍ର *ଉପନିଷଦ* ଅନୁବାଦକରି ଜାତିଭେଦ ଯେମିତି ଉଠାଇଦେଇ ପାରିନାହାଁନ୍ତି, ବେଣ୍ଟିକ୍ ସାହେବଙ୍କ ବିନା ସାହାଯ୍ୟରେ ସେମିତି ସତୀଦାହ ନିରୋଧ ମଧ୍ୟ ସଫଳ ହୋଇନାହିଁ ଶାସ୍ତ୍ରବଚନ ଶୁଣାଇ । ନିରକ୍ଷର ନାଗରିକସମାଜ ଦୃଷ୍ଟିରେ କାମଗୁଡ଼ାକ ଥିଲା ଅପ୍ରାସଙ୍ଗିକ । ଆହୁରି ଢେର୍ କାଣ୍ଡକାରଖାନା ଭିଆଣକରିଚନ୍ତି, ଆଧୁନିକ ପରିଭାଷାରେ, ଯା ଇଉନିଭର୍ସାଲ୍ ବା ସର୍ବଜନୀନ, ମାତ୍ର କୋଉଠିହେଲେ ରାଜନୀତିର ଗନ୍ଧ ପର୍ଯ୍ୟନ୍ତ ନାହିଁ, ବରଂ ଦେଖିହେବ ବିଜାତୀୟ ରାଷ୍ଟ୍ରଶକ୍ତି ସହିତ ସକ୍ରିୟ ସହଯୋଗ । କାମଗୁଡ଼ାକ ବିବେଚିତହୁଏ ଯଦି ଆଧୁନିକୀକରଣର ଆଦ୍ୟ ଉଦ୍ୟୋଗ, ଅନିବାର୍ଯ୍ୟଭାବେ ଉଠିବ ଜାତୀୟତାବାଦ ପ୍ରଶ୍ନ । ମାତ୍ର ରାମମୋହନ ଜାତୀୟତାବାଦୀ ନଥିଲେ; ବ୍ୟକ୍ତିଗତ ପ୍ରବଣତା ତାଙ୍କୁ ବେଶିବାଟ ନେଇପାରିନାହିଁ । ଜାଗତିକ ଅନୁଷ୍ଠାନକୁ ବ୍ୟାଖ୍ୟାକରିବା ଲାଗି ବ୍ୟକ୍ତିଗତ ପ୍ରବଣତା ଯେହେତୁ ଯଥେଷ୍ଟ ନୁହେଁ, ଦରକାର ଥିଲା ଇତିହାସର ଅର୍ଥନୀତିକ ବିଶ୍ଳେଷଣ ।

ବିଦ୍ୟାସାଗରଙ୍କୁ ଉପଲବ୍ଧି କରିବାପାଇଁ ରାମମୋହନଙ୍କ ପ୍ରସଙ୍ଗ ଅବତରଣିକା ମାତ୍ର; ଏବଂ ସେଥିରେ ରାଷ୍ଟ୍ର ଓ ନାଗରିକସମାଜ ମଧ୍ୟରେ ତିଳେମାତ୍ର ଦ୍ୱାନ୍ଦ୍ୱିକତା ସ୍ଥାନପାଇନାହିଁ, କାହିଁକିନା, ସଜ୍ଞାନରେ ହେଉ କି ନହେଉ, ରାମମୋହନ ଥିଲେ

ଔପନିବେଶିକ ପ୍ରଭୁର କୋଲାବୋରେଟର୍ । କିନ୍ତୁ ବିଦ୍ୟାସାଗରଙ୍କ ଧର୍ମମତ ବିଷୟରେ କେହି କିଛି ଜାଣନ୍ତିନାହିଁ । ନିଜେ ମଧ କିଛି ଜଣାଇନାହାଁନ୍ତି । ହିନ୍ଦୁ-ବ୍ରାହ୍ମଣର ଆଚରଣଶୁଦ୍ଧିକୁ ଆସ୍ଥାରା ଦେଇନାହାଁନ୍ତି ଲେଶମାତ୍ର, ବରଂ ଯେତେ ସ୍କୁଲ୍-କଲେଜ୍ ବସାଇଚନ୍ତି, ହୋଷ୍ଟେଲ୍‌ରେ ପିଲା କୁକୁଡ଼ାଖାଇଲେ ବି ଭାବିନାହାଁନ୍ତି ଆପତ୍ତିକର; ଏବଂ ବିଧବାବିବାହ ପ୍ରଚଳନକଲେ ଯେତେବେଳେ, ଆଗେ ନିଜ ପୁଅ ସାଙ୍ଗରେ ଦେଲେ ବିଧବାର ବିବାହ । ବ୍ରତ ପାଳିନାହାଁନ୍ତି କି ତୀର୍ଥଦର୍ଶନରେ ଯାଇନାହାଁନ୍ତି, ଦେଉଳ କି ମଠ ତ ମୂଳରୁ ନୁହେଁ, ଏପରିକି ଅଦୂର ଦକ୍ଷିଣେଶ୍ୱରକୁ ବି ଥରେହେଲେ ଯାଇନାହାଁନ୍ତି ରାମକୃଷ୍ଣ ପରମହଂସଙ୍କ ସନ୍ନିର୍ବନ୍ଧ ଅନୁରୋଧ ସତ୍ତ୍ୱେ । ବରଂ, ବେଦ-ବେଦାନ୍ତ-ବେଦାଙ୍ଗର ଅପ୍ରତିଦ୍ୱନ୍ଦ୍ୱୀ ଏଇ ଶିକ୍ଷକ ବେଦାନ୍ତକୁ କହିଚନ୍ତି 'ଭ୍ରାନ୍ତ-ଦର୍ଶନ' । ରାମମୋହନଙ୍କଠାରୁ ଆରମ୍ଭକରି ସେକାଳର ସକଳ ମନୀଷୀ ଯେତେବେଳେ ଧର୍ମକୁ ନେଇ ବ୍ୟତିବ୍ୟସ୍ତ, ଏକମାତ୍ର ବିଦ୍ୟାସାଗର ହିଁ ବ୍ୟତିକ୍ରମ । ବ୍ୟତିକ୍ରମ, କାହିଁକିନା, ଶେଷପର୍ଯ୍ୟନ୍ତ ଯୁକ୍ତି ଉପରେ ଗଢ଼ିଉଠିଚି ନିଷ୍ଠା । ର୍‌ୟାଭେନ୍‌ଶ କଲେଜ୍‌ର ପ୍ରଥମ ଭାରତୀୟ ପ୍ରିନ୍ସପାଲ୍, ବିପିନ୍‌ବିହାରୀ ଗୁପ୍ତ, ନିଜ ଶିକ୍ଷକ କୃଷ୍ଣକମଲ୍ ଭଟ୍ଟାଚାର୍ଯ୍ୟଙ୍କ ବିଷୟରେ ସ୍ମୃତିଚାରଣକରି ଲେଖିଚନ୍ତି, ତାଙ୍କରି ମୁହଁରୁ ପ୍ରଥମେ ଶୁଣନ୍ତି, 'ବିଦ୍ୟାସାଗର୍ ନାସ୍ତିକ୍ ଛିଲେନ୍, ଏକଥା ବୋଧହୟ୍ ତୋମ୍‌ରା ଜାନ ନା । ଯାଁହାରା ଜାନିତେନ୍ ତାଁହାରା କିନ୍ତୁ ସେ ବିଷୟ ଲଇୟା ତାଁହାର୍ ସଙ୍ଗେ କଖନଓ ବାଦାନୁବାଦେ ପ୍ରବୃତ୍ତ ହଇତେନ୍ ନା । ....ଉନ୍ନବିଂଶ ଶତାବ୍ଦୀର୍ ପ୍ରଥମ୍ ଭାଗେ ଆମାଦେର୍ ଦେଶେ ଯଖନ୍ ଇଂରାଜୀ ଶିକ୍ଷାର୍ ପ୍ରବର୍ତ୍ତନ୍ ଆରମ୍ଭ ହୟ୍, ତଖନ୍ ଆମାଦେର୍ ସମାଜେର୍ ଅନେକେର୍ ଧର୍ମବିଶ୍ୱାସ୍ ଶିଥିଲ୍ ହଇୟା ଗିୟାଛିଲ, ଯେ ସକଲ୍ ବିଦେଶୀ ପଣ୍ଡିତ୍ ବାଙ୍ଗାଲା ଦେଶେ ଶିକ୍ଷକତା କରିତେ ଆରମ୍ଭ କରିଲେନ୍ ତାଁହାଦେରଓ ଅନେକେର୍ ନିଜ ନିଜ ଧର୍ମେ ବିଶ୍ୱାସ୍ ଛିଲନା । ଡେଭିଡ୍ ହେୟାର୍ ନାସ୍ତିକ୍ ଛିଲେନ୍, ଏକଥା ତିନି କଖନଓ ଗୋପନ୍ କରେନ୍ ନାଇ, ଡିରୋଜିଓ ଫରାସୀ ରାଷ୍ଟ୍ର ବିପ୍ଳବେର୍ ସାମ୍ୟ-ମୈତ୍ରୀ-ସ୍ୱାଧୀନତାର୍ ଭାବ୍ ହୃଦୟେ ପୋଷଣ୍ କରିୟା ଭଗବାନ୍‌କେ ସରାଇୟା ଦିୟା Reason-ଏର୍ ପୂଜା କରିତେନ୍ । ପାଶ୍ଚାତ୍ୟ ସାହିତ୍ୟେର ଭାବ୍‌ବନ୍ୟାୟ ଏ ଦେଶୀୟ ଛାତ୍ରେର୍ ଧର୍ମବିଶ୍ୱାସ୍ ଟଲିଲ; ଚିରକାଲ୍ ପୋଷିତ ହିନ୍ଦୁର ଭଗବାନ୍ ସେଇ ବନ୍ୟାୟ ଭାସିୟା ଗେଲେନ୍, ବିଦ୍ୟାସାଗର୍ ନାସ୍ତିକ୍ ହଇଲେନ୍, ତାହାତେ ଆର୍ ଆଶ୍ଚର୍ଯ୍ୟେର୍ କି ?'

ବିଦ୍ୟାସାଗରଙ୍କ ଅନ୍ତରଙ୍ଗ ବନ୍ଧୁ ଅକ୍ଷୟକୁମାର ଦତ୍ତ ସେତେବେଳେ ପ୍ରାୟତଃ ଯୁକ୍ତିଦେଖାଇଚନ୍ତି ଯେ ପରିଶ୍ରମକଲେ କୃଷକ ସଶ୍ୟ ଉପୁଜାଏ; ଜଗଦୀଶ୍ୱରଙ୍କୁ ଡକାହକା କରି କୋଉହେଲେ କୃଷକ ଶସ୍ୟ ଲାଭକରେନା କସ୍ମିନ୍‌କାଳେ । ପ୍ରାର୍ଥନାର ଫଳାଫଳ

ଯେ ଶୂନ, ବୀଜଗଣିତର ସମୀକରଣ ପଦ୍ଧତିରେ ବୁଝାଇବାକୁ ଯାଇ ଲେଖନ୍ତି

ପରିଶ୍ରମ=ସଶ୍ୟ

ପରିଶ୍ରମ+ପ୍ରାର୍ଥନା=ସଶ୍ୟ

ପ୍ରାର୍ଥନା=୦

'ସେକିଉଲାର୍' ଶବ୍ଦଟିକୁ ଯିଏ ପ୍ରଚଳନକରିଚନ୍ତି, ଜର୍ଜ ଜେକବ୍ ହୋଲିୟକ୍, ଉଦାହରଣ ସାହାଯ୍ୟରେ ବୁଝାଇଚନ୍ତି ମର୍ମାର୍ଥ: ମାନେ, ନିରୀଶ୍ୱରବାଦ ନୁହେଁ, ସୃଷ୍ଟିତତ୍ତ୍ୱ ବିଷୟରେ ନାନାଦି ମତବାଦ ପ୍ରତି ନିରପେକ୍ଷରହିବା ସେକିଉଲାର୍‌ର ମୂଳକଥା । କାହିଁକିନା, ଘରକୁ କିଏ ବାଗେଇଚି କିମ୍ବା ଘରର ପ୍ରକୃତ ମାଲିକ କିଏ, ଜାଣିବା ସମ୍ଭବପର ନହେଲେ ସୁଦ୍ଧା, ଘରଟା ବାସଯୋଗ୍ୟ କି ନୁହେଁ, ସ୍ୱାସ୍ଥ୍ୟକର କି ନୁହେଁ ଜାଣିହେବ । ଏବଂ ସେ ଘରେ ରହିବା ଲାଗି ଯଦି ଭଡ଼ା ଗଣିବାକୁ ନପଡ଼େ, ଘରଟାର ରକ୍ଷଣାବେକ୍ଷଣ ବି ଗୃହବାସୀର କର୍ତ୍ତବ୍ୟ । ସେଇ ଘର ଏଇ ପୃଥିବୀ । ସ୍ୱାସ୍ଥ୍ୟ, ସଂପଦ ଓ ନିରାପତ୍ତା ନିର୍ଭରକରୁଚି ସ୍ୱାସ୍ଥ୍ୟରକ୍ଷାର ବିଧି, ଆର୍ଥସାମାଜିକ ବନ୍ଦୋବସ୍ତ ଓ ନ୍ୟାୟବିଚାର ଉପରେ, ଏବଂ ସେଥିପାଇଁ, ଜୀବନଯାପନ କରୁଛୁଁ ଯୋଉ ପରିସର ଭିତରେ, ତାର ଉନ୍ନତିସାଧନ ସର୍ବାଦୌ କର୍ତ୍ତବ୍ୟ । ଜଗତର ଉତ୍ପତ୍ତି କି ନିର୍ମାତା ସମ୍ବନ୍ଧରେ ଜ୍ଞାନ ନଥାଇ ବି ସ୍ୱାସ୍ଥ୍ୟବିଧି, ଅର୍ଥନୀତି ଓ ନ୍ୟାୟବିଚାର ସମ୍ବନ୍ଧରେ ଜ୍ଞାନ ଲାଭକରିବା ସମ୍ଭବପର । ଘରେ ରହୁଛୁଁ ବୋଲି, କେହି କିଛି ଦାବିକରୁନାହିଁ ଆମ ପାଖରୁ, ଘରର ଯତ୍ନନେବା ତେଣୁ ନ୍ୟୂନତମ ଦାୟିତ୍ୱ । ଏଇ ଦାୟିତ୍ୱପାଳନ ରୂପକ ପ୍ରତିଦାନ ହିଁ ସେକିଉଲାରିଜ୍ମ । ଖ୍ରୀଷ୍ଟାନ୍ ମିଶନାରୀ କିନ୍ତୁ ଅଭିଯୋଗ କରିଚନ୍ତି, ବିଦ୍ୟାସାଗର-ବିରଚିତ ଶିଶୁପାଠ୍ୟ ସେକ୍ୟୁଲାରିଷ୍ଟଙ୍କ ରଚନା ନୁହେଁ ଯଦିଓ, ବହିଗୁଡ଼ାକ ସ୍ୱୟଂ ସେକିଉଲାରିଷ୍ଟ୍ । ଚେମ୍ବର୍ସ ପ୍ରକାଶସଂସ୍ଥାର The Rudiments of Knowledge ଅନୁସାରେ ବିଦ୍ୟାସାଗର ଲେଖିଚନ୍ତି *ବୋଧୋଦୟ;* ମାତ୍ର ମୂଳବହିରେ ଥିବା ଆଲ୍ଲାହ୍, ବାଇବ୍ଲ, ପରଲୋକ ଭଳି ଶବ୍ଦଗୁଡ଼ାକୁ ବର୍ଜନକରିଚନ୍ତି ସଯତ୍ନ; ଯା ମିଶନାରୀଙ୍କ ଆକ୍ଷେପର କାରଣ : It is misleading to describe these books as 'secularist', the writer confesses that he does not know the meaning of the term. It is very lamentable that such books should have been prepared by the most distinguished writer in Bengali, formerly Principal of a Government college, and that they should be those which have by far the largest circulation throughout the country. It is earnestly hoped that soon such books will be excluded from Mission schools... । ତାଙ୍କର ଆଉଗୋଟିଏ ବହି ବର୍ଣ୍ଣ

*ପରିଚୟ* ରେ ମଧ୍ୟ ଦେବଦେବୀ କି ସାଧୁସନ୍ଥ ଠାଇଁ ପାଇନାହାଁନ୍ତି; ଅଛନ୍ତି ଯୋଡ଼ିଏ ଶିଶୁ, ଗୋପାଲ୍ ଆଉ ରାଖାଲ୍ । କିନ୍ତୁ ହିନ୍ଦୁସନ୍ନ୍ୟାସୀ ବିବେକାନନ୍ଦଙ୍କ ମନକୁ ପାଇନାହିଁ; ଶିଷ୍ୟ ପ୍ରିୟନାଥ ସିଂହଙ୍କୁ କହିଚନ୍ତି, 'ଦେଶେର୍ ମହାଦୁର୍ଗତି ହୟେଛେ, କିନ୍ତୁ କର ରେ! ଛୋଟୋ ଛେଲେଦେର୍ ପଡ଼ାର୍ ଉପଯୁକ୍ତ ଏକ୍‌ଖାନାଓ କେତାବ୍ ନେଇ ।' ବିସ୍ମିତ ପ୍ରିୟନାଥ ପ୍ରତିବାଦ କରିଚନ୍ତି, କାହିଁକି 'ବିଦ୍ୟାସାଗର୍ ମହାଶୟେର୍ ତ ଅନେକଗୁଲି ବଇ ଆଛେ ।' ଅବଜ୍ଞାର କୁରହସ ଫୁଟିଉଠିଚି ସ୍ୱାମୀଜିଙ୍କ ଓଠରେ, 'ଈଶ୍ୱର୍ ନିରାକାର୍ ଚୈତନ୍ୟସ୍ୱରୂପ୍, ଗୋପାଲ୍ ଅତି ସୁବୋଧ୍ ବାଲକ୍- ଓତେ କୋନୋ କାଜ୍ ହବେନା । ଓତେ ବଇ ଭାଲୋ ହବେନା । ରାମାୟଣ, ମହାଭାରତ୍, ଉପନିଷଦ୍ ଥେକେ ଛୋଟ ଛୋଟ ଗଲ୍ପ ନିୟେ ଅତି ସୋଜାଭାଷାୟ୍ କତଗୁଲି ବାଂଲାତେ କତଗୁଲି ଇଂରେଜିତେ କେତାବ୍ ଚଇ । ସେଇଗୁଲି ଛୋଟ ଛେଲେଦେର୍ ପଡ଼ାତେ ହବେ ।' ମିଶନାରୀଙ୍କ ଭଳି ବିବେକାନନ୍ଦ ମଧ୍ୟ ସେକିଉଲାର୍ ନୁହେଁ; ରବୀନ୍ଦ୍ରନାଥଙ୍କ ବ୍ରହ୍ମଚର୍ଯ୍ୟାଶ୍ରମ ମଧ୍ୟ ଧର୍ମଭିତ୍ତିକ । ଜାତୀୟତାବାଦୀ ଆନ୍ଦୋଳନ କାଳରେ ମଧ୍ୟ ଧର୍ମକୁ ଛାଡ଼ି ନୀତିଶିକ୍ଷା ଥିଲା ଅକଳ୍ପନୀୟ(ଆମେ ଯେମିତି ପଢ଼ିଥିଲୁଁ, 'ଧନ୍ୟ ହେ ଈଶ୍ୱର ତୁମ ବୁଦ୍ଧି କଉଶଳ/କେମନ୍ତେ ରଚିଲ ମେଘ ବାୟୁ ଜଳ ସ୍ଥଳ' କିମ୍ବା 'ଆହେ ଦୟାମୟ ବିଶ୍ୱବିହାରୀ/ଘେନ ଦୟାବହି ମୋର ଗୁହାରି') ।

ଭଗବାନଙ୍କୁ ପାଠ୍ୟପୁସ୍ତକରୁ ନିର୍ବାସିତକରିଥିଲେ ବିଦ୍ୟାସାଗର; ଲେଖିଥିଲେ *ଆଖ୍ୟାନମଞ୍ଜରୀ ଓ ଚରିତାବଳୀ;* ସେ ଆଖ୍ୟାନ କି ଚରିତରେ ଜଣେହେଲେ ଧର୍ମନେତା ଜାଗା ପାଇନାହାଁନ୍ତି, ସଗୌରବ ବିରାଜକରୁଚନ୍ତି କୋପର୍ନିକସ୍, ଗ୍ୟାଲିଲେଓ, ନିଉଟନ୍ ପ୍ରଭୃତି । ବିହାରୀଲାଲ୍ ସରକାର୍ ତାକୁ କହିଚନ୍ତି 'କୁଶିକ୍ଷା', 'ସଂସ୍କୃତଭାଷା ପାରଦର୍ଶୀ ଓ ବହୁଶାସ୍ତ୍ରଜ୍ଞ ବିଦ୍ୟାସାଗର୍ ମହାଶୟ ଯେ ଏଇରୂପ୍ ଚରିତ୍ର ସଂଗ୍ରହେ ସମର୍ଥ ଛିଲେନ୍ ତାହାତେ ଆର୍ ସନ୍ଦେହ କି? ତାହା (ହିନ୍ଦୁ ମହାପୁରୁଷଙ୍କ ଚରିତ) ହୟ୍ ନାଇ, ଶୁଦ୍ଧ ଦେଶେର୍ ଦୁରଦୃଷ୍ଟ ଦୋଷେ । ଶିକ୍ଷାର୍ ସ୍ରୋତ୍ ତଖନ୍ ବିପଥେ ଧାବିତ ହଇୟାଛିଲ ।' ମାତ୍ର, ଅଭାରତୀୟ ମନୀଷୀଙ୍କୁ ବାଛିଥିଲେ କାହିଁକି ବ୍ରାହ୍ମଣ୍ୟ ସଂସ୍କୃତିର ଏଇ ଶ୍ରେଷ୍ଠ ପ୍ରତିନିଧି? କି ବିଶେଷ ମୂଲ୍ୟମାନ ନାଗରିକସମାଜରେ ସଂଚାରକରିବା ଥିଲା ଅଭିପ୍ରାୟ? ଯୋଉ ବିଗ୍ରହଜଗତରେ ନାଗରିକସମାଜ ଥିଲା ନିମଜ୍ଜିତ, ଏ ନିର୍ବାଚନ କି ଭାବରେ ଘଟାଇପାରେ ସେଠି ଆମୂଳ ପରିବର୍ତ୍ତନ? ନାତିଦୀର୍ଘ ଉଦ୍ଧୃତି ଉତ୍ତର ଦେଉ :

**ନିକୋଲାସ୍ କୋପର୍ନିକସ୍ :** ପୂର୍ବକାଲେ କାଲ୍ଡିୟା, ଇଜିପ୍ଟ, ଗ୍ରୀସ୍, ଭାରତବର୍ଷ ପ୍ରଭୃତି ନାନା ଜନପଦେ ଜ୍ୟୋତିର୍ବିଦ୍ୟାର୍ ବିଲକ୍ଷଣ ଅନୁଶୀଲନ୍ ଛିଲ: କିନ୍ତୁ ଖ୍ରୀଷ୍ଟୀୟ ଶାକେର୍ ଷୋଡ଼ଷ ଶତାବ୍ଦୀ ପୂର୍ବେ, ଜ୍ୟୋତିର୍ମଣ୍ଡଲୀର ବିଷୟ ବିଶୁଦ୍ଧ

ରୂପେ ବିଦିତ ହୟ୍‌ନାଇ । ପୂର୍ବକାଳୀନ୍ ପଣ୍ଡିତଗଣେର୍ ଏଇ ସ୍ଥିର୍ ସିଦ୍ଧାନ୍ତ ଛିଲ, ପୃଥିବୀ ସ୍ଥିର ଓ ଅନ୍ତରୀକ୍ଷବିକ୍ଷିପ୍ତ ଜ୍ୟୋତିଷ୍କସମୁଦୟେର୍ ମଧ୍ୟସ୍ଥିତ; ଚନ୍ଦ୍ର, ଶୁକ୍ର, ମଙ୍ଗଲ୍, ସୂର୍ଯ୍ୟ, ଅନ୍ୟାନ୍ୟ ଗ୍ରହଗଣ୍ ଓ ନକ୍ଷତ୍ରମଣ୍ଡଲ୍ ତାହାର ଚତୁର୍ଦ୍ଦିକେ ଏକ୍ ଏକ୍ ମଣ୍ଡଲାକାର୍ ପଥେ ପରିଭ୍ରମଣ କରେ; ତାହାଦେର୍ ଦୂରତ୍ୱ ଓ ବେଗେର୍ ବିଭିନ୍ନତା ପ୍ରଯୁକ୍ତ, ଦିବସେ ଓ ରଜନୀତେ ନଭୋମଣ୍ଡଲେର୍ ବିଚିତ୍ର ଆକାର୍ ଦେଖିତେ ପାଓୟା ଯାୟ୍ । ଏଇ ମତ୍ ବହୁ କାଲ୍ ପର୍ଯ୍ୟନ୍ତ ପ୍ରବଲ୍ ଓ ପ୍ରଚଲିତ୍ ଛିଲ ।

ଖ୍ରୀଷ୍ଟୀୟ ଶାକପ୍ରାରମ୍ଭେର୍ ଛୟ ଶତ ବତ୍ସର୍ ପୂର୍ବେ, ଏନାକ୍‌ସିମେଣ୍ଡର୍, ପିଥାଗୋରସ୍ ପ୍ରମୁଖ ଗ୍ରୀସ୍‌ଦେଶୀୟ ପଣ୍ଡିତଗଣେର୍ ମନେ ଅନତିପରିସ୍ଫୁଟରୂପେ ଉଦୟ ହଇଯାଛିଲ ଯେ, ସୂର୍ଯ୍ୟ ଅଚଲ୍ ପଦାର୍ଥ; ପୃଥିବୀ ଏକ୍‌ଟି ଗ୍ରହ, ଅନ୍ୟାନ୍ୟ ଗ୍ରହବତ୍ ଯଥା ନିୟମେ ସୂର୍ଯ୍ୟେର୍ ଚତୁର୍ଦ୍ଦିକେ ପରିଭ୍ରମଣ୍ କରେ । ତାଁହାରା ସାହସ୍‌ପୂର୍ବକ୍ ଅପନାଦେର୍ ଏଇ ବିଶୁଦ୍ଧ ମତ୍ ପ୍ରଚାର୍ କରିୟା ଛିଲେନ୍, କିନ୍ତୁ ତତ୍କାଲେ ପ୍ରଚଲିତ୍ ଧର୍ମଶାସ୍ତ୍ରର୍ ସହିତ୍ ସଂପୂର୍ଣ୍ଣ ବିସଂବାଦିତା ପ୍ରଯୁକ୍ତ, ସର୍ବସାଧାରଣ୍ ଲୋକେ ଯତ୍ପରୋନାସ୍ତି ବିଦ୍ୱେଷ୍ ପ୍ରଦର୍ଶନ୍ କରାତେ, ବଦ୍ଧମୂଲ୍ କରିତେ ପାରେନ୍ ନାଇ ।

ଚତୁର୍ଦ୍ଦଶ୍ ପଞ୍ଚଦଶ୍ ଶତାବ୍ଦୀତେ ଇଟାଲିଦେଶେ ବିଦ୍ୟାନୁଶୀଲନେର୍ ପୁନରାମ୍ଭ ହଇଲେ, ତତ୍ରତ୍ୟ ଯାବତୀୟ ବିଶ୍ୱବିଦ୍ୟାଳୟେ ଜ୍ୟୋତିର୍ବିଦ୍ୟାର୍ କିଞ୍ଚିତ୍ କିଞ୍ଚିତ୍ ଆଦର୍ ହଇତେ ଲାଗିଲ । କିନ୍ତୁ ତତ୍କାଲେ ଯେ ମତ୍ ପ୍ରଚଲିତ୍ ଛିଲ, ତାହା ଅରିଷ୍ଟଟ୍‌ଲ୍, ଟଲେମି ଓ ଅପରାପର୍ ପ୍ରାଚୀନ୍ ଜ୍ୟୋତିର୍ବିଦ୍‌ଗଣେର୍ ଅନୁମୋଦିତ୍ ପ୍ରଣାଲୀ ଅପେକ୍ଷା ବିଶୁଦ୍ଧ ଛିଲନା । ତାହାତେ ଏଇ ସିଦ୍ଧାନ୍ତ ପ୍ରତିପନ୍ନ ଛିଲ, ସୂର୍ଯ୍ୟ ଓ ଗ୍ରହମଣ୍ଡଲ୍ ଭୂମଣ୍ଡଲେର୍ ଚତୁର୍ଦ୍ଦିକେ ପରିଭ୍ରମଣ୍ କରେ । ଯାହା ହଉକ୍, ପରିଶେଷେ, ଏନାକ୍‌ସିମେଣ୍ଡର୍ ଓ ପିଥାଗୋରେସର୍ ବିଶୁଦ୍ଧ ମତ୍ ପୁନରୁଜ୍ଜୀବିତ ହଇବାର୍ ଶୁଭ ସମୟ ଉପସ୍ଥିତ୍ ହଇଲ ।

ଯେ ଅଧୁନାତନ୍ ପଣ୍ଡିତ୍ ପୂର୍ବନିର୍ଦ୍ଦିଷ୍ଟ ବିଲୁପ୍ତପ୍ରାୟ୍ ବିଶୁଦ୍ଧ ମତ୍ ପୁନରୁଜ୍ଜୀବିତ୍ କରେନ୍, ତାହାର୍ ନାମ୍ ନିକଲାସ୍ କୋପର୍ନିକସ୍ । ...ସକଲେ ଅନୁମାନ୍ କରେନ୍, ତାଁହାର୍ ଅଧ୍ୟାପକ୍ ଡୋମିନିକ୍ ମେରିଆ ପୃଥିବୀର୍ ମେରୁଦଣ୍ଡପରିବର୍ତବିଷୟେ ଯେ ଆବିଷ୍କ୍ରିୟା କରେନ୍, ତଦ୍ଧାରାଇ ତତ୍କାଲପ୍ରଚଲିତ୍ ଜ୍ୟୋତିର୍ବିଦ୍ୟା ଭ୍ରାନ୍ତିସଙ୍କୁଲ୍ ବଲିୟା ତାଁହାର୍ ପ୍ରଥମ୍ ଉଦ୍‌ବୋଧ୍ ହୟ ।... ତତ୍କାଲେ ତାଁହାର୍ ମାତୁଲ୍ ଆର୍ମିଲେଣ୍ଡର୍ ବିଶପ୍ ଅର୍ଥାତ୍ ଧର୍ମାଧ୍ୟକ୍ଷ ଛିଲେନ୍; ତିନି ତାଁହାକେ ଫ୍ରୟନ୍‌ବର୍ଗେର୍ ପ୍ରଧାନ୍ ଦେବାଲୟେର୍ ଯାଜକ୍ ପଦେ ନିଯୁକ୍ତ କରିଲେନ୍ । ...ଏକ୍ଷଣେ ତିନି ଏଇ ସଂକଳ୍ପ କରିଲେନ୍, ଦେବାଲୟସଂକ୍ରାନ୍ତ କର୍ମ, ବିନା ବେତନେ ଦରିଦ୍ର ଲୋକେର୍ ଚିକିତ୍ସା, ଅଭିଲଷିତ

ବିଦ୍ୟାର୍ ଅନୁଶୀଳନ୍ ଏଇ ତିନି ବିଷୟ ଅବଲମ୍ବନ୍ କରିୟା ଜୀବନକ୍ଷେପଣ କରିବ ।...

ଅନୁମାନ୍ ହୟ୍, ୧୫୦୭ ଖ୍ରୀ.ଅବ୍ଦେ, ପିଥାଗୋରସେର୍ ମତ୍ ଅଭ୍ରାନ୍ତ ବଲିୟା କୋପର୍ନିକସେର୍ ଦୃଢ଼ ପ୍ରତ୍ୟୟ୍ ଜନ୍ମେ । କିନ୍ତୁ ତତ୍କାଳୀନ୍ ଲୋକେର୍ ଯେରୂପ୍ ସଂସ୍କାର୍ ଛିଲ, ଉକ୍ତ ମତ୍ ତାହାର୍ ନିତାନ୍ତ ବିପରୀତ୍ । ... ତତ୍କାଳେ ଦୂରବୀକ୍ଷଣେର୍ ସୃଷ୍ଟି ହୟ୍ ନାଇ, ତଦ୍‌ଭିନ୍ନ ଗଣିତ୍ ବିଦ୍ୟାସକ୍ରାନ୍ତ ଆର୍ ଯେ ସକଲ୍ ଯନ୍ତ୍ର ଛିଲ, ତାହାଓ ଅତ୍ୟନ୍ତ ଅପକୃଷ୍ଟ ଓ ଅକର୍ମଣ୍ୟ । କୋପର୍ନିକସ୍ ପର୍ଯ୍ୟବେକ୍ଷଣ୍‌ସାଧନ ନିମିତ୍ତ ଯେ ଦୁଇଟି ଯନ୍ତ୍ର ପାଇୟା ଛିଲେନ୍, ତାହା ଦେବଦାରୁକାଷ୍ଠେ ଅତି ସାମାନ୍ୟ ରୂପେ ନିର୍ମିତ ଓ ପରିମାଣ୍ ଚିହ୍ନସ୍ଥଲେ ମସୀରେଖାୟ୍ ଅଙ୍କିତ୍ । ମାତ୍ର ଏଇ ଉପକରଣ୍ ସମ୍ପନ୍ନ ହଇୟା, ସ୍ୱାବଲମ୍ବିତ୍ ମତ୍ ପ୍ରମାଣସିଦ୍ଧ କରିବାର୍ ନିମିତ୍ତ, ଯେ ସମସ୍ତ ଗବେଷଣା ଆବଶ୍ୟକ୍, କୟେକ୍ ବତ୍ସର୍ ତିନି ତତ୍‌ସମ୍ପାଦନବିଷୟେ ମନୋନିବେଶ୍ କରେନ୍ । ପରିଶେଷେ, ୧୫୩୦ ଖ୍ରୀ.ଅବ୍ଦେ, ତିନି ଏକ ଗ୍ରନ୍ଥ ପ୍ରସ୍ତୁତ୍ କରିଲେନ୍ । ତାହାତେ ଏଇ ନୂତନ୍ ପ୍ରଣାଳୀ ବିଶିଷ୍ଟ ରୂପେ ବିଖ୍ୟାତ୍ ହଇଲ ।

...ପୂର୍ବକାଲୀନ୍ ଲୋକେରା ବିଚାରେର୍ ସମୟ୍ ଚିରାଗତ୍ କତିପୟ ନିର୍ଧାରିତ ନିୟମେର୍ ଅନୁବର୍ତୀ ହଇୟା ଚଲିତେନ୍; ସୁତରାଂ ସ୍ୱୟଂ ତତ୍ତ୍ୱନିର୍ଣ୍ଣୟ କରିତେ ପାରିତେନ୍ ନା, ଏବଂ ଅନ୍ୟେ ସୁସ୍ପଷ୍ଟ ରୂପେ ବୁଝାଇୟା ଦିଲେଓ, ତାହା ସ୍ୱୀକାର୍ କରିୟା ଲଇତେନ୍ ନା । ତତ୍କାଳୀନ୍ ଲୋକଦିଗେର୍ ଏଇ ରୀତି ଛିଲ, ପୂର୍ବାଚାର୍ଯ୍ୟେରା ଯାହା ନିର୍ଦ୍ଦେଶ୍ କରିୟା ଗିୟାଛିଲେନ୍, କୋନଓ ବିଷୟ, ତାହାର୍ ବିରୁଦ୍ଧ ବା ବିରୁଦ୍ଧବତ୍ ଆଭାସମାନ୍ ହଇଲେ, ତତ୍ତ୍ୱନିର୍ଣ୍ଣୟନିମିତ୍ତ ସ୍ୱୟଂ ଅନୁଧ୍ୟାନ୍ ବା ବିବେଚନା କରିତେନ୍ ନା । ଇହାତେ ଏଇ ଫଲ୍ ଜନ୍ମିୟାଛିଲ, ନିର୍ମଲ୍‌ମନୀଷାସମ୍ପନ୍ନ ବ୍ୟକ୍ତିରା ଅଭିଜ୍ଞତା ବା ଅନୁସନ୍ଧାନ୍ ଦ୍ୱାରା ଯେ ନୂତନ୍ ନୂତନ୍ ତତ୍ତ୍ୱ ଉଦ୍‌ଭାବିତ୍ କରିତେନ୍ ତାହା, ଚିରସେବିତ ମତେର୍ ବିସମ୍ବାଦୀ ବଲିୟା ଅବଜ୍ଞା ରୂପ୍ ଅନ୍ଧକୂପେ ନିକ୍ଷିପ୍ତ ହଇତ । ଏଇ ଏକ୍ ସିଦ୍ଧାନ୍ତ ତାଁହାଦେର୍ ବିଶ୍ୱାସକ୍ଷେତ୍ରେ ବଦ୍ଧମୂଲ୍ ହଇୟାଛିଲ, ଯେ, ପୃଥିବୀ ଅଚଲା ଓ ଅପରିଚ୍ଛିନ୍ନ ବିଶ୍ୱେର କେନ୍ଦ୍ରଭୂତା । ... ବିଶେଷତଃ ତତ୍କାଳୀନ୍ ୟୁରୋପୀୟ ଲୋକେରା ବୋଧ୍ କରିତେନ୍, ବାୟବଲେରଓ ସ୍ଥାନେ ସ୍ଥାନେ ଇହାର୍ ପୋଷକତା ଆଛେ, ଏଇ ସକଲ୍ ପର୍ଯ୍ୟାଲୋଚନା କରିୟା, କୋପର୍ନିକସ୍ ସେଇ ଅନେକ୍ ବତ୍ସରେର୍ ଆୟାସ୍-ସମ୍ପାଦିତ୍ ଗ୍ରନ୍ଥ ସହସା ପ୍ରଚାର୍ କରିତେ ପାରିଲେନ୍ ନା ।

...ସେଇ ସମୟେ ଇରାସ୍ମସ୍ ରେନ୍‌ହୋଲ୍‌ଡ୍ ନାମକ୍ ଏକ୍ ପଣ୍ଡିତ୍ ଏକ୍‌ଖାନି ପୁସ୍ତକ୍ ପ୍ରଚାର୍ କରିଲେନ୍ । ତାହାତେ ଏଇ ନୂତନ୍ ମତେର୍ ଭୂୟସୀ ପ୍ରଶଂସା ଲିଖିୟା, ତତ୍‌ପ୍ରବର୍ତକ୍‌କେ ଦ୍ୱିତୀୟ ଟଲେମି ବଲିୟା ନିର୍ଦ୍ଦେଶ୍ କରେନ୍ । ସର୍ବଦା ଏରୂପ୍ ଘଟିୟା

ଥାକେ, କୋନଓ ଲବ୍ଧପ୍ରତିଷ୍ଠ ଭ୍ରାନ୍ତିପ୍ରବର୍ତକେର୍ ସହିତ୍ ତୁଲ୍ୟମୂଲ୍ୟ କରିୟା ନିର୍ଦ୍ଦେଶ୍ କରିଲେଇ, ତତ୍ତ୍ୱପ୍ରଦର୍ଶକେର୍ ଯଥେଷ୍ଟ ପ୍ରଶଂସା କରାହୟ୍ ।

**ଗାଲିଲିୟ:** ଇହା ଅତ୍ୟନ୍ତ ଆଶ୍ଚର୍ଯ୍ୟେର୍ ବିଷୟ, କୋପର୍ନିକସେର୍ ପରଲୋକ୍‌ଯାତ୍ରାର୍ ଚଲ୍ଲିଶ୍ ବତ୍ସର୍ ପରେ, ଇୟୁରୋପେର୍ ଅତିପ୍ରଧାନ୍ ଜ୍ୟୋତିର୍ବିଦ୍ ଟାଇକୋ ବ୍ରେହି, କ୍ରମାଗତ୍ ତ୍ରିଂଶତ ବତ୍ସର୍, ଜ୍ୟୋତିର୍ବିଦ୍ୟାର୍ ଅନୁଶୀଲନ୍ କରିୟା ଛିଲେନ୍, ତଥାପି କୋପର୍ନିକସେର୍ ପ୍ରଦର୍ଶିତ୍ ପ୍ରଣାଲୀ ଅବଲମ୍ବନ୍ କରେନ୍ ନାଇ । ଯାହା ହଉକ୍, ଅନନ୍ତର୍ ଯେ ଇଟାଲିଦେଶୀୟ ସୁପ୍ରସିଦ୍ଧ ପଣ୍ଡିତ୍, ସେଇ ପ୍ରଣାଲୀ ଅବଲମ୍ବନ୍ କରିୟା, ତାହାର୍ ଯଥୋଚିତ୍ ପୋଷକତା କରେନ୍... ଇଟାଲିର୍ ଅନ୍ତଃପାତୀ ପିସାନଗରେ, ୧୫୬୪ ଖ୍ରୀ.ଅବ୍ଦେ, ଗାଲିଲିୟ ଜନ୍ମଗ୍ରହଣ କରେନ୍ । ...ଏକଦା, ସମବେତ୍ ବହୁସଂଖ୍ୟକ୍ ଦର୍ଶକ୍‌ସମକ୍ଷେ, ତିନି ତତ୍ରତ୍ୟ ପ୍ରଧାନ୍ ଦେବାଲୟେର୍ ଉପରିଭାଗେ ବାରମ୍ବାର୍ ପରୀକ୍ଷା କରିୟା ଦେଖାଇଲେନ୍, ଗୁରୁତ୍ୱ ପତନନିୟାମକ୍ ରହେ । (ଟୀକା: ଅଜ୍ଞ ଲୋକେରା ବୋଧ୍ କରିୟା ଥାକେ, ବସ୍ତୁର୍ ଗୁରୁତ୍ୱ ଅର୍ଥାତ୍ ଭାର୍ ଆଛେ ବଲିୟା ଉହା ଭୂତଲେ ପତିତ୍ ହୟ । ଆର୍ ଯାହାର୍ ଗୁରୁତ୍ୱ ଯତ ଅଧିକ୍ ତାହା ତତ୍ ଶୀଘ୍ର ପତିତ୍ ହୟ । ପୂର୍ବକାଲେ ଅରିଷ୍ଟଟଲ୍ ପ୍ରଭୃତି ଅତିପ୍ରଧାନ୍ ୟୁରୋପୀୟ ପଣ୍ଡିତେରା ଏଇ ମତ୍ ପ୍ରତିପନ୍ନ କରିୟା ଗିୟାଛିଲେନ୍; ଏବଂ ଆମାଦେର୍ ଦେଶେର୍ ନୈୟାୟିକ୍‌ଦିଗେରଓ ଏଇ ମତ୍ । କିନ୍ତୁ ଇହା ଭ୍ରାନ୍ତିମୂଲକ୍ । ପ୍ରକୃତିର୍ ନିୟମାନୁଗତ୍ ନହେ । ପୃଥିବୀର୍ ଆକର୍ଷଣୀ ଶକ୍ତି ଆଛେ, ସେଇ ଶକ୍ତି ଦ୍ୱାରା ଆକୃଷ୍ଟ ହଇୟା ବସ୍ତୁ ସକଲ୍ ଭୂତଲେ ପତିତ୍ ହଇୟା ଥାକେ, ବସ୍ତୁର୍ ଭାରେର୍ ଗୌରବ୍ ଓ ଲାଘବ୍ ଅଗ୍ର ପଶ୍ଚାତ୍ ପତିତ୍ ହଇବାର୍ ନିୟାମକ୍ ନହେ । ତବେ ଯେ ଗୁରୁ ବସ୍ତୁ ଶୀଘ୍ର ଓ ଲଘୁ ବସ୍ତୁ ବିଲମ୍ବେ ପତିତ୍ ହଇତେ ଦେଖାଯାୟ୍, ସେ ସକଲ୍ ବାୟୁର୍ ପ୍ରତିବନ୍ଧକତା ପ୍ରଯୁକ୍ତ । ପରୀକ୍ଷା ଦ୍ୱାରା ସ୍ଥିରୀକୃତ୍ ହଇୟାଛେ, ନିର୍ବାତ ସ୍ଥାନେ ଗୁରୁ ଓ ଲଘୁ ବସ୍ତୁ, ୟୁଗପତ୍ ପରିତ୍ୟକ୍ତ ହଇଲେ, ୟୁଗପତ୍ ଭୂତଲେ ପତିତ୍ ହୟ ।) ଇହାତେ ଅରିଷ୍ଟଟଲେର୍ ମତାବଲମ୍ବୀରା ତାଁହାର୍ ଏମନ୍ ବିପକ୍ଷ ହଇୟା ଉଠିଲେନ୍ ଯେ, ଦୁଇ ବତ୍ସର୍ ପରେ ତାହାକେ ଅଧ୍ୟାପକେର୍ ପଦ୍ ପରିତ୍ୟାଗ୍ କରିୟା ପଲାଇତେ ହଇଲ । ... ଖ୍ରୀ.୧୫୯୨ ଅବ୍ଦେ ତାଁହାକେ ପେଡୁୟାର୍ ବିଶ୍ୱବିଦ୍ୟାଲୟେ ଗଣିତେର୍ ଅଧ୍ୟାପକ୍ ପଦେ ନିଯୁକ୍ତ କରିଲେନ୍... ୟୁରୋପେର୍ ଦୂରତ୍ୱତର ପ୍ରଦେଶ୍ ହଇତେ ଶିଷ୍ୟମଣ୍ଡଳୀ ଉପସ୍ଥିତ୍ ହଇତେ ଲାଗିଲ । ୟୁରୋପୀୟ ପଣ୍ଡିତେରା ସର୍ବତ୍ର ଲାଟିନ୍ ଭାଷାତେଇ ଉପଦେଶ୍ ଦିତେନ୍, ଗାଲିଲିୟ ତାହା ପରିତ୍ୟାଗ କରିୟା ଇଟାଲୀୟ ଭାଷାୟ ଆରମ୍ଭ କରିଲେନ୍ । ତତ୍କାଲେ ଏଇ ନୂତନ୍ ପ୍ରଣାଲୀ ଅବଲମ୍ବନ୍ କରାଓ ଏକପ୍ରକାର୍ ସାହସେର୍ କର୍ମ ବଲିୟା ପରିଗଣିତ୍ ହଇୟାଛିଲ ।

ସେତୁଯାତେ ଅଷ୍ଟାଦଶ୍ ବତ୍ସର୍ ଅବସ୍ଥିତି କରିୟା, ତିନି ପଦାର୍ଥବିଦ୍ୟାସଂକ୍ରାନ୍ତ ଯେ ସକଲ୍ ନୂତନ୍ ନୂତନ୍ ନିୟମ୍ ଉଦ୍‌ଭାବିତ୍ କରେନ୍, ତାହା ତତ୍କାଲେ ପ୍ରଚଲିତ୍ ମତେର୍ ନିତାନ୍ତ ବିପରୀତ୍ । ତଥାପି ତିନି ଅଶଙ୍କିତ୍ ଓ ଅସଙ୍କୁଚିତ୍ ଚିତ୍ତେ, ଶିଷ୍ୟଦିଗକେ ଆନୁଷଙ୍ଗିକ୍ ସେଇ ସକଲ୍ ବିଷୟେ ଶିକ୍ଷା ଦିତେ ଲାଗିଲେନ୍ ।

ଜେନ୍‌ସନ୍ ନାମକ୍ ଏକ୍ ଜନ୍ ଓଲନ୍ଦାଜ୍ ଏକ ଅଭିନବ୍ ଯନ୍ତ୍ର ନିର୍ମାଣ୍ କରିୟା ଛିଲେନ୍। ତଦ୍ଦ୍ୱାରା ଅବଲୋକନ୍ କରିଲେ ଦୂରବର୍ତ୍ତୀ ପଦାର୍ଥ ସକଲ୍ ସନ୍ନିହିତ ବୋଧ୍ ହୟ୍ । ଗାଲିଲିୟ ଐରୂପ୍ ଯନ୍ତ୍ରର୍ ଉଦ୍‌ଭାବନାବିଷୟେ ପ୍ରସ୍ତୁତ୍‌ପ୍ରାୟ୍ ହଇୟା ଛିଲେନ୍; ଏକ୍ଷଣେ, ଖ୍ରୀ. ୧୬୦୯ ଅବ୍ଦେ, ତିନି ଶୁନିବା ମାତ୍ର, ଉହା କି କି ଉପାଦାନେ ନିର୍ମିତ୍ ହଇୟା ଛିଲ, ତାହା ବୁଝିତେ ପାରିଲେନ୍ ଏବଂ ଏକ୍ ଦିବସଓ ବିଲମ୍ବ ନା କରିୟା, ତଦପେକ୍ଷା ଅନେକ୍ ଅଂଶେ ଉତ୍ତମ୍ ତଥାବିଧ ଏକ୍ ଯନ୍ତ୍ର ନିର୍ମାଣ୍ କରିଲେନ୍ । ଏଇ ରୂପେ ଦୂରବୀକ୍ଷଣେର୍ ସୃଷ୍ଟି ହଇଲ ।...

ଗାଲିଲିୟ, ଏଇ ଦୃଷ୍ଟିପୋଷକ୍ ନଲାକାର୍ ନୂତନ୍ ଯନ୍ତ୍ର ନଭୋମଣ୍ଡଲେ ପ୍ରୟୋଗ୍ କରିୟା ଦେଖିତେ ପାଇଲେନ୍, ଚନ୍ଦ୍ରମଣ୍ଡଲେର୍ ଉପରି ଭାଗ ଅତ୍ୟନ୍ତ ବନ୍ଧୁର୍; ସୂର୍ଯ୍ୟମଣ୍ଡଲ୍ ସମୟେ ସମୟେ କଲଙ୍କିତ୍ ଲକ୍ଷ୍ୟ ହୟ; ଛାୟାପଥ୍ ସୂକ୍ଷ୍ମତାରକାସ୍ତବକ୍ ମାତ୍ର; ବୃହସ୍ପତି ପାରିପାର୍ଶ୍ୱିକ୍‌ଚତୁଷ୍ଟୟେ ପରିବେଷ୍ଟିତ; ଶୁକ୍ରଗ୍ରହେର୍, ଚନ୍ଦ୍ରେର୍ ନ୍ୟାୟ୍, ହ୍ରାସ୍ ବୃଦ୍ଧି ଆଛେ; ଶନୈଶ୍ଚରେର୍ ଉଭୟ ପାର୍ଶ୍ୱେ ପକ୍ଷାକାର୍ କୋନଓ ପଦାର୍ଥ ଆଛେ । ଐ ପକ୍ଷ ଏକ୍ଷଣେ ଅଙ୍ଗୁରୀୟ ବଲିୟା ସିଦ୍ଧାନ୍ତିତ ହଇୟାଛେ । ... କୋପର୍ନିକସ୍ କେବଲ୍ ଦୈବଗତ୍ୟା ଯେ ସକଲ୍ ନିଗ୍ରହ ଅତିକ୍ରମ୍ କରିୟା ଗିୟାଛିଲେନ୍, ଏକ୍ଷଣେ ଗାଲିଲିୟକେ ତତ୍‌ସମୁଦାୟ ବିଲକ୍ଷଣ୍ ରୂପେ ଭୋଗ୍ କରିତେ ହଇଲ । ତତ୍କାଲେ ତିନି ଏକ୍ ଗ୍ରନ୍ଥ ପ୍ରଚାର୍ କରେନ୍; ତାହାତେ ସ୍ପଷ୍ଟ ଲିଖିୟାଛିଲେନ୍, ଆମି ଯାହା ଯାହା ଉଦ୍‌ଭାବିତ୍ କରିୟାଛି, ତଦ୍ଦ୍ୱାରା କୋପର୍ନିକସେର୍ ପ୍ରଦର୍ଶିତ୍ ପ୍ରଣାଲୀର୍ ଯଥାର୍ଥତା ସପ୍ରମାଣ ହଇୟାଛେ । ଇହାତେ ଏଇ ଘଟିଲ ଯେ, ଯାଜକେରା ତାଁହାର ନାମେ ଧର୍ମବିପ୍ଲାବକ୍ ବଲିୟା ଅଭିଯୋଗ୍ ଉପସ୍ଥିତ୍ କରାତେ, ଖ୍ରୀ. ୧୬୧୫ ଅବ୍ଦେ, ତାଁହାକେ ରୋମ୍‌ନଗରୀର୍ ଧର୍ମସଭାର୍ ସମ୍ମୁଖେ ଉପସ୍ଥିତ୍ ହଇତେ ହଇଲ । ସଭାଧ୍ୟକ୍ଷେରା ତାଁହାକେ ଏଇ ପ୍ରତିଜ୍ଞାଶୃଙ୍ଖଲେ ବଦ୍ଧ କରିଲେନ୍, ଆର୍ ଆମି ଏରୂପ୍ ସଂଘାତକ୍ ମତ୍ କଦାଚ ମୁଖେ ଆନିବ ନା । ... ଗାଲିଲିୟ ଧର୍ମସଭାର ଅଗ୍ରେ ଯେରୂପେ ପ୍ରତିଜ୍ଞା କରିୟାଛିଲେନ୍, ତଦନୁସାରେ କୟେକ୍ ବତ୍ସର୍ ପର୍ଯ୍ୟନ୍ତ କ୍ଷାନ୍ତ ହଇୟା ରହିଲେନ୍, କିନ୍ତୁ ଜ୍ୟୋତିର୍ବିଦ୍ୟାର୍ ଯେ ଯଥାର୍ଥ ମତ୍ ଅବଲମ୍ବନ୍ କରିୟାଛିଲେନ୍ ତାହାର୍ ଅନୁଶୀଳନେ ବିରତ ହଇଲେନ୍ ନା । ପରିଶେଷେ, ତିନି କୋପର୍ନିକସେର୍ ପ୍ରଦର୍ଶିତ୍ ପ୍ରଣାଳୀର୍ ସବିସ୍ତାର୍ ବିବରଣ୍

ଭୂମଣ୍ଡଳେ ପ୍ରଚାର୍ କରିବାର୍ ନିମିତ୍ତ ନିତାନ୍ତ ଉତ୍ସୁକ୍ ହଇଲେନ୍; କିନ୍ତୁ କୁସଂସ୍କାରାବିଷ୍ଟ ବିପକ୍ଷବର୍ଗେର୍ ବିଦ୍ୱେଷଭୟେ ସ୍ପଷ୍ଟରୂପେ ଆତ୍ମମତ୍ ବ୍ୟକ୍ତ ନା କରିୟା, ତିନ୍‌ଜନେର୍ କଥୋପକଥନାତ୍ମକ୍ ଏକ୍ ଗ୍ରନ୍ଥ ଲିଖିଲେନ୍ । ତାହାତେ ପ୍ରଥମ୍ ବ୍ୟକ୍ତି କୋପର୍ନିକସେର୍ ମତ୍ ରକ୍ଷାକରିତେଛେ; ଦ୍ୱିତୀୟ ବ୍ୟକ୍ତି ଟଲେମି ଓ ଅରିଷ୍ଟଟଲେର୍; ତୃତୀୟ ବ୍ୟକ୍ତି ଉଭୟପକ୍ଷ ପ୍ରଦର୍ଶିତ୍ ଯୁକ୍ତି ଓ ତର୍କେର ଏ ରୂପେ ବଲାବଲ୍ ବିବେଚନା କରିତେଛେ ଯେ, ଉପସ୍ଥିତ୍ ବିଷୟ୍ ଆପାତତଃ ଅନିର୍ଣୟାତ୍ମକ୍ ବୋଧ୍ ହୟ୍ । କିନ୍ତୁ ଅଭିନିବେଶ ପୂର୍ବକ୍ ବିବେଚନା କରିୟା ଦେଖିଲେ, କୋପର୍ନିକସେର୍ ପକ୍ଷେ ପ୍ରଦର୍ଶିତ୍ ଯୁକ୍ତିର୍ ପ୍ରବଲତାବିଷୟେ ଭ୍ରାନ୍ତି ହଇବାର୍ ବିଷୟ ନାଇ । ...କିନ୍ତୁ ଉକ୍ତ ପୁସ୍ତକ୍ ରୋମ୍ ଓ ଫ୍ଲୋରେନ୍ସ ନଗରେ ପ୍ରଚାରିତ୍ ହଇବାମାତ୍ର, ଅରିଷ୍ଟଟଲେର୍ ମତାବଲମ୍ବୀରା ଏକ୍ କାଲେ ଚାରିଦିକ୍ ହଇତେ ଆକ୍ରମଣ୍ କରିଲ; ତନ୍ମଧ୍ୟେ ପିସାର୍ ଦର୍ଶନ୍‌ଶାସ୍ତ୍ରର ଅଧ୍ୟାପକ୍ ସର୍ବାପେକ୍ଷା ଅଧିକ୍ ବିପକ୍ଷତା ଓ ବିଦ୍ୱେଷ ପ୍ରଦର୍ଶନ୍ କରିୟା ଛିଲେନ୍ । ...ବିପକ୍ଷେରା ଯତ୍ପରୋନାସ୍ତି ଉତ୍ପୀଡ଼ନ୍ କରାତେ, ଖ୍ରୀ.୧୬୩୩ ଅବ୍ଦେର୍ ଶୀତ୍‌କାଲେ ତାଁହାକେ... ଧର୍ମସଭାର୍ ଅଧକ୍ଷେରା କାରାଗାରେ ନିକ୍ଷିପ୍ତ କରିଲେନ୍ । ...ତାହାଁରା ଏଇ ଦଣ୍ଡବିଧାନ୍ କରିଲେନ୍, ତୋମାକେ ଆମାଦେର୍ ସମ୍ମୁଖେ ଆଁଠୁ ପାଡ଼ିୟା ଓ ବାୟବଲ୍ ସ୍ପର୍ଶ କରିୟା କହିତେ ହଇବେ, ଆମି ପୃଥିବୀର୍ ଗତି ପ୍ରଭୃତି ଯାହା ଯାହା ପ୍ରତିପନ୍ନ କରିୟାଛି ସେ ସମୁଦାୟ ଅସ୍ୱର୍ଗ୍ୟ, ଅଶ୍ରଦ୍ଧେୟ, ଧର୍ମବିଦ୍ୱିଷ୍ଟ ଓ ଭ୍ରାନ୍ତିମୂଳକ୍ । ଗାଲିଲିୟ, ସେଇ ବିଷମ୍ ସମୟେ ମନେର୍ ଦୃଢ଼ତା ରକ୍ଷା କରିତେ ନା ପାରିୟା, ଯଥୋକ୍ତ ପ୍ରକାରେ ପୂର୍ବନିର୍ଦ୍ଦିଷ୍ଟ ପ୍ରତିଜ୍ଞାବାକ୍ୟ ଉଚ୍ଚାରଣ୍ କରିଲେନ୍ । କିନ୍ତୁ ଗାତ୍ରୋତ୍ଥାନ୍ କରିବାମାତ୍ର, ଆନ୍ତରିକ୍ ଦୃଢ଼ ପ୍ରତ୍ୟୟର୍ ବିପରୀତ୍ କର୍ମ କରିଲାମ୍, ଏଇ ଭାବିୟା ମନୋମଧ୍ୟେ ଘୃଣାରୋଷସହକୃତ୍ ଯତ୍ପରୋନାସ୍ତି ଅନୁତାପ୍ ଉପସ୍ଥିତ୍ ହଓୟାତେ, ତିନି ପୃଥିବୀତେ ପଦାଘାତ୍ କରିୟା ଉଚ୍ଚୈସ୍ୱରେ କହିଲେନ୍ ଇହା ଏଖନଓ ଚଲିତେଛେ । ବିଚାରକର୍ତାରା, ଗାଲିଲିୟେର୍ ନାସ୍ତିକବୁଦ୍ଧିର୍ ପୁନଃସଞ୍ଚାର୍ ଦେଖିୟା, ଏଇ ଉତ୍କଟ୍ ଦଣ୍ଡବିଧାନ୍ କରିଲେନ୍, ତୋମାକେ ଯାବଜ୍ଜୀବନ୍ କାରାଗାରେ ଥାକିତେ ହଇବେକ୍ । ... ଏଇ ରୂପେ କାରାନିରୁଦ୍ଧ ହଇୟା, ତିନି ପଦାର୍ଥବିଦ୍ୟାର୍ ଅନୁଶୀଲନ୍ ଦ୍ୱାରା କାଲ୍‌ହରଣ୍ କରିତେ ଲାଗିଲେନ୍।

ଗାଲିଲିୟ ତତ୍କାଲେ ନେତ୍ରରୋଗେ ଅତ୍ୟନ୍ତ ଅଭିଭୂତ୍ ହଇୟାଛିଲେନ୍; ଏକ୍‌ଟି ଚକ୍ଷୁ ଏକବାରେ ନଷ୍ଟ ହଇୟା ଯାୟ୍, ଦ୍ୱିତୀୟ ପ୍ରାୟ ଅକର୍ମଣ୍ୟ ହୟ୍; ତଥାପି, ୧୬୩୭ ଖ୍ରୀ.ଅବ୍ଦେ, ଚନ୍ଦ୍ରେର୍ ତୁଲାମାନ ପ୍ରକାଶ୍ କରେନ୍ । ଶେଷ୍ ଦଶାୟ୍ ତିନି ଅନ୍ଧତା, ବଧିରତା, ନିଦ୍ରାର ଅଭାବ୍ ଓ ସର୍ବାଙ୍ଗ ବ୍ୟାପିନୀ ବେଦନାତେ ଅତ୍ୟନ୍ତ ଅଭିଭୂତ୍ ଓ ବିକଲ୍ ହଇୟା ଛିଲେନ୍; କିନ୍ତୁ ତାଁହାର୍ ମନ୍ ତତ୍କାଲ୍ ପର୍ଯ୍ୟନ୍ତ ଅନଲସ୍ ଓ କର୍ମଣ୍ୟ

ଛିଲ । ତିନି ଖ୍ରୀ.୧୬୩୮ ଅବ୍ଦେ, ସ୍ୱୟଂ ଲିଖିୟାଛେନ୍, ଆମି ଅନ୍ଧ ଦଶାୟ୍ ଏକ୍‌ବାର୍ ବିଶ୍ୱରଚନାସଂକ୍ରାନ୍ତ ଏକ ବିଷୟ ଅନୁଧାନ୍ କରି, ଆର୍ ବାର୍ ଆର୍ ବିଷୟ; ଆର୍ ପ୍ରଯନ୍‌କରି, କୋନ୍‌ଓ ରୂପେଇ ଅସ୍ଥିର୍ ଚିତ୍ତକେ ସ୍ଥିର୍ କରିତେ ପାରି ନା । ଏଇ ସର୍ବକ୍ଷଣିକ୍ ଚିନ୍ତାଭ୍ୟାସଙ୍ଗ ଦ୍ୱାରା ଆମାର୍ ଏକବାରେ ନିଦ୍ରାର୍ ଉଚ୍ଛେଦ୍ ହଇୟାଛେ ।

ଏଇ ଅବସ୍ଥାତେ, କ୍ରମଶଃ, କ୍ଷୟକାରୀ ଜ୍ୱରରୋଗେ ଆକ୍ରାନ୍ତ ହଇୟା, ଗାଲିଲିୟ, ଅଷ୍ଟସପ୍ତତି ବତ୍ସର୍ ବୟଃକ୍ରମ୍ କାଲେ, ଖ୍ରୀ.୧୬୪୨ ଅବ୍ଦେର୍ ଜାନୁଆରୀ ମାସେ, ପ୍ରାଣତ୍ୟାଗ୍ କରିଲେନ୍ ।...

**ସର୍ ଆଇଜାକ୍ ନିଉଟନ୍:** ଯେ ବତ୍ସର୍ ଗାଲିଲିୟ କଲେବର୍ ପରିତ୍ୟାଗ୍ କରେନ୍, ସେଇ ବତ୍ସର୍ ଆଇଜାକ୍ ନିଉଟନେର୍ ଜନ୍ମ ହୟ । ... ଏକଦା, ତିନି ଏକଟା ପୁରାଣ ବାକ୍‌ସ ଲଇୟା ଜଲେର୍ ଘଡ଼ୀ ନିର୍ମାଣ୍ କରିୟାଛିଲେନ୍ । ଏ ଘଡ଼ୀର ଶଙ୍କୁ, ବାକ୍‌ସମଧ୍ୟ ହଇତେ ଅନବରତ୍-ନିର୍ଗତଜଲ୍ ବିନ୍ଦୁପାତ୍ ଦ୍ୱାରା ନିମଗ୍ନକାଷ୍ଠଖଣ୍ଡ ପ୍ରତିଘାତେ, ପରିଚାଲିତ୍ ହଇତ; ବେଲାବୋଧନାର୍ଥ ତାହାତେ ଏକ୍‌ଟି ପ୍ରକୃଷ୍ଟ ସଙ୍କୁପଟ୍ଟ ବ୍ୟବସ୍ଥାପିତ ଛିଲ ।

...ତିନି କେମ୍ବ୍ରିଜେ ପ୍ରବିଷ୍ଟ ହଇୟା, ପ୍ରଥମତଃ ଫର୍ଗୁର୍ସନ୍ ରଚିତ ନ୍ୟାୟଶାସ୍ତ୍ର, କେପ୍ଲର୍-ପ୍ରଣିତ ଦୃଷ୍ଟିବିଜ୍ଞାପନ୍, ଓୟାଲିସ୍-ଲିଖିତ ଅସ୍ମିତପାଟୀଗଣିତ୍ ଏଇ କୟେକ୍ ଗ୍ରନ୍ଥ ପାଠ୍ କରେନ୍; ସାତିଶୟପରିଶ୍ରମ୍ ସହକାରେ ଡେକାର୍ଟ-ରଚିତ୍ ରେଖାଗଣିତ୍ ଗ୍ରନ୍ଥ ଅଧ୍ୟୟନ୍ କରେନ୍; ଆର୍ ତତ୍କାଲେ ନକ୍ଷତ୍ରବିଦ୍ୟାର୍ କିଛୁ କିଛୁ ଚର୍ଚ୍ଚା ଥାକାତେ, ତାହାର୍‌ଓ ଅନୁଶୀଲନ୍ କରିୟାଛିଲେନ୍ । ତିନି ଇଉକ୍ଲିଡେର୍ ଗ୍ରନ୍ଥ ଅତ୍ୟଲ୍ପମାତ୍ର ପାଠ୍ କରେନ୍ । ଏ ରୂପ ପ୍ରସିଦ୍ଧି ଆଛେ, ତିନି ପ୍ରାଚୀନ୍ ଗଣିତଜ୍ଞଦିଗେର୍ ଗ୍ରନ୍ଥ ଉତ୍ତମରୂପେ ପାଠ୍ କରାହୟନାଇ ବଲିୟା, ଉତ୍ତର୍‌କାଲେ ଅନୁତାପ୍ କରିୟାଛିଲେନ୍ ।

...ବିଖ୍ୟାତ୍ ପଣ୍ଡିତ୍ ଡେକାର୍ଟ ଏଇ ସିଦ୍ଧାନ୍ତ କରିୟାଛିଲେନ୍ ଯେ, ଅନ୍ତରୀକ୍ଷବ୍ୟାପୀ ସ୍ଥିତିସ୍ଥାପକଗୁଣୋପେତ୍ ଅତିବିରଲ୍ ପଦାର୍ଥ ବିଶେଷର୍ ସଞ୍ଚାଲନ୍‌ବିଶେଷ୍ ଦ୍ୱାରା ଆଲୋକେର୍ ଉତ୍ପତ୍ତି ହୟ୍ । ନିଉଟନ୍ ଏଇ ମତ୍ ଖଣ୍ଡନ୍ କରିଲେନ୍ । ତିନି ଅନ୍ଧକାରାବୃତଗୃହମଧ୍ୟେ ପ୍ରବେଶ୍ ପୂର୍ବକ୍, ବହୁକୋଣ୍‌ବିଶିଷ୍ଟ ଏକ୍ ଖଣ୍ଡ କାଚ୍ ଲଇୟା, କପାଟେର୍ କ୍ଷୁଦ୍ର ଛିଦ୍ର ଦ୍ୱାରା ତଦୁପରି ସୂର୍ଯ୍ୟେର୍ କିରଣ୍ ପାତିତ୍ କରିତେ ଲାଗିଲେନ୍ । ଏଇରୂପ ପରୀକ୍ଷା ଦ୍ୱାରା ଦେଖିତେ ପାଇଲେନ୍, ଆଲୋକ୍ କାଚେର୍ ମଧ୍ୟ ଦିୟା ଗମନ୍ କରିୟା ଏ ପ୍ରକାର୍ ଭଙ୍ଗୁର୍ ହଇୟାଛେ ଯେ, ଭିତ୍ତିର୍ ଉପର୍ ସପ୍ତବିଧ ବିଭିନ୍ନ ବର୍ଣ୍ଣ ପ୍ରକାଶ୍ ପାଇୟାଛେ । ଅନନ୍ତର୍, ଅସାଧାରଣ୍‌କୌଶଲ୍ ପୂର୍ବକ୍ ଅଶେଷ୍ ପ୍ରକାରେ ପରୀକ୍ଷା କରିୟା, ତିନି ଏଇ କୟେକ୍ ମହୋପକାରକ୍ ବିଷୟ ନିର୍ଦ୍ଧାରିତ୍ କରିଲେନ୍-

ଆଲୋକ୍‌ପଦାର୍ଥ କିରଣାତ୍ମକ୍; ଐ ସକଲ୍ କିରଣକେ ବିଭକ୍ତ କରିୟା ଅଣୁ କରାଯାଇତେ ପାରେ; ଶୁକ୍ଲ ଆଲୋକେର୍ ପ୍ରତ୍ୟେକ୍ କିରଣେ ରକ୍ତ, ପୀତ, ନୀଲ୍ ଏଇ ତିନି ମୂଳୀଭୂତ୍ କିରଣ୍ ଆଛେ; ଏଇ ତ୍ରିବିଧ କିରଣ୍ ଅପେକ୍ଷାକୃତ ନ୍ୟୂନାଧିକ୍ ଭଙ୍ଗୁର୍ ହଇୟା ଥାକେ । ନିଉଟନେର୍ ଏଇ ଅସାଧାରଣ୍ ଅଭିନବ୍ ଆବିଷ୍କ୍ରିୟାକେ ଦୃଷ୍ଟିବିଜ୍ଞାନ୍‌ଶାସ୍ତ୍ରେର୍ ମୂଳ୍‌ସୂତ୍ରସ୍ୱରୂପ୍ ଗଣନା କରିତେ ହଇବେକ୍ ।...

ଏକ ଦିବସ୍ ତିନି ଉପବନ୍‌ମଧ୍ୟେ ଉପବିଷ୍ଟ ଆଛେନ୍, ଏମନ୍ ସମୟେ ଦୈବଯୋଗେ ତାଁହାର୍ ସମ୍ମୁଖବର୍ତ୍ତୀ ଆତାବୃକ୍ଷ ହଇତେ ଏକ୍ ଫଲ୍ ପତିତ୍ ହଇଲ । ତଦ୍ଦର୍ଶନେ ତିନି ତତ୍‌କ୍ଷଣାତ୍ ବସ୍ତୁମାତ୍ରେର୍ ପତନ୍‌ନିୟାମ୍‌କସାଧାରଣ୍ କାରଣ୍‌ବିଷୟିଣୀ ପର୍ଯ୍ୟାଲୋଚନାୟ୍ ପ୍ରବୃତ୍ତ ହଇଲେନ୍ । ଅନନ୍ତର, ତିନି ଏଇ ବିଷୟ ପୁନର୍ବାର୍ ଆଲୋଚନା କରିୟା ସ୍ଥିର୍ କରିଲେନ୍, ଯେ କାରଣ୍ ବଶତଃ ଆତା ଭୂତଲେ ବତିତ୍ ହଇଲ, ସେଇ କାରଣେଇ ଚନ୍ଦ୍ର ଓ ଗ୍ରହମଣ୍ଡଳୀ ସ୍ୱ ସ୍ୱ କକ୍ଷେ ବ୍ୟବସ୍ଥାପିତ୍ ଆଛେ ଏବଂ ତାହାର ପରମାଦ୍‌ଭୂତ୍‌ଶକ୍ତି ସହକାରେ ଅତି ସହଜେ ସମୁଦାୟ ଜ୍ୟୋତିଷ୍କମଣ୍ଡଳୀର ଗତି ନିୟମିତ୍ କରିତେଛେ । ଏଇ ରୂପେ ଗୁରୁତ୍ୱର ନିୟମ୍ ଆବିଷ୍କୃତ୍ ହଇଲ । ...ତିନି ଅଲୌକିକ୍ ବୁଦ୍ଧିଶକ୍ତିର୍ ପ୍ରଭାବ୍, ଗ୍ରହଣେର୍ ଗତି, ଧୂମକେତୁଗଣେର୍ କକ୍ଷ, ସମୁଦ୍ରେ ଜଲୋଚ୍ଛ୍ୱାସ୍, ଏଇ ସକଲ୍ ବିଷୟେର୍ ମୀମାଂସା କରିୟାଛେନ୍ । ଆଲୋକ୍ ଓ ବର୍ଣ୍ଣ ଏଇ ଦୁଇ ପଦାର୍ଥେର୍ ସ୍ୱରୂପ୍ ନିର୍ଣ୍ଣୟ କରିୟାଛେନ୍ । ତାଁହାର୍ ପୂର୍ବେ ଏଇ ବିଷୟ କୋନ୍‌ଓ ବ୍ୟକ୍ତିର ମନେ ଉଦିତ୍ ହୟନାଇ ।...

ଇଦୃଶ ଲୋକୋତ୍ତରବୁଦ୍ଧିବିଦ୍ୟାସମ୍ପନ୍ନ ହଇୟାଓ, ତିନି ସ୍ୱଭାବତଃ ଏମନ୍ ବିନୀତ୍ ଛିଲେନ୍ ଯେ, ଆପନ୍ ବିଦ୍ୟାର୍ କିଞ୍ଚିନ୍ମାତ୍ର ଅଭିମାନ୍ କରିତେନ୍ ନା । ତାଁହାର୍ ଏଇ ଏକ୍ ସୁପ୍ରସିଦ୍ଧ କଥା ଧରାତଲେ ଜାଗରୁକ୍ ଆଛେ, ଆମି ବାଲକେର୍ ନ୍ୟାୟ ବେଲାଭୂମି ହଇତେ ଉପଲ୍‌ଖଣ୍ଡ ସଙ୍କଲନ୍ କରିତେଛି, ଜ୍ଞାନମହାର୍ଣବ ପୁରୋଭାଗେ ଅକ୍ଷୁର୍ଣ୍ଣ ରହିୟାଛେ ।

ଜୀବନଦୃଷ୍ଟି ଯେହେତୁ ଏଠି ବହୁକୌଣିକ, ବିଦ୍ୟାସାଗରଙ୍କୁ ସଂଜ୍ଞାବଦ୍ଧକରି ସାରବତ୍ତା ଖୋଜିବା ପଣ୍ଡଶ୍ରମ; ମାତ୍ର କଣପାଇଁ କରିଥିଲେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନକୁ ଜୀବନର ବ୍ରତ ? ଅଥଚ ଥିଲେ ତ ସଂପୂର୍ଣ୍ଣ ଅରାଜନୈତିକ ବ୍ୟକ୍ତିତ୍ୱ; ଏପରିକି, ରାଜନୀତି ପ୍ରତି ପ୍ରତିକ୍ରିୟା ମଧ୍ୟ ଅରାଜନୈତିକ; 'ବାବୁରା କଂଗ୍ରେସ୍ କରୁଛେନ୍, ଭାରତ୍ ଉଦ୍ଧାର୍ କରୁଛେନ୍ । ଦେଶେର୍ ହାଜାର୍ ହାଜାର୍ ଲୋକ୍ ଅନାହାରେ ପ୍ରତିଦିନ୍ ମରୁଛେ, ସେ ଦିକେ କାରୁଓ ଚୋଖ୍‌ନେଇ । ରାଜନୀତି ନିୟେ କି ହବେ ? ଯେ ଦେଶେର୍ ଲୋକ୍ ଦଲେ ଦଲେ ନା ଖେୟେ ପ୍ରତ୍ୟହ ମରେୟାଛେ, ସେ ଦେଶେ

ଆବାର୍ ରାଜନୀତି କି?' ଏ ହେଉଚି ୧୮୮୫ର ଘଟଣା । ସେଇବର୍ଷ ପ୍ରତିଷ୍ଠାକରାଯାଇଚି ଜାତୀୟ କଂଗ୍ରେସ୍, ବମ୍ବେଠିଁ । ତାଙ୍କୁ ମଧ୍ୟ ଅନୁରୋଧ କରାଯାଇଚି ଯୋଗଦେବାକୁ; ମାତ୍ର ରୋକ୍‌ଠୋକ୍ ପଚ୍ଛରିଚନ୍ତି, 'ଦେଶେର୍ ସ୍ୱାଧୀନତା ପେତେଗେଲେ ଶେଷ୍‌ପର୍ଯ୍ୟନ୍ତ ଯଦି ଦରକାର୍ ହୟ, ତୋମ୍‌ରା କି ତଲୋୟାର୍ ଧର୍‌ତେ ପାର?' ବ୍ୟାରିଷ୍ଟର୍‌ମାନେ ଜବାବଦେଇ ପାରିନାହାଁନ୍ତି; ବାବୁମାନେ ହୁଏତ ଧରିନେଇଚନ୍ତି, ଆଉକିଛି ନହେଉ, ନୈତିକ ଉନ୍ନତି ସକାଶେ ତ ରାଜନୀତି ଦରକାର! କିନ୍ତୁ ଜଣେମାତ୍ର ସେକିଉଲାର୍ ମଣିଷ, ରାଜନୀତିରୁ ଦୂରରେ, ପରିପୂର୍ଣ୍ଣ ଏକ ଜୀବନଦର୍ଶନକୁ ଶିରୋଧାର୍ଯ୍ୟକରି ଯେ ବାଟ ଚାଲିପାରେ, ସେ ବୋଧ କାହାରି ମନକୁ ଛୁଇଁନାହିଁ । ଏପରିକି, ଅରବିନ୍ଦଙ୍କୁ ସୁଦ୍ଧା । ମାତୃଭାଷାକୁ ଅଗ୍ରାଧିକାର ଦେବା ମୂଳରେ ରାଜନୀତି ନଥିଲା । ସେଇ ସମୟରେ ଅନ୍ତତଃ । ବରଂ ବିଦ୍ୟାସାଗରଙ୍କ ଚିନ୍ତାରେ, ମାତୃଭାଷା ହିଁ ଆତ୍ମପ୍ରକାଶର ଏକମାତ୍ର ମାଧ୍ୟମ, କାହିଁକିନା, ନିଜ ହାତରେ ତାକୁ ନପାଇଲେ, କେହି ଜାତି ସୁଦ୍ଧା ନିଜ ଚିନ୍ତାଭାବନାକୁ ସ୍ଥାୟୀରୂପ ଦେଇପାରେନା । ୧୮୫୨ ଏପ୍ରିଲ୍ ୧୨ତାରିଖ ଦିନ ନିଜ ଶିକ୍ଷାସଂସ୍କାର ଭାବନାକୁ ଛବିଶପରିଚ୍ଛେଦସମ୍ବଳିତ ଏକ ରଚନାରେ ପ୍ରକାଶକରିଚନ୍ତି ଈଶ୍ୱରଚନ୍ଦ୍ର; ସେଥିରେ କୁହାଯାଇଚି, (୧)ଶିକ୍ଷାର ତତ୍ତ୍ୱାବଧାନ ଭାର ଯିଏ ନେଇଚନ୍ତି, ତାଙ୍କ ଲକ୍ଷ୍ୟ ହେବା ଉଚିତ ସମୃଦ୍ଧ ଓ ଉନ୍ନତ ବଙ୍ଗଳା-ସାହିତ୍ୟ ସୃଷ୍ଟି, (୨) ଇଉରୋପୀୟ ଆକରରୁ ଜ୍ଞାନବିଦ୍ୟାର ଉପକରଣ ଆହରଣକରିବାକୁ ଯିଏ ଅକ୍ଷମ, ଏବଂ ଆହରଣକରି ଭାବଗାମ୍ଭୀର ପ୍ରାଞ୍ଜଳ ବଙ୍ଗଳାରେ ସେ ଜ୍ଞାନକୁ ପ୍ରକାଶକରିବାକୁ ଅସମର୍ଥ, ଅଭିପ୍ରେତ ସାହିତ୍ୟ କେବେ ସୃଷ୍ଟିକରି ପାରିବେନାହିଁ, (୩) ସଂସ୍କୃତଭାଷାରେ ଯିଏ ପାରଦର୍ଶୀ ନୁହେଁ, ସୁସଂବଦ୍ଧ ବଙ୍ଗଳାରଚନା ତାଙ୍କ ଦ୍ୱାରା ସମ୍ଭବପର ନୁହେଁ, ଏବଂ ସେଥିପାଇଁ, ସଂସ୍କୃତପଣ୍ଡିତଙ୍କୁ ଇଂରେଜୀଭାଷା ଓ ସାହିତ୍ୟରେ ଶିକ୍ଷିତହେବାକୁ ପଡ଼ିବ। ଏ ଆଦର୍ଶର ବାସ୍ତବାୟନ ଘଟିଥିଲା ବଙ୍କିମ୍‌ଚନ୍ଦ୍ରଙ୍କ ରଚନାରେ । ପ୍ରତିବେଶୀ ଓଡ଼ିଶାରେ, ସମକାଳର ଅରାଜନୈତିକ ବ୍ୟକ୍ତିତ୍ୱ ଫକୀରମୋହନଙ୍କ ଚରିତ୍ର ଓ ରଚନାରେ ପରିଦୃଷ୍ଟ ବିଦ୍ୟାସାଗର ଓ ବଙ୍କିମ୍‌ଙ୍କ ଅଭାବନୀୟ ଅନ୍ୱୟ; ମାତ୍ର ଇଂରାଜୀ କି ସଂସ୍କୃତ, କୋଉ ଗୋଟାକରେ ହେଲେ, ଫକୀରମୋହନ ବିଦଗ୍ଧ ନୁହେଁ । ଭାଷା ପାଇଚନ୍ତି ଚଷାଭୁଷା, ମାଝିମାଲା, ଦର୍ଜି କିରାଣୀ ବେଶ୍ୟାଙ୍କ ମୁହଁରୁ । ସେମାନଙ୍କ ସାଙ୍ଗରେ ଅନ୍ତରଙ୍ଗ ସଂସ୍ରବ ଘଟିଚି ନିଜ ଜୀବନଯାତ୍ରାର ବର୍ଣ୍ଣମୟ ବୈଚିତ୍ର୍ୟ କାରଣରୁ, ଏବଂ ସେଥିପାଇଁ, ତାଙ୍କ ରଚନାରେ ସଂସ୍କୃତର ଗାମ୍ଭୀର୍ଯ୍ୟ ନାହିଁ କି ଇଂରେଜୀର ବିଜାତୀୟତା ନାହିଁ । ପରିବ୍ରାଜକର ଅବସ୍ଥାନରୁ ଜୀବନକୁ ଦେଖିଚନ୍ତି ଚିରକାଳ, ଏବଂ ସେଥିପାଇଁ, ତାଙ୍କ

ଜୀବନଦୃଷ୍ଟି ମଧ୍ୟ ସେକିଉଲାର୍ । ଅଥଚ ବଙ୍କିମ୍ ହୋଇପାରିନାହାଁନ୍ତି କସ୍ମିନ୍‌କାଳେ ସେକିଉଲାର୍ । ତୁଳନା ଏଠି ଅଭିପ୍ରେତ ନୁହେଁ; ପରାର୍ଥବାଦୀ ପରିବର୍ତ୍ତନକାମୀ ଯୁବକଯୁବତୀଙ୍କୁ ଖାଲି ଚେତାଇଦେବାକୁ ଚହେଁ ଯେ ଅରାଜନୈତିକ ଅବସ୍ଥାନରୁ ମଧ୍ୟ ଦେଶକାମ କୃତାର୍ଥ ହୋଇପାରେ । ତେବେ ଏକଥା ମଧ୍ୟ ସ୍ମରଣଯୋଗ୍ୟ ଯେ ବିଦ୍ୟାସାଗରଙ୍କ ସହିତ ଫକୀରମୋହନଙ୍କର ଥିଲା ପ୍ରତ୍ୟକ୍ଷ ସଂଯୋଗ; ଏପରିକି, *ଚରିତାବଲୀ* ର ସ୍ୱକୃତ ତର୍ଜମା ଫକୀରମୋହନ ଓଡ଼ିଶାରେ ଚଳାଇଥିଲେ ପାଠ୍ୟପୁସ୍ତକ ରୂପରେ । ବିଦ୍ୟାସାଗରଙ୍କ ତିରୋଧାନ ଉତାରୁ ଏ ଧାରା ଅବଶ୍ୟ ଶୁଖିଯାଇଚି; ଶିକ୍ଷାପ୍ରଣାଳୀରେ ଧର୍ମୀୟ ଅନୁଷଙ୍ଗ ଲାଭକରିଚି ପ୍ରାଧାନ୍ୟ । ବିରକ୍ତହୋଇ ବିଜ୍ଞାନସାଧକ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ସେତେବେଳେ ଲେଖିଚନ୍ତି, ଆମରା ଏଖନ୍ 'ଜାତୀୟ' ଶିକ୍ଷା ଚଇ । କିନ୍ତୁ ଜାତୀୟଶିକ୍ଷା କି ? ଜାତୀୟଶିକ୍ଷା ଅର୍ଥେ କି ବଟ୍‌ତଲାର୍ ବଇ ପଡ଼ା ? ଆର୍ଯ୍ୟ ସମାଜେର୍ ଲୋକେ ଜାତୀୟଶିକ୍ଷାର ଅର୍ଥ କର୍‌ଛେନ୍ ବେଦ୍ ପାଠ୍ କରା, କେନନା, ତାଁଦେର୍ ମତେ ବେଦ୍ ଅଭ୍ରାନ୍ତ । ବିବେକାନନ୍ଦେର୍ ଭକ୍ତ ବଲ୍‌ବେନ୍ - ବେଦାନ୍ତ ପାଠ୍ କର- ଦୈତ ଅଦ୍ୱୈତ ବିଶିଷ୍ଟାଦ୍ୱୈତବାଦ ବିଚରକର, ଆବାର୍ କେଉ ବା ବଲ୍‌ବେନ୍ - ରାମାୟଣ୍ ମହାଭାରତ୍ ପୁରାଣ ପାଠ୍ କର । କିନ୍ତୁ ହିନ୍ଦୁ ମୁସଲ୍‌ମାନ୍ ଖ୍ରୀଷ୍ଟାନ୍ ପ୍ରଭୃତି ନାନା ଧର୍ମାବଲମ୍ବୀ ଭାରତବାସୀଗଣ୍ ସକଲେ ଏଇ ବ୍ୟବସ୍ଥାୟ ସମମତ୍ ହବେନ୍ କି ? ମୁସଲ୍‌ମାନ 'ଜାତୀୟ' ଅର୍ଥେ ବଲ୍‌ବେନ୍ - କୋରାନ୍ ପଡ଼ । ଖ୍ରୀଷ୍ଟାନ୍ ବଲ୍‌ବେନ୍ - ବାଇବେଲ୍ ପଡ଼ । ଏତ ମତେର ଅନୈକ୍ୟ ହଲେ ଆସଲ କାଜେ ଯେ ବାଧା ପଡ଼ବେଇ । ପରମ ଧାର୍ମିକ୍ ହିନ୍ଦୁରାଜାର ରାଜତ୍ୱକାଲେ ଶୁଦ୍ର ତପସ୍ୟାକରେଛେ ବଲେ ତାର୍ ଶିରଶ୍ଛେଦନ୍ ବ୍ୟବସ୍ଥା ହଲ; ମନୁ ମହାଶୟ ବ୍ୟବସ୍ଥା କରେନ୍ ଯେ ଶୁଦ୍ରେର କର୍ଣ୍ଣେ ବେଦୋଚ୍ଚାରଣ ଶବ୍ଦ ପ୍ରବେଶ କର୍‌ଲେ ଉତପ୍ତ ସୀସକ ସେଇ କର୍ଣ୍ଣେ ଢେଲେ ଦିତେ ହୟ୍ । ଏଇ ମନୁସ୍ମୃତି ନିୟେ ଜାତୀୟ ଶିକ୍ଷାର ବ୍ୟବସ୍ଥା ହୟ୍ କି ? ବେଦ୍ ବେଦାନ୍ତ ପାଠ୍ୟ ହଲେ ବାଙ୍ଗ୍‌ଲାର ଶତକଡ଼ା ୫୨ ଜଣ ମୁସଲ୍‌ମାନ କି କର୍‌ବେ ? ଦୟାନନ୍ଦ ବା ବିବେକାନନ୍ଦ - କୋନ୍ ପନ୍ଥା ହଲେ ମୁସଲ୍‌ମାନ୍ ଭ୍ରାତାଦେର୍ ଟେନେ ନେଓୟା ଯେତେ ପାରେ ? ଆମ୍‌ରା ହିନ୍ଦୁ ମୁସଲ୍‌ମାନ୍ ଏକ୍ ବଲେ ଆହ୍ଲାଦେ ନୃତ୍ୟ କରଛି, କିନ୍ତୁ ମୁସଲ୍‌ମାନ୍ ଆମାଦେର୍ ଜଲ୍ ଛୁଁଲେଇ ସର୍ବନାଶ୍ ।

ଓଡ଼ିଶାରେ କିନ୍ତୁ ଫକୀରମୋହନଙ୍କ ଶବ୍ଦଚୟନକୁ କଟାକ୍ଷକରି ଗୋପୀନାଥ ମହାନ୍ତି ଲେଖିଚନ୍ତି; 'ସଂସ୍କାର କରିଥିଲେ ଫକୀରମୋହନ, କିନ୍ତୁ କାହିଁକି ମଣିଷ ଓଡ଼ିଆରେ ଏତେ ଫାର୍‌ସୀ ଶବ୍ଦ ବ୍ୟବହାର କରିବ ? କାହିଁକି ବାଛିବ ଠିକ୍ ସେମିତିଆ

ଶବ୍ଦ ଯାହା କାନକୁ ଶୁଭିବ କଡ଼ମଡ଼ ଭଡ଼ ଭଡ଼ ?' ଏ ବି ଏକରକମ 'ଜାତୀୟତା'; ଆଦିବାସୀଙ୍କୁ 'ଅମୃତର ସନ୍ତାନ' କରି ଉପନିଷଦ ଭିତରକୁ ପୁରାଇଦେବା ଫିକର୍ ।

## ଫକୀରମୋହନ

ବିଦ୍ୟାସାଗର ବ୍ରିଟିଶ୍ ରାଜପୁରୁଷଙ୍କ କୃପା ଲାଭକରିଥିଲେ; ଫକୀରମୋହନ ମଧ୍ୟ ସେ କୃପାରୁ ବଞ୍ଚିତ ନୁହେଁ । ମାତ୍ର ଶୈଶବରେ ହରାଇଚନ୍ତି ପିତାମାତାଙ୍କୁ, ଭୁଜାଖିଆ ପୀରଙ୍କ ସମାଧିତଳେ ଶିଶୁକୁ ସମର୍ପଣକରି ଠାକୁରମା' ନାଁରଖିଚନ୍ତି 'ଫକୀର' । ଫି ବରଷ, ରମ୍‌ଜାନ୍ ମାସରେ, ଆଲ୍‌ଖାଲା ପିନ୍ଧି ବାଲେଶ୍ୱର ମୋତିଗଞ୍ଜ ବଜାରରେ ଭିକମାଗେ । ଇସ୍କୁଲ୍ ପଢ଼ା ନାମମାତ୍ର, ବଲଙ୍ଗନଈର ପରମିଟ୍ ଘାଟରେ ମାଝିମାଲା ଆଉ ଦର୍ଜିଙ୍କ ଗହଣରେ ବସାଉଠାକରି ଅଝାଳସିଲାଇ ହିସାବ ଲେଖେ; ସେଇ ଅନ୍ତ୍ୟଜସମାଜର ମୁହଁର କଥା ତାଙ୍କ ପରିଣତ ବୟସର ଲେଖାକୁ କରିଚି ଇଙ୍ଗିତମୟ । ଖ୍ରୀଷ୍ଟାନ୍‌ଝିଅଙ୍କ ମିସନ୍‌ସ୍କୁଲ୍‌ରେ ଶିକ୍ଷକତା, ତହିଁଉତାରୁ ନାନାଦି ଗଡ଼ଜାତ–ରାଜ୍ୟରେ ଆ୍ୟାସିଷ୍ଟ୍ୟାଣ୍ଟ୍ ମ୍ୟାନେଜର୍ କି ମ୍ୟାନେଜର୍ । ଗଡ଼ଜାତରେ ଧରିଚନ୍ତି ମଦ, ଆଦିବାସୀଙ୍କ ପ୍ରଜାମେଳି ଭିତରକୁ ବି ପଶିଚନ୍ତି । ଶିକ୍ଷକତା କରିବାବେଳେ ଛାତ୍ରୀ ସାଙ୍ଗରେ କରିଚନ୍ତି ରସିକତା । କଟକ ସହରରେ ଘୋଡ଼ାଚଢ଼ି ବୁଲିଚନ୍ତି ହାକିମହୁକୁମାଙ୍କ ସାଙ୍ଗରେ ଏବଂ ବିବରଣଗୁଡ଼ାକ ଲେଖିଯାଇଚନ୍ତି ଆପଣା ହାତରେ । ଅର୍ଥାତ୍ ଗୋଟିଏ ଜୀବନକାଳ ଭିତରେ ଯେତେ ରକମ ଅଭିଜ୍ଞତା ସଂସାରରୁ ନିଗାଡ଼ିନେବା ସମ୍ଭବପର, ସବୁଯାକ ଆୟତ୍ତ କରିନଥିଲେ ସୁଦ୍ଧା, ନିର୍ଭୟରେ ଯାଇଚନ୍ତି ସନ୍ନିକଟକୁ। ବହି ଲେଖିବେ ବୋଲି ଭାବିନାହାଁନ୍ତି ସଜ୍ଞାନରେ । ବେପରୁଆ, ଇଂରେଜୀ-ଅନଭିଜ୍ଞ, ଏଇ ଲୋକଟି ବହିଲେଖିଲା ଯେତେବେଳେ ପ୍ରୌଢ଼ବୟସରେ, କଳ୍ପନା ରଞ୍ଜିତକଲା ସମାଜକୁ, ଭାଷାକୁ ଓ ସାହିତ୍ୟକୁ, ଏବଂ ସେଇ ପ୍ରକ୍ରିୟାରେ, ଓଡ଼ିଆ ଲେଖାଲେଖି ଜଗତକୁ ସବାଆଗେ ଆସିଲା ଝରିଝରିଟା ଅଭିନବ ସାହିତ୍ୟ–ବର୍ଗ; ଯେପରି, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ଭ୍ରମଣବୃତ୍ତାନ୍ତ ଓ ଆତ୍ମଜୀବନୀ । କାମଗୁଡ଼ାକ ମୂଳରେ କିନ୍ତୁ ସଂକଳ୍ପ ରହିଚି, ରହିଚି ଅଭିପ୍ରାୟ ଆଉ ପରିକଳ୍ପନା । ଗୋପୀବାବୁଙ୍କୁ ଯେମିତି କାଳିଶିଲାଗେ, ଫକୀରମୋହନଙ୍କୁ ଲାଗିନାହିଁ କେବେହେଲେ; ଅର୍ଥାତ୍, ଲେଖକର ସୁଚିନ୍ତିତ ଅଭିପ୍ରାୟ ହୋଇଚି ଲେଖାର ଅପରିହାର୍ଯ୍ୟ ସର୍ତ୍ତ, ଏବଂ ସେଥିପାଇଁ, ଅବିରତ ପ୍ରଶ୍ନକରିଚନ୍ତି ଅଚଳାୟତନ ସମାଜର ଆବହମାନ ସଂସ୍କାରକୁ; ନାଗରିକସମାଜକୁ ଆଣି ଛିଡ଼ାକରିଦେଇଚନ୍ତି ରାଷ୍ଟ୍ରର ପ୍ରତିପକ୍ଷ, ଏବଂ ସେଇ ବାଟରେ ବୁଝାଇଦେଇଚନ୍ତି, ଆପଣା ଭାଷା ମସ୍ତିଷ୍କରେ ବଦ୍ଧମୂଳ ନହେବାଯାଏଁ ଘଟିପାରେନା

ଚିନ୍ତାର ମୁକ୍ତି । କାହିଁକିନା, ୧୮୩୬ ଯାଏଁ ଫାର୍ସି ରହିଚି ଅଫିସ୍-ଅଦାଲତର ଭାଷା, ଘରଖରଚ ହିସାବ ବି ଫାର୍ସୀରେ ଲେଖିଚନ୍ତି ଓଡ଼ିଆ ଅମଲା; ଗଦ୍ୟ କହିଲେ କଣ୍ଟକବଲା କି ତମସୁକ୍, ଏବଂ ଓଡ଼ିଆଭାଷାର ଏକମାତ୍ର ମୁଦ୍ରିତ ପୁସ୍ତକ *ବାଇବ୍ଲ* । ଗୋଟିଏ ହାତର ଆଙ୍ଗୁଳିରେ ଗଣିହେବା ଭଳି କେତେଜଣ, ପାଠ୍ୟପୁସ୍ତକ ରଚନାରୁ ସୁରୁକରିଚନ୍ତି, କାହିଁକିନା, ର୍ୟାଭେନ୍‌ଶ ସାହେବ ସ୍କୁଲ୍‌ମାନଙ୍କରୁ ଉଠାଇଦେଇଚନ୍ତି ବଙ୍ଗଳା । ସେକିଉଲାର୍ ନହୋଇ ଆଉ ଉପାୟ ନାହିଁ । କିନ୍ତୁ *ଆତ୍ମଚରିତ* ରେ ଲେଖିଚନ୍ତି; "ବିବେଚନା କଲି, କେବଳ ସ୍କୁଲ୍‌ର ଛାତ୍ରମାନେ ଓଡ଼ିଆ କିତାପ ପଢ଼ିଲେ କଣ ହେବ ? ବାହାରର ସର୍ବସାଧାରଣ ଲୋକେ କିତାପ ପଢ଼ିଲେ ସିନା ମାତୃଭାଷା ଉନ୍ନତି ଲାଭକରିବ । ବିଶେଷତଃ ସେ ସମୟରେ ବାହାରର ଲୋକେ ଗଦ୍ୟ ପଢ଼ି ଜାଣୁନଥିଲେ । ନୀତିକଥା ବା ହିତୋପଦେଶ ସେମାନଙ୍କ ହାତକୁ ଦେଲେ ଖୁବ୍ ଗୋଟାଏ ଉଚ୍ଚ ରାଗିଣୀ ଧରି ଛାନ୍ଦଗୀତ ପରି ପଢ଼ିବସନ୍ତି । ମାତ୍ର ନାନାରୂପ ରାଗିଣୀରେ ବସାଇ ଯେତେରୂପେ ପଢ଼ିବାକୁ ଚେଷ୍ଟାକଲେ ମଧ୍ୟ ପଦ ମିଳେନାହିଁ । ଶେଷରେ ପୁସ୍ତକ ଖଣ୍ଡକ ଫୋପାଡ଼ିଦେଇ ଖପାଟାଏ ହୋଇଯାଇ ବୋଲନ୍ତି— ପଦ ମିଳିବାକୁ ନାହିଁ, ଏଇଟା କଣ ଛାପାବଇ ମ ?"

ଗଡ଼ଜାତରେ ଘାଟରୁ ଘାଟ, ଡୁଠରୁ ଡୁଠ ବୁଲିଚନ୍ତି ପ୍ରାୟ ଚାଳିଶବର୍ଷ, ଏବଂ ସବୁଠି ଖାଲି ବିଦ୍ୟାଳୟ ସ୍ଥାପନକରିନାହାଁନ୍ତି, ଯୋଉ ପନିପରିବା ନାଁ ରଜା ବି ଶୁଣିନାହିଁ, ସେଇ କୋବି ମୂଳା ଟମାଟୋ ନିଜ ବାଡ଼ିରେ ଚାଷକରି ପ୍ରଜାଙ୍କୁ ଶିଖାଇଚନ୍ତି; ଏପରିକି, ଲିଚୁଗଛର ଚାରା ମଧ୍ୟ ଆମଦାନି କରିଚନ୍ତି, ଏବଂ ସମବାୟ ଋଣ ସମିତି ବସାଇବାକୁ ବହିଲେଖିଚନ୍ତି ୧୯୧୬ରେ । ପ୍ରଥମ ବହି ଅବଶ୍ୟ ବିଦ୍ୟାସାଗରଙ୍କ *ଚରିତାବଳୀ* ର ଅନୁବାଦ (୧୮୬୬) । ମୁଖବନ୍ଧରେ ଲେଖିଚନ୍ତି, 'ପ୍ରଶଂସିତ ମହାତ୍ମାଙ୍କ ଅନୁମତି ଗ୍ରହଣ କରି' । ତା' ସାଙ୍ଗକୁ *ଉତ୍କଳ ସରଳ ବ୍ୟାକରଣ* ରଚନାକରି, ଉଭୟ ପୁସ୍ତକକୁ କଲିକତାର ବ୍ୟାପ୍‌ଟିଷ୍ଟ୍ ମିଶନ୍ ପ୍ରେସ୍‌ରୁ ଛପାଇ ଆଣିଚନ୍ତି । ତିନିବର୍ଷ ଉତାରୁ ଲେଖିଚନ୍ତି *ଭାରତବର୍ଷର ଇତିହାସ*, ଶିଶୁପାଠ୍ୟ ଅବଶ୍ୟ । ସେପର୍ଯ୍ୟନ୍ତ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଶିକ୍ଷାର ମାଧ୍ୟମ ଥିଲା ବଙ୍ଗଳା । ପ୍ରଧାନ କାରଣ, ଓଡ଼ିଆରେ ପାଠ୍ୟପୁସ୍ତକ ନଥିଲା କି ଓଡ଼ିଶାକୁ ମୁଦ୍ରଣଯନ୍ତ୍ର ଆସିନଥିଲା । ବଙ୍ଗଳା ଜାଗାରେ ଓଡ଼ିଆ ଆସିଯିବା ଫଳରେ, ଓଡ଼ିଆ ଯେ ବଙ୍ଗଳା ଭଳି ଏକ ସ୍ୱତନ୍ତ୍ର ଭାରତୀୟ ଭାଷା, ବଙ୍ଗୀୟ ବୁଦ୍ଧିଜୀବୀଙ୍କ ପ୍ରବଳ ଆପତ୍ତି ସତ୍ତ୍ୱେ, ସେଇ କଥାଟା ପ୍ରତିଷ୍ଠା ପାଇଥିଲା । ଯିଏ ଆପତ୍ତି କରିଥିଲେ, ଅର୍ଥାତ୍ ଓଡ଼ିଆକୁ ବଙ୍ଗଳାର ଉପଭାଷା ବୋଲି ଦାବିକରିଥିଲେ, ତାଙ୍କ ଭିତରେ ଐତିହାସିକ ରାଜା ରାଜେନ୍ଦ୍ରଲାଲ ମିତ୍ର ତ ଥିଲେ, ରବୀନ୍ଦ୍ରନାଥ ମଧ୍ୟ

ଇଂରେଜ୍‌ର ଏଇ ଓଡ଼ିଆପ୍ରୀତିକୁ ନିନ୍ଦାକରିଥିଲେ ପ୍ରକାଶ୍ୟରେ; କ୍ଷମତାର ଲଢ଼ାଇ ହେଲେସୁଦ୍ଧା, ଫକୀରମୋହନଙ୍କ ଭୂମିକା ସେଠି ରାଜନୀତିକ ନୁହେଁ, ନାଗରିକସମାଜ ତରଫରୁ ଅରାଜନୀତିକ ମୁକାବିଲା ।

ଏବେ ଜଣାପଡୁଚି, ଆଉଗୋଟିଏ *ସରଳ ବ୍ୟାକରଣ* ଓ ଦୁଇଟି ଅଙ୍କବହି *ଅଙ୍କମାଳା* (୧୮୭୦) ଓ *ଲୀଳାବତୀ ସୂତ୍ର*(୧୮୯୯?) ମଧ୍ୟ ଲେଖିଥିଲେ ଫକୀରମୋହନ । ଅଙ୍କ ଓ ବ୍ୟାକରଣ ଉପରେ ଅପେକ୍ଷାକୃତ ଅଧିକ ଗୁରୁତ୍ୱ ଆରୋପ କରିଥିବାରୁ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ତାଙ୍କ ଅର୍ଜିତ ଉପଲବ୍ଧିକୁ ମୋଟାମୁଟି ବୁଝିହେବ, କାହିଁକିନା, ପ୍ରାକ୍-ବ୍ରିଟିଶ୍ ଚଟଶାଳୀରେ ସିଏ ନିଜେ ଶିଖିଥିଲେ ସକାଳଓଳି ଖଡ଼ିପାଠ ଆଉ ଉପରଓଳି ପୋଥିପାଠ । ଅବୈତନିକ ଏକ ସୁଫି ଚାହାଳୀରେ ନିଜ ଆଗ୍ରହରେ ଶିଖିଥିଲେ ସାମାନ୍ୟ ଫାର୍ସୀ । *ବାଇବ୍‌ଲ୍* ଛଡ଼ା ଛପାବହି ଥିଲା ସାତସପନ । ଛାପାଖାନା ମଧ୍ୟ ଅଦୃଷ୍ଟ । ଛାପାଖାନା ଯେ ସୁଶୀଳସମାଜର ଏକ ରାଜନୀତିକ କ୍ଷମତା, ଜଣାପଡ଼ିଲା ଗୌରୀଶଙ୍କର ରାୟ ଯେତେବେଳେ କଟକରୁ କାଢ଼ିଲେ *ଉତ୍କଳଦୀପିକା* । ଅଥଚ ବଙ୍ଗଦେଶରେ ଯେତେବେଳେ ଛାପାଖାନା ବସିଲା, ପାଠ୍ୟପୁସ୍ତକ କେମିତି ଲେଖିବାକୁ ହୁଏ, ବଙ୍ଗାଳୀ ଜାଣିନଥିଲେ; ପାରିତୋଷିକ ଘୋଷଣାକରି ଇଂରେଜ୍ ତାଙ୍କୁ ପ୍ରବର୍ତ୍ତାଇଚନ୍ତି । ସେଥିପାଇଁ, ଫକୀରମୋହନ ପିଲାବେଳେ ମଧ୍ୟ ବଙ୍ଗଳା ପାଠ୍ୟପୁସ୍ତକ ପାଇନାହାଁନ୍ତି; ପଢ଼ିଚନ୍ତି ପିୟର୍ସ ସାହେବଙ୍କ ଭୂଗୋଳ, କିଥ୍ ସାହେବଙ୍କ ଅଙ୍କ ଓ ବ୍ୟାକରଣ । ସେଇ ଥିଲା ତାଙ୍କ ପାଠ୍ୟପୁସ୍ତକ ରଚନାର ଆଦର୍ଶ, କାହିଁକିନା, ପାରିତୋଷିକ ପ୍ରାପ୍ତହୋଇ ବଙ୍ଗାଳୀ ଯା ଲେଖିଥିଲେ, ତା 'ହସ୍ତୀ ବିଷୟକ ଇତିହାସ ଓ ଉଷ୍ଟ୍ରବିଷୟକ ଇତିହାସ'! ଅବସ୍ଥା ଯେ ଆକାଶ-ପାତାଳ ବଦଳିଗଲା, ଏକମାତ୍ର କାରଣ 'ମାର୍କେଟ୍' । ଓଡ଼ିଶାରେ ମୁଦ୍ରାଯନ୍ତ୍ର ବସିଲା, ଓଡ଼ିଆରେ ଲେଖାହେଲା ବହିପତ୍ର, ଏବଂ ଇଂରେଜୀ-ଶିକ୍ଷାର କଦର୍ ବି ବଢ଼ିଚି ଦିନକୁ ଦିନ । ଚାହିଦା ଅନୁସାରେ ଯୋଗାଣ ନୀତିରେ ବଜାରର ସଂପ୍ରସାରଣ ଥିଲା ଅବଧାରିତ; ମାତ୍ର ସେ ବଜାର ମଧ୍ୟ ଆଘାତକରିଚି ନାଗରିକସମାଜର ସଂହତିକୁ, କାହିଁକିନା, ଚାକିରୀପାଇବା ଯୋଉ ଶିକ୍ଷାର ଏକମାତ୍ର ଅଭିପ୍ରାୟ, ପାଠୁଆ-ଅପାଠୁଆ ଭେଦରେ ଉଚ୍ଚ-ନୀଚ ସୋପାନ ତିଆରିକରିଚି କ୍ରମାଗତ । ଫକୀରମୋହନଙ୍କ *ଡାକ୍‌ମୁନ୍ସୀ* କ୍ଷୁଦ୍ରଗଳ୍ପ ବ୍ୟକ୍ତକରିଚି ସେଇ ବିଷାଦ, *ଆତ୍ମଚରିତ* ରେ ଲେଖିଚନ୍ତି, 'ଆଜିକାଲିକା ଲୋକଗୁଡ଼ାକ ବଡ଼ ସ୍ୱାର୍ଥପର, କେହି କାହାରି କଥା ବୁଝିବାକୁ ନାହିଁ । ବଳେ ସ୍ୱାର୍ଥପର ହେବାକୁ ପଡ଼ିଚି । ସମସ୍ତଙ୍କର ସବୁ ବିଷୟରେ ଅଭାବ । ସମସ୍ତେ ସଂସାର ଚିନ୍ତାରେ ବୁଡ଼ି ରହିଚନ୍ତି, ପର କଥା ବୁଝିବାକୁ ବେଳ ନାହିଁ ।' ମାନେ, ତିଆରିହୋଇଚି ଆତ୍ମସର୍ବସ୍ୱ ଏକ ମଧ୍ୟବିତ୍ତ ଶ୍ରେଣୀ,

ଫକୀରମୋହନଙ୍କ ସାହିତ୍ୟର ଯିଏ ସମ୍ଭାବ୍ୟ ଗ୍ରାହକ; ବିଶେଷତଃ ଯେହେତୁ 'ଉତ୍କୋଚ ଲୋକନେତ୍ରର ଅନ୍ତରାଳରେ ଫଲ୍‌ଗୁ-ସ୍ରୋତସମ ପ୍ରଚ୍ଛନ୍ନ ଭାବରେ କୁଲ୍ୟା ରୂପେ ପ୍ରବାହିତ ।' ସମାଜ-ବିବର୍ତ୍ତନ ପ୍ରେକ୍ଷିତରେ ଏ ଗୋଟିଏ ଗୁରୁତର ପ୍ରଶ୍ନ । ସଂସ୍କୃତି ଭେଦରେ ନୈତିକତାର ଅବରୋଧ ହୁଏତ ବିଭିନ୍ନ ହୁଏ; କିନ୍ତୁ ସାଧାରଣଭାବେ, ସମାଜର ବୁର୍ଜୋୟାକରଣ ସହିତ ନୈତିକ ମୂଲ୍ୟମାନର ଅବକ୍ଷୟ ସମାନୁପାତିକ କି ? କାହିଁକିନା, ଫକୀରମୋହନ କହୁଚନ୍ତି, ଉତ୍କୋଚଗ୍ରହଣ ଏପରି ସାମାଜିକ ଅନୁମୋଦନ ପାଇଯାଇଚି ଯେ, ଯୋଉ ଚାକିରୀରେ ସେ ସୁଯୋଗ ନାହିଁ, ନାଗରିକସମାଜ ଦୃଷ୍ଟିରେ ତା 'ଆଣ୍ଠୁକୁଡ଼ା ଚାକିରୀ' । ରାଷ୍ଟ୍ର କରିଚି ସେଇ ଅବଲୋକନର ପରିପୋଷକତା, କାହିଁକିନା, ଉଦ୍‌ବୃତ୍ତ ନିଷ୍କାସନକୁ ନିର୍ବାଧ କରିବାକୁ ହେଲେ, ଦେଶୀୟ ଅମଲାତନ୍ତ୍ର ହୁଏ ଔପନିବେଶିକ ପ୍ରଭୁର ହାତବାରିଶି । ଫକୀରମୋହନଙ୍କ ବିବରଣରେ, ସାହେବ ଆସନ୍ତି ଦିନ ଦୁଇଟା ବେଳକୁ କଚେରୀକୁ, ଆସି ବିଲାତକୁ କିମ୍ବା ଉପରିସ୍ଥ ହାକିମଙ୍କୁ ଚିଠି ଲେଖନ୍ତି, ଚିଠି ଲେଖିବାକୁ ନଥିଲେ ବସି ବସି ଖବରକାଗଜ ପଢ଼ନ୍ତି, ଚାରିଟା ବାଜିଲେ ଲେଉଟି ଯାଆନ୍ତି କୋଠିକୁ । ଅମଲା ବି ନଥିବିଡ଼ା ନେଇଯାଆନ୍ତି ଘରକୁ, ତହିଁଆରଦିନ ଗୋଟାଏ ଭଣ୍ଡାରି କାଗଜପତ୍ର ବସ୍ତାନୀକୁ କାଖରେ ଜାକି ତାଳପତ୍ର ଛତା ବାବୁଙ୍କ ମୁଣ୍ଡଉପରେ ଟେକିଧରି ଧାଇଁ ଧାଇଁ ଆସେ । ସାହେବ ଏଠିକା ଭାଷା ବୁଝେନା, ପେସ୍‌କାର୍ ତା ଆଖି-କାନ । ମୋକଦ୍ଦମା ବି ଫଇସଲା କରନ୍ତି କିରାଣୀ, ସାହେବ ଖାଲି ଦସ୍ତଖତ କରେ । ଯତ୍‌ସାମାନ୍ୟ ଇଂରେଜୀ ପାଠ ବଳରେ ଯଦି ଅକସ୍ମାତ୍ ଧନୀ-ମାନୀ ହେବା ସମ୍ଭବ, ନିରକ୍ଷର ନାଗରିକସମାଜର ମାତୃଭାଷା ପ୍ରତି ଆଗ୍ରହଜନ୍ମିବା ସ୍ୱାଭାବିକ ନୁହେଁ ନିଶ୍ଚୟ । ପୁଣି, ପରାଙ୍ଗପୁଷ୍ଟ ଏଇ ନୂତନ ଧନୀ-ମାନୀଙ୍କର ଉତ୍ପାଦନ-ପ୍ରକ୍ରିୟା ସହିତ ପ୍ରତ୍ୟକ୍ଷ ସମ୍ପର୍କ ନାହିଁ, ନାଗରିକସମାଜ ସହିତ ଏ ଶ୍ରେଣୀର ବ୍ୟବଧାନ ବଢ଼ିଚି, ତେଣୁ କ୍ରମାଗତ; ଅନାର୍ଜିତ ଉଦ୍‌ବୃତ୍ତ ନୀତିବୋଧ ପ୍ରତି କରିଚି ନିର୍ମମ । ଫକୀରମୋହନଙ୍କ ମନ୍ତବ୍ୟ: 'ମୋହରିର୍‌ଠାରୁ ସିରସ୍ତାଦାର ପର୍ଯ୍ୟନ୍ତ ପଦଅନୁସାରେ ମାସିକ ଦରମା ଟ. ୨୪ରୁ ଟ. ୧୦ ପର୍ଯ୍ୟନ୍ତ । ହେଲେ କଣ ହେବ, ଅନେକ ଅମଲା ସବାରି ଘୋଡ଼ାରେ ଚଢ଼ି କଚେରିକୁ ଯିବାଆସିବା କରୁଥିଲେ, ଅନେକ ଅମଲା ଉତ୍ତରାଧିକାରୀମାନଙ୍କ ପାଇଁ ଜମିଦାରି କିଣି ରଖିଯାଇଚନ୍ତି । ଏଥିରୁ ବୁଝନ୍ତୁ, ଅମଲାମାନଙ୍କ ଆୟ ସେ ସମୟରେ କିପରି ଥିଲା ।' ଦେଢ଼ଶ' ବର୍ଷ ଉତାରୁ ଅମଲାତନ୍ତ୍ର ସହିତ ସୁଶୀଳସମାଜର ଏଇ ବ୍ୟବଧାନ କଣ ସଙ୍କୁଚିତ ହୋଇଚି ? ପାଠପଢ଼ିଥିବା କିରାଣୀ, ଚଷାଭୁଷା କି ବଢ଼େଇ-କମାରଙ୍କୁ କଣ ଅବଜ୍ଞାକରେନା ପ୍ରକାଶ୍ୟରେ ? ରିସ୍‌ପତ୍ ନିଏନା ? ତୋଷାମଦ୍ କରେନା ?

ପ୍ରପର୍ଟି-ରିଲେସନ୍ସରେ ଏଇ ତାରତମ୍ୟ ଲୋକଙ୍କୁ କେମିତି ଅନ୍ୟାୟ ଅନାଚାର ପ୍ରତି ଉଦାସୀନ କରିଚି, ନିଜଘରେ ନିଜକୁ କରିଦେଇଚି ଭୀରୁ, ଡୋମପଡ଼ା ଅଭିଜ୍ଞତାରୁ ଫକୀରମୋହନ ଦେଇଚନ୍ତି ତାର ନଜିର୍ : ... 'ଏଇ ଦୁଇଦିନ ମଧ୍ୟରେ ମୁଁ ଧର୍ମାବତାର ପାଲଟିଗଲିଣି, ପୁଣି ଏମାନଙ୍କର ମା', ବାପ, ଆଉ ରକ୍ଷାକାରୀ ହୋଇଗଲିଣି । ଏଥିର କାରଣ ଆଜିକି ତିନିଦିନ ହେଲା ମୋର ନ୍ୟାୟାନ୍ୟାୟ ଜ୍ଞାନ ନାହିଁ, ଅତ୍ୟାଚାର କରିବାକୁ ମୁଁ କିଛିମାତ୍ର କୁଣ୍ଠିତ ନୁହେଁ । ମିଥ୍ୟାକଥା କହିବାକୁ ମୋର କିଛିମାତ୍ର ଭୟ ଜାତ ହେଉନାହିଁ, ସୁତରାଂ ମୁଁ ଗୋଟିଏ ଧର୍ମାବତାର । ମୁଁ ଏକୁଟିଆ ଧର୍ମାବତାର ନୁହେଁ, ଲୋଡ଼ିବସିଲେ ସଂସାରରେ ମୋ ଭଳିଆ ଧର୍ମାବତାର ଢ଼େର ପାଇବେ । ମାତ୍ର ପ୍ରକୃତରେ ମୁଁ ସର୍ବଦା ପ୍ରଜାସାଧାରଣଙ୍କ ପକ୍ଷପାତୀ, ସେହିମାନେ ଲୋକସମାଜର ମେରୁଦଣ୍ଡ... ଆଉ ପ୍ରଜାଶକ୍ତି ରାଜଶକ୍ତି ରୂପ ବୃକ୍ଷର ଚେର ସ୍ୱରୂପ ।' ସେଇ 'ରାଜଶକ୍ତିକୁ' ସମ୍ପୂର୍ଣ୍ଣ ଅରାଜନୈତିକ ଅବସ୍ଥାନରୁ ଫକୀରମୋହନ ଦାୟୀକରିଚନ୍ତି ୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ ଭଳି ମନୁଷ୍ୟକୃତ ଦୁର୍ବିପାକ ସକାଶେ; ଏବଂ ଦ୍ୟର୍ଥହୀନ ଭାଷାରେ କହିଚନ୍ତି, ଡିଭିସନ୍‌ର କମିଶନର୍ ର୍ୟାଭନ୍‌ଶ'ଙ୍କର ଓଡ଼ିଶାର କୃଷିଉତ୍ପାଦନ କି ଖାଦ୍ୟାଭାବ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ନଥିଲା; ଏପରିକି, ବାହାରୁ ସ୍ଥଳ ବା ଜଳପଥରେ କେମିତି ଧାନଚାଉଳ ଆଣିହେବ, ସେ ବିଷୟରେ ମଧ ସମ୍ପୂର୍ଣ୍ଣ ଅଜ୍ଞଥିଲେ । ସିରସ୍ତାରଦାରଙ୍କ ମୁହଁକଥାକୁ ବେଦବାକ୍ୟ ମନେକରି ଉପରକୁ ଲେଖିଦେଇଥିଲେ, ମହାଜନଙ୍କ ମରାଇ କି ଧାନଖଣିରେ ଯା ମହଜୁତ୍ ଅଛି, ଦୁର୍ଭିକ୍ଷ ବର୍ଷେକାଳ ଲାଗିରହିଲେ ବି, ଖାଦ୍ୟାଭାବ ମେଣ୍ଟାଇବାକୁ ହୋଇପାରିବ ଯଥେଷ୍ଟ । ବିନିମୟର ମାଧମ ଥିଲା କିନ୍ତୁ ନଗଦ ଟଙ୍କା । ଚାଷୀ ଟଙ୍କା ପାଇବେ କୋଉଠୁ ? ଅତି ଜରୁରୀ ସେଇ ପ୍ରଶ୍ନ କମିଶନର ମୁଣ୍ଡକୁ ଢୁକିନାହିଁ । ଏବେସୁଦ୍ଧା କୃଷକର କ୍ରୟକ୍ଷମତା ବଢ଼ିନାହିଁ । ବଢ଼ିନାହିଁ ବୋଲି, ଚାଷୀ କି ତନ୍ତୀ ଆତ୍ମହତ୍ୟା କରୁଚନ୍ତି; ଏଣେ ଫୁଡ୍ କରପୋରେସନ୍ ଗୋଦାମରେ ଗଚ୍ଛିତ ଚାଉଳ-ଗହମକୁ ମୂଷା ଖାଉଚି । ମାର୍କେଟ୍ ଘୁଞ୍ଚାଇପାରୁନାହିଁ ଅନଟନ; ଜନସାଧାରଣଙ୍କ ହାତକୁ ଦେଇପାରୁନାହିଁ ପ୍ରତ୍ୟାଶିତ କ୍ରୟକ୍ଷମତା । ଲୋକ କିନ୍ତୁ ବିଦ୍ରୋହ କରୁନାହାଁନ୍ତି; ବଡ଼ଦେଉଳର ଆନନ୍ଦବଜାର ଭିତରକୁ ପଶିଯାଇ ଭୋକିଲାଲୋକ ଖାଇଯାଉନାହାଁନ୍ତି ମହାପ୍ରସାଦ ! ଯେହେତୁ ଭୟରୁ ମୁକ୍ତି ଘଟିନାହିଁ । ଅବସ୍ଥାର ସୁବିଧାନେବା ରାଷ୍ଟ୍ର ପକ୍ଷରେ ସ୍ୱାଭାବିକ; ଯୋଉ ରାଷ୍ଟ୍ର ମାର୍କେଟ୍‌କୁ କରିଚି ବିଶଲ୍ୟକରଣୀ । ଫକୀରମୋହନ କିନ୍ତୁ ସୁଶୀଳସମାଜକୁ ଟାଣିଆଣି ଠିଆକରାଇଦେଇଚନ୍ତି ରାଷ୍ଟ୍ରର ମୁହାଁମୁହିଁ । ସେ ମୁକାବିଲା କେନ୍ଦ୍ରରେ ରହିଚି ଲୁଣ ଭଳି ନିତ୍ୟାବଶ୍ୟକ ଭୋଜ୍ୟଦ୍ରବ୍ୟ । ଗାନ୍ଧିଙ୍କ ଲବଣ-ସତ୍ୟାଗ୍ରହର ଢେର୍ ଆଗରୁ

ତାଙ୍କ ମନକୁ ଆସିଚି ପ୍ରତିରୋଧର ପରିକଳ୍ପନା । କ୍ଲାଇଭ୍ ଅମଳରୁ ଚଳିଆସୁଥିବା ପଙ୍ଗାଲୁଣ ରପ୍ତାନିକୁ ଇଂରେଜ୍ ବେଆଇନ୍ ଘୋଷଣାକରିଚି ୧୮୬୧ ଖ୍ରୀଷ୍ଟାବ୍ଦରେ; ପରିଣାମରେ ସାରା ବାଲେଶ୍ୱର ଜିଲ୍ଲାର ଅର୍ଥନୀତି କେମିତି ଭୁଷୁଡ଼ିପଡ଼ିଚି, ଜାହାଜ ଚଳାଚଳ ଓ ନୌବାଣିଜ୍ୟ କେମିତି ହୋଇଯାଇଚି ବିଧ୍ୱସ୍ତ, ମର୍ମଭେଦୀ ସେ ବିବରଣ ଦେଇଚନ୍ତି *ବାଲେଶ୍ୱରୀ ପଙ୍ଗାଲୁଣ* କ୍ଷୁଦ୍ରଗଳ୍ପରେ, ଏବଂ ଉପସଂହାରରେ ଲେଖିଚନ୍ତି, 'ହେ ଭଗବାନ! ଆମ୍ଭମାନଙ୍କ ଦୟାଳୁ ଗଭର୍ଣ୍ଣମେଣ୍ଟଙ୍କ କର୍ଣ୍ଣରେ ବିରାଜିତ ହୁଅନ୍ତୁ । ବାଲେଶ୍ୱର ଜିଲ୍ଲାର ପୂର୍ବବତ୍ ଲୁଣ ପୋକ୍ତାନ କାର୍ଯ୍ୟ ଆରମ୍ଭ ହେଉ ।' ଭାବବାଦୀ ଏ ଅବସ୍ଥାନରୁ ବିଦ୍ରୋହୀ-ଚେତନା ତାଙ୍କୁ ଠେଲିନେଇଚି ଯୋଉଠିକି, ସେଇଠୁ ବାହାରିଚି ଆଉଗୋଟିଏ ଆଖ୍ୟାନ *ପୂନର୍ମୂର୍ଷିକୋଭବ* । 'ମଫସଲର ସାଧାରଣ ଲୋକ ପକ୍ଷରେ ପନିପରିବା ସୁଲଭନୁହେଁ । ଶାଗ ପିତାପାଣି ଭରସା, ଲବଣ ମାତ୍ର ସହାୟ, ସେହି ଲବଣର ଅଭାବ । ଅଭାବ କ୍ୟାଁ? ବିଲାତୀ ଲାଫ୍ରିଲୁଣ ହାଟରେ ଜମା ଅଛି । ହେଲେ ତାହା ତୁଚ୍ଛାରେ ମିଳିବ ନାହିଁ, ପଇସା ଦେଇ କିଣିବାକୁ ହେବ । ପଇସା କାହିଁ?'... 'ସୁତରାଂ ଚୋରି ବାଟ ମେଲା । ନଷ୍ଟସ୍ୟ କାନ୍ୟା ଗତିଃ? ନଷ୍ଟସ୍ୟ କ୍ୟାଁ? ତୁମ୍ଭେ ଆମ୍ଭେ ଏପରି ଲଣ୍ଡଭଣ୍ଡରେ ପଡ଼ିଲେ କଣ କରନ୍ତୁ ବେଳେ ବିଚାରକରି ଦେଖିବା କଥା ।' ଘରେ ଘରେ ତେଣୁ ଲୁଣମରା ଚାଲିଚି ଚୋରାରେ । ସରକାରି ତଦାରଖିକୁ ବି ଭଣ୍ଡୁର୍ କରିଦେଇଚନ୍ତି ଗାଁବାଲା ନାନାଦି ଫିକରରେ; ଏପରିକି, ମୁସଲ୍‌ମାନ ହାକିମ ଓ ଓକିଲ ମୋକଦ୍ଦମା ବିଚାର ବେଳେ ଗାଁବାଲାଙ୍କୁ କରିଚନ୍ତି ସାହାଯ୍ୟ । ଚୋରିଚାଲିଚି ଯଥାପୂର୍ବଂ । ଅର୍ଥାତ୍, ଭଗବାନଙ୍କୁ ଆଉ ପ୍ରାର୍ଥନାକଲେନାହିଁ ଫକୀରମୋହନ, 'ଦୟାଳୁ' ଗଭର୍ଣ୍ଣମେଣ୍ଟଙ୍କୁ ବି ଗୁହାରିକଲେନାହିଁ; ସିଭିଲ୍‌ସୋସାଇଟିର ମୋବିଲାଇଜେସନ୍‌କୁ ଆଣି ଠିଆକରିଦେଲେ ରାଷ୍ଟ୍ର ବିପକ୍ଷରେ ।

ଇଂରେଜ୍‌କୁ ସମର୍ଥନକରିଚନ୍ତି ପ୍ରକାଶ୍ୟରେ; ହୁଏତ ଜୀବିକା ପ୍ରୟୋଜନରେ, କିନ୍ତୁ ବାଧ୍ୟହୋଇଚନ୍ତି ଯେହେତୁ ଓଡ଼ିଆଭାଷାକୁ ଗ୍ରାସକରିବାକୁ ଉପ-ଶାସକ ବଙ୍ଗାଳୀ କରିଚନ୍ତି ପ୍ରାଣମୂର୍ଚ୍ଛା ଉଦ୍ୟମ । ଫକୀରମୋହନ ସେତେବେଳେ ଅହର୍ନିଶି ଭାବିଚନ୍ତି, 'କୌଣସି ବିଦେଶୀ ଲୋକ ଆମ୍ଭମାନଙ୍କୁ ଓଡ଼ିଆ ମେଣ୍ଢା ବୋଲି ଗାଳି ଦେଇ ପାରିବେ ନାହିଁ,' ଏବଂ ସେଇ ତତ୍ପରତାରେ ସହାୟକ ହୋଇଚନ୍ତି ଇଂରେଜ୍ ରାଜପୁରୁଷ । ଫକୀରମୋହନ, ବିଦ୍ୟାସାଗରଙ୍କ ଅନୁକରଣରେ ସ୍ଥାପନକରିଚନ୍ତି ମଫସଲରେ ବିଦ୍ୟାଳୟ, ପ୍ରବର୍ତ୍ତନକରିଚନ୍ତି ନାରୀଶିକ୍ଷା, ବାଲେଶ୍ୱରରେ ବସାଇଚନ୍ତି ମୁଦ୍ରାଯନ୍ତ୍ର, ନିଜେ ଲେଖିଚନ୍ତି ପାଠ୍ୟପୁସ୍ତକ, ଏପରିକି, ବାହାରକରିଚନ୍ତି ଖବରକାଗଜ । ସିଭିଲ୍‌ସୋସାଇଟି ଯେତେବେଳେ ନିଶ୍ଚେତନ, ଜଣେଲୋକ ପକ୍ଷରେ ପ୍ରାୟ

ଖାଲିହାତରେ ଏତେଗୁଡ଼ାଏ କାମ କରିପାରିବା ପଛୁର ଗିରିଲଙ୍ଘନ । ଦରକାରଥିଲା ତେଣୁ ବଙ୍ଗୀୟଙ୍କ ପ୍ରତିରୋଧ ବିରୋଧରେ ଇଂରେଜ୍‌ର ସମର୍ଥନ। ପାଇଥିଲେ ମଧ୍ୟ କ୍ରମାଗତ । ଅନ୍ୟଥା, ଇଂରେଜ୍ ପ୍ରତି ତାଙ୍କ ଅସଲ ମନୋଭାବ (କମିଶନର୍‌ଙ୍କ କ୍ୟାମ୍ପ, ମାନେ ଶତାଧିକ ଲୋକଙ୍କ ପାଇଁ ଖିଆପିଆ ଆମୋଦ-ଅୟସର ଆୟୋଜନ ବିଷୟରେ ଡୋମପଡ଼ା ରହଣିକାଳରେ) ଜଣାପଡ଼ିବ ଏଇ ମନ୍ତବ୍ୟରୁ: 'ସାହେବଙ୍କ କୁକୁରମାନଙ୍କଠାରୁ ସିରସ୍ତାଦାର ପର୍ଯ୍ୟନ୍ତ ସମସ୍ତଙ୍କର ରୋଷେଇବାସ କଥା ବୁଝିବାକୁ ହେବ... ପ୍ରକୃତରେ କେବଳ ଡୋମପଡ଼ା ବୋଲି ନୁହେଁ, ମୁଁ ଜାଣେ, ଓଡ଼ିଶାର ସମସ୍ତ ଗଡ଼ଜାତରେ ଆଗନ୍ତୁକ ହାକିମମାନଙ୍କୁ ରସଦର ସମସ୍ତ ସରଞ୍ଜାମ ପ୍ରଜାମାନଙ୍କର ଦେବାର ନିୟମ ଚିରକାଳରୁ ଧାରାବାହିକ ରୂପେ ଚଳିଆସୁଥିଲା ।' ରାଷ୍ଟ୍ର ସହିତ ସୁଶୀଳସମାଜର ବିରୋଧାଭାସ 'ଧାରାବାହିକ' ହେଲେ, ଗଣମାଧ୍ୟମ ସାଧାରଣତଃ ହସ୍ତକ୍ଷେପ କରେ; ଏବଂ ସେଇ ଉଦ୍ଦେଶ୍ୟରେ, ଫକୀରମୋହନ ଲୋଡ଼ିଚନ୍ତି ମୁଦ୍ରଣ-ପ୍ରଯୁକ୍ତିର ସାହାଯ୍ୟ । ପ୍ରତିବନ୍ଧକତା ଏମିତି ବିବ୍ରତକରିଚି ଯେ ଲେଖିଚନ୍ତି, 'ଆପଣା ଦୁର୍ଦ୍ଦଶା ବିଷୟରେ କାହାରିକୁ ଜଣାଏନାହିଁ, ସାହସ ଧରି ହସି ହସି ଲୋକଙ୍କ ସହିତ ପ୍ରେସ୍ ସମ୍ବନ୍ଧରେ କଥାଭାଷା କରେ । ଆଣ୍ଠକରି ମଙ୍ଗ ମାଡ଼ିବସିଚି । ଏ ଘୋର ଦୁର୍ଯ୍ୟୋଗରେ ପଡ଼ି ମନ ମଧ୍ୟରେ ପ୍ରତିଜ୍ଞା କଲି, ପ୍ରେସ୍ ସ୍ଥାପନ ନଚେତ୍ ପ୍ରାଣତ୍ୟାଗ ।' ସେଇ ପ୍ରେସ୍‌ରୁ ବାହାରିଚି *ବାଲେଶ୍ୱର ସମ୍ବାଦବାହିକା* । ଏକ୍ଷଣି କାହୁଁକାହାଁତକ ଯୋଗାଡ଼ ଯନ୍ତ୍ର, ରେଡିଓ, ଟେଲିଭିସନ୍, ଇଣ୍ଟର୍‌ନେଟ୍, କମ୍‌ସେ କମ୍ ସିନେମା । ମାର୍କେଟ୍ ସେଗୁଡ଼ିକୁ କରିଚି ବୃହତ୍‌ପୁଞ୍ଜିର ମୃଗୟାକ୍ଷେତ୍ର । ରାଷ୍ଟ୍ର ସହିତ ନାଗରିକସମାଜର ବିରୋଧ ସେଠି ଘୁଣାକ୍ଷରରେ ସ୍ଥାନପାଏନା । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର କହିବା ପରି, ଖବରକାଗଜ ମଧ୍ୟ 'ବଟ୍‌ତଲାର୍ ବଇ'। ବଙ୍କିମଚନ୍ଦ୍ର ରାଜାନୁଗତ୍ୟ ପ୍ରମାଣକରିବାକୁ, *ଆନନ୍ଦମଠ* ର ପରବର୍ତ୍ତୀ ସଂସ୍କରଣରେ ଇଂରେଜ୍ ବଦଳରେ ମୁସଲ୍‌ମାନଙ୍କୁ ଦେଖାଇଚନ୍ତି ଦେଶର ଶତ୍ରୁ; ଫକୀରମୋହନ ସେଭଳି ଦୁଷ୍କର୍ମ କେବେହେଲେ କରିନାହାଁନ୍ତି; ନିଜେ ସେକିଉଲାର୍ ବୋଲି ନୁହେଁ, ଓଡ଼ିଶାର ସୁଶୀଳସମାଜ ସେକିଉଲାର୍ ବୋଲି ।

ଓଡ଼ିଶାର ହିନ୍ଦୁ, ସାଂପ୍ରଦାୟିକ ପରିଚୟ ପାଇଚନ୍ତି ଧର୍ମାନ୍ତକରଣରୁ, ଯେପରି ନ'ଅଙ୍କ ଦୁର୍ଭିକ୍ଷର ଉପଜାତ ଓଡ଼ିଆ ଖ୍ରୀଷ୍ଟାନ୍ । ଆପେଆପେ ଖ୍ରୀଷ୍ଟାନ୍ ହୋଇନାହାଁନ୍ତି । କିନ୍ତୁ ଗୋପୀନାଥ ମହାନ୍ତି ବିଦ୍ରୂପକରି ଲେଖିଚନ୍ତି, ଧର୍ମାନ୍ତରର କାରଣ 'ଲେଡି, ପେଡି, ହେନ୍, ପେନ୍' । ଓରିଟିଯାକ ଇଂରାଜୀ ଶବ୍ଦ; ଅର୍ଥାତ୍ ବୁର୍ଜୋୟାର ଉଦ୍‌ଭାବନ । ଫକୀରମୋହନ କିନ୍ତୁ ପ୍ରତ୍ୟକ୍ଷଦ୍ରଷ୍ଟା; ଲେଖିଚନ୍ତି, ଦୁର୍ଭିକ୍ଷ କବଳରେ ପଡ଼ି ଯୋଉ

ଭୋକିଲା ଲୋକ ରିଲିଫ୍ ସେଣ୍ଟରରୁ ଅନ୍ନ ଗ୍ରହଣକଲେ, ତାଙ୍କ ଭିତରେ ଥିଲେ ଅନେକ ସମ୍ଭ୍ରାନ୍ତ ପରିବାର; ମାତ୍ର 'ଛତରଖିଆ' ଆଖ୍ୟାଦେଇ ହିନ୍ଦୁସମାଜ ଗାଁରୁ ତାଙ୍କୁ ତଡ଼ିଦେଲା; ଖ୍ରୀଷ୍ଟାନ୍ ପାଦ୍ରୀ ଥଇଥାନ କରିଚନ୍ତି, ସ୍କୁଲ୍‌ରେ ପଢ଼ାଇଚନ୍ତି, ଘିଷବାହାରେ ଚାକିରୀବାକିରୀ କରାଇଦେଇଚନ୍ତି ଯଥାସମ୍ଭବ । ଉଚ୍ଛନ୍ନ ହୋଇଯାଇନାହାନ୍ତି କ୍ଷୁଧାର୍ତ୍ତ, ଧର୍ମୀୟ ପରିଚୟ ବଦଳିଗଲା ସିନା, ଅନ୍ନଛତ୍ରରେ ଖାଇ ନଥିଲେ ମରିଯାଇଥାନ୍ତେ ପୋକମାଛି ଭଳି । ଫକୀରମୋହନ ଦେଇଚନ୍ତି ବିଶ୍ୱାମିତ୍ରଙ୍କ ଉଦାହରଣ: 'ରାଜର୍ଷି ବିଶ୍ୱାମିତ୍ର ଏକଦା ପ୍ରାଣରକ୍ଷା ନିମନ୍ତେ ଚଣ୍ଡାଳ ଦ୍ୱାରା ପାକହୋଇଥିବା କୁକୁରମାଂସ ଭକ୍ଷଣକରି ମହର୍ଷିମଣ୍ଡଳୀରେ ସ୍ଥାନଲାଭ କରିବା ବିଷୟ ମହାଭାରତରେ ସୁସ୍ପଷ୍ଟ ଉଲ୍ଲେଖ ଅଛି ।' ଅର୍ଥାତ୍, 'ଏଥରକୁ ଆମ୍ଭେମାନେ ସାହସ ପୂର୍ବକ ବୋଲିବାକୁ ପ୍ରସ୍ତୁତ ଖ୍ରୀଷ୍ଟାନ୍ ଧର୍ମ ଓ ଜାତି ପତିତପାବନ । ହିନ୍ଦୁସମାଜ ଯେ ଛତ୍ରଖିଆମାନଙ୍କୁ ତଡ଼ିଦେଇଥିଲା, ସେଥିପାଇଁ ହିନ୍ଦୁଧର୍ମ ଦାୟୀ ନୁହେଁ, ଅବିବେକୀ ସମୟର ଦୋଷ ଅଟେ ।' ସେ ଦୋଷ କଣ ଉଭାଇଯାଇଚି ? ଯାଇଥିଲେ, ଗୋପୀବାବୁ ବିଦ୍ରୂପକରନ୍ତେ କାହିଁକି ? ଝିଅଙ୍କ ସକାଶେ ସ୍କୁଲ୍ ବସାଇଥିଲେ ପାଦ୍ରୀ ବାଲେଶ୍ୱରରେ; ଜାତିଯିବ ବୋଲି ଝିଅଙ୍କୁ ପଠାଇନାହାଁନ୍ତି ହିନ୍ଦୁ, ମାତ୍ର ଫକୀରମୋହନ ହୋଇଚନ୍ତି ସେଠି ପ୍ରଧାନଶିକ୍ଷକ । ତାଙ୍କ ପ୍ରଥମ ସ୍ତ୍ରୀ ସେତେବେଳକୁ ଜୀବିତ ଥିଲେ; ତାଙ୍କୁ ଦେଖି ପାଦ୍ରୀସାହେବଙ୍କ ମେମ୍ କହିଲେ, 'ଏଁ-ଏଁ-ଏ ତୁମ୍ଭ ମୁଣ୍ଡରେ ଲାଲରଙ୍ଗ ଲାଗିଥିବ ଯେତେଦିନ ପର୍ଯ୍ୟନ୍ତ ନମରିବ ତୁମ୍ଭ ସ୍ୱାମୀ... ?' ମେମ୍ ଚାଲିଗଲା ଉତାରୁ ବଡ଼ବୋହୂ କହିଲେ, '... ଏ ଡ଼ାଆଣୀ ଦୁଷ୍ଟ ମାଇକିନାଟାକୁ ଘରକୁ ଡାକିଲ କାଁ ? ଏଟା ନିଶ୍ଚୟ ମଦ ଖାଏ; ଗୋରୁ ଖାଏ । ଜୁଆନ ମାଇକିନାଟା ମୁଣ୍ଡରେ ଲୁଗା ନାହିଁ, ଦାଣ୍ଡରେ ବୁଲୁଚି... ଏଗୁଡ଼ାଙ୍କର ଠିକଣା କଣ ? ଏଗୁଡ଼ାଙ୍କୁ କଣ ଭଲଲୋକ ଦୁଆର ଚଢ଼େଇଦିଅନ୍ତି ? କଥାନାହିଁ, ବାର୍ତ୍ତାନାହିଁ, ତୁଚ୍ଛାଟାରେ ଗାଳି ଦେଇଗଲା' । ମାତ୍ର ଫକୀରମୋହନ ଜିଦ୍‌ଧରିଲେ, ହିନ୍ଦୁଝିଅଙ୍କ ଲାଗି ସ୍କୁଲ୍ ବସିବ; ବସାଇଲେ ମଧ୍ୟ । କିନ୍ତୁ ଶୁଣିବାକୁ ମିଳିଲା ଓଲଟୁଗୁଣା: 'ଡିରିଲାଗୁଡ଼ାକ ପାଠପଢ଼ିଲେ ଅସମ୍ଭାଳ ହେବେ । ମାନମହତ, କୁଳ, ଜାତିଧର୍ମ ସବୁ ବୁଡ଼ିଲା । ବଦମାଏସ୍, ଭୂତ, ସୟତାନ, ଫକୀରମୋହନକୁ ଜବଦ୍ ନକଲେ ରକ୍ଷାନାହିଁ... ସାହେବମାନଙ୍କ ସଙ୍ଗେ ସଦ୍‌ଭାବ ରଖି ସମାଜ-ବଦଳା ସବୁ କଥାରେ ସେ ଆଗୁସାର ।... ଅମଲା ମୁଖଣ୍ଡି ଲୋକେ ରାଜା ଶ୍ୟାମାନନ୍ଦ ଦେ'ଙ୍କୁ ଧରିବସିଲେ ।' ଶ୍ୟାମାନନ୍ଦ ଦେ'ଙ୍କ ସହିତ କଥୋପକଥନର ବିବରଣୀ ଏହିପରି :

ଶ୍ୟାମାନନ୍ଦ : ଆହେ ସେନାପତି । ଭଲ କାର୍ଯ୍ୟଟାଏ କଲ !

ଫକୀରମୋହନ : ଆଜ୍ଞା ମୁଁ କଣ କଲି ?

ଶ୍ୟାମାନନ୍ଦ : ତୁମ୍ଭେ ପରା ଗୋଟେ ମାୟୀ ସ୍କୁଲ୍ ବସାଇଛ ?

ଫକୀରମୋହନ : ଆଜ୍ଞା- ଆଜ୍ଞା ।

ଶ୍ୟାମାନନ୍ଦ : ଉଠାଓ - ଉଠାଓ - ଉଠାଓ ।

ଫକୀରମୋହନ : ଆଜ୍ଞା - କାରଣ କଣ ?

ଶ୍ୟାମାନନ୍ଦ : ସବୁ ତିର୍ଲା ଦୁଷ୍ଟରିତ୍ରା ହୋଇଯିବେ ।

ଫକୀରମୋହନ : ଆଜ୍ଞା, ପାଠ ପଢ଼ିଲେ ସିନା ସଚ୍ଚରିତ୍ରା ହୁଅନ୍ତି ।

ଶ୍ୟାମାନନ୍ଦ : ନାହିଁ- ନାହିଁ-ନାହିଁ ପ୍ରଣୟୀ ଲୋକକୁ ଗୋପନରେ ଚିଠି ଲେଖିବେ ।

ଫକୀରମୋହନ : ଆଜ୍ଞା ! ଭାଗବତ ରାମାୟଣ ବି ତ ପଢ଼ିବେ ।

ଏ ତ କୋଉକାଳର କଥା, ପିତୃତନ୍ତ୍ର ଅର୍ଗଳରୁ ଝିଅ କଣ ମୁକୁଳିଲେଣି ? ଅଥଚ ଫକୀରମୋହନ ହିଁ ଝିଅପୁଅଙ୍କ ମୁଣ୍ଡରେ ପୁରାଇଚନ୍ତି ପ୍ରଥମ ପ୍ରତିବାଦ ଚେତନା । ଯେପରି, ବିରେଇ ବିଶାଳ ଗଳ୍ପର ନାୟିକା, କମଳୀ । ବିରେଇକୁ ତାର ପସନ୍ଦ, ମାତ୍ର ପୁରୋହିତ ଭୀମେଇ ମିଶ୍ରଙ୍କୁ ବାପ କହିଚି, '... ମୁଁ ସାଫ୍ କହିଦେଉଛି, କନ୍ୟାସୁନା ନଗଦ ହଜାରେ ଟଙ୍କା, ଏଥିରୁ ପଇସାଏ, ମଷାଏ, କଡ଼ାଏ ଊଣା ଅଧିକ ନାହିଁ, ବୁଝିଲେ ମିଶ୍ରେ !... ମୋର ଆଉ ଦୁଇ କନ୍ୟା ସକାଶେ ରୋକଠୋକ୍ ଦୁଇହଜାର ପାଇଛି; ସେଇଟା ତୁମ ଆଗର କଥା...

ମିଶ୍ର: ସେକଥା ଏକଥା ଢେର୍ ତଫାତ୍ । ସେ ବର ଯୋଡ଼ାକର ବୟସ ଷାଠିଏ ଷାଠିଏ ହୋଇଥିଲା, ଦୁହେଁଯାକ ଥିଲେ ଦୋଜବର । କନ୍ୟା ଯୋଡ଼ିକ ରାଣ୍ଡ ହୋଇ କିପରି ଦୁଃଖରେ ଅଛନ୍ତି, ଦେଖୁନାହାଁନ୍ତି: ଏଣେ ଦେଖନ୍ତୁ, ବିରେଇ କାଲିକା ପିଲା । ... ଛେଉଣ୍ଡଟାକୁ ଟିକିଏ ଦୟା କରନ୍ତୁ, ସେହି ପାଞ୍ଚଶରେ ମଙ୍ଗିଯାନ୍ତୁ ।

କମଳୀର ବାପ: ହକ୍ ବ୍ୟବହାରରେ ଦୟାମାୟା କଣ ମିଶ୍ରେ... ଆଉ ଦି'ଝିଅଙ୍କର ୯ ବର୍ଷ ଲେଖାଏଁ ହୋଇଥିଲା, ଏ ତ ଚଉଦ ବର୍ଷର ଝିଅ; ଯିମିତି ଯିବ ଇଶାଣରେ ପଶିବ ।...'

କମଳୀ କବାଟ କଣରେ ବସି ସବୁକଥା ଶୁଣୁଥିଲା । ...ମା ନାହିଁ, ତା ମନ କଥା କିଏ ବୁଝୁଛି ? ଶେଷରେ ଖୁବ୍ ଗୋଟାଏ ହେମତ ବାନ୍ଧିଥିଲା ।...

ବିରେଇ ଗାଲରେ ହାତଦେଇ କାନ୍ଥକୁ ଆଉଜି ବସିଚି । କମଳୀ କବାଟ ଉହାଡ଼ରୁ ଛୁଁ-ଛୁଁ କରି ବିରେଇକୁ ହାତଠାରି ପାଖକୁ ଡ଼ାକିଲା । ପେଟ ଉପରେ ମୁଣିଏ ଟଙ୍କା, ତା ଉପରେ ଯୋଡ଼ାଏ ବେଢ଼ାଣ ଖଦି କଷି ଗୁଡ଼ିଆ ହୋଇଚି, ଫିଟାଇ ପକାଇ ଝଣକରି ଥଳିଟା ତଳେ ପକାଇଦେଲା ।...

ଫକୀରମୋହନ ଚଉଦବର୍ଷର ମା'ଛେଉଣ୍ଡ ଗ୍ରାମ୍ୟ ବାଳିକା ମନରେ ଏଇ ଯୋଉ 'ହେମତ' ରୂପକ ପ୍ରତିବାଦର ମଞ୍ଜି ପୋତିଦେଲେ, ଓଡ଼ିଆସାହିତ୍ୟରେ ତାର ପୁନରୁକ୍ତି ଆଉ ଦେଖାଯାଇନାହିଁ । ସେହିପରି *ରାଣ୍ଡିପୁଅ ଅନନ୍ତା* ଗଳ୍ପର ବାପଛେଉଣ୍ଡ ବାଳକ ଅନନ୍ତ; ବିଦ୍ରୋହ କରିଚି ପ୍ରଚଳିତ ପ୍ରାଥମିକ ଶିକ୍ଷା ବିରୋଧରେ । ଗଉଡ଼ ପିଲା; ଉଚ୍ଚଜାତିର ଲୋକଙ୍କ ଧାରଣା ଅଶିବର୍ଷରେ ବୁଦ୍ଧିହୁଏ (ଲାଲୁପ୍ରସାଦଙ୍କୁ ଷାଠିଏ ପୁରିବାରୁ କହୁଚନ୍ତି, ତାଙ୍କର ମଧ ହୋଇଚି ଜ୍ଞାନୋଦୟ) । ଅନନ୍ତ ଖେଚଡ଼ା ହେବାରୁ ମା ନେଇଯାଇ ବସାଇଚି ଚଟଶାଳୀରେ, ମାତ୍ର ଗଛରେ ଚଢ଼ି କୋଳି ପାରିବାକୁ ତାର ଆଗ୍ରହ ବେଶି । କିନ୍ତୁ ମା ଯେହେତୁ ଦହିବିକି ଫେରିବାବାଟରେ ଅବଧାନ କଂସାରେ ଘରି ସଢ଼େଇ ଚଲ୍‌ହା ଢାଳିଦିଏ, ଅବଧାନ ପୁଅକୁ ମାରେନା । ମାତ୍ର ଅନନ୍ତାର ଉତ୍ପାତ ବଢ଼ିଚି ଦିନକୁଦିନ; ସେଇଠୁ ମହାଦେବର ବେଲପତ୍ରୀ ଉଣା, ଅନନ୍ତର ମାଡ଼ର ଉଣା ନାହିଁ ।

ଦିନେ ରାଗିଯାଇ ଅବଧାନେ ବେତ ଫୋପାଡ଼ିଦେଇ ଦି'ଘରିଖଣ୍ଡ ବିଛୁଆତି ଛଡ଼ି ଆଣିଲେ- ଗୋଡ଼ରେ ହାତରେ ପିଠିରେ ଦଶ କୋଡ଼ିଏ ପାହାର କଷିଦେଲେ । ସେହିଦିନ ଅନନ୍ତକୁ ଟିକିଏ ବାଧିଲା... ଚଟଟୋକାଙ୍କ ଆଗରେ କହିଲା, ଶଳା ମାହାନ୍ତିକୁ ମୁଁ ଦେଖିନେବି । ତହିଁଆରଦିନ ଦିନ ପହରକ ସମୟରେ ଅବଧାନଙ୍କୁ ପଦା ଆଡ଼େ ତଲବ ହେଲା । ଡାକିଦେଲେ, ଆରେ, ନିଆଁ ଆଣରେ, ଧୂଆଁପତ୍ର ଆଣରେ, ନୋଟା ଆଣରେ । ପୁଞ୍ଜାଏ କି ଛ'ଟା ଚାଟଟୋକା ଧାଇଁଯାଇ ସବୁ ଠିକ୍ କରିଦେଲେ । ଅବଧାନଙ୍କର ସବୁକାମ ପିଲାମାନେ କରନ୍ତି । ଅବଧାନଙ୍କର ଗୋଡ଼ଘଷା, ପାଲଟା ଲୁଗା କଚା, ସଙ୍କୁଡ଼ି ଧୁଆ, ବିଲ୍‌କୁଲ୍ କାମ ପିଲାମାନେ କରନ୍ତି । ଯେତେ ବଡ଼ଲୋକର ପୁଅ ହେଉ ପଛକେ, ଅବଧାନଙ୍କ ଗୋଡ଼ ଘଷିବ । ଗୁରୁଙ୍କ ଗୋଡ଼ ଘଷିଲେ ପାଠ ଆସେ । ଅବଧାନ ପିକାଟିଏ ଭଲ କରି ମୋଡ଼ିଲେ - ନିଆଁଖୁଣ୍ଟାରେ ପିକାଟି ଲଗେଇଦେଇ ଦି'କଳ ଭିଡ଼ିଲେ । ଫୁ କରି ଧୂଆଁ ଛାଡ଼ିଦେଇ କହିଲେ, କି ବେ ମକୁନ୍ଦା ! ଧୂଆଁ ଲାଗୁନାହିଁ ଯେ ?

ମୁକୁନ୍ଦ କହିଲା- ମୁଁ କଣ କରିବି ଅବଧାନେ ? ବାବା ତ କାଲି ହାଟରୁ ଏଇ ଧୂଆଁ ଆଣିଛି ।

ଅବଧାନେ- ବେ ବିନ୍ଦିଆ ! ତୋ ବାପ କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଆଣିଲୁ ନାହିଁ ତ ?

ବିନୋଦ- ମୁଁ କଣ କରିବି ଅବଧାନେ, ମା ତାକୁ ବିଡ଼ାବାନ୍ଧି ଶିକାଉପରେ ରଖିଦେଇଛି, ମୋ ହାତ ପାଇଲା ନାହିଁ ।

ଅବଧାନେ- ଆଚ୍ଛା, ତୁ ଗୋଟାଏ କାମ କରିବୁ । ତୋ ମା ଯେତେବେଳେ ଗାଧୋଇ ଯାଇଥିବ କି, ତୁ ଗୋଟାଏ ବଡ଼ ପାଛିଆ ଉଗାଡ଼ି ପକାଇବୁ, ତା ଉପରେ ଚଢ଼ି ଶିକାରୁ ଧୂଆଁପତ୍ର କାଢ଼ିବୁ । ସେଥିରୁ ଦୁଇଚାରିଖଣ୍ଡ କାଢ଼ିନେଇ ବିଡ଼ାବାନ୍ଧି ଶିକାରେ ଥୋଇଦେବୁ । ଖବରଦାର । ବେଶିଗୁଡ଼ାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନଆଣିବୁ ଅନେଇଥା ଏ ବେତକୁ ।

... କଅଁଳେଇ କହିଲେ, ରେ ବାପ ଅନ୍ତୁ! ନେ ତ ଏ ଟୁକୁଣାଟା, ନେଇ ଟୁକୁଣେ ପାଣି ଆଣ ତ, ବହିର୍ଦ୍ଦେଶ ଯିବୁଁ ।

ଅନ୍ତୁ ଭଲପିଲାଟି ପରି ଟୁକୁଣାଧରି ପୋଖରିକୁ ଜଳ ଆଣିବାକୁ ଗଲା, ଅବଧାନେ ବସି ପିକା ଟାଣୁଥାନ୍ତି । ଅନ୍ତୁ ଆସେନାହିଁ- ବଡ଼ ମଠ କଲା । ଅବଧାନେ ଆଉ ସହିପାରିଲେ ନାହିଁ । ଦୁଇ ତିନିଥର ପୋଖରୀତୁଠକୁ ଅନିଷା କଲେଣି; ଉଠିପଡ଼ି ପିକା ଭିଡ଼ିଭିଡ଼ି ତୁଠ ଆଡ଼କୁ ଚାଲିଗଲେ । ଅନ୍ତୁ ଟୁକୁଣାଟି ଧରି ଆଡ଼ି ଉହାଡ଼ରେ ଲୁଚିପଡ଼ି ଅବଧାନକୁ ଅନାଉଥିଲା, ଆସୁଥିଲାନାହିଁ । ଅବଧାନ ଉପରେ ଯେମିତି ନଜର ପଡ଼ିଚି, ଧୀରେ ଧୀରେ ପାଖକୁ ଚାଲିଆସିଲା । ଅବଧାନଙ୍କ ହାତକୁ ଟୁକୁଣାଟି ଏମିତି ବଢ଼େଇଦେଲା, ଯେମିତି କି ଟୁକୁଣାର ପାଣିକୁ ଅବଧାନଙ୍କ ନଜର ନପଡ଼େ । ଅବଧାନେ ଡେବିରିହାତ ପାଞ୍ଚଆଙ୍ଗୁଳିରେ ଟୁକୁଣା ଫନ୍ଦଟି ଧରି ଡାହାଣହାତରେ ପିକା ଭିଡ଼ିଭିଡ଼ି ଗାଁ ଶେଷମୁଣ୍ଡ ଗହୀର ବିଲକୁ ବହିର୍ଦ୍ଦେଶ ଗଲେ । ଅଧଘଣ୍ଟା ହୋଇନାହିଁ, ଅବଧାନେ ତ ବିଲରୁ ଚାରିଚାରି ହାତ ଟିଙ୍ଗାମାରି ରଡ଼ିଛାଡ଼ି ଧାଇଁଛନ୍ତି । ଲୁଗା କେଉଁଠି ପଡ଼ିଲାଣି । ଲୁଗାଖଣ୍ଡ ପଡ଼ିଥାନ୍ତା, ହାତରେ ଜାବୁଡ଼ି ଧରିଚନ୍ତି, ହେଲେ ଅଧାଲଙ୍ଗଳା । ରେ ଅଲପେଇସା ରେ! ରେ ସର୍ବନାଶିଆ ଅନ୍ତାରେ! ମାରିପକାଇଲା ରେ । ଯେମିତି ଚାଟଶାଳୀରେ ପହଞ୍ଚିଗଲେ, ଧରିଲେ ବେତ - କାହିଁ ଅନ୍ତା? ଆଉ ଅନ୍ତା ! ଅନ୍ତା ଅନ୍ତର୍ଦ୍ଧାନ ।

ଅବଧାନେ ଚାଟଶାଳୀର ଏମୁଣ୍ଡରୁ ସେମୁଣ୍ଡ ଗଡ଼ାଗଡ଼ି କରୁଛନ୍ତି, ପାଣି ପାଣି ରଡ଼ି ଛାଡ଼ିଲେ । ଗୋଟିଏ ପିଲା ଧାଇଁଯାଇ ତାଙ୍କ ରୋଷେଇଘର ମାଠିଆରୁ କଂସାଏ ପାଣି ଆଣିଦେଲା । ସେହି ପାଣିରେ ହାତ ଧୋଇପକାଇ ଯେମିତି ଗୋଟାଏ କୁଲୁକୁଞ୍ଚା କରିଛନ୍ତି, କଂସାଖଣ୍ଡ ପାଞ୍ଚହାତ ଦୂରକୁ ଫୋପାଡ଼ିଦେଇ ବାପାଲୋ! ମା ଲୋ! ବୋଲି ହୁରିପକାଇ ଗଡ଼ିଗଲେ । ଆଉ ରଡ଼ିପାରୁନାହାଁନ୍ତି, ଖାଲି ଗାଁ ଗାଁ ଗର୍ଜୁଛନ୍ତି । ମୁହଁଟା ଭାରି ଫୁଲିଗଲାଣି । ଆଖିପତା ଫୁଲିଯାଇ ମାଡ଼ିପଡ଼ିଲାଣି—ଆଖିକୁ ଦିଶୁନାହିଁ । ଗାଁ ଲୋକେ ଉଜାଡ଼ି ପଡ଼ିଲେ । କେତେବେଳେ ଅବଧାନଙ୍କ ପାଟିରୁ କଥା ବାହାରିଲା । ହେଲେ, ମୁହଁଟା ଆଟିକା ପରି ଫୁଲିଯାଇଛି । ଭଲକରି କଥା

କହିପାରୁନାହାଁନ୍ତି । ଅବଧାନେ ଜଣାଇଲେ, ଭାରି ଭୋକ । ଆଉ ତ କିଛି ଖାଇପାରିବେ ନାହିଁ । ଗାଁ ବାଲା ଅଧସେରଟାଏ ଗରମ ଦୁଧ ଆଣିଦେଲେ । ଢୋକେ ଢୋକେ କରି ତେତକ ପିଇଦେଇ ଅବଧାନ ଟିକିଏ ସାଷ୍ଟମ୍‌ହୋଇ ବସିଲେ । ଥଣ୍ଡା ପଡ଼ିଗଲା- ଖସାତେଲରେ ବାଇଡ଼ଙ୍କ ବିଷ ହରେ, ଅବଧାନେ ଟିକିଏ ସାଷ୍ଟମ ହେଲେଣି । ଗାଁର ସବୁ ଲୋକେ ଜମା ହୋଇଥିଲେ । ପୁରୁଣା ପୁରୁଣା ପାଞ୍ଚଜଣ ତନଖି କରିବାକୁ ବସିଗଲେ । କଥା କଣ ? କ୍ୟାଁ ଅବଧାନେ ଏପରି ହେଲ ? ପ୍ରତ୍ୟକ୍ଷ ଓ ପାର୍ଶ୍ୱବର୍ତ୍ତୀ ପ୍ରମାଣ ଏବଂ ଅବଧାନଙ୍କର ପୂର୍ବବ୍ୟବହାର ଆଲୋଚନା କରିବାରେ ସାଫ୍ ଜଣାଗଲା, ଏଟା ରାଣ୍ଡିପୁଅ ଅନ୍ତାର କାମ । ସାଫ୍ ପ୍ରକାଶ ପାଇଲା କି, ଅବଧାନେ ଯେ ବିଛୁଆତି ଛଡ଼ିରେ ପିଟିଥିଲେ, ତା ମନରେ ଥିଲା ରାଗ । ଆଜି ସକାଳେ ଯିମିତି ଅବଧାନେ ଟୁକୁଣାଏ ପାଣି ଆଣିବାକୁ କହିଲେ ସେ ପୋଖରୀକୁ ଟୁକୁଣା ଘେନିଯାଇ ଅଧଟୁକୁଣେ ଅଠାଳିଆ କାଦ ଭିର୍ତ୍ତିକଲା । ଲୋକେ ଦେଖିଛନ୍ତି ପୋଖରୀଆଡ଼ି ବଣଉପରେ ଯେ ବାଇଡ଼ଙ୍କ ଲଟା ମାଡ଼ିଛି ସେଥିରୁ ଦୁଇପୁଞ୍ଜା ଫଳଆଣି ଖପରକାତି ଖଣ୍ଡକରେ ଆଁଶୁସବୁ ଚାଛିଛି । ଟୁକୁଣାରେ ଅଧେ ଆଁଶୁ ମିଶାଇଦେଇ ଆଉଗୁଡ଼ାଏ ପତ୍ରଖଣ୍ଡରେ ପୋଟଳାକରି ଅଣ୍ଟିରେ ଖୋଷିଥିଲା, ଅବଧାନେ ଯିମିତି ପଦାଆଡ଼େ ଯାଇଚନ୍ତି ତାଙ୍କ ରନ୍ଧାଘରେ ଯେଉଁ ପାଣିକଳସୀ ଥିଲା ସେଥିରେ ମିଶାଇଦେଇ ପଳାଇଯାଇଛି ।

ବାଳକର ବିଦ୍ରୋହ ଖାଲି ବିଦ୍ୟାବିକ୍ରୟ ବିରୋଧରେ ନୁହେଁ; ଉଭୟ କମଳୀ ଓ ଅନନ୍ତ ନିଜ ଅଜାଣତରେ ଅସ୍ୱୀକାରକରିଚନ୍ତି 'ମାର୍କେଟ୍'କୁ, ଯୋଉ ମାର୍କେଟ୍ ଝିଅକୁ କରେ ପଣ୍ୟ, ପାଠକୁ କରେ ପଣ୍ୟ, ଆତ୍ମୀୟସମ୍ବନ୍ଧକୁ କରେ ବିନିମୟଯୋଗ୍ୟ ପଣ୍ୟ । ଫକୀରମୋହନ ଅବଶ୍ୟ ହାସ୍ୟ ବା ଲାଫ୍ଟର୍-ର ଉପଯୋଗ କରିଛନ୍ତି ସମାଜପରିବର୍ତ୍ତନ ଭାବନାକୁ ଆଚ୍ଛାଦନ ଦେବାପାଇଁ । ମାତ୍ର ସମାଜରୂପାନ୍ତରକୁ ସାଂସ୍କୃତିକ ଅଭିବ୍ୟକ୍ତି (ଆଖ୍ୟାନ ପରିବେଷଣ)ରେ ପରିଣତକଲେ ଉଦ୍ରେକକରେ ଭାବପ୍ରବଣତା; ପରିବର୍ତ୍ତନର ପ୍ରେରଣା ନିର୍ଦ୍ଧାରହୋଇ ହୋଇଯାଏ ଅସ୍ପଷ୍ଟ । ପରିବର୍ତ୍ତନକାମୀ ପରାର୍ଥବାଦୀ ଏ ଚେତନାକୁ ବ୍ୟକ୍ତକରିବେ ଏକ୍ଷଣି 'ଡିସ୍‌କୋର୍ସ'ରେ । ଅର୍ଥାତ୍, କେନ୍ଦ୍ରାଭିମୁଖୀ କୋଉହେଲେ ସାଂସ୍କୃତିକ ଭାବାଦର୍ଶ ନୁହେଁ, ବରଂ କେନ୍ଦ୍ରକୁ ଘେରିରହିଚି ଯେତେ ଆଚ୍ଛାଦନର ସ୍ତରସ୍ତରାନ୍ତର, ସେଗୁଡ଼ିକ ସମ୍ବନ୍ଧରେ ନାଗରିକସମାଜକୁ କରିବେ ସଚେତନ । କେନ୍ଦ୍ରାଭିମୁଖୀ ଏକକ ସଂସ୍କୃତି ଦୃଷ୍ଟିରେ କମଳୀ କି ଅନନ୍ତ ବିମୂର୍ତ୍ତ ପ୍ରତିବାଦ; ତାଙ୍କ ଆର୍ଥସାମାଜିକ ସାଂସ୍କୃତିକ ଅବସ୍ଥାନର ନିର୍ଦ୍ଦିଷ୍ଟତା ତେଣୁ ତିଆରିକରିପାରେନା ଡିସ୍‌କୋର୍ସ, କାହିଁକିନା, ବିମୂର୍ତ୍ତ ଏକକଦ୍ୱ

ନିର୍ବିରୋଧ ଓ ଯଥାପ୍ରାପ୍ତ । ମାର୍କେଟ୍, ସେଥିପାଇଁ, ଆସିପାରେନା 'ଡିସ୍‌କୋର୍ସ'ର କେନ୍ଦ୍ରକୁ । ଅଥଚ, ବାଖ୍‌ତିନ୍ କହିଚନ୍ତି laughter does not permit seriousness to atrophy... । ମୂଳ ପରିଚୟରେ କିନ୍ତୁ ଫକୀରମୋହନ ଓଡ଼ିଆସାହିତ୍ୟର ପ୍ରଥମ ବାସ୍ତବବାଦୀ ଶିଳ୍ପୀ; ମାନେ, ଶିଳ୍ପ ପ୍ରତି ଦାୟିତ୍ୱ ତାଙ୍କର ପ୍ରାଥମିକ; କାହିଁକିନା, ଶିଳ୍ପର ରହିଚି ନିଜସ୍ୱ ଷ୍ଟ୍ରକ୍‌ଚର୍, ନିଜସ୍ୱ ବିଧିବିଧାନ । ଡିସ୍‌କୋର୍ସ୍‌ର ଯୌକ୍ତିକତା ଅଛି, କିନ୍ତୁ ଷ୍ଟ୍ରକ୍‌ଚର୍ ନାହିଁ । ଆଖ୍ୟାନର ଭାଷା ତେଣୁ ଇଙ୍ଗିତମୟ, ଯେପରି *ଛ'ମାଣ ଆଠଗୁଣ୍ଠ* ରେ, 'ଯୋଡ଼ାଏ ପାଣିକାଉ କେଉଁ ଦେଶରୁ ଉଡ଼ିଆସି ଦୀଘି ମଧରେ ଦୁଇ ଘରି ବୁଡ଼ମାରି ପେଟପୁରାଇ ଫୁର୍‌କରି ଉଡ଼ିଗଲେ । ଇଂରେଜ୍ ପାଣିକାଉମାନେ କେଉଁ ଦେଶରୁ ଖାଲି ପକେଟ୍‌ରେ ଉଡ଼ିଆସି ଚେଙ୍ଗବେଙ୍ଗଗଡ଼ିଶାରେ ପେଟପୂରାଇ ଚାଲିଗଲେ । ...ଜୀବନସଂଗ୍ରାମ କାଳ ଉପସ୍ଥିତ । ଏଣିକି ଆହୁରି ପଣପଣ ପାଣିକାଉ ଆସି ଚେଙ୍ଗବେଙ୍ଗ ସବୁ ବହିନେଇଯିବେ । ତୁମ୍ଭେମାନେ ବିଦେଶକୁ ଯାଇ ସମୁଦ୍ର ପହଁରି ନଶିଖିଲେ ଆଉ ରକ୍ଷା ନାହିଁ ।' କଂଗ୍ରେସ୍‌ର. ମାନ୍ଦ୍ରାଜ୍ ଅଧିବେଶନ(୧୮୯୮)କୁ ଡେଲିଗେଟ୍ ହୋଇ ଯାଇଚନ୍ତି, ବାଳଗଙ୍ଗାଧର ତିଲକଙ୍କ ସହିତ ସେଠି ହୋଇଚି ସାକ୍ଷାତ୍-ପରିଚୟ; ମାତ୍ର ଆଲୋଚନା ଯା କରିଚନ୍ତି, ବିବାକ ଅରାଜନୈତିକ; ଯେପରି, *ଆତ୍ମଚରିତ* ରେ, 'ସଭାର ଅଧିକାଂଶ ବିଷୟ ରାଜନୈତିକ ଥିଲା । ଯଦିଓ ଆମ୍ଭମାନଙ୍କର ରାଜନୈତିକ ଆକାଙ୍କ୍ଷାଗୁଡ଼ିକର ସଫଳ ହେବାର କୌଣସି ନିକଟ ସମ୍ଭାବନା ନାହିଁ, ତଥାପି ଆମ୍ଭମାନଙ୍କ ଅବସ୍ଥା ଅଭିଯୋଗ ପ୍ରକାଶ ନକରି ତୁନିହୋଇ ରହିବା ଆମ୍ଭମାନଙ୍କ ପକ୍ଷରେ ଉଚିତ ହେବନାହିଁ । କଂଗ୍ରେସ୍ ଭାରତର ଭିନ୍ନ ଭିନ୍ନ ଅଞ୍ଚଳବାସୀ ସୁଶିକ୍ଷିତ ସ୍ୱଦେଶବତ୍ସଳ, ମାତୃଭୂମିର ଦୁର୍ଦ୍ଦଶା ମୋଚନକାମୀ ସୁସନ୍ତାନମାନଙ୍କୁ ଏକତାସୂତ୍ରରେ ଗ୍ରଥିତ କରୁଛି । ଏକତାର ହୀନତାହିଁ ଭାରତର ପତନର କାରଣ ।' ଫକୀରମୋହନ ଯୋଉ ଜାତୀୟତାବାଦକୁ ଅବତରଣ କରିଚନ୍ତି, ତାର ଅବଶ୍ୟମ୍ଭାବୀ ସର୍ତ୍ତ 'ସୁଶିକ୍ଷିତ ସ୍ୱଦେଶବତ୍ସଳ, ମାତୃଭୂମିର ଦୁର୍ଦ୍ଦଶା ମୋଚନକାମୀ ସୁସନ୍ତାନ;' ଏଇ ବିନ୍ଦୁରୁ ସୁରୁହୋଇପାରେ ଡିସ୍‌କୋର୍ସ, ଯା ସ୍ୱଭାବତଃ ରାଜନୀତିକ । ମାତ୍ର ଫକୀରମୋହନ ରାଜନୀତିର କେନ୍ଦ୍ରରୁ 'କ୍ଷମତା'କୁ କରିଚନ୍ତି ନିଷ୍କାଷିତ । ଶେଷ ଉପନ୍ୟାସ *ପ୍ରାୟଶ୍ଚିତ୍ତ* ରେ, ସେହିପରି, 'ଯୌନ ନିର୍ବାଚନ' ବିଷୟରେ କଲେଜ୍ ଛାତ୍ରଙ୍କ ତର୍କସଭା । କିମ୍ବା, *ମାମୁଁ* ପୁଣି *ପ୍ରାୟଚିତ୍ତ* ରେ ଭାରତୀୟ ଦର୍ଶନଚିନ୍ତା ସମ୍ବନ୍ଧରେ ସୁଦୀର୍ଘ ସନ୍ଦର୍ଭ, ଯା ବସ୍ତୁତଃ ନାସ୍ତିକ୍ୟର ଖଣ୍ଡନ । ଭାବିଚନ୍ତି, ଏଗୁଡ଼ାକ ପାଶ୍ଚାତ୍ୟ ଶିକ୍ଷାର କୁଫଳ; ମାତ୍ର ଯୌନନିର୍ବାଚନରେ ସ୍ୱାଧୀନତା ଓ ନାସ୍ତିକତା ସପକ୍ଷରେ ଯୁକ୍ତିର ପରିଣତି ହୋଇଚି ଆଖ୍ୟାନର ନାୟକମାନଙ୍କର ସଂସାରବର୍ଜନ । ଖାଲି ସଂସାରତ୍ୟାଗ

ନୁହେଁ, ବୃନ୍ଦାବନ ପର୍ଯ୍ୟନ୍ତ ପଳାଇଯାଇଚନ୍ତି ବୈଷ୍ଣବ ହେବାକୁ । ଅଧିକନ୍ତୁ, ତର୍କସଭାରେ ଯିଏ ଥିଲେ ସମଧିକ ସକ୍ରିୟ, କଥକ ସେମାନଙ୍କୁ କହିଚି, ସୁଯୋଗସଂଧାନୀ ସୁବିଧାବାଦୀ । ବିତ୍ତବାନ ପରିବାରର ସନ୍ତାନଙ୍କ ସରଳତାର ସୁଯୋଗନେଇ ପ୍ରତାରିତକରିବା କୁଆଡ଼େ ଅସଲ ଉଦ୍ଦେଶ୍ୟ ! ତାହେଲେ, ବୁଝିବାକୁ ହେବ, ସାମନ୍ତତନ୍ତ କିମ୍ବା ଔପନିବେଶିକତା ଇଂରେଜୀପଢୁଆ ନବ୍ୟ ଓଡ଼ିଆଙ୍କ ଚେତନାକୁ ଜମାରୁ ଛୁଇଁନାହିଁ; ଏପରିକି, ନୈତିକତା ସୁଦ୍ଧା ପଶ୍ଚିମର ଅନ୍ଧଅନୁକରଣ । ଏଭଳି ବିପର୍ଯ୍ୟୟ ଅଧଃପତନର ସମାଧାନ, ଫକୀରମୋହନଙ୍କ ବିବେଚନାରେ ଅନ୍ତତଃ, ଜେଲ୍‌ଖାନା କିମ୍ବା ତୀର୍ଥକ୍ଷେତ୍ର । ଏ ସମାଧାନ, ସଦର୍ଥରେ, ଜାତୀୟତାବାଦ ନୁହେଁ । କାହିଁକିନା, ବିଜାତୀୟ ପ୍ରଭାବକୁ ନିଷ୍କାଷିତକରିବାକୁ ଫକୀରମୋହନ ଋହିଁଚନ୍ତି ବିପଥଗାମୀର ଚିତ୍ତଶୁଦ୍ଧି; ମାତ୍ର ଜାତୀୟତାବାଦ ଏକ ବିକଳ୍ପ ମୂଲ୍ୟବୋଧ, ବିଜାତୀୟ ସାଂସ୍କୃତିକ-ସାମରିକ-ରାଜନୀତିକ ଆଧିପତ୍ୟର ସଚଳ ପ୍ରତିରୋଧ, ଏବଂ ସେଇ ସୂତ୍ରରେ, ବିକଳ୍ପ ମୂଲ୍ୟବୋଧର ଆବିଷ୍କାର । ବିଂଶଶତକ ପ୍ରାରମ୍ଭରେ ସେ ଉନ୍ମାଦନା ଦେଖାଦେଇଚି ପ୍ରତିବେଶୀ ବଙ୍ଗରାଜ୍ୟରେ, ଯା ପ୍ରସାରିତ ହୋଇଚି ଓଡ଼ିଶାକୁ । ତା ପ୍ରଭାବରେ ଫକୀରମୋହନଙ୍କ ଏକମାତ୍ର ପୁତ୍ର ଓ ଦର୍ଶନବିଦ୍ୟାର ଶିକ୍ଷକ ମୋହିନୀମୋହନ ସ୍ୱାଧୀନ ଯୌନନିର୍ବାଚନକୁ ବାସ୍ତବରେ ପରିଣତକରି ବିବାହକରିଚନ୍ତି ବଙ୍ଗଲଳନା, ଏବଂ ପ୍ରକାଶ୍ୟରେ ପ୍ରଋରକରିଚନ୍ତି ନାସ୍ତିକ୍ୟ । ନିଜ ଜୀବନଚର୍ଯ୍ୟାରେ ଫକୀରମୋହନ ମଧ ଥିଲେନାହିଁ ନିଷ୍ଠାପର ହିନ୍ଦୁ; ମାତ୍ର ମେଦିନୀଦୃଷ୍ଟି ଅତିକ୍ରମ କରିପାରିନାହିଁ ରକ୍ଷଣଶୀଳତା (ଦ୍ର.*ଲଛମା* ) । ଅର୍ଥାତ୍, ଜାତୀୟତାବାଦରେ ନିହିତ ଅନ୍ୟାନ୍ୟ ର୍ୟାଡିକ୍ୟାଲ୍ ସମ୍ଭାବନା ତାଙ୍କ ଚେତନାକୁ ସ୍ପର୍ଶ ପର୍ଯ୍ୟନ୍ତ କରିପାରିନାହିଁ ।

କଂଗ୍ରେସ୍‌ର ମାନ୍ଦ୍ରାଜ ଅଧିବେଶନ ପାଞ୍ଚବର୍ଷ ଆଗରୁ, ୧୮୯୩ ଅଗଷ୍ଟ୍ ମାସରେ, ବମ୍ବେରୁ ପ୍ରକାଶିତ *ଇନ୍ଦୁପ୍ରକାଶ* ରେ ଧାରାବାହିକ New Lamps for Old ଲେଖିଚନ୍ତି ଅରବିନ୍ଦ ଘୋଷ (ଗୁରୁ କି ଯୋଗୀ ହୋଇନାହାଁନ୍ତି ସେତେବେଳକୁ): *ଆରବ୍ୟରଜନୀ* ଆଖ୍ୟାନରେ ଅଛି, ଜାଦୁକର ରାସ୍ତାର ଏମୁଣ୍ଡରୁ ସେମୁଣ୍ଡ ବୁଲୁଚି, ପୁରୁଣା ଦୀପ ବଦଳରେ ଦେବ ନୂଆ ବତି; ଆଲ୍ଲାଦୀନର ବିବି କିନ୍ତୁ ବୋକା ଭଳି ଜାଦୁଦୀପଟାକୁ ଦେଇଦେଇ ବଦଳରେ ଋହିଁଚି ନୂଆ ବତି । ଅରବିନ୍ଦଙ୍କ ବକ୍ତବ୍ୟ: ପୁରାତନ ସଂସ୍କାରପ୍ରବଣ ଅସ୍ୱଚ୍ଛ ଆଲୁଅ ବଦଳରେ କଂଗ୍ରେସ୍‌ର ଦରକାର ଏକ୍ଷଣି ନୂତନ ଆଲୋକ । ରାଜଦ୍ରୋହ ଅଭିଯୋଗର ସମ୍ଭାବନା ଦେଖାଦେଇଚି ସ୍ୱଭାବତଃ, ମାତ୍ର ଅରବିନ୍ଦ କହିଚନ୍ତି, ଅନ୍ଧ ଯଦି ଅନ୍ଧକୁ ବାଟକଢ଼ାଏ, ଉଭୟ ପଡ଼ିବେନାହିଁ କି ଖାତରେ ? ମାତ୍ର ଆଠବର୍ଷ ଆଗରୁ ତିଆରିହୋଇଚି 'ଭାରତୀୟ ଜାତୀୟ କଂଗ୍ରେସ୍';

ସେତିକିବେଳେ ଅରବିନ୍ଦ ଲକ୍ଷ୍ୟକରିଚନ୍ତି, ଭାରତର ସର୍ବସାଧାରଣ (ସୁଶୀଳସମାଜ) ସହିତ ଏ ଅନୁଷ୍ଠାନର ଯୋଗାଯୋଗ ପ୍ରାୟ ଅଦୃଶ୍ୟ । ଲେଖିଚନ୍ତି, '...ତଥାପି ପ୍ରଲେତାରିଆତ୍ ହିଁ..., ଏଇ ପରିସ୍ଥିତିର ଅସଲ ସମାଧାନ ।' ଖିଆଲ୍ କରିବା ଦରକାର, ଫରାସୀ ଜବାନୀରେ proletariate ଶବ୍ଦଟିକୁ ଭାରତର ରାଜନୀତିକ ପରିଭାଷା ଭଣ୍ଡାରକୁ ଆମଦାନିକରିଚନ୍ତି ସର୍ବପ୍ରଥମ ଅରବିନ୍ଦ; କିନ୍ତୁ 'ଶ୍ରମିକଶ୍ରେଣୀ' ଅର୍ଥରେ ନୁହେଁ । ୧୭୮୯ ଫରାସୀବିପ୍ଳବ ଶବ୍ଦଟିକୁ ଚଳୁକରିଥିଲା 'ସର୍ବସାଧାରଣ' ଅର୍ଥରେ; ଅରବିନ୍ଦ ଗ୍ରହଣକରିଚନ୍ତି ସେଇ ଅର୍ଥ; ଅର୍ଥାତ୍ ପ୍ରଲେତାରିଆତ୍ ଏ ଦେଶର ନାଗରିକ ସମାଜ । କଂଗ୍ରେସ୍ (=ଅସହଯୋଗ) କିନ୍ତୁ ଓଡ଼ିଶାକୁ ଆସିଚି ୧୯୨୧ରେ; କାଠଯୋଡ଼ି ନଇବାଲିରେ ସଭାକରି ଗାନ୍ଧି ଦେଇଚନ୍ତି ବିଦେଶୀବର୍ଜନର ଆହ୍ୱାନ। ସେ ପର୍ଯ୍ୟନ୍ତ ଅତୁଟରହିଚି 'ଉତ୍କଳ ସମ୍ମିଳନୀ'ର ଆଧିପତ୍ୟ । ତା ପୁରୋଭାଗରେ ଥିଲେ ମଧୁବାବୁଙ୍କ ଅନୁଗତ ରଜାଜମିଦାର ଓକିଲମୋକ୍ତାର୍ । ଏମାନଙ୍କ ପ୍ରଭାବ ଏପରି ନିରଙ୍କୁଶ ଥିଲା ଯେ ସମ୍ମିଳନୀର ମଞ୍ଚଉପରୁ ଗୋପବନ୍ଧୁ ଦାଶଙ୍କୁ ଉଠାଇଦେବାକୁ ଦ୍ୱିଧାକରିନାହାଁନ୍ତି ମଧୁବାବୁ । ସମାଜବିଜ୍ଞାନୀ ଯା'କୁ କହୁଚନ୍ତି, ଏଥ୍‌ନିକ୍ ନ୍ୟାସନାଲିଜ୍ମ; ବୁର୍ଜୋୟା ସ୍ୱାର୍ଥସିଦ୍ଧିର ଆନ୍ଦୋଳନ, 'ବୁର୍ଜୋୟା' ଶବ୍ଦ ମଧ୍ୟ ୧୯୧୯ ଆଗରୁ ଆସିନାହିଁ । ଋଷ୍-ବିପ୍ଳବ (୧୯୧୭) ଉତାରୁ ବିଲାତରୁ ବୁଲିଆସି ବିପିନଚନ୍ଦ୍ର ପାଲ୍ ଶ୍ରମିକଶ୍ରେଣୀର ପ୍ରତିପକ୍ଷକୁ ଚିହ୍ନଟକରିବାକୁ ପ୍ରଚଳନକରିଚନ୍ତି ଏଇ ଶବ୍ଦ । ଅରବିନ୍ଦ, ପୁଣି, ୧୮୯୩ରେ 'ଜାତୀୟତାବାଦ' ମାନେ ଯା ବୁଝିଥିଲେ, ୧୯୦୫ରେ ତା ଉପରେ ଟୀକା ଲେଖିଚନ୍ତି: 'ଗତକାଲି ପର୍ଯ୍ୟନ୍ତ ଆମ ରାଜନୀତିରେ ସମାଜର ନିମ୍ନସ୍ତରଗୁଡ଼ିକର ନାଁ ନଧରିଲେ ବି ଚଳିଯାଇଚି । ଏକ୍ଷଣି କିନ୍ତୁ ବଞ୍ଚିବାକୁ, ବାଟ ଚଳିବାକୁ, ଅସ୍ପଷ୍ଟ ଅସ୍ଫୁଟ ଆଶା ପୋଷଣକରିବାକୁ ଭୂଇଁ ଓ ପବନ ଖୋଜୁଚନ୍ତି ସେମାନେ, ହାତବଢ଼ାଇ ଅଣ୍ଡାଳିହେଉଚନ୍ତି; ଆମପାଇଁ ଯା ଆସନ୍ନ ବିପ୍ଳବର ସଙ୍କେତ । ସମାଜର ରକ୍ଷଣଶୀଳ ଶକ୍ତି କିମ୍ବା ମୁଷ୍ଟିମେୟ ଶିକ୍ଷିତଲୋକଙ୍କ ଉଦାର ସହାନୁଭୂତି ବିଶେଷ କିଛି କରିପାରିବ ନାହିଁ; ଯୋଉ ଶକ୍ତିଗୁଡ଼ାକ ପଘାଛିଣ୍ଡାଇ ବାହାରିଆସୁଚି, ସାରା ସମାଜଟାକୁ ଘାଣ୍ଟିପକାଇବ ଅବିଳମ୍ବେ ।' ଏପ୍ରିଲ୍ ୧୯୦୮ରେ ଫେର୍: 'ଜନଗଣଙ୍କ ରାଜନୀତିକ ଚେତନାକୁ ଜାଗ୍ରତକରିବା ଦରକାର । ବେଳ ହୁଏତ ଥିଲା ଇତିହାସରେ, ମାତ୍ର କେତେଟା ସାମାଜିକଶ୍ରେଣୀର, ଯେପରି, ଶାସକଶ୍ରେଣୀର, ଶିକ୍ଷିତଶ୍ରେଣୀର, ଖୁବ୍ ବେଶିହେଲେ ବଣିକଶ୍ରେଣୀର ଜାଗରଣ ଥିଲା ଯଥେଷ୍ଟ । ଆଧୁନିକ ଜାତିର ସଂଗଠନ ଏକ୍ଷଣି ନିର୍ଭରକରୁଚି ଯୋଉ ଜାଗରଣ ଉପରେ, ତା ସର୍ବସାଧାରଣ ମଣିଷର ରାଜନୀତିକ ବୋଧ । କାହିଁକିନା, ଏ ଯୁଗ ଜନଗଣର, ଲକ୍ଷ ଲକ୍ଷ ମଣିଷଙ୍କର, ଗଣତନ୍ତ୍ରର ଯୁଗ ।

ଏବଂ ସମାଜବାଦୀ ଗଣତନ୍ତ୍ର ହିଁ ଏକମାତ୍ର ଯଥାର୍ଥ ଗଣତନ୍ତ୍ର ।' ମାତ୍ର ନାଗରିକସମାଜ ପାଖରେ କଥାଗୁଡ଼ାକ ପହଞ୍ଚୁଚି ଅବା କେତେ ? ହିନ୍ଦୁ-ପ୍ରତିକ୍ରିୟା କିନ୍ତୁ ସାମ୍ରାଜ୍ୟବାଦ ତାଡ଼ନାରେ ପାଇଚି ଭିନ୍ନ ଗତି, not through sword । ମାନେ, ଖାଲି ସମାଜ ସଂସ୍କାର କରୁଥିଲେ ସ୍ୱାଧୀନତା କେବେହେଲେ ଆସିବନାହିଁ; ବିଗ୍ରହପୂଜା, ବାଲ୍ୟବିବାହ, ବିଧବାବିବାହ, ଅଭକ୍ଷଭକ୍ଷଣ-ସମସ୍ୟାଗୁଡ଼ାକ ଆଉ ଟାଣେନା ତରୁଣ ସଂପ୍ରଦାୟଙ୍କୁ; ଦରକାର ଏକ୍ଷଣି ରାଜନୀତିର ଯୁଗାନ୍ତର, ଏବଂ ସେଥିପାଇଁ, ସଂସ୍କାର କର୍ମସୂଚିକୁ ମୁଣ୍ଡରୁ କାଢ଼ିଦେଲେ ରାଜନୀତିର ପଥ ହୁଏ ନିଷ୍କଣ୍ଟକ । ସମାଜପତି ସତର୍କ କରିଚନ୍ତି, 'ସାମାଜିକ ଉନ୍ନତିକୁ ଅବହେଳାକଲେ ରାଜନୀତିକ ଉନ୍ନତି ନିଷ୍ଫଳହେବାକୁ ବାଧ୍ୟ' । ସେତେବେଳେ ଅରବିନ୍ଦ ଲେଖୁଚନ୍ତି, 'ସମତା ଆଦର୍ଶକୁ ପୂର୍ଣ୍ଣରୂପ ଦେବାକୁ ହେଲେ ଆଗେ ଦରକାର ରାଜନୀତିକ ସ୍ୱାଧୀନତା; ଅର୍ଥାତ୍ ଆଗେ ଦେଶର ମିଳନ । ସମାଜ-ସଂସ୍କାର, ନୈତିକ ପୁନର୍ଜାଗରଣ, ଶିକ୍ଷାବିକାଶ, ସଂସ୍କାର ପାଇଁ ସଂସ୍କାର କେବଳ, ଯା ବର୍ତ୍ତମାନ ଓ ଅତୀତ ମଧ୍ୟସ୍ଥ ପୁରୁଣା ସଂଘାତଗୁଡ଼ାକୁ ଦେବ ନବଜୀବନ । ସଂସ୍କାର-ଉଦ୍ୟମଙ୍କୁ ଯା ବ୍ୟାହତକରିଚି ଅଦ୍ୟାବଧି ।' ଏକଥା ମୂଳରେ କାମକରିଚି ସଂସ୍କାରପନ୍ଥୀଙ୍କ ସାମାଜିକ ଅବସ୍ଥାନ; ଯେପରି, ଧର୍ମ ବିଷୟରେ ଅଗଭୀରତା, ସାହିତ୍ୟରଚନାରେ ବନ୍ଧ୍ୟାତ୍ୱ, ରାଜନୀତିରେ ରାଜଭକ୍ତି । ସମାଜସଂସ୍କାରକୁ ତେଣୁ ବାତିଲ୍‌କରିନାହାଁନ୍ତି ଅରବିନ୍ଦ, ମୁଲତୁବି ରଖୁଚନ୍ତି ରାଜନୀତିକ ସ୍ୱାଧୀନତା ଅର୍ଜନ ପର୍ଯ୍ୟନ୍ତ ।

ଶତାଧିକ ବର୍ଷ ଉତାରୁ, ପଶ୍ଚାଦ୍‌ଦୃଷ୍ଟି ଆଲୋକରେ କହିପାରିବା, ଇଂରେଜ୍‌ମାରଣ ନୀତି ଅପେକ୍ଷା ବହୁକୋଣିକ ମୁକାବିଲା ଥିଲା ଯଥାର୍ଥ ରଣକୌଶଳ; ମାତ୍ର ସ୍ଥାନ-କାଳ-ପାତ୍ର ବିବେଚନାରୁ ଯେହେତୁ ବିଯୁକ୍ତ, ଏ ବିଚାର ସତତ ବିମୂର୍ତ୍ତ, କାହିଁକିନା, ଆନ୍ଦୋଳନ ଏକ ନିର୍ଦ୍ଦିଷ୍ଟ କ୍ରିୟାବିଧି ଓ ସବେଗ ଗତିଶୀଳତା । ବିମୂର୍ତ୍ତତା ତାକୁ ବ୍ୟାଖ୍ୟା କରିପାରେନା । ପାରେନା ବୋଲି, ବିବେକାନନ୍ଦ-ଅନୁଜ ଅରବିନ୍ଦ-ଶିଷ୍ୟ ଭୂପେନ୍ଦ୍ରନାଥ ଦତ୍ତ(୧୮୮୦-୧୯୬୧) ତତ୍ତ୍ୱବିଚାରକୁ ପଛରେ ପକାଇ ଶିରୋଧାର୍ଯ୍ୟ କରିଚନ୍ତି ମାତ୍‌ସିନୀଙ୍କ ଅନୁଜ୍ଞା: ରାଜନୀତିରେ ସଂସ୍କାର ନ ଆସିଲେ, ସମାଜରେ ସଂସ୍କାର ଆସେନା । ଭୂପେନ୍ଦ୍ରନାଥଙ୍କ ବିବେଚନାରେ ଏ ଉକ୍ତି ଅଭିଜ୍ଞତାପ୍ରସୂତ ସିଦ୍ଧି । ତେଣୁ ଧ୍ରୁବସତ୍ୟ । ମାତ୍‌ସିନୀ ପୁଣି କହିଥିଲେ, ଦେଶ ଓ ସ୍ୱାଧୀନତା ନଥିଲେ, କଳାବିଦ୍ୟାର ମଧ୍ୟ ପ୍ରାଣପ୍ରତିଷ୍ଠା ହୁଏନା । ଭୂପେନ୍ଦ୍ରନାଥ ଲେଖୁଚନ୍ତି, ବଙ୍କିମ୍‌ଚନ୍ଦ୍ର ମାଇକେଲ୍ ରବୀନ୍ଦ୍ରନାଥଙ୍କ ଲେଖାରେ ପୂର୍ବସୂଚନା ହୁଏତ ରହିଚି, ମାତ୍ର ସ୍ୱାଧୀନତା ନଆସିଲେ ସେ ସୂଚନାର ପୂର୍ଣ୍ଣତା ଆସିବନାହିଁ । ଭୂପେନ୍ଦ୍ରନାଥ ତେଣୁ

ପ୍ରଥମ ସଂଭ୍ରାନ୍ତ-ସନ୍ତାନ ଯିଏ ବ୍ରିଟିଶ୍ପ୍ରବର୍ତ୍ତିତ ଆଇନ୍ ଓ ଅଦାଲତର ଭାରତୀୟଙ୍କ ଉପରେ କର୍ତ୍ତୃତ୍ୱକୁ ଅସ୍ୱୀକାରକରିଚନ୍ତି; ରାଜଦ୍ରୋହ ଅପରାଧରେ ଅଭିଯୁକ୍ତହୋଇ ସୁଦ୍ଧା କରିନାହାଁନ୍ତି ଆତ୍ମପକ୍ଷସମର୍ଥନ । ଏବଂ ଜେଲ୍ରୁ ବାହାରକୁ ଆସି ଚାଲିଯାଇଚନ୍ତି ସିଧା ଆମେରିକା, ସେଠୁ ଜର୍ମାନୀ ଯାଇ ସମାଜବିଦ୍ୟାରେ କରିଚନ୍ତି ଡକ୍ଟରେଟ୍, ଏବଂ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ସହିତ ଗଢ଼ିଚନ୍ତି 'ବର୍ଲିନ୍ କମିଟି' । ସେଇ କମିଟି ପକ୍ଷରୁ ଋସିଆ ଯାଇ ସାକ୍ଷାତକରିଚନ୍ତି ଲେନିନ୍ଙ୍କୁ ଏବଂ ପେଶ୍କରିଚନ୍ତି ଭାରତରେ ବିପ୍ଳବ ସକାଶେ ନିଜସ୍ୱ ମାର୍କ୍ସବାଦୀ ଭୂୟୋଦର୍ଶନ । ସ୍ୱଦେଶକୁ ଫେରିଆସି କିନ୍ତୁ ଯୋଗଦେଇନାହାଁନ୍ତି କୋଉହେଲେ ରାଜନୀତିକ ଦଳରେ; ଏପରିକି, ପଣ୍ଡିଚେରୀରୁ ବାରମ୍ବାର ତାଗିଦ୍ ଆସିଲେ ସୁଦ୍ଧା, ଅରବିନ୍ଦଙ୍କ ଆଧ୍ୟାତ୍ମିକତାରୁ ନିଜକୁ ରଖିଛନ୍ତି ନିରାପଦ ଦୂରତ୍ୱରେ । ସୁଶୀଳ ସମାଜର ଏ ଆଲୋଚନା ଭିତରକୁ ତାଙ୍କୁ ଆଣିବା କାରଣ, ନବକୃଷ୍ଣ ଚୌଧୁରୀ ତିରିଶଦଶକର କଲିକତାରେ ତାଙ୍କ ସଂସର୍ଗ ଲାଭକରିଥିବା ସମ୍ଭବପର ।

## ଭୂପେନ୍ଦ୍ରନାଥ ଦତ୍ତ

ଦକ୍ଷିଣପନ୍ଥୀ ଖଦଡ଼ଧାରୀ କଠୋର ଗାନ୍ଧିବାଦୀଙ୍କ ଛଡ଼ା ବାକି ସମସ୍ତେ ଶିକ୍ଷା ଗ୍ରହଣକରିବାକୁ ଆସିଚନ୍ତି ତାଙ୍କ ପାଖକୁ; ଦକ୍ଷିଣପନ୍ଥୀ ଗାନ୍ଧିବାଦୀ ମଧ୍ୟ ପ୍ରଦର୍ଶନ କରିଚନ୍ତି ସଂଭ୍ରମ ଓ ଶ୍ରଦ୍ଧା; କିନ୍ତୁ କାହିଁକି ? କାହିଁକିନା, ଏ ଦେଶର ରାଜନୀତିକ ମଞ୍ଚଉପରୁ ଭୂପେନ୍ ଦତ୍ତ ଏକମାତ୍ର ବ୍ୟକ୍ତି, ଯିଏ ୧୯୨୬ରେ ଉଠାନ୍ତି ଶ୍ରେଣୀସଂଗ୍ରାମ ଓ ସମାଜବାଦ ପ୍ରସଙ୍ଗ; ଏବଂ ଭାରତଇତିହାସ ବିଶ୍ଳେଷଣକରିବାକୁ ଯାଇ ପ୍ରୟୋଗକରନ୍ତି ମାର୍କ୍ସବାଦ । ଗଣସଂଗଠନ ଓ ରାଜନୀତି-କ୍ଷେତ୍ରରେ ଥିଲେ ତେଣୁ ବ୍ୟକ୍ତିବିଶେଷ ନୁହେଁ, ସର୍ବମାନ୍ୟ ପ୍ରତିଷ୍ଠାନ । ଦୁଇପୁରୁଷ ଧରି ଅବିଭକ୍ତ ବଙ୍ଗରାଜ୍ୟର ଅଜସ୍ର ତରୁଣ ଯେମିତି ମାର୍କ୍ସବାଦ ଶିଖିଚନ୍ତି ତାଙ୍କ ପାଖରୁ, ବାର-ଚଉଦଟି ବିପ୍ଳବବାଦୀ ଗୋଷ୍ଠୀର ନେତା ସେମିତି ତାଙ୍କ ସହିତ ଆଗତୁରା ପରାମର୍ଶ ନକରି ନେଇନାହାଁନ୍ତି ସିଦ୍ଧାନ୍ତ । କେହିକେହି ଏବେ ସୁଦ୍ଧା ଅବଶିଷ୍ଟ ଅଛନ୍ତି ନାନାଦି ଗୋଷ୍ଠୀ ଉପଗୋଷ୍ଠୀରେ ବିଭାଜିତ କମିଉନିଷ୍ଟଙ୍କ ଗହଣରେ । ଅସହଯୋଗର ସୂତ୍ରପାତ ୧୯୨୧ରେ; ଭୂପେନ୍ ଦତ୍ତ କିନ୍ତୁ ୧୯୦୭ରୁ ସୁବିଦିତ ଏ ଦେଶର ରାଜନୀତିରେ, କାହିଁକିନା, ଅରବିନ୍ଦ-ସଂପାଦିତ *ଯୁଗାନ୍ତର* କାଗଜର ଅନ୍ୟତମ ଲେଖକ ଭାବରେ ବ୍ରିଟିଶ୍-ଭାରତର ବିଚାରାଳୟରେ ଥିଲେ ସର୍ବପ୍ରଥମ ଅସହଯୋଗୀ । ଅସହଯୋଗ କରି ଭୋଗକରିଚନ୍ତି ଏଗାରମାସ ସଶ୍ରମ କାରାଦଣ୍ଡ । ପ୍ରଥମ ମହାଯୁଦ୍ଧବେଳକୁ ଜର୍ମାନୀ ସହାୟତାରେ ସଶସ୍ତ୍ର ଅଭ୍ୟୁତ୍ଥାନର

ଯୋଉ ଚେଷ୍ଟାହୋଇଚି ବାଘା ଯତୀନ୍‌ଙ୍କ ନେତୃତ୍ୱରେ, ଜର୍ମାନୀରେ ତାର ଅନ୍ୟତମ ସଂଗଠକ ଥିଲେ ଭୂପେନ୍ଦ୍ରନାଥ । ବାଘା ଯତୀନ୍ ବାଲେଶ୍ୱରରେ ଶହୀଦ୍ ହେବା ପରେ, ଜର୍ମାନୀରେ ଥାଇ ଭୂପେନ୍ଦ୍ରନାଥ ଉପଲବ୍ଧିକରନ୍ତି 'ଜାତୀୟ' ବିପ୍ଳବବାଦର ସୀମାବଦ୍ଧତା, ଏବଂ ମାର୍କ୍ସଙ୍କ *ଫ୍ରାନ୍ସରେ ଶ୍ରେଣୀସଂଗ୍ରାମ* ପଢ଼ିସାରି ମନେହୁଏ, ଭାରତରେ ଏକାମାପର ବିପ୍ଳବ ଘଟିବା ସମ୍ଭବପର । ଅଥଚ, ଜାତୀୟତାବାଦୀ ବିପ୍ଳବୀ ହୁଅନ୍ତୁ କି ଅଫିସିଆଲ୍ ମାର୍କ୍ସିଷ୍ଟ୍ ହୁଅନ୍ତୁ, କାହାରି ପାଖରୁ ପାଇନାହାଁନ୍ତି ପ୍ରାପ୍ୟ ମର୍ଯ୍ୟାଦା । 'ଅଫିସିଆଲ୍ ଇଣ୍ଡିଆନ୍ ମାର୍କ୍ସିଷ୍ଟ୍' ଆଖ୍ୟାଟା ଦାମୋଦର ଧର୍ମାନନ୍ଦ କୋସମ୍ବୀ ପ୍ରଦତ୍ତ, କାହିଁକିନା, କୋଉହେଲେ ରାଜନୀତିକ ଛତାତଳେ ଛାୟା ଖୋଜିନାହାଁନ୍ତି; ମଠବସାଇ ମହନ୍ତହେବାକୁ ବି ମନକରିନାହାଁନ୍ତି । ଯୋଉ ପରିସ୍ଥିତିରେ ଫ୍ରାନ୍ସରେ ଘଟିଥିଲା ଶ୍ରେଣୀସଂଗ୍ରାମ, ଭାରତରେ ତା'ର ସଙ୍କେତ ହୁଏତ ଦେଖୁନଥିଲେ; କିନ୍ତୁ ୧୯୨୫ରେ ସ୍ୱଦେଶକୁ ଫେରିଆସି ମାର୍କ୍ସବାଦ ପ୍ରଚାରକରିବାକୁ ବାହାରିଚନ୍ତି ଯେତେବେଳେ, ଯୁଗାନ୍ତର ଦଳର ମୁରବୀମାନେ ହିଁ ଯାଇଚନ୍ତି ତାଙ୍କ ବିପକ୍ଷରେ; ଫେର୍ ଯେତେବେଳେ କଂଗ୍ରେସ୍-ଆନ୍ଦୋଳନରେ ପଶିଲେ, ଅଚିରାତ୍ ପାଲଟିଗଲେ ଗାନ୍ଧିବାଦର କଠୋରତମ ସମାଲୋଚକ; କଂଗ୍ରେସ୍ ଦଳର ଚକ୍ଷୁଶୂଳ ହେବା ଛଡ଼ା, କମିଉନିଷ୍ଟ୍ ପାର୍ଟିର ମାମଲତକାରଙ୍କୁ କହିଲେ ସଂକୀର୍ଣ୍ଣମନା । ଅଧ୍ୟବସାୟ ଓ ନିଷ୍ଠା ଅପରିସୀମ ହେବାସତ୍ତ୍ୱେ, ଏମାନଙ୍କ ରାଜନୀତିବୋଧ ଓ ସଂଗଠନ-ଅଭିଜ୍ଞତା ଲାଗିଚି ତାଙ୍କୁ ନଗଣ୍ୟ । ଗୋଟେ ପଟରେ ଗାନ୍ଧିବାଦ, ଆରପଟରେ ସଶସ୍ତ୍ର ବିପ୍ଳବ—ଉଭୟ ପାଖରୁ ନିଜକୁ ଅଲଗା ପ୍ରମାଣକରିବାକୁ କମିଉନିଷ୍ଟଙ୍କ ଆପ୍ରାଣ ଚେଷ୍ଟା ଏବେ ବି ରହିଚି ଅପ୍ରଶମିତ । ଭୂପେନ୍ଦ୍ରନାଥଙ୍କ ଚିନ୍ତା ଓ କର୍ମ ଥିଲା ହୁଏତ ଉପଯୁକ୍ତ ପଥନିର୍ଦ୍ଦେଶ; କିନ୍ତୁ ବଲ୍‌ସେଭିକ୍ ଆନୁଗତ୍ୟ କରିଚି ପଥରୋଧ । ପଥରୋଧ କରିଚି ବୋଲି, ଭୂପେନ୍ଦ୍ରନାଥ ପ୍ରତ୍ୟାଶାକରିଥିଲେ କୃଷକ ଓ ଶ୍ରମିକର ଯୋଉ ଅଗ୍ରଣୀ ଭୂମିକା ଓ ସମ୍ମିଳିତ ଶକ୍ତି, ଘଟିନାହିଁ କେତେବେଳେ; ଅର୍ଥାତ୍, ଜାତୀୟତା ସାଙ୍ଗରେ ଘଟିନାହିଁ ଆନ୍ତର୍ଜାତିକତାର ମିଳନ । ସେ ଅଭାବ ଏବେ ବି ରହିଚି ବିବାକ ବାମପନ୍ଥୀ ଆନ୍ଦୋଳନର ମୌଳିକ ସଂଗଠନସୂତ୍ରରେ ଏବଂ ରହିଚି ବୋଲି, ଭୂପେନ୍ଦ୍ରନାଥ ତୁଳାଭିଣା କରିଚନ୍ତି କମିଉନିଷ୍ଟ୍ ଆନ୍ତର୍ଜାତିକ ସାଙ୍ଗକୁ ଭାରତର କମିଉନିଷ୍ଟ୍ ପାର୍ଟିକୁ (ସେତେବେଳକୁ ଅବିଭକ୍ତ) । ପ୍ରତିକ୍ରିୟାରେ, ବିଦ୍ରୂପକରିବାକୁ ଚେଷ୍ଟାକରିଚନ୍ତି ମୁଜଫର୍ ଅହମଦ୍; ମାତ୍ର ପାହାଡ଼କୁ ଢେଲାଫିଙ୍ଗିବା ଭଳି ସେ ଉତ୍ତର କ୍ଷତିକରିଚି ଏ ଦେଶର ବାମପନ୍ଥୀ ଆନ୍ଦୋଳନର, କାହିଁକିନା, କିସାନ୍‌ସଭା ପ୍ରତିଷ୍ଠା ପାଖରୁ ତେଭାଗା ବିଦ୍ରୋହ ବାଟଦେଇ ନକ୍ସଲବାଡ଼ି ସଂଘର୍ଷ ପର୍ଯ୍ୟନ୍ତ, ସବୁଠି ଦେଖୁଛୁଁ ତାଙ୍କରି ହାତରେ ତିଆରି ମଣିଷ(ବଙ୍କିମ୍ ଚାଟାର୍ଜୀ,

ରେବତୀ ବର୍ମଣ, ସୋମନାଥ ଲାହିଡ଼ୀ, ଭବାନୀ ସେନ୍, ବିନୟ ଚୌଧୁରୀ, କଂସାରୀ ହାଲ୍‌ଦାର୍, ଅଜିତ ବସୁ, ସୁଶୀତଲ ରାୟଚୌଧୁରୀ) । ହୀରେନ୍ ମୁଖାର୍ଜୀ ତେଣୁ ତାଙ୍କ ଜନ୍ମଶତବାର୍ଷିକୀ ଉପଲକ୍ଷ୍ୟରେ ଲେଖନ୍ତି, 'ଭାରତର ସ୍ୱାଧୀନତା ସଂଗ୍ରାମ ଓ ସମାଜତନ୍ତ୍ରରେ ତାର ପରିପୂର୍ଣ୍ଣତା—ପୁରା କାହାଣୀଟା ଯଦି କେବେ ଲେଖାହୁଏ, ଯୋଉ ସଂରାଗ (ପ୍ୟାସନ୍) ଭୂପେନ୍ଦ୍ରନାଥଙ୍କୁ ଋଳିତକରିଥିଲା, ଯୋଉ ଗଭୀରତା ଓ ଶକ୍ତି ସେ ସଂରାଗକୁ ରଞ୍ଜିତ କରିଥିଲା, ନିଶ୍ଚୟ ଯଥାଯୋଗ୍ୟ ସ୍ୱୀକୃତି ପାଇବ ।' ଭାଷାତତ୍ତ୍ୱବିଦ୍ ସୁକୁମାର ସେନ୍ ଲେଖିଚନ୍ତି, 'ଭୂପେନ୍ଦ୍ରବାବୁଙ୍କ ବିଷୟରେ ମୋ ମନରେ ଦୁଇଟି କ୍ଷୋଭ ରହିଯାଇଚି । ଆଗରୁ କାହିଁକି ତାଙ୍କ ସହିତ ସଂଯୋଗ ସ୍ଥାପନ କଲିନାହିଁ । ଆଉଗୋଟିଏ ହେଲା, ଦେଶ ତାଙ୍କୁ ତାଙ୍କ ମନୀଷା ଓ ପାଣ୍ଡିତ୍ୟର ଉପଯୁକ୍ତ ମର୍ଯ୍ୟାଦା ଦେଇନାହିଁ ।' ଭାଷାତତ୍ତ୍ୱବିଦ୍ ଅଧ୍ୟାପକଙ୍କ ଏ ଉକ୍ତିରେ ପକ୍ଷପାତର ଆଶଙ୍କା ନାହିଁ; କିନ୍ତୁ କି ରକମ ଥିଲା ସେଇ ମନୀଷାର ଧରଣଧାରଣ? ଦେଶହିତୈଷୀ କର୍ମୀଙ୍କ ଉଦ୍ଦେଶ୍ୟରେ ଲିଖିତ ଏକ ସାମାନ୍ୟ ରଚନାରୁ ଉଦ୍ଧୃତି ଦେଉଚି, ଯେହେତୁ ଇତିହାସ ସହିତ ତା ରାଷ୍ଟ୍ରଚିନ୍ତାର ଅନ୍ୱୟ ।

"ଖ୍ୟାତାନାମା ଜଣେ ଇଂରେଜ୍ ଲେଖକ ପଋରିଥିଲେ, ଯୁଦ୍ଧ ବିଷୟରେ *ଇଲିୟଡ୍* ଆଉ ଭ୍ରମଣ ବିଷୟରେ *ଓଡିଶୀ* ହୁଏତ ମହାକାବ୍ୟ, କିନ୍ତୁ ସାଂସାରିକ ବିଷୟରେ ମହାକାବ୍ୟ କାହିଁ? ଭାରତର ସମାଜ ବିଷୟରେ ମଧ୍ୟ ପଋରିହେବ ଏକା ପ୍ରଶ୍ନ । କ୍ଷତ୍ରୀୟର ଗୌରବ ଓ କୀର୍ତ୍ତିର ସାକ୍ଷୀ ଅବଶ୍ୟ ଋକ୍‌ବେଦ, ଉପନିଷଦ ଓ ଜୈନ / ବୌଦ୍ଧ ଗ୍ରନ୍ଥ ସମୂହ ଆଉ ବ୍ରାହ୍ମଣଙ୍କ ଉତ୍କର୍ଷ ତାଲିକାରେ ରହିଚି ଶ୍ରୁତି ଆଉ ସ୍ମୃତି; କିନ୍ତୁ ଶୂଦ୍ରାର୍ଯ୍ୟଙ୍କ କର୍ମ ଓ କାର୍ଯ୍ୟାବଳୀର ବିବରଣ କାହିଁ? ଯୋଉ ଶ୍ରେଣୀ ଭାରତର ଧନ ଉତ୍ପାଦନ କରିଚନ୍ତି ଆଉ ପୃଥିବୀର ସମୁଦାୟ ଜାଗାରୁ ତା ବିନିମୟରେ ଅର୍ଥାଦି ଆନୟନ କରିଚନ୍ତି ଦେଶକୁ, ସେମାନଙ୍କ କୃତିତ୍ୱର ବୃତ୍ତାନ୍ତ ମିଳିବ କୋଉଠୁ? ଭାରତର ସାହିତ୍ୟ ଏ ବିଷୟରେ ଏକେବାରେ ମୂକ । ପ୍ରକୃତ ଇତିହାସକୁ ନିରପେକ୍ଷ ବିଶ୍ଳେଷଣ କରିଲେ ଯା ପ୍ରତୀୟମାନ ହୁଏ, ତା ହେଲା, ବୈଶ୍ୟ ଓ ଶୂଦ୍ରଗଣ ଭାରତର କୃଷ୍ଟିର ଅସଲ ଉଦ୍‌ଭାବକ, ସେମାନେ ହିଁ କୃଷ୍ଟିର ଉପାଦାନସମୂହ (କଲ୍‌ଚରାଲ୍ ଗୁଡ୍‌ସ୍) ସୃଷ୍ଟିକରିଚନ୍ତି ଏବଂ ସେ ଉପାଦାନକୁ ନିଜ ଜୀବନରେ ପ୍ରୟୋଗକରିବାକୁ ଯେତେଟା ସୁବିଧା ପାଇଚନ୍ତି, ଭାରତର ସଭ୍ୟତା ଉନ୍ନତହୋଇଚି ଠିକ୍ ସେତେଟା । ମୂଳତଃ 'ବିଶ୍' (ବିଶ୍‌ରୁ ବୈଶ୍ୟ) ହିଁ ସୃଷ୍ଟିକରିଚି ସଭ୍ୟତା । କାୟିକ ଶ୍ରମ ଓ କୃଷି ଭଳି କର୍ମ ଦ୍ୱାରା ଯିଏ ଧନୋତ୍ପାଦନ ସମ୍ଭବକରିଚନ୍ତି, ସେମାନେ ହିଁ କୃଷ୍ଟିର ଉତ୍ପତ୍ତି ଓ ସଭ୍ୟତାର ବିସ୍ତାର ସାଧନ କରିଚନ୍ତି । ଶାସକ କ୍ଷତ୍ରୀୟ କିମ୍ବା ତାଙ୍କ ବଚସ୍କର

ପୁରୋହିତତନ୍ତ୍ର କୃଷ୍ଟିର ଉପାଦାନସମୂହ ସୃଷ୍ଟିକରିନାହାଁନ୍ତି । ... ନିମ୍ନସ୍ତରର ବିଶ୍ ପାଖରୁ କ୍ରମାଗତ ଲୋକସମୂହ ଉତ୍ଥିତହୋଇ ମୁମୂର୍ଷୁ ସମାଜକୁ ବଞ୍ଚାଇରଖିଚି । ଭାରତର 'ଗଣ' ସମୂହର ଜୀବନୀଶକ୍ତି ଅଫୁରନ୍ତ ଏବଂ ସେମାନେ ହିଁ ଭବିଷ୍ୟତ ଭାରତର ଏକମାତ୍ର ଆଶା ଓ ଭରସାସ୍ଥଳ । ... ସ୍ୱାଧୀନ ଭାରତର ଐତିହାସିକ ବ୍ରାହ୍ମଣ୍ୟ ନିତ୍ୟବାଦ ଦୃଷ୍ଟିରେ ଇତିହାସକୁ ନଦେଖି, ବିଜାତୀୟ ସାମ୍ରାଜ୍ୟବାଦର ପଛଳି ନକରି ପ୍ରାଚୀନ କ୍ଷଣିକବାଦ (ଡାୟଲେକ୍‌ଟିକ୍)ର ଧାରା ଅବଲମ୍ବନକରି ଭାରତୀୟ ମାନବର କୃଷ୍ଟିର ବିବର୍ତ୍ତନର ଯଥାର୍ଥ ଇତିହାସକୁ ଲୋକଚକ୍ଷୁର ଗୋଚର କରିବେ, ଭବିଷ୍ୟତ ବଂଶଧରଙ୍କ ଉପରେ ଏଇ ଆଶା ସ୍ଥାପନକରି ଆମେ ଯାଉଛୁଁ ।"

କିନ୍ତୁ କେମିତି କରାଯିବ ଡାୟଲେକ୍‌ଟିକ୍ ତର୍କନୀତିକୁ ସମାଜ, ରାଷ୍ଟ୍ର ଓ ଇତିହାସ ବ୍ୟାଖ୍ୟାରେ ଉପଯୋଗ ? ଉତ୍ତରରେ ଯା ଲେଖିଚନ୍ତି, ଇତିହାସବୋଧ ସେଥିରେ ଅଖଣ୍ଡ । ସେ ଅଖଣ୍ଡବୋଧରେ ପରିଦୃଷ୍ଟ ଯୋଉଠି ବିରତି, ତାକୁ କହିଚନ୍ତି ବିଚ୍ଛିନ୍ନ ଅବିଚ୍ଛିନ୍ନତା (discontinuous continuity), ବୌଦ୍ଧମତରେ ପ୍ରତୀତ୍ୟ-ସମୁତ୍ପାଦଃ । ଡାୟଲେକ୍‌ଟିକ୍ ବା ଦ୍ୱନ୍ଦ୍ୱଭାବତତ୍ତ୍ୱ ପ୍ରାଚୀନ ଭାରତରେ ଆଲୋଚିତ ହୋଇଚି, ବୈଦିକ ଋଷିଙ୍କ ମାନସଦୃଷ୍ଟିରେ ଏ ଜଗତ୍ ପ୍ରାତୀତହୋଇଚି କ୍ରମାଗତ ପରିବର୍ତ୍ତନଶୀଳ ଏକ ଅନନ୍ତଧାରା । ପରବର୍ତ୍ତୀ ପଣ୍ଡିତଙ୍କୁ ମଧ୍ୟ ଜଗତ୍ ଦିଶିଚି ଅଖଣ୍ଡ, ମାତ୍ର ପରିବର୍ତ୍ତନର ଅଧୀନ । ଏ ଦୃଷ୍ଟିକୁ ସାଧାରଣତଃ କ୍ଷଣିକବାଦ କୁହାଯାଏ, ମାତ୍ର ବୁଦ୍ଧ ତାକୁ ନାମିତ କରିଚନ୍ତି 'ପ୍ରତୀତ୍ୟ-ସମୁତ୍ପାଦଃ' । ଅର୍ଥାତ୍, ଦେହରୁ ଦେହାନ୍ତର, ଅବସ୍ଥାରୁ ଅବସ୍ଥାନ୍ତର, ଯୁଗରୁ ଯୁଗାନ୍ତର; ମଧ୍ୟବର୍ତ୍ତୀ କାଳମାତ୍ରା କ୍ଷଣିକ । ଏଇ ତତ୍ତ୍ୱାନୁସାରେ ଜଗତ୍-ସମାଜ, ମନୁଷ୍ୟ-ପ୍ରକୃତି କ୍ଷଣେ କ୍ଷଣେ ପରିବର୍ତ୍ତନଶୀଳ, ପୂର୍ବରୂପକୁ ପ୍ରତ୍ୟାବର୍ତ୍ତନ କରେନା ।

ଗ୍ରୀସ୍‌ରେ ମଧ୍ୟ ପ୍ରାଚୀନ ଦାର୍ଶନିକ ହିରାକ୍ଲିଟୁସ୍ ଥିଲେ କ୍ଷଣିକବାଦର ସମର୍ଥକ ଏବଂ ସେ ହିଁ ଏ ତତ୍ତ୍ୱର ନାମକରଣ କରିଚନ୍ତି 'ଡାୟଲେକ୍‌ଟିକ୍', ଅର୍ଥାତ୍ ତର୍କସୂତ୍ର । କହୁଥିଲେ, କୋଉହେଲେ ଲୋକ ଏକାନଈରେ ଦୁଇଥର ଗାଧୋଇ ପାରେନା । ତାର ଅର୍ଥ ଭୂଇଁ ଉପରେ ନଦୀର ଧାରାଟି ନିତ୍ୟ ନିଶ୍ଚୟ, କିନ୍ତୁ ଜଳବିନ୍ଦୁ ସମୂହ ଏକତ୍ରିତହୋଇ ସୃଷ୍ଟିକରନ୍ତି ଯୋଉ ଜଳରାଶି, କୋଉ ଗୋଟାକ ଜାଗାରେ ତା ସ୍ଥାୟୀହୋଇ ରହିପାରେନା ଯେହେତୁ ତା କ୍ରମାଗତ ପ୍ରବହମାନ । ଅତଏବ ଯିଏ ନଈଭିତରେ ପଶି ଥରେ ସ୍ନାନ କରିସାରିଚନ୍ତି, ପୁନରାୟ ଗାଧୋଇବାକୁ ଗଲେ ଏକା ଜଳରାଶିକୁ ସେଠି ପାଇବେନାହିଁ; ନଦୀର ଜଳରାଶି ପ୍ରବହମାନ ଥାଇ ପୂର୍ବ ଜାଗାରୁ ଅପସୃତ ହୋଇଚି ଏବଂ ନଦୀର ପୂର୍ବରୂପ ମଧ୍ୟ ହୋଇଯାଇଚି ଅତୀତ ।

ତତ୍‌ପରେ ଆସନ୍ତି ଜର୍ମନ୍ ପଣ୍ଡିତ ହେର୍‌ଡର୍ ଏବଂ କହନ୍ତି ଯେ ସାମାଜିକ

ଜୀବନ ଓ ତାର ବିଧିବିଧାନ ସଦାସର୍ବଦା ପ୍ରକୃତିର ଅଧୀନ; ଅର୍ଥାତ୍ ପ୍ରକୃତି ଦ୍ୱାରା ଅଭିଭୂତହୋଇ ରୂପ ପ୍ରାପ୍ତହେଉଚି । ତାଙ୍କ ପଛକୁ ଅଷ୍ଟାଦଶ ଶତାବ୍ଦୀରେ ଆସନ୍ତି ବିଖ୍ୟାତ ଦାର୍ଶନିକ କାଣ୍ଟ୍ । ତାଙ୍କ ମତରେ, ଖାଲି ସମାଜ ନୁହେଁ, ସବୁ ବିଷୟର ବିକାଶ ଘଟେ ପାରସ୍ପରିକ ଦ୍ୱନ୍ଦ୍ୱଭାବ(ଆଣ୍ଟାଗୋନିସ୍ମ) ଦ୍ୱାରା । ଏ ଦୁଇ ମତବାଦରୁ ମୀମାଂସା ବାହାରେ ଯେ, ସମାଜ ଆପଣା ପ୍ରାକୃତିକ ବାତାବରଣ ଦ୍ୱାରା ପ୍ରଭାବିତ ହୁଏ ସତ, କିନ୍ତୁ ଦ୍ୱନ୍ଦ୍ୱଭାବ ସଂସାଧିତ କରେ ଅଗ୍ରଗତି ।

ଅତଃପର ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହେଗ୍ଲ, ହିରାକ୍ଲିଟସ୍‌ଙ୍କ ତର୍କଧାରା ଅନୁସରଣକରି ଗଠନକରନ୍ତି ନିଜ ଡାୟଲେକ୍‌ଟିକ୍ ତତ୍ତ୍ୱ । ସେ ତତ୍ତ୍ୱର ପ୍ରଥମ ପ୍ରସ୍ତାବ ହେଲା, ମନୁଷ୍ୟ ମସ୍ତିଷ୍କରେ ଚିନ୍ତାର କ୍ରମାଗତ ପ୍ରବାହକୁ ପରିଚାଳିତ କରୁଚି କାଣ୍ଟ୍-କଥିତ ଦ୍ୱନ୍ଦ୍ୱଭାବ । ଚିନ୍ତାର ପ୍ରଥମ ପ୍ରତିପାଦ୍ୟ ମସ୍ତିଷ୍କରେ ଉଦୟ ହୁଏ 'ବାଦ' ବା ଥିସିସ୍ ଆକାରରେ, ମାତ୍ର ଦ୍ୱନ୍ଦ୍ୱଭାବ ହେତୁରୁ ତତ୍‌କ୍ଷଣାତ୍ ଉଦିତହୁଏ ପ୍ରତିବାଦ ବା ଆ୍ୟାଣ୍ଟିଥିସିସ୍ । ଏକାରୀତିରେ ପୁଣି ଉଦ୍‌ଭୂତ ହୁଏ ଆ୍ୟାଣ୍ଟିଥିସିସ୍‌ର ପ୍ରତିବାଦ । ଏହିରୂପେ ପ୍ରତିବାଦ ସମୂହ ପାରସ୍ପରିକ ଦ୍ୱନ୍ଦ୍ୱଭାବଜନିତ ବୈପରୀତ୍ୟ ବା କଣ୍ଟ୍ରାଡିକ୍ସନ୍ ଦ୍ୱାରା ଧ୍ୱଂସପ୍ରାପ୍ତହୋଇ ସମ୍ମିଳନ ବା ସିନ୍ଥେସିସ୍ ସୃଷ୍ଟିକରେ । ସେହି ସମ୍ମିଳନ, ଥିସିସ୍ ରୂପରେ ପୁନଃପ୍ରକଟହୋଇ ପ୍ରତିବାଦ ସମ୍ମିଳନଚକ୍ର ସୃଷ୍ଟିକରେ । ଚିନ୍ତାକ୍ଷେତ୍ରରେ, ଏଇ ଭାବରେ, ନିଗେସନ୍ ବା ନେତି ନେତି ରୁ ଦ୍ୱନ୍ଦ୍ୱଦ୍ୱାରା ଉଦ୍‌ଭୂତହୁଏ ନିଗେସନ୍ ଅବ୍ ନିଗେସନ୍ ବା 'ଅସ୍ତି' 'ଅସ୍ତି' । ସେତେବେଳେ ସମ୍ପୂର୍ଣ୍ଣ ହୁଏ ସମ୍ୟକ୍ ଜ୍ଞାନ ବା ଆଇଡିଆ । ଏତଦ୍ୱାରା ପରିଦୃଷ୍ଟ ହୁଏ ଯେ, କାଣ୍ଟ୍-କଥିତ ଆ୍ୟାଣ୍ଟାଗନିସ୍ମ ଓ ହେଗ୍ଲ-କଥିତ ଡାୟଲେକ୍‌ଟିକ୍ସ ମୂଳତଃ ଅଭିନ୍ନ ତତ୍ତ୍ୱ ।

କ୍ରାନ୍ତିକାରୀ ଏଇ ମତବାଦ ଇଉରୋପର ଚିନ୍ତାକ୍ଷେତ୍ରରେ ହେଗ୍ଲଙ୍କ ପ୍ରଭାବକୁ କରିଚି ବିସ୍ତାରିତ, ଏବଂ ସେଇ ବିଶେଷତ୍ୱ, ଅର୍ଥାତ୍ ମନୁଷ୍ୟର ଚିନ୍ତାଜଗତରେ ଦ୍ୱନ୍ଦ୍ୱମୂଳକ ଭାବପ୍ରବାହକୁ ପ୍ରକୃତିବିଜ୍ଞାନର ରହସ୍ୟ ଉଦ୍‌ଘାଟନ ସକାଶେ ଜୀବତାତ୍ତ୍ୱିକ ମଧ୍ୟ ପ୍ରୟୋଗକରିଚନ୍ତି, ଯା ଫଳରେ ସର୍‌ଭାଇଭାଲ୍ ଅବ୍ ଦ ଫିଟେଷ୍ଟ୍ ବା ଯୋଗ୍ୟତମର ଉଦ୍‌ବର୍ତ୍ତନ ଦ୍ୱାରା ଦେଖିବାକୁ ପାଇଚନ୍ତି କ୍ରମବିକାଶର ପ୍ରମାଣ ।

ହେଗ୍ଲଙ୍କ ଫରାସୀ ଶିଷ୍ୟ ମିଶେଲଙ୍କ ଏଇ ଯୁକ୍ତିକୁ ପ୍ରୟୋଗକରି ଉଦ୍‌ଘାଟନ କରନ୍ତି ଫରାସୀ ବିପ୍ଳବର ରହସ୍ୟ ଏବଂ ଏଇ ପ୍ରକାରେ, ଇତିହାସରେ ମଧ୍ୟ ଏ ତତ୍ତ୍ୱର ପ୍ରୟୋଗ ଘଟିଯାଏ । ପଛକୁ କାର୍ଲ ମାର୍କ୍ସ ସାମାଜିକ ଜଗତର ରହସ୍ୟ ଅଭିଜ୍ଞାତହେବା ଅଭିପ୍ରାୟରେ ଏ ତତ୍ତ୍ୱକୁ ପ୍ରୟୋଗ କରିଚନ୍ତି ସମାଜ ଉପରେ; ଏବଂ ମାନବସମାଜର ଗତି ନିରୂପଣ ସକାଶେ ନିଜ ସମାଜବିଜ୍ଞାନରେ ଅନ୍ତର୍ଭୁକ୍ତ କରନ୍ତି ହେଗ୍ଲଙ୍କ ତର୍କସୂତ୍ରର

ଏଇ ବିଶେଷ ଫର୍ମୁଲାଟିକୁ । ପରିଣାମରେ ଦେଖାଯାଏ, ଡାୟଲେକ୍‌ଟିକ୍ସର ଗତି ସରଳରୈଖିକ ନୁହେଁ, ତୀର୍ଯ୍ୟକ୍ । ଅର୍ଥାତ୍ ମାନବସଭ୍ୟତା ଗତିକରେ ଅଙ୍କାବଙ୍କା ବାଟଦେଇ, ଏବଂ ସେଥିପାଇଁ, ସଭ୍ୟତା କେତେବେଳେ ଏକାଜାଗାରେ କି ଏକାସ୍ତରରେ ସ୍ଥିତହୋଇ ରହେନା । ଉତ୍‌ଥାନ ଓ ଅଧୋଗମନ ଲାଗିଥାଏ । ବର୍ତ୍ତମାନର ସମାଜତାନ୍ତିକଙ୍କ ମତରେ, ସମାଜର ଗତି kineto-dynamic, ଅର୍ଥାତ୍ ଗତି ତଦ୍‌କାରଣ ବିଜ୍ଞାନପ୍ରସୂତ ହୋଇ ଅଗ୍ରସର ହୁଏ ।

ମହାମତି କାଣ୍ଟ୍ କହିଥିଲେ, ମଣିଷକୁ ଯଦି ବୁଝିବାକୁ ଚାହଁ, ଆଗେ ତା ସାମାଜିକ ବାତାବରଣକୁ ବୁଝିବାକୁ ଚେଷ୍ଟାକର ଓ ସେଇ ଇଙ୍ଗିତ ହେଗ୍‌ଲ୍‌ଙ୍କ ତର୍କପଦ୍ଧତି ଗ୍ରହଣକରି, ସମାଜତାତ୍ତ୍ୱିକ ଅନୁସନ୍ଧାନରୁ ମାର୍କ୍ସ ଦେଖିବାକୁ ପାଇଚନ୍ତି; ଅର୍ଥନୀତିକ ପରିବର୍ତ୍ତନ ସହିତ ସମତାଳରେ ସମାଜର ରୂପଭେଦ ଘଟିଥାଏ, ଏବଂ ତା ଫଳରେ, ସମାଜସ୍ଥିତ ମଣିଷର ମଧ୍ୟ ଚିନ୍ତାଧାରାରେ ସଂସାଧିତ ହୁଏ ପରିବର୍ତ୍ତନ । ଅର୍ଥନୀତିକ ପରିବର୍ତ୍ତନ କାରଣରୁ ନାଗରିକସମାଜର ଯୋଉ ପରିବର୍ତ୍ତନ ଏବଂ ତଦ୍ୱାରା ରାଷ୍ଟ୍ରର ଯୋଉ ପରିବର୍ତ୍ତନ ବା ନିୟନ୍ତ୍ରଣ, ତାକୁ ହିଁ ଅଭିହିତ କରାଯାଏ ଐତିହାସିକ ବସ୍ତୁବାଦ ବା ଇତିହାସର ଅର୍ଥନୀତିକ ବ୍ୟାଖ୍ୟା ।

ଏଇ ତଥ୍ୟ ତେଣୁ ପ୍ରାପ୍ତହୋଇଚୁଁ ଯେ ମାନବସମାଜର ଇତିହାସ, ସେଇ ସମାଜର ବସ୍ତୁତାନ୍ତିକ ଭିତ୍ତିଉପରେ ହିଁ ସ୍ଥାପିତ, ଏବଂ ସେଥିପାଇଁ, ସନାତନ ଧାରା କିମ୍ବା 'ନିତ୍ୟ' ବୋଲି କୌଣସି ବସ୍ତୁ ମାନବସମାଜରେ ଥାଇପାରେନା । ଅବଶେଷେ ଏଇ ତଥ୍ୟ ମଧ୍ୟ ଜ୍ଞାତହୋଇଯାଏ ଯେ, ମାନବସମାଜ ଯେହେତୁ ପ୍ରବହମାନ ଶକ୍ତିଦ୍ୱାରା ହେଉଚି ଗତିଶୀଳ, ରୂପ କେବଳ କ୍ଷଣିକ; ଯା ଦ୍ୱନ୍ଦ୍ୱଭାବ ମାଧ୍ୟମରେ ହିଁ ଅଗ୍ରସର ହୁଏ । ଏବଂ ସେଥିପାଇଁ, ବସ୍ତୁତାନ୍ତିକ ବାତାବରଣ ନାଗରିକ ସମାଜ ଓ ରାଷ୍ଟ୍ରର ରୂପକୁ କ୍ରମାଗତ ଗଠିତକରେ । ଏ ବିବର୍ତ୍ତନ ଭିତରଦେଇ ମନୋବିଜ୍ଞାନ (ଅର୍ଥାତ୍, କଗ୍ନିସନ୍ ବା ଆତ୍ମଜ୍ଞାନ) ମଧ୍ୟ ନିଜ ପ୍ରଭାବ ବିସ୍ତାରକରେ, କାହିଁକିନା, ଜଡ଼ରୂପ ବସ୍ତୁ ଖାଲି ଆପଣା ଶକ୍ତିରେ ସମାଜକୁ ବଦଳାଇଦେଇପାରେନା । ଦରକାର ହୁଏ ଆତ୍ମଜ୍ଞାନ, ଅର୍ଥାତ୍ ବ୍ୟକ୍ତିର ବ୍ୟକ୍ତିତ୍ୱ ପ୍ରଭାବରେ ସମାଜ ହୁଏ ପ୍ରଭାବାନ୍ୱିତ । ବସ୍ତୁତାନ୍ତିକ ବାତାବରଣ ସମାଜ ଶରୀରରେ ଯେଭାବରେ ସକ୍ରିୟ ହୁଏ, ତା ମୂଳରେ କାମକରେ ଆତ୍ମଜ୍ଞାନସମ୍ପନ୍ନ ବ୍ୟକ୍ତିତ୍ୱର ସକ୍ରିୟ ପ୍ରଭାବ । ଦ୍ୱନ୍ଦ୍ୱଭାବଜନିତ ବସ୍ତୁତନ୍ତ୍ର (ଡାୟଲେକ୍ଟିକ୍ୟାଲ୍ ମେଟିରିଆଲିସ୍ମ, ଯା ଐତିହାସିକ ବସ୍ତୁତନ୍ତ୍ରବାଦର ନୂତନ ପରିଚୟ) ସମାଜ ଉପରେ ବ୍ୟକ୍ତିର ବ୍ୟକ୍ତିତ୍ୱ ପ୍ରଭାବକୁ, ସେଥିପାଇଁ, ଅସ୍ୱୀକାର କରେନା । କାରଣ, ଜଡ଼ର ଚେତନାନାହିଁ, ଆତ୍ମଜ୍ଞାନସମ୍ପନ୍ନ ବ୍ୟକ୍ତିର ଚେତନା ଅଛି; ଏବଂ

ସମାଜକୁ ନବନବ ରୂପ ଦେବାକୁ ଚେତନା ସମର୍ଥ । ଅନ୍ୟ ଶବ୍ଦରେ, କେବଳ ବୀର(ହିରୋ) ଦ୍ୱାରା ନୂତନ ସମାଜ କି ନୂତନ ରାଷ୍ଟ୍ର ତିଆରିହୁଏନା; ପ୍ରୟୋଜନ ହୁଏ ସର୍ବସାଧାରଣ ଆତ୍ମଜ୍ଞାନ ସହିତ ବୀରତ୍ୱର ସମବାୟ ।

ଆତ୍ମଜ୍ଞାନ ଅନୁପସ୍ଥିତିରେ ବ୍ୟକ୍ତିର ଯେମିତି ଉଦ୍ଦେଶ୍ୟ ସମ୍ବନ୍ଧରେ ଧାରଣା ଥାଏନା, ସାମାଜିକ ଶ୍ରେଣୀ ମଧ୍ୟ ଆତ୍ମଜ୍ଞାନ ଅଭାବରେ ଉଦ୍ଦେଶ୍ୟ ବିଷୟରେ ସଚେତନ ହୋଇପାରେନା । ହୋଇପାରେନା ବୋଲି, ଆତ୍ମଜ୍ଞାନ ଅଭାବରେ ନିପୀଡ଼ିତ ଓ ଶୋଷିତ ଶ୍ରେଣୀ ଓ ଗଣସମୂହ ଅନ୍ଧକାରାଚ୍ଛନ୍ନ ହୋଇ ନିଶ୍ଚେଷ୍ଟ ଥାଏ । ଏ ଦେଶର ପ୍ରାଚୀନ ଭାବୁକ ପୁନଃ ପୁନଃ ଉପଦେଶ ଦେଇଯାଇଚନ୍ତି, 'ଆତ୍ମାନାଂ ବିଦ୍ଧି'; ମାତ୍ର ସେ ଉପଦେଶକୁ ପ୍ରୟୋଗକରାଯାଇଚି କେବଳ ଧର୍ମଚିନ୍ତାରେ, ପାଳନୀୟ ହୋଇଚି କେବଳ ସାଧକ ପାଇଁ । ଦେଶ ଓ ସମାଜ ବିଷୟରେ ଏ ଦର୍ଶନ ମୂକ; ଆତ୍ମଜ୍ଞାନର ଦର୍ଶନ ସେଠି ଅଭାବ ସେଥିପାଇଁ।

ଏଇ ବାସ୍ତବ-ବିଜ୍ଞାନ ଦ୍ୱାରା ଅନୁପ୍ରାଣିତ ହୋଇ ପାଶ୍ଚାତ୍ୟ ଦେଶମାନଙ୍କରେ ଇତିହାସ ଲେଖାଯାଇଚି, କାହିଁକିନା, ଇତିହାସ ଏକ ବିଜ୍ଞାନ । ଅନ୍ୟଥା, ଇତିହାସ ହୁଏ ଉପକଥା ଅତିକଥାରେ ପର୍ଯ୍ୟବସିତ । ପୌରାଣିକ ସୃଷ୍ଟି-ସ୍ଥିତି-ପ୍ରଳୟ ତତ୍ତ୍ୱଦ୍ୱାରା ଭାରତୀୟ ସଭ୍ୟତାର ଦ୍ୱାର ଉଦ୍‌ଘାଟିତ ହେବନାହିଁ । ସେ ଆଖ୍ୟାନ ସ୍ୱୟଂକ୍ରିୟ ଏବଂ ସେଥିପାଇଁ, ମାନବଚେତନାର ବିବର୍ତ୍ତନ ଦେଖାଏନା, ଦେଖାଇପାରେନା ଦ୍ୱନ୍ଦ୍ୱଭାବଜନିତ ଅଗ୍ରଗତି । ଭାରତୀୟ ସଭ୍ୟତାର ଗତି କେବେ ଏତେ ନିମ୍ନଗାମୀ ହୋଇନାହିଁ ଯେ ଶୂନ୍ୟସ୍ଥାନକୁ (zero point in a graph) ଅବନମିତ ହେବ । ଏ ସଭ୍ୟତା ଏକେବାରେ ଧ୍ୱଂସପ୍ରାପ୍ତ ହୋଇ ପୁନଃ ପୁନଃ ଚକ୍ରବତ୍ ପରିଭ୍ରମଣ କରିନାହିଁ । ଅଥଚ ଅତୀତ ଓ ବର୍ତ୍ତମାନର ଐତିହାସିକ ଅସ୍ୱୀକାର କରିଯାଉଚନ୍ତି ଯେ ବିଭିନ୍ନ ଯୁଗପର୍ଯ୍ୟାୟରେ ଅର୍ଥନୀତିକ-ରାଷ୍ଟ୍ରୀକ ବାତାବରଣ ସୃଷ୍ଟିକରିଥିଲା ଭିନ୍ନ ଭିନ୍ନ ଦାର୍ଶନିକ ମତବାଦ, ଯା ଶାସକଶ୍ରେଣୀର ସ୍ୱାର୍ଥାନୁକୂଳ । କୋଉ ମତଟା ସମାଜର ବିକାଶ ପକ୍ଷରେ ସହାୟକ, ଆଉ କୋଉ ମତଟା ସହାୟକ ନୁହେଁ, ଜଣାପଡ଼ିବ ତାହେଲେ କେମିତି ? ସେଥିପାଇଁ ତ ଡାୟଲେକ୍‌ଟିକ୍ସର ପ୍ରାସଙ୍ଗିକତା ! ପ୍ରାଚୀନ କୌମ(କ୍ଲ୍ୟାନ୍)ଗତ ଅବସ୍ଥା ପାଖରୁ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଭାରତୀୟ ସମାଜ ଏକାଜାଗାରେ ସ୍ଥାଣୁବତ୍ ବସିରହିନାହିଁ; ଅଥଚ ସେଇ ଆଦ୍ୟାବସ୍ଥାର ଦର୍ଶନକୁ ସନାତନ ସତ୍ୟ ବୋଲି ଶିକ୍ଷା ଦିଆଯାଉଚି । ବର୍ତ୍ତମାନ ପରିସ୍ଥିତିରୁ କି ପ୍ରକାର ଦର୍ଶନର ଉଦ୍‌ଗମ ହୋଇପାରେ, ଉପସ୍ଥିତ ବସ୍ତୁତାନ୍ତ୍ରିକ ପାରିପାର୍ଶ୍ୱିକତାରେ କୋଉ କୋଉ ସାମାଜିକଶ୍ରେଣୀ ଭିତରେ ତାର ଧ୍ୱନି-ପ୍ରତିଧ୍ୱନି ଶୁଣାଯାଉଚି, ସେ ବିଷୟରେ କୋଉହେଲେ ଭାରତୀୟ ଦାର୍ଶନିକ

ଅବହିତ ନୁହେଁ । ବିଂଶ ଶତାବ୍ଦୀର ମଧ୍ୟଭାଗରେ ପହଞ୍ଚିସାରିଚି ଯୋଉ ସମାଜ, ତାର ବିସ୍ମୃତ ଅତୀତର ଶ୍ରେଣୀଗତ ଦର୍ଶନକୁ ରୋମନ୍ଥନକରି ଯଶପାଇବାକୁ ଚେଷ୍ଟାକରୁଚନ୍ତି । ନିପୀଡ଼ିତ ଜନସାଧାରଣଙ୍କୁ ଉପସ୍ଥିତ ଦୁଃଖକଷ୍ଟ ବିଷୟରେ ନିଶ୍ଚେଷ୍ଟ ନିର୍ବାକ୍ ରହି ପରକାଳ ଅପେକ୍ଷାରେ ବସିରହିବାକୁ ଏମାନଙ୍କ ଉପଦେଶ । ଭାରତୀୟ ଦର୍ଶନ ଏକ୍ଷଣି ଦୁର୍ଦ୍ଦଶାର ଦର୍ଶନ ।

ସଂସ୍କୃତ ଭାଷାରେ ହିଷ୍ଟ୍ରିକୁ କହୁଥିଲେ, ପୁରାଣ, ଇତିହାସକୁ ଜନଶ୍ରୁତି ବା ଐତିହ୍ୟ । ସେଥିରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନାହିଁ, ଅଛି କେବଳ ସମ୍ବାଦ । ସେ ସମ୍ବାଦ ପୁଣି ରଜା ଓ ଋଷିଙ୍କ ବଂଶଲତିକା । *ମତ୍ସ୍ୟପୁରାଣ* କିନ୍ତୁ କହୁଚି, ଢ଼େର୍ ରଜାଙ୍କ ନାମରୁ ବାହାରିଚି ତାଙ୍କ ଜନପଦର ନାମକରଣ; ରାଷ୍ଟ୍ରର ନାମ ବାହାରିଚି ତତ୍ରସ୍ଥ କୌମର ଅଧିପତିଙ୍କ ନାମରୁ । ଏ ତଥ୍ୟ ଜାତିତତ୍ତ୍ୱସମ୍ମତ ସମ୍ବାଦ । ଅନ୍ୟ ଦିଗରେ, ଋକ୍‌ବେଦ ପାଖରୁ ସଂସ୍କୃତସାହିତ୍ୟର ଶେଷାବଧି, ନାନାବିଧ ସମ୍ବାଦ ରହିଚି; ବୈଜ୍ଞାନିକ ବିଶ୍ଳେଷଣ ସେଥିରୁ ଉଦ୍ଧାରକରିପାରେ ଦେଶର ପ୍ରାଚୀନ ଜାତିତତ୍ତ୍ୱ, ସମାଜତତ୍ତ୍ୱ, ଅର୍ଥନୀତି, ଇତିହାସ, ବ୍ୟବହାର, ଧର୍ମ, କୃଷ୍ଟି ଇତ୍ୟାଦି ବିଷୟରେ ନିର୍ଭରଯୋଗ୍ୟ ତଥ୍ୟ । ତେବେଯାଇ ପ୍ରତିଭାତହେବ ଭାରତୀୟ କୃଷ୍ଟିର ସ୍ତରସମୂହ ଓ ବିବର୍ତ୍ତନର ମୂଳସୂତ୍ର । ବ୍ରାହ୍ମଣ୍ୟ ପରମ୍ପରାର ବହିପତ୍ର ତେଣୁ ଯଥେଷ୍ଟ ନୁହେଁ; ବୌଦ୍ଧ ଜୈନ ଓ ଅନ୍ୟାନ୍ୟ ଲୌକିକ ସମ୍ପ୍ରଦାୟର ସାହିତ୍ୟ ସହିତ ତୁଳନା ଦରକାର ।

ପାଶ୍ଚାତ୍ୟ ପଣ୍ଡିତ ଏଗୁଡ଼ିକ ପଢ଼ି ଅନୁବାଦ କରିଚନ୍ତି, ମାତ୍ର ଭାରତର ବୈଦିକ ଯୁଗରୁ ଶୁଣିଚନ୍ତି ସ୍ୱୀୟ ଜାତିର ବିବର୍ତନର ପ୍ରତିଧ୍ୱନି । ଆଉକେହି ସାମ୍ରାଜ୍ୟବାଦୀ ରେସ୍‌ଥିୟରି ଦ୍ୱାରା ଭାରତୀୟ କୃଷ୍ଟିର ବ୍ୟାଖ୍ୟାକରିବାକୁ ତତ୍ପର ହୋଇଚନ୍ତି । ବସ୍ତୁତାନ୍ତିକ ଦ୍ୱାନ୍ଦ୍ୱିକତାର ଋବିକାଠି ଦ୍ୱାରା ଭାରତୀୟ ସମାଜ ଓ ରାଷ୍ଟ୍ରର କବାଟ କିନ୍ତୁ କେହିହେଲେ ଖୋଲିନାହିଁ । ଅଦୃଷ୍ଟର କ୍ରୂର ପରିହାସ ଏଇ ଯେ, ସ୍ୱଦେଶପ୍ରେମିକ ଅନେକ ଭାରତୀୟ ମନେକରୁଚନ୍ତି ରାଜନୀତିକ ପରାଧୀନତାଜନିତ ଅନୁନ୍ନତ ଅବସ୍ଥାକୁ ଭାରତର ବୈଶିଷ୍ଟ୍ୟ ।

'ପୁରାତନ' ଓ 'ନୂତନ' ଆପେକ୍ଷିକ ବସ୍ତୁ । ଏ ଦେଶରେ 'ନୂତନ' କହିଲେ ବୁଝାଏ ଶାସକଶ୍ରେଣୀ ଦ୍ୱାରା ପ୍ରବର୍ତ୍ତିତ ପାଠ୍ୟପୁସ୍ତକ ବାହାରେ ଅନ୍ୟ କୋଉ ସମ୍ବାଦ । କପିଳ କଣାଦ ବୃହସ୍ପତି ଋର୍ବାକ୍ ଧର୍ମକୀର୍ତ୍ତି ଦିଙ୍‌ନାଗ ଆର୍ଯ୍ୟଭଟ୍ଟ ଏବଂ ସେମାନଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କ ପାଖରୁ ପ୍ରଖର ଯୋଉ ଚିନ୍ତାଧାରା ଉଦ୍‌ଗତ ହୋଇଥିଲା, ଭାରତୀୟ ମାନବମସ୍ତିଷ୍କରୁ ତା ଅନ୍ତର୍ହିତହୋଇଚି ବହୁପୂର୍ବରୁ । ଆଜି ପୁଣି ସଜ୍ଞାନରେ ପ୍ରଋରକରାଯାଉଚି, ଇଂରେଜ୍ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟମାନଙ୍କରେ,

ବିଦ୍ୟମାନ ସାମାଜିକ ବ୍ୟବସ୍ଥାର ପରିପନ୍ଥୀ ଶ୍ଳୋକଗୁଡ଼ିକର ଭୁଲ୍ ବ୍ୟାଖ୍ୟା । ଚେଷ୍ଟାକରାଯାଉଚି, ସ୍ଥିତ ସମାଜର ସମରୂପ ଆବିଷ୍କାର କରିବାକୁ ଭୂତକାଳର ବୃତ୍ତାନ୍ତରୁ । ଯା'କୁ ହିଁ କୁହାଯାଏ ଶ୍ରେଣୀସ୍ୱାର୍ଥ ।

ମଣିଷର ଇତିହାସ ବସ୍ତୁତଃ ଶ୍ରେଣୀସ୍ୱାର୍ଥ (=ସଂଗ୍ରାମ)ର ଇତିହାସ । ପ୍ରାଚୀନ ଓ ମଧ୍ୟଯୁଗରେ ସେ ସଂଗ୍ରାମ ଧର୍ମସଂଘର୍ଷର ରୂପ ଧରିଚି । ଭାରତ ବ୍ୟତିକ୍ରମ ନୁହେଁ । ଏ ମହାଦେଶର ଅଧିବାସୀ ଭାତୃଭାବ ସମବାୟରେ କାଳ କଟାଇନାହାଁନ୍ତି । ଭାତୃଭାବ ସମବାୟ କାର୍ଯ୍ୟତଃ କ୍ଲାସ୍-କୋଲାବୋରେସନ୍ । ଭାରତର ଇତିହାସ ମଧ ଶ୍ରେଣୀସଂଘର୍ଷର ଇତିହାସ । ଶାସକ ଓ ଶାସିତ, ଶୋଷକ ଓ ଶୋଷିତ ମଧ୍ୟସ୍ଥ ଯୋଉ ସମ୍ପର୍କ, ତାକୁହିଁ ଅଭିହିତକରାଯାଏ 'ଶ୍ରେଣୀସଂଗ୍ରାମ', ସମାଜ ଶରୀରରେ ଯା ନାନା ବିଭଙ୍ଗରେ ପ୍ରକଟହୁଏ । ବସ୍ତୁତାନ୍ତ୍ରିକ ଓ ଅର୍ଥନୀତିକ ସଭ୍ୟତା ପାଶ୍ଚାତ୍ୟସମାଜରେ ଅଗ୍ରସର ବୋଲି, ରାଜନୀତିକ ସଚେତନତା ଲୋକ ସେଠି ପ୍ରାପ୍ତହୋଇଚନ୍ତି ବୋଲି, ଶ୍ରେଣୀସଂଘର୍ଷ ଋକ୍ଷୁଷ । ଭାରତର ସଭ୍ୟତା, ପକ୍ଷାନ୍ତରେ, ପାଶ୍ଚାତ୍ୟସଭ୍ୟତା ପାଖକୁ ଭିନ୍ନ ସ୍ତର (କଲ୍‌ଚରାଲ୍ ପ୍ଲେନ୍)ରେ ଅବସ୍ଥିତ; ସଂଘର୍ଷର ସ୍ୱରୂପ ତେଣୁ ଚାକ୍ଷୁଷ ହୋଇନାହିଁ । ଖାଲି ସେହି କାରଣରୁ କିନ୍ତୁ କହିହେବନାହିଁ ଯେ, ବର୍ଣ୍ଣାଶ୍ରମ ବ୍ୟବସ୍ଥା ହୋଇଚି ଶ୍ରେଣୀସଂଗ୍ରାମର ପ୍ରତିଷେଧକ । ବର୍ଣ୍ଣପ୍ରଥା ଅତୁଟ ରହିଥିବା ସତ୍ତ୍ୱେ ଅସଂଖ୍ୟ ବିଦ୍ରୋହ ଓ ଧର୍ମାନ୍ତର ବହନକରୁଚି ସଂଘର୍ଷର ସାକ୍ଷ୍ୟ ।

ପୁଣି, ଶ୍ରେଣୀସଂଗ୍ରାମ ମାନେ ଫରାସୀ ବିପ୍ଳବ କିମ୍ବା ବଲ୍‌ସେଭିକ୍ ଅଭ୍ୟୁତ୍ଥାନର ପୁନରାବୃତ୍ତି ନୁହେଁ; ସେଭଳି ଘଟଣାମାତ୍ର ଦୁଇଥର ଘଟିଚି ଇଉରୋପରେ । ସାମାଜିକ ସ୍ତରସମୂହ ଯେତେ ଅଧିକ ଶ୍ରେଣୀଗତ ଐକ୍ୟ ଓ ଶ୍ରେଣୀଗତ ଆଦର୍ଶର ଚେତନା ପ୍ରାପ୍ତହେବେ, ସୁବିଧା ଓ ଅଧିକାର ପାଇବାପାଇଁ ଶ୍ରେଣୀଜ୍ଞାନସମ୍ପନ୍ନ ସ୍ତରସମୂହ ଭିତରେ ପାରସ୍ପରିକ ସଂଘର୍ଷର ସମ୍ଭାବନା ବଢ଼ିବ ସେତେ ବେଶି । ଭାରତୀୟ ସଭ୍ୟତାରେ ସେ ସଂଘର୍ଷ ବ୍ୟାପକଭାବେ ଉପସ୍ଥିତ ହୋଇନାହିଁ ରାଜଶକ୍ତି ଓ ପୁରୋହିତ ଶକ୍ତି ଯେହେତୁ ଏକତ୍ର କରିଚନ୍ତି ଜନସମୂହଙ୍କୁ, ଦମନ ଓ ଦୋହନ ତେଣୁ ଅବିରାମ । ହିନ୍ଦୁଙ୍କ ଭିତରେ ସେଥିପାଇଁ ରାଜନୀତିକ ଚେତନାର ଘଟିନାହିଁ ଉନ୍ମୋଚନ । ଧର୍ମର ଆବରଣ ତଳେ ତେଣୁ ପ୍ରକାଶପାଇଚି ଶ୍ରେଣୀସଂଘର୍ଷ । ମାତ୍ର ସେ ଇତିହାସ କେହି ଲେଖିନାହିଁ ।

ସମାଜତାତ୍ତ୍ୱିକ ଅନୁସଂଧାନର ମୂଳସୂତ୍ର ହେଲା : କାହିଁକି ? କି ଭାବରେ ? ଏବଂ କି ସକାଶେ ? -କୋଉହେଲେ ପ୍ରପଞ୍ଚ(ଫିନମେନନ୍)ର ଆବିର୍ଭାବ ଘଟେ । ଇତିହାସର ଗୋଟାଏ କାର୍ଯ୍ୟକାରଣ ଧାରା ରହିଚି । ... ଅତୀତକୁ ନ ଜାଣିଲେ

ବର୍ତ୍ତମାନର ସମସ୍ୟାଗୁଡ଼ାକୁ ବୁଝିହେବନାହିଁ; ଅର୍ଥାତ୍ ବର୍ତ୍ତମାନର ତ୍ରୁଟି ନିବାରଣପୂର୍ବକ ଭବିଷ୍ୟତ୍ ଆଦର୍ଶର ଗଠନମୂଳକ ନକ୍ସା ବନାଇହେବନାହିଁ ।”

କଥାଗୁଡ଼ାକ ଲେଖିଚନ୍ତି ୧୯୪୬ ସାଲରେ; ଲେଖିଚନ୍ତି, ପରିବର୍ତ୍ତନକାମୀ ପରାର୍ଥବାଦୀ ତରୁଣସମାଜ ଉଦ୍ଦେଶ୍ୟରେ, ଦେଶ ସ୍ୱାଧୀନହେବା ମାତ୍ର ବର୍ଷକ ଆଗରୁ । କାହିଁକିନା, ଉଭୟ ଫରାସୀ ଓ ବଲ୍‌ସେଭିକ୍ ବିପ୍ଳବ କୋଉହେଲେ ସାଧାରଣ ସତ୍ୟରେ ତାଙ୍କୁ ପହଞ୍ଚାଇପାରିନାହିଁ । ବରଂ କହିଚନ୍ତି, ଶିକ୍ଷୋନ୍ନତ ଇଉରୋପରେ କେବଳ ଏ ପ୍ରପଞ୍ଚ ଦେଖାଯାଇଚି ଦୁଇଶବର୍ଷ ଭିତରେ ମାତ୍ର ଦୁଇଥର; ଏବଂ ପ୍ରଲେତାରିଆତ୍‌ର ଆକାଙ୍‌କ୍ଷା ପୂରଣକରିବାକୁ ବ୍ୟର୍ଥହୋଇଚି ଫରାସୀ ବିପ୍ଳବ । ବଲ୍‌ସେଭିକ୍ ବିପ୍ଳବର ଅନ୍ତିମ ପରିଣାମ ଅବଶ୍ୟ ଆମ ନିଜ ଜୀବଦ୍ଦଶାର ଘଟଣା । ଶ୍ରେଣୀସଂଗ୍ରାମର ଅନିବାର୍ଯ୍ୟତାକୁ ସ୍ୱୀକାରକରି ମଧ୍ୟ ଭାବିଚନ୍ତି, ଅନ୍ୟ ରକମ ସମ୍ଭାବ୍ୟ ଓଲଟପାଲଟ କଥା, ଯା ଫ୍ରାନ୍ସ କି ରସିଆରେ ଘଟିନାହିଁ । *ତା ନାଗରିକସମାଜର ରୂପାନ୍ତର ।* ଆନ୍ତର୍ଜାତିକତାକୁ ଜାତୀୟତା ଉପରେ ତେଣୁ ଅଗ୍ରାଧିକାର ଦେଇନାହାନ୍ତି; ‘ଏଇ ଆନ୍ତର୍ଜାତିକ ଦଳ ପାଖରେ ଦେଶ, ଜାତି, ଐତିହ୍ୟ, ଇତିହାସ କିଛିହେଲେ ନାହିଁ । ମାନବସମାଜ ଏକାକାର, ଜାତି ଏକ ।’ ତ୍ରତ୍‌ସ୍କୀଙ୍କ ‘ଚିରସ୍ଥାୟୀ ବିପ୍ଳବ’ ଅପେକ୍ଷା ଷ୍ଟାଲିନ୍‌ଙ୍କ ‘ଏକମାତ୍ର ଦେଶରେ ସମାଜବାଦ’ ତେଣୁ ଅଧିକ ଗ୍ରାହ୍ୟ; ‘ଷ୍ଟାଲିନ୍ କ୍ରମଶଃ ଜଗତ୍-ବିପ୍ଳବର ବୁଦ୍‌ବୁଦଗୁଡ଼ାକୁ ଗୋଟିଗୋଟିକରି ଭାଙ୍ଗିବାକୁ ଲାଗିଲେ । ଚନ୍ଦ୍ରଲୋକରେ କିମ୍ବା ସାହାରା ମରୁଭୂମିରେ କମ୍ୟୁନିଷ୍ଟ୍-ବିପ୍ଳବ କରିବା ଲାଗି ଅର୍ଥପ୍ରେରଣ ବନ୍ଦ ହେବାକୁ ଲାଗିଲା । ... କିନ୍ତୁ ଦୁଃଖର କଥା ଏଇ ଯେ, ଭାରତୀୟ ବିପ୍ଳବୀ ଅସଲ ଆଦର୍ଶବାଦୀ ଋଷୀୟଙ୍କୁ ଭେଟିବାକୁ ସୁଯୋଗ ପାଇନାହାଁନ୍ତି । ଯେତେ ଭଡ଼ାଟିଆ ବିଦେଶୀ, ତାଙ୍କରି ସାଙ୍ଗରେ ହୋଇଚି ସାକ୍ଷାତ-ପରିଚୟ ।’ ନିଜେ କିନ୍ତୁ ସାକ୍ଷାତ୍‌କରିଚନ୍ତି ସ୍ୱୟଂ ଲେନିନ୍‌ଙ୍କୁ ୧୯୨୧ରେ, ସ୍ୱଦେଶକୁ ଫେରିଆସିଚନ୍ତି ଚାରିବର୍ଷ ଉତାରୁ ୧୯୨୫ରେ; କି ପ୍ରକାର ପରିବର୍ତ୍ତନ ଥିଲା ଅଭିପ୍ରେତ, ଏକ ଥିସିସ୍ ଉପସ୍ଥାପନକରି ସେକଥା ଲେଖିଚନ୍ତି ।

କମ୍‌ରେଡ୍ ଲେନିନ୍,

ପ୍ରିୟ କମ୍‌ରେଡ୍, ପଶ୍ଚିମ ଇଉରୋପରୁ ଯେତେ ଭାରତୀୟ ବିପ୍ଳବୀ ଆସିଚନ୍ତି, ତାଙ୍କ ସହିତ ଆଗତ ମୁଁ ଜଣେ ଭାରତୀୟ । ଭାରତର ପରିସ୍ଥିତି ଓ ତତ୍ରସ୍ଥ ବିପ୍ଳବୀ ଶକ୍ତିଗୁଡ଼ିକର ଚରିତ୍ର ସମ୍ବନ୍ଧରେ ମୋ ପ୍ରବନ୍ଧର ସଂଶୋଧିତ ପାଠ ଆପଣଙ୍କ ଗୋଚରାର୍ଥେ ପଠାଇଲି । ଭାରତର ବିପ୍ଳବୀ ଆନ୍ଦୋଳନର ସାରକଥା ଓ ଲକ୍ଷ୍ୟ ବିଷୟରେ ବିଭିନ୍ନ ମତାମତ ଉପସ୍ଥିତ ହୋଇଚି । ମୁଁ ମଧ୍ୟ ପଠାଉଚି ନିଜ ଅଭିମତ । ଅନୁଗ୍ରହପୂର୍ବକ

ପାଠକରି ଆପଣଙ୍କ ମତାମତ ଜଣାଇଲେ ବିଶେଷ ବାଧିତ ହେବି ।

ଆନ୍ତରିକ ଭାବେ ଆପଣଙ୍କର

ଭୂପେନ୍ଦ୍ରନାଥ ଦତ୍ତ

ସେ ଅଭିମତ ମସ୍କୋ ଅଭିଲେଖାଗାରରୁ ସଂପ୍ରତି ଅଣାଯାଇଚି କଲିକତା ଏସିଆଟିକ୍ ସୋସାଇଟିକୁ । ବାକି ଦୁଇଟି ଥିସିସ୍ ପେଶ୍‌କରିଥିଲେ ମାନବେନ୍ଦ୍ରନାଥ ରାୟ ଏବଂ ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ । ଉତ୍ତରରେ ଲେନିନ୍ ଲେଖିଚନ୍ତି ଇଂରେଜୀରେ

Dear Comrade Datta,

I have read your thesis. We would not discuss about the social classes. I think we should abide by my thesis on colonial question. Gather statistical facts about peasant leagues if they exist in India.

Yours...

V. Ulianov (Lenine)

ଅର୍ଥାତ୍, ଦେଶକୁ ଫେରିଯାଇ, କୃଷକ ସଂଗଠନ ଥିଲେ, ସେଥିରେ କାମ କର, ସଂଗଠନ ନଥିଲେ ନିଜେ ତିଆରି କର । ଦେଶଛାଡ଼ି ଆମେରିକା ଯାଇଥିଲେ ୧୯୦୮ ରେ, ଏବଂ ଆମେରିକାରୁ ଜର୍ମାନୀ; ସତରବର୍ଷ ପରେ କଲିକତାକୁ ଫେରିଆସି ଦେଖିଲେ ସ୍ୱୟଂ ରବୀନ୍ଦ୍ରନାଥ ଶାନ୍ତିନିକେତନରେ ଆୟୋଜନକରୁଚନ୍ତି କୃଷି ଓ ଗ୍ରାମୀଣ ଅର୍ଥନୀତି ବିଷୟରେ ପଠନପାଠନ; ଅଧ୍ୟାପକ ପଦ ପାଇଁ ଆବେଦନ ପଠାଇଦେଲେ; ଗୃହୀତ ହୋଇନାହିଁ । କଲିକତା ବିଶ୍ୱବିଦ୍ୟାଳୟରେ ମଧ୍ୟ ଠାଇଁ ମିଳିନାହିଁ । କିସାନ୍‌ସଭା ସଂଗଠିତ ହୋଇନାହିଁ କୋଉଠିହେଲେ । କୃଷକସମସ୍ୟା ବିଷୟରେ ପରିସଂଖ୍ୟାନ ମିଳିବ ତେବେ କୋଉଠୁ? ଶ୍ରମିକ ଇଉନିୟନ୍ ଗଢ଼ିବା ସାଙ୍ଗକୁ କିସାନ୍‌ସଭା ମଧ୍ୟ ଗଠନକଲେ; ପ୍ରଥମେ ପ୍ରତ୍ୟେକ ଜିଲ୍ଲାରେ, ତହିଁଉତାରୁ ଦେଶସାରା । ସେଇ ସଂଗଠନଗୁଡ଼ିକ ଜରିଆରେ ସଂଗ୍ରହ କରାଯାଇଚି ଆବଶ୍ୟକ ପରିସଂଖ୍ୟାନ । ପ୍ରାଦେଶିକ କିସାନ୍‌ସଭା ମାଧ୍ୟମରେ ଜିଲ୍ଲାସ୍ତରର କର୍ମୀଙ୍କ ପାଖକୁ ଆଗେ ପଠାଇଚନ୍ତି ଗୋଟାଏ ପ୍ରଶ୍ନମାଳା । କିନ୍ତୁ ଯେଝା କାମରେ ଯିଏ ବ୍ୟସ୍ତ, କିଏ କାହିଁକି ପଶିବ ଅକାମ ଭିତରକୁ? ଚଷୀ ବି ନିଜ ଘରକଥା ବାହାର ଲୋକଙ୍କ ଆଗରେ ଫିଟାଇବାକୁ ଅମଙ୍ଗ; ଶେଷକୁ ନିଜେ ବୁଲିଲେ ଗାଁକୁ ଗାଁ । ପ୍ରଶ୍ନମାଳାଟା ବି ବିଚିତ୍ର: ଡାଲି କି ତରକାରିରେ ତେଲ-ମସଲା ପଡ଼େ କି ନାହିଁ? ଲୁଗାଗାମୁଛା ଅଛି

କେତେଖଣ୍ଡ ? ଛତା ଅଛି ନା ପଖିଆ ? ଘରେ ଯୋଉ ଆଲୁଅ ଜଳେ, ସେଟା କୁମ୍ପା, ଡିବିରି, ଦୀପ ନା ଲଣ୍ଠନ୍ ? ଶ୍ରାଦ୍ଧ କି ବାହାଘରରେ ଖର୍ଚ୍ଚହୁଏ କେତେ ? ତାଟକାହେବା କଥା । ଏବେକା ଗବେଷକ ଭାବିବେ କୃଷକର ଦୋହନ-ଶୋଷଣ ସାଙ୍ଗରେ ଛତା କି ତେଲମସଲାର ଫେର୍ କି ସମ୍ପର୍କ ! ସଂଗୃହୀତ ସେଇ ପରିସଂଖ୍ୟାନ ବିଶ୍ଳେଷିତହୋଇ ପ୍ରସ୍ତୁତ କରାହୁଏ *Dialectics of Land Economics of India* । ପ୍ରଥମ ୧୧୯ ପୃଷ୍ଠା ଭାରତର ଭୂମିବିଧିର ଇତିହାସ, ବୈଦିକ କାଳରୁ ମୁଗଲ ଅମଳ ପର୍ଯ୍ୟନ୍ତ । ତହିଁଉତାରୁ ଅବଶ୍ୟ ବ୍ରିଟିଶ୍ ବନ୍ଦୋବସ୍ତ । ଲେନିନ୍ ସମ୍ଭବତଃ ପ୍ରତ୍ୟାଶାକରିନାହାଁନ୍ତି ଏତେକଥା; ଅଥଚ ଏ ପାଠ ସ୍ଥାନପାଇଚି ତାଙ୍କ ରଚନାବଳୀରେ । ଅଖଣ୍ଡ ଇତିହାସବୋଧ ମାନେ ପୁରା ବ୍ୟାପାରଟାକୁ ଧରିବାକୁ ଋହାଁନ୍ତି ଅନନ୍ୟ ଫ୍ରେମ୍ ଭିତରେ । କୃଷି-ଅର୍ଥନୀତିରେ ଯେମିତି, ସମାଜ ଓ ରାଷ୍ଟ୍ର ସଂଗଠନରେ ତତୋଧିକ । ଅଥଚ ଇତିହାସ ପଢ଼ିନାହାଁନ୍ତି କଲେଜ୍‌ରେ; ନିଉୟୋର୍କ ବିଶ୍ୱବିଦ୍ୟାଳୟର ରାଷ୍ଟ୍ରବିଜ୍ଞାନ ଶାଖାରୁ ସ୍ନାତକହୋଇଚନ୍ତି ୧୯୧୨ରେ । ତହିଁଉତାରୁ ଲାଭକରିଚନ୍ତି ହାମ୍‌ବୁର୍ଗରୁ ସମାଜବିଦ୍ୟା ଓ ନୃତତ୍ତ୍ୱରେ ଡକ୍ଟରେଟ୍ । ଆନୁଷ୍ଠାନିକ ପ୍ରଶିକ୍ଷଣ ତେଣୁ ଦେଇନାହିଁ ଇତିହାସବୋଧ; ଏ ବୋଧ ଅର୍ଜନକରିଚନ୍ତି ପ୍ରଥମେ ସ୍ୱାଧୀନତା ସଂଗ୍ରାମରୁ, ତା ପଛକୁ ଖଟିଖିଆ ମଣିଷର ଶୋଷଣମୁକ୍ତି ପାଇଁ ଅବିରତ ଲଢ଼ାଇରୁ, ଏବଂ ତ୍ୟାଗ ଓ ସଂଘର୍ଷର ସେଇ ହୋମାନଳରେ ପୂର୍ଣ୍ଣାହୂତି ହୋଇଚି ମାର୍କ୍ସବାଦ-ଲେନିନ୍‌ବାଦ । ସୟଦ୍ ମନ୍‌ସୁର୍ ହବିବୁଲ୍ଲାହ୍ ସେଇକଥା ସ୍ମରଣକରି ଲେଖିଚନ୍ତି, "ଆମର ସୌଭାଗ୍ୟ ଯେ କୃଷକ-ଆନ୍ଦୋଳନ ଆରମ୍ଭରୁ ତାଙ୍କ ଭଳି ବିଦଗ୍ଧ ପୁରୁଷଙ୍କୁ ସାଙ୍ଗରେ ପାଇଥିଲୁଁ । ଲୋକ ଥଟ୍ଟାକରି କହୁଥିଲେ, କଲ୍‌ଚରକରିପାରୁନା ଯେତେବେଳେ, ଆଗ୍ରିକଲ୍‌ଚର୍ କର । ମାନେ, ଭଦ୍ରସମାଜ ବରାବର ଭାବୁଥିଲା, ଚଷାଭୁଷାଙ୍କ ସାଙ୍ଗରେ ପଣ୍ଡିତବ୍ୟକ୍ତିର ମିଳାମିଶା ଘୋର ଅନ୍ୟାୟ । ଉଚ୍ଚବଂଶୀୟ ଲୋକଙ୍କ ପକ୍ଷରେ ଋଷୀ, ତନ୍ତୀ, କୁମ୍ଭାର, ବଢ଼େଇଙ୍କ ସାଙ୍ଗରେ ମିଳାମିଶା ଭଦ୍ରୋଚିତ ବିବେଚିତ ହୋଇନାହିଁ ସମାଜରେ । ତା ଛଡ଼ା, ପଣ୍ଡିତର କାମ ତ ବିଦ୍ୟାଚର୍ଚ୍ଚା, ଶିକ୍ଷାଦାନ କିମ୍ବା ପାଠାଗାର ପରିଋଳନା । ଏ ବ୍ୟବଧାନ ସେତେବେଳେ ଥିଲା । ଏବେ ବି ରହିଚି । ଲବ୍ଧପ୍ରତିଷ୍ଠ ରାଜନୀତିକ ସାଧାରଣତଃ ଗାଁଗଣ୍ଡାକୁ ଯିବାକୁ କୁଣ୍ଠାବୋଧକରନ୍ତି । ଡାକ୍ତର୍‌ଦା ସେ ବ୍ୟବଧାନ ଘୁଞ୍ଚାଇଦେଇ ଚଷାଭୁଷାଙ୍କ ଗୃହସ୍ଥଳିରେ ନିଜ ଜାଗା କରିନେଇଥିଲେ—ବିଶେଷତଃ ବର୍ଦ୍ଧମାନ ଓ ଚବିଶପରଗଣା ଜିଲ୍ଲାରେ । ଆଜିକାଲିକା ତୁଳନାରେ ଯାତାୟାତ ବ୍ୟବସ୍ଥା ବହୁତ ପଛରେ ଥିଲା, ଶଗଡ଼ କି ନୌକା ସମ୍ବଳକରି ଦୂରଦୂରାନ୍ତକୁ ଯିବାକୁ ପଡ଼େ । ଦିହ ଭଲ ନଥିଲେ ବି ଡାକ୍ତର୍‌ଦାଙ୍କୁ ଡାକିଲେ ନାହିଁକରନ୍ତିନାହିଁ କେତେବେଳେ ।

ଚବିଶପରଗଣାର ଆବାଦ ଅଞ୍ଚଳ, ସୁନ୍ଦରବନର ପାଖଆଖ ଗାଁ, ସବୁଜାଗାକୁ ଡାକ୍ତରଦାଙ୍କୁ ନେଇଯାଇଛୁଁ ହୁଲିଡଙ୍ଗାରେ । ଚବିଶପରଗଣାରେ କୃଷକ ଆନ୍ଦୋଳନର ପ୍ରଥମ ଘାଟି ତିଆରିହୋଇଥିଲା ସେତିକିବେଳେ । ମିନା ଖାଁ, ଉଚିଲ୍‌ଦା ଇତ୍ୟାଦି ପୁରୁଣା କମ୍‌ରେଡ୍ ଏବେ ବି ତାଙ୍କୁ ସ୍ମରଣକରନ୍ତି । ଘାଟିଗୁଡ଼ାକ ତିଆରିହୋଇଥିଲା କୃଷକଆନ୍ଦୋଳନକୁ ହିଁ କେନ୍ଦ୍ରକରି, ଆଜି ଯେତିକି ଅଗ୍ରସର ହୋଇଛୁଁ, ତା ମୂଳରେ ରହିଚି ତାଙ୍କରି ଅବଦାନ । ପ୍ରଥମ ଯୌବନରେ ସ୍ୱଦେଶୀ ଓ ବିପ୍ଳବବାଦ ପ୍ରଚାରକରି ବୁଲିଚନ୍ତି ବଙ୍ଗଳା ଓ ଓଡ଼ିଶାରେ ଗାଁକୁ ଗାଁ । ପ୍ରୌଢ଼ବୟସରେ ଫେର୍ ଭିଡ଼ିଗଲେ କୃଷକ-ସଂଗଠନ କାମରେ । ଦିହ ସମ୍ଭାଳିଚି ଯେତେଦିନ, ହଟିଯାଇ ନାହାଁନ୍ତି ।"

କର୍ମ ଓ ଚିନ୍ତାରେ ଯାର ଉତରଣ ଘଟେନା, ବହିର୍ଜଗତକୁ ବଦଳାଇଦେବ ଅବା କେମିତି ? ଜାତୀୟ ମୁକ୍ତିସଂଗ୍ରାମରୁ ସେଥିପାଇଁ କୋଉଦେଲେ 'ଦର୍ଶନ' ଉଦ୍‌ଗତ ହୋଇନାହିଁ, କାହିଁକିନା, ତାର ଏକମାତ୍ର କୃତ୍ୟସୂଚୀ ଥିଲା ବ୍ରିଟିଶ୍-ବିତାଡ଼ନ । ନିଜ ଏକକ ଅବସ୍ଥାନ (=ବିଷୟୀ ଉପରେ ଗୁରୁତ୍ୱ, ବିଷୟ ଉପରେ ନୁହେଁ) ସପକ୍ଷରେ ଭୂପେନ୍ଦ୍ରନାଥ ତେଣୁ ଲେଖିଚନ୍ତି, "...ବ୍ରାହ୍ମଣ ଶୂଦ୍ରକୁ ଘୃଣା ଦୃଷ୍ଟିରେ ଦେଖିବେ; ହିନ୍ଦୁ ଘୃଣାକରିବେ ଅ-ହିନ୍ଦୁଙ୍କୁ; ଜମିଦାର ପ୍ରଜାର ରକ୍ତ ଶୋଷିବେ; ସ୍ତ୍ରୀଲୋକଙ୍କ ଉପରେ ଅତ୍ୟାଚାର ଅବିଚାର ପୂର୍ବବତ୍ ଚାଲିଥିବ; ଶ୍ରେଣୀ ଓ ବର୍ଣ୍ଣ ବିଭାଗ ମଧ୍ୟ ଆଗଭଳି ରହିଥିବ; ଅଥଚ ସ୍ୱଜାତୀୟତା ନାଁରେ ଏକୀଭୂତହୋଇ ସମସ୍ତେ ଇଂରେଜ୍ ତଡ଼ିବେ । ଏହା ହିଁ ଆମ ବୈପ୍ଳବିକ ଦର୍ଶନର ବିସ୍‌ମିଲ୍ଲାରେ ଗଲତି । ...ନେତାଙ୍କ ଭିତରେ ଢେର୍ ଲୋକ ହିନ୍ଦୁଧର୍ମାଶ୍ରୟୀ ଥିଲେ । ଆଉ ରାଜନୀତି ଓ ସମାଜନୀତିକୁ ମଧ୍ୟ ସେଇ ଧର୍ମର ଆଖିଦେଇ ଦେଖୁଥିଲେ । ବଙ୍ଗର ଆଶା ଭରସାର ସ୍ଥଳ ଥିଲେ ଅରବିନ୍ଦ ଘୋଷ ମହାଶୟ । ଦ୍ୱିତୀୟବାର ଘୋଷ ମହାଶୟ ବରୋଦାରୁ ଆସିବାବେଳେ ଧର୍ମଦୀକ୍ଷା ଗ୍ରହଣକରି ଆସିଲେ, ଆଉ ମୁଁ ତାଙ୍କୁ ଯେତେଦୂର ବୁଝିଛି, ବିପ୍ଳବବାଦକୁ ଧର୍ମର ଚକ୍ଷୁଦେଇ ସିଏ ମଧ୍ୟ ଦେଖିଚନ୍ତି । ବାକି ଲୋକ, ଅଧିକାଂଶ ନୈଷ୍ଠିକ ବ୍ରାହ୍ମଣ୍ୟପନ୍ଥୀ । ...ରାଜନୀତି ବା ବିପ୍ଳବବାଦକୁ ଯେ ସମାଜ ଓ ଅର୍ଥନୀତିବିଜ୍ଞାନର ଭିତ୍ତି ଉପରେ ସ୍ଥାପିତ କରିବାକୁ ହୁଏ, ସେ ଖବର କେତେଜଣ ଅବା ରଖିଥିଲେ କି ଭାବିଥିଲେ ?" ଉଚ୍ଚଶିକ୍ଷା ସକାଶେ ବିଦେଶଯାତ୍ରାକରିବା ଆଗରୁ ଅରବିନ୍ଦଙ୍କ ଆଦେଶରେ କରିଚନ୍ତି ଅସହଯୋଗ ଓ ଆଇନ୍-ଅମାନ୍ୟ, ମାତ୍ର ସ୍ୱଦେଶକୁ ଫେରିଆସି ମନେହୋଇଚି, ବୁର୍ଜୋୟା-ସ୍ୱାର୍ଥର ଏଜେଣ୍ଟ୍‌ହୋଇ ଅପଚୟ କରିଚନ୍ତି ଶକ୍ତି ଓ ସମୟ । ଏପରିକି, ଅରବିନ୍ଦ-ଅନୁଜ ବାରୀନ୍ଦ୍ରକୁମାର କଳାପାଣିରୁ ମୁକୁଳିଆସି କହିଚନ୍ତି, 'ଆମେ ତ ଧନୀଶ୍ରେଣୀର ଭଡ଼ାଟିଆ ଗୁଣ୍ଡା ଥିଲୁଁ !' ନିଜ ପ୍ରାକ୍ତନ ନେତା ଅବିନାଶ

ଚକ୍ରବର୍ତ୍ତୀଙ୍କୁ ମଧ୍ୟ କହିଚନ୍ତି ଭୂପେନ୍ଦ୍ରନାଥ: 'ମହାଶୟ, ଉଚ୍ଚ ଆଦର୍ଶପରାୟଣ ଭଲମଣିଷ ଆପଣମାନେ, ଆଇଡିଆଲିଷ୍ଟ୍ । ରିଆଲିଟି ବିଷୟରେ କିନ୍ତୁ ଧାରଣା ନାହିଁ । ଏକ୍ଷଣି ବୁଝୁଚି । ଖାଲି *ଆନନ୍ଦମଠ* ପଢ଼ି ବିପ୍ଳବ କରିବାକୁ ବାହାରିଥିଲେ ଆପଣମାନେ । ସ୍ୱଚକ୍ଷୁରେ ଦେଖିଆସିଲି, ବିପ୍ଳବ ଜିନିଷଟା କିନ୍ତୁ ଏକେବାରେ ଅନ୍ୟରକମ । ଆଙ୍ଗୁଳିରେ ଗଣିହେବା ଭଳି ଭାରତୀୟ ବିପ୍ଳବୀଙ୍କୁ ଦେଖୁଚି, ଇଉରୋପ୍ କକ୍ଷରେ ଯିଏ ବିପ୍ଳବୀ ପଦବାଚ୍ୟ । ବିପ୍ଳବବାଦ ଏଠି, ବଙ୍ଗଦେଶରେ, ଆବଦ୍ଧରହିଚି ବୁର୍ଜୋୟାଙ୍କ ଭିତରେ; ଜଗତର ଇତିହାସରୁ କିନ୍ତୁ ଦେଖାଯାଉଚି, ବୁର୍ଜୋୟାଶ୍ରେଣୀ କଦାପି ପୂର୍ଣ୍ଣବୈପ୍ଳବିକ ହୋଇପାରେନା... ବୁର୍ଜୋୟା ବା ମଧ୍ୟମଶ୍ରେଣୀ, ଅଭିଜାତଶ୍ରେଣୀକୁ ଈର୍ଷାଚକ୍ଷୁରେ ଦେଖେ, ନିମ୍ନସ୍ତରର ଗଣଶ୍ରେଣୀକୁ ଦେଖେ ଘୃଣାଚକ୍ଷୁରେ । ଭାରତର ମଧ୍ୟମଶ୍ରେଣୀ ମଧ୍ୟ ସମାଜତତ୍ତ୍ୱୀୟ ଏ ନିୟମରୁ ବ୍ୟତିକ୍ରମ ନୁହେଁ । ସେଥିପାଇଁ, ଆମ ଆନ୍ଦୋଳନର ଆଦର୍ଶ କ୍ଷୁଦ୍ର, ବିପ୍ଳବବାଦ ମଧ୍ୟ କ୍ଷୁଦ୍ର । ନେତି ନେତି କରି ନୈରାଶ୍ୟର ଜପମାଳା ଗଡ଼ାଉଥିଲେ ଆଉ ଚଳିବନାହିଁ; ଅସ୍ତି ଅସ୍ତି ରୂପକ ଆଶାର କଥା କହିବାକୁ ପଡ଼ିବ; ମେଟିରିଆଲିଷ୍ଟ୍ ହେବାକୁ ପଡ଼ିବ ଆମକୁ । ଜଗତର ଉନ୍ନତି କରିହେବ, କାହିଁକିନା, ଜଗତର ପରିବର୍ତ୍ତନ ସମ୍ଭବପର ।'

ଅଥଚ ଯୌବନରେ ନିଜେ ଥିଲେ ଟେରରିଷ୍ଟ୍ । ସନ୍ତ୍ରାସକୁ ନିନ୍ଦାକରିନାହାଁନ୍ତି, ନିଜେ ସନ୍ତ୍ରାସବାଦୀ ଥିଲେ ବୋଲି ନୁହେଁ । ଭାରତରେ ରହିଚି ସନ୍ତ୍ରାସର ଐତିହାସିକତା; ସିପାହୀବିଦ୍ରୋହର ବହୁପୂର୍ବରୁ ତାର ଉନ୍ମେଷ; ଏବଂ ସେ ଧାରାକୁ ଶିବାଜୀ, ଗୁରୁ ଗୋବିନ୍ଦସିଂ, କିମ୍ବା ଆହୁରି ଦୂର ଅତୀତକୁ, ଇଚ୍ଛା କଲେ, ଟାଣିନେଇ ହେବ । ସେଥିପାଇଁ ଗଭୀର କ୍ଷୋଭ ସହକାରେ ଲେଖିଚନ୍ତି, "୧୯୧୫ ଖ୍ରୀଷ୍ଟାବ୍ଦରେ ଯତୀନ୍ଦ୍ରନାଥ ମୁଖୋପାଧ୍ୟାୟ ଓ ତାଙ୍କ ସଙ୍ଗୀମାନେ ଅଥବା ପଞ୍ଜାବର ଗଦରଦଳର ଲୋକ ଯଦି ଭାରତଭୂମିରୁ ଅନ୍ତତଃ ଚେନାଏଖଣ୍ଡେ ଅସ୍ତ୍ରବଳରେ ଦଖଲକରି ନେଇପାରିଥାନ୍ତେ, ରାଜନୀତିରେ ଦେଖାଦେଇ ନଥାନ୍ତା ଏତେ ବିଷାଦ । ସ୍ୱରାଜ ଆଣିବା ନାଁରେ ମଧ୍ୟ ଘଟିନଥାନ୍ତା ଧର୍ମର ଏତେ ଉତ୍ପାତ ।" ସନ୍ତ୍ରାସ ତେଣୁ ସେଇ 'ଅ-ଧାରାବାହିକ ଧାରାବାହିକତା'ରୁ ଅଚ୍ଛେଦ୍ୟ । ଅର୍ଥାତ୍ ଟ୍ର୍ୟାନ୍‌ଜିସନ୍ ବା ଅଭିସରଣ । କ୍ଷଣିକ ସମୁତ୍ପାଦଃ । ମାତ୍ର ତାକୁ ସକ୍ରିୟକରିବ ନାହିଁ ମାତ୍‌ସିନୀ-ଗ୍ୟାରିବଲ୍‌ଡି କି *ଆନନ୍ଦମଠ*ର ରୋମାଣ୍ଟିକ୍ ଭାବାଳୁତା । ସକ୍ରିୟକରିବ ମାସ୍‌ମୁଭ୍‌ମେଣ୍ଟର ମାର୍କ୍ସୀୟ ଦର୍ଶନ । ଖାଲି ବହିପଢ଼ିଲେ ଗଣଆନ୍ଦୋଳନରେ ମାର୍କ୍ସୀୟ ଦର୍ଶନର ଭୂମିକାକୁ ଉପଲବ୍ଧି କରିହେବନାହିଁ । ସାମାଜିକ ସାମ୍ୟ ଓ ସେଇ ସାମ୍ୟରୁ ରାଜନୀତିକ ଐକ୍ୟ, ଅବଶ୍ୟ ଅବଧାରିତ ଅଭୀଷ୍ଟ; ମାତ୍ର ଛାଏଁ ଛାଏଁ ଆସେନା । ମାତ୍‌ସିନୀରୁ ମାର୍କ୍ସକୁ ଉତ୍ତରଣ

ସେଥିପାଇଁ ଭୂପେନ୍ ଦତ୍ତଙ୍କ ପାଇଁ ସହଜହୋଇନାହିଁ । କୋଉହେଲେ ଦି'ଜଣ ଲୋକଙ୍କ ଉତ୍ତରଣର ଧାରା ହୁଏତ ସମାନ ହୁଏନା; କାମକରୁକରୁ ପ୍ରତ୍ୟେକ ଆବିଷ୍କାରକରନ୍ତି କ୍ରମାଗତ ଉତ୍ତରଣର ସୋପାନ ଶ୍ରେଣୀ । ମାତ୍ର ଯୋଉ ଗୋଟିଏ କଥାରେ ତଫାତ୍ ରହିବନାହିଁ, ତା ହେଉଚି, ଦେଶର ସାଧାରଣଲୋକ ପାଖରୁ ଦୂରରେ ରହିଲେ 'ସଭ୍ୟ' ବିବେଚିତହେବା ହୋଇପାରେ ସହଜ, 'ବିପ୍ଳବୀ' ହୋଇପାରିବା କିନ୍ତୁ କଦାପି ନୁହେଁ । ସାଧାରଣଲୋକଙ୍କ ଭିତରେ ଅଧେ କିନ୍ତୁ ସ୍ତ୍ରୀଲୋକ । କେହିକେହି କହୁଚନ୍ତି, ଜର୍ମାନୀରୁ ଅସ୍ତ୍ରଶସ୍ତ୍ର ପାଇଲେନାହିଁ ବୋଲି ବାଘା ଯତୀନ୍ ଧରାପଡ଼ିଲେ । ଜଣେ ଗୃହବଧୂ କିନ୍ତୁ ଭୂପେନ୍ ଦତ୍ତଙ୍କୁ ପଚାରିଥିଲେ, 'ତମେ ଯେତେବେଳେ ଲୁଚିଥିଲ, ଆଶ୍ରୟ ଦେଇଥିଲା କିଏ ? ଆହାର୍ଯ୍ୟ ଦେଇଥିଲା ଅବା କିଏ ?' ତେଣୁ ବିଦେଶରୁ ନମିଳିଲେ ମଧ୍ୟ ଦେଶଭିତରୁ ମିଳିଥାନ୍ତା ହତିଆର୍, କିନ୍ତୁ ଜନସାଧାରଣ ଥିଲେ ନିରପେକ୍ଷ । ନିରପେକ୍ଷ ଥିଲେବୋଲି, ବିପ୍ଳବୀଙ୍କ ଉଦ୍ୟମକୁ ଉପେକ୍ଷା କରିଥିଲେ । ପରବର୍ତ୍ତୀ କାଳରେ ସୁଦ୍ଧା ବାମପନ୍ଥୀ, ଲୋକଙ୍କ ଉପରେ ନିର୍ଭର ନକରି ମସ୍କୋକୁ କରିଚନ୍ତି ନିଜ ମକ୍କା । ଭୂପେନ୍ ଦତ୍ତ ଏକଥା ଲେଖିଚନ୍ତି ୧୯୪୯ରେ । ବିପ୍ଳବ ତେଣୁ ଅଗ୍ରେ ଧାବତି ଧାବତି ।

କିନ୍ତୁ କମିଉନିଷ୍ଟ୍ ପାର୍ଟିରେ ଯୋଗଦେଇ ରାଜନୀତିକ ରଣକୌଶଳକୁ ପ୍ରଭାବିତ କଲେନାହିଁ କାହିଁକି ? ଭାରତର କମିଉନିଷ୍ଟ୍ ପାର୍ଟିର ପ୍ରତିଷ୍ଠାତା ମାନବେନ୍ଦ୍ରନାଥ ରାୟଙ୍କ ସହିତ ଏଇଠି ତାଙ୍କ ମତଭେଦ; ରାୟ ଚାହିଁଚନ୍ତି ଆଗେ ଇଂରେଜ୍‌କୁ ହଟାଇଦେବାକୁ ପଡ଼ିବ, ପଛକୁ ଚାଲିବ ସମାଜତନ୍ତ୍ର ପ୍ରତିଷ୍ଠାର ଉଦ୍ୟୋଗ । କିନ୍ତୁ ଜାତୀୟତାବାଦୀ କଂଗ୍ରେସ୍ ସହିତ ଏକତ୍ରହୋଇ ଆନ୍ଦୋଳନକରିବା ତାଙ୍କ ନୀତିବିରୁଦ୍ଧ । ଭୂପେନ୍ଦ୍ରନାଥ କହିଚନ୍ତି, ବିପ୍ଳବାତ୍ମକ କୌଣସି ଗଣଆନ୍ଦୋଳନକୁ ଏ ଭାବରେ ଖଣ୍ଡିତ କରାଯାଇ ପାରେନା । ଗଣଆନ୍ଦୋଳନ ପାଇଁ ଦରକାର ସବୁରକମ ଲୋକଙ୍କ ସହଯୋଗ, କାହିଁକିନା, ଜାତୀୟତାବାଦୀଙ୍କୁ ଛାଡି କମିଉନିଷ୍ଟ୍ କାହାକୁ ପାଇବେ ସହଯୋଦ୍ଧା ? 'ବର୍ଲିନ୍ କମିଟି'ର ସଭ୍ୟ ତେଣୁ ତାସ୍‌ଖନ୍ଦରେ ସ୍ଥାପିତ (୧୯୨୦) ପାର୍ଟିକୁ ସ୍ୱୀକାର କରିନାହାଁନ୍ତି, ତୃତୀୟ ଆନ୍ତର୍ଜାତିକ ଯଦିଓ ରାୟଙ୍କୁ କରିଚି ସମର୍ଥନ । ଫଳରେ ଭୂପେନ୍ଦ୍ରନାଥ ରହିଗଲେ ଗୋଟାପଣେ ମାର୍କସିଷ୍ଟ; ପାର୍ଟି ଭିତରେ ପଶିଲେନାହିଁ, ମସ୍କୋରେ ନୁହେଁ କି ଭାରତରେ ନୁହେଁ । ୧୯୨୧ରେ ଜଣେ ଓଲନ୍ଦାଜ୍ କମିଉନିଷ୍ଟ୍ ତାଙ୍କୁ କହିଥିଲେ, ବାଇବ୍‌ଲ କହିଚି ଆଲୋକ ଆସିବ ପୂର୍ବଦିଗରୁ, ଏବଂ ସେଇ ପୂର୍ବଦିଗ ହେଲା ମସ୍କୋ । ପ୍ରତିବାଦକରି ଭୂପେନ୍ଦ୍ରନାଥ କହିଥିଲେ, ନା, ପୂର୍ବଦିଗ କହିଲେ ଚିରକାଳ ବୁଝାଇଚି ଭାରତ । ସେକଥା ମନେପକାଇ ୧୯୫୩ରେ ଲେଖନ୍ତି, 'ଇହା

ଲେଖକେର୍ ଜାତୀୟତାବାଦୀ କୁସଂସ୍କାର୍ ହଇତେ ପାରେ, ଜାତୀୟ ଅହମିକା ହଇତେ ପାରେ, କିନ୍ତୁ ଏଇ ଧାରଣା ତାଁହାର୍ ଯୌବନେର୍ ପ୍ରାରମ୍ଭ ହଇତେଇ ହୃଦୟେ ଗ୍ରଥିତ୍ ହଇୟା ଆଛେ ।' ସମାଜତନ୍ତ୍ର ଆଣିବାକୁ ଯୋଉ ଉଦ୍ୟୋଗ, ତାକୁ ତେଣୁ ଜାତୀୟତା ଉପରେ ସ୍ଥାନଦେଇନାହାଁନ୍ତି । ଦେଇନାହାଁନ୍ତି ବୋଲି, ସ୍ୱଦେଶର ଇତିହାସରୁ ନିର୍ଦ୍ଦିଷ୍ଟକରିଚନ୍ତି ଶ୍ରେଣୀସଂଗ୍ରାମର ଦୃଷ୍ଟାନ୍ତ; ଇଉରୋପ୍ ବା ଅନ୍ୟ କୁଆଡ଼୍କୁ ଅନାଇନାହାଁନ୍ତି । ଭୂପେନ୍ଦ୍ରନାଥଙ୍କ ନିର୍ବାଚିତ କର୍ମକ୍ଷେତ୍ର ତେଣୁ ନାଗରିକସମାଜ, ଅର୍ଥାତ୍ କୃଷକଶ୍ରମିକ ସଂଗଠନ; ସେ ସଂଗଠନ ଜରିଆରେ ସମାଜତନ୍ତ୍ର ଲାଗି କଷ୍ଟସ୍ୱୀକାର ମଧ୍ୟ ଜାତୀୟତାବାଦର ପରିପୂରକ, କାହିଁକିନା, ଖଟିଖିଆ ମଣିଷ ଜାଗ୍ରତ ନହେଲେ, ଜାଗ୍ରତହୋଇ ବାସ୍ତବକୁ ଚିହ୍ନଟକରି ନପାରିଲେ, ବୈଷମ୍ୟବିଲୋପ କି ସେଥିରୁ ଉପଜାତ ରାଜନୀତିକ ଐକ୍ୟ ସମ୍ଭବପର ନୁହେଁ । କାହିଁକିନା, ବୈଷମ୍ୟହୀନ ଐକ୍ୟ ବ୍ୟତିରେକେ ରାଷ୍ଟ୍ରର ଗଢ଼ଣ ବା ଚରିତ୍ରର ପରିବର୍ତ୍ତନସାଧନ ରହିଯିବ ଅକଳ୍ପନୀୟ । ସାଧାରଣଲୋକ ଯେ ଏ କାମକୁ ପାରିବେ, ସହଳରେ ହେଉ କି ଉଛୁରରେ, ସେ ବିଶ୍ୱାସ ତାଙ୍କୁ ଦେଇଚି ଇତିହାସ-ଦର୍ଶନର ମୌଳିକ ପ୍ରତ୍ୟୟ ।

ଧର୍ମ ସାକ୍ଷୀକରି ଅରବିନ୍ଦଙ୍କ ପାଖରୁ ଦେଶୋଦ୍ଧାରର ଦୀକ୍ଷାନେଇଥିଲେ ୧୯୦୨ ରେ, ଏବଂ ଅସ୍ତ୍ରଧାରଣ ଓ ରଣଭୂମିରେ ଜୀବନଦାନ ଯେହେତୁ କ୍ଷତ୍ରିୟର ଧର୍ମ, ସେ ପ୍ରତିଜ୍ଞାରେ ମଧ୍ୟ ଅଟଳରହିଚନ୍ତି ଆମୃତ୍ୟୁ । ଯୋଉବର୍ଷ (୧୯୨୫) ଫେରିଆସିଲେ ସ୍ୱଦେଶକୁ, ନବକୃଷ୍ଣ ଚୌଧୁରୀ ଶାନ୍ତିନିକେତନ୍ ଆସିଚନ୍ତି ଗ୍ରାମୀଣ ଅର୍ଥନୀତି ପଢ଼ିବାକୁ । ବୋଲିବା ବାହୁଲ୍ୟ, ଡକ୍ଟର୍ ଦତ୍ତଙ୍କୁ ଗ୍ରହଣକରିନାହାଁନ୍ତି ରବୀନ୍ଦ୍ରନାଥ ।୧୯୨୧ ରେ ପାଠପଢ଼ା ଛାଡ଼ିଥିଲେ ନବକୃଷ୍ଣ ବିଦେଶୀବର୍ଜନ ଆହ୍ୱାନରେ ଅଭିଭୂତହୋଇ; ସାବରମତୀ ଓ ଶାନ୍ତିନିକେତନ ଆଶ୍ରମମାନଙ୍କରେ ଗାନ୍ଧି ଓ ରବୀନ୍ଦ୍ରନାଥଙ୍କ ପ୍ରତ୍ୟକ୍ଷ ସଂସର୍ଗରେ ଆସିଥିଲେ ମଧ୍ୟ ଯାହାଙ୍କୁ ଜମାରୁ ଦେଖିନାହାଁନ୍ତି, ସେଇ ଲେନିନ୍‌ଙ୍କୁ ମାନିଚନ୍ତି ଅନୁକରଣୀୟ ଆଦର୍ଶ । ମାନିଚନ୍ତି ବୋଲି, ସମାଜତନ୍ତ୍ରକୁ ବାସ୍ତବାୟିତ କରିବାକୁ ପରାଧୀନ ଓଡ଼ିଶାରେ ସବାଆଗେ କୃଷକ-ସଂଗଠନରେ କରିଚନ୍ତି ଆତ୍ମନିଯୋଗ । ଏପରିକି, ଜୀବନର ଅନ୍ତିମ ପର୍ବରେ ସନ୍ତ୍ରାସବାଦୀଙ୍କୁ ଦେଇଚନ୍ତି ନିବେଦିତପ୍ରାଣ ଦେଶପ୍ରେମିକର ସ୍ୱୀକୃତି । ପଥରଖୋଦିତ ପ୍ରମାଣ ଅବଶ୍ୟ ନାହିଁ; ମାତ୍ର ପାରିପାର୍ଶ୍ୱିକ ନିଦର୍ଶନରୁ ଅନୁମାନକରିବା ସଙ୍ଗତ ଯେ କଲିକତା ରହଣିକାଳ(ଦଶମାସ) ରେ ଆହୁରି ଅନେକ ବିଦ୍ୟାର୍ଥୀ ଯୁବକଙ୍କ ଭଳି ନବକୃଷ୍ଣ ମଧ୍ୟ ପାଇଥିଲେ ଡକ୍ଟର୍ ଦତ୍ତଙ୍କ ପାଖରୁ ମାର୍କ୍ସବାଦରେ ଦୀକ୍ଷା, ଜାତୀୟତାର ମନ୍ତ୍ର, ଆଉ ତୃଣମୂଳ ସଂଗଠନର ସୂତ୍ର । ନବକୃଷ୍ଣ ସମ୍ଭବତଃ ପରିବର୍ତ୍ତନକାମୀ ଏକମାତ୍ର

ପରାର୍ଥବାଦୀ, ଯିଏ ସମକାଳର ବହୁତ ଆଗରୁ ଜନ୍ମିଥିଲେ ଓଡ଼ିଶାରେ, କାହିଁକିନା, ଯଥାପ୍ରାପ୍ତ ଓ ଅଧୀତ ତତ୍ତ୍ୱାବଳୀକୁ ପ୍ରକୃତ ସତ୍ୟସଂଧାନୀ ଭଳି, ଏକମାତ୍ର ସିଏ ହିଁ ପରୀକ୍ଷାକରିଯାଇଚନ୍ତି ଉଭୟ ନାଗରିକସମାଜ ଓ ରାଷ୍ଟ୍ର ଉପରେ ଏକାଦିକ୍ରମେ । ସେଇ ପରୀକ୍ଷାରୁ ପ୍ରାପ୍ତହେଲେ କଣ, ଲେଖି ରଖିଯାଇନାହାଁନ୍ତି, କାହିଁକିନା, ସବୁଯାକ ତତ୍ତ୍ୱ ପ୍ରମାଣିତ ହୋଇଚି, ନିଜ ଅଭିଜ୍ଞତାରେ ଅନ୍ତତଃ, ଅନିଶ୍ଚିତ ବା ଟେଣ୍ଟେଟିଭ୍ । ନୟନ ସମ୍ମୁଖରୁ ଘୁଞ୍ଚିଯାଇଚି ଚକ୍ରବାଳ ଦୂରରୁ ଆହୁରି ଦୂରକୁ, ଇଡିଅଲିଜି ଗୁଡାକୁ ପାଦତଳେ ଦଳି ଚାଲିଯାଇଚି ଅତୃପ୍ତ ମଣିଷ ଆହୁରି ଆଗକୁ; ଏବଂ ନବକୃଷ୍ଣ ବି ବୁଝିପାରନ୍ତି, ଅଗ୍ରଗମନ ହିଁ ମଣିଷର ଏକମାତ୍ର ଭବିତବ୍ୟ । କ୍ଷଣିକ-ସମୁତ୍ପାଦଃ ।

## ନବକୃଷ୍ଣ ଚୌଧୁରୀ

ଓଡ଼ିଶା ରାଜନୀତିର ଏକାଧିକ ପର୍ବର ନାୟକ ହେବାସତ୍ତ୍ୱେ ବଖାଣିନାହାଁନ୍ତି କୃତିତ୍ୱ ଯେହେତୁ 'ସାଫଲ୍ୟ' କହିଲେ ସଚରାଚର ଯା ବୁଝୁଁ, ପାଇନାହାଁନ୍ତି ଶେଷପର୍ଯ୍ୟନ୍ତ; କିନ୍ତୁ ଯୋଉ ଜୀବନ ବଞ୍ଚିଥିଲେ ଆମ ମଝିରେ, ତାର ଯଥାର୍ଥ ମୂଲ୍ୟାୟନ ତନ୍ଦ୍ରାଚ୍ଛନ୍ନ ଓଡ଼ିଶାରେ ହୋଇପାରିନାହିଁ ବୋଲି, ଅଦ୍ୟାବଧି ରହିଚନ୍ତି ଦୁର୍ବୋଧ । ମହତାବ୍ ଅବଶ୍ୟ ଲେଖିଚନ୍ତି, ଏ ରାଜ୍ୟକୁ ଆଧୁନିକତା ଆଣିବାରେ ନବକୃଷ୍ଣ ହିଁ ପ୍ରଥମ । କିନ୍ତୁ ବିଦ୍ୟାସାଗରଙ୍କୁ ମନେପକାଇ ରବୀନ୍ଦ୍ରନାଥ କହିବା ଭଳି, ଏଠି ଯେମିତି ଥିଲେନାହିଁ କେହିହେଲେ ତାଙ୍କ ସ୍ୱଜାତି କି ସୋଦର!

୧୯୨୧ରେ ଯେତେବେଳେ କଲେଜ୍‌ଛାଡ଼ି ବାହାରିଆସିଲେ, କେହି ଜାଣିନଥିଲେ ଦେଶ ସ୍ୱାଧୀନ ହେବ କି ନାହିଁ; ହେଲେ, କେବେହେବ; ଅସ୍ତ୍ରବଳରେ ହେବ ନା ଅସହଯୋଗ ବଳରେ? ଜାଣିବା ସମ୍ଭବ ନଥିଲା; ସମ୍ଭବଥିଲା କେବଳ ସଂଗ୍ରାମ । ବେଳକୁ ବେଳ କର୍ମୀ ଓ ଲୋକଙ୍କୁ ଗାନ୍ଧି ନାନାଦି ସ୍ୱପ୍ନମିଆଦୀ ପ୍ରଲୋଭନ ଦେଖାଇଚନ୍ତି ସତ, ନବକୃଷ୍ଣ କିନ୍ତୁ ବୁଝିଚନ୍ତି ଯେ ଜାତୀୟତାବାଦୀଙ୍କ ସାଙ୍ଗରେ ନ ରହିଲେ ସାମାଜତନ୍ତ୍ର ଆଣିବାକୁ ଆନ୍ଦୋଳନ ଦାନା ବାନ୍ଧିବନାହିଁ । ଯଥାରୀତି ସାମିଲ୍‌ହୋଇଚନ୍ତି ଅସହଯୋଗ ଆନ୍ଦୋଳନରେ, ମାତ୍ର ବଳେବଳେ ବାରିହୋଇପଡ଼ିଚନ୍ତି ଖଦଡଧାରୀଙ୍କ ଭିତରେ । କାଠଯୋଡ଼ି ବାଲିରେ ସଭାକରି ବିଦେଶୀବର୍ଜନ ଡାକଦେଇଚନ୍ତି ଗାନ୍ଧି; ରାମମୋହନ ରାୟ କିନ୍ତୁ ଚାହିଁଥିଲେ ବିଦେଶରୁ ଆସିବ ବିଜ୍ଞାନ ଆଉ ପ୍ରଯୁକ୍ତି । କଟକର ସେଇ ସଭାରେ ଉଠିଚି ଐତିହ୍ୟ ବନାମ୍ ଆଧୁନିକତା ପ୍ରଶ୍ନ, ଏବଂ ଗାନ୍ଧି ଦେଇଚନ୍ତି ରାମମୋହନଙ୍କୁ 'ବାମନ' ଆଖ୍ୟା । କିଏ ପଚାରିଥିଲା ସେଇ ପ୍ରଶ୍ନ? ମନେହୁଏ, ନବକୃଷ୍ଣ ହିଁ ସେଇ ପ୍ରଶ୍ନକର୍ତ୍ତା । ତହିଁଉତାରୁ

କାଠଯୋଡ଼ିରେ ବହିଯାଇଚି ଅକାତକାତ ପାଣି, ଏବଂ ୧୯୩୦ରେ ଆରମ୍ଭହୋଇଚି ଆଇନ୍‌ଅମାନ୍ୟ ସାଙ୍ଗକୁ ଲବଣସତ୍ୟାଗ୍ରହ । କିନ୍ତୁ ନବକୃଷ୍ଣ ଲୁଣମାରିବାକୁ ଯାଇ ବାଲେଶ୍ୱରରେ ଚାଷୀଙ୍କୁ ମତାଇଚନ୍ତି ଖଜଣା ନଦେବାକୁ । ତହିଁଉତାରୁ ପୈତୃକ ଜମିଦାରି ତରିକୁନ୍ଦ ଗାଁରେ 'କମିଉନ୍' ସ୍ଥାପନ ଓ ଯଥାକାଳେ ଅବଧାରିତ ସ୍ୱପ୍ନଭଙ୍ଗ ।

ପ୍ୟାରିମୋହନ ଏକାଡେମିରେ ଯେତେବେଳେ ମ୍ୟାଟ୍ରିକ୍ ପଢୁଥିଲେ, ଶିକ୍ଷକ ଥଲେ ବିପିନ୍‌ଚନ୍ଦ୍ର ପାଲ୍ । ଜାତୀୟ ମୁକ୍ତିସଂଗ୍ରାମର ଅନ୍ୟତମ କର୍ଣ୍ଣଧାର ବିପିନ୍‌ଚନ୍ଦ୍ର ପ୍ରବର୍ତ୍ତନକରିଥିଲେ *ବାଇବ୍ଲର* ଦଶଆଜ୍ଞା ଭଳି ସଂଗ୍ରାମୀଙ୍କ ସକାଶେ ଦଶଟି ପ୍ରତିଜ୍ଞା, ଏବଂ ପଞ୍ଚମ ପ୍ରତିଜ୍ଞା ଥିଲା, 'ଆମ୍ରା ବ୍ୟକ୍ତିଗତ୍ ସଂପତ୍ତି ଅର୍ଜନ୍ ବା ରକ୍ଷା କରିବ ନା, ଯାହା ଅର୍ଜନ୍‌କରିବ ତାହାତେ ସକଲେର୍ ସମାନ୍ ଅଧିକାର୍ ଥାକିବେ ଏବଂ ସେଇ ସାଧାରଣ୍ ଭାଣ୍ଡାର୍ ହଇତେ ପ୍ରତ୍ୟେକେ ନିଜ ନିଜ ପ୍ରୟୋଜନ୍ ଅନୁଯାୟୀ ଅର୍ଥ ଗ୍ରହଣକରିୟା ସ୍ୱଦେଶର୍ ହିତକର୍ କର୍ମେ ଜୀବନ୍ ଉତ୍ସର୍ଗ କରିବ ।' (ଦ୍ର. *ନବଯୁଗେର୍ ବାଂଲା*, ପୃ.୧୨୬ ।) ଫେର୍, 'ଯେ କମିଉନିଜ୍‌ମେର୍ ଆଦର୍ଶେ ଆମ୍ରା ଏଇ ଦଲ୍‌ଟା ବାଁଧିତେ ଗିୟାଛିଲାମ୍.. ସେଇ ଆଦର୍ଶ କାର୍ଯ୍ୟେ ପରିଣତ୍ କରିତେ ପାରିନାଇ, କିନ୍ତୁ ଅନ୍ୟାନ୍ୟ ପ୍ରତିଜ୍ଞାଗୁଲି ସକଲେଇ ରକ୍ଷାକରିୟା ଚଲିୟାଛିଲେନ୍ ।' ତରିକୁନ୍ଦ କମିଉନ୍‌ରେ ମଧ୍ୟ ପ୍ରତିଜ୍ଞା ରକ୍ଷାକରିନାହାଁନ୍ତି କେହିହେଲେ; ଏପରିକି, କୃଷିର ଉନ୍ନତି, ଫକୀରମୋହନ ଗଡ଼ଜାତରେ କୋବି-ମଟର ଚାଷକଲା ଭଳି, ଲୋକଦେଖାଣିଆ କାମରେ ଅଟକିଯାଇଚି । ପରେ ଦେଖାଗଲା, କମିଉନିଜ୍ମ ଭିତରେ ରହିଲେନାହିଁ, ଅଥଚ ହେଲେ କଂଗ୍ରେସ୍-ସୋସାଲିଷ୍ଟ୍ । ସେଭଳି ଆଉକେତେ ଲୋକ ପାର୍ଲାମେଣ୍ଟାରୀ ରାଜନୀତି ବଳରେ ସମାଜ ବଦଳାଇଦେବେ ଭାବି, କମିଉନିଷ୍ଟ୍ ପାର୍ଟିରେ ମଧ୍ୟ ଯୋଗଦେଇଥିଲେ । ଅର୍ଥାତ୍, ଔପନିବେଶିକ ଓଡ଼ିଶାରେ ସୁଶୀଳସମାଜର ପରିବର୍ତ୍ତନ ଗୌଣ ନହେଲେ ସୁଦ୍ଧା, କ୍ଷମତାରାଜନୀତିରୁ ରହିଯାଇଚି ଅଚ୍ଛେଦ୍ୟ । ଜାତୀୟତାବାଦୀ ନବକୃଷ୍ଣ ମଧ୍ୟ ନିର୍ବାଚନରେ ଜିତିଚନ୍ତି; ମାତ୍ର କଂଗ୍ରେସ୍‌ସୋସାଲିଷ୍ଟ୍ ପାର୍ଟିର ଅନୁଶାସନ ମାନି ମନ୍ତ୍ରୀହେବାକୁ ରାଜି ହୋଇନାହାଁନ୍ତି । ନିର୍ବାଚନରେ ଲଢ଼ିବା ଜାତୀୟତାବାଦୀଙ୍କ ଏଜେଣ୍ଡା ହୋଇପାରେ, ମନ୍ତ୍ରୀପଦ ଗ୍ରହଣ କଂଗ୍ରେସ୍-ସୋସାଲିଷ୍ଟ୍‌ଙ୍କ ପାଇଁ ମଧ୍ୟ ଆପତ୍ତିଜନକ ହୋଇପାରେ, କାହିଁକିନା, ବ୍ରିଟିଶ୍-ଭାରତରେ ସମାଜତନ୍ତ୍ର ଥିଲା ସୁଦୂର କଳ୍ପନା । ମାତ୍ର ପାର୍ଲାମେଣ୍ଟାରୀ ରାଜନୀତିରେ ପ୍ରବେଶ ସଙ୍ଗେସଙ୍ଗେ ନବକୃଷ୍ଣଙ୍କ ବିପ୍ଳବୀମାନସିକତା ହୋଇଯାଇଚି ଦ୍ୱିଧାବିଭକ୍ତ, କାହିଁକିନା, ଭୂପେନ୍ ଦତ୍ତ କହିବା ଭଳି, ବଙ୍ଗଳାରେ ବାଘା ଯତୀନ୍ କି ପଂଜାବରେ ଗଦର ପାର୍ଟି ଯଦି ଅସ୍ତ୍ରବଳରେ ସୂଚ୍ୟଗ୍ର ମେଦିନୀ ବ୍ରିଟିଶ୍ ହାତରୁ ଛଡ଼ାଇନେଇ ପାରିଥାନ୍ତେ, ଗାନ୍ଧିଙ୍କ ସ୍ୱାଧୀନତାସଂଗ୍ରାମ

ପର୍ଯ୍ୟବସିତ ହୋଇନଥାନ୍ତା କାକୁସ୍ତର ଭିକ୍ଷାବୃତ୍ତିରେ । ଅର୍ଥାତ୍, ନାଗରିକସମାଜ ବୁଝିପାରିଥାନ୍ତା କୋଉବାଟଟା କାମିକା, ମାଡ଼ଖାଇବା ନା ମାଡ଼ମାରିବା । ନବକୃଷ୍ଣଙ୍କ କମିଉନ୍ ପୈତୃକ ଜମିବାଡ଼ି ହିଡ଼ତେଇଁ ଇଞ୍ଚେହେଲେ ବାହାରକୁ ଯାଇନାହିଁ; ନାଗରିକସମାଜ ଆଗରେ ରହିଲା ତେବେ କି ଦୃଷ୍ଟାନ୍ତ ? ମାର୍କ୍ସ-କଥିତ ପ୍ୟାରିସ୍-କମିଉନ୍ କିଛିଦିନ ସକାଶେ ଅନ୍ତତଃ ପ୍ୟାରିସ୍-ସହରଟାକୁ ଦଖଲକରି ଶାସନକରିଚି; ଏବଂ ସେଇ ଭ୍ରୁଣକୁ ପ୍ରତ୍ୟକ୍ଷକରି ପରବର୍ତ୍ତୀ କାଳର ପରାର୍ଥବାଦୀଙ୍କ ପ୍ରତ୍ୟୟ ଦୃଢ଼ହୋଇଚି ଯେ, ଇତିହାସ-ପ୍ରବାହରେ ସମାଜତନ୍ତ୍ର ପ୍ରତିଷ୍ଠା ସମ୍ଭବପର ନିଶ୍ଚୟ । ନବକୃଷ୍ଣଙ୍କ କମିଉନ୍‌ର ବ୍ୟର୍ଥତାରୁ ଲୋକ ବୁଝିଲେ, ବ୍ୟାପାରଟା ବଡ଼ଲୋକ ପିଲାଙ୍କର ସ୍ୱପ୍ନବିଳାସ, ଅସଲ କାମ ବେଳକୁ ଆ୍ୟାସେମ୍ବ୍ଲି କି କାଉନ୍‌ସିଲ୍‌କୁ ଯାଇ ମଧୁବାରିଷ୍ଟର୍ ଭଳି ସମସ୍ତେ ମନ୍ତ୍ରୀ ହେବେ, କୋଠିରେ ରହିବେ, ପୁଲିସ୍‌ପହରାରେ ମୋଟର୍‌ଗାଡ଼ିରେ ବସି ଯା-ଆସ କରିବେ; ଗାଁରେ ରହି ଚଷାମୂଲିଆଙ୍କ ସାଙ୍ଗରେ ବିଲରେ ଖଟିବା କଲେଜ୍‌ପଢୁଆ ବାବୁମାନଙ୍କ ପାଇଁ ବଣଭୋଜି ! ଜମିଦାରକୁ, ପିଆଦାକୁ, ପୁଲିସ୍‌କୁ ସଂଘବଦ୍ଧହୋଇ, ଦରକାର ପଡ଼ିଲେ ଠେଙ୍ଗାବାଡ଼ି କି ତେଣ୍ଟାସୁଆନ୍ତି ଲଗାଇ ସାବାଡ଼କରିବେ– ଏ ବିଦ୍ୟା ଏମାନେ ଚଷୀଙ୍କୁ ଶିଖାଇଲେନାହିଁ, ବେଠି-ଭେଟି ବିରୋଧରେ ଖାଲି ବକ୍ତୃତା ଶୁଣାଇଲେ । ଚମ୍ପାରଣରେ ଗାନ୍ଧି ଭୟରୁ ମୁକ୍ତି କଥା ଉଠାଇଥିଲେ; ପୁରୁଷାନୁକ୍ରମେ ବଳଦପଛରେ ଚାଲିଚାଲି ହଳିଆ ବଳଦହୋଇଯାଇଚି ବୋଲି ମନକଷ୍ଟ କରିଥିଲେ । ତା ଫଳରେ, ବଳଦ ପିଠିରୁ ଉଠିଯାଇ ପାଞ୍ଚଣ କଣ ଜମିଦାର କି ପୁଲିସ୍ ପିଠିରେ ପଡ଼ିଚି ? ରାମଧୂନ୍‌ରୁ ବାହାରିଚି କି ଭୟମୁକ୍ତି ? ନିଜେ ଅବଶ୍ୟ ଠେଙ୍ଗାଟାଏ ଧରି ବାଟ ଚାଲୁଥିଲେ; ତେବେ ଅନୁଚରଙ୍କୁ କହିଲେ ନାହିଁ କାହିଁକି ଠେଙ୍ଗା ଧରିବାକୁ ? କଂଗ୍ରେସ୍-ସୋସାଲିସ୍ଟ ଶିଖିଲେ କଣ ଏ ବୈପରୀତ୍ୟରୁ ? ଭୂପେନ୍ ଦତ୍ତ, ଭୋର୍‌ସକାଳେ ଢେର୍ ବାଟ ବୁଲୁଥିଲେ, ଫେରିବାବାଟରେ ଫୁଲମାଳଟିଏ କିଣିଆଣି ହେଦୁଆମୋଡ଼ରେ ବାଘା ଯତୀନ୍‌ଙ୍କ ମୂର୍ତ୍ତି ବେକରେ ଲମ୍ବାଇଦିଅନ୍ତି, ସେଇଥିଲା ତାଙ୍କ ପ୍ରାତଃକୃତ୍ୟ, ଆମୃତ୍ୟୁ । ସେଥିରୁ ନବକୃଷ୍ଣ ବୁଝିବାକଥା ଭୟମୁକ୍ତିର ଦସର୍ଥ । ଅନେକ ଡେରିରେ ବୁଝିଥିଲେ ଅବଶ୍ୟ, ଭୟ ପ୍ରକୃତରେ ସମ୍ପତ୍ତି ନାଶର ଭୟ; କିନ୍ତୁ ସେ ଭୟରୁ ଜନସାଧାରଣଙ୍କୁ ମୁକୁଳାଇବା ଲାଗି ଆଶ୍ରୟକରିଥିଲେ ପାର୍ଲାମେଣ୍ଟାରି ପଦ୍ଧତି । ଭାଗଚଷୀକୁ ଦେଇଥିଲେ ସ୍ୱତ୍ୱାଧିକାର, ଜମିଦାରକୁ କରିଥିଲେ ଉଚ୍ଛେଦ । ଭୟମୁକ୍ତି ଘଟିନାହିଁ ତଥାପି । ଅମଲାଙ୍କ ଦୌରାତ୍ମ୍ୟରୁ ଗଣଶ୍ରେଣୀକୁ ରକ୍ଷାକରିବାକୁ ଓଡ଼ିଆଭାଷାକୁ କଲେ ରାଜଭାଷା, ଅଞ୍ଚଳଶାସନ ଆଇନ୍ ବି କଲେ ପ୍ରବର୍ତ୍ତନ; ସେ ଆଇନ୍ ଅମଲାତନ୍ତ୍ରର ଉତ୍‌ପୀଡ଼ନରୁ ଚଷୀକୁ ରକ୍ଷାକରିଚି କି ? ଅମଲାଙ୍କର ଜମି ଅଛି ଗାଁରେ, ଚାକିରୀ ଅଛି

ସହରରେ । ମାର୍କ୍ସଙ୍କ ପରିଭାଷାରେ ଏ ମଧ୍ୟବିତ୍ତ, ପେଟି-ବୁର୍ଜୋୟା; ଏକାବେଳକେ ଶୋଷଣକରେ ଆଉ ଶୋଷଣର ହୁଏ ଶିକାର । ଭୂସଂସ୍କାରକୁ ଯଦି କେହି ବାଟମାରଣା କରିଥାଏ, ସିଏ ବୃହତ୍ ଭୂମ୍ୟଧିକାରୀ ନୁହେଁ, ଏକମାତ୍ର ସଂଖ୍ୟାଗରିଷ୍ଠ ଏଇ ପେଟି ବୁର୍ଜୋୟା । ନବକୃଷ୍ଣ ତେଣୁ ପ୍ରକୃତ କୃଷକକୁ ଦେଇପାରିଲେନାହିଁ ଋଷଜମିର ଦଖଲ । ବରଂ, ମଧ୍ୟସ୍ୱତ୍ୱାଧିକାରୀଙ୍କ ଜାଗାରେ ପିଢ଼ାଉପରେ ଛତୁ ଭଳି ଗଜୁରିଉଠିଚନ୍ତି ଅସଂଖ୍ୟ ପଞ୍ଚପାଳ, ପଞ୍ଚାୟତ୍ କି ଗ୍ରାମଗୋଷ୍ଠୀ ପ୍ରକଳ୍ପରେ ଯେମିତି, ଭାଷା ଓ ସାହିତ୍ୟ କ୍ଷେତ୍ରରେ ସେମିତି । ସମକାଳର ଓଡ଼ିଶାରେ ସାହିତ୍ୟ ନାଁରେ ଲକ୍ଷଲକ୍ଷ ଟଙ୍କା ପୁଞ୍ଜିପତିଙ୍କ ପାଖରୁ ଉପଢୌକନ ରୂପରେ ଯୋଗାଡ଼କରିଚନ୍ତି ଯେତେଲୋକ, ପ୍ରାୟ ସମସ୍ତେ ଉଚ୍ଚପଦସ୍ଥ ଅମଲା । ନିୟମକାନୁନ୍ ଛତ୍ରଛାୟା ତଳେ ଦି'ପଇସା ହାତପଇଠ କରିବା ପେଟିବୁର୍ଜୋୟା ପାଇଁ ହୋଇଯାଇଚି ନିରାପଦ । ଏଇ ମଧ୍ୟବର୍ତ୍ତୀଶ୍ରେଣୀ, ପୁଞ୍ଜିର ବିଶ୍ୱପର୍ଯ୍ୟଟନ ଯୁଗରେ ଭୋଗବାଦରେ ଆକଣ୍ଠ ନିମଜ୍ଜିତ । ନବକୃଷ୍ଣଙ୍କ ପ୍ରଥମ କର୍ତ୍ତବ୍ୟ ହୋଇଥାନ୍ତା ନାଗରିକସମାଜକୁ ଭାଗ୍ୟବାଦରୁ ସଜ୍ଞାନ ଉଦ୍ଧାର । ଭାଗ୍ୟବାଦରୁ ମୁକ୍ତ ନହେଲେ, ଜନ୍ମସୂତ୍ରରେ ପ୍ରାପ୍ତ ଅସ୍ମିତା-ଚେତନା ଲିଭିଯାଏନା, ସକଳ ସାମାଜିକସମ୍ପର୍କକୁ ପାତରଅନ୍ତର ଆଚ୍ଛନ୍ନକରି ରଖିଥାଏ । କହିବା ବାହୁଲ୍ୟ, ସାମାଜିକସମ୍ପର୍କ ବସ୍ତୁତଃ ପ୍ରପର୍ଟି-ରିଲେସନ୍ସ୍ । ଅର୍ଥାତ୍, ପୁରାତନ ସମାଜର ସବୁଯାକ ସଂସ୍କାର ନୂଆନୂଆ ଭେକଧରି ଆତ୍ମପ୍ରକାଶ କରିଥାଏ ବେଳକାଳ ଉଣ୍ଡି । ଇତିହାସରୁ କିନ୍ତୁ ଦିଶୁଚି, ଏକମାତ୍ର ମନୁଷ୍ୟପ୍ରଜାତି ଜନ୍ମସୂତ୍ରରେ ପ୍ରାପ୍ତ ସଂସ୍କାରଗୁଡ଼ାକୁ ଅତିକ୍ରମ କରିପାରେ, ଏବଂ ଯୋଉ ପ୍ରକ୍ରିୟାରେ କରେ, ତା ସଂଘାତସଙ୍କୁଳ । ବଞ୍ଚିତ ଗଣଶ୍ରେଣୀକୁ ଲଢୁଆମଣିଷ ସ୍ତରକୁ ଉଠାଇବାକୁ ହେଲେ ପ୍ରଥାରହିତ କର୍ମଧାରା ଦରକାର, ପାର୍ଲାମେଣ୍ଟାରି ରାଜନୀତି ସେ କର୍ମଧାରାର ପ୍ରତିକୂଳ । କମିଉନ୍ ବାଟଦେଇ ସେ କାମ କରାଯାଇ ପାରିବ; ମାତ୍ର ତଥାକଥିତ ସହଯୋଦ୍ଧା, ଆପଣା ଶ୍ରେଣୀସ୍ୱାର୍ଥରେ, ବର୍ଜନକରିଥିଲେ ନବକୃଷ୍ଣଙ୍କ ସଂସ୍ରବ । ଲଢ଼ାଇକରିବାକୁ ଯାଇ, ଆଇନ୍ ହାତରେ ଦଣ୍ଡପାଇଥାନ୍ତେ ହୁଏତ, ମାତ୍ର ସେ ଅନ୍ୟାୟ ପରିବର୍ତ୍ତନ-ସଂକଳ୍ପକୁ କରିଥାନ୍ତା ବଦ୍ଧମୂଳ ଓ ଜ୍ୱଳନ୍ତ । ସେ ଶିକ୍ଷା ନବକୃଷ୍ଣ ଦେଇନାହାଁନ୍ତି ନାଗରିକସମାଜକୁ; ଦେଇଥିଲେ, ଭୂଦାନଯଜ୍ଞ ମୂଳରୁ ମନେହୋଇଥାନ୍ତା 'ସଂକୀର୍ତ୍ତନ'; ପାର୍ଲାମେଣ୍ଟାରୀ ରାଜନୀତି ମୂଳରୁ ମନେହୋଇଥାନ୍ତା ବୁର୍ଜୋୟାର ପ୍ରଚ୍ଛନ୍ନ ସ୍ୱାର୍ଥସିଦ୍ଧି । ମାତ୍ର ଖଦଡ଼ଧାରୀଙ୍କୁ ଛାଡ଼ିଦେଲେ କର୍ମୀ କି ସଂଗଠନ ପାଇଥାନ୍ତେ ଅବା କୁଆଡୁ? ଏଇ ଲୋକଜୁଟାଇବା କାମରେ ସାରାଜୀବନ ଖଟିଖଟି ଶେଷକୁ ହୋଇଗଲେ ନିଃସଙ୍ଗ । ତଥାପି ରହିଚନ୍ତି ଅକ୍ଳାନ୍ତ ଓ ଅତନ୍ଦ୍ର, ଠିକ୍ ଯେମିତି ଭୂପେନ୍ଦ୍ରନାଥ । ମାର୍କ୍ସ କହିଥିଲେ, ଧନତନ୍ତ୍ରର ଜଠରରୁ ଜନ୍ମନେବ

ସମାଜତନ୍ତ୍ର, କାହିଁକିନା, ଇତିହାସର ନିୟମ ଅବଧାରିତ ଅଗ୍ରଗତି, ଏବଂ ସେଇ ସୂତ୍ରରେ ସ୍ୱୟଂ ଧନତନ୍ତ୍ର ଇତିହାସର ଏକ କ୍ରମପର୍ଯ୍ୟାୟ ମାତ୍ର, ଏବଂ ସେ ଅଗ୍ରଗତି ପଥରେ ଧନତନ୍ତ୍ର ଯେହେତୁ ସୃଷ୍ଟିକରେ ବହୁବିଧ ବୈପରୀତ୍ୟ, ସେ ବୈପରୀତ୍ୟକୁ ବିଗଳିତ କରିବାକୁ ପରବର୍ତ୍ତୀ ଯୋଉ ପର୍ଯ୍ୟାୟ ଅବଶ୍ୟମ୍ଭାବୀ, ତା ସମାଜତନ୍ତ୍ର ହେବାହିଁ ସ୍ୱାଭାବିକ । ଲେନିନ୍‌ଙ୍କ ରସିଆରେ ଧନତନ୍ତ୍ର ଥିଲାନାହିଁ; ମାତ୍ର ବଲ୍‌ସେଭିକ୍ ପାର୍ଟି ରାଜନୀତିକ ବିପ୍ଳବ ବଳରେ ସେଠି ବସାଇଦେଲେ ଯୋଉ ସମାଜବ୍ୟବସ୍ଥା, ତାର ଔପଚାରିକ ପରିଚୟ ସମାଜତନ୍ତ୍ର ହେଲେସୁଦ୍ଧା, ପ୍ରଫେସର୍ ସ୍ୱିଜୀ କହିଚନ୍ତି 'ପୋଷ୍ଟ୍-ରେଭୋଲିଉସନାରୀ ସୋସାଇଟି'; ଅର୍ଥାତ୍ ସମାଜତନ୍ତ୍ର ନୁହେଁ, ବିପ୍ଳବୋତ୍ତର ଏକ ସମାଜ, ଯୋଉଠି ଧନତନ୍ତ୍ର ନାହିଁ କି ସମାଜତନ୍ତ୍ର ତିଆରିହୋଇନାହିଁ । ନବକୃଷ୍ଣ ଏକ ଚିଠିରେ ଲେଖିଚନ୍ତି, ଗାନ୍ଧି ଓ ଲେନିନ୍ ତାଙ୍କ ଦୀକ୍ଷାଗୁରୁ । ଲେନିନ୍‌ଙ୍କ ଦୃଷ୍ଟାନ୍ତରୁ ହୁଏତ ଭାବିଚନ୍ତି, ମାର୍କ୍ସ ନିର୍ଦ୍ଦେଶିତ ବାଟରେ ନଯାଇ ସୁଦ୍ଧା ଏକା ହୁମ୍ପାକେ ସମାଜତନ୍ତ୍ର ବସାଇହେବ । ଗୋଡ଼ହାତ ଭାଙ୍ଗିବା ସାରହୋଇଚି; ଯେମିତି ହୋଇଚି ରସିଆରେ । ରସିଆରେ ଧନତନ୍ତ୍ର ଥିଲାନାହିଁ ସତ, ମାତ୍ର ଧର୍ମ କି ଜାତି ଭିତ୍ତିରେ ସମାଜ ବିଭାଜିତ ହୋଇନାହିଁ; ନବକୃଷ୍ଣଙ୍କ ବୁଝିବା କଥା, ଜାତି ବା ଉପଜାତି ପ୍ରତି ଆନୁଗତ୍ୟ କାର୍ଯ୍ୟକାରୀ ହୁଏ ନିର୍ଦ୍ଦିଷ୍ଟ ରାଜନୈତିକ ଓ ସାମାଜିକ ବାତାବରଣରେ, ଏବଂ ଜାତି/ଉପଜାତି ଚିହ୍ନଗୁଡ଼ାକ ଜନ୍ମସୂତ୍ରରେ ମିଳିଲେ ସୁଦ୍ଧା, ପୁରାପୁରି ଜୈବିକ ନୁହେଁ । ସେ ପରିଚୟ ସାଙ୍ଗରେ ଜଡ଼ିତ ଅଛି ମୂଲ୍ୟମାନ ବିବେଚନା, ପରମ୍ପରା ଓ ଇତିହାସଦ୍ୱାରା ବାହିତ ସ୍ମୃତି । ସବୁଗୁଡ଼ାକ ଏକାଠିହୋଇ ତିଆରିକରିଚି ଚେତନାର ଆକାରପ୍ରକାର । ସେ ଚେତନା ଯୋଉ ସାମାଜିକ ବ୍ୟବଧାନ ନିର୍ମାଣକରେ ଦିନପରେ ଦିନ, ସେ ଚେତନା ଭିନ୍ନ ଲୋକଙ୍କୁ ମନେକରେ ଇତର, ଦ୍ୟ ଅଦର୍ । କିନ୍ତୁ, ଚେତନାର ବିକଚନ ଫଳରେ ମଣିଷ ଅତିକ୍ରମକରିପାରେ କୃତ୍ରିମ ଅନେକ ବ୍ୟବଧାନ; ଯୋଉ ପ୍ରକ୍ରିୟାରେ ଅତିକ୍ରମକରେ, ମାର୍କ୍ସ ତାକୁ କହିଚନ୍ତି ପ୍ର୍ୟାକ୍‌ସିସ୍ । ଇତିହାସରୁ ଦିଶୁଚି ଏ ଚେତନା ବଦ୍ଧମୂଳ ନୁହେଁ, ଅବିରତ ଗତିଶୀଳ, ଗତିଶୀଳ ବୋଲି ସାମାଜିକ ଚେତନାର ରହିଚି ସ୍ତରଭେଦ । ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ସେଇ ବିଭାଜନକାରୀ ପ୍ରବଣତାକୁ ପ୍ରତିରୋଧ କରିପାରେ ଶ୍ରେଣୀଚେତନା, ଅର୍ଥାତ୍ ବିକଳ୍ପ ଏକ ଜୀବନଦର୍ଶନ । ରାଜନୀତିକ ମୋବିଲାଇଜେସନ୍ ଯଦି ଜାତି/ଉପଜାତି ପରିଚୟଦ୍ୱାରା ସଂଗଠିତହୁଏ, ତା'ହେଲେ, ସେ ପରିଚୟ ଉପରକୁ ଉଠିବା କଥା ଜମାରୁ ଉଠିବନାହିଁ, ଜାତିପରିଚୟ ରୂପକ ଭାବାଦର୍ଶ ଏକାଜାଗାରେ ଠିଆହୋଇଥିବ ଚିରକାଳ । ବ୍ୟବସ୍ଥାଟାକୁ ଓଲଟପାଲଟ କରିଦେଇପାରେ କିନ୍ତୁ ସଚେତନ ପ୍ରତିରୋଧ । ସଚେତନ ମାନେ

ସାମାଜିକ ଚେତନାର ବିକଚନ, ଯା ଫଳରେ ମଣିଷ ଯଥାପ୍ରାପ୍ତ ସୀମାବଦ୍ଧତାକୁ ଅତିକ୍ରମକରିପାରେ । ଶୋଷଣପୀଡ଼ନ ବିରୋଧରେ ଏକଜୋଟ୍‌ହୋଇ ଲଢ଼ିଯିବା ପ୍ରକ୍ରିୟାରେ ପ୍ରକୃତ ଉତ୍ପାଦକଶ୍ରେଣୀ ଜନ୍ମସୂତ୍ରରେ ଆହରିତ ଏଇ ସୀମାବଦ୍ଧତାଗୁଡ଼ାକୁ ଅତିକ୍ରମକରିଚି; ମାତ୍ର ବହୁ ବିଭାଜିତ ସମାଜରେ ଶ୍ରେଣୀସଂହତି ସହଜରେ ତିଆରିହୁଏନା । କାହିଁକିନା, ଛୋଟଛୋଟ ଆନୁଗତ୍ୟଗୁଡ଼ାକ ବୃହତ୍ତର ସାମାଜିକ ଆନ୍ଦୋଳନ ବାଟରେ ଅନ୍ତରାୟ ହୋଇ ପଥରୋଧ କରେ । ଶୋଷିତ ବୁଝିପାରେନା ବ୍ରାହ୍ମଣକୁଳରେ ଜନ୍ମହେଲେ ସୁଦ୍ଧା, ତାର ନିର୍ଯାତନା ଓ ଅବମାନନା ସ୍ଥିତ ବ୍ୟବସ୍ଥାରେ ଚୂଡ଼ାନ୍ତ; ଅସ୍ପୃଶ୍ୟଠାରୁ ବ୍ରାହ୍ମଣର ବ୍ୟବଧାନ କେବଳ କାନ୍ଧର ପଇତା ।

ଆଳି ଥାନା ଅନ୍ତର୍ଗତ ମାନପୁର 'ଗ୍ରାମଦାନ' ଭାବରେ ଭାରତରେ ଦ୍ୱିତୀୟ; ନବକୃଷ୍ଣଙ୍କୁ 'ମୁଖ୍ୟମନ୍ତ୍ରୀ' ବୋଲି ଗାଁବାଲା ଚିହ୍ନିପାରିଲେ ଯେତେବେଳେ ଲମ୍ଭଖମ୍ଭହୋଇ ପଡ଼ିଗଲେ ଗୋଡ଼ତଳେ; ବିମୂଢ଼ ବିପ୍ଳବୀ ଦୁଃଖ ଓ ବିସ୍ମୟରେ କହିପକାଇଲେ, 'ଲୋକଗୁଡ଼ାକ ଏତେ ଖୋସାମତିଆ !' କିନ୍ତୁ ନବକୃଷ୍ଣଙ୍କ ଜାଣିବା କଥା, ବିନା ମତଲବ୍‌ରେ କେହି ଖୋସାମତ୍ କରେନା; ସେଇ ମତଲବ୍‌କୁ ଚିହ୍ନିବାକୁ ଚେଷ୍ଟାକରିଚି କି ତାଙ୍କ ସମାଜତାନ୍ତ୍ରିକ ଅବବୋଧ ? ଅଥଚ ଏମାନେ କରିଚନ୍ତି ଗ୍ରାମଦାନ ! କରିସୁଦ୍ଧା, ଚେତନାର ଘଟିନାହିଁ ଉତ୍ତରଣ, କାହିଁକିନା, ସଂଗ୍ରାମ ବାଟଦେଇ ସଂଘଟିତ ହୋଇନାହିଁ ଗ୍ରାମଦାନ । ସଂଗ୍ରାମ ବାଟଦେଇ ଚେତନା ବିକଚିତ ହୋଇନାହିଁ ବୋଲି, ଗୋଡ଼ତଳେ ପଡ଼ିବା, ତୋଷାମଦ କରିବା ହୋଇଯାଇଚି ଜାତୀୟ ସଂସ୍କୃତି । ମାନେ, ସଫଳ ହେବାକୁ ଆବଶ୍ୟକ ସର୍ତ୍ତ ଏକ୍ଷଣି ପରପଦଲେହନ । ପୁଞ୍ଜିବାଦ ହୁଏତ ମଦତ୍ ଯୋଗାଇଚି ଏ ପ୍ରବଣତାକୁ, ମାତ୍ର ଯୋଉ ଲୋକ ଗତରଖଟି ରୁଜିରୁଟି ଯୋଗାଡ଼ କରେ ଭଗବାନଙ୍କ କୃପା ସୁଦ୍ଧା ତା ଲାଗି ଅନାବଶ୍ୟକ । ସେମାନଙ୍କ ଆଚରଣ ପଛରେ କର୍ମରତ ଯୋଉ ନୀତିବୋଧ, ନବକୃଷ୍ଣଙ୍କ 'ସର୍ବୋଦୟ' ତାର ପରିବର୍ତ୍ତନ ଚାହିଁନାହିଁ; ଚାହିଁନାହିଁ ବୋଲି, 'ଯଜ୍ଞ' ଓ 'ଦାନ' ଭଳି ଧର୍ମୀୟ ଆଙ୍ଗିକ ଯୋଡ଼ାଯାଇଚି ଭୂମିବଣ୍ଟନ ସାଙ୍ଗରେ । ଲାଭ (ପ୍ରଫିଟ୍) ପ୍ରତ୍ୟାଶାରେ ଲୋକଙ୍କ ଆତ୍ମମର୍ଯ୍ୟାଦା-ବୋଧ ପଛକୁ ହଟିଚି । ମାତ୍ର, କ୍ରାନ୍ତଦର୍ଶୀ ନବକୃଷ୍ଣ ଏ ଫାନ୍ଦରେ ଗୋଡ଼ପକାଇଲେ କାହିଁକି ? ତାଙ୍କ ମେଦିନୀ ଦୃଷ୍ଟିକୁ ଖର୍ବକରିଥିଲା କି ପତ୍ନୀ ଓ ପରିବାରର ପ୍ରଭାବ ? ଯୌଥପରିବାରର କର୍ତ୍ତା ଗୋପବନ୍ଧୁ ଚୌଧୁରୀ କର୍ତ୍ତୃତ୍ୱ–ପରାୟଣ ହେଲେସୁଦ୍ଧା 'ସଂଗ୍ରାମ' ଜିନିଷଟାକୁ ବୁଝିନଥିଲେ ତିଳେମାତ୍ର; ରେଳବାଇ ଟିକିଟ୍-ଇନ୍ସପେକ୍ଟରକୁ ଲାଞ୍ଛଦେବା ଆଉ ଖଲିଲ୍ ଜିବ୍ରାନ୍ ପଢ଼ିବା ଏକାସାଙ୍ଗରେ ଚାଲେ । ଏଣେ ପତ୍ନୀ ମାଳତୀ ଥିଲେ ଶାନ୍ତିନିକେତନରେ ଲାଳିତା, ବ୍ରାହ୍ମକନ୍ୟା । ଏମାନଙ୍କର କପଟ

ଆଧ୍ୟାତ୍ମିକତା ନବକୃଷ୍ଣଙ୍କୁ ହୁଏତ ବିରକ୍ତ କରିଚି; ମାତ୍ର ବାଡ଼ଗୁଡ଼ାକୁ ଭାଙ୍ଗିପାରିନାହାନ୍ତି ପ୍ରାତ୍ୟହିକ ଜୀବନଯାତ୍ରାରେ। ନିଜେ ବ୍ରାହ୍ମପରିବାରର ସନ୍ତାନ ଭୂପେନ୍ ଦତ୍ତ କିନ୍ତୁ ବ୍ରାହ୍ମସମାଜଙ୍କୁ କହିଚନ୍ତି, ଊନବିଂଶ ଶତାବ୍ଦୀର ଭିକ୍ଟୋରୀୟ ପରିଶୀଳନର ବଙ୍ଗୀୟ ସଂସ୍କରଣ; ଫିରିଙ୍ଗି ଅନୁକରଣରେ ଫିରିଙ୍ଗି ଠୁଁ ବି ଅଧମ । ନିର୍ବିଘ୍ନର ଏଇ ଅନୁକରଣର ସାମାନ୍ୟ କିଛି ଦୃଷ୍ଟାନ୍ତ ଲକ୍ଷ୍ୟକରାଯାଉ । ଭଗବତୀଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ, ତିରିଶଦଶକ ମଧ୍ୟଭାଗରେ, ସ୍ଥାପିତ ହୋଇଚି ଓଡ଼ିଶାର କମିଉନିଷ୍ଟ୍ ପାର୍ଟି । ସେ ପାର୍ଟିର ସାଂସ୍କୃତିକ କୃତ୍ୟସୂଚି କିନ୍ତୁ ନିର୍ଦ୍ଦିଷ୍ଟ କରିଚନ୍ତି ସ୍ୱୟଂ ନବକୃଷ୍ଣ; ତାଙ୍କରି ଉଦ୍ୟମରେ ପ୍ରତିଷ୍ଠାପାଇଚି 'ନବଯୁଗ ସାହିତ୍ୟ ସଂସଦ' । ସେଇଠୁ ବାହାରିଚି ସାହିତ୍ୟ-ପତ୍ରିକା *ଆଧୁନିକ* । ପ୍ରଥମ ଦୁଇଟି ସଂଖ୍ୟାରେ ନବକୃଷ୍ଣ ବୈଜ୍ଞାନିକ ସାମ୍ୟବାଦ ବିଷୟରେ ଲେଖିଚନ୍ତି ଅସମାପ୍ତ ଏକ ପ୍ରବନ୍ଧ; ଶେଷକଲେନାହିଁ କାହିଁକି ? କହିଚନ୍ତି, ଆହୁରି ବଡ଼ ଓ ଜରୁରୀ କାମ ବାଦସାଧିଚି ! ସ୍ପଷ୍ଟତଃ, ଏ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ଥାନ । ରାଜନୀତିକ ତାଡ଼ନା ଯା ହେଉ, ବୁଦ୍ଧିଜୀବୀ ପକ୍ଷରେ ଭୀରୁତା । ଜାତୀୟତାବାଦୀ କଂଗ୍ରେସ୍‌କୁ ଆଶ୍ୱସ୍ତକରିବାକୁ ସ୍ପଷ୍ଟକରିନାହାନ୍ତି ନିଜ ଅସଲ ପରିଚୟ । ମୁଜାଫର୍ ଅହ୍‌ମଦ୍ ଅବଶ୍ୟ ଲେଖିଚନ୍ତି, 'ତିନି ଋରିଜଣଙ୍କୁ ସାଙ୍ଗରେ ଘେନି ମୁଁ ଆଉ ନଜ୍‌ରୁଲ୍ ଖଣ୍ଡିଏ ସାଂଧ ଦୈନିକକାଗଜ କାଢ଼ିଥିଲୁଁ । କାଗଜର ନାଁ ରଖିଥିଲୁଁ *ନବଯୁଗ;* ଲମ୍ବାରେ ୨୭ ଇଞ୍ଚ୍, ଚୌଡ଼ାରେ ୨୦ ଇଞ୍ଚ୍ । ବାହାରିଥିଲା ୧୯୨୦ ସାଲ୍ ବାର ଜୁଲାଇ ଦିନ । (ଦ୍ର. *ଆମାର୍ ଜୀବନ୍ ଓ ଭାରତେର୍ କମିଉନିଷ୍ଟ୍ ପାର୍ଟି*, ପୃ.୮୧ ।) ତରିକୁନ୍ଦ କମିଉନ୍‌ରୁ ମଧ୍ୟ ନବକୃଷ୍ଣ କାଢ଼ିଥିଲେ *ସାରଥି* । ମୁଜାଫର୍ ସାହେବ କିନ୍ତୁ ଲେଖିଚନ୍ତି, "୧୯୨୩ ସାଲେ, ଶ୍ରୀସରସ୍ୱତୀ ପ୍ରେସ୍ ଥେକେ *ସାରଥି* ନାମକ୍ ଏକ୍‌ଖାନି ସାପ୍ତାହିକ୍ ପତ୍ରିକା ବାର୍‌ହୟେଛିଲ । ତାତେ ଶ୍ରୀ ମନୋରଞ୍ଜନ୍ ଗୁପ୍ତ ମାନବେନ୍ଦ୍ରନାଥ୍ ରାୟେର୍ ଜୀବନୀ ଲିଖ୍‌ଛିଲେନ୍ ।" ସେଇ ବହିର ୨୪୫ ପୃଷ୍ଠାରେ ପୁଣି ଲେଖିଚନ୍ତି, ପଞ୍ଜାବର ବିପ୍ଳବୀ ୧୯୧୫ରେ ଲାହୋରରୁ ବାହାରକରିଥିଲେ *କିସାନ୍* ଦୈନିକ କାଗଜ । ତାସ୍‌ଖନ୍ଦ୍‌ରେ ଭାରତର କମିଉନିଷ୍ଟ୍ ପାର୍ଟି ସଂଗଠିତହେବା ପାଞ୍ଚବର୍ଷ ଆଗରୁ । ନବବାବୁଙ୍କ ଉଦ୍ୟମରେ ଏଠି ବାହାରିଚି *କୃଷକ* । କୋଉ ଗୋଟାକହେଲେ ବେଶିଦିନ ବଞ୍ଚିନାହିଁ, କାହିଁକିନା, ସେକାଳର ପରିବହନ ବ୍ୟବସ୍ଥା, ଶ୍ରମଜୀବୀଙ୍କ ସାକ୍ଷରତା ହାର, କୃଷକର କ୍ରୟକ୍ଷମତା- କୌଣସି ଗୋଟାକୁ ହେଲେ ନବକୃଷ୍ଣ ମନେକରିନାହାନ୍ତି ନିୟାମକ । ନେପଥ୍ୟରେ ରହି ବିପ୍ଳବ ଚଳାଇବା ଯେ ପ୍ରହେଳିକାର ଅନୁଧାବନ, ବୁଝିବାବେଳକୁ ନେଡ଼ିଗୁଡ଼ ବହିଯାଇଚି କହୁଣିକୁ ।

କିସାନ୍‌ସଭା ସଂଗଠିତ କରିଚନ୍ତି ପୂରାବସ୍ଥୁର୍; ଅପ୍ରତ୍ୟାଶିତ ସହଯୋଗ ମଧ ପାଇଚନ୍ତି ନିପୀଡ଼ିତ ଚାଷୀମୂଲିଆଙ୍କ ପାଖରୁ; ଏପରିକି, କଂଗ୍ରେସ୍‌ବାଲାଙ୍କ ଭିତରେ ବିବେଚିତହୋଇଚନ୍ତି ଗଣଶ୍ରେଣୀର ଭ୍ୟାନ୍‌ଗାଡ଼ ବା ଅପ୍ରତିଦ୍ୱନ୍ଦ୍ୱୀ ନେତା; ମାତ୍ର ଖିଆଲ୍ କରିନାହାନ୍ତି ଯେ ତାଙ୍କ ସାଙ୍ଗରେ ଥିଲେ ଯେତେ ଲୋକ, ପ୍ରାୟ ସମସ୍ତେ, ଭୂମ୍ୟଧିକାରୀ ଶ୍ରେଣୀର ବଚସ୍କର । ଗୃହଯୁଦ୍ଧ ଆଶଙ୍କାରେ ଗାନ୍ଧି ଗଡ଼ଜାତରେ ଅସହଯୋଗ ଆନ୍ଦୋଳନକୁ ପଶିବାକୁ ଦେଇନାହାନ୍ତି; ଏପରିକି, ମୋଗଲବନ୍ଦିର ଜମିଦାରି ଅଞ୍ଚଳକୁ ବି ପଶିବାକୁ ବାରଣ କରିଚନ୍ତି । ସେ ଅନୁଜ୍ଞା ମାନିନାହାନ୍ତି ନବକୃଷ୍ଣ; ପ୍ରଜାମେଳିରେ ସାମିଲ୍ କରିଚନ୍ତି ନିଜକୁ ଯତ୍ରତତ୍ର; ପ୍ରକାଶ୍ୟ ଜନସଭାରେ ଜମିଦାରଙ୍କୁ ସମ୍ବୋଧନକରିଚନ୍ତି 'ଶଳା'! ଅଥଚ ସମାଜର ଯୋଉ ମୁଖିଆଲୋକ ଆନ୍ଦୋଳନ ଚଳାଇଚନ୍ତି ଏତେକାଳ, ଉତ୍କଳ ସମ୍ମିଳନୀ ବେଳରୁ ତାଙ୍କର ଏକମାତ୍ର ସାହାଭରସା ଥିଲେ ରଜା-ଜମିଦାର । ବୁର୍ଜୋୟା ସହାୟତାରେ ନିପୀଡ଼ିତର ସଂଗ୍ରାମୀ ମୋବିଲାଇଜେସନ୍ ତେଣୁ ଜନ୍ମଲଗ୍ନରୁ ହୋଇଯାଇଚି ରକ୍ତଶୂନ୍ୟ । ବୁଝି ବି ବୁଝିନାହାନ୍ତି ନବକୃଷ୍ଣ; କହିଚନ୍ତି, ଆଉ କିଛି ନହେଉ, ଆଗନ୍ତୁକ ପ୍ରଜନ୍ମ ସକାଶେ ରଖିଦେଇଯିବେ ଆତ୍ମତ୍ୟାଗର ଦୃଷ୍ଟାନ୍ତ ! ବିଚିତ୍ର ଏଇ ବିଘରଜଗତ, ଯୋଉଠି ଦ୍ୱାନ୍ଦ୍ୱିକତା ସ୍ବୀକରେନା ସିଦ୍ଧାନ୍ତ; କଣ୍ଟ୍ରାଡିକ୍ସନ୍ ପ୍ରତିଭାତହୁଏ ଦୃଷ୍ଟିବିଭ୍ରମ (ମାୟା) । ଅନ୍ୟଥା, ଗାନ୍ଧି କି ବିନୋବା ଦିଶିନଥାନ୍ତେ ସତେଅବା ଅବତାର-ପୁରୁଷ ! ବଙ୍ଗଳାରେ ଦେଶୀୟରାଜ୍ୟ ଥିଲାନାହିଁ; ଚିରସ୍ଥାୟୀ ବନ୍ଦୋବସ୍ତ ଜନ୍ମଦେଇଥିଲା ଜମିଦାରିପ୍ରଥାକୁ, ମାତ୍ର ଜାତୀୟତାବାଦୀ ସନ୍ତ୍ରାସ ଜମିଦାରଙ୍କୁ କରିଚି ଇଂରେଜ୍‌ର କିଙ୍କର ଓ ପ୍ରଜାଙ୍କ ଦୃଷ୍ଟିରେ ଘୃଣ୍ୟ । ସେଥିପାଇଁ ଗୋରା ପଲଟଣ କରିଚନ୍ତି ଅଧମତାରଣ । ପୁଣି, ସେଠିଥିଲା ଫ୍ରି ପ୍ରେସ୍ ଓ ଏକ ସଂହତ ଶିକ୍ଷିତ ମଧ୍ୟଶ୍ରେଣୀ । ଯାକୁ ଯଦି ବିପ୍ଳବର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ ଗଣ୍ୟକରାଯାଏ, ଓଡ଼ିଶାରେ ତା'ର ଅନୁପସ୍ଥିତି ସଂଗ୍ରାମର ବ୍ୟର୍ଥତା ସକାଶେ ଅନେକାଂଶରେ ଦାୟୀ । ଏପରିକି, ଓଡ଼ିଶାର ଆଦିବାସୀବହୁଳ ଅଞ୍ଚଳ ସମତଟଠାରୁ ଏବେ ବି ରହିଚି ବିଚ୍ଛିନ୍ନ, ଭାଷାଗତ ସଂହତି ଦୃଢ଼ହୋଇନାହିଁ ବୋଲି, ପଶ୍ଚିମାଞ୍ଚଳର ଲୋକ ତଟବର୍ତ୍ତୀ ଅଞ୍ଚଳର ଲୋକଙ୍କ ସହିତ ଏକାତ୍ମ ହୋଇନାହାନ୍ତି । ଏତେ ପ୍ରତିକୂଳତା ସତ୍ତ୍ୱେ କେବଳମାତ୍ର ବିପ୍ଳବୀ ଉନ୍ମାଦନାକୁ ସମ୍ବଳକରି ସଂଘର୍ଷରେ ଲିପ୍ତହେବା ଦୁଃସାହସିକତା ନିଶ୍ଚୟ; ଅଥଚ ତରିକୁନ୍ଦର କମିଉନ୍ ଯଦି ସ୍ଥାୟୀ ହୋଇପାରିଥାନ୍ତା, ଯଥାକାଳେ ଫିଟିଥାନ୍ତା ଅନ୍ଧାରରୁ ଆଲୁଅକୁ ଆସିବା ବାଟ । କିନ୍ତୁ ନବକୃଷ୍ଣ ଏକାହାତରେ ସମ୍ଭାଳିବାକୁ ଚାହିଁଚନ୍ତି ହରେକ୍ ରକମ କାମଦାମ । ଏକାଗ୍ରତା ବାଧାପାଇଚି । କଲିକତା ଯାଇଥିଲେ ୧୯୨୫ରେ; ମାତ୍ର କୋଡ଼ିଏବର୍ଷ ବ୍ୟବଧାନରେ ବନିଗଲେ ମନ୍ତ୍ରୀ; ସିଭିଲ୍ ସୋସାଇଟି ପଡ଼ିରହିଲା

ପଛରେ । ଅଥଚ କର୍ମଧାରା ସ୍ଥିରକରିବାକୁ ଭୂପେନ୍ ଦତ୍ତ ଆମେରିକା-ଇଉରୋପ୍‌ରେ କଟେଇଚନ୍ତି ଦୀର୍ଘ ସତରବର୍ଷ । ପ୍ରସ୍ତୁତିପର୍ବ । ପରିବର୍ତ୍ତନର କାମନା ଯେ ଖାଲି ଯଥେଷ୍ଟ ନୁହେଁ, ପ୍ରୟୋଜନ ପ୍ର୍ୟାକ୍‌ସିସ୍, ସ୍ୱାଧୀନତା-ସଂଗ୍ରାମୀ ନବକୃଷ୍ଣଙ୍କ ମନନରେ ଧରାପଡ଼ିନାହିଁ । ତାଙ୍କ ଜୀବନବ୍ୟାପୀ ଅଧ୍ୟବସାୟକୁ ଲକ୍ଷ୍ୟକଲେ ଯୋଉ ଗୋଟିଏ ଅଭାବ ପ୍ରକଟ ହୋଇଉଠେ, ତା ଅବଶ୍ୟ ଡାୟଲେକ୍‌ଟିକ୍ସ-ର ଅଭାବ । ଭଗବତୀବାବୁ ଡାୟଲେକ୍‌ଟିକ୍ସ ବୁଝିଥିଲେ ବୋଲି ଆକ୍ରମଣକରିଚନ୍ତି ଭାବବାଦ ଓ ଈଶ୍ୱରବିଶ୍ୱାସକୁ । ମାତ୍ର, ନବକୃଷ୍ଣ ଘାଣ୍ଟିପକାଇଚନ୍ତି ଗାନ୍ଧିଙ୍କ ଭାବବାଦ ଓ ଭଗବାନ ସାଙ୍ଗରେ ଲେନିନ୍‌ଙ୍କ ବସ୍ତୁବାଦ ଓ ନାସ୍ତିକ୍ୟକୁ। ସେ ପାଚନ ଯେ ଆଦୌ ପୁଷ୍ଟିକର ନୁହେଁ, ଜୀବନର ଗୋଧୂଳିରେ ଉପଲବ୍ଧିକରିଚନ୍ତି ହୁଏତ, ମାତ୍ର ସ୍ୱୀକାର କରିନାହାନ୍ତି । ଆତ୍ମଖଣ୍ଡନରେ ଘାରିହୋଇ ଏକ୍ସପେରିମେଣ୍ଟ୍ କରିଚନ୍ତି ନାନାଦି ପ୍ରକାର, କିନ୍ତୁ ଫଳ ହୋଇଚି ରବୀନ୍ଦ୍ରନାଥ କହିବା ପରି, 'କେବଲ୍‌ଇ ସ୍ୱପନ କରେଛି ବପନ ଆକାଶେ ଆମି' ! ଲେନିନ୍ ଗୋଟାଏ ରାଷ୍ଟ୍ର ବସାଇଦେଇଗଲେ ବିପ୍ଳବ ମାଧ୍ୟମରେ, ସମାଜତନ୍ତ୍ରକୁ ପ୍ରତିଷ୍ଠାଦେଇଗଲେ ସିଭିଲ୍ ସୋସାଇଟିରେ, କ୍ୟାପିଟାଲିଜ୍ମର ସ୍ୱାଭାବିକ ଗନ୍ତବ୍ୟ ଯେ ସାମ୍ରାଜ୍ୟବାଦ ଓ ବିଶ୍ୱବ୍ୟାପୀ ବଜାର, ସେ ସତର୍କବାଣୀ ମଧ୍ୟ ମୁଣାଇଦେଇ ଗଲେ ମାନବପ୍ରଜାତିକୁ । ପକ୍ଷାନ୍ତରେ, ଗାନ୍ଧିଙ୍କ ଅବଦାନ ହେଲା ଧର୍ମୀୟ ଭିତ୍ତିରେ ଭାରତର ବିଭାଜନ ଓ ସେଇ ବିଭାଜନକୁ ମଝିରେ ରଖି କ୍ଷମତା-ହସ୍ତାନ୍ତର । ସେଇ କ୍ଷମତା-ହସ୍ତାନ୍ତରକୁ କହୁଛୁଁ 'ସ୍ୱାଧୀନତା' । ଅହିଂସା କି ଅସହଯୋଗ ସ୍ୱାଧୀନତା ଆଣିନାହିଁ, ଇଂରେଜ୍ ନିଜେ ନିଜେ ପଳାଇଯାଇନଥିଲେ, ଆସିନଥାନ୍ତା କଦାପି । ନବକୃଷ୍ଣଙ୍କ ଭଳି ବିଚକ୍ଷଣ ମଣିଷ କଣ ତଫାତ୍‌ଟା ବୁଝିନଥିଲେ ? ବୁଝିଥିଲେ ସୁଦ୍ଧା, ଦ୍ୱିଧାଶୂନ୍ୟ ପରିଚ୍ଛନ୍ନ ବିଶ୍ୱବୀକ୍ଷା ନିର୍ମାଣ କରିପାରିନାହାନ୍ତି । କିନ୍ତୁ ଦୋଷ-ଗୁଣ ତଉଲକରିବା ଏଠି ଉଦ୍ଦେଶ୍ୟ ନୁହେଁ; ଖାଲି ଦେଖାଇଦେବାକୁ ଚାହେଁ ପରିବର୍ତ୍ତନକାମୀ ପରାର୍ଥବାଦୀ ଝୁଣ୍ଟିପଡ଼ିବାର ସମ୍ଭାବନା ରହିଚି କେତେ ଜାଗାରେ । କୃଷକ-ସମସ୍ୟାର ସମାଧାନ : ଉତ୍ପାଦନର ମୌଳିକ ସାଧନ ଜଲ-ଜଙ୍ଗଲ-ଜମି ଉପରେ ସାମାଜିକ ନିୟନ୍ତ୍ରଣ; ଏଗୁଡ଼ିକୁ ବ୍ୟକ୍ତିଗତ ମାଲିକାନାରୁ କାଢ଼ିଆଣି, ଉପଯୋଗ ଉପରେ ରାଷ୍ଟ୍ରର କର୍ତ୍ତୃତ୍ୱ ପ୍ରତିଷ୍ଠା । ଦେଶ ସ୍ୱାଧୀନହେବା ଉତାରୁ କାମଟା ସହଜରେ କରିହୋଇଥାନ୍ତା ସେତେବେଳେ । ମାତ୍ର ବୁର୍ଜୋୟା ନେତୃତ୍ୱ ଦରିଦ୍ର ନିରକ୍ଷର ଚାଷୀ ହାତରେ ଭୋଟ୍‌କାଗଜ ଧରାଇଦେଇ ଜୀବନର ଅଧିକାର କାଢ଼ିନେଲା । 'ମହାତ୍ମା' ବିବେଚିତ ଗାନ୍ଧି ମଧ୍ୟ ଗ୍ରହଣକଲେ ଦେଖଣାହାରୀର ଭୂମିକା; ମାଲିକଗୁଡ଼ାକ ତ ତାଙ୍କ ଦୃଷ୍ଟିରେ ସମ୍ପତ୍ତିର ଜଗୁଆଳି ମାତ୍ର ! ଆଗରପଡ଼ା ଜମିଦାର ମହତାବ୍‌ଙ୍କୁ ଭୂଦାନ ତେଣୁ ଦିଶିଚି 'ଦାରିଦ୍ର୍ୟ ବଣ୍ଟନ' । ବାକି କାମଗୁଡ଼ାକ ତ 'ରଚନାତ୍ମକ କାର୍ଯ୍ୟକ୍ରମ' !

ରାଜସ୍ୱମନ୍ତ୍ରୀ ନବକୃଷ୍ଣ କିନ୍ତୁ ୧୯୪୬ରେ କଂଗ୍ରେସ୍ ପାର୍ଟିର ଜିଲ୍ଲା-କମିଟିମାନଙ୍କୁ ଲେଖିଛନ୍ତି :

"ପରାଧୀନତାର ଅପମାନ ଯେଉଁମାନଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଥିଲା, ସ୍ୱାଧୀନତା ପାଇଁ ଲଢ଼ିବା ସେମାନଙ୍କର ସବୁଠାରୁ ଜରୁରୀ କାମ ଥିଲା । ଯେଉଁମାନେ ଭାବୁଚନ୍ତି ଯେ, ମନୁଷ୍ୟସମାଜକୁ ଦୁଃଖଦାରିଦ୍ର୍ୟ ଓ ଯୁଦ୍ଧବିପର୍ଯ୍ୟୟରୁ ରକ୍ଷାକରିବା ପାଇଁ ଓ ମାନବସଭ୍ୟତାର ଉତ୍ତରୋତ୍ତର ବିକାଶ ସମ୍ଭବପର କରିବା ପାଇଁ ଦୁନିଆର ମାର୍କ୍ସକଳ୍ପିତ ବା ଗାନ୍ଧିକଳ୍ପିତ ସାମ୍ୟବାଦ ପ୍ରତିଷ୍ଠା କରିବାକୁ ହେବ, ସେମାନେ ପରାଧୀନତାକୁ ତାଙ୍କ ରାସ୍ତାରେ ସବୁଠାରୁ ବଡ଼ ବାଧା ବୋଲି ଭାବୁଥିଲେ ଓ ତାଙ୍କର ମଧ୍ୟ ସ୍ୱାଧୀନତା ପାଇଁ ଲଢ଼ିବା ସବୁଠାରୁ ଜରୁରୀ କାମ ଥିଲା । ବର୍ତ୍ତମାନ ଯେତେବେଳେ ସେ କାମଟି ପୂରା ହେଲା ବା ହେବା ଉପରେ, ସେତେବେଳେ ସମସ୍ତଙ୍କ ଆଗରେ ପ୍ରଶ୍ନ ଉଠୁଚି-ଏହାପରେ କେଉଁ କାମ ଆଗ ?

"ଆମେ ଯଦି ଆମ ସ୍ୱାଧୀନତା ଜାତୀୟ ଏକତା ବଳରେ ଓ ଗାନ୍ଧିଜୀଙ୍କ ପ୍ରଦର୍ଶିତ ସବଳର ଅହିଂସା ବଳରେ ହାସଲ କରିଥାନ୍ତୁ, ତାହେଲେ ଏ ପ୍ରଶ୍ନର ଉତ୍ତର ସହଜ ହୋଇଥାନ୍ତା- ରାଜନୀତିକ ସ୍ୱାଧୀନତା ହାସଲ କରିବାରେ ଜନସାଧାରଣଙ୍କ-ଦେଶର ଶ୍ରମିକ ଓ କୃଷକଙ୍କ ଅର୍ଥନୀତିକ ଓ ସାମାଜିକ ସ୍ୱାଧୀନତା ହାସଲକରିବା କାମ ଆଗକାମ ହୋଇଥାନ୍ତା । କାହିଁକିନା ଆମେ ଯେଉଁ ସ୍ୱରାଜ ଚାହୁଁ, ସେ ସ୍ୱରାଜରେ ଧନୀଶ୍ରେଣୀର ସମାଜକୁ ଶୋଷଣକରିବାର ଅବକାଶ ରହିବନାହିଁ । ଇଂରେଜ୍ ଶାସନ ଲୋପପାଇବା ପରେ ସେହିପରି ସ୍ୱରାଜ ଗଢ଼ିବାରେ ଆମର ସମସ୍ତଙ୍କର ଲାଗିବାର କଥା । ଦେଶରେ ଯେଉଁ ନେତାମାନେ ଶାସନଭାର ନେଇଚନ୍ତି ସେମାନେ ଆଇନ୍ ଓ ସରକାରୀ ବ୍ୟବସ୍ଥା ଦ୍ୱାରା ସବୁ ପ୍ରକାର ଶୋଷଣ ଦୂର କରନ୍ତେ ଓ ଦେଶର ଜନସାଧାରଣ ଏହି ପୁନର୍ଗଠନ କାର୍ଯ୍ୟରେ ତାଙ୍କୁ ପୂର୍ଣ୍ଣ ସହଯୋଗ କରନ୍ତେ । ଯେଉଁମାନେ ଶାସନ ଭାର ନେଇଚନ୍ତି, ସେମାନେ ସେ କାର୍ଯ୍ୟରେ ହେଳାକଲେ, ଜନସାଧାରଣଙ୍କ କାମ ହୁଅନ୍ତା ପ୍ରଜାତନ୍ତ୍ର ବିଧାନ ଅନୁସାରେ ସେମାନଙ୍କୁ କାଢ଼ି ସରକାର ଗଢ଼ିବା ।

"ବାସ୍ତବରେ କିନ୍ତୁ ହେବ କି ?"

ମାର୍କ୍ସକଳ୍ପିତ ସାମ୍ୟବାଦ ସମଗ୍ର ମାନବଜାତିର ଐତିହାସିକ ଉତ୍ତରଣ ପ୍ରତି ଉଦ୍ଦିଷ୍ଟ; ଏବଂ କଥାଟା ସର୍ବଜନ ବିଦିତ; ମାତ୍ର ଗାନ୍ଧିକଳ୍ପିତ ସାମ୍ୟବାଦ ନିର୍ଦ୍ଦିଷ୍ଟ କି ଜିନିଷ, ଇତିହାସର କୋଉ ପର୍ଯ୍ୟାୟରେ ତାର ଆଭାସ ରହିଚି, ନବକୃଷ୍ଣ ଫିଟାଇ କହିନାହାନ୍ତି । ମାତ୍ର କ୍ଷୋଭ ପ୍ରକାଶକରିଚନ୍ତି ଯେ ଜାତୀୟ ଐକ୍ୟ କିମ୍ବା 'ଗାନ୍ଧିଜୀଙ୍କ ପ୍ରଦର୍ଶିତ ସବଳର

ଅହିଂସା' ଦେଶକୁ ସ୍ୱାଧୀନ କରିନାହିଁ । ତା'ହେଲେ, କୋଉ ଅବାଞ୍ଛିତ ଉପାୟରେ ଆସିଚି ସ୍ୱାଧୀନତା ଯା ଫଳରେ ଧନୀଶ୍ରେଣୀ ସମାଜକୁ ଶୋଷଣକରିବାକୁ ଅବକାଶ ପାଇଚି ? ରୋଗର ନିଦାନ ଯଦି ଝୁଠା ଆଜାଦି, 'ବାସ୍ତବରେ କିନ୍ତୁ ହେବ କି ?' ଭଳି ପ୍ରଶ୍ନ କେବଳ କୁମ୍ଭୀରାଶ୍ରୁ ବିସର୍ଜନ, ଆଉ, 'ସବଳର ଅହିଂସା' ସତେ ଅବା ଆମ ସ୍ତ୍ରୀଲୋକଙ୍କ ସୁନାକାଚ ! କଣ୍ଟ୍ରାଡିକ୍ସନ୍ ଇନ୍ ଟରମ୍ସ୍ । କ୍ଷମତା-ହସ୍ତାନ୍ତରର ପ୍ରାକ୍-ମୁହୂର୍ତ୍ତରେ ତେଣୁ ନବକୃଷ୍ଣ ଉପଲବ୍ଧି କରିସାରିଚନ୍ତି ବୁର୍ଜୋୟା ବିପ୍ଳବର ବ୍ୟର୍ଥତା । ତେଣୁ କ୍ଷମତା ବଳରେ ଧନୀଶ୍ରେଣୀର ଶୋଷଣକୁ ଓଗାଳିବାକୁ କରିଚନ୍ତି କୁଣ୍ଠିତ ପ୍ରୟାସ । ସେଇ କାମ କରୁଚନ୍ତି ଏକ୍ଷଣି କମିଉନିସ୍ଟ । ମାତ୍ର ଅନତିବିଳମ୍ବେ ପାର୍ଲାମେଣ୍ଟାରି ରାଜନୀତିରୁ ତୁଟିଯାଇଚି ନବକୃଷ୍ଣଙ୍କ ଆସ୍ଥା; ଆତୁରହୋଇ ସମର୍ଥନକରିଚନ୍ତି ସଶସ୍ତ୍ର ପ୍ରତିରୋଧ । ଯୋଉ ରାଷ୍ଟ୍ରଯନ୍ତ୍ରର ଥିଲେ ଆବଶ୍ୟକ ଅଂଶ, ସେଇ ରାଷ୍ଟ୍ର ପ୍ରତିଭାତହୋଇଚି ନିଷ୍ପେସିତର ଶ୍ରେଣୀଶତ୍ରୁ । ନିର୍ବାଚିତ ପ୍ରତିନିଧି କର୍ତ୍ତବ୍ୟରେ ଅବହେଳା କଲେ ଲୋକ recall ଅଧିକାର ପ୍ରୟୋଗକରିବେ— ଏପରି ଆଶା ମଧ ପୋଷଣକରିଚନ୍ତି । ସେ ଅଧିକାର ତାଙ୍କୁ ସମ୍ବିଧାନ ଦେଇନାହିଁ; ଅଥଚ ପରାଧୀନତା ଯାହାଙ୍କୁ ଅସହ୍ୟ ବୋଧହୋଇଚି, ସିଏ ବି ଲୋକଙ୍କୁ ପ୍ରସ୍ତୁତ କରିନାହାନ୍ତି ଏଭଳି ଦାବି ଉପସ୍ଥାପିତ କରିବାକୁ; ସମ୍ଭବତଃ ଦେଶର ରାଜନୀତିକୁ ପ୍ରେରିତକରୁଚି ଯେହେତୁ 'ସବଳର ଅହିଂସା' ! ସତ୍ୟାଗ୍ରହୀଙ୍କ ଭିତରେ ଯିଏ ଥିଲେ ଅସ୍ପୃଶ୍ୟ, ଜେଲ୍ ଯିବାର କାରଣ କହିଚନ୍ତି, ସ୍ୱରାଜ ଆସିଲେ ଚୌକିଦାର ଚାକିରୀ ପାଇବେ ! ଗାନ୍ଧିବାଣୀ ଶୁଣାଇ ଗାଁକୁ ଗାଁ ବୁଲିବା ବେଳେ ରମାଦେବୀଙ୍କୁ ସ୍ତ୍ରୀଲୋକ ପଚାରିଚନ୍ତି, ସେମାନେ କି ଉପକାର ପାଇବେ ? ନେତ୍ରୀ କିନ୍ତୁ ହୋମିଓପ୍ୟାଥି ଔଷଧ ବାଣ୍ଟିଚନ୍ତି । ଏଇ ସଂଗ୍ରାମୀ ଏକ୍ଷଣି ପାଉଚନ୍ତି ମାସକୁ ପନ୍ଦର ହଜାର ଟଙ୍କା ପେନ୍‌ସନ୍; ଚାଷୀ ତନ୍ତୀ ଆତ୍ମହତ୍ୟା କରୁଚନ୍ତି । କାହିଁକିନା, ସ୍ୱାଧୀନତା ଆଣିଚି ବାସ୍ତବରେ ଦେଶକୁ ଧର୍ମଭିତ୍ତିରେ ଦି'ଖଣ୍ଡକରି, ଜାତୀୟ ଏକତା ବଳରେ ନୁହେଁ । ଏଇ ସଙ୍କଟର ସମ୍ମୁଖୀନହେଲେ ଯେତେବେଳେ ନବକୃଷ୍ଣ, ଅବସ୍ଥାନ ବିଷୟରେ ସ୍ଥିର ସିଦ୍ଧାନ୍ତରେ ଉପନୀତହେବା ଥିଲା ଜରୁରୀ କର୍ତ୍ତବ୍ୟ; ମାତ୍ର ସୁଅ ମୁହଁରେ କୁଟାଖିଅ ପରି ଦିହ ଭସାଇଦେଲେ ଅବ୍ୟବସ୍ଥିତଚିତ୍ତ ବିପ୍ଳବୀ । ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କଂଗ୍ରେସ୍-ସୋସାଲିଷ୍ଟ, ସର୍ବୋଦୟ ଆନ୍ଦୋଳନର ସର୍ବଭାରତୀୟ ନେତା, କଣ ହୋଇନାହାଁନ୍ତି ନବକୃଷ୍ଣ ? ମାତ୍ର ସ୍ରୋତବିରୋଧରେ ପହଁରିବାକୁ ଯାଇ ହୋଇଯାଇଚନ୍ତି ନିଃସଙ୍ଗ । ହାରିଯାଇ ନାହାଁନ୍ତି; ବାରମ୍ବାର ଲମ୍ଫଦେଇଚନ୍ତି ବଢ଼ିପାଣି ଭିତରକୁ, କିନ୍ତୁ ଉଦ୍ଧାରକରି ପାରିନାହାଁନ୍ତି ଭାସି ଯାଉଥିବା ମଣିଷକୁ । କ୍ରୋଧରେ ଅନ୍ଧହୋଇ ଛିଡ଼ାଇପକାଇଚନ୍ତି ସମସ୍ତ ପୁରାତନ

ବନ୍ଧନ, ଯୋଡ଼ିଦେଇଚନ୍ତି ଆଗରେ ପଛରେ ଗଢ଼ିଥିଲେ ଯେତେ ସେତୁବନ୍ଧ । ଭାରତର ରାଜନୀତିରେ ବୟସ ସ୍ୱାସ୍ଥ୍ୟ ଶୋକ ଓ ଦୈନ୍ୟକୁ ଭ୍ରୂକ୍ଷେପ ନକରି ଆବିର୍ଭୂତହୋଇଚନ୍ତି ଅଭାବନୀୟ ଆନାର୍କିଷ୍ଟ୍ । ଉଦ୍ଧୃତ ଚିଠିରେ ସଂଗ୍ରାମର ଉଦ୍ଦେଶ୍ୟ କହିଚନ୍ତି, 'ମନୁଷ୍ୟସମାଜକୁ ଦୁଃଖଦାରିଦ୍ର୍ୟ ଯୁଦ୍ଧବିପର୍ଯ୍ୟୟରୁ ରକ୍ଷାକରିବା ପାଇଁ ଓ ମାନବସଭ୍ୟତାର ଉତ୍ତରୋତ୍ତର ବିକାଶ ସମ୍ଭବପର କରିବାପାଇଁ...' । ସ୍ପଷ୍ଟତଃ, ଲକ୍ଷ୍ୟ ଏଠି ମାନବସମାଜ ଓ ମାନବସଭ୍ୟତା, କ୍ଷୁଦ୍ର ଓଡ଼ିଶା ଉପଲକ୍ଷ୍ୟ ମାତ୍ର । ଅର୍ଥାତ୍, ରାଜନୀତିକ ସ୍ୱାଧୀନତା ହାସଲହେବା ଉତ୍ତାରୁ ନବକୃଷ୍ଣ ଛାଡ଼ିଦେଇଚନ୍ତି ଜାତୀୟତାବାଦ ଭାବାଦର୍ଶ;ଏକା ନିଶ୍ୱାସରେ ଯୋଡ଼ିଦେଇଚନ୍ତି ମାର୍କ୍ସଙ୍କ ସାଙ୍ଗରେ ଗାନ୍ଧିଙ୍କୁ । ଜିଲ୍ଲାକଂଗ୍ରେସ୍ ତାଙ୍କ କଥାର ମର୍ମ ବୁଝିନଥିଲେ ନିଶ୍ଚୟ, ମାତ୍ର ଅନୁଚରଙ୍କ ଅଯୋଗ୍ୟତା ତାଙ୍କୁ ବିବ୍ରତ କରିନାହିଁ । ଗଧକୁ ଘୋଡ଼ାକରିବାକୁ ଚେଷ୍ଟାକରିଚନ୍ତି ସବୁବେଳେ, ପରିଣାମ ଯଦିଓ ସୁଖକର ନୁହେଁ । ଏକାରକମ ସଂକଟରେ ପଡ଼ି ଆନ୍ତୋନିୟ ଗ୍ରାମ୍‌ସି ଆବିଷ୍କାରକରିଚନ୍ତି 'ଜୈବିକ ବୁଦ୍ଧିଜୀବୀ' (ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ୍) ପ୍ରତୀତି । ଏବଂ ଦେଖିଚନ୍ତି, ଧନୀଶ୍ରେଣୀ ଯେ ସମାଜକୁ ଦୋହନ କରୁଚି, ତା ଏକ ସର୍ତ୍ତାଧୀନ ତଥ୍ୟ; କାହିଁକିନା, ଧନୀ ଓ ନିର୍ବିତ୍ତ ମଝିରେ ରହିଚି ପରିବ୍ୟାପ୍ତ ଏକ ମଧ୍ୟଶ୍ରେଣୀ, ସ୍ୱାଧୀନ ଭାରତରେ ଘଟିଚି ଯାର ଉତ୍ତରୋତ୍ତର ବିକାଶ । ନିର୍ବାଚନରେ ଯିଏ ପ୍ରତିଦ୍ୱନ୍ଦ୍ୱିତା କରନ୍ତି, କୃଷକ-ଶ୍ରମିକଙ୍କ ଦ୍ୱାରସ୍ଥ ହୁଅନ୍ତିନାହିଁ, ଲୋଡ଼ନ୍ତି ଏଇ ମଧ୍ୟଶ୍ରେଣୀର ସମର୍ଥନ । ଏବଂ ମଧ୍ୟଶ୍ରେଣୀ, ବର୍ଷା ଯୁଆଡ଼େ ଛତା ସିଆଡ଼େ ନ୍ୟାୟରେ, କେତେବେଳେ ନିର୍ବିତ୍ତ ସାଙ୍ଗରେ ମେଣ୍ଟବାନ୍ଧେ ତ କେତେବେଳେ ଧନୀଶ୍ରେଣୀ ସାଙ୍ଗରେ । ନବକୃଷ୍ଣ ମଧ୍ୟସ୍ୱତ୍ୱାଧିକାରୀଙ୍କୁ ଲୋପ କରିଦେଲେ; ତାଙ୍କ ଜାଗାରେ କିନ୍ତୁ ଗଜେଇ ଉଠିଲେ ଏଇ ନୂତନ ମଧ୍ୟଶ୍ରେଣୀ । 'ଧନୀଶ୍ରେଣୀର ସମାଜକୁ ଶୋଷଣ କରିବାର ଅବକାଶ ରହିବନାହିଁ' ପ୍ରତ୍ୟାଶାଟା ତେଣୁ ତାଙ୍କ ଜୀବଦଶାରେ ହିଁ ହୋଇଯାଇଚି ଧୂଆଁବାଣ । ସେଇ ପରିସ୍ଥିତିରେ ଶ୍ରେଣୀସଂଗ୍ରାମର ସମ୍ଭାବନା ଥିଲା ଉଜ୍ଜ୍ୱଳ, ମାତ୍ର ଶ୍ରେଣୀବିଦ୍ୱେଷର ବିଷଦାନ୍ତଟାକୁ ଉପାଡ଼ିପକାଇଚି ରାଷ୍ଟ୍ରସମର୍ଥନରେ ସଂଗଠିତ ବିନୋବା ଭାବେଙ୍କ ଭୂଦାନଯଜ୍ଞ । ସେଇ ଯଜ୍ଞର ସୂତ୍ରପାତ ଓଡ଼ିଶାରେ କରିଥିଲେ ସ୍ୱୟଂ ମୁଖ୍ୟମନ୍ତ୍ରୀ । ମୋହଭଙ୍ଗ ଘଟିଲା ଯେତେବେଳେ, ଅଭବ୍ୟ ଭାଷାରେ ବିନୋବାଙ୍କୁ ତିରସ୍କାରକରିଚନ୍ତି; ମାତ୍ର ସନ୍ଥ ତ ମୂଳରୁ କହିଥିଲା, କାମଟା ସକଳ ଅର୍ଥରେ 'ଯଜ୍ଞ', ଜମି ସେଥିରେ ଆହୁତି ମାତ୍ର । ଧର୍ମଭାବରେ ଅନୁପ୍ରାଣିତହୋଇ ଯିଏ ଜମି ଦେବ, ଦେଉ; ଯିଏ ନଦେବ, ନଦେଉ । ହିନ୍ଦୁ ଛଡ଼ା ଦାନଯଜ୍ଞ ଆଉକାହାରି ସକାଶେ ବିଶେଷ ଅର୍ଥ ବହନକରେନା; ତଥାପି ନବକୃଷ୍ଣ ବସିଲେ ଯାଇ ସେଇ

ପଙ୍ଗତରେ; ଶେଷକୁ କହିଲେ, ସଂଗ୍ରାମ ନୁହେଁ, ବ୍ୟାପାରଟା ସଂକୀର୍ତ୍ତନ । 'ଆମି ସ୍ୱଖାତ ସଲିଲେ ଡୁବେମରି ଶ୍ୟାମା, ଦୋଷ୍ କାର ନାଇ ଗୋ ମା !'

ଡାୟଲେକ୍‌ଟିକ୍ସରେ, ନବକୃଷ୍ଣ ଜାଣନ୍ତି, ବିମୂର୍ତ୍ତତାର ସ୍ଥାନନାହିଁ, ମାନବେତିହାସରେ ଯୋଉ ପ୍ରତ୍ୟୟର ସମାନ୍ତରାଳ ନିଦର୍ଶନ ନାହିଁ, ଦ୍ୱାନ୍ଦ୍ୱିକତା ତାକୁ ମୂଳରୁ ଅମଳ ଦିଏନା, ଏବଂ ଭାରତ ଇତିହାସର ଦୃଷ୍ଟାନ୍ତ ହେଲା: ବିନା ଯୁଦ୍ଧେ ନଛାଡ଼ିବି ସୂଚ୍ୟଗ୍ର ମେଦିନୀ । ନବକୃଷ୍ଣ କିନ୍ତୁ ଭାବିଲେ, ଲସରପସରହୋଇ ବିନୋବା ଯାଇ ଦୁଆରମୁହଁରେ ଠିଆହୋଇପଡ଼ିବେ, ଭକ୍ତିରେ ବିଗଳିତ ମାଲିକ ଭୂମିହୀନଙ୍କ ନାଁରେ ଜମି ଲେଖିଦେବ ! ଇତିହାସରେ ଯଦି ଏଭଳି ଘଟଣା କେବେହେଲେ ଘଟିନାହିଁ, ଯୁକ୍ତିବାଦୀ ନବକୃଷ୍ଣ କାହିଁକି ଭାବିଲେ, ବିନୋବା ଘଟାଇଦେବେ ଅଘଟଣ ? ସନ୍ଦେହ ହୁଏ, ଅଲୌକିକ ଆଧ୍ୟାତ୍ମିକ ଶକ୍ତି ଉପରେ ଜନ୍ମିଥିଲା ବିଶ୍ୱାସ, ଯେପରି ଜୟପ୍ରକାଶ ସତ୍ୟସାଇ ବାବାଙ୍କୁ ଭାବୁଥିଲେ ଈଶ୍ୱରଙ୍କ ଅବତାର । ବହୁ ବ୍ୟର୍ଥତାରେ ମୁହ୍ୟମାନ ବିପ୍ଳବୀ ହୁଏତ ଆତ୍ମବିଶ୍ୱାସ ହରାଇ ବସିଥିଲେ, କାହିଁକିନା, ବୃଦ୍ଧବୟସରେ ଦରକାରଥିଲା ନଗଦ ସାଫଲ୍ୟ; ଅଥଚ ଇତିହାସରୁ ଦେଖିହେବ, ନଗଦ ସାଫଲ୍ୟ କଦାପି ବା କୁତ୍ରାପି ସ୍ଥାୟୀ ହୋଇନାହିଁ । ପ୍ରମିଇଥ୍ୟୁସ୍ ଯେତେବେଳେ ଦେଖିଚନ୍ତି ପବିତ୍ର ଅଗ୍ନି : "ଦେଶବ୍ୟାପୀ ନୈରାଶ୍ୟ ହତାଶା ଓ ଅତିତୁଚ୍ଛ ସ୍ୱାର୍ଥାନ୍ୱେଷୀ ସୁବିଧାବାଦ ଯେତେବେଳେ ଦେଶକୁ ଘୋର ଅନ୍ଧକାରରେ ମାଡ଼ିଦେବାକୁ ବସିଲା, ସେତେବେଳେ ଆଉକିଛି ନାହିଁ, କେବଳମାତ୍ର ସାଙ୍କେତିକ ବିପ୍ଳବର, ମାନବାତ୍ମାର ବିଦ୍ରୋହର, ନିଆଁଜାଳିଥିଲେ ତଥାକଥିତ ନକ୍ସଲପନ୍ଥୀମାନେ। ସେଥିରେ ନଥିଲା ବୁଦ୍ଧି, ନଥିଲା ଆଗପଛ ବିଚାର—କେବଳମାତ୍ର ତାରୁଣ୍ୟର ଅନ୍ଧବିଦ୍ରୋହ । ଆଉକିଛି ନହେଉ, ଲୋକଙ୍କର ସାମାନ୍ୟ ଚେତା ପଶିଲା । ପାର୍ଲାମେଣ୍ଟାରୀ ରାଜନୀତି ଫିକାପଡ଼ିଗଲା। ଆମ ସର୍ବୋଦୟବାଲାଙ୍କ ଗ୍ରାମଦାନ ନାମସଂକୀର୍ତନ ମଧ୍ୟ ତାଳଦେଇ ପାରିଲାନାହିଁ । କିନ୍ତୁ ଅସଲ ପ୍ରଶ୍ନ ହେଉଚି ଚେତନାକୁ କାର୍ଯ୍ୟକାରୀ କରାଯିବ କିପରି ? ଏହି ପ୍ରଶ୍ନ ଏଡ଼େ କଠିନ ପ୍ରଶ୍ନ ଯେ ଏହାର ସାମନାରେ ନକ୍ସଲପନ୍ଥୀଙ୍କର ବୁଦ୍ଧି ବଣା ହେଲାଣି ।..." ନବକୃଷ୍ଣ ତେଣୁ ନିଶ୍ଚିତ ଯେ ପାର୍ଲାମେଣ୍ଟାରି ପଦ୍ଧତିରେ ସମାଜରେ ମୌଳିକ କୋଉ ପରିବର୍ତ୍ତନ ଆସିପାରିବନାହିଁ । ଅଥଚ ନକ୍ସଲପନ୍ଥୀ ଯା କରୁଚନ୍ତି, ତା କେବଳ 'ସାଙ୍କେତିକ ବିପ୍ଳବ' । ତଥାପି, ସେ ସଙ୍କେତ ସୂଚନାକରୁଚି 'ମାନବାତ୍ମାର ବିଦ୍ରୋହ' । ନବକୃଷ୍ଣଙ୍କ 'ମାନବ' କୋଉ ନିର୍ଦ୍ଦିଷ୍ଟ ନିଷ୍ପେଷିତ ଜନଗୋଷ୍ଠୀ ନୁହେଁ, ବିଶ୍ୱଜନୀନ ଏକ ପ୍ରତୀତି ଯା ସ୍ଥାନ-କାଳ ସୀମା ମାନେନା । ସେଇ ମାନବର ବିଦ୍ରୋହ ଯୋଉ ଚେତନାରୁ ଉତ୍ସାରିତ, କାମନାକରିଚନ୍ତି, ସେ

ଚେତନା ହେବ ଫଳପ୍ରଦ । ତାରୁଣ୍ୟର ଅନ୍ଧବିଦ୍ରୋହରେ ସରିଯିବନାହିଁ । କିନ୍ତୁ କି ଉପାୟରେ ? "ମୋର ବିଶ୍ୱାସ, ଭାରତର ତରୁଣ ସେ କେଉଁ ରାଜନୀତିକ ଦଳରେ ଥାଉନା କାହିଁକି ବା ଦଳମୁକ୍ତ ହୋଇଥାଉନା କାହିଁକି- ଯେତେବେଳେ ଏହିପରି ଆତୁରହୋଇ ବାଟ ଖୋଜିବାକୁ ବାହାରିବେ, ସେତେବେଳେ ବାଟ ନିଶ୍ଚୟ ବାହାରିବ ।"

କାମିନୀ-କାଞ୍ଚନ ଏକାଗ୍ର ଅନ୍ୱେଷଣକୁ ବ୍ୟାହତ କରେ; କରେ ବୋଲି, ଆତୁରତା ଯଥେଷ୍ଟ ତୀବ୍ର ହୁଏନା; ହୁଏନା ବୋଲି, ଈଶ୍ୱରଦର୍ଶନ ଘୁଞ୍ଚିଘୁଞ୍ଚି ଯାଉଥାଏ; ଧର୍ମଗୁରୁଙ୍କ ଏ ଧାରଣାକୁ ନୀଳକଣ୍ଠ ଦାସ ନାଁଦେଇଚନ୍ତି 'ଭାକ୍ତିକ ମିଥ୍ୟା'; ଅର୍ଥାତ୍ ମେଟାଫିଜିକ୍ସ । ସେ ବାଟରେ କେହି ସମାଜ-ପରିବର୍ତ୍ତନର ସୂତ୍ର ଖୋଜିପାଇଚନ୍ତି ବୋଲି ଇତିହାସରୁ ଦିଶୁନାହିଁ । ବୁର୍ଜୋୟା ରାଷ୍ଟ୍ରକୁ ସବଳ ପ୍ରତିରୋଧ ନବକୃଷ୍ଣଙ୍କ ବିବେଚନାରେ ସାଙ୍କେତିକ ବିପ୍ଳବ, ଅଥଚ ସଙ୍କେତ କେମିତି ବଚନରେ ପହଞ୍ଚିବ, ସେ ଉପାୟ ମନନରେ ନଖୋଜି ଆତ୍ମାର ଆତୁରତାକୁ ଦେଇଚନ୍ତି ଦାୟିତ୍ୱ । ସ୍ପଷ୍ଟତଃ, ଭାବବାଦର କୁହୁଡ଼ିରୁ ନିଜ ଚେତନାକୁ ମୁକ୍ତ କରିପାରିନାହାଁନ୍ତି ଶେଷପର୍ଯ୍ୟନ୍ତ; ବୁଝିପାରିନାହାଁନ୍ତି, ନୂତନ କୋଉହେଲେ ପଥର ସଂଧାନ ଯେତେବେଳେ ଅଙ୍କୁର ଅବସ୍ଥାରେ ଥାଏ, ହଠାତ୍ ଜଳିଉଠି ଲିଭିଯାଉଥାଏ, ଲିଭିଯାଇ ପୁଣି ଜଳିଉଠୁଥାଏ, ତାକୁ କୁହାଯାଏ ଉତ୍ଥାନଶୀଳ ଚେତନା; ଏବଂ ତତ୍ତ୍ୱ ଓ କର୍ମର ସମବାୟରେ ବିବର୍ତ୍ତିତହୋଇ ସେ ଚେତନା ଆହରଣକରେ ସ୍ଥିରତା ଓ ପରିଶୁଦ୍ଧି । ମାନବସଭ୍ୟତାର ବିକାଶଧାରାରେ ସମାନ୍ତରାଳ ପ୍ରପଞ୍ଚ ଯଦି ଇତିହାସର ସ୍ୱୀକୃତି ପାଇଥାଏ, 'ସେଥିରେ ନଥିଲା ବୁଦ୍ଧି, ନଥିଲା ଆଗପଛ ବିଚାର' ପ୍ରତୀତହେବ ଅକାଳପକ୍ୱ ବା ପ୍ରିମ୍ୟାଚିଉୟର୍ ।



# ଛିନ୍ନବାହୁ ଭାରତମାତା : ସ୍ୱାଧୀନତା

## ।। ଏକ ।।

ସ୍ୱାଧୀନ, କିନ୍ତୁ ଖଣ୍ଡିତ, ଭାରତବର୍ଷର କର୍ଣ୍ଣଧାର ଜବାହରଲାଲ୍ ନେହ୍‌ରୁ ନିଜ ଜୀବଦ୍ଦଶାରେ ପ୍ରତ୍ୟକ୍ଷକରିଚନ୍ତି ଦୁଇଦୁଇଟା ବିଶ୍ୱଯୁଦ୍ଧ; ଇଉରୋପ୍‌ରେ ଫ୍ୟାସିବାଦର ଉତ୍ଥାନପତନ; ରସିଆରେ ଅକ୍ଟୋବର୍ ବିପ୍ଳବ; ଜର୍ମାନୀରେ ହିଟ୍‌ଲର୍ ସାଙ୍ଗକୁ ଏସିଆରେ ଜାପାନର ସାମ୍ରାଜ୍ୟବାଦୀ ଅଭିଯାନ । ନବକୃଷ୍ଣ, ସେଇ ପ୍ରେକ୍ଷିତରେ ଉଠାଇଚନ୍ତି 'ମାନବ ସଭ୍ୟତାର ଉତ୍ତରୋତ୍ତର ବିକାଶ' ପ୍ରସଙ୍ଗ, ଏବଂ ସେ ବିକାଶର ଆବଶ୍ୟକ ସର୍ତ୍ତକୁ ଚିହ୍ନିତକରିଚନ୍ତି 'ସାମ୍ୟବାଦ ପ୍ରତିଷ୍ଠା' । ନେହ୍‌ରୁ କିନ୍ତୁ ସାମ୍ୟବାଦ ମାନେ ବୁଝନ୍ତି 'ସୋସାଲିଷ୍ଟ୍ ପ୍ୟାଟର୍ଣ୍ଣ' । ଅର୍ଥାତ୍, ସୋଭିଏତ୍ ସଂଘରେ ପ୍ରବର୍ତ୍ତିତ ସାମ୍ୟବାଦ ନୁହେଁ, କାହିଁକିନା, ପରିକଳ୍ପିତ ପ୍ୟାଟର୍ଣ୍ଣରେ ସମ୍ପତ୍ତିର ବ୍ୟକ୍ତିଗତ ମାଲିକାନା ସୁରକ୍ଷିତ ରହିବ, ମାତ୍ର ଗାଁରୁ ରାଷ୍ଟ୍ରଯାଏଁ ଗଣତନ୍ତ୍ର ଲମ୍ବିଯିବା ଫଳରେ, କୃଷକ-ଶ୍ରମିକଙ୍କ ଦୋହନ ହୋଇପାରିବନାହିଁ ନିର୍ବିରୋଧ । ଗଣତନ୍ତ୍ରର ଯୋଉ ଏକମାତ୍ର ଅବତାର ସହିତ ତାଙ୍କର ସାକ୍ଷାତ୍ ସଂସ୍ରବ ଥିଲା, ତା ବ୍ରିଟେନ୍‌ର ପାର୍ଲାମେଣ୍ଟାରି ସିଷ୍ଟେମ୍; ଭାରତର ସୁଶୀଳ ସମାଜକୁ ସୋସାଲିଷ୍ଟ୍ ପ୍ୟାଟର୍ଣ୍ଣରେ ପୁନର୍ବିନ୍ୟସ୍ତ କରିବାକୁ ସେଇ ସିଷ୍ଟେମ୍ ବିବେଚିତ ହୋଇଚି ଆପାତତଃ ଉପଯୁକ୍ତ । ନବକୃଷ୍ଣ ଭାବିଚନ୍ତି, ଲୋକପ୍ରତିନିଧି ନିଜ କର୍ତ୍ତବ୍ୟରେ ହେଳାକଲେ, ଲୋକ ରିକଲ୍ ଅଧିକାର ପ୍ରୟୋଗକରିବେ; ନେହ୍‌ରୁ ସେ ଅଧିକାର ଦେଇନାହାଁନ୍ତି ନାଗରିକସମାଜକୁ । ବିଦେଶ-ନୀତିରେ ମଧ୍ୟ ସମାନ ଦୂରତ୍ୱ ରକ୍ଷାକରିଚନ୍ତି କ୍ୟାପିଟାଲିଷ୍ଟ୍ ଆମେରିକା ଓ କମିଉନିଷ୍ଟ୍ ରସିଆ ପାଖରୁ । କାମନା କରିଚନ୍ତି, ଅଭିନବ ଏକ ତୃତୀୟ ଆଧୁନିକତା, ଇତିହାସରେ ଯାର ନଜିର୍ ନାହିଁ, ଇତିହାସ ପ୍ରବାହରେ ସମାଜବିକାଶର ଆବଶ୍ୟକ ସୋପାନ ଭାବରେ ଯାର ପଟାନ୍ତର ନାହିଁ । ସମାଜତତ୍ତ୍ୱ ଦୃଷ୍ଟିରେ ରସିଆ ଯେପରି ସାମ୍ୟବାଦୀ-ସମାଜ ନୁହେଁ, ପୋଷ୍ଟ୍‌ରେଭୋଲିଉସନାରି ସୋସାଇଟି, ଭାରତ ସେମିତି କେବଳ ପୋଷ୍ଟ୍-କଲୋନିଆଲ୍ ସୋସାଇଟି । ମାନବ ପ୍ରଜାତିର ଇତିହାସଚେତନାରେ ଏ ପ୍ରତ୍ୟୟ ବିଂଶଶତକର ସଂଯୋଜନ । 'ସଭ୍ୟତାର ଉତ୍ତରୋତ୍ତର ବିକାଶ' ଉପରେ ତେଣୁ ଲାଗିଯାଇଚି ପ୍ରଶ୍ନଚିହ୍ନ ।

ଉତ୍ତରୋତ୍ତର ବିକାଶ ଆକସ୍ମିକ ନୁହେଁ କି ଅଲୌକିକ ନୁହେଁ, ନୀତିନିୟମ ମଧ୍ୟ ନିର୍ବିଶେଷ ନୁହେଁ । ସେଥିପାଇଁ, ଅତୀତରୁ ଭବିଷ୍ୟତ୍ ପର୍ଯ୍ୟନ୍ତ ରହିଚି ପର୍ଯ୍ୟାୟକ୍ରମ । ସେ ପର୍ଯ୍ୟାୟକ୍ରମ ଯେ ବ୍ୟତିକ୍ରମହୀନ ପ୍ରଗତି, ଇତିହାସ ସେଭଳି ସରଳରୈଖିକ ଅଗ୍ରଗତିକୁ ମଧ୍ୟ ସ୍ୱୀକାରକରେନା; ଉତ୍ଥାନ-ପତନ ଭିତରଦେଇ ସମାଜ ଗତିକରିଚି ସବୁଠି । ମାତ୍ର ସେ ପ୍ରକ୍ରିୟାରେ ମଣିଷ ଅର୍ଜନକରିଚି ଇତିହାସ-ଚେତନା । କରିଚି ବୋଲି, ନବକୃଷ୍ଣ ଲେଖିଚନ୍ତି, 'ବର୍ତ୍ତମାନ ଯେତେବେଳେ ସେ କାମଟି ପୂରା ହେଲା ବା ହେବା ଉପରେ, ସେତେବେଳେ ସମସ୍ତଙ୍କ ଆଗରେ ପ୍ରଶ୍ନ ଉଠୁଚି- ଏହା ପରେ କେଉଁ କାମ ଆଗ ?' ଆଗକୁ ଯିବାକୁ ହେବ । ଆଗକୁ ଯିବାର ଏଇ ଉଦ୍‌ଯୋଗ ହେଉଚି ଆଧୁନିକତା । ଆଧୁନିକତା ତେଣୁ ବିମୂର୍ତ୍ତ ଧାରଣା ନୁହେଁ, ସଚେତନ ଗତିଶୀଳତା । କିନ୍ତୁ ଇତରପ୍ରାଣୀଙ୍କ ପରି ପ୍ରବୃତ୍ତି ତାଡ଼ିତହୋଇ କେହି କାମକରେନା, କାମକୁ ପ୍ରେରିତକରେ ମନନ । ଏବଂ ମନନର ଭିତ୍ତି ଯେହେତୁ ଅତୀତରୁ ଭବିଷ୍ୟତକୁ ପ୍ରସାରିତ, ତଦ୍‌ପ୍ରସୂତ କର୍ମଧାରା ମଧ୍ୟ ସ୍ମୃତି ଓ ସତ୍ତାର ପ୍ରବହମାନ ନବାୟନ, ପ୍ରଚଣ୍ଡଶକ୍ତିସମ୍ପନ୍ନ ଘୂର୍ଣ୍ଣାବର୍ତ୍ତ ମଝିରେ ଗତିଶୀଳ ନବୀକରଣ । ନବାୟନ-ଅଭିମୁଖୀ ମନନ ଓ କର୍ମର ଅନ୍ୱୟ ତେଣୁ ଆଧୁନିକୀକରଣ । ଚିରାୟତ ଭାରତ ବା ଇଟର୍‌ନ୍ୟାଲ୍ ଇଣ୍ଡିଆ କହିଲେ ଯା ବୁଝାଏ, କାର୍ଯ୍ୟତଃ, ବ୍ରାହ୍ମଣ୍ୟ ଅନୁଚିନ୍ତନର ଅଲୌକିକ ଜଗତ । ତାର ନବାୟନ କାମନାକରିବା ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର ପକ୍ଷରେ ସ୍ୱାଭାବିକ । ଜବାହର୍‌ଲାଲ୍‌ଙ୍କ ମନନରେ ଚିରାୟତ ଭାରତର ସ୍ମୃତି ନିଶ୍ଚୟ ସକ୍ରିୟ; ଏବଂ ସକ୍ରିୟ ବୋଲି, ତାଙ୍କ ଆଧୁନିକତା ଅବବୋଧ ମଧ୍ୟ ସ୍ୱତନ୍ତ୍ର । ଅର୍ଥାତ୍, ପାଶ୍ଚାତ୍ୟ ଭାବାଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହେଲେସୁଦ୍ଧା, ପାଶ୍ଚାତ୍ୟ ସମାଜର ଆବକ୍ର ଗତି ପ୍ରତି ରହିଚି ସ୍ତୁତି ଛଳରେ ନିନ୍ଦା, ପାଶ୍ଚାତ୍ୟ ଆଧୁନିକତାକୁ କହିଚନ୍ତି ତେଣୁ 'ଗାର୍‌ବ୍' ବା ପୋଷାକ, ଯୋଉ ପୋଷାକକୁ ବିଭିନ୍ନ ବାଗରେ ଭାରତ ବ୍ୟବହାର କରିପାରେ, କେତେବେଳେ ପଗଡ଼ି କେତେବେଳେ ଖଦର, କେତେବେଳେ ଅବା ଗାମୁଛା । ଜାତୀୟତାବାଦୀ ତଥାପି ଚାହିଁଚନ୍ତି ପଶ୍ଚିମ ଛାଞ୍ଚରେ ଗଢ଼ିବେ ସ୍ୱଦେଶ । ଗଣତନ୍ତ୍ର ଓ ସାବାଳକ ଭୋଟ୍‌ପ୍ରଥା ଆଣିଚନ୍ତି ପଶ୍ଚିମରୁ; ତା ଫଳରେ, ନାମଗୋତ୍ରହୀନ ମଣିଷ ମଧ୍ୟ ପ୍ରତିଷ୍ଠାକରିଚନ୍ତି ସାମୂହିକ ଆତ୍ମପରିଚୟ; ମାତ୍ର 'ଉତ୍ତରୋତ୍ତର ବିକାଶ', ପାଶ୍ଚାତ୍ୟ ଗଣତନ୍ତ୍ରର ଯା ସହଚର, ରହିଯାଇଚି ଧରାଛୁଆଁ ବାହାରେ । ରାଜନୀତି ଅର୍ଥନୀତି ମଝିରେ ତିଆରିହୋଇଚି ଦୁର୍ଲଂଘ୍ୟ ଦୂରତ୍ୱ । କାହିଁକିନା, ତଥାକଥିତ 'ଭୋଟ୍‌ବ୍ୟାଙ୍କ୍'କୁ ସୁରକ୍ଷିତ ରଖିବା ସକାଶେ, ଚିରାଚରିତ ପ୍ରପର୍ଟି-ରିଲେସନ୍‌ରେ ଭାରସାମ୍ୟ ଅଭାବକୁ ରାଜନୀତି ମନେକରିନାହିଁ ହସ୍ତକ୍ଷେପଯୋଗ୍ୟ । ଅଖଣ୍ଡ ନହେଲେ ବି ଇଟର୍‌ନ୍ୟାଲ୍

ଇଣ୍ଡିଆ ସ୍ୱମହିମାରେ ରହିଚି ତେଣୁ ବିରାଜିତ; ଏବଂ ସେ ମହିମା ଏତେ ପ୍ରଖର ଯେ 'ଭାରତୀୟ' କହିଲେ ବୁଝାଉଚି କେବଳ ହିନ୍ଦୁ । ନେହ୍‌ରୁ ସୋଭିଏତ୍ ସଂଘ ଅନୁକରଣରେ ଯୋଜନାବଦ୍ଧ କମ୍ୟାଣ୍ଡ୍ ଇକନମି ଅବଲମ୍ବନ କରିଥିଲେ ବୋଲି କୁହାଯାଏ, ମାତ୍ର ଧାରଣାଟା ସ୍ଥୂଳ; କାହିଁକିନା, କମ୍ୟାଣ୍ଡ୍ ଇକନମି ଗଣତନ୍ତ୍ରରେ ସମ୍ଭବପର ନୁହେଁ । ବିଶେଷତଃ ଭୋଟ୍ ରାଜନୀତିରେ । ସେକଥା ଜାଣିଥିଲେ ବୋଲି, ନେହ୍‌ରୁ ଅନୁସରଣ କରିଚନ୍ତି କେନ୍‌ଜିଆନ୍ ଭାବାଦର୍ଶ । କେୟନ୍‌ସ୍ (୧୮୮୩-୧୯୪୬) ପ୍ରତିପନ୍ନ କରିଥିଲେ, ବଜାରରେ ଚାହିଦା ନ ବଢ଼ିଲେ ଅର୍ଥନୀତିକ କ୍ରମୋନ୍ନତି ଓ ତଦ୍‌ପ୍ରସୂତ କର୍ମନିଯୁକ୍ତିର ସୁଯୋଗ ବଢ଼ିବନାହିଁ । କର୍ମନିଯୁକ୍ତିର ପରିସର ନବଢ଼ିଲେ କ୍ରୟକ୍ଷମତା ମଧ୍ୟ ବଢ଼ିବନାହିଁ । ନେହ୍‌ରୁ ସେକଥାକୁ ଗଣ୍ଡିକରି ପ୍ରଚଳନକଲେ ମିଶ୍ରଅର୍ଥନୀତି; ପ୍ରାଇଭେଟ୍ ସେକ୍ଟର୍‌ର ସମାନ୍ତରାଳ କରି ନିର୍ମାଣକଲେ ପବ୍ଲିକ୍-ସେକ୍ଟର୍ ଇଣ୍ଡଷ୍ଟ୍ରି; ଖଣିଜଧାତୁ, ଖଣିଜ ତୈଳ, ବିଦ୍ୟୁତ୍ ଉତ୍ପାଦନ, ରେଳପରିବହନକୁ ରଖିଲେ ପବ୍ଲିକ୍-ସେକ୍ଟର୍ ଆୟତ୍ତରେ । ତେବେଯାଇ ପଲିଟିସିଆନ୍ ଚାକିରୀ ଦେଇପାରିବେ ସ୍ୱଜନ-ପରିଜନଙ୍କୁ । ପ୍ରାଇଭେଟ୍ ସେକ୍ଟର୍‌କୁ ଦୋହନକରିବ କୋଟା-ଲାଇସେନ୍ସ ରାଜ୍ । ମିଶ୍ରଅର୍ଥନୀତି ପୁଞ୍ଜିବାଦ ନୁହେଁ କି ସମାଜତନ୍ତ୍ର ନୁହେଁ । ପୁରାପୁରି ଭାରତୀୟ ଆଧୁନିକତା (ନେହ୍‌ରୁଙ୍କ ପରିଭାଷାରେ, ଟେମ୍ପଲ ବା ଦେବାଳୟ) । ଆମେରିକାରୁ ଅବଶ୍ୟ ଆମଦାନି କରାଯାଇଚି ଭୋକିଲାଙ୍କ ପାଇଁ ଗହମ, ପିଲାଙ୍କ ପାଇଁ ଗୁଣ୍ଡଦୁଧ ଇତ୍ୟାଦି ଦାନସୂତ୍ରରେ । ଟଙ୍କାପଇସା ବି ଭିକ୍ଷାକରାଯାଇଚି । ମାତ୍ର ସେମାନେ କହିଚନ୍ତି, କୃଷିର ଉନ୍ନତି କର, ଲୋକଙ୍କ ନିତ୍ୟବ୍ୟବହାର୍ଯ୍ୟ ଜିନିଷ ଉତ୍ପାଦନକରିବାକୁ ବସାଅ ଭୋଗ୍ୟପଣ୍ୟ ଶିଳ୍ପ; ଅର୍ଥନୀତିର କ୍ରମୋନ୍ନତି ତ୍ୱରାନ୍ୱିତ ହୋଇପାରିବ । ନେହ୍‌ରୁ କହିଚନ୍ତି, ଆମକୁ ତ ଦରକାର ଭାରିଶିଳ୍ପ ସାଙ୍ଗକୁ ଅସ୍ତ୍ରଶସ୍ତ୍ର ତିଆରିର ପ୍ରଯୁକ୍ତି । ତେବେଯାଇ ଭାରତର ଅର୍ଥନୀତି ହୋଇପାରିବ ସ୍ୱନିର୍ଭର । ସେମାନେ ଶୁଣିନାହାଁନ୍ତି । ପ୍ରତିରକ୍ଷା-ସାମଗ୍ରୀର ଉତ୍ପାଦନ ଓ ଭାରିଶିଳ୍ପ ସ୍ଥାପନ ସକାଶେ ସହାୟତା କରିଚି ସୋଭିଏଟ୍ ଇଉନିଅନ୍ । ମାତ୍ର କେରଳର କମିଉନିଷ୍ଟ୍ ସରକାରକୁ ବଳପୂର୍ବକ ଭାଙ୍ଗିଦେଇଚନ୍ତି ଜବାହର୍‌ଲାଲ୍ । ଅନୁପମ ଇଣ୍ଡିଆନ୍‌ନେସ୍ !

ନବକୃଷ୍ଣ ଲେଖିଚନ୍ତି, ଜାତୀୟ ଏକତା ଓ ସବଳର ଅହିଂସା ବଳରେ ସ୍ୱାଧୀନତା ଆସିଥିଲେ 'ଦେଶର ଶ୍ରମିକ ଓ କୃଷକଙ୍କ ଅର୍ଥନୀତିକ ଓ ସାମାଜିକ ସ୍ୱାଧୀନତା ହାସଲକରିବା କାମ ଆଗକାମ ହୋଇଥାନ୍ତା' । କୃଷକର ସମସ୍ୟା: ଜମିର ସ୍ୱତ୍ୱ ରହିଚି ମୁଷ୍ଟିମେୟ ଭୂମ୍ୟଧିକାରୀଙ୍କ ମାଲିକାନା; ଏବଂ ସେଥିପାଇଁ, କୃଷିରୁ ଉତ୍ପାଦନ ରହିଚି ନଗଣ୍ୟ । ମାତ୍ର ଭୂମ୍ୟଧିକାରୀଙ୍କ ପରାକ୍ରମ କ୍ଷମତା ରାଜନୀତିରେ ଥିଲା ପ୍ରବଳ ।

ଜନପ୍ରିୟ ପ୍ରଧାନମନ୍ତ୍ରୀ ସେଇ ଶ୍ରେଣୀର ସମର୍ଥନକୁ ବିଶେଷ ମୂଲ୍ୟ ଦିଅନ୍ତି, କାହିଁକିନା, ଲୋକଙ୍କ ରାଜଭକ୍ତି ଏପରି ପ୍ରଗାଢ଼ ଯେ ଗଡ଼ଜାତମିଶ୍ରଣ ଅବ୍ୟବହିତରେ ଓଡ଼ିଶାରେ ଅନ୍ତତଃ 'ଗଣତନ୍ତ୍ର ପରିଷଦ' ଭୋଟ୍ ଜିତିଆସିଚି ବିବାକ ଗଡ଼ଜାତରୁ । ସୁନ୍ଦରଗଡ଼ ରଜା, ଖଡ଼ିଆଳ ରଜା ମାତାଲ୍‌ହୋଇ ଆସେମ୍ଳିକୁ ଆସିବା ନିଜେ ଦେଖିଚି । ଓଡ଼ିଶାର ପ୍ରଧାନମନ୍ତ୍ରୀ ମଧ ହୋଇଚନ୍ତି ପାରଳା ମହାରାଜା; ଦେଶ ସ୍ୱାଧୀନ ହେବାପରେ ମୁଖ୍ୟମନ୍ତ୍ରୀ ପାଟଣା ମହାରଜା, ଭାବିଲେ ଶିହରଣ ଜାତହୁଏ ଯେ, ଯାଙ୍କରି ମଝିରେ ବସି ନବକୃଷ୍ଣ ଚୌଧୁରୀ ଜମିଦାରି ଉଚ୍ଛେଦ କରିଦେଲେ, ଭାଗଚାଷୀଙ୍କୁ ଦେଇଗଲେ ପୁରୁଷାନୁକ୍ରମିକ ସ୍ୱତ୍ୱାଧିକାର । ମାତ୍ର ପଣ୍ଡିତ୍‌ଜୀ ତ ଚାଷୀକୁ ଚିହ୍ନନ୍ତିନାହିଁ କି ବିଲକୁ ଯାଇନାହାଁନ୍ତି କସ୍ମିନ୍‌କାଳେ, ଭୂସଂସ୍କାର କାମଟା ଛାଡ଼ିଦେଲେ ଅମଲାଙ୍କ ହାତକୁ । କାହିଁକିନା, ଯୋଉ ଆଧୁନିକୀକରଣ ତାଙ୍କ ଅବଲମ୍ବନ, ତାର ମୂଳ ପ୍ରସ୍ତାବ, ଶିଳ୍ପବିକାଶ ଘଟିଲେ ଛାଏଁ ଛାଏଁ ବଦଳିଯିବ ଜମିଜମାକୁ ଘେରି ସମାଜରେ ଗଢ଼ିଉଠିଚି ଯେତେରକମ ସମ୍ପତ୍ତିଗତ ତାରତମ୍ୟ । ମୋଟ୍ ଉପରେ, ଶାଶ୍ୱତ ଭାରତର ଶାଶ୍ୱତ ଅସାମ୍ୟ ପଣ୍ଡିତ୍‌ଜୀଙ୍କୁ ମନେହୋଇଚି ଏକ ଆଧ୍ୟାତ୍ମିକ ଗୌରବ । ଯେପରି ଦାରିଦ୍ର୍ୟ ମନେହୋଇଚି ମହାତ୍ମାଙ୍କୁ । କିନ୍ତୁ ଯୋଉ ଦୁଇଟି ଅଙ୍ଗରାଜ୍ୟରେ କମିଉନିଷ୍ଟ୍ ଆସିଚନ୍ତି ଶାସନକ୍ଷମତାକୁ, ସେଇ କେରଳ ଓ ପଶ୍ଚିମବଙ୍ଗରେ ଘଟିଯାଇଚି ବ୍ୟାପକ ଭୂମିସଂସ୍କାର । ଗ୍ରାମଗୋଷ୍ଠୀ ଯୋଜନା ଓ ପଞ୍ଚାୟତ ମାଧ୍ୟମରେ ନେହ୍‌ରୁ ଚେଷ୍ଟାକରିଚନ୍ତି ଗ୍ରାମାଞ୍ଚଳର ଦାରିଦ୍ର୍ୟ ଉପଶମକରିବାକୁ, ମାତ୍ର ସେ ପ୍ରକଳ୍ପରେ କୃଷକର ଭୂମିକା ରହିଚି ସୀମାନ୍ତବର୍ତ୍ତୀ, ଲାଭଉଠାଇଚନ୍ତି ସେଇ ଲୋକ ଉତ୍ପାଦନ-ପ୍ରକ୍ରିୟା ସହିତ ଯାହାଙ୍କ ସମ୍ପର୍କ କଷ୍ଟକଳ୍ପିତ; ଅର୍ଥାତ୍ ଏପରି ଏକ ପେଟିବୁର୍ଜୋୟା, ଗ୍ରାମ୍‌ସି ଯାହାଙ୍କୁ ଚିହ୍ନିତକରିଚନ୍ତି 'ମଧ୍ୟଶ୍ରେଣୀ' । ପରିଣାମରେ, ସମଗ୍ର ପୂର୍ବ-ଏସିଆରେ ଭାରତର କୃଷିଉତ୍ପାଦନ ହାର ରହିଚି ସର୍ବନିମ୍ନ, ବ୍ୟତିକ୍ରମ ଏକମାତ୍ର ଫିଲିପିନ୍‌ଜ୍ । ସେତିକିବେଳେ, ଚୀନ୍ ଦକ୍ଷିଣକୋରିଆ ଜାପାନ୍ ଓ ତାଇୱାନ୍ ଭୂସଂସ୍କାର ବାଟଦେଇ ସମାଧାନ କରିଦେଇଚନ୍ତି ଦେଶର ଖାଦ୍ୟସମସ୍ୟା, ଭାରତ କିନ୍ତୁ ଭିକ୍ଷାପାତ୍ରଧରି ଚାଲିଯାଇଚି ଆମେରିକା । ଭିକ୍ଷାନ୍ନରେ ଉଦରପୋଷଣ ଭାରତୀୟ ବୁଦ୍ଧିଜୀବୀର ଐତିହ୍ୟବାହିତ ପରମ୍ପରା । ଅଥଚ, ନେହ୍‌ରୁଙ୍କ ରାଜନୀତିକ କର୍ତ୍ତୃତ୍ୱ ଥିଲା ନିରଙ୍କୁଶ; ୧୯୫୨ରୁ ୬୨ ମଧ୍ୟରେ କଂଗ୍ରେସ୍ ଜିତିଚି ତିନିତିନିଟା ସାଧାରଣ ନିର୍ବାଚନ, ଗଣତାନ୍ତ୍ରିକ ପଦ୍ଧତିରେ ସମ୍ପତ୍ତିର ପୁନର୍ବଣ୍ଟନ ଥିଲାନାହିଁ ତେଣୁ ପଙ୍ଗୁର ଗିରିଲଂଘନ । ସେ ଗଣତନ୍ତ୍ରକୁ ଛୁଟିଦେଇଥିଲେ ଅବଶ୍ୟ କନ୍ୟା ଇନ୍ଦିରା ଇମର୍‌ଜେନ୍ସି ଘୋଷଣାକରି, କିନ୍ତୁ ଗରିବ୍‌ଗୁରୁବାଙ୍କୁ ଖାସୁକରିବା ଆଉ ବୁଲ୍‌ଡୋଜର୍ ଲଗାଇ ବସ୍ତିଭାଙ୍ଗିବା ଛଡ଼ା,

ଅପରିମିତ କ୍ଷମତା ଭୂସଂସ୍କାର ଆଡ଼କୁ ବିଲ୍‌କୁଲ୍ ନଜର୍ ଦେଇନାହାନ୍ତି ବୁର୍ଜୋୟା / ପେଟିବୁର୍ଜୋୟାର ସ୍ୱାର୍ଥକୁ ଆଖିଆଗରେ ରଖି । ଏପରିକି, ସନ୍ଥ ବିନୋବା ମଧ୍ୟ ଇମରଜେନ୍ସିକୁ କହିଚନ୍ତି *ମହାଭାରତର* 'ଅନୁଶାସନ ପର୍ବ' । ସେଥିପାଇଁ, ଏ ଧାରଣା ମଧ୍ୟ ଭୁଲ୍ ଯେ, ଗଣତନ୍ତ୍ର ପ୍ରତି ଗଭୀର ଅନୁରାଗ ଜବାହରଲାଲ୍‌ଙ୍କୁ କରିଚି ଦ୍ୱିଧାଗ୍ରସ୍ତ; ଅର୍ଥାତ୍ ଗିରିଜାଶଙ୍କର ବାଜପେୟୀଙ୍କ ଭାଷାରେ 'ହ୍ୟାମ୍‌ଲେଟ୍ ଅବ୍ ଇଣ୍ଡିଆନ୍ ପଲିଟିକ୍ସ' ! ବାଜପେୟୀ ସିଭିଲ୍ ସର୍ଭିସ୍‌ର ଲୋକ; ୧୯୩୦ରେ ଜବାହରଲାଲ୍ ସିଭିଲ୍ ସର୍ଭିସ୍ ବିରୋଧରେ ବିଷୋଦ୍‌ଗାର କରିଚନ୍ତି, ମାତ୍ର ପ୍ରଧାନମନ୍ତ୍ରୀ ହୋଇ ସମ୍ପୂର୍ଣ୍ଣ ନିର୍ଭରକରିଚନ୍ତି ଅମଲାତନ୍ତ୍ର ଉପରେ ଆଧୁନିକୀକରଣ ପ୍ରକଳ୍ପକୁ ରୂପାୟିତ କରିବା ସକାଶେ, ଇମରଜେନ୍ସିକୁ ବି ବାସ୍ତବାୟିତ କରିଚି ଅମଲାତନ୍ତ୍ର । ଅନେକ କ୍ଷେତ୍ରରେ ନିଜ ପାର୍ଟି ଓ ସହକର୍ମୀଙ୍କ ବିରୋଧରେ ମଧ୍ୟ ପ୍ରୟୋଗକରାଯାଇଚି ଅମଲାତନ୍ତ୍ରକୁ, ଗଣତନ୍ତ୍ରରେ ଯାର ଆନୁଗତ୍ୟ ଜନସାଧାରଣଙ୍କ ପ୍ରତି ନୁହେଁ, କ୍ଷମତାସୀନ ରାଜନୀତିକ ନେତାଙ୍କ ପ୍ରତି କେବଳ । ଯେମିତି ଷ୍ଟାଲିନ୍ ଜମାନାରେ ନୋମେନ୍‌କ୍ଲାତୁରା । ଅଥଚ ସେମାନେ ହିଁ ପ୍ରସ୍ତୁତକରନ୍ତି ପଞ୍ଚବାର୍ଷିକ ଯୋଜନା, ବଜେଟ୍ ଓ ଅର୍ଥନୀତି । ଦାରିଦ୍ର୍ୟ, ବଞ୍ଚନା, ଶୋଷଣ ପ୍ରଭୃତି ଏମାନଙ୍କ ଦୃଷ୍ଟିରେ ପରିସଂଖ୍ୟାନ ମାତ୍ର; ଏବଂ ଏଇ ଅତ୍ୟାବଶ୍ୟକ ଯନ୍ତଟି ନିଜକୁ ପୁନରୁତ୍ପାଦିତ କରିଚାଲିଚି ବ୍ରିଟିଶ୍‌ରାଜତ୍ୱରୁ କଂଗ୍ରେସ୍‌ରାଜତ୍ୱ ପର୍ଯ୍ୟନ୍ତ ଯୁଗଯୁଗାନ୍ତର । ରାଷ୍ଟ୍ରର ନିର୍ଯ୍ୟାସକୁ ଅମଲାତନ୍ତ୍ର ତେଣୁ ଧାରଣକରୁଚି ନିଜ ଶରୀର ଓ ସଂଗଠନରେ । ତାର ମଧ୍ୟ ନିଜସ୍ୱ ସ୍ୱାର୍ଥ ରହିଚି, ସମାଜ ଉପରେ ଯାହାକୁ ଚପାଇଦେବା ସହଜ । ସେ ଉତ୍ପୀଡ଼ନ କିନ୍ତୁ କାହାରି ଆଖିକୁ ଦିଶେନା, କାହିଁକିନା, ଅମଲାତନ୍ତ୍ରର ମୂଳମନ୍ତ୍ର ଗୋପନୀୟତା । ଏମାନଙ୍କ ଅବଲୋକନରେ, ରାଷ୍ଟ୍ର ବସ୍ତୁତଃ ଏକ ସୌଦାଗରୀ ପ୍ରତିଷ୍ଠାନ; ଏମାନେ ତାର ବେତନଭୋଗୀ ମ୍ୟାନେଜର୍ ! ଅର୍ଥାତ୍, ଜନସ୍ୱାର୍ଥ ଅବିକଳ କର୍‌ପୋରେଟ୍ ସ୍ୱାର୍ଥ, ଅମଲାତନ୍ତ୍ରର ବ୍ୟକ୍ତିଗତ ସଂପତ୍ତି । ଆଧୁନିକୀକରଣ କିନ୍ତୁ ଏକ ମେଧାବୀ ପରିକଳ୍ପ, ଇତିହାସ ଯେତେବେଳେ ଆଜି ବିଶ୍ୱଜନୀନ, ସମାଜକୁ ଆଧୁନିକକରିବା ଅର୍ଥ, ସମାଜ-ରୂପାନ୍ତର କାମରେ ବିଶ୍ୱଜନୀନ ଇତିହାସଧାରା ପ୍ରୟୋଗ, ଯା ଲମ୍ବିଆସିଚି ଫରାସୀ-ବିପ୍ଳବରୁ ରସିଆର ସମାଜତାନ୍ତ୍ରିକ ବିପ୍ଳବ ପର୍ଯ୍ୟନ୍ତ । ପଣ୍ଡିତ୍‌ଜୀ କିନ୍ତୁ ସେ ପ୍ରୟୋଗର ସାଫଲ୍ୟ ସକାଶେ ମାଧ୍ୟମ ବାଛିଚନ୍ତି ଜଡ଼ବତ୍ ଓ ଗତାନୁଗତିକ ଏଇ ହାଇଆର୍‌ର୍କୀକୁ । ଭାରତୀୟ ନାଗରିକର ପ୍ରାତ୍ୟହିକ ଜୀବନଯାତ୍ରାର ଅଭିଭାବକ ତେଣୁ ହାଇଆର୍‌ର୍କୀ ଆଉ ଗୋପନୀୟତା ।

ନେହରୁ ଅବଶ୍ୟ ସମାଜତାନ୍ତ୍ରିକ ପୁନର୍ଗଠନ ଉପରେ ଆସ୍ଥାବାନ, କିନ୍ତୁ ପୁନର୍ଗଠନ କି ଭାବରେ ସମ୍ଭବପର, ପାର୍ଲାମେଣ୍ଟ୍ କି ମନ୍ତ୍ରିମଣ୍ଡଳର ପରାମର୍ଶ ଭାବିଚନ୍ତି

ତା ପାଇଁ ଅନାବଶ୍ୟକ । ଜଗତଯାକର ଅର୍ଥନୀତିବିଦ୍‌ଙ୍କୁ ଡାକିଆଣିଚନ୍ତି ଦିଲ୍ଲୀ, ଏବଂ ପ୍ଲାନିଙ୍ଗ୍‌କମିଶନ୍ କଥାବାର୍ତ୍ତାକରି ଯୋଉ ସିଦ୍ଧାନ୍ତ ନେଇଚନ୍ତି, ସେତିକି ଜଣାଇଦେଇଚନ୍ତି ଅଶିକ୍ଷିତ-ଅର୍ଦ୍ଧଶିକ୍ଷିତ ପାର୍ଲାମେଣ୍ଟକୁ । ବସ୍ତୁତଃ, ସେଥିପାଇଁ, ବୃହତ୍ତର ନାଗରିକ ସମାଜରେ ଅର୍ଥନୀତିକ ସଂସ୍କାର ବିଷୟରେ ବାଦାନୁବାଦ ହୋଇନାହିଁ; ବିଶେଷଜ୍ଞଙ୍କ ପରାମର୍ଶ ଭାରତର ସମାଜତାନ୍ତ୍ରିକ ପୁନର୍ଗଠନ ପ୍ରତି ପ୍ରାସଙ୍ଗିକ, କି କେତେଦୂର ବାସ୍ତବାୟନ-ସାପେକ୍ଷ, ସ୍ଥିରକରିଚି ଅମଲାତନ୍ତ୍ର; ଦେଶବାସୀ ରହିଚନ୍ତି ନେପଥ୍ୟରେ, ଦେଶର ଭବିଷ୍ୟତ୍ ନିର୍ଦ୍ଧାରିତ ହୋଇଯାଇଚି ଅନ୍ତରାଳରେ । ସଂପ୍ରତି, ନେହ୍‌ରୁଙ୍କ ସମାଜତନ୍ତ୍ରକୁ କଂଗ୍ରେସ୍ ଯେତେବେଳେ କବର ଦେଇସାରିଚି, ସ୍ମୃତିରୋମନ୍ଥନ କରି ସେଭଳି ଜଣେ ଅର୍ଥନୀତିବିଦ୍ ଭାରତକୁ ଘନଘନ ଯିବାଆସିବା ବିଷୟରେ କହିଚନ୍ତି, honey attracts flies, gold attracts diggers! ତାହେଲେ, ଭାରିଶିଳ୍ପ ବସାଇବାକୁ ଗରିବଦେଶର ସମ୍ବଳକୁ ଯେତେବେଳେ ବିନିଯୋଗ କରାଗଲା, କେତେ ପରିମାଣ ଲୁହା ଲୋକଙ୍କ ଦରକାରରେ ଲାଗିବ, ଆଉ କେତେ ପରିମାଣ ଗହମ କି ଚାଉଳ, ଠିକଣାକରିଦେଲେ ମଧୁମକ୍ଷିକା ? ଗହମ ଆସିଲା ଆମେରିକାରୁ, ଲୁହା ବି ଆନ୍ତର୍ଜାତିକ ବଜାରରେ ପ୍ରତିଯୋଗିତା ସମ୍ଭାଳିପାରିଲାନାହିଁ । ଏବେ ତ ପ୍ରାଇଭେଟାଇଜେସନ୍ ଚାଲୁଚି, ଶ୍ରମଜୀବୀଙ୍କ ଛଟାଇ ବି ରହିଚି ଅବ୍ୟାହତ । ନେହ୍‌ରୁ ଷ୍ଟାଲିନ୍‌ଙ୍କ ଭଳି ହିଟ୍‌ଲର୍ ସାଙ୍ଗରେ ଲଢୁନଥିଲେ ଯେ ଭାରତରେ ଦରକାର ପଡ଼ିଲା ଭାରିଶିଳ୍ପ ସାଙ୍ଗକୁ କୃଷକ-ଶ୍ରମିକ ଶୋଷଣ । ଷାଠିଏଦଶକ ମଝିରେ ଯୋଜନାକମିଶନ୍ ହୋଇଯାଇଚି ନିଷ୍କ୍ରିୟ; ଏପରିକି, ତାର ସ୍ଥପତି ପ୍ରଶାନ୍ତ ମୋହଲାନବିସ୍ ସ୍ୱୀକାରକରିଚନ୍ତି ଯେ ଗୁନାର୍ ମାଇର୍‌ଡାଲ୍ *ଏସିଆନନ୍ ଡ୍ରାମା* ଗ୍ରନ୍ଥରେ ଆମ ସାମାଜିକ/ଅର୍ଥନୀତିକ ପରିସ୍ଥିତିର ଯୋଉ ବିବରଣଦେଇଚନ୍ତି ତା ନିର୍ଭୁଲ୍; ନେହ୍‌ରୁ ଶିଳ୍ପବିପ୍ଳବ ଘଟାଇପାରିନାହାଁନ୍ତି, କାହିଁକିନା, ତା ପାଇଁ ବିଜ୍ଞାନ/ପ୍ରଯୁକ୍ତିର ଯେଭଳି ଆତ୍ମନିର୍ଭରତା ଆବଶ୍ୟକ, ତାର ଅନୁପସ୍ଥିତି ସାଙ୍ଗକୁ ଯୁକ୍ତହୋଇଥିଲା କୃଷିବ୍ୟବସ୍ଥାର ସ୍ଥାଣୁତ୍ୱ ଓ ସାମାଜିକ ଅନୁଷ୍ଠାନଗୁଡ଼ିକର ଅପରିବର୍ତ୍ତନୀୟ ବାର୍ଦ୍ଧକ୍ୟ । କୃଷିଜାତ ପଣ୍ୟର ବିକ୍ରୟମୂଲ୍ୟ ନ ବଢ଼ାଇଲେ ଉତ୍ପାଦନ ଉତ୍ସାହପାଏନା; ମାତ୍ର ଲୋକଙ୍କ କିଣିବାକ୍ଷମତା ଏତେ ନିମ୍ନସ୍ତରର ଯେ କୃଷିପଣ୍ୟର ଦରଦାମ-ବଢ଼ାଇବାକୁ ସାହସ କରିନାହାଁନ୍ତି ନେହ୍‌ରୁ । ମାତ୍ର ତା' ମୂଳରେ କାମକରିଚି ବିଚିତ୍ର ଇତିହାସବୋଧ; ଧର୍ମ ଭାଷା ଜାତି/ଉପଜାତି ଦ୍ୱାରା ବିଭାଜିତ ହେଲେସୁଦ୍ଧା ନେହ୍‌ରୁଙ୍କ ବିବେଚନାରେ ଦେଶ ପ୍ରତିଭାତହୋଇଚି ମହାନ୍ ଏକ ଐକ୍ୟବୋଧ ଦ୍ୱାରା ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଅବିଚ୍ଛିନ୍ନଭାବେ ଏକତ୍ର; ଏବଂ ସେଥିପାଇଁ, ଆକୁମାରୀହିମାଚଳ ପ୍ରବାହିତ ତାର ଅନ୍ତଃସଳିଳା ଏକତ୍ୱ-

ପ୍ରବଣତା । ସେ ପ୍ରବଣତାକୁ ପୁଣି ଚିହ୍ନିତକରିଚନ୍ତି ବିଶ୍ୱଇତିହାସର ଗତିପ୍ରକୃତିର ସମାନ୍ତରାଳ । ଆର୍ଥ-ସାମାଜିକ ଅଗ୍ରଗତି ତେଣୁ ଅନିବାର୍ଯ୍ୟ ଓ ଅବଶ୍ୟମ୍ଭାବୀ, ବିବିଧ ମଝିରେ ଯେହେତୁ ମିଳନ ମହାନ୍! ଜୀବନନିର୍ବାହରେ ବିବିଧତା ସତ୍ତ୍ୱେ, ଭାବରାଜ୍ୟରେ ଅଦୃଶ୍ୟ ମିଳନ ତେଣୁ ଭାରତୀୟତାର ଚିହ୍ନାୟନ । ଆର୍ଥ-ସାମାଜିକ ବୈଷମ୍ୟ ସେ ମିଳନକୁ ସ୍ପର୍ଶ କରିପାରେନା; ଯେପରି ଭାରତ-ଇତିହାସର ଆଧୁନିକୀକରଣ, *ଡିସ୍କଭରି ଅଫ୍ ଇଣ୍ଡିଆ* ! ଅଥଚ ନବକୃଷ୍ଣଙ୍କ ଧାରଣା, ଜାତୀୟ ଏକତା କି ଅହିଂସା ବଳରେ ସ୍ୱାଧୀନତା ଆସିନାହିଁ । ବାସ୍ତବିକ ଯଦି ଆସିଥାନ୍ତା, ଜିନ୍ନାଙ୍କ ଦ୍ୱିଜାତି-ତତ୍ତ୍ୱ ଅମଳ ପାଇନଥାନ୍ତା, କି ଆମ୍ବେଡ୍କର୍ ଇଂରେଜଙ୍କୁ କହିନଥାନ୍ତେ, ହାଡ଼ିବାଉରି କ୍ଲାଇଭ୍-ଙ୍କ ତରଫରେ ଲଢ଼ିଥିଲେ ପଲାସୀରେ; ତମେ ସାମ୍ରାଜ୍ୟ ପାଇଲ, ଏକ୍ଷଣି ଯେତେବେଳେ ବାହୁଡ଼ି ଯାଉଚ, ହିସାବନିକାଶ କରିଦେଇ ଯାଅ । ଅର୍ଥାତ୍, ଏକାସାଙ୍ଗରେ ବଞ୍ଚୁଥିବା ଲୋକଗୁଡ଼ାଙ୍କ ଆର୍ଥ-ସାମାଜିକ ଅବସ୍ଥାନରେ ଆପେକ୍ଷିକ ବ୍ୟବଧାନ ଯଦି ବ୍ୟାପକହୁଏ, ଐକ୍ୟଚେତନା ବିପନ୍ନହେବା ଅନିର୍ବାଯ୍ୟ, କାହିଁକିନା, It is not the consciousness of men that determines their being, but, on the contrary, their social being that determines their consciousness, ଏ ଚିନ୍ତାଧାରା ସହିତ ଅପରିଚିତ ଥିଲେନାହିଁ ନେହ୍‌ରୁ । ମାତ୍ର ତଥାକଥିତ ସେଇ ମହାନ୍ ଐକ୍ୟକୁ କୁହାଯାଉଚି ଏକ୍ଷଣି 'ହିନ୍ଦୁତ୍ୱ' । ଧର୍ମ ହିଁ ନିର୍ଦ୍ଧାରିତକରୁଚି ଐକ୍ୟଚେତନା, ଆର୍ଥସାମାଜିକ ବ୍ୟବଧାନ ନୁହେଁ । ଏବଂ ଧର୍ମ ଯଦି ଗଠିତକରେ ବିଶେଷଧରଣର ଏଇ ଶ୍ରେଣୀଚେତନା, ସାମ୍ପ୍ରଦାୟିକ ଦଙ୍ଗା ବି ହେବ ବିଶେଷଧରଣର ଶ୍ରେଣୀସଂଘର୍ଷ, 'ଇଣ୍ଡିଆନ୍‌ନେସ୍'ର ର୍‌ୟାଡିକାଲ୍ ପରିଣତି ! ପଶ୍ଚିମର ରାଜନୀତିକ/ଅର୍ଥନୀତିକ ଆଦର୍ଶ ତାଙ୍କୁ ଆକର୍ଷଣକରିଚି ସିନା, ପାଶ୍ଚାତ୍ୟ ସଂସ୍କୃତି, ଯା ଗଢ଼ିଉଠିଚି ପୁଞ୍ଜିବାଦ କଲ୍ୟାଣରୁ, ମନେହୋଇଚି ଅବାଞ୍ଛିତ; କାହିଁକିନା, ଭାରତୀୟ ଜାତୀୟତା ସହିତ ପାଶ୍ଚାତ୍ୟ ଜାତୀୟତାବୋଧ ଦିଶିଚି ଅସମଞ୍ଜସ । ପଶ୍ଚିମର 'ନେସନ୍' ଏକ ନୃତାତ୍ତ୍ୱିକ ଧାରଣା; ଏଥ୍‌ନିକ୍ ଭାରତ ବହୁଜାତି, ଆର୍ଯ୍ୟ-ଅନାର୍ଯ୍ୟ-ଦ୍ରାବିଡ଼ଙ୍କ ବସତି । ପଶ୍ଚିମର ଧର୍ମ ଏକମାତ୍ର ଖ୍ରୀଷ୍ଟଧର୍ମ । ଭାରତର ଧର୍ମପରମ୍ପରା ବିବିଧ ଓ ବିଚିତ୍ର । ନେହ୍‌ରୁ ଋହିଚନ୍ତି, ବୈଚିତ୍ର୍ୟ ଓ ବିବିଧତା ଅକ୍ଷୁଣ୍ଣରହିବ; ଏପରିକି ଆଦିବାସୀଙ୍କ ସ୍ୱତନ୍ତ୍ର ଜୀବନଚର୍ଯ୍ୟା ବି ରହିବ ସୁରକ୍ଷିତ; ପାଶ୍ଚାତ୍ୟ ଛାଞ୍ଚରେ ତିଆରି 'ରାଷ୍ଟ୍ର'ର ସ୍ଟ୍ରକ୍‌ଚର୍ ଭିତରେ । ପୁରାତନ ରାଷ୍ଟ୍ରର ଏକଛତ୍ର ସାର୍ବଭୌମ, ଅବଶ୍ୟ, ୧୯୪୭ ପରେ ମଧ୍ୟ, ହୋଇପାରେ ପଥନିର୍ଦ୍ଦେଶକ । କିନ୍ତୁ, ମୌର୍ଯ୍ୟ-ରାଷ୍ଟ୍ର ଯଦି ମଡେଲ୍, ବୁଦ୍ଧ କି ମହାବୀର ଆଦୌ ବାହାରିଲେ କାହିଁକି ? ଅଶୋକ କି ଆକବର୍

ଯଦି ମଡେଲ୍, ଅଶୋକ ବୌଦ୍ଧହେଲେ କାହିଁକି, କିମ୍ବା ଆକ୍‌ବର୍‌ଙ୍କୁ ଦରକାରହେଲା କାହିଁକି ଦିନ୍‌ଇଲାହି ? ଘୁଣପୋକ ପରି ସାମାଜିକ ବୈଷମ୍ୟ କୋରିପକାଇଚି ରାଷ୍ଟ୍ରର ଅଭ୍ୟନ୍ତର; ସଂହତି ରକ୍ଷାକରାଯାଇଚି ବଳପୂର୍ବକ, ନହେଲେ କୂଟକପଟ ପ୍ରୟୋଗକରି । ଭାରତର ସଂସ୍କୃତି ଚିରକାଳ ରହିଚି ବିବଦମାନ ରଣକ୍ଷେତ୍ର; ଧନତନ୍ତ୍ର ଇଉରୋପ୍-ଆମେରିକାର ସଂସ୍କୃତିକୁ କରିଚି ଏକରୂପ, କିନ୍ତୁ ସାମ୍ରାଜ୍ୟବାଦ ଭାରତରେ ପୁଞ୍ଜିବାଦ ଓ ତଜ୍ଜନିତ ଶିଳ୍ପାୟନକୁ ବିକଶିତହେବା ସୁଯୋଗରୁ ବଞ୍ଚିତକରି ରଖିଚି ସଯତ୍ନ । ରାଷ୍ଟ୍ରର ଷ୍ଟ୍ରକ୍‌ଚର୍ ଯେ ନାଗରିକ ଦିନଯାପନ ସହିତ ଅଙ୍ଗାଙ୍ଗୀ, ଜେଲ୍‌ଖାନାରେ ବସି ଭାରତକୁ ଆବିଷ୍କାରକରିବା ପ୍ରକ୍ରିୟାରେ ବୁଝିପାରିନାହାଁନ୍ତି ଜବାହର୍‌ଲାଲ୍; ବୁଝିନାହାଁନ୍ତି ଯେମିତି ଷ୍ଟାଲିନ୍ ଜେଲ୍‌ଖାନା ବାହାରେ । ରାଷ୍ଟ୍ରକୁ ଆଶୁପତନରୁ ରକ୍ଷାକରିବାକୁ ସହଜବାଟ ଧରିଚନ୍ତି, ଭାଷାଭିତ୍ତିରେ ଅଙ୍ଗରାଜ୍ୟର ପୁନର୍ଗଠନ, ପ୍ରପର୍ଟି ରିଲେସନ୍ସ ସହିତ ଯାର ଜମାରୁ ସଂପର୍କ ନାହିଁ; ଅଥଚ ଭୋଟ୍‌ରାଜନୀତି ପାଇଁ ବିଶଲ୍ୟକରଣୀ । ରାଷ୍ଟ୍ରରୁ ବିଚ୍ଛିନ୍ନହେବା ସେଥିପାଇଁ ପ୍ରଶମିତ ହୋଇନାହିଁ; ଗର୍‌ବାସଫ୍ ତ ଭାଙ୍ଗିଦେଇଚି ସୋଭିଏତ୍ ସଂଘ ଭଳି ବହୁଜାତିକ ରାଷ୍ଟ୍ରକୁ ।

ମାତ୍ର ପରିସ୍ଥିତି ତାଡ଼ନାରେ ଯା କରନ୍ତୁ କି ନକରନ୍ତୁ ଜବାହର୍‌ଲାଲ୍ ମୂଳ ପରିଚୟରେ ଭାବୁକ ଓ ବୁଦ୍ଧିଜୀବୀ, ବନ୍ଦୀଦଶାରେ ସୁଦ୍ଧା ଭାରତ ତାଙ୍କୁ ଭାବିତକରିଚି ଯେତିକି, ପୃଥିବୀ ତତୋଧିକ; ପୃଥିବୀ(=ଇଉରୋପ୍)ର ସମଗୋତ୍ର କରିବାକୁ ମନକରିଚନ୍ତି ଭାରତକୁ, ଏବଂ ସେଇ ପ୍ରକ୍ରିୟାରେ, ବିଶ୍ୱାସଜନ୍ମିଚି ଧର୍ମ ଓ ଭାଷା ପରି ଅତୀତ ମଧ୍ୟ ଭାରତବାସୀଙ୍କ ଜୀବନଦୀକ୍ଷାରୁ ଅଚ୍ଛେଦ୍ୟ । ଧର୍ମ ଭାଷା ଓ ଅତୀତ ଐତିହ୍ୟ ଯେହେତୁ ପ୍ରାତ୍ୟହିକ ଜୀବନଯାତ୍ରାରେ ମଧ୍ୟ ମୂଲ୍ୟବାନ, ସେଇ ମୂଲ୍ୟବୋଧ ଭିତରଦେଇ ଲୋକ କଳ୍ପନାକରନ୍ତି ଭବିଷ୍ୟତର ରୂପରେଖ; ଅର୍ଥାତ୍ ସମ୍ଭାବ୍ୟ ଜଗତ୍‌କୁ । ସାଂପ୍ରତିକ ଜ୍ଞାନଚର୍ଚ୍ଚା ଯା'କୁ କହିପାରେ *ଓରିଏଣ୍ଟାଲିଜ୍ମ*, ବିଦେଶୀ ପଣ୍ଡିତଙ୍କ ଚଷମା ଭିତରଦେଇ ଭାରତଦର୍ଶନ । କିନ୍ତୁ ଜବାହର୍‌ଲାଲ ଥିଲେ ମର୍ମେମର୍ମେ ଜାତୀୟତାବାଦୀ; ବିଦେଶୀ ଭାବୁକଙ୍କ ପ୍ରାଚ୍ୟବାଦକୁ ନିଜ ରାଜନୀତିକ ପ୍ରୟୋଜନ ସହିତ ଯୋଡ଼ି ତିଆରିକରିଚନ୍ତି ଯୋଉ ଇତିହାସ-ଦର୍ଶନ, ନିଃସନ୍ଦେହରେ ତା ଏକ ଭାବବାଦୀ ନିର୍ମାଣ, କାହିଁକିନା, ପ୍ରେତାସକ୍ତି ଭାରତୀୟ ଜନସମାଜର ବିଶିଷ୍ଟ ଲକ୍ଷଣ ନୁହେଁ, ଏବଂ ଧର୍ମ ମଧ୍ୟ ଲୋକାୟତ, ଯେପରି ଚର୍ବାକ୍ । ଅସ୍ମିତାର ରାଜନୀତି ବାହାରିଚି ଅବମାନନା ଓ ଅବହେଳାରୁ, ଭାଷାକୁ ମଝିରେ ରଖି ଅସ୍ମିତାନିର୍ମାଣ ତିଆରି ସମ୍ପ୍ରସାରଣ, ଯେପରି ହିନ୍ଦୀ ବିପକ୍ଷରେ ଦକ୍ଷିଣ-ଭାରତର ବିଦ୍ରୋହ । ଏଗୁଡ଼ାକୁ ଭାରତୀୟ ମଣିଷର ମନୁଷ୍ୟତ୍ୱର ଦୈବଦତ୍ତ ବା ଯଥାପ୍ରାପ୍ତ ବିଶେଷ ଉପସର୍ଗ ଭାବିବାର ସଙ୍ଗତ କାରଣ ନଥିଲା କି

ନାହିଁ । ଏ କେବଳ ବଙ୍କିମଚନ୍ଦ୍ର ଦେଶକୁ ମାତୃମୂର୍ତ୍ତିରେ କଳ୍ପନାକରିବା ଭଳି ଇତିହାସ/ଅତୀତକୁ ରୋମାଣ୍ଟିକ୍ ନେତ୍ରରେ ଅବଲୋକନ; ସତେ ଯେମିତି ଧର୍ମ ଭାଷା ଐତିହ୍ୟଚେତନା ଅପରିବର୍ତ୍ତନୀୟ ମାଧ୍ୟାକର୍ଷଣ ଶକ୍ତି କିମ୍ବା ରକ୍ତସଂଚାଳନ ପରି ଜୈବିକ ବିଧାନ! ସନ୍ଦେହ ନାହିଁ, ଯା ଦରକାର ଥିଲା, ବିକ୍ଷିପ୍ତ ବିଚିତ୍ର ପରସ୍ପରଠାରୁ ବିଚ୍ଛିନ୍ନ ଜନଗୋଷ୍ଠୀ ଓ ଜନପଦକୁ ଏକସୂତ୍ରରେ ବାନ୍ଧିବାର କେନ୍ଦ୍ରସ୍ତମ୍ଭ, ଅର୍ଥାତ୍ ଇଡିଅଲଜି । ମାତ୍ର ଭାବାବେଗ ଭାବାଦର୍ଶର ଉପ୍ରିସ୍ଥଳ ନୁହେଁ; ଭାବାଦର୍ଶ ତିଆରିହୁଏ ହୋଇଉଠିବା ପ୍ରକ୍ରିୟାରେ, ଏବଂ ମଣିଷର ଏଇ ହୋଇଉଠିବା ହିଁ ପ୍ରକୃତ ଆଧୁନିକୀକରଣ, ଯା ବିଦ୍ୟମାନ, ତାର ଭାଷ୍ୟରଚନା ନୁହେଁ, ସ୍ଥିତାବସ୍ଥାକୁ ବଦଳାଇଦେବା ଉପକ୍ରମ । ମାର୍କ୍ସ ସେଥିପାଇଁ ଲେଖିଥିଲେ, ଭାରତ ସ୍ୱାଧୀନହେବା ଶହେବର୍ଷ ଆଗରୁ, The materialist doctrine concerning the changing of circumstances and education forgets that circumstances are changed by men and that the educator must himself be educated, କାହିଁକିନା, The Philosophers have only interpreted the world in different ways; the point, however, is to change it । ଦେଶର ରୂପାନ୍ତର ଘଟାଇବା ଯେତେବେଳେ ଆଧୁନିକୀକରଣର ଅଭିପ୍ରାୟ, ଯା ଦରକାର, ତା ଅତୀତର ସମର୍ଥନ ନୁହେଁ, ଅତୀତର ନିର୍ମମ ସମାଲୋଚନା, କାହିଁକିନା, ବିଦ୍ୟମାନ ଅସାମ୍ୟ ଓ ଅନଗ୍ରସରତା ଅତୀତର ହିଁ ଅବଦାନ । ସେଇ ଅତୀତକୁ ଭାବବାଦର କୁଜ୍ଝଟିକାରୁ ମୁକ୍ତକରିବାକୁ The educator must himself be educated ।

## ।। ଦୁଇ ।।

ପୋଷ୍ଟ-କଲୋନିଆଲ୍ ବା ଉତ୍ତର-ଔପନିବେଶିକ ସମାଜ କହିଲେ, ଖାଲି ଏସିଆ-ଆଫ୍ରିକା ନୁହେଁ, ଯୁକ୍ତରାଷ୍ଟ୍ର ଆମେରିକା କାନାଡା ଅଷ୍ଟ୍ରେଲିଆ ନିଉଜିଲ୍ୟାଣ୍ଡ୍ ବି ବ୍ରିଟେନ୍‌ର ପୂର୍ବତନ ଉପନିବେଶ; ମାତ୍ର ସେମାନଙ୍କ ଅଭିଜ୍ଞତା ଭାରତଠାରୁ ସଂପୂର୍ଣ୍ଣ ଅଲଗା, କାହିଁକିନା, ପ୍ରଜା ଖାଲି ଶ୍ୱେତାଙ୍ଗ ନୁହେଁ, ସଂସ୍କୃତି ମଧ୍ୟ ଅଭିନ୍ନ । ଦେଶର ଜନସାଧାରଣ ପ୍ରଧାନତଃ ଇଂରେଜ୍-ବଂଶଧର, ଏବଂ ସେଥିପାଇଁ, କ୍ଷମତା ହସ୍ତାନ୍ତର ଦରକାର ପଡ଼ିନାହିଁ । ପ୍ରଭୁ ସହିତ ପ୍ରଜା କ୍ଷମତାରେ ଭାଗବସାଇଚି ଜନ୍ମଲଗ୍ନରୁ । ଆଧିପତ୍ୟ ଯୋଉଠି ଅସହ୍ୟ ହୋଇଚି, ଯେପରି ଆମେରିକାରେ, ଯୁଦ୍ଧକରି ହଟାଇଦେଇଚନ୍ତି ବ୍ରିଟେନ୍‌କୁ, ଏବଂ ଫରାସୀବିପ୍ଳବର ଆଦର୍ଶ ଆମେରିକାକୁ ଏପରି ଉଦ୍‌ବୁଦ୍ଧକରିଚି ଯେ ଫ୍ରାନ୍ସ ଉପହାରଦେଇଚି ତାଙ୍କୁ ଷ୍ଟାଚ୍ୟୁ ଅବ୍ ଲିବର୍ଟି । ପୁଣି,

ଭାଷା ସବୁଠି ଇଂରେଜୀ ଓ ଧର୍ମ ଖ୍ରୀଷ୍ଟଧର୍ମ । ଔପନିବେଶିକ ପ୍ରଭୁ ସେ ସମାଜଗୁଡ଼ିକରୁ ବିଦାହୋଇଗଲେ ସୁଦ୍ଧା, ପୁନର୍ଗଠନର ପ୍ରଶ୍ନ ଉଠିନାହିଁ । ସଂସଦୀୟ ରାଜନୀତି ଓ ସାମାଜିକ ସାମ୍ୟ ସାଙ୍ଗକୁ ନାଗରିକ ଅଧିକାରର ମୌଳିକ ପ୍ରତ୍ୟୟ ଓ ଅଭ୍ୟାସ ଆହରଣକରିଚନ୍ତି ଉତ୍ତରାଧିକାର ସୂତ୍ରରେ, ଏବଂ ପରିବର୍ତ୍ତନ ଆବଶ୍ୟକ ହୋଇଚି ଯେତେବେଳେ, ଇଉରୋପ୍ ହୋଇଚି ପଥପ୍ରଦର୍ଶକ । ଏ ଏକ ସ୍ୱାଭାବିକ ପ୍ରକ୍ରିୟା, ଏବଂ ସେଥିପାଇଁ, ସାବଲୀଳ । ଭାରତରେ କିନ୍ତୁ ଘଟିଚି କ୍ଷମତାଷ୍ଟ୍ରକ୍‌ଚର୍‌ରେ ଆମୂଳ ପରିବର୍ତ୍ତନ ସାଙ୍ଗକୁ ଇଉରୋପ୍‌ର ସଂସ୍କୃତି ସହିତ ସହସା ବିଚ୍ଛେଦ; ଦାବିକରିଛୁଁ ମାତୃଭାଷାର ଅଧିକାର, ଭାରତର ଦର୍ଶନ-ବିଜ୍ଞାନ-ସାହିତ୍ୟ-ସ୍ଥାପତ୍ୟର ପୁନରୁଦ୍ଧାର, ଇତିହାସର ପୁନର୍ବିବେଚନା । ମାତ୍ର ନେହ୍‌ରୁ ରାଜନୀତି ଭିତରକୁ ଆଣିଚନ୍ତି ବ୍ରିଟିଶ୍ ମଡେଲ୍‌ର ଗଣତନ୍ତ୍ର ଯଦିଓ ୧୯୪୭ର ଯୁଦ୍ଧୋତ୍ତର ବ୍ରିଟେନ୍‌ର ସମାଜ ଓ ସଂସ୍କୃତି ସହିତ ଭାରତର ଥିଲା ଜମିନ୍-ଆସ୍‌ମାନ୍ ପାର୍ଥକ୍ୟ । ଇଉରୋପ୍ ଓ ଆମେରିକାରେ ବି ସଂସଦୀୟ ଗଣତନ୍ତ୍ର ରହିଚି, ମାତ୍ର ବ୍ରିଟେନ୍‌ର ଅବିକଳ ନକଲ ନୁହେଁ । ଧର୍ମ ଜାତି ଭାଷା ଶିକ୍ଷା ଓ ସଂପତ୍ତିର ବ୍ୟାପକ ତାରତମ୍ୟକୁ ପାଞ୍ଚବର୍ଷରେ ଥରେ ଭୋଟ୍‌ମେଳା ପୋଛିପକାଇବ କେମିତି, ସେ ମ୍ୟାଜିକ୍‌ର ପୂର୍ବଦୃଷ୍ଟାନ୍ତ କିନ୍ତୁ ଇତିହାସରେ ନଥିଲା କି ନାହିଁ । ଷାଠିଏବର୍ଷ ପୁରୁଣା ସଂସଦୀୟ ଗଣତନ୍ତ୍ର ସତ୍ତ୍ୱେ ତାରତମ୍ୟଗୁଡ଼ାକ ତେଣୁ ବଞ୍ଚିରହିଚି ଆଉ ବଢୁଚି । ଉତ୍ତର-ଔପନିବେଶିକର 'ଉତ୍ତର' ଉପସର୍ଗ ତେଣୁ ଧୂଆଁବାଣ; ମାଟି ଉପରୁ ଉପନିବେଶ ଉଠିଯାଇଚି ସିନା, ମନଭିତରେ ତା ଚେରମୂଳ ଯାଇଚି ଆହୁରି ଗହୀରକୁ । 'ଜ୍ଞାନ' ବା ବିଦ୍ୟାଚର୍ଚ୍ଚାର 'କ୍ଷମତା' (=ଆଧିପତ୍ୟର) ଷ୍ଟ୍ରକ୍‌ଚର୍ ରହିଚି ଯଥାପୂର୍ବଂ ତଥାପରଂ । ରହିଚି ବୋଲି, ସାମ୍ରାଜ୍ୟବାଦ ସାଙ୍ଗରେ ଯୁଝିବା କାମରୁ ଇସ୍ତଫାଦେଇ ବସିଚନ୍ତି ଭାରତର ଜ୍ଞାନୀଗୁଣୀ । ସ୍ୱାଭାବିକ ଅବସ୍ଥାରେ ଯୁଝିବା କାମଟା ହୁଅନ୍ତା କିନ୍ତୁ ଆଧୁନିକୀକରଣ । ମାତ୍ର ଷାଠିଏବର୍ଷବ୍ୟାପୀ ଆ୍ୟାକାଡେମିକ୍ ତାଲିମ୍ ଏଇ ବିଶ୍ୱାସ ବଦ୍ଧମୂଳ କରିଦେଇଚି ଯେ, ଯାବତୀୟ ମେଧାବୀ କର୍ମକାଣ୍ଡରେ ଅବଶିଷ୍ଟ ପୃଥିବୀ ଅପେକ୍ଷା ଇଉରୋପ୍ ଖାଲି ଅଗ୍ରସର ନୁହେଁ, ଶ୍ରେଷ୍ଠ ଓ ସର୍ବୋତ୍ତମ । ସାମ୍ରାଜ୍ୟବାଦ ତେଣୁ ମଣିଷକୁ ଆଧୁନିକକରିବାରେ ସହାୟକ; ଯେପରି ମ୍ୟାକଲେ କହିଥିଲେ, ଇଂରେଜୀପାଠରେ ଦୋରସ୍ତହେଲେ କାଲାଆଦ୍‌ମୀ ବି ହେବ ଇଂରେଜ୍ ଭଳି ଆଧୁନିକ । ଅର୍ଥାତ୍, ଭାରତକୁ ପଦାନତକରିବା ଦରକାରହୋଇଚି ଇଂରେଜ୍ ଯେହେତୁ ଚାହିଁଚି ଆମକୁ କରିବ ସଭ୍ୟ ଶିକ୍ଷିତ ସମୃଦ୍ଧ । ଅଧିକାଂଶ ଶିକ୍ଷିତଲୋକ ମନେମନେ ବିଶ୍ୱାସକରନ୍ତି, ନୀରଦ ଚୌଧୁରୀଙ୍କ ପାଖରୁ ବିଦ୍ୟାଧର ନାଇପଲ୍ ପର୍ଯ୍ୟନ୍ତ ଯେ, କଥାଗୁଡ଼ାକ ସାମ୍ରାଜ୍ୟବାଦର ଛଳନା ନୁହେଁ; ଇଂରେଜ୍ ସତକୁ ସତ ଚାହିଁଥିଲା

କାଳାଆଦ୍‌ମିକୁ ନିଜ ସମକକ୍ଷ କରିବାକୁ । ଖାଲି ସ୍କୁଲ୍-କଲେଜ୍‌ରେ ପଢ଼ାଶୁଣା ନୁହେଁ, କାହିଁକିନା, ଅଷ୍ଟ୍ରେଲିଆ କି କାନାଡାରେ ମଧ୍ୟ ଏଭଳି ଶିକ୍ଷାବ୍ୟବସ୍ଥା ପ୍ରବର୍ତ୍ତିତହୋଇଚି, ମାତ୍ର ଯୋଉ ସାମାଜିକ ଅନୁଷ୍ଠାନ ଓ ଭାବାଦର୍ଶ ଦ୍ୱାରା ସମାଜରେ ପରିବର୍ତ୍ତନ ସଂଘଟିତ ହୁଏ, ସେଠି ସେଗୁଡ଼ିକୁ ପ୍ରତିଷ୍ଠାକରାଯାଇଚି ଶିକ୍ଷାବ୍ୟବସ୍ଥାର ପରିପୂରକ ଭାବରେ, ଭାରତ କିନ୍ତୁ ସମାଜକୁ ବଦଳାଇବା ଭଳି ଅନୁଷ୍ଠାନ, କିମ୍ବା ପରିବର୍ତ୍ତନ ଅଭିଳାଷକୁ ଉତ୍ସାରିତକରିବା ଭଳି ଦାର୍ଶନିକ ଅବରୋଧ ଗଢ଼ିବାକୁ ଉତ୍ସାହପାଇନାହିଁ; ତାଙ୍କ ଲୁଗାପଟା କଥାବାର୍ତ୍ତା ଚାଲିଚଳଣ ଗୁଡ଼ିକୁ ଅନୁକରଣକରିବାକୁ ଗୌରବ ମଣିଛୁ; ତାଙ୍କ ଜୀବନଦର୍ଶନ କି ସମାଜବ୍ୟବସ୍ଥା ଆମକୁ ଆକୃଷ୍ଟକରିନାହିଁ । ଯାହାଙ୍କୁ କରିଚି, ଭାରତର ସମାଜବ୍ୟବସ୍ଥା ଉପରେ ଯଥାପ୍ରାପ୍ତ ଧାରଣାଗୁଡ଼ାକୁ ଲଦିଦେବାକୁ ଚାହିଁଚନ୍ତି କେବଳ । ହିତାହିତ ବିର୍ଚ୍ଚରକଲାବେଳକୁ, କିଏ ଉଗ୍ର ରକ୍ଷଣଶୀଳ(ଯେପରି ସାଭରକର୍) ତ, କିଏ ଏକେବାରେ ‘ହ୍ୱାଇଟ୍ ମାସ୍କ, ବ୍ଲାକ୍ ସ୍କିନ୍’ (ଯେପରି ଜିନ୍ନା) । ଇଂରେଜ୍ ଏଠି ରହିବାକୁ ଆସିନଥିଲେ, ପ୍ରାଚୀନ ସମାଜକୁ ବଦଳାଇଦେବା ଇପ୍ସିତ ହେଲେ ବି, ସମ୍ଭାବ୍ୟ ବିଦ୍ରୋହ ଆଶଙ୍କାରେ ନିଜକୁ ରଖିଚନ୍ତି ନିରାପଦ ଦୂରତ୍ୱରେ । ବଦଳାଇବା କାମଟା ବି ବ୍ୟୟସାପେକ୍ଷ; ଅଥଚ ସେମାନେ ଆସିଥିଲେ ଆୟକରିବାକୁ; ଆୟ ବଢ଼ାଇବାକୁ ଭାରତକୁ ଚିପୁଡ଼ିପକାଇଚନ୍ତି ଆପାଦମସ୍ତକ; ମାତ୍ର ଲେଉଟିଗଲେ ଯେତେବେଳେ, ଢେର୍ ଲୋକ ପିତୃଶୋକରେ ମୁହ୍ୟମାନ ହୋଇପଡ଼ିଚନ୍ତି, ଯେପରି, ରଜା-ଜମିଦାର, ଓକିଲ-ଡାକ୍ତର, ମହାଜନ-ବ୍ୟାଙ୍କର୍, ସିଭିଲିଆନ୍, ପୁଲିସ୍ ଆଉ ସୈନ୍ୟବାହିନୀର ପଦସ୍ଥ ଅଫିସର୍ । ସେମାନେ କିନ୍ତୁ ଜାଣିଥିଲେ ଭାରତୀୟ ଜନସାଧାରଣଙ୍କ ଅବକ୍ଷୟର କାରଣ: ଦୀର୍ଘକାଳଧରି ସ୍ୱୈରତନ୍ତ୍ର ଅଧୀନରେ ଅବନତହୋଇ ରହିବା ଫଳରେ ଲୋକ ବ୍ୟକ୍ତିଗତ ସ୍ୱାଧୀନତା ତ ହରାଇସାରିଚନ୍ତି, ଏକାବେଳକେ ହରାଇସାରିଚନ୍ତି ସଂପତ୍ତି ଓ ଶିକ୍ଷା । ଜୀବନଧାରଣ ହୋଇଯାଇଚି ନିଷ୍ପ୍ରଭ, ନିସ୍ପନ୍ଦ, ସବୁରକମ ସର୍ଜନଶୀଳ କାମରୁ କ୍ରମାଗତ ଠେଲିହୋଇ ବାହାରିଯିବା ଫଳରେ ଆତ୍ମରକ୍ଷା ସକାଶେ ବି ହୋଇଯାଇଚନ୍ତି ଅସମର୍ଥ । ଇଂରେଜ୍‌ଙ୍କ ଭିତରେ ଯିଏ ଅଳ୍ପବୁଦ୍ଧି ଓ ଦାମ୍ଭିକ, ଭାରତୀୟଙ୍କୁ ଦେଖିଥିଲେ ଆଫ୍ରିକାର ବର୍ବର ଓ ଇଉରୋପ୍‌ର ସଭ୍ୟଜାତିଙ୍କ ମଧ୍ୟବର୍ତ୍ତୀ କୌଣସି ପ୍ରାଣୀ, ଏବଂ ସେଥିପାଇଁ, କହିଥିଲେ ସ୍ୱୈରତନ୍ତ୍ର ଖାଲି ନିର୍ଜୀବ କରିନାହିଁ, ଭାରତର ସଂସ୍କୃତିରେ ମଧ୍ୟ ନା ଅଛି ବିଜ୍ଞାନ, ନା ଅଛି ଯୁକ୍ତି ! ଖାଲି ଆଇନ୍‌ର ଶାସନ ଦେଲେ ଚଳିବନାହିଁ, ଦେବାକୁ ହେବ ଆଧୁନିକତାର ସଂସ୍କୃତି । ଅଟାକରି କୁହାଯାଇଚି ହ୍ୱାଇଟ୍-ମ୍ୟାନ’ସ୍ ବର୍ଡେନ୍ । ରାମମୋହନ ରାୟ ସେଇ ରାଷ୍ଟ୍ରନୀତିର ସୁ ବା କୁ ଫଳ । ଭାବିଥିଲେ, ବିଦେଶୀ ଫୁଲକୁ ଭାରତମାଟିରେ

ଫୁଟାଇବାକୁ ହେଲେ ଆଗେ ବତର ବଦଳାଇବା ଦରକାର । ଜାତିଭେଦ ଓ ପୌତ୍ତଳିକତାକୁ ବିରୋଧକରି ପ୍ରବର୍ତ୍ତନକରିଚନ୍ତି ବ୍ରାହ୍ମମତ, ସତୀଦାହକୁ ବିରୋଧକରି ନିଷିଦ୍ଧକରିଚନ୍ତି ବାଲ୍ୟବିବାହ, ପାଠ୍ୟପୁସ୍ତକ ଲେଖି ବିଜ୍ଞାନ ଓ ପ୍ରଯୁକ୍ତିକୁ ଦେଇଚନ୍ତି ପ୍ରାଧାନ୍ୟ, ଏବଂ ସବୁକାମରେ ପାଇଚନ୍ତି ରାଷ୍ଟ୍ରର ପୋଷକତା । ପ୍ରଥମ ଭାରତୀୟ ବ୍ରାହ୍ମଣ ପଇତାଛିଣ୍ଡାଇ ଯାଇଥିଲେ ଯିଏ ବିଲାତ ବ୍ୟାବହାରିକ ସଂଯୋଗସ୍ଥାପନ ସକାଶେ ଇଂରେଜୀ ଭାଷାକୁ ମଧ କରିଥିଲେ ଶିରୋଧାର୍ଯ୍ୟ । ତେବେ, ଖ୍ରୀଷ୍ଟାନ୍ ପାଦ୍ରୀଙ୍କୁ ବିରୋଧକରିଚନ୍ତି ସଦର୍ପ, ବେଦ-ଉପନିଷଦକୁ ଟେକିଧରିଚନ୍ତି ବାଇବେଲ୍ ଉପରେ । ଏଇ ଆଧୁନିକତା ସିଭିଲ୍‌ସୋସାଇଟିକୁ ପ୍ରଭାବିତକରିଚି ଯଥେଷ୍ଟ, କିନ୍ତୁ ରକ୍ଷଣଶୀଳତା ବି ସମାନୁପାତରେ ହୋଇଚି ଯୁଯୁତ୍ସୁ । କାଳକ୍ରମେ ଭାରତୀୟ ଐତିହ୍ୟ ସାଙ୍ଗରେ ଆଧୁନିକତାର ଘଟିଚି ସଂଶ୍ଳେଷ, ମାତ୍ର ବିଦ୍ୟାସାଗରଙ୍କ ଭଳି ବିଗ୍ରହବିଧ୍ୱଂସୀ ଭାବିଚନ୍ତି, ଆବହମାନ ଚିନ୍ତାପରମ୍ପରାର ଦରକାର ସମୂଳ ଉତ୍ପାଟନ । ସଂସ୍କୃତ କଲେଜ୍‌ର ପ୍ରିନ୍ସିପାଲ୍ ବିଦ୍ୟାସାଗର, ବେଦାନ୍ତକୁ ଘୋଷଣାକରିଚନ୍ତି 'ଭ୍ରାନ୍ତ ଦର୍ଶନ' । 'ଉପନିବେଶ' ରୂପକ ବାସ୍ତବତାକୁ, ପ୍ରାଚୀନପନ୍ଥୀ ହୁଅନ୍ତୁ କି ସଂସ୍କାରବାଦୀ, କେହିହେଲେ ଉପଲବ୍ଧି କରିପାରିନାହାଁନ୍ତି ନାରକୀୟ ଅପକର୍ଷ; ଓଟପକ୍ଷୀ ଭଳି ଝଡ଼ ବହିବାବେଳେ ବାଲିତଳେ ମୁଣ୍ଡଗୁଞ୍ଜି ହୋଇଯାଇଚନ୍ତି ଆତ୍ମରକ୍ଷା-ତତ୍ପର । ସଂଗ୍ରାମ ଯେ ଜୀବନର ନିୟମ, ଏ ଚିନ୍ତା ଚେତନାକୁ ସ୍ପର୍ଶକରିନାହିଁ ବହୁକାଳ ପର୍ଯ୍ୟନ୍ତ; ଉପନିବେଶର ସଂସ୍କୃତି ଉତ୍ପନ୍ନକରି ପାରିନାହିଁ ସଂଗ୍ରାମର 'କାରଣ' । କାହିଁକିନା, ଆଧୁନିକତା ଆକ୍ରମଣରେ ଯା ଭାଙ୍ଗିଯାଇଚି, ତା ପ୍ରତି ତଥାପି ରହିଚି ଖେଦମୟ ଆସକ୍ତି ଆଉ ଭବିଷ୍ୟତ ସମ୍ପର୍କରେ ନୈତିକ ଆଶଙ୍କା । ରାଜନୀତି କି ଅର୍ଥନୀତି ମେଧାବୀଚିତ୍ତରେ ଉଙ୍କିମାରୁଥିଲେ ସୁଦ୍ଧା, ଜନସାଧାରଣ ରହିଚନ୍ତି ପ୍ରତିବାଦରୁ ବହୁଦୂରରେ । ବିଦେଶୀ ଐତିହାସିକ ପ୍ରବୋଧ ଦେଇଚନ୍ତି, ପ୍ରାଚୀନ ଭାରତ ଥିଲା ପ୍ରାଚୀନ ଗ୍ରୀସ୍ ପରି ଯୁକ୍ତିନିଷ୍ଠ ଓ ପ୍ରଗତିଶୀଳ, ମାତ୍ର ମଧ୍ୟଯୁଗଟା ମୁସଲ୍‌ମାନ୍‌ଙ୍କ ହାତରେ ପଡ଼ି ହୋଇଯାଇଚି ଅନ୍ଧକାରମୟ; କିନ୍ତୁ ହତାଶାର କାରଣ ନାହିଁ, ଇଂରେଜ୍‌ର ଆଗମନ ସୂଚନାକରୁଚି ପୁନର୍ଜାଗରଣ, ନବଯୁଗ; ବିଶେଷତଃ ଯେହେତୁ ଭାରତର ଆର୍ଯ୍ୟଗୋଷ୍ଠୀ ଓ ଇଉରୋପୀୟ ଜନଜାତି ପିତୃପରିଚୟରେ ଅଭିନ୍ନ । ସଂସ୍କୃତ ଭାଷା ସହିତ ପୁଣି ଗ୍ରୀକ୍, ଲାଟିନ୍, ଫାର୍ସୀ ଏକ ପରିବାରଭୁକ୍ତ, ସାମୟିକ ବିପର୍ଯ୍ୟୟ ଏପରି ଏକ ମହାନ୍ ଜନଗୋଷ୍ଠୀକୁ ବେଶିଦିନ ଖଞ୍ଜି କରି ରଖିପାରେନା । ମୂଳ ଇଉରୋପୀୟ ସଭ୍ୟତାର ପୁନଃଆବିର୍ଭାବ, ଚଞ୍ଚଳ ହେଉ କି ଡେରିରେ, ଅବଶ୍ୟମ୍ଭାବୀ । ଭାରତ ତେଣୁ ଏକାଗ୍ର ଚିତ୍ତରେ ପାଶ୍ଚାତ୍ୟ ଜଗତର ସମକକ୍ଷ ହେବାକୁ ତତ୍ପର ହେଉ । ଏ ପରିସ୍ଥିତିରେ,

ଇଂରେଜ୍ ଓ ଭାରତୀୟଙ୍କ ପାରସ୍ପରିକ ବିରୋଧ ଭାତୃବିବାଦ ଭଳି ଦିଶିବା କଥା, ଯେପରି କୌରବ-ପାଣ୍ଡବ । ଶୋଷଣ ଦମନ ନିର୍ଯାତନା ଅବମାନନା ଅନ୍ୟାୟ ଆଧିପତ୍ୟ, ସତେଅବା ଶଙ୍କର-କଥିତ ମାୟା । ସାମ୍ରାଜ୍ୟବାଦ ତେଣୁ ଅଳୀକ ଅପବାଦ ! ସେଭଳି ମତଲବ୍ ଥିଲେ, ପୁଣ୍ୟଭୂମି ଭାରତକୁ ମ୍ଳେଚ୍ଛଙ୍କ କବଳରୁ ଉଦ୍ଧାରକରିବାକୁ ବାହାରିବ କଳ୍କୀଅବତାର ! ଅର୍ଥାତ୍, ଔପନିବେଶିକ ପ୍ରଭୁତ୍ୱ, ଭାରତୀୟ ବୁଦ୍ଧିଜୀବୀଙ୍କୁ ଯୋଉ ଅତୀତ-ବର୍ତ୍ତମାନ-ଭବିଷ୍ୟତର ଚିତ୍ର ଦେଖାଇଚି, ପ୍ରାତ୍ୟହିକ ଅଭିଜ୍ଞତାର କ୍ରୂରତା ତା ପ୍ରକୋପରେ ହୋଇଯାଇଚି ମ୍ଳାନ ଓ ନିର୍ବେଦ; ଆତ୍ମପ୍ରତ୍ୟୟ ତିଆରିହେବାକୁ ବାଧା ପାଇଚି, ଯୋଉ ନିଉଛଣା ଜୀବନ କଟାଉଛୁଁ, ତାର କୋଉହେଲେ ବିକଳ୍ପ ସମ୍ଭବପର କି ନୁହେଁ, ଯୋଉ ଚିନ୍ତାରୀତିରେ ଆଜନ୍ମ ଆମେ ଅଭ୍ୟସ୍ତ, ତାର ବି କିଛି ବିକଳ୍ପ ଅଛି କି ନାହିଁ, ପ୍ରସ୍ତାବଗୁଡ଼ିକକୁ ପରୀକ୍ଷାନିରୀକ୍ଷା କରିବାକୁ ଔତ୍ସୁକ୍ୟ, ଆତ୍ମବିଶ୍ୱାସ ଅଭାବରେ, ଉଦ୍ରେକ ହୋଇପାରିନାହିଁ । ଅଧିକନ୍ତୁ, ଉତ୍କଣ୍ଠା ବଢ଼ିଚି ପଶ୍ଚିମର ମାନଦଣ୍ଡରେ ଆପଣା ଚିନ୍ତା ଓ କର୍ମକୁ ମାପି, ପଶ୍ଚିମର ଅନୁମୋଦନ ଅନୁଯାୟୀ ଆତ୍ମମର୍ଯ୍ୟାଦା ଓ ଆତ୍ମଶକ୍ତିର ଉତ୍କର୍ଷ-ଅପକର୍ଷ ନିର୍ଣ୍ଣୟକରିବାକୁ, ବିବେକାନନ୍ଦ କି ରବୀନ୍ଦ୍ରନାଥ, ଜଣେହେଲେ ପଛରେ ପଡ଼ିନାହାଁନ୍ତି ଏ ଦୌଡ଼ରେ । ଅର୍ଥାତ୍, ପାଶ୍ଚାତ୍ୟ ଦୃଷ୍ଟିରେ ଯା ମୂଲ୍ୟବାନ, ତାକୁ ହିଁ ଅର୍ଜନକରିବାକୁ ଭାରତୀୟ ଆଧୁନିକତାବାଦୀଙ୍କ ଭିତରେ ଲାଗିଯାଇଚି ପ୍ରତିଯୋଗିତା । ଜବାହରଲାଲ୍ ତେଣୁ ବ୍ୟତିକ୍ରମ ନୁହେଁ । ଗାନ୍ଧୀଙ୍କ ଜାତୀୟତାବାଦୀ ଆନ୍ଦୋଳନର ସାଫଲ୍ୟ ସୁଦ୍ଧା ନିର୍ଭରକରିଚି ଇଂରେଜ୍‌ର ଅନୁମୋଦନ ଉପରେ । ପ୍ରାୟନ୍ଧକାର ଏଇ ମାନସଲୋକ ଯେ ଅଦ୍ୟାବଧି ବିଦ୍ୟମାନ, ତାକୁହିଁ କୁହାଯାଉଚି ଉତ୍ତର-ଔପନିବେଶିକତା, ପୋଷ୍ଟ-କଲୋନିଆଲିଜ୍ମ; ପଶ୍ଚିମର ଅଭିଭାବକତ୍ୱକୁ ନିଃସର୍ତ୍ତ ସ୍ୱୀକୃତି । ଅନ୍ୟ ଶବ୍ଦରେ ଭୌଗଳିକ ପରିସରରୁ ଅପସୃତହୋଇ ଉପନିବେଶ ଆବୋରିବସିଚି ଆମ ଚିତ୍ତଲୋକର ପରିଧି । ସେ ଆଧିପତ୍ୟରୁ ମୁକ୍ତହେବାକୁ ହେଲେ ଚିନ୍ତାଜଗତକୁ କରିବାକୁ ପଡ଼ିବ ସ୍ୱାଧୀନ; ସାମ୍ରାଜ୍ୟବାଦ ଦ୍ୱାରା ନିର୍ମିତ ଯୋଉ ମୂଲ୍ୟମାନ ଓ ମର୍ମାର୍ଥ, ତା ନିଗଡ଼ରୁ ବାହାରିଆସି ନିଜ ଦୁର୍ଗତି ବିଷୟରେ ସ୍ୱାଧୀନ ଅନୁଚିନ୍ତନ ଓ ସାମୂହିକ ବିଚାର, କାହିଁକିନା, ପୂର୍ବ-ପଶ୍ଚିମ ସ୍ୱଦେଶୀ-ବିଦେଶୀ ପ୍ରାଚୀନ-ଆଧୁନିକ ଭାରତୀୟ-ଅଭାରତୀୟ, ବିପରୀତ ଏଇ ଯୁଗ୍ମପଦଗୁଡ଼ାକ କେବଳ ଔପନିବେଶିକ ଉତ୍ତରାଧିକାର; ଯାହାକୁ ନିର୍ମାଣକରିଚି ପ୍ରଭୁ ଓ ଭୃତ୍ୟ ମଧ୍ୟସ୍ଥ ଅଦୃଶ୍ୟ ଅଭିସନ୍ଧି । ସେଗୁଡ଼ାକୁ ପରିତ୍ୟାଗକରିବା ଅର୍ଥ ଆଧୁନିକତାକୁ ବର୍ଜନ ନୁହେଁ । କିନ୍ତୁ ଆଧୁନିକତାର ରହିଚି ଅନେକ ପର୍ଯ୍ୟାୟ ଓ ସ୍ତର, ସେଥିରୁ କୋଉଟା ବା କେତେ ପରିମାଣ ଆବଶ୍ୟକର ଉପଯୋଗୀ, ସ୍ଥିରକରିବ ଯୋଉ ଅଭିଜ୍ଞତା

ଆମେ ସଂଚୟକରିଛୁଁ ଅଦ୍ୟାବଧି, ତାର ନିର୍ମମ ତୀକ୍ଷ୍ଣ ସମାଲୋଚନା । ରାଜନୀତି ହେଉ କି ଅର୍ଥନୀତି, ସାହିତ୍ୟ ହେଉ କି ଇତିହାସ, ଔପନିବେଶିକତାର ଭେଦମୁଦ୍ରା ମୌଳିକ କୋଉ ଅନ୍ତଦୃଷ୍ଟି ଯେହେତୁ ଦେଖାଇପାରିନାହିଁ କୋଉଠିହେଲେ, ଆଗେ ସେଗୁଡ଼ିକର ପରିଶୁଦ୍ଧି ନଘଟାଇଲେ, ବନ୍ଧନମୁକ୍ତିର ସମ୍ଭାବନା ରହିଯିବ ଚିରପ୍ରତିହତ । କାହିଁକିନା, ଏତେଦିନଯାଏଁ ଯୋଉ ଜଗତ୍‌କୁ 'ତୃତୀୟ ବିଶ୍ୱ' କୁହାଯାଉଚି, କ୍ୟାପିଟାଲିଜ୍ମ ଓ କମିଉନିଜ୍ମର ମଧ୍ୟବର୍ତ୍ତୀ ତା ଏକ ଦୋଦୁଲ୍ୟମାନ ପରିସର; ପାଶ୍ଚାତ୍ୟ ଜ୍ଞାନଚର୍ଚ୍ଚା ସେଇ ଦୁନିଆକୁ ହଠାତ୍ ଉପସର୍ଗରେ ଭୂଷିତକରି, 'ପୋଷ୍ଟ' ପ୍ରିଫିକ୍ସ ଲଗାଇଦେଇ ଗ୍ଲୋବାଲାଇଜ୍ କରିବାକୁ ଚେଷ୍ଟାକରୁଚି । ସହଯୋଗ କରୁଚନ୍ତି ଅବଶ୍ୟ ଭାରତୀୟ ବୁଦ୍ଧିଜୀବୀ, ଆମେରିକା କି ଇଉରୋପରେ ସେମାନଙ୍କୁ ମିଳିଚି ଫେଲୋସିପ୍ । ଅର୍ଥାତ୍, ପ୍ରତିରୋଧର ରାଜନୀତିକ ମାତ୍ରାଟାକୁ ତରଳାଇଦେବାକୁ ଅପଚେଷ୍ଟା । ତରଳାଇଦେବା ମାନେ, ସାମ୍ରାଜ୍ୟବାଦ ଆଦିକଳ୍ପରେ ପ୍ରଚଳିତ ଯୋଉ 'କେନ୍ଦ୍ର' ଓ 'ସୀମାନ୍ତ' ପାର୍ଥକ୍ୟ, ତା ଜାଗାରେ ବିଶୁଦ୍ଧ ଏକ ବୁଦ୍ଧିବାଦୀ ଧାରଣାର ପ୍ରବର୍ତ୍ତନ ଯେ, ପାର୍ଥକ୍ୟ ଗୋଟାପଣେ ଐତିହାସିକ ! ଫ୍ରେଡ୍ରିକ୍ ଜେମିସନ୍‌ଙ୍କ ଏଭଳି ଏକ ତତ୍ତ୍ୱନିର୍ମାଣକୁ କଟାକ୍ଷକରି ଆଇଜାଜ ଅହମଦ୍ ଲେଖନ୍ତି, But one could start with a radically different premise, namely, the proposition that we live not in three worlds but in one; that this world includes the experience of colonialism and imperialism on both sides of Jameson's global divide..., that societies in formations of backward capitalism are as much constituted by the division of classes as are societies in the advanced capitalist countries; that socialism is not restricted to something called the second world but is simply the name of a resistance that saturates the globe today, as capitalism itself does; that the different parts of the capitalist system are to be known not in terms of binary opposition but as a contradictory unity, with differences, yes, but also with profound overlaps.

ଏଇ ଯେତେବେଳେ ଆଧୁନିକୀକରଣର ସ୍ୱରୂପ, ନିଜ ଦେଶର ଅବସ୍ଥିତି ବିଭାଜକରେଖାର କୋଉ ପାର୍ଶ୍ୱରେ ବୁଝିପାରିବା ଦୁଃସାଧ୍ୟ ନୁହେଁ । ସେ ଦେଶ ଏକ ନିର୍ଦ୍ଦିଷ୍ଟ ଜାତିରାଷ୍ଟ୍ର ବା ନେସନ୍-ଷ୍ଟେଟ୍, ଭୂଗୋଳ-ଇତିହାସ ବର୍ଜିତ କାଳ୍ପନିକ ଉପନିବେଶୋତ୍ତର ପରିସର ନୁହେଁ । ପ୍ରତିରୋଧର ଧରଣ ତେଣୁ ନିର୍ଦ୍ଦିଷ୍ଟ, ଏବଂ

ପ୍ରତିରୋଧ ଉଚ୍ଚାରିତହେବ ଜାତିରାଷ୍ଟ୍ରର ଭୂଗୋଳ-ଇତିହାସରୁ, ସାଇବେର୍ ସ୍ପେସ୍‌ରୁ ନୁହେଁ କି 'ପୋଷ୍ଟ' ଉପସର୍ଗ ବହନକରୁଥିବା ବିମୂର୍ତ୍ତ ତତ୍ତ୍ୱଜଗତରୁ । ସେଇ ବାଟରେ ଦୂରକରିହେବ ଔପନିବେଶିକ ଅଭିଜ୍ଞତାର ଅବସାଦ । କାହିଁକିନା, ପୃଥିବୀର ଇତିହାସରେ କ୍ୟାପିଟାଲିଜ୍ମର ଭୂମିକା ମୂଳଦୁଆର ଭୂମିକା; କାଳକ୍ରମରେ ତାର ବିବର୍ତ୍ତନ ଘଟିଚି; ସେଇ ବିବର୍ତ୍ତିତ ରୂପ ସହିତ ପ୍ରତିରୋଧର ସମ୍ପର୍କ ନିରୂପିତ ନହେଲେ, ଔପନିବେଶିକତାରୁ ଉତ୍ତୀର୍ଣ୍ଣହେବା ପ୍ରକ୍ରିୟା ନିଜ ପ୍ରେକ୍ଷିତ ମଧ୍ୟ ଖୋଜିପାଇବନାହିଁ । ଭାରତ ପାଇଁ ସେ ପ୍ରେକ୍ଷିତ ତଥାକଥିତ ତୃତୀୟବିଶ୍ୱର ଅପରାପର ରାଷ୍ଟ୍ରନୁହେଁ । କାହିଁକିନା, କ୍ୟାପିଟାଲିଜ୍ମ ଭାରତର ସମାଜବ୍ୟବସ୍ଥାକୁ ଯୋଉ ଛାଞ୍ଚରେ ପକାଇଦେଇଚି, ଏକ୍ଷଣି ଦରକାରପଡୁଚି ସେଇ ମୂଳଦୁଆ ଉପରେ ପ୍ରତିଘାତ । ସେଇ ପ୍ରତିଘାତ ହିଁ ଆଧୁନିକୀକରଣ । ଉତ୍ତର-ଔପନିବେଶିକ ତତ୍ତ୍ୱ କ୍ୟାପିଟାଲିଜ୍ମର ଚଳମାନ ଆଧିପତ୍ୟକୁ ଆହ୍ୱାନ ଜଣାଉନାହିଁ; ବିକ୍ରୟଯୋଗ୍ୟ ବୁଦ୍ଧିବିଦ୍ୟା ଚେଷ୍ଟାକରୁଚି ସେଇ ଆଧିପତ୍ୟକୁ କୂଟତର୍କ ବଳରେ ବୈଧତା ଦେବାକୁ । ପଣ୍ଡିତ ଭୁଲିଯାଉଚନ୍ତି, ଉତ୍ତର-ଉପନିବେଶବାଦ ୧୯୮୦ରେ ଭୂମିଷ୍ଠହେବା ବହୁପୂର୍ବରୁ ଜାତୀୟତାବାଦ ଓ ମାର୍କ୍ସବାଦ ଔପନିବେଶିକତାକୁ ଆହ୍ୱାନଜଣାଇଚି ଉଭୟ ଚିନ୍ତା ଓ କର୍ମରେ; ଏବଂ ସେ ଆହ୍ୱାନର ଶକ୍ତି ପରାନ୍ନଭୋଜୀ ବୁଦ୍ଧିଜୀବୀ ଅନୁଭବକରିବା ସାମର୍ଥ୍ୟ ହରାଇସାରିଚନ୍ତି ରଜତଖଣ୍ଡର ଗୋପନ ଇଙ୍ଗିତରେ । ଏବଂ ହରାଇସାରିଚନ୍ତି ବୋଲି, ଖାଲି ଜାତୀୟତାବାଦ କି ମାର୍କ୍ସବାଦ ନୁହେଁ, ଆଧୁନିକୀକରଣ ନିଜେ ହୋଇଯାଇଚି ଏକ ମହାଆଖ୍ୟାନ, ଅର୍ଥାତ୍ ଅବିଶ୍ୱାସ୍ୟ । ସେଥିପାଇଁ ପ୍ରତିରୋଧ ସ୍ୱର୍ଣ୍ଣମୃଗର ଅନୁଧାବନ ମାତ୍ର ! ଏପରିକି, କ୍ୟାପିଟାଲିଜ୍ମ ମଧ୍ୟ କୋଉହେଲେ ମୂଳଦୁଆ ନୁହେଁ; ଇଉରୋପରେ ନୁହେଁ କି ତୃତୀୟବିଶ୍ୱରେ ନୁହେଁ, କ୍ୟାପିଟାଲିଜ୍ମ ଖାଲି ଗୋଟାଏ 'ଡିସ୍‌କୋର୍ସ' ! ଅଥଚ ଭାରତ ଯଦି 'ନେସନ୍'ରେ ପରିଣତ ହୋଇଥାଏ, 'ନେସନ୍‌କୁ' ପାଇଚି ଜାତୀୟତାବାଦୀ ଆନ୍ଦୋଳନ ମାଧ୍ୟମରେ, ଯେତେବେଳେ ତିରିଶକୋଟି ଜନସଂଖ୍ୟାରୁ ଦୁଇକୋଟି କୃଷକପରିବାର ଉପନିବେଶ ସାଙ୍ଗରେ ଲଢ଼ାଇକରି ଭୋଗକରିଚନ୍ତି ଅଶେଷ କଷଣ । ଅଥଚ ଔପନିବେଶିକ ପ୍ରଭୁ ଜିନ୍ନାଙ୍କୁ ଯୋଉ ପ୍ରତିଶ୍ରୁତିଦେଇଥିଲା, ତାକୁ ପାଳନକରି ନେସନ୍‌କୁ କରିଦେଇଚି ଦ୍ୱିଜାତି । ତଦ୍‌ସତ୍ତ୍ୱେ, କ୍ଷମତାହସ୍ତାନ୍ତର ପରମୁହୂର୍ତ୍ତରେ ଜାତୀୟତାବାଦୀ ଘୋଷଣାକରିଚନ୍ତି ଦେଶକୁ ସେକିଉଲାର୍ ଡେମୋକ୍ରାଟିକ୍ ରିପବ୍ଲିକ୍ । ଏ ଆଧୁନିକୀକରଣ ଉପନିବେଶର ଅବଦାନ ନୁହେଁ । ଇଉରୋପ୍ କି ଉତ୍ତରଆମେରିକାରେ ସୁଦ୍ଧା, ସାକ୍ଷରତା ଓ ସମୃଦ୍ଧିର ତୁଳନୀୟ ଅବସ୍ଥାରେ, ଏଭଳି ଘଟଣା ଘଟିନାହିଁ । 'ନାଗରିକତ୍ୱ' ବି ଦେଇନାହିଁ ଉପନିବେଶ, ଦେଇଚି ସ୍ୱାଧୀନ

ରାଷ୍ଟ୍ର । ଆଉ ଗତ ପଚାଶବର୍ଷଧରି ଯୋଉ ଲକ୍ଷଲକ୍ଷ ଲୋକ କମିଉନିଷ୍ଟଙ୍କୁ ଭୋଟ୍‌ଦେଉଚନ୍ତି, ସମାଜତନ୍ତ୍ର ବିଷୟରେ ସେମାନେ କିଛିହେଲେ ଜାଣନ୍ତିନାହିଁ ବୋଲି ଶତ୍ରୁ ବି କହିବେନାହିଁ । ଏଗୁଡ଼ାକ ସାମ୍ରାଜ୍ୟବାଦରୁ ବାହାରିଚି ନା ଇତିହାସଗତିରେ ଭାରତୀୟ ଜନତାର ଚେତନାବିକାଶରୁ ? ଆଧୁନିକୀକରଣ ତେବେ ମହାଆଖ୍ୟାନ ହେବ କେମିତି ? ସ୍ପଷ୍ଟତଃ, ଆଉ ସବୁଠି ଯେମିତି, ଭାରତରେ ସେମିତି, କ୍ୟାପିଟାଲିଜ୍ମର କ୍ରମବିକାଶ କାରଣରୁ ସମାଜରେ ଗଢ଼ିଉଠିଚି ଆଧୁନିକ ଶ୍ରେଣୀବିଭାଜନ । ମାର୍କ୍ସବାଦ କଣ ତେବେ 'ସାମ୍ରାଜ୍ୟବାଦ', ଯେହେତୁ ତାର ଉତ୍ପତ୍ତି ଓ ବିକାଶ ଘଟିଚି ଇଉରୋପ୍‌ରେ ? ଇଉରୋପ୍ ଆମେରିକା ଅଷ୍ଟ୍ରେଲିଆରେ ଆଶ୍ରୟନେଇଥିବା ଭାରତୀୟ ପଣ୍ଡିତଙ୍କ ଏଭଳି ଜ୍ଞାନଚର୍ଚ୍ଚା କାପଟ୍ୟ ଓ ପ୍ରତାରଣା, କାହିଁକିନା, ମାର୍କ୍ସବାଦୀ ଅବଲୋକନରେ, କଲୋନି କେବେ ବସିଲା, କେବେ ଉଠିଗଲା ବଡ଼କଥା ନୁହେଁ । କଲୋନିକୁ ଶାସନକରୁଥିଲା ଅନ୍ୟଦେଶର ଶାସକଶ୍ରେଣୀ; କଲୋନି ଉଠିଗଲା ପରେ ଗଢ଼ିଉଠିଚି ଦେଶୀୟ ଶାସକଶ୍ରେଣୀ । ଉଭୟ କିନ୍ତୁ ବୁର୍ଜୋୟା, ଏବଂ ବୁର୍ଜୋୟା, ଶ୍ରେଣୀପରିଚୟରେ, ଏକା ଗାଈର ଗୋବର ସର୍ବତ୍ର । ସାମ୍ରାଜ୍ୟବାଦୀ ବୁର୍ଜୋୟା ଓ ତାର ସ୍ୱଦେଶୀ ଅବତାର ଭିତରେ ବଡ଼ ତଫାତ୍ ହେଉଚି, ପ୍ରତ୍ୟକ୍ଷ ଉତ୍ପାଦକ ସହିତ ସମ୍ପର୍କର ଚରିତ୍ର । ସାମ୍ରାଜ୍ୟବାଦୀ ବୁର୍ଜୋୟାର ଔପନିବେଶିକ ପ୍ରଜା ସହିତ ସମ୍ପର୍କର ଷ୍ଟ୍ରକ୍‌ଚର୍, ସ୍ୱଦେଶୀ ବୁର୍ଜୋୟାର ଦେଶର ଜନସାଧାରଣଙ୍କ ସହିତ ସମ୍ପର୍କର ଷ୍ଟ୍ରକ୍‌ଚର୍ ଠାରୁ ଯଥେଷ୍ଟ ଅଲଗା । ମାର୍କ୍ସବାଦୀ ଦୃଷ୍ଟିରେ ପାର୍ଥକ୍ୟଟା ସେଥିପାଇଁ ଷ୍ଟ୍ରକ୍‌ଚର୍‌ୟାଲ୍; ଟେରିଟୋରିଆଲ୍ ନୁହେଁ । ନେସନ୍‌ଷ୍ଟେଟ୍‌ର ଟେରିଟୋରି କଲୋନିର ପରିବର୍ତ୍ତିତ ରୂପ, ସେ ରୂପକୁ ପ୍ରତ୍ୟକ୍ଷ ଉତ୍ପାଦକର ଅବସ୍ଥାନ ସହିତ ଯୁକ୍ତକରି ମାର୍କ୍ସବାଦ ଦେଖିବାକୁ ଚାହେଁ ଶୋଷଣର ଷ୍ଟ୍ରକ୍‌ଚର୍ । କାହିଁକିନା, ଆଧିପତ୍ୟ ଓ ଶୋଷଣରୁ ମଣିଷକୁ ମୁକ୍ତକରିବା ମାର୍କ୍ସବାଦର ଅନ୍ୟତମ ଲକ୍ଷ୍ୟ । ମଣିଷ ମାନେ 'ସର୍ଜନଶୀଳ ମାନବ', ଯିଏ ଉତ୍ପାଦନକରେ ଏବଂ ଉତ୍ପାଦନପ୍ରକ୍ରିୟା ଭିତରଦେଇ ଆବିଷ୍କାରକରେ ନିହିତ ସୃଷ୍ଟିଶୀଳତା । ପୋଷ୍ଟ୍-କଲୋନିଆଲ୍ ତତ୍ତ୍ୱର ଏ ଦର୍ଶନ ସହିତ କଳହର ସଙ୍ଗତ କୋଉ କାରଣ ରହିବା କଥା ନୁହେଁ । ମାତ୍ର କଳହର ଆୟୋଜନ ନକଲେ ପ୍ରବାସରେ ଠାଇଁ ମିଳିବନାହିଁ । ନହେଲେ, ଅଖଣ୍ଡ ଇତିହାସକୁ ତିନିଖଣ୍ଡକରି ପ୍ରାକ୍-ଉପନିବେଶ, ଉପନିବେଶ ଓ ଉତ୍ତର-ଉପନିବେଶ କରିବାର ମାନେ ହୁଏନା; ଫେର୍ ତା ଭିତରୁ ଖାଲି ଉତ୍ତର-ଉପନିବେଶକୁ ଅଗ୍ରସର ଭାବିବା ମଧ୍ୟ ଅଯୌକ୍ତିକ । ଧନତାନ୍ତ୍ରିକ ଦେଶର ମହାନଗରୀରୁ ଅନଗ୍ରସର ଢ଼େର୍ ଇତିହାସ ଖଣ୍ଡିତ ଓ ନିଶ୍ଚେତନ ଦେଖାଯିବା ପ୍ରତ୍ୟାଶିତ; ଭାରତରେ ତିନିଖଣ୍ଡଯାକ ଇତିହାସ କିନ୍ତୁ ପରସ୍ପରଠାରୁ ଅଚ୍ଛେଦ୍ୟ, କାହିଁକିନା,

ଲିଙ୍ଗବୈଷମ୍ୟ ଜାତିବିଦ୍ୱେଷ ଓ ଶ୍ରେଣୀସଂଘର୍ଷ ଔପନିବେଶିକତା ଦ୍ୱାରା ନିର୍ଦ୍ଧାରିତ ହୋଇନାହିଁ; ପରିଣାମ ଗୁଡ଼ାକ ତେଣୁ ରାଜନୀତିକ ନୁହେଁ, ସାଂସ୍କୃତିକ । ଉପନିବେଶ ଓ ଉତ୍ତରଉପନିବେଶକୁ ଯୋଡ଼ିରଖୁଚି ଇମ୍ପିରିଆଲିଜ୍ମର ଇତିହାସ, କାହିଁକିନା, ଉପନିବେଶ ଯେମିତି ସାମ୍ରାଜ୍ୟବାଦର ସୃଷ୍ଟି, ଠିକ୍ ସେମିତି ଉପନିବେଶୋତ୍ତର ଏସିଆ-ଆଫ୍ରିକା ମଧ୍ୟ ସାମ୍ରାଜ୍ୟବାଦର ମୃଗୟାକ୍ଷେତ୍ର । ସାମ୍ରାଜ୍ୟବାଦର ଉତ୍‌ଥାନପତନ ସହିତ ସମଗ୍ର ପୃଥିବୀର ଭାଗ୍ୟ ରହିଚି ଜଡ଼ିତ, ସେଇ ପ୍ରେକ୍ଷିତଟା ସ୍ପଷ୍ଟହେଲେ ବାଦାନୁବାଦ ଜାଗାରେ ଦେଖାଦେବ ପ୍ରତିରୋଧର ସଂକଳ୍ପ; ଭାରତରେ ଅନ୍ତତଃ । କାହିଁକିନା, ପ୍ରତିରୋଧ / ପ୍ରତିଷେଧ ହୁଏ ଯଦି 'ସମାଜତନ୍ତ୍ର', ସଂବିଧାନରେ ତାକୁ ପୂରାଇଦେଇଚନ୍ତି ଇନ୍ଦିରା ଗାନ୍ଧି ଇମର୍‌ଜେନ୍ସି ଉତାରୁ, ସମାଜତନ୍ତ୍ର ପ୍ରତିଭାତହୋଇଚି ଅବଧାରିତ ଗନ୍ତବ୍ୟ, ଇମରଜେନ୍ସିର ଅବଶ୍ୟମ୍ଭାବୀ ପରବର୍ତ୍ତୀ ପର୍ଯ୍ୟାୟ ।

ମାତ୍ର ଆଧୁନିକୀକରଣର ରହିଚି ନିଜସ୍ୱ ଇତିହାସ, ତାର ପ୍ରେକ୍ଷିତ ଅବଶ୍ୟ ଭାରତବର୍ଷ ନୁହେଁ, କିନ୍ତୁ ଭାରତବର୍ଷ ପ୍ରତି ରହିଚି ଅପରିସୀମ ତାତ୍ପର୍ଯ୍ୟ । ସେଥିପାଇଁ, କାଳାନୁକ୍ରମିକ ବର୍ଣ୍ଣନା ଅପେକ୍ଷା ପ୍ରାସଙ୍ଗିକ ତାର ନିର୍ଯ୍ୟାସ । ଯେପରି, ହିରାକ୍ଲିଟସ୍ (?-ଖ୍ରୀଷ୍ଟପୂର୍ବ ୪୬୦) ଦେଖିଚନ୍ତି, ଜାଗତିକ ସମସ୍ତ ବସ୍ତୁ ନିଜଭିତରେ ଧାରଣକରୁଚି ସଂଘାତତାଡ଼ିତ ବୈରୀତ୍ୟ, ଏବଂ ପାରସ୍ପରିକ ସେଇ ସଂଘାତ ଘଟାଇଦେଉଚି ବସ୍ତୁ ଅଭ୍ୟନ୍ତରରେ କ୍ଷଣକୁ କ୍ଷଣ ପରିବର୍ତ୍ତନ । ସେଥିରୁ ଜଣାପଡ଼ିଲା, ଦୃଢ଼ ବା ସ୍ଥାୟୀ ବୋଲି ଯା ପ୍ରତୀୟମାନ, ପ୍ରକୃତରେ ତା ଅସ୍ଥିର ଓ ଅସ୍ଥାୟୀ । ଷୋଡ଼ଶ ଶତାବ୍ଦୀ ବେଳକୁ ବିଜ୍ଞାନ, ବିଶେଷତଃ ଜ୍ୟୋତିର୍ବିଦ୍ୟାର ଅଭୂତପୂର୍ବ ଆବିଷ୍କାର, ଏ ଅବଲୋକନକୁ ଖାଲି ପୁଷ୍ଟକରିନାହିଁ, ଜଗତ୍‌କୁ ପ୍ରତିପନ୍ନକରିଚି ଭୟାନକ ଏକ ଘୂର୍ଣ୍ଣାବର୍ତ୍ତ । ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ବିହ୍ୱଳହୋଇ ମଣିଷ ଖୋଜିଚି ସ୍ଥିରବିନ୍ଦୁ ବା ଷ୍ଟିଲ୍ ସେଣ୍ଟର୍, କାହିଁକିନା, ଧର୍ମ ଯୋଉ ବୈକୁଣ୍ଠକୁ ବାଟବତାଇଥିଲା, ସେ ବୈକୁଣ୍ଠର ଅସ୍ତିତ୍ୱ ଉପରେ ଲାଗିଯାଇଚି ପ୍ରଶ୍ନଚିହ୍ନ । ଯୋଉ ଜଗତ ଉଭେଇଗଲା, ସେଇ ପ୍ୟାରାଡାଇସ୍ ଲଷ୍ଟ୍ ସକାଶେ ଆତୁରହୋଇଚନ୍ତି ଯିଏ, ତାଙ୍କୁ କୁହାଯାଇଚି ପ୍ରି-ମଡର୍ଣ୍ଣ ବା ପ୍ରାକ୍-ଆଧୁନିକ । ଘୂର୍ଣ୍ଣାବର୍ତ୍ତ ଭିତରେ ଆଲୋଡ଼ିତ ହେଉଁହେଉଁ ନୂତନ ମୂଲ୍ୟ ଓ ମର୍ମାର୍ଥ ଯିଏ ସଂଧାନକରିଚନ୍ତି, ପରିଗଣିତ ହୋଇଚନ୍ତି 'ଆଧୁନିକ' । ଆଧୁନିକତା ତେଣୁ ଆତ୍ମପ୍ରତ୍ୟୟର ପ୍ରତିଷ୍ଠା । କିନ୍ତୁ 'ଆଧୁନିକ' ଶବ୍ଦଟାକୁ ପ୍ରଥମେ ପ୍ରୟୋଗକଲେ ରୁସୋ(୧୭୧୨-୭୮) ଅଷ୍ଟାଦଶ ଶତକରେ; ସେତେବେଳକୁ ଫରାସୀ ବିପ୍ଳବ ଘଟିନାହିଁ; ଆଧୁନିକ ନକହି କହିଚନ୍ତି *moderniste*, ଅର୍ଥାତ୍ ଆଧୁନିକୀକରଣ, ଯୋଉ ଅର୍ଥରେ ଊନବିଂଶ ଓ ବିଂଶଶତକ ପ୍ରତ୍ୟୟଟାକୁ ଅମଳଦେଇଚି । ଏବଂ ସେ ବ୍ୟଞ୍ଜନାରେ ଆଭାସ ରହିଚି ଧନତନ୍ତ୍ରର,

ଯେପରି, ପ୍ୟାରିସ୍ ମହାନଗରୀର ବିପଣିର ଔଜ୍ଜ୍ୱଲ୍ୟରେ ବିସ୍ମିତ ଓ ଭୀତ ପଥଚାରୀ କହୁଚି, With such a multitude of objects, passing before my eyes, I'm getting dizzy. Of all the things that strikes me, there is none that holds my heart, yet all of them together disturb my feelings, so that I forget what I am and who I belong to । ଏ ଯୋଉ ଆଧୁନିକୀକରଣ, ଫରାସୀବିପ୍ଳବ ତା ଉପରେ କରିଚି ପ୍ରତିଘାତ, କାହିଁକିନା, ଏ ଏପରି ଏକ ପରିବେଶ, ଯୋଉଠି the good, the bad, the beautiful, the ugly, truth, virtue, have only a local and limited existence ଅର୍ଥାତ୍, 'ମାର୍କେଟ୍' ସ୍ଥିରକରିଦେଇଚି ଭଲ-ମନ୍ଦ ବିଚାର, ଯୋଉ ବିଚାର ବିପଣନର କୌଶଳ ହିସାବରେ ଆଞ୍ଚଳିକ ଓ ସ୍ୱଳ୍ପାୟୁ, ସ୍ଥାନ-କାଳ ମାତ୍ରାରେ । ରୁସୋଙ୍କ ବକ୍ତବ୍ୟରେ ଯୋଉକଥା ଉପରେ ଜୋର୍ ପଡ଼ିଚି, ତା ପରିବର୍ତ୍ତନ ପଛରେ କର୍ମରତ ଉଦ୍ଦେଶ୍ୟ, କାହିଁକିନା, ନୈତିକତାର ସୀମାଲଙ୍ଘନ ହୋଇପାରେନା ଆଧୁନିକୀକରଣ, ଯୋଉ ନୀତିବୋଧ ଜୀବନକୁ ଦେଇପାରେ ବଳିଷ୍ଠ ଅବିଚଳ ମୂଲ୍ୟ ଓ ମର୍ମାର୍ଥ । ଫରାସୀ ବିପ୍ଳବ ସେଇ ମୂଲ୍ୟ ଓ ମର୍ମାଥକୁ ବ୍ୟକ୍ତକରିଚି : ଲିବର୍ଟି, ଇକୋୟାଲିଟି, ଫ୍ରାଟରନିଟି । ମାତ୍ର, ଊନବିଂଶ ଶତକର ଜଗତ, ଭିନ୍ନ ଏକ ଭୂଦୃଶ୍ୟ; ଯୋଉଠି ଆଧୁନିକୀକରଣ ନିଜକୁ ପ୍ରକଟକରିଚି ବାଷ୍ପଚାଳିତ ଇଞ୍ଜିନ୍, ସ୍ୱୟଂଚାଳିତ ମେସିନ୍, ରେଳରାସ୍ତା, ବିସ୍ତୀର୍ଣ୍ଣ ଶିଳ୍ପାଞ୍ଚଳ ଆଉ ରାତାରାତି ଗଜୁରିଉଠୁଥିବା ସହର ଓ ସହରତଳି ଭିତରଦେଇ, ଯାର ପରିଣାମ ହୋଇଚି ଭୟାନକ; କିନ୍ତୁ ସଂଯୋଗସାଧନ ମଧ୍ୟ ବ୍ୟାପ୍ତହୋଇଚି ଚତୁର୍ଦ୍ଦିଗ, କାହିଁକିନା, ଖବରକାଗଜ, ଟେଲିଗ୍ରାଫ୍, ଟେଲିଫୋନ୍ ଓ ଅନ୍ୟାନ୍ୟ ଗଣମାଧ୍ୟମ (ଯେପରି, ପାଠ୍ୟପୁସ୍ତକ ମୁଦ୍ରଣ ଓ ସାକ୍ଷରତା ବିସ୍ତାର) ମଣିଷର ଅକ୍ତିଆରକୁ ଆସିଯାଇଚି ବିଜ୍ଞାନ ଓ ପ୍ରଯୁକ୍ତିର କଲ୍ୟାଣରୁ । ଏଇ ଶିଳ୍ପବିପ୍ଳବର ଉପଜାତ ଅଧିକତର ଶକ୍ତିଶାଳୀ ଜାତିରାଷ୍ଟ୍ର ସାଙ୍ଗକୁ ବହୁଜାତିକ ପୁଞ୍ଜିର ଏକତ୍ରୀକରଣ ସମାଜର ଉପରସ୍ତରର ଆଧୁନିକୀକରଣକୁ ମୁକାବିଲାକରିଚି ଗଣଆନ୍ଦୋଳନ ଜରିଆରେ ତଳସ୍ତରର ଲୋକଙ୍କ ଅନ୍ୟପ୍ରକାର ଆଧୁନିକୀକରଣ । ପରସ୍ପର ପରିପନ୍ଥୀ ଦୁଇ ଆଧୁନିକୀକରଣର ପରିଣାମ ହୋଇଚି କ୍ରମବର୍ଦ୍ଧମାନ ଏକ ମାର୍କେଟ୍, ସାରା ପୃଥିବୀ ଯାର ବିଚରଣକ୍ଷେତ୍ର । ଭାରତ ଧରାପଡ଼ିଚି ସେଇ ଜାଲରେ । ପୃଥିବୀବ୍ୟାପୀ ଏଇ ବଜାରର ଉତ୍ପାଦନକ୍ଷମତା ଅପରିମିତ ଯେମିତି, ଅପଚୟ ଓ କ୍ଷତିସାଧନ କ୍ଷମତା ମଧ୍ୟ ଊଣାନୁହେଁ । ଅର୍ଥାତ୍, ଆଉସବୁ କରିପାରେ, ସ୍ଥିରତା କି ସ୍ଥାୟୀତ୍ୱ ଦେଇପାରେନା । ସାମାଜିକ ସଂହତି ତେଣୁ ଲଣ୍ଡଭଣ୍ଡ ହୋଇଯାଏ, ପ୍ରାକୃତିକ ପରିବେଶ ବି ନଷ୍ଟହୋଇଯାଏ ନିର୍ବିଚାର ।

ତଥାପି ବିଚଳିତହୁଏନା ମଣିଷ କାହିଁକିନା, ଆଧୁନିକୀକରଣର ସମ୍ଭାବନା ଲାଗିଚି ଅପର୍ଯ୍ୟାପ୍ତ, ଏବଂ କୁଫଳ ସହିତ ଯୁଦ୍ଧକରିବା ସାମର୍ଥ୍ୟ ବି ଦୁର୍ଦ୍ଦାନ୍ତ । ଊନ୍ନବିଂଶ-ବିଂଶ ଶତକ ଆଧୁନିକୀକରଣର ଏଇ ଜଟିଳତା, ଆଇଜାକ୍ ଯାହାକୁ କହିଚନ୍ତି 'କଣ୍ଟ୍ରାଡିକ୍ଟରୀ ଇଉନିଟି', କି ପରିମାଣରେ ବର୍ଣ୍ଣାଢ୍ୟ, ବୁଝିବାପାଇଁ ପ୍ରତିନିଧିସ୍ଥାନୀୟ ଦୁଇଟି କଣ୍ଠସ୍ୱର ପ୍ରତି କର୍ଣ୍ଣପାତକରିବା ଦରକାର । ନିଟ୍‌ସହ୍ (୧୮୪୪-୧୯୦୦), ଆଧୁନିକୀକରଣର ଏକାଧିକ ସଂସ୍କରଣର ଯିଏ ଉତ୍ସମୁଖ, ଯେପରି, ନାତ୍‌ସୀବାଦ କିମ୍ବା ଅସ୍ତିତ୍ୱବାଦ; ଆଉ ମାର୍କ୍ସ (୧୮୧୮-୮୩), ଆଧୁନିକୀକରଣର ନିର୍ଦ୍ଦିଷ୍ଟ କୋଉ ଆଦର୍ଶ ପ୍ରବର୍ତ୍ତନକରିନାହାଁନ୍ତି ଯଦିଓ । ମାର୍କ୍ସ କରିନାହାନ୍ତି, କାହିଁକିନା, କଣ୍ଟ୍ରାଡିକ୍ସନ୍ ଯେହେତୁ ସତ୍ତାର ମୌଳିକ ଉପାଦାନ, ସବୁରକମ ନିଷ୍ଫଳତା ଧାରାବାହିକ ଭାବରେ ବୈପରୀତ୍ୟକୁ କ୍ରମାଗତ ବିଗଳିତକରିବା ପ୍ରକ୍ରିୟାରେ, ଅପସୃତ ହେବା ଅବଶ୍ୟମ୍ଭାବୀ । କୋଉହେଲେ ଆଧୁନିକୀକରଣ ତେଣୁ ଚିରନ୍ତନ ବା ନିତ୍ୟ ନୁହେଁ । ଦୃଷ୍ଟିର ଦିଗ୍‌ବଳୟ ଯେହେତୁ ଘୁଞ୍ଚିଯାଉଥିବ ଆଗକୁଆଗକୁ, 'ନିତ୍ୟ' ଅବବୋଧଟା ବି ପଛରେ ପଡ଼ିଯାଉଥିବ ପ୍ରତି ଅଗ୍ରଗାମୀ ପଦକ୍ଷେପ ସହିତ । ଆଧୁନିକୀକରଣ ତେଣୁ ଚଳମାନ ଏକ ପ୍ରକ୍ରିୟା । ୧୮୫୬ରେ ଲଣ୍ଡନ୍‌ରେ ଅନୁଷ୍ଠିତ ଏକ ସଭାରେ ମାର୍କ୍ସ ତେଣୁ କହିଚନ୍ତି, The so-called revolutions of 1848 were but poor incidents, small fractures and fissures in the dry crust of European society. But they denounced the abyss. Beneath the apparently solid surface, they betrayed oceans of liquid matter, only needing expansion to rend into fragments continents of hard rock... In our days everything seems pregnant with its contrary... All our invention and progress seem to result in endowing material forces with intellectual life, and stultifying human life into a material force । ବିଷର୍ଣ୍ଣ ମାର୍କ୍ସ ହଠାତ୍ ପ୍ରଫୁଲ୍ଲହୋଇ ଫେର୍ କହିଚନ୍ତି, In the signs that bewilder the middle class, the aristocracy and the poor prophets of regression, we recognise our brave friend Robin Goodfellow, the old mole that can work in the earth so fast, that worthy pioneer— the Revolution । ଲକ୍ଷ୍ୟକରିବା କଥା, ଆଧୁନିକୀକରଣ ପ୍ରକ୍ରିୟାଭିତରେ ଯୋଉ ବୈପରୀତ୍ୟ ଦେଖିଚନ୍ତି, ତାକୁ ମନେକରିନାହାଁନ୍ତି ସ୍ଥାଣୁ କି ଚିରନ୍ତନ । କାହିଁକିନା, ଜୀବନକୁ ଜଡ଼ବତ୍ ନିଶ୍ଚେତନ କରିଦେଉଥିଲେ ବି, ଆଧୁନିକୀକରଣ ଜଡ଼ଶକ୍ତିରେ ସଂଚାରକରିପାରୁଚି 'ଇଣ୍ଟେଲେକ୍‌ଚୁଆଲ୍ ଲାଇଫ୍';

ଏପରି ପାରସ୍ପରିକ ବିରୋଧକୁ ଜନ୍ମଦେଉଚି, ଯା ଏକାଧାରରେ କର୍ମଚଞ୍ଚଳ ଓ ଦ୍ୱନ୍ଦ୍ୱବିଦୀର୍ଣ୍ଣ । ଦ୍ୱନ୍ଦ୍ୱାତ୍ମକ ସେଇ ଗତିଶୀଳତାକୁ ପୁଣି ଠାବକରିଚନ୍ତି ସମକାଳର ବୁର୍ଜୋୟା ସଂଗଠନରେ, The bourgeoisie cannot exist without constantly revolutionising the instruments of production, and with them all the relations of production, and with them all the relations of society... constant revolutionising of production, uninterrupted disturbance of all social relations, everlasting uncertainty and agitation, distinguish the bourgeois epoch from all earlier ones । ଏ କ୍ଷଣି, ଏକବିଂଶ ଶତକର ପ୍ରବେଶଦ୍ୱାରରେ ଠିଆହୋଇ ଭାବିବା କଥା, ଆଧୁନିକ ଯୁଗର ବସ୍ତୁବାଦୀ ଏଇ ବିଶ୍ଳେଷଣ ସମକାଳ ପ୍ରତି କେତେଦୂର ପ୍ରଯୋଜ୍ୟ; ଆଉ ତଦ୍‌ସମ୍ଭୂତ ଆଧୁନିକୀକରଣର ବ୍ୟାବହାରିକ ମୂଲ୍ୟ କମିଚି ନା ବଢ଼ିଚି ? ସେ ଆଧୁନିକୀକରଣ ଅବଶ୍ୟ ଏକ ଭିସନ୍ ବା ଦୂରଦୃଷ୍ଟି; କିନ୍ତୁ ଇତିହାସ ଓ ଯୁକ୍ତି ଯଦି ହୁଏ ନିୟାମକ, ସେଇ ଭିସନ୍‌ର ଅନିବାର୍ଯ୍ୟତା ସ୍ୱୀକାର ନକରି ଉପାୟ ନାହିଁ, କାହିଁକିନା ସେ ଭିସନ୍ ଏକ ମାରାତ୍ମକ ଦୂରଦୃଷ୍ଟି, ଯେପରି All fixed, fast frozen relations, with their train of ancient and venerable prejudices and opinions, are swept away, all new formed ones become antiquated before they can ossify. All that is solid melts into air, all that is holy is profaned, *and men at last are forced to face... the real conditions of their lives and their relations with their fellow men* । (ବକ୍ରାକ୍ଷର ମଦ୍‌କୃତ ।) ଆଧୁନିକୀକରଣର ଚାଳିକାଶକ୍ତିକୁ ବିରୋଧକରିଚି ତେଣୁ ଆଧୁନିକତାର ଦ୍ୱାନ୍ଦ୍ୱିକ ଗତି (ମୋସନ୍) । ଚାଳିକାଶକ୍ତି କି ତାର ବିପରୀତଶକ୍ତି, କେହିହେଲେ କିନ୍ତୁ ବ୍ୟକ୍ତିବିଶେଷ ନୁହେଁ, ଆଧୁନିକ ପରିଭାଷାରେ 'କଲେକ୍ଟିଭିଟି'; କର୍ତ୍ତା ତେଣୁ ଯୌଥସତ୍ତା । କେବଳ ଯୌଥସତ୍ତା ହିଁ ଘଟାଇପାରେ ନବୀକରଣ, ନିଜର ପୁଣି ନିଜ ସହିତ ନାନାବିଧ ଉତ୍ପାଦନ-ସମ୍ପର୍କରେ ଛନ୍ଦିହୋଇ ବଞ୍ଚୁଥିବା ଅପରାପର ମଣିଷଙ୍କର । ଅର୍ଥାତ୍ ଉତ୍ପାଦନ-ସଂପର୍କ ହିଁ ଜୀବନଯାପନର ବାସ୍ତବ ସର୍ତ୍ତ । କିନ୍ତୁ ଆଧୁନିକତାର ଗତି ଯଦି ଦ୍ୱାନ୍ଦ୍ୱିକ, ଆଉ ବୁର୍ଜୋୟା ଆକୃତିଗୁଡ଼ିକ ଯଦି ତା ଆଘାତରେ ପଡିଯାଏ, ଶୂନ୍ୟଜାଗାକୁ ଦଖଲକରେ ସାମ୍ୟବାଦୀ କ୍ଷମତା, ସେ କ୍ଷମତା ମଧ୍ୟ ଯଥାକାଳେ ପଡି ନଯିବ କାହିଁକି ? ମାର୍କ୍ସ ଏଇଠି ଆରିଷ୍ଟୋଟ୍‌ଲଙ୍କ ଧ୍ରୁପଦୀଧାରଣାକୁ କରିଚନ୍ତି ଉପଲକ୍ଷ୍ୟ । ପ୍ରାଚୀନକାଳରେ ମଣିଷକୁ ଧରାଯାଉଥିଲା ଉତ୍ପାଦନର ନିମିତ୍ତ, ମାତ୍ର ଆଧୁନିକ ଜଗତରେ ଉତ୍ପାଦନ ହୋଇଯାଇଚି ମଣିଷର ନିମିତ୍ତ, କାହିଁକିନା, ଉତ୍ପାଦନର ଉଦ୍ଦେଶ୍ୟ ଏକ୍ଷଣି

ଧନୋତ୍ପାଦନ । ଧନୋତ୍ପାଦନରୁ ବୁର୍ଜୋୟାର ସଙ୍କୀର୍ଣ୍ଣ ସ୍ୱାର୍ଥକୁ କାଢ଼ିଦେଲେ, ଅବଶିଷ୍ଟ ଯା ରହିବ, ତା କେବଳ ସର୍ବଜନୀନ ଆବଶ୍ୟକତା, ସାମର୍ଥ୍ୟ, ଆନନ୍ଦ, ଉତ୍ପନ୍ନକରିବା ଶକ୍ତି; ଅର୍ଥାତ୍ ସର୍ବଜନୀନ ବିନିମୟ ପ୍ରକ୍ରିୟାରେ ଯେତେ ଯା ସୃଷ୍ଟିହୁଏ । ସେତେବେଳେ 'ଧନ' କହିଲେ ବୁଝାଇବ ଖାଲି ଏଇ ସାମର୍ଥ୍ୟଗୁଡ଼ାକୁ, ବହିଃପ୍ରକୃତିର ଶକ୍ତିକୁ ଆୟତ୍ତକରିବା ସଙ୍ଗେସଙ୍ଗେ ନିଜ ନିହିତ ସ୍ୱଭାବକୁ ମଣିଷ ତେଣୁ କରିପାରିବ ଉପଲବ୍ଧି । ନିହିତ ସର୍ଜନଶୀଳତାକୁ ବିକଚିତକରିବା ବେଳେ ଆରମ୍ଭବିନ୍ଦୁ ହେବ ଇତିହାସର ପୂର୍ବବର୍ତ୍ତୀ ପର୍ଯ୍ୟାୟ; ଏଇ ବାଟରେ କେତେଦୂର ଆଗେଇଯିବ, ତା ମାପକାଠି ଆଗରୁ କେହି ଠିଆକିରିନାହିଁ । ଅର୍ଥାତ୍, ଯା ହୋଇଚି କି ହୋଇପାରିଚି, ତାକୁ ହିଁ ଗଣ୍ଡିକରି ଅଟକିଯିବନାହିଁ; ଚିରସ୍ରୋତା 'ହୋଇଉଠିବା' ପ୍ରବାହରେ ଅବଗାହନ କରିକରି ଆଗକୁଆଗକୁ ଯାଉଥିବ । ଏ ଅଭିଯାତ୍ରାର ଚକ୍ରବାଳ ନାହିଁ, କାହିଁକିନା, ଆତ୍ମତୃପ୍ତି ବାଟରେ ଯେହେତୁ ଅଟକାଇଦେବନାହିଁ, ଡିକମୋଜ୍ ବା ସଢ଼ିଯିବାର ଆଶଙ୍କା ବି ଦେଖାଦେବ ନାହିଁ ।

କିନ୍ତୁ ଏଇ ବିନ୍ଦୁରୁ ଆଉ ପଚିଶବର୍ଷ ଆଗକୁ ଯାଇ, ୧୮୮୦ରେ ଯଦି ନିଇଟ୍‌ସ୍‌ହ୍‌କୁ ଭେଟିବା, ଦେଖି ଆଶ୍ଚର୍ଯ୍ୟହେବା ଯେ ଆଧୁନିକ-ଜୀବନ ସଂପର୍କିତ ଧ୍ୟାନଧାରଣାରେ ମାର୍କ୍ସଙ୍କଠୁଁ ଜମାରୁ ଅଲଗା ନୁହେଁ, ମାତ୍ର ଆଶା-ଆକାଂକ୍ଷା ଏକଦମ୍ ଓଲଟା, କାହିଁକିନା, ବୁର୍ଜୋୟା ଇତିହାସ ଜାଗାରେ ନିଇଟ୍‌ସହ୍ ଆଣି ବସାଇଚନ୍ତି ଖ୍ରୀଷ୍ଟଧର୍ମ ଦୃଷ୍ଟିରେ ଯା ଆତ୍ମାର ପରିଶୁଦ୍ଧି । ଆତ୍ମାର 'ଇଣ୍ଟେଗ୍ରିଟି'ର ପ୍ରହରୀ ପରମେଶ୍ୱର; ନିଇଟ୍‌ସହ୍‌ଙ୍କ ଅବଲୋକନରେ ଆଧୁନିକୀକରଣ ସଂହାରକରିଚି ସେଇ ପରମେଶ୍ୱରଙ୍କୁ । 'ଗଡ୍ ଇଜ୍ ଡେଡ୍' । ଧର୍ମକୁ ପ୍ରତ୍ୟାବର୍ତ୍ତନର ଉତ୍କଣ୍ଠା ମଧ୍ୟ ଦେଖିହେବ ବିଂଶଶତକର ବହୁ କବି, ଚିତ୍ରକର ଓ ସଂଗୀତଶିଳ୍ପୀଙ୍କ ରଚନାରେ; ଔପନିବେଶିକ ଶିକ୍ଷା କଲ୍ୟାଣରୁ, ଆଦିମ ଏଇ ଓଡ଼ିଶାରେ ସୁଦ୍ଧା, ସେ ଆଧୁନିକତାର ସ୍ୱାଦ, ପରପାଟିରେ ପିଠାଖାଇ କିୟତ୍ ପରିମାଣରେ ଗ୍ରହଣକରିଛୁଁ । ଜୀବନରୁ ଈଶ୍ୱର ଅପସୃତହେବା ଫଳରେ ବ୍ୟାପିଯାଇଚି ନାଇହିଲିଜ୍ମ ବା ସବୁକଥାକୁ ଅବିଶ୍ୱାସ । ସର୍ବବ୍ୟାପୀ ଅବିଶ୍ୱାସ ଭିତରେ କିନ୍ତୁ ରହିଯାଇଚି ଅନେକ ସମ୍ଭାବନା, ଶୂନ୍ୟତା ମଝିରେ ପୂର୍ଣ୍ଣତା ଇଙ୍ଗିତ; *ବିୟଣ୍ଡ ଗୁଡ୍ ଆଣ୍ଡ ଇଭିଲ୍* (୧୮୮୨) ଗ୍ରନ୍ଥରେ ବକ୍ତବ୍ୟକୁ ପ୍ରାଞ୍ଜଳକରିବାକୁ ତେଣୁ ଲେଖନ୍ତି ନାଇଟ୍‌ସ୍‌ହ : At these turning points in history there shows itself, juxtaposed and often entangled with one another, a magnificent, manifold, junglelike growing and striving, a sort of tropical tempo in rivalry of development, and an enermous destruction and self-destruction, thanks to egoisms violently opposed to one another,

exploding, battling each other for sun and light, unable to find any limitation, and check, any considerateness within the morality at their disposal... Nothing but new 'wherefores', *no longer any communal formuslas;* a new allegiance of misunderstanding and mutual disrespect; decay, vice, and the most superior desires gruesomly bound up with one another, *the genius of the race* welling up over the corneucopias of good and ill; a fateful simultaneity of spring and autumn... Again there is danger, the mother of morality—great danger—but this time *displaced onto the individual,* onto the nearest and dearest, onto the street, onto one's own child, one's own heart, one's own innermost secret recesses of wish and will. (ବକ୍ରାକ୍ଷର ମଦ୍‌କୃତ) । ପିଣ୍ଡହୀନ ଏଇ ବିଶୃଙ୍ଖଳାର ସମ୍ମୁଖୀନହୋଇ ବ୍ୟକ୍ତିବିଶେଷ ଚେଷ୍ଟାକରେ ପୁରୁଷକାର ଅର୍ଜନକରିବାକୁ, ଏବଂ ସମସ୍ତ ନୀତିନିୟମ ଯେହେତୁ ଘୂର୍ଣ୍ଣାବର୍ତ୍ତରେ ନିକ୍ଷେଷିତ, ଆତ୍ମଶକ୍ତି ଅର୍ଜନକରିବାକୁ ନିର୍ମାଣକରେ ନିଜସ୍ୱ ନୀତିନିୟମ । ନୈତିକ ଶୂନ୍ୟତା ସେ ସମ୍ଭାବନାକୁ ଦିଏ ମହିମା, ଶୁଭାଶୁଭର ପୂର୍ବନିର୍ଦ୍ଧେଶିତ ମୂଲ୍ୟମାନ ଆଉ କାମକରେନା । Our instincts can now run back in all sorts of directions; we ourselves are a kind of chaos । ଆଧୁନିକତା ଯୋଉଭଳି ଇତିହାସବୋଧ ଜାଗ୍ରତକରେ, ତା ପ୍ରେରଣାରେ ମଣିଷ କାମନାକରେ ଯାବତୀୟ ଅଭିଜ୍ଞତା ଓ ଅନୁଭବ; ରୁଚି ବା ବାସନା ବାଛବିଚାର ମାନେନା । ଏଇ ବିନ୍ଦୁରୁ ଦୃଶ୍ୟମାନହୁଏ ଅଜସ୍ର ପଥରେଖା । କିନ୍ତୁ ଏତେଗୁଡ଼ା କାମନାକୁ ଏକାବେଳକେ ଚରିତାର୍ଥକରିବାକୁ ମିଳିବ କୁଆଡୁ ସମ୍ବଳ ? ନିଇଟ୍‌ସ୍‌ହ୍‌ଙ୍କ ବିଚାରରେ, ସେଇ ଅପ୍ରାପ୍ତି କ୍ଷୁଦ୍ରମାନବକୁ ଏପରି ଆବର୍ତ୍ତଭିତରକୁ ଟାଣିନିଏ, ଯେତେବେଳେ ଏକମାତ୍ର ସମାଧାନ ମନେହୁଏ, 'Become mediocre' is the only morality that makes sense । ଆଉଏକ ପ୍ରକାର ଆଧୁନିକୀକରଣ ଅତୀତର ଲାଳିକା କେବଳ, କାହିଁକିନା, ତା needs history because it is the storage closet where all the costumes are kept । ଅଥଚ କୋଉଟା ହେଲେ ପୋଷାକ ତା ମାପ କି କଛରେ ଡିଆରିନୁହେଁ; ଆଦିମ ହେଉ, ପ୍ରାଚୀନ ହେଉ, ମଧ୍ୟଯୁଗୀୟ ହେଉ କି ପ୍ରାଚ୍ୟ ଦେଶର ହେଉ । ବୁଝିପାରେନା ଯେ ଯୋଉ ଯୁଗରେ ବଞ୍ଚୁଛି, ତାର ମାପ ନାହିଁ କି କଛ ନାହିଁ, because no social role in modern times can ever be a perfect fit । ସମସ୍ତେ ଘୁରୁଛନ୍ତି

ଅପରିସୀମ ଓ ଅପରିମେୟ କର୍ତ୍ତୃତ୍ୱ । ଏ ବିପଦ ଭିତରେ ନୀଇଟ୍‌ସ୍‌ହ୍ ନିଜେ ରହିବେନାହିଁ କି ଆଉକାହାରିକୁ ରଖିବେନାହିଁ; ଆସନ୍ତାକାଲିର ମଣିଷ ତେଣୁ ବିରୋଧକରିବ ଆଜିର ମଣିଷକୁ । ନିର୍ମାଣକରିବ ଶୂନ୍ୟତା ମଝିରେ ନବନବ ଉନ୍ମେଷ । ଏଇ ଦୂରଦୃଷ୍ଟିରେ ଦେଖିହେବ ହିରାକ୍ଲିତଜ୍‌ଙ୍କ ଛାୟା; ଅର୍ଥାତ୍ ଆଧୁନିକୀକରଣ ଯେହେତୁ ନିତ୍ୟନବାୟନ, ଐତିହ୍ୟ ବା ଅତୀତ ଯେମିତି ଅବାନ୍ତର, ନୂତନ ପ୍ରତି ରୁସୋଙ୍କ ବିହ୍ୱଳତା ମଧ୍ୟ ସେମିତି । ନୂତନ ମୂଲ୍ୟବୋଧ ସୃଷ୍ଟିକରିପାରେ କେବଳ 'କ୍ଷମତା', ଧର୍ମୀୟ ବିନୟ ନୁହେଁ । କ୍ଷମତା, ଯା ନିର୍ମମ ଏବଂ ଊର୍ଦ୍ଧ୍ୱମୁଖୀ, ଯା ଉତ୍ତୋଳିତ କରିପାରେ ଚେତନାକୁ ଉତ୍ତରୋତ୍ତର । ନେପୋଲିଅଁ ସେଥିପାଇଁ ନୀଇଟ୍‌ସ୍‌ହ୍‌ଙ୍କ ଆଦର୍ଶ; ଅଥବା ପ୍ରାଚୀନ ପାରସ୍ୟର ଆର୍ଯ୍ୟକୁଳପତି ଜରାଥସ୍ତ୍ର । ଜନସାଧାରଣ ଯେହେତୁ ମଧ୍ୟମେଧା, କରିବେ କେବଳ ବୀରର ଅନୁସରଣ । The Revolution made Napoleon possible; that is its justification. We ought to desire the anarchical collapse of the whole of our civilisation if such a reward were to be the result. Napoleon made nationalism possible : that is the latter's excuse । ତେଣୁ ଗଣତନ୍ତ୍ର ନୁହେଁ, ଶକ୍ତିର ଉପାସନା ହେବ ମଣିଷର ଏକାନ୍ତ ଅଭୀପ୍ସା । କାହିଁକିନା, ଗଣତନ୍ତ୍ର ନିକୃଷ୍ଟ ମଣିଷର ଆଶ୍ରୟ, ସମାଜତନ୍ତ୍ର ଯେମିତି ଦରିଦ୍ର ଓ ଗଳଦ୍‌ଘର୍ମ ଶ୍ରମିକର ସାନ୍ତ୍ୱନା । ମଣିଷ ଭିତରେ ଯା ଶ୍ରେଷ୍ଠ, ଯା ମୂଲ୍ୟବାନ, ଯା ନୀତିନିଷ୍ଠ, ଏଇ ଅପକର୍ଷଗୁଡ଼ାକୁ ପଦଦଳିତ କରିଦେବ ସଦର୍ପ । The object is to attain that enermous *energy of greatness* which can model the man of the future by means of discipline and also by means of annihilation of millions of the bungled and botched, and which can yet avoid going to ruin at the sight of the suffering created thereby, the like of which has never been seen before । ଯୁଦ୍ଧ ତେଣୁ ବାଞ୍ଛନୀୟ; ଦୁର୍ବଳ ଭୀରୁ ଦରିଦ୍ର ଓ ନିର୍ବୋଧ ବିନା ତ୍ୟାଗତିତିକ୍ଷା, ସାହସ ଓ ସଂଗ୍ରାମରେ ମନେକରୁଚି ଯିଏ ଭୋଗକରିବ ସସାଗରା ମେଦିନୀ, ତାକୁ ନିପାତ ନକଲେ ଶୌର୍ଯ୍ୟବୀର୍ଯ୍ୟ ସ୍ୱମହିମାରେ ହେବନାହିଁ ସ୍ୱରାଟ ।

ସ୍ପଷ୍ଟତଃ, ରାଷ୍ଟ୍ର ତାଙ୍କ ଅଭୀଷ୍ଟ ନୁହେଁ, ମହାମହିମ ବ୍ୟକ୍ତିତ୍ୱ ହିଁ ଏକମାତ୍ର ଲକ୍ଷ୍ୟ, The misfortunes of all these small folk do not together constitute a sum-total, except in the feelings of *mighty men* । ଏଭଳି ଆଧୁନିକୀକରଣ ମଧ୍ୟ ବିଂଶଶତକ ମଧ୍ୟଭାଗରେ ଘଟିଚି ଜର୍ମାନୀ ଆଉ ଇଟାଲିରେ । ଇହୁଦୀନିଧନ ଯଜ୍ଞ କମ୍ପମାନ କରିଚି ପୃଥିବୀକୁ । ଆନ୍ତନିଅ ଗ୍ରାମ୍‌ସି ନିକ୍ଷିପ୍ତହୋଇଚନ୍ତି ମୁସୋଲିନିର

କାରାଗାରରେ । *ଦସ୍ ସ୍ପେକ୍ ଜରାଥୁସ୍ତ* ରେପୁଣି, Man shall be trained for war and woman for the recreation of the warrior. All else is folly । ସେହିପରି ଖ୍ରୀଷ୍ଟଧର୍ମ, କାହିଁକିନା, ମନୁଷ୍ୟକୁ ଗରିମାଦିଏ ଯେତେ ଗୁଣ ଓ ମୂଲ୍ୟ, pride, pathos of distance, great responsibility, exuberant spirits, splendid animalism, the instincts of war and of conquest, the deification of passion, revenge, anger, voluptuousness, adventure, knowledge, ସବୁଗୁଡ଼ାକୁ ଅସ୍ୱୀକାରକରେ *ଗସ୍‌ପେଲ୍* । ଚେଷ୍ଟାକରେ ମଣିଷକୁ ପୋଷାମନାଇ ମେଣ୍ଢାକରିବାକୁ । We are heirs to the conscience-vivisection and self-crucification of two thousand years ।

ଅନ୍ୟ ଶବ୍ଦରେ, ଆଧୁନିକୀକରଣର ଏ ଭିସନ୍ ସ୍ୱତଃ ସ୍ମରଣକୁ ଆଣେ ପେରିକ୍ଲିଜ୍‌ଙ୍କ ପ୍ରାଚୀନ ଗ୍ରୀସ୍, ଯୋଉଠି ମନନ କେବଳ ସ୍ୱୀକୃତ, ଶ୍ରମ ନୁହେଁ । ଦର୍ଶନ ବିଜ୍ଞାନ ସାହିତ୍ୟ ସ୍ଥାପତ୍ୟର ଗୌରବ ଯୋଉଠି ମ୍ଳାନକରିଦିଏ ଶ୍ରମଜୀବୀ ମଣିଷର ପ୍ରାତ୍ୟହିକ ଜୀବନସଂଗ୍ରାମର ସର୍ଜନଶୀଳତାକୁ, ଏବଂ ଗଣତନ୍ତ୍ରର ଅନୁପସ୍ଥିତି ଶ୍ରେଣୀଆଧିପତ୍ୟକୁ କରେ ନିରଙ୍କୁଶ । ସମାଜ ତେଣୁ ଯୌଥସତ୍ତା ନୁହେଁ, ଅଭିଜାତର ବ୍ୟକ୍ତିଗତ ସଂପତ୍ତି; ଏବଂ ଏକମାତ୍ର ଶିଳ୍ପ-ସାହିତ୍ୟ ଓ ଯୁଦ୍ଧ-ବିଗ୍ରହ ଶୌର୍ଯ୍ୟର ପ୍ରକାଶମାଧ୍ୟମ । ବିସ୍ମିତହେବା ଉଚିତ୍‌ନୁହେଁ, କାହିଁକିନା, ଦ୍ୱିତୀୟ ମହାଯୁଦ୍ଧ ଅବ୍ୟବହିତରେ ଏ ଭିସନ୍ ଇଉରୋପ୍‌ର ବୁଦ୍ଧିଜୀବୀଙ୍କୁ ମନେହୋଇଚି ଯଥାର୍ଥ, ସାହିତ୍ୟ ବା ଶିଳ୍ପକର୍ମର 'ଅଟୋନମି' ପ୍ରତି ଯେହେତୁ ରହିଚି ନିଃସର୍ତ୍ତ ସ୍ୱୀକୃତି, ରୋଲାଁ ବାର୍ଥ୍ 'ଆଟୋନମି'କୁ ବିଶଦକରିବାକୁ ଯାଇ ଲେଖିଚନ୍ତି, ଆଧୁନିକତାର ବାହକ ଯେକୌଣସି ଲେଖକ Turns his back on society and confronts the world of objects without going through any of the forms of History or social life । ଅର୍ଥାତ୍, ନିଜ ଛଡ଼ା ଆଉକାହାରି ପ୍ରତିନିଧିତ୍ୱକରେନା କୋଉହେଲେ ଲେଖକ; ସେଥିପାଇଁ ସିଏ ଅନାବିଳ ଓ ଆପାପବିଦ୍ଧ । କିନ୍ତୁ ମହାକାଶରୁ ଯେହେତୁ ହଠାତ୍ ଖସିପଡ଼ିନାହିଁ, ତାର ମଧ୍ୟ ନିଜର ଇତିହାସ ଅଛି, ଯୋଉ ଇତିହାସ ତା ନିଜ ଚେତନା ଭିତରକୁ ପଶେନା, କାହିଁକିନା, ସିଏ ଯା ଲେଖେ, ସେଗୁଡ଼ାକ ତ ପୂର୍ବବର୍ତ୍ତୀ ଟେକ୍‌ଷ୍ଟଗୁଡ଼ାକର 'ଟିସିଉ' (ସୂକ୍ଷ୍ମସୂତାରେ ବୁଣାହୋଇଥିବା ଜାଲ) ମାତ୍ର ! ଏ ବି ଗୋଟାଏ ବିଦ୍ରୋହ, 'କଲ୍‌ଚର୍ ଅବ୍ ନିଗେସନ୍'; ନିଇଟ୍‌ସ୍‌ହ୍‌ଙ୍କ ନାଇହିଲିଜ୍‌ମ୍‌ର ସାଂପ୍ରତିକ ସଂସ୍କରଣ । ମାତ୍ର ସ୍ଥାନ ସହିତ ରହିଚି କାଳର ଧାରାବାହିକ ସମ୍ବନ୍ଧ, ଅଥବା କାଳ ସହିତ ସ୍ଥାନର; ସେଇ ବାଟରେ ନିର୍ମାଣକରୁଚି ଜୀବନଦୃଷ୍ଟି । କରୁଚି

ବୋଲି, *ବ୍ରୁଦର୍ସ କାରାମାଜୋଭ୍* ଉପନ୍ୟାସରେ ବିଷାଦ ଓ ବିଶୃଙ୍ଖଳାରେ ମୁହ୍ୟମାନ ଆଲିୟସା ଘନଆଶ୍ଲେଷରେ ଧରଣୀକୁ ଜାବୁଡ଼ିଧରି କରୁଚି ଚୁମ୍ବନ । ଦସ୍ତୁଏଭ୍‌ସ୍କୀ କଣ 'ଆଧୁନିକ' ଲେଖକ ନୁହେଁ ? ଡ୍ୟାନିୟେଲ୍ ବେଲ୍ ଦି *କଲଚର୍‌ୟାଲ୍ କଣ୍ଟ୍ରାଡିକ୍‌ସନ୍‌ଜ୍ ଅବ୍ କ୍ୟାପିଟାଲିଜ୍ମ* ବହିରେ ଲେଖିବାକୁ ତେଣୁ ବାଧ୍ୟହୁଅନ୍ତି ଯେ, the modern movement disrupts the unity of culture ।

ମାତ୍ର ସତୁରିଦଶକ ଶେଷଆଡ଼କୁ ଆଧୁନିକୀକରଣ ବାଦାନୁବାଦ ବିଲୟ ଭଜିଛି; ଯୋଉ ପରିସର ଥିଲା ସର୍ବସାଧାରଣ, ତାକୁ ଦଖଲକରିନେଇଚି ଉତ୍ତର-ଆଧୁନିକତା, ଉତ୍ତର-ଔପନିବେଶିକର ପରିପୂରକ । ସର୍ବସାଧାରଣ ପରିସର ବିଭାଜିତ ହୋଇଯାଇଚି ନ୍ୟସ୍ତସ୍ୱାର୍ଥ ନାନାଦି ଗୋଷ୍ଠୀ ଭିତରେ; କିଏ ଷ୍ଟ୍ରକ୍‌ଚର୍‌ୟାଲିଷ୍ଟ୍ ତ କିଏ ପୋଷ୍ଟ୍‌ଷ୍ଟ୍ରକ୍‌ଚର୍‌ୟାଲିଷ୍ଟ୍ କିଏ ଆ୍ୟାଣ୍ଟିମେଟାଫିଜିକ୍ସ, ତ କିଏ ଆ୍ୟାଣ୍ଟିମାର୍କ୍ସ । ତାଙ୍କ ଭିତରୁ ମିଶେଲ୍ ଫୁକୋ ଇତିହାସକୁ ଧରିନେଇଚନ୍ତି ପାଗଳଗାରଦ୍, ଜେଲ୍‌ଖାନା ହସ୍‌ପିଟାଲ୍ ଭଳି ଅନୁଷ୍ଠାନଗୁଡ଼ିକର ଇତିବୃତ୍ତ, ଆଉ ଜଗତଟାକୁ ଗୋଟିଏ ଲୁହାପଞ୍ଜୁରି ଯା ଭିତରେ ମଣିଷଗୁଡ଼ାକ ପରସ୍ପର ଗୋଛିକାଟିବାରେ ବ୍ୟସ୍ତ । ଫୁକୋଙ୍କ ବିବେଚନାରେ, ପଞ୍ଜୁରିଭିତରେ ଆବଦ୍ଧରହିବାହିଁ ମାନବପ୍ରଜାତିର ଭବିତବ୍ୟ; କାରାମୁକ୍ତି-ଆକାଙ୍କ୍ଷା ତେଣୁ ମରୀଚିକାରେ ନୀର ସଂଧାନ । ଅର୍ଥାତ୍, ଆଧୁନିକୀକରଣ ଜନ୍ମମୁହୂର୍ତ୍ତରୁ ମୃତବତ୍ସା, କାହିଁକିନା, ଯୌନତା ହେଉ କି ରାଜନୀତିକ ମୁକ୍ତିଚେତନା, ବିବାକ ଖାଲି କ୍ଷମତାର ଖେଳ, ପ୍ରଯୁକ୍ତିର ଗୋପନ ନିର୍ଦ୍ଦେଶ । ନିର୍ଯ୍ୟାତନା କି ଦମନପୀଡ଼ନରୁ ମଣିଷକୁ ମୁକୁଳାଇବାକୁ ବୁଦ୍ଧିବିବେକ ତେବେ ବ୍ୟବହାରକରୁଛୁଁ କାହିଁକି ? ଫୁକୋ ସେଭଳି କିଛି କରୁଚନ୍ତି ବୋଲି ଅବଶ୍ୟ ଛଳନାକରନ୍ତି । କାହିଁକିନା ଉତ୍ତରରେ କହିଚନ୍ତି, ପ୍ରଶ୍ନଟା ଅବାନ୍ତର, ମଣିଷର ଦୁରବସ୍ଥା ବିଷୟରେ ନାନାଦି ଦିଗରୁ ଅନୁସଂଧାନ ଯେହେତୁ merely refer individuals from one disciplinary authority to another, ଏବଂ ଶେଷପର୍ଯ୍ୟନ୍ତ, add to the triumphant discourse of 'power'! ଅର୍ଥାତ୍, ଅସହାୟହୋଇ ସବଳ ହାତରେ ଦୁର୍ବଳଦମନ ଦେଖିବା ଛଡ଼ା, ଅନ୍ୟାୟ-ଅବିଚାରର ପ୍ରତିକାରକରିବାକୁ ବାହାରିବା ବୁଦ୍ଧିମାନ୍ ଲୋକର କାମନୁହେଁ । ମାତ୍ର ଏଗୁଡ଼ାକ ପୁରୁଣା କାଶିନ୍ଦି; ମାର୍କ୍ସ ତ ଶହେବର୍ଷ ଆଗରୁ କହିସାରିଚନ୍ତି, everything is pregnant with its contrary । ବୈପରୀତ୍ୟ ଅଛି ବୋଲି, ବାଡ଼ଭାଙ୍ଗିବାକୁ ମନଡାକୁଚି; ତେବେ, ଘଟଣାଗୁଡ଼ାକ ଘଟିନାହିଁ ଭାରତବର୍ଷରେ କସ୍ମିନ୍‌କାଳେ; ଇଉରୋପ୍‌ର ଧ୍ୱନିପ୍ରତିଧ୍ୱନି ସମୁଦ୍ରଡେଇଁ ସୈକତରେ ଆସି ପହଞ୍ଚିବାବେଳକୁ ହୋଇଯାଇଚି କ୍ଷୀଣସ୍ୱର; ମାତ୍ର ଶୁଣିବାକୁ କସୁର୍‌କରିନାହିଁ ଯାର କାନ ଅଛି କି ମନ ଅଛି ।

॥ ତିନି ॥

ଶୁଣିବା ଉତାରୁ ଭାବିବା କଥା, କି ଧରଣର ଆଧୁନିକୀକରଣ ଆମର ଅଭିପ୍ରେତ ? ବିଶେଷତଃ, କ୍ୟାପିଟାଲିଜ୍ମର ଶୀର୍ଷପର୍ଯ୍ୟାୟ ସାମ୍ରାଜ୍ୟବାଦ ଯେତେବେଳେ ବିଶ୍ୱାୟନ ଛଦ୍ମବେଶରେ ଭାରତୀୟ ଜାତିରାଷ୍ଟ୍ରର ସୀମାପରିସୀମାକୁ ଛିଦ୍ରମୟ କରିଦେବାକୁ ଆଗଭର । ଜଗତର ଆଧୁନିକୀକରଣ ଆରମ୍ଭହୋଇଯାଇଚି ଫରାସୀବିପ୍ଳବ କାଳରୁ, ଯେତେବେଳେ ସାମ୍ୟ ମୈତ୍ରୀ ଓ ମୁକ୍ତିକୁ ଧରାଯାଇଚି ସମାଜ ରୂପାନ୍ତରର ମୂଳନୀତି। ସେ ନୀତି ପୂର୍ଣ୍ଣମାତ୍ରାରେ କାର୍ଯ୍ୟକାରୀ ହୋଇନାହିଁ ବୋଲି, ଆଧୁନିକୀକରଣ ରହିଚି ଅସମାପ୍ତ ଆକାଙ୍କ୍ଷା । ମୁକ୍ତି ବା ଫ୍ରିଡମ୍ ଏକ ସାଂସ୍କୃତିକ ପ୍ରତ୍ୟୟ; କାହିଁକିନା, ଶୋଷଣ ବା ଆଧିପତ୍ୟରୁ ମୁକ୍ତି ଛଡ଼ା, ବ୍ୟକ୍ତିମନୁଷ୍ୟର ମନର ମୁକ୍ତି ମଧ ଏ ପ୍ରତ୍ୟୟର ଅନ୍ତର୍ଗତ; ମାତ୍ର ସାମ୍ୟ ଓ ମୈତ୍ରୀ ପ୍ରାତ୍ୟହିକ ଜୀବନଯାତ୍ରାରୁ ଅବିଚ୍ଛେଦ୍ୟ । ଭାରତ ଭଳି ପ୍ରାଚୀନ ସଭ୍ୟତାରେ, ସମାଜକୁ ରକ୍ଷାକରିବା ଥିଲା ଯାହାଙ୍କ ଦାୟିତ୍ୱ, ଏ କଥାଗୁଡ଼ାକୁ ଯେ ଜମାରୁ ହେଜିନାହାଁନ୍ତି, ତା ନୁହେଁ; ମାତ୍ର ଆଜି ଯେତେବେଳେ ଭାରତ ପୃଥିବୀର ଭଗ୍ନାଂଶ ମାତ୍ର, ପୁରୁଣା ସାମଦାନଦଣ୍ଡଭେଦ ଅଥବା ଚତୁଃ ବର୍ଗଲାଭ ଅଚଳ ହୋଇପଡ଼ିଥିବା ସ୍ୱାଭାବିକ । ଭାବବାଦୀ ଧର୍ମୀୟ ଅବଲୋକନର 'ବସୁଧୈବ କୁଟୁମ୍ବକଂ' ବା 'ସକଳ ଘଟେ ନାରାୟଣ' ଆଧୁନିକ ସାମ୍ୟମୈତ୍ରୀ ଧାରଣାକୁ ତେଣୁ ସମ୍ମୁଖୀନ ହୋଇପାରନେ। । ଅନ୍ତର୍ଗତ ବୈପରୀତ୍ୟ ଚାପରେ ସଂହତି ହୋଇଯାଏ ବିପନ୍ନ । ଯାହା କଲେ, ଜୀବନଯାପନରେ ପ୍ରତିଷ୍ଠା ପାଇବ ସାମଞ୍ଜସ୍ୟ, ବ୍ୟକ୍ତିମନୁଷ୍ୟର ଚେତନା ହେବ ଶଙ୍କାଶୂନ୍ୟ ଓ ବଞ୍ଚିବାର ସମ୍ଭାବନାଗୁଡାକୁ ଉପଲବ୍ଧିକରିବାକୁ ରହିବନାହିଁ ଅନ୍ତରାୟ, ସେଇ ଧରଣର ଆଧୁନିକୀକରଣ ଏକ୍ଷଣି ଅଭୀଷ୍ଟ । ଏଇ ଅଭିଳାଷକୁ ମୁଣ୍ଡରେ ରଖି ଗତ ଦୁଇଶବର୍ଷ ଭିତରେ ନାନାଦି ପରୀକ୍ଷାନିରୀକ୍ଷା ହୋଇସାରିଲାଣି ଦୁନିଆସାରା, ସେ ଅଭିଜ୍ଞତାରୁ ଶିକ୍ଷାଗ୍ରହଣକରିବା ଆଧୁନିକୀକରଣର ଆଦ୍ୟ ସୋପାନ ।

ସମଗ୍ର ପୃଥିବୀ ପ୍ରେକ୍ଷିତରେ ଆଧୁନିକୀକରଣର ଏକମାତ୍ର ସୂତ୍ର ଅଦ୍ୟାବଧି ରହିଚି ସାମ୍ରାଜ୍ୟବାଦ; ସାମ୍ରାଜ୍ୟବାଦ ହିଁ ଏକତ୍ରିତକରିଚି ଭିନ୍ନ ଭିନ୍ନ ଇତିହାସଭୂଗୋଳକୁ ସ୍ଥାନକାଳ ବ୍ୟବଧାନ ନିର୍ବିଶେଷରେ ଦ୍ୱାନ୍ଦ୍ୱିକତା ସୂତ୍ରରେ ଆବଦ୍ଧକରି; ଦ୍ୱାନ୍ଦ୍ୱିକତା, କାହିଁକିନା, ପୃଥିବୀ ବିଭାଜିତହୋଇଯାଇଚି ଦୁଇ ଶିବିରରେ; ଗୋଟିଏ ଶିବିର କର୍ତ୍ତା, ଅନ୍ୟ ଶିବିରଟି ପ୍ରେଡିକେଟ୍, କର୍ତ୍ତାର 'ଅପର' । କର୍ତ୍ତା ସଭ୍ୟ; 'ଅପର' ତା ଦୃଷ୍ଟିରେ ଆଦିମ ବା ବର୍ବର । ଆଦିମକୁ ଆଧୁନିକକରିବା ସଭ୍ୟମଣିଷର ପରାର୍ଥପରତା । ସେଇ

ବାଟରେ ଭାରତକୁ ଆସିଚି ସବାଆଗେ ଖ୍ରୀଷ୍ଟଧର୍ମ ସାଙ୍ଗକୁ ମୁଦ୍ରଣଯନ୍ତ୍ର । ଇଂରେଜୀଭାଷା ଓ ସାହିତ୍ୟ ସାଙ୍ଗକୁ ଇଂରେଜ୍‌ର ସାଂସ୍କୃତିକ ଅଭିଭାବକତ୍ୱ । ରାଜନୀତିରେ ଯେମିତି ଆସିଚି ଗଣତନ୍ତ୍ର, ତା ସାଙ୍ଗକୁ ସେମିତି ବର୍ବରର ସ୍ୱାଧୀନତାହରଣ । ଷ୍ଟିମ୍‌ଇଞ୍ଜିନ୍, ରେଳରାସ୍ତା, ଟେଲିଗ୍ରାଫ୍ ସାଙ୍ଗକୁ ଆସିଚି ଅପରିମିତ ଅର୍ଥନୀତିକ ଶୋଷଣ । ସମ୍ବନ୍ଧଟା ସେଥିପାଇଁ ଦ୍ୱାନ୍ଦ୍ୱିକ । ସେଇ ଦ୍ୱାନ୍ଦ୍ୱିକତା ବାଟଦେଇ 'ଅପର' ହେବାକଥା କର୍ତ୍ତା ସହିତ ଏକୀଭୂତ । ହୋଇଚି ମଧ୍ୟ କେତେକାଂଶରେ, ବିଦ୍ୱାନ୍ ଯାହାକୁ କହୁଚନ୍ତି 'ହାଇବ୍ରିଡିଟି' ବା ସାଙ୍କର୍ଯ୍ୟ । କିନ୍ତୁ କି ଉଦ୍ଦେଶ୍ୟରେ ଦରକାର ହେଲା ଅଯାଚିତ ଏ ପରାର୍ଥପରତା ? ଜୋସେଫ୍ କନ୍‌ରାଡ୍ *ନୋଷ୍ଟ୍ରୋମୋ* (୧୯୦୪) ଉପନ୍ୟାସରେ ଇଙ୍ଗିତଦେଇଚନ୍ତି, ଜଣେ ଆମେରିକାନ୍ ଓ ଜଣେ ବ୍ରିଟିଶ୍ ବଣିକଙ୍କ କଥୋପକଥନକୁ ଉପଲକ୍ଷ୍ୟକରି; ହୋଲ୍‌ରୟଡ୍ ଆସିଚି ସାନ୍‌ଫ୍ରାନ୍‌ସିସ୍‌କୋରୁ, ରୁପାଖଣିରେ ଟଙ୍କାଲଗାଏ; ଚାର୍ଲସ୍ ଗୋଅଲ୍ଡ ବ୍ରିଟିଶ୍, ଖଣିର ମାଲିକ, କିନ୍ତୁ ଖଣିଟା ଲାଟିନ୍ ଆମେରିକାରେ । ହୋଲ୍‌ରୟଡ୍ ସତର୍କକରିଦେଇଚି ଚାର୍ଲସ୍‌କୁ, ବେପାର କରିବାକୁ ଆସି ଝାମେଲା ଭିତରକୁ ପଶିବା ଅବିବେଚନା, କାହିଁକିନା, We can sit and watch of course, some day we shall step in. We are bound to. But there's no hurry. Time itself has got to wait on the greatest country in the whole of God's universe. We shall be giving the word for everything– industry, trade, law, journalism, art, politics, and religion, from cape Horn clear over to Smith's sound, and beyond it too, if anything worth taking hold of turns up at the North Pole. And then we shall have the leisure to take in hand the outlying islands and continents on the earth. We shall run the world's business whether the world likes it or not. The world can't help it– and neither can we, I guess.

ଅନୁରୂପ ସଂଳାପ ମଧ୍ୟ କଳ୍ପନାକରାଯାଇପାରେ କଲମ୍ବସ୍ ଆଉ କ୍ୟାପ୍ଟେନ୍ କୁକ୍‌ଙ୍କ ଭିତରେ, ଅଥବା ଭାସ୍‌କୋଡାଗାମା ଆଉ ରବର୍ଟ କ୍ଲାଇଭ୍‌ଙ୍କ ଭିତରେ । ଇଂରେଜୀ ଭାଷାରେ ରଚିତ ପ୍ରଥମ ଉପନ୍ୟାସ *ରବିନ୍‌ସନ୍ କ୍ରୁସୋ* ରେ ମଧ୍ୟ ଏପରି ବିଭାଜନର ଚିତ୍ର ମିଳିବ, ଯୋଉଠି ଶ୍ୱେତାଙ୍ଗ ଇଂରେଜ୍ ନିର୍ଜନ ଦ୍ୱୀପରେ ସହସା ଉପଗତହୋଇ ଭାବୁଚି, 'ଦେଖଇ ନେତ୍ର ଯାହା ଚଉଦିଗର / ସେସବୁର ଅଟଇ ମୁଁ ଅଧୀଶ୍ୱର' । ଅବଶିଷ୍ଟ ପୃଥିବୀ ତେଣୁ ନିକୃଷ୍ଟ ବା ବର୍ବର ଲୋକଙ୍କ ବାସଭୂମି, ସେମାନଙ୍କୁ ଅବନତକରି ସମପର୍ଯ୍ୟାୟର ସଭ୍ୟତାକୁ ଉନ୍ନୀତକରିବା ରବିନ୍‌ସନ୍

କ୍ରୁସୋମାନଙ୍କର ଜୀବନବ୍ରତ । ତଥାକଥିତ ଓ ଅଯାଚିତ ଏଇ ବଦାନ୍ୟତା ଭିତରେ ନିହିତ ରହିଚି ସାମ୍ରାଜ୍ୟବାଦର ଅଙ୍କୁର, ଯାହାକୁ ବିକଶିତକରିଚି ପୁଞ୍ଜିବାଦର ନବନବ ପର୍ଯ୍ୟାୟ । ପୁଞ୍ଜିବାଦ ଯେହେତୁ ଉତ୍ପାଦନ ପରିମାଣ ଓ ଉତ୍ପାଦନଶକ୍ତିକୁ ବହୁଗୁଣ ବଢ଼ାଇଦେଇଚି, ଧନୋତ୍ପାଦନ କ୍ଷେତ୍ରରେ ହୋଇଚି ଅପ୍ରତିଦ୍ୱନ୍ଦ୍ୱୀ । ହେବନାହିଁ କାହିଁକି ତେବେ ଆଧୁନିକୀକରଣର ଚାଳିକାଶକ୍ତି, ବିଶେଷତଃ ଔପନିବେଶିକ ରାଜତ୍ୱର ମିଆଦ ଯେହେତୁ ଶେଷହୋଇଯାଇଚି ଦ୍ୱିତୀୟ ମହାଯୁଦ୍ଧ ଅବ୍ୟବହିତରେ, ଏବଂ ବିଂଶଶତକର ଶେଷପର୍ଯ୍ୟାୟରେ ସୋଭିଏତ୍ ସଂଘ ଯେହେତୁ ଭାଙ୍ଗିଯାଇଚି ସମାଜତନ୍ତ୍ର ପ୍ରତିଷ୍ଠାକରିବାକୁ ବ୍ୟର୍ଥହୋଇ ? କାହିଁକିନା, ସାମ୍ରାଜ୍ୟବାଦ କଲ୍ୟାଣରୁ ଧନତାନ୍ତ୍ରିକ ଉତ୍ପାଦନ-ଧରଣ ଆମେ ଗ୍ରହଣକରିସାରିଛୁଁ, ଉଦ୍‌ବୃତ୍ତ ଉତ୍ପାଦନର କୃତ୍‌କୌଶଳ ଓ ବିପଣନର ବାଗବର୍ଗ ମଧ୍ୟ ଆୟତ୍ତକରିସାରିଛୁଁ, ଧନୋତ୍ପାଦନ ଦିନକୁ ଦିନ ବଢୁଛି, ମାତ୍ର ସାମ୍ୟ କି ମୈତ୍ରୀ, କୋଉ ଗୋଟାକହେଲେ ସ୍ଥାପିତହୋଇନାହିଁ ଜନସମାଜରେ । ମାର୍କ୍ସ ଭାବିଥିଲେ, ପୁଞ୍ଜିର ଆଧିପତ୍ୟକୁ ପ୍ରତ୍ୟକ୍ଷକରି ଭାବିଥିଲେ, ଜ୍ଞାନୀଗୁଣୀ କେତେବାଗରେ ଜଗତଟାକୁ ବୁଝାଇବାକୁ ଯତ୍ନକରିଚନ୍ତି ଯୁଗଯୁଗାନ୍ତର, ମାତ୍ର ଏକ୍ଷଣି ବେଳ ଆସିଚି ଜଗତକୁ ବଦଳାଇଦେବାକୁ । କ୍ୟାପିଟାଲିସ୍ମ କଣ ବଦଳାଇଦେଇନାହିଁ ପୃଥିବୀକୁ ? ଦୁଇଶ'ବର୍ଷ ଭିତରେ ବଦଳିଯାଇନାହିଁ ମଣିଷ ଓ ତାର ଭୂଗୋଳଇତିହାସ ? ନିଶ୍ଚୟ ବଦଳିଯାଇଚି ଦ୍ରୁତଲୟରେ, କିନ୍ତୁ ସାମ୍ୟମୈତ୍ରୀମୁକ୍ତିର ଆଦିକଳ୍ପ ଭାସିଯାଇଚି ପ୍ରତିକୂଳ ସ୍ରୋତରେ । ଆଧୁନିକୀକରଣ ମାନେ ତେଣୁ ସ୍ରୋତ ବିରୋଧରେ ସନ୍ତରଣ । କାହିଁକିନା, କ୍ୟାପିଟାଲିସ୍ମ ଯୋଉ 'କ୍ଷମତା' ଉତ୍ପନ୍ନକରେ, ତା ବୈନାଶିକ । ଇତିହାସର ଲକ୍ଷ୍ୟ ଯେହେତୁ ଅଗ୍ରଗତି, ମାର୍କ୍ସ ଧନତନ୍ତ୍ରକୁ ଭାବିଚନ୍ତି ଅତିକ୍ରମଯୋଗ୍ୟ ଅନ୍ୟତମ ଐତିହାସିକ ପର୍ଯ୍ୟାୟ ମାତ୍ର, ଯେପରି ଥିଲା ଅତୀତରେ ସାମନ୍ତତନ୍ତ୍ର ବା ଦାସପ୍ରଥା, ଯା ପ୍ରଗତି ପଥରେ ପ୍ରତିବନ୍ଧକ । ସେଗୁଡ଼ିକର ଗୁଣଗ୍ରାହୀ ମଧ୍ୟ ଅଳ୍ପ ନୁହେଁ, କାହିଁକିନା, ଭବିଷ୍ୟତ୍‌ଦୃଷ୍ଟି ଅପେକ୍ଷା ଅତୀତଆସକ୍ତିର ଲକ୍ଷଣ ସଂସ୍କୃତିରେ ବିବେଚିତ ହୁଏ 'ଆଧ୍ୟାତ୍ମିକ', ଯେପରି, ରସିଆରେ ମଧ୍ୟ କୁହାଯାଇଚି ଅମରତ୍ୱରୁ ବଞ୍ଚିତକରାଯାଇଚି ଯେହେତୁ ମଣିଷକୁ, ମରଶରୀରରେ ଅମରତ୍ୱ ଲାଭପାଇଁ ତୃଷ୍ଣା କଳ୍ପନାକରୁଚି ସାମ୍ୟବାଦ, ସତେ ଯେମିତି ସାମ୍ୟବାଦ କୋଉ ବୈକୁଣ୍ଠ ! ପ୍ରକୃତ ସାମ୍ୟବାଦ ଥିଲା ପ୍ରାଚୀନ ଗ୍ରୀସ୍ କିମ୍ବା ରୋମ୍‌ରେ ! ଯଦିଓ ଗ୍ରୀସ୍ ଓ ରୋମାନ୍ ସଭ୍ୟତା ଗଢ଼ିଉଠିଚି କ୍ରୀତଦାସ ଓ ଭୂମିଦାସର ଅସ୍ଥିସ୍ତୂପ ଉପରେ । ଅର୍ଥାତ୍, ସାମାଜିକ ଉତ୍ପାଦନ ବାଧ୍ୟତାରେ ଯୋଉ ଶ୍ରମବିଭାଜନ ସୃଷ୍ଟିହୋଇଥିଲା, ସେଥିରେ ଶାରୀରିକ ଓ ମାନସିକ ଶ୍ରମ ଭିତରେ ଥିଲା ବିସ୍ତର ବ୍ୟବଧାନ ।

ଧନତନ୍ତ୍ର ବୈନାଶିକ, କାହିଁକିନା, ଯୋଉ ଯୁକ୍ତି ଉପରେ ତାର ପ୍ରତିଷ୍ଠା, ସେ ଭିତ୍ତି ବୈପରିତ୍ୟରେ ବିଦୀର୍ଣ୍ଣ । ଯେପରି, ଜୀବନନିର୍ବାହର ନିତ୍ୟାବଶ୍ୟକ ମେଣ୍ଟାଇବା ତାର ଲକ୍ଷ୍ୟ ନୁହେଁ, ଲକ୍ଷ୍ୟ କେବଳ ଉଦ୍‌ବୃତ୍ତ(ମୁନାଫା) ଉତ୍ପାଦନ; ମାର୍କ୍ସୀୟ ପରିଭାଷାରେ, ବ୍ୟାବହାରିକ ମୂଲ୍ୟ ନୁହେଁ, ବିନମୟ ମୂଲ୍ୟ । ତାହେଲେ, ମଣିଷ ଯେ ଉତ୍ପାଦନପ୍ରକ୍ରିୟା ଭିତରଦେଇ ନିଜକୁ ମଧ୍ୟ ଉତ୍ପାଦନକରେ, ଅର୍ଥାତ୍ ନିଜ ସର୍ଜନକ୍ଷମତାକୁ ଉପଲବ୍ଧିକରେ, ସେକଥାଟା ପ୍ରମାଣିତହୁଏ ମିଛ; ସତବୋଲି ଯା ପ୍ରତୀୟମାନ ହୁଏ, ନିହିତ ସୃଷ୍ଟିଶୀଳତାର ଉପଲବ୍ଧି ନୁହେଁ, ବିନିମୟ ମୂଲ୍ୟ କେବଳମାତ୍ର । ଅର୍ଥାତ୍ ବଜାରରେ ଜିନିଷ ବିକି ଲାଭଆଦାୟକରିବା ହିଁ ଉତ୍ପାଦନର ଏକମାତ୍ର ଉଦ୍ଦେଶ୍ୟ । ଏ କାମରେ ଯିଏ ପୁଞ୍ଜି ଲଗାଣକରେ, ସ୍ୱାଭାବିକଭାବେ ଚାହିଁବ ଏକାବେଳକେ ବିପୁଳ ପରିମାଣ ପଣ୍ୟ, ପରିଶ୍ରମ ଜାଗାରେ ନିଯୁକ୍ତକରିବ ମେସିନ୍; ମେସିନ୍‌କୁ ଅଧିକତର ଫଳପ୍ରସୂ କରିବାକୁ ଦରକାର ପଡ଼ିବ ବିଜ୍ଞାନ ଓ ପ୍ରଯୁକ୍ତି । ମାଲିକମାନଙ୍କ ମଧ୍ୟରେ ପ୍ରତିଯୋଗିତା ସୃଷ୍ଟିହେବ । କିନ୍ତୁ ବଡ଼କଥା ହେଲା, ବିଶ୍ୱପ୍ରକୃତିର ରହସ୍ୟ ଉଦ୍‌ଘାଟନ ଯଦି ବିଜ୍ଞାନର ଉଦ୍ଦେଶ୍ୟ, କ୍ଳେଶଦାୟକ/ପୌନପୁନିକ ଦିହଖଣିକୁ ଅବସରଦେବା ଯଦି ପ୍ରଯୁକ୍ତିର ପ୍ରକୃତ ଉଦ୍ଦେଶ୍ୟ, ମାନବିକ ପ୍ରତିଭାକୁ କଣ ବ୍ୟବହାରକରାଯିବ ବଜାରରେ ଜିନିଷ ବିକି ମୁନାଫା ଠୁଳ କରିବାକୁ ? ତାହେଲେ ତ ଚାହିଦାରୁ ବେଶିଜିନିଷ ମେସିନ୍ ତିଆରିକରିଚାଲିବ କ୍ରମାଗତ । ବଳକା ଜିନିଷପାଇଁ ଦରକାରପଡ଼ିବ ତେବେ ଆହୁରି ବଡ଼ ବଜାର । ନିଜ ଦେଶର କଞ୍ଚାମାଲ ଅକୁଳାଣହେଲେ ଭିନ୍ନଭିନ୍ନ ଦେଶରୁ କଞ୍ଚାମାଲ ଆମଦାନି । ସେତେବେଳେ, ଅନ୍ୟଦେଶକୁ ବଳପୂର୍ବକ ଅବନତକରି ବଜାର ଓ କଞ୍ଚାମାଲ ଅଭାବ ମେଣ୍ଟାଇବା ଛଡା ଗତ୍ୟନ୍ତର ରହିବନାହିଁ । ବଜାର ଏଇବାଟରେ ସଂପ୍ରସାରିତହୋଇ ଗ୍ରାସକରିଛି ସମଗ୍ର ପୃଥିବୀକୁ । ସେଇକଥା କହିଚି ହେଲ୍‌ରୟଡ୍ : and then we shall have the leisure to take in hand the outlying islands and continents on the earth । କିନ୍ତୁ, କ୍ୟାପିଟାଲିଜ୍ମକୁ ଗ୍ରହଣକରୁଁ ଯଦି ଆଧୁନିକୀକରଣର ଆଦର୍ଶ, କୋଉ ଦ୍ୱୀପଉପଦ୍ୱୀପ କି ଦେଶ ମହାଦେଶ ଉପରେ ହାତପକାଇବ ଭାରତ ? କୋଉ ରାଜ୍ୟର ସୁନାରୁପା ଖଣିଗୁଡ଼ାକୁ ତାଡ଼ିପକାଇ ବୋହିଆଣିବ ଧନରତ୍ନ ? ବିଜ୍ଞାନ ଓ ପ୍ରଯୁକ୍ତିର ସଦୁପଯୋଗ ସତ୍ତ୍ୱେ ଭାରତର ଶହେକୋଡିଏ କୋଟିରୁ ଅଧିକ ଲୋକ କଣ ପାଇସାରିଲେଣି ଖାଦ୍ୟବସ୍ତ୍ରବାସଗୃହ ଭଳି ନିତ୍ୟାବଶ୍ୟକ ? ରୁଜିରୋଜଗାରର ଅବଲମ୍ବନ ? ଏମାନଙ୍କ କ୍ରୟକ୍ଷମତା କେତେ ଯେ କିଣିପକାଇବେ ସଂପ୍ରସାରିତ ବଜାରରୁ ବିପୁଳ ପଣ୍ୟ ? ଚାଉଳ ପନିପରିବା ମାଛ କି ଜାମାପଟା, ସବୁ ତ

ରପ୍ତାନିକରିବାକୁ ପଡୁଛି ମେଟ୍ରୋପଲିଟାନ୍ କେନ୍ଦ୍ରଗୁଡ଼ିକୁ ! ସାମ୍ରାଜ୍ୟର ସୀମାନ୍ତରେ ତେଣୁ ବର୍ବର କୃଷକ କି କାରିଗରର ଅବସ୍ଥାନ । ପୁଞ୍ଜିବାଦୀ ପ୍ରଭୁଙ୍କୁ ଶସ୍ତାରେ ଖାଦ୍ୟବସ୍ତୁ ଯୋଗାଇପାରିଲେ ଏମାନେ କୃତାର୍ଥ, ଯେମିତି ଏକ୍ଷଣି ଡଲାର୍‌ର ପ୍ରତାପ ! ଆଉ, ସୁନାରୁପାଠୁଁ ଯୋଉ ଜିନିଷ ବେଶି ଦୁର୍ଲଭ, ପେଟ୍ରଲ୍, କ୍ୟାପିଟାଲିଜ୍ମ ତା ଅନ୍ୱେଷଣରେ (if anything worth taking hold of turns up) ଇରାକ୍ କି ଲିବିୟାରେ ଚଳାଇଚି ବୀଭତ୍ସ ନରସଂହାର । ତେଣୁ, ସାମ୍ୟ ମୈତ୍ରୀ ନହେଲା ନାହିଁ, ପୁଞ୍ଜିବାଦ ଯେହେତୁ ସୃଷ୍ଟିକରେ ପ୍ରାଚୁର୍ଯ୍ୟ, ଅଭାବରୁ ମୁକ୍ତି ସାଙ୍ଗକୁ ମନର ମୁକ୍ତି ମଧ୍ୟ ଆମେ ପ୍ରତ୍ୟାଶା କରିବା କଥା । ସେ ମୁକ୍ତି ଏକ୍ଷଣି କିନ୍ତୁ ନିର୍ଭରକରେ ପ୍ରତିଯୋଗିତା ଉପରେ, ପାଠପଢ଼ାରେ ପ୍ରତିଯୋଗିତା, କର୍ମକ୍ଷେତ୍ରରେ ଲାଗିରହିଚି ପ୍ରତିଯୋଗିତା,ଜୀବନର ଯାବତୀୟ କ୍ଷେତ୍ରରେ ପ୍ରତିଯୋଗିତା; ଲୋକ କହୁଚନ୍ତି, ମୂଷାଦୌଡ଼ । ପ୍ରତିଯୋଗିତା ସାଙ୍ଗକୁ ବିଶେଷଜ୍ଞହେବା ଆବଶ୍ୟକତା; ବିଶେଷଜ୍ଞ ହେଲେ ଯାଇ, ଧନତାନ୍ତ୍ରିକ ଉତ୍ପାଦନ, ଉଭୟ ପରିମାଣ ଓ ଗୁଣଗତ ଉତ୍କର୍ଷ ଅର୍ଜନକରିବାକୁ ଦକ୍ଷହୁଏ । ନିଶ୍ଛିଦ୍ର ଏ ପ୍ରତିଯୋଗିତାରେ ଅବସର ପାଇବ କେତେବେଳେ ଯେ ମନ 'ମୁକ୍ତ' ହେବ ? ଏଭଳି କାମକୁ ମାର୍କ୍ସ କହିଚନ୍ତି ୱେଜ୍ ଲେବର୍ ବା ମଜୁରୀ ବିନିମୟରେ ଶ୍ରମବିକ୍ରି । ମନକୁ ଅବସରଦେବାକୁ ତେଣୁ ପ୍ରସ୍ତାବକରିଚନ୍ତି ଶ୍ରମବିକ୍ରିରୁ ଯଥାସମ୍ଭବ ଅବ୍ୟାହତି । ଅର୍ଥାତ୍, ଜୀବିକାଅର୍ଜନ ସକାଶେ ଯେତେ କମ୍‌ସମୟ ବ୍ୟୟହେବ, ଭାବିବାଚିନ୍ତିବା ଲାଗି ସେତେ ବେଶି ସମୟ ମିଳିବ । କିନ୍ତୁ ବାସ୍ତବ ଅବସ୍ଥାଟା କି ରକମ ? ବିଶ୍ୱବିଦ୍ୟାଳୟର ଶିକ୍ଷକ, ମାନେ ଇଣ୍ଟେଲେକ୍‌ଚୁଆଲ୍, ବ୍ୟବସାୟସଂସ୍ଥାର ମ୍ୟାନେଜର୍ ଅପେକ୍ଷା ବେଜାଏ କମ୍ ଦରମା ପାଏ, କାହିଁକିନା, ବୁଦ୍ଧିଜୀବୀର ଭାବନାଚିନ୍ତା ସାଙ୍ଗରେ ମୁନାଫା ବଢ଼ିବା କି କମିବାର ସାମାନ୍ୟତମ ସଂଯୋଗ ନାହିଁ । ମାଷ୍ଟର୍‌ମାନେ ଦରମାବଢ଼ାଇବାକୁ ଆନ୍ଦୋଳନକରନ୍ତି ଅବଶ୍ୟ; କିନ୍ତୁ ଉତ୍ପାଦନ ସହିତ ନିଜ କର୍ତ୍ତବ୍ୟକର୍ମର ଏଇ ସଂପର୍କଟାକୁ ବେମାଲୁମ୍ ପାସରିପକାନ୍ତି । ପ୍ରାଚୀନ ଗ୍ରୀକ୍ ସମାଜରେ ସୋକ୍ରଟିଜ୍-ପ୍ଲାଟୋ-ଆରିଷ୍ଟୋଟ୍ଲ ସମ୍ଭବହୋଇଚନ୍ତି ଯେହେତୁ ଧନୋତ୍ପାଦନରୁ ଥିଲେ ସ୍ୱାଧୀନ, ପ୍ରତିଯୋଗିତାରୁ ମଧ୍ୟ ସ୍ୱାଧୀନ । କ୍ୟାପିଟାଲିଜ୍ମ ସେ ଅବକାଶ ଦେଇପାରେନା । କମ୍ପିଉଟର୍ କୁଲିମାନଙ୍କୁ ଦେଖନ୍ତୁ !

## ॥ ଚାରି ॥

କିନ୍ତୁ କ୍ୟାପିଟାଲିଜ୍ମ ଯେହେତୁ ଇତିହାସର ଏକ ଆବଶ୍ୟକ ପର୍ଯ୍ୟାୟ, ନିନ୍ଦାକରିବା ପରିବର୍ତ୍ତେ ତାକୁ ଅତିକ୍ରମକରିବାକୁ ଚେଷ୍ଟାକରିବା

'ହୋଇଉଠୁଥିବା'ଲୋକ ପକ୍ଷରେ ସାକ୍ଷାତ୍ କର୍ତ୍ତବ୍ୟ । ସେ କାମ ସଂପାଦନ କରିବାକୁ ହେଲେ ପ୍ରଥମେ ଦରକାର ପ୍ରତୀୟମାନ ଓ ପ୍ରକୃତ ମଧ୍ୟସ୍ଥ ପାର୍ଥକ୍ୟର ଚିହ୍ନାୟନ । ଅର୍ଥାତ୍, କ୍ୟାପିଟାଲିସ୍ଟ ଯଦି ପ୍ରତିହତକରୁଚି ଜୀବନଚର୍ଯ୍ୟାର ସ୍ୱାଭାବିକତାକୁ, ଚିହ୍ନିପାରୁନାହୁଁ ତେବେ କାହିଁକି ଆଚ୍ଛନ୍ନକରୁଥିବା ସେଇ ଅଶୁଭ ପ୍ରବଣତାକୁ ? ପ୍ରତୀୟମାନ ଜାକ୍‌ଜମକ୍ କାହିଁକି ଦିଶୁଚି ନିଷ୍ପ୍ରଦୀପ ଜୀବନଯାପନକୁ ସତେ ଅବା ଆଲୋକବର୍ତ୍ତିକା ? ପ୍ରତୀୟମାନରୁ ପ୍ରକୃତକୁ ଅଲଗାକରିବା ଶକ୍ତି ସମ୍ଭବକରିପାରିବ ଏକମାତ୍ର କ୍ୟାପିଟଲିସ୍ଟକୁ ଅତିକ୍ରମକରିବା ସଙ୍କଳ୍ପ । ସମସ୍ତେ ଜାଣିଛୁଁ, ଯା ପ୍ରାକୃତିକ ନୁହେଁ, ତାକୁ ବଦଳାଇଦେବା ସହଜ । ପ୍ରାକୃତିକ କହିଲେ, କ୍ଷୁଧା ତୃଷା ଯୌନତା ଭଳି ଦୈହିକ ବିଭାବ, ପୁଣି ଜଡ଼ଜଗତ ସହିତ ମନର ନିରନ୍ତର ସମ୍ବନ୍ଧ, ବୋଧଶକ୍ତି । ବୋଧଶକ୍ତି ବଳରେ ହିଁ ଚାରିହଜାରବର୍ଷ ପୁରୁଣା ଲିପିବଦ୍ଧ ଅଭିଜ୍ଞତାକୁ ଏକ୍ଷଣି ବୁଝିପାରୁଛୁଁ । ଚାଷକରି ଫଳାଇଥିବା ଧାନଚାଉଳକୁ କାହିଁକି ତେବେ ଭାବୁଛୁଁ ଭଗବାନଙ୍କ ଦାନ, ନାରୀର ଗର୍ଭଜାତ ସନ୍ତାନକୁ ଈଶ୍ୱରଙ୍କ ଦାନ ? ଉତ୍ପାଦନ ଓ ପୁନରୁତ୍ପାଦନ ଭଳି ପ୍ରାକୃତିକପ୍ରକ୍ରିୟା ଉପରେ ଅଲୌକିକତା ଆରୋପକରିବା ଅଭ୍ୟାସ ଆସିଚି ଧର୍ମବିଶ୍ୱାସରୁ; ଅର୍ଥାତ୍ ଅଭ୍ୟାସଟା ଜମାରୁ ପ୍ରାକୃତିକ ଉପସର୍ଗ ନୁହେଁ; ସଂସ୍କୃତିସଂଜାତ କୁସଂସ୍କାର । ଭଗବାନଙ୍କୁ ସୃଷ୍ଟିକର୍ତ୍ତା ବୋଲି ଗୋତମ ବୁଦ୍ଧ ମାନିନାହାଁନ୍ତି; ତାଙ୍କ ନିରୀଶ୍ୱରବାଦକୁ ଗ୍ରହଣକରିଚନ୍ତି ତଥାପି ବିପୁଳ ସଂଖ୍ୟକ ନରନାରୀ । ସେଥିରୁ ବୁଝାପଡେ, ମଣିଷ ସ୍ୱଭାବତଃ ଯୁକ୍ତିପ୍ରବଣ । ସେଇ ଯୁକ୍ତିର ଅନୁପ୍ରେରଣାରେ ତିଆରିହୋଇଚି ବିଜ୍ଞାନ, ଯା ଆଲୋକରେ ଗାଲିଲେଓ ଅସ୍ୱୀକାରକରିଚନ୍ତି ବାଇବଲ୍ ବର୍ଣ୍ଣିତ ସୃଷ୍ଟିତତ୍ତ୍ୱକୁ । ଧର୍ମ କିନ୍ତୁ ତାଙ୍କୁ ନିକ୍ଷିପ୍ତକରିଚି କାରାଗାରରେ; ଅଥଚ ଇଉରୋପରେ ଘଟିଚି ମଧ୍ୟଯୁଗର ଅବସାନ । ଇଉରୋପୀୟ ସଂସ୍କୃତିର ଭାବଜଗତ ଉନବିଂଶ ଶତକର ଭାରତୀୟ ମନସ୍ୱୀଙ୍କୁ ଉଦ୍‌ବୁଦ୍ଧକରିଚି; ମାତ୍ର ସେ ଭାବଜଗତରୁ ନିର୍ଗତ ସାହିତ୍ୟ କେବଳ ମୁଗ୍ଧକରିଚି ସେମାନଙ୍କ ଚେତନାକୁ; ସମାନ୍ତରାଳ ବିଜ୍ଞାନର ଧାରାଟାକୁ ଅଧିଗତ କରିପାରିନାହାଁନ୍ତି ପଲ୍ଲବଗ୍ରାହୀ ହିନ୍ଦୁ-ମୁସଲମାନ୍ । ବୁଝିପାରିନାହାଁନ୍ତି, ବିଜ୍ଞାନମନସ୍କତାରୁ ଗଢ଼ିଉଠିପାରେ କୋଉହେଲେ ନୂଆ ଜୀବନଦର୍ଶନ । ଇଂରେଜୀ ଶିକ୍ଷା ହାତଧରି ବିଜ୍ଞାନଶିକ୍ଷା ଆସିଚି ସିନା, ପ୍ରୟୋଗ ସୀମିତରହିଚି ବ୍ୟାବହାରିକ କ୍ଷେତ୍ରରେ କେବଳ, ମେଦିନୀଦୃଷ୍ଟିର ବାହନ ହୋଇପାରିନାହିଁ; ସ୍ୱାଧୀନଚିନ୍ତା କି ଆନ୍ତରିକ ଜିଜ୍ଞାସାର ପରମ୍ପରା ତିଆରିକରିପାରିନାହିଁ ସେଥିପାଇଁ । ଜୋତିର୍ବିଦ୍ୟା ଓ ଗଣିତ ଅସାଧ୍ୟ ସାଧନକରିଚି ଅତୀତରେ, ମାତ୍ର ଅବିଚ୍ଛିନ୍ନ କୋଉହେଲେ ଚିନ୍ତାଧାରା ରଖିଯାଇନାହିଁ, ଡଗ୍‌ମା ଯେହେତୁ ପଥରୋଧକରିଚି ମୁକ୍ତ ମାନସିକତାର: ଯେପରି, ଜିଜ୍ଞାସାର ଲକ୍ଷ୍ୟ ଯଦି ପରମେଶ୍ୱର

ନୁହେଁ, ଜିଜ୍ଞାସା ତେବେ ଦ୍ରୋହାଚାର । ଅର୍ଥାତ୍ ଇହଜଗତର ବିପଦରୁ ନିଜକୁ ନିରାପଦକରିବାକୁ ଅଯୌକ୍ତିକ ଉଦ୍‌ବେଗ । କିନ୍ତୁ ବିଜ୍ଞାନ ତ ଖାଲି ଚିତ୍ତଶୁଦ୍ଧି ନୁହେଁ, ଯୁଗପତ୍ ଶକ୍ତିର ଉତ୍ସ ମଧ୍ୟ । ସେଥିପାଇଁ ଷଷ୍ଠଶତକର ଦାର୍ଶନିକ ଧର୍ମକୀର୍ତ୍ତି ବିଦ୍ରୁପକରିଚନ୍ତି: ନଷ୍ଟବୁଦ୍ଧି ଲୋକର ମାନସିକ ଜଡ଼ତାର ଲକ୍ଷଣ ପାଞ୍ଚରକମ, ଯେପରି

ବେଦପ୍ରାମାଣ୍ୟଂ କସ୍ୟଚିତ୍ କର୍ତ୍ତୃବାଦଃ ।
ସ୍ନାନେ ଧର୍ମେଚ୍ଛା ଜାତିବାଦାବଲେପଃ ।
ସନ୍ତାପାରମ୍ଭଃ ପାପହାନାୟ ଚେତି
ଧ୍ୱସ୍ତପ୍ରଜ୍ଞାନାଂ ପଞ୍ଚଲିଙ୍ଗାଣି ଜାଡ୍ୟେ ।।

ଅଥଚ ବେଦ ମାନି ନାହାଁନ୍ତି, ଅକ୍ଷପାଦ, କପିଳ, ବୃହସ୍ପତି କି ଚାର୍ବାକ୍ । ସେମାନଙ୍କୁ ଧିକ୍କାରକରାଯାଇଚି ନାସ୍ତିକ ବୋଲି । ନାସ୍ତିକମାନେ ବସ୍ତୁବାଦୀ; ଅସ୍ତି=ଅଛି, ନାସ୍ତି=ନାହିଁ । ଏ ବସ୍ତୁବାଦ ଦେଶବାହାରୁ ଆମଦାନି ହୋଇନାହିଁ; ମାତ୍ର ତାର ଧାରା ଶୁଖିଯାଇଚି ମୁସଲମାନ ଅନୁପ୍ରବେଶ ପରେପରେ । ଅଲ୍‌ବିରୁଣି(ଖ୍ରୀ.୯୭୨-୧୦୫୦) ଯେହେତୁ ଧର୍ମୀୟ କୁସଂସ୍କାର ପାଖରେ ବିଜ୍ଞାନକୁ ନତଶିର ଦେଖିବାକୁ ଅଭ୍ୟସ୍ତନୁହେଁ, ୧୦୧୭ରେ ଭାରତରେ ପହଞ୍ଚି ସଂସ୍କୃତ ଶିଖି ବ୍ରହ୍ମଗୁପ୍ତ (ଖ୍ରୀ.୫୯୮) ଓ ବରାହମିହିର (ମୃତ୍ୟୁ ୫୮୭ଖ୍ରୀଷ୍ଟାବ୍ଦ)ଙ୍କ ବିଜ୍ଞାନଚର୍ଚ୍ଚାର ତର୍କାତୀତ ଶ୍ରେଷ୍ଠତ୍ୱକୁ ଲକ୍ଷ୍ୟକରି ପୁଲକିତହୋଇଚନ୍ତି ଯେତିକି, ଲୋକାଚାର ପ୍ରତି ତ୍ରାସବଶତଃ ସତ୍ୟ ସହିତ ରଫାକରିବା ଭଳି ମାନସିକ ପଙ୍ଗୁତ୍ୱକୁ ଦେଖି ସନ୍ତପ୍ତହୋଇଚନ୍ତି ତତୋଧିକ । ସୋକ୍ରଟିଜ୍‌ଙ୍କ ଅନୁଷଙ୍ଗକୁ ସମାନ୍ତରାଳ ଦୃଷ୍ଟାନ୍ତ ବୋଲି ଉଲ୍ଲେଖକରି, ଲୋକାଚାର (ଅଜ୍ଞ ନିରକ୍ଷର ଜନସାଧାରଣଙ୍କ ଧର୍ମବିଶ୍ୱାସ) ସହିତ ମେଧାବୀର ସଂଧିସ୍ଥାପନକୁ କହିଚନ୍ତି ତୀକ୍ଷ୍ଣଧୀ ଓ ବିଚକ୍ଷଣ ମନୀଷୀଙ୍କ ପକ୍ଷରେ ଅମାର୍ଜନୀୟ ସ୍ଖଳନ । ଅଥଚ ଆହୁରି ପ୍ରାଚୀନ କାଳରେ, ବ୍ରାହ୍ମଣ୍ୟ କର୍ତ୍ତୃତ୍ୱ ଯେତେବେଳେ ଥିଲା ଶିଥିଳ, ନାସ୍ତିକଙ୍କୁ ଖାଲି ଭର୍ତ୍ସନାକରି କ୍ଷାନ୍ତହୋଇଚନ୍ତି ସମାଜପତି ।

ସ୍ୟାଦ୍ୱାଦବାଦ୍ୟାର୍ହତଃ ସ୍ୟାତ୍ ଶୂନ୍ୟବାଦୀ ତୁ ସୌଗତଃ ।।
ନୈୟାୟିକସ୍ତ୍ୱକ୍ଷପାଦୋ ଯୌଗଃ ସାଂଖ୍ୟସ୍ତ କପିଳଃ ।
ବୈଶେଷିକଃ ସ୍ୟାଦୌଲୂକ୍ୟୋ ବାର୍ହସ୍ପତ୍ୟସ୍ତ ନାସ୍ତିକଃ ।।
ଚାର୍ବାକୋ ଲୋକାୟତିକଶ୍ଚୈତେ ଷଡ଼ପି ତାର୍କିକାଃ ।।

ପରାଧୀନ ଦେଶରେ ମନନର ସ୍ୱକୀୟତା ସାଧାରଣତଃ ଖର୍ବହୁଏ, ନିର୍ଭରତା ବଢ଼େ ଧର୍ମ ଓ ଦୈବ ଉପରେ, ଜିଜ୍ଞାସା ତେଣୁ ଦୀର୍ଘଜୀବୀ ହୋଇପାରେନା । ଊନବିଂଶ ଶତକରେ ଇଉରୋପ ସଂସ୍ପର୍ଶ ପ୍ରତ୍ୟକ୍ଷହେବା ଫଳରେ ଧର୍ମସଂସ୍କାର ଘଟିଚି, ଶିକ୍ଷା

ସଂସ୍କାର ମଧ୍ୟ ଦରକାର ପଡ଼ିଚି, ମାତ୍ର ପଠାଣି ସାଆନ୍ତଙ୍କ ଭଳି ବିଜ୍ଞାନୀ ରହିଚନ୍ତି ଉପେକ୍ଷିତ । ବିଜ୍ଞାନ ବିଷୟରେ ପାଠ୍ୟପୁସ୍ତକ ଲେଖାଯାଇଚି ନିତାନ୍ତ ବ୍ୟାବହାରିକ ପ୍ରୟୋଜନରେ, ବହିର୍ଜ୍ଜଗତ ସହିତ ମାନବଚେତନାର ସମ୍ବନ୍ଧବିଚାର କାହାରିକୁ ଆକୃଷ୍ଟକରିନାହିଁ । ଇଉରୋପ୍‌ରେ କିନ୍ତୁ ୧୮୬୪ ଖ୍ରୀଷ୍ଟାବ୍ଦରେ ବାହାରିଚି ଡାର୍‌ଉଇନ୍‌ଙ୍କ *Origin of Species* । କିଛିଦିନ ଉତାରୁ ଜଣାପଡ଼ିଚି ବିଦ୍ୟୁତ୍‌ଶକ୍ତି ସୁଦ୍ଧା ବାକିସବୁ ଜିନିଷପରି ପରମାଣୁସମଷ୍ଟି, ତହିଁଉତାରୁ ରଞ୍ଜନରଶ୍ମି ଆବିଷ୍କାର,ଇଥର୍ ନାମକ ବସ୍ତୁର ଅସ୍ତିତ୍ୱ ବି ନାକଚ କରିଦେଇଚି ବିଜ୍ଞାନ । ଜଣାପଡ଼ିଚି ବିଶ୍ୱସଂସାର ଶୃଙ୍ଖଳାବଦ୍ଧ ନିୟମାନୁବର୍ତ୍ତୀ ଏକ ବସ୍ତୁସତ୍ତା; ଅର୍ଥାତ୍, ପଦାର୍ଥଦ୍ୱାରା ଗଠିତ, ଆଉ ପଦାର୍ଥ କେବଳ ଅଣୁପରମାଣୁର ସମଷ୍ଟି; ସ୍ଥିତିବିଜ୍ଞାନ ଓ ଗତିବିଜ୍ଞାନର ନିୟମାବଳୀ ତାକୁ ନିୟନ୍ତ୍ରଣକରେ । ସେ ନିୟମରେ ଛେଦ ନାହିଁ କି ପ୍ରସ୍ଥାନ ନାହିଁ, ଜଗତ୍‌ରେ ତେଣୁ ବ୍ୟତିକ୍ରମହୀନ ନିୟମାବଳୀର ରାଜତ୍ୱ ।

ଆହୁରି ଜଣାପଡିଚି, ଆମ ବାସସ୍ଥାନ ଏଇ ବିଶ୍ୱସଂସାର ଅତି ପ୍ରାଚୀନ ଓ ଅତି-କଳେବର, ଏତେ ବୃହତ୍ ଓ ଏତେ ପୁରାତନ ଯେ ଢରିପକରିବାକୁ ଯାଇ ଥଳକୂଳ ମିଳୁନାହିଁ; ପ୍ରତିତୁଳନାରେ ମଣିଷ ଏକ ନବାଗତ ଜୀବ, ଆଉ କ୍ଷୁଦ୍ରାଦପି କ୍ଷୁଦ୍ର । ସ୍ୱାଭାବିକଭାବେ ପ୍ରଶ୍ନ ଉଠିଚି, ଅନାଦି ଅନନ୍ତ ଏଇ ଜଗତରେ ମଣିଷର ଆପେକ୍ଷିକ ଅବସ୍ଥାନ ଠିକ୍ କୋଉଠି ? ସ୍ଥାନର ବିଶାଳତା ଆଉ କାଳର ବ୍ୟାପ୍ତି, ମଝିରେ ମଣିଷର ଅସ୍ତିତ୍ୱ କେତେ ଅସହାୟ, ବିଜ୍ଞାନ ସ୍ପଷ୍ଟକରିଦିଏ । ଏକଦା ସିଏ ଭାବିଚି, ତାର ବାସସ୍ଥାନ ପୃଥିବୀ ସାରାବିଶ୍ୱର ନାଭିକେନ୍ଦ୍ର, ଏବଂ ସେଥିପାଇଁ, ଜଗତ୍‌ନେତ୍ର ସୂର୍ଯ୍ୟ ଘୂରିବୁଲୁଚି ତା ଚାରିପଟରେ । କୋପର୍ନିକସ୍ ଚୂନାକରିଦେଇଚନ୍ତି କାଞ୍ଚନିକ ସେ ଗୌରବ; ଜଗତର ସିଂହାସନରୁ ଭ୍ରଷ୍ଟହୋଇଚି ପୃଥିବୀ । ଭୂତତ୍ତ୍ୱବିଦ୍ ପ୍ରମାଣ କରିଦେଇଚନ୍ତି ଲକ୍ଷଲକ୍ଷବର୍ଷ ପ୍ରାଚୀନ ଏଇ ପୃଥିବୀର ପରମାୟୁ, ଆଉ ସେଇ ପ୍ରାଚୀନତ୍ୱ ଭିତରେ ମଣିଷର ଅସ୍ତିତ୍ୱ ଯେ ଅର୍ବାଚୀନ, ସେକଥା ପ୍ରମାଣକରି ଜୀବଜଗତରେ ମଣିଷର କଳ୍ପିତ ମହତ୍ତ୍ୱକୁ ଧୂଳିସାତ୍ କରିଦେଇଚନ୍ତି ଡାର୍‌ଉଇନ୍ । ଜ୍ୟୋତିର୍ବିଦ୍ ପୁଣି ପ୍ରମାଣକରି ଦେଖାଇଇନ୍ତି ଆଲୋକବର୍ଷ ଭଳି ପରିମାପ, ଏବଂ ସେ ପରିମାପରେ ଅଜସ୍ର ଜ୍ୟୋତିଷ୍କପୁଞ୍ଜ ଭିତରେ ପୃଥିବୀ ସବୁଠୁଁ ବଡ଼ ନୁହେଁ କି ସବୁଠୁଁ ଉଜ୍ଜ୍ୱଳ ନୁହେଁ; ସାମାନ୍ୟ ଗୋଟିଏ ଗ୍ରହ । ଏଇ ବିଶ୍ୱଚିତ୍ରରେ ମଣିଷପାଇଁ ରହିଚି ଖାଲି ନିଃସଙ୍ଗତାର ଅନ୍ଧକାର । ତଥାପି ବିଜ୍ଞାନୀ କହିଚନ୍ତି, ସବୁକଥା ବିଜ୍ଞାନ ଜାଣିପାରିନାହିଁ, ଯା ଜାଣିପାରଚି ଜ୍ଞାନର ଭଗ୍ନାଂଶ ମାତ୍ର । ମଣିଷପ୍ରଜାତି ତେଣୁ ବିନୟ ଶିଖିଚି ବିଜ୍ଞାନପାଖରୁ; ଆଜି କେହି କହୁନାହିଁ ସବୁଯାକ ସତ୍ୟ ରହିଚି ମୋ ଝୁଲି

ଭିତରେ, ମୁଁ ପ୍ରତ୍ୟାଦେଶ ପାଇଚି ସ୍ୱୟଂ ପରମେଶ୍ୱରଙ୍କ ଶ୍ରୀମୁଖରୁ । ସମସ୍ତେ କହୁଚନ୍ତି, ଜୀବନର ସାର୍ଥକତା କେବଳ ଖୋଜିବାରେ, ପାଇବାରେ ନୁହେଁ; କାହିଁକିନା, ପାଇଗଲେ ତ ପ୍ରତୀୟମାନରୁ ପ୍ରକୃତକୁ ବାଛିବା କାମଟା ସରିଯିବ, ଇତିହାସର ହୋଇଯିବ ଇତି ! ଅନ୍ତର୍ଜୀବନର ଜ୍ୱାଳାଯନ୍ତଣା ମଣିଷକୁ ଏକ୍ଷଣି ଯୋଉ 'ଜ୍ଞାନ' ଆଡ଼କୁ ଧାବିତକରେ , ଆଉ ଯୋଉଠି ଥାଉ, ସେ ଜ୍ଞାନ ଧର୍ମରେ ନାହିଁ । ମଣିଷପ୍ରଜାତିର ସଚେତନ ଅଂଶ ଏଇ କଥାଟା ଉପଲବ୍ଧିକରିଚି ବୋଲି, ମାନବତାବାଦ /ମାନବ ଅଧିକାର/ ମାନବିକ ସମାନତା ଭଳି ପ୍ରତ୍ୟୟ ଦାନାବାନ୍ଧୁଚି । ୧୯୦୨ରେ ମହାମତି ରସେଲ୍ ଏଇଭଳି ଗୋଲକଧନ୍ଦାର ସମ୍ମୁଖୀନ ହୋଇ ଲେଖିଥିଲେ, In action, in desire, we must submit perpetually to the tyranny of outside forces; but in thought, in aspiration, we are free, free from our fellowmen, free even while we live, from the tyranny of death.

ଏ ଉପକ୍ରମଣିକା ଦରକାର ହେଲା, କାହିଁକିନା, ଆନ୍ଦ୍ରେ ମାଲ୍‌ରୋ ଲେଖିଚନ୍ତି, ୧୯୫୫ ରେ ବାନ୍ଦୁଙ୍ଗ୍ କନ୍‌ଫରେନ୍ସ ଶେଷହେବାବେଳକୁ ଜବାହର୍‌ଲାଲ୍‌ଙ୍କୁ ପଚାରିଥିଲେ, What is your greatest difficulty since independence ? ନେହରୁ ତତ୍କ୍ଷଣାତ୍ କହିଲେ, Creating a just country by just means, I think । ଟିକିଏ ଥମିଯାଇ ଫେର୍ କହିଲେ, Perhaps too, creating a secular state in a religilus country (ଦ୍ର. *Malraux,* 1970 ।) ମାଲ୍‌ରୋ କଣ ବୁଝିଲେ କେଜାଣି, ଘୋଡ଼ାର ଶିଙ୍ଗଉଠିବା ଭଳି ଅପ୍ରାକୃତିକ କିନ୍ତୁ ନେହରୁଙ୍କ ଏଇ ପ୍ରସ୍ତାବ: ଧର୍ମାନୁରକ୍ତ ଏକ ଭୂଖଣ୍ଡରେ ପ୍ରତିଷ୍ଠାକରିବେ ଅ-ଧାର୍ମିକ ରାଷ୍ଟ୍ର ! 'ଧର୍ମନିରପେକ୍ଷ' ଲେଖୁନାହିଁ, କାହିଁକିନା, 'ସେକିଉଲାର୍' ଶବ୍ଦ ଭିତରେ ପକ୍ଷଗ୍ରହଣ ବା ବର୍ଜନର ଆଭାସ ପର୍ଯ୍ୟନ୍ତ ନାହିଁ; ସ୍ଥୁଳ ବ୍ୟଞ୍ଜନାରେ, ରାଜନୀତି ରହିବ କେବଳ ଧର୍ମଠୁଁ ଦୂରରେ । ରହିପାରିବ, ଇଉରୋପ୍‌ରେ ଯେମିତି ସଭ୍ୟତା ହୋଇଯାଇଚି କ୍ୟାପିଟାଲିସ୍ମ ସଂସ୍ପର୍ଶରେ ଆସି ଆଧ୍ୟାତ୍ମିକତା ପ୍ରତି ବିମୁଖ, ଭାରତ ଯଦି ସେମିତି ନିଜ ପବିତ୍ର-ଅପବିତ୍ର ଶୁଦ୍ଧ-ଅଶୁଦ୍ଧ ଉଚିତ୍-ଅନୁଚିତ୍ ବିଚାରଧାରାକୁ ନିଷ୍କାସିତ କରିଦେଇପାରେ ପ୍ରାତ୍ୟହିକ ଜୀବନଯାତ୍ରାରୁ । ଦେଶସାରା ନାନାରକମ ବୈଷମ୍ୟ ନାନାସ୍ତରରେ ରାଜତ୍ୱକରୁଥିବା ଯାଏଁ ସେ ସମ୍ଭାବନା ସୁଦୂର ପରାହତ । ଉଦାହରଣ ଭାବରେ ଇଉରୋପରୁ ଇଟାଲିକୁ ନିଆଯାଉ, କାହିଁକିନା, 'ହୋଲି ରୋମାନ୍ ଏମ୍‌ପାୟାର୍' ଭଳି ଭାରତର ସଭ୍ୟତା ମଧ୍ୟ ଉପମହାଦେଶର ସୀମାଡେଇଁ ବହୁଦୂରକୁ

ବ୍ୟାପିଚି; ସଂସ୍କୃତଭାଷା ଆଦର୍ଶରେ ଗଢ଼ିଉଠିଚି ଦକ୍ଷିଣପୂର୍ବ ଏସିଆର ଭାଷାଗୋଷ୍ଠୀ, ଯେମିତି ଲାଟିନ୍ ଆଦର୍ଶରେ ତିଆରିହୋଇଚି ବହୁ ଇଉରୋପୀୟ ଭାଷା । କିନ୍ତୁ, ଭ୍ୟାଟିକାନ୍‌ରେ ପୋପ୍‌ଙ୍କ ଅଧିଷ୍ଠାନ ସତ୍ତ୍ୱେ ଇଟାଲି ଆଜି ସେକିଉଲାର୍ । କାରଣ ନୁହେଁ ଯେ ଖ୍ରୀଷ୍ଟଧର୍ମ ପ୍ରତି ଲୋକଙ୍କ ଆସ୍ଥା ତୁଟିଯାଇଚି; ଏକମାତ୍ର କାରଣ, ରାଜନୀତିଠାରୁ ଧର୍ମ ହୋଇଯାଇଚି ବିଚ୍ଛିନ୍ନ । ଏବଂ ଖାଲି ଇଟାଲିରେ ନୁହେଁ, ସମଗ୍ର ମହାଦେଶରେ । ତା ପଛରେ ଅବଶ୍ୟ କାମକରିଚି ଫରାସୀ ବିପ୍ଳବ ସାଙ୍ଗକୁ ରନେସାଁସ୍ ଓ ରିଫର୍ମେସନ୍ ଭଳି ଆନ୍ଦୋଳନ, ଶିଳ୍ପବିପ୍ଳବ ଓ ଧନତନ୍ତ୍ରର ବିକାଶ । ବହୁଯୁଗଧରି ଧର୍ମପ୍ରତି ଶ୍ରଦ୍ଧା ପୋଷଣକରୁଥିବା କୌଣସି ଭୂଖଣ୍ଡରୁ ରାତାରାତି ଧର୍ମଭାବ ଲୋପପାଇଥିବା ଦୃଷ୍ଟାନ୍ତ ସେଥିପାଇଁ ଇତିହାସରେ ମିଳିବନାହିଁ; ଇତିହାସ ବରଂ କହିବ, ଯୋଉ ନୀତିନିୟମ ସମାଜକୁ ଏକସୂତ୍ରରେ ବାନ୍ଧିରଖେ, ସେଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଧର୍ମ ମଧ୍ୟ ଗୋଟିଏ ଶକ୍ତିଶାଳୀ ପ୍ରେରଣା ।

ସମସ୍ୟା ହେଲା, ସେଇ ପ୍ରେରଣାକୁ କି ଉପାୟରେ କରାଯାଇପାରେ ସେକିଉଲାର୍? ସମ୍ଭାବନା କଥା ମନକୁ ଆସୁଚି । ୧୮୫୭ରୁ ୧୯୪୭, ନବେବର୍ଷ ଭିତରେ ଭାରତରେ ଘଟିଯାଇଚି ଯେହେତୁ ସିପାହି ବିଦ୍ରୋହ ଓ ସତ୍ୟାଗ୍ରହ ଆନ୍ଦୋଳନ ଭଳି ଦୁଇଦୁଇଟା ସେକିଉଲାର୍ ସଂଗ୍ରାମ, ଯେମିତି ବିଗତ ଦୁଇଶ'ବର୍ଷ ଭିତରେ ଇଉରୋପରେ ଘଟିଚି ଦୁନିଆକୁ କମ୍ପାଇଦେବା ଭଳି ଦୁଇଦୁଇଟା ସେକିଉଲାର୍ ବିପ୍ଳବ, ପ୍ରଥମେ ଫ୍ରାନ୍ସରେ, ତହିଁଉତାରୁ ରସିଆରେ । ମାତ୍ର 'ଧର୍ମ' ଜିନିଷଟା ଯୁକ୍ତିନିରପେକ୍ଷ; କାଠପଥର ଗଛବୃଛ ସାପବେଙ୍ଗ ବି ଠାକୁର ହୋଇପାରେ, ଏବଂ ଏଗୁଡ଼ାକ ବଦଳରେ 'ଶୂନ'କୁ ଠାକୁର ମାନିଲେ ସୁଦ୍ଧା, ଠାକୁରବଦଳ ବିବେଚିତ ହେବ ଧର୍ମାନ୍ତର । ଆରମ୍ଭହୋଇଯିବ ଉପଦ୍ରବ । ସେକିଉଲାରିଜ୍ମ, ସେଥିପାଇଁ, ଏ ବିବାଦରେ ରାଷ୍ଟ୍ରର ନିରପେକ୍ଷତା । କିନ୍ତୁ ପ୍ରତ୍ୟୟଟା ଯାନ୍ତ୍ରିକ, କାହିଁକିନା, ଇତିହାସ ଗତିରେ ତିଆରିହୋଇଚି ଯୋଉ ବିଭେଦ, ତାର ନିରସନ ସମ୍ଭବପର କେବଳ ଐତିହାସିକ ହସ୍ତକ୍ଷେପ ଦ୍ୱାରା, ଯେପରି ହିନ୍ଦୁସମାଜର ଗଢ଼ଣର ପୁନର୍ବିନ୍ୟାସ । ତା ହେଲେ ଯାଇ, ଯୁକ୍ତି କାମକରିପାରେ ସମାଜଜୀବନରେ । ଧର୍ମ ଯେହେତୁ ଖାଦ୍ୟପେୟ ଭଳି ମୌଳିକ ଆବଶ୍ୟକତା ନୁହେଁ, ତାର ବିଚରଣକ୍ଷେତ୍ର ଅବଶ୍ୟମ୍ଭାବୀଭାବେ ସୁପରଷ୍ଟ୍ରକ୍‌ଚର୍ । ସୁପରଷ୍ଟ୍ରକ୍‌ଚର୍‌ରେ ପରିବର୍ତ୍ତନ ଘଟାଇବାକୁ ହେଲେ, 'ବେସ୍' ବା ମୂଳଦୁଆ, ଅର୍ଥାତ୍ ସମାଜର ଗଢ଼ଣ ହିଁ ହେବ ଅଭିନିବେଶର ବିଷୟ । ଇସ୍‌ଲାମ୍ ଏକେଶ୍ୱରବାଦୀ ଧର୍ମ, ଇହୁଦୀ ଓ ଖ୍ରୀଷ୍ଟାନ୍ ବି ଏକେଶ୍ୱରବାଦୀ, ଅଥଚ ଅଲ୍‌ବିରୁଣୀ ଆଉ ତାଙ୍କ ପଛକୁ ଅମିର୍ ଖୁସ୍ରୋ (୧୩୧୮ ଖ୍ରୀ.) ଲେଖି ରଖିଯାଇଚନ୍ତି, ସେମାନେ ନିଜେ ଦେଖିଚନ୍ତି ହିନ୍ଦୁ

ମଧ୍ୟ ଏକେଶ୍ୱରବାଦୀ, ବରଂ ଖ୍ରୀଷ୍ଟାନ୍‌ଙ୍କ ପିତାପୁତ୍ର କଳ୍ପନା କି ଟ୍ରିନିଟି ଭଳି ପ୍ରତୀତି ହିନ୍ଦୁଙ୍କର ନାହିଁ । ମୁସଲ୍‌ମାନ୍ ସମାଜରେ ମଧ୍ୟ ଜାତିପ୍ରଥା (ହିଏରାର୍କୀ) ଅଛି, ଏବଂ ସେଥିପାଇଁ, ଅଲ୍‌ବିରୁଣି କି ଅମିର୍ ଖୁସ୍ରୋ ହିନ୍ଦୁଙ୍କ ଭିତରେ ଜାତିଭେଦକୁ ନିନ୍ଦାକରିନାହାଁନ୍ତି । (ଦ୍ର. ଇର୍‌ଫାନ୍ ହବିବ୍,... social hierarchy was in practice and in law a quite strongly established institution among the Muslims, and indeed, one searches in vain for any explicit Muslim condemnation of the caste system in this period, whereas Islamic theologians both outside and inside India accepted hierarchy as a normal and, indeed, desirable state of social organisation... । ପୁଣି, During the last 25 years of his rule, he (=Akbar) freely expressed his scepticism both of the notion of prophethood and of human incarnations of God, and asserted the supremacy of reason(*'aql'*). He extended his critique to social matters, condemning alike the Hindu practice of widow-burning (*Sati*) and the smaller share in inheritance given to daughters in Muslim law ।) ସିପାହୀବିଦ୍ରୋହ ବେଳକୁ ତେଣୁ ହିନ୍ଦୁମୁସଲ୍‌ମାନ୍ ମାତୃଭୂମି (*=ୱାଟନ୍*) ନାଁରେ ଶପଥନେଇଚନ୍ତି ଇଂରେଜ୍‌କୁ ତଡ଼ିବାପାଇଁ । ଝାନ୍‌ସୀରାଣୀ ଲକ୍ଷ୍ମୀବାଈ ବି କହିଚନ୍ତି, ବିଧବାର ଧର୍ମ ସିଏ ତ୍ୟାଗକରିଚନ୍ତି ଅସଲ ଧର୍ମର ଟେକରଖିବାକୁ । ଧର୍ମର ବ୍ୟାବହାରିକ ସଂଜ୍ଞା, ଦେଶପ୍ରେମ ପାଖରେ ହାରିଯାଇଚି । ଖିଲାଫତ୍ ଆନ୍ଦୋଳନ ବେଳେ ବି ଦେଖାଯାଇଚି ଜମାୟେତ୍‌ର ଏକ ସେକିଉଲାର୍ ଚରିତ୍ର । ସାଂପ୍ରଦାୟିକତା ତେଣୁ ଗୋଟାପଣେ କ୍ଷମତା-ରାଜନୀତିର ଭିଆଣ । ଇତିହାସର ସାକ୍ଷ୍ୟ ଯଦି ସେକିଉଲାର୍ ପକ୍ଷରେ, ସୁପର୍‌ଷ୍ଟ୍ରକ୍‌ଚର୍‌ର ପୁନର୍ବିନ୍ୟାସ ଭିନ୍ନମୁଖୀ ହେବାକଥା ନୁହେଁ ।

ପୁନର୍ବିନ୍ୟାସ କଥା ଆଗରୁ ବି ଉଠିଚି; ଗାନ୍ଧି କହିଚନ୍ତି, ଦେଶ ସ୍ୱାଧୀନହେଲେ ପୁନରାୟ ବର୍ଣ୍ଣାଶ୍ରମ ପ୍ରବର୍ତ୍ତନକରିବା ତାଙ୍କ ଅଭିପ୍ରାୟ; ମାତ୍ର ପୁରାତନ ବର୍ଣ୍ଣାଶ୍ରମଧର୍ମର ଦୋଷତ୍ରୁଟି ବର୍ଜନକରିବାକୁ ପଡ଼ିବ । ତା ହେଲେ, ଦୋଷଗୁଡ଼ାକ କି ରକମ, ଆଉ କୋଉ ଗୁଣ ଦେଖି ବର୍ଣ୍ଣାଶ୍ରମର ପୁନର୍ଭବ ଇଛାକରିଥିଲେ ଗାନ୍ଧି ? ଦେଶବାସୀଙ୍କ ସାଙ୍ଗରେ ପ୍ରତ୍ୟକ୍ଷ ସଂପର୍କ ତାଙ୍କ ଭଳି ଆଉ କାହାରି ନଥିଲା, ଏବଂ ଅଧ୍ୟୟନ ଓ ପର୍ଯ୍ୟବେକ୍ଷଣ ବଳରେ ବୁଝିଥିଲେ, ପୁରାକାଳରେ ବର୍ଣ୍ଣଧର୍ମ ଭିତରେ ଶ୍ରେଣୀଭେଦ ମୂଳରୁ ନଥିଲା । ସ୍ୱାର୍ଥପ୍ରଣୋଦିତ ପରିଶ୍ରମକାତର ଲୋକ ପରବର୍ତ୍ତୀକାଳରେ

ପ୍ରବର୍ତ୍ତନକରିଚନ୍ତି ଶ୍ରେଣୀବିଭେଦ । ମୂଳ ଆଦର୍ଶଥିଲା, ସହଜାତ ପ୍ରବୃତ୍ତି ଅନୁସାରେ ଲୋକ ସୁଯୋଗ ପାଇବେ ଧନ ଉତ୍ପାଦନକରିବାକୁ । କର୍ମପ୍ରବୃତ୍ତି ଯେହେତୁ କିଛି ପରିମାଣରେ ଜନ୍ମଦ୍ୱାରା ନିର୍ଦ୍ଧାରିତ, ଜାତିଗତ ବୃତ୍ତି ଅନୁସରଣକରିବା ମଣିଷ ପକ୍ଷରେ ସ୍ୱାଭାବିକ, କାହିଁକିନା, ବୃତ୍ତିନିରୂପଣରେ ସ୍ୱେଚ୍ଛାଚାର ସ୍ୱୀକୃତହେଲେ ସମାଜରେ ଅକଲ୍ୟାଣ ବ୍ୟାପିଯିବ । ଦେହଗଠନ ସାଙ୍ଗରେ ଯେମିତି ବାପାମା'ଙ୍କ ସଂପର୍କ, ମନୋବୃତ୍ତି ଓ ଚରିତ୍ର ଗଠନ ଉପରେ ମଧ୍ୟ ସେ ପ୍ରଭାବ କାର୍ଯ୍ୟକାରୀ । ଅର୍ଥାତ୍ ଦେହ ଓ ମନର ଗଢ଼ଣ ବଂଶପରମ୍ପରାରେ ପ୍ରଲମ୍ବିତ, ଏବଂ ଏକଥାକୁ ମାନିନେଲେ ଜୀବନବ୍ୟାପୀ ବୃଥାପରିଶ୍ରମରୁ ମିଳିଯିବ ଅବ୍ୟାହତି । ଅର୍ଥଲୋଭ ଓ ଉଚ୍ଚାକାଂକ୍ଷା ସଂଯତ ହେବ ଶ୍ରମ ଓ ଉଦ୍ୟମକୁ ବିଷୟକର୍ମରେ ଖାଲି ବ୍ୟୟ ନକରି; ଆଧ୍ୟାତ୍ମିକ ସାଧନା ଆଡ଼କୁ ଲୋକ ମନବଳାଇବେ । ଅତି ସଂକ୍ଷେପରେ,ଏଇ ହେଲା ଗାନ୍ଧିଙ୍କ ସୋସାଲିଜ୍ମ । କିନ୍ତୁ 'ସାମ୍ୟ'ଆଦର୍ଶ କୋଉ ନୂଆକଥା ନୁହେଁ; ଆଉ ଆଦର୍ଶ ଅପେକ୍ଷା ଉପାୟ ଉପରେ ଯେହେତୁ ଦେଇଚନ୍ତି ଅଧିକ ଗୁରୁତ୍ୱ, ସାମ୍ୟ ବିଷୟକ କଥାଗୁଡ଼ାକ ବିଶେଷ ଅମଳ ପାଇନାହିଁ । ଏକ୍ଷଣି ଅନ୍ୟଭାବରେ ଚିନ୍ତାକରିବାକୁ ପଡ଼ିବ ।

ପ୍ରଥମେ ମୁସଲ୍‌ମାନ୍, ତହିଁଉତାରୁ ଇଂରେଜ୍ ପାଖରୁ ପରାଜିତହେବା ପରେ ଜନଜୀବନରେ ନାନାଦି ରକମ ଅବକ୍ଷୟ ଘଟିଯାଇଚି; ମାତ୍ର ଦେଶର ଲୋକ ମୁସଲ୍‌ମାନ୍‌ଙ୍କୁ ନିଜଠୁଁ ଉନ୍ନତ ମନେକରିନାହାଁନ୍ତି; ନାଁ ଦେଇଚନ୍ତି 'ମ୍ଲେଚ୍ଛ' । ମାତ୍ର ଇଉରୋପୀୟ ଶିକ୍ଷାଦାନ ସକାଶେ କଲେଜ୍ ପ୍ରତିଷ୍ଠାହେବା ସଙ୍ଗେସଙ୍ଗେ ହିନ୍ଦୁମୁସଲ୍‌ମାନ୍, ଉଭୟ, ଇଂରେଜ୍‌ର ସଭ୍ୟତାକୁ ବଡ ବୋଲି ସ୍ୱୀକାର କରିନେଇଚନ୍ତି; ହିନ୍ଦୁପିଲା ବିଶେଷତଃ କାୟମନୋବାକ୍ୟରେ ଇଂରେଜ୍‌ବନିବାକୁ ଚେଷ୍ଟାକରିଚନ୍ତି ପ୍ରାଣପଣେ; ଢ଼େର୍ ଟୋକା ଖ୍ରୀଷ୍ଟାନ୍ ହୋଇଯାଇଚନ୍ତି, ନହେଲେ ଅତି କମ୍‌ରେ ବ୍ରାହ୍ମ । ପ୍ରତିକ୍ରିୟାରେ ଆଉଦଳେ ସେତିକିବେଳରୁ ଘୋର 'ହିନ୍ଦୁ' ହେବାକୁ ଲାଗିପଡ଼ିଚନ୍ତି । କଲେଜ୍‌ରେ ପଢ଼ିବାବେଳେ ଶୁଣିଚୁଁ, ଇଂରେଜ୍‌ର ବିବାକ ଲକ୍ଷଣ ଶହେରୁ ଶହେ କଦର୍ଯ୍ୟ; ଆଉ, ଯୋଉସବୁ ଆବିଷ୍କାର-ଉଦ୍‌ଭାବନ ନେଇ ବଢ଼େଇକରୁଚନ୍ତି, ସବୁଗୁଡ଼ାକ ଥିଲା ଆମ ଭାରତରେ । ଏ ପ୍ରବଣତା ଏତେଦୂର ଯାଇଚି ଯେ ଅବିଭକ୍ତ କମିଉନିଷ୍ଟ ପାର୍ଟିର ସାଧାରଣ ସଂପାଦକ ଶ୍ରୀପାଦ ଅମୃତ ଡାଙ୍ଗେ ବହିଲେଖି ଦାବିକରିଚନ୍ତି, ମାର୍କ୍ସବାଦ ବି ଅଜ୍ଞାତ ନଥିଲା ପ୍ରାଚୀନ ଭାରତକୁ ! କିନ୍ତୁ ହିନ୍ଦୁତ୍ୱର ସାଡ଼ମ୍ବର ଆସ୍ଫାଳନ ଯେ ପ୍ରକୃତରେ ପରାଜୟର ଲକ୍ଷଣ , ବୁଝାପଡ଼ିଯାଏ ଯେତେବେଳେ ଦେଖୁଁ ଗାଳିଦେବାବେଳେ ଭାଷାଟା ହୋଇଯାଏ ଇଂରେଜୀ !

ବାସ୍ତବ ଅବସ୍ଥା କିନ୍ତୁ ଅନ୍ୟରକମ; ଯେପରି, ଭାରତୀୟ ରାଷ୍ଟ୍ରର ପରିଚାଳନା; କେତେବେଳେ ପୁରୋହିତ ହାତରେ ନ୍ୟସ୍ତଥିଲା ତ ଆଉ କେତେବେଳେ ଯୋଦ୍ଧା ରାଜନ୍ୟ ହାତରେ; ଏକ୍ଷଣି ସେ ଭାର ଯାଇ ପଡ଼ିଚି ବେପାରୀଙ୍କ ହାତରେ । ଇତିହାସ କହୁଚି, ଯୋଉ ଶ୍ରେଣୀ ଯେତେବେଳେ ରାଷ୍ଟ୍ରକ୍ଷମତା କରାୟତ୍ତ କରିଚି, ବିନା ବ୍ୟତିକ୍ରମରେ, କ୍ଷମତାକୁ ନିଯୋଗକରିଚି ପ୍ରଧାନତଃ ନିଜ ଶ୍ରେଣୀର ପୁଷ୍ଟିସାଧନ ନିମନ୍ତେ । ଅବଶିଷ୍ଟ ଲୋକ ଯା ପାଇଚନ୍ତି, ପ୍ରଭୁଙ୍କ ପ୍ରସାଦ ମାତ୍ର । ଅଥଚ ଶାନ୍ତକରିରଖିବା ଶକ୍ତି ଧର୍ମର ଏତେ ପ୍ରଗାଢ଼ ଯେ କେହିହେଲେ ଅଧିକ ଦାବିକରିନାହିଁ କି ପ୍ରତିବାଦ କରିନାହିଁ । ସେଥିପାଇଁ, ନ୍ୟାୟ ଦାବିକରିବା ଅଧିକାର ମଧ ପାଇନାହିଁ ବ୍ରାତ୍ୟ କି ଅନ୍ତ୍ୟଜ । ମଣିଷ ସହିତ ମଣିଷର ବିଭିନ୍ନତା ଅସ୍ୱୀକାରକରିବା ଗୋଟେ ଜିନିଷ, ଆଉ ବିଭିନ୍ନ ସାମାଜିକ ଶ୍ରେଣୀ ଭିତରେ 'କ୍ଷମତା'ର ତାରତମ୍ୟ ଦୂରକରିବା ଆଉଗୋଟେ ଜିନିଷ । ଏଇ ଶ୍ରେଣୀବିଭେଦ ଦୂରକରିବା ସେକିଉଲାରିଜ୍ମର ଲକ୍ଷ୍ୟ । ଆପାତଧର୍ମର କଥା ଅବଶ୍ୟ ଅଲଗା, କାହିଁକିନା, ଯୁଦ୍ଧ ବା ରାଷ୍ଟ୍ରବିପ୍ଳବ ବେଳେ ଏ ନୀତି ହୁଏତ ପ୍ରଯୋଜ୍ୟ ହେବନାହିଁ; ଦୋଷ କିନ୍ତୁ ଆଦର୍ଶର ନୁହେଁ, ସାଧନର । ରାଜନୀତିକୁ ଧର୍ମଠୁଁ ବିଚ୍ଛିନ୍ନକରିବାକୁ ହେଲେ ପ୍ରାଥମିକ ପ୍ରୟୋଜନ ଶ୍ରେଣୀଭେଦର ଅବସାନ; ରାଷ୍ଟ୍ରକୁ ଧନିକଶ୍ରେଣୀ, କ୍ଷତ୍ରିୟଶ୍ରେଣୀ ପ୍ରଭୃତିର ଆଧିପତ୍ୟରୁ ମୁକ୍ତକରି ଶୂଦ୍ରଶ୍ରେଣୀର ପ୍ରାଧାନ୍ୟ ପ୍ରତିଷ୍ଠା । ବହୁଳାଂଶ ଶୂଦ୍ରର ଆଧିପତ୍ୟ ସମାଜରୁ ଶ୍ରେଣୀବୈଷମ୍ୟ ଲୋପକରିବନାହିଁ ସତ, ମାତ୍ର ରାଷ୍ଟ୍ର ପରିଚାଳନାରେ ସଂଖ୍ୟାଗରିଷ୍ଠ ଲୋକଙ୍କ ପ୍ରାଧାନ୍ୟ ସ୍ୱୀକୃତହେଲେ ଅଧିକାଂଶ ଲୋକଙ୍କ ସ୍ୱାର୍ଥସାଧନ ସମ୍ଭବପର । ତାଙ୍କ ଭିତରେ ରହିଚନ୍ତି ସଂଖ୍ୟାଲଘୁ ଧର୍ମସଂପ୍ରଦାୟ । ଜାତି-ଜାତି ଶ୍ରେଣୀ-ଶ୍ରେଣୀ ସଂପ୍ରଦାୟ-ସଂପ୍ରଦାୟ ଭିତରେ ସୁଯୋଗସୁବିଧା, ସଂପତ୍ତି, ଶିକ୍ଷା ପ୍ରଭୃତିର ଭେଦାଭେଦ ଦୂରକରିବାକୁ ହେଲେ ଦେଶବ୍ୟାପୀ ସମ୍ୟକ ଶିକ୍ଷା ଓ ସମ୍ୟକ ମାନସିକତା ସୃଷ୍ଟିକରିବା ଦରକାର; ସେଭଳି ବ୍ୟବସ୍ଥାର ବିସ୍ତାର ନିମନ୍ତେ ଶୂଦ୍ରର ଏକାଧିପତ୍ୟ ବିଶେଷ ଜରୁରୀ । ଶୂଦ୍ର ଛଡ଼ା ଅନ୍ୟକାହାରି ହାତରେ ରାଷ୍ଟ୍ରଶକ୍ତି ରହିଥିଲେ, ସେ ଶ୍ରେଣୀ ସାମ୍ୟର ଶିକ୍ଷା ବିସ୍ତାର କରାଇଦେବ ନାହିଁ, କାହିଁକିନା, ସେଭଳି ବ୍ୟବସ୍ଥା ଓ ତାର ବିସ୍ତାର ନିଜ ଶ୍ରେଣୀସ୍ୱାର୍ଥର ବିପରୀତ । କଥାଟା ମତାମତର ବିଷୟବସ୍ତୁ ନୁହେଁ; ଅଦ୍ୟାବଧି ବାସ୍ତବ ଅଭିଜ୍ଞତା । ଦେଶର ଏଲିଟ୍, ହିନ୍ଦୁ ମୁସଲ୍ମାନ୍ ଖ୍ରୀଷ୍ଟାନ୍, ଯୋଉହେଲେ ସଂପ୍ରଦାୟରୁ ଆସୁ, ଶିକ୍ଷା ଓ ରାଜନୀତିକ କ୍ଷମତାର ଶୂଦ୍ରାୟନ କଥା କେବେହେଲେ ଚିନ୍ତାକରିନାହିଁ, ଆରକ୍ଷଣ ସଂରକ୍ଷଣ ପ୍ରବର୍ତ୍ତନକରି ବଞ୍ଚିତ ମଣିଷକୁ ଲାଞ୍ଛିଆକରିବା ଛଡ଼ା, ସ୍କୁଲ୍‌ପିଲାଙ୍କୁ ଖିଚୁଡ଼ିଖୁଆଇ ଭିଖାରୀକରିବା ଛଡ଼ା, ଆତ୍ମମର୍ଯ୍ୟାଦାରେ ଶୂଦ୍ରକୁ ଅଧିଷ୍ଠିତକରିବାକୁ, ରାଜନୀତି କି

ଶିକ୍ଷାବ୍ୟବସ୍ଥା, ଆଉକିଛି କରିପାରିନାହିଁ; ମୁସଲମାନ୍ କି ଖ୍ରୀଷ୍ଟାନ୍‌ଙ୍କୁ ମଧ୍ୟ ଅନୁରୂପ ଉତ୍କୋଚର ଲୋଭ ଦେଖାଉଚି ବୁର୍ଜୋୟା । ସେମାନେ କିନ୍ତୁ ସକଳ ଅର୍ଥରେ ଶୂଦ୍ର!

ମନସ୍ୱୀ କହୁଚନ୍ତି, ଭାରତର ସମାଜବ୍ୟବସ୍ଥା ଅସମ ନୁହେଁ, କାହିଁକିନା, ଚତୁର୍ବର୍ଣ୍ଣର ସୃଷ୍ଟି ସାମାଜିକ ଭାରସାମ୍ୟ, ଅନ୍ତତଃ ତାର ନିକଟତମ ଆଦର୍ଶର, ସଂସ୍ଥାପନ ସକାଶେ; ପାଶ୍ଚାତ୍ୟ ସଭ୍ୟତା ମୋହରେ ପଡ଼ି ସେ ଆଦର୍ଶର ଦୂରକୁ ଚାଲିଯାଉଛୁଁ । ତାହେଲେ ତ ପରିତାପର କଥା, କାହିଁକିନା, ପୁରାତନ ସମାଜବ୍ୟବସ୍ଥାରେ ଯା ବାସ୍ତବିକ ମଙ୍ଗଳକର, ତାକୁ ଭୁଲିଯିବା ଏଲିଟ୍‌ର କାମ ନୁହେଁ । ମାତ୍ର ଐତିହ୍ୟ ପ୍ରତି ମୋହବଶତଃ ହିନ୍ଦୁତ୍ୱକୁ ସତ୍ୟଠୁଁ ବଡ଼ ଭାବିବା ମାରାତ୍ମକ ଭୁଲ୍ । ହିନ୍ଦୁସମାଜର ଏକ ବଡ଼ ଅନୁଷ୍ଠାନ ଯୌଥପରିବାର; ସାରା ସମାଜଟାକୁ ହୁଏତ ଯୌଥପରିବାର ରୂପରେ କଳ୍ପନାକରିଚନ୍ତି ପ୍ରାଚୀନ ଭାରତୀୟ; ଯା ଫଳରେ, ଆର୍ଯ୍ୟ-ଅନାର୍ଯ୍ୟ-ଦ୍ରାବିଡ଼ ପରି ଭେଦରେଖା ଲିଭିଯାଇଚି କାଳକ୍ରମେ । ସାମାଜିକ ଆଦର୍ଶ ହିସାବରେ ଅନୁକରଣୀୟ ନିଶ୍ଚୟ; ନିର୍ଦ୍ଦିଷ୍ଟ କୋଉ ଯୌଥପରିବାର ଭିତରେ ସ୍ୱାର୍ଥତ୍ୟାଗଦ୍ୱାରା ସାମ୍ୟଭାବ ଆଣିହେବ ହୁଏତ; କିନ୍ତୁ ବିରାଟ ଏକ ଉପମହାଦେଶର ଅର୍ଥନୈତିକ ବୈଷମ୍ୟ ଏଇ ବ୍ୟବସ୍ଥା ଦ୍ୱାରା ମୀମାଂସା କରାଯିବ କେମିତି ? ସମଗ୍ର ସମାଜର ସାମ୍ୟସମସ୍ୟା ଏକକ ପରିବାରର ଅର୍ଥନୈତିକ ସମସ୍ୟାର ସମତୁଲ ହୋଇପାରେନା; ପ୍ରାଚୀନ ଭାରତରେ ବି ହୋଇନାହିଁ । ହୋଇନାହିଁ, କାହିଁକିନା, ରକ୍ତସଂପର୍କରେ ଯିଏ ପରସ୍ପର ଆତ୍ମୀୟ ନୁହେଁ, ସେଭଳି ଏକ ବିପୁଳ ଜନସମଷ୍ଟିର ମନଭିତରକୁ, ଭାରତମାତାଙ୍କ ସନ୍ତାନ ବୋଲି ସ୍ଲୋଗାନ୍ ଉଠାଇ ଆତ୍ମୀୟବୋଧ ସଞ୍ଚାରକରିବା ଭାବାଲୁତା ମାତ୍ର ।ନ ହେଲେ, ଯୋଉ ଇକ୍‌ବାଲ୍ ଲେଖିଥିଲେ 'ସାରେ ଜହାଁସେ ଆଚ୍ଛା ହିନ୍ଦୋସ୍ତାନ୍ ହମାରା...ହମ୍ ବୁଲ୍‌ବୁଲ୍‌ହେଁ ଇସ୍‌କୀ...', ସିଏ ଫେର୍ ପାକିସ୍ତାନ୍ ପଳାଇଗଲେ କାହିଁକି ? ମନସ୍ୱୀ ଜାଣନ୍ତି, ହିନ୍ଦୁଶାସ୍ତ୍ରରେ ଗୋଟିଏହେଲେ ଦୃଷ୍ଟାନ୍ତ ମିଳିବନାହିଁ ଯୋଉଠି ହାଡ଼ିବାଉରି, ବଢ଼େଇ-କମାର, ବଣିଆ-କୁମ୍ଭାର, ଚଷା-ତନ୍ତୀ, ବେପାରି-ବାଜିକର ସମସ୍ତଙ୍କୁ ଏକାଠିକରି ଯୌଥପରିବାର ଗଢ଼ିବାକୁ ଉଦ୍ୟମ ହୋଇଚି, ଆଉ ପରିବାରଭୁକ୍ତ ସମସ୍ତଙ୍କ ଉପାର୍ଜନକୁ ଠୁଳକରି ବ୍ୟକ୍ତିବିଶେଷର ଆବଶ୍ୟକତା ଅନୁସାରେ ଖର୍ଚ୍ଚ କରାଯାଇଚି । *ମନୁସଂହିତା* ଓ *ମହାଭାରତ* ରୁ ଅବଶ୍ୟ ଦିଶୁଚି, ବ୍ରାହ୍ମଣଙ୍କୁ ସମାଜ ଅତ୍ୟଧିକ ପ୍ରତିପତ୍ତି ଦେଲେସୁଦ୍ଧା, ସ୍ୱେଚ୍ଛାରେ ଦାରିଦ୍ର୍ୟଗ୍ରହଣକୁ କରିଚି ବ୍ରାହ୍ମଣତ୍ୱର ଅପରିହାର୍ଯ୍ୟ ସର୍ତ୍ତ । ବ୍ରାହ୍ମଣ ଖାଲି ଦାରିଦ୍ର୍ୟବ୍ରତ ବରଣକରିନାହାଁନ୍ତି, ଅପରାପର ଉଚ୍ଚବର୍ଗ ମଧ୍ୟ ସର୍ବସାଧାରଣ ଉପକାର ନିମନ୍ତେ କୂଅ-ପୋଖରି ଖୋଳାଇଦେବେ, ରାସ୍ତାଘାଟ ବାନ୍ଧିଦେବେ, ଦେଉଳ ତୋଳାଇଦେବେ କି ସଦାବ୍ରତ ପାଇଁ ଅକାତର ଦାନଖଇରାତ କରିବେ ବୋଲି

କାମଗୁଡ଼ାକୁ କୁହାଯାଇଚି ପୁଣ୍ୟାର୍ଜନ । ଆୟର ପୁନର୍ବଣ୍ଟନ ଏକ୍ଷଣି ଟ୍ୟାକ୍ସେସନ୍ ଦ୍ୱାରା କରାଯାଉଚି, କିନ୍ତୁ ବେଶି ଟ୍ୟାକ୍ସ ଦେଲେ ସ୍ୱର୍ଗଲାଭ କିମ୍ବା ଅତିରିକ୍ତ ମର୍ଯ୍ୟାଦା ପ୍ରାପ୍ତିର ସମ୍ଭାବନା ନାହିଁ । ପ୍ରାଚୀନ ଭାରତରେ ଥିଲା ଆଇନ୍‌କୁ ଭୟ ଅପେକ୍ଷା ପୁଣ୍ୟ ଆଡ଼କୁ ଆକର୍ଷଣ । ଧନବୈଷମ୍ୟକୁ କେତେକାଂଶରେ ଉପଶମକରିଚି ହୁଏତ, କିନ୍ତୁ ଆପଣା ଧନସଂପତ୍ତିକୁ ସତ୍‌କାର୍ଯ୍ୟରେ ବ୍ୟବହାର ନକଲେ, ଜୋର୍‌ଜବରଦସ୍ତି କରିପାରୁନଥିଲା ସମାଜ କି ରାଷ୍ଟ୍ର । ଅର୍ଥାତ୍, ନିଜ ଆୟର ମାଲିକ ନିଜେ, ତା ଉପରେ ଦେଶର ଦାବି ଖାଟେନା । ବ୍ୟକ୍ତିଗତ ଆୟ ଉପରେ ସମଷ୍ଟିର ଦାବି ଅପ୍ରାସଙ୍ଗିକ ହେଲେସୁଦ୍ଧା, ଦେଖାଯାଉଚି, ଧନୋତ୍ପାଦନର ସମସ୍ତ ସାଧନ (ମିନ୍ସ ଅବ୍ ପ୍ରଡକ୍ସନ୍) ସ୍ୱର୍ଣ୍ଣ,ଭୂମି, ଖଣି, ମୂଳଧନ, ଉପରେ ବ୍ୟକ୍ତିଗତ ମାଲିକାନାକୁ ସ୍ୱତଃ ସ୍ୱୀକାରକରିଚି ସମାଜ । ରାଷ୍ଟ୍ରର ଅକ୍ତିଆରକୁ ସେଗୁଡ଼ାକୁ ଆଣିବାକୁ ଚେଷ୍ଟାହୋଇନାହିଁ ଜମାରୁ । ହିନ୍ଦୁସମାଜ ତେଣୁ 'ସାମ୍ୟ' କଥାଟାକୁ ଗୁରୁତର ମନେକରିନାହିଁ ଆଦୌ; ବ୍ୟକ୍ତିଗତ ସଂପତ୍ତି ବିବେଚିତହୋଇଚି ପବିତ୍ର; ଯେପରି, ବିନାଯୁଦ୍ଧେ ନଛାଡ଼ିବି ସୂଚ୍ୟଗ୍ର ମେଦିନୀ ! ଦାନଖଇରାତ ବ୍ୟବସ୍ଥା ଇସ୍‌ଲାମ୍ ଓ ଖ୍ରୀଷ୍ଟାନିଟିରେ ମଧ୍ୟ ରହିଚି, ମାତ୍ର ସଂପତ୍ତିର ବ୍ୟକ୍ତିଗତ ମାଲିକାନାକୁ ଅସ୍ୱୀକୃତି ନାହିଁ । ଆଜି ମଧ୍ୟ ପୃଥିବୀସାରା ସବୁରକମ ଅଧିକାର ଉର୍ଦ୍ଧ୍ୱରେ ବିରାଜମାନ ସଂପତ୍ତିର ଅଧିକାର; ସମକକ୍ଷ ଅଧିକାର ଏକମାତ୍ର ଜୀବନର ଅଧିକାର । ଯା'ର କାଣୀକଉଡ଼ି ନାହିଁ, 'ଜୀବନ'କୁ ନେଇ ସିଏ କରିବ ଅବା କଣ ? ଭୋଟ୍ ଦେଇପାରିବ ଅବଶ୍ୟ । ବୁର୍ଜୋୟା ଦୃଷ୍ଟିରେ ତେଣୁ ଭୋଟ୍‌ରତାଲିକାରେ ସିଏ ଗୋଟିଏ କ୍ରମିକ ସଂଖ୍ୟା । ସଂଖ୍ୟା ବଢ଼ିଲେ ଭୋଟ୍‌ବ୍ୟାଙ୍କ୍ । ଶୂଦ୍ର ତେଣୁ ଦେଶର ସର୍ବବୃହତ୍ ଭୋଟ୍‌ବ୍ୟାଙ୍କ୍, ମାତ୍ର ରାଷ୍ଟ୍ରର କ୍ଷମତାଷ୍ଟ୍ରକ୍‌ଚର୍ ଓ ଶିକ୍ଷାବ୍ୟବସ୍ଥାର ଚାକିରୀଅଭିମୁଖୀ ଭାବାଦର୍ଶ ଏପରି ଦମନପ୍ରବଣ ଯେ ବୁର୍ଜୋୟାର ଦୟାଦାକ୍ଷିଣ୍ୟ ଅନବରତ ଭିକ୍ଷା ନକଲେ ଜୀବନରକ୍ଷା ବି ଅସମ୍ଭବ ।

ନୃତତ୍ତ୍ୱବିଦ୍ ମାତ୍ରକେ ଜାଣନ୍ତି, କୋହ୍ଲ ଶବର ଭିଲ ସାନ୍ତାଳ ପ୍ରଭୃତି ଜାତିକୁ ବ୍ରାହ୍ମଣ ଯୋଉ ବାଗରେ ହିନ୍ଦୁସମାଜର ଅନ୍ତର୍ଭୁକ୍ତ କରିନେଇଚନ୍ତି, ପ୍ରାଚୀନକାଳ ପୃଥିବୀରେ ଅନ୍ୟ କୋଉହେଲେ ଦେଶ ସେ ବାଟ ଧରିନାହିଁ; ଅଷ୍ଟ୍ରେଲିଆ କି ଲାଟିନ୍‌ଆମେରିକାରେ ତ ନରସଂହାର ହୋଇଚି ଆତ୍ମୀକରଣର ଏକମାତ୍ର ଉପାୟ । ଖ୍ରୀଷ୍ଟାନ୍ କି ମୁସଲ୍‌ମାନ୍, ବିଜିତକୁ ନିଜ ସମାଜଭୁକ୍ତ କରିବାପାଇଁ କୌଳୀକ ଧର୍ମ, ଆଚାର, ସଂସ୍କାର, ଏପରିକି ପିତୃଦତ୍ତ ନାଁ କି ସମାଜଦତ୍ତ ପୋଷାକ ମଧ୍ୟ ବଦଳାଇଦେଇଚନ୍ତି । ହିନ୍ଦୁ ସେ ବାଟକୁ ଗୋଡ ବଢ଼ାଇନାହାଁନ୍ତି । ଚାତୁର୍ବର୍ଣ୍ୟର ଆଧ୍ୟାତ୍ମିକଦିଗ ଯେତେ ମହତ୍ ହେଉ ପଛକେ, ଆଦିବାସୀକୁ ହିନ୍ଦୁ କଲାବେଳେ

ବ୍ରାହ୍ମଣ ଆଗେ ନଜରଦେଇଚନ୍ତି ବୈଷୟିକ (ଅର୍ଥନୀତିକ) ଦିଗକୁ । ହିନ୍ଦୁକରିବା ସଙ୍ଗେସଙ୍ଗେ ସ୍ଥାନୀୟ / ଆଞ୍ଚଳିକ ଚାହିଦାକୁ ଲକ୍ଷ୍ୟରେ ରଖି, ଗୋଟିଏ ଗୋଟିଏ ବୃତ୍ତି ଖଞ୍ଜିଦେଇଚନ୍ତି । ବନ୍ୟଜାତି ହିନ୍ଦୁସମାଜର ଅନ୍ତର୍ଭୁକ୍ତହୋଇ କେହି ବାଉଁଶ, କେହି କାଠ, କେହି ମାଟି, କେହି ଗୋରୁଛେଳି ପ୍ରଭୃତିକୁ କରିଚି ଅବଲମ୍ବନ; ଅନ୍ୟରକମ ଧନ୍ଦା ବି ଧରିଚନ୍ତି, ଯେମିତି ମହୁ ଝୁଣା ଶିଙ୍ଘ କି ଚମଡ଼ାକୁ ନେଇ କାରବାର । ହିନ୍ଦୁହେବା ପୂର୍ବାବସ୍ଥାରେ ପ୍ରତ୍ୟେକ ବନ୍ୟଜାତି ନାନାଦି କାମଧନ୍ଦା କରୁଥିଲେ, ମାତ୍ର ହିନ୍ଦୁଙ୍କ ସଂଖ୍ୟାବୃଦ୍ଧି ଓ ପ୍ରସାର ସଙ୍ଗେସଙ୍ଗେ ତାଙ୍କ ବଣଜଙ୍ଗଲ ବି ପଦାହୋଇଗଲା, ମହୁଲ-ସଲପ-ଖଜୁରୀରୁ ରସ ମିଳିଲାନାହିଁ, ଶିକାର ନିଷିଦ୍ଧହେଲା, ଅନ୍ୟ ଅନେକ କାରଣରୁ ପ୍ରାଚୀନ ବୃତ୍ତିସବୁ ଲୋପପାଇବାକୁ ଲାଗିଲା । ହିନ୍ଦୁ ସେତେବେଳେ ନିଜ ଅର୍ଥନୀତିକ ସଂଗଠନର ଅଙ୍ଗୀଭୂତକରିନେଇ ବିଶେଷ ବିଶେଷ ବୃତ୍ତି ନିର୍ଦ୍ଦେଶକରିଦେଲେ ଯେମିତିକି ସେଇ ବୃତ୍ତିଗୁଡ଼ାକରେ ଲାଗିରହିଲେ ଅନ୍ନବସ୍ତ୍ର ଆଉ ସମସ୍ୟା ହେବନାହିଁ । ରଜାର କର୍ତ୍ତବ୍ୟ ଥିଲା, କେହି ଯେମିତି ଭୋକଉପାସରେ ନରହେ, ସେଇ କଥାକୁ ନଜର ଦେବା; ଏବଂ ସେଥିପାଇଁ ଜଣକ କାମ ଉପରେ ଆଉଜଣେ ଯେମିତି ହସ୍ତକ୍ଷେପ କରିନପାରେ, ପ୍ରଶାସନ ତଦାରଖ୍ କରିଚି; ଯା ଫଳରେ ଗୋଟିଏ ଜାତିର ବୃତ୍ତି ଅପର ଜାତି ଗ୍ରହଣକରି ପାରିନାହିଁ । ଖାଲି ସେତିକି ନୁହେଁ, ବେପାରବଣିଜରେ ଏକଚାଟିଆ ଅଧିକାର କାରଣରୁ, ପାଟକଜାତିର କାରିଗର ଜିନିଷପତ୍ରର ଦରଦାମ ଯେମିତି ବେଜାଏ ବଢ଼ାଇହେଇ ନପାରିବେ, ତା ଉପରେ ଦୃଷ୍ଟିରଖି ଜିନିଷପତ୍ରର ମୂଲ୍ୟ ନିର୍ଦ୍ଧାରଣ କରିଦେବାକୁ ପଡ଼ିବ ବୋଲି *ମନୁସଂହିତା* ରାଜାକୁ ବିଧାନ ଦେଇଚି, (ଦ୍ର. ଅଧ୍ୟାୟ ୮, ଶ୍ଳୋକ ୪୧୦-୪୧୮ ।) ଆଜି ବି ଦେଖିଦେବ, ହିନ୍ଦୁପ୍ରଜା ପାଖରୁ ହିନ୍ଦୁ ଜମିଦାର ଦୁର୍ଭିକ୍ଷବେଳେ ବି କମ୍ ଖଜଣା ନିଏନା, ମୁସଲ୍‌ମାନ୍ ଶ୍ରମିକକୁ ମୁସଲ୍‌ମାନ୍ କାରଖାନାମାଲିକ ଅଧିକ ମଜୁରୀ ଦିଏନା, ଖ୍ରୀଷ୍ଟାନ୍ କିରାଣୀର ଚାକିରୀନେଇଯିବାକୁ ଖ୍ରୀଷ୍ଟାନ୍ ବଡ଼ସାହେବ ଦି'ଥର ଭାବେନା । ଏ କାର୍‌ସାଦି ପୁଞ୍ଜିବାଦୀ ଉତ୍ପାଦନଧରଣର ! ପୁଞ୍ଜିବାଦ ଯେ ସେକିଉଲାର୍, ତେଣୁ ଦ୍ୱିମତର ଅବକାଶ ନାହିଁ ।

ଅଥଚ ହିନ୍ଦୁସମାଜ ସଂଗଠନର ବିଧିବିଧାନ ଅଲଗା । ଆପତ୍‌ଧର୍ମ ବଶତଃ ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟ ବୃତ୍ତି ବଦଳକରିପାରିଚନ୍ତି, ଶୂଦ୍ରକୁ ସେ ଅଧିକାର ମିଳିନାହିଁ । ଶାସ୍ତ୍ର-ସଂହିତାର ବିଧାନ ତେଣୁ ରାଜଧର୍ମ ବିଷୟରେ ସୁସ୍ପଷ୍ଟ: ଚାତୁର୍ବର୍ଣ୍ଣ୍ୟ ଓ ଚତୁରାଶ୍ରମର ସୁରକ୍ଷା ରାଷ୍ଟ୍ରଶକ୍ତିର କର୍ତ୍ତବ୍ୟ । ବାକି ତିନିବର୍ଣ୍ଣଭଳି ବୃତ୍ତି ବଦଳର ଅଧିକାର ପାଇନାହିଁ ବୋଲି, ଶୂଦ୍ରର ଏକ ଅଂଶ ଇତିହାସଗତିରେ ମୁସଲ୍‌ମାନ୍/ଖ୍ରୀଷ୍ଟାନ୍ ହୋଇ ଠାକୁରବଦଳ

ନାଁରେ ବୃତ୍ତି ବଦଳକରିଚି । ଏ ବି ଏକରକମ ସେକିଉଲାର୍ ପ୍ରକ୍ରିୟା ଓ ପ୍ରତିବାଦ; ମାର୍କ୍ସବାଦୀ ଅବଲୋକନରେ ଶ୍ରେଣୀସଂଗ୍ରାମ ।

ବହୁକାଳଧରି ବହୁଜାତି ଏଇଭଳି ଗୋଟିଏ ଗୋଟିଏ ବୃତ୍ତି ଆଦରିନେଇ ହିନ୍ଦୁସମାଜର ଅର୍ଥନୈତିକ ସଂଗଠନରେ ସ୍ଥାନପାଇଚି, ପାଇବା ଉତାରୁ ସାମାଜିକ କ୍ରିୟାକର୍ମ କି ଧର୍ମାନୁଷ୍ଠାନ ଭିତରେ ହିନ୍ଦୁ ସଂସ୍ପର୍ଶରେ ଆସି କିଛି କିଛି ପରିବର୍ତ୍ତନ ବି ସାଧିତହୋଇଚି, ଯେପରି, ନୂଆଠାକୁର ବାହାରିଚନ୍ତି ସତ୍ୟନାରାୟଣ, ସତ୍ୟ-ପୀର । ସଂଗୀତ କ୍ଷେତ୍ରରେ ବିବାକ ମୁସଲ୍‌ମାନ୍‌ଙ୍କ ଆରାଧ୍ୟ ଦେବୀ ସରସ୍ୱତୀ । ହୋଲି ବି ମୁସଲ୍‌ମାନ୍‌ଙ୍କ ପରବ ଉତ୍ତରଭାରତରେ, କାହିଁକିନା, ଅଙ୍ଗୀଭୂତ ଜାତିମାନଙ୍କ ଧର୍ମପରିବର୍ତ୍ତନ ବିଷୟରେ ହିନ୍ଦୁଙ୍କ ଭିତରେ ବିଶେଷ ଉତ୍ସାହ ଦେଖାଯାଇନାହିଁ; କେବଳ ଧର୍ମାନ୍ତରିତର ଆଚାରଅନୁଷ୍ଠାନ ଭିତରେ ହିନ୍ଦୁନୀତିଗର୍ହିତ ଉପାଦାନ ଯଦି ଦେଖିଚନ୍ତି, ମାର୍ଜିତ କରିଦେଇଚନ୍ତି; ଯେପରି, ନରବଳିର ବିକଳ୍ପ ପଶୁବଳି, ଶେଷକୁ ଛାଗବଳି ପରିବର୍ତ୍ତେ ପାଣିକଖାରୁ । ବନ୍ୟଜାତି ହିନ୍ଦୁ ହେବାପରେ ତାଙ୍କ ଭିତରେ ବି କିଛି କିଛି ପରିବର୍ତ୍ତନ ଦେଖାଯାଇଚି; ଯେପରି ଗୋମାଂସକୁ ଅଭକ୍ଷ୍ୟ ବିବେଚନା, ଶୂକର ବା କୁକୁଡ଼ାକୁ ଘରେରଖି ପାଳନ, ସର୍ବୋପରି, ବିବାହ ଶ୍ରାଦ୍ଧ ଇତ୍ୟାଦିରେ ନିଜ ଜାତିପୋଷିତ କ୍ରିୟାକର୍ମ ସାଙ୍ଗକୁ ବ୍ରାହ୍ମଣ ପୁରୋହିତ କର୍ତ୍ତୃକ ବୈଦିକ ଉପଚାର । ବ୍ରାହ୍ମଣ ପୁରୋହିତ ଦ୍ୱାରା କ୍ରିୟାକର୍ମ କରାଇବା ଅଧିକାର ଲାଭକରିବା ଉତାରୁ ସାମାଜିକଭାବେ ବିବେଚିତହୋଇଚନ୍ତି ବସ୍ତୁତଃ ହିନ୍ଦୁ । ଏଇ ଥିଲା ହିନ୍ଦୁତ୍ୱ ପ୍ରାପ୍ତିର ସାଧନୋପାୟ : ବ୍ରାହ୍ମଣ ପୁରୋହିତ ଦ୍ୱାରା ସ୍ୱୀକୃତି, ଖ୍ରୀଷ୍ଟାନ୍‌ଙ୍କର ଯେମିତି ବ୍ୟାପ୍ଟିଜ୍‌ମ୍ ।

ଦୀର୍ଘସମୟଧରି ଏ ଭାବରେ ଯୋଡ଼ ସମାଜ ଗଢ଼ିଉଠିଚି, ତା ଭିତରେ ନାନା ଜାତି ଉପଜାତି ଅଜାତି ଜାଗାପାଇଚନ୍ତି, ନିଜ ପୂର୍ବତନ ଧର୍ମାନୁଷ୍ଠାନକୁ ବଞ୍ଚାଇରଖିବାକୁ ବି ବାଧା ପାଇନାହାଁନ୍ତି; ତା ଫଳରେ କିନ୍ତୁ ସମାଜର ସ୍ୱଭାବ ସାମ୍ୟବାଦୀ ହୋଇଯାଇନାହିଁ । 'ସାମ୍ୟବାଦୀ' ମାନେ ଯୋଡ଼ ପ୍ରକାର ସାମ୍ୟ ସେକିଉଲାର୍ ହେବାପାଇଁ ପୂର୍ବସର୍ତ୍ତ । ସେ ପ୍ରକାର ସାମ୍ୟଭାବ ଧନତନ୍ତ୍ରରେ 'ମାର୍କେଟ୍' ମଧ୍ୟ ଦେଇପାରେ । କିନ୍ତୁ ସେ ପ୍ରକାର ସାମ୍ୟ ଆସିନାହିଁ, କାହିଁକିନା, ବିଭିନ୍ନ କାରିଗରଗୋଷ୍ଠୀ ଭିତରେ ଆୟର ସମତା ସ୍ଥାପିତହୋଇନାହିଁ କଦାପି । କମାର କୁମ୍ଭାର ଅଧ୍ୟାପକ ପୁରୋହିତ ସ୍ୱର୍ଣ୍ଣକାର ଶିଳ୍ପୀ ବ୍ୟବସାୟୀ– ଏମାନଙ୍କ ଆୟର ତାରତମ୍ୟ ପରସ୍ପର ସହିତ ଥିଲା ଦୁର୍ଲଂଘ୍ୟ; ପୁଣି ଏମାନଙ୍କର ଥିଲା ଯେତେ ବୃତ୍ତିଭିତ୍ତିକ ଗୋଷ୍ଠୀ (ଯଦିଓ ଶ୍ରେଣୀ କହିବା ସମୁଚିତ), ସାମୂହିକ ଆଇନ୍ ଦୃଷ୍ଟିରେ, ସାମାଜିକ ମର୍ଯ୍ୟାଦା ମାପକାଠିରେ, ଅନ୍ୟାନ୍ୟ ସକଳ ଆନୁଷଙ୍ଗିକ ବିଷୟରେ ପରସ୍ପରଠାରୁ ଏତେ ପୃଥକ ଯେ 'ମାର୍କେଟ୍'

ଭଳି ଅର୍ଥନୀତିକ ପ୍ରତ୍ୟୟ ମଧ୍ୟ କରିପାରେନା ସାମ୍ୟସାଧନ । କାହିଁକିନା, ସମାଜର ବିରାଟ ଅଂଶ ମାର୍କେଟ୍‌ରେ ଅଂଶନେବାକୁ ଥିଲେ ଅକ୍ଷମ । ଖାଲି ଦରଦାମ ଉପରେ ରଜା କଟକଣା ବସାଇଥିଲେ ବୋଲି ନୁହେଁ, କମାର-ବଢ଼େଇ କୁମ୍ଭାର-ସ୍ୱର୍ଣ୍ଣକାର ଶୂଦ୍ର; ଅଧ୍ୟାପକ-ପୁରୋହିତ ବ୍ରାହ୍ମଣ; ଶିଳ୍ପୀ-ବ୍ୟବସାୟୀ ବୈଶ୍ୟ; –ଏମାନଙ୍କ ଭିତରେ ସାମାଜିକ ଦୂରତ୍ୱ ଆଉ ସେଇ ଦୂରତ୍ୱ ପଛରେ ଆଇନ୍‌ର ସମର୍ଥନ ଥିଲା ସାମ୍ୟପଥର ଅନ୍ତରାୟ । ଆଦର୍ଶ ସାମ୍ୟବାଦୀ ରାଷ୍ଟ୍ରରେ ମଧ୍ୟ ଲୋକଙ୍କ ଆବଶ୍ୟକ ଅନୁଯାୟୀ କି ଜିନିଷ ଉତ୍ପନ୍ନହେବ, ସ୍ଥିରକରିଦିଏ ରାଷ୍ଟ୍ର; ମାତ୍ର କିଏ କେଉଁ କାମର ଭାରନେବ, ନିର୍ଭରକରେ ବ୍ୟକ୍ତିବିଶେଷର ଯୋଗ୍ୟତା ଓ ସାମର୍ଥ୍ୟ ଉପରେ, ଜାତିଗୋତ୍ର ଉପରେ ନୁହେଁ । ପୁରୁଷାନୁକ୍ରମେ ଗୋଟିଏ କାମକୁ ଶହଶହବର୍ଷ କରିଚାଲିଲେ, ସେ କାମ ଉପରେ ନିର୍ଦ୍ଦିଷ୍ଟ ଜାତିର ଏକାଧିପତ୍ୟ ହୁଏତ ପ୍ରତିଷ୍ଠାପାଏ, ମାତ୍ର ଅବଶିଷ୍ଟ ସବୁରକମ କାମପାଇଁ ସେଇ ଜାତିଟା ହୋଇଯାଏ ଅକର୍ମଣ୍ୟ । ଆଉ, ସେଇ ଜାତିଭୁକ୍ତ କୌଣସି ବ୍ୟକ୍ତିବିଶେଷର ଅଭିରୁଚି ଯଦି ଭିନ୍ନରକମ କାମଆଡ଼କୁ ଆକର୍ଷିତହୁଏ (ହେବା ସ୍ୱାଭାବିକ), ଆତ୍ମହତ୍ୟା ଛଡ଼ା ଉପାୟାନ୍ତର ଥାଏନା । ଜାତିରେ ଚଷା ସାରଳାଦାସ ପୁରାଣ ଲେଖିଚନ୍ତି ସିନା, ବାରମ୍ବାର ଚିତ୍କାରକରି ଘୋଷଣାକରିବାକୁ ପଡ଼ିଚି, ଶୂଦ୍ର ଲେଖିନାହିଁ, ଠାକୁରାଣୀ ଦେଇଚନ୍ତି ଶ୍ରୁତଲିଖନ । ଉତ୍ପାଦନ ଓ ବିନିମୟର ଦ୍ୱାରଗୁଡ଼ାକ ଯେତେବେଳେ ଅବରୁଦ୍ଧ, କେଉଁ ମାର୍କେଟ୍ ଗଢ଼ିଉଠିବ କେଉଁଠି ? ଏପରିକି, ମୁସଲମାନ୍ ସାଲବେଗଙ୍କୁ ମଧ୍ୟ ଘୋଷଣାକରିବାକୁ ପଡ଼ିଚି, 'ଜାତିରେ ମୁଁ ଯବନ' ! ଅର୍ଥାତ୍, ଜଗନ୍ନାଥଙ୍କ ଜଣାଣ ଲେଖିବାକୁ ମୁଁ ଭାଜନ ନୁହେଁ, ମୁଁ ଅନ୍ତ୍ୟଜ । ଶୂଦ୍ର, ସମାଜକୁ ଅନ୍ନବସ୍ତ୍ର ଯୋଗାଇବା ଦାୟିତ୍ୱ ଯିଏ ପାଇଚି, ଦେଶର ସଂସ୍କୃତିରେ ଶୀର୍ଷସ୍ଥାନରେ ନରହିଲେ ବିଜ୍ଞାନ ମଧ୍ୟ ପ୍ରବେଶ କରିପାରିବନାହିଁ ସାଧାରଣ ମଣିଷର ଚେତନାକୁ, କାହିଁକିନା, ହିନ୍ଦୁର ଶିକ୍ଷାବ୍ୟବସ୍ଥା ମଧ୍ୟ ଏପରି ଜାତ୍ୟାଶ୍ରିତ ଯେ କ୍ଷତ୍ରିୟହୋଇ ଜନ୍ମନହେବା କାରଣରୁ ଧନୁର୍ବିଦ୍ୟାରେ ଧୁରନ୍ଧର ଏକଲବ୍ୟଙ୍କୁ ଜରିମାନା ଦେବାକୁ ପଡେ ବୁଢ଼ାଆଙ୍ଗୁଳି । ଯେପରି, ମୁସଲ୍‌ମାନ୍ ରାଜତ୍ୱରେ ହିନ୍ଦୁ ଦେଇଚନ୍ତି ଜିଜିୟା କର ।

ଶୂଦ୍ର ତେଣୁ ପ୍ରଲେତାରିଏତ୍‌ର ଭାରତୀୟ ସଂସ୍କରଣ; ଉଚ୍ଚବର୍ଗର ଆୟ ସହିତ ଆୟ ସମାନ ନୁହେଁ, ବହୁକାଳ ପର୍ଯ୍ୟନ୍ତ ସମାନ ହୋଇପାରିବ ନାହିଁ ହୁଏତ, କିନ୍ତୁ କ୍ଷମତାର ଏକାଧିପତ୍ୟ ଦାବିକରିପାରିବ ସଂଖ୍ୟାବଳରେ, ସଂପତ୍ତି କି ଶିକ୍ଷା ନଥାଉ ପଛେ । କ୍ଷମତାର ଏକାଧିପତ୍ୟ ହିଁ ଆଣିଦେବ ଶିକ୍ଷାର ଆଲୋକ ସାଙ୍ଗକୁ ସଂପତ୍ତିର ବ୍ୟକ୍ତିଗତ ଉପଭୋଗରୁ ଅବ୍ୟାହତି । ସବାତଳେ ଠିଆହୋଇ ଜାତିପିରାମିଡ୍‌କୁ ଭାଙ୍ଗିପାରିବନାହିଁ କଦାପି; ଭାଙ୍ଗିପାରିବ ସବାଉପରୁ; ଏବଂ ଭାଙ୍ଗିପାରିଲେ ଖାଲି

ଜାତିଭେଦରୁ ମୁକ୍ତିପାଇବନାହିଁ, ଏକାବେଳକେ ଶ୍ରେଣୀସମାଜର ପାରକ୍ୟରୁ । ସମାଜକୁ ଧର୍ମସଂପ୍ରଦାୟ ପରିମାପରେ ଆକଳନ ନକରି, ଉପରତଳ ସ୍ତରବିନ୍ୟାସରେ ଯଦି ବିଚାରକରୁଁ, ଧର୍ମସଂପ୍ରଦାୟଗୁଡ଼ାକ ବି ଭାଗଭାଗହୋଇ ବିଛାଡିପଡ଼ିବେ ଉଚ୍ଚନୀଚ ସୋପାନକ୍ରମରେ । ଦରିଦ୍ର ମୁସଲ୍‌ମାନ୍, ଦରିଦ୍ର ହିନ୍ଦୁ, ଦରିଦ୍ର ଖ୍ରୀଷ୍ଟାନ୍‌ର ପରିଚୟ ସେତେବେଳେ ଏକମାତ୍ର 'ଦରିଦ୍ର'; ଅନ୍ୟ ପରିଚୟଗୁଡ଼ାକ ତୁଚ୍ଛା ଅଙ୍ଗଭୂଷଣ । ଭୂଷଣ ବି ଲାଗିପାରେ ଦୁର୍ବହ ଗୁରୁଭାର, ପ୍ରତୀୟମାନ ଓ ପ୍ରକୃତ ମଧ୍ୟସ୍ଥ କୁହେଳିକାକୁ ବିଦ୍ଧକରିବ ଯେତେବେଳେ ଚୈତନ୍ୟର ସୂର୍ଯ୍ୟରଶ୍ମି । କିନ୍ତୁ ସେଭଳି ଉତ୍ତରଣର ସମ୍ଭାବନା ପ୍ରାଚୀନ ଭାରତ ମନକୁ କେବେ ଛୁଇଁଥିଲା ବୋଲି ମନେହୁଏନା, ଯଦିଓ ପ୍ରଲେତାରିଏତ୍ ସବୁଜାଗାରେ ଓ ସବୁଯୁଗରେ କୋଉନାକୋଉ ଛଦ୍ମବେଶରେ ରହିଚି ବିଦ୍ୟମାନ, ଯେପରି ଆଥେନ୍ସରେ କ୍ରୀତଦାସ କି ରୋମ୍‌ରେ ଭୂମିଦାସ । ଭାରତର ଶୂଦ୍ର ଜଗଦ୍‌ବ୍ୟାପୀ ସେଇ ସ୍ଲେଭ୍‌ମାନଙ୍କର ଭାଇବିରାଦର ମାତ୍ର । ଧର୍ମର ତକମା ଦେହରେ ଆଣ୍ଟି ହିନ୍ଦୁ-ମୁସଲ୍‌ମାନ୍-ଖ୍ରୀଷ୍ଟାନ୍ ବୋଲି ଚିହ୍ନଟ ହେଉଥିଲେ ସୁଦ୍ଧା, କ୍ୟାପିଟାଲର ମାୟାଜାଲରେ ଧରାପଡ଼ି ଛଟପଟହେଉଥିବା ଲୋକଗୁଡ଼ାଙ୍କର ଚିହ୍ନାୟନ ଏକବିଂଶଶତକରେ, ଏକମାତ୍ର ପ୍ରଲେତାରିଏତ୍ । ଏକଥା ବୁଝିଥିଲେ ବୋଲି ସ୍ୱାମୀ ବିବେକାନନ୍ଦ ଭାରତୀୟ ସଭିଲ୍ ସୋସାଇଟିର ପୁନର୍ବିନ୍ୟାସରେ ହିନ୍ଦୁମୁଣ୍ଡ ଓ ମୁସଲ୍‌ମାନ୍‌ଗଣ୍ଡି ଭଳି ଅଦ୍‌ଭୂତ ଆ୍ୟାନାଟମି କଳ୍ପନାକରିଥିଲେ; ମାତ୍ର ତାଙ୍କ ନିଜସ୍ୱ ପ୍ରକଳ୍ପ ଥିଲା, ମୂଳଧନ ସଂଗ୍ରହ । ସେଥିପାଇଁ ଆମେରିକା-ଇଉରୋପ୍‌ରେ ଯାଇ ଯୋଉ ଅଭିନୟକରିଚନ୍ତି, ସାହେବ ତାଙ୍କୁ କହିଚନ୍ତି, 'ସ୍ୱାମୀ ଇନ୍ ସର୍କସ୍' ! ଧର୍ମ ତ ବିଶ୍ୱାସର ବିଷୟ; ସେଥିରେ ପୁଣି ଉତ୍‌କୃଷ୍ଟ କି ନିକୃଷ୍ଟ ଭଳି ପ୍ରତିତୁଳନାର ଅବକାଶ କାହିଁ ? ଆଉ, ମୁସଲମାନ୍ ଗଣ୍ଡି ହେବ କାହିଁକି, କି ହିନ୍ଦୁ ମୁଣ୍ଡ ହେବ କାହିଁକି ? ଇଙ୍ଗିତ ହେଲା, ହିନ୍ଦୁଧର୍ମ ଇସ୍‌ଲାମ୍ ଅପେକ୍ଷା ସରସ । ହିନ୍ଦୁ ପ୍ରଲେତାରିଏତ୍ ବାକି ପ୍ରଲେତାରିଏତ୍‌ଙ୍କ ମସ୍ତକ ସ୍ୱରୂପ ! ଏ ମନୋଭାବ ଇତିହାସସଂଜାତ, କାହିଁକିନା, ହିନ୍ଦୁସମାଜ କେବେହେଲେ ରାଷ୍ଟ୍ରଦ୍ୱାରା ନିବିଷ୍ଟଭାବେ ନିୟନ୍ତ୍ରିତ ଥିଲା, ଯେ କୌଣସି ପୁରାଣ ବା ଶାସ୍ତ୍ରର ପୃଷ୍ଠା ଓଲଟାଇଲେ ଜଳଜଳ ଦେଖାଯିବ; ଦେଖାଯିବ ବୋଲି, ଜ୍ଞାନୀଗୁଣୀ ଗର୍ବକରି କହୁଚନ୍ତି, ବହୁଜାତି ଉପଜାତିଙ୍କୁ ଏକତ୍ରକରି ପ୍ରାଚୀନ ଭାରତ, କ୍ୟାପିଟାଲିଷ୍ଟ୍ ସମାଜ ଅପେକ୍ଷା ଅଧିକ ଦକ୍ଷ ଓ ଅଧିକ ସମୃଦ୍ଧ ସମାଜବ୍ୟବସ୍ଥା ତିଆରି କରିପାରିଥିଲା । ନିକାମିକାହୋଇ ଘରେବସିରହିବାକୁ ସମୟ ଦେଇନାହିଁ ଲୋକଙ୍କୁ, ସମସ୍ତଙ୍କ ପାଇଁ ବ୍ୟବସ୍ଥାକରିଦେଇଚି କାମଧନ୍ଦା, ଆଉ ଅର୍ଥନୀତିକୁ ଛାଡ଼ି ଅବଶିଷ୍ଟ ସକଳ କ୍ଷେତ୍ରରେ ସମାଜର ବିବାକ ସଭ୍ୟଙ୍କୁ ନିଜ ଜାତିଗତ ସଂସ୍କୃତି ପାଳନକରିବାକୁ ଦେଇଚି ଅବାଧ ସ୍ୱାଧୀନତା । ହୁଏତ ସତ କଥା, କିନ୍ତୁ

ଆୟରେ ସମତା ସ୍ଥାପନର ଉଦ୍ୟମ ନଥିଲେ, କିମ୍ବା ଶ୍ରେଣୀଗତ ସୁଯୋଗସୁବିଧାରେ ତାରତମ୍ୟ ଲାଗିରହିଥିଲେ, ସୋସାଲିଷ୍ଟ୍ ଐକ୍ୟ ତିଆରି ହୋଇପାରେନା । ଲୋକ ଧର୍ମାନ୍ତରିତ ହେବା ପଛରେ ଏଇ ତାରତମ୍ୟ ହିଁ ପ୍ରଧାନ ପ୍ରରୋଚନା, ଯେପରି ବିବେକାନନ୍ଦଙ୍କ ମୁଣ୍ଡଗଣ୍ଡି ସମୀକରଣ । ସେହିପରି ଶିକ୍ଷାନୀତି । ଏକଲବ୍ୟର ଆଙ୍ଗୁଳି ଦ୍ରୋଣ ଚାହିଁଥିଲେ ଗୁରୁଦକ୍ଷିଣା, କିନ୍ତୁ ସମ୍ବୁକର ମୁଣ୍ଡ କାଟିଥିଲେ ରାଷ୍ଟ୍ରପ୍ରଧାନ ସ୍ୱୟଂ ରାମଚନ୍ଦ୍ର । ଅନ୍ୟ ଶବ୍ଦରେ, ଦଣ୍ଡନୀତି ଦ୍ୱାରା ହିଁ ନିୟନ୍ତ୍ରଣକରାଯାଇଚି ଶିକ୍ଷାପ୍ରସାରକୁ । ଯିଏ ଦଣ୍ଡପାଇଚନ୍ତି, ସମସ୍ତେ ଶୂଦ୍ର । ଶୂଦ୍ରଜାତିର ଅବଚେତନରେ ଶ୍ରେଣୀବିଦ୍ୱେଷ ଦାନାବାନ୍ଧିବା ତେଣୁ ସ୍ୱାଭାବିକ । ତା ଛଡ଼ା, ଚରକ, ସୁଶ୍ରୁତ ଭଳି ଡାକ୍ତରଙ୍କୁ ଶବସ୍ପର୍ଶଦୋଷ ପାଇଁ ନିଆଁପାଣି, ଧୋବାବାରିକ ବାସନ୍ଦକରିଚନ୍ତି ବ୍ରାହ୍ମଣ; ବିଜ୍ଞାନମନସ୍କତା ଗଢ଼ିଉଠନ୍ତା କେମିତି ସେଇ ସମାଜରେ ? ଅଥଚ ପ୍ରଫେଟ୍ ମୁହମ୍ମଦ ଅନୁଚରଙ୍କୁ କହିଚନ୍ତି, ବିଜ୍ଞାନପ୍ରଯୁକ୍ତି ଶିଖିବାପାଇଁ, ଦରକାର ହେଲେ, ଚୀନ୍ ପର୍ଯ୍ୟନ୍ତ ଚାଲିଯିବାକୁ । ଢ଼େର୍ ଆଗରୁ, ଆର୍ଯ୍ୟ ଋଷି ମଧ୍ୟ କହିଚନ୍ତି, ଜ୍ଞାନଆହରଣର ଆବଶ୍ୟକ ପୂର୍ବସର୍ତ୍ତ: ଅନୁରାଗ ଦ୍ୱେଷ ଭୟକୁ ବର୍ଜନ । ଦେଶର ଶିକ୍ଷାନୀତିରେ ଯଦି ଏଇ ଆଦର୍ଶ ସତକୁସତ ପାଳିତହୁଏ, ଶୂଦ୍ରଠୁଁ ବ୍ରାହ୍ମଣ, ସମସ୍ତେ ପରୀକ୍ଷାକରି ଦେଖିପାରିବେ ଧର୍ମମତଗୁଡ଼ାକର ପ୍ରାସଙ୍ଗିକତା ଓ ପ୍ରାତ୍ୟହିକ ଜୀବନନିର୍ବାହରେ ତାର ପ୍ରୟୋଗଜନିତ ଦ୍ୱାନ୍ଦ୍ୱିକତା । ସ୍ଥାନ-କାଳ ନିର୍ବିଶେଷରେ ଯେକୌଣସି ଭାବାଦର୍ଶ ଦ୍ୱାନ୍ଦ୍ୱିକତାକୁ ଜନ୍ମଦେବା ଯେହେତୁ ଅବଶ୍ୟମ୍ଭାବୀ, ଜବାହରଲାଲ୍‌ଙ୍କ ପ୍ରଶ୍ନ : ଆଧ୍ୟାତ୍ମିକତାରେ ପରିସିକ୍ତ ଏକ ଭୂଖଣ୍ଡରେ ସେକିଉଲାର୍ ରାଷ୍ଟ୍ରପ୍ରତିଷ୍ଠା କିପରି ସମ୍ଭବପର ? ଏହାର ଉତ୍ତର ଖୋଜାଯାଇପାରେ ଏକମାତ୍ର ଦ୍ୱାନ୍ଦ୍ୱିକ ପଦ୍ଧତିରେ, ଯେପରି ହେଗ୍ଲକଥିତ ଥିସିସ୍ ହେବ ଧର୍ମାନ୍ଧତା, ଆଣ୍ଟିଥିସିସ୍ ହେବ ସେକିଉଲାରିଜ୍ମ, ଏବଂ ଉପଯୁକ୍ତ ବିଶ୍ଳେଷଣ ଯଦି ଅନୁରାଗ ଓ ଦ୍ୱେଷବର୍ଜିତ ହୁଏ, ସିନ୍ଥେସିସ୍ ହେବ ସୋସାଲିଜ୍ମ । ଏ ଫିଲଜଫି, ଫ୍ୟାସିଜ୍ମ ପଛରେ ନାହିଁ । ନହେଲେ, ସହଜ ସମାଧାନ ହୁଅନ୍ତା, ହିନ୍ଦୁଙ୍କୁ ଛାଡ଼ି ବାକି ସମସ୍ତଙ୍କୁ ଗଣହତ୍ୟା । ବିଶେଷତଃ ଶାସ୍ତ୍ର ଯେହେତୁ କହୁଚି, ସ୍ୱଧର୍ମେ ନିଧନ ଶ୍ରେୟ ପରଧର୍ମ ଭୟାବହ । ସେଭଳି ଅମାନୁଷିକ କାଣ୍ଡ ମଧ୍ୟ ଘଟିଚି ଇତିହାସରେ । କିନ୍ତୁ ଥିସିସ୍–ଆଣ୍ଟିଥିସିସ୍–ସିନ୍ଥେସିସ୍ ତ୍ରିଭୁଜଟାକୁ ଫିଲଜଫି କୁହାଯିବ କାହିଁକି ? କାହିଁକିନା, 'ଅଛି' (ଥିସିସ୍), 'ନାହିଁ' (ଆ୍ୟାଣ୍ଟିଥିସିସ୍) ଦୁଇଟାଯାକ ନିରର୍ଥକ; ଯା ବାସ୍ତବ, ତା କେବଳ 'ହେଉଚି' (ବିକମିଙ୍ଗ୍=ସିନ୍ଥେସିସ୍) । ଏଇ 'ହେଉଚି' ବା 'ହୋଇଉଠୁଚି' ହିଁ ପ୍ରଗତି (ପ୍ରୋଗ୍ରେସ୍)ର ନିୟମ । ଅତୀତକୁ ଫେରିଯାଇ ହେବନାହିଁ, ବର୍ତ୍ତମାନରେ ବି ଅବିଚଳହୋଇ ରହିହେବନାହିଁ । ହେଲେ, ତା ହେବ ପ୍ରାକୃତିକ ନିୟମର

ବିରୁଦ୍ଧାଚରଣ । ଆଗକୁ ଚାଲିବାକୁ ପଡ଼ିବ, ତାହାହିଁ କେବଳ ମଣିଷର ଭବିତବ୍ୟ । ଶୂଦ୍ରର ଏକାଧିପତ୍ୟ ଗୋଟାଏ ଆଇଡିଆ ମାତ୍ର; ଭାରତ ପ୍ରତି ପ୍ରଯୋଜ୍ୟ ହେବ କି ନାହିଁ, ନିର୍ଭରକରୁଚି 'ଫ୍ୟାକ୍ଟ' ବା ବାସ୍ତବ ପରିସ୍ଥିତି ଉପରେ, କାହିଁକିନା, ଆଇଡିଆକୁ ନିରୂପଣକରେ ଫ୍ୟାକ୍ଟ, ଫ୍ୟାକ୍ଟକୁ ଆଇଡିଆ ନିର୍ଦ୍ଧାରଣକରିପାରେନା ।

କିନ୍ତୁ ସାମାଜିକ ଶ୍ରେଣୀବିନ୍ୟାସରେ ଶ୍ରେଷ୍ଠଆସନ ଲାଭକଲେ ଶୂଦ୍ରର ଜୀବନରୁ 'ଧର୍ମ'ର ପ୍ରୟୋଜନ କଣ ମେଣ୍ଟିଯିବ ? ସୋସାଲିଜ୍ମ ଆଉ ଯା ହେଉ, ଧର୍ମ ବଦଳରେ ଆହୁରି ଭଲ କିଛି ଦେଇପାରେ କି ? ଧର୍ମ ତ ଏକ ମନସ୍ତାତ୍ତ୍ୱିକ ପ୍ରୟୋଜନ, ସମାଜରେ ପ୍ରତିପତ୍ତି ଲାଭକଲେ ସୁଦ୍ଧା ବିପଦଆପଦରେ ପ୍ରବୋଧ ମିଳିବ କୋଉଠୁ ? ଠିକ୍ କଥା, ସୋସାଲିଜ୍ମର କୋଉହେଲେ ଭେଷଜଗୁଣ ନାହିଁ, ସାନ୍ତ୍ୱନା ବି ଦେଇପାରେନା, ଖାଲି ଆଶାକୁ କରିପାରେ ଉଜ୍ଜ୍ୱଳ । ପରଲୋକରେ ସୁଖଭୋଗ ନୁହେଁ, ଇହଜୀବନରେ ଚରତାର୍ଥହେବାର ଆଶା । ସମାଜ ଭିତରେ ଅତଯାତହୋଇ ନିଜଭିତରେ ଯେତେ ସମ୍ଭାବନା ନିହିତ, ସେଗୁଡ଼ିକର ପରିପୂର୍ଣ୍ଣ ବିକଚନ । ଧର୍ମର ବିଭିନ୍ନତା ସତ୍ତ୍ୱେ, ଉଦାରବାଦୀ କହୁଚନ୍ତି, ସବୁଯାକର ଲକ୍ଷ୍ୟ ଅଭିନ୍ନ, ବାଟ ଅଲଗାହେଲେ କ୍ଷତିନାହିଁ । ବାଟ ନକହି 'ପଥ' କହିବା ଭଲ, କାହିଁକିନା, ରାମକୃଷ୍ଣ ପରମହଂସ କହିଚନ୍ତି, ଯତ ମତ ତତ ପଥ । କିନ୍ତୁ ପ୍ରତ୍ୟେକ ପଥ ନିଜକୁ ମନେକରେ ଏକମାତ୍ର ପଥ; ମନେକରେ ବୋଲି, ଅନ୍ୟ ସହଯାତ୍ରୀଙ୍କୁ କହେ ମ୍ଳେଚ୍ଛ, ହିଥାନ୍, ଜେଣ୍ଟାଇଲ୍, କାଫିର୍ । ଗନ୍ତବ୍ୟ ବି ବିଭିନ୍ନ, ହିନ୍ଦୁଙ୍କର ମୋକ୍ଷ, ଖ୍ରୀଷ୍ଟାନ୍‌ଙ୍କର ସାଲ୍‌ଭେସନ୍ । ମୋକ୍ଷ ମାନେ ପୁନର୍ଜନ୍ମରୁ ଛୁଟି । ଖ୍ରୀଷ୍ଟାନ୍ କି ମୁସଲମାନ୍ ପୁନର୍ଜନ୍ମ ମାନନ୍ତିନାହିଁ, ମୋକ୍ଷ ତେଣୁ ତାଙ୍କପାଇଁ ନିରର୍ଥକ । ସେମାନେ ପୁଣି ସ୍ୱର୍ଗ ନରକ ଛଡ଼ା ତୃତୀୟ ଏକ ପରିସର କଳ୍ପନାକରିଚନ୍ତି, ପର୍‌ଗେଟରି ବା ଶୁଦ୍ଧିଲୋକ । ବ୍ୟାପ୍ଟିଜ୍ମ କି ସୁନ୍ନତ୍ ସାଙ୍ଗରେ ହିନ୍ଦୁଙ୍କର ଯେମିତି ସଂପର୍କ ନାହିଁ, ସେମାନେ ସେମିତି ବିଗ୍ରହଉପାସନାର ବିରୋଧୀ । ହିନ୍ଦୁଙ୍କ ଦେଉଳକୁ ତେଣୁ ତାଙ୍କ ପ୍ରବେଶ ନିଷିଦ୍ଧ । ଏକାଜାଗାରେ ମିଳନହେବ ତେବେ କେମିତି ? ଗନ୍ତବ୍ୟ ଯଦି ଅଭିନ୍ନ ହୋଇଥାନ୍ତା, ସେଠି ପହଞ୍ଚିବାକୁ ରାସ୍ତାଗୁଡ଼ାକ ଅଲଗା ହେଲେସୁଦ୍ଧା ଦ୍ୱିଧା କି ଦ୍ୱନ୍ଦ୍ୱ ଉପୁଜନ୍ତା ନାହିଁ; ଯେପରି ଇଂରେଜୀ ପ୍ରବାଦବାକ୍ୟ, *ଅଲ୍ ରୋଡ୍‌ସ୍ ଲିଡ୍ ଟୁ ରୋମ୍* । ରୋମ୍ ଥିଲା ଏକଦା ବିଶାଳ ଏକ ସାମ୍ରାଜ୍ୟର କେନ୍ଦ୍ର, ଅଧୀନସ୍ଥ ଦେଶମାନଙ୍କରୁ ମାଲ୍‌ପତ୍ର ସେଠିକି ବୁହାହୋଇ ଆସେ, ସେଇ ପରିବହନ ପାଇଁ ନାନାଦିଗରୁ ତିଆରି କରାଯାଇଥିଲା ପଥରବନ୍ଧା ରାସ୍ତା; ଲୋକ ଆସୁଥିଲେ ଗଲ୍(ଫ୍ରାନ୍ସ) ରୁ, ବ୍ରିଟେନ୍ କି ଜର୍ମାନୀରୁ, ଏପରିକି ସୁଦୂର ଜୁଡିଆ(ଇସ୍‌ରାଏଲ୍)ରୁ; ତେଣୁ, ଉତ୍ତର କି ଦକ୍ଷିଣ, ଯୋଉ ଦିଗରୁ

ଆସିଲେ ସୁଦ୍ଧା, ପଥରବନ୍ଧା ରାସ୍ତାଭିତରୁ ଗୋଟାକୁ ଧରିବାକୁ ପଡ଼ିବ । କିନ୍ତୁ 'ପରମହଂସ' ଯୋଉ ରାସ୍ତାଗୁଡ଼ାକୁ ମିଳାଇବାକୁ ମନକରିଚନ୍ତି, ସେଗୁଡ଼ାକ ଖାଲି ପରସ୍ପର ଅଲଗା ନୁହେଁ, ପରସ୍ପର ବିପରୀତ; ଏବଂ ସେଥିପାଇଁ, ଦରକାରହୋଇଚି କ୍ରୁସେଡ୍, ଜିହାଦ୍, ଧର୍ମଯୁଦ୍ଧ । ଏତଦ୍‌ଭିନ୍ନ ମତଗୁଡ଼ାକ ବିବାକ ଡଗ୍‌ମା, ତା ପ୍ରତି ଯୁକ୍ତିପ୍ରୟୋଗ ସାଧାରଣ ଦୃଷ୍ଟିରେ ଧର୍ମଦ୍ରୋହ । ତାକୁ ମୁଣ୍ଡଉପରେ ଟେକିଧରିବା କାରଣ ତାର ଅଲୌକିକତା । ଅଲୌକିକ, କାହିଁକିନା, ସ୍ୱୟଂ ପରମେଶ୍ୱରଙ୍କ ପ୍ରତ୍ୟାଦେଶ ! ଯେପରି, ଇହୁଦୀଙ୍କ ପାଇଁ ମୌଜେସ୍ ଜାରିକରିଚନ୍ତି 'ଦଶଆଜ୍ଞା', ଖୋଦ୍ ଭଗବାନଙ୍କ ଶ୍ରୀମୁଖ ନିଃସୃତ । ଅନୁରାଗ ଓ ବିଦ୍ୱେଷ ବର୍ଜିତ ବୁଦ୍ଧିକୁ ଲାଗୁଚି, ନୀତିଶିକ୍ଷା : ଯେପରି ହିନ୍ଦୁଙ୍କ *ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ପରଦାରେଷୁ ମାତୃବତ୍* । ମୌଜେସ୍‌ଙ୍କ ବାରଣତାଲିକାରେ ଗଧ-ଘୋଡ଼ା, ଘରଦୁଆର ଯୋଡ଼ାଯାଇଚି । ଏଭଳି ନିଷେଧ ସାଧାରଣତଃ ସଂପତ୍ତି ବଞ୍ଚାଇବା ଉତ୍କଣ୍ଠାରୁ ନିର୍ଗତହୁଏ, ଏବଂ ସେ ବାଟରେ, ବ୍ୟକ୍ତିଗତ ସଂପତ୍ତି, ନାରୀଦେହ, ନୀତି ଓ ଧର୍ମ ଗୁନ୍ଥାହୋଇଯାଏ ପଛକୁ ପଛ । ତା ସାଙ୍ଗରେ ସାଲ୍‌ଭେସନ୍, ଈଶ୍ୱରପ୍ରାପ୍ତି, ସ୍ୱର୍ଗଯାତ୍ରା ଭଳି ଉତ୍କୋଚର ସଂପର୍କ ସହଜବୁଦ୍ଧିକୁ ସ୍ପଷ୍ଟହୁଏନା । ସବୁଧର୍ମରେ ମିଳିବ ଏଇ ପ୍ରଣାଳୀର ଅଳ୍ପବିସ୍ତର ପୁନରାବୃତ୍ତି । ସାମାଜିକ ପ୍ରୟୋଜନରେ ନିଷେଧ ଜାରିକରିବା, ଆଉ, ଯିଏ ମାନିବ ତାକୁ ବୈକୁଣ୍ଠର ଲୋଭଦେଖାଇବା ଚର୍ବିତଚର୍ବଣ ଏକ ପଦ୍ଧତି, ଦ୍ୱନ୍ଦ୍ୱମୟ ଇହଜଗତର ବିରୋଧରୁ ନିଜକୁ ନିରାପଦକରିବା ଉଦ୍‌ବେଗ । ତେଣୁ କୋଉହେଲେ ଅପାର୍ଥିବ ଲକ୍ଷ୍ୟରେ ପହଞ୍ଚିବା କଥା ଉଠୁନାହିଁ । ଆପଣା ଧର୍ମର ନିଷେଧ ମାନି ଚଳିପାରିଲେ ସମାଜସଂସାର ବିବାକ ଖୁସୀ । ଯାତ୍ରାର ଅଭିମୁଖ ତେଣୁ ଆଗକୁ ନୁହେଁ କି ଉପରକୁ ନୁହେଁ, ଏବଂ ମତ ବା ମତବିରୋଧ ଯେହେତୁ ମନୁଷ୍ୟକୃତ, ଆକାଶରୁ ଖସିନାହିଁ କି ଭୂଇଁଫୁଟାଇ ଉପରକୁ ଉଠିନାହିଁ । କିନ୍ତୁ 'ପଥ' କହିଲେ ବୁଝାଏ ନିର୍ଦ୍ଦିଷ୍ଟ ଏକ ଭୌଗୋଳିକ ବିନ୍ଦୁରୁ ଅନ୍ୟ ଏକ ବିନ୍ଦୁରେ ଉପଗତହେବାର ସରଳ ବା ବକ୍ରରେଖା । ପୁଣି, 'ପଥ' ମାନେ ମଧ୍ୟ ଉପାୟ, ଲକ୍ଷ୍ୟରେ ପହଞ୍ଚିବା ଉପାୟ । ସେଠି ପହଞ୍ଚି ଯିଏ ଫେରିଆସିଚି, ସେଇ କେବଳ ବତାଇଦେଇପାରେ ଉପାୟ । ପାରେ ବୋଲି, ଧାର୍ମିକ ତାକୁ 'ଗୁରୁ' କହନ୍ତି । ମାତ୍ର ଧର୍ମାଚରଣ ବାହାରେ ମଧ୍ୟ ବାଟବତାଇବାକୁ ଦରକାରହୁଏ ଗୁରୁ; ସେ ଗୁରୁ ହୋଇପାରେ ପରିବାର, ସ୍କୁଲ୍-କଲେଜ୍, ସମାଜ, ରାଷ୍ଟ୍ର । ଓଡ଼ିଆ *ଭାଗବତ* ରେ କପୋତପକ୍ଷୀରୁ ପିଙ୍ଗଳାବେଶ୍ୟା ପର୍ଯ୍ୟନ୍ତ 'ଗୁରୁ' ର ମର୍ଯ୍ୟାଦା ପାଇଚନ୍ତି । ଅଧିକାଂଶ ଲୋକ ଏଇ 'ପଥ' ଧରି ଜୀବନଯାତ୍ରାରେ ଆଗକୁ ଚାଲନ୍ତି । ପରଲୋକକୁ ବାଟ ଦେଖାଇବାକୁ ଗୁରୁ ଦରକାର ପଡ଼େନା । ଇହଲୋକରେ ଦ୍ୱିଧା, ସଂଶୟ, ଅତୃପ୍ତି,

ଅତିକ୍ରମକରୁକରୁଁ ହଠାତ୍ ଦିନେ ଆୟୁଷ ସରିଯାଏ । ଆମ ପିଲା, ଜନ୍ମସୂତ୍ରରେ ଯୋଉ ଧର୍ମ କି କୁଳାଚାର ପାଉପଛେ, ଏଇ ବାଟ ଓ ବାଗରେ ସଂସାରଭିତରେ ବଢ଼ିଉଠେ; ମାତ୍ର ଘରଭିତରୁ ଦାଣ୍ଡକୁ ଆସିଲେ ସମ୍ମୁଖୀନହୁଏ ଯୋଉ ସାକ୍ଷାତ୍ ଜଗତ୍, ତା ସହିତ ଘରୁ ବୋହିଆଣିଥିବା ସଂସ୍କାରଗୁଡାକ ଖାପଖାଏନା; ସେତେବେଳେ ଅଭିଭାବକ କହନ୍ତି, ଭାବିଚିନ୍ତି ମତି ସ୍ଥିରକର । ପାଠଶାଠ ଶିଖ, ଆଖିକାନ ଖୋଲାରଖି ଚଳପ୍ରଚଳହେଲେ ବାଧାଗୁଡ଼ାକୁ ବୁଦ୍ଧିଖଟାଇ ଡେଇଁଯାଇ ପାରିବ । ମାତ୍ର ଯୋଉ ବେଗରେ ଦୁନିଆ ଦୌଡୁଚି, ପଞ୍ଚବାର୍ଷିକ ଏଇ ଯୋଜନାଗୁଡ଼ାକ ତା ସାଙ୍ଗରେ ତାଳଦେଇ ପାରୁନାହିଁ । ଦରକାର ପଡୁଚି ପୁରାପୁରି ଅଲଗା ଏକ ଜୀବନଦର୍ଶନ, ପ୍ରଥାଗତ ମେଦିନୀଦୃଷ୍ଟିର ର୍‍ୟାଡିକାଲ୍ ବିକଳ୍ପ । ପିଲାଙ୍କୁ ତେଣୁ ବୁଝାଇବାକୁ ପଡ଼ିବ, (୧) ଜଗତ୍‌ଯାକ ଯେତେ ଯାହା ଇନ୍ଦ୍ରିୟ ଜାଣିପାରୁଚି, କୋଉ ଗୋଟାକ ହେଲେ ଅଲୌକିକ ନୁହେଁ । ଅପ୍ରାକୃତ, ଅଜ୍ଞେୟ, ବୁଦ୍ଧିର ଅଗମ୍ୟ କଥାଗୁଡ଼ାକ ତୁଚ୍ଛା ତୁଣ୍ଡବାଇଦ, (୨) ଯୋଉ ନିୟମରେ ଜଗତ ଚାଲୁଚି, ତା ଏକମାତ୍ର ପରିବର୍ତ୍ତନ; ଅତୀତରେ ଯା ଜଣାପଡ଼ିନାହିଁ ଭବିଷ୍ୟତରେ ଜଣାପଡ଼ିବ । ଅତଏବ୍ ଅଜ୍ଞେୟ ବା ବୁଦ୍ଧିର ଅଗମ୍ୟ ବୋଲି କିଛିହେଲେ ଥାଇପାରେନା । ମଣିଷର ସବୁଠୁଁ ବଡ଼ ବନ୍ଧୁ ମଣିଷ, ଆଉ ସବୁଠୁଁ ବଡ଼ ଶତ୍ରୁ ମଧ; ସେଥିପାଇଁ ଆପାତଃ ଓ ପ୍ରକୃତ ମଧ୍ୟସ୍ଥ ବ୍ୟବଧାନକୁ ଠାବକରିବା ସାମର୍ଥ୍ୟ ହିଁ ଆତ୍ମଶକ୍ତି, ଏବଂ(୩) ମଣିଷ ଓ ବାହ୍ୟପ୍ରକୃତି ବାହାରେ ଯେହେତୁ ଭିନ୍ନ କୋଉ ଅସ୍ତିତ୍ୱ ଅସମ୍ଭବ, କର୍ମଫଳ/ଭାଗ୍ୟ/ନିୟତି ପ୍ରଭୃତି କାଳ୍ପନିକ ଶକ୍ତି ପାଖରେ ନେଫେଡ଼ିହେବା ଆତ୍ମପ୍ରତାରଣା । ଏଇ ଯଦି ହୁଏ ସେକିଉଲାର୍ ଶିକ୍ଷାନୀତି, ଇତିହାସରୁ ମଧ ଦେଖିହେବ ତାର ଫଳଶ୍ରୁତି । ଆଖ୍ୟାନଟା ରହିଚି ଅଶ୍ୱଘୋଷଙ୍କ ବୁଦ୍ଧଚରିତ (୯/୭୩-୭୫)ରେ; ଅଶ୍ୱଘୋଷ ଥିଲେ କନିଷ୍କଙ୍କ ମନ୍ତ୍ରୀ ।

ଶାକ୍ୟ ରାଜପୁତ୍ର ଗୌତମ (ବୁଦ୍ଧ ହୋଇନାହାଁନ୍ତି ସେତେବେଳକୁ) ଦିନେ ହଠାତ୍ ଘରଛାଡ଼ି ଚାଲିଗଲେ ବଣକୁ, ତାଙ୍କୁ ଲେଉଟାଇ ଆଣିବାକୁ ପଛେ ପଛେ ଗଲେ ମନ୍ତ୍ରୀ ଓ ପୁରୋହିତ । ଘରକୁ ଫେରିଆସିବା ସପକ୍ଷରେ ସେମାନେ ଯା କହିଚନ୍ତି, ପରିବାର-ସମାଜ-ରାଷ୍ଟ୍ର ବିବେଚନାରେ ଅତିଶୟ ଉପାଦେୟ, ଯେପରି, ଅକାଳରେ ସଂସାରତ୍ୟାଗ ବିକାର ମାତ୍ର । ତା ଆଗରୁ ଗୃହସ୍ଥ ମଣିଷର ଯେତେ ରକମ ଋଣ, ସେଗୁଡ଼ିକ ପରିଶୋଧକରିବା ମଧ ଧର୍ମ । ଗୌତମ କହିଲେ, (୧) ପରସ୍ୟ ବାକ୍ୟୈଃ ନ ମମ ଅତ୍ର ନିଷ୍ଚୟଃ (ପରକଥାରେ ପଡ଼ି ସ୍ଥିରସିଦ୍ଧାନ୍ତ ନେବା ମୋ ପକ୍ଷରେ ସମ୍ଭବ ନୁହେଁ ।) ଅର୍ଥାତ୍, ପ୍ରତ୍ୟେକ କଥାର ଅସ୍ତିନାସ୍ତି ଦୁଇଟା ଦିଗ ଅଛି, ଭୁଲ୍-ଠିକ୍ ସ୍ଥିରକରିବା ତେଣୁ ସହଜ ନୁହେଁ, ବିଶେଷତଃ ବୟସ ଯେତେବେଳେ ଅଳ୍ପ ଆଉ

ଜୀବନର ଅଭିଜ୍ଞତା ବି ଅପରିପକ୍ୱ । (୨) ସ୍ୱୟଂ ଗ୍ରହୀଷ୍ୟାମି ଯଦତ୍ର ନିଶ୍ଚିତମ୍ (ନିଜେ ଯା ନିଶ୍ଚିତବୋଲି ଜାଣିପାରିବି, ସେତିକି କେବଳ ମାନିବି) । ମାତ୍ର ନିଜେ ଜାଣିଚି ବୋଲି, ସେଇ କଥାଟା ଧ୍ରୁବସତ୍ୟ, ଆଉ ବିବାକ ଲୋକଙ୍କ ଜାଣିଥିବା କଥା ଭୁଲ୍-ଏ ତ ଆ୍ୟାରୋଗାନ୍ସ ବା ଔଦ୍ଧତ୍ୟ । ତଥାପି, ଭୁଲ୍ ଯଦି କରିବି, ଜ୍ଞାନ ଓ ବୁଦ୍ଧି ପ୍ରୟୋଗ କରିସାରି କରିବି, କାହିଁକିନା, ମୂଢ଼ ପରପ୍ରତ୍ୟୟନେୟବୁଦ୍ଧିଃ । ଅଥଚ ପରକଥାରେ ଚଳିଲେ ସୁବିଧା ଅଛି, ଦାୟିତ୍ୱନେବାକୁ ପଡ଼େନା । ଭୁଲ୍‌ଭଟକା ପାଇଁ ସେଇ ଦାୟୀହୁଏ, ଯିଏ ପରାମର୍ଶ ଦେଇଚି । କିନ୍ତୁ ଦାୟିତ୍ୱ ଏଡ଼ାଇବା ର୍ୟାଡିକାଲ୍ ଶିକ୍ଷା ନୁହେଁ । ଦାୟିତ୍ୱଗ୍ରହଣ ମାନେ ଫଳାଫଳର ପ୍ରତିକାର ଆପଣା ହାତରେ । ପରକଥା ମାନିଲେ ସୁବିଧା ହୋଇପାରେ ହୁଏତ, କିନ୍ତୁ ଶିକ୍ଷା ହୁଏନା । (୩) ନ ହି ଦର୍ଶନଂ ଗ୍ରହୀତୁମବ୍ୟକ୍ତପରମ୍ପରାହତମ୍ (=ଅସ୍ପଷ୍ଟ ଓ ପରସ୍ପରବିରୋଧୀ ଦର୍ଶନ ମୁଁ ଗ୍ରହଣକରି ପାରିବିନାହିଁ); ଅର୍ଥାତ୍ ରୋଗବ୍ୟାଧିରେ ଚେରମୂଳ, ହୋମିଓପ୍ୟାଥି, ପାଦୁକ, ଆ୍ୟାଲୋପ୍ୟାଥି ସବୁଗୁଡ଼ାକ ଗ୍ରହଣକରାଯାଏ, ଯୋଉଟା ଲାଗିଯିବ ଲାଗିଯାଉ । କିନ୍ତୁ ଏଗୁଡ଼ାକ ଭିତରେ ବିରୋଧ ସ୍ପଷ୍ଟ । ସେକଥା ମନକୁ ଆସେନା । ଧାର୍ମିକ କହିବେ, ସମନ୍ୱୟ ବ୍ୟାଖ୍ୟା, ରାମ ଯିଏ ରହିମ୍ ସିଏ । ବିଶୁଦ୍ଧ ସୁବିଧାବାଦ । ସୁବିଧାବାଦୀ ଜୀବନବ୍ୟାଖ୍ୟା ଉପରେ ଆସ୍ଥାରଖିବା ସେକିଉଲାର୍ ଶିକ୍ଷାର ଲକ୍ଷଣ ନୁହେଁ । ବିବେକବୁଦ୍ଧି ତିଆରିହୁଏନା, ହେଲେସୁଦ୍ଧା ଆତ୍ମସ୍ୱାର୍ଥକୁ ଅତିକ୍ରମ କରିପାରେନା । (୪) କୋ ବ୍ରଜେଜ୍ ଜନୋହନ୍ଧକାରେ'ନ୍ଧ ଇବାନ୍ଧଦେଶିକଃ (=ଅନ୍ଧ ଯୋଉ ବାଟ ଦେଖାଏ କିଏ ଚାଲିବ ସେ ବାଟରେ ?) ପୁରୁଣା କଥା ଅବଶ୍ୟ, ବିବାକ ଧର୍ମଶାସ୍ତ୍ର ନିଜକୁ ଏକମାତ୍ର ଚକ୍ଷୁଷ୍ମାନ ଭାବିନେଇ, ଏଇ ଉକ୍ତି ଆଉଡ଼ାଇଚନ୍ତି ବାରମ୍ବାର । ଆଖି ଫିଟାଇଦେବାପାଇଁ ଜୀବନରେ କାହାରି ନା କାହାରି ସାହାଯ୍ୟ ଦରକାରହୁଏ; ହେଲେସୁଦ୍ଧା ସେଇ ଲୋକ କି ବହି କି ମତବାଦକୁ ବାଛିବାକୁ ପଡ଼େ ବୁଝିସମଝି ? ଖ୍ୟାତି କି ଦର୍ପ ଦେଖି କାହାରି ଶରଣାପନ୍ନହେବା ତେଣୁ ନିର୍ବୋଧତା । କାହିଁକିନା, ଖ୍ୟାତି କି ସାଫଲ୍ୟ ସବୁଠିଁ ଜ୍ଞାନ ବା ବିଚାରର ଚିହ୍ନ ନୁହେଁ । (୫) ମେ ଶୁଭାଶୁଭେ ଶଂସୟିତେ ଶୁଭେମତିଃ (ଶୁଭରେ ଶଂସୟ ଯେତେ, ଅଶୁଭରେ ଯଦି ଶଂସୟର ପରିମାଣ ତାଠୁଁ ଊଣାନୁହେଁ, ମୋ ମନ ସ୍ୱତଃ ଯିବ ଶୁଭ ଆଡ଼କୁ) । ଠିକ୍ ଭୁଲ୍, ଆପାତଃ-ପ୍ରକୃତ, ଇଷ୍ଟ-ଅନିଷ୍ଟ ଚଟ୍‌କରି ବୁଝିହୁଏନା; ଦରକାରହୁଏ ଶିକ୍ଷା, ସମୟ, ଅଭିଜ୍ଞତା । ସେଥିପାଇଁ, ଅନ୍ତିମସତ୍ୟ ଉପରେ ଅଧିକାର ଦାବିକରିବା ମୂଢ଼ତା ମାତ୍ର, କାହିଁକିନା, ଜଗତ୍ ମାନେ ଯା ଚଳମାନ, ସତ୍ୟ ମଧ ସେମିତି ଇତିହାସ ଭୂଗୋଳର ପରିବର୍ତ୍ତନ ସହିତ ବଦଳିଯାଇପାରେ । ଶଂସୟ

ତେଣୁ ଏକ ସ୍ଥାୟୀ ମାନସିକ ଅବସ୍ଥା । ଶଂସୟରୁ ଗତିକରି ସତ୍ୟରେ ଉପନୀତହେବା ଯଥାର୍ଥ ଶିକ୍ଷା, ଏବଂ ସେଇ ସତ୍ୟକୁ ଶୁଭ କହିବି, ଯା ନିଜର ଭଲକରିବାକୁ ଯାଇ ପରର କ୍ଷତି କରେନା । ଶୁଦ୍ଧଜ୍ଞାନ ଓ ନୀତିସୂତ୍ର ଗୁନ୍ଥାହୋଇଚି ଏକସୂତ୍ରରେ । ଏବଂ ସେଥିପାଇଁ, 'ସେକିଉଲାର୍' ପଦବାଚ୍ୟ ଶିକ୍ଷା, ର୍ୟାଡିକାଲ୍ ।

x x x x x x x

ଧର୍ମପ୍ରାଣ ଦେଶକୁ ସେକିଉଲାର୍ ରାଷ୍ଟ୍ରରେ ପରିଣତକରିବା ଏକ ରାଜନୀତିକ ଏଜେଣ୍ଡା ବା କୃତ୍ୟସୂଚି । କଣ କରିଚନ୍ତି ସେକିଉଲାରିଜ୍ମର ସ୍ଥପତି ଜବାହରଲାଲ୍ ? କିମ୍ବା ତାଙ୍କ କଛକୁ ହୋଇଚନ୍ତି ଯିଏ ରାଷ୍ଟ୍ରର କର୍ଣ୍ଣଧାର ? ବିନା ବ୍ୟତିକ୍ରମରେ ସମସ୍ତେ ନିର୍ମାଣକରିଚନ୍ତି ନିର୍ଭରଯୋଗ୍ୟ ଭୋଟ୍‌ବ୍ୟାଙ୍କ୍, ଖାଲି ସଂଖ୍ୟାଲଘୁ ମୁସଲ୍‌ମାନ୍ କି ଖ୍ରୀଷ୍ଟାନ୍‌ଙ୍କୁ ନେଇ ନୁହେଁ; ହିନ୍ଦୁସମାଜ ବି ଫାଳଫାଳ ହୋଇଯାଇଚି ଆଇଡେଣ୍ଟିଟି ମାଡ଼ରେ । ମଣ୍ଡଳ କମିଶନ୍ ରିପୋର୍ଟ ପଛକୁ ଏବେ ବାହାରିଚି ସାଚାର୍ କମିଟି ରିପୋର୍ଟ୍ । ସରକାର ଧରିନେଇଚନ୍ତି, ଜାତି-ଜାତି ଭିତରେ, ଧର୍ମ-ଧର୍ମ ଭିତରେ ହଣାକଟା ଲାଗିରହିଚି ନିରନ୍ତର । କମିସନ୍ ବସାଇ, ପିଙ୍ଗଳକୋଡ୍ ସଂଶୋଧନ କରି, ବେଶିରୁ ବେଶି ରିଜର୍ଭେସନ୍ ପ୍ରବର୍ତ୍ତନକରି, ରାଷ୍ଟ୍ରକୁ କରିହେବ ସଂଘାତମୁକ୍ତ । ଅର୍ଥାତ୍, ସଂଘାତର ଏକମାତ୍ର କାରଣ ଧରିନିଆଯାଇଚି ସାମ୍ପ୍ରଦାୟିକତା; ତାର ପ୍ରତିଷେଧକ ଏକମାତ୍ର ରିଜର୍ଭେସନ୍ । ଜାତିଭେଦ କି ଧର୍ମଭେଦ ଭାଙ୍ଗିବା କୃତ୍ୟସୂଚୀରେ ନଥିଲା ମୂଳରୁ, ଆଜି ମଧ୍ୟ ସ୍ଥାନପାଇନାହିଁ; ପାଇବନାହିଁ ବୁର୍ଜୋୟା ଯେତେଦିନ ରହିଥିବ ଶାସକଶ୍ରେଣୀ । ସଂଘାତକୁ ବଢ଼ାଇବା, ପଛୁଆପଣକୁ ଦୀର୍ଘଜୀବୀକରିବା, ହୋଇଯାଇଚି ଶାସକଶ୍ରେଣୀର ନ୍ୟସ୍ତସ୍ୱାର୍ଥ; ଅର୍ଥାତ୍ ଆପେକ୍ଷିକ ଶକ୍ତିର ଉତ୍ସ । ସେଥିପାଇଁ ସମସ୍ୟାଟାକୁ ଏପରି ସ୍ପର୍ଶକାତର କରିଦିଆଯାଉଚି ଯେ, ଖୋଲାଖୋଲି ଆଲୋଚନା ମଧ୍ୟ ଗଣ୍ୟହେଉଚି ଦଣ୍ଡଯୋଗ୍ୟ ଅପରାଧ । ମାତ୍ର ଲୋକ ତ ସ୍ଥିର କୋଉ ଅବସ୍ଥାନରେ ଚିରଦିନ ଅଟକିରହିବେ ନାହିଁ, ପୃଥିବୀର ଆହ୍ନିକଗତି ଠେଲିନେଇଯିବ ତାଙ୍କୁ ଆଗକୁ ଆଗକୁ । ନେଉଚି ବୋଲି, ଭୋଟ୍‌ବାକ୍ସ ଉପରେ ଛେପପକାଇ ଟୋକା ବାହାରିଚନ୍ତି କାନ୍ଧଉପରକୁ ବନ୍ଧୁକ ଟେକିନେଇ । ସେମାନଙ୍କ ପ୍ରତିପାଳକ, ଦେଶର ଶୂଦ୍ରଶ୍ରେଣୀ । ଆପଣା ପରିଜନ ବୋଲି କ୍ଷମତାରାଜନୀତିରେ ଯିଏ ମାତବ୍‌ବର ସାଜିଥିଲେ, ତାଙ୍କ ଅସଲରୂପ ଚିହ୍ନିପାରି ପ୍ରତ୍ୟାଖ୍ୟାନ କରୁଚନ୍ତି ଶୂଦ୍ର; ଏପରିକି, ଯାହାଙ୍କୁ ଉଗ୍ରବାଦୀ କୁହାଯାଉଚି, ତାଙ୍କ ବାଧତାଲିକାରେ ମଧ୍ୟ ଏଇ ମାତେବ୍‌ବରମାନଙ୍କ ନାଁ କଦାଚିତ୍ ଆଖିରେ ପଡୁଚି । ବୁର୍ଜୋୟାରାଷ୍ଟ୍ର ତେଣୁ ଏତେ ବେଶି ଶଙ୍କିତ ଯେ ବିଭେଦକାରୀ ଏଇ ନେତାମାନଙ୍କ ଭିତରେ ପ୍ରତିଯୋଗିତା ଲାଗିଯାଇଚି କିଏ କେତେ ଅଧିକ ସଶସ୍ତ୍ର

ଅଙ୍ଗରକ୍ଷକ ଯୋଗାଡ଼କରିପାରିବେ । ଦେଶକୁ ସମାଜକୁ ସଂସାରକୁ କ୍ରାନ୍ତି ଆଣିଦେବେ ବୋଲି ଯୋଉ ସାମ୍ୟବାଦୀ ଆସ୍ଫାଳନକରୁଥିଲେ, ସିଏ ବି ଏ ପ୍ରତିଯୋଗିତାରେ ପଛରେ ପଡ଼ିନାହାନ୍ତି, ନେତୃତ୍ୱର ବୁର୍ଜୋୟାକରଣ ସ୍ୱାଧୀନ ଭାରତରେ ଉତ୍ତରୋତ୍ତର ବୃଦ୍ଧିପାଇଚି ବୋଲି ଅଣନିଃଶ୍ୱାସୀହୋଇ ସନ୍ତ୍ରାସକୁ ଅବଲମ୍ବନକରୁଚି ଶୂଦ୍ର ଯା ଗଣତନ୍ତ୍ର ପାଇଁ ଶୁଭ ଲକ୍ଷଣ । ରିଜର୍ଭେସନ୍ ଦେବାରେ ଅଙ୍ଗରାଜ୍ୟ ଓ କେନ୍ଦ୍ରସରକାର ଭିତରେ ପ୍ରତିଯୋଗିତା ଏତେଦୂର ଯାଇଚି ଯେ ସୁପ୍ରିମ୍‌କୋର୍ଟ ସୀମା ବାନ୍ଧିଦେଇଚି ୫୦%; ତା ଉପରକୁ ଯିବା ବେଆଇନ୍ । ସେଇ ୫୦% ଚାକିରୀ ବି ଦେବ କିଏ ? ସାକ୍ଷରତା ହାର ତ ୩୦% ଉପରକୁ ଯାଉନାହିଁ, ସେନାବାହିନୀ ଭଳି ବେସରକାରି ଶିକ୍ଷସଂସ୍ଥା ବି ଶୂଦ୍ରର ଦକ୍ଷତା ପ୍ରତି ବିମୁଖ; ଏଣେ ଦାରିଦ୍ର୍ୟ ସୀମାରେଖା ସ୍ଥିରକରୁଚି କ୍ୟାଲରି, ସମ୍ପତ୍ତି ନୁହେଁ । ତଦ୍‌ସତ୍ତ୍ୱେ, ରିଜର୍ଭେସନ୍‌ର ଯତ୍‌ସାମାନ୍ୟ ଉପକାର ମିଳୁଚି କେବଳ ହିନ୍ଦୁ-ଶୂଦ୍ରଙ୍କୁ, ଅବଶିଷ୍ଟ ସମ୍ପ୍ରଦାୟ ରହିଚନ୍ତି ଲକ୍ଷ୍ମଣରେଖା ବାହାରେ । ଏଇ ବାଟରେ ଧର୍ମାନ୍ତର ସମସ୍ୟାକୁ ମୁକାବିଲାକରୁଚି ରାଷ୍ଟ୍ର । କିନ୍ତୁ ବିହାର ରାଜ୍ୟର ସୋସାଲିଷ୍ଟ୍ ମୁଖ୍ୟମନ୍ତ୍ରୀ କର୍ପୁରୀଠାକୁର୍, ମୁସଲମାନ୍‌ଙ୍କ ଭିତରେ ଯିଏ ଝାଡୁଦାର (ହଲାଲ୍‌ଖୋର୍), ଧୋବା କି ନଟ, ସମସ୍ତଙ୍କୁ ଦେଇଚନ୍ତି ଆରକ୍ଷଣ, କାହିଁକିନା, ବାସ୍ତବରେ ହିନ୍ଦୁ ଅନ୍ତଜ୍ୟଜାତିରୁ ଏମାନେ ଧର୍ମାନ୍ତରିତ । ତାଙ୍କ ସାଙ୍ଗକୁ (ଦ୍ର.*ବିହାର ଗେଜେଟ୍*, ଦ୍ୱିତୀୟ ଭାଗ, ତା।୧୮ ଜୁଲାଇ ୧୯୬୨) ଚିକ୍, ଦଫାଲି, ଧୋବି, କସବ (କସାଇ), ଧୁନିଆ, ମଦାରି, ମେହ୍‌ତର୍, ମିରିଆସିନ୍, ନଟ୍ (ସାପୁଆକେଳା, ଭାଲୁନଚାଇବା ଲୋକ) ଓ ପାମରିଆ ପ୍ରଭୃତି ମୁସଲମାନ୍-ଶୂଦ୍ରଙ୍କ ପ୍ରତି ବି ଲାଗୁକରାଯାଇଚି ଆରକ୍ଷଣ । ଆନ୍‌ସାରି (ତନ୍ତୀ)ଙ୍କୁ ମଧ୍ୟ ଝାଡ଼ଖଣ୍ଡ ଓ ବିହାର ଘୋଷଣାକରିଚି ପଛୁଆପଦ ଜାତି । ସାଚାର କମିଟି ଯୋଉ ଅସ୍‌ରଫ୍, ଅଜ୍‌ଲଫ୍ ଆଉ ଅରଜଲ୍‌ଙ୍କ କଥା କହିଚି, ଅଛନ୍ତି କେବଳ ଉତ୍ତରପ୍ରଦେଶ ଆଉ ବିହାରରେ । ଅଧିକାଂଶ ମୁସଲ୍‌ମାନ୍ ତେଣୁ ଶୂଦ୍ର; ଯେପରି, ଜେନେରାଲ୍ ଜିଆ-ଉଲ୍-ହକ୍ ଜଲନ୍ଧରରୁ ପାକିସ୍ତାନ ଯାଇ ରାଷ୍ଟ୍ରପତି ହୋଇଚନ୍ତି ସିନା, ଜାତିବେଉସା କିନ୍ତୁ ପନିପରିବା ଚାଷ (ରଇନ୍) । ମୁସଲମାନ୍ ଯେ ହିନ୍ଦୁଙ୍କ ଭଳି ତଳ-ଉପର ସାମାଜିକ ଶ୍ରେଣୀରେ ବିନ୍ୟସ୍ତ, ଜାଣିପାରୁନାହୁଁ, କାହିଁକିନା, ଯିଏ ମଧ୍ୟବିତ୍ତ ସ୍ତରକୁ ଉଠିପାରିଚନ୍ତି, ସେଇ ସହରବାସୀ ଧାରଣାଦେଉଚନ୍ତି ଯେ ବିବାକ ମୁସଲ୍‌ମାନ୍ ଆରବ୍, ତୁର୍କ୍, ଆଫ୍‌ଗାନ୍ । ମାତ୍ର ଯାହାଙ୍କ ପିତୃପୁରୁଷ ଆଫ୍‌ଗାନ୍, ସେମାନଙ୍କ ସଂଜ୍ଞା 'ଖାଁ'; ଯାହାଙ୍କର ଆରବ୍, ସେମାନଙ୍କର 'ଶେଖ୍'; ଯାହାଙ୍କର ମୁଗଲ୍, ସେମାନଙ୍କର 'ମିର୍ଜା'; ବିଦେଶୀଙ୍କୁ କୁହାଯାଏ 'ଖ୍ୱାଜା', ସଂଖ୍ୟାରେ ମୁସଲ୍‌ମାନ୍‌ଜନସଂଖ୍ୟାର ନଗଣ୍ୟ ଭଗ୍ନାଂଶ ମାତ୍ର । ଅର୍ଥାତ୍ ଏମାନଙ୍କ ଜାତ୍ୟାଭିମାନ

ସତ୍ତ୍ୱେ, କର୍ପୁରୀ ଠାକୁରଙ୍କ ଶୂଦ୍ରନୀତି ଅନୁସରଣକରି ଗରିବ ମୁସଲ୍‌ମାନ୍ ପ୍ରତି ଆରକ୍ଷଣ ଲାଗୁକରାଯିବା ବିଧେୟ, ଅନ୍ତତଃ ହିନ୍ଦୁଙ୍କ ଭିତରେ ଅଛନ୍ତି ଯଦି ସମାନ୍ତରାଳ ପେସାର ଆରକ୍ଷଣଭୋଗୀ । ମନେରଖିବାକୁ ହେବ ଯେ ହିନ୍ଦୁ-ଶୂଦ୍ରଙ୍କ ଭିତରୁ ହିଁ ଘଟିଚି ବହୁଳାଂଶରେ ଧର୍ମାନ୍ତର । ତା'ଫଳରେ ସାମାଜିକ ମର୍ଯ୍ୟାଦା କି ବୈଷୟିକ ଅବସ୍ଥାର ଉନ୍ନତି ଯେ ଘଟିନାହିଁ, ରାଷ୍ଟ୍ର ଜାଣେ ବିଲକ୍ଷଣ !

ସେକିଉଲାରିଜ୍ମ ସ୍ପଷ୍ଟତଃ ଏକ ଦ୍ୱାନ୍ଦ୍ୱିକ ପ୍ରତ୍ୟୟ; ହିନ୍ଦୁସମାଜର ମନୋଭାବ ଯେ ସେକିଉଲାର୍ ନୁହେଁ, ଦ୍ୱିଜାତି ତତ୍ତ୍ୱର ଅଭ୍ୟୁଦୟ ପାଖରୁ ନେହ୍‌ରୁ ନିଶ୍ଚୟ ବୁଝିସାରିଥିଲେ; ଆନ୍ଦ୍ରେ ମାଲରୋଙ୍କୁ ଯା କହିଚନ୍ତି, ସେଥିରେ 'ହିନ୍ଦୁ' ଶବ୍ଦର ଉଲ୍ଲେଖ ତେଣୁ ନାହିଁ; ହିନ୍ଦୁକଣ୍ଟ୍ରି ପରିବର୍ତ୍ତେ କହିଚନ୍ତି 'ରିଲିଜସ୍ କଣ୍ଟ୍ରି' । ବିଭେଦ ସତ୍ତ୍ୱେ ମିଳନ, ଇଉନିଟି ଇନ୍ ଡାଇଭରସିଟି, ସେଥିପାଇଁ ଦ୍ୱାନ୍ଦ୍ୱିକ ସମାଧାନ ନୁହେଁ । ସମାଧାନ ସମ୍ଭବପର, ଯଦି ପୁରା ଷ୍ଟ୍ରକ୍‌ଚର୍‌ଟା ମୁଣ୍ଡତଳକୁ ଗୋଡ଼ଉପରକୁ କରି ଉଗୁଡ଼ାଇ ଦିଆଯାଇପାରେ । ସେ ଉଦ୍ୟମ ବିହାରରେ କରିଚନ୍ତି ମୁସଲ୍‌ମାନ୍; ମାନିନାହାଁନ୍ତି ଯେ ମୁସଲ୍‌ମାନଙ୍କ ଆତ୍ମପରିଚୟ ଗଠନ ଶିଳାସ୍ତମ୍ଭ ପରି ମନୋଲିଥିକ୍; ଏବଂ ନବେଦଶକରେ ମଣ୍ଡଳ ରିପୋର୍ଟ ବାହାରିବା ଉତାରୁ ଏଇ 'ପସ୍‌ମନ୍ଦା' ଆନ୍ଦୋଳନ ଆହରଣକରିଚି ଗତିବେଗ । ପସ୍‌ମନ୍ଦା ଗୋଟିଏ ଫାର୍ଶି ଶବ୍ଦ, ଯାର ଅର୍ଥ 'ଗୋଡ଼ଭାଙ୍ଗି ଯାଇ ଯିଏ ପଛରେ ପଡ଼ିଗଲେ' । ଏଇ ମୁସଲ୍‌ମାନ୍-ଶୂଦ୍ର ଭାରତର ଜନସଂଖ୍ୟାର ୧୦%, ଏବଂ ସମଗ୍ର ମୁସ୍‌ଲିମ୍ ଜନସଂଖ୍ୟାର ୮୫% । କେବଳ ମୁସ୍‌ଲିମ୍ ଏଲିଟ୍, ଆବେଗ ଦ୍ୱାରା ଚଳିତହୋଇ (ଯେପରି, ସମାନ ଦେବାନି ଆଇନ୍, ବାବ୍‌ରି ମସ୍‌ଜିଦ୍, ଉର୍ଦ୍ଦୁଭାଷା, ଆଲିଗଡ଼ ମୁସ୍‌ଲିମ୍ ଇଉନିଭର୍ସିଟି) ହିନ୍ଦୁଙ୍କ ପାଖରୁ ଦୂରତ୍ୱ ତିଆରିକରିଚନ୍ତି ମୁସ୍‌ଲିମ୍ ଜନଗୋଷ୍ଠୀର ସାମୂହିକ ସ୍ୱାର୍ଥ ଦୃଷ୍ଟିରୁ । କଳ୍ପିତ ସେଇ ମନୋଲିଥିକ୍ ଆତ୍ମପରିଚୟ ମଧ୍ୟ ତିନିଭାଗରେ ଖଣ୍ଡିତ; ଖଣ୍ଡଗୁଡ଼ାକୁ ଜାତି କୁହାଯାଇପାରେ, ଶ୍ରେଣୀ ବି କୁହାଯାଇପାରେ, ଯେପରି ଅସ୍‌ରଫ୍ (ହିନ୍ଦୁବ୍ରାହ୍ମଣର ସମାନ୍ତରାଳ), ଅଜ୍‌ଲଫ୍ (ମଧ୍ୟବର୍ତ୍ତୀ ଶ୍ରେଣୀ) ଆଉ ଅରଜଲ୍ (ଶୂଦ୍ର/ସେବକ) । ଅନ୍ୟ ଯେକୌଣସି ଧର୍ମସମ୍ପ୍ରଦାୟ ପରି ମୁସଲ୍‌ମାନ୍ ମଧ୍ୟ ଏକ ବିଭାଜିତ ପରିବାର, ଏବଂ ପ୍ରତ୍ୟେକ ବିଭାଜିତ ଅଂଶର ମେଦିନୀଦୃଷ୍ଟି (=ସ୍ୱାର୍ଥଚିନ୍ତା) ଅବଶିଷ୍ଟଙ୍କ ଠାରୁ ଅଲଗା । ତେଣୁ ଏଲିଟ୍ ମୁସଲ୍‌ମାନ୍ ଯୋଉ ଭାବପ୍ରବଣ କଥାଗୁଡ଼ାକ କହୁଚନ୍ତି, ସେଗୁଡ଼ାକ engineer a false consciousness and that this euphoria around Muslim identity is often generated in order to bag benefits from the state as wages for the resultant depoliticisation of the Muslim masses. (ଦ୍ର.

*ଇକନମିକ୍ ଆ୍ୟାଣ୍ଡ ପଲିଟିକ୍ୟାଲ୍ ଉଇକ୍ଲୀ*, ମାର୍ଚ୍ଚ ୨୮, ୨୦୦୯, ପୃ.୮-୧୦) । ହିନ୍ଦୁ କି ଖ୍ରୀଷ୍ଟାନ୍‌ଙ୍କ ଭିତରେ ଯିଏ ତଥାକଥିତ 'ଦଳିତ' ରାଜନୀତି କରୁଚନ୍ତି, ଧୋବଧାଉଳିଆ ସେଇ ବାବୁମାନେ କଣ ଭିନ୍ନ ପଥର ପଥିକ? ସେମାନେ ମଧ୍ଯ ଜାତି କି ଧର୍ମ ନାଁରେ ଦଳିତକୁ depoliticise କରିବାକୁ ତତ୍ପର; ମାତ୍ର ପସ୍‌ମନ୍ଦା, ଧର୍ମ ଉପରେ ଜାତିକୁ ଅଗ୍ରାଧିକାରଦେଇ ଅପରାପର ଧର୍ମସମ୍ପ୍ରଦାୟର ସମାନ୍ତରାଳ ଜାତି ସହିତ ଐକ୍ୟନିର୍ମାଣ କରିବାକୁ ଉଦ୍ୟତ, ଯେପରିକି 'ସଂଖ୍ୟାଲଘୁ' ଓ 'ସଂଖ୍ୟାଗରିଷ୍ଠ' ଭଳି ମୌଳବାଦ କବରପାଇବ ସବାଆଗେ; ଆଉ, ବିମୂର୍ତ୍ତ ପ୍ରତ୍ୟୟହୋଇ ପାଠ୍ୟବହିର ଦୁଇମଲାଟ ଭିତରେ ଆବଦ୍ଧ ନରହି ରାଜନୀତି ବାହାରିଆସିବ ରାସ୍ତାଉପରକୁ । ଦରକାର ତେଣୁ ସିଭିଲ୍ ସୋସାଇଟି ଆଉ ରାଷ୍ଟ୍ର ମଝିରେ ଭାରସାମ୍ୟ; ଅନ୍ୟଥା ଗଣଆନ୍ଦୋଳନ ଯାଇପାରେନା ବେଶିଦୂର, ଏବଂ ଭାରସାମ୍ୟର ଏ ଦୃଷ୍ଟାନ୍ତ ଇତିହାସରେ ରଖିଯାଇଚନ୍ତି ଜ୍ୟୋତିବା ଫୁଲେ, ପେରିୟାର୍ ଇ.ଭି.ରାମସ୍ୱାମୀ କି ଭୀମ୍‌ରାଓ ଆମ୍ବେଡ୍‌ଗର । ଅର୍ଥାତ୍, ଭାରତୀୟ ସଂସ୍କୃତିର ନିର୍ମମ ସମୀକ୍ଷା ସାଙ୍ଗକୁ ଏକାକଛର ରାଜନୀତିକ କର୍ମକାଣ୍ଡ । ପେରିୟାର୍ ତ ହିନ୍ଦୁ ଧର୍ମଗ୍ରନ୍ଥଗୁଡ଼ାକୁ ମାନ୍ଦ୍ରାଜ ରାସ୍ତାଉପରେ ଥୋଇ ନିଆଁଲଗାଇ ଦେଇଚନ୍ତି; ଦେଖାଯାଉ, ପସ୍‌ମନ୍ଦାର ଅନୁଚରଙ୍କ ହିମତ୍ ଯାଉଚି କେତେଦୂର! ମଧ୍ୟବିତ୍ତସୁଲଭ ଦ୍ୱିଧା କିନ୍ତୁ ମଝିବାଟରେ ହୋଇପାରେ ମାରାତ୍ମକ ।

ଅସ୍ମିତା ବା ଆଇଡେଣ୍ଟିଟି, ସେଇ ମଣ୍ଡଳ ରିପୋର୍ଟ ବେଳରୁ ଏପରି ରାଜନୀତିକ ମାତ୍ରା ଆହରଣକରିଚି ଯେ, ଏକ୍ଷଣି ମନେହେଉଚି, ସତେ ଅବା 'ଅସ୍ମିତା' ଗୋଟାଏ ଦାର୍ଶନିକ ପ୍ରତ୍ୟୟ! ହିନ୍ଦୁଦର୍ଶନରେ ମଣିଷର ଆଇଡେଣ୍ଟିଟି ବ୍ୟାବହାରିକ ଅର୍ଥରେ, କେବଳ ନାମ-ରୂପ । ନାମ-ରୂପ କିନ୍ତୁ ସାକ୍ଷାତ୍ ମାୟା, କାହିଁକିନା, ଯା ପ୍ରତୀୟମାନ ବା ଇନ୍ଦ୍ରିୟଗ୍ରାହ୍ୟ, ତା ପ୍ରକୃତ ନୁହେଁ । ଯା ପ୍ରକୃତ, ତା ବ୍ରହ୍ମ । ବ୍ରହ୍ମର ନାମ-ରୂପ ନାହିଁ, ବ୍ୟାପ୍ତହୋଇଚି ବିଦ୍ୟମାନ ସ୍ଥାବର-ଜଙ୍ଗମ ସର୍ବତ୍ର । ନାମରୂପ ନଷ୍ଟହୋଇଗଲେ ସୁଦ୍ଧା, ବ୍ରହ୍ମ ରହିଥିବ ଅକ୍ଷୟ । ସ୍ପଷ୍ଟତଃ, ବ୍ରହ୍ମ ପରିବର୍ତ୍ତନର ଅଧୀନ ନୁହେଁ । ମଣିଷର ପ୍ରକୃତ ଆଇଡେଣ୍ଟିଟି ତେଣୁ ନିରନ୍ତର ସ୍ପନ୍ଦମାନ; ଅଛି ପୁଣି ନାହିଁ । ଯୁକ୍ତି କିନ୍ତୁ ମାନିବନାହିଁ, କାହିଁକିନା, କୋଉହେଲେ ଜିନିଷ ଏକାବେଳକେ ଅଛି ଓ ନାହିଁ ହୋଇପାରେନା । ମାତ୍ର ସଂସାରରେ କେହି 'ବ୍ରହ୍ମ' ପରିଚୟରେ ଆତଯାତ ହୁଏନା; ନାମ-ରୂପ ସମ୍ବଳିତ ମଣିଷ ଯେହେତୁ ଦେଖେ ଶୁଣେ ଚଳେ ବୁଲେ ଖାଏ ପିଏ, ମାୟା କଥାଟା ବି ମନେହୁଏ କୁଯୁକ୍ତି । କିନ୍ତୁ ନାମ-ରୂପ, ଦେହ-ପ୍ରାଣ ତ ସମସ୍ତଙ୍କର ଅଛି, ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷର ଆଇଡେଣ୍ଟିଟି (ଆରିସ୍ତୋଟ୍ଲ ଯାହାକୁ କହିଚନ୍ତି ଏସେନ୍ସ)

ହେବ ଫେର୍ କେମିତି ସର୍ବଜନୀନ ଏଇ ଏସେନ୍ସ ? ପ୍ରଶ୍ନଟାକୁ ଗୋଟାଏ ଧନ୍ଦା ଭଳି ଉପସ୍ଥାପିତ କରୁଚି, ମଣିଷର ସାରବତ୍ତା ଯେହେତୁ ଏକମାତ୍ର ତାର ଚୈତନ୍ୟ; ଚେତନାର ଧରଣଧାରଣ ଅପରାପର ମଣିଷଙ୍କପାଖରୁ ଅଲଗାକରି ତାକୁ ଚିହ୍ନାଇଦିଏ । ପଠାଣି ସାଆନ୍ତ କହିଚନ୍ତି ଚେତନାକୁ 'ଧୀ-ଯନ୍ତ୍ର' । ଗୁରୁ ନଥିଲା, ଯନ୍ତ୍ରପାତି ନଥିଲା, ଶାସ୍ତ୍ର ନଥିଲା, ଜ୍ଞାତକଲେ କେମିତି ତେବେ ଅଜ୍ଞାତକୁ, ଆକାଶର ଗ୍ରହନକ୍ଷତ୍ରକୁ ? ସେଇ ସୂତ୍ରରେ ପଚାରିହେବ, ମଣିଷ ନିଜେ ଯେତେବେଳେ ସୃଷ୍ଟିହେଲା ପୃଥିବୀରେ, ଚାରିପଟରେ ବଣଜଙ୍ଗଲ, ବାଘଭାଲୁ, ସାପବିଛା, ରକ୍ଷାକଲା କେମିତି ନିଜକୁ ? ପ୍ରଥମେ ଉଦ୍‌ଭାବନକରିଚି ପଥର ତିଆରି ହତିଆର, କାହିଁକିନା, ନିଜ ଦାନ୍ତ-ନଖ ଶ୍ୱାପଦର ଦାନ୍ତ-ନଖ ଭଳି ହତିଆର ନୁହେଁ । ମାଟିଖୋଳି ଉଠାଇଆଣିଚି ଧାତୁ, କ୍ଷତ କି ଜ୍ୱରରୁ ରକ୍ଷାପାଇବାକୁ ଖୋଜିଆଣିଚି ଚେରମୂଳ । କେହି ବତାଇଦେଇ ନାହିଁ, କେହି ଆକଟକରିନାହିଁ, ବିପଦକୁ ଚିହ୍ନିବାକୁ ବି କେହି ଶିଖାଇଦେଇନାହିଁ । ନିଆଁକୁ ଭାବିଚି ଦେବତା, ପୂଜାକରିବା ସଙ୍ଗେସଙ୍ଗେ ମନରେ ପାଞ୍ଚିଛି, ବଶକରିବ କେମିତି ? ମେଘକୁ ପ୍ରାର୍ଥନାକରିସାରି, ନଈରୁ କାଟିଚି ନାଳ, ଚାଷକରିବା ଦରକାର । *ମନୁସଂହିତା* (୧୦/୮୪) କିନ୍ତୁ କୃଷିକୁ କହିଚି ନିକୃଷ୍ଟ ପେସା, ଲଙ୍ଗଳଧରିବାକୁ ବାରଣକରିଚି; ଯୋଉ ବ୍ରାହ୍ମଣ ଓଡ଼ିଶାରେ ଲଙ୍ଗଳଧରନ୍ତି, ହଳୁଆ ସାରୁଆ କହି ତାଙ୍କୁ ହେୟ କରାଯାଏ । ଧୀ-ଯନ୍ତ୍ର ତେବେ ବାଟକାଢ଼ିବ କାହାଦ୍ୱାରା, ଶାସ୍ତ୍ରବଚନ ନା ନିଜ ବିଚାରବୁଦ୍ଧି ? ଚୀନା ଭାଷାରେ ଗୋଟିଏ ପ୍ରବାଦ ଅଛି; ଅନ୍ଧାର-ଅନ୍ଧାର ହୁରି ନଛାଡ଼ି ଦୀପଟିଏ ବରଂ ଜାଳିଦିଅ । ଏଡ଼େ ବକଟେ ମାଟିଦୀପରୁ କେତେ ଆଲୁଅ ବାହାରିବ ଯେ ଚତୁର୍ଦ୍ଦିଗର କିଟିକିଟି ଅନ୍ଧାରକୁ ଛେଦିପକାଇବ ? କିନ୍ତୁ ଅନ୍ଧାର ତ କୋଉ ଜିନିଷ ନୁହେଁ ଯେ ତାକୁ ଛେଦିବାକୁ ପଡ଼ିବ ! ଅନ୍ଧାର ତ ଆଲୁଅର ଅଭାବ କେବଳ ! ଜୁଳୁଜୁଳିଆ ପୋକ ଉଡ଼ିଗଲେ ବି ଅନ୍ଧାରରେ ଡର କଟିଯାଏ, ଦୂରରୁ ମଶାଣୀନିଆଁ ଦେଖାଗଲେ ବି ସେଇ ଆଡ଼କୁ ମୁହଁକରି ଚାଲିବାକୁ ମନ ଡ଼ାକେ । ଆଲୁଅ ଅଛି ମାନେ, ମଣିଷ ଅଛନ୍ତି । ପ୍ରାଚୀନତମ ସେଇ ଅଭାବ ପ୍ରରୋଚନାରୁ ମାଟିର ଏଇ ଦୀପଟି ବାହାରିଚି, ପ୍ରାଚୀନତମ କାରିଗରୀ । ନିଆଁ ଜଳିଲେ ବି ଧୂଆଁ ଆସି ରୁନ୍ଧିପକାଇଚି ଆଖିନାକ; ଧୂଆଁରୁ ବଞ୍ଚିବାକୁ ଦୀପକୁ କରିଚି ଉଦ୍‌ଭାବନ; ସେ ଉଦ୍‌ଭାବନରୁ ବାହାରିଚି ଆହୁରି କେତେ ଉଦ୍‌ଭାବନ । ସଳିତା ପଶୁଚର୍ବି ତୈଳବୀଜ, ଏଗୁଡ଼ାକୁ ଏକାସାଙ୍ଗରେ ଧାରଣକରିବାକୁ ଉପଯୁକ୍ତ ପାତ୍ର ମାଟିର ସେଇ ବକଟେନାକୁ ଦୀପ । ତା ଆଲୁଅକୁ କମାଇହୁଏ, ବଢ଼ାଇହୁଏ, ଇନ୍ଧନ ଯୋଗାଇଦେଲେ ଲିଭିଯାଏନା । ସେଇ ମାଟିଦୀପର ପ୍ରରୋଚନାରୁ ବାହାରିଚି କିରୋସିନ୍-ଲଣ୍ଠନ୍, ଗ୍ୟାସ୍‌ବତୀ, ବୈଦ୍ୟୁତିକ ବଲ୍‌ବ୍,

ଟିଉବ୍‌ଲ୍ୟାମ୍ପ, ମର୍କରିଲ୍ୟାମ୍ପ, ହାଲୋଜେନ୍ ଲ୍ୟାମ୍ପ । ସବୁମଣିଷଙ୍କ ପାଇଁ ଲଭ୍ୟହୁଏନା ସମାନଭାବେ, ବାଧା ଆସେ । ମଣିଷ ପାଖରୁ ବାଧା । ଇଚ୍ଛାହୁଏ, ସେମାନଙ୍କୁ ହଟାଇଦେବାକୁ । ଏଇ ଭାବରେ ମଣିଷ ଆଗକୁ ଚଲେ, ଅନ୍ଧାରକୁ ଜୟକରେ, ବାଧାବିପଦ ମାନେନା । ଜୀବନର ଯାବତୀୟ କ୍ଷେତ୍ରରେ ତାକୁ ଆଗକୁ ଚଲାଏ ଏଇ ଅମାନିଆପଣ, ଧୀ-ଯନ୍ତ୍ରକୁ ସ୍ୱୀକୃତି । କିନ୍ତୁ ମାଟିଦୀପରୁ ହାଲୋଜେନ୍‌ଲ୍ୟାମ୍ପ ଯାଏଁ ଯୋଉ ଅଭିଯାତ୍ରା, ତାର ପଥିକର ଆଇଡେଣ୍ଟିଟି କଣ ଅପରିବର୍ତ୍ତିତ ରହିଚି ମୂଳରୁ ଶେଷଯାଏଁ, ନା ପ୍ରତି ଉଦ୍‌ଭାବନା/ଆବିଷ୍କାର ବଦଳାଇଦେଇଚି ଅସ୍ମିତାର ବାଗବର୍ଗ ? ଯଦି ବଦଳିବଦଳି ଚଲିଚି ଆଗକୁ ଆଗକୁ, ହିନ୍ଦୁ ମୁସଲ୍‌ମାନ୍ ଖ୍ରୀଷ୍ଟାନ୍ ଯିଏ ହେଉ, ତା ଆଇଡେଣ୍ଟିଟି ରହିବ କେମିତି ସ୍ଥିର ଓ ନିଟୋଳ ? ଏବଂ ପ୍ରକ୍ରିୟାଟା ତ ଧର୍ମୀୟ ଅନୁଶୀଳନ ନୁହେଁ, ପ୍ରକ୍ରିୟାଟା ଇତିହାସ-ନିର୍ମାଣ, ଆଇଡେଣ୍ଟିଟି ନିର୍ମାଣ ନୁହେଁ । ଏଇ ବାଟରେ ଆଦିମ ଅବସ୍ଥାରୁ ଏକବିଂଶ ଶତକକୁ ପ୍ରବେଶକରିଚି ମଣିଷ; ସାପ କାତିଛାଡ଼ିବା ପରି ବାଟସାରା ପକାଇଦେଇଆସିଚି ଅସୁମାରୀ ଆଇଡେଣ୍ଟିଟି, ଏବଂ ଏ ଯାତ୍ରାର ବିରତି ନାହିଁ; କୋଉଠି ନେଇ ପହଞ୍ଚାଇବ କିଏ ଜାଣେ !

॥ ପାଞ୍ଚ ॥

ଇନ୍ଦିରାଗାନ୍ଧି ଇମର୍‌ଜେନ୍ସି ଡାକିବାଯାଏଁ ‘ସେକିଉଲାର୍’ ସାଙ୍ଗରେ ‘ଡେମୋକ୍ରାଟିକ୍’ ଯୋଡ଼ାହୋଇ ରହିଥିଲା ସଂବିଧାନରେ; ପୁନର୍ବାର ନିର୍ବାଚିତ ହୋଇଆସି ଯୋଡ଼ିଦେଲେ ତୃତୀୟମାତ୍ରା, ସୋସାଲିଷ୍ଟ୍ । ତିନିଟିଯାକ ପ୍ରତ୍ୟୟ କିନ୍ତୁ ପରସ୍ପର ପରିପୂରକ । ତାହେଲେ, ଇମର୍‌ଜେନ୍ସି ଡାକି ଲୋକଙ୍କ ଧନଜୀବନକୁ ବିପନ୍ନକଲେ କାହିଁକି ? ଉତ୍ତର ପାଇବାକୁ ହେଲେ, ଗଣତନ୍ତ୍ରର ନାମ-ରୂପକୁ ବିଶ୍ଳେଷଣକରିବା ଦରକାର । ତେବେ, ମୂଳରୁ ଏତିକି ଖିଆଲରଖିବା ଦରକାର ଯେ ଦେଶ ସ୍ୱାଧୀନହେବା ବେଳକୁ, ହିନ୍ଦୁ ଓ ମୁସଲ୍‌ମାନ୍, ଚିରକାଳ ଏକାଠି ଯିଏ ବସବାସ କରିଆସିଥିଲେ, ଧର୍ମ ନାଁରେ ଅଲଗାହୋଇଯାଇଚନ୍ତି ବୋଲି ସମ୍ବିଧାନରେ ସେକିଉଲାରିଜ୍ମ କଥା ଲେଖିବାକୁ ପଡ଼ିଚି, ଶିକ୍ଷା ସଂପତ୍ତି ଜାତି ଓ ଭାଷାକୁ ଘେରି ବୈଷମ୍ୟର ଅଜସ୍ର ଷ୍ଟ୍ରକ୍‌ଚର୍ କିନ୍ତୁ ବଞ୍ଚିରହିଚି; କ୍ଷମତା-ରାଜନୀତିରେ ଏଗୁଡ଼ିକର ଅବାଞ୍ଛିତ ପ୍ରଭାବପଡ଼ିବା ତେଣୁ ସ୍ୱାଭାବିକ । ତଥାପି ରାଷ୍ଟ୍ରର ବିନା ହସ୍ତକ୍ଷେପରେ ବୈଷମ୍ୟବିଲୋପ, କେବଳ ସାବାଳକ ଭୋଟ୍‌ବ୍ୟବସ୍ଥା ଦ୍ୱାରା ସମ୍ଭବପର ବୋଲି, ବ୍ରିଟିଶ୍ ଐତିହ୍ୟରେ ବଡ଼ହୋଇଥିବା ଜବାହର୍‌ଲାଲ୍‌ଙ୍କ ହୃଦ୍‌ବୋଧ ହୋଇଥିଲା, ଯଦିଓ ତାଙ୍କୁ ଅଜଣା ନଥିଲା ଯେ ମୁସୋଲିନି ଓ ହିଟ୍‌ଲର୍ ମଧ୍ୟ ସାବାଳକ ଭୋଟ୍‌ବ୍ୟବସ୍ଥା

ଦ୍ୱାରା ନିର୍ବାଚିତହୋଇ ରାଷ୍ଟ୍ରକ୍ଷମତା ଦଖଲକରିଥିଲେ । କିନ୍ତୁ ଆଲାହାବାଦ୍ ହାଇକୋର୍ଟ ଝିଅର ନିର୍ବାଚନକୁ ଅସିଦ୍ଧକରିଦେବା ଉତାରୁ, ଇନ୍ଦିରାଗାନ୍ଧି ବୁଝିପାରିଥିଲେ ଯେ ପାଞ୍ଚ-ଛ'ବର୍ଷ ପର୍ଯ୍ୟନ୍ତ ଆଉ କ୍ଷମତାରେ ରହିପାରିବେ ନାହିଁ, ଏବଂ ଭୋଟ୍‌ପ୍ରଥାକୁ ପ୍ରାୟ ତିରିଶବର୍ଷ ବୟସ ପୁରିଯାଇଥିଲେ ସୁଦ୍ଧା, ଗଣତନ୍ତ୍ରକୁ ରକ୍ଷାକରନ୍ତି ଯୋଉ ଅନୁଷ୍ଠାନ, ଯେପରି ବିଚାରବ୍ୟବସ୍ଥା ସୈନ୍ୟବାହିନୀ ଲୋକମତ ଗଣମାଧମ, ତଥାପି ସାବାଳକତ୍ୱ ପ୍ରାପ୍ତହୋଇନାହିଁ; ଏପରିକି, ଦେଶର ରାଷ୍ଟ୍ରପତି ମଧ ଥୁଣ୍ଟା ଜଗନ୍ନାଥ । ଦୁଃସାହସିକ ଦୌରାତ୍ମ୍ୟ ଚପାଇଦେଲେ ସୁଦ୍ଧା, ପ୍ରତିରୋଧ ଏଭଳି ଶକ୍ତି ସଂଗ୍ରହକରି ପାରିବନାହିଁ ଯେ, ଅଲିଭର୍ କ୍ରମ୍‌ୱେଲ୍ ବାହାରିପଡ଼ି ରଜାର ମୁଣ୍ଡ କାଟିପକାଇବ । ବୋଲିବା ବାହୁଲ୍ୟ, ଇମର୍ଜେନ୍ସି ଉଠାଇଦେଇ ଫେର୍ ଯେତେବେଳେ ନିର୍ବାଚନ ଡାକିଲେ (୧୯୭୭), ସପାର୍ଷଦ ପରାଜିତହୋଇଥିଲେ ପ୍ରିୟଦର୍ଶିନୀ । ଆଉ ଯା ହେଉ, ହିଟ୍‌ଲର୍ କି ମୁସୋଲିନିଙ୍କ ଆବିର୍ଭାବ ସମ୍ଭାବନା, ସେଦିନଠୁଁ ହୋଇଯାଇଚି, ଭାରତରେ ଅନ୍ତତଃ ଆକାଶକୁସୁମ ।

କିନ୍ତୁ ଗଣଆନ୍ଦୋଳନ ପରିଚାଳନା କରିବାବେଳେ ଗାନ୍ଧି କହିଥିଲେ 'ସ୍ୱରାଜ' ଆଣିବେ; ସ୍ୱରାଜ କି ଜିନିଷ, ବୁଝାଇବାପାଇଁ *ହିନ୍ଦ୍ ସ୍ୱରାଜ* ବହି ବି ଲେଖିଚନ୍ତି; ସାବାଳକ ଭୋଟାଧିକାର ପ୍ରସଙ୍ଗ କିନ୍ତୁ ଜାଗାପାଇନାହିଁ; ଏବଂ ଭୋଟ୍ ଉପରେ ବିଶ୍ୱାସ ଥିଲେ, ସୁଭାଷ ବସୁ ଯେତେବେଳେ ପଟ୍ଟାଭିଙ୍କୁ ଭୋଟ୍‌ଲଢ଼ାଇରେ ହରାଇଦେଲେ, କେବେହେଲେ କହିନଥାନ୍ତେ ଏ ପରାଜୟ ପ୍ରକୃତରେ ତାଙ୍କ ବ୍ୟକ୍ତିଗତ ପରାଭବ । ଅନତିବିଳମ୍ବେ ଇସ୍ତଫାଦେଇ ସୁଭାଷ ତେଣୁ ବାହାରିଯାଇଚନ୍ତି ଅସ୍ତ୍ରଶସ୍ତ୍ର ସଂଧାନରେ, ଆଗରୁ ଯାଇଥିଲେ ଯେମିତି ଏମ୍.ଏନ୍.ରାୟ । ଭାରତର ସମାଜସଂଗଠନ କି ରାଷ୍ଟ୍ର-ଷ୍ଟ୍ରକ୍‌ଚର୍‌ରେ ଭୋଟ୍‌ବ୍ୟବସ୍ଥା ଆଗରୁ କେବେ ପ୍ରତିଷ୍ଠା ପାଇନାହିଁ । ଖ୍ରୀଷ୍ଟଜନ୍ମର ବହୁପୂର୍ବରୁ ତାର ଅଭ୍ୟୁଦୟ ଘଟିଚି ଗ୍ରୀକ୍ ନଗର-ରାଷ୍ଟ୍ର ଆଥେନ୍ସରେ, କିନ୍ତୁ ଅଠରଶତକ ପର୍ଯ୍ୟନ୍ତ ଅମଳପାଇନାହିଁ ଇଉରୋପ୍‌ରେ । କାହିଁକିନା, ସିଭିଲ୍ ସୋସାଇଟିକୁ ରାଜତନ୍ତ୍ର କରିରଖିଚି ବହୁଧା ବିଭକ୍ତ । ଅନ୍ତତଃ ଫରାସୀ ବିପ୍ଳବ ପର୍ଯ୍ୟନ୍ତ । ବ୍ୟକ୍ତିସ୍ୱାତନ୍ତ୍ର୍ୟ ସ୍ୱୀକୃତ ନହେଲେ, ରାଷ୍ଟ୍ର ଭୋଟ୍‌ଅଧିକାର ଦେଇପାରେନା ପ୍ରଜାକୁ । ଭୋଟ୍‌ଅଧିକାର ପାଇଲେ 'ପ୍ରଜା' ହୁଏ 'ନାଗରିକ', ରାଷ୍ଟ୍ର ପରିଚାଳନାରେ ଅଂଶୀଦାର; ହାତକୁ ଆସେ ରାଜନୀତିକ 'କ୍ଷମତା' । ଗୁରୁତର ଏପରି ଏକ କ୍ଷମତା ପ୍ରୟୋଗକରିବାକୁ ଯୋଗ୍ୟହୋଇଚି କି ନାହିଁ, ବିବେଚନା କରାଯାଇନାହିଁ ବୋଲି, ଆଥେନ୍ସର ଗଣତନ୍ତ୍ର, ମନୀଷୀ ସୋକ୍ରେଟିଜ୍‌ଙ୍କୁ ଦେଇଚି ପ୍ରାଣଦଣ୍ଡ । ବିଚାରବନ୍ତ ଲୋକଙ୍କ ମନରେ ଗଣତନ୍ତ୍ର ତେଣୁ ବିବଦମାନତାକୁ କାଟିଉଠିପାରିନାହିଁ ବହୁକାଳ । ଯୁଦ୍ଧ ବି ହୋଇଚି; ଯେମିତି ଆଥେନ୍ସ ସାଙ୍ଗରେ ସ୍ପାର୍ଟାର । ଚର୍ଚ୍ଚ ମଧ ଯୋଗ୍ୟହୋଇନାହିଁ ବୋଲି ଗାଲିଲେଓଙ୍କର

ହୋଇଚି ଆଜୀବନ କାରାଦଣ୍ଡ । ୧୯୪୭ରେ ତେବେ କୋଟିକୋଟି ଅନାହାର-ଅର୍ଦ୍ଧାହାରକ୍ଳିଷ୍ଟ ଅଶିକ୍ଷିତ ଲୋକଙ୍କୁ ନେହ୍‌ରୁ ଭାବିଲେ କେମିତି ରାଜନୀତିକ କ୍ଷମତା ପ୍ରୟୋଗକରିବାକୁ ଯୋଗ୍ୟ ? ନେହରୁ ତ ନେପୋଲିଅଁଙ୍କ ଭଳି ଜାତୀୟତାବାଦର ଜନକ ନୁହେଁ ! ଆପାତଃ-କାରଣ ହୋଇପାରେ, ଇଉରୋପ୍‌ରେ ଯାହାଙ୍କୁ କହନ୍ତି କ୍ରାଉଡ୍ ବା ମବ୍, ସେ ଚିହ୍ନାୟନ ଭାରତବାସୀଙ୍କ ପାଇଁ ଉପଯୁକ୍ତ ନୁହେଁ, କାହିଁକିନା, ବ୍ରିଟିଶ୍-ରାଜତ୍ୱର ଶହେବର୍ଷ ଭିତରେ ଏମାନେ ଲଢ଼ିଚନ୍ତି ଦୁଇଦୁଇଟା ମୁକ୍ତିଯୁଦ୍ଧ, ସିପାହୀବିଦ୍ରୋହ ପଛକୁ ସତ୍ୟାଗ୍ରହ । ଏଠି ଫେର୍ ସେଇ ଦାର୍ଶନିକ ସମସ୍ୟା; ପ୍ରତୀୟମାନ ସହିତ ପ୍ରକୃତର ବିରୋଧ । ମାତ୍ର ସଂଶୟ ପ୍ରଶମିତକରିଚି କଂଗ୍ରେସ୍‌ପାର୍ଟିର ଅସାମାନ୍ୟ ଲୋକପ୍ରିୟତା; ମନେହୋଇଚି, କଂଗ୍ରେସ୍‌ଦୁର୍ଗଟା ଅଭେଦ୍ୟ । ସେ ଦୁର୍ଗ ଦିହରେ ଟିପଲାଗିବା ମାତ୍ରକେ ଅଗଣତାନ୍ତ୍ରିକ ଉପାୟରେ ଭାଙ୍ଗିଦେଇଚନ୍ତି କେରଳର ନିର୍ବାଚିତ ପ୍ରଥମ କମିଉନିଷ୍ଟ୍ ସରକାରକୁ । ଅନ୍ୟ ଶବ୍ଦରେ, ମନେପ୍ରାଣେ ବିଶ୍ୱାସ କରିନାହାଁନ୍ତି ଭୋଟ୍‌ଅଧିକାରକୁ ପବିତ୍ର । ଝିଅ ଯେ ଇମର୍ଜେନ୍ସି ଲଗାଇବ, ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ । କେହି ଚାହିଁନାହାଁନ୍ତି ମୌଳିକ ପରିବର୍ତ୍ତନ; ରଜା-ଜମିଦାରଙ୍କୁ ଯେ ଅକର୍ମଣ୍ୟକରିଦେଇଚନ୍ତି, ଏକମାତ୍ର କାରଣ ପ୍ରତିପକ୍ଷ ଥିଲା ସଂଖ୍ୟାରେ ନଗଣ୍ୟ । ଯାକୁ ଫିଉଡାଲିଜ୍ମ (ସାମନ୍ତତନ୍ତ୍ର)ର ବିଲୋପ କୁହାଯାଏନା । ବରଂ, ନେହରୁ ପରିବାର ଯେ ଉତ୍ତରାଧିକାର ସୂତ୍ରରେ ସିଂହାସନାରୂଢ଼ ହୋଇରହିଚନ୍ତି, ସୂଚନାକରୁଚି ଫିଉଡାଲିଜ୍ମର ଅନବଚ୍ଛିନ୍ନତା । ଭାରତକୁ ରାଜତନ୍ତ୍ର ଫେରିଆସିଚି ଖଦଡ଼ପିନ୍ଧି ଭୋଟ୍ ବାକ୍ସ ଭିତରୁ । ଫରାସୀ ବିପ୍ଳବରୁ ବାହାରିଥିଲେ ଯେମିତି ନେପୋଲିଅନ୍ । ସାମନ୍ତତନ୍ତ୍ରର ପତନ ନହେଲା ନାହିଁ; ରାଜନୀତିକ ପ୍ରତିଷ୍ଠାନଗୁଡ଼ାକୁ (ଯେପରି, ପାର୍ଲାମେଣ୍ଟ୍, ଆଇନ୍ ଅଦାଲତ, ଅମଲାତନ୍ତ୍ର, ପୁଲିସ୍ ପ୍ରଶାସନ ଇତ୍ୟାଦି) ବେସରକାରୀ ପରିସରଭିତରକୁ ଟାଣିନେଇ ଶିକ୍ଷାବ୍ୟବସ୍ଥା ଓ ଗଣମାଧ୍ୟମକୁ କ୍ୟାପିଟାଲିଜ୍ମ କିପରି କୁକ୍ଷିଗତ କରିପକାଇଚି ଆଉ ସେ ଆଧିପତ୍ୟ ବାହାରକୁ ଦିଶୁଚି ସ୍ୱାଭାବିକ, ବିପଜ୍ଜନକ ସେଇ ଲକ୍ଷଣଗୁଡ଼ାକୁ ଚିହ୍ନଟକରିବା ସାମର୍ଥ୍ୟ ମଧ୍ୟ ହରାଇଚାଲିଛୁଁ କ୍ରମାଗତ । ଫଳରେ, ନାଗରିକସମାଜରେ ଦିନକୁ ଦିନ ଗଜାଇଉଠୁଚି ନିତ୍ୟନୂତନ ସୁବିଧାବାଦୀ ଶ୍ରେଣୀ; ଆଉ ତା ସାଙ୍ଗକୁ ବ୍ୟାପକ ଧନବୈଷମ୍ୟ । ଲୋକ ଯେତେବେଳେ ଅନ୍ଧାରକଣା ହୁଅନ୍ତି, କ୍ରମାଗତ ଏଇ ପ୍ରକ୍ରିୟାରେ ହିଟ୍‌ଲର୍ ପ୍ଲେବିସିଟ୍ ଡାକି ପାଇଯାଆନ୍ତି ୯୦% ଭୋଟ୍, ବେର୍‌ଟୋଲ୍ଟ ବ୍ରେଶ୍‌ଟ୍ ସେତେବେଳେ କହନ୍ତି, ସରକାର ଯଦି ବଦଳାଇ ପାରିବାନାହିଁ, ଲୋକଙ୍କୁ ବରଂ ବଦଳାଇଦେବା ! ତାଙ୍କ ଏପିକ୍ ଥିଏଟର୍‌ର ଲକ୍ଷ୍ୟ ଥିଲା ତେଣୁ 'ଲୋକଙ୍କୁ ବଦଳାଇଦେବା' । ଥିଏଟର୍‌ଦେଖାଇ ଲୋକଙ୍କୁ ବଦଳାଇଥିବା

ଦୃଷ୍ଟାନ୍ତ ଅବଶ୍ୟ ଇତିହାସରେ ମିଳିବନାହିଁ । ଆଉ ପ୍ଲାଟୋ ଯେମିତି ଭାବିଥିଲେ, ଫିଲଜଫର୍ ରାଜ୍ୟ ଶାସନକରିଥିବା ଘଟଣା ବି ଅଦ୍ୟାବଧି ଘଟିନାହିଁ । ବରଂ, ସବୁ ପାର୍ଲାମେଣ୍ଟର ଜନନୀ ବ୍ରିଟେନ୍‌ରେ, ନିଜ ଖର୍ଚ୍ଚବାବଦକୁ ମିଛହିସାବ ଦେଖାଇ ହଜାର୍ ହଜାର୍ ପାଉଣ୍ଡ୍ ଉଠାଇନେଇଚନ୍ତି ଅଧିକାଂଶ ସାଂସଦ ।

ନେହ୍‌ରୁ ଇଂଲଣ୍ଡ୍‌ରେ ସ୍କୁଲ୍‌ରୁ କଲେଜ୍ ପର୍ଯ୍ୟନ୍ତ ପାଠପଢ଼ିଚନ୍ତି, ବହି ଲେଖିଚନ୍ତି: *ପୃଥିବୀ ଇତିହାସ* । ବିଲାତରେ ଥିବାବେଳେ ବେନ୍‌ଥାମ୍ ଓ ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କ ହିତବାଦୀ ଧାରଣା ସାଙ୍ଗକୁ ଫେବିଆନ୍ ସୋସାଲିଜ୍ମ ସଂସ୍ପର୍ଶରେ ମଧ୍ୟ ଆସିଚନ୍ତି; ପ୍ରତ୍ୟୟ ଉପୁଜିଚି, ପ୍ରତିନିଧିତ୍ୱମୂଳକ ଶାସନତନ୍ତ୍ର ସହିତ ଗଣତନ୍ତ୍ର ସମାର୍ଥକ । ଅର୍ଥାତ୍, ଶେଷ ବିଚାରରେ, ସାଧାରଣଲୋକର ଶାସନ ହିଁ ଗଣତନ୍ତ୍ର । କିନ୍ତୁ ମିଲ୍ Representative Government ବହିରେ ସ୍ପଷ୍ଟ କରିଦେଇଚନ୍ତି, ଅମଲାଚାଳିତ ଶାସନବ୍ୟବସ୍ଥାରେ, ଜନସାଧାରଣଙ୍କ ଇଚ୍ଛା ଆଉ ଜନପ୍ରତିନିଧିଙ୍କ ଇଚ୍ଛା ମଝିରେ ତିଆରିହୋଇପାରେ ଦୁର୍ଲଂଘ୍ୟ ଦୂରତ୍ୱ, କାହିଁକିନା, ଲୋକ କଣ ଚାହୁଁଚନ୍ତି, ସେ ବିଷୟରେ ସ୍ଥିରସିଦ୍ଧାନ୍ତ ବିଷୟମୁଖୀ ନହୋଇପାରେ ସବୁବେଳେ, ଏବଂ ସେ କ୍ଷେତ୍ରରେ, ଅନିଶ୍ଚୟତା ଭିତରେ ଜନପ୍ରତିନିଧିଙ୍କୁ ଆଗେଇଯିବାକୁ ପଡ଼ିବ; ଯଥେଷ୍ଟ ଦାୟିତ୍ୱବାନ ଓ ନିର୍ମଳ ଶାସକ ଯେହେତୁ ଲୋକଙ୍କ ଇଚ୍ଛା ପୂରଣକରି ପାରିବେନାହିଁ । ଏଣେ, ଆଧୁନିକ ଅର୍ଥନୀତି ଓ ଶାସନତନ୍ତ୍ର ବିଷୟରେ ସାଧାରଣ ଲୋକଙ୍କର କିଛିହେଲେ ଧାରଣା ଥାଏନା; ଖାଲି ଭାରତ ପରି ତୃତୀୟବିଶ୍ୱର ଦେଶରେ ନୁହେଁ, ଇଂଲଣ୍ଡ୍-ଆମେରିକାରେ ବି ଏକାକଥା । ଏ ଅବସ୍ଥାର ସୁଯୋଗ ଶାସକଶ୍ରେଣୀ ନେବେ ନିଶ୍ଚୟ; ଟଙ୍କାକରୁ ଦଶପଇସା ବି ଲୋକଙ୍କ ପାଖରେ ପହଞ୍ଚୁନାହିଁ ବୋଲି କୁମ୍ଭୀରାଶ୍ରୁ ତର୍ପଣ ତେଣୁ ଅତିକାୟ ରାଜନୀତିକ ପ୍ରତାରଣା । ସର୍ଭେକରି ଏବେ ଦେଖାଯାଇଚି, ଚୀନ୍‌ର ସାଧାରଣଲୋକ ମଧ୍ୟ କହିଚନ୍ତି, ସରକାରୀ ଅଫିସର୍ ତୁଳନାରେ ବାରବନିତା ଅଧିକ ବିଶ୍ୱାସଯୋଗ୍ୟ । ମାନେ, ଆମର ଯା ନିତ୍ୟ-ଅଭିଜ୍ଞତା; ପଇସାନେଇ ବି କାମକରିଦେବେନାହିଁ; ବେଶ୍ୟା ସେଦିଗରୁ ଅଧିକ ଆସ୍ଥାଭାଜନ । ଲିଙ୍କନ୍ ସାହେବଙ୍କ ବାଣୀ, ଗଣତନ୍ତ୍ର ଏକେବାରେ of the people, for the people, by the people, ତେଣୁ ତୁଣ୍ଡବାଇଦ ମାତ୍ର । ଏକମାତ୍ର ସତ ଅବଶ୍ୟ, ବାଇ ଦି ପିପ୍ଲ, କାହିଁକିନା, ଲୋକ ଭୋଟ୍‌ଦେଉଚନ୍ତି, ବାକି କଥାଦୁଇଟା ଭୋଟ୍‌ଦେବାପାଇଁ ପ୍ରରୋଚନା । ଜନସାଧାରଣଙ୍କ ଏଇ ଇଚ୍ଛା ବଳରେ ତ ମ୍ୟାକ୍‌କାର୍ଥୀ ଜାପାନରେ ତାଣ୍ଡବ କରିଚି କି ଜର୍ଜବୁସ୍ କରିଚି ଇରାକ୍‌ରେ ! ଅଧିକାଂଶ ଆମେରିକାନ୍ ନାଗରିକ ନଚାହିଁଲେ, ଏତେଟଙ୍କା ଖର୍ଚ୍ଚକରିପାରିବନାହିଁ କି ସୈନ୍ୟସାମନ୍ତ ପଠାଇପାରିବନାହିଁ

ବିଦେଶଙ୍କୁ ପ୍ରଶାସନ । ମିଲ୍ ଅବଶ୍ୟ ଭାବିଚନ୍ତି, ଶିକ୍ଷା ବଳରେ ଲୋକଙ୍କ ଦାୟିତ୍ୱବୋଧ, ସମ୍ମାନବୋଧ ଓ ସ୍ୱାଧୀନତାପ୍ରୀତି ବଢ଼ାଇଦେଇହେବ । ସଂକୀର୍ଣ୍ଣ ଗୋଷ୍ଠୀସ୍ୱାର୍ଥ ଯେ ତା ଫଳରେ ବଢ଼ିଯାଇପାରେ, ହିତବାଦୀ (ଇଉଟିଲିଟାରିଆନ୍)ଙ୍କ ମନକୁ ଛୁଇଁନାହିଁ । ପ୍ରକାରଭେଦ ଯେ ଶିକ୍ଷାକୁ କରିପାରେ ପ୍ରଚ୍ଛରସର୍ବସ୍ୱ ବା ସ୍ୱାର୍ଥପ୍ରଣୋଦିତ, ଭାବିପାରିନାହାଁନ୍ତି ହିତବାଦୀ । କୋଉଥିରେ ସମାଜର ମଙ୍ଗଳ, ସେ ବିଚ୍ଛର ଆସିବାକଥା ସାଧାରଣ ଶିକ୍ଷାବ୍ୟବସ୍ଥାରୁ । ବିଚ୍ଛର, ମାନେ ମୂଲ୍ୟବୋଧ, ଆସିପାରେ ସ୍ଥିତ ଅବସ୍ଥାର କଠୋର ସମୀକ୍ଷାରୁ । ସ୍ଥିତ ଅବସ୍ଥାର କ୍ରିଟିସିଜ୍ମ କଥା ଭାବିଚନ୍ତି, କାହିଁକିନା, ନାଗରିକଜୀବନର ବଡ଼ଅଂଶଟା ରହୁଚି ରାଷ୍ଟ୍ରର ଅକ୍ତିଆର୍ ବାହାରେ; ରହୁଚି ବୋଲି, ସେଇ ବୃହତ୍ତର ଅଂଶ ପ୍ରତିରୋଧ ସୃଷ୍ଟିକରିପାରେ ଦୁଷ୍ଟପ୍ରଶାସନ ବିରୋଧରେ । ମିଲ୍ଙ୍କ ବହୁ ପରେ ଆନ୍ତନିଓ ଗ୍ରାମ୍‌ସି ବୃହତ୍ତର ଅଂଶକୁ ନାମିତକରିଚନ୍ତି ସିଭିଲ୍ ସୋସାଇଟି (ସୁଶୀଳ ସମାଜ) ଓ ଅମଲା-ପୁଲିସ୍-ଅଦାଲତ ସମ୍ୱଳିତ ପ୍ରଶାସନକୁ ରାଜନୀତିକ ସମାଜ (ପଲିଟିକ୍ୟାଲ୍ ସୋସାଇଟି) । ମସୃଣ ଏଇ ଚିତ୍ର ଊନବିଂଶଶତକର ଉତ୍ପାଦନ । ସଙ୍ଗେସଙ୍ଗେ ଟୋକ୍‌ଭିଲ୍ (୧୮୦୫-୫୯), ଫ୍ରାନ୍ସର ଉଦାହରଣ ଦେଇ ସାଧାରଣ ଜନତାର ଉନ୍ନତତା ଓ ସାଧାରଣ ଲୋକର ଅଜ୍ଞତା ପ୍ରତି କଟାକ୍ଷକରିଚନ୍ତି; କୁହାଯାଇପାରେ ଦକ୍ଷିଣପନ୍ଥୀ ଆପତ୍ତି । ପୁଣି ମାର୍କ୍ସ (୧୮୧୮-୮୩) ଉଠାଇଚନ୍ତି ଇଡିୟଲଜି ପ୍ରସଙ୍ଗ, କାହିଁକିନା, ରାଷ୍ଟ୍ର ଯୋଉ ଭାବାଦର୍ଶ ପୋଷଣକରେ, ତା ପୁଞ୍ଜିବାଦ; ଏବଂ ପୁଞ୍ଜିବାଦର ବାହନ ଭାବରେ ବ୍ୟବହାରକରେ ଧର୍ମ ଓ ସଂସ୍କୃତିକୁ । ଧର୍ମ ଓ ସଂସ୍କୃତି କିନ୍ତୁ ସିଭିଲ୍ ସୋସାଇଟିର ବ୍ୟାପାର; ଅଥଚ ରାଷ୍ଟ୍ର ଏକ ଦମନପ୍ରବଣ ଯନ୍ତ୍ରବିଶେଷ । ରାଷ୍ଟ୍ର କରୁଚି ଯେହେତୁ ଧନତନ୍ତ୍ର ରୂପକ ଇଡିୟଲଜିର ପ୍ରତିନିଧିତ୍ୱ, ଧନତନ୍ତ୍ରର ପ୍ରତିରୋଧ ଯଦି ସିଭିଲ୍ ସୋସାଇଟି ଭିତରୁ ବାହାରେ, ସଙ୍ଗତ କାରଣ ନଥିଲେ ବି, ସିଭିଲ୍ ସୋସାଇଟିକୁ ଦମନକରିବ ରାଷ୍ଟ୍ର । ଲଢ଼ାଇଟା ତେଣୁ ସୁଶୀଳ ସମାଜ ଓ ରାଜନୀତିକ ସମାଜ ମଧ୍ୟରେ ନୁହେଁ, ଲଢ଼ାଇଟା ଇଡିୟଲଜି ଓ ତାର ପ୍ରତିପକ୍ଷ ମଧ୍ୟରେ । ଶିକ୍ଷା ଯେହେତୁ ସଂସ୍କୃତିର ଅଙ୍ଗାଙ୍ଗୀ, ସେଠି ମଧ୍ୟ ପ୍ରତିଫଳିତ ହେବ ଇଡିୟଲଜିର ଏଇ ଦ୍ୱନ୍ଦ୍ୱ । ପୁଣି ସାମାଜିକ ମଙ୍ଗଳ ଯେହେତୁ ସ୍ୱଚ୍ଛ କୋଉ ପ୍ରତ୍ୟୟ ନୁହେଁ, ରାଷ୍ଟ୍ରଯନ୍ତ୍ର ଯୋଉ ଇଡିୟଲଜିକୁ ସିଭିଲ୍ ସୋସାଇଟି ଉପରେ ଶିକ୍ଷାସଂସ୍କୃତି ବାଟଦେଇ ଲଦିଦେବାକୁ ଚ୍ଛହିଁବ, ସାଧାରଣଲୋକର ସେଥିରୁ ନିସ୍ତାରନାହିଁ । ତେଣୁ ରାଷ୍ଟ୍ରର ଅବଲୁପ୍ତି ହିଁ ହେବ ସାଧାରଣଲୋକର ଅଭିଳାଷ । ଏ, ଅବଶ୍ୟ, ନିଜେ ଗୋଟିଏ ଆଇଡିୟଲଜି; କିନ୍ତୁ ଯୋଉ କଥାଟା ଏଠି ସ୍ପଷ୍ଟ, ତା ହେଲା, ମତାମତ ଯୁକ୍ତିଗ୍ରାହ୍ୟ ହେଲେସୁଦ୍ଧା, ଏବଂ ତା

ସାଧାରଣଲୋକର ମତାମତ ହେଲେସୁଦ୍ଧା, ଅଧିକାଂଶ କ୍ଷେତ୍ରରେ କାମକରିବ ଗୋଷ୍ଠୀସ୍ୱାର୍ଥ । ଗୋଷ୍ଠୀ ମାନେ ମାର୍କ୍ସଙ୍କ ଦୃଷ୍ଟିରେ, 'ଶ୍ରେଣୀ' । ଶ୍ରେଣୀର ପରିଧି ନିରୂପଣକରାଯାଏ ଉତ୍ପାଦନପ୍ରକ୍ରିୟାରେ ଯେକୌଣସି ଲୋକଗୋଷ୍ଠୀର ଆପେକ୍ଷିକ ଅବସ୍ଥାନ ନିରିଖରେ । ଇଉରୋପର ଗଣତନ୍ତ୍ର ତାଙ୍କୁ ଦିଶିଥିଲା ସତେଅବା ନବୋତ୍ଥିତ ବୁର୍ଜୋୟାଶ୍ରେଣୀର ହାତବାରିସୀ! 'ମଣିଷର ସ୍ୱାଧୀନତା' ଦ୍ୱାହିଦେଇ, ଉତ୍ପାଦନ-ବଣ୍ଟନ ଭିତରୁ ମୁନାଫା ଦୋହନର ସ୍ୱାଧୀନତା ଖୋଜୁଚି ସେତେବେଳେ ବୁର୍ଜୋୟା । ଇକୋଆଲିଟି ବା ସାମ୍ୟ କହିଲେ ବୁଝାଇଚି ତେଣୁ ଆଇନ୍ ଦୃଷ୍ଟିରେ ସମାନତା । ଆଇନ୍ ପ୍ରଣୟନକରିଚି ରାଷ୍ଟ୍ର; ଏବଂ କାଳକ୍ରମେ ଜଣାପଡ଼ିଚି, ଆଇନ୍‌ଗତ ସମାନତା ପ୍ରୟୋଗକରି ସୁଦ୍ଧା ବ୍ୟକ୍ତି-ବ୍ୟକ୍ତି ଭିତରେ ଆର୍ଥିକ ସାମ୍ୟ ରକ୍ଷାକରିପାରୁନାହିଁ ରାଷ୍ଟ୍ର । ଅର୍ଥାତ୍, ବୁର୍ଜୋୟା-ରାଷ୍ଟ୍ର ଅଧୀନରେ ନିର୍ବିତ୍ତ ଶ୍ରମଜୀବୀ ପୂର୍ଣ୍ଣମାତ୍ରାରେ ଆଇନ୍‌ଦତ୍ତ ସାମ୍ୟ (=ରାଜନୀତିକ ସ୍ୱାଧୀନତା) ଭୋଗ କରିପାରିନାହିଁ । ପ୍ରତିବନ୍ଧକ ହୋଇଚି ସଂପଦଶାଳୀ ଶ୍ରେଣୀର ଆଇଡିୟଲଜି, କାହିଁକିନା, ଧନତାନ୍ତ୍ରିକ ଦେଶର ନାଗରିକ ମନକୁ ଏ ଆଇଡିୟଲଜି ନାନାଦିଗରୁ ଆକ୍ରମଣକରେ । ସାଂସ୍କୃତିକ ପ୍ର୍ୟାକ୍‌ଟିସ୍ ଭିତରଦେଇ, ଶିକ୍ଷାବ୍ୟବସ୍ଥା ଭିତରଦେଇ, ଆପାତଃ ରାଜନୀତିମୁକ୍ତ ସାମାଜିକ କ୍ରିୟାକଳାପ ଭିତରଦେଇ, ଖବରକାଗଜ-ରେଡିଓ ଭିତରଦେଇ, ଧର୍ମାନୁଷ୍ଠାନରୁ ପ୍ରଚରିତ ଉଦ୍‌ବୋଧନ ଭିତରଦେଇ, ନିର୍ବାଚନ ଇସ୍ତେହାର ଭିତରଦେଇ, ବିରାମହୀନ ଏ ଆକ୍ରମଣ ।

ଏତଦ୍‌ସତ୍ତ୍ୱେ ମାର୍କ୍ସ ଭାବିଚନ୍ତି ଯୁକ୍ତିଗ୍ରାହ୍ୟ ଆବେଦନ ଦ୍ୱାରା ସାଧାରଣ ଲୋକଙ୍କ ପାଖରେ ମଙ୍ଗଳ କି ବାଟରେ ସମ୍ଭବପର, ସେକଥା ପହଞ୍ଚାଇହେବ । ଅର୍ଥାତ୍, ଏକମାତ୍ର ଶ୍ରେଣୀହୀନ ସମାଜରେ, ବାସ୍ତବ ଅବସ୍ଥାକୁ ବିବେଚନାକରି ସମତା ସ୍ଥାପନକରିହେବ; କାହିଁକିନା, ଶ୍ରେଣୀଭେଦ ଓ ତଦ୍‌ପ୍ରସୂତ ବିଦ୍ୱେଷ ନଥିଲେ, ସ୍ୱାଧୀନତା କି ସମତା ଦାବି ପ୍ରତିହତ ହେବନାହିଁ । ଶ୍ରେଣୀଭେଦ ମାନେ, ସାମାଜିକଉତ୍ପାଦନ ବନ୍ଦୋବସ୍ତରେ ବିଭିନ୍ନ ବର୍ଗର ଆପେକ୍ଷିକ ଉଚ୍ଚ-ନୀଚ ଅବସ୍ଥାନ; କୃଷିରେ ଯେପରି ଜମିଦାର-ମୂଲିଆ, ମହାଜନ-ଖାତକ; କଳକାରଖାନାରେ ଯେପରି ମାଲିକ-ଶ୍ରମିକ ଇତ୍ୟାଦି । ମାତ୍ର, ଯୁକ୍ତିଗ୍ରାହ୍ୟ ଆବେଦନ ଦ୍ୱାରା ଶାସକଶ୍ରେଣୀକୁ କ୍ଷମତାରୁ କାଢ଼ିଦେଇହେବ ବୋଲି ଭାବିନାହାଁନ୍ତି ଜମାରୁ । ଯେପରି, ଭାରତର ସ୍ୱାଧୀନତା-ଦାବି ଥିଲା ନିଶ୍ଚୟ ଯୁକ୍ତିଯୁକ୍ତ, କିନ୍ତୁ ଯୁକ୍ତିର ଆବେଦନ କଣ ଇଚ୍ଛେହେଲେ ଟଳାଇପାରିଚି ଇଂରେଜ୍‌କୁ? ଆପଣା ସୁବିଧା-ଅସୁବିଧା ବିଚାରକରି ବେଳକାଳ ଉଣ୍ଡି ଯାଇଚନ୍ତି ବାହୁଡ଼ି । ଶାସକଶ୍ରେଣୀକୁ କ୍ଷମତାଚ୍ୟୁତ କରିପାରିବେ ସେଇଲୋକ ଧନତାନ୍ତ୍ରିକ ଉତ୍ପାଦନବ୍ୟବସ୍ଥା ଯାହାଙ୍କ ପରିଶ୍ରମ ବିନା ତିଷ୍ଠିପାରିବନାହିଁ; ଏବଂ କ୍ଷମତାରୁ

ବୁର୍ଜୋୟାକୁ ଯଦି ହଟାଇପାରିବେ, ସର୍ବାଧିକ ଉପକୃତ ହେବେ ଯୋଉଲୋକ ।

ଗଣତନ୍ତ୍ରର ସମର୍ଥକ ଅନ୍ୟାନ୍ୟ ଭାବୁକ ସମାଜାଶ୍ରିତ ମଣିଷଙ୍କ ଭିତରେ ଶ୍ରେଣୀପାର୍ଥକ୍ୟକୁ ଗୁରୁତ୍ୱଦେଇନାହାଁନ୍ତି; ସବୁଯାକ ମଣିଷ ତାଙ୍କ ଦୃଷ୍ଟିରେ 'ଗଣ', ଯୋଉ ଗଣ କୋଉ ବ୍ୟକ୍ତିବିଶେଷ ନୁହେଁ; ତା ପାଖରୁ ଯୁକ୍ତି ପ୍ରତ୍ୟାଶା ଅବାସ୍ତବ ପ୍ରସ୍ତାବ । ଗଣସମାଜ ତ ଖାଲି ବ୍ୟକ୍ତିବିଶେଷର ସମଷ୍ଟି ନୁହେଁ, ଜମାୟେତ୍‌ରେ ସାମିଲ୍ ହେବା ମାତ୍ରକେ ବ୍ୟକ୍ତିବିଶେଷ ଯୁକ୍ତିପ୍ରବଣତା ସାଙ୍ଗକୁ, ସ୍ୱାଧୀନତା ସାଙ୍ଗକୁ ସଂଯମ ବି ହଜାଇଦିଏ; ମନୁଷ୍ୟତ୍ୱର ଦୃଢ଼ତା ଶିଥିଳ ହୋଇଯାଏ । ନିରୀହ ଓ ଶାନ୍ତ ମଣିଷ ଗଣସମାବେଶରେ ପଶିବାକ୍ଷଣି କାଣ୍ଡଜ୍ଞାନଶୂନ୍ୟ ହୋଇ ଭଙ୍ଗାରୁଜା କରେ । ଜନତାର ବୁଦ୍ଧି-ବିବେକ ତେଣୁ ଯେକୌଣସି ବ୍ୟକ୍ତିବିଶେଷର ବୁଦ୍ଧିବିବେକ ଅପେକ୍ଷା ନିକୃଷ୍ଟ । ଜନତା ହାତରେ ଶାସନଭାର ଛାଡ଼ିଦେବା ତେଣୁ ନିର୍ବୋଧତା ।

ଶ୍ରେଣୀ କିନ୍ତୁ ଜନତା ବା ମାସ୍ ନୁହେଁ । ଅଧିକନ୍ତୁ, ଭାରତର ଜନତା ତ ଆପାମର ସ୍ୱାଧୀନତା-ସଂଗ୍ରାମୀ । ତଥାପି ସଂଶୟ ରହିଯାଏ, ଶାସନକ୍ଷମତା କା ହାତରେ ନ୍ୟସ୍ତହେବା ଉଚିତ ? ଦଳେ କୁହନ୍ତି, ଗ୍ରୀସ୍‌ରେ ଯେମିତି ପେରିକ୍ଲିଜ୍, ବିଶେଷ ଗୁଣାନ୍ୱିତ ସେଭଳି ଲୋକଙ୍କୁ ନିର୍ବାଚିତକରି, ତାଆରି ହାତରେ ଛାଡ଼ିଦିଆଯାଉ ଶାସନ ଦାୟିତ୍ୱ; ଏକମାତ୍ର ସର୍ତ୍ତ ନିର୍ବାଚନ ଅନୁଷ୍ଠିତହେବ ନିୟମିତ, ଅନ୍ୟଥା, ସାଧାରଣଲୋକର ସାମ୍ୟ ଓ ସ୍ୱାଧୀନତା ବିପନ୍ନ ହୋଇପାରେ । ଆଉଦଳେ ପଚାରନ୍ତି, ସାଧାରଣଲୋକ କଣ ସତକୁ ସତ ସାମ୍ୟ କି ସ୍ୱାଧୀନତା ସକାଶେ ଉଦ୍‌ବିଗ୍ନ ? ଗୁଣନିର୍ବିଶେଷରେ ସେ ଅଧିକାର କଣ ଯାହାକୁ-ତାହାକୁ ଦିଆଯାଇପାରେ ? ବୁଦ୍ଧି, ଶକ୍ତି, ପରାର୍ଥପରତା-ସବୁଥିରେ ଇତରବିଶେଷ ରହିଚି; ଅନ୍ୟକୁ ଶାସନକରିବା ଅଧିକାର ସେଇଭଳି ବିଚକ୍ଷଣ ଆଉ ଉଦାର ଲୋକ ପାଇବାକୁ ହକ୍‌ଦାର । ଗଣତାନ୍ତ୍ରିକ ରୀତିରେ ନିର୍ବାଚନ କରାଗଲେ ସ୍ୱାର୍ଥପର ଦୁଷ୍ଟଲୋକ ବି ସର୍ବସାଧାରଣକୁ ନାନାଦି କୌଶଳରେ ପ୍ରତାରିତକରି କ୍ଷମତାରୂଢ଼ ହୋଇପାରିବେ । ସେ ସମ୍ଭାବନାକୁ ରହିତକରିବାକୁ ହେଲେ ଏଲିଟ୍ ହିଁ ଯୋଗ୍ୟ ବିବେଚିତହେବା ଦରକାର, ବିଶେଷତଃ ଏଇ କାରଣରୁ ଯେ, ରାଜନୀତିକ ଜୀବନର ଅକାଟ୍ୟ ସତ୍ୟ ହେଲା, ମୁଷ୍ଟିମେୟ ଲୋକ ବହୁଲୋକଙ୍କୁ ଶାସନକରିବେ; ଗଣତନ୍ତ୍ରରେ ତାର ବ୍ୟତ୍ୟୟ ହେବ ତେବେ କାହିଁକି ? କିନ୍ତୁ, ସେ ଏଲିଟ୍ ଯଦି ହୁଏ ଫ୍ୟାସିଷ୍ଟ ? ଅଥବା ଧର୍ମାନ୍ଧ ? ପ୍ରଶ୍ନ ତେଣୁ: 'ଗଣ'କୁ ବାଦ୍‌ଦେଇ ଖାଲି ଗୋଷ୍ଠୀ (=ଏଲିଟ୍)କୁ ନେଇ ଗଣତନ୍ତ୍ର ତିଆରିହୋଇପାରେ କି ନାହିଁ ?

ବାସ୍ତବ କ୍ଷମତାରାଜନୀତି, ତତ୍ତ୍ୱବିଚାରର କ୍ଷେତ୍ର ନୁହେଁ, ହୋଇପାରେନା । ଆପାତଃ ଦୃଷ୍ଟିକୁ ମନେହୁଏ 'ଜନାଦେଶ', 'ଜନସ୍ୱାର୍ଥ' ବିବାକ ବାଗାଡ଼ମ୍ବର; ଏଲିଟ୍

ଆସୁ କି ଉଦାର ଆସୁ କ୍ଷମତାକୁ, ତା ପରମାୟୁ ଓ ଦୃଢ଼ତା ନିର୍ଭରକରେ ଜନତାଜନାର୍ଦ୍ଦନର ପସନ୍ଦ-ଅପସନ୍ଦ ଉପରେ । ଜନତାର ଗର୍ଜନ ତେଣୁ ଉଚ୍ଚାରିତହୁଏ ସାଧାରଣତଃ ରାଜନୀତିର ରଙ୍ଗମଞ୍ଚ ଉପରୁ; ତାତ୍ତ୍ୱିକଙ୍କ ସଭାକକ୍ଷରୁ ନୁହେଁ । ଚୀନ୍ ପାଖରୁ ଯୁଦ୍ଧରେ ହାରିଯିବା ଉତାରୁ ସେ ଗର୍ଜନ ଶୁଣିଚନ୍ତି ନେହ୍ରୁ, ଇମର୍ଜେନ୍ସି ଲଦିଦେବା ଉତାରୁ ସେ ଗର୍ଜନ ଶୁଣିଚନ୍ତି ଇନ୍ଦିରା, ବଫର୍ସ କେଲେଙ୍କାରି ଓ ଶିଖ୍‌ନିଧନ ତାଣ୍ଡବ ଉତାରୁ ସେ ଗର୍ଜନ ଶୁଣିଚନ୍ତି ରାଜୀବ । ପରିଣତି ହୋଇଚି, ତିନିପୁରୁଷର ଅକାଳ ମରଣ । କୋଉଠି ଜନତାର ଆସ୍ଥାହରାଇବା କାରଣରୁ, ଆଉ କୋଉଠି ଜନତାର ରୋଷାଗ୍ନିରେ ପୋଡ଼ିହୋଇ । ଏକନାୟକତ୍ୱ, ସର୍ବହରାର ହେଉ କି ଫ୍ୟାସିଷ୍ଟର ହେଉ, ଅମଳପାଇନାହିଁ ତେଣୁ ଇଉରୋପରେ । ମାତ୍ର ଆମେରିକା କଥା ଦୋସରା । ତାଙ୍କ ଦୃଷ୍ଟିରେ ରାଜନୀତି ଗୋଟାଏ 'ବିଜ୍ଞାନ' ! ଅର୍ଥାତ୍, ତତ୍ତ୍ୱଭିତ୍ତିକ ନୁହେଁ, ପର୍ଯ୍ୟବେକ୍ଷଣ ଭିତ୍ତିକ । ସେ ପର୍ଯ୍ୟବେକ୍ଷଣରୁ ହୁଏତ ତତ୍ତ୍ୱ ମଧ୍ୟ ବାହାରିଚି; ଯେପରି, ବହୁକେନ୍ଦ୍ରିକତା ବା ପ୍ଳୁରାଲିଜ୍ମ । କେନ୍ଦ୍ର ତେଣୁ ଗଣମାନସ ନୁହେଁ, ବିଭିନ୍ନ ସ୍ୱାର୍ଥଗୋଷ୍ଠୀର ଇଚ୍ଛା-ଅନିଚ୍ଛା । ସ୍ୱାର୍ଥଗୋଷ୍ଠୀ ଯେ ଶ୍ରେଣୀସ୍ୱାର୍ଥର ପ୍ରତିନିଧି, ଅତି ଦରକାରି ସେଇ କଥାଟା ଆଲୋଚିତ ହୁଏନା କୋଉଠି । ବୋଧହୁଏ ଏଇଥିପାଇଁ ଯେ, ଶ୍ରେଣୀ କହିଲେ ତ ଏକମାତ୍ର ବୁର୍ଜୋୟା, ପୁରା ପାଶ୍ଚାତ୍ୟ ଗୋଲାର୍ଦ୍ଧ ଉପରେ ଯାର ଆଧିପତ୍ୟ, ବିଦ୍ୱେଷ କି ସଂଗ୍ରାମ 'ବିଜ୍ଞାନ' ଭିତରକୁ ଫେରି ଆସିବ କାହିଁକି ?

ତେବେ, ସେମାନଙ୍କ ଧାରଣା, ରାଜନୀତି ଗୋଟାଏ ପ୍ରତିଯୋଗିତା କ୍ଷେତ୍ର; କ୍ଷମତାରେ ଯିଏ ଥାଉ, କୋଉନାକୋଉ ଗୋଷ୍ଠୀର ଉପକାର କି ଅପକାର କରିବାକୁ ବାଧ୍ୟ, ଜନମଙ୍ଗଳ ରାଷ୍ଟ୍ରରେ ସବୁରକମ ଗୋଷ୍ଠୀଙ୍କ ଉପକାର ଏକାବେଳକେ କାମ୍ୟ ! କାମ୍ୟ ତ ଅନେକ କଥା; ନିର୍ବାଚନରେ ଜିତିଆସିଲେ ତ କୋଉଟା କରିବ କି କରିବନାହିଁ, ବିଚାରକରିବ ! ଶ୍ରମଆଇନ୍ ବଦଳାଇଦେଲେ ମାଲିକଗୋଷ୍ଠୀର କ୍ଷତି ହେବ, ନବଦଳାଇଲେ ବିପୁଳ ସଂଖ୍ୟକ ଶ୍ରମଜୀବୀଙ୍କ ଭୋଟ୍ ହୋଇଯିବ ହାତଛଡ଼ା । ବିଦେଶୀ ପଣ୍ୟ ଉପରେ ତେଣୁ ଶୁଳ୍କ ଧାର୍ଯ୍ୟକରି ମାଲିକଗୋଷ୍ଠୀ ପାଇଁ ଅର୍ଥାଗମ ସୁଗମ କରିବାକୁ ପଡୁଚି । ନିଜ ନିର୍ବାଚନମଣ୍ଡଳୀର ମାତବର ଲୋକଙ୍କ ସ୍ୱାର୍ଥ ପ୍ରତି ମଧ୍ୟ ନଜର୍ ରଖିବାକୁ ପଡ଼େ । ତା ଛଡ଼ା, ନିର୍ବାଚନ ତ ଫୋକଟରେ କେହି ଜିତେନା; ଚାନ୍ଦାପାଇବାକୁ ବିଶେଷବିଶେଷ ସ୍ୱାର୍ଥଗୋଷ୍ଠୀକୁ ସନ୍ତୁଷ୍ଟକରିବାକୁ ପଡ଼େ; ଭଲ 'ପ୍ରେସ୍' ପାଇବାକୁ ବ୍ୟବସାୟୀଗୋଷ୍ଠୀର ଶରଣାପନ୍ନ ହେବାକୁ ହୁଏ, କାହିଁକିନା, ସମ୍ବାଦମାଧ୍ୟମ ହୋଇଯାଇଚି ସେମାନଙ୍କ କରତଳଗତ । ଅପକାର-ଉପକାର ଭିତରେ ସାମଞ୍ଜସ୍ୟ ରଖିବାକୁ ଚେଷ୍ଟା କରିପାରିବେ ତେଣୁ ପଲିଟିସିଆନ୍; ତେଣିକି ଯା ଭାଗରେ ଯା

ପଡ଼ିଲା, କି ମୂଳରୁ କିଛି ପଡ଼ିଲାନାହିଁ, ସେକଥାକୁ ଘାଣ୍ଟିଚକଟି ଲାଭନାହିଁ । ଅନ୍ୟ ଶବ୍ଦରେ, ଗଣତନ୍ତ୍ରର ଶାସକ ଜନକଲ୍ୟାଣ ରୂପକ ବିମୂର୍ତ୍ତ (ଆବ୍‌ଷ୍ଟ୍ରାକ୍ଟ) ଧାରଣା ଦ୍ୱାରା ପରିଚାଳିତ ହୁଏନା । ହିତବାଦୀ ଚାହାଁନ୍ତି 'ସର୍ବବୃହତ୍ ସଂଖ୍ୟାର ସର୍ବବୃହତ୍ ମଙ୍ଗଳ', ମାତ୍ର ସେକାମ କରିବାକୁ ଗଲେ, ନିର୍ବାଚନରେ ଜିତିବା ହୋଇଯିବ ଅଗ୍ରେ ଧାବତି ଧାବତି ! ନୀତି, ନ୍ୟାୟନୀତି, ସାମାଜିକ ନ୍ୟାୟ, ସଂଖ୍ୟାଲଘୁର ସୁରକ୍ଷା, ଧାରଣାଗୁଡ଼ାକର ଗଣତନ୍ତ୍ର ସହିତ ସମ୍ପର୍କ, ଉନ୍ନବିଂଶତକ ଶେଷହେବା ସଙ୍ଗେସଙ୍ଗେ ବେମାଲୁମ୍ ଶେଷହୋଇଯାଇଚି । ରାଜନୀତି କରିବାକୁ ଆସି, ଏଗୁଡ଼ାକୁ ନେଇ ଚକଟାଚକଟି କଲେ କହୁଣୀ ଖାଇବାକୁ ପଡ଼ିବ । କର୍ତ୍ତବ୍ୟ ସେଥିପାଇଁ କ୍ରମାଗତ ସଂଧିବିଗ୍ରହ ଏବଂ ଲୋକଙ୍କୁ କମିଉନିଜ୍ମ (ବ୍ୟକ୍ତିଗତ ସମ୍ପତ୍ତି ଲୋପ)ର ଭୟଦେଖାଇବା । ଭାରତର ଗଣତାନ୍ତ୍ରିକ ରାଜନୀତି, ସେମାନଙ୍କ ଦୃଷ୍ଟିରେ, politics of scarcity; ହାତୀଘୋଡ଼ା ଦେବୁଁ ବୋଲି ଲୋକଙ୍କୁ ଭୁଲାଇ ଭୋଟ୍‌ଯୋଗାଡ଼ । ସନ୍ଦେହ ନାହିଁ, ପର୍ଯ୍ୟବେକ୍ଷଣରୁ ପ୍ରାପ୍ତ ଏଇ ଅନ୍ତର୍ଦୃଷ୍ଟି ! ଦେଖିଚନ୍ତି, ସରକାର ପାଖରୁ କାମ ଆଦାୟକରିବାକୁ ନାନାଦି ପ୍ରେସର୍-ଗ୍ରୁପ୍ ଏଠି ସକ୍ରିୟ; ସେଥିରୁ ପାଞ୍ଚଟିକୁ ଅନ୍ତତଃ ଚିହ୍ନଟକରିଚନ୍ତି; ଯେପରି, କମ୍ୟୁନିଟି ଆସୋସିଏସନ୍‌ସ୍, ଅର୍ଥାତ୍ ଜାତି ଧର୍ମ ଓ ଭାଷା ଭିତ୍ତିରେ ସଂଗଠିତ ସଂସ୍ଥା; ଟ୍ରେଡ୍ ଇଉନିଅନ୍ ବା ଶ୍ରମିକସଂଘ; ଅର୍ଗାନାଇଜ୍‌ଡ୍ ବିଜିନେସ୍, ଅର୍ଥାତ୍ ଚାମ୍ବର୍ ଅବ୍ କମର୍ସ ଆଣ୍ଡ୍ ଇଣ୍ଡଷ୍ଟ୍ରି; ଆଗ୍ରାରିଆନ୍ ମୁଭ୍‌ମେଣ୍ଟସ୍, ଅର୍ଥାତ୍ କିଷାନ୍‌ସଭା; ଆଉ ଛାତ୍ରସଂଘ । ତାଙ୍କ କାମଦାମରୁ ଲକ୍ଷ୍ୟକରିଚନ୍ତି, ସରକାର ବାର୍‌ଗେନିଙ୍ଗ୍ ବା ଦରକଷାକଷିକୁ ଉପେକ୍ଷାକରନ୍ତି ସାଧାରଣତଃ । ଦରକଷାକଷି ମନ୍ତ୍ରଣା କକ୍ଷରୁ ଛିଟିକିପଡ଼ିଚି ତେଣୁ ରାଜପଥକୁ, ସ୍ଲୋଗାନ୍ ଛାଡ଼ି ରାସ୍ତାଉପରୁ ଇଟାପଥର ଫୋପାଡ଼ିଚନ୍ତି ପ୍ରତିପକ୍ଷ । ତାଙ୍କୁ ଦେଖି ରାଷ୍ଟ୍ରବିଜ୍ଞାନୀ କହିଚନ୍ତି, ଗଣତନ୍ତ୍ର ଏ ଭାବରେ ଦାନାବାନ୍ଧେନା; ଗଣତନ୍ତ୍ର ସର୍ବତ୍ର, ବିଶେଷତଃ ଆମେରିକାରେ, ଆଦାନପ୍ରଦାନ (ବାର୍‌ଗେନିଙ୍ଗ୍) ଉପରେ ଠିଆହୋଇଚି । ଭାରତବର୍ଷ ଅଭାବୀ ଦେଶ, ମାତ୍ର ଆଦାନ-ପ୍ରଦାନକୁ ଛାଡ଼ି ଗଣତନ୍ତ୍ର ବଞ୍ଚିରହିପାରେନା । ଏ ମତାମତ ଆମକୁ ତୃପ୍ତ ନକଲେ ବି, ଦ୍ୱିମତହେବା ଉଚିତନୁହେଁ ।

ବାର୍‌ଗେନିଙ୍ଗ୍ ପ୍ରତି ସରକାର ବିମୁଖ, କାହିଁକିନା, କଂଗ୍ରେସନେତୃତ୍ୱ ନିଜକୁ ମନେକରେ ଦେଶର ଖୋଦ୍ ଅଭିଭାବକ, ଦେଶବାସୀ ମାନି ଚଳିବେ, ପ୍ରତିବାଦ କରିବେନାହିଁ; କାହିଁକିନା, ଦେଶକୁ 'ଆଧୁନିକ'କରିବା ବ୍ରତ ଆଉ କେହି ନେଇନାହାଁନ୍ତି । ତେଣୁ, politics in India represents more than a set of conflicts between interest groups...something far deeper: the conflict between the forces for modernisation and those against

it, ଜାଣିଲେ କେମିତି ? କଂଗ୍ରେସ୍ ତ ସ୍ୱାଧୀନତା ଆଗରୁ ଯେମିତି ଥିଲା, ଏବେ ବି ନେହ୍ରୁ-ପରିବାର ଅଭିଭାବକତ୍ୱରେ ସେମିତି ରହିଚି ନାନାଦି ଉପଦଳର ସମନ୍ୱୟ । ପୂର୍ବତନ ରାଜାଜମିଦାର ଅଛନ୍ତି, ବ୍ୟବସାୟୀ ଅଛନ୍ତି, ସ୍ୱନାମଧନ୍ୟ ଓକିଲ ଅଛନ୍ତି, ଅବସରପ୍ରାପ୍ତ ଶିକ୍ଷକ ଅଛନ୍ତି; ବୃହତ୍ ଅମଲା, ଝଣ୍ଡାଧାରୀ ଛାତ୍ରଛାତ୍ରୀ, ଟ୍ରେଡ୍‌ଇଉନିଅନ୍ ଲିଡର୍, ହିନ୍ଦୁ-ମୁସଲ୍‌ମାନ୍-ଖ୍ରୀଷ୍ଟାନ୍, ଆଦିବାସୀ-ହରିଜନ, ନାହିଁ ଫେର୍ କିଏ ? ଅର୍ଥାତ୍, ହିନ୍ଦୁସମାଜ ଭଳି; ଭଗବାନ୍ ମାନିଲେ ହିନ୍ଦୁ, ନମାନିଲେ ବି ହିନ୍ଦୁ, ହରେକ ରକମ ଭଗବାନ ମାନିଲେ ସୁଦ୍ଧା ହିନ୍ଦୁ ! ସେହିପରି, ଗାନ୍ଧି କି ନେହ୍‌ରୁଙ୍କ ମତାମତକୁ କୁର୍ଣ୍ଣିସ୍ ଜଣାଇପାରିଲେ କଂଗ୍ରେସ୍‌ଭିତରେ ସମାଜବାଦୀ, ସାମ୍ୟବାଦୀ, ସାମ୍ପ୍ରଦାୟିକତାବାଦୀ, ସାମ୍ପ୍ରଦାୟିକତାବିରୋଧୀ, ପୁଞ୍ଜିବାଦୀ, ପୁଞ୍ଜିବିରୋଧୀ, ଗଣତନ୍ତ୍ରରେ ବିଶ୍ୱାସୀ, ଗଣତନ୍ତ୍ରରେ ଅବିଶ୍ୱାସୀ- ସମସ୍ତଙ୍କ ପାଇଁ ଆସନ ରହିଚି । ଖାଲି ଗୋଟିଏ ଜାଗାରେ ଅଡୁଆ ହୋଇପାରେ: ଯଦି କେହି କହେ, ଅହିଂସାରେ ବିଶ୍ୱାସକରେନା କି ବିଶ୍ୱାସକରେନା ଲିବରାଲାଇଜେସନ୍-ପ୍ରାଇଭେଟାଜାଇସେନ୍-ଗ୍ଲୋବାଲାଇଜେସନ୍ ଭଳି ଅମାନବିକ ଅର୍ଥନୀତିରେ । ଅଥଚ, ରାଜ୍ୟସରକାରମାନେ କେତେ ସହଜରେ କେନ୍ଦ୍ରର ପରିକଳ୍ପନାକୁ ବାଟବଣା କରିଦେଉଚନ୍ତି, ସକାଳୁ ଖବରକାଗଜ ଖୋଲିଲେ ବିବରଣ ମିଳିବ ମାଳମାଳ । ମାତ୍ର ମାର୍କିନୀ ବିଶେଷଜ୍ଞ କହୁଚନ୍ତି, କଜିଆ ଲାଗିଚି ପ୍ରାଚୀନପନ୍ଥୀ ଆଉ ନବ୍ୟପନ୍ଥୀଙ୍କ ଭିତରେ ! ତାହେଲେ ଧନୀଙ୍କ ସାଙ୍ଗରେ ନିର୍ଦ୍ଧନର କଜିଆ ଲାଗିନାହିଁ ନିଶ୍ଚୟ ! ନଜରରେ ପଡ଼ିନାହିଁ, କାହିଁକିନା, ଯୋଉ ଦଳ କି ଉପଦଳ କ୍ଷମତାରେ ଥାଉ, ଅସଲ କ୍ଷମତା ରହିଚି ବୁର୍ଜୋୟା ହାତରେ । ଅବଶ୍ୟ, ଧନୀ-ନିର୍ଦ୍ଧନ ମାପକାଠିରେ ଖାଲି ଭାରତର ଶ୍ରେଣୀବିନ୍ୟାସକୁ ବୁଝିବା ଦୁଷ୍କର; କିନ୍ତୁ ରାଜନୀତିକୁ ବିଜ୍ଞାନ ସ୍ତରକୁ ଉଠାଇବାକୁ ହେଲେ, ଶ୍ରେଣୀ ବିଷୟରେ ଚୁପ୍‌ରହିବା ହେବ ଚରମ ଅସାଧୁତା, କାହିଁକିନା, ଆଧୁନିକତା ସପକ୍ଷରେ କି ବିପକ୍ଷରେ ଯିଏ ତୁଣ୍ଡଫିଟାଉ, ତାର ଶ୍ରେଣୀପରିଚୟ ବୁର୍ଜୋୟା ଛଡ଼ା ଆଉକିଛି ହୋଇପାରେନା । ତଥାପି ପାର୍ଥକ୍ୟ ଆଖିରେ ପଡ଼ିବ; ଆଧୁନିକୀକରଣର ଯିଏ ପକ୍ଷପାତୀ, ନିର୍ଦ୍ଧନ ହାତକୁ ପ୍ରତ୍ୟକ୍ଷଭାବେ କ୍ଷମତା ଦେଇଦେବାକୁ କୁଣ୍ଠିତ ନୁହେଁ । କଂଗ୍ରେସ୍, ମୁହଁରେ ନିଶ୍ଚୟ ଆଧୁନିକତା ସପକ୍ଷରେ ନାନାଦି ଭାଷଣଦିଏ; କିନ୍ତୁ ସେ ଆଧୁନିକତା ଗରିବକୁ କ୍ଷମତାଅର୍ପଣ ନୁହେଁ, ଅନ୍ତତଃ ପ୍ରତ୍ୟକ୍ଷଭାବେ ନୁହେଁ ।

ସ୍ୱାଧୀନତାପ୍ରାପ୍ତିର ଅବ୍ୟବହିତରେ ବୁର୍ଜୋୟା ଭିତରେ ମଧ୍ୟ ବଡ଼ରକମ ଆଲୋଡ଼ନ ଦେଖାଦେଇଚି ଜମିଜମା ଉପରୁ ସାମନ୍ତତାନ୍ତ୍ରିକ ଅଧିକାର ଉଠାଇଦେବା କାରଣରୁ । କଂଗ୍ରେସ୍ ସରକାର ବି ଉଠାଇଦେଇଚି ମଧ୍ୟସ୍ୱତ୍ୱାଧିକାର । ବିତ୍ତବାନ

ଶ୍ରେଣୀ ଆଜି ଆଉ ଭୂମ୍ୟଧିକାରୀ ନୁହେଁ, ମାତ୍ର ପୂର୍ବାପେକ୍ଷା ଅଧିକ ଶ୍ରେଣୀବଦ୍ଧ । ସରକାରୀ ବ୍ୟୟରୁ ସବୁଠୁଁ ବେଶି ଲାଭପାଉଚନ୍ତି ସେଇମାନେ; ଭବିଷ୍ୟତରେ ମଧ ପାଇବେ, ମାତ୍ର ଉନ୍ନୟନ ପରିକଳ୍ପନାକୁ ଏପରି ବିନ୍ଦୁକୁ ଆସିବାକୁ ଦେବେନାହିଁ (ଦେଇନାହାଁନ୍ତି), ସତକୁ ସତ ବୁର୍ଜୋୟାର କ୍ଷମତାଉପରେ ଯୋଉଠି ହାତପଡ଼ିବ; ଯେପରି, ଜାତୀୟକରଣ ଦ୍ୱାରା ବୁର୍ଜୋୟାର କ୍ଷମତା କମିଯାଏନା, ବରଂ ଲୋକସାନ କରୁଥିବା ଶିଳ୍ପସଂସ୍ଥାକୁ ହାତମୁଠାରେ ପାଇଲେ ମାଲିକଶ୍ରେଣୀର ମୁନାଫା ବଢ଼େ; ହେଲେସୁଦ୍ଧା, ଜାତୀୟକରଣ ଜାଗାରେ ଅଗ୍ରାଧିକାର ପାଉଚି ପ୍ରାଇଭେଟାଇଜେସନ୍ । ଏ ଦିଗରୁ ସହର ଆଉ ମଫସଲ ଭିତରେ ପ୍ରଭେଦ ନାହିଁ; ଗାଁଗହଳିରେ ଏକ୍ଷଣି କୃଷିଉତ୍ପାଦନ ଭିତରକୁ ଧନତାନ୍ତିକ ପନ୍ଥାପଦ୍ଧତି ପଶିଗଲାଣି, ସଙ୍ଗେସଙ୍ଗେ ସହରର ବୁର୍ଜୋୟା ସାଙ୍ଗରେ ଗ୍ରାମୀଣ ବୁର୍ଜୋୟାର ସ୍ୱାର୍ଥର ଦ୍ୱନ୍ଦ୍ୱ ଆସ୍ତେଆସ୍ତେ କମିଯାଉଚି । ଅର୍ଥାତ୍, ଶ୍ରେଣୀ ଭାବରେ ବୁର୍ଜୋୟା ହୋଇଚି ପୂର୍ବାପେକ୍ଷା ଐକ୍ୟବଦ୍ଧ ଓ ସମୃଦ୍ଧ । କାହିଁକିନା, ସମାନ୍ତର ଗତିରେ ନିର୍ଦ୍ଧନ ପଡ଼ିରହିଚି ଯଥେଷ୍ଟ ପଛରେ, ତାର ଗତିବେଗ ମଧ ଶ୍ଳଥ । ବୋଲିବା ବାହୁଲ୍ୟ, ଧନୀ-ନିର୍ଦ୍ଧନ ଉଭୟର ଜୟଯାତ୍ରା ଏକାସାଙ୍ଗରେ ସମ୍ଭବପର ଗଣତନ୍ତ୍ରର ଲକ୍ଷ୍ୟହୁଏ ଯଦି ଉପଯୁକ୍ତ ପରିକଳ୍ପନା ମାଧ୍ୟମରେ ସାମ୍ୟସାଧନ । ମାତ୍ର, ନିର୍ବିତ୍ତ କହୁଚୁଁ କାହାକୁ? ସବାତଳେ ତ ଭୂମିହୀନ ମୂଲିଆ, ପ୍ରତି ପାଞ୍ଚଜଣ ଭାରତବାସୀଙ୍କ ଭିତରେ ଜଣେ । ତା ପଛକୁ କ୍ଷୁଦ୍ରଋଷୀ, ସରକାର ଯାହାକୁ କହୁଚନ୍ତି ପ୍ରାନ୍ତବାସୀ, ପ୍ରତି ଋରିଜଣ ଭାରତବାସୀଙ୍କ ଭିତରେ ଜଣେ । ପ୍ରାନ୍ତବାସୀ, କାହିଁକିନା, ଋଣଗ୍ରସ୍ତ ଓ ଅର୍ଦ୍ଧଭୁକ୍ତ । ତାଙ୍କ ପଛକୁ ସହରାଞ୍ଚଳର ବେକାର; ଯୁବକ, ପ୍ରୌଢ଼ ଓ ବୃଦ୍ଧ, ବେକାରଙ୍କ ପଛକୁ, ଯାହାଙ୍କୁ କହୁଚୁଁ, କାଜୁଆଲ୍ ଲେବର୍ । ଶ୍ରମଆଇନ୍ କି ବୀମା ଏମାନଙ୍କୁ ଲାଗୁହୁଏନା; ଏମାନେ ଗଣତନ୍ତ୍ରର ଜଞ୍ଜାଳ, ଦେଶର ପ୍ରାୟ ଅର୍ଦ୍ଧାଂଶ । ସବୁ ରାଜନୀତିକ ଦଳ ଏଇ ନିର୍ଦ୍ଧନ ଅଂଶଟାକୁ ନିର୍ବାଚନବେଳେ କାମରେ ଲଗାନ୍ତି, କିନ୍ତୁ କ୍ଷମତା ଦେବାକୁ ଋହାଁନ୍ତିନାହିଁ । ସଂପଦଶାଳୀ ଲୋକଙ୍କ ବସବାସ ସହରରେ; ତା ମାନେ ନୁହେଁ ଯେ, ସହର-ମଫସଲ ବିଭେଦ ହିଁ ନିର୍ବିତ୍ତକୁ ଅବହେଳାର କାରଣ । ଅସଲ କାରଣ, ଧନୀନିର୍ଦ୍ଧନ ବିଭେଦ । ଆଇନ୍‌କାନୁନ୍‌ର ସୁବିଧା ଭୋଗକରନ୍ତି ସାଧାରଣତଃ ସହରବାସୀ ସ୍ୱଚ୍ଛଳ ଲୋକ । ଆମେରିକାନ୍ କିନ୍ତୁ ଭାବିବାକୁ ଅଭ୍ୟସ୍ତ, କୋଉହେଲେ ବିଭେଦ ଗୋଷ୍ଠୀସ୍ୱାର୍ଥ ଦ୍ୱାରା ତିଆରିହୋଇନାହିଁ । କିନ୍ତୁ, ରାଜନୀତି ଯେହେତୁ ଦର୍ଶନଶାସ୍ତ୍ରର ଆଲୋଚନା ନୁହେଁ, ସ୍ୱାର୍ଥର ନଗ୍ନ ସଂଘାତକୁ ପ୍ରତ୍ୟକ୍ଷକରିବା ଜରୁରୀ; ତା ହେଲେଯାଇ, ବିଶ୍ଳେଷଣ ହୋଇପାରିବ ବିଜ୍ଞାନପଦବାଚ୍ୟ; ବୁଝାପଡ଼ିବ ଜନସାଧାରଣଙ୍କ ସ୍ୱାର୍ଥ ସହିତ ଶ୍ରମିକ କି ଛାତ୍ରଙ୍କ ସ୍ୱାର୍ଥସଂଘାତ କେବଳ ଉତ୍ତପ୍ତ ମସ୍ତିଷ୍କର

କଳ୍ପନା । ସବୁରକମ ଗୋଷ୍ଠୀସ୍ୱାର୍ଥକୁ ସମାନ ମନେକରିବା ଗୋଟାଏ ଆ୍ୟାକାଡେମିକ୍ ବିଭ୍ରାନ୍ତ, କାହିଁକିନା, ଜାତି-ଧର୍ମ-ଭାଷାଗତ ବିଭେଦ ଥାଉ କି ନଥାଉ, ସବୁରକମ ଦଙ୍ଗାହେଙ୍ଗାମର ମୂଳ କାରଣ ଯେ ଅର୍ଥନୀତିକ, ଗୁଣ୍ଡା ବେକାର ନିମ୍ନମଧ୍ୟବିତ୍ତ, ଯେକୌଣସି ଲୋକକୁ ପଚାରିଲେ, ସମର୍ଥନ ମିଳିବ । ଗୋଷ୍ଠୀସ୍ୱାର୍ଥତତ୍ତ୍ୱ ସେ ପ୍ରମାଣ ଦାଖଲ କରିପାରିବନାହିଁ । ପୁଣି, ଏପରି ଅନେକ ସଂଘାତ ପରିଦୃଷ୍ଟ, ଯା ସକଳ ଅର୍ଥରେ ଏକ ପରିବର୍ତ୍ତନଶୀଳ ସମାଜର ଗତିଶୀଳତାର ଲକ୍ଷଣ, ଯଦିଓ ସେଭଳି ସଂଘାତ ଦୀର୍ଘଜୀବୀ ହୁଏନା । ଗଣତାନ୍ତ୍ରିକ ରାଜନୀତିରେ ନୀତି ବା ଆଦର୍ଶର କୌଣସି ସ୍ଥାନନାହିଁ କହିବା ତେଣୁ ଆଦୌ ସୁବିଚାରନୁହେଁ, କାହିଁକିନା, ଲୋକ ତାହେଲେ ଗୋଷ୍ଠୀଚକ୍ର କି କୋଷ୍ଠିଚକ୍ର ଛଡ଼ା ବୁଦ୍ଧିବୃତ୍ତିର ଲକ୍ଷଣ ଦେଖାନ୍ତେ ନାହିଁ । ପରିବର୍ତ୍ତନର ସାଧନା, ସନ୍ଦେହ ନାହିଁ, ଏକ ଜଟିଳ ଆବର୍ତ୍ତ; ମାତ୍ର ପରିବର୍ତ୍ତନ ଯେହେତୁ ସୃଷ୍ଟିର ନିୟମ, ଏବଂ ଗଣତନ୍ତ୍ର ବାହାରିଚି ସେଇ ନିୟମରୁ, ତାର ଭବିତବ୍ୟ ମଧ୍ୟ ନିଶ୍ଚିତ । ଅର୍ଥାତ୍, ଗଣତନ୍ତ୍ର ବି ବଦଳିବ ।

x x x x x x x

ପ୍ରସଙ୍ଗତଃ, ପ୍ରଲେତାରିଏତ୍ ଓ ବୁର୍ଜୋୟା ଶବ୍ଦଯୁଗଳକୁ ବିଶଦକରିବା ଦରକାର, କାହିଁକିନା, ଆଲୋଚନା ଭିତରକୁ ବାରମ୍ବାର ପଶିଆସିଥିଲେ ସୁଦ୍ଧା, ଶବ୍ଦ ଯୋଡ଼ାକ ବହିରାଗତ । ପ୍ରଲେତାରିଏତ୍‌କୁ ଓଡ଼ିଆରେ କହୁଚନ୍ତି ସର୍ବହରା; ମାତ୍ର ଏ ବ୍ୟଞ୍ଜନା ନିର୍ଭୁଲ୍ ନୁହେଁ, କାହିଁକିନା, ମାର୍କ୍ସ କହିଚନ୍ତି, ପ୍ରଲେତାରିଏତ୍ ହରାଇବ ଗୋଡ଼ର ବେଡ଼ି ଆଉ ପାଇବ ପୃଥିବୀ ଉପରେ ଅଧିକାର; ଅର୍ଥାତ୍, ଆଉକିଛି ନଥିଲେ ବି ତାର ଶିକୁଳି ଅଛି । ମୂଳ ଲ୍ୟାଟିନ୍ ଶବ୍ଦ ପ୍ରଲେତାରିୟୁସ୍, ଫରାସୀରେ ହୋଇଚି ପ୍ରଲେତାରିଏତ୍ । କ୍ରୀତଦାସ ନୁହେଁ, କିନ୍ତୁ ନିୟମିତ ରୋଜଗାର ନାହିଁ, ସେଭଳି ନିମ୍ନଶ୍ରେଣୀର ଲୋକଙ୍କୁ ରୋମ୍‌ସାମ୍ରାଜ୍ୟରେ କହୁଥିଲେ ପ୍ରଲେତାରିୟୁସ୍ । ନୂଆମାତ୍ରା ଆହରଣକରିଚି ଊନବିଂଶ ଶତକର ଆଦ୍ୟପର୍ବରେ; ମାତ୍ର ତା ଆଗରୁ ୧୮୪୮ରେ ସେମାନଙ୍କ ଉଦ୍ଦେଶ୍ୟରେ ମାର୍କ୍ସ ଲେଖିଚନ୍ତି *ମ୍ୟାନିଫେଷ୍ଟୋ* । ଚାଳିଶବର୍ଷ ଉତାରୁ, ଏଙ୍ଗେଲ୍ସ ସଂଜ୍ଞା ନିରୂପଣକରିଚନ୍ତି: 'ଆଜିକାଲିକା (୧୮୮୮) ଗତରଖଟି ପେଟପୋଷୁଥିବା ମଣିଷ, ନିଜର କିଛିହେଲେ ଉତ୍ପାଦନ ସାମଗ୍ରୀ ନାହିଁ ବୋଲି ବଞ୍ଚିରହିବା ପାଇଁ ଦିହବଳ (ଶ୍ରମଶକ୍ତି) ବିକିବାକୁ ବାଧହୁଏ ।' ମାନେ, ନିଃସମ୍ବଳ ମଣିଷ, ଆଉକିଛି ବିକିପାରେନା ବୋଲି ଦିନମଜୁରୀ ବିନିମୟରେ ପରିଶ୍ରମ ବିକେ । କେହି ତାକୁ ବାଧକରେନା, ସ୍ୱେଚ୍ଛାରେ ବିକେ, କାହିଁକିନା, ଗଣତନ୍ତ୍ରରେ ସେ ତ ସ୍ୱାଧୀନ ନାଗରିକ, ଆଇନ୍ ଦୃଷ୍ଟିରେ ସମାଜର ଅବଶିଷ୍ଟ ଲୋକଙ୍କ ସାଙ୍ଗରେ

ତୁଲ୍ୟମୂଲ୍ୟ । ପାର୍ଥକ୍ୟ କେବଳ ସଂପତ୍ତିଗତ, ତାର ସୋରିଷପ୍ରମାଣ ସଂପତ୍ତି ନାହିଁ; ଅର୍ଥାତ୍, ସେକାଳର କାରଖାନାର ଶ୍ରମିକ । ଶ୍ରମିକ କାରଖାନା ଚଳାଏନା, ଚଳାଏ ଯନ୍ତ୍ରପାତି; ମାତ୍ର ଯନ୍ତ୍ରପାତିର ବିକଳ୍ପ ଶ୍ରମିକ । ସେଥିପାଇଁ, ପ୍ରଯୁକ୍ତିର ଉନ୍ନତିହେଲେ ଶ୍ରମିକର ହୁଏ ଛଟାଇ । କାରଖାନାର ମାଲିକ ତେଣୁ ମଣିଷ ଓ ଯନ୍ତ୍ର ଭିତରେ ପାର୍ଥକ୍ୟ ବୁଝେନା, କାହିଁକିନା, ଉଭୟକୁ ମୂଲ୍ୟ ବିନିମୟରେ କିଣିବାକୁ ପଡ଼ୁଚି ବଜାରରୁ । ମାଲିକକୁ କୁହାଯାଇଚି ବୁର୍ଜୋୟା । ସ୍ପଷ୍ଟତଃ, ଇଂଲଣ୍ଡରେ ଶିଳ୍ପବିପ୍ଳବ ଘଟିଯିବା ସଙ୍ଗେସଙ୍ଗେ ଅଳ୍ପସମୟ ଭିତରେ ମେସିନ୍‌ଲଗାଇ ବିପୁଳପରିମାଣ ପଣ୍ୟଉତ୍ପାଦନକୁ ଲକ୍ଷ୍ୟକରି ଶ୍ରମିକର ନିତ୍ୟଅବମାନନାରେ ବ୍ୟଥିତହୋଇଚନ୍ତି ମାର୍କ୍ସ, ଏବଂ ଦେଖିଚନ୍ତି, ଏ ରକମ ଉତ୍ପାଦନର ମୁଖ୍ୟ ଉଦ୍ଦେଶ୍ୟ ମୂଳଧନ ବଢ଼ାଇବା ସକାଶେ ମୁନାଫା ସଂଗ୍ରହ । ସେ ମୁନାଫା ସୃଷ୍ଟିକରିବାକୁ ମଣିଷର ପରିଶ୍ରମ ଯଦିଓ ମେସିନ୍ ପରି ଅପରିହାର୍ଯ୍ୟ, ଶ୍ରମିକ କିନ୍ତୁ ନିଜ ବଜାରଦରଠୁଁ ପଇସାଟିଏ ବେଶିପାଏନା । ବରଂ, ମେସିନ୍ ଯଦି ତା କାମ କରିଦେଇପାରେ, କାମରୁ ତାକୁ ବାହାରକରିଦିଆହୁଏ; ଅକସ୍ମାତ୍ ନିଃସମ୍ବଳ ଶ୍ରମଜୀବୀ ହୁଏ ଦାଣ୍ଡର ଭିଖାରି । ମାର୍କ୍ସଙ୍କ ଲେଖାଲେଖିରେ, ସେଥିପାଇଁ, ପ୍ରାଧାନ୍ୟ ପାଇଚନ୍ତି ଶ୍ରମ ଓ ଶ୍ରମିକ, କାହିଁକିନା, ଏଭଳି ଶ୍ରମବିନ୍ୟାସର ଚାଳିକାଶକ୍ତି ଯେହେତୁ ଶୋଷଣ, ସାମାଜିକ ସାମ୍ୟ ସ୍ଥାପନକରିବାକୁ ଦରକାର ଉତ୍ପାଦନ–ଧରଣର ଆମୂଳ ପରିବର୍ତ୍ତନ । ଏବଂ ନିଜ ପ୍ରାତ୍ୟହିକ ଅଭିଜ୍ଞତାରୁ ଯେହେତୁ ସବୁଠୁଁ ବେଶି ବୁଝିପାରିବ ଶୋଷଣର ସ୍ୱଭାବ, ଶୋଷଣକୁ ବିରୋଧକରିବାକୁ ଶ୍ରମଜୀବୀ ହିଁ ହେବ ଅଗ୍ରଣୀ । ଏବଂ ସଂପତ୍ତିହୀନତା ଯେହେତୁ ତାର ଜୀବନବ୍ୟାପୀ ବଞ୍ଚନାର କାରଣ, ସଂପତ୍ତିବାନ୍ (=ବୁର୍ଜୋୟା) ହାତରେ କ୍ଷମତା ରହିଥିବାଯାଏଁ ଶୋଷଣର ଯେ ବିରାମନାହିଁ ଏଇ ଉପଲବ୍ଧିରୁ ଆସିବ ପ୍ରତିକାର ଖୋଜିବା ପ୍ରେରଣା । ପୁଣି, ସଂପତ୍ତିହୀନତାଭଳି ପରିବ୍ୟାପ୍ତ ପ୍ରପଞ୍ଚ ଯୋଉ ସାମ୍ୟଚେତନାକୁ ଜନ୍ମଦେବ, ସେଥିରୁ ଉଦ୍‌ଗତହେବ ଶୋଷଣହୀନ (=ଶ୍ରେଣୀହୀନ) ସମାଜର ଧାରଣା, ସେଇ ଧାରଣାର ବଶବର୍ତ୍ତୀ ଶ୍ରେଣୀ, ସଂଖ୍ୟାଲଘୁ ବୁର୍ଜୋୟାକୁ ଅତିକ୍ରମକରି ହୋଇପାରିବ ସମାଜସ୍ୱାର୍ଥର ଏକମାତ୍ର ପ୍ରତିନିଧି । ସାକାର ହୋଇନାହିଁ ଏ ପ୍ରତ୍ୟାଶା; ମାତ୍ର ସୋଭିଏତ୍ ଋଷିଆରେ ପ୍ରତିଷ୍ଠିତହୋଇଚି ସମାଜତନ୍ତ୍ର; ହୋଇଚି ବୋଲି, ଲେନିନ୍ କଳ୍ପନାକରିଚନ୍ତି ପ୍ରଲେତାରିଏତ୍‌ର ଏକନାୟକତ୍ୱ ।

ଧନତନ୍ତ୍ରର ଉତ୍ଥାନପର୍ବରେ ରାଷ୍ଟ୍ରଶକ୍ତିର ନିୟନ୍ତା ଥିଲେ ସଂପଦଶାଳୀ ଶ୍ରେଣୀ(ବୁର୍ଜୋୟା); ସମାଜ ଉପରେ ସେ ଶ୍ରେଣୀର କର୍ତ୍ତୃତ୍ୱ ବଢ଼ିଚି ସିନା, କମିନାହିଁ ତିଳେମାତ୍ର । କମିନାହିଁ ବୋଲି, ବାହାରକୁ ଦିଶୁଚି ଗଣତନ୍ତ୍ରର ଜାକଜମକ, ମାତ୍ର

ରାଷ୍ଟ୍ରଗଠନର ସଂଗଠନସୂତ୍ର ରହିଚି ବସ୍ତୁତଃ କ୍ୟାପିଟାଲିଜ୍ମ । ଏକନାୟକତ୍ୱ ବା ଡିକ୍ଟେଟରସିପ୍ ଯଦି କୋଉହେଲେ ଶ୍ରେଣୀର ପ୍ରତିଷ୍ଠାପାଇଥାଏ ପୃଥିବୀରେ, ତେବେ ତା ସଂପଦଶାଳୀ ଶ୍ରେଣୀର । ଲେନିନ୍ ଭାବିଥିଲେ ବିପ୍ଳବୋତ୍ତର ରସିଆରେ ରାଷ୍ଟ୍ରଗଠନର ସଂଗଠନସୂତ୍ର ହେବ ନିର୍ବିତ୍ତଶ୍ରେଣୀର ଏକନାୟକତ୍ୱ । ପ୍ରକୃତରେ ଯା ହୋଇଚି, ତାକୁ ପାର୍ଟିର ଏକନାୟକତନ୍ତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ମଣିଷସମାଜ ଇତିହାସଗତିରେ କେମିତି ଆଗକୁ ଯାଇଚି, ବୁଝାଇବାପାଇଁ ପର୍ଯ୍ୟାୟକ୍ରମ ସୂଚନାକରିଥିଲେ ମାର୍କ୍ସ; ପ୍ରିମିଟିଭ୍ କମିଉନିଜ୍ମ-ସ୍ଲେଭରି-ଫିଉଡାଲିଜ୍ମ-କ୍ୟାପିଟାଲିଜ୍ମ-ସୋସାଲିଜ୍ମ-କମିଉନିଜ୍ମ । ସୋସାଲିଜ୍ମର ମୂର୍ତ୍ତି ସ୍ୱଚକ୍ଷୁରେ ଦେଖାଯାଇ ପାରିନାହାନ୍ତି; ବଞ୍ଚିଥିଲେ, କହିଥାନ୍ତେ ଚତୁର୍ଥ ଓ ପଞ୍ଚମ ମଝିରେ ଆଉଏକ ଅର୍ନ୍ତବର୍ତ୍ତୀ ଇତିହାସପର୍ଯ୍ୟାୟକୁ କୁହାଯାଇପାରେ 'ବିପ୍ଳବୋତ୍ତର-ସୋସାଲିଜ୍ମ' ! ଭାରତ ଯୋଉ ସମାଜବ୍ୟବସ୍ଥା ଭିତରଦେଇ ଗତିକରୁଚି, ସେ ପର୍ଯ୍ୟାୟକୁ ଚିହ୍ନଟକରିବାକୁ ଲେଖାଯାଇପାରେ 'ମୋତେ କଣ ମିଳିବ ?' । ସେଥିପାଇଁ, ପ୍ରଶ୍ନ ଉଠୁଚି, ପ୍ରଲେତାରିଏତ୍ କଣ ସମଗୁଣବିଶିଷ୍ଟ କୋଉ ନିର୍ଦ୍ଦିଷ୍ଟ ଶ୍ରେଣୀ ? ତାର କଣ ଭିନ୍ନ କୋଉ ସଚେତନତା ଅଛି, ଯା ପ୍ରକୃତ ଶ୍ରେଣୀଚେତନା ? ଯଦି ଥାଏ, ତା ଭିତରେ ଦକ୍ଷ-ଅଦକ୍ଷ, ଭେଦାଭେଦ ରହିଚି ନା ନାହିଁ ? ଉଦୀୟମାନ ଉତ୍ପାଦନବ୍ୟବସ୍ଥା ଓ ଅସ୍ତଗାମୀ ଉତ୍ପାଦନବ୍ୟବସ୍ଥା ଯୋଉ ଦୁଇପ୍ରକାର ଶ୍ରମଜୀବୀଶ୍ରେଣୀକୁ ଜନ୍ମଦେଇଛି, ଉଭୟଙ୍କ ଚେତନା କଣ ତୁଲ୍ୟମୂଲ୍ୟ ? ଜାତି-ବର୍ଣ୍ଣ-ଧର୍ମ-ଭାଷା କଣ ଶ୍ରମଜୀବୀ ଚେତନାକୁ, ଏବଂ ସେଇ ସୂତ୍ରରେ, ଐକ୍ୟକୁ ବିଭାଜିତ କରୁନାହିଁ ? ଆଳୁବସ୍ତା ଭିତରେ ଆଳୁଗୁଡ଼ାକର ସ୍ଥିତି ଅଲଗା ଅଲଗା, ସେଇ ବିଭିନ୍ନତା ସତ ନା ବସ୍ତାଟାର ଏକକ ଅଭିନ୍ନ ସ୍ଥିତି ସତ ? ବିଚକ୍ଷଣ ପ୍ରଶ୍ନ; ମାତ୍ର ଚେତନାର ଉତ୍ସ ଏକମାତ୍ର ଗଣସଂଗ୍ରାମ ! ବ୍ୟକ୍ତିଗତ ଜୀବନନିର୍ବାହରୁ ଶ୍ରେଣୀଚେତନା ତିଆରିହୁଏନା, ବିଭିନ୍ନ ଶ୍ରେଣୀ ଭିତରେ ଗମନାଗମନ ଲାଗିରହିଥାଏ, ସମଷ୍ଟିର ଭାଗ୍ୟନିରୂପଣ ସକାଶେ ଏକାସାଙ୍ଗରେ ଲଢ଼ାଇ କରୁକରୁଁ ଦ୍ୱିଧାହୀନ ଯୋଉ ଚେତନା ଭିନ୍ନ ଭିନ୍ନ ବାଇଓଗ୍ରାଫିକୁ ଏକସୂତ୍ରରେ ବାନ୍ଧିପକାଏ, ତାକୁ ହିଁ ମାର୍କ୍ସ କହିଚନ୍ତି ଶ୍ରେଣୀଚେତନା । ଚେତନା ତେଣୁ ସଂସାରରୁ ଆସେନା, ଆସେ ସଂଗ୍ରାମରୁ ।

ଏ ସଂଗ୍ରାମରେ ପ୍ରଲେତାରିଏତ୍‌ର ପ୍ରତିପକ୍ଷ 'ବୁର୍ଜୋୟା' । ଫରାସୀ ଶବ୍ଦ; ଆକ୍ଷରିକ ଅର୍ଥ; ମୁକ୍ତ ନଗରର ମୁକ୍ତ ବାସିନ୍ଦା । ମୁକ୍ତନଗର ମାନେ, ସେଇ ସହର ଯା ସାମନ୍ତତନ୍ତ୍ରର ଶାସନ/ଅନୁଶାସନରୁ ସ୍ୱାଧୀନ । ମୁକ୍ତବାସିନ୍ଦା ମାନେ କାହାରି ଅଧୀନ କି ଅଧସ୍ତନ ନୁହେଁ; ନଗରପରିଚାଳନାରେ ଅଂଶନେଇପାରେ । ସୂଚନାକରୁଚି

ଦୁଇପ୍ରକାର ଦୂରତ୍ୱ, ସାମନ୍ତପ୍ରଭୁ ପାଖରୁ, ପୁଣି କୃଷକ କି କାରିଗର ପାଖରୁ । ଏ ସ୍ୱାତନ୍ତ୍ର୍ୟ ବୁର୍ଜୋୟାର ସ୍ୱୋପାର୍ଜିତ; ଆସ୍ତେଆସ୍ତେ ବ୍ୟବସାବାଣିଜ୍ୟ ହୋଇଚି ତାର ନିର୍ବାଚିତ ପେସା । ବୈଶ୍ୟକୁ ଅଭିଜାତ ଭୂସ୍ୱାମୀ ଅବଜ୍ଞାକରିଚନ୍ତି ଚିରକାଳ । ଚତୁର୍ବର୍ଣ୍ଣରେ ଯେମିତି କେବଳ ଶୂଦ୍ର ଉପରେ ରହିଚି ବୈଶ୍ୟ । ମାତ୍ର ମାର୍କ୍ସଙ୍କ ଲେଖାଲେଖିରେ ଏ ଶବ୍ଦର ନବତର ବ୍ୟାଖ୍ୟା ଅତିଶୟ ଉଜ୍ଜ୍ୱଳ, ଦ୍ର.*ଜର୍ମନ୍ ଆଇଡିଅଲଜି* (୧୮୪୪-୪୫) । ବୁର୍ଜୋୟା ଏଠି ବିପ୍ଳବୀ, କାହିଁକିନା, ସତରଶତକ ଇଂଲଣ୍ଡରେ ଘଟିଯାଇଚି ଦୁଇଦୁଇଟା ରାଷ୍ଟ୍ରବିପ୍ଳବ; ୧୬୪୦ ଦଶକରେ ପାର୍ଲାମେଣ୍ଟ୍ ଓ ରଜା ଭିତରେ ଯୁଦ୍ଧ, ଯେତେବେଳେ ପ୍ରଥମ ଚାର୍ଲସ୍‌ଙ୍କ ମୁଣ୍ଡ କାଟିପକାନ୍ତି ଅଲିଭର୍ କ୍ରୋମ୍‌ୱେଲ୍ (କବି ମିଲ୍‌ଟନ୍ ଥିଲେ ତାଙ୍କ ଏକାନ୍ତ ସହଯୋଗୀ); ୧୬୮୮ ବେଳକୁ ମୃତରଜାଙ୍କ ସାନପୁଅ ଦ୍ୱିତୀୟ ଜେମ୍‌ସ୍ ରୋମାନ୍ କ୍ୟାଥଲିକ୍ ଧର୍ମକୁ ଇଂଲଣ୍ଡକୁ ଫେରାଇଆଣିବା ପାଇଁ ପୁଣି ଉପେକ୍ଷା କରିଚନ୍ତି ପାର୍ଲାମେଣ୍ଟକୁ । ମାର୍କ୍ସ ଦେଖିଚନ୍ତି, ପାର୍ଲାମେଣ୍ଟ୍ ବନାମ ରାଜା, ପ୍ରୋଟେଷ୍ଟାଣ୍ଟ୍ ବନାମ ରୋମାନ୍ କ୍ୟାଥଲିକ୍; ବାସ୍ତବ ବିବେଚନାରେ, କ୍ଷୟିଷ୍ଣୁ ସାମନ୍ତତନ୍ତ୍ର ବିରୋଧରେ ଉଦୀୟମାନ ବୁର୍ଜୋୟା ଶ୍ରେଣୀର ହିଁ ସଂଘାତ, ଏବଂ ସେଇ ସୂତ୍ରରେ, ୧୭୮୯ର ଫରାସୀ ବିପ୍ଳବକୁ ଅଭିହିତକରିଚନ୍ତି 'ବୁର୍ଜୋୟା ବିପ୍ଳବ'; ମାନେ, ବୁର୍ଜୋୟାଶ୍ରେଣୀର ଆଧିପତ୍ୟର ଉନ୍ମେଷ । କି ରକମ ସେଇ ଶ୍ରେଣୀଚେତନା ? କାହିଁକିନା, ସାମ୍ୟ-ମୁକ୍ତି-ମୈତ୍ରୀ ଭଳି ଆଇଡିଆ ତ ବାହାରିଚି ସେଇ ବିପ୍ଳବରୁ ! କିନ୍ତୁ ମାର୍କ୍ସ କହିଚନ୍ତି ବୁର୍ଜୋୟାର ବିପ୍ଳବ ଯୋଉଠି ଅପରିଣତ ଅଥବା ଅସମାପ୍ତ, ପୁରୁଣା ସାମନ୍ତଶ୍ରେଣୀ ସେଠି ରାଷ୍ଟ୍ରଶକ୍ତିର ଅଂଶୀଦାର ହେବା ଅବଧାରିତ; ଯେପରି, ୧୮୪୮ ଇଉରୋପ୍‌ର ବିଭିନ୍ନ ଅଞ୍ଚଳରେ, ପ୍ରତିକ୍ରିୟାଶୀଳ ଶାସନଯନ୍ତ୍ରରେ ବୁର୍ଜୋୟାକୁ ଶିଖଣ୍ଡିକରି ପ୍ରକୃତ କର୍ତ୍ତୃତ୍ୱ ରଖିଚି ସାମନ୍ତଶ୍ରେଣୀ । ତଥାପି ଏକମାତ୍ର ବୁର୍ଜୋୟା ହିଁ ହଟାଇଦେଇଚି ସାମନ୍ତଶ୍ରେଣୀକୁ, ପ୍ରଲେତାରିଏତ୍ ପାରିନାହିଁ କି ଚେଷ୍ଟାକରିନାହିଁ । ବୁର୍ଜୋୟା ହୋଇଚି ତେଣୁ ଚଳମାନ ପ୍ରତିବାଦୀ-ଚେତନାର ଧାରକ ଓ ବାହକ । କିନ୍ତୁ ତା'ର ସାମାଜିକ ଅବସ୍ଥାନ ଅଭିଜାତ ଆଉ ନିମ୍ନବର୍ଗ ମଝିରେ । ବୁର୍ଜୋୟା, ସେଥିପାଇଁ ଏକ ମଧ୍ୟବର୍ତ୍ତୀ ଶ୍ରେଣୀ; ମଧ୍ୟବର୍ତ୍ତୀ ହୋଇଥିବାରୁ ନମନୀୟ ଓ ସୁବିଧାସଂଧାନୀ; ହାତେମାପି ଋଖଣ୍ଡେଋଲିବା ତାର ଶ୍ରେଣୀଧର୍ମ, ଯେପରି ଭାରତର ମଧ୍ୟବିତ୍ତ, ବୁର୍ଜୋୟା ବିପ୍ଳବକୁ ତେଣୁ ଗ୍ରାମ୍‌ସି କହିଚନ୍ତି ନିସ୍ତେଜ ବା ପ୍ୟାସିଭ୍, ଯେପରି ଗାନ୍ଧିଙ୍କ ସତ୍ୟାଗ୍ରହ । ଭାରତର ମଧ୍ୟବିତ୍ତ ସ୍ୱଷ୍ଟତଃ ପରମୁଖାପେକ୍ଷୀ, ଅନ୍ଧଅନୁକରଣ ତାର ମଜ୍ଜାଗତ । ମାଓ ଜେ-ଦଙ୍ଗ୍ ଏମାନଙ୍କୁ ଦୁଇବର୍ଗରେ ଭାଗକରିଚନ୍ତି: କମ୍ପ୍ରାଡର୍ ଓ ଜାତୀୟ । କମ୍ପ୍ରାଡର୍ ବଣିକଶ୍ରେଣୀ, ପରାନୁକରଣରେ ଧୁରନ୍ଧର; ଜାତୀୟ

ବୁର୍ଜୋୟା ପରାନୁକରଣ ପ୍ରତି ବିମୁଖ । ମାଓଙ୍କ ଧାରଣା, ଦେଶଭିତରେ ସମାଜ-ପରିବର୍ତ୍ତନର ଧାରା ଯଦି ବଳଶାଳୀ ହୁଏ, କମ୍ପ୍ରାଡର୍ ଋହିଁବ 'ଜାତୀୟ' ହେବାକୁ; କିନ୍ତୁ ପରିବର୍ତ୍ତନଧାରା ଯଦି ସ୍ତିମିତ ହୁଏ, କମ୍ପ୍ରାଡର୍ ବିଦେଶୀପୁଞ୍ଜିର ଦଲାଲିକରିବାକୁ ଉହ୍ଲାଇପଡ଼ିବ ଢେର୍ ଚଞ୍ଚଳ । ଏମାନଙ୍କ ଚରିତ୍ର ବହୁରୂପୀ; ଦେଶ ଭିତରେ ଏକ, ବିଦେଶରେ ଅନେକ ଓ ବିପରୀତ । ଇଂଲଣ୍ଡରେ ଯିଏ ରାଜତନ୍ତ୍ର କି ସାମନ୍ତତନ୍ତ୍ର ସାଙ୍ଗରେ ଲଢ଼ୁଚି, ସେଇ ପୁଣି ଆଫ୍ରିକା ଯାଇ ବାନ୍ଧିଆଣିଚି କ୍ରୀତଦାସ, କୃଷ୍ଣକାୟଙ୍କୁ କିଣାବିକାକରି ଗଢ଼ିଉଠିଚି ପ୍ରତିପତ୍ତିଶାଳୀ ବଣିକଗୋଷ୍ଠୀ; ଯୋଉ ଜେମ୍‌ସ୍ ମିଲ୍ ଓ ତସ୍ୟପୁତ୍ର ଜନ୍ ଷ୍ଟୁଆର୍ଟ ମିଲ୍ ସ୍ୱଦେଶରେ ପ୍ରଗତିବାଦୀ (=ଜାତୀୟ) ବୁର୍ଜୋୟାର ମୁଖପାତ୍ର, ସେଇ ପୁଣି ଭାରତରେ ଶ୍ୱେତାଙ୍ଗ ସ୍ୱୈରତନ୍ତ୍ରର ପ୍ରଧାନ ପ୍ରବକ୍ତା । ସାରା ଲାଟିନ୍ ଆମେରିକାରେ ଯେତେ ସ୍ୱେଚ୍ଛାଋରୀ ସାମରିକ ଶାସନ, ସବୁଯାକ ଦେଶୀୟ ବୁର୍ଜୋୟା ଓ ବିଦେଶୀ ପୁଞ୍ଜିର ଯୋଗଫଳ ! ଅର୍ଥାତ୍, ଦୁନିଆତମାମ ସାଧାରଣ ଲୋକର ଅଧିକାର ହରଣକୁ ମଦତ୍ ଯୋଗାଉଚି ବୁର୍ଜୋୟାଶ୍ରେଣୀ । ତାଙ୍କୁ ଉତ୍‌ଖାତ୍‌କରି ମାର୍କ୍ସ ଋହିଁଥିଲେ ଜଗତରେ ସମାଜତନ୍ତ୍ର ପ୍ରତିଷ୍ଠା । ତାଙ୍କ ଆଗରୁ ରୁସୋ ଭାବିଚନ୍ତି, ମୁକ୍ତିର ଆଲୁଅରୁ ସାଧାରଣଲୋକ ବଞ୍ଚିତହେଉଚି ଯତ୍ରତତ୍ର; ବୁର୍ଜୋୟାକେନ୍ଦ୍ରିକ ସମାଜବ୍ୟବସ୍ଥା ସେ ଆଲୁଅ ଦେଖାଇପାରୁନାହିଁ ବୋଲି, ବିକଳ୍ପର ସ୍ୱପ୍ନ ବଞ୍ଚିରହିବ ଚିରକାଳ ।

x x x x x x x

ଗଣତନ୍ତ୍ର ବି ବଦଳିବ- କୋଉ ପବିତ୍ର ପ୍ରତ୍ୟାଶା ନୁହେଁ, ପରିକଳ୍ପିତ ରାଜନୀତିକ ପ୍ରକ୍ରିୟା । କାହିଁକିନା, ଭୋଟ୍‌ଦେବା ପାଇଁ ଏକମାତ୍ର ଯୋଗ୍ୟତା ଏକ୍ଷଣି ବୟସ, ଅଠରବର୍ଷ ପୂରିବାମାତ୍ରକେ ତାଲିକାରେ ନାଁ ଉଠିବ: ଏଇ ବୟସର ଝିଅପୁଅଙ୍କ ସଂଖ୍ୟା ଜନସଂଖ୍ୟାର ଅଧାରୁ ବେଶି । ବାକି ଅଧକରୁ ଶିକ୍ଷିତ ସମ୍ଭ୍ରାନ୍ତ ଅଂଶଟା ଭୋଟ୍‌ଦେବାକୁ ଯାଆନ୍ତିନାହିଁ । ଟେଲିଭିସନ୍ ତ ଘରେଘରେ ! କ୍ରିକେଟ୍‌ଖେଳାଳି, ବିଦୂଷକ, ଅଭିନେତ୍ରୀ ଭୋଟ୍‌ପାଇବେନାହିଁ ତ, ପାଇବେ କ'ଣ ସାରଙ୍ଗଧର ଦାସ ? ତାମିଲ୍‌ନାଡୁରେ ସେଥିପାଇଁ ଟେଲିଭିସନ୍ ବଣ୍ଟାହେଉଚି ମାଗଣାରେ । ମାତ୍ର ବୁର୍ଜୋୟା ଦୃଷ୍ଟିରେ ଅଠରବର୍ଷିଆ ଏ ପିଲା, ବିବାକ ପରାଙ୍ଗପୁଷ୍ଟ, ପାଠଶାଠ ପଢ଼ିଚନ୍ତି, ଦରକାର ତାଙ୍କୁ କମ୍ପିଉଟର୍ କି ମ୍ୟାନେଜ୍‌ମେଣ୍ଟ୍ ଋକିରୀ । ଋକିରୀ ମିଳିଲେ ଯେକୌଣସି ଅପକର୍ମ କରିପାରିବେ ଅକ୍ଳେଶରେ; ଦେଶ-ବିଦେଶ, ଇତିହାସ-ଭୂଗୋଳ ବିବେଚନାଗୁଡ଼ାକ ତେଣୁ ଅବାନ୍ତର । କିନ୍ତୁ 'ମାର୍କେଟ୍' ତିଆରି ନହେଲେ, ଏତେ ଲୋକଙ୍କୁ ଋକିରୀବାକିରି ଦେବ କିଏ ? ସେଇ ମାର୍କେଟ୍ ତିଆରିକରିବାକୁ ଦରକାର 'ଡିଭେଲପ୍‌ମେଣ୍ଟ୍' ବା ଉନ୍ନୟନ । ସମ୍ପୂର୍ଣ୍ଣ ଅରାଜନୀତିକ କୃତ୍ୟସୂଚୀ । ଏ

କୃତ୍ୟସୂଚୀରେ ବେସରକାରୀ ସଂସ୍ଥା ପୁଞ୍ଜି ଲଗାନ୍ତି । ବେସରକାରୀ ଲୋକ ପରିଚାଳକ । ଦେଶର ପ୍ରାକୃତିକ ସମ୍ପଦ ଯେମିତି, 'ମାନବ ସମ୍ପଦ' ସେମିତି, ତାଙ୍କରି ନିର୍ଦ୍ଦେଶ ଓ ପରିକଳ୍ପନା ମୁତାବିକ୍ ବିନିଯୋଗ କରାହୁଏ । ରାଷ୍ଟ୍ର ଅବଶ୍ୟ ଫ୍ୟାସିଲିଟେଟର୍, ଅର୍ଥାତ୍ କାମଗୁଡ଼ାକ ଯେମିତି ନିର୍ବିଘ୍ନରେ ସମ୍ପନ୍ନ ହୋଇପାରିବ, ସେଇ ବନ୍ଦୋବସ୍ତ ଦାୟିତ୍ୱରେ । ଚାକିରିବାକିରି ବି ତାଙ୍କରି ହାତରେ, କାହିଁକିନା, ମାର୍କେଟ୍‌କୁ ସାମାଜିକ ଶୋଷଣର ମାଧ୍ୟମ ବୋଲି ରାଷ୍ଟ୍ର ମନେକରେନା; କରେନା ବୋଲି, ଶୋଷଣଅବଲୁପ୍ତି କାମରୁ ଇସ୍ତଫାଦେଇ ବାଛିଚି ଉନ୍ନୟନ । ନିୟନ୍ତକ ସଂଗଠନ ରାଷ୍ଟ୍ର ହେଉ କି ବେସରକାରୀ ପ୍ରତିଷ୍ଠାନ, କାମଟା ଯେହେତୁ ଆର୍ଥ-ସାମାଜିକ ପରିବର୍ତ୍ତନ, ରାଜନୀତିକ ଅଭିସନ୍ଧି ରହିବା କଥାନୁହେଁ । ଉନ୍ନୟନ ଆଉ ରାଜନୀତି ମଧ୍ୟସ୍ଥ ଆନ୍ତଃସମ୍ପର୍କ ଯେ ଆଗରୁ କେହି ଆଲୋଚନାକରିନାହିଁ, ତା ମଧ ନୁହେଁ; ଆଲୋଚନା-ସମାଲୋଚନା ଢେର୍ ହୋଇଚି । ମାତ୍ର ଗତ ପନ୍ଦରକୋଡ଼ିଏ ବର୍ଷ ଭିତରେ ଦୁନିଆଟା ବଦଳିଯାଇଚି ବେଜାଏ, ପୁରୁଣା ଧ୍ୟାନଧାରଣାଗୁଡ଼ାକୁ ନୂଆ ଏଇ ସମସ୍ୟା ପ୍ରେକ୍ଷିତରେ ପୁନର୍ବିଚାର ଏକ୍ଷଣି ଦରକାର; କାହିଁକିନା, ଉନ୍ନୟନ ହେଉ କି ରାଜନୀତି, ଅଥବା ସମାଜପରିବର୍ତ୍ତନ, କୋଉ ଗୋଟାକର ଚିରକାଳୀନ କି ଏକମାତ୍ରିକ ରୂପ ଇତିହାସରେ ଦେଖିବାକୁ ମିଳେନା । ଦେଖିବାକୁ ଯା ମିଳେ, ତା ନିୟତ ଅଦଳବଦଳ । ତେଣୁ, ପରିଚିତ ଚେହେରାଗୁଡ଼ାକ ପାଲଟିଯାଇଚି କି ନାହିଁ, ଆଉ ଯାଇଥିଲେ ସମାଜକୁ କେତେ ବା କିପରି ରୂପାନ୍ତରିତ କରିଚି, ସେଇ ଆକଳନରୁ ଦେଖିହେବ ଗଣତନ୍ତ୍ର ବଦଳିଚି ନା କ୍ଲ୍ୟାସିକାଲ୍ ଡେଫିନିସନ୍‌କୁ ଜାବୁଡ଼ିଧରି ଛିଡ଼ାହୋଇଚି ୧୯୪୭ରେ । ଉନ୍ନୟନ କହିଲେ, ବୁଝିବାକୁ ହେବ ଅବଶ୍ୟ ଅର୍ଥନୈତିକ ଉନ୍ନୟନ, ଏବଂ ତାର ସେଇ ନକ୍ସା, ଯା ପଚାଶଦଶକରେ ତିଆରିକରିଚନ୍ତି ଜବାହରଲାଲ୍ ।

ଦ୍ୱିତୀୟ ମହାଯୁଦ୍ଧ ଅବ୍ୟବହିତରେ ଏସିଆ-ଆଫ୍ରିକାର ଉପନିବେଶଗୁଡ଼ିକ ଯେତେବେଳେ ସ୍ୱାଧୀନ ଜାତିରାଷ୍ଟ୍ର ଭାବରେ ଆତ୍ମପ୍ରକାଶକଲେ, ପ୍ରାୟ ଏକାବେଳକେ ସମସ୍ତଙ୍କ ଭବିଷ୍ୟତକୁ ଉନ୍ନୟନର ଏଇ ନକ୍ସା କରିଚି ଆବୃତ, କାହିଁକିନା, ୧୯୪୯ରେ ମାର୍କିନ୍ ପ୍ରେସିଡେଣ୍ଟ୍ ହ୍ୟାରି ଟ୍ରୁମାନ୍ ରାଷ୍ଟ୍ରପତିଙ୍କ ଅଭିଭାଷଣରେ ଘୋଷଣାକରିଚନ୍ତି ଯେ ନୂଆ ଜାତି-ରାଷ୍ଟ୍ରଗୁଡ଼ିକର ଅଧିବାସୀ ଯେହେତୁ ସୀମାହୀନ ଦାରିଦ୍ର୍ୟ ଆଉ ପଶ୍ଚାଦ୍‌ପଦତାର ଶିକାର, ଖାଲି ଯୁକ୍ତରାଷ୍ଟ୍ର ନୁହେଁ, ସମଗ୍ର ପାଶ୍ଚାତ୍ୟ ଜଗତର ଧନୀ ଦେଶଗୁଡ଼ିକର କର୍ତ୍ତବ୍ୟ ନିଜ ପ୍ରଯୁକ୍ତି ଓ ବ୍ୟାବହାରିକ ଜ୍ଞାନଗରିମାକୁ ବିପୁଳସଂଖ୍ୟକ ଦାରିଦ୍ର୍ୟପୀଡ଼ିତ ଜନସମଷ୍ଟିର କଲ୍ୟାଣାର୍ଥେ ଉପଯୋଗ । ଏଇ ଘୋଷଣା ପାଖରୁ ଧରାଯାଇପାରେ, ଉନ୍ନୟନ 'ଇପକ୍'ର ସୂତ୍ରପାତ । ବୋଲିବା ବାହୁଲ୍ୟ, ଉଦ୍ଦେଶ୍ୟ

ଥିଲା ସଦ୍ୟସ୍ୱାଧୀନ ଉପନିବେଶଗୁଡ଼ିକୁ, ଅର୍ଥନୀତିକ ଦିଗରୁ ଅନ୍ତତଃ, ପଶ୍ଚିମ ଗୋଲାର୍ଦ୍ଧର ପୁଞ୍ଜିବାଦୀ ନିୟନ୍ତ୍ରଣକୁ ଫେରାଇଆଣିବା, କାହିଁକିନା, ଆଶଙ୍କା କରାଯାଇଚି, ପଛରେପଡ଼ିଥିବା ଦେଶଗୁଡ଼ାକ ନହେଲେ ରସିଆ କିମ୍ଵା ଚୀନ୍‌ର କମିଉନିଜ୍ମ ଆଡ଼କୁ ଆଗେଇଯିବେ । (୧୯୪୯ରେ ଚୀନ୍‌ରେ ସ୍ଥାପିତହୋଇଚି ସାମ୍ୟବାଦୀ ରାଷ୍ଟ୍ର) । ସେଦିଗରୁ ଦେଖିଲେ, ତଥାକଥିତ ଏଇ ଉନ୍ନୟନ ଆଦ୍ୟନ୍ତ ଏକ ରାଜନୀତିକ ପ୍ରକଳ୍ପ । ମାତ୍ର ପାର୍ଥକ୍ୟ ରହିଚି ଖାଲି ଗୋଟିଏ କଥାରେ ଯେ, ସିଧାସଳଖ ରାଜନୀତି ନକହି ଦାବିକରାଯାଇଚି ରାଜନୀତି ଊର୍ଦ୍ଧ୍ୱରେ ବିଶୁଦ୍ଧ ପ୍ରଗତି ଓ ପ୍ରଯୁକ୍ତିପ୍ରସାରର ଆନ୍ତର୍ଜାତିକ ଉଦ୍ୟମ । ଆମେ ବି ଭାବିନାହୁଁ ଯାକୁ ପ୍ରତ୍ୟକ୍ଷ ରାଜନୀତିକ ହସ୍ତକ୍ଷେପ, କାହିଁକିନା, ଘୋଷିତ ରାଜନୀତିର ସଂପ୍ରସାର ଘଟିଚି ଇଉରୋପ-ଆମେରିକାର ବିଶ୍ୱବିଦ୍ୟାଳୟ, ଗବେଷଣା କେନ୍ଦ୍ର ଓ ବିଭିନ୍ନ ଆନ୍ତର୍ଜାତିକ ପ୍ରତିଷ୍ଠାନ ଦ୍ୱାରା । ତିଆରିକରାଯାଇଚି ଉନ୍ନୟନର ଆଇଡିଆ, ତହିଁଉତାରୁ ପବନବେଗରେ ବିଛୁଡ଼ିଦିଆଯାଇଚି ତଥାକଥିତ ତୃତୀୟବିଶ୍ୱତମାମ । ଏଇ ବାଟଦେଇ ତୃତୀୟବିଶ୍ୱର ଆର୍ଥସାମାଜିକ ପରିବର୍ତ୍ତନର ଯାବତୀୟ ଏଷଣା ଚାଲିଆସିଚି ପାଶ୍ଚାତ୍ୟ ଜ୍ଞାନକ୍ଷମତାର ବଳୟ ଭିତରକୁ; ଯା ଫଳରେ, ଅର୍ଥନୈତିକ ଉନ୍ନୟନ ପ୍ରତିଭାତହୋଇଚି ସମ୍ପୂର୍ଣ୍ଣ ଅ-ରାଜନୀତିକ; ଯେପରି, ଇକନମିକ୍ସ କହିଲେ ସମାଜରେ ମଣିଷର କ୍ରିୟାକଳାପ ନବୁଝି, ବୁଝୁଛୁଁ ଏକ୍ଷଣି ଧନଅର୍ଜନର ଲଜିକ୍ ସାଙ୍ଗରେ ଅଙ୍କବିଦ୍ୟାର ଅନ୍ୱୟ । ଦୁଇଶ କି ଅଢ଼ାଇଶ ବର୍ଷଧରି ପୁଞ୍ଜିବାଦ ବିକଶିତହୋଇଚି ପଶ୍ଚିମ-ଇଉରୋପ୍‌ରେ, ଘଟିଯାଇଚି ତେଣୁ ଆମୂଳ ଆର୍ଥସାମାଜିକ ପରିବର୍ତ୍ତନ । ଉନ୍ନୟନର ଧାରଣା ବସ୍ତୁତଃ ତୃତୀୟବିଶ୍ୱ ରୂପକ ରଙ୍ଗମଞ୍ଚ ଉପରେ ସେଇ ନାଟକର ପୁନରାଭିନୟ ପ୍ରୟାସ । ମାତ୍ର ପୁଞ୍ଜିବାଦର ବିକାଶ, ଇଉରୋପ୍‌ରେ ଥିଲା ଏକ ରାଜନୀତିକ ପ୍ରକ୍ରିୟା, କାହିଁକିନା, ପ୍ରାକ୍-ପୁଞ୍ଜିବାଦୀ ସମାଜର ଶ୍ରେଣୀବିନ୍ୟାସ, ଉତ୍ପାଦନସମ୍ପର୍କ ଆଉ କ୍ଷମତାଗଢ଼ଣ ସେଠି ଓଲଟିଯାଇଚି ରାଜନୀତିକ ସଂଘର୍ଷ ଭିତରଦେଇ; ଆ୍ୟାସେମ୍ବ୍ଲି-ପାର୍ଲାମେଣ୍ଟ୍ ସେ ପ୍ରକ୍ରିୟାର ଅନୁଷଙ୍ଗ ମାତ୍ର, ଉଦ୍ୟୋକ୍ତା ନୁହେଁ । ଆର୍ଥସାମାଜିକ ଗଢ଼ଣର ଆମୂଳ ଏଇ ପରିବର୍ତ୍ତନକୁ ଶ୍ରେଣୀ-ଶକ୍ତି ଓ ଶ୍ରେଣୀ-ସଂଗ୍ରାମଠାରୁ ଅଲଗାକରି ଦେଖିବା ତେଣୁ ମାରାତ୍ମକ ପ୍ରମାଦ । ପୁଞ୍ଜିବାଦର ବିକାଶକୁ ଶ୍ରେଣୀସଂଗ୍ରାମ ସାଙ୍ଗରେ ଯୋଡ଼ିବାକୁ ଗଣତନ୍ତ୍ର ହୁଏତ କୁଣ୍ଠିତ, କିନ୍ତୁ ବିକାଶ ପ୍ରକ୍ରିୟାଟାକୁ କୋଉ ଯୁକ୍ତିରେ କହିହେବ ଅରାଜନୈତିକ ? ମାର୍କ୍ସଙ୍କୁ ନହେଲେ ବାଦ୍ ଦିଆଯାଉ; ମାତ୍ର ଆଡାମ୍ ସ୍ମିଥ୍ ଆଉ ରିକାଡ଼ୋ ? ଉତ୍ପାଦକ ଶ୍ରମ ଆଉ ଅନୁତ୍ପାଦକ ଶ୍ରମର ତଫାତ୍ ବୁଝାଇବାକୁ ଯାଇ ସ୍ମିଥ୍ ଟାଣିଆଣିଚନ୍ତି ସାମନ୍ତ-ପ୍ରଭୁ ଓ ଉତ୍ଥାନଶୀଳ ବୁର୍ଜୋୟା ମଧ୍ୟସ୍ଥ ସଂଘାତର ପ୍ରେକ୍ଷିତ, ଏବଂ ପୁଞ୍ଜିବାଦର କାରଣ ନିର୍ଣ୍ଣୟକରିଚନ୍ତି

ଉତ୍ପାଦକ-ଶ୍ରମ ରୂପକ ଅକ୍ଷବୃତ୍ତରୁ ଅନୁତ୍ପାଦକ-ଶ୍ରମକୁ ବହିଷ୍କାର, ବିଶେଷତଃ, ଧନଉତ୍ପାଦନ କ୍ଷେତ୍ରରେ । ରିକାର୍ଡ଼ୋ ଦେଖୁଚନ୍ତି ଶ୍ରେଣୀବିଭାଜନ ଓ ଅନ୍ତର୍ଦ୍ୱନ୍ଦ୍ୱ ।

ପୁଞ୍ଜିବାଦର ବିକାଶପ୍ରକ୍ରିୟାରେ ରାଷ୍ଟ୍ର ଓ ବ୍ୟକ୍ତି ବଦଳିଚନ୍ତି ଏକାସାଙ୍ଗରେ, କାହିଁକିନା, ରାଜନୀତି ଉପରେ ଶ୍ରେଣୀ-ଶକ୍ତିର ପ୍ରୟୋଗହେବା ସଙ୍ଗେସଙ୍ଗେ ବଦଳିଯାଇଚି ସିଭିଲ୍ ସୋସାଇଟିର କ୍ଷମତା-ବିନ୍ୟାସ । ଅଥଚ 'ଉନ୍ନୟନ' ପ୍ରତ୍ୟୟ ପୁଞ୍ଜିବାଦର ବିକାଶକୁ ଦେଖୁଚି, ମୂଳରୁ ଏକ ଅରାଜନୀତିକ ପ୍ରକ୍ରିୟା; ଯେପରି, ଯୋଜନା ଆଉ ପରିସଂଖ୍ୟାନ, ବିଶେଷଜ୍ଞ ଆଉ ପ୍ରଫେସନାଲ୍‌ଙ୍କ କୋଲାବରେସନ୍ । ଅର୍ଥାତ୍, ସଂଚୟ, ବିନିଯୋଗ ଓ ପୁଞ୍ଜିଗଠନର ଆନ୍ତଃସମ୍ପର୍କ, ଯା ଗୋଟାପଣେ ପାଟିଗଣିତ; ଜମିର ଉତ୍ପାଦନଶୀଳତା, ଜଳସେଚନ ଓ ଉନ୍ନତ ବୀଜର ଆନ୍ତଃସମ୍ପର୍କ, ଯାହାକୁ ବ୍ୟବହାରକରି ତିଆରିହୁଏ ଯୋଜନା, ତାକୁ ଧରିନେଇଛୁଁ ବିଶୁଦ୍ଧ କୃଷିବିଜ୍ଞାନ ଯୋଜନାକୁ ରୂପାୟିତକରେ ଅମଲାତନ୍ତ୍ର କି ପଞ୍ଚାୟତ; ତେଣୁ ରାଜନୀତି ଦୃଷ୍ଟିରେ ବୈଧ, କାହିଁକିନା, କାମରେ ଲାଗେ ଯୋଉ ସମ୍ବଳ, ସବୁଗୁଡ଼ାକ ନିର୍ମଳ ଜ୍ଞାନ ଆଉ ବୁଦ୍ଧି; ଆଉ ଜ୍ଞାନ ତ ସବୁବେଳେ ନିରପେକ୍ଷ ! ବିଶେଷଜ୍ଞ କି ପେସାଦାର, ଯେପରି ଅର୍ଥନୀତିବିଦ୍, ପ୍ରଯୁକ୍ତିବିଦ୍, କୃଷିବିଜ୍ଞାନୀ, ସଂଖ୍ୟାତାତ୍ତ୍ୱିକ—ବିବାକ ନିରପେକ୍ଷ; କ୍ଷମତା କି ସ୍ୱାର୍ଥ ତାଙ୍କୁ ଛୁଇଁପାରେନା, ଛୁଇଁପାରେନା କାହିଁକିନା, ତାଙ୍କ ଆଗ୍ରହର ବିଷୟଗୁଡ଼ାକ ସର୍ବଜନୀନ ବିଦ୍ୟା, ପକ୍ଷପାତହୀନ ଯୁକ୍ତି । ରାଜନୀତିକ କ୍ଷମତାର ପ୍ରତିନିଧିତ୍ୱ କରେନା ବିଦ୍ୱାନ୍, କାହିଁକିନା, ତାକୁ ପ୍ରତିନିଧିତ୍ୱ କରିବାକୁ ପଡ଼େ ଜ୍ଞାନ୍-ବିଜ୍ଞାନର, ଯା ସ୍ଥାନକାଳ ନିର୍ବିଶେଷରେ ଅଭିନ୍ନ । ଅର୍ଥାତ୍, ଅସୁସ୍ଥଲୋକ ଉପରେ ଡାକ୍ତର ଯେମିତି ପ୍ରୟୋଗକରେ ଚିକିତ୍ସାବିଦ୍ୟା, ଏମାନେ ସେମିତି ଦାରିଦ୍ର୍ୟ ରୂପକ ବ୍ୟାଧିରେ ପୀଡ଼ିତ ତୃତୀୟବିଶ୍ୱ ଉପରେ ପ୍ରୟୋଗକରୁଚନ୍ତି ଆରୋଗ୍ୟକ୍ଷମ ଜ୍ଞାନବିଜ୍ଞାନ; ଏବଂ ପୃଥିବୀର ଦୁଇତୃତୀୟାଂଶ ମଣିଷଙ୍କୁ କମିଉନିଷ୍ଟ୍‌ହେବାରୁ ବିରତକରିବାକୁ ଯାଇ ପାଶ୍ଚାତ୍ୟ ଜ୍ଞାନମଣ୍ଡଳ ଏଇ ଭାବରେ ସେମାନଙ୍କୁ ପରିଣତକରିଦେଇଚି 'ଅବ୍‌ଜେକ୍ଟ୍ ଅବ୍ ନଲେଜ୍' । ଗଣତନ୍ତ୍ର ଆଗରେ ସମସ୍ୟା ଥିଲା କିନ୍ତୁ ଅବ୍‌ଜେକ୍ଟ୍ ହୋଇପାରିବ କେମିତି କର୍ମର କର୍ତ୍ତା, ସବ୍‌ଜେକ୍ଟ୍ । ଯୋଜନା କମିଶନ୍ ତିଆରିହେଲା ଯେତେବେଳେ, ନେହ୍‌ରୁଙ୍କ ମୁହଁରୁ ଠିକ୍ ଏଇ ଦାବିଟା ହିଁ ଶୁଣାଯାଇଥିଲା । ବିଖ୍ୟାତ ସେଇ ଭାଷଣରେ କହିଥିଲେ, ଯୋଜନା କମିଶନ୍ ରାଜନୀତିର 'କନ୍‌ଫ୍ଲିକ୍ଟସ୍ ଆଣ୍ଡ୍ ସ୍ଲୋୟାବ୍ଲସ୍' ଊର୍ଦ୍ଧ୍ୱରେ ସ୍ଥିତ ବୈଜ୍ଞାନିକ ସତ୍ୟର ଜଗତ୍ । ବିଶେଷଜ୍ଞ ଏକମାତ୍ର ତିଆରିକରିବେ ସେଠି ଉନ୍ନୟନର ନକ୍ସା, ଆଉ ବାସ୍ତବ ରୂପାୟନର ପନ୍ଥାପଦ୍ଧତି ବି ବତାଇଦେବେ ଅନୁରୂପ ବିଶେଷଜ୍ଞ ।

ଅନ୍ୟ ଶବ୍ଦରେ, ଭାରତର ଗଣତନ୍ତ୍ର ସ୍ୱେଚ୍ଛାପ୍ରଣୋଦିତ ହୋଇ ଆତ୍ମସମର୍ପଣ କରିଚି ପାଶ୍ଚାତ୍ୟ ଜ୍ଞାନକ୍ଷମତା ପାଖରେ ଜନ୍ମଲଗ୍ନରୁ, ଏବଂ ସେଥିପାଇଁ, ଉନ୍ନୟନ, ଅର୍ଥାତ୍ ଅର୍ଥନୀତିକ ପ୍ରଗତିର ସ୍ୱପ୍ନକୁ ଗଠିତକରିଚି କ୍ଲ୍ୟାସିକାଲ୍ ଫିଜିକ୍ସର ସୂତ୍ରାବଳୀ ଭଳି ନିରପେକ୍ଷ, ନୈର୍ବ୍ୟକ୍ତିକ ନୀତିନିୟମ । ପଛକୁ ଚାହିଁଲେ ତେଣୁ ଆଶ୍ଚର୍ଯ୍ୟଲାଗେ ଯେ ଆମ ପ୍ରଥମ ପଞ୍ଚବାର୍ଷିକ ଯୋଜନା, ବହୁଳାଂଶରେ ସୋଭିଏତ୍ ଇଉନିୟନ୍ ଛାଞ୍ଚରେ ରଚିତହୋଇଥିଲା ସତ, ମାତ୍ର ଆଦ୍ୟାବସ୍ଥା (୧୯୧୭)ରୁ ପ୍ରାୟ ପନ୍ଦରବର୍ଷଧରି ଭାରିଶିଳ୍ପ ଓ କୋପରେଟିଭ୍ ଫାର୍ମିଙ୍ଗ୍ (କୋଠଚାଷ)କୁ କେନ୍ଦ୍ରକରି ଋଷିଆରେ ଘଟିଯାଇଚି, ଆକ୍ଷରିକ ଅର୍ଥରେ, ରକ୍ତକ୍ଷୟୀ ରାଜନୀତିକ ଲଢ଼ାଇ । ତୀବ୍ର ସଂଘାତଦୀର୍ଣ୍ଣ ଏଭଳି ଏକ ରାଜନୀତିକ ପ୍ରକ୍ରିୟାକୁ ଆମର ଏଠି ଚେଷ୍ଟାକରାଗଲା ଦ୍ୱନ୍ଦ୍ୱମୁକ୍ତ, ବିଶେଷଜ୍ଞ-ପରିଚାଳିତ, ସମାଜ ପରିବର୍ତ୍ତନ ବୋଲି ଚଳାଇଦେବାକୁ; ସେ ଚେଷ୍ଟା କେତେଦୂର ଫଳବତୀ ହୋଇଚି, ଗତ ପଚାଶବର୍ଷର ଇତିହାସ ଆଖିରେ ଆଙ୍ଗୁଳିଗେଞ୍ଜି ଦେଖାଇଦେଉଚି ବାରମ୍ବାର । ଏକଥା ଅବଶ୍ୟ ସତ ଯେ, ତୃତୀୟବିଶ୍ୱର ମାର୍କ୍ସବାଦୀ, ଉନ୍ନୟନର ଅରାଜନୀତିକ ଚେହେରାକୁ ମାନିନାହାଁନ୍ତି କୁତ୍ରାପି, ପୁଞ୍ଜିବିକାଶର ଆଖ୍ୟାନ ସାଙ୍ଗରେ ଉନ୍ନୟନର ନକ୍ସାଟାକୁ ମିଳାଇବାକୁ ଚାହିଁଚନ୍ତି ଯଥାରୀତି । ଅର୍ଥାତ୍ ଉନ୍ନୟନ ପ୍ରକ୍ରିୟାଟା ସବୁବେଳେ ମନେହୋଇଚି ରାଜନୀତିକ । କିନ୍ତୁ ପୁଞ୍ଜିବିକାଶର ପୁରୁଣା ଆଖ୍ୟାନ, ଯା ଗଠିତକରିଚି ସେମାନଙ୍କ ଚିନ୍ତାଭିତ୍ତି, ତା ପୁଞ୍ଜି, ରାଷ୍ଟ୍ର ଓ ଶ୍ରେଣୀ ସାଙ୍ଗକୁ ତିନିଟାଯାକର ପାରସ୍ପରିକ ସମ୍ପର୍କ । ଅର୍ଥାତ୍, ପୁଞ୍ଜିର ବିକାଶ ମାନେ ସବାଆଗେ ସାମନ୍ତତନ୍ତ୍ର ବା ପ୍ରାକ୍-ପୁଞ୍ଜିର ଅବଲୁପ୍ତି ସାଙ୍ଗକୁ ପୁଞ୍ଜିବାଦୀ ଶ୍ରେଣୀସମ୍ପର୍କର କ୍ରମବିକାଶ । ଏଇ ଶ୍ରେଣୀସମ୍ପର୍କ ଓ ତାର କ୍ରମପରିବର୍ତ୍ତନ ଯୋଉ ବାଗରେ ଇଉରୋପ୍‌ରେ ଘଟିଚି, ମାର୍କ୍ସବାଦୀଙ୍କ ସକାଶେ ତା ଏକ ଆଦର୍ଶ ପ୍ୟାଟର୍ଣ୍ଣ । ସେଇ ପ୍ୟାଟର୍ଣ୍ଣର ପ୍ରେକ୍ଷିତରେ ଉନ୍ନୟନ ପ୍ରକ୍ରିୟାକୁ ବିଚାରକରନ୍ତି ସାଧାରଣତଃ । ଏବଂ ସେଇ ଦୃଷ୍ଟିକୋଣରୁ, ଚାଲୁରହିଚି ଯୋଉ ଉନ୍ନୟନ, କେତେ ପରିବର୍ତ୍ତନ କଲାଣି କି ଜମାରୁ କିଛି କରିପାରିନାହିଁ, ଆଉ କରିନଥିଲେ ପରିବର୍ତ୍ତନର ଅଭିମୁଖକୁ ବଦଳାଇହେବ କେମିତି, ଏଇ ହୋଇଚି ସେମାନଙ୍କ ରାଜନୀତିକ ଭାବନାଚିନ୍ତାର ମୂଳ ବିଷୟ । କାହିଁକିନା, ଏ ଉଦ୍‌ବେଗ ମୂଳରେ କାମକରୁଚି ସାମ୍ରାଜ୍ୟବାଦ ପ୍ରଶ୍ନ, ଯା ସମଗ୍ର ତୃତୀୟବିଶ୍ୱର ଶୀରଃପୀଡ଼ା । ନାନାଦି ପର୍ଯ୍ୟାୟ ଭିତରଦେଇ ଗତିକରି ସାମ୍ରାଜ୍ୟ ଏକ୍ଷଣି ଯୋଉ ରୂପ ପରିଗ୍ରହକରିଚି, ତା ଗ୍ଲୋବାଲାଇଜେସନ୍, ପୁଞ୍ଜିର ବିଶ୍ୱାୟନ । ଅନ୍ୟ ଶବ୍ଦରେ, ଉନ୍ନତ ଧନତାନ୍ତ୍ରିକ ଅଞ୍ଚଳର ପୁଞ୍ଜି ନାନାଦି କୌଶଳରେ ଶୋଷଣକରୁଚି ଯେହେତୁ ତୃତୀୟବିଶ୍ୱକୁ, ଶୋଷଣର ଅବସାନ ନହେବା ଯାଏଁ ପ୍ରକୃତ ଉନ୍ନୟନ ସମ୍ଭବପର

ନୁହେଁ । ଏଇ ହେଲା ମାର୍କ୍ସବାଦୀଙ୍କ ପ୍ରଧାନ ପ୍ରତିପାଦ୍ୟ । ପୁଣି, ଯୋଉ ସର୍ବମାନ୍ୟ ଆନ୍ତର୍ଜାତିକ ପ୍ରତିଷ୍ଠାନ, ଯେପରି ବିଶ୍ୱବ୍ୟାଙ୍କ୍, ଆନ୍ତର୍ଜାତିକ ଅର୍ଥଭଣ୍ଡାର କିମ୍ବା ନବତମ ବିଶ୍ୱବାଣିଜ୍ୟସଂସ୍ଥା, ଉନ୍ନୟନ ଧାରଣାର ପ୍ରତିନିଧିତ୍ୱକରେ, ମାର୍କ୍ସବାଦୀଙ୍କ ବିବେଚନାରେ ସବୁଗୁଡ଼ାକ ସାମ୍ରାଜ୍ୟବାଦୀ ଶକ୍ତିର ପ୍ରତିନିଧି; ଇକନମିକ୍ସ ଏ ପ୍ରତିଷ୍ଠାନମାନଙ୍କର ବେପାର ହେଲେ ବି ସଂଗଠିତହୋଇଚି ଏକମାତ୍ର ସାମ୍ରାଜ୍ୟବାଦ ସ୍ୱାର୍ଥରେ । ଏ ବିଷୟରେ ମତାନୈକ୍ୟ ଥାଇପାରେ, ମାତ୍ର ଅସ୍ୱୀକାରକରିବାକୁ ଉପାୟନାହିଁ ଯେ ସେଇ ୧୯୫୦ ଦଶକରୁ ଏକମାତ୍ର ମାର୍କ୍ସବାଦୀ ହିଁ ଉନ୍ନୟନ ପ୍ରକଳ୍ପର ଅରାଜନୈତିକ ଚରିତ୍ରକୁ ଗଣ୍ୟକରିଚନ୍ତି ସାମ୍ରାଜ୍ୟବାଦର ଅଭିସନ୍ଧି । ଏବଂ ବାରମ୍ବାର ସ୍ମରଣ କରାଇଦେଇଚନ୍ତି, ଉନ୍ନୟନ ହୋଇପାରେନା କଦାପି ରାଜନୀତିଠାରୁ ସ୍ୱାଧୀନ । କାହିଁକିନା, ରାଜନୀତି ହିଁ ସ୍ଥିରକରେ କାହାପାଇଁ ଏଇ ଉନ୍ନୟନ ? ଶ୍ରେଣୀସ୍ୱାର୍ଥ ନିରୂପଣକରେ ରାଜନୀତିର ଗୁଣଧର୍ମ; ଏବେ ଯେମିତି ଭେନେଜୁଏଲାରେ, ବିଶ୍ୱବଜାର ସକାଶେ ଉତ୍ପାଦନ ନକରି ଅଭ୍ୟନ୍ତରୀଣ ଚାହିଦା ମେଣ୍ଟାଇବାକୁ ଉତ୍ପାଦନ ଯୋଉଠି ତତ୍ପର; କିମ୍ବା ପେଟ୍ରୋଲ୍‌ପ୍ରସୂତ ବିଦେଶୀ-ମୁଦ୍ରାକୁ ବହୁଜାତିକ ସଂସ୍ଥା କି ସ୍ୱଦେଶର ଏଲିଟ୍ ଦ୍ୱାରା ଆତ୍ମସାତ୍ ହେବାକୁ ନଦେଇ ଗୃହହୀନ ପାଇଁ ବାସଗୃହ, ଅସୁସ୍ଥ ପାଇଁ ଚିକିତ୍ସାଳୟ ଓ ପିଲାଙ୍କ ପାଇଁ ସ୍କୁଲ୍‌ନିର୍ମାଣ ଭଳି କାମ ସକାଶେ ବିଜ୍ଞାନ ପ୍ରଯୁକ୍ତି ଯୋଉଠି ବିଦେଶରୁ ଆମଦାନି ହୁଏନା; ଦେଶଭିତରେ ଯା ସୁଲଭ, ତାକୁହିଁ କରାଯାଏ ଉନ୍ନତ । ଏବଂ ସେଠି ବି ଭୋଟ୍ ହୁଏ ନିର୍ବିଘ୍ନରେ ।

୧୯୫୦ ଦଶକରେ ଉନ୍ନୟନ ପ୍ରକଳ୍ପର ସୂଚନା ହେଲା ଯେତେବେଳେ, ଲକ୍ଷ୍ୟ ଥିଲା ମ୍ୟାକ୍ରୋଲେଭେଲ୍ ବା ସମଷ୍ଟିଗତ ସ୍ତରରେ ଅର୍ଥନୀତିକ ପ୍ରଗତି । ଅର୍ଥାତ୍, ମ୍ୟାକ୍ରୋସ୍ତରରେ ଉତ୍ପାଦନ ଓ ଆୟବୃଦ୍ଧିକୁ ନିଶ୍ଚିତ କରିପାରିଲେ ଅର୍ଥନୀତିର ସମଗ୍ର ଚେହେରାଟା ପାଲଟିଯିବ, ଏବଂ ପ୍ରତ୍ୟେକ ଲୋକ ଯେହେତୁ ସମଗ୍ରର ଅଂଶବିଶେଷ, ବ୍ୟକ୍ତିବିଶେଷର ବୈଷୟିକ ଅବସ୍ଥା ବି ପାଲଟିଯିବ ଏକାସାଙ୍ଗରେ । ପ୍ରଗତିର ଭିତ୍ତି ଭାବରେ ସେଥିପାଇଁ, ଚିହ୍ନିତହୋଇଥିଲା ଦ୍ରୁତ ଶିଳ୍ପପ୍ରସାର । ବଡ଼ ବଡ଼ ଭାରିଶିଳ୍ପ ସ୍ଥାପିତହେଲା; ତା ପାଇଁ ଆବଶ୍ୟକ ରାସ୍ତାଘାଟ, ସେତୁ ଓ ଜଳାଶୟ (ଇନ୍‌ଫ୍ରାଷ୍ଟ୍ରକ୍‌ଚର୍) ବି ପରିକଳ୍ପିତ ହୋଇଚି । ଦେଶ ସ୍ୱାଧୀନହେବା କୋଡ଼ିଏ-ପଚିଶବର୍ଷ ଭିତରେ ଯୋଉ ବିରାଟ କର୍ମଯଜ୍ଞ ଅନୁଷ୍ଠିତହେଲା, ବସ୍ତୁତଃ ସାରା ତୃତୀୟବିଶ୍ୱରେ ତାର ପଟାନ୍ତରନାହିଁ । ନାହିଁ ବୋଲି, ନେହରୁ କହିଥିଲେ, ସେଗୁଡ଼ିକ 'ଆଧୁନିକ ଭାରତର ଦେବାଳୟ' । ଏ କର୍ମଯଜ୍ଞର ଚାଳିକାଶକ୍ତି ବୋଲି ଉନ୍ନୟନତତ୍ତ୍ୱ ଚେକିଧରିଚି ର୍ୟାସନାଲିଟି (ଯୁକ୍ତି), ଏକ୍ସପର୍ଟିଜ୍ (ବିଶେଷଜ୍ଞଙ୍କ ଜ୍ଞାନ) ଆଉ ଅମଲାତନ୍ତ୍ରର କର୍ମଦକ୍ଷତାକୁ । ସତେ ଅବା ଅଜ୍ଞାନଅନ୍ଧକାରରୁ ଯୁକ୍ତିର ଜ୍ୟୋତିର୍ଲୋକକୁ ଯାତ୍ରା ଏଇ ଉଦ୍ଦୀପନାର ଉତ୍ସ ! ସତେ

ଅବା ସେ ଉଦ୍ଦୀପନା ରାଜନୀତିର ଆବିଳ ଆବର୍ତ୍ତ ପାଖରୁ ଯୋଜନ ଯୋଜନ ଦୂରରେ ! ଯାତ୍ରାପଥରେ ତେଣୁ ଦ୍ୱନ୍ଦ୍ୱ ନାହିଁ କି ସଂଘାତ ନାହିଁ ! ଆଉ, ଯଦି ଦୈବାତ୍ ସଂଘାତ ଉପୁଜେ, ପ୍ରଗତି ରୂପକ ଅରାଜନୀତିକ ପ୍ରବାହରେ ଭାସିଯିବାକୁ ବାଧ୍ୟହେବ । କିନ୍ତୁ ସତୁରିଦଶକ ମଝାମଝି 'ସମଗ୍ର (ଟୋଟାଲ୍) କଲ୍ୟାଣ' ଧାରଣାଟା ନିଷ୍ପ୍ରଭହୋଇଯାଇଚି; ନାନାଦି ସ୍ତରବିଶିଷ୍ଟ ସମାଜର ସବାତଳ ସ୍ତରଗୁଡ଼ାକ ଭିତରେ ଦେଖାଦେଇଚି ସଂଶୟ ଏବଂ ପ୍ରାତିଷ୍ଠାନିକ ଉନ୍ନୟନତତ୍ତ୍ୱ ବି ମାନିନେଇଚି ବ୍ୟର୍ଥତା । ମାନିନେଇଚି ଯେ 'ସମଗ୍ର' କର୍ମକାଣ୍ଡ ସାଙ୍ଗରେ ଦେଶବାସୀଙ୍କର ବଡ଼ଅଂଶଟା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ମଧ୍ୟ ଯୁକ୍ତହୋଇ ପାରିନାହିଁ, ରହିଯାଇଚି ବାହାରେ ଓ ଦୂରରେ, ଦାରିଦ୍ର୍ୟ ତ ଘୁଞ୍ଚିନାହିଁ, ବରଂ ସମୟବଦଳିବା ସଙ୍ଗେସଙ୍ଗେ ଆହୁରି ତୀବ୍ର, ଆହୁରି ବିକଟ ରୂପ ଧାରଣକରିଚି । ସେତେବେଳେ ଜଣାପଡ଼ିଚି, ଜ୍ଞାନକ୍ଷମତା କୋଉ ସ୍ଥବିର ଜିନିଷ ନୁହେଁ; ଯୋଉ ସମାଜର ଦେହ ଉପରେ ନିରାମୟର ପ୍ରତିଶ୍ରୁତି ନେଇ ଜ୍ଞାନ ନିଜକୁ ପ୍ରୟୋଗକରେ, ସେ ସମାଜର ପ୍ରତିକ୍ରିୟା ସାଙ୍ଗରେ ତାଳମିଳାଇ ନିଜକୁ ମଧ୍ୟ ବଦଳାଇନିଏ; ନଲେଜ୍ ଓ ଏକ୍ସପର୍ଟିଜ୍‌ର ନବନବ ଉଦ୍‌ଭାବନ ଭିତରଦେଇ, ପ୍ରତିଷ୍ଠାନର ସଂଶୋଧିତ ସଂଗଠନ ଭିତରଦେଇ, ନିଜ ନିୟନ୍ତ୍ରଣକୁ କରେ ନବୀକୃତ । ସତୁରିଦଶକ ଶେଷଆଡ଼କୁ ଉନ୍ନୟନତତ୍ତ୍ୱ ଭିତରେ ତେଣୁ ଦେଖାଦିଏ ନବୀକରଣର ବିବିଧ ଲକ୍ଷଣ । ମାର୍କ୍ସବାଦୀ କିନ୍ତୁ ମ୍ୟାକ୍ରୋସ୍ତରର ତତ୍ତ୍ୱ ବାହାରକୁ ଯାଇନାହାଁନ୍ତି; ତାଙ୍କ ବିଚାରରେ ମଧ୍ୟ ସଂଘାତଶୂନ୍ୟ ଏଇ ଉନ୍ନୟନ । କାହିଁକିନା, ବିଶ୍ୱାସ ଥିଲା, ତୃତୀୟବିଶ୍ୱର ପୁଞ୍ଜିବିକାଶ ଏତେବାଟ ଯାଇପାରେନା ଯେ ଆପାମର ଜନସାଧାରଣ ହେବେ ପୁଞ୍ଜିର ଅଂଶୀଦାର । ଉନ୍ନୟନ-ବଳୟ ବାହାରେ ନିକ୍ଷିପ୍ତ ଯେତେ ପ୍ରାନ୍ତିକ ମଣିଷ, ସେମାନେ ତେଣୁ ପୁଞ୍ଜିବାଦୀ ବିକାଶର ଅସମ୍ପୂର୍ଣ୍ଣତାର ଉଚ୍ଛିଷ୍ଟ ! ସମ୍ପୂର୍ଣ୍ଣତା ଆଣିପାରେ କେବଳ ଶ୍ରମିକଶ୍ରେଣୀ ଦ୍ୱାରା ସମାଜତାନ୍ତ୍ରିକ-ରାଷ୍ଟ୍ର ପ୍ରତିଷ୍ଠା । ତା ହେଲେ ଯାଇ, ସଂଞ୍ଚୟ, ବିନିଯୋଗ, ପ୍ରଯୁକ୍ତି ଓ ପୁଞ୍ଜିଗଠନ ମ୍ୟାକ୍ରୋସ୍ତରରେ ବି ଘଟାଇପାରେ ଅଭେଦ୍ୟ ଅନ୍ୱୟ । ଆଉ, ଘଟାଇପାରିଲେ ଯାଇ, ବ୍ରାତ୍ୟ ଦରିଦ୍ର ପ୍ରାନ୍ତିକମଣିଷ ଆସିପାରିବ ଉନ୍ନୟନର କେନ୍ଦ୍ରସ୍ଥଳକୁ । ମାର୍କ୍ସବାଦୀଙ୍କ ସ୍ୱପ୍ନାବିଷ୍ଟ ଏ ଉପଲବ୍ଧି ଆଜି ମଧ୍ୟ ବଦଳିନାହିଁ । ଦିନ ବଦଳିଯାଇଚି, ତା' ସାଙ୍ଗରେ ବଦଳିଯାଇଚି ଉନ୍ନୟନର ନକ୍ସା; ରସିଆ କି ଚୀନ୍‌ର ପଥାନୁସରଣ କରିନାହିଁ ତୃତୀୟବିଶ୍ୱ । ବରଂ ସମାଜତନ୍ତ୍ରର ପତନ ଘଟିଚି ରସିଆରେ ଶ୍ରମଜୀବୀ ଶ୍ରେଣୀର ନେତୃତ୍ୱରେ ହିଁ ।

ମାର୍କ୍ସବାଦୀ କହୁଚନ୍ତି, ସମାଜତନ୍ତ୍ରର ପତନ ଧନତନ୍ତ୍ରର ବିଶ୍ୱବ୍ୟାପୀ ଚକ୍ରାନ୍ତର ପରିଣାମ । ଆଂଶିକ ସତ୍ୟ, କାହିଁକିନା, ପତନଘଟାଇଚି ପ୍ରଲେତାରିଏତ୍ । କଥାଟାକୁ

ଭୁଲିଗଲେ ମାର୍କ୍ସଙ୍କୁ ବୁଝିଛୁଁ ବୋଲି ଦାବିକରି ପାରିବୁନାହିଁ; ତେବେ ଏକଥା ମଧ୍ଯ ସତ ଯେ ସୋଭିଏତ୍ ଇଉନିଅନ୍ ଭାଙ୍ଗିଯିବା ଉତାରୁ ପୁଞ୍ଜିବାଦର କୋଉଠେଲେ ବିକଳ୍ପ ଆଉ ଅବଶିଷ୍ଟନାହିଁ- ଏଭଳି ପରିବ୍ୟାପ୍ତ ଏକ ବିଷାଦ ଗ୍ରାସକରିଚି ଦୁନିଆକୁ । କରିଚି ବୋଲି, ପୁଞ୍ଜିର ଜୟଯାତ୍ରା ସମ୍ମୁଖୀନ ହୋଇଚି ପ୍ରତିରୋଧ । ସୁଦୂରପ୍ରସାରୀ ପ୍ରତିରୋଧର ଏ ଅଭିଘାତକୁ ଏଡ଼ାଇ ଯାଇପାରିନାହିଁ ଉନ୍ନୟନର ଅରାଜନୈତିକ ତତ୍ତ୍ୱ । ତାର ମାଂସପେଶୀ ବରଂ ଶକ୍ତହୋଇଚି, କାହିଁକିନା, ମ୍ୟାକ୍ରୋସ୍ତରରେ ସଂଚୟ, ବିନିଯୋଗ, ପ୍ରଯୁକ୍ତି ଓ ପୁଞ୍ଜିଗଠନ କାମଟା, ଗଣତନ୍ତ୍ର (ଜାତିରାଷ୍ଟ୍ର)ର ବିନା ମଧ୍ୟସ୍ଥତା, ଅଥବା ସକ୍ରିୟ ସହଯୋଗରେ, ବିଶ୍ୱପୁଞ୍ଜି ଏବେ କରିପାରିବ ଅବଧାରିତ ନିୟମରେ । ଏଇ ହେଲା ସର୍ବସାଧାରଣ ଆଶଙ୍କା । ଅନ୍ୟ ଶବ୍ଦରେ, ମାର୍କେଟ୍‌ର ନିଜସ୍ୱ ଯୋଉ ବିଧିବିଧାନ, ତା ବାହାରେ 'ଉନ୍ନୟନ', ଭିନ୍ନ କୋଉ ପ୍ରକଳ୍ପନୁହେଁ ଏକ୍ଷଣି । କିଏ କହୁଚି 'ନିଓ ଲିବରାଲିଜ୍ମ', ଆଉକିଏ କହୁଚି 'ଡେଥ୍ ଅବ୍ ଡିଭେଲପ୍‌ମେଣ୍ଟ୍'! 'ଉନ୍ନୟନ' କହିଲେ ଯଦି କେବଳ ମ୍ୟାକ୍ରୋସ୍ତରର ପରିବର୍ତ୍ତନକୁ ବୁଝାଏ, ଉଭୟ ପ୍ରତିକ୍ରିୟା ତେବେ ପ୍ରାସଙ୍ଗିକ । ଭାରତର ଗଣତନ୍ତ୍ର କିନ୍ତୁ ଆଦୌ ବିଚଳିତ ବୋଲି ମନେହୁଏନା । ସମ୍ଭବତଃ, ଗଣତନ୍ତ୍ରର ତଥାକଥିତ ପ୍ରହରୀ ଅବଚେତନରେ ଚାହିଁଥିଲା ଅବାରିତ ଭୋଗବାଦ । ଶାସକଶ୍ରେଣୀ ତେଣୁ ବିଶ୍ୱବ୍ୟାପୀ ବୁର୍ଜୋୟାଶ୍ରେଣୀର ଭଗ୍ନାଂଶ ମାତ୍ର, କାହିଁକିନା, ରାଜନୀତିର ଚରିତ୍ର ଯଦି ନିରୂପଣକରିବ ମାର୍କେଟ୍, ଜନସାଧାରଣ ନିରୂପଣକରିବେ ଭିନ୍ନ କୋଉ ଜିନିଷ? ଉନ୍ନୟନ ମାଡ଼ରେ ତ ହରାଇସାରିଚନ୍ତି ଶ୍ରେଣୀଚରିତ୍ର, ତାଙ୍କ ପରିଚୟ ଏକ୍ଷଣି 'ଆମ୍‌ଆଦ୍‌ମି'! ସେଇ ଆମ୍‌ଆଦ୍‌ମି ପ୍ରେକ୍ଷିତରୁ ଦେଖିଲେ, ଉନ୍ନୟନ ପ୍ରକଳ୍ପଟିର ଅକାଳମରଣ ଖାଲି କଥାର କଥା, କାହିଁକିନା, ପ୍ରକଳ୍ପ ବଦଳାଇଦେଇଚି କେବଳ ପରିଚ୍ଛଦ, ମ୍ୟାକ୍ରୋରୁ ନିଜକୁ ନେଇଯାଇଚି ମାଇକ୍ରୋ ବା ଅନୁପୁଙ୍ଖ ସ୍ତରକୁ । ପୁଞ୍ଜିର ବିଜୟଯାତ୍ରାରେ ଯୋଗ ଦେଇନପାରି ରାସ୍ତାକଡ଼କୁ ଯିଏ ଛିଟିକିପଡ଼ିଲେ, ମାର୍କେଟ୍‌ରେ ଅଂଶଗ୍ରହଣ ତାଙ୍କ ସାଧ୍ୟକୁ କୁଳାଏନା; ପ୍ରାନ୍ତିକ ସେଇ ଲୋକଗୁଡ଼ାଙ୍କୁ କେମିତି ବଞ୍ଚାଇରଖିହେବ, ସେଇ ପ୍ରସଙ୍ଗ ଏବେ ଉନ୍ନୟନର ନୟାପ୍ରକଳ୍ପ । ଆଗରୁ ଯେମିତି ଦେଶର ତମାମ୍ ମଣିଷଙ୍କୁ ଗୋଟାଏ ଅସୁସ୍ଥଦେହ ଭାବିନେଇ, ଅର୍ଥବ୍ୟବସ୍ଥା ସହିତ ଜଡ଼ିତ ସମଗ୍ର ସମାଜ ଉପରେ ଜ୍ଞାନକ୍ଷମତା ପ୍ରୟୋଗକରାଯାଇଚି, ଏକ୍ଷଣି ସେଇ 'ସମଗ୍ରତା' ଜାଗାରେ ଆବିର୍ଭୂତ ଦାରିଦ୍ର୍ୟବିଷୟକ ବିଭିନ୍ନ ଖଣ୍ଡିତ ଚିନ୍ତାଧାରା । ଖଣ୍ଡିତ, କାହିଁକିନା, ଲକ୍ଷ୍ୟ ଏକ୍ଷଣି ବ୍ୟକ୍ତି, ପରିବାର କିମ୍ବା ଜନଗୋଷ୍ଠୀ (କମିଉନିଟି) । ବିଗତ ପନ୍ଦର-କୋଡ଼ିଏ ବର୍ଷ ଭିତରେ ଦୁନିଆର ଦରିଦ୍ର ବିଷୟରେ ଯେତେ ତଥ୍ୟ, ତତ୍ତ୍ୱ ଓ ଜ୍ଞାନ ଠୁଳକରାଯାଇଚି,

ଖାଦ୍ୟାଭାବରୁ ଆରମ୍ଭକରି ଯୌନତା ପର୍ଯ୍ୟନ୍ତ, ଦୁଇଶ'ବର୍ଷରେ ବି ଏତେ ଖବର ଯୋଗାଡ଼ ହୋଇପାରିନାହିଁ । ବିଶେଷଜ୍ଞବାହିତ ଜ୍ଞାନକ୍ଷମତାର 'ନଲେଜ୍ ଅବ୍‌ଜେକ୍ଟ' ଏକ୍ଷଣି ବ୍ୟକ୍ତି ଓ ତା'ର କମିଉନିଟି, ପୁଞ୍ଜି ସୀମାନ୍ତରେ ଯା'ପାଇଁ ମୁଣ୍ଡଗୁଞ୍ଜିବା ବ୍ୟବସ୍ଥାକରିଦେବ 'ଉନ୍ନୟନ' । ସେଇ ବ୍ୟବସ୍ଥାର ଔପଚାରିକ ପରିଚୟ, 'ଏମ୍ପାଓ୍ଵାରମେଣ୍ଟ୍' ବା ସକ୍ଷମତା-ଅର୍ଜନ । ଅଭିବ୍ୟକ୍ତିଟା ଆଳଙ୍କାରିକ ସନ୍ଦେହ ନାହିଁ, କାମଟା କିନ୍ତୁ ଦାରିଦ୍ର୍ୟର ମାଇକ୍ରୋ ମ୍ୟାନେଜ୍‌ମେଣ୍ଟ୍ । ମାଇକ୍ରୋମ୍ୟାନେଜ୍‌ମେଣ୍ଟ୍ କିନ୍ତୁ ଏପରି ଏକ ବିଶେଷ କ୍ଷେତ୍ର, ଜ୍ଞାନ-କ୍ଷମତାର ସୂକ୍ଷ୍ମ ଓ ଜଟିଳ ପ୍ରୟୋଗ ଲାଗି ସୁଯୋଗ ଯୋଉଠି ଅପରିସୀମ । ବିନିଯୋଗ କିନ୍ତୁ ଆସିବ କୁଆଡୁ? ପୁଞ୍ଜିର ଜୟଯାତ୍ରା ମାନେ ଧନୀ ଉପରୁ କ୍ରମାଗତ କରଭାର ହ୍ରାସ, ସାମାଜିକ ସୁରକ୍ଷା ବାବଦକୁ ତେଣୁ ବ୍ୟୟସଙ୍କୋଚ । ରାଷ୍ଟ୍ର ଯଦି ସମ୍ପତ୍ତିର ଅଧିକାର ଉପରେ ହସ୍ତକ୍ଷେପ କରିବନାହିଁ, ଗଣତନ୍ତ୍ର ରକ୍ଷାକରିବ କେମିତି ଭାରସାମ୍ୟ, ଏବଂ ସେଇ ସୂତ୍ରରେ ନିଜକୁ? ପ୍ରଶ୍ନଟା କିନ୍ତୁ ପୁରାପୁରି ରାଜନୀତିକ, କାହିଁକିନା, ମାଇକ୍ରୋ-ଲେଭେଲ୍ ପ୍ଲାନିଙ୍ଗ୍ ମଧ୍ୟ ସମ୍ପତ୍ତିର ଅଧିକାର ସମ୍ପର୍କିତ ସମସ୍ୟାକୁ ସମ୍ଭାଳିପାରେ ରାଷ୍ଟ୍ର ଯଦି ଉନ୍ନୟନକୁ ମନେକରେ ଏକ ରାଜନୀତିକ ପ୍ରକଳ୍ପ । ମାର୍କ୍ସବାଦୀଙ୍କ ଶ୍ରେଣୀସଂଘର୍ଷ ଧାରଣା ଭିତରେ ଅବଶ୍ୟ ଅନୁପୁଙ୍ଖ-ସ୍ତରରେ ରାଜନୀତିକ ପରିବର୍ତ୍ତନର ପରିକଳ୍ପନା ଅଦ୍ୟାବଧି ସ୍ଥାନପାଇନାହିଁ; କାହିଁକିନା, ଅନୁପୁଙ୍ଖସ୍ତରରେ ଦେଖୁଚନ୍ତି ଚିରାଚରିତ ଶ୍ରେଣୀବିଶ୍ଳେଷଣ ଏକେବାରେ ଅବାନ୍ତର; ରାଜନୀତିରେ ତେଣୁ ଉପୁଜିଚି ଏପରି ଏକ ଶୂନ୍ୟତା, ଯାହାକୁ ପୂରଣକରିପାରେ କେବଳ ଅସରକାରୀ ସଂଗଠନ ।

କିନ୍ତୁ ଶ୍ରମଜୀବୀ (କୃଷିଜୀବୀ ସମେତ) ଲୋକଙ୍କର ନବେଶତାଂଶ ସଂଗଠିତ ନୁହେଁ, ଜୀବିକା ଅର୍ଜନକରନ୍ତି ଅସଂଗଠିତ କ୍ଷେତ୍ରରୁ; ଏବଂ କୃଷିକୁ ବାଦ୍‌ଦେଲେ, ଅସଂଗଠିତ କ୍ଷେତ୍ରର ଶ୍ରମଜୀବୀଙ୍କ ହାତରେ ଅଛି ଉତ୍ପାଦନକର୍ମର ପଞ୍ଚଷଠିରୁ ସତୁରି ଶତାଂଶ । ନୂଆକଥା ନୁହେଁ, ପଚିଶବର୍ଷ ଆଗର ଚିତ୍ରଟା ମଧ୍ୟ ଏକାରକମ । ବାମପନ୍ଥୀ ଟ୍ରେଡ୍‌ଇଉନିୟନ୍ (ସିଆଇଟିଇଉ)ର ବାର୍ଷିକ ଅଧିବେଶନରେ ସମ୍ପାଦକ ଯୋଉ ପ୍ରତିବେଦନ ପେଶ୍‌କରିଚନ୍ତି, ତା'ର ଏକୋଇଶିପୃଷ୍ଠା କଳେବରରେ ଅସଂଗଠିତ କ୍ଷେତ୍ରକୁ ମିଳିଚି ଦି'ପୃଷ୍ଠାରୁ କମ୍ । ଅସାବଧାନତା ବଶତଃ ନୁହେଁ; ସତକଥା ହେଲା, ଅର୍ଥନୀତିର ଅସଂଗଠିତ କ୍ଷେତ୍ର ଆଡ଼କୁ ଚାହିଁଦେଖୁନାହାଁନ୍ତି ମାର୍କ୍ସବାଦୀ, ଅତୀତରେ ନୁହେଁ କି ଏବେମଧ୍ୟ ନୁହେଁ । ଅସଂଗଠିତ କ୍ଷେତ୍ରର ପ୍ରଧାନ ବୈଶିଷ୍ଟ୍ୟ, ଅନ୍ତର୍ଗତ ବୈଚିତ୍ର୍ୟ । ବଞ୍ଚିରହିବା ଫିକର ଓ ପେଟପୋଷିବା ଧନ୍ଦା ଭିତରେ ଯେ କେତେ ରକମ ବୈଚିତ୍ର୍ୟ ଥାଇପାରେ, ଲକ୍ଷ୍ୟକଲେ ଅବାକ୍ ହେବାକୁ ପଡ଼େ, କାହିଁକିନା, ଆମ ପରିଚିତ ତତ୍ତ୍ୱଜଗତ୍ ତାସ୍‌ତିଆରି ମିନାର୍ ପରି ଚୂର୍‌ମାର ହୋଇଯାଏ

ଯେତେବେଳେ ଦେଖୁଁ ପୁଞ୍ଜି-ଶ୍ରମ, ମାଲିକ-ମୂଲିଆ, ଶୋଷକ-ଶୋଷିତ ଭଳି ସ୍ପଷ୍ଟ କୋଉ ବିଭାଜନ ବା ଦ୍ୱିଭାଜନର ଅନୁପସ୍ଥିତି । ପ୍ରଥାଗତ ଟ୍ରେଡ୍‌ଇଉନିୟନ୍ ରାଜନୀତି ସେଠି ଖାଟେନା; ବରଂ, ହିତେ ବିପରୀତ ହେବା ସମ୍ଭାବନା ବେଶି । କୋଉହେଲେ ଫ୍ୟାକ୍ଟରୀରୁ ଠିକାରେ ଜବ୍‌ୱର୍କ୍ ନେଇ କୌଣସି କର୍ମୀପରିବାର ଯଦି ରୁଜିରୋଜଗାର ବ୍ୟବସ୍ଥା କରିପାରେ, ଏକ୍ଷଣି କରୁଚି; କାମର ଚପ ବଢ଼ିଲେ ବି ବାହାରୁ କାହାକୁ ଡାକୁନାହିଁ, କାହିଁକିନା, ରୋଜଗାର ତ ଯତ୍‌ସାମାନ୍ୟ, ତା ଉପରେ ଟ୍ରେଡ୍‌ଇଉନିୟନ୍‌ର ଦାବି ହୋଇଯିବ ବୋଝ ଉପରେ ନଳିତାବିଡ଼ା । ଅସଂଗଠିତ କ୍ଷେତ୍ରର ରାଜନୀତିର ଭାଷା ରହିଯାଇଚି ତେଣୁ ପ୍ରଥାଗତ ମାର୍କ୍ସବାଦୀର ଆୟତ୍ତବାହାରେ । କିନ୍ତୁ ମାଇକ୍ରୋଲେଭେଲ୍ ଉନ୍ନୟନ ଯେତେବେଳେ ଏଇ ଅସଂଗଠିତ କ୍ଷେତ୍ରକୁ ଏକମାତ୍ର ଲକ୍ଷ୍ୟ ଭାବରେ ଗ୍ରହଣକରେ, ସ୍ୱାଭାବିକଭାବେ ଚଳିଆସେ, ଆପାତଃ ଅରାଜନୀତିକ ଜ୍ଞାନକ୍ଷମତାର ନିୟନ୍ତ୍ରଣକୁ ତଥାକଥିତ ପ୍ରଲେତାରିଏତ୍ । ଠିକ୍ ସେତିକିବେଳେ ଉନ୍ନୟନର ରାଜନୀତିକ ମାତ୍ରାଟିକୁ ଦୃଶ୍ୟମାନ କରିପାରେନା ବାମପନ୍ଥୀ । ସେଇ ବ୍ୟର୍ଥତା ତାକୁ ବାଧ୍ୟକରେ ସଂଗଠିତ କ୍ଷେତ୍ରର ସଂଖ୍ୟାଲଘୁ ଶ୍ରମଜୀବୀଙ୍କୁ ଜାବୁଡ଼ିଧରିବାକୁ । ସଂଖ୍ୟାଲଘୁ ଏକ ସ୍ୱାର୍ଥଗୋଷ୍ଠୀର ଦାବିଆଦାୟ ଊର୍ଦ୍ଧ୍ୱକୁ ଯାଇପାରେନା ବାମରାଜନୀତିର କୃତ୍ୟସୂଚୀ । ପୁଞ୍ଜିର ଏକାନ୍ତ ନିଜସ୍ୱ ନାଟକରେ ମାର୍କ୍ସବାଦୀ ଆଜି, ସେଥିପାଇଁ, ନେପଥ୍ୟେ କୋଳାହଳ! ପୁଞ୍ଜିର ଡଣ୍ଡିକଟାକର୍ତ୍ତୃତ୍ୱକୁ ମୁକାବିଲାକରିବାକୁ ହେଲେ, ମାର୍କ୍ସବାଦୀଙ୍କୁ ଏକ୍ଷଣି ନୂଆବାଟର ସନ୍ଧାନକରିବାକୁ ପଡ଼ିବ, ପୁଞ୍ଜି ବନାମ ଶ୍ରମ ଭଳି ଜୀର୍ଣ୍ଣ ମଳୀନ ନକ୍ସାରେ ସେ ବାଟର ସୁରାକ୍ ମିଳିବନାହିଁ । ଶ୍ରମଠୁଁ ବଡ଼ କୋଉ ପ୍ରତିସ୍ପର୍ଦ୍ଧୀବର୍ଗ, ଯେପରି ଜୀବନ, ହୁଏତ ପାଳନକରିପାରେ ଇପ୍ସିତ ସେଇ ଭୂମିକା । ସେଇ ଜୀବନ, ଯା ପୁଞ୍ଜିର ଦିଗନ୍ତବ୍ୟାପୀ ନିୟନ୍ତ୍ରଣ ଓ କର୍ତ୍ତୃତ୍ୱ ପାଖରେ ପ୍ରତିନିୟତ ହୁଏ ନିର୍ଯ୍ୟାତିତ, ଅପମାନିତ, ନିଷ୍ପେସିତ, ନିର୍ବାସିତହୁଏ ସମାଜର ସୀମାନ୍ତକୁ ମନୁଷ୍ୟତ୍ୱ ହଜାଇଦେଇ । ତରୁଣ ମାର୍କ୍ସ ବୋଧହୁଏ ସେଭଳି କିଛି କହିବାକୁ ଚହିଁଥିଲେ, ଯାନ୍ତ୍ରିକ ବ୍ୟାଖ୍ୟାର ସ୍ରୋତ ଯାହାକୁ ଭସାଇନେଇଚି ।

x x x x x x x

ଭିତିରି ମତଲବ୍ ଯା ହୋଇଥାଉ, ଆମେରିକା ଓ ବ୍ରିଟେନ୍‌ର ମିଳିତ ଆକ୍ରମଣର ଉଦ୍ଦେଶ୍ୟ କୁହାଯାଉଚି ଇରାକ୍‌ରେ ଗଣତନ୍ତ୍ର ପ୍ରତିଷ୍ଠା । ଅର୍ଥାତ୍, ଗଣତନ୍ତ୍ର ଆଉ ଜାତିରାଷ୍ଟ୍ରର ଜନସାଧାରଣ ବାଛିଥିବା ପ୍ରତିନିଧିମୂଳକ ପ୍ରଶାସନ ନୁହେଁ, ରୀତିମତ ଆନ୍ତର୍ଜାତିକ ସିଷ୍ଟେମ୍; ଠିକ୍ ଯେମିତି ପୁଞ୍ଜିର ବିଶ୍ୱପର୍ଯ୍ୟଟନ, ଅର୍ଥାତ୍, ଏକବିଂଶ ଶତକର ପୃଥିବୀ ଚହୁଁଚି ଦୁନିଆସାରା ପ୍ରଚଳିତହେବ ଏକାରକମ ରାଜନୀତି, ଅର୍ଥନୀତି,

ସମାଜନୀତି, ପୁରାକାଳରେ ଖ୍ରୀଷ୍ଟାନ୍ କି ମୁସଲ୍‌ମାନ୍ ଯେମିତି ଚାହିଁଚନ୍ତି ଜଗତ୍‌ଯାକ ଦୀକ୍ଷିତହେବେ ତାଙ୍କରି ଧର୍ମମତରେ । ଯା'ର ବ୍ୟାଖ୍ୟା ସବୁ ଧର୍ମଶାସ୍ତ୍ରରେ ମିଳିବ ଅଳ୍ପ-ବିସ୍ତର: ମହୀମଣ୍ଡଳ ଅନ୍ୟାୟ ଅନାଚାରରେ କଳୁଷିତ ହୋଇଯାଇଚି; ମଣିଷକୁ ସତ୍‌ପଥକୁ ଆଣିବାକୁ ଅବତାର/ମସିହା/ରସୁଲ୍ ଅବତୀର୍ଣ୍ଣ ହେବ ଧରାପୃଷ୍ଠରେ, ଦୁର୍ଜନଙ୍କୁ ବିନାଶକରି ପାଳନକରିବ ସାଧୁସନ୍ଥଙ୍କୁ । ଠିକ୍ ଠିକ୍ ସମ୍ପାଦିତ ହୋଇଥିଲେ, ସାରା ପୃଥିବୀରେ ଥାଆନ୍ତା ଏକମାତ୍ର ଧର୍ମ, ଏକମାତ୍ର ରାଜତ୍ୱ, ଏକମାତ୍ର ଜୀବନଦର୍ଶନ, ଏକମାତ୍ର ଅର୍ଥବ୍ୟବସ୍ଥା ଓ ଏକାଭଳି ସମାଜ । ଇତିହାସ କରାଇଦେଇନାହିଁ । ଏକ୍ଷଣି, ଅନ୍ତତଃ ସମାଜତନ୍ତ୍ରର ପତନ ଉତାରୁ, ପବିତ୍ର ସେଇ ଦାୟିତ୍ୱ ବହନକରିବାକୁ ହେବ ପୃଥିବୀର ସର୍ବଶକ୍ତିମାନ୍ ଗଣତନ୍ତ୍ର, ଯୁକ୍ତରାଷ୍ଟ୍ରକୁ । ଗଣତନ୍ତ୍ର ତେଣୁ ଧର୍ମଗୁଡ଼ାକର ସେକିଉଲାର୍ ସଂସ୍କରଣ; ଥରେ ପ୍ରତିଷ୍ଠାପାଇଗଲେ, ମଣିଷଜାତିର ସବୁରକମ କଷଣର ଅବସାନ; ହିଂସା, ଦ୍ୱେଷ, ଦୁର୍ଭୋଗ, ଦୁର୍ଗତି ଅନନ୍ତକାଳ ପାଇଁ ବିଦାହୋଇଯିବ ଜୀବନରୁ । ଭାବିଚିନ୍ତିପାରୁଥିବା ଲୋକ 'ଗଣତନ୍ତ୍ର'ର ଏ ପ୍ରକଳ୍ପକୁ କହୁଚନ୍ତି, 'ଡେଥ୍ ଅବ୍ ଇଉଟୋପିଆ'; ଅର୍ଥାତ୍ ବନ୍ଧୁକ କି ଡଲାର୍ ଦେଖାଇ ପୃଥିବୀଟାକୁ ଯଦି ପରିଣତକରାଯାଏ ଗୋଟାପଣେ ଆମେରିକା, ଭବିଷ୍ୟତ୍ ପରିବର୍ତ୍ତନର ସ୍ୱପ୍ନଦେଖିବ କିଏ କାହିଁକି ? ବିଂଶଶତକରେ ଶୁଣିଥିଲୁଁ ଡେଥ୍ ଅବ୍ ଗଡ୍, ଏକବିଂଶ ପାଇଁ ଅବଶିଷ୍ଟ ଇଉଟୋପିଆ । କିନ୍ତୁ କୌତୁକର ବିଷୟ ନୁହେଁ, କାହିଁକିନା, ମାର୍କିନ୍ ବିଦ୍ୱାନ୍ ମଧ୍ୟ କହୁଚନ୍ତି, *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* କହୁଚି, ଇହୁଦୀଙ୍କୁ ସ୍ୱୟଂ ଈଶ୍ୱର ବାଛିଥିଲେ ନିଜ ପରିଜନ, ତାଆରି ସମ୍ପ୍ରସାରଣରେ ଆମେରିକାନ୍ କାହିଁକି ବିବେଚିତ ହେବେନାହିଁ ଆଜି ଈଶ୍ୱରଙ୍କ ନିର୍ବାଚିତ ପରିଜନ ? ଏତଦ୍‌ଭିନ୍ନ, ଶୀତଳଯୁଦ୍ଧର ଅଳ୍ପଆଗରୁ ବଛାବଛା ଇଉରୋପୀୟ ଚିନ୍ତାବିଦ୍ ଯୋଉ ବହି ବାହାରକରିଚନ୍ତି, *The God that Failed,* ସେଥିରୁ କ'ଣ ବୁଝାଯାଉନାହିଁ ଯେ କମିଉନିଜ୍ମ ଓ ଧର୍ମ ଭିତରେ ସେମାନେ ଦେଖୁନାହାଁନ୍ତି ପ୍ରଭେଦ, ଅନ୍ୟଥା ଈଶ୍ୱର (ଗଡ୍) ଆସିଲେ କୁଆଡୁ ସାମ୍ୟବାଦ ଭିତରକୁ ? ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ ଯେ ଦୁନିଆ କେମିତି ଯୁଗରୁ ଯୁଗାନ୍ତର ବଦଳିଯାଏ, ତାର ଗୋଟାଏ ପ୍ୟାଟର୍ଣ୍ଣ ଅଛି । ସେକିଉଲାର୍ ପରିଭାଷାରେ ସେ ପ୍ୟାଟର୍ଣ୍ଣକୁ କୁହାଯାଉଚି ଇତିହାସ । ମାତ୍ର ଇତିହାସ ନିରୁଦ୍ଦେଶ ବର୍ଣ୍ଣନା ନୁହେଁ, ପୂର୍ବନିର୍ଦ୍ଧାରିତ ଉଦ୍ଦେଶ୍ୟ ସାଧନପାଇଁ ଇତିହାସର ସୃଷ୍ଟି; ତାର ରହିଚି ଖ୍ରୀଷ୍ଟୀୟ ଉତ୍ତରାଧିକାର; ଅର୍ଥାତ୍, ଈଶ୍ୱର-ନିର୍ଦ୍ଧାରିତ ଉଦ୍ଦେଶ୍ୟ ପୂର୍ଣ୍ଣହେବା ସଙ୍ଗେସଙ୍ଗେ ଆବିର୍ଭୂତହେବ ନବଯୁଗ ଏବଂ ସେଇ ଉତ୍ତରାଧିକାର ପାଇଥିଲେ ବୋଲି କାର୍ଲମାର୍କ୍ସ ଭାବିପାରିଚନ୍ତି ଇତିହାସର ଅଭୀଷ୍ଟ: ସର୍ବଜନର କଲ୍ୟାଣ ! କାର୍ଯ୍ୟ-କାରଣ ଯୁକ୍ତିରେ ଇତିହାସକୁ ବୁଝିବାକୁ ଚେଷ୍ଟା ତେଣୁ

ବ୍ୟର୍ଥ ପ୍ରୟାସ; ବୁଝିବାକୁ ହେବ ଘଟଣାକୁ ଘଟାଉଚି କି 'ଉଦ୍ଦେଶ୍ୟ' । ଆଧୁନିକ କାଳର ରାଜନୀତି, ଯେପରି ଫ୍ରାନ୍ସରେ ଜାକୋବିନିଙ୍କୁ, ରସିଆରେ ବଲ୍‌ସେଭିକ୍କୁ, ଜର୍ମାନୀରେ ନାଜିଙ୍କୁ ସେଇ ଉଦ୍ଦେଶ୍ୟକୁ ପୁନରୁତ୍ପାଦିତ କରିଚି କେବଳ ବିଜ୍ଞାନର ଦ୍ୱାହିଦେଇ; ସମଗ୍ର ପାଶ୍ଚାତ୍ୟ ସଭ୍ୟତା କେନ୍ଦ୍ରରେ କିନ୍ତୁ ସକ୍ରିୟ ସେଇ ଧର୍ମୀୟ ଯୁଗାନ୍ତର ବିଶ୍ୱାସ । ଯୁଦ୍ଧ ଆଉ ଅର୍ଥବ୍ୟବସ୍ଥାର ଅଧଃପତନ ଜର୍ମାନୀ କି ରସିଆରେ ଘଟାଇଚି ଯେମିତି ଯୁଗାବସାନ, ଆମେରିକାରେ ସେମିତି ଅକଳ୍ପନୀୟ ସନ୍ତ୍ରାସବାଦୀ ଆକ୍ରମଣ; ଏବଂ ସେଥିପାଇଁ, ଆବଶ୍ୟକ ହୋଇଚି ସମ୍ବିଧାନରେ ହେର୍‌ଫେର୍ ସାଙ୍ଗକୁ ଅନାବଶ୍ୟକ-ଯୁଦ୍ଧାଭିଯାନ । ଏ ଗୋଟାଏ ଆକ୍ସିଡେଣ୍ଟ୍, କିନ୍ତୁ ଯୁଗାନ୍ତର ବିଷୟକ ପ୍ରାଚୀନ ବିଶ୍ୱାସ କେମିତି ରାଜନୀତିର ଧାରାକୁ ହଠାତ୍ ଛିନ୍ନକରିଦିଏ, ନିର୍ଭରକରୁଚି ଇତିହାସ-ଗତିରେ ଘଟିବ କେତେବେଳେ ଆକ୍ସିଡେଣ୍ଟ୍ ।

ଆକ୍ସିଡେଣ୍ଟ୍ ମାନେ ଭାଓଲେନ୍ସ, ଉପର୍ଯ୍ୟୁକ୍ତ ବିବରଣରୁ ଅନ୍ତତଃ ଅନ୍ୟତର ବ୍ୟାଖ୍ୟା ବାହାରୁନାହିଁ। ଅଥଚ ପୃଥିବୀର କୋଉହେଲେ ଧର୍ମମତ ମାରିବା କାଟିବା-ପୋଡ଼ିବା-ଜାଳିବାକୁ ଅନୁମୋଦନ କରେନା, ଏପରିକି, ଯୋଉ ମଧ୍ୟପ୍ରାଚ୍ୟ ଆମେରିକାର ଗଣତନ୍ତ୍ର-ପ୍ରସାରର ଲକ୍ଷ୍ୟସ୍ଥଳ, ସେଠି ମଧ୍ୟ ଯୀଶୁଙ୍କ ଜନ୍ମର ପ୍ରାୟ ଦେଢ଼ହଜାର ବର୍ଷପୂର୍ବରୁ ଆର୍ଯ୍ୟକୁଳପତି ଜରାଥୁଷ୍ଟ୍ର ଯୋଉ ଯୁଦ୍ଧ କଥା କହିଚନ୍ତି, ତା ଅନ୍ଧାର ସାଙ୍ଗରେ ଆଲୁଅର ଯୁଦ୍ଧ ଏବଂ ଶେଷ ପରିଣାମ ଯେ ଆଲୁଅର ଜୟ, ସେକଥା ମଧ୍ୟ କହିପାରିନାହାଁନ୍ତି ମହାପୁରୁଷ । ଅର୍ଥାତ୍ ଇତିହାସର କୋଉ ପୂର୍ବନିର୍ଦ୍ଧାରିତ ଉଦ୍ଦେଶ୍ୟ ଅଛି ବୋଲି ଭାବିନାହାଁନ୍ତି । ଭାରତରେ ମଧ୍ୟ କୁରୁକ୍ଷେତ୍ରରେ ଯୁଦ୍ଧକରିଚନ୍ତି ମହାପୁରୁଷ; କିନ୍ତୁ ମଣିଷ ମାରିଲେ ବି, ପାପ ତାଙ୍କୁ ସ୍ପର୍ଶକରିନାହିଁ ଯେହେତୁ ଜୀବନବ୍ୟାପୀ ସାଧନା ଫଳରେ ନୀତି-ଅନୀତି ଭଳି ଭେଦାଭେଦରୁ ମୁକ୍ତହୋଇଯାଇଚନ୍ତି ସଶରୀର । ଯୁଦ୍ଧକରିଚନ୍ତି ଅବଶ୍ୟ, ସ୍ୱାର୍ଥସାଧନ ସକାଶେ ନୁହେଁ କି ପକ୍ଷପାତ ଦୋଷରୁ ନୁହେଁ; ଏକମାତ୍ର କାରଣ ଯୁଦ୍ଧକରିବା ତାଙ୍କ ବୃତ୍ତି ଆଉ ପ୍ରବୃତ୍ତି । କର୍ମଫଳର ବନ୍ଧନ ତେଣୁ ଛୁଏଁନା । ସନ୍ଦେହ ନାହିଁ, ସାଧାରଣ ଆମେରିକାନ୍ ଏଭଳି ଦାବି କରିପାରେନା, ତା ଜ୍ଞାନକ୍ଷମତା ଯେତେ ଅରାଜନୀତିକ ହୋଇଥାଉ ପଛେ । ଅନ୍ୟ ଶବ୍ଦରେ, ଜଗତର ଅନ୍ୟ ସମସ୍ତଙ୍କ ଭଳି ସାମାଜିକ ସଂଯମ ଆଚରଣକରିବାକୁ ଗଣତନ୍ତ୍ର ତାକୁ ବାଧ୍ୟକରେ । କର୍ତ୍ତବ୍ୟ ଓ ଦାୟିତ୍ୱର ସେଇ ଦ୍ୱାନ୍ଦ୍ୱିକତା ଯେହେତୁ ନିର୍ଦ୍ଧାରଣକରେ ନୈତିକତା, ଜଗତର ମଙ୍ଗଳକରିବାକୁ, ଇରାକ୍‌ରେ ଗଣତନ୍ତ୍ର ପ୍ରତିଷ୍ଠାକରିବାକୁ, ଲୁଣ୍ଠନ ନରହତ୍ୟା ବଳାତ୍କାର ଇତ୍ୟାଦି ରଜ୍ଜୁରେ ସର୍ପଭ୍ରମ ମାତ୍ର, ଯା ଉପରେ ଗଢ଼ିଉଠିଚି ସାମ୍ରାଜ୍ୟବାଦ । ଆଧୁନିକ ପୃଥିବୀର ରାଜନୀତି ଦିନକରେ ତିଆରିହୋଇନାହିଁ କି

କୋଉ ଧର୍ମମତର ଅନୁପ୍ରେରଣାରେ । ଈଶ୍ୱର ଯଦି ଆଗତୁରା ଠିକଣା କରିଦେବ, ସବଳ କେମିତି ରାଜୁତିକରିବ ଦୁର୍ବଳ ଉପରେ ପୁରୁଷାନୁକ୍ରମେ, ରାଜନୀତି ପାଇଁ ତେବେ ବାକି ରହିବନାହିଁ କିଛିହେଲେ । ଆଜିର ରାଜନୀତି ତେଣୁ ବିଶ୍ୱାସକରେ, ମଣିଷର ଭାଗ୍ୟ ବଦଳାଇଦେଇପାରେ ନିଜେ ମଣିଷ ଏବଂ ଦୁଃଖଦୁର୍ବିପାକରୁ ଉଦ୍ଧାରକରିପାରେ ଜ୍ଞାନବଳ । ସେଇ ସାକ୍ଷ୍ୟ ବହନକରୁଚି ବିଗତ ଦୁଇଶତାବ୍ଦୀ; ମଣିଷ କେମିତି ସ୍ୱପ୍ନ ଦେଖୁଚି କେତେନାକେତେ ପରିବର୍ତ୍ତନର, ଆଉ ସେଇ ଇଉଟୋପିଆଗୁଡ଼ାକୁ ନେଇ ପରୀକ୍ଷାନିରୀକ୍ଷା କରୁଚି କେମିତି ନିରନ୍ତର । ମାତ୍ର ଇଉଟୋପିଆ ସବୁବେଳେ ବିପ୍ଳବୀଙ୍କ ସ୍ୱପ୍ନ ନୁହେଁ; ସାଧାରଣ ଲୋକର ପ୍ରତ୍ୟାଶା ଦମନ-ଶୋଷଣରୁ ମୁକ୍ତ ଏକ ସଭ୍ୟ ଭବ୍ୟ ସମାଜ, ଦୂରକଳ୍ପୀ କୋଉ ଇନ୍ଦ୍ରଭୁବନ ନୁହେଁ । ପ୍ଲାଟୋ ଯୋଉ ଇଉଟୋପିଆର ନକ୍ସା କାଟିଚନ୍ତି ରିପବ୍ଲିକ୍‌ରେ, ତାର ଅବସ୍ଥିତି ଇତିହାସ ବାହାରେ, କାହିଁକିନା, ମଣିଷ ସ୍ୱଭାବରେ ଯା ଅନ୍ତର୍ଗୁଢ଼, ପ୍ଲାଟୋ ସେଗୁଡ଼ିକୁ ସ୍ୱୀକୃତିଦେଇନାହାଁନ୍ତି କଳ୍ପିତ ଆଦର୍ଶସମାଜରେ । ଯା ସାର୍ବଜନୀନ, ତା ଇଉଟୋପିଆରେ ନାହିଁ; ଯା ଅଛି, ତା ମୂଳତଃ ଅବାସ୍ତବ । ଆମେରିକା ଯୋଉ ସାମ୍ରାଜ୍ୟ ପ୍ରତ୍ୟାଶାକରୁଚି ଗଣତନ୍ତ୍ର ନାଁରେ, ସକଳ ଅର୍ଥରେ ତା ଅନ୍‌ରିଏଲ୍ ବା ଅପ୍ରାକୃତିକ, କାହିଁକିନା, ସେଥିରେ ଦ୍ୱନ୍ଦ୍ୱ କି ସଂଘାତକୁ ସ୍ୱୀକୃତି ନାହିଁ, ଜୀବନରୁ ଯା ଅଚ୍ଛେଦ୍ୟ । ଦ୍ୱନ୍ଦ୍ୱ ଓ ସଂଘାତକୁ ମାନିନେଲେ ସେଥିରୁ ନିସ୍ତାରର ବାଟ ଖୋଜିବ ମଣିଷ, ସେଗୁଡ଼ିକୁ ଅତିକ୍ରମକରିବାକୁ ପ୍ରୟାସକରିବ ନିରନ୍ତର, ଏବଂ ସେଇ ଅନ୍ୱେଷଣ ଆଉ ଉଦ୍ୟମର ନକ୍ସା ହିଁ ଯଥାର୍ଥ ଇଉଟୋପିଆ । ଅର୍ଥାତ୍, ଯାପିତ ଜୀବନ ଭିତରଦେଇ କ'ଣ ସମ୍ଭବପର, କ'ଣ ନୁହେଁ, କିପରି ସମ୍ଭବପର, କିପରି ନୁହେଁ- ଅସୁମାରୀ ସେଇ ସମ୍ଭାବନାଗୁଡ଼ାକୁ ନେଇ କଳ୍ପନାଜଳ୍ପନା । ସ୍ୱାଭାବିକ ନିୟମରେ, ପରିବର୍ତ୍ତନ ଆଣିବା ପାଇଁ ହିଂସାର ଉପଯୋଗ ମଧ୍ୟ ସ୍ଥାନପାଇବ କଳ୍ପନାରେ; ହିଂସାକୁ ଅଗ୍ରାହ୍ୟକରିବା ଅଯୌକ୍ତିକ, କାହିଁକିନା, ସ୍ୱାଭାବିକ ଗଣତାନ୍ତ୍ରିକ ଉପାୟରେ ଆକାଂକ୍ଷାକୁ ଯଦି ଚରିତାର୍ଥ କରିନହୁଏ, ଶାସକଶ୍ରେଣୀର ସ୍ୱାର୍ଥ ଆସି ବାଟ ଓଗାଳେ, ବାହୁବଳ ପ୍ରୟୋଗ ନକରିବା କାପୁରୁଷତା । ଅନେକ ସମ୍ଭାବନା ଭିତରେ ସେ ବି ଗୋଟିଏ ସମ୍ଭାବନା । ରୋଜା ଲୁକ୍‌ସେମ୍‌ବୁର୍ଗ ଯେମିତି ପଚାରିଚନ୍ତି, ମାର୍କ୍ସିଜ୍ମ ନା ବାର୍‌ବରିଜ୍ମ ? ମାର୍କ୍ସଚିନ୍ତା ଗୋଟିଏ ସମ୍ଭାବନା, ମାତ୍ର ଅନ୍ୟାନ୍ୟ ସମ୍ଭାବନା ପରି ନିରାପଦ ନୁହେଁ, କାହିଁକିନା, ତାର ଅନାଗମନ ବାଟ ଖୋଲିଦେବ ବର୍ବରତାକୁ । ବର୍ବରତାକୁ ପ୍ରତିହତକରିବାକୁ ବଳପ୍ରୟୋଗ ଯଦି ଜରୁରୀ ହୋଇପଡ଼େ, ଇଉଟୋପିଆର ନକ୍ସାଭିତରେ ତା'ପାଇଁ ରାସ୍ତା ରଖିବାକୁ ପଡ଼ିବ । ମାତ୍ର ଅଧୁନାତମ ଗଣତନ୍ତ୍ର ଯେହେତୁ

ନବୋଦ୍ଭିତ ବୁର୍ଜୋୟାର ଗଣତନ୍ତ୍ର, ରାଷ୍ଟ୍ର ପାଖରୁ ପ୍ରତିରୋଧ ଆସିବା ପାପପୁଣ୍ୟ ବିଷୟର ନୁହେଁ, କାହିଁକିନା, ବାହୁବଳକୁ ଶ୍ରେଣୀସମାଜରେ ମୁକାବିଲା କରିପାରେ କେବଳ ବାହୁବଳ; ପୁଣି, ସଶସ୍ତ୍ର ପ୍ରତିରୋଧର ଅଛି ନୈତିକ ମର୍ଯ୍ୟାଦା, ବର୍ବରତାକୁ ପ୍ରତିହତକରିବା ଯେହେତୁ ତାର ଜୀବନବ୍ରତ । ଇତିହାସ କହୁଚି, ସେଇ ବାଟରେ ଯାଇଚନ୍ତି ଜାକୋବିନ୍, ସେଇ ବାଟରେ ଯାଇଚନ୍ତି ପୁଣି ବଲ୍‌ସେଭିକ୍; ଅର୍ଥାତ୍ ଆଖ୍ୟାନରୁ ପ୍ରସ୍ଥାନକରି ଇତିହାସ ପାଲଟିଯାଇଚି ଅଗ୍ରଗତି । ଅନ୍ୟ ଶବ୍ଦରେ, ମଣିଷଚରିତ୍ରର ଅଗ୍ନିଶୁଦ୍ଧି ଯେ ଘଟାଇପାରେ ଅସ୍ତ୍ରଧାରଣ, ସର୍ଜନଶୀଳ ବିନାଶ ଯେ ହୋଇପାରେ ସମାଜରୂପାନ୍ତରର ଆଦ୍ୟପର୍ବ– ଏଇ କଥାଟା ପ୍ରତିପାଦିତକରିଚି ନିଜକୁ ନିଜେ । ଅବଶିଷ୍ଟ ବିବାକ ଅର୍ଥବ୍ୟବସ୍ଥାକୁ ପଙ୍ଗୁକରିଦେବା ଉତାରୁ ବିଶ୍ୱବ୍ୟାପୀ ଧନତନ୍ତ୍ର ମଧ ଇତିହାସର ଘଟାଇଦେବ ଇତି, ଏଭଳି ଆଶଙ୍କାର ପ୍ରତିଷେଧକ ବିଶଲ୍ୟକରଣୀ ତେଣୁ ବିଶ୍ୱବ୍ୟାପୀ ସନ୍ତ୍ରାସ । ସେଥିପାଇଁ, କମିଉନିଜ୍ମର ରାଜନୀତିକ ଅନ୍ତ୍ୟେଷ୍ଟି ଘଟିଯାଇଥିଲେ ସୁଦ୍ଧା, ଇଉଟୋପିଆ ବାମ୍ପହୋଇ ଉଡ଼ିଯାଇନାହିଁ ଆକାଶକୁ ।

ବିଶ୍ୱସଂସାର ଉପରେ ଏକଚ୍ଛତ୍ର ଆଧିପତ୍ୟ କରିବ ସମରବଳ ଓ ଧନବଳରେ ଅପ୍ରତିଦ୍ୱନ୍ଦ୍ୱୀ ଆମେରିକା— ଏଇ ଥିଲା ଜର୍ଜ ବୁଶ୍‌ଙ୍କ ଇଉଟୋପିଆ । ସେଇ ସ୍ୱପ୍ନର ଭେଲିକି ଦେଖାଇ ଯୁକ୍ତରାଷ୍ଟ୍ରର ଗଣତନ୍ତ୍ରକୁ କରିଦେଇଚନ୍ତି ପ୍ରମତ୍ତ । କିନ୍ତୁ ରାଷ୍ଟ୍ରର କ୍ଷମତାକୁ ଯେତେବେଳେ ନିର୍ବିଚାର ଉପଯୋଗ କରାଯାଇଚି, ସ୍ୱପ୍ନଭଙ୍ଗର ହତାଶାକୁ, ଇଉଟୋପିଆର ଛିଦ୍ରମୟତାକୁ ଢାଙ୍କିପକାଇବା ସକାଶେ ସର୍ବସାଧାରଣଙ୍କ ସ୍ୱାଧୀନତା (ଫ୍ରିଡମ୍) ଉପରେ ପଡ଼ିଚି ବଜ୍ରକଠିନ ମୁଷ୍ଟି । ସେତେବେଳେ ଅବଧାରିତ ପରାଭବରୁ ଉଦ୍ଧାରପାଇବା ହୋଇଯାଇଚି ଅସମ୍ଭବ, ମାତ୍ର ଗଣତନ୍ତ୍ରର କ୍ଷତ ରହିଚି ଅଚିକିତ୍ସିତ । ତୃତୀୟ ବିଶ୍ୱରେ ମଧ ଘଟିପାରେ ଅନୁରୂପ ସ୍ୱପ୍ନଭଙ୍ଗ । ଫଳରେ ଆଉ ଯା ହେଉ କି ନହେଉ, ଗଣତନ୍ତ୍ର ହେବ ଆହୁରି ଦୁର୍ବଳ, ଆହୁରି ଅନୁଦାର, ଆହୁରି ବେଶି ଆତ୍ମରକ୍ଷାପ୍ରବଣ । ଦେଶର ଆପାଦମସ୍ତକ ବୁର୍ଜୋୟାକରଣକୁ ରୋକିପାରିବନାହିଁ ଅସ୍ଥିଚର୍ମସାର 'ସାର୍ବଭୌମ' ରାଷ୍ଟ୍ର ।

**।। ଛଅ ।।**

ସେକିଉଲାରିଜ୍ମ ଆଉ ଗଣତନ୍ତ୍ର ଛଡ଼ା ତୃତୀୟ ଯୋଉ ଦାୟବଦ୍ଧତା ପ୍ରତି ଅଙ୍ଗୀକାର ରହିଚି ସଂବିଧାନରେ, ତା ସୋସାଲିଜ୍ମ; ମାତ୍ର ବିଶଦକରାଯାଇନାହିଁ ଗୁଣଧର୍ମ କି ଆକାରପ୍ରକାର । ଏ ସଂଯୋଜନ କିନ୍ତୁ ଇମରଜେନ୍ସି-ପରବର୍ତ୍ତୀ ଘଟଣା, ନେହରୁଙ୍କ ଫେବିଆନ୍ ସୋସାଲିଜ୍ମ ନୁହେଁ । ଉପନିବେଶର ଅବସାନ ମାନେ ଯେ ଅବଧାରିତ

ସୋସାଲିଜ୍ମ, ଏ ଧାରଣା ବୁଦ୍ଧିର ଔଦ୍ଧତ୍ୟ ମାତ୍ର । ତଥାପି, ପଞ୍ଚଶଦଶକ ମଝାମଝି, ନେହ୍ରୁଙ୍କ ମନକୁ ଆସିଚି 'ସୋସାଲିସ୍ଟିକ୍ ପାଟର୍ଣ୍ଣ' । ଭାରତର ଭୌଗୋଳିକ ଆୟତନ ଓ ଜନସଂଖ୍ୟା ସହିତ ତୁଳନୀୟ ଥିଲା ସେତେବେଳେ ସୋଭିଏଟ୍ ଇଉନିଅନ୍ ଓ ମହାଚୀନ୍ । ଉଭୟର ରାଜନୀତିକ ଆଦର୍ଶ ଥିଲା ସୋସାଲିଜ୍ମ । ସେଇ ପ୍ୟାଟର୍ଣ୍ଣକୁ ଜବାହର୍‌ଲାଲ୍ ଅନୁକରଣୀୟ ଭାବିଥିଲେ କି ନାହିଁ, ସପକ୍ଷ ବିପକ୍ଷରେ ନିର୍ଭରଯୋଗ୍ୟ ପ୍ରମାଣ ମିଳିବନାହିଁ । କିନ୍ତୁ ସ୍ଥିତ ସମାଜରେ ପ୍ରଚଳିତ ପ୍ରପର୍ଟି ରିଲେସନ୍ସ ଯେ ତାଙ୍କୁ କ୍ଷୁବ୍ଧକରିଚି, ସାକ୍ଷ୍ୟ ମିଳୁଚି ଭୁରି ଭୁରି । ଅଥଚ ମାର୍କ୍ସଚିନ୍ତାରେ ସୋସାଲିଜ୍ମ କୋଉ ଅନ୍ତିମ ଗନ୍ତବ୍ୟ ନୁହେଁ; ଟ୍ରାନ୍‌ଜିସନ୍ ବା ଅଭିସରଣ ମାତ୍ର, ଦ୍ୟର୍ଥହୀନ ଭାଷାରେ 'ନିଗେସନ୍ ଅବ୍ କ୍ୟାପିଟାଲିଜ୍ମ'; ଧନତନ୍ତ୍ରକୁ 'ନା'କହିବା । ବୁର୍ଜୋୟାଶାସିତ ରାଷ୍ଟ୍ର ଧନତନ୍ତ୍ରକୁ 'ନା' କହିପାରେନା । କହିପାରେ ଗତରଖଟି ପେଟପୋଷୁଥିବା ମଣିଷ; ଶ୍ରମଜୀବୀର ସେଇ 'ନା'କହିବା ପ୍ରକ୍ରିୟା ହିଁ ଶ୍ରେଣୀସଂଗ୍ରାମ । ବିନା ଶ୍ରେଣୀସଂଗ୍ରାମରେ ରାଷ୍ଟ୍ର କେମିତି ଧନତନ୍ତ୍ରକୁ ଅତିକ୍ରମକରିବ, ଇତିହାସରୁ ସେ ଦୃଷ୍ଟାନ୍ତ ମିଳିବନାହିଁ । ଜବାହର୍‌ଲାଲ୍ ହୁଏତ ଭାବିଚନ୍ତି, ଆଇନ୍‌କାନୁନ୍ ବଦଳାଇଦେଲେ ଧନବୈଷମ୍ୟ ଅନେକାଂଶରେ କମିଯିବ । 'ପ୍ୟାଟର୍ଣ୍ଣ' ଶବ୍ଦଟା ତେଣୁ ଅସଲ ସମସ୍ୟାକୁ ଏଡ଼ାଇଯିବାକୁ ସିମ୍ୟାନ୍‌ଟିକ୍ ଛିଦ୍ରପଥ । ଧନବୈଷମ୍ୟ କିନ୍ତୁ କମିନାହିଁ, ବଢ଼ିଚି ବରଂ ବେଜାଏ । ଇନ୍ଦିରାଗାନ୍ଧି ସୋସାଲିଜ୍ମ କଥା ତେବେ ଭାବିଲେ କାହିଁକି ? ଗୋଟିଏ ଉତ୍ତର ହୋଇପାରେ, ଇମର୍ଜେନ୍ସି ଘୋଷଣାକୁ ଶ୍ରେଣୀହୀନ ସମାଜ ଗଠନ ଦିଗରେ ଆବଶ୍ୟକ ପ୍ରଥମ ପଦକ୍ଷେପ ବୋଲି ପ୍ରତିପନ୍ନ କରିବା; ଆଉଗୋଟିଏ ଉତ୍ତର ସୁଦୂର ଏକ ଭବିଷ୍ୟତ୍ ସକାଶେ ପଥନିର୍ଦ୍ଦେଶ ରଖିଯିବା । ସୋସାଲିଜ୍ମ ତେଣୁ ଏକ ବ୍ଲୁ-ପ୍ରିଣ୍ଟ, ସମ୍ଭାବ୍ୟ ଭବିଷ୍ୟତର ବ୍ଲୁ-ପ୍ରିଣ୍ଟ୍ । ମାର୍କ୍ସଙ୍କ ଜୀବଦ୍ଦଶାରେ ଅନେକ ବ୍ଲୁ-ପ୍ରିଣ୍ଟ୍ ତିଆରିକରିଚନ୍ତି ଉତ୍ସାହୀ ସହଚର, କଳ୍ପିତ ସେଇ ଇଉଟୋପିଆଗୁଡ଼ାକୁ ମାର୍କ୍ସ କିନ୍ତୁ କହିଚନ୍ତି 'pocket editions of the New Jerusalem' ! ସମାଜରୂପାନ୍ତର ଆଦର୍ଶ ପ୍ରତି ନିବେଦିତପ୍ରାଣ ଲୋକଙ୍କ ମନକୁ ଆସେ କାହିଁକି ଏଭଳି ସ୍ୱପ୍ନବିଳାସ ? ଉତ୍ତର ହେଲା, ଧନତାନ୍ତ୍ରିକ ଉତ୍ପାଦନର ଅବସ୍ଥା ଯେତେବେଳେ ଅପରିଣତ, ଶ୍ରେଣୀସମ୍ପର୍କ ବି ସେତେବେଳେ ବାଞ୍ଛିତ ତୀବ୍ରତା ଆହରଣ କରିପାରେନା; ଇତିହାସର ସେଇ ସଂଧିକ୍ଷଣରେ ଯଦି ସମାଜ-ପୁନର୍ଗଠନର ତତ୍ତ୍ୱ ତିଆରିକରାଯାଏ, ସେ ତତ୍ତ୍ୱ ଶିଶୁସୁଲଭ ହେବାକୁ ବାଧ୍ୟ । ଶ୍ରେଣୀହୀନ ସମାଜ ବାଞ୍ଛିତ ଆଦର୍ଶ ହୋଇପାରେ; ତା' ବୋଲି, ବିଦ୍ୟମାନ ବାସ୍ତବ ସେ ଆଦର୍ଶର ଯୋଗ୍ୟହେବାକୁ ନିଜକୁ କାଟିଛାଣ୍ଟି ଆକାରପ୍ରକାର ବଦଳାଇଦିଏନା ଆପେଆପେ । ବଦଳାଇଦିଏ ଐତିହାସିକ ପ୍ରକ୍ରିୟା, ଯା ସମାଜ

ଭିତରେ ନିୟତ ସକ୍ରିୟ । କ୍ୟାପିଟାଲିଜ୍ମ ସେଇ ଗତିଶୀଳତା ଭିତରଦେଇ ବାସ୍ତବ (ରିଆଲିଟି)କୁ ବଦଳାଇଚି । ତାକୁ 'ନା' କହିବାକୁ ହେଲେ, ଦରକାର ଅକୃତ୍ରିମ ଜାଗରଣ(=ମୁଭ୍‌ମେଣ୍ଟ), ବିକଳ୍ପ କୋଉ ଇଉଟୋପିଆ ନୁହେଁ, କାହିଁକିନା, ଇତିହାସ ଥିୟରି (ଇଉଟୋପିଆ)ର ଧାରଧାରେନା ।

ଏଇ ଜାଗରଣ ବା ଐତିହାସିକ ପ୍ରକ୍ରିୟା ବସ୍ତୁତଃ ପୁଞ୍ଜିବାଦର ବିକଟନ ପ୍ରକ୍ରିୟା । ତାର ମୂଳ ସମସ୍ୟା ହେଲା, ପ୍ରାଥମିକ ଉତ୍ପାଦକ ପାଖରୁ କି ଭାବରେ ଓ କେତେ ବେଶି ଉଦ୍‌ବୃତ୍ତମୂଲ୍ୟ ନିଷ୍କାସନ କରାଯାଇପାରିବ । ଅର୍ଥାତ୍, ପ୍ରାଥମିକ ଉତ୍ପାଦକକୁ ନ୍ୟାଯ୍ୟ ପ୍ରାପ୍ୟରୁ କି ଭାବରେ ବଞ୍ଚିତକରି ମୂଳଧନ ଠୁଳକରାଯିବ । ସେଇ ନିଷ୍କାସନପ୍ରକ୍ରିୟା ମାର୍କ୍ସଙ୍କୁ ଯୋଗାଇଦେଇଚି ତତ୍ତ୍ୱନିର୍ମାଣ ସକାଶେ ଅଙ୍କୁର, ଦୋହନ ଶୋଷଣ ଅବବୋଧ । ମୌଳିକ ପରିଚୟରେ ସୋସାଲିଜ୍ମ ତେଣୁ ନିଗେସନ୍, କ୍ୟାପିଟାଲିଜ୍ମର 'ଅପର' । ଅସଲ ଉଦ୍ଦେଶ୍ୟ 'ନା-କହିବା' ହେଲେସୁଦ୍ଧା, ଶୋଷଣର ଅବଲୁପ୍ତି ତାର ଚରମ ଲକ୍ଷ୍ୟ ନୁହେଁ, ଲକ୍ଷ୍ୟର ଅନୁଷଙ୍ଗ ମାତ୍ର । ସେ ଅନୁଷଙ୍ଗ ଭିତରେ ରହିଚି ଉତ୍ପାଦନର ସାଧନଗୁଡ଼ିକ ଉପରୁ ବ୍ୟକ୍ତିଗତ ମାଲିକାନାର ବିଲୁପ୍ତି; ବ୍ୟକ୍ତିଗତ ମାଲିକାନା ପରିବର୍ତ୍ତେ ସାମୂହିକ ସାମାଜିକ ମାଲିକାନା ପ୍ରବର୍ତ୍ତନ । ସାମାଜିକ ଉତ୍ପାଦନରୁ ଲବ୍ଧ ରାଶିକୃତ ଉଦ୍‌ବୃତ୍ତମୂଲ୍ୟ ସମାଜର ସକଳ ସଦସ୍ୟଙ୍କ ଅନ୍ନବସ୍ତ୍ର ଅଭାବ ଖାଲି ଦୂରକରିବନି, ଶିକ୍ଷା ସ୍ୱାସ୍ଥ୍ୟ ଆଇନ୍‌କାନୁନ୍ ଭଳି ସାଂସ୍କୃତିକ ପ୍ରୟୋଜନଗୁଡ଼ିକୁ ମଧ୍ୟ ତୁଷ୍ଟକରିବ । ଆଉକାହାରି ସଂଶୟ ଥାଇପାରେ, ମାତ୍ର ମାର୍କ୍ସଙ୍କ ପାଇଁ ସୋସାଲିଜ୍ମ ଥିଲା ଶ୍ରେଣୀହୀନ ସମାଜ ସ୍ଥାପନର ଆଦ୍ୟସର୍ତ୍ତ । ଶ୍ରେଣୀହୀନ ସମାଜ ପ୍ରତିଷ୍ଠାକୁ ମନନ ସ୍ତରରେ କୁହାଯାଏ 'କମିଉନିଜ୍ମ' ବା ସାମ୍ୟବାଦ; ମାର୍କ୍ସଙ୍କ ଦୃଷ୍ଟିରେ ଯା ମାନବ ପ୍ରଜାତିର ପ୍ରାକ୍-ଇତିହାସର ଅନ୍ତ୍ୟେଷ୍ଟି, ପ୍ରକୃତ ଇତିହାସର ଆରମ୍ଭ । ଏଇ ହେଲା ମାର୍କ୍ସ-କଳ୍ପିତ ସୋସାଲିଜ୍ମର କଙ୍କାଳ । ଭାରତ, କ୍ୟାପିଟାଲିଜ୍ମ ଯୋଉଠି ପରିଣତ ନୁହେଁ କି ଶ୍ରେଣୀଚେତନା ପରିପକ୍ୱ ନୁହେଁ, ସୋସାଲିଜ୍ମ ପ୍ରତ୍ୟାଶାକରିବା ସଙ୍ଗତ ନୁହେଁ । ମାତ୍ର ସୋଭିଏଟ୍ ଇଉନିୟନ୍ ଓ ମହାଚୀନ୍‌ର ଉଦାହରଣ ଥିଲା ଆଖି ଆଗରେ । କୃଷିପ୍ରଧାନ ପଶ୍ଚାଦ୍‌ପଦ ସମାଜ ହେଲେ ବି, ଘଟିଯାଇଚି ସେଠି ବିପ୍ଳବ ! ଉତ୍ପାଦନର ସାଧନ ଉପରେ କୃଷକର ମାଲିକାନା କିନ୍ତୁ ସାବ୍ୟସ୍ତହୋଇନାହିଁ ଭାରତରେ । କୃଷକବିଦ୍ରୋହର ଧାରାବାହିକତା ମଧ୍ୟ ପରିଲକ୍ଷିତ ହୋଇନାହିଁ; ଫସରଫାଟିଯାଇଚି ଜାଗାବରଜାଗା । ତଥାପି, ଇତିହାସବିଦ୍ (ସବଲ୍ଟର୍ନ୍ ଗ୍ରୁପ୍) କହୁଚନ୍ତି, କୃଷକ ଭିତରେ ରହିଚି ସହଜାତ ପ୍ରତିବାଦୀ ଚେତନା ! ବୁର୍ଜୋୟାର ଅହୋରାତ୍ର ପ୍ରରୋଚନା ସତେ ଯେମିତି ସେଇ ଅନାବିଳ ଚେତନାକୁ ସ୍ପର୍ଶକରି

ପାରିନାହିଁ ! ଭାବାତିଶଯ୍ୟରେ ତାଡ଼ିତହୋଇ ସମାଜରେ ସାମ୍ୟଆଣିବାକୁ ଯିଏ ଚାହାଁନ୍ତି, ସେମାନଙ୍କୁ ପାଖପୁରାଇ ଦେଇନାହାଁନ୍ତି; ମାର୍କ୍ସ ଯେପରି, ଯିଏ କହିଚନ୍ତି ମଣିଷର ଶ୍ରମ ହିଁ ସବୁ ସଂପଦର ମୂଳ, ମାର୍କ୍ସ ପଚାରିଚନ୍ତି ବହିଃପ୍ରକୃତି ତେବେ ଦେଉଚି କି ଜିନିଷ ? ଯିଏ କହିଚନ୍ତି ପରିଶ୍ରମର ସୁଫଳ ଷୋଳପଣ ଭୋଗକରିବ ଶ୍ରମିକ, ମାର୍କ୍ସ ପଚାରିଚନ୍ତି, ପ୍ରକୃତି ଉପରେ ଶ୍ରମ ପ୍ରୟୋଗକରିବା ପୂର୍ବରୁ ଯନ୍ତ୍ରପାତି ଆଉ ବିନିଯୋଗଯୋଗ୍ୟ ମୂଳଧନ ତ ଯୋଗାଡ଼କରିବାକୁ ପଡ଼ିବ; ଶ୍ରମିକ ଯଦି ସବୁତକ ଘରକୁ ନେଇଯିବ, ଏଗୁଡ଼ାକ ଯୋଗାଡ଼ହେବ ଫେର୍ କେମିତି ? ତେଣୁ ସୋସାଲିଜ୍ମ ଅକ୍ତିଆରରେ ଉତ୍ପାଦନପ୍ରକ୍ରିୟାର ଖୁଣ୍ଟିନାଟି ଭାବିତକରିନାହିଁ ତାଙ୍କୁ, ଯେମିତି ନେହରୁଙ୍କୁ କରିଚି କୋଠଘଷ କିମ୍ବା ଭାରିଶିଳ୍ପ ବିଷୟରେ, କାହିଁକିନା, ପ୍ରତ୍ୟୟ ଜନ୍ମିଚି, ସୋସାଲିଜ୍ମର ଅଭ୍ୟୁଦୟ ଘଟିଲେ, ଘଟିପାରେ କେବଳ ଅଗ୍ରସର ଶିଳ୍ପୋନ୍ନତ ଦେଶଗୁଡ଼ିକରେ, ଅର୍ଥନୈତିକ ବିକାଶର ଦାୟିତ୍ୱ ଯୋଉଠି ଇତିହାସ ଦେଇସାରିଚି ଧନତନ୍ତ୍ରକୁ । ଅର୍ଥାତ୍, ଉତ୍ପାଦନ କି ରୀତିରେ ପରିଚାଳିତହେବ, ତାର ବିଧିବିଧାନ କ୍ୟାପିଟାଲିଜ୍ମ ଉଦ୍‌ଭାବନ କରିସାରିଚି; ସାମାଜିକ ନିୟନ୍ତ୍ରଣରେ ଉତ୍ପାଦନସମ୍ପର୍କ ନିଶ୍ଚୟ ବଦଳିଯିବ; ତା ପାଇଁ ଅଲଗାକରି ବ୍ଲୁ-ପ୍ରିଣ୍ଟ ବନାଇବା ଗଧଖଟଣି । କାହିଁକିନା, ସୋସାଲିଜ୍ମ ତ ଶେଷଲକ୍ଷ୍ୟ ନୁହେଁ ଯେ ତାର ମାନଚିତ୍ର ତିଆରିହେବ; କମିଉନିଜ୍ମକୁ ଯିବାବାଟରେ ସରାଇଖାନା ମାତ୍ର; କ୍ୟାପିଟାଲିଜ୍ମ ପରି ଦୁର୍ଲଂଘ୍ୟ ଦୁର୍ଗ ନୁହେଁ । କ୍ୟାପିଟାଲିଜ୍ମ ଯୋଉ ସମାଜକୁ ଜନ୍ମଦେଇଚି, ଆପଣା ବୈଶିଷ୍ଟ୍ୟରେ ସେ ସମାଜ ସ୍ୱତନ୍ତ୍ର କମିଉନିଜ୍ମକୁ ଯିବାବାଟରେ ସୋସାଲିଜ୍ମ ତାକୁ ହାବୁଡ଼ିବ, ମାତ୍ର ମାନିବନାହିଁ, ଆଗେଇଯିବ । କୋଉ 'ଭିସନ୍' ନୁହେଁ ଯେ ଦରକାରକରିବ ଇଉଟୋପିଆ; କାହିଁକିନା, କମିଉନିଜ୍ମରେ ପହଞ୍ଚିବାବେଳକୁ ତାର ପୂର୍ବାବସ୍ଥା ନଷ୍ଟହୋଇ ଯାଇଥିବ ପୁରାପୁରି । ଅନ୍ୟ ଶବ୍ଦରେ, ଏକମାତ୍ର 'ବର୍ତ୍ତମାନ' ତାଙ୍କ ଅଭିନିବେଶର ବିଷୟ, ଭବିଷ୍ୟତ କଳ୍ପନାଜଳ୍ପନା ନୁହେଁ । ସେଇ 'ବର୍ତ୍ତମାନ' ଥିଲା ବିଦ୍ୟମାନ ଧନତନ୍ତ୍ର, ପରିଣତ ଏକ ଆର୍ଥସାମାଜିକ ସିଷ୍ଟେମ୍, ଯା ଜନ୍ମଦେଉଚି ନାନାବିଧ କଣ୍ଟ୍ରାଡିକ୍ସନ୍ ବା ବୈପରୀତ୍ୟକୁ । ବୈପରୀତ୍ୟଭଞ୍ଜନ ଏଜେଣ୍ଡାରେ ସୋସାଲିଜ୍ମ ତେଣୁ ଅନ୍ୟତମ ସମ୍ଭାବନା । ସେ ସମ୍ଭାବନାକୁ ବାସ୍ତବାୟିତ କରିବେ ଯୋଉ ନରନାରୀ, ସେମାନେ ହିଁ ନିର୍ମାଣକରିବେ ତାର ଭବିଷ୍ୟତ୍ । ଆଗତୁରା କୋଷ୍ଠି ଗଣନାକରି ଗ୍ରହଶାନ୍ତି ବିଧାନଦେବା ମାର୍କ୍ସଙ୍କ କାମ ନୁହେଁ । ତଥାପି ସମାଜତାନ୍ତ୍ରିକ ସମାଜର ରୂପରେଖ କି ରକମ ହୋଇପାରେ, ସେ ବିଷୟରେ ଯା ଭାବିଚନ୍ତି, ବିଦ୍ୟମାନ ସୁଶୀଳସମାଜର ତା ଆଦ୍ୟୋପ୍ରାନ୍ତ ନିଗେସନ୍; କାହିଁକିନା, ଯା ଅଛି, ଯେମିତି ଅଛି, ସବୁଗୁଡ଼ାକୁ ଅତିକ୍ରମ (ଟ୍ରାନ୍‌ସେଣ୍ଡ) କରିବାକୁ ପଡୁଚି ଦ୍ୱାନ୍ଦ୍ୱିକ

ପଦ୍ଧତିରେ । ସୋସାଲିଜ୍ମ କୁତ୍ରାପି କମିଉନିଜ୍ମ ପର୍ଯ୍ୟନ୍ତ ଯାଇପାରିନାହିଁ; ଯଦିଓ ସମାଜତନ୍ତ୍ରର ଅନେକ ଅବତାର ବେଳକୁବେଳ ଦେଖିବାକୁ ମିଳିଚି ଢ଼େର୍ ଜାଗାରେ; ଆଧୁନିକ ଚିନ୍ତାଭାବନା ଉପରେ ସେଗୁଡ଼ିକର ପ୍ରଭାବ କମ୍ ନୁହେଁ । ଏପରିକି, ଭାରତୀୟ ଜାତୀୟତାବୋଧର ପ୍ରସାର ସହିତ ତାର ନାଡ଼ିର ବନ୍ଧନ ମଧ୍ୟ ଅଚ୍ଛେଦ୍ୟ ।

ବିଜ୍ଞାନ ଯେମିତି ଜାତି ଓ ଦେଶର ସୀମା ଅତିକ୍ରମକରେ, ଅର୍ଥନୀତିର ମୂଳସୂତ୍ରଗୁଡ଼ିକ ସେମିତି ଦୁନିଆସାରା ଏକାରକମ୍ ରୂପ ଧାରଣକରୁଚି । ଅଭିନ୍ନ ବୈଷୟିକ ଆଦର୍ଶ ଦ୍ୱାରା ଅନୁପ୍ରାଣିତହୋଇ ଅଭିନ୍ନ ପରିଣତି ଲାଭକରିବା ଅନେକ ସମାଜର ଲକ୍ଷ୍ୟ । ପ୍ରାଚ୍ୟସଭ୍ୟତା ସେଥିପାଇଁ ଚୀନ୍ କି ଭାରତର ସ୍ୱାତନ୍ତ୍ର୍ୟ ରକ୍ଷାକରି ପାରିନାହିଁ । ସୋସାଲିଜ୍ମର ସମସ୍ୟା ସବୁଠି ସମାନ ତୀବ୍ରହୋଇ ନଉଠିଲେ ବି, ସଭ୍ୟତା ସଂସ୍କୃତି କି ଧର୍ମ ଆଜି ତାର ପଥରୋଧ କରିପାରେନା; କାହିଁକିନା, କୃତ୍ରିମ ପାର୍ଥକ୍ୟଗୁଡ଼ାକୁ ଗତ ଦୁଇଶ'ଅଢ଼ାଇଶ'ବର୍ଷଧରି କ୍ୟାପିଟାଲିଜ୍ମ ଭାଙ୍ଗିଆସୁଚି । ଏବଂ ବୈଷୟିକ ବିଧିବ୍ୟବସ୍ଥା ଦୃଷ୍ଟିରୁ କ୍ୟାପିଟାଲିଜ୍ମ ସହିତ ଏଗୁଡ଼ିକର ସାଯୁଜ୍ୟ ଯେହେତୁ ନିବିଡ଼, କ୍ୟାପିଟାଲିଜ୍ମର ବିରୋଧ ମଧ୍ୟ ଏଗୁଡ଼ିକ ଦ୍ୱାରା କରାଯାଇପାରେନା । ନିବିଡ଼ହେବାର କାରଣ ଅବଶ୍ୟ ବହୁ ପ୍ରାଚୀନ: ବ୍ୟକ୍ତିକୈନ୍ଦ୍ରିକ ସମ୍ପତ୍ତିଭୋଗର ପରମ୍ପରା ଓ ଉତ୍ତରାଧିକାର ବିଧିବ୍ୟବସ୍ଥା । ଅପେକ୍ଷାକୃତ ଅର୍ବାଚୀନ ଯୋଉ ଇତିହାସ, ତା କେବଳ ଦୁଇଶ'ବର୍ଷ ଭିତରେ ଧନୋତ୍ପାଦନ ପ୍ରଣାଳୀର ବିପୁଳ ପରିବର୍ତ୍ତନ । ଅଥଚ ପ୍ରାୟ ସର୍ବତ୍ର ଧନଉତ୍ପାଦନ ସକାଶେ ଯେତେ ଯାହା ଦରକାର, ସେଥିରୁ ଗତର ବା ଶାରୀରିକ ପରିଶ୍ରମ ଛଡ଼ା ବାକି ସବୁଜିନିଷ ଅତି ଅଳ୍ପଲୋକଙ୍କ ବ୍ୟକ୍ତିଗତ ସମ୍ପତ୍ତି । ପୁଣି, ନୂଆ ଯୋଉ ପ୍ରଣାଳୀ ଆବିଷ୍କୃତ ହୋଇଚି, ସମ୍ପଦଶାଳୀ ଲୋକଙ୍କ ଛଡ଼ା, ବାକି ଲୋକଙ୍କ ଅକ୍ତିଆର ବାହାରେ ସେ ପ୍ରଣାଳୀ, ସମାଜରେ ସେଥିପାଇଁ ସୃଷ୍ଟିହୋଇଚି ପ୍ରଧାନ ଦୁଇଟି ସ୍ତର । ସବୁରକମ ଆର୍ଥିକ ସାମର୍ଥ୍ୟ ଗୋଟିଏ ସ୍ତର ଆୟତ୍ତରେ ପୁଞ୍ଜିଭୂତ, ଯୋଉ ସ୍ତର ବ୍ୟବସାବଣିଜରୁ ଲାଭଉଠାଏ; କିନ୍ତୁ ସଂଖ୍ୟାରେ ନଗଣ୍ୟ । ନଗଣ୍ୟ ହେଲେସୁଦ୍ଧା, ଧନଦୌଲତ ବଦଳରେ ସେମାନେ ସମାଜର ସର୍ବେସର୍ବା । ଅନ୍ୟ ସ୍ତରଟି ଅସଂଖ୍ୟ ଶ୍ରମଜୀବୀ, ମୂଲମଜୁରୀ ଖଟି ସାମାନ୍ୟ ଯା ଅର୍ଜ୍ଜନକରେ, ସେଥିରେ କୌଣସିମତେ ଉଦରପୋଷଣ ହୁଏ ସିନା, କାମ ପାଇବାକୁ ନିର୍ଭର କରିବାକୁ ପଡ଼େ ପ୍ରଥମ ସ୍ତର ଉପରେ । ସମାଜର ଅପରାପର ଅଂଶ ଅବଶ୍ୟ ଏଇ ଦୁଇ ମୁଖ୍ୟ ସ୍ତର ସହିତ ନାନାଭାବରେ ଜଡ଼ିତ; ସେମାନଙ୍କ ସ୍ୱାର୍ଥ କିନ୍ତୁ ଧନିକ କିମ୍ବା ଶ୍ରମିକର ସ୍ୱାର୍ଥଠାରୁ ଭିନ୍ନ ନୁହେଁ । ସମାଜସମ୍ପର୍କକୁ ଅନୁଧ୍ୟାନକରିବା ସକାଶେ ଏଇ ବିନ୍ୟାସ ନିର୍ମାଣକରିଚନ୍ତି ମାର୍କ୍ସ । ସମାଜବିଜ୍ଞାନରେ ଏ ପଦ୍ଧତିକୁ କୁହାଯାଏ ଷ୍ଟ୍ରକ୍ଚର୍ୟାଲ୍ ଆପ୍ରୋଚ୍ ।

ସମ୍ପଦଶାଳୀର ସାମାଜିକ ପ୍ରଭୁତ୍ୱ ଜଣାଶୁଣା କଥା; ମାତ୍ର ଶ୍ରମଜୀବୀଶ୍ରେଣୀ ସହିତ ସେ ଶ୍ରେଣୀର ସେବ୍ୟ-ସେବକ ସମ୍ପର୍କ ଯେହେତୁ ବିଭେଦକୁ ଜନ୍ମଦିଏ, ଆଧିପତ୍ୟ ବିରୋଧରେ ବେଳକୁବେଳ ପ୍ରତିବାଦ ମଧ୍ୟ ନୂଆକଥା ନୁହେଁ । ଇଂଲଣ୍ଡରେ ଧନତନ୍ତ୍ରର ଅଭ୍ୟୁଦୟ ଘଟିଚି ଯେତେବେଳେ, ସହୃଦୟ ଅନେକ ଲୋକ ସମାଲୋଚନାରେ ମୁଖର ହୋଇଚନ୍ତି; ଆଶଙ୍କା ଉପୁଜିଚି, ଧନିକ-ଶ୍ରମିକ ବିରୋଧକୁ ବଢ଼ିବାକୁ ଦେଲେ ଦେଶର ଆବହମାନ ଏକତା ଖଣ୍ଡଖଣ୍ଡହୋଇଯିବ, ଏକାଦେଶରେ ମୁଣ୍ଡଟେକିବେ ଦୁଇଟି ପୃଥକ୍ ଜାତି । ଫ୍ୟାସିଜ୍ମ ସେଥିପାଇଁ ସମାଜର ମଙ୍ଗଳ ନିମନ୍ତେ ଧନିକଶ୍ରେଣୀର ସ୍ୱେଚ୍ଛାଚାରକୁ ବାଧାଦେବାକୁ ଚେଷ୍ଟାକରିଚି ଇଉରୋପ୍‌ରେ । ଭାରତରେ ମଧ୍ୟ କ୍ୟାପିଟାଲିଜ୍ମର ବିରୁଦ୍ଧାଚରଣ ବିରଳ ନୁହେଁ । ଗାନ୍ଧି ଉପଦେଶ ଦେଇଚନ୍ତି ସନାତନ ଆର୍ଥିକ ବିଧିବ୍ୟବସ୍ଥା ଅନୁସରଣକରିବାକୁ, ଯନ୍ତ୍ରସଭ୍ୟତାକୁ ବର୍ଜନକରିବାକୁ, ନିତ୍ୟାଚାରରେ ସ୍ୱାବଲମ୍ବୀହେବାକୁ, ଯେପରି, ସୂତାକଟା ଲୁଗାବୁଣା ଇତ୍ୟାଦି । ମାତ୍ର ଏ ଧରଣର ଆପତ୍ତି ସହିତ ସୋସାଲିଜ୍ମର ପ୍ରଭେଦ ଅନେକ, କାହିଁକିନା, ଯନ୍ତ୍ର କି ଧନିକକୁ ନିର୍ମମ କହିବା ଗୋଟେ କଥା, ବ୍ୟକ୍ତିଗତ ସମ୍ପତ୍ତିଭୋଗ ଉପରେ ପ୍ରତିଷ୍ଠିତ ସମାଜବିନ୍ୟାସକୁ ବିରୋଧକରିବା ଆଉଗୋଟେ କଥା । ବ୍ୟକ୍ତିଗତ ମାଲିକାନା ଗାନ୍ଧିଙ୍କୁ ମନେହୋଇଚି ସ୍ୱାଭାବିକ ଓ ନ୍ୟାଯ୍ୟ । ସୋସାଲିଜ୍ମ କିନ୍ତୁ ଯନ୍ତ୍ରର ବିରୋଧକରେନା, କାହିଁକିନା, ଯନ୍ତ୍ରର ସାହାଯ୍ୟ ବିନା ଅଳ୍ପ ପରିଶ୍ରମରେ ଆଉ ଅଳ୍ପ ସମୟ ଭିତରେ ଧନୋତ୍ପାଦନ ଅସମ୍ଭବ; ନୂଆ ପଦ୍ଧତିଗୁଡ଼ାକୁ ବର୍ଜନକଲେ ଦାରିଦ୍ର୍ୟ କି ଶ୍ରମଭାର ଲାଘବକରିବା ସମ୍ଭବପର ନୁହେଁ । ସମାଜକୁ ତ ଯନ୍ତ୍ର ଭାଙ୍ଗିପକାଏନା, ଜଡ଼ପଦାର୍ଥ ଯନ୍ତ୍ରକୁ ଚଳାଏ ଶ୍ରମିକ; ଅଥଚ ଉତ୍ପାଦନର ଗୁରୁତ୍ୱପୂର୍ଣ୍ଣ ସେଇ ସାଧନ ଉପରେ ତାର ତିଳେମାତ୍ର ଅଧିକାର ନାହିଁ; କାହିଁକିନା, ଯନ୍ତ୍ର ମାଲିକର ବ୍ୟକ୍ତିଗତ ସମ୍ପତ୍ତି । ଯନ୍ତ୍ର ତେଣୁ ଶ୍ରେଣୀବିଭାଜନ ତିଆରିକରେନା; ବରଂ ଧର୍ମଭେଦ ଜାତିଭେଦ ଭଳି ବିଭାଜକ ରେଖାଗୁଡ଼ିକୁ ଲିଭାଇଦିଏ । ଧନତନ୍ତ୍ରର ମୂଳ କାରଣ ତେଣୁ ବ୍ୟକ୍ତିଗତ ସମ୍ପତ୍ତିଭୋଗର ଅଧିକାର, ଯନ୍ତ୍ର ବ୍ୟବହାର ନୁହେଁ; ତେବେ, ଆଧୁନିକ ଯନ୍ତ୍ରଯୁଗରେ ଧନୋତ୍ପାଦନର ପ୍ରକ୍ରିୟାସମୂହ ବ୍ୟୟସାଧ୍ୟ ବୋଲି ପୁଞ୍ଜିପତିର ପ୍ରତାପ ପ୍ରଚଣ୍ଡତର । ସେଥିପାଇଁ, ସୋସାଲିଜ୍ମ ବିଶ୍ୱାସକରେ, ଧନୋତ୍ପାଦନର ସାଧନଗୁଡ଼ିକ ସର୍ବସାଧାରଣ ସମ୍ପତ୍ତି ହେଲେ, ଦାରିଦ୍ର୍ୟ ଦାସତ୍ୱ ଅତ୍ୟାଚାର ଅନ୍ୟାୟ ସମାଜଶରୀରକୁ ଆକ୍ରାନ୍ତ କରିପାରିବନାହିଁ । ଉତ୍ପାଦନର ସାଧନ ଉପରେ ସର୍ବସାଧାରଣ ଅଧିକାର ଅଭାବରେ ଅଶେଷ ଦୁର୍ନୀତି ଓ ଅସୀମ ଶୋଷଣର ଆକର ହୋଇଉଠିଚି ଧନତନ୍ତ୍ର ।

ସୋସାଲିଜ୍ମର ଆଉଗୋଟିଏ ଲକ୍ଷ୍ୟ ପ୍ରତିଯୋଗିତାର ପ୍ରତିରୋଧ, କାହିଁକିନା, ଧନତନ୍ତ୍ରର ଗଠନସୂତ୍ର ଯେହେତୁ ପ୍ରତିଯୋଗିତା, ଶ୍ରମିକ ହେଉ କି ମାଲିକ, ପ୍ରତିମୁହୂର୍ତ୍ତରେ ଚେଷ୍ଟାକରୁଚି ଅନ୍ୟକୁ ଟପିଯିବାକୁ । ତା'ଫଳରେ କର୍ମକ୍ଷେତ୍ରରେ ମଣିଷ ସହିତ ମଣିଷର ସହଜ ସମ୍ପର୍କ ପରିବର୍ତ୍ତେ ସ୍ୱାର୍ଥର ସଂଘାତ ହିଁ ଶାସନକରେ ସାମାଜିକ ସମ୍ପର୍କ । କାହାରି କିଛି ଲାଭହୁଏନା, ଅପଚୟହୁଏ ଅଜସ୍ର । ଧନତନ୍ତ୍ର ପୁଷ୍ଟିଲାଭ କରିପାରିଲେ ପ୍ରତିଯୋଗିତା ହ୍ରାସପାଏ, ମାତ୍ର ଗଢ଼ିଉଠେ ମନୋପଲି । ଅର୍ଥାତ୍ ଅଳ୍ପସଂଖ୍ୟକ ମାଲିକ ସଂଘବଦ୍ଧହୋଇ ଦେଶର ଅର୍ଥନୀତିକ ଜୀବନକୁ ନିଜ ହାତମୁଠାକୁ ଟାଣିଆଣେ, ଏବଂ ଏଇ ବାଟରେ, ପ୍ରତ୍ୟେକ ଦେଶ ଓ ସମାଜରେ ସ୍ୱଦେଶୀ ଓ ବିଦେଶୀ ପୁଞ୍ଜିର ପ୍ରଭୁତ୍ୱ ସ୍ଥାପିତହୁଏ । ମୁଷ୍ଟିମେୟ ଲୋକଙ୍କ ହାତରେ ଠୁଳହୋଇଥାଏ କର୍ତ୍ତୃତ୍ୱ; ମାତ୍ର ଦେଶର ସମଗ୍ର ଜନସାଧାରଣଙ୍କୁ ତାଙ୍କରି ଉପରେ ନିର୍ଭରକରିବାକୁ ପଡ଼େ ଜୀବିକାନିର୍ବାହ ପ୍ରକ୍ରିୟାରେ । ଅଧିକାଂଶ ଲୋକ ଅର୍ଥ ସଂଚୟକରନ୍ତି ନିୟମିତ; କିନ୍ତୁ ସଂଚିତ ଅର୍ଥ ଧନୋତ୍ପାଦନ ସକାଶେ ପୁଞ୍ଜି ଭାବରେ ବ୍ୟବହୃତହୁଏ ଧନପତିଙ୍କ ଇଙ୍ଗିତରେ । ସେ ବିନିଯୋଗର ଏକମାତ୍ର ଉଦ୍ଦେଶ୍ୟ ମାଲିକ ସକାଶେ ମୁନାଫା (=ଉଦ୍‌ବୃତ୍ତ ମୂଲ୍ୟ) ସ୍ତୂପୀକରଣ; ସମାଜର ଉନ୍ନତି ନିତାନ୍ତ ଗୌଣ ଉପଲକ୍ଷ୍ୟ । ଲାଭ ସମ୍ଭାବନା କ୍ଷୀଣହେଲେ ବିନିଯୋଗ ସେ ଦିଗକୁ ଯାଏନା । ଅନ୍ୟ ଶବ୍ଦରେ, ସର୍ବସାଧାରଣ ଜୀବନର ସମ୍ଭାବନାକୁ ଖର୍ବକରି ସଂଖ୍ୟାଲଘୁ ବଣିକଗୋଷ୍ଠୀର କ୍ରମାଗତ ଶ୍ରୀବୃଦ୍ଧି ଧନତାନ୍ତ୍ରିକ ସମାଜବ୍ୟବସ୍ଥାର ପ୍ରଧାନ ବୈଶିଷ୍ଟ୍ୟ । ଆଡାମ୍ ସ୍ମିଥ୍‌ଙ୍କ ଭଳି ଅର୍ଥନୀତିବିଦ୍ ଭାବିଥିଲେ, ସମାଜାଶ୍ରିତ ପ୍ରତ୍ୟେକ ଲୋକ ଜାଣେ କି ପ୍ରକାର କାମକଲେ ନିଜର ଉନ୍ନତି ହୁଏ; ତଦନୁରୂପ ଚଳିବାଶକ୍ତି ଓ ସାମର୍ଥ୍ୟ ତାର ସହଜାତ । ସେଥିପାଇଁ ବାହାରୁ ବାଧା ନପାଇଲେ, ସମାଜର ସାମୂହିକ ଉନ୍ନତି ସାଧିତହୁଏ ଛାଏଁଛାଏଁ । ଇତିହାସର ସାକ୍ଷ୍ୟ କିନ୍ତୁ ବିପରୀତ; ଅର୍ଥାତ୍, ସ୍ମିଥ୍‌ଙ୍କ ତତ୍ତ୍ୱ ମୌଳିକ କୋଉ ତଥ୍ୟଭିତ୍ତି ଉପରେ ଆଧାରିତ ନୁହେଁ, କାହିଁକିନା, କାର୍ଯ୍ୟକ୍ଷେତ୍ରରେ ସାଧାରଣଲୋକର ଆତ୍ମରକ୍ଷା କିମ୍ବା ସ୍ୱାଧୀନତା ବସ୍ତୁତଃ ନାସ୍ତିବାଚକ, ଏବଂ ସେଥିପାଇଁ, ପୁଞ୍ଜି ଲଗାଣକରୁଥିବା ଲୋକଙ୍କର ଅଗାଧ ମୁନାଫା ଅର୍ଜନବେଳେ ସୁଦ୍ଧା, ମୂଲମଜୁରିଆଙ୍କ ଦୁଃଖଦୈନ୍ୟ ସରିଯାଏନା; ବରଂ ବ୍ୟବସାବଣିଜ ଯେତେବେଳେ ଲୋକସାନ୍ ସହେ, ବେକାରଙ୍କ ସଂଖ୍ୟା ବଢ଼ିଯାଏ କାହୁଁକାହୁଁତକ୍ । ପୁଞ୍ଜିପତିର ଫ୍ୟାକ୍ଟରୀ ଯୋଉ ଜୀବନ ଉପହାରଦିଏ ଶ୍ରମଜୀବୀଙ୍କୁ, ତା ତେଣୁ ଗ୍ରୀକ୍ ଦାସପ୍ରଥାର ନୂତନ ସଂସ୍କରଣ ବୋଲି ଗଣ୍ୟହେବା ଉଚିତ । ଯୋଉ ବିଦ୍ୟା କି ବୃତ୍ତିର ଅନୁଶୀଳନ ଆଧୁନିକ ମଣିଷର ଅସଲ ସଂପଦ, ପ୍ରଚଳିତ ଆର୍ଥସାମାଜିକ ବ୍ୟବସ୍ଥା ପାଇଁ ସେ ସମ୍ପଦ ସାତସପନ । ଅଳ୍ପ କେତେଜଣ

ଅବସ୍ଥାପନ୍ନ ଭାଗ୍ୟବାନ କେବଳ ସେ ସମ୍ପଦର ଅଧିକାରୀ । ଅଥଚ ସେମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ, ଆରାମ୍‌ଅବସର, ପରିଶୀଳିତ ଜୀବନଶୈଳୀ—ସବୁଗୁଡ଼ାକର ଉତ୍ସ ପରିଶ୍ରମ । ଉତ୍କର୍ଷଲାଭ ସବୁଲୋକଙ୍କ ପାଇଁ ସ୍ୱଭାବସୁଲଭ ନହୋଇପାରେ; ତା ବୋଲି, ଉତ୍କର୍ଷର ଅଧିକାର ଏକମାତ୍ର ଥିଲାବାଲା ଭୋଗକରିବେ, ଏ ତ ନିର୍ବିତ୍ତଙ୍କୁ ନ୍ୟାଯ୍ୟ ସୁଯୋଗରୁ ନିର୍ବାସନ ! ସ୍ମରଣାତୀତ କାଳରୁ ପ୍ରଭୁଭୃତ୍ୟ, ସେବ୍ୟସେବକ, ରଜାପ୍ରଜା, ବ୍ରାହ୍ମଣଚଣ୍ଡାଳ ଭେଦାଭେଦ ଚାଲିଆସୁଚି ସତ, କିନ୍ତୁ ଏବେ ବି କାହିଁକି କାୟେମ୍‌ରହିବ, ତାର ସଦୁତ୍ତର ଦେଇପାରୁନାହିଁ ରାଷ୍ଟ୍ର କିମ୍ବା ସୁଶୀଳ ସମାଜ । ଗୋଟାପଣେ ଆର୍ଥସାମାଜିକ ପ୍ରଶ୍ନ; ଆଧାତ୍ମିକ ସମସ୍ୟା ନୁହେଁ । ସେଇ ପ୍ରଶ୍ନରୁ ସୋସାଲିଜ୍ମର ଉତ୍ପତି ।

ସମାଜର ସମସ୍ୟା ଯୋଉ ଅଳ୍ପଲୋକଙ୍କୁ ଭାବିତକରେ ସାଧାରଣତଃ କ୍ୟାପିଟାଲିଜ୍ମର ଦୋଷଦୁର୍ଗୁଣ ସେମାନଙ୍କୁ ଅଜଣାନୁହେଁ; ମାତ୍ର ଅଧିକାଂଶ ବିଶ୍ୱାସକରନ୍ତି, ଗଣତନ୍ତ୍ର ପୂର୍ଣ୍ଣମାତ୍ରାରେ ପ୍ରତିଷ୍ଠାପାଇଲେ, ଭୋଟ୍-ଅଧିକାର ବଳରେ ଦରିଦ୍ର ଧନିକର ପ୍ରଭୁତ୍ୱକୁ ଖର୍ବକରିଦେଇ ପାରିବ । ଯୋଉ ଆମୂଳ ପରିବର୍ତ୍ତନ ସୋସାଲିଜ୍ମର ଲକ୍ଷ୍ୟ, ଦରକାର ହେବନାହିଁ ସେତେବେଳେ । ଊନବିଂଶ ଶତକରେ ଏଇଭଳି ଗୋଟାଏ ବିଶ୍ୱାସ ପ୍ରଚଳିତ ଥିଲା ସର୍ବତ୍ର ଯେ ଗଣତନ୍ତ୍ର ହିଁ ସମାଧାନ କରିଦେଇପାରିବ ସମାଜର ଅସାମ୍ୟ; ସେ ବିଶ୍ୱାସ ଏବେ ମଧ ଭାରତରେ ମରିଯାଇନାହିଁ, କାହିଁକିନା, ଅମର୍ତ୍ତ୍ୟ ସେନ୍ କହୁଚନ୍ତି, ଲୋକଙ୍କ ହାତରେ ଭୋଟ୍‌କ୍ଷମତା ଥିବାଯାଏଁ ଦେଶରେ ଦୁର୍ଭିକ୍ଷ ପଡ଼ିବନାହିଁ । ସୋସାଲିଜ୍ମ ଦୃଷ୍ଟିରେ ଏ ଧାରଣା ଭ୍ରାନ୍ତଚୈତନ୍ୟ (ଫଲସ୍ କନ୍‌ସସ୍‌ନେସ୍), କାହିଁକିନା, ଗଣତନ୍ତ୍ର ଯୋଉଠି ଅପେକ୍ଷାକୃତ ପାକଳ, ଯେପରି ଇଉରୋପ୍-ଆମେରିକା, ଶ୍ରେଣୀଭେଦ ସେଠି ହ୍ରାସପାଉଥିବା ଲକ୍ଷଣ ଅଦ୍ୟାବଧି ଦୃଷ୍ଟିଗୋଚର ହେଉନାହିଁ । ଧନିକର ଆର୍ଥିକ ଉନ୍ନତି ତୁଳନାରେ ଶ୍ରମଜୀବୀର ଅଗ୍ରଗତି ସମତୁଲ ହେଉନାହିଁ ବୋଲି, ଗଣତନ୍ତ୍ର ପ୍ରବର୍ତ୍ତନକରିଚି 'ଜନକଲ୍ୟାଣ', ଅର୍ଥାତ୍ ଦରିଦ୍ରକୁ ଉତ୍କୋଚ । ମାତ୍ର, ବ୍ୟୟଭାର ଯେହେତୁ ଧନିକ ପାଖରୁ ଟ୍ୟାକ୍ସ ଆକାରରେ ସଂଗ୍ରହକରାହୁଏ, କରଭାର ହ୍ରାସ କରିବାକୁ ଦାବି ଏକ୍ଷଣି ପ୍ରବଳ । ବୈଷମ୍ୟ ସମାଧାନକରିବାକୁ ଗଣତନ୍ତ୍ର ତେବେ କୁଣ୍ଠିତ କାହିଁକି ?

କାରଣ, ଗଣତନ୍ତ୍ର ମଧ ନିର୍ଦ୍ଦିଷ୍ଟ ଶ୍ରେଣୀର ଶାସନ । ସେଇ ଶ୍ରେଣୀର ସ୍ୱାର୍ଥସାଧନ ଗଣତନ୍ତ୍ରର ପ୍ରାଥମିକ କର୍ତ୍ତବ୍ୟ, ନିର୍ଦ୍ଧନ ନିରକ୍ଷର କର୍ମହୀନଙ୍କୁ ଗଣତନ୍ତ୍ର ତେଣୁ ସୁରକ୍ଷା ଦେଇପାରେନା; ସଂଖ୍ୟାରେ ଅନେକ, କିନ୍ତୁ ପଲିଟିକ୍ସ ପ୍ରତି ଉଦାସୀନ, ସହସ୍ର ଦୁଃଖଭୋଗ ସତ୍ତ୍ୱେ ପ୍ରତିକାର ବିଷୟରେ ଅଜ୍ଞ, ଆପଣା ଶକ୍ତି ଉପରେ ଆସ୍ଥାହୀନ । ଭୋଟ୍ ଅଧିକାର ରହିଥିଲେ ସୁଦ୍ଧା ସେମାନଙ୍କ ମତାମତ ଗଠନକରନ୍ତି ତେଣୁ ଟାଉଟର୍ କି ଟରଣି, ଖୁବ୍ ବେଶି ହେଲେ, ଖବରକାଗଜ । ଅଗ୍ରସର ଉନ୍ନତ ଦେଶରେ ସୁଦ୍ଧା

ଜନମତ ଗଠନର ପ୍ରଧାନ ଉପାୟ ମିଡିଆ ବା ଗଣମାଧ୍ୟମ । ପଢ଼ି, ଦେଖି କି ଶୁଣି ଲୋକ ମନସ୍ଥିର କରନ୍ତି; କିନ୍ତୁ ଗଣମାଧ୍ୟମ ପଛରେ ରହିଚି ବୃହତ୍‌ପୁଞ୍ଜି, ଯାର ମାଲିକ ଧନିକଶ୍ରେଣୀ । ମିଡିଆ ତେଣୁ ରୀତିମତ ବ୍ୟବସା; ବ୍ୟବସା ସ୍ୱାର୍ଥରେ ସତ୍ୟ ଗୋପନକରିବା ତାର ନିତ୍ୟକର୍ମ, ବ୍ୟତିକ୍ରମ ବିରଳ ହେବା ସତ୍ତ୍ୱେ ସେହିପରି ଶିକ୍ଷାବ୍ୟବସ୍ଥା । ଯାହା ରହିଚି କି ଯେମିତି ଚାଲୁଚି, ତାକୁ ଯେମିତି କେହି ପ୍ରଶ୍ନ କରିବେନାହିଁ, ସେହି ବ୍ୟବସ୍ଥାକୁ ନିଶ୍ଚିତକରିବାକୁ ପହରାଦେବା ପ୍ରଚଳିତ ଶିକ୍ଷାବ୍ୟବସ୍ଥାର ମୂଳନୀତି । ସମାଜରେ ଧନିକର କର୍ତ୍ତୃତ୍ୱ ବଳବତ୍ ବୋଲି, ଶିକ୍ଷାର ବିଧିବ୍ୟବସ୍ଥା (ଉଦ୍ଦେଶ୍ୟ ଓ ପଦ୍ଧତି) ବିଷୟରେ ତଥାକଥିତ ଜ୍ଞାନୀଗୁଣୀ ବି ଆପତ୍ତି ଉଠାଇବାକୁ ଭୟକରନ୍ତି, ଭାତଥାଳିରେ କାଳେ ଧୂଳି ପଡ଼ିଯିବ! ଅସଲ କଥା ତେଣୁ ଧନୋତ୍ପାଦନର ଏକମାତ୍ର ଲକ୍ଷ୍ୟ ଯେହେତୁ ଉଦ୍‌ବୃତ୍ତ ଦୋହନ, ତାକୁ ଚିରସ୍ଥାୟୀ କରିବା ସକାଶେ ରାଷ୍ଟ୍ର ଓ ସିଭିଲ୍ ସୋସାଇଟିର ଏଗୁଡ଼ିକ ନିଶ୍ଛିଦ୍ର ବନ୍ଦୋବସ୍ତ । ଏ ବନ୍ଦୋବସ୍ତ ଭୋଟ୍ ବଳରେ କରାଯାଇନାହିଁ; ଜନମତ ଅଲକ୍ଷ୍ୟରେ ଧନତନ୍ତ୍ରର ଅର୍ଥନୀତି କରିଚାଲିଚି । ଅର୍ଥାତ୍, ବ୍ୟବସ୍ଥାଟା ଏକ୍‌ଷ୍ଟ୍ରା-ପାର୍ଲାମେଣ୍ଟାରି; ସୁଶୀଳସମାଜରେ ଯେପରି ପୁରାତନ ଧର୍ମର ପ୍ରତାପ । ପ୍ରାୟ ସମସ୍ତ ଧର୍ମରେ ଇହଜୀବନରେ ଅନ୍ୟାୟ ଅତ୍ୟାଚାରର ପ୍ରତିକାର ନିର୍ଦ୍ଦିଷ୍ଟକରାଯାଇଚି ପରଲୋକରେ; ସେଇ ଆବାଲ୍ୟ ଶିକ୍ଷାରେ ପରିସିକ୍ତ ଦରିଦ୍ର ସମାଜ-ସଂସାରରେ ନିଜ ଦୁରବସ୍ଥାକୁ ମନେକରେ ଭାଗ୍ୟଦୋଷ । ଅବଶ୍ୟ, ଧନୀଲୋକଙ୍କ ପୃଷ୍ଠପୋଷକତା ନଥିଲେ ଧର୍ମାନୁଷ୍ଠାନ ବି ପଙ୍ଗୁହୋଇଯାଏ । ପରଲୋକରେ ଯିଏ ବିଶ୍ୱାସକରେନା, ସୁଶୀଳସମାଜ ତାକୁ ଗଣ୍ୟକରେ ନାସ୍ତିକ! ସୋସାଲିଜ୍ମ ତେଣୁ ଦେଖିଚି, ଗଣତନ୍ତ୍ର ଲୋକଙ୍କ ହାତରେ ଭୋଟ୍ ଧରାଇଦେଇଚି ସିନା, ମିଡିଆ, ଲୋକଶିକ୍ଷା ଓ ଧର୍ମମତର ସମ୍ମିଳିତଶକ୍ତି ଜନସାଧାରଣଙ୍କୁ ସମ୍ମୋହିତ କରିରଖିଚି ଆମୃତ୍ୟୁ । ରଖିଚି ବୋଲି, କ୍ୟାପିଟାଲିଜ୍ମର ଲଜିକ୍ ଦୃଷ୍ଟିପଥରେ ଉଦ୍‌ଭାସିତ ହୁଏନା । ଭୋଟ୍ ତ ଆସେ ପାଞ୍ଚବର୍ଷରେ ଥରେ, ପ୍ରାତ୍ୟହିକ ଜୀବନଯୁଦ୍ଧ ଭିତରେ ସାଧାରଣଲୋକ କଣ ସାମ୍ୟ ମୈତ୍ରୀ ସ୍ୱାଧୀନତା କିମ୍ବା ସେଗୁଡ଼ିକର ଅଭାବକୁ ଚିହ୍ନିପାରେ ? ଅଜ୍ଞତା ସାଙ୍ଗକୁ ସାମୟିକ ଉତ୍ତେଜନା ନିର୍ଦ୍ଧାରଣକରେ ଭୋଟ୍ ଦିଆନିଆ । ଆର୍ଥିକ ସମତା ଆଣିବାକୁ ହେଲେ ଖାଲି ଗଣତନ୍ତ୍ରରେ ତୁଷ୍ଟରହିଲେ ତେଣୁ ଚଳିବନାହିଁ ।

ହେଲେସୁଦ୍ଧା, ସୋସାଲିଜ୍ମ ଯେ ଧନତନ୍ତ୍ରର ବିରୋଧିତା, ବୁଝିପାରିବା ଦୁଃସାଧ୍ୟ ନୁହେଁ; ଉତ୍ପାଦନବ୍ୟବସ୍ଥା ଭାବରେ କି ସମାଜସଂଗଠନ ଭାବରେ ଧନତନ୍ତ୍ର ଯେ ନିଜକୁ ଅତିକ୍ରମ କରିପାରେନା, ସେ କଥାଟା ବି ଦୁର୍ବୋଧ ନୁହେଁ; ମାତ୍ର ସୋସାଲିଜ୍ମ ଯୋଉ ଆଦର୍ଶସମାଜ ପ୍ରସ୍ତାବକରେ, ସେ ସମାଜର ବୈଶିଷ୍ଟ୍ୟ ବିଷୟରେ ସ୍ପଷ୍ଟ ଧାରଣା

ଅଭାବ ରହିଚି । ସୋସାଲିଷ୍ଟ, ବିଶେଷତଃ ଭାରତରେ, ନାନାଦି ଶିବିରରେ ବିଭକ୍ତ; ମତଭେଦ ତେଣୁ ସ୍ୱାଭାବିକ । ପୁଣି ଢେର୍‌ଲୋକ ମିଳିବେ ସୋସାଲିଷ୍ଟ୍ ବୋଲି ଯିଏ ପରିଚିତ, ମାତ୍ର ସୋସାଲିଜ୍ମ ଯେ ଏକ ସାମାଜିକ ଷ୍ଟ୍ରକ୍‌ଚର୍ ମାନିବାକୁ ରାଜି ନୁହେଁ । ବ୍ୟକ୍ତିବିଶେଷ କିମ୍ବା ରାଜନୀତିକ ଦଳ ବାଟଦେଇ ସୋସାଲିଜ୍ମକୁ ବୁଝିବାକୁ ଚେଷ୍ଟା ନକରି, ମୂଳ ସଂଗଠନସୂତ୍ର ପ୍ରତି ତେଣୁ ନଜର ଦିଆଯାଉ ।

ଇତିହାସଗତିରେ ଯେତେ ସମାଜ ଗଢ଼ିଉଠିଚି, ବିନା ବ୍ୟତିକ୍ରମରେ, ସେଗୁଡ଼ିକ ଭିତରେ ଲକ୍ଷ୍ୟକରାଯାଇଚି ସ୍ତରଭେଦ; ସମାଜର ସେଇ ଅଂଶଗୁଡ଼ିକୁ 'ଶ୍ରେଣୀ' ଆଖ୍ୟା ଦିଆଯିବା ସଙ୍ଗତ । ଶ୍ରେଣୀ ରୂପରେଖ ସମ୍ବନ୍ଧରେ ବାଦାନୁବାଦ ରହିଚି, କିନ୍ତୁ ଶ୍ରେଣୀର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇନାହିଁ କୁତ୍ରାପି । ଇତିହାସ ଆଲୋଚନା କରିବାବେଳେ ବିଦ୍ୱାନ୍ ସାଧାରଣତଃ ଜାତି-ଉପଜାତି, ସେମାନଙ୍କ ଆନ୍ତଃସମ୍ପର୍କ, ସଂଘାତ, ଆତ୍ମୀକରଣ ଇତ୍ୟାଦି ଚର୍ଚ୍ଚାକରନ୍ତି, କିନ୍ତୁ ସବୁଠୁଁ ବଡ଼କଥା ଶ୍ରେଣୀସମସ୍ୟା; କାହିଁକିନା, ଶ୍ରେଣୀ ସହିତ ଏକାନ୍ତଭାବେ ଜଡ଼ିତ ସ୍ୱାର୍ଥ ଓ ମଙ୍ଗଳ ଭଳି ପ୍ରସ୍ତାବ । ଜାତି-ଉପଜାତି ଭିତରେ ଯାଜକ-ଯଜମାନ ଆନ୍ତଃସମ୍ପର୍କ ରହିଚି, ସ୍ୱାର୍ଥ କଥାଟା ବାଦ୍‌ପଡ଼ିଛି । ଯେପରି, ଚଷା ସିନା ହଳକରେ, ବଢ଼େଇ ଦିଏ ଲଙ୍ଗଳ, କମାର ଦିଏ ଫାଳ; ଚଷକାମଟା ଭିତରେ ତେଣୁ ଶ୍ରମବିଭାଜନ ଦିଶୁଚି, ସ୍ୱାର୍ଥର ସଂଘାତ ଦିଶୁନାହିଁ । କିନ୍ତୁ, ସମାଜର ବିଭିନ୍ନ ସ୍ତର/ଅଂଶ ଭିତରେ ସ୍ୱାର୍ଥର ସଂଘାତ ଥିବାରୁ ଅଂଶଗୁଡ଼ାକୁ 'ଶ୍ରେଣୀ' ଆଉ ସ୍ୱାର୍ଥର ବିଭିନ୍ନ ରୂପକୁ 'ଶ୍ରେଣୀସ୍ୱାର୍ଥ' ଗଣ୍ୟକରିବା ବିଧେୟ, ବିଶେଷତଃ ଶ୍ରେଣୀସଂଘାତ ଯେହେତୁ ସମାଜର ସଂଗଠନସୂତ୍ରରୁ ଅଚ୍ଛେଦ୍ୟ । ଶ୍ରେଣୀବିଶେଷର ଆଧିପତ୍ୟ ଦରକାରହୋଇଚି ସମାଜକୁ ସ୍ଥିତିଶୀଳକରିବା ଲାଗି; ମାତ୍ର ଆଧିପତ୍ୟ ପ୍ରୟୋଗକରାଯାଏ ଯୋଉ ଶ୍ରେଣୀଗୁଡ଼ାକ ଉପରେ, କାହିଁକି (=କି ସ୍ୱାର୍ଥରେ) ମାନିବେ ସିଏ ଅପରର କର୍ତ୍ତୃତ୍ୱ ? ବିଦ୍ୱେଷ ତେଣୁ ଅବଶ୍ୟମ୍ଭାବୀ । ବିଦ୍ୱେଷରୁ ବିଦ୍ରୋହ; ଉତ୍ପୀଡ଼ନ, ଅତ୍ୟାଚାର, ଅବିଚାର ବିରୋଧରେ ସାମୂହିକ ପ୍ରତିବାଦ । ଦ୍ୱନ୍ଦ୍ୱର କାରଣକୁ ନିର୍ମୂଳକରିବାକୁ ହେଲେ ଶ୍ରେଣୀଭେଦକୁ ନିର୍ମୂଳକରିବାକୁ ପଡ଼ିବ । ଏଇ ତେଣୁ ସୋସାଲିଜ୍ମର ସିଦ୍ଧାନ୍ତ । ତା ମାନେ, ସ୍ଥିତ ସମାଜର ଷ୍ଟ୍ରକ୍‌ଚର୍ (ଗଢ଼ଣ) ବଦଳିଯିବ ସତ୍ୱର । ପରିବର୍ତ୍ତେ ନୂଆ ଯୋଉ ସମାଜ ଗଢ଼ିଉଠିବ, ତା ଏକ ବିରାଟ ଶ୍ରମଜୀବୀ ସମାଜ; ତା'ର ସକଳ ସଦସ୍ୟ ଖଟିଖିଆ ମଣିଷ, କେହି ପରଜୀବୀ ନୁହେଁ । ତଥାପି ମଣିଷ-ମଣିଷ ଭିତରେ ବୁଦ୍ଧିବିବେଚନା, କର୍ମକୁଶଳତାର ପ୍ରଭେଦ ରହିବ; ଧନବୈଷମ୍ୟ ତେଣୁ ସମ୍ପୂର୍ଣ୍ଣ ନିର୍ମୂଳ ନହେବା କଥା । ଉତ୍ତରାଧିକାର ପ୍ରଥାର ଉଚ୍ଛେଦ ତେଣୁ ଉଦ୍‌ବୃତ୍ତ ସ୍ତୂପୀକରଣର ପ୍ରତିଷେଧକ ହୋଇପାରେ ।

ପ୍ରତ୍ୟେକ ଲୋକ ପାଇଁ ଧନସାମ୍ୟର ଏକମାତ୍ର ଉପାୟ ସେଥିପାଇଁ ଧନସୃଷ୍ଟିର ସମସ୍ତ ସାଧନ, ଯେପରି ଜମି ପୁଞ୍ଜି ଯନ୍ତ୍ରପାତି ଖଣିଜ ବିଦ୍ୟୁତ୍‌ଶକ୍ତି ଯାତାୟତର ବାହନ—ସବୁଗୁଡ଼ାକ ହେବ ସମାଜର, ଅର୍ଥାତ୍ ଜନସାଧାରଣଙ୍କ, କୋଠସମ୍ପତ୍ତି; ହେଲେସୁଦ୍ଧା, ଉତ୍ପାଦନର ସାଧନଗୁଡ଼ିକର ଉପଯୋଗ କି ପରିଚାଳନା ସମ୍ବନ୍ଧରେ ସୋସାଲିଜ୍ମ କୌଣସି ବ୍ଲୁପ୍ରିଣ୍ଟ୍ ପ୍ରଚାରକରିନାହିଁ; ମାତ୍ର ଏଗୁଡ଼ିକ ଯେ ବ୍ୟକ୍ତିଗତ ସମ୍ପତ୍ତି ବିବେଚିତ ହେବନାହିଁ, ସେଇକଥା ଉପରେ ଜୋର୍‌ଦିଆଯାଇଚି ସମଧିକ । କାହିଁକିନା, ଏଗୁଡ଼ିକ ମୁଷ୍ଟିମେୟ ଲୋକଙ୍କ ବ୍ୟକ୍ତିଗତ ସମ୍ପତ୍ତି ହୋଇରହିଚି ବୋଲି, ଦେଶର ସାମୂହିକ ଅର୍ଥନୀତିକ ଜୀବନକୁ ନିୟନ୍ତ୍ରଣ କରିପାରୁଚନ୍ତି ମାଲିକମାନେ ଆପଣା ସ୍ୱାର୍ଥରେ; ଏବଂ ଏଇ ଉପଲବ୍ଧିରୁ ବିଂଶଶତକରେ ଜାତୀୟକରଣ ଦାବି ଗତିବେଗ ଆହରଣକରିଚି ଇଉରୋପରେ ।

ସୋସାଲିଜ୍ମର ଆଉ ଏକ ଆକର୍ଷଣ ଦାରିଦ୍ର୍ୟମୋଚନ । ଶ୍ରେଣୀଭେଦ ଉଠିଯିବା ମାନେ ଜାତୀୟ ସଂପଦର ପୁନର୍ବଣ୍ଟନ, ଜାତୀୟ ଅଭାବର ସମବଣ୍ଟନ ନୁହେଁ । ଅନ୍ୟଥା, ସୋସାଲିଜ୍ମକୁ ନବ-ସଭ୍ୟତା କହିବା ଅନର୍ଥକ । ଲେନିନ୍ ସେଥିପାଇଁ ପ୍ରତ୍ୟେକ ଲୋକର ଅତ୍ୟାବଶ୍ୟକ ରସଦ ଯୋଗାଇଦେବାକୁ ସମାଜର ପ୍ରାଥମିକ କର୍ତ୍ତବ୍ୟ ମନେକରିଚନ୍ତି; ଅନ୍ୟ ଶବ୍ଦରେ, ବାହୁଲ୍ୟବର୍ଜନ ହେବ ନୂଆ ସମାଜର ଗୃହୀତ ନିୟମ । ସୋସାଲିଜ୍ମ ଅବଶ୍ୟ ପ୍ରତ୍ୟାଶାକରିଚି ଅଳ୍ପସମୟ ଭିତରେ ଶ୍ରମଜୀବୀ ଓ ବିଜ୍ଞାନର ସମବାୟ ପର୍ଯ୍ୟାପ୍ତ ପରିମାଣ ଭୋଗ୍ୟପଣ୍ୟ ଉତ୍ପାଦନକରିପାରିବ, ଯା ଫଳରେ, ଆବାଳବୃଦ୍ଧବନିତା ଆରାମ ଓ ଅବସର ପାଇବାରେ ଅନ୍ତରାୟ ରହିବନାହିଁ । ଦାରିଦ୍ର୍ୟର କାରଣ ତ ମଣିଷର ଶକ୍ତିର ଅଭାବ ନୁହେଁ, ବ୍ୟକ୍ତିବିଶେଷର ସଂପତ୍ତି ଉପରେ ଅଧିକାର; ଏବଂ ସେଇ ଅଧିକାର ବଳରେ ମୁନାଫା ବଢ଼ାଇବା ସକାଶେ ଅନାବଶ୍ୟକ ଉତ୍ପାଦନ । ପରିମାଣ ଓ ବୈଚିତ୍ର୍ୟରେ ସେ ଉତ୍ପାଦନ ହୁଏତ ଅନୁପମ, କିନ୍ତୁ ଜନସାଧାରଣଙ୍କ ନିତ୍ୟ-ପ୍ରୟୋଜନ, କ୍ରୟକ୍ଷମତା ଓ ନିତ୍ୟ-ନିଷ୍ପେଷଣ ପ୍ରତି ଉଦାସୀନ । ଦାରିଦ୍ର୍ୟ ଅପସୃତହେଲେ, ପ୍ରତ୍ୟେକ ଲୋକପାଇଁ ଉପଯୁକ୍ତ କର୍ମସଂସ୍ଥାନ କରାଯାଇପାରିଲେ, ଶିକ୍ଷା ଓ ସ୍ୱାସ୍ଥ୍ୟର ସମାନ ସୁଯୋଗ ଭୋଗକରିବେ ନିଶ୍ଚୟ । ନିୟନ୍ତ୍ରିତ ସମାଜର ବିନ୍ୟାସରେ ବ୍ୟକ୍ତିବିଶେଷର ସ୍ୱତନ୍ତ୍ର ଅଧିକାର ଅବାନ୍ତର ପ୍ରସ୍ତାବ । କିନ୍ତୁ ବାଧାବିପଦ ଘୁଞ୍ଚିଗଲେ ନିହିତ ପ୍ରବଣତା ଅନୁଯାୟୀ ଉତ୍କର୍ଷର ଅନୁଶୀଳନ ସମସ୍ତେ କରିପାରିବେ; ତା'ହେଲେ ଯାଇ, ସଭ୍ୟତାର ଶ୍ରେଷ୍ଠଗୁଣଗୁଡ଼ିକ ଅଙ୍ଗୁଳିମେୟ ଲୋକଙ୍କ ଭିତରେ ଆଉ ଆବଦ୍ଧହୋଇ ରହିବନାହିଁ । ଅର୍ଥାତ୍, ବ୍ୟକ୍ତିତ୍ୱର ବିକାଶ ରହସ୍ୟଜଡ଼ିତ ପ୍ରକ୍ରିୟା ବୋଲି ବିବେଚିତ ହେବନାହିଁ, ବିବେଚିତହେବ ବିବାକ ମଣିଷଙ୍କ ପକ୍ଷରେ ସମ୍ଭବପର । ଗଣତନ୍ତ୍ର ତାହେଲେ ଭୋଟ୍-ରାଜନୀତି ହୋଇ ରହିବନାହିଁ, ଜୀବନର ସର୍ବକ୍ଷେତ୍ରରେ ଅନୁଭୂତହେବ ତାର ଉପସ୍ଥିତି ।

ନିର୍ଦ୍ଦିଷ୍ଟ କୋଉ ଦେଶକୁ ଲକ୍ଷ୍ୟରେ ରଖି ଯେହେତୁ ସୋସାଲିଜ୍ମ କଥା ଭାବିନାହାଁନ୍ତି ମାର୍କ୍ସ, ପ୍ରୟୋଗଯୋଗ୍ୟତାର ଏକମାତ୍ର ପୂର୍ବସର୍ତ୍ତ ଧନତନ୍ତ୍ରର ପରିଣତ ପର୍ଯ୍ୟାୟ । ଆଜି ସେଇ ପର୍ଯ୍ୟାୟ ଉପଲବ୍ଧ ବୋଲି, ପୃଥିବୀ ଅଭିନ୍ନ ଏକଛତ୍ର ଅର୍ଥବ୍ୟବସ୍ଥାର ଅଧୀନ। କୋଉହେଲେ ଦେଶ ପକ୍ଷରେ ଭିନ୍ନ କୋଉ ବ୍ୟବସ୍ଥା ଅଦୂର ଭବିଷ୍ୟତରେ କଳ୍ପନା କରିହେବନାହିଁ । ଧର୍ମପ୍ରବର୍ତ୍ତକ, ଈଶ୍ୱରଙ୍କ ଆଖିରେ ଧନୀନିର୍ଦ୍ଧନ ଉଚ୍ଚନିଚ ନିର୍ବିଶେଷରେ ସବୁମଣିଷ ସମାନ ବୋଲି କହିଆସିଚନ୍ତି । ଫରାସୀ ବିପ୍ଳବ ଉତାରୁ ପଲିଟିକ୍ୟାଲ୍ ସାମ୍ୟ ପୃଥିବୀରେ ପ୍ରତିଷ୍ଠା ଲାଭକରିଚି । ମାର୍କ୍ସଙ୍କ ସୋସାଲିଜ୍ମ ସେଇ ଏକା ଭାବଧାରାକୁ ପୂର୍ଣ୍ଣାବୟବ କରିବା ଲାଗି ବୈଷୟିକ ସାମ୍ୟର କଳ୍ପନା । ବୈଷୟିକ ସାମ୍ୟ ଗଣତାନ୍ତ୍ରିକ ରାଷ୍ଟ୍ର ଆଣିପାରେନା, କାହିଁକିନା, ସେଭଳି ସାମ୍ୟ ଶାସକଶ୍ରେଣୀର ସ୍ୱାର୍ଥର ପରିପନ୍ଥୀ । ଆନ୍ଦୋଳନ ତେଣୁ ଅନିବାର୍ଯ୍ୟ । ପରବର୍ତ୍ତୀ ପର୍ଯ୍ୟାୟ, କମିଉନିଜ୍ମ, କିନ୍ତୁ ଖାଲି ଧନସାମ୍ୟ କି ଶ୍ରେଣୀସାମ୍ୟ କଥା କହେନା, କହେ ଶ୍ରେଣୀର ଅବଲୁପ୍ତି ଆଉ ରାଷ୍ଟ୍ରର ବିଲୁପ୍ତି କଥା । ମାତ୍ର, ଅଦ୍ୟାବଧି ପୃଥିବୀରେ କୁତ୍ରାପି ପରୀକ୍ଷିତହୋଇନାହିଁ ସେ ପ୍ରତୀତି, ପରୀକ୍ଷିତହୋଇଚି ସୋଭିଏତ୍ ଇଉନିୟନ୍‌ରେ କେବଳ ସୋସାଲିଜ୍ମ ।

କରାଚି କଂଗ୍ରେସ୍‌ରେ ଗାନ୍ଧି କଣ କହିଥିଲେ କେଜାଣି, ରବ ଉଠିଲା, ଦେଶ ସ୍ୱାଧୀନ ହେଲେ ସୋସାଲିଷ୍ଟ ରାଷ୍ଟ୍ରର ମୂଳଦୁଆ ପଡ଼ିବ । ଧନତନ୍ତ୍ରର ଶୈଶବରେ ଜାତୀୟତାବାଦୀ ହଠାତ୍ କାହିଁକି ମାତିଉଠିଲେ ଜଣାପଡ଼ିନାହିଁ, ମାତ୍ର ସମାଜବିଦ୍ୟା କହୁଚି, under similar circumstances similar results will take place । ପରାଧୀନ ଭାରତର ପରିସ୍ଥିତି କ'ଣ ସୋଭିଏତ୍ ଇଉନିୟନ୍ ସାଙ୍ଗରେ ଥିଲା ତୁଲ୍ୟମୂଲ୍ୟ ? ଉନବିଂଶଶତକର ମଧ୍ୟଭାଗରେ ମାର୍କ୍ସ ଯେତେବେଳେ ସୋସାଲିଜ୍ମ ପ୍ରଚାରକଲେ ଜର୍ମାନୀରେ, ଶ୍ରମିକଶ୍ରେଣୀ ଭିତରେ ବିପୁଳ ଉତ୍ସାହ ଦେଖାଦିଏ, ମାତ୍ର ଜାତୀୟତାବାଦୀ ଘୋର ଆପତ୍ତି ଉଠାନ୍ତି, କାହିଁକିନା, ଠିକ୍ ସେତିକିବେଳେ ଜାତୀୟତାବାଦୀ ସଶସ୍ତ୍ର ବିଦ୍ରୋହ ଦ୍ୱାରା ନିୟମତାନ୍ତ୍ରିକ ସରକାର ସ୍ଥାପନକରିବାକୁ ଥିଲେ ତତ୍ପର । ବୋଲିବା ବାହୁଲ୍ୟ, ସେମାନେ ବୁର୍ଜୋୟାବଂଶର ସନ୍ତାନ ଏବଂ କ୍ୟାପିଟାଲିଜ୍ମ ଦ୍ୱାରା ପ୍ରତିପାଳିତ। ନ୍ୟାସନାଲିଷ୍ଟ୍ ତେଣୁ ବିଭିନ୍ନ ଶ୍ରେଣୀର ବିଭିନ୍ନ ଆର୍ଥସାମାଜିକ ସ୍ୱାର୍ଥକୁ ମାନିନେଇଚନ୍ତି; କିନ୍ତୁ ପିତୃଭୂମି ନାଁରେ ସମବେତହୋଇ ଯେନତେନ ପ୍ରକାରେ ସ୍ୱେରାଚ୍ଛରୀ ରାଜତ୍ୱକୁ ଧୂଳିସାତ୍ କରିବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଇଚନ୍ତି । ମାତ୍ର ଇଉରୋପର ଅପରାପର ଅଞ୍ଚଳରେ କଳକାରଖାନା ଗଢ଼ିଉଠିବା ସଙ୍ଗେସଙ୍ଗେ ସମାନୁପାତରେ ଏକ ସର୍ବହରା ଶ୍ରେଣୀ ମଧ୍ୟ ସୃଷ୍ଟିହୁଏ ।

ସୋସାଲିଜ୍ମ ଓ ତା'ର କର୍ମପଦ୍ଧତି ପ୍ରତି ଆକର୍ଷଣ ଦେଖାଯାଏ, ସ୍ୱତଃସ୍ଫୂର୍ତ୍ତ ଓ ପ୍ରଗାଢ଼ । ନ୍ୟାସନାଲିଷ୍ଟଙ୍କୁ ଏ ଉପସର୍ଗ ବିବ୍ରତକରିଚି ବେଜାଏ; ନେତୃବର୍ଗଙ୍କ ଭିତରୁ ବର୍ଲିନ୍ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ଡକ୍ଟର୍ ଡୁଇରିଙ୍ଗ୍ ରାତାରାତି ଆବିଷ୍କାର କରିପକାଇଲେ ଯେ ସିଏ ମଧ୍ୟ ଜଣେ ସୋସାଲିଷ୍ଟ । ନବାବିଷ୍କୃତ ଏକ ସୋସାଲିଷ୍ଟ୍ ବହି ମଧ୍ୟ ଲେଖିପକାଇଲେ, ତାଙ୍କ ମତରେ ଯା ଅସଲ ସୋସାଲିଜ୍ମ । ଏଙ୍ଗେଲ୍ସ ତାକୁ ଯୋଉ ବହିରେ ଖଣ୍ଡନକରିଚନ୍ତି, *Anti Duering* (ଡୁଇରିଙ୍ଗ୍‌ଙ୍କ ବିପକ୍ଷ) ନାମରେ ତା ବିଖ୍ୟାତ । ଦେଖାଇଚନ୍ତି, ଡୁଇରିଙ୍ଗ୍‌ଙ୍କ ତତ୍ତ୍ୱଜାଲ ପ୍ରକୃତରେ ଗଣତନ୍ତ୍ରବାଦୀଙ୍କ ଛଲ୍‌ବାଜି ଏବଂ କୌତୁକର ବିଷୟ । ସେଇ ସମୟରୁ ବୁର୍ଜୋୟା-ଜାତୀୟତାବାଦୀ ନିଜକୁ କହିଚନ୍ତି ସୋସାଲ୍-ଡେମୋକ୍ରାଟ୍; ଆବିକୃତ କ୍ୟାପିଟାଲିଷ୍ଟ୍ ଅବଶ୍ୟ ବ୍ୟଙ୍ଗକରି କହିଚନ୍ତି, କ୍ୟାଥିଡ୍ରା-ସୋସାଲିଷ୍ଟ୍ ! ମାନେ, ଚେୟାରରେ ବସିରହି ଗରିବର ଦୁଃଖ ଲାଘବକରିବାକୁ ଯିଏ ଲଢ଼ାଇକରେ; ଗୋଟିଏ ଶବ୍ଦରେ, 'ମଧ୍ୟବିତ୍ତ' । ସ୍ୱାଧୀନତା ଆନ୍ଦୋଳନ ଭାରତରେ ପରିଚାଳିତକରିଚି ଏଇ ମଧ୍ୟବିତ୍ତ । ସେମାନଙ୍କ ଲକ୍ଷ୍ୟ ସୋସାଲିଜ୍ମ ନଥିଲା କି ଏବେ ମଧ୍ୟ ନାହିଁ; ରହିଁଥିଲେ, ବୈଷମ୍ୟ ଯଦି ଅଛି, ରହିଥାଉ; ଭାରତମାତାଙ୍କ ଝିଅପୁଅ ଏକାଠିହୋଇ ଆକୁମାରୀ-ହିମାଳୟ ସ୍ଥାପନକରନ୍ତୁ ଅଖଣ୍ଡ ସ୍ୱାଧୀନ ରାଷ୍ଟ୍ର ! ବୈଷମ୍ୟ ତ ଗଡ଼ିଆସୁଚି ଅବିସ୍ମରଣୀୟ କାଳରୁ, ସେଗୁଡ଼ାକୁ ନେଇ ଘଣ୍ଟାଚକଟାକଲେ ଆନ୍ଦୋଳନ ଛିନ୍ନଛତ୍ର ହୋଇଯିବ । ଗାନ୍ଧି ସେଥିପାଇଁ କରାଚି କଂଗ୍ରେସ୍‌ରେ କହିଥିଲେ, ଧର୍ମଘଟକରିବା ଶ୍ରମିକ ପକ୍ଷରେ ଠିକ୍‌ନୁହେଁ, ମାଲିକ ସାଙ୍ଗରେ ଆପୋଷ କରିପାରେ ତୃତୀୟପକ୍ଷକୁ ମଧ୍ୟସ୍ଥକରି । ଏ ଆପ୍ରୋଚ୍ କୋଉ ସୋସାଲିଷ୍ଟ୍ କରିପାରେନା, କରିପାରେ ଡୁଇରିଙ୍ଗ୍ । ପ୍ରଚଳିତ ଗଣତନ୍ତ୍ର ସାଙ୍ଗକୁ ଜାତୀୟତାବାଦକୁ ମଧ୍ୟ ପ୍ରତିହତକରିବାକୁ ପଡ଼ିବ ସୋସାଲିଜ୍ମ ଦ୍ୱାରା; ନଚେତ୍ ଭାରତୀୟ ସମାଜରେ ସାମନ୍ତତନ୍ତ୍ରରୁ ଆରମ୍ଭକରି କଳକାରଖାନା ଯୁଗ ପର୍ଯ୍ୟନ୍ତ ସଭ୍ୟତାର ବିବିଧ ସ୍ତର ଯେ ଅଦ୍‌ଭୂତ ଅସମଞ୍ଜସ ବିନ୍ୟାସରେ ବିଦ୍ୟମାନ, ଟ୍ରାଇବାଲ୍ ବା କୌମପ୍ରଥା ପାଖରୁ ଇଣ୍ଡଷ୍ଟ୍ରିଆଲ୍ ପ୍ରଲେତାରିଏତ୍ ପର୍ଯ୍ୟନ୍ତ ବିଭିନ୍ନ ଯୁଗର ନିଦର୍ଶନ ଯେ ଅତି ପ୍ରକଟଭାବେ ଅସମଞ୍ଜସ, ତାର ସମୀକରଣ ଗଣତନ୍ତ୍ର କି ଜାତୀୟତାବାଦ କରିପାରିବ ନାହିଁ । ପାରିବନାହିଁ, କାହିଁକିନା, ଭାବବାଦୀ ଏଇ ପ୍ରତ୍ୟୟଦ୍ୱୟ ସମାଜକୁ ଏକ 'ଟୋଟାଲିଟି' ରୂପରେ ଦେଖିବାକୁ ଅଭ୍ୟସ୍ତ ନୁହେଁ; ନୁହେଁ ବୋଲି, ସମାଜ ଯେ ସ୍ତରବିଶିଷ୍ଟ ଏକ ଷ୍ଟ୍ରକ୍‌ଚର୍, ଅତିପ୍ରତ୍ୟକ୍ଷ ସେଇ ପ୍ରପଞ୍ଚଟା ଆଖିରେ ପଡ଼େନା; ପଡ଼େ କେବଳ ବିବିଧ ମଝିରେ ମହାନ୍ ମିଳନ, ଇଉନିଟି ଇନ୍ ଡାଇଭର୍‌ସିଟି । ମାତ୍ର, କ୍ୟାପିଟାଲିସ୍ମ ଟୋଟାଲିଟିକୁ ପ୍ରତ୍ୟକ୍ଷକରିପାରେ ବୋଲି ପରିବ୍ୟାପ୍ତ କରିପାରେ ନିଜକୁ ସମାଜର

ରନ୍ଧ୍ରେରନ୍ଧ୍ରେ, ତାର ଏଇ ଶକ୍ତିକୁ ଉପଲକ୍ଷ୍ୟକରି *କମିଉନିଷ୍ଟ୍ ମ୍ୟାନିଫେଷ୍ଟୋରେ* ଦେଢ଼ଶ'ବର୍ଷରୁ ବେଶି ଆଗକୁ ମାର୍କ୍ସ ଲେଖିଥିଲେ, What earlier century had even a presentiment that such productive forces slumbered in the lap of social labour ? ଏବଂ ଆଜି ଦେଢ଼ଶ'ବର୍ଷ ଉତାରୁ ଧନତନ୍ତ୍ରର ବିଶ୍ୱପର୍ଯ୍ୟଟନକୁ ଲକ୍ଷ୍ୟକଲେ ଭାବିହେଉନାହିଁ ଯେ ତା'ର ବିକଳ୍ପ ଆଦୌ ସମ୍ଭବପର । ମାର୍ଗାରେଟ୍ ଥ୍ୟାଚର୍ ପାଖରୁ ମନମୋହନ ସିଂ ପର୍ଯ୍ୟନ୍ତ, ସେଥିପାଇଁ କହନ୍ତିଟି 'ନା'; ମାନେ there is no alternative । ଅବଶ୍ୟ, ଏକମାତ୍ର ଧନୋତ୍ପାଦନର କୌଶଳ ହିସାବରେ । କିନ୍ତୁ ତାର ଅନ୍ତର୍ଗୂଢ଼ ଲଜିକ୍ ଯେହେତୁ ଅପହରଣକରେ ମନୁଷ୍ୟତ୍ୱ, ପ୍ରତିସ୍ପର୍ଦ୍ଧୀ 'ଅପର' ଓରଲ୍ଡ ସିଷ୍ଟେମ୍ ଭାବରେ ନିର୍ମାଣକରାଯାଇଚି ସୋସାଲିଜ୍ମକୁ । ଗଣତନ୍ତ୍ର କି ଜାତୀୟତାବାଦ ତ ତା' ସାଙ୍ଗରେ ଲଢ଼ିପାରିନାହିଁ, ବରଂ ପ୍ରସବକରିଚି 'ହିନ୍ଦୁତ୍ୱ' ଭଳି ଅତୀତ-ନିର୍ଭର ଅଳୀକ ଅବବୋଧ । ସନ୍ଦେହ ନାହିଁ, ସମାଜଗଢ଼ଣ ଭିତରେ ବିଭେଦପ୍ରବଣ ବୀଜ ସୁପ୍ତହୋଇ ରହିଚି ବୋଲି, ଜାତୀୟତାବାଦ କରୁଚି ସେଇ ପ୍ରବଣତାର ଉପଯୋଗ । ଆଉ, ଗଣତନ୍ତ୍ରର ପ୍ରକୃତ ଭିତ୍ତି ତ ଜାତୀୟତାବାଦ ! 'ମହାତ୍ମା' ଦରିଦ୍ର ଆଖିରୁ ଲୁହପୋଛିଦେବାକୁ କରିଚନ୍ତି ଜୀବନର ବ୍ରତ, ଭାରତମାତାର ଅଙ୍ଗଚ୍ଛେଦ କେବଳ ତାଙ୍କ ମୃତଶରୀର ଉପରେ ସମ୍ଭବପର ବୋଲି ଘୋଷଣାକରିଚନ୍ତି ପ୍ରକାଶ୍ୟରେ; ଉଭୟ ପ୍ରକଳ୍ପ ଯେ ଟ୍ର୍ୟାଜିକ୍ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଚି, ଏକମାତ୍ର କାରଣ, ଜାତୀୟତାବାଦ ପ୍ରତି ଆପୋଷହୀନ ଅନୁରାଗ, ଯୋଉ ଅନୁରାଗ ଭଗତ୍ ସିଂଙ୍କ ଦେଶାଭିମାନକୁ ବି ସ୍ୱୀକୃତିଦିଏନା ।

୧୯୪୭ ପୂର୍ବରୁ କିନ୍ତୁ ବିଶ୍ୱମୟ ଅଭିନ୍ନ ଏକ ଅର୍ଥବ୍ୟବସ୍ଥାର ଅଂଶବିଶେଷ ହୋଇସାରିଚି ଭାରତ ଯାହାକୁ ଏକ୍ଷଣି କୁହାଯାଉଚି 'ମାର୍କେଟ୍'; ମାତ୍ର, ସେଭଳି ଅଂଶଗ୍ରହଣ ଅଭିପ୍ରେତ ନଥିଲା ଭାରତର, କାହିଁକିନା, ସେଇ ମାର୍କେଟ୍ର ଅନ୍ୟନାମ ଇମ୍ପିରିଆଲିଜ୍ମ ବା ସାମ୍ରାଜ୍ୟବାଦ । ତା ବିରୋଧରେ ଭାରତ ଲଢ଼ିଛି, କାହିଁକିନା, ସାମ୍ରାଜ୍ୟବାଦର ବି ରହିଚି ଷ୍ଟ୍ରକ୍‌ଚରାଲ୍ ଲଜିକ୍ (ଗଢ଼ଣସଂଜାତ ନିୟମ); ସେ ଲଜିକ୍‌ରେ ଇଂଲଣ୍ଡର ଐଶ୍ୱର୍ଯ୍ୟ ବୃଦ୍ଧି ପାଇଁ ଭାରତକୁ ଅହୋରାତ୍ର ଦୋହନ ଅବଶ୍ୟମ୍ଭାବୀ । ତୃତୀୟବିଶ୍ୱର ଅନ୍ୟାନ୍ୟ ଦେଶ ଭଳି ଭାରତ ବି ଚାହିଁଚି ସେଇ ଦୋହନରୁ ବାହାରିଆସି ତିଆରିକରିବ ସ୍ୱାଧୀନ ସ୍ୱାବଲମ୍ବୀ ଅର୍ଥନୀତି । ରାଜନୀତିକ ମୁକ୍ତି ଚାହିଁଚନ୍ତି ଯେତେବେଳେ ଗାନ୍ଧି, ଜବାହରଲାଲ୍ ଭାବିଚନ୍ତି ତା ସାଙ୍ଗକୁ ସୋସାଲିଜ୍ମ କଥା । ମାତ୍ର ଗାନ୍ଧିପରିଚାଳିତ ସତ୍ୟାଗ୍ରହ ଯେହେତୁ ଶ୍ରେଣୀଚରିତ୍ରରେ ଥିଲା ବୁର୍ଜୋୟା, ଭାରତ ଉପାଡ଼ିଦେଇ ପାରିନାହିଁ ସାମ୍ରାଜ୍ୟବାଦକୁ ସମୂଳ । ତା ସାଙ୍ଗରେ ସନ୍ଧିକରି ଦେଶଭାଗ

ବିନିମୟରେ ପାଇଚି କ୍ଷମତା-ହସ୍ତାନ୍ତର । ରାଷ୍ଟ୍ରର ମାଲିକ ବଦଳ ହେଲେ; ମାତ୍ର ଇମ୍ପିରିଆଲିଜ୍ମ ଯୋଉ ଦୋହନର ଜାଲ ବିଛାଇଥିଲା, ତାର ବଦଳ ହେଲାନାହିଁ, ଗଠନଗତ ଲଜିକ୍ ରହିଲା ଅକ୍ଷୁର୍ଣ୍ଣ । ଉନ୍ନୟନ ବା ଉନ୍ନୟନର ପ୍ରକାରଭେଦ ତେଣୁ ରହିଗଲା ଅମଲାତନ୍ତ୍ର ହାତମୁଠାରେ । ୧୯୪୭ ଆଗରୁ ନେହ୍ରୁ କିନ୍ତୁ ଯୁକ୍ତି ଦେଖାଇଥିଲେ, .... the only key to the solution of ...India's problems lies in socialism and when I use this word I do so not in a vague, humanitarian way, but in scientific, economic sense । ସମାଜ-ସଂସାର ସବୁଯାକ ତ ଓଲଟପାଲଟ ହୋଇଯିବ ତା'ହେଲେ ! ନେହ୍ରୁ କିନ୍ତୁ ଓହରିଯିବା ପାତ୍ର ନୁହେଁ; କହିଲେ, ଦେଶବାସୀଙ୍କୁ ବୁଝିବାକୁ ପଡ଼ିବ the terrible costs of not changing the existing order । ମାତ୍ର, ତାଙ୍କ ରାଜତ୍ୱରେ ଘୋଷିତ ପ୍ରଥମ ପଞ୍ଚବାର୍ଷିକ ଯୋଜନାର ଖସଡ଼ା, ଅତି ଜରୁରୀ ଭୂସଂସ୍କାର ବିଷୟରେ ଲେଖିଲା, ...they will present numerous practical problems involving basic social conflicts (and may) give rise to organised forces of disruption । ଅର୍ଥାତ୍ 'economic sense'ରେ ରାଷ୍ଟ୍ର ବର୍ଜନକଲା ସମାଜତନ୍ତ୍ରକୁ । ଖୁବ୍ ସମ୍ଭବତଃ, କମିଉନିଜ୍ମ ପ୍ରତି ଆମେରିକାର ତ୍ରାସ ଆଉ ଆତଙ୍କର (ଅ)ସଦ୍‌ବ୍ୟବହାର କରିଥିଲେ ନେହ୍ରୁ ! କିନ୍ତୁ 'ବିଜ୍ଞାନ', 'ପ୍ରଯୁକ୍ତି', 'ଜାତୀୟ ପ୍ରକଳ୍ପ', 'ନବଭାରତ ଦେବମନ୍ଦିର' ଇତ୍ୟାଦି ଆହୁରି ଅନେକକଥା କହିବୁଲିଲେ ସତେ ଯେମିତି ଏଇ କଥାଗୁଡ଼ାକ ଘଟାଇଦେବ ଦେଶସାରା ଷ୍ଟ୍ରକ୍‌ଚର୍‌ୟାଲ୍ ପରିବର୍ତ୍ତନ ! ମାତ୍ର ନେହ୍ରୁ, ପ୍ରାୟ ପ୍ରତ୍ୟେକ ଭାରତୀୟ ଗୁଣୀଲୋକ ଭଳି, ବିଦେଶର ଅନୁମୋଦନ ପ୍ରତି ଥିଲେ ଲାଳାୟିତ । ଡାକିଆଣିଲେ ଗୁନାର୍ ମାଇର୍‌ଡାଲ୍‌ଙ୍କୁ; ମାଇର୍‌ଡାଲ୍ ଫେରିଯାଇ *ଏସିଆନ୍ ଡ୍ରାମା* ବହିରେ ଲେଖିଲେ, India is ruled by a select group of upper class citizens who use their political power to secure their privileged positions... the power struggle has mainly remained one between individuals and groups in the upper class in the broader sense... Democracy has not enabled the majority of poor people to group, and organise themselves for utilising political power to advance their own interests । ନେହ୍ରୁଙ୍କ ତିରୋଧାନର ଏଗାରବର୍ଷ ପୂର୍ବରୁ ଭି.କେ.ଆର୍.ଭି ରାଓ ଏକ ଅର୍ଥନୀତିକ ସମୀକ୍ଷାର ଉପସଂହାରରେ କିନ୍ତୁ ଲେଖିଥିଲେ, a political alliance of the intermediate classes with the upper classes resorting to socialist ideology only to win mass

support but using all levers of power to facilitate a type of capitalist development in the interest of a narrow section of Indian society... ୧୯୮୮ରେ ପୁଣି ... as far as the poor and deprived sections of the people are concerned, parliamentary democracy has not been able to meet the challenge । ମନ୍ତବ୍ୟ ନିଷ୍ପ୍ରୟୋଜନ; a type of capitalist development ର ମାନେ କ'ଣ ? ଅନୁମାନକରିବା କଥା, ଉନ୍ନତି ଯା ହୋଇଚି ବା ହେଉଚି, ଦେଶସାରା ସମାନ୍‌ଭାବରେ ହେଉନାହିଁ, ଏବଂ ସମାନ ଭାବରେ ନହେଲେ ଉନ୍ନତ ଅଂଚଳ ପ୍ରଭୁତ୍ୱ କରିବ ଅନୁନ୍ନତ ଉପରେ, ପ୍ରକୃତ ପ୍ରସ୍ତାବରେ ଯା ଅଭ୍ୟନ୍ତରୀଣ ଉପନିବେଶବାଦ । କିନ୍ତୁ ଏପରି ଯେ ଘଟିପାରେ, ମାର୍କ୍ସଙ୍କ ଦୂରଦୃଷ୍ଟିରେ ଧରାପଡ଼ିଚି ବହୁ ଆଗରୁ ଯେ, ଅସମାନ ଯଦି ହୁଏ ଜନସାଧାରଣଙ୍କ ବିକାଶ, ଦେଶ ତା'ହେଲେ ... suffer not only from a development of capitalist production but also from the incompleteness of that development. Alongside of modern evils a whole series of inherited evils oppress us, arising from the passive survival of antiquated modes of producton with their inevitable train of social and political anachronisms. we suffer not only from the living but from the dead । କ୍ୟାପିଟାଲିଜ୍ମରୁ ଦେଶକୁ ରକ୍ଷାକରିବା ତେଣୁ ଅସଲ ପ୍ରଶ୍ନ ନୁହେଁ; ଶାସକଶ୍ରେଣୀ କବଳରୁ ଲୋକଙ୍କୁ ରକ୍ଷାକରିବା ହିଁ ଅସଲ ପ୍ରଶ୍ନ । ଜାତୀୟତାବାଦୀଙ୍କ ଦୃଷ୍ଟିରେ, ଲୋକଙ୍କୁ ଏଭଳି ଶାସକ-ଶାସିତ ଶ୍ରେଣୀରେ ବିଭକ୍ତକରିବା ମାନେ 'ନେସନ୍' ଭିତରେ ଆଣ୍ଟିନେସନ୍ ସୃଷ୍ଟି । କିନ୍ତୁ ଶାସକଶ୍ରେଣୀ ଯଦି ସୋସାଲିଜ୍ମକୁ ଗ୍ରହଣକରେ, ଐକ୍ୟବଦ୍ଧ ଭାରତୀୟ ନେସନ୍‌ର ପ୍ରତିପକ୍ଷ ହେବ ଏକମାତ୍ର କ୍ୟାପିଟାଲିଜ୍ମ ।

ସୋସାଲିଜ୍ମ ଅବଶ୍ୟ ପରୀକ୍ଷିତହୋଇଚି ଅଧୁନା-ଭଗ୍ନଜାନୁ ସୋଭିଏତ୍ ଇଉନିୟନ୍‌ରେ; ପ୍ରୟୋଗପଦ୍ଧତି ଶାସକଶ୍ରେଣୀ ହାତରେ ଔଦ୍ଧତ୍ୟରେ ପରିଣତହୋଇ ସାଧାରଣଲୋକଙ୍କୁ 'ପର' କରିଦେଇଚି ସୁଶୀଳସମାଜରେ, ସୋସାଲିଜ୍ମ ନାଁରେ କେବଳ ବଞ୍ଚନାସହିଚନ୍ତି କ୍ରମାଗତ । ସେ ସୋସାଲିଜ୍ମକୁ ସେଥିପାଇଁ କୁହାଯାଇଚି actually existing socialism, ଅର୍ଥାତ୍, ସ୍ଥିତ କିନ୍ତୁ ପ୍ରକୃତ ନୁହେଁ । ଲୋକ ଶେଷକୁ ସମବେତ ଚେଷ୍ଟାରେ ପ୍ରତ୍ୟାଖ୍ୟାନ କରିଚନ୍ତି ଶାସକଶ୍ରେଣୀକୁ, ଦେଶଟା ବି ଖଣ୍ଡଖଣ୍ଡ ହୋଇଯାଇଚି ପରିଣାମରେ । କ୍ୟାପିଟାଲିଷ୍ଟ କହୁଚନ୍ତି, ମାର୍କ୍ସିଜ୍ମ ଇଜ୍ ଡେଡ୍, ଇତିହାସର ଇତି । କିନ୍ତୁ, ଇତିହାସ ପ୍ରବାହରେ ଗଢ଼ିଉଠିବ ଯୋଉ ଷ୍ଟ୍ରକ୍‌ଚର୍ (ମାର୍କ୍ସଙ୍କ ପରିଭାଷାରେ 'ଫର୍‌ମେସନ୍'), ସୋଭିଏଟ୍ ଇଉନିୟନ୍ କଣ ଉପଲବ୍ଧିକରିଥିଲା ସୋସାଲିସ୍ଟ

ନାମଧେୟ ସମାଜର ସେଇ ଗଢ଼ଣକୁ ? ଯଦି କରିନାହିଁ, କଣ୍ଟ୍ରାଡିକ୍ସନ୍ ଅଭିଘାତରେ ଯଦି ଭାଙ୍ଗିଯାଇଚି, ଫେର୍ ତିଆରିହେବ, ଋଷିଆରେ କି ଆଉକୋଉଠି । କ୍ୟାପିଯାଲିଜ୍ମ ଶତ୍ରୁତା କରିଥିବା ଅବଶ୍ୟ ପ୍ରତ୍ୟାଶିତ; ଚକ୍ରାନ୍ତ କିନ୍ତୁ କୁହାଯିବ କାହିଁକି ? ଆଉ, ମାର୍କ୍ସିଜ୍ମ ତ ମାନବମୁକ୍ତିର ଚିରନ୍ତନ ପ୍ରତୀକ; ମଣିଷପ୍ରଜାତି ଧରାପୃଷ୍ଠରେ ଆତଯାତ ହେଉଥିବାଯାଏଁ ରହିଥିବ ଆକାଶରେ ଧ୍ରୁବତାରା; ଆଉ କ୍ୟାପିଟାଲିଜ୍ମ ପୃଥିବୀରେ ବଞ୍ଚିଥିବାଯାଏଁ ସୋସାଲିଜ୍ମ ବି ବଞ୍ଚିରହିଥିବ ସଦର୍ପ । ସବିସ୍ତାର ଆଲୋଚନା ଆବଶ୍ୟକ; ଖାଲି ଏତିକି ମନେରଖିଲେ ଯଥେଷ୍ଟ ଯେ, ସୋସାଲିଜ୍ମ ପୃଥିବୀକୁ ଆସିଚି ସୋଭିଏତ୍ ଇଉନିୟନ୍ ଜନ୍ମନେବା ବହୁପୂର୍ବରୁ, କ୍ୟାପିଟାଲିଜ୍ମର ନିଗେସନ୍ ରୂପରେ; ତେଣୁ ସୋଭିଏତ୍ ଇଉନିୟନ୍‌ର ଜନ୍ମ-ମରଣ ସାଙ୍ଗରେ ତା'ର ଜନ୍ମମରଣକୁ ସମାନ୍ତରାଳ ନଭାବି, କ୍ୟାପିଟାଲିଜ୍ମର ଜନ୍ମ-ମରଣ ସାଙ୍ଗରେ ଯୋଡ଼ିଦେବା ଯୁକ୍ତିଯୁକ୍ତ, କାହିଁକିନା, ଏକମାତ୍ର କ୍ୟାପିଟାଲିଜ୍ମ ଡାକିଆଣିପାରେ ସହମରଣ; କ୍ୟୁବାର ଜଣେ ଋଷୀ କହିବା ପରି you have to be very happy having one piece of bread to eat while other, throw meat to their dogs. I didn't have to read Marx to know the difference । ଏକଥା ମଧ୍ୟ ସ୍ମରଣ ରଖିବା ଦରକାର ଯେ ସମାଜତନ୍ତ୍ର ସ୍ଥାପିତହେବା ମାତ୍ର କେତେଟାବର୍ଷ ଭିତରେ ସୋଭିଏତ୍ ଇଉନିୟନ୍ ହୋଇପାରିଚି ଶିଳ୍ପସମୃଦ୍ଧିରେ ପୃଥିବୀର ଦ୍ୱିତୀୟ ବୃହତ୍ତମ ଶକ୍ତି, ଅଥଚ ବିସ୍ତାର ଲାଭକରିବାକୁ ଧନତନ୍ତ୍ର ନିର୍ଭରକରିଚି ଇମ୍ପିରିଆଲିଜ୍ମ ଉପରେ ସର୍ବତ୍ର । ତଥାପି, ବିଂଶଶତକର ଅନ୍ତିମପର୍ବରେ ଯୋଉ ମାର୍କସିସ୍ଟ-ଲେନିନିସ୍ଟ ମଡେଲ୍ ଦୃଷ୍ଟିଗୋଚର ହେଲା, କ୍ୟାପିଟାଲିଜ୍ମରୁ ବାହାରିଆସିବା ବାଟ ତ ବତାଇପାରିଲାନାହିଁ, ବରଂ ମାର୍କ୍ସିଜ୍ମର ବୈଧତା ଉପରେ ଲଗାଇଦେଲା ପ୍ରଶ୍ନଚିହ୍ନ । ମାଛ ଯେମିତି ମୁଣ୍ଡଆଡୁ ପଚିବାକୁ ଲାଗେ, ସୋସାଲିଜ୍ମର ଦଶା ଯେ ସୋଭିଏଟ୍ ଇଉନିୟନ୍‌ରେ ଅନୁରୂପ, ଜାଣିବାର ଅବକାଶ ପର୍ଯ୍ୟନ୍ତ ମିଳିନାହିଁ; ଆମର ଯୋଉ କମ୍ରେଡ୍ ମସ୍କୋ ଯାଇ ତୀର୍ଥଦର୍ଶନ କରିଆସନ୍ତି ବର୍ଷକୁଥରେ କି ଦି'ଥର, ସେମାନେ ବି କେହି ଗନ୍ଧପାଇଲେ ନାହିଁ; ଏକମାତ୍ର ରବୀନ୍ଦ୍ରନାଥ *ରସିୟାର ଚିଠି* (୧୯୩୦)ରେ ଲେଖିଥିଲେ ... ଯାଇ ହୋକ୍, ମାନୁଷେର୍ ବ୍ୟକ୍ତିଗତ୍ ଓ ସମଷ୍ଟିଗତ୍ ସୀମା ଏରା ଯେ ଠିକ୍ ମତୋ ଧରତେ ପେରେଛେ ତା ଆମାର୍ ବୋଧ୍ ହୟ୍‌ନା । ସେ ହିସାବେ ଏରା ଫ୍ୟାସିଷ୍ଟଦେର୍‌ଇ ମତୋ । ଏଇ କାରଣେ ସମଷ୍ଟିର୍ ଖାତିରେ ବ୍ୟଷ୍ଟିର୍ ପ୍ରତି ପୀଡ଼ନେ ଏରା କୋନ୍‌ଓ ବାଧାଇ ମାନ୍‌ତେ ଚାୟ୍ ନା । ଭୁଲେ ଯାୟ୍ ବ୍ୟଷ୍ଟିକେ ଦୁର୍ବଲ୍ କରେ ସମଷ୍ଟିକେ ସବଲ୍ କରାଯାୟନା, ବ୍ୟଷ୍ଟି ଯଦି ଶୃଙ୍ଖଲିତ ହୟ୍ ତବେ ସମଷ୍ଟି ସ୍ୱାଧୀନ୍ ହତେ ପାରେନା । ଏଖାନେ ଜବର୍‌ଦସ୍ତ୍ ଲୋକେର୍

ଏକନାୟକତ୍ୱ ଚଲ୍‌ଛେ । ଏଇ ରକମ୍ ଏକେର୍ ହାତେ ଦଶେର୍ ଋଲନା ଦୈବାତ୍ କିଛୁ ଦିନେର୍ ମତୋ ଭାଲ ଫଲ୍ ଦିତେଓ ପାରେ, କିନ୍ତୁ କଖନ୍‌ଇ ଚିରଦିନ୍, ପାରେନା । ଉପଯୁକ୍ତ ମତୋ ନାୟକ୍ ପରମ୍ପରାକ୍ରମେ ପାଓୟା ସମ୍ଭବ୍ ନୟ୍ ।

ତା'ଛାଡ଼ା ଅବାଧ୍ କ୍ଷମତାର୍ ଲୋଭ୍ ମାନୁଷେର୍ ବୁଦ୍ଧିବିକାର୍ ଘଟାୟ୍ । ଏକ୍‌ଟା ସୁବିଧାର୍ କଥା ଏଇ ଯେ, ଯଦିଓ ସୋଭିଏତ୍ ମୂଲ୍‌ନୀତି ସମ୍ବନ୍ଧେ ଏରା ମାନୁଷେର୍ ବ୍ୟକ୍ତିଗତ୍ ସ୍ୱାଧୀନତାକେ ଅତି ନିର୍ଦ୍ଦୟଭାବେ ପୀଡ଼ନ୍ କରତେ କୁଣ୍ଠିତ୍ ହୟନି ତଥାପି ସାଧାରଣ୍ ଭାବେ ଶିକ୍ଷାର୍ ଦ୍ୱାରା ଚର୍ଚ୍ଚାର୍ ଦ୍ୱାରା ବ୍ୟକ୍ତିର୍ ଆତ୍ମନିହିତ ଶକ୍ତିକେ ବାଡ଼ିୟେଇ ଚଲେଛେ- ଫ୍ୟାସିଷ୍ଟଦେର୍ ମତୋ ନିୟତଇ ତାକେ ପେଷଣ୍ କରେନି । ଶିକ୍ଷାକେ ଆପନ୍ ବିଶେଷ୍ ମତେର୍ ଏକାନ୍ତ ଅନୁବର୍ତ୍ତୀକରେ କତକ୍‌ଟା ଗାୟେର୍ ଜୋରେ କତକ୍‌ଟା ମୋହମନ୍ତ୍ରେର୍  ଜୋରେ ଏକ୍‌ଝୋଁକା କରେ ତୁଲେଛେ ତବୁଓ ସାଧାରଣେର୍ ବୁଦ୍ଧିର୍ ଚର୍ଚ୍ଚା ବନ୍ଧ କରେନି । ଯଦିଓ ସୋଭିଏତ୍‌ନୀତି ପ୍ରଋର୍ ସମ୍ବନ୍ଧେ ଏରା ଯୁକ୍ତିର୍ ଜୋରେର୍ ଉପରେଓ ବାହୁବଲ୍‌କେ ଖାଡ଼ା କରେ ରେଖେଛେ ତବୁଓ ଯୁକ୍ତିକେ ଏକେବାରେ ଛାଡ଼େନି ଏବଂ ଧର୍ମମୂଢ଼ତା ଏବଂ ସମାଜ୍ ପ୍ରଥାର୍ ଅନ୍ଧତା ଥେକେ ସାଧାରଣେର୍ ମନ୍‌କେ ମୁକ୍ତ ରାଖ୍‌ବାର୍ ଜନ୍ୟେ ପ୍ରବଲ୍ ଚେଷ୍ଟା କରେଛେ ।

ମନ୍‌କେ ଏକ୍‌ଦିକେ ସ୍ୱାଧୀନ୍ କରେ ଅନ୍ୟଦିକେ ଜୁଲୁମେର୍ ବଶ୍‌କରା ସହଜ୍‌ନୟ୍ । ଭୟେର୍ ପ୍ରଭାବ୍ କିଛୁଦିନ୍ କାଜ୍ କରବେ, କିନ୍ତୁ ସେଇ ଭୀରୁତାକେ ଧିକ୍କାର ଦିୟେ ଶିକ୍ଷିତ ମନ୍ ଏକଦିନ୍ ଆପନ୍ ଚିନ୍ତାସ୍ୱାତନ୍ତ୍ର୍ୟେର ଅଧିକାର୍ ଜୋରେର୍ ସଙ୍ଗେ ଦାବି କରବେଇ, ମାନୁଷ୍‌କେ ଏରା ଦେହେର୍ ଦିକେ ନିପୀଡ଼ିତ୍ କରେଛେ, ମନେର୍ ଦିକେ ନୟ୍ । ଯାରା ଯଥାର୍ଥଇ ଦୌରାତ୍ମ୍ୟ କରତେ ଋୟ ତାରା ମାନୁଷେର୍ ମନ୍‌କେ ମାରେ ଆଗେ- ଏରା ମନେର୍ ଜୀବନୀଶକ୍ତି ବାଡ଼ିୟେ ତୁଲ୍‌ଛେ । ଏଇଖାନେଇ ପରିତ୍ରାଣେର୍ ରାସ୍ତା ରୟେ ଗେଲ ।

ବ୍ରିଟିଶ୍ ସରକାର ବହିଟା ବାଜେୟାପ୍ତ କରିଥିଲେ; ମାତ୍ର ସେସିଲ୍ ଡେ'ଲୁଇ କବିତାରେ ଲେଖିଥିଲେ, Why do we on seeing a Red feel small ? For he is future walking to meet us । ତେଣୁ ସୋସାଲିଜ୍ମର ଯୋଉ ସଙ୍କଟ ସୃଷ୍ଟିକରିଚି ସୋଭିଏତ୍ ଇଉନିୟନ୍, ପୃଥିବୀ ନିଶ୍ଚୟ ଦାବିକରିବ ତା ସକାଶେ କୈଫିୟତ୍ । ଖାଲି ସୋଭିଏତ୍ ସଂଘ ତ ନୁହେଁ, ପୂର୍ବଇଉରୋପ୍‌ର ଯେତେ ଦେଶକୁ କୁହାଯାଇଚି actually existing socialism, ସର୍ବତ୍ର ଦେଖାଯାଇଚି ସମାନ ସଙ୍କଟ । ସେଥିପାଇଁ, ସବାଆଗେ ମାନିନେବା ଯୁକ୍ତିଯୁକ୍ତ ଯେ ଯୋଉ ଯୁଗ ଆରମ୍ଭହୋଇଥିଲା ୧୯୧୭ରେ, ବିଂଶଶତକ ଶେଷହେବା ସଙ୍ଗେସଙ୍ଗେ ତାର ମଧ୍ୟ ଘଟିଚି ଅବସାନ;

ଅଭୀଷ୍ଟ ଭବିଷ୍ୟତ୍ ସାଙ୍ଗରେ ମୋଲାକାତ୍ ହୋଇପାରିନାହିଁ । ତା ମାନେ ନୁହେଁ ଯେ ପୁରା ଉଦ୍ୟମଟା ହୋଇଯାଇଚି ଶୂନ୍ୟସନ୍ତରଣ, କାହିଁକିନା, ଇତିହାସର ଏଇ ପର୍ଯ୍ୟାୟରେ ପୃଥିବୀ ପ୍ରତ୍ୟକ୍ଷକରିଚି ଦରିଦ୍ର-ନିପୀଡ଼ିତର ଅଭୂତପୂର୍ବ ଆତ୍ମତ୍ୟାଗ, ଆଉ ପଟାନ୍ତରହୀନ କୀର୍ତ୍ତି ଓ ସିଦ୍ଧି, ଯୋଉ ସିଦ୍ଧି ଆଜି ଦୁନିଆର ଖଟିଖିଆ ମଣିଷର ଉତ୍ତରାଧିକାର, ପୃଥିବୀ ଇତିହାସରେ ସର୍ବପ୍ରଥମ ସାମ୍ରାଜ୍ୟବାଦର ପରାଜୟ, ଧନତନ୍ତ୍ରକୁ ଅତିକ୍ରମକରି ସାମ୍ୟବାଦକୁ ଅଭିସରଣ । ଦାରିଦ୍ର୍ୟ ଅଶିକ୍ଷାରୁ ମୁକ୍ତି କେବଳ ନୁହେଁ, ଶିଳ୍ପ-ଉଦ୍ୟୋଗରେ ଚମକ୍ରୃତ କଲାଭଳି ସାଫଲ୍ୟ ମଧ୍ୟ, ଆଉ ବିଜ୍ଞାନ ପ୍ରଯୁକ୍ତିରେ ନଭଶ୍ଚୁମ୍ବୀ କୃତିତ୍ୱ । ଯୋଉ କୃତିତ୍ୱ ଧନତନ୍ତ୍ରର ମଉଡ଼ମଣି ଆମେରିକା ସହିତ ସୋଭିଏଟ୍ ସଂଘକୁ କରିଚି ସମରଶକ୍ତିରେ ତୁଲ୍ୟମୂଲ୍ୟ । ସେଇ ଶକ୍ତି ଖାଲି ଫ୍ୟାସିଜ୍ମକୁ ନିର୍ମୂଳକରିନାହିଁ ଇଉରୋପରୁ, ଦ୍ୱିତୀୟ ମହାଯୁଦ୍ଧରେ ବିଧ୍ୱସ୍ତ ଦେଶକୁ (୨୦ ମିଲିୟନ୍ ମୃତ) ପୁନର୍ଗଠନ କରିଚି ସାମ୍ରାଜ୍ୟବାଦୀ କୋଉହେଲେ ରାଷ୍ଟ୍ରର ବିନା ସାହାଯ୍ୟରେ; ଏବଂ ଅନତିବିଳମ୍ବେ ପରିଣତହୋଇଚି ପୃଥିବୀର ଅନ୍ୟତମ ମହାଶକ୍ତି । ଅତିପ୍ରତ୍ୟକ୍ଷ ଏଇ ଘଟଣାବଳୀ କଣ ବାଧ୍ୟକରିନାହିଁ ଧନତନ୍ତ୍ରକୁ ଆପଣା ଲୁଣ୍ଠନ ଓ ଶିକାର ପଦ୍ଧତି ବଦଳାଇଦେବାକୁ ? ଆଜି ଯେ 'ଶ୍ରମିକମଙ୍ଗଳ' 'ଜନକଲ୍ୟାଣ' 'ସାମାଜିକ ସୁରକ୍ଷା' ଭଳି ବାଗାଡ଼ମ୍ବର ଦୁନିଆସାରା ଶୁଣାଯାଉଚି, ତା ମୂଳରେ କଣ କାମକରୁନାହିଁ ସାମ୍ୟବାଦ ପ୍ରତି ଆତଙ୍କ ? ଆଉ, ତୃତୀୟବିଶ୍ୱ ଯେ ଔପନିବେଶିକତାରୁ ମୁକ୍ତହୋଇଚି ଦ୍ୱିତୀୟ ବିଶ୍ୱଯୁଦ୍ଧ ଅବ୍ୟବହିତରେ, ଅକ୍ଟୋବର୍ ବିପ୍ଳବ କଣ ପ୍ରେରଣା ଯୋଗାଇନାହିଁ, ବିନା ବ୍ୟତିକ୍ରମରେ, ସକଳ ବିଦ୍ରୋହୀଙ୍କୁ ? ଗୋଟିଏ ବାକ୍ୟରେ, ଅକ୍ଟୋବର୍ ବିପ୍ଳବ ସହିତ ଆରମ୍ଭହୋଇନାହିଁ ପୃଥିବୀରେ ନବଯୁଗ ? ମନେରଖିବା ଉଚିତ, ମାନବେତିହାସରେ ମାତ୍ର ଦୁଇଥର ଘଟିଚି ଏଭଳି ବିସ୍ଫୋରଣ, ରସିଆ ଆଗରୁ ଏକମାତ୍ର ଫ୍ରାନ୍ସରେ, ଯାର ଶିହରଣ ଅନୁଭୂତହେବ ଯୁଗଯୁଗାନ୍ତର ଉନ୍ମୁଖ ମାନବଚେତନାରେ ।

ଦୂରରୁ ଚାହିଁଲେ ଦିଶୁଚି, ବିପ୍ଳବର ଉନ୍ମାଦନା ଯୋଉ ଜନଶକ୍ତିକୁ ଉଦ୍‌ବୁଦ୍ଧ କରିଥିଲା ଅସାଧ୍ୟ ସାଧନକରିବାକୁ, ସୋସାଲିଜ୍ମର ଅପପ୍ରୟୋଗ, ରବୀନ୍ଦ୍ରନାଥଙ୍କ ଭାଷାରେ 'ଜବରଦସ୍ତ୍ ଲୋକେର୍ ଏକନାୟକତ୍ୱ' ଯେ ଶେଷକୁ ଏଭଳି କଦର୍ଯ୍ୟ ପରିଣତି ଆଡ଼କୁ ସେମାନଙ୍କୁ ଠେଲିଦେଲା, ଏକମାତ୍ର କାରଣ ନାଗରିକ ସ୍ୱାଧୀନତାକୁ ରାଷ୍ଟ୍ରକର୍ତ୍ତୃକ ଅସ୍ୱୀକାର, କ୍ରମାଗତ ଓ ଅବିରତ ଅସ୍ୱୀକାର । କାହିଁକିନା, ରସିଆ ଧନତନ୍ତ୍ର ଭିତରଦେଇ ଗତିକରିନାହିଁ ବିପ୍ଳବ ପୂର୍ବରୁ, ଯା ମାର୍କ୍‌ସ୍ କରିଥିଲେ ଆବଶ୍ୟକ ପୂର୍ବସର୍ତ୍ତ । ମାର୍କ୍ସବାଦ ବିଚାରରେ ଏଭଳି ବିକାଶ ତେଣୁ ଇଉଟୋପିଆ ।

## ।। ସାତ ।।

ଇଉଟୋପିଆ ତ ପ୍ଲାଟୋଙ୍କ ଅମଳରୁ ପାଇଛୁଁ । ଆଉ କିଛି ନହେଉ, ଯୁଗ ପରେ ଯୁଗ ସ୍ମରଣ କରାଇ ଦେଉଚି, ଯେମିତି ବଞ୍ଚୁଛୁଁ, ତା ଜୀବନ ନୁହେଁ; ଦରକାର ପରିବର୍ତ୍ତନ । ପରିବର୍ତ୍ତନ କରିବାକୁ ଯାଇ ରାଷ୍ଟ୍ର ଆଉ ନାଗରିକ ଭିତରେ ତିଆରିହୁଏ ଯଦି ଦୁର୍ଲଂଘ୍ୟ ପାରକ୍ୟ (=ଆଲିଏନେସନ୍), ଜନ୍ମନେବ ଫେର୍ ଆଉଗୋଟାଏ ଇଉଟୋପିଆ, ଯେପରି ବେର୍ଟୋଲ୍ଟ ବ୍ରେଶ୍ଟ୍ ଲେଖିଥିଲେ ୧୯୫୩ରେ–

After the uprising of the 17th June
the Secretary of the Writers' Union
Had leaflets distributed in the Stalinallee
stating that the people
Had forfeited the confidence of the government
and could win it back only
by redouble efforts. Would it not be easier
In that case for the government
To dissolve the people
And elect another?

ବର୍ଲିନ୍ ସହରର କମିଉନିଷ୍ଟ ଶାସକ କିନ୍ତୁ ନିକଟତମ ଉତ୍କୃଷ୍ଟ କାମଟି କରିଥିଲେ; ବର୍ଲିନ୍ ପ୍ରାଚୀର ନିର୍ମାଣ ! ସୋସାଲିଜ୍ମ ପାଇଁ ଯିଏ ଆନ୍ଦୋଳନ କରିବେ, ଏଭଳି ଘଟଣାରୁ ଶିକ୍ଷା ଗ୍ରହଣକରିବେ ଯେପରି ଅକ୍ଟୋବର୍ ବିପ୍ଳବରୁ ମଧ୍ୟ । କାହିଁକିନା, ଧନତନ୍ତ୍ରର ରୂପରେଖ ସ୍ଥାନକାଳ ନିର୍ବିଶେଷରେ ସମାନ ନୁହେଁ; ଏବଂ ଯେହେତୁ ସାଧାରଣ (=ଇଉନିଭର୍ସାଲ୍) ନୁହେଁ, ଐତିହାସିକ (=ବିଶେଷ), ସର୍ବସାଧାରଣ ଇତିହାସ ଏକ ଭ୍ରାନ୍ତ ଧାରଣା; ଇତିହାସବୋଧ ବା ହିଷ୍ଟରିସିଟି ସବୁବେଳେ ଏକବଚନ । ଋଷିଆ କି ପୂର୍ବଜର୍ମାନୀରେ ଯା ହୋଇଚି, ଭାରତରେ ଅବିକଳ ସେଭଳି ହୋଇପାରେନା । ହୋଇପାରେନା ବୋଲି, ରେମଣ୍ଡ୍ ଉଇଲିଅମ୍ସ୍, ସୋଭିଏତ୍ ସଂଘର ଅଧଃପତନରେ ବ୍ୟଥିତହୋଇ ଲେଖିଥିଲେ,

It is only when people get to the point of seeing that the price of contradictions is yet more intolerable than the price of ending them that they acquire the nerve to go all the way through to a consistent socialist politics...

once you have decided for revolutionary socialism, not because it is quicker of more exciting, but because no other way is possible, then you can even experience defeat, temporary

defeat, such as a solialist of my generation has known, without any loss of commitment.

ମାର୍କ୍ସ ଦେଖିଚନ୍ତି ଧନତାନ୍ତ୍ରିକ ଇଉରୋପ୍‌କୁ, ଲେନିନ୍ କିନ୍ତୁ ତାଙ୍କ କଥାକୁ ପ୍ରୟୋଗକରିଚନ୍ତି ପଶ୍ଚାତ୍‌ପଦ ରସିଆରେ, ଯଦିଓ ଶ୍ରେଣୀପରିଚୟରେ ନିଜେ ଥିଲେ ବୁର୍ଜୋୟା, ମାତ୍ର ରାଜତନ୍ତ୍ରର ଘୋର ଶତ୍ରୁ । ଊନବିଂଶ ଶତକ, ମାର୍କ୍ସଚିନ୍ତାର ପ୍ରସାରପର୍ବ ହେଲେସୁଦ୍ଧା, ରସିଆରେ ପହଞ୍ଚିଛି ୧୮୮୦ ବେଳକୁ, ଯେତେବେଳେ ପ୍ଲେଖାନଫ୍‌ଙ୍କ ମୁଣ୍ଡକୁ ଛୁଇଁଚି ସୋସାଲିଜ୍ମ । ଅନୁଚରବର୍ଗଙ୍କୁ ସାଙ୍ଗରେନେଇ ଚାଲିଯାଇଚନ୍ତି, ପଶ୍ଚିମ-ଇଉରୋପ୍‌କୁ; ଦଶବର୍ଷ ଉତାରୁ ୧୮୯୦ରେ ରସିଆକୁ ଫେରିଆସି ସେଇ ଯୁବଗୋଷ୍ଠୀ ସଙ୍କଳ୍ପବଦ୍ଧ ହୋଇଚି, ଦେଶକୁ ବଦଳାଇଦେବେ ଆପାଦମସ୍ତକ । ସମୟଟା ଅବଶ୍ୟ ସଂଧିକ୍ଷଣ, କାହିଁକିନା, ଜାର୍ ତୃତୀୟ ଆଲେକ୍‌ଜାଣ୍ଡାର୍ ସ୍ୱାୟତ୍ତଶାସନ ଅଧିକାର ହରଣକରିବା ସଙ୍ଗେସଙ୍ଗେ ଶିକ୍ଷାବ୍ୟବସ୍ଥା, ବିଚାରବ୍ୟବସ୍ଥା ଭଳି ସାଧାରଣ ପ୍ରତିଷ୍ଠାନର ସ୍ୱାଧୀନତା ମଧ୍ୟ ଲୋପକରିଦେଇଚନ୍ତି ଗୁପ୍ତପୁଲିସ୍ ଓ ସେନ୍‌ସର୍ ଭଳି ଦମନଯନ୍ତ୍ରକୁ ସକ୍ରିୟକରି । ଏଣେ ସିଭିଲ୍ ସୋସାଇଟିରେ ବ୍ୟାପିରହିଚି ନୂଆଚିନ୍ତା ବା ର୍‍ୟାଡିକ୍ୟାଲ୍ କ୍ରିୟାକଳାପ ପ୍ରତି ଜଘନ୍ୟ ଭୀରୁତା; ଯେପରି ଟଲ୍‌ଷ୍ଟୟଙ୍କ ଲେଖାଲେଖିରେ ଅଶୁଭ ପ୍ରତି ଔଦାସୀନ୍ୟ ସାଙ୍ଗକୁ କଳାକୈବଲ୍ୟର ଉତ୍ପାତ । ମାର୍କ୍ସଚିନ୍ତାର ପ୍ରଥାବିରାଗ, ଯୁବମାନସକୁ ମୁଗ୍ଧକରିବା ତେଣୁ ସ୍ୱାଭାବିକ । ପୁଣି, ୧୮୯୧-୯୨ର ଭୟାନକ ଦୁର୍ଭିକ୍ଷ କୃଷକକୁଳକୁ ଯୋଗାଇଦେଇଚି ବିଦ୍ରୋହର ଇନ୍ଧନ; ମାତ୍ର ବିଦେଶରୁ ମାର୍କ୍ସବାଦ ଶିଖିଆସିଥିବା ବିପ୍ଳବୀ ହୋଇଯାଇଚନ୍ତି ନିରାଶ । ଜମିଦାର କି ରାଜକର୍ମଚାରୀଙ୍କୁ ଆକ୍ରମଣକରିବା ପରିବର୍ତ୍ତେ ଚାଷୀ ମାରଧର କରିଚନ୍ତି ଡାକ୍ତରଙ୍କୁ, ଦୁର୍ଭିକ୍ଷପୀଡ଼ିତଙ୍କ ଚିକିତ୍ସା ସକାଶେ ଯେହେତୁ ପଶିଥିଲେ ଗାଁଭିତରକୁ । ଚାଷୀଙ୍କ ଉପରୁ ଆସ୍ଥାହରାଇ ନୂଆହୋଇ ଗଢ଼ିଉଠୁଥିବା ସହରାଞ୍ଚଳର ବସ୍ତିବାସିନ୍ଦାଙ୍କୁ ଧରିଚନ୍ତି ଏଥର ବିପ୍ଳବୀ । ଏତେ ସଂଖ୍ୟାରେ ଯେ, କିଏ ବସ୍ତିବାସୀ କିଏ ବିପ୍ଳବୀ, ଚିହ୍ନଟକରିବାକୁ ପୁଲିସ୍ ହୋଇଚି ନାକେଦମ । ଠୋକରଖାଇ ସୁଦ୍ଧା ବିପ୍ଳବୀ ହଟିଯାଇନାହାଁନ୍ତି, କାହିଁକିନା, ଶିକ୍ଷାଦୀକ୍ଷା ଓ ନିୟମିତ ଅନୁଶୀଳନ ଏଇ ସ୍ଥିରବିଶ୍ୱାସରେ ସେମାନଙ୍କୁ ସ୍ଥିତକରିଚି ଯେ ବିପ୍ଳବ ଅନିବାର୍ଯ୍ୟ । ସୋସାଲିଷ୍ଟ୍ ବିରୋଧକରିଚନ୍ତି, ବିପ୍ଳବୀ ତଥାପି ସମର୍ଥନକରିଚନ୍ତି ପୂର୍ଣ୍ଣପ୍ରାଣରେ ଦ୍ରୁତ ନଗରାୟନ ସାଙ୍ଗକୁ ଶିଳ୍ପାୟନ । କୁହାଯାଇପାରେ କ୍ୟାପିଟାଲିଜ୍ମର ଅନୁପ୍ରବେଶ, କାହିଁକିନା, ରସିଆର ବୁଦ୍ଧିଜୀବୀ ଚିହ୍ନିସାରିଚନ୍ତି ସେତେବେଳକୁ ଇଉରୋପ୍‌କୁ । ଲେନିନ୍-ବିରୋଧୀ ଭୋରନ୍‌ସଫ୍ ଆପତ୍ତିକରିଚନ୍ତି, ମଧ୍ୟଯୁଗର ଇଉରୋପ୍ ଆମ ଅଭୀଷ୍ଟ ନୁହେଁ; ଦରକାର ଅତ୍ୟାଧୁନିକ ଇଉରୋପ୍ ! ତା ଜବାବରେ

ବୁଲ୍‌ଗାକ୍‌ଫ୍ କହିଚନ୍ତି, Russia loses its former characteristics of an exclusively peasant and crude country... every new factory, every new industrial enterprise carries us forward, increasing the number of people capable of intellectual Europeanisation । ଅର୍ଥାତ୍, ଖୁଆପିଆ ଲୁଗାପଟା ଆସବାବପତ୍ରରେ ନୁହେଁ, ଇଉରୋପକୁ ଦରକାର ଆମ ମନନର ଆଧୁନିକୀକରଣ ସକାଶେ, ଐତିହ୍ୟନିଷ୍ଠ ଭାବୁକଙ୍କୁ ଏଇ ଇଉରୋପପ୍ରୀତି ଭଲଲାଗିନାହିଁ ଜମାରୁ; କହିଚନ୍ତି, ଏ ବାଟରେ ଆଗେଇଲେ ଦୁର୍ଗତ କୃଷକକୁଳ ଯେତିକି ବିଧ୍ୱସ୍ତହେବ, ସ୍ୱକୀୟ ସଂସ୍କୃତି ମଧ୍ୟ ତଦପେକ୍ଷା ଜଣାନୁହେଁ । ବିପ୍ଲବୀ ସାନ୍ତ୍ୱନାଦେଇଚନ୍ତି; ହିତବାଦୀ ଅର୍ଥନୀତିର ଶିଳ୍ପାଭିମୁଖୀ ଅଭିଯାତ୍ରା ପ୍ରଯୁକ୍ତିକୁ ଯୋଉ ସ୍ତରକୁ ଉନ୍ନୀତକରିବ, ସାମାଜିକ ନ୍ୟାୟ ହେବ ତାର ସମାନ୍ତରାଳ । ସୋସାଲିଜ୍ମର ଲକ୍ଷ୍ୟ ତ ଭିନ୍ନ ହୋଇପାରେନା ! ଧନତାନ୍ତ୍ରିକ ବ୍ୟବସ୍ଥାକୁ ଦୃଢ଼କରିବାକୁ ଇଉରୋପ୍ ଉଦ୍‌ଭାବନକରିଚି ଯେମିତି ରାଜନୀତିକ ସ୍ୱାଧୀନତା କି ନାଗରିକ ଅଧିକାର, ନଗରାୟନ ସେମିତି ପ୍ରସାରିତକରିବ ସାମନ୍ତତନ୍ତ୍ର-ଅଧ୍ୟୁଷିତ ଋଷିଆରେ ଅନୁରୂପ ମୂଲ୍ୟବୋଧ । ଅର୍ଥାତ୍, ନାଗରିକ ସଭ୍ୟତାରୁ ଉଦ୍‌ଗତ ଉନ୍ନୟନ ସହିତ ସାଂସ୍କୃତିକ ଅଭିସରଣର ସମ୍ପର୍କ । ତଥାପି ପ୍ଲେଖାନଫ୍ ୧୮୮୪ରେ ଲେଖିଚନ୍ତି, ବିପ୍ଳବ ଆସିପାରେନା । ଅକସ୍ମାତ୍ ହେଲେ ହୋଇପାରେ ନାଟକର ପଞ୍ଚମାଙ୍କ । ଏକ୍ଷଣି ଯା ସମ୍ଭବପର, ତା କେବଳ ରିଫର୍ମ (=ସଂସ୍କାର) । କୃଷକ ଅଧିକା କିଛି ସୁବିଧା ପାଇବ ହୁଏତ; ସମାଜସଂଗଠନ ଉପରେ ପ୍ରଭୁତ୍ୱ ବିସ୍ତାର କରିପାରିବ ନାହିଁ । ଅନ୍ୟ ଶବ୍ଦରେ, କୌଣସି କୃଷିପ୍ରଧାନ ଦେଶରେ, ଏଠିସେଠି କଳକାରଖାନା ବସାଇଦେଲେ ନାଗରିକ ସଂସ୍କୃତି ତିଆରିହୁଏନା କି ଗାଁଛାଡ଼ି ସହରରେ ଆସି ରହୁଚି ବୋଲି କୃଷକ ସବୁଠୁଁ ଅଗ୍ରସର ଶ୍ରେଣୀର ମର୍ଯ୍ୟାଦା ପାଏନା । ୧୮୮୪ରେ ପ୍ରକାଶିତ ଏଇ ଅନ୍ତର୍ଦୃଷ୍ଟି ବାସ୍ତବିକ୍ ବିସ୍ମୟକର । ମାର୍କ୍ସ ତ ସେଥିପାଇଁ ସଂଗ୍ରାମକୁ ହିଁ କରିଚନ୍ତି ନିର୍ଦ୍ଧାରକ । ବିନା ସଂଗ୍ରାମରେ ଯେତେ ଯାହା ହୋଇପାରିବ, ସବୁଗୁଡ଼ାକ ରିଫର୍ମ୍ । ବିପ୍ଲବର ଚେତନା ଡିଆଁରୋଗ ନୁହେଁ ଯେ ଜଣେ ଆଉଜଣକୁ ଦେଇପାରିବ, ଜୀବନଯାପନର ସଂଗ୍ରାମ ଭିତରଦେଇ ଅର୍ଜନକରିବାକୁ ହେବ ଚେତନା । ସଂଗ୍ରାମକୁ ଛାଡ଼ି ଦେଶ-ଜାତି-ସଂସ୍କୃତି ଦ୍ୱାହିଦେଇ ଶୋଷିତ ଜନ ପାଦେହେଲେ ଆଗକୁ ଯାଇପାରେନା । ବିପ୍ଲବୀ କିନ୍ତୁ ଋହିଁଚନ୍ତି ଶିଳ୍ପାୟନ ମାଧ୍ୟମରେ ସଂଗ୍ରାମର ସର୍ତ୍ତଗୁଡ଼ିକୁ ସାକାର କରିବାକୁ; ତା' ଫଳରେ କୃଷକ ଯଦି ଦୁର୍ଦ୍ଦଶା ଭୋଗକରେ କିଛିକାଳ, ଡାୟଲେକ୍‌ଟିକ୍ ସେ ଆତ୍ମତ୍ୟାଗକୁ ସମର୍ଥନକରେ । ତାହେଲେ, ବର୍ତ୍ତମାନ ଓ ଭବିଷ୍ୟତ୍ ମଝିରେ ଧନତାନ୍ତ୍ରିକ ଉନ୍ନୟନର ବାଟ ଧରିବାକୁ

ପଡ଼ିବ; ମଧ୍ୟବର୍ତ୍ତୀ ପର୍ଯ୍ୟାୟକୁ କଳ୍ପନାରେ ଡେଇଁପଡ଼ି ସୋସାଲିଜ୍ମରେ ପହଞ୍ଚିବା ଅବୈଜ୍ଞାନିକ ପ୍ରତ୍ୟାଶା ! ମାତ୍ର, ପ୍ରତିପକ୍ଷ ବି ଡାୟଲେକ୍‌ଟିକ୍ସ ଶିଖିଚି; କହିଚି, ସମାଜର ବୁର୍ଜୋୟାକରଣ ପ୍ରକ୍ରିୟାରୁ ଶ୍ରମଜୀବୀ ଯା ଲାଭକରିବ, ସେତିକିରେ ସନ୍ତୁଷ୍ଟହୋଇ ସଂଗ୍ରାମ ଆଡ଼କୁ ଆଉ ମନକରିବନାହିଁ । ସେତେବେଳେ ଶିଳ୍ପଶ୍ରମିକ କୃଷକ ତୁଳନାରେ ଅଧିକ ସଚେତନ ହେବବୋଲି ଭାବିବା କୋଉ ଯୁକ୍ତିରେ ?

ଏଇ ସଂକଟମୁହୂର୍ତ୍ତରେ ରଙ୍ଗମଞ୍ଚରେ ଆବିର୍ଭୂତହୁଅନ୍ତି ଭ୍ଲାଦିମିର୍ ଲେନିନ୍(୧୮୭୦-୧୯୨୪) । କହନ୍ତି, ସ୍ଥାନ-କାଳ ନିର୍ବିଶେଷରେ ମାର୍କ୍ସଚିନ୍ତାର ଅକ୍ଷରେ ଅକ୍ଷରେ ପ୍ରୟୋଗ, ନିର୍ବିକଳ୍ପ ଯାନ୍ତ୍ରିକତା । ଅନୁନ୍ନତ ଅର୍ଥନୀତି ଉପରେ ମାର୍କ୍ସବାଦର ପ୍ରୟୋଗ ଆପେକ୍ଷିକ ହେବାକୁ ବାଧ୍ୟ, ଯେପରି ପ୍ରୟୋଗକାରୀଙ୍କ ମାନସିକତା ବା ବିପ୍ଳବ-ଚେତନା । ଅନୁନ୍ନତ ଅର୍ଥନୀତିରେ ମାର୍କ୍ସବାଦର ଛାଞ୍ଚ ଓ କଛରେ ଯିଏ ନିଜ ସମାଜକୁ ପୁନର୍ଗଠିତକରିବାକୁ ସଂକଳ୍ପ ନେବ, ସମଯୋଗ୍ୟତାସଂପନ୍ନ ଲୋକ ସ୍ଥିତସମାଜରେ ଯୋଉ ସୁଖସୁବିଧା ଭୋଗକରୁଚନ୍ତି, ସେଇ ପ୍ରିଭିଲେଜ୍ ଛାଡ଼ିଦେବାକୁ ପଡ଼ିବ ସବାଆଗେ । ପ୍ରସ୍ତୁତରହିବାକୁ ପଡ଼ିବ କାରାବାସ, ଅଜ୍ଞାତବାସ, ନିର୍ବାସନ କି ଆହୁରି କଠୋର ନିର୍ଯାତନା ବରଣକରିନେବାକୁ । ଏବଂ ଧୈର୍ଯ୍ୟଧରି ଅପେକ୍ଷାକରିବାକୁ ପଡ଼ିବ, ଦେଶ ଧନତନ୍ତ୍ର ହାସଲକରିବା ପର୍ଯ୍ୟନ୍ତ । କ୍ୟାପିଟାଲିସ୍ଟ ସିଷ୍ଟେମ୍ ହିସାବରେ ଯେତେ ଘୃଣ୍ୟ ହେଉପଛେ, ଅନୁନ୍ନତ ଅର୍ଥନୀତି ପକ୍ଷରେ ଉଦ୍ଦେଶ୍ୟସିଦ୍ଧିର ସହାୟକ । ଅନ୍ୟ ଶବ୍ଦରେ, ବୁର୍ଜୋୟାର ଅର୍ଥନୀତିକ ତଥା ରାଜନୀତିକ ପ୍ରତିଷ୍ଠାନଗୁଡ଼ାକୁ ଢୋଲଭିତରେ ମୂଷା ହୋଇ କାଟିପକାଇବାକୁ ପଡ଼ିବ; ଏ କାମ ଯେତିକି ଆଗେଇଯିବ ଶ୍ରେଣୀସଂଗ୍ରାମ ସଂଚୟକରିବ ସମାନୁପାତିକ ଗତିବେଗ । ଅର୍ଥାତ୍, ଅନୁମୋଦନ ଓ ଅନ୍ତର୍ଘାତର ଜଟିଳ ସଂଶ୍ଳେଷ; ଶିଳ୍ପାୟନ/ନଗରାୟନ ପ୍ରକ୍ରିୟାରେ ପୁଞ୍ଜିପ୍ରସାରକୁ ଉଦ୍‌ବୋଧନ; ଅଥଚ ସାମାଜିକୀକରଣରେ ବୁର୍ଜୋୟା ଭାବାଦର୍ଶକୁ ଆପ୍ରାଣ ପ୍ରତିରୋଧ । ସଂକ୍ଷେପରେ, ରସିଆ ଯେହେତୁ ଇଉରୋପ ଭଳି ବୁର୍ଜୋୟାଦେଶ ନୁହେଁ; ରସିଆର ସମାଜ ସାମନ୍ତତାନ୍ତ୍ରିକ, ତଥାପି ଶୋଷଣାଭିମୁଖୀ ଧନତାନ୍ତ୍ରିକ ଉତ୍ପାଦନକୁ ଉପେକ୍ଷା କରିପାରେନା । ସାମ୍ବିଧାନିକ ଅନୁଷ୍ଠାନଗୁଡ଼ାକ ଅବଶ୍ୟ ବୁର୍ଜୋୟାର କାରସାଦି, ମାତ୍ର ଜନସ୍ୱାର୍ଥର ପ୍ରତିନିଧିତ୍ୱ ସକାଶେ ସେଗୁଡ଼ିକର ପ୍ରବର୍ତ୍ତନ ମଧ୍ୟ ରସିଆରେ ବାଞ୍ଛନୀୟ । କାହାରିକି ସନ୍ତୁଷ୍ଟକରିନାହିଁ ଲେନିନ୍‌ଙ୍କ ପ୍ରସ୍ତାବ । ବିପ୍ଳବୀ କଳ୍ପନାକରିଚନ୍ତି ତ୍ରିଶଙ୍କୁ ଅବସ୍ଥା; ବିପ୍ଳବ ତା'ହେଲେ ଅଗ୍ରେ ଧାବତି ଧାବତି ! ପାଶ୍ଚାତ୍ୟ ସମାଜବାଦୀ (ଅଣକମିଉନିସ୍ଟ) କହିଲେ, ସୋସାଲିଜ୍ମ ଜାଗାରେ ତେବେ ମୁଣ୍ଡଟେକିବ ଭୀରୁ

ସଂସ୍କାରବାଦ କି ସୁବିଧାବାଦ; କେହି ରହିଁବେନାହିଁ ସିଷ୍ଟେମ୍‌ଟା ଉପୁଡ଼ିପଡୁ; ଆଖର ଗୋଟାଇବେ ସମସ୍ତେ । ଏଇ କଥାଗୁଡ଼ାକୁ ଉପଲକ୍ଷ୍ୟକରି ଢେର୍ ରସିକତା ଶୁଣାଯାଏ ଏକ୍ଷଣି ମସ୍‌କୋରେ; ଯେପରି, କ୍ୟାପିଟାଲିସ୍ଟ ଉଇଦାଉଟ୍ କ୍ୟାପିଟାଲ୍, ଅଥବା, କ୍ରୁଷ୍‌ଚଫ୍ ସଂଚିତ ଧନରତ୍ନ ଦେଖାଇଲେ ଯେତେବେଳେ ମା'ଙ୍କୁ, ଆଜୀବନ ଅଭାବରେ ଚଳିଥିବା ବୃଦ୍ଧା ଶଙ୍କିତହୋଇ କୁଆଡ଼େ ପଚାରିଥିଲେ, 'ପୁଅ, ବଲ୍‌ସେଭିକ୍ ଯଦି ଆସିପଡ଼ନ୍ତି!' ପୁଣି, ରୁଟିକିଣିବାକୁ କିଉରେ ଛିଡ଼ାହୋଇ ଧୈର୍ଯ୍ୟଚ୍ୟୁତି ଘଟିଲା ଯେତେବେଳେ ଟୋକାର, ଦୌଡ଼ିଗଲା ବ୍ରେଜ୍‌ନେଫଙ୍କୁ ଗୁଳିକରିବାକୁ; ସେଠି ବି ଦେଖିଲା ଯେତେବେଳେ କିଉଟା ରୁଟି କିଉଠୁଁ ବେଶୀ ଲମ୍ବା, ନିରାଶହୋଇ ଫେରିଆସିଲା ଫେର୍ ରୁଟି-କିଉକୁ !

ବୁର୍ଜୋୟା-କ୍ୟାପିଟାଲିସ୍ଟ ପର୍ଯ୍ୟାୟକୁ ବାଦ୍‌ଦେଇ ବିପ୍ଳବପରିକଳ୍ପନା, ତତ୍ତ୍ୱ ଓ ପ୍ରୟୋଗ, ଉଭୟ କ୍ଷେତ୍ରରେ ତେଣୁ ଲେନିନ୍‌ଙ୍କ ଏକକ କୃତିତ୍ୱ । କାହିଁକିନା, ପ୍ଲେଖାନଫଙ୍କ (ଜର୍ଜ ପ୍ଲେଖାନଫ୍ ୧୮୫୬-୧୯୧୮)ଙ୍କ ଯୁକ୍ତି ଥିଲା: ସମାଜତାନ୍ତ୍ରିକ ବିପ୍ଳବ ସଂଗଠିତକରିବାକୁ ହେଲେ ପାଶ୍ଚାତ୍ୟ ଧନତାନ୍ତ୍ରିକ ଉତ୍ପାଦନବ୍ୟବସ୍ଥା ସାଙ୍ଗକୁ ପାର୍ଲାମେଣ୍ଟାରୀ ଶାସନବ୍ୟବସ୍ଥା ପ୍ରଚଳନକରିବା ଛଡ଼ା ରସିଆର ଗତ୍ୟନ୍ତର ଥାଇପାରେନା; କିନ୍ତୁ ୧୮୯୫ରେ ତାଙ୍କ ସାଙ୍ଗରେ ଆଲୋଚନା କରିବାକୁ ବସି, ସାମ୍ବିଧାନିକ ଉଦାରନୀତି ପ୍ରତି ତୀବ୍ରଆପତ୍ତି ଜଣାଇ ଲେନିନ୍ କହନ୍ତି, ସାମନ୍ତତନ୍ତ୍ରରୁ ସଦ୍ୟ ମୁକୁଳିଆସୁଚି ଯୋଉ ଦେଶ, ପାଶ୍ଚାତ୍ୟ ଗଣତାନ୍ତ୍ରିକ ବିଧିବ୍ୟବସ୍ଥା ଲୋକଙ୍କ ବିଦ୍ରୋହପ୍ରବଣତାକୁ ଶୀତଳକରିଦେବା ସେଠି ଅନିବାର୍ଯ୍ୟ । ଆଠବର୍ଷ ଆଗରୁ ସାନଭାଇ ଫାଶିପାଇଚି, ଜାର୍‌ଙ୍କୁ ହତ୍ୟାକରିବା ଷଡ଼ଯନ୍ତ୍ରରେ ଲିପ୍ତଥିଲା ବୋଲି । ଉଦାରପନ୍ଥୀ ପରିବାରକୁ ଗଣତନ୍ତ୍ରବାଦୀ କେମିତି ହୀନସ୍ତାକରିଚନ୍ତି ସେତେବେଳେ ମନେପକାଇଦେଲେ ଲେନିନ୍ କହନ୍ତି: From the age of seventeen I began to despise the liberals... not a single liberal 'cannaille' in Simbirsk came forward with the slightest word of sympathy for my mother after my brother's execution. In order not to run into her they would cross to the other side of the street । ଏ ଅଭିଜ୍ଞତା ସ୍ୱତଃ ତାଙ୍କୁ ଟାଣିନେଇଚି ମାର୍କ୍ସବାଦର ତତ୍ତ୍ୱଜଗତ୍‌କୁ । ଅପରାପର ମାର୍କ୍ସବାଦୀଙ୍କ ଠାରୁ ନିଜ ପଜିସନ୍‌ର ଦୂରତ୍ୱ ଦେଖାଇ ୧୮୯୪ରେ ଯୋଉ ଇସ୍ତେହାର କାଢ଼ନ୍ତି, ଶୀର୍ଷକ ଥିଲା, *The Reflection of Marxism in Bourgeois Literature* । ମାତ୍ର ଠିକ୍ ବର୍ଷକ ଉତାରୁ ଗିରଫ କରିନେଇ ତାଙ୍କୁ ଦିଆଯାଇଚି ନିର୍ବାସନ ଦଣ୍ଡ । ପାଞ୍ଚବର୍ଷ ଉତାରୁ

୧୯୦୦ ସାଲରେ ସାଇବେରିଆରୁ ଫେରିଆସି ଲେଖିଚନ୍ତି *What Is To Be Done;* ବହିହୋଇ ବାହାରିଚି ୧୯୦୨ରେ । ସେଇଥିରେ ରହିଚି ବଲ୍‌ସେଭିକ୍ କର୍ମଧାରାର ବିବରଣ, ଆଉ କ୍ଷମତାଦଖଲ ସକାଶେ ରଣକୌଶଳର ବିଶ୍ଳେଷଣ । ବ୍ୟାଖ୍ୟାକରାଯାଇଚି ଅନୁନ୍ନତ ଅପାଶ୍ଚାତ୍ୟ ସମାଜର ଉତ୍ତରଣକୁ ତ୍ୱରାନ୍ୱିତ କରିପାରେ କି ଧରଣର ମାର୍କ୍ସବାଦ ।

ବିପ୍ଳବୀ ସେତେବେଳକୁ ବୁର୍ଜୋୟା ଉପରୁ ବିଶ୍ୱାସ ହରାଇସାରିଚନ୍ତି; ରାଜତନ୍ତ୍ର ଆଉ ସାମନ୍ତତନ୍ତ୍ର ସାଙ୍ଗରେ ଲଢ଼ିବାକୁ ଶ୍ରମିକଶ୍ରେଣୀ ହିଁ ଉପଯୁକ୍ତ- ଏ ଧାରଣା କ୍ରମଶଃ ଦାନାବାନ୍ଧୁଚି, ମାତ୍ର ପ୍ଲେଖାନଫ୍ ମତ ପରିବର୍ତ୍ତନକରି କହିଚନ୍ତି, ରସିଆରେ ଏ ଐତିହାସିକ ପର୍ଯ୍ୟାୟର ବୈଶିଷ୍ଟ୍ୟ ହେଲା, ସମାଜତାନ୍ତ୍ରିକ ଆନ୍ଦୋଳନ ଆରମ୍ଭହୋଇଚି ଯେତେବେଳେ, କ୍ୟାପିଟାଲିଜ୍ମ ରହିଚି ଭ୍ରୂଣ ଅବସ୍ଥାରେ; ତେଣୁ ଖାଲି ପ୍ରଲେତାରିଏତ୍ ନୁହେଁ, ଉଦାରପନ୍ଥୀଙ୍କୁ ବି ସାଙ୍ଗରେ ନେବାକୁ ପଡ଼ିବ । ଲେନିନ୍ ସେଇଠି ଜୋର୍‌ଦେଇଚନ୍ତି 'ମତଲବ୍' ଉପରେ: କି ମତଲବ୍‌ରେ ଉପଯୋଗ କରାଯିବ ଉଦାରପନ୍ଥୀଙ୍କୁ ? ବୁର୍ଜୋୟା ହାତକୁ ବିପ୍ଳବର ନେତୃତ୍ୱ ସମର୍ପିଦେବାକୁ ? ସୁଯୋଗମିଳିବା ମାତ୍ରକେ ସମାଜବାଦୀ ହିଁ ଦଖଲକରିବେ କ୍ଷମତା । ସେଥିପାଇଁ, ଉଦାରପନ୍ଥୀଙ୍କୁ ଯେମିତି 'utilise' କରାଯିବ, ପ୍ରଲେତାରିଏତ୍‌କୁ ଠିକ୍ ସେମିତି । ମାର୍କ୍ସ ଅବଶ୍ୟ ପ୍ରତ୍ୟାଶାକରିଚନ୍ତି ପ୍ରଲେତାରିଏତ୍ ପାଖରୁ ଇତିହାସଚେତନା; ଅନ୍ୟଥା ଆନ୍ଦୋଳନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ରହିଯାଏ ଅଜ୍ଞାତ ଓ ଅଦୃଶ୍ୟ । ସମ୍ପତ୍ତି ଓ ଶ୍ରେଣୀ ଦ୍ୱାରା ଯୋଉ ସମାଜ ବିଭାଜିତ, ସେ ସମାଜରେ ଶ୍ରମଜୀବୀର ଇତିହାସବୋଧକୁ ଗଠିତ କରିବ ଆପଣା ସ୍ଥିତିର ଆପେକ୍ଷିକତା; ଶୋଷଣ-ପୀଡ଼ନର ବାସ୍ତବ ଅଭିଜ୍ଞତା ଠେଲି ପଠାଇଦେବ ସମ୍ପତ୍ତିଗତ ବୈଷମ୍ୟକୁ ବଳପୂର୍ବକ ଭାଙ୍ଗିପକାଇବାକୁ । ମାତ୍ର ଲେନିନ୍ ଦେଖିଲେ, ସେଇ ଐତିହାସିକ ମୁହୂର୍ତ୍ତ ଆସିବାକୁ ଡେରିହେବ ରସିଆରେ, କାହିଁକିନା, ଗଣବୋଧ କି ସମାଜ-ସଚେତନତା ଶ୍ରମଜୀବୀଶ୍ରେଣୀ ପକ୍ଷରେ ଏକେବାରେ ନୂଆକଥା; ଏ ବୋଧରେ ତାକୁ ଅନୁପ୍ରାଣିତ କରିବାକୁ ପଡ଼ିବ, ବାହାରୁ କି ଉପରୁ । ବିଭିନ୍ନ ଦେଶର ଇତିହାସରୁ ବି ଦିଶୁଚି ଆପଣା ଅଧ୍ୟବସାୟ ବଳରେ ଶ୍ରମଜୀବୀ ଏ ସଚେତନତା ଅର୍ଜନକରିନାହିଁ କୋଉଠି; ସିଜୁବୁଦା ମୂଳକୁ ଏଣ୍ଡୁଅ ଧାଇଁଯିବା ଭଳି ଟ୍ରେଡ୍‌ଇଉନିୟନ୍ ପର୍ଯ୍ୟନ୍ତ ଯାଇପାରେ ମାତ୍ର । ସୋସାଲିଜ୍ମ ପ୍ରତ୍ୟୟ ଭିତରେ ଦର୍ଶନବିଦ୍ୟା, ଇତିହାସ, ଇକନମିକ୍ସ ଇତ୍ୟାଦି ଜ୍ଞାନକ୍ଷମତାର ଯୋଉ ମେଳବନ୍ଧନ, ତାର ପ୍ରବର୍ତ୍ତକ ସମ୍ପଦଶାଳୀ ଶ୍ରେଣୀର ପ୍ରତିନିଧି, ଇଣ୍ଟେଲେକ୍‌ଚୁଆଲ୍ । ସ୍ୱୟଂ ମାର୍କ୍ସ ଓ ଏଙ୍ଗେଲ୍ସ ମଧ୍ୟ ବ୍ୟତିକ୍ରମ ନୁହେଁ । କିନ୍ତୁ ରସିଆରେ ସମାଜତନ୍ତ୍ରର ଧାରଣା ସ୍ୱାଧୀନ ଭାବରେ ଗଢ଼ିଉଠିଚି; ଭାବିଚିନ୍ତିପାରୁଥିବା ଲୋକଙ୍କ ବିପ୍ଳବୀକର୍ମଧାରାରୁ ତାର ଉତ୍ପତ୍ତି ।

କଥାଗୁଡ଼ାକ ଲେଖିଚନ୍ତି ନିଜେ ଲେନିନ୍ । କି ରକମ ସେଇ କର୍ମଧାରା ? ପ୍ରଲେତାରିଏତ୍ ଉଦାରପନ୍ଥୀଙ୍କୁ ବେଦଖଲକରିବା ଉତାରୁ ନିଜେ ମଧ୍ୟ ବେଦଖଲ ହୋଇଯାଏ ତଥାକଥିତ ମେଧାବୀ ବିପ୍ଳବୀଙ୍କ ଦ୍ୱାରା; କାହିଁକିନା, ବିପ୍ଳବ ହେଉ କି ସମାଜତନ୍ତ୍ର, ରସିଆରେ ଅନ୍ତତଃ, ପ୍ରଲେତାରିଏତ୍‌ର ଶ୍ରେଣୀସଂଗ୍ରାମରୁ ଉଠିଆସିନାହିଁ; ଉଠିଆସିଚି ବିପ୍ଳବୀଙ୍କ ଚିନ୍ତାରାଜ୍ୟରୁ । ହେଲେସୁଦ୍ଧା, ନେତୃତ୍ୱ ପ୍ରଶ୍ନଉଠିଚି ଯେତେବେଳେ, ମେଧାଜୀବୀଙ୍କୁ ଆଧିପତ୍ୟ ଦେଇନାହାନ୍ତି ଲେନିନ୍ । ଦେଇନାହାଁନ୍ତି ବୋଲି, କାର୍ଯ୍ୟକ୍ଷେତ୍ରକୁ ଆସିଚି 'ପାର୍ଟି' ରୂପକ ସଂଗଠନ, ଯୋଉ ସଂଗଠନରେ ଉନ୍ମୁକ୍ତ ବାଦାନୁବାଦ ଉତ୍ସାହପାଏ, ସିଦ୍ଧାନ୍ତଗ୍ରହଣ ଗଣତାନ୍ତ୍ରିକ, ଆଉ ସଦସ୍ୟ ସର୍ବସାଧାରଣ । ଅର୍ଥାତ୍, ସଦସ୍ୟହେବା ଅଧିକାର ସର୍ବଜନୀନ । ତେବେ, ଜାର୍ ଅମଳର ପରିବ୍ୟାପ୍ତ ଦମନକୁ ମୁକାବିଲାକରିବାକୁ ପାର୍ଟିର ସଂଗଠନ ହେବ 'ଗୋପନ'; ମାନେ, ଇସ୍ପାତ୍‌କଠିନ ଶୃଙ୍ଖଳାରେ ଆବଦ୍ଧ; ଆଉ, ଲକ୍ଷ୍ୟ, ଆଦର୍ଶ ଓ ରଣକୌଶଳ ପ୍ରତି ସଦସ୍ୟର ଆନୁଗତ୍ୟ ହେବ ମଧ୍ୟ ବଜ୍ରକଠୋର ।

ଏଭଳି ସଂଗଠନ କଥା ଭାବିନାହାନ୍ତି ମାର୍କ୍ସ; ତାଙ୍କ ଚିନ୍ତାରେ ବିପ୍ଳବୀ ହେଲେ ଧନତନ୍ତ୍ରର କବରଖୋଳାଳି, grave-diggers । ଉତ୍ପାଦନର ଶକ୍ତିସମୂହ ସହିତ ଉତ୍ପାଦନ ସମ୍ପର୍କର ବୈପରୀତ୍ୟରୁ ଜନ୍ମନିଅନ୍ତି ଏଇ ଗ୍ରେଭ୍‌ଡିଗର୍ । ଅନ୍ୟ ଶବ୍ଦରେ, ମାର୍କ୍ସ ଭାବିଚନ୍ତି, ଶିଳ୍ପଶ୍ରମିକ ଉତ୍ପାଦନ ସମ୍ପର୍କକୁ ଯେତେବେଳେ ଶୋଷଣ-ଦୋହନରୁ ମୁକ୍ତକରିବାକୁ ସଂଗ୍ରାମଭୂମିରେ ଅବତୀର୍ଣ୍ଣ ହେବେ, କାମଟାକୁ କୁହାଯିବ 'ବିପ୍ଳବ', କାହିଁକିନା, ଧନତନ୍ତ୍ର ରୂପକ ଅଚଳାୟତନକୁ ଉପାଡ଼ିପକାଇ, ତା ଜାଗାରେ ଏ ସଂଗ୍ରାମ ସ୍ଥାପିତକରେ ନୂଆ ଉତ୍ପାଦନରୀତି, ଶକ୍ତି ଓ ସମ୍ପର୍କର ଅବିଭାଜ୍ୟତା । ଲେନିନ୍‌ଙ୍କୁ ମିଳିନାହାନ୍ତି ସେଭଳି କବରଖୋଳାଳୀ, କାହିଁକିନା, ରସିଆରେ ଘଟିନାହିଁ ଶିଳ୍ପବିପ୍ଳବ । ମିଳିଚନ୍ତି ଚଷା ମୂଲିଆ କାରିଗର । ତାଙ୍କ ଭିତରେ ଶୃଙ୍ଖଳା ନାହିଁ କି ସଂଗଠନ ନାହିଁ । ଅଥଚ ରାଜନୀତିକ ଶକ୍ତିରେ ସେମାନଙ୍କୁ ପରିଣତକରି ନପାରିଲେ ବ୍ୟର୍ଥ ହୋଇଯିବ ସାମ୍ୟବାଦ ପାଇଁ ସଂଗ୍ରାମ । ଦରକାର ତେଣୁ ବିପ୍ଳବୀ ବୁଦ୍ଧିଜୀବୀର ନେତୃତ୍ୱ; ଏକକ ବୁଦ୍ଧିଜୀବୀ ନୁହେଁ, ଇସ୍ପାତ ଶୃଙ୍ଖଳାରେ ଆବଦ୍ଧ ପାର୍ଟିର; ଯୋଉ ପାର୍ଟି ଜାରିକରିପାରେ ଅନୁଶାସନ ନିଜ ଶୀର୍ଷଅବସ୍ଥାନରୁ । ସେ ଅନୁଶାସନ ପ୍ରତି ଅବଜ୍ଞା ମାନେ ସମ୍ମୁଖ-ସମର । ଲେନିନ୍ ଅବଶ୍ୟ ସ୍ପଷ୍ଟକରିଦେଇଚନ୍ତି ଯେ ଇଟା ପାଖକୁ ଇଟା ବସାଇ ଘରତୋଳିବା ଭଳି ଏଇ ସଂଗ୍ରାମ; ମାତ୍ର ନିଜ ବୁଦ୍ଧିବିବେକ ଖଟାଇ ଇଟାବସାଇବାକୁ ଗଲେ ବିପଦ ଅଛି, ତୁଙ୍ଗସ୍ଥାନୀୟ ପାର୍ଟିସଂଗଠନ ବତାଇଦେବେ ଇଟା ବସାଇବା ବାଗବର୍ଗ । ସମାଜରେ ଏ ବ୍ୟବସ୍ଥା ବଳବତ୍

ହେଲେ, ଜାରଙ୍କ ପ୍ରଜାରୁ ଲୋକ ହୋଇପାରିବେ ପାର୍ଟିର ପ୍ରଜା; ମାତ୍ର ପ୍ରଜାପଣ ଆଉ ଇହଜୀବନରେ ଘୁଞ୍ଚିବନାହିଁ, ଜୀବନତମାମ ଖାଲି ଇଟା ବସାଉଥିବ । ଇଟାର ଧାଡ଼ି ସଜାଇବାରେ ବି ତାର 'ଅଟୋନମି' କି 'ଡେମୋକ୍ରାସି' ନାହିଁ, କାହିଁକିନା, ସେଇ ବିନ୍ୟାସ ଧାର୍ଯ୍ୟକରିବ ଏକମାତ୍ର 'ସେଣ୍ଟ୍ରାଲିଜ୍ମ' । ଇଆରି ନାଁ 'ବଲ୍‌ସେଭିକ୍' ସଂଗଠନ । ମାର୍କ୍ସ ଅବଶ୍ୟ ଛାଡ଼ପତ୍ର ଦେଇସାରିଚନ୍ତି ବହୁ ଆଗରୁ, କାହିଁକିନା... Thus events strikingly analogous, but occurring in different historical milieu, led to quite disparate results. By studying each of these evolutions on its own, and then comparing them, one will easily discover the key to the phenomenon, but it will never be arrived at by employing the all-purpose formula of a general historico-philosophical theory whose supreme virtue consists in being suprahistorical । (ରସିଆନ୍ ବିପ୍ଳବୀ ଭେରା ଜାସୁଲିକ୍‌ଙ୍କ ଚିଠିର ଜବାବ, ୧୮୭୭) । ଦାୟିତ୍ୱନେବାକୁ ମନାକରିଦେଇଚନ୍ତି ଯେହେତୁ, କ୍ୟାପିଟାଲିସ୍ମ ରସିଆରେ ରହିଚି ମାତୃଗର୍ଭରେ । ରସିଆର ଐତିହାସିକ ପ୍ରେକ୍ଷିତ ଥିଲା ଜାର୍‌ଶାସିତ ସାମନ୍ତତନ୍ତ୍ର; ଲେନିନ୍‌ଙ୍କ ପ୍ରଥମ ଲକ୍ଷ୍ୟ ତେଣୁ ସାମନ୍ତତାନ୍ତ୍ରିକ ବୁର୍ଜୋୟାର ବିଲୋପ; ଦ୍ୱିତୀୟ ଲକ୍ଷ୍ୟ ବୁର୍ଜୋୟାଆଧିପତ୍ୟର ବଳୟ ବାହାରେ ବଞ୍ଚିତ ମଣିଷର କେନ୍ଦ୍ରୀଭୂତ ନେତୃତ୍ୱ ଏବଂ ଉଭୟ ଲକ୍ଷ୍ୟକୁ ତୁଷ୍ଟକରିବାକୁ ଲଭ୍ୟ ସମ୍ବଳ ଏକମାତ୍ର ପେଜାଣ୍ଟ୍ରି ବା କୃଷକ । ପ୍ରଲେତାରିଏତ୍ ନୁହେଁ, କାହିଁକିନା, ସଂଖ୍ୟାରେ ପ୍ରଲେତାରିଏତ୍ ଥିଲା ନଗଣ୍ୟ ଓ ସୋସାଲିଜ୍ମ ଭଳି ରାଜନୀତିକ ଭାବାଦର୍ଶ ସହିତ ଅପରିଚିତ । ଏତଦ୍‌ଭିନ୍ନ, ଜାତୀୟତାବାଦୀ ବିପ୍ଳବୀ ଜିଦ୍‌ଧରିଚନ୍ତି, ପାଶ୍ଚାତ୍ୟ ଦୃଷ୍ଟାନ୍ତକୁ ଅନୁକରଣକରି ପୁଞ୍ଜିବାଦୀ ଉତ୍ପାଦନ ଆଉ ତାକୁ ବଞ୍ଚାଇରଖେ ଯୋଉ ରାଜନୀତିକ ବିଧିବିଧାନ, ସେଗୁଡ଼ାକୁ ରସିଆ ମାଟିରେ ଆଣି ପୋତିବା ନିର୍ବୋଧତା । ସନ୍ଦେହ ନାହିଁ, ଏ ମନୋଭଙ୍ଗୀ ପଛରେ ସମର୍ଥନ ଥିଲା ଦେଶର ଅଧିକାଂଶ ପରିବର୍ତ୍ତନକାମୀ ନରନାରୀଙ୍କର । ଏଇ ସମସ୍ୟାପଟରେ ଲେନିନ୍ ଦେଖିଚନ୍ତି, ମାର୍କ୍ସ କହିଚନ୍ତି ବିପ୍ଳବ ଘଟିବ ପଛକୁ ପଛ ଦୁଇଟି ପର୍ଯ୍ୟାୟରେ; ପ୍ରଥମ ଉତ୍ଥାନର ନେତୃତ୍ୱ ନେବ ନଗରବାସୀ ପ୍ରଲେତାରିଏତ୍, ମାତ୍ର ତାଙ୍କୁ ସମର୍ଥନ କରିବେ ଅପେକ୍ଷାକୃତ ସ୍ୱଚ୍ଛଳ ପାତିବୁର୍ଜୋୟା, ଅର୍ଥାତ୍ ଅବସ୍ଥାପନ୍ନ କୃଷକ, କାହିଁକିନା, ପାତିବୁର୍ଜୋୟାର ପ୍ରତିପକ୍ଷ ସାଆନ୍ତ-ଜମିଦାର ଆଉ ସ୍ୱୈରାଚାରୀ ରାଷ୍ଟ୍ର । ତେଣୁ ଏ ଉତ୍‌ଥାନ ବସ୍ତୁତଃ ବୁର୍ଜୋୟା-ଉତ୍‌ଥାନ । ଅନତିବିଳମ୍ବେ ବିପ୍ଳବର ପରବର୍ତ୍ତୀ ଯୋଉ ପର୍ବ ସଂଗଠିତ ହେବ, ତାର ନାୟକ-ନାୟିକା ମଧ୍ୟ ନଗରବାସୀ ପ୍ରଲେତାରିଏତ୍, ମାତ୍ର ତାଙ୍କୁ ସମର୍ଥନକରିବେ ମଫସଲର ପ୍ରଲେତାରିଏତ୍ (ନିଃସମ୍ବଳ

କୃଷକ, ଯେପରି ଭୂମିହୀନ କି ପ୍ରାନ୍ତିକ ଦିନମଜୁର୍) । ସେମାନଙ୍କ ପ୍ରତିପକ୍ଷ ବ୍ୟକ୍ତିଗତସମ୍ପତ୍ତିପୁଷ୍ଟ ଭୂମ୍ୟଧିକାରୀ । ସେଇ ହେବ ଯଥାର୍ଥ ସର୍ବହରାର ବିପ୍ଳବ । ଲେନିନ୍ ଏ ଛକ ତ୍ୟାଗକରିନାହାଁନ୍ତି; ମାତ୍ର ପାଶ୍ଚାତ୍ୟ ନମୁନା ମନେହୋଇଚି ଅନଗ୍ରସର ଅର୍ଥନୀତିରେ ଅଚଳ; ଲେଖିଚନ୍ତି, *ଟ୍ରୁ ଟ୍ୟାକ୍‌ଟିକ୍ସ* । ତାଟକାହେବା କଥା, ବିପ୍ଳବ ତ ସମୁଦ୍ରଢ଼େଉ ଭଳି, ତା ପାଇଁ ଫେର୍ ଛଳଚତୁରୀ ଦରକାରହେବ କାହିଁକି ? କାହିଁକିନା, ଲେନିନ୍ ଦେଖିଚନ୍ତି, ଜନଜାଗରଣ ହୋଇପାରେନା କେବେହେଲେ ସ୍ୱତଃସ୍ଫୂର୍ତ୍ତ, ଅଥବା ନେତୃତ୍ୱ ମଧ ହୋଇପାରେନା ବିଶୁଦ୍ଧ ଭାବାଦର୍ଶର ଉଦ୍ଦୀପନା । ବିପ୍ଳବୀ ସେଥିପାଇଁ ଗୋଟାପଣେ ପେସାଦାର (ପ୍ରଫେସନାଲ୍) ଆଉ ବିପ୍ଳବ ମଧ ପୂର୍ବକଳ୍ପିତ କୃତ୍ୟସୂଚି । ସେ ପରିକଳ୍ପନାରେ ବିଦେଶୀ ସହାୟତା ନିରର୍ଥକ ଓ ବର୍ଜନୀୟ । ବିଦେଶୀ ମାନେ ସ୍ପଷ୍ଟତଃ ଇଉରୋପୀୟ । କାହିଁକିନା, ଇଉରୋପ୍ ସେତେବେଳକୁ ସାମ୍ରାଜ୍ୟବାଦର ନାଭିକେନ୍ଦ୍ର; ମୁନାଫାଲୁଟିବା ପ୍ରତିଯୋଗିତାକୁ ଛାଡ଼ିଦେଇ କ୍ୟାପିଟାଲିସ୍ମ ଧରିଚି, 'ମନୋପଲି'ର ଆବରଣ, ଧ୍ୱଂସକରିଦେଉଚି କ୍ଷୁଦ୍ର ଓ କୁଟୀରଶିଳ୍ପକୁ ଜାଗାବରଜାଗା । ଲେନିନ୍ ଦେଖିଚନ୍ତି, ଏ ରୂପାନ୍ତର ସାମ୍ରାଜ୍ୟବାଦରେ ଉପନୀତହେବା ବାଟରେ ଅଭିସରଣ ମାତ୍ର । କିନ୍ତୁ ସାମ୍ରାଜ୍ୟବାଦକୁ ବିରୋଧକରିବାକୁ ଜାତୀୟତାବାଦ କ'ଣ ଯଥେଷ୍ଟ ? ନୁହେଁ ଅବଶ୍ୟ; ମାତ୍ର ନିର୍ଦ୍ଦିଷ୍ଟ ଯୋଉ ଭୂଖଣ୍ଡରୁ ବିରୋଧର ସୂତ୍ରପାତ ହୁଏ, ସେ ଭୂଖଣ୍ଡର ରାଜନୀତିକ ପରିଚୟ ସବୁବେଳେ ଜାତିରାଷ୍ଟ୍ର । ସେଇ ବ୍ୟଞ୍ଜନାରେ ଲେନିନ୍ ଜମାରୁ ନ୍ୟାସନାଲିଷ୍ଟ୍ ନୁହେଁ; ଅଥଚ ଜାତୀୟତାବାଦକୁ ବ୍ୟବହାର ନକରି ଚାରାନାହିଁ; ମାର୍କ୍ସଙ୍କ ବିପ୍ଳବତତ୍ତ୍ୱ ଦେହରେ ଯୋଡ଼ିଦେଇଚନ୍ତି ନୂତନ ମାତ୍ରା : ...the difference between the socialist revolution and the bourgeois revolution is precisely that, in the latter case, finished forms of capitalist relationships already exist, whereas the soviet power, the proletarian power, does not get these relationships । ତାହେଲେ, ଟ୍ୟାକ୍‌ଟିକ୍ସ କହି ନିର୍ଦ୍ଦିଷ୍ଟ କଣ ବୁଝାଇବାକୁ ଚାହିଁଚନ୍ତି ? ଜୀବନର ଅନ୍ତିମପର୍ବରେ ଜର୍ମନ୍ ଶ୍ରମଜୀବୀଙ୍କୁ ମାର୍କ୍ସ ଯୋଉ ପରାମର୍ଶ ଦେଇଥିଲେ; ତାକୁ କୁହାଯାଏ *ଗଠା ପ୍ରୋଗ୍ରାମ୍;* ତାର ସାରକଥା ହେଲା, ଯଦି ଏକାଠି ହୋଇଚ, ତେବେ ସଂକଳ୍ପକର, ଆନ୍ଦୋଳନର ବ୍ୟାବହାରିକ ଆଭିମୁଖ୍ୟକୁ ଅକ୍ଷରେଅକ୍ଷରେ ମାନିଚଳିବ, ନୀତିନିୟମର ଜିରାରୁ ଶିରାକାଢ଼ି ବା ପ୍ରଶ୍ନଉଠାଇ ଅଯଥା ଝଗଡ଼ାକରିବନାହିଁ; ମାତ୍ର ଖବରଦାର, ତତ୍ତ୍ୱ ସାଙ୍ଗରେ ରଫାକରିବନାହିଁ ବିନ୍ଦୁମାତ୍ର । ଲେନିନ୍ ଲେଖିଚନ୍ତି, This was Marx's idea, and yet there are people among us who strive

in his name to belittle the significance of theory. Without a revolutionary theory there cannot be a revolutionary movement ... a man who is weak and vacillating on theoritical questions, who has a narrow outlook, who makes excuses for his own slackness... such a man is not a revolutionist but a hopeless amateur । ଅର୍ଥାତ୍, ଟ୍ୟାକ୍‌ଟିକ୍ସ ଅସ୍ଥାୟୀ, ନିର୍ଦ୍ଦିଷ୍ଟ ପରିସ୍ଥିତିକୁ ଦୃଷ୍ଟିରେ ରଖି ତିଆରିହୋଇଚି; ଯା ସ୍ଥାୟୀ, ତା କେବଳ ତତ୍ତ୍ୱ (ଥିଅରୀ) । ତାକୁ ପ୍ରୟୋଗକରିବାବେଳେ କର୍ମଧାରାରେ ହେର୍‌ଫେର୍ ହେବା ସ୍ୱାଭାବିକ, ସବୁରକମ ଐତିହାସିକ ବିବର୍ତ୍ତନ ସାଙ୍ଗରେ ଅଭିନ୍ନ କର୍ମଧାରା ଯେହେତୁ ଖାପଖାଏନା; ମାତ୍ର କର୍ମଧାରାକୁ ବଳଯୋଗାଇବ କି ବାଟକଢ଼ାଇବ କେବଳ ତତ୍ତ୍ୱର ନିର୍ଭୁଲ୍ ଉପଲବ୍ଧି । ତତ୍ତ୍ୱର ସେଇ ଉପଲବ୍ଧି, ଲେନିନ୍‌ଙ୍କ ସକାଶେ ଅନ୍ତତଃ, ବୁର୍ଜୋୟା ପୁଞ୍ଜି ଆଉ ବୁର୍ଜୋୟା ପାର୍ଲାମେଣ୍ଟାରି ପ୍ର୍ୟାକ୍‌ଟିସ୍‌କୁ ପ୍ରତ୍ୟାଖ୍ୟାନ, ସ୍ୱତଃପ୍ରବୃତ୍ତ ଗଣଆନ୍ଦୋଳନ ପ୍ରତି ଅନାସ୍ଥା, ଏବଂ ଅଭ୍ୟୁତ୍ଥାନ ପ୍ରଲେତାରିଏତ୍ ସମର୍ଥନରେ ଯଦି ଘଟିଥାଏ, ତେବେସୁଦ୍ଧା ପାର୍ଟି (ଭ୍ୟାନ୍‌ଗାର୍ଡ କହିଚନ୍ତି ଲେନିନ୍) ଦଣ୍ଡକପାଇଁ ପାସରିଯିବନାହିଁ ଯେ ପ୍ରକୃତ ସମାଜତନ୍ତ୍ର ପ୍ରତିଷ୍ଠାକରିବା ପାଇଁ ଅଗ୍ରସର ଅର୍ଥନୀତିର ପନ୍ଥାପଦ୍ଧତିକୁ ବର୍ଜନକରିବା ମୂର୍ଖତା ମାତ୍ର । ବିଦ୍ୟମାନ ଗ୍ରାମୀଣ ଅର୍ଥନୀତିର ବୁନିଆଦ ଉପରେ ସୋସାଲିଜ୍‌ମର ସୌଧ ଯେ ଗଢ଼ିଉଠିପାରେନା, ହାଡ଼େହାଡ଼େ ବୁଝିଥିଲେ ବୋଲି, ଶିଳ୍ପପ୍ରସାର ଦିଗରେ ଜାର୍ ଯେତେ ଉଦ୍ୟମକରିଚନ୍ତି, ଅକୁଣ୍ଠ ସମର୍ଥନପାଇଚି ଲେନିନ୍‌ଙ୍କ ପାଖରୁ । ତା ଫଳରେ ପାରମ୍ପରିକ ଆର୍ଥ-ସାମାଜିକ ଅନୁଷ୍ଠାନ ଆଘାତପାଇଚନ୍ତି ଅବଶ୍ୟ, ଆଉ କୃଷକର ବୋଝ ବି ବଢ଼ିଚି ବହୁତ, କିନ୍ତୁ ନିଜେ କ୍ଷମତା ପାଇଲେ ବୋଲି, ଏ ନୀତିକୁ ଛାଡ଼ିଦେଇଥାନ୍ତେ କେମିତି ? ସମ୍ଭବହେବ କେମିତି ତେବେ ବ୍ୟାପକ ଶିଳ୍ପାୟନ ? ପ୍ରବର୍ତ୍ତନକରିଚନ୍ତି ବାଧତାମୂଳକ ସଂଚୟ । ମାତ୍ର ହାତକୁ ଉଦ୍‌ବୃତ୍ତ ଆସିଲେ ସିନା ସଂଚୟ କରିବେ ଋଷୀମୂଲିଆ ! ସେତେବେଳେ ଭାବିଚନ୍ତି, ଋସିଆର ସମାଜତନ୍ତ୍ର ଅପରିଣତ ହେଲେସୁଦ୍ଧା, ଜର୍ମାନୀ ଭଳି ଅଗ୍ରସର ଅର୍ଥନୀତିରେ ପହଞ୍ଚାଇଦେଇପାରେ ବିପ୍ଳବର ସ୍ଫୁଲିଙ୍ଗ, ପ୍ରତିବେଶୀ ଜର୍ମାନୀ ତାହେଲେ ସାହାଯ୍ୟକରିବ ଋସିଆର ଶିଳ୍ପାୟନକୁ । ଲେନିନ୍‌ଙ୍କ ପାଇଁ ମାର୍କ୍ସବାଦ ତେଣୁ ସ୍ଥାନୀୟ କୋଉ ଅଭିବ୍ୟକ୍ତି ନୁହେଁ; ତାର ଚରିତ୍ର ଆନ୍ତର୍ଜାତିକ । ବିପ୍ଳବର ଶିଖା ପଛକୁ ପଛ ଜଳିଉଠିବ ଦୁନିଆତମାମ, ଏଇ ପ୍ରତ୍ୟାଶାରେ ମାର୍କ୍ସବାଦୀ ପୁନର୍ଗଠନ କାମରେ ଲାଗିପଡ଼ିଚନ୍ତି ଅହର୍ନିଶି: କଳକାରଖାନା ଉପରେ ସ୍ଥାପିତହୋଇଚି ଶ୍ରମଜୀବୀର ମାଲିକାନା ଆଉ କର୍ତ୍ତୃତ୍ୱ, ସରକାରୀ ବ୍ୟବସାୟର ମ୍ୟାନେଜର୍, ଉତ୍ପାଦନକ୍ଷେତ୍ରର ବିଶେଷଜ୍ଞ—ସମସ୍ତଙ୍କ ବେତନ ଖସିଆସିଚି

ଶ୍ରମଜୀବୀର ଉପାର୍ଜନ ସ୍ତରକୁ, ବହୁସଂଖ୍ୟକ ସୋଭିଏଟ୍ (ଶ୍ରମିକ ଓ ସୈନିକଙ୍କ ପଞ୍ଚାୟତ) ବିକେନ୍ଦ୍ରିତକରିଚି ସ୍ୱାୟତ୍ତଶାସନ । ସେନାବାହିନୀ ବାଦ୍‌ପଡ଼ିନାହିଁ ପରିବର୍ତ୍ତନ ପ୍ରବାହରୁ, ସକଳ ସାବାଳକ ଦେଶବାସୀ ଗଠନକରିଚନ୍ତି ସିଟିଜେନ୍-ମିଲିସିଆ । ମିଲିସିଆ ମାନେ ଯୋଦ୍ଧ ସୈନ୍ୟ ବିଦେଶକୁ ଯାଆନ୍ତିନାହିଁ ଯୁଦ୍ଧକରିବାକୁ । ତାଙ୍କ ଅଫିସର୍ ବି ନିର୍ବାଚିତ ପ୍ରତିନିଧି, ଦରମା ଯତ୍‌ସାମାନ୍ୟ । ବିଧିବ୍ୟବସ୍ଥା ତ ଚମତ୍କାର, ସାଫଲ୍ୟ ନିର୍ଭରକରୁଚି କିନ୍ତୁ ଜର୍ମାନୀର ବଦାନ୍ୟତା ଉପରେ ।

ବିପ୍ଳବ ଅବଶ୍ୟ ଜର୍ମାନୀରେ ଥିଲା ଆସନ୍ନ, ମାତ୍ର ପଥ ସୁଗମକରିବାକୁ ହେଲେ ଜର୍ମନ୍ ରାଷ୍ଟ୍ରଶକ୍ତିପାଇଁ ଯୁଦ୍ଧପରିସ୍ଥିତିକୁ ଜଟିଳକରିଦେବା ଆବଶ୍ୟକ । କୃଷକଅଧ୍ୟୁଷିତ ରସିଆରେ ସୋସାଲିଜ୍ମ ପ୍ରତିଷ୍ଠାକରିବାକୁ ହେଲେ ଲେନିନ୍‌ଙ୍କୁ ବାଛିନେବାକୁ ପଡ଼ିବ ଦୁଇଟି ବିକଳ୍ପ ଭିତରୁ ଗୋଟିଏ; ଯୁଦ୍ଧରୁ ରସିଆ ଓହରିଆସିବ କିମ୍ବା ବଲ୍‌ସେଭିକ୍ କ୍ଷମତା ହରାଇବେ ସ୍ୱଦେଶରେ । ବଲ୍‌ସେଭିକ୍ ଜାଣନ୍ତି, ଜାର୍‌ଙ୍କ ପତନ ସାଙ୍ଗକୁ ଅନ୍ତର୍ବର୍ତ୍ତୀ ସରକାର ଭାଙ୍ଗିଯିବାର ଏକମାତ୍ର କାରଣ ଥିଲା ଯୁଦ୍ଧ । ଲୋକଙ୍କୁ ସେଥିପାଇଁ ଜବାବଦେଇଥିଲେ, ସେମାନେ କ୍ଷମତାକୁ ଆସିଲେ ଯୁଦ୍ଧରୁ ବାହାରିଆସିବ ରସିଆ । ଆଗରୁ ନିଜେ ମଧ୍ୟ ଯୁଦ୍ଧକୁ ବ୍ୟବହାରକରିଚନ୍ତି ପ୍ରତିପକ୍ଷ ବିପକ୍ଷରେ । ତେଣୁ ଯୁଦ୍ଧ ବିରୋଧରେ ଯିବା ମାନେ କ୍ଷମତାରୁ ହଟିଯିବାକୁ ପଡ଼ିବ । ସପକ୍ଷରେ ଗଲେ, ଦେଶରେ ଘଟିବ ସମାଜତନ୍ତର ପତନ । ଲେନିନ୍ ଯାଇଚନ୍ତି ଯୁଦ୍ଧ ବିପକ୍ଷରେ, ସୋସାଲିଜ୍ମ ସକାଶେ ଯେକୌଣସି ମୂଲ୍ୟଦେବାକୁ ଯେହେତୁ ଥିଲେ ପ୍ରସ୍ତୁତ । ଅଥଚ 'ଆନ୍ତର୍ଜାତିକ' ବଲସେଭିକ୍ ଭାବିଚନ୍ତି, ଯୁଦ୍ଧରେ ଯୋଗଦେଲେ ଇଉରୋପସାରା ଯଦି ବିପ୍ଳବ ବ୍ୟାପିଯାଏ, ରସିଆରେ କ୍ଷମତାକୁ ମୁଠାଇଧରି ବସିରହିବା ବିପ୍ଳବୀ ପକ୍ଷରେ ସଂକୀର୍ଣ୍ଣତା । ଲେନିନ୍ କିନ୍ତୁ ଦେଖିଚନ୍ତି ରସିଆରେ ସମାଜତନ୍ତ ରହିଚି ଶୈଶବରେ, ତଥାପି ରସିଆ ପୃଥିବୀର ଏକମାତ୍ର ସମାଜତାନ୍ତ୍ରିକ ଦେଶ; ତାକୁ ହରାଇବା ମାନେ ପୃଥିବୀରୁ ଲୋପପାଇଯିବ ସୋସାଲିଜ୍ମର ଏକମାତ୍ର ନିଦର୍ଶନ । ଓହରିଆସିଚନ୍ତି ଯୁଦ୍ଧରୁ । କିନ୍ତୁ ୧୯୧୮ରେ ପ୍ରଥମ ମହାଯୁଦ୍ଧ ସରିଯିବା ବେଳକୁ ଦେଖାଦେଇଚି ଆହୁରିବଡ଼ ବିପଦ, ପ୍ଲେଖାନଫ୍‌ଙ୍କ ଭାଷାରେ, ସଂଖ୍ୟାଲଘୁ କମିଉନିଷ୍ଟ୍‌ଙ୍କ ଅ-କମିଉନିଷ୍ଟ୍ ଋଷୀମୂଲିଆଙ୍କ ଉପରେ ଜୋର୍‌ଜୁଲୁମ୍ । କାରଣ ସ୍ପଷ୍ଟତଃ 'ଅଭାବ' । କାହିଁକିନା, ଗୃହଯୁଦ୍ଧ ଓ ବୈଦେଶିକ ଆକ୍ରମଣ ସାଙ୍ଗରେ କ୍ରମାଗତ ଲଢ଼ି ଲଢ଼ି ୧୯୨୦ ବେଳକୁ ସୋଭିଏତ୍ ସଂଘ ପ୍ରାୟ ସର୍ବସ୍ୱାନ୍ତ, ଆତ୍ମତ୍ୟାଗର ମହିମା ବିପ୍ଳବୀଙ୍କ ମନରୁ ବି ଫିକାପଡ଼ିଯାଇଚି । ଯାଇଚି ବୋଲି, ସିଟିଜେନ୍-ମିଲିସିଆ ଜାଗାରେ ଏଥର ଆସିଚନ୍ତି ପେସାଦାର ସେନାବାହିନୀ, ଯାର ନିୟନ୍ତ୍ରଣ ଖାଲି କେନ୍ଦ୍ରୀଭୂତ ନୁହେଁ, ସାମାଜିକ

ପ୍ରତିପତ୍ତି ଓ ବୈଷୟିକ ସୁବିଧାସୁଯୋଗ ମଧ୍ୟ ଅପେକ୍ଷାକୃତ ବେଶି । ଶ୍ରମିକଶାସିତ ଉତ୍ପାଦନବ୍ୟବସ୍ଥା ମଧ୍ୟ, ଉତ୍ପାଦନବୃଦ୍ଧି କି ଦକ୍ଷତାବୃଦ୍ଧି, କୋଉ ଗୋଟାକହେଲେ ଦେଖାଇପାରିନାହିଁ । ଫେରିଆସିଚି ତେଣୁ କେନ୍ଦ୍ରୀଭୂତ ଅର୍ଥନୀତି ସାଙ୍ଗକୁ ବିଶେଷଜ୍ଞ-ବାହିନୀ ଆଉ ଯୂଥପତି ମ୍ୟାନେଜର୍ । ରାଷ୍ଟ୍ରଯନ୍ତ୍ର ଅଦୃଶ୍ୟହେବା ପରିବର୍ତ୍ତେ ଦୃଶ୍ୟମାନହେଲେ କ୍ରମବର୍ଦ୍ଧମାନ ବହୁମୂଲ୍ୟ ଅମଲାତନ୍ତ୍ର । ଖୋଦ୍ ଲେନିନ୍ ଲେଖିଚନ୍ତି, Our work... has obviously lagged behind the work of directly expropriating the expropriators.. without the guidance of specialists in the various fields.. transition to socialism will be impossible.. clearly such a measure is a compromise, a departure from the principles of the Paris Commune... । ବିପ୍ଳବର ଚତୁର୍ଥ ଜୟନ୍ତୀ, ୧୯୨୧ ବେଳକୁ ଉପଲବ୍ଧିକରିଚନ୍ତି, ସୋସାଲିଜ୍ମରେ ଉପଗତହେବା ଆଗରୁ ଯୋଉ ଅଭିସରଣପର୍ଯ୍ୟାୟ ଆସିବ, ଅବଧାରିତଭାବେ ହେବ ରାଷ୍ଟ୍ରପରିଚାଳିତ କ୍ୟାପିଟାଲିଜ୍ମ ! ....Experience has proved that we were wrong. It transpires that a number of transitional stages are necessary–state capitalism and socialism–in order to prepare by many years of effort for the transition to communism... that is what... the objective course of the revolution has taught us ।

ରାଷ୍ଟ୍ରନିୟନ୍ତ୍ରିତ ଧନତନ୍ତ୍ର ମାନେ ଉତ୍ପାଦନଧରଣ ରହିବ ଧନତାନ୍ତ୍ରିକ, ମାତ୍ର ଉଦ୍‌ବୃତ୍ତ ଯିବ ରାଷ୍ଟ୍ର ହାତକୁ । ସମାଜତନ୍ତ୍ର ମାନେ, ଉତ୍ପାଦନର ସାଧନଗୁଡ଼ିକ ହେବ ରାଷ୍ଟ୍ରର ସମ୍ପତ୍ତି, ଶ୍ରମଜୀବୀର ନୁହେଁ । ସନ୍ଦେହ ନାହିଁ, ଗୃହଯୁଦ୍ଧ ଭୋଗ୍ୟପଣ୍ୟ ଉତ୍ପାଦନକୁ ମନ୍ଥରକରିଚି, କୃଷକର ଆପଣା ଉତ୍ପାଦିତ ଶସ୍ୟକୁ ବାଜେୟାପ୍ତ କରିବାକୁ ରାଷ୍ଟ୍ର ବାଧ୍ୟହୋଇଚି । ଫଳରେ, କୃଷିଜୀବୀଙ୍କ ଭିତରେ ସୃଷ୍ଟିହୋଇଚି ବ୍ୟାପକ ଅସନ୍ତୋଷ; ସେ ଅସନ୍ତୋଷ ସଂକ୍ରମିତହୋଇଚି ସ୍ଥଳ ଓ ନୌବାହିନୀକୁ । ସେମାନେ ତ ଯାଇଚନ୍ତି କୃଷିଜୀବୀ ପରିବାରରୁ ! ଗୃହଯୁଦ୍ଧ ଚାଲିବାବେଳେ ବଞ୍ଚନା ହୁଏତ ନ୍ୟାଯ୍ୟ; ତହିଁଉତାରୁ ଶିଳ୍ପାୟନ ଦ୍ୱାହିଦେଇ ବଞ୍ଚନାଗୁଡ଼ାକୁ ଦୀର୍ଘଜୀବୀକରିବା କିନ୍ତୁ ସମ୍ଭବପର ନୁହେଁ । ଲେନିନ୍ ଦି'ପାଦ ପଛକୁ ହଟିଛନ୍ତି, ଚାଷୀ ଅଧିକାରପାଇଚି ନିଜେ ଫଳାଇଥିବା ଶସ୍ୟକୁ ବିକିପାରିବ ବଜାରରେ । ଲଘୁଶିଳ୍ପକୁ ମଧ୍ୟ ଫେରାଇଦିଆଯାଇଚି ମାଲିକ ହାତକୁ ଭୋଗ୍ୟପଣ୍ୟର ଚାହିଦା ମେଣ୍ଟାଇବା, ରାଷ୍ଟ୍ରର ନିୟନ୍ତ୍ରଣ ଯେହେତୁ ସମ୍ଭବ ହୋଇପାରିନାହିଁ । ଏଇ ସଂଧିକ୍ଷଣରେ ତାଙ୍କ ହୃଦ୍‌ବୋଧ ହୋଇଚି ଯେ, ପ୍ରତିବେଶୀ ଦେଶଗୁଡ଼ିକରେ ବିପ୍ଳବ ସଂଗଠିତ ନହେବାଯାଏଁ, ରସିଆର ଉଦ୍ୟମକୁ ସୁରକ୍ଷା

ଦେଇପାରେ କେବଳ କୃଷକ ସହିତ ଆପୋସ । ପ୍ରଲେତାରିଏତ୍ ଅବଶ୍ୟ କୃଷକକୁ ଦିଏ ନେତୃତ୍ୱ; କିନ୍ତୁ ସଂଖ୍ୟାରେ ଅଳ୍ପ । ଜମିଦାର, ମହାଜନ କି ଧନକୁବେରଙ୍କୁ ନିର୍ମୂଳକରିବା ଭଳି, କୃଷକକୁ ତ ଆଉ ନିର୍ମୂଳ କରିହେବନାହିଁ ! ସେମାନଙ୍କୁ ବାଗକୁ ଆଣିବାକୁ ଲାଗିଯିବ ଦୀର୍ଘକାଳ । ଏଇ ଥିଲା ଅସ୍ଥାୟୀ କୌଶଳ; କାହିଁକିନା, ବର୍ଷକ ଉତାରୁ ୧୯୨୧ରେ 'ନୂତନ ଅର୍ଥନୀତିକ ନୀମାପତ୍ର' ଘୋଷିତହେବା ଉତାରୁ ଲେନିନ୍ ପୁଣି ଲେଖିଚନ୍ତି, ... we also need heavy industry... Unless we save heavy industry, unless we restore it, we shall not be able to build any industry, and without heavy industry we shall be doomed as an independent country । ଟ୍ରାନ୍‌ଜିସନ୍ ପଛକୁ ଟ୍ରାନ୍‌ଜିସନ୍, କିନ୍ତୁ ଦେଶକୁ ପରାଧୀନ ହେବାକୁ ଦିଆଯିବନାହିଁ । ଟ୍ରାନ୍‌ଜିସନ୍ ତ ସମାଜତନ୍ତ୍ରରେ ପହଞ୍ଚିବା ବାଟର ସମସ୍ୟା; ରାଷ୍ଟ୍ର ହେବ କାହିଁକି ଶଙ୍କିତ ? କାହିଁକିନା, ଇଉରୋପରେ ଲେନିନ୍ ଦେଖିଚନ୍ତି, ମନୋପଲିରେ ପହଞ୍ଚି କ୍ୟାପିଟାଲିସ୍ମ ଆଗକୁ ଯିବାକୁ ବାଟ ପାଉନାହିଁ । ଅବରୁଦ୍ଧତାକୁ ଲକ୍ଷ୍ୟକରି କମିଉନିଷ୍ଟଙ୍କ ଭିତରେ ଲାଗିଯାଇଚି ବାଦବିବାଦ; ଏପରିକି, ଜାତୀୟତାବାଦର ଚିହ୍ନ ମଧ୍ୟ ଧରାପଡ଼ିଚି କେତେକ ବକ୍ତବ୍ୟରେ । ଲେନିନ୍ କିନ୍ତୁ ଅକ୍ଟୋବର୍ ବିପ୍ଳବ ଆଗରୁ କହିଚନ୍ତି, ମନୋପଲିରେ ଅଟକି ରହିବନାହିଁ ପୁଞ୍ଜିବାଦ, କାହିଁକିନା, ପୁଞ୍ଜିବାଦ ଜାତୀୟତାବାଦୀ ଅର୍ଥନୀତିକ ବିକାଶ ନୁହେଁ; ତାର ନ୍ୟାୟସଙ୍ଗତ ପରିଣତି ଇମ୍ପିରିଆଲିଜ୍ମ ବା ସାମ୍ରାଜ୍ୟବାଦ । ଅର୍ଥାତ୍, ପ୍ରତ୍ୟାଶାକରିଚନ୍ତି ଯୁଦ୍ଧ, ବାସ୍ତବରେ ଯା ଘଟିଚି ତାଙ୍କ ମୃତ୍ୟୁର ପନ୍ଦରବର୍ଷ ଉତାରୁ । ଯୁଦ୍ଧ ଲାଗିଲେ, କମିଉନିଷ୍ଟଙ୍କ ଐକ୍ୟ ଯେ ଭାଙ୍ଗିଯିବନାହିଁ, ସେଭଳି ସଙ୍କେତ ବି ଦେଖିବାକୁ ମିଳିନାହିଁ । ତାହେଲେ, ଗୋଟିଏ ଦେଶର ପ୍ରଲେତାରିଏତ୍ ଅପର ଦେଶର ପ୍ରଲେତାରିଏତ୍‌କୁ ହାଣିବ ! ଶ୍ରମଜୀବୀଶ୍ରେଣୀ ତ ତେବେ ଧ୍ୱଂସହୋଇଯିବ ପୃଥିବୀରୁ ! ସେଥିପାଇଁ, ଆଜି ଯାହାକୁ କହୁଛୁଁ actually existing socialism, ତାଆରି ଚୌହଦୀ ଭିତରେ ଆରମ୍ଭକରିଚନ୍ତି ପ୍ରସ୍ତୁତିପର୍ବ; ଦେଖିଚନ୍ତି, ସଙ୍କଟରେ ସମ୍ମୁଖୀନହୋଇ ନିଜେ ସିନା ପଶ୍ଚାଦ୍‌ପସରଣକୁ ବାଛିଚନ୍ତି, ସୁଯୋଗ ପାଇ ତତ୍ପରହୋଇଉଠିଚି କିନ୍ତୁ ପାତିବୁର୍ଜୋୟା-କୃଷକ ସାଙ୍ଗକୁ ସ୍ୱଜନପୋଷଣକାରୀ ମଧ୍ୟବିତ୍ତ; ସମ୍ପତ୍ତି ଅଧିକାର ଫେରିପାଇ, ତାଆରି ବଳରେ, ରାଜନୀତିକ କ୍ଷମତାର ଉଚ୍ଚାଶା ଲାଳନକରିଚି ଯତ୍ରତତ୍ର । ଅଥଚ ରସିଆକୁ ଘେରିରହିଚି ଯୋଉ ଜଗତ, ଦୃଶ୍ୟତଃ ବିଶାଳ ଧନାଢ୍ୟ ପୁଞ୍ଜିବାଦର ଜଗତ; ସୁଯୋଗ ପାଇବା ମାତ୍ରକେ, ନବଜାତ ସମାଜତାନ୍ତ୍ରିକ ରାଷ୍ଟ୍ରଟାକୁ ପଦାନତକରିବାକୁ ହେଳାକରିବନାହିଁ । ରସିଆରେ ପୁଣି ରହିଚି ଗୃହଶତ୍ରୁ ବିଭୀଷଣ, କାହିଁକିନା, ଅନ୍ୟାନ୍ୟ ଅ-କମିଉନିଷ୍ଟ ସମାଜବାଦୀଙ୍କୁ

ସରକାରରେ ସାମିଲ୍‌କରିନାହାଁନ୍ତି ଲେନିନ୍, ସମ୍ଭାବ୍ୟ ବିଭିନ୍ନ ପ୍ରତିକ୍ରିୟାକୁ ନିଃଶେଷ କରିଦେବାପାଇଁ ଘୋଷଣାକରିଚନ୍ତି ଅର୍ଥନୀତିକ ପଶ୍ଚାଦ୍‌ପସରଣ ସାଙ୍ଗକୁ ବଲ୍‌ସେଭିକ୍ ଏକନାୟକତ୍ୱ : We do not need any opposition now, Comrades, it's not the time for it. Either here, or over there, with a rifle, but not with the opposition(ie. either all for the leadership or completely against it, on the side of the Whites). It is no good reproaching me : it follows from the state of affairs. No more opposition now, Commrades. And, in my view, the Congress will have to draw the conclusion that the time has come to put an end to opposition, to put the lid on it. We have had enough opposition । ଅତଃପର, ଅର୍ଥାତ୍ ରଙ୍ଗମଞ୍ଚରୁ ଲେନିନ୍ ଅପସୃତହେବା (୧୯୨୪) ଉତାରୁ, ପାର୍ଟି ଯୋଉ ଉତ୍ତରାଧିକାର ପାଇଚି, ଶକ୍ତିଶାଳୀ ହେଲେସୁଦ୍ଧା, ଏକ ଅପରିଣତ ବିପ୍ଳବର ଐତିହ୍ୟ; କାହିଁକିନା, ରାଜନୀତିର ସବୁଠୁ ବଡ଼ ଆଭିମୁଖ୍ୟ ହୋଇଚି ଦ୍ରୁତ ଶିଳ୍ପାୟନ । ମନେପ୍ରାଣେ ଉପଲବ୍ଧିକରିଚନ୍ତି କମିଉନିଷ୍ଟ, ସୋଭିଏଟ୍ ଇଉନିୟନ୍‌ର ଅର୍ଥବ୍ୟବସ୍ଥା ଓ ସମାଜସଂଗଠନ ଇଉରୋପ୍ ଭଳି 'ଆଧୁନିକ' ହୋଇନପାରିଲେ, ବିପ୍ଳବ ଲାଭକରିପାରେନା ଯଥାର୍ଥ ପରିଣତି; ଅଥଚ ଆଧୁନିକୀକରଣ ପାଇଁ ଦେଶବାହାରୁ ମିଳିବନାହିଁ ସମ୍ବଳ କି ସାହାଯ୍ୟ, ଶିଳ୍ପପ୍ରଧାନ ପାଶ୍ଚାତ୍ୟ ସମାଜରୁ ପ୍ରତ୍ୟାଶିତ ବିପ୍ଳବ ଯେହେତୁ ଘୁଞ୍ଚିଯାଉଚି ପଛରୁ ପଛକୁ । ଉନ୍ନୟନର ପୁରାବୋଝଟା ମୁଣ୍ଡାଇବାକୁ ପଡ଼ିବ ସ୍ୱଦେଶବାସୀଙ୍କୁ; ଅବିକଶିତ କୃଷକକୁଳକୁ । ଅକ୍ଟୋବର୍-ବିପ୍ଳବ ଅବ୍ୟବହିତରେ ଆଉଯୋଉ ବହି ଲେଖିଚନ୍ତି ଲେନିନ୍, *ଷ୍ଟେଟ୍ ଆଣ୍ଡ୍ ରେଭୋଲିଉସନ୍*, ସେଥିରେ ମାର୍କ୍ସକଥିତ ସର୍ବହରାର ଏକନାୟକତ୍ୱ ସାଙ୍ଗକୁ ରାଷ୍ଟ୍ରଶକ୍ତିର ଅବଲୁପ୍ତି ବିଶ୍ଳେଷିତ ହୋଇଚି ସବିସ୍ତାର; ଦୃଶ୍ୟପଟ ଓ ସମସ୍ୟାପଟ କିନ୍ତୁ ଅ-ଧନତାନ୍ତ୍ରିକ ସମାଜ । ମାର୍କ୍ସଙ୍କ ବୟାନର ଦୃଶ୍ୟପଟ ଥିଲା କିନ୍ତୁ ଇଉରୋପର ଶିଳ୍ପୋନ୍ନତ ସମାଜ, ତାର ଅର୍ଥନୀତି, ସମାଜନୀତି, ସଂସ୍କୃତି ଓ ରାଜନୀତି । ଅନୁରୂପ ଐତିହାସିକ ପ୍ରେକ୍ଷିତ ଯୋଉଠି ନାହିଁ, କି ତାର ନିକଟତମ ପ୍ରତିରୂପ, ନୈରାଜ୍ୟବାଦୀ ଭାବାଦର୍ଶ ହେବ କେମିତି ରୂପାୟିତ, ରହିଯାଇଚି ଅବଶ୍ୟ ଅମୀମାଂସିତ କଳ୍ପଲୋକ ! ବିଶେଷତଃ ଯେହେତୁ ତଥାକଥିତ ସାମ୍ୟବାଦୀ-ରାଷ୍ଟ୍ର ଭିତରକୁ ନୈରାଜ୍ୟବାଦ ପ୍ରବେଶକରିନାହିଁ ବିଂଶଶତକ ଶେଷହେବା ପର୍ଯ୍ୟନ୍ତ, ବରଂ ରାଷ୍ଟ୍ର ହୋଇଚି ଭୟାନକଭାବେ ଦମନପ୍ରବଣ । ଲେନିନ୍‌ଙ୍କ ତାତ୍ପର୍ଯ୍ୟ କିନ୍ତୁ ଅନ୍ୟତ୍ର; ମାର୍କ୍ସଚିନ୍ତାକୁ ବାସ୍ତବ ଅନୁଶୀଳନରେ ପରିଣତକରିବା ତାଙ୍କ ଏକକ କୃତିତ୍ୱ; ଯା ଥିଲା କେବଳ ଐତିହାସିକ

ସମ୍ଭାବନା, ତାକୁ ବାସ୍ତବରେ ପରିଣତକରିବାକୁ ହେଲେ, ପଛକୁପଛ ଅଭିସରଣ ଯେ ଅବଶ୍ୟମ୍ଭାବୀ, ଅଭିଜ୍ଞତାରୁ ଏଇ ସତ୍ୟ ତାଙ୍କରି ଆବିଷ୍କାର । ବିମୂର୍ତ୍ତକୁ ମୂର୍ତ୍ତିମନ୍ତ, ପୂର୍ବସର୍ତ୍ତକୁ ପରିଣାମ, ଆଉ ତତ୍ତ୍ୱକୁ ଅଭ୍ୟାସରେ ବାସ୍ତବାୟିତକରିବା ପ୍ରକ୍ରିୟାରେ ରାଜନୀତି କେମିତି ପାଲଟିଯାଏ କାର୍ଯ୍ୟତଃ ବିପ୍ଳବର ପ୍ରାତ୍ୟହିକ ଅନୁଶୀଳନ, ଐତିହାସିକ ସେଇ ସତ୍ୟକୁ କାମରେ ଦେଖାଇଦେଇ ଯାଇଚନ୍ତି ଲେନିନ୍, ଯଦିଓ ଅନୁଚର ତାକୁ ନାଁ ଦେଇଚନ୍ତି, ଐତିହାସିକ ବସ୍ତୁବାଦ (ହିଷ୍ଟରିକ୍ୟାଲ୍ ମେଟିରିଆଲିଜ୍ମ) । ଅତଏବ୍ ସୋଭିଏଟ୍ ଇଉନିୟନ୍‌ର ଅଧଃପତନ ମଧ୍ୟ ସେ ଇତିହାସରୁ ବିଚ୍ଛିନ୍ନ ନୁହେଁ ! ବିଚ୍ଛିନ୍ନ ହୋଇପାରେନା, କାହିଁକିନା, ତତ୍ତ୍ୱ ଓ ଅନୁଶୀଳନର ଅନ୍ୱୟକୁ 'ସମଗ୍ର' (ଟୋଟାଲ୍) ସତ୍ତା ଭାବରେ ଦେଖି ନପାରିଲେ, ବ୍ୟକ୍ତିବିଶେଷ ହିଁ ବଡ଼ ବୋଲି ପ୍ରତିଭାତହେବ, ଏବଂ ହୋଇଚି ବୋଲି, କ୍ରୁଷଫ୍ କହିଚନ୍ତି ତାକୁ ବ୍ୟକ୍ତିପୂଜା (ପର୍‌ସନ୍ୟାଲିଟି କଲ୍ଟ) । ସ୍ଥାନ-କାଳ ପରିଧିରେ ମାର୍କ୍ସ ଯା ଅବଲୋକନ କରିଚନ୍ତି, ନିଃସନ୍ଦେହରେ ନିର୍ଦ୍ଦିଷ୍ଟ ଅଣୁବିଶ୍ୱ, ମାତ୍ର ସେଇ ଅଣୁବିଶ୍ୱର ଐତିହାସିକ ନିର୍ଦ୍ଦିଷ୍ଟତାକୁ ଅସ୍ୱୀକାର ନକରି ସୁଦ୍ଧା ଯୋଉ ମେଦିନୀଦୃଷ୍ଟି ଦେଇଯାଇଚନ୍ତି, ତାଙ୍କରି ଭାଷାରେ, ଏକ general historico-philosophical theory whose supreme virtue consists in being supra-historical । ଅଣୁବିଶ୍ୱ ଇତିହାସର ଅଧୀନ, ମେଦିନୀଦୃଷ୍ଟି ଇତିହାସ ଊର୍ଦ୍ଧ୍ୱରେ, ପରମ ସୁନ୍ଦର ଛାୟାମୂର୍ତ୍ତି । ଯେହେତୁ ତତ୍ତ୍ୱ, ତା ଭିତରେ ଇତିହାସ ଅଛି ଯେତିକି, ଫିଲଜଫି ତତୋଧିକ; ମାତ୍ର ଗୁଣଧର୍ମରେ ଯେହେତୁ ସୁପ୍ରା-ହିଷ୍ଟରିକ୍ୟାଲ୍, ପରିପୂର୍ଣ୍ଣ ଏକ 'ଭିସନ୍' (=ବିଶ୍ୱଲୋକନ) । ସେଇ ଭିସନ୍‌କୁ ଭୂଗୋଳ-ଇତିହାସ ପରିସୀମାରେ ରୂପାୟିତ କରିବାକୁ ଯାଇ ଲେନିନ୍ ଲାଭକରିଚନ୍ତି କି ନିର୍ଦ୍ଦିଷ୍ଟ ବିଶ୍ୱଦୃଷ୍ଟି, ଯାହାକୁ କୁହାଯିବ 'ଐତିହାସିକ ବସ୍ତୁବାଦ'? ଲାଭକରିଚନ୍ତି ଅପରିସୀମ ବିଷାଦ । ମାର୍କ୍ସଙ୍କ ଅଣୁବିଶ୍ୱ (ମାଇକ୍ରୋକୋଜ୍ମ) ଥିଲା ଫାକ୍ଟରି-ସିଷ୍ଟେମ୍, ମାତ୍ର ମ୍ୟାକ୍ରୋକୋଜ୍ମ (=ନିଖିଳ) ଥିଲା କ୍ୟାପିଟାଲିଜ୍ମର ବିକଚନ, ଯା ବିଶ୍ୱସଂସାରକୁ ପରିବୃତ୍ତକରିବ ଅନତିବିଳମ୍ବେ । ତେଣୁ କ୍ୟାପିଟାଲିଜ୍ମ ରୂପକ ପ୍ରପଞ୍ଚର ପ୍ରାତ୍ୟହିକ ଗତିଶୀଳତା ସାଙ୍ଗକୁ ପ୍ରାତ୍ୟହିକ ଊର୍ଦ୍ଧ୍ୱରେ କର୍ମରତ ସମଗ୍ରତାର ଅଭିରୂପ । ସେ ଅଭିରୂପ ମାର୍କ୍ସଙ୍କୁ ବିଷର୍ଣ୍ଣ କରିନାହିଁ; ଜାଣିଚନ୍ତି, କଣ ହୋଇପାରେ ପ୍ରତିଷେଧ; ଏବଂ ସେ ପ୍ରତିଷେଧ ମନେହୋଇଚି ଅବ୍ୟର୍ଥ, ଶୋଷିତ ମଣିଷର ନିତ୍ୟନିର୍ଯ୍ୟାତନ ଯେହେତୁ ବିପ୍ଳବର ମୌଳିକ ଉପାଦାନ ! ଲେନିନ୍‌ଙ୍କ ବିଷାଦ ଅପରିମିତ ହେଲେ ସୁଦ୍ଧା, ବ୍ୟର୍ଥତାକୁ ଭାବିନାହାଁନ୍ତି ବିଭ୍ରାନ୍ତି । ନିର୍ଦ୍ଦିଷ୍ଟ ବିଶ୍ୱଦୃଷ୍ଟି ବ୍ୟତିରେକେ ବିଭ୍ରରେ ଏ ଦୃଢ଼ତା ସମ୍ଭବପର ହୁଏନା । ବାରମ୍ବାର ପଛକୁ ହଟିଆସିବା ସତ୍ତ୍ୱେ କ୍ଷଣକପାଇଁ ମନକୁ ପଶିନାହିଁ, କ୍ୟାପିଟାଲିଜ୍ମ ଅପରାଜେୟ । ଏ ଅବସ୍ଥାକୁ

ବୁଝାଇବାକୁ ଯାଇ ଗ୍ରାମ୍‌ସି ଉଦ୍ଧାରକରିଚନ୍ତି ରୋମାଁରୋଲାଁଙ୍କ ବଚନ: pessimism of the intellect, optimism of the will । ସର୍ବହରାର ଗଣମୁକ୍ତି, ତାଙ୍କ ପାଇଁ, ବିଶ୍ୱବ୍ୟାପୀ ଆନ୍ଦୋଳନ ଖାଲି ନୁହେଁ, ନିଜେ ସ୍ପଷ୍ଟ ବୁଝି ନପାରିଲେ ବି, ଢେର୍‌ଆଗରୁ (ଫରାସୀବିପ୍ଳବ ବେଳରୁ) ସଂଗ୍ରାମ ଦଖଲକରିଆସିଚି ସର୍ବହରାର କୃତ୍ୟସୂଚି କ୍ୟାପିଟାଲିସ୍ମର ଅଗ୍ରଗତି ଯେହେତୁ ସଂଗ୍ରାମକୁ କରିଦେଇଚି ଦୈନନ୍ଦିନ ସମସ୍ୟା । କୋଉ ବିରାଟସଂକଟ କି ଶ୍ରେଣୀସଂଘର୍ଷକୁ ଅପେକ୍ଷାକରିବା ପ୍ରଶ୍ନ ତେଣୁ ଉଠୁନାହିଁ । ସଂଗ୍ରାମର ମୁହୂର୍ତ୍ତ ତ ଅଦ୍ୟ ଏବଂ ଅତ୍ର ! ଆଖିଖୋଲି ଚାହିଁଦେଲେ ବୁର୍ଜୋୟାକୁ ଦେଖିହେବ ସର୍ବତ୍ର, ସେଇ ତ କ୍ୟାପିଟାଲିସ୍ମର ନାୟକ ! ଦଶଦିଗ ଦଖଲକରିଥିବା ସେଇ ବୁର୍ଜୋୟା ସହିତ ଲେଣ-ଦେଣର ଦ୍ୱାନ୍ଦ୍ୱିକତା ହିଁ ପ୍ରଲେତାରିଏତ୍‌ର ରଣଭୂମି । ବୁର୍ଜୋୟା କିନ୍ତୁ ଆଉ ଲଢ଼ିପାରେନା; ଯା ପାଇଚି, ତାକୁ ଛାଡ଼ିବାକୁ ଚାହେଁନା; ସବୁଠି କେବଳ ବାଟ ଓଗାଳେ । ତାର ଏଇ ଦୋଦୋପାଞ୍ଚ ସ୍ୱଭାବ ଭିତରେ ନିହିତ ଅଛି କିନ୍ତୁ ଦ୍ୱାନ୍ଦ୍ୱିକତା; ଦରକାର ତାକୁ ଜନସମର୍ଥନ । ଜନସମର୍ଥନ ବଳରେ ହିଁ ପାଇଲେ ପାଇପାରେ ରାଜନୀତିକ କ୍ଷମତାରେ ନିରୁଦ୍‌ବେଗ ଅଧିଷ୍ଠାନ । ସେଥିପାଇଁ ଏକ୍ଷଣି ମେଣ୍ଟବାନ୍ଧିପାରେ ପୁରୁଣାଶତ୍ରୁ ସାମନ୍ତବାଦୀଙ୍କ ସାଙ୍ଗରେ । ଧନତନ୍ତ୍ରର ବିକାଶ ସାଙ୍ଗରେ ଗଣତନ୍ତ୍ରକୁ ଯୋଡ଼ିବା ତେଣୁ ସେଇ ପୁରାତନ ସର୍ପରେ ପୁରାତନ ରଜ୍ଜୁଭ୍ରମ । ପ୍ରତୀୟମାନ ଓ ପ୍ରକୃତର ଏଇ ଦ୍ୱନ୍ଦ୍ୱକୁ ଲକ୍ଷ୍ୟକରି ଲେନିନ୍ ଲେଖନ୍ତି, In any case, political democracy even if it is in theory normal for socalled pure capitalism is only one of the possible forms of the superstructure over capitalism. The facts themselves prove that both capitalism and imperialism develop under and in turn subjugate *any* political form । ପୁନର୍ନିର୍ମାଣର ପୂର୍ବବର୍ତ୍ତୀ କର୍ତ୍ତବ୍ୟ ତେଣୁ ବିଗଠନ (=ଡିକନ୍‌ଷ୍ଟ୍ରକ୍ସନ୍) । 'ଜନସାଧାରଣ' ଭଳି ଅସ୍ୱଚ୍ଛ ପ୍ରତ୍ୟୟକୁ ବିଗଠିତକରିବା ମାନେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଓ ଦିଗ ପ୍ରତି ଲୋକଙ୍କୁ ଅଭିମୁଖୀକରିବା । ତେବେଯାଇ ଲୋକ ହେବେ ପ୍ରଲେତାରିଏତ୍ ପଦବାଚ୍ୟ, କାହିଁକିନା, ସଂଗ୍ରାମ ମାନେ ଉଦ୍ଦେଶ୍ୟସାଧନ; ଆଉ, ଉଦ୍ଦେଶ୍ୟ ତ ସବୁବେଳେ ଶ୍ରେଣୀସଂଘାତ । ଏକମାତ୍ର ସେଇ ବାଟରେ ମଧ୍ୟଯୁଗରୁ ଦେଶକୁ ଘୋଷାରିଆଣି ଲୋକ ବସାଇପାରିବେ ଆଧୁନିକ କାଳରେ । ଅନ୍ୟଥା, ନାନାଦି ରାଜନୀତିକ ଗୋଷ୍ଠୀର ପ୍ରରୋଚନାରେ ବିଭ୍ରାନ୍ତ ଜନସାଧାରଣ ଆକାଶର ବାଦଲ ପରି ଉଡୁଥିବେ ଭାସମାନ ଖଣ୍ଡସମଷ୍ଟି । ଅର୍ଥାତ୍, ପରିବର୍ତ୍ତନକାମୀ ଐକ୍ୟବଦ୍ଧ ଏକାଗ୍ର ମନୁଷ୍ୟ ନୁହେଁ । ସେଇ ଏକାଗ୍ର ମଣିଷଙ୍କ ଭିତରୁ ସୋସାଲିଜ୍ମ ପାଇଁ ଯିଏ ପ୍ରାଣପାତ

କରିବାକୁ ପ୍ରସ୍ତୁତ, ସେଇ ହେବେ ଭ୍ୟାନ୍‌ଗାଡ଼୍ ବା ଅଗ୍ରଦୂତ । କିନ୍ତୁ ଲୋକ ଯଦି ହେବେ ପେସାଦାର ବିପ୍ଳବୀ, ସଂଗ୍ରାମକୁ ପଛରେ ରଖି ଭକ୍ତସମ୍ପ୍ରଦାୟରେ ପରିଣତହେବେନାହିଁ କି ? ଯେପରି ଭୂଦାନକର୍ମୀ କି ପଣ୍ଡିଚେରୀର ଅତିମାନସବାଦୀ । ଲେନିନ୍ ଭାବିଚନ୍ତି, ଯେହେତୁ ନିଜେ ସେମାନେ ପରିବର୍ତ୍ତନର ହତିଆର, ଶ୍ରେଣୀ-ଅବସ୍ଥାନରୁ ବିପ୍ଳବୀ ଅଲଗାହୋଇଯିବା ପ୍ରଶ୍ନ ଉଠୁନାହିଁ; ପୁଣି, ପାର୍ଟି ରାଜନୀତି ଅଲଗାହେଲେ ସୁଦ୍ଧା, ରାଜନୀତି ଯେହେତୁ ଏକ ପ୍ରକ୍ରିୟା, ଏବଂ ସେ ପ୍ରକ୍ରିୟା ଯେହେତୁ ଯାନ୍ତ୍ରିକ ନୁହେଁ, ପାର୍ଟି ହେବ ଶିକ୍ଷକ, ସହକର୍ମୀ ଓ ସହଯୋଦ୍ଧା । ମନକୁମନ ଓଟାରି ହୋଇଆସି ଲୋକ ଯଦି ବିପ୍ଳବ କରୁଥାନ୍ତେ, ପାର୍ଟି ହୋଇଥାନ୍ତା ଆବଶ୍ୟକତାରୁ ଅତିରିକ୍ତ । ବିପ୍ଳବ ଯେହେତୁ ସ୍ୱତଃସ୍ଫୂର୍ତ୍ତ ସୃଷ୍ଟିକ୍ରିୟା ନୁହେଁ, ପାର୍ଟି ପାଉଚି ଗୁରୁତ୍ୱ । ପରିବର୍ତ୍ତନ କାମନାକରୁଥିବା ଲୋକଙ୍କ ଭିତରେ ଯିଏ ମାତ୍ରାଧିକ ନିଗୃହୀତ, ସମବେତଭାବେ ସ୍ଥିତ ସମାଜବ୍ୟବସ୍ଥା ପ୍ରତି ବିମୁଖହେବାଯାଏଁ, ଧନସମ୍ପତ୍ତି ଆଉ ସମ୍ଭାଳିରଖିହେବନାହିଁ ବୋଲି ଥିଲାବାଲା ମଧ୍ୟ ସମବେତଭାବେ ଅନୁଭବ ନକରିବା ଯାଏଁ, ସଂଗ୍ରାମରେ ସାଫଲ୍ୟ ଆସେନା । ମାସେ କି ବର୍ଷେରେ ଏତେବଡ଼ ଆଲୋଡ଼ନ ଘଟିବା ସମ୍ଭବନୁହେଁ । ରାଜନୀତି ଏ ଆଲୋଡ଼ନକୁ ମନେକରେ ଦେଶବ୍ୟାପୀ ସଙ୍କଟ; ମାତ୍ର ସଙ୍କଟ ତୀବ୍ର ହେଲେ ସଂଗ୍ରାମ ପାଏ ଗଭୀରତା; ଆଉ ସେଇ ଅବସରରେ ପ୍ରଲେତାରିଏତ୍ ଜିତିବାକୁ ଯଦି ବଦ୍ଧପରିକର ହୁଏ, ବୁର୍ଜୋୟା ସମାଜସମ୍ପର୍କ ଭିତରେ ଦେଖାଦେବ ଅସଂଖ୍ୟ ଛିଦ୍ର, ଫାଙ୍କ ଆଉ ଫାଟ । ସମାଜର ସବାତଳେ ରହିଥିବା ଲୋକ ଏ ଆବର୍ତ୍ତରେ ବୁଦ୍ଧି ହଜାଇବା ସ୍ୱାଭାବିକ । ସେଇ ଘୂର୍ଣ୍ଣିକାଳରେ ପାର୍ଟି ହୁଏ ଆକ୍ଷରିକ ଅର୍ଥରେ ଅଗ୍ରଦୂତ । ଅର୍ଥାତ୍, ଭାଗ୍ୟ ଭଗବାନ ପ୍ରଳୟ ଇତ୍ୟାଦି ଅଲୌକିକତାରୁ ମୁକୁଳିଆସି ଦୁର୍ଗତ ହୁଏ ଆତ୍ମସ୍ଥ, କାହିଁକିନା, ପାର୍ଟିର ତତ୍ତ୍ୱାବଧାନରେ ଅସହାୟ ହୁଏ ସବଳ ଓ ସାବାଳକ । ଲୋକଙ୍କୁ ପ୍ରସ୍ତୁତକରିବା ମାନେ, ଅନ୍ଧ ଅଦୃଷ୍ଟ ଆଉ ବିଚାରର ଯାନ୍ତ୍ରିକତା— ଉଭୟରୁ ନିସ୍ତାର । ସେଥିରୁ ଉଧୁରି ନପାରିଲେ, ବଞ୍ଚିତ ନିଜ ଶ୍ରେଣୀସ୍ୱାର୍ଥକୁ ବି ଚିହ୍ନିପାରେନା, ଚିହ୍ନିପାରେନା ଶତ୍ରୁ-ମିତ୍ର ପ୍ରଭେଦ । ଚିହ୍ନିନପାରିଲେ ସମଷ୍ଟିଗତ ଐକ୍ୟ ମଧ୍ୟ ତିଆରି ହୋଇପାରେନା । ପୁଣି, ପୃଥିବୀର ଅନ୍ୟତ୍ର, କ୍ୟାପିଟାଲ୍‌ର ଦୋହନ-ଲୁଣ୍ଠନ ଯୋଉଠି ସୃଷ୍ଟିକରିଚି ତାଙ୍କରି ଭଳି ଦୁର୍ଗତ, ସେମାନଙ୍କ ସାଙ୍ଗରେ ବି ଗଢ଼ିଉଠେନା ସହମର୍ମିତା । ଲେନିନ୍‌ଙ୍କ ବିଚାରରେ, ଖାଲି ସ୍ୱଦେଶର ବିପ୍ଳବପାଇଁ ଶ୍ରମିକ-କୃଷକଙ୍କୁ ପ୍ରସ୍ତୁତକରିବନାହିଁ ପାର୍ଟି; ହାତବଢ଼ାଇଦେବ ଯୋଉଠି ରହିଚି କ୍ୟାପିଟାଲ୍‌ର ଆକ୍ରମଣ ଅପ୍ରତିହତ । ପ୍ରତିପକ୍ଷକୁ ଦିଶିବ ପାର୍ଟି ଦ୍ୱାରା ତିଆରି ଉତ୍ପାତ; କିନ୍ତୁ ବିପ୍ଳବର ସମ୍ଭାବନା ଯଦି ବାସ୍ତବ ନୁହେଁ, କୋଉହେଲେ ପାର୍ଟି

ମ୍ୟାନୁଫ୍ୟାକ୍‌ଚର୍ କରିପାରେନା ସନ୍ତ୍ରାସ । ତେଣୁ, ଉଭୟ ଇତିହାସ ଓ ତାକୁ ଗଢୁଥିବା ମଣିଷକୁ ଦ୍ୱାନ୍ଦ୍ୱିକ ଅନ୍ୱୟରେ ଧରିରଖିଚି ବିପ୍ଳବ । ଧରିରଖିଚି ବୋଲି, ଏକାଧାରରେ ଉତ୍ପାଦନ ଓ ଉତ୍ପାଦକ ବିପ୍ଳବର ଦୁଇଟି ଅଂଶ । ସେଇ ପ୍ରକ୍ରିୟାରେ ପାର୍ଟି ଅର୍ଜନକରେ ଏକ୍ସପର୍ଟିଜ୍, ସୌଖୀନ୍ କମିଉନିଷ୍ଟ୍ ହୋଇଉଠେ ପ୍ରତିଜ୍ଞାବଦ୍ଧ ପ୍ରଫେସନାଲ୍, ସର୍ବସାଧାରଣ ହୋଇଉଠନ୍ତି ଶ୍ରେଣୀସଚେତନ। ଏଇ 'ହୋଇଉଠିବା' ବା ବିକମିଙ୍ଗ୍ ମାର୍କ୍ସବାଦର ବିଶେଷ ଶିକ୍ଷା : the materialist doctrine concerning the changing of circumstances and education forgets that circumstances are changed by men and that the educator must himself be educated । ସୋଭିଏତ୍ ଇଉନିୟନ୍‌ରେ ସେଇ 'ହୋଇଉଠିବା' କ'ଣ ସମ୍ପୂର୍ଣ୍ଣ ହୋଇଥିଲା ? ଲେନିନ୍ ତେବେ ପଛକୁ ହଟିଗଲେ କାହିଁକି ଥରକୁଥର ? ଜୟ-ପରାଜୟ ମୀମାଂସା ହୋଇପାରେ ସାରାପୃଥିବୀ ହୁଏ ଯଦି ସମସ୍ୟାପଟ । ପୃଥିବୀ ପ୍ରେକ୍ଷିତକୁ ଗ୍ରହଣ ନକଲେ, ଜୟ ଜୟ ନୁହେଁ, କି ପରାଜୟ ପରାଜୟ ନୁହେଁ ।

ଆଜି ନୁହେଁ, ବାଦାନୁବାଦ ଆରମ୍ଭହେଲାଣି ବିପ୍ଳବ (୧୯୦୫)ର ପ୍ରଥମ ଧାପରେ ପହଞ୍ଚିଚି ଯେତେବେଳେ ଋସିଆ । ବ୍ୟର୍ଥହୋଇଯାଇଚି ସେ ଉତ୍‌ଥାନ । ଭୟାନକ କ୍ରୁଦ୍ଧ ତାତ୍ତ୍ୱିକ ପଚାରିଚନ୍ତି, ଫରାସୀବିପ୍ଳବର ପ୍ରସ୍ତୁତିପର୍ବ (୧୮୪୭) ଆଉ ପରାଜୟ (୧୮୪୮) ସାଙ୍ଗରେ ଋସିଆର ୧୯୦୫ ଅଭିଜ୍ଞତା ସମାନ୍ତରାଳ କି ନୁହେଁ? ଆଉ, ଏ ବ୍ୟର୍ଥତା ବୁର୍ଜୋୟାର ସୃଷ୍ଟି, ନା ପ୍ରଲେତାରିଏତ୍‌ର ? ପ୍ରଶ୍ନଉଠିଚି ଋସିଆ ବାହାରେ ଯେତେ ଶ୍ରମିକ ଆନ୍ଦୋଳନ, ପ୍ରାୟ ସବୁଠି ଦେଖାଦେଇଚି ଯେହେତୁ ବାମ-ଦକ୍ଷିଣ ବିଭାଜନ । ଦୃଶ୍ୟପଟ ବିଭିନ୍ନ, ସମସ୍ୟାପଟ କିନ୍ତୁ ଅଭିନ୍ନ । ସେଇ ସମସ୍ୟାପଟରୁ ଦେଖିହେବ ସେକାଳର ମିଜାଜ୍ ଓ ମର୍ମ, ଅର୍ଥାତ୍ ଯୁଗଧର୍ମ । ଯୁଗଧର୍ମର ପ୍ରତିଫଳନ ସାଧାରଣ ଅର୍ଥନୀତିରେ ଯେପରି ପୁଞ୍ଜିର କେନ୍ଦ୍ରୀକରଣ, ବ୍ୟାଙ୍କିଙ୍ଗ୍-ବ୍ୟବସ୍ଥାର କ୍ରମବର୍ଦ୍ଧମାନ ଗୁରୁତ୍ୱ, ଏବଂ ସର୍ବୋପରି, ଯୁଦ୍ଧଜୟ ଭିତରଦେଇ ଉପନିବେଶ ପ୍ରସାର । ଏଗୁଡ଼ାକ ଧନତନ୍ତ୍ରର ସ୍ୱାଭାବିକ ଚରିତ୍ରଲକ୍ଷଣ, ନା ଆପଣା ଭିତରେ ବହନକରୁଚି ପ୍ରତିରୋଧର କୋଉ ଅଭିନବ ସୂତ୍ର ? ବୁଅର୍ ଯୁଦ୍ଧ ସରିଯାଇଚି, ସରିଯାଇଚି ସ୍ପ୍ୟାନିସ୍-ଆମେରିକାନ୍ ଯୁଦ୍ଧ, ଆଉ ନିଜ ଘରେ, ଋସିଆ-ଜାପାନ ଯୁଦ୍ଧ । ବିକ୍ଷିପ୍ତ ଘଟଣା ନା ସାଧାରଣ କୋଉ ଉପସର୍ଗର ଅଭିବ୍ୟକ୍ତି, ଯା ପ୍ରଲେତାରିଏତ୍ ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ? ଲେନିନ୍‌ଙ୍କ ବିବେଚନାରେ କିନ୍ତୁ, ପରସ୍ପର ଛନ୍ଦାଛନ୍ଦି ଜଟିଳ ଏକ ଯୌଗିକ ପ୍ରପଞ୍ଚ ଯା ସୂଚନାକରିଚି ଧନତନ୍ତ୍ରର ସାମ୍ରାଜ୍ୟବାଦକୁ ଅଭିସରଣ । ପ୍ରଲେତାରିଏତ୍-ସଂଗ୍ରାମକୁ ତେଣୁ ଅବଲମ୍ବନକରିବାକୁ ପଡ଼ିବ ଉପଯୁକ୍ତ ରଣକୌଶଳ;

ଜୟ-ପରାଜୟ ନିର୍ଦ୍ଦିଷ୍ଟ କୋଉ ଦେଶ ନିରିଖରେ ଆଉ ବୁଝିହେବନାହିଁ, କାହିଁକିନା, କ୍ୟାପିଟାଲ୍ ଏକ୍ଷଣି ସାମ୍ରାଜ୍ୟବାଦୀ, ଗୋଟେ ଜାଗାର ଜୟ ଅନ୍ୟ ଜାଗାର ପରାଜୟ ସାଙ୍ଗରେ ମିଶିଯାଇ ଯୋଉ ପ୍ରତିରୋଧ ତିଆରିକରିବ, ସେଇ ହେବ କେବଳ ସାମ୍ରାଜ୍ୟବାଦକୁ ପ୍ରଲେତାରିଏତ୍‌ର ଆହ୍ୱାନ । ଦ୍ୱିତୀୟ ଆନ୍ତର୍ଜାତିକରେ ମହାଯୁଦ୍ଧ (ପ୍ରତିରୋଧର ଉପାୟ) ଯେତେବେଳେ ଆଲୋଚିତ ହୋଇଚି, ଲେନିନ୍‌ଙ୍କୁ ସମର୍ଥନକରିଚନ୍ତି ତେଣୁ ରୋସା ଲୁକ୍‌ସେମ୍‌ବୁର୍ଗ ଆଉ ହିଲ୍‌ଫରଡିଙ୍ଗ୍ । ଉଭୟ ଜର୍ମାନୀର ଡେଲିଗେଟ୍, ଦେଖାଇଦେବାକୁ ଋହିଁଚନ୍ତି, ସାମ୍ରାଜ୍ୟବାଦ ସହିତ ଅର୍ଥନୀତିର ଅଙ୍ଗାଙ୍ଗୀ ସମ୍ବନ୍ଧ; ଆଉ ସେଇ ସୂତ୍ରରେ, ପ୍ରତିରୋଧକୁ ଜାତୀୟ ସ୍ତରରୁ ଉଠାଇଆଣି ସର୍ବଜନୀନ ମାତ୍ରା ପ୍ରଦାନ । ବିରଳ କୃତିତ୍ୱ ନୁହେଁ, କେବଳ କ୍ୟାପିଟାଲ୍‌ର ଗତିବେଗକୁ ମାର୍କ୍ସ ଯେତେଦୂର ବିଶ୍ଳେଷଣକରିଥିଲେ, ସେଇ ବିନ୍ଦୁରୁ ସମକାଳଯାଏଁ ଟାଣିଆଣିଚନ୍ତି ଲେନିନ୍; ଯୋଡ଼ିଦେଇଚନ୍ତି ଇମ୍ପିରିଆଲିଜ୍ମ । 'ଟୋଟାଲିଟି' ଧାରଣାଟାକୁ ବୁଝିପାରିଲେ ଏଥର ବିପ୍ଳବୀ; ଅର୍ଥାତ୍, ମନୋପଲି ଆଉ ଫିନାନ୍ସ କ୍ୟାପିଟାଲ୍ ବିଛିନ୍ନ କୋଉ ଉପସର୍ଗ ନୁହେଁ, ସାମ୍ରାଜ୍ୟବାଦରୁ ହିଁ ପ୍ରସୂତ । ଯେପରି, ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଭିତରେ ପୃଥିବୀଟାକୁ ଭାଗବଣ୍ଟା (ଉପନିବେଶ ସ୍ଥାପନ); ଯେପରି, ପୁଞ୍ଜିର କେନ୍ଦ୍ରୀକଣ ସୃଷ୍ଟିକରିଚି ବୁର୍ଜୋୟା ଭିତରେ 'ରେଣ୍ଟିଅର୍', ଯିଏ କିଛିହେଲେ ଉତ୍ପାଦନକରେନା; ଯେପରି, ପ୍ରଲେତାରିଏତ୍ ଭିତରେ ଦେଖାଦେଇଚି ଲେବର୍-ଆରିଷ୍ଟୋକ୍ର୍ୟାସି; ଏବଂ ସର୍ବୋପରି, ପୃଥିବୀକୁ ଏପରି ଯୁଯୁତ୍ସୁଶିବିରରେ ବିଭାଜିତ କରିଦେଇଚି ଯେ ଯୁଦ୍ଧ ହୋଇପଡ଼ିଚି ଅନିର୍ବାର୍ଯ୍ୟ । ମନୋପଲି ଏଥର ପୃଥିବୀକୁ ଆଣିଚି ଏକଛତ୍ର ଅଦ୍ୱିତୀୟ ଅର୍ଥବ୍ୟବସ୍ଥା ଅଧୀନକୁ; ସେ ଅର୍ଥବ୍ୟବସ୍ଥା ପ୍ରରୋଚିତକରିଚି ଯୋଉ ଯୁଦ୍ଧକୁ, ତା ବିଶ୍ୱଯୁଦ୍ଧ । ଶୋଷିତ-ନିପୀଡ଼ିତ ଏଥର ଯୋଉ ଯୁଦ୍ଧକରିବ, କୋଉ ପୁଞ୍ଜିପତି କି ଶାସକବର୍ଗ ବିରୋଧରେ ନୁହେଁ, ଇତିହାସ ଦେଖିବ ସାମ୍ରାଜ୍ୟବାଦ ବିରୋଧରେ ପ୍ରଜାର ସର୍ବପ୍ରଥମ ସଂଗ୍ରାମ । ଉପନିବେଶର ଶ୍ରମଶକ୍ତିକୁ ଶୋଷଣକରି କ୍ୟାପିଟାଲ୍‌ର ଖାଲି ଶ୍ରୀବୃଦ୍ଧି କରେନା ସାମ୍ରାଜ୍ୟବାଦ, it simultaneously transforms their whole social structure and draws them into the capitalist system; ଅର୍ଥାତ୍, ଶୋଷଣଲବ୍ଧ ମୂଳଧନ ଉପନିବେଶରୁ ରପ୍ତାନିକରିବା ପ୍ରକ୍ରିୟାରେ ପ୍ରଜାର ସମାଜସଂଗଠନ ଭିତରେ ସାମ୍ରାଜ୍ୟବାଦ ସଂସ୍ଥାପନକରିଦିଏ ଧନତାନ୍ତ୍ରିକ ସମ୍ପର୍କ; ପଣ୍ୟ-ବିନିମୟ ସମ୍ପର୍କ ଘୋଡ଼ାଇପକାଏ ସାମାଜିକ, ସାଂସ୍କୃତିକ, ମାନବିକ ପ୍ରକାର ସକଳ ଆଦାନପ୍ରଦାନ । ଆଇଡିୟଲଜିକ୍ୟାଲ୍ ପରିଣତି ତେଣୁ the onset of the struggle for national independence । କୋଉ ଯାନ୍ତ୍ରିକ ପ୍ରଣାଳୀରେ ଘଟେନା ଏଗୁଡ଼ାକ,

ପ୍ରତିରୋଧର ସ୍ୱାଭାବିକ ଶକ୍ତିକୁ ସଂଗଠିତକରିବାକୁ ପଡ଼େ, ସାକ୍ଷାତ୍ ପରିସ୍ଥିତି ବଦଳିଯିବା ସଙ୍ଗେ ସଙ୍ଗେ ବଦଳିଯାଏ ସଂଗଠନର ଆଭିମୁଖ୍ୟ, ବଦଳିଯାଏ ସଂଗଠନର ଗଢ଼ଣ, ବଦଳିଯାଏ ସଂଗ୍ରାମର ରଣକୌଶଳ । ଏ ଭାବରେ ଆଗକୁ ଯାଉଯାଉଁ କେତେନାକେତେ ବାଧାବିପଦ ଆସେ; ଉପସ୍ଥିତ ଅବସ୍ଥାକୁ ବିଶ୍ଳେଷଣକରି ପ୍ରତିକାର ଖୋଜିବାକୁ ପଡ଼େ, ଜୟ-ପରାଜୟ ଚିନ୍ତା ସେଥିପାଇଁ କାମର କଥା ନୁହେଁ; କାମରେ ଯେତିକି ସମ୍ଭାଳିହେବ ସେତିକି ଅଗ୍ରରିବ ସଂଗ୍ରାମୀ । କହିବାବେଳେ ପୁଣି ଚେତାଇଦେଇଚନ୍ତି, ଯୋଉ ଜର୍ମାନୀ ଆଉ ଇତାଲି ଅନୈକ୍ୟ ଆଉ ଦମନ ବିପକ୍ଷରେ ସଂଘର୍ଷକରି ମୁକ୍ତିକାମୀ ଉପନିବେଶମାନଙ୍କ ଆଦର୍ଶ ହୋଇଥିଲେ, ମନୋପଲି ପୁଞ୍ଜି ଏକ୍ଷଣି ଲୋକଙ୍କୁ ସେଠି ଏମିତି କାବୁକରିଚି ଯେ ବିବାକ ହୋଇପଡ଼ିଚନ୍ତି ସାମ୍ରାଜ୍ୟବାଦୀ; ତଫାତ୍ ଖାଲି ଏତିକି ଯେ ଯୁଦ୍ଧରେ ସେମାନଙ୍କ ପ୍ରତିପକ୍ଷ ଅପରାପର ସାମ୍ରାଜ୍ୟବାଦୀ ଶକ୍ତି; ସ୍ୱୟଂ ସାମ୍ରାଜ୍ୟବାଦ ନୁହେଁ ...they are forced into the context of imperialist rivalry between the world powers ।

ସଂଗ୍ରାମର ଐତିହାସିକ ମୂଲ୍ୟ, ସେଥିପାଇଁ, ଆକଳନକରିବା ଦରକାର ମାନବମୁକ୍ତି ଆନ୍ଦୋଳନ ସହିତ ତାର ପରିଣାମକୁ ଯୁକ୍ତକରି, ପ୍ରଲେତାରିଏତ୍‌ର ଶ୍ରେଣୀସଂଗ୍ରାମ ସହିତ ଯୁକ୍ତକରି, କାହିଁକିନା, ଡାୟଲେକ୍‌ଟିକ୍ ଖାଲି ଦାର୍ଶନିକ ଅବବୋଧ ନୁହେଁ; ନୁହେଁ ବୋଲି, ସମାଜବିକାଶ ତା ଆଖିକୁ ଦିଶେ ସ୍ୱବିରୋଧ । ଶ୍ରେଣୀବିଭାଜିତ ସମାଜରେ ଐକ୍ୟ ବା ସଂହତି ଯେହେତୁ ପ୍ରକୃତରେ ବିମୂର୍ତ୍ତ, ସମାଜଶରୀରରେ ଯେତେରକମ ବୈପରୀତ୍ୟ କର୍ମରତ, ତନ୍ମଧ୍ୟସ୍ଥ କ୍ରିୟା-ପ୍ରତିକ୍ରିୟା ଅବିରତ ତିଆରିକରିଥିଲେ ସ୍ୱଳ୍ପାୟୁ ଭଙ୍ଗୁର କିଛି ପ୍ରତିଫଳ ଏବଂ କରେ ବୋଲି, ଏକପ୍ରକାର ରୂପାନ୍ତରରୁ ଭିନ୍ନ ପ୍ରକାର ରୂପାନ୍ତରକୁ ଯିବାକୁ ବାଧ୍ୟହୁଏ । ବାଧ୍ୟହୁଏ କାହିଁକିନା, କଣ୍ଟ୍ରାଡିକ୍‌ସନ୍ ରୂପକ ସଂଘାତ ବାଧ୍ୟକରେ କ୍ରମାଗତ ରୂପାନ୍ତର । ସେଇ ପ୍ରେକ୍ଷିତରେ ଯୁଗଧର୍ମକୁ ହୃଦୟଙ୍ଗମ କରିପାରିଲେ, ଶ୍ରମଜୀବୀଶ୍ରେଣୀ ବୁଝିପାରିବ ଯେ ମହାଯୁଦ୍ଧ, ପ୍ରକୃତ ପ୍ରସ୍ତାବରେ, ସାମ୍ରାଜ୍ୟବାଦର ନ୍ୟାଯ୍ୟ ପରିଣାମ । ଆପଣା ଦେଶର ଗୃହଯୁଦ୍ଧ ମଧ୍ୟ, ସେଇ ସାମ୍ରାଜ୍ୟବାଦକୁ ମଦତ୍‌ଯୋଗାଉଥିବା ଶ୍ରେଣୀକୁ ଧ୍ୱଂସକରିବାପାଇଁ ଅଭିପ୍ରେତ । ସେତେବେଳେ ସାରାପୃଥିବୀକୁ ଚାହିଁଦେଖିବ, ତାଆରି ଭଳି ଦୁର୍ଗତ, ଯେତେ ଯୋଉଠି ସଂଗଠିତ ଶକ୍ତି ଘେନି ମୁକାବିଲାକରୁଚନ୍ତି ଶତ୍ରୁକୁ, ସମସ୍ତେ ତାର ସହଯୋଦ୍ଧା, ସମସ୍ତଙ୍କ ମତଲବ୍ ଏକାଭଳି, ମାନେ, ଶ୍ରେଣୀଚେତନା ଅଭିନ୍ନ । ସେଥିପାଇଁ ଲେନିନ୍ ଗଢ଼ି ତୋଳିଚନ୍ତି କମିଉନିଷ୍ଟ ଇଣ୍ଟରନ୍ୟାସନାଲ୍ (କୋମିଟର୍ନ) । ବସ୍ତୁତଃ ବିଶ୍ୱସ୍ତରରେ

ବଲ୍‌ସେଭିକ୍ ପାର୍ଟି । ତାର ସଦସ୍ୟ ଥିଲେ ଭାରତରୁ ଏମ୍.ଏନ୍.ରାୟ । ଅକ୍ଟୋବର୍ ବିପ୍ଳବରୁ ମାତ୍ର ସାତବର୍ଷ ଭିତରେ ୧୯୨୪ରେ ଲେନିନ୍‌ଙ୍କ ତିରୋଧାନ । ତହିଁଉତାରୁ ପାର୍ଟି ଓ ରାଷ୍ଟ୍ରର କର୍ଣ୍ଣଧାର ହୋଇଚନ୍ତି ଜସିଫ୍ ଷ୍ଟାଲିନ୍ । ଏବଂ ତାଙ୍କରି ଅମଳରେ ଲାଗିଚି ଦ୍ୱିତୀୟ ମହାଯୁଦ୍ଧ(୧୯୩୯-୪୫); ଯୁଦ୍ଧ ଅବ୍ୟବହିତରେ ଧରାପୃଷ୍ଠରୁ ଅପସୃତ ହୋଇଚି ଉପନିବେଶ ସାଙ୍ଗକୁ ଔପନିବେଶିକତା ।

ଔପନିବେଶିକତା ଅବଲୁପ୍ତ ହେବାରୁ ଅଗ୍ରସର ଧନତନ୍ତ୍ରକୁ ସୋସାଲିଜ୍ମ ସଂକ୍ରମଣରୁ ରକ୍ଷାକରିବାପାଇଁ, ତଥାକଥିତ ଗଣତନ୍ତ୍ରଗୁଡ଼ିକରେ ପ୍ରବର୍ତ୍ତିତହୋଇଚି ଉତ୍କୋଚପ୍ରବଣ ଅର୍ଥନୀତି; ଅର୍ଥାତ୍, ଜନମଙ୍ଗଳ ରାଷ୍ଟ୍ରବ୍ୟବସ୍ଥାରେ ପୂର୍ଣ୍ଣକର୍ମସଂସ୍ଥାନ ଅର୍ଥନୀତି । କ୍ୟାପିଟାଲ୍‌ର ବିଶ୍ୱାୟନ ଯୁଗରେ ତେଣୁ ଭାବିବା କଥା, ବିନା ବୈଦେଶିକ ସାହାଯ୍ୟରେ, ବିନା ବୈଦେଶିକ ପୁଞ୍ଜି-ପ୍ରଯୁକ୍ତି-ବିଶେଷଜ୍ଞ ସହାୟତାରେ, ମାତ୍ର କୋଡ଼ିଏବର୍ଷ ଭିତରେ ଷ୍ଟାଲିନ୍ କେମିତି କରିପାରିଲେ ଅବିକଶିତ ସୋଭିଏଟ୍ ଇଉନିୟନ୍‌ର ସାମରିକ ଓ ବୈଷୟିକ ସାମର୍ଥ୍ୟକୁ ଇଉରୋପ-ଆମେରିକାର ସମକକ୍ଷ ? ଏବଂ ସେଇ ଐତିହାସିକ ମୁହୂର୍ତ୍ତରେ ଉପନୀତହେବାକୁ ସମାଜତନ୍ତ୍ର ଅନ୍ୟତ୍ର ହୋଇଚି କେତେଦୂର ପୂର୍ଣ୍ଣକାମ ? କାହିଁକିନା, କୋଉହେଲେ ସଦର୍ଥରେ ସମାଜତନ୍ତ୍ର କେବଳ ଉଦ୍‌ବୃତ୍ତସ୍ଫୂପୀକରଣ ନୁହେଁ କି ଦୁର୍ଦ୍ଧର୍ଷ ସମରସଜ୍ଜା ନୁହେଁ । ଆଉ, ସମାଜତନ୍ତ୍ରକୁ ବହିପଢ଼ି କେହି ପାଇନାହିଁ, କି ଜାତୀୟତାବାଦ ଉନ୍ମାଦନାରୁ । ସମାଜତନ୍ତ୍ରର ଉନ୍ମେଷ ଯୋଉଠି ଘଟିଚି, ଘଟିଚି ସେଇ ଇତିହାସବୋଧରୁ, ଯୋଉ ବୋଧ ଦୈନନ୍ଦିନ ଜୀବନନିର୍ବାହରେ ରଖିଯାଏ କ୍ରମାଗତ ଘାତ-ପ୍ରତିଘାତର ଅଲିଭା ଦାଗ । ଘଟଣା ଯେତେବେଳେ ଘଟେ, ଐତିହାସିକଭାବେ ଅନିବାର୍ଯ୍ୟ ବୋଲି ଘଟେନା; ଘଟେନା ବୋଲି, ବିପ୍ଳବକୁ କେବେହେଲେ ଲେନିନ୍ ଭାବିନାହାଁନ୍ତି ଆକସ୍ମିକ । ପର୍ଯ୍ୟାୟରୁ ପର୍ଯ୍ୟାୟ ଉତ୍ତୀର୍ଣ୍ଣହୋଇ ଲୋକ ଅର୍ଜନକରିଚନ୍ତି ଇତିହାସବୋଧ, ସୋସାଲିଜ୍ମର ଆବଶ୍ୟକତା ବୋଧ । ସୋସାଲିଜ୍ମର ଅପରିଣତ ପ୍ରକଳ୍ପକୁ ଆଗେଇନେବା ପରିବର୍ତ୍ତେ ଷ୍ଟାଲିନ୍ ସର୍ବଶକ୍ତି ନିଯୋଗକରିଚନ୍ତି, ଋଷିଆକୁ କରିବେ କେମିତି ଅନ୍ୟତମ ବିଶ୍ୱଶକ୍ତି, କ୍ୟାପିଟାଲ୍‌ର ଅପରାଜେୟ ପ୍ରତିପକ୍ଷ; ଅର୍ଥାତ୍, ପ୍ରତିଦ୍ୱନ୍ଦ୍ୱୀ ଏକ କ୍ଷମତାକେନ୍ଦ୍ର । ତାଙ୍କ ଜୀବଦ୍ଦଶାରେ ହିଁ ସେ ଉଦ୍ଦେଶ୍ୟ ସାଧିତହୋଇଚି ଶତକଡ଼ା ଶହେ; ମାତ୍ର ମାର୍କ୍ସୀୟ ମୂଲ୍ୟମାନରେ ତାକୁ ସୋସାଲିଜ୍ମ କୁହାଯାଏନା । କମିଉନିଜ୍ମ ଅଭୂତପୂର୍ବ ଏକ ଉତ୍ତରଣ; ସ୍ୱୟଂ ମାର୍କ୍ସ ମଧ୍ୟ ସେଠି ପହଞ୍ଚିପାରିନାହାଁନ୍ତି; ଲେନିନ୍ ଯାଇଚନ୍ତି ଯଥାସାଧ୍ୟ ବହୁଦୂର ପ୍ରକ୍ରିୟାଟା ଯଦିଓ ଦୀର୍ଘତର ଓ ସମୟସାଧ୍ୟ । ମାତ୍ର ଷ୍ଟାଲିନ୍ ଚାଲିଚନ୍ତି ବାଟଛାଡ଼ି ଅବାଟରେ; ବଞ୍ଚିଥିଲେ, ମାର୍କ୍ସ କହିଥାନ୍ତେ, 'ଦର୍ଶନର ଦାରିଦ୍ର୍ୟ' । କହିଥାନ୍ତେ

କାହିଁକିନା, ସୋସାଲିଜ୍ମ ହେଉ କି କମିଉନିଜ୍ମ, ସମାଜରୂପାନ୍ତରର ଗୋଟିଏ ଗୋଟିଏ ପର୍ଯ୍ୟାୟ ମାତ୍ର; ମାର୍କ୍ସଚିନ୍ତା କିନ୍ତୁ ଏକ ଜୀବନଦର୍ଶନ । ଏବଂ ସେଇ ସୂତ୍ରରେ, ସମାଜବିକାଶର ଯେକୌଣସି ପର୍ଯ୍ୟାୟ ଅପେକ୍ଷା ପରାର୍ଥବାଦୀ ମଣିଷ ସକାଶେ ଜୀବନବ୍ୟାପୀ ଅନୁଶୀଳନର ଅନୁପ୍ରେରଣା । କ୍ୟାପିଟାଲ୍‌ର ଦୌରାତ୍ମ୍ୟ ସରିଗଲେ କିମ୍ବା ସୋସାଲିଜ୍ମ କମିଉନିଜ୍ମର ଅଧିଗତହେଲେ, ମାର୍କ୍ସବାଦ ସରିଯାଏନା; ଜୀବନକୁ ବାହ୍ୟ ବନ୍ଧନରୁ କମିଉନିଜ୍ମ ମୁକ୍ତକରିଦେଲେ ସୁଦ୍ଧା, ନିହିତ ସାମର୍ଥ୍ୟର ଶୀର୍ଷରେ ମଣିଷ ପହଞ୍ଚୁପାରେନା । ତଥାପି ନିର୍ମାଣକରୁଥାଏ ଇତିହାସ । ଷ୍ଟାଲିନ୍ ଭାବିଚନ୍ତି, କ୍ଷମତାର ନିରଙ୍କୁଶ ଉପଯୋଗ ହିଁ ନିହିତ ସାମର୍ଥ୍ୟର ଚରମ ବିକାଶ; ଅଥଚ ଲେନିନ୍ ତାଙ୍କୁ ଶିଖାଇଥିଲେ, ଦର୍ଶନନଭିତ୍ତି ଅଭାବରେ କର୍ମଧାରା ଯିବ ଅବାଟରେ । ଷ୍ଟାଲିନ୍ ଭାବିଚନ୍ତି ସାମରିକ/ରାଜନୀତିକ କ୍ଷମତା ହିଁ ସେଇ ଦର୍ଶନଭିତ୍ତି, ସେଇ କ୍ଷମତା ହୋଇଚି ଯେହେତୁ ଧନତନ୍ତ୍ରର ଭୀତିର କାରଣ । ସେଥିପାଇଁ ୧୯୪୩ରେ ଭାଙ୍ଗିଦେଇଚନ୍ତି କମିଉନିଷ୍ଟ୍ ଆନ୍ତର୍ଜାତିକ । ସୋଭିଏଟ୍ ଇଉନିୟନ୍‌ର ସମାଜତାନ୍ତ୍ରିକ ଆନ୍ଦୋଳନରୁ ଅବଶିଷ୍ଟ ପୃଥିବୀ ହୋଇଯାଇଚି ବିଚ୍ଛିନ୍ନ; ସର୍ବୋପରି ଷ୍ଟାଲିନ୍ ଘୋଷଣାକରିଚନ୍ତି 'Socialism in one country' ! ପ୍ରତିକ୍ରିୟାରେ, କମିଉନିଷ୍ଟ୍ ଇଣ୍ଟର୍‌ନ୍ୟାସନାଲ୍‌ରୁ ବିତାଡ଼ିତ ମାନବେନ୍ଦ୍ରନାଥ ରାୟ, ଏଇ ବ୍ୟତିକ୍ରମଗୁଡ଼ାକୁ କହିଚନ୍ତି, Nationalism painted red ଅଥବା Red Napoleonism !

ବୁର୍ଜୋୟା ନେତୃତ୍ୱରେ ଉଗ୍ର ଜାତୀୟତାବାଦ ହୋଇଉଠେ ଜନଗଣଙ୍କ ସମ୍ପତ୍ତି, ଯେପରି ମୁସୋଲିନିଙ୍କ ଫ୍ୟାସିବାଦ । ରସିଆରେ ତାର ବ୍ୟତିକ୍ରମ ଘଟିନାହିଁ, କାହିଁକିନା, ନିଜେ ଷ୍ଟାଲିନ୍ ଲେଖିଯାଇଚନ୍ତି, ...And it was possible to do that because it was a revolution from above, because the revolution was accomplished on the initiative of the existing power.. । ନିର୍ବିତ୍ତର ବିପ୍ଳବରୁ ଉଦ୍‌ଗତହୋଇଥିଲା ସୋଭିଏଟ୍ ରାଷ୍ଟ୍ର; ନିର୍ବିତ୍ତର ବିପ୍ଳବକୁ ନିର୍ମୂଳକରି କର୍ମବୀର ଷ୍ଟାଲିନ୍ ସମାଧାକଲେ ଶିଳ୍ପବିପ୍ଳବ, ଶିଳ୍ପବିପ୍ଳବକୁ ଧନତନ୍ତ୍ରର ସମକକ୍ଷ କରିବାକୁ ଯାଇ କରିବାକୁ ପଡ଼ିଲା ଶ୍ରମିକ-ପୀଡ଼ନ, କୃଷକ-ଦମନ; ଆଉ ପ୍ରତିବାଦକଲା ଯୋଉ ବୁଦ୍ଧିଜୀବୀ, ତା କପାଳରେ ଜୁଟିଲା ଗୁଲାଗ କି ଆକସ୍ମିକ ମୃତ୍ୟୁ । ରସିଆ ବିଶ୍ୱଶକ୍ତିରେ ପରିଣତହେଲା ସତ, ମାତ୍ର ସଂଗ୍ରାମର ଘଟିଗଲା ଅପମୃତ୍ୟୁ । ଅପମୃତ୍ୟୁ କାହିଁକିନା, ଷ୍ଟାଲିନ୍ ଜମାନାରେ ସମାଜତନ୍ତ୍ରକୁ କେନ୍ଦ୍ରକରି କୌଣସି ପୁନର୍ଜିଜ୍ଞାସା ଗଢ଼ିଉଠିନାହିଁ ରସିଆରେ, କିମ୍ବା ରସିଆର ଉପଗ୍ରହ ସଦୃଶ ଅନ୍ୟ କୋଉ କମିଉନିଷ୍ଟ୍‌ପାର୍ଟି ଭିତରେ ।

## ।। ଆଠ ।।

ପୁନର୍ଜିଜ୍ଞାସା ଗଢ଼ିଉଠିନାହିଁ ବୋଲି, ଆକ୍‌ଚୁଆଲି ଇକ୍‌ସିଷ୍ଟିଙ୍ଗ୍ ସୋସାଲିଜ୍ମର ପତନ ଉଲ୍ଲସିତକରିଚି ପୁଞ୍ଜିବାଦୀ ଶିବିରକୁ; ଏତେ ପରିମାଣରେ ଯେ ଘୋଷଣାକରିଦେଇଚନ୍ତି; ମାର୍କ୍ସିଜ୍ମ ଇଜ୍ ଡେଡ୍, ଏଣ୍ଡ ଅବ୍ ହିଷ୍ଟ୍ରି । ତା ମାନେ ନୁହେଁ ଯେ, ସୋଭିଏଟ୍ ଇଉନିୟନ୍ ବା ପୂର୍ବ-ଇଉରୋପରେ ଯା ଘଟିଚି, ତା ସହିତ ମାର୍କ୍ସବାଦର ସମ୍ପର୍କ ନାହିଁ; ମାତ୍ର ଯୋଗାଯୋଗର ଚରିତ୍ର ଐତିହାସିକ; ଅର୍ଥାତ୍, ଇତିହାସଗତିରେ ମାର୍କ୍ସବାଦର ପ୍ରୟୋଗପଦ୍ଧତିର ଏକ ଅନ୍ତର୍ବର୍ତ୍ତୀ ପର୍ଯ୍ୟାୟ । ମହାଚୀନ୍, ଭିଏତ୍‌ନାମ୍, ଉତ୍ତର-କୋରିଆ, କୁବା, ଚିଲି, ଭେନେଜୁଏଲା ପ୍ରଭୃତି ଭୂଖଣ୍ଡରେ ମାର୍କ୍ସବାଦପ୍ରୟୋଗର ଇତିହାସ ଏକାରକମ ନୁହେଁ; ତେଣୁ କୋଉହେଲେ ଚୂଡ଼ାନ୍ତସିଦ୍ଧାନ୍ତ ନିର୍ଭୁଲ୍ ହୋଇପାରେନା; କାରଣ, ଯା ଘଟିଚି, ଘଟୁଚି କିମ୍ବା ଘଟିବ, କୋଉଗୋଟାକ ହେଲେ ବିନିମୟଯୋଗ୍ୟ ଅଭିଜ୍ଞତା ନୁହେଁ । ମାର୍କ୍ସବାଦ ଖାଲି ସମାଜ-ରୂପାନ୍ତର ପରିକଳ୍ପନା ନୁହେଁ, ଏକାଧାରରେ ରାଜନୀତିକ ଅନୁଶୀଳନ (ପ୍ର୍ୟାକ୍ଟିସ୍), ଏବଂ ଉଭୟର ସମନ୍ୱୟ ଲୋଡ଼ୁଚି ସ୍ଥିତାବସ୍ଥାର ଆମୂଳ ପରିବର୍ତ୍ତନ; ଇଣ୍ଟରପ୍ରିଟେସନ୍ ବା ଟିକାଟିପ୍ପଣୀ ନୁହେଁ । ଅନ୍ୟ ଶବ୍ଦରେ, ପ୍ରଚଳିତ ବ୍ୟଞ୍ଜନାରେ ପରିବର୍ତ୍ତନ ନୁହେଁ, ସମଗ୍ର ମାନବପ୍ରଜାତିକୁ ଅମାନବିକ ଜୀବନଯାପନରୁ ଉଦ୍ଧାର । କିନ୍ତୁ, 'ଅମାନବିକ' କହିଲେ, ବୁଝନ୍ତି କ'ଣ ମାର୍କ୍ସ ? ଆରିସ୍ଟୋଟ୍‌ଲ୍ଙ୍କ ସମକାଳରେ ସ୍ଲେଭେରି ବା ଦାସପ୍ରଥା ଥିଲା ଅମାନବିକ, ମାତ୍ର ଦାର୍ଶନିକଙ୍କ ଦୃଷ୍ଟିରେ ପଡ଼ିନାହିଁ । ତେଣୁ ସ୍ଥାନ-କାଳ-ପାତ୍ର ଭେଦରେ 'ଅମାନବିକ'ର ମର୍ମାର୍ଥ ବିଭିନ୍ନ ହୋଇପାରେ; ହୋଇପାରେ ବୋଲି, ଏକବିଂଶ ଶତକରେ 'କ୍ୟାପିଟାଲିସ୍ମ'କୁ ଧରାଯିବ ଅମାନବିକ; ଅର୍ଥାତ୍, ସମାଜରୂପାନ୍ତର ଏକ କର୍ମଭାର (ଟାସ୍‌କ), ଆଉ ଚେତନାର ବିକଚନ ଏକାସାଙ୍ଗରେ । କାହିଁକିନା, ଚେତନାର ସ୍ୱଚ୍ଛତା କେବଳ ସ୍ଥିରକରିପାରେ କି ଜିନିଷ ବାସ୍ତବିକ ଅମାନବିକ, ଯୋଉ ସ୍ୱଚ୍ଛତା ଅଭାବରେ ଆରିସ୍ଟୋଟ୍‌ଲ୍ ସ୍ଲେଭେରିକୁ ଅମାନବିକ ବୋଲି ଚିହ୍ନିପାରିନାହାଁନ୍ତି । କିନ୍ତୁ 'ଅମାନବିକ' ଯେହେତୁ 'ମାନବିକ'ର ବିପରୀତ ପଦ, 'ମାନବ'ର ସଂଜ୍ଞାନିରୂପଣ ଦରକାର ହେବ ସବାଆଗେ । ମାତ୍ର ମାର୍କ୍ସଚିନ୍ତାରେ, ନିଜକୁ ସଂଜ୍ଞାବଦ୍ଧକରିବା ପ୍ରତ୍ୟେକ ମନୁଷ୍ୟର ନିହିତ ଅନ୍ତର୍ଗୂଢ଼ ସାମର୍ଥ୍ୟ । ସେଥିପାଇଁ ବିଶେଷଜ୍ଞର ସହାୟତା ଦରକାର ହୁଏନା । ମାର୍କ୍ସବାଦ ଓ ଇଉଟୋପିଆ ଭିତରେ ମୌଳିକ ତଫାତ୍ ଏଇଠି । ଚେତନାର ବିକାଶ ସଙ୍ଗେସଙ୍ଗେ ମଣିଷ ବୁଝିଚି ଜୀବ ଓ ଜଡ଼ ମଧ୍ୟସ୍ଥ ପ୍ରଭେଦ ଆଉ ଜୀବଜଗତରେ ନିଜ ଆପେକ୍ଷିକ ଅବସ୍ଥାନ; ସେଇ ଅବସ୍ଥାନର ପୁଷ୍ଟି ସାଧନ ପାଇଁ ପ୍ରୟୋଜନ ସମାଜ । ତେଣୁ ପ୍ରତୀୟମାନ (ଆପିଏରେନ୍ସ)

ଓ ଅନ୍ତଃସାର (ଏସେନ୍ସ) ଭଳି ଦାର୍ଶନିକ ସମସ୍ୟା ପ୍ରକୃତରେ ବିକାଶଶୀଳ ଚେତନାର ସମସ୍ୟା; ଚେତନା ବିକଶିତହେଲେ ମଣିଷ ପ୍ରତୀୟମାନ ଠାରୁ ପ୍ରକୃତକୁ ଅଲଗା କରିପାରେ, ଇତିହାସଗତିରେ କରିଆସୁଚି । ଅଲଗାକରିବାର ଏଇ ଅଭ୍ୟାସ (ଇଣ୍ଟେଲେକ୍‌ଚୁଆଲ୍ ଆ୍ୟାକ୍ଟିଭିଟି) ବଦଳାଇଦିଏ ଜୀବନନିର୍ବାହର କର୍ମଧାରା (ପ୍ର୍ୟାକ୍‌ସିସ୍) । ଅଥଚ ଜଗତ୍‌ବିଖ୍ୟାତ ମନୀଷୀ, ହେଗ୍ଲ କି ଆ୍ୟାଡାମ୍‌ସ୍ମିଥ୍ କି ରିକାଡ୍ରୋ, ଅଲଗାକରି ପାରିନାହାଁନ୍ତି ପ୍ରତୀୟମାନରୁ ଅନ୍ତଃସାର । ପାରିନାହାଁନ୍ତି ବୋଲି, ଚିହ୍ନିପାରିନାହାଁନ୍ତି 'ପୁଞ୍ଜି'ର ଭୟାନକ ଅମାନବିକତା; ପୁଣି ଶାରୀରିକ ଓ ମାନସିକ ଶ୍ରମର ସୃଷ୍ଟିଶୀଳତା । ଅର୍ଥାତ୍, ସମଗ୍ର ଜୀବଜଗତରେ ମଣିଷ ଯେ ଏକମାତ୍ର ସର୍ଜନକ୍ଷମ ପ୍ରାଣୀ- ଏଇ ତାର ସଂଜ୍ଞା ଓ ମାନବିକତା । ସେଇ ସର୍ଜନଶୀଳତାର ଗତିପଥରେ ଯାବତୀୟ ବିଦ୍ୟମାନ କି ସମ୍ଭାବ୍ୟ ଅନ୍ତରାୟ ହିଁ ଗୋଟିଏ ଶବ୍ଦରେ, ଅମାନବିକତା । ସାମ୍ୟବାଦୀ ସମାଜର ପରିକଳ୍ପନା ଏଇ ମାର୍କ୍ସବାଦର ଅନ୍ୟତମ ରାଜନୀତିକ ପ୍ରକଳ୍ପ । କିନ୍ତୁ ଚେତନାର ଧାରକ ଓ ବାହକ ବ୍ୟକ୍ତିବିଶେଷ ହେଲେସୁଦ୍ଧା, ଅଭିଳାଷ ପୂରଣ ପାଇଁ ଚେତନା ଯେତେବେଳେ କର୍ମଠ ହୁଏ, ହୋଇଯାଏ ଇଡିୟଲଜି ବା ଭାବାଦର୍ଶ । ସେଇ ଭାବାଦର୍ଶ ଓ ତଦ୍‌ପ୍ରେରିତ କର୍ମଧାରର ସମବାୟରେ ତିଆରିହୁଏ ପ୍ର୍ୟାକ୍‌ସିସ୍ । ସୋସାଲିଜ୍ମ ରୂପକ ଭାବାଦର୍ଶ ତେଣୁ କର୍ମରତ ଚୈତନ୍ୟ; ଭାବରାଜ୍ୟର ପ୍ରତିନିଧି ବା ଡିସ୍‌କୋର୍ସ ନୁହେଁ । ସକ୍ରିୟ ଚୈତନ୍ୟ ଚିହ୍ନାଇଦିଏ କୋଉ ଉପାଦାନ ଅମାନବିକ । ଅମାନବିକତା ତେଣୁ ଧ୍ୟାନଲବ୍ଧ ଭାବବାଦ ନୁହେଁ ଯେ ତାକୁ ଚିହ୍ନଟକରିବ ଆଧ୍ୟାତ୍ମିକ ଡିସ୍‌କୋର୍ସ । କିନ୍ତୁ ପରିତାପର ବିଷୟ, ସରକାରୀ (ଅଫିସିଆଲ) କମିଉନିଷ୍ଟ୍ ମାର୍କ୍ସବାଦକୁ ନେଇ ଥୋଇଚନ୍ତି ଏପରି ଧରାଛୁଆଁ ବାହାରେ ଯେ ମନେହେବ ସତେ ଅବା ଧର୍ମୀୟ ରହସ୍ୟ-ଉଦ୍‌ଘାଟନ !

ଦର୍ଶନବିଦ୍ୟାର ବିଧିବଦ୍ଧ ଛାତ୍ର ହେବା ସତ୍ତ୍ୱେ ପ୍ଲାଟୋ ବା ହେଗ୍ଲଙ୍କ ଭଳି ପେସାଦାର ଦାର୍ଶନିକ ନୁହଁ କାର୍ଲ ମାର୍କ୍ସ; ନୁହଁ ବୋଲି, ଫିଲଜଫି ତାଙ୍କପାଇଁ ଧ୍ୟାନବସ୍ତୁ ନୁହେଁ । ଏପରିକି, ବାଦାନୁବାଦ ସମାଧାନ ଲାଗି ମଧ୍ୟ ନିରପେକ୍ଷ ସୂତ୍ରଶୃଙ୍ଖଳା ନୁହେଁ; କାହିଁକିନା, ଚିନ୍ତାର ବସ୍ତୁଭିତ୍ତି ବଦଳିଯିବା ସଙ୍ଗେସଙ୍ଗେ ଚିନ୍ତାର ଗତିଧାରାରେ ମଧ୍ୟ ଘଟିଯାଏ ନୂଆନୂଆ ସୂତ୍ରପାତ । ଅର୍ଥାତ୍, ଆରମ୍ଭବିନ୍ଦୁ ସ୍ଥିର ନୁହେଁ କି ଉପସଂହାର ସ୍ଥିର ନୁହେଁ; ଏବଂ ଚିରଅପସୃୟମାଣ ହୁଏ ଯଦି ତତ୍ତ୍ୱ ଓ କର୍ମର ଦ୍ୱାନ୍ଦ୍ୱିକତା, ଫିଲଜଫି ତିଆରିକରିବ କେମିତି କୋଉହେଲେ ଅଚଞ୍ଚଳ ଧ୍ୟାନଜଗତ ? ଏବଂ କୋଉହେଲେ ଧ୍ୟାନଜଗତର ଆଧାର କି ଆଧେୟ ଜୀବନର ଗତିଶୀଳତାକୁ ଯେହେତୁ ଓଗାଳିପାରେନା, ଆଗକୁଯିବା ବି ହୋଇପାରେନା କର୍ମଧାରାର ଅନୁପ୍ରେରଣା । ବିଦ୍ୟମାନ ଯାବତୀୟ

ଦର୍ଶନପରମ୍ପରାରୁ ଏଇ ବିନ୍ଦୁରେ ମାର୍କ୍ସବାଦର ପ୍ରସ୍ଥାନାରମ୍ଭ, ମନସ୍ୱୀଙ୍କ ପରିଭାଷାରେ 'ରପ୍‌ଚର୍' (=ବିଦାରଣ) । ପରିଣାମରେ, ଫିଲଜଫି ଇତିହାସ ଇକନମିକ୍ସ ସୋସିୟଲଜି—ବିବାକ ହରାଇଚନ୍ତି ମାର୍କ୍ସବାଦରେ ସ୍ୱକୀୟତା ସାଙ୍ଗକୁ ପାରସ୍ପରିକ ବିଭାଜନ । କାହିଁକିନା, ଯାପିତଜୀବନ ଭିତରେ ଏଗୁଡ଼ିକ କେହି କାହାରିଠୁଁ ପୃଥକ ନୁହେଁ; ଏକତ୍ର ସମାବେଶରେ ହିଁ ଜୀବନସଂଗ୍ରାମର 'ଟୋଟାଲିଟି' । ଯେପରି, ଲଜିକ୍ କୁଆଡ଼େ କହିଦିଏ ଅବଶ୍ୟମ୍ଭାବୀ ପରିଣାମ; ପୁଣି ଅଣ୍ଟଲଜି ବ୍ୟକ୍ତକରେ ଅନ୍ତର୍ନିହିତ ଗୁଣାଗୁଣ । ମାତ୍ର ନିତ୍ୟାଭ୍ୟାସରେ ମଣିଷ ଯେଭଳି ଲଜିକ୍ ପ୍ରୟୋଗକରେ, ଯୁକ୍ତିବିଦ୍ୟା ତା ଅନୁମୋଦନ କରେନା; ବରଂ ଶିଖାଇଦିଏ ତର୍କପରିଚ୍ଛଳନାର ନିର୍ଭୁଲ୍ ପଦ୍ଧତି । ଅଣ୍ଟଲଜି ସେମିତି ଜଗତରେ ପରିବ୍ୟାପ୍ତ ଅସଂଖ୍ୟ ସତ୍ତା ଭିତରେ ଈଶ୍ୱରଙ୍କୁ ଦିଏ ସର୍ବୋଚ୍ଚ ଆସନ, କାହିଁକିନା, ଈଶ୍ୱରଙ୍କ ଅସ୍ତିତ୍ୱ ନମାନିଲେ ତାଙ୍କଠୁଁ ବଡ଼ କି ଛୋଟ କୋଉହେଲେ ଅସ୍ତିତ୍ୱ କଳ୍ପନା କରିହେବନାହିଁ । ବସ୍ତୁବାଦୀ, ଭଗବାନଙ୍କ ଜାଗାରେ ବସାଇଚନ୍ତି ପଞ୍ଚଭୂତ, କାହିଁକିନା, ଭୂତ-ଅସ୍ତିତ୍ୱ ବହିର୍ଭୂତ ସକଳ ଅସ୍ତିତ୍ୱ ମଣିଷର ଅନୁମାନ ମାତ୍ର । ମାର୍କ୍ସ ତେଣୁ ସଚେତନ ମଣିଷକୁ ବସାଇଚନ୍ତି ଲଜିକ୍ ଜାଗାରେ; ସାମାଜିକ ସମ୍ପର୍କଗୁଡ଼ାକୁ ଅଣ୍ଟଲଜି ଜାଗାରେ, ଯା ସ୍ଥିରକରିଦିଏ ସମାଜଭିତରେ ବ୍ୟକ୍ତିବିଶେଷର ଆପେକ୍ଷିକ, ଅଥଚ ବାସ୍ତବ, ଅବସ୍ଥାନ । ଅର୍ଥାତ୍, ଲକ୍ଷ୍ୟକରିଚନ୍ତି, ଇତିହାସ-ବିଶ୍ଳେଷଣରୁ କେବଳ ଧରାପଡ଼ିବ ବ୍ୟକ୍ତିବିଶେଷ ଅବିକଳ କି ରୀତିରେ ଲଜିକ୍ ବ୍ୟବହାରକରିଚି ଉତ୍ତରୋତ୍ତର; ଆଉ ତାର ସାଯୁଜ୍ୟ କି ପାରକ୍ୟ (ଆଲିଏନେସନ୍) ସମାଜ-ସମ୍ପର୍କରେ ଧରିଚି ବେଳକୁ ବେଳ କି ପ୍ରକାର ରୂପରେଖ । ଏଭାବରେ, ଲଜିକ୍ ଆଉ ଅଣ୍ଟଲଜିକୁ ଫିଲଜଫିରୁ କାଢ଼ିଆଣି ବ୍ୟବହାରକରିଚନ୍ତି ସମାଜବ୍ୟବସ୍ଥା ଓ ରାଷ୍ଟ୍ରବ୍ୟବସ୍ଥାକୁ ବଦଳାଇଦେବା ପ୍ରକଳ୍ପରେ; ଫଳରେ, ଗଣତନ୍ତ ଦିଶୁଚି ର୍‍ୟାଡିକାଲ୍ । ତେଣୁ, ଦ୍ୱାନ୍ଦ୍ୱିକତାର ବୀଜ ହେଗ୍‌ଲ୍‌ଙ୍କ ପାଖରୁ ଆହରଣକରିଥିଲେ ସୁଦ୍ଧା, ମାର୍କ୍ସଙ୍କ ପ୍ରତୀତି ସମ୍ପୂର୍ଣ୍ଣ ମୌଳିକ; ହେଗ୍‌ଲ୍‌କୁ ବିରୋଧନୁହେଁ କି ଗ୍ରହଣନୁହେଁ । ଏ ମୌଳିକତାର ପ୍ରଧାନ ଗୁଣ ବା ଦୋଷ, ସିଦ୍ଧାନ୍ତଗୁଡ଼ିକ, ବିନା ବ୍ୟତିକ୍ରମରେ, ଓପେନ-ଏଣ୍ଡେଡ୍ ବା ମୁକ୍ତପ୍ରାନ୍ତ; ମାନେ, ବେଦବାକ୍ୟ କି ଗସ୍‌ପେଲ୍ ଟ୍ରୁଥ୍ ନୁହେଁ । ବାସ୍ତବ ପରିସ୍ଥିତି ବିଭିନ୍ନ ହେଲେ (ଇତିହାସ ପ୍ରବାହରେ ଯା ଅନିବାର୍ଯ୍ୟ), ସିଦ୍ଧାନ୍ତ ବି ବଦଳିଯିବ ଅଭିଜ୍ଞତା ତାଡ଼ନାରେ । ମାର୍କ୍ସବାଦ ଏ ବ୍ୟଞ୍ଜନାରେ ଅନନ୍ତ ଅଭିନବତ୍ୱର ଦର୍ଶନ, ଯୋଉ ଅଭିନବତ୍ୱ ନିଜକୁ ପୁରୁଣା ହେବାକୁ ଦିଏନା । ତେଣୁ ଦର୍ଶନ; କିନ୍ତୁ 'ଦର୍ଶନ' ନୁହେଁ; କାହିଁକିନା, ପ୍ଲାଟୋଙ୍କ ଠାରୁ ହେଗ୍‌ଲ୍, ପ୍ରଲମ୍ବିତ ଯୋଉ ଚିନ୍ତାପରମ୍ପରା, କିମ୍ବା ଏପିକିଉରସ୍‌ଙ୍କଠାରୁ ଫୟବାଖ୍, ଦୀର୍ଘାୟିତ ଯୋଉ ପ୍ରତିବାଦୀ ବସ୍ତୁବାଦ, ସବୁଯାକ

ଆମ୍ବସ୍ଥକରିବା ଉତାରୁ ଉପଲଛିକୁ ଆସିଚି 'ଦର୍ଶନ'ର ଅସାରତା; ବିଶେଷତଃ ଯେହେତୁ ଭାବୁକ ଯା ଛାଡ଼ିଯାଇଚନ୍ତି, ସବୁଗୁଡ଼ାକ ବ୍ୟକ୍ତିଗତ ବୟାନ ମାତ୍ର, ଜଗତକୁ ବୁଝିବା ପାଇଁ ବ୍ୟକ୍ତିଗତ ପ୍ରୟାସର ଆନୁପୂର୍ବିକ ବୃତ୍ତାନ୍ତ କେବଳ । ଫଳରେ, ନିଜେ ଯେତେବେଳେ ବିଦାୟନେଇଚନ୍ତି ଜଗତରୁ, ତାଙ୍କ ଦେଖିଥିବା ଜଗତଟା ରହିଯାଇଚି ଯଥାପୂର୍ବଂ ତଥାପରଂ । ବରଂ ବିଦ୍ୟମାନ ଜଗତଟାର ଏକ ଦିବ୍ୟରୂପ ଚିତ୍ରଣକରିଚନ୍ତି କଦାଚିତ୍ । ଜଗତକୁ ଅବଲୋକନକରି ଅସନ୍ତୁଷ୍ଟ ହୋଇନାହାଁନ୍ତି ଜଣେ କେହି । ଗୌତମ ବୁଦ୍ଧ ଅବଶ୍ୟ ସନ୍ତୁଷ୍ଟ ହୋଇନାହାଁନ୍ତି; ସେ ଖବର ହୁଏତ ପହଞ୍ଚିନାହିଁ ମାର୍କ୍ସଙ୍କ ପାଖରେ । କିନ୍ତୁ ବୁଦ୍ଧ ଯେହେତୁ ଲୋଡ଼ିନାହାନ୍ତି ରାଜନୀତିକ ପ୍ରତିକାର, ପ୍ରାସଙ୍ଗିକ ମନେହୋଇନାହାଁନ୍ତି, ବିଶେଷତଃ ମାର୍କ୍ସଙ୍କ ପାଖରୁ ତାଙ୍କ ବ୍ୟବଧାନ ଯେହେତୁ ପ୍ରାୟ ତିନିହଜାର ବର୍ଷ । ଅସନ୍ତୁଷ୍ଟ ନହେଲେ ପରିବର୍ତ୍ତନ କାମନା ମନକୁ ଆସେନା; ପୁଣି, ପରିବର୍ତ୍ତନ କାମନା ଯଦି ବ୍ୟକ୍ତିଗତ ପରିଶୁଦ୍ଧିରେ ସୀମିତ, ଜଗତ-ଉଦ୍ଧାର ଭଳି ବହୁମୁଖୀ ବହୁମାତ୍ରିକ ଉଦ୍ୟୋଗ ପରିଶୁଦ୍ଧିର ସେଇ ସୀମାକୁ ଉପେକ୍ଷାକରିବା ସ୍ୱାଭାବିକ । ଦ୍ୱାନ୍ଦ୍ୱିକତାକୁ ସେଥିପାଇଁ ଫିଲଜଫିର ମର୍ଯ୍ୟାଦା ଦେଇନାହାଁନ୍ତି ମାର୍କ୍ସ; କହିଚନ୍ତି, 'ଡାୟଲେକ୍ଟିକ୍ୟାଲ୍ ମେଥଡ୍'; ପଦ୍ଧତି ମାତ୍ର, ଯୋଉ ପଦ୍ଧତିରେ ନିଜେ ସମନ୍ୱିତ କରିଚନ୍ତି ଅଭିନ୍ନ ମେଳବନ୍ଧନରେ ଦର୍ଶନ, ଇତିହାସ ଓ ଅର୍ଥନୀତି । ଦ୍ୱାନ୍ଦ୍ୱିକତା ତେଣୁ ତାଙ୍କ ଅଭିନବତ୍ୱ ନୁହେଁ । ମାତ୍ର ପରିଶ୍ରମ ଯେ ଗୋଟାଏ ଶକ୍ତି, କାହାରି ଆଖିକୁ ଦିଶିନାହିଁ ତାଙ୍କ ଆଗରୁ । ବିମୂର୍ତ୍ତଧାରଣା ଅବୋଧହେବ ବୋଲି ତାକୁ ଉତ୍ପାଦନ-ଧରଣ ଭିତରେ ସ୍ଥାପିତକରି ସମାଜବିବର୍ତ୍ତନ ପ୍ରବାହରେ ଦେଇଚନ୍ତି ଐତିହାସିକ ମାତ୍ରା । ଏକେବାରେ ଇନ୍ଦ୍ରିୟଗ୍ରାହ୍ୟ କରିନପାରିଲେ ସମାଜବଦଳ ଭଳି ପ୍ରାତ୍ୟହିକ କାର୍ଯ୍ୟକ୍ରମରେ ସେ ଶକ୍ତିକୁ ପ୍ରତ୍ୟକ୍ଷ କରିହେବନାହିଁ । ସେଥିପାଇଁ କ୍ରୀତଦାସ, ଭୂମିଦାସ, ପୁଣି ନଗଦଟଙ୍କା ଗଣିଦେଇ କିଣାଯାଉଥିବା ପରିଶ୍ରମ (wage-labour)କୁ ଆଣି ଛିଡ଼ାକରିଦେଇଚନ୍ତି ବ୍ୟାଖ୍ୟାନ ମଝିରେ । ଫିଲଜଫିର ସଂହତ ଗଠନତନ୍ତ୍ର ଜାଗାରେ ଯା ଗଢ଼ିଉଠିଚି, କୋଉ ଭାବଜଗତ ନୁହେଁ, ରୀତିମତ ବହୁମାତ୍ରିକ ବହୁବାଚନିକ ଏପରି ଡିସ୍କୋର୍ସ ଯା ସମାଜକୁ ବଦଳାଇବା ଭଳି ଉଦ୍‌ବେଗରୁ ଉତ୍ସାରିତ ହୋଇପାରେ କେବଳ । ମାନବିକ ଉଦ୍ୟମରେ ଯେ ସମାଜକୁ ବଦଳାଇଦେଇହୁଏ- ଏଇ ଉପଲବ୍ଧିରୁ ଅଙ୍କୁରିତହୋଇଚି ଯେହେତୁ ବସ୍ତୁବାଦୀ ସୂତ୍ରବିଧି, ନିଃସଙ୍କୋଚରେ କହିଚନ୍ତି, Men make their own history, but not of their own free will; not under circumstances they themselves have chosen but under the given and inherited circumstances with which they are directly

confronted । ଅର୍ଥାତ୍, ଭୂୟୋଦର୍ଶନ ସ୍ୱଶାସିତ କୋଉ କର୍ମଧାରା ନୁହେଁ; ସାମାଜିକ ବାଦବିବାଦ, ବିଶେଷତଃ ଶ୍ରେଣୀବିବାଦରେ ନିଜ ଭୂମିକା କରିଥାଏ ତାକୁ 'ଦର୍ଶନ' ପଦବାଚ୍ୟ; ସାଂସାରିକ/ସାମାଜିକ ଦ୍ୱନ୍ଦ୍ୱ କି ସଂଘାତରେ ଯଦି ଭୂମିକା ନେଇନପାରେ, ତେବେ ତ ସେ ଅ-ଦର୍ଶନ ବା ଅନ୍ଧ! ଭାଷ୍ୟକାର ନାଁଦେଇଚନ୍ତି 'ହିଷ୍ଟ୍ରିକ୍ୟାଲ୍ ମେଟିରିଆଲିଜ୍ମ' । ମାର୍କ୍ସ ନିଜେ କୋଉ ism କଥା ଲେଖିନାହାନ୍ତି; ଏପରିକି, 'କ୍ୟାପିଟାଲିଜ୍ମ ଶବ୍ଦ ମଧ୍ୟ ମିଳିବନାହିଁ ତାଙ୍କ ରଚନାବଳୀରୁ, କାହିଁକିନା, 'ଇଜ୍ମ' ମାତ୍ରକେ ଆବ୍‌ଷ୍ଟ୍ରାକ୍‌ସନ୍(ବିମୂର୍ତ୍ତ), ସୁପରଷ୍ଟ୍ରକ୍‌ଚର୍‌ରେ ତାର ବିଚରଣ ।

ଏଇ ତିକ୍ତତା ମୂଳରେ କାମକରିଚି ଫରାସୀ ବିପ୍ଳବର ବ୍ୟର୍ଥତା । ଯୋଉ ବିପ୍ଳବ ସମଗ୍ର ମାନବସମାଜକୁ ଦେଖାଇଥିଲା ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱର ସ୍ୱପ୍ନ, ନେପୋଲିଅଁ ସେ ସ୍ୱପ୍ନକୁ ପ୍ରମାଣିତ କରିଦେଲେ ଶୂନ୍ୟଗର୍ଭ ଦାର୍ଶନିକତା ବୋଲି । ପୃଥିବୀ ମାନେ, ସେତେବେଳେ, ଖାଲି ଇଉରୋପ୍; ଅବଶିଷ୍ଟ ଭୂଭାଗ ଥିଲା ପରାଧୀନ କିମ୍ବା ପଶ୍ଚାଦ୍‌ପଦ । ସେଇ ଇଉରୋପରେ ଅଷ୍ଟାଦଶ ଶତକରେ ଆରମ୍ଭହୋଇଥିଲା ଯୋଉ ଦୀପାୟନ (ଏନ୍‌ଲାଇଟିନ୍‌ମେଣ୍ଟ) ପର୍ବ, ସେ ଆନ୍ଦୋଳନ ବିଭାଜିତକରିଦେଇଥିଲା ମଧ୍ୟଯୁଗୀୟ ଇଉରୋପକୁ ସ୍ପଷ୍ଟଭାବେ ଆଧୁନିକ ପ୍ରଗତିବାଦରୁ । ପ୍ରଗତି, କାହିଁକିନା, ସପ୍ତଦଶ ଶତକରେ ନିଉଟନ୍ ଓ ଲକ୍ ପ୍ରଭୃତି ପ୍ରବର୍ତ୍ତନକରିଥିଲେ ଯୋଉ ବିଜ୍ଞାନମନସ୍କତା, ତା ପ୍ରଭାବରେ ଧର୍ମୀୟ ବିଧି ଓ ବିଶ୍ୱାସ ଉପରୁ ଆସ୍ଥା ତୁଟିଯାଇ ପ୍ରାଧାନ୍ୟପାଇଥିଲା ଯୁକ୍ତି । ଯୁକ୍ତି ହିଁ ବିବେଚିତ ହୋଇଥିଲା ସତ୍ୟସଂଧାନର (ଜ୍ଞାନାନ୍ୱେଷଣର) ପ୍ରକୃଷ୍ଟ ଅବଲମ୍ବନ । ଫରାସୀ ବିପ୍ଳବ କାରଣରୁ ସବୁଠୁଁ ବେଶି କ୍ଷତିଗ୍ରସ୍ତ ହୋଇଥିଲା ତେଣୁ ଧର୍ମର ଆଧିପତ୍ୟ ଓ ଧର୍ମୀୟ ଅନୁଷ୍ଠାନର ସମ୍ପତ୍ତି । ସାମ୍ୟ-ମୈତ୍ରୀ-ଭ୍ରାତୃତ୍ୱ ତ କୋଉ ଆଧାତ୍ମିକ ବିକାର ନୁହେଁ- ତା ଭିତରେ ଭାବାଦର୍ଶ ଅଛି ଯେତିକି, ଅଧିକାରବୋଧ ତତୋଧିକ । ଏବଂ ଖାଲି ଫ୍ରାନ୍ସ ବା ଇଉରୋପର ନୁହେଁ, ସମଗ୍ର ମାନବ ପ୍ରଜାତିର; ବ୍ୟାପକତାରେ ତେଣୁ ବିଶ୍ୱଜନୀନ ବା ଇଉନିଭର୍‌ସାଲ୍, ଯେପରି ବିଜ୍ଞାନ ବା ଯୁକ୍ତି । ଅଦ୍ୱିତୀୟ ଏଇ ବୌଦ୍ଧିକ ଉପକରଣ ହେଗ୍‌ଲ୍‌ଙ୍କୁ ଯୋଉ ଇତିହାସବୋଧରେ ଉପନୀତ କରିଚି, ତାର ମର୍ମକଥା ହେଲା: ପରମସତ୍ତା ବିଶ୍ୱନିୟନ୍ତା ଇତିହାସ ବାଟଦେଇ ମଣିଷକୁ ଆଗେଇ ନେଉଚନ୍ତି ପୂର୍ଣ୍ଣତା ଆଡ଼କୁ, ଆଉ ଦ୍ୱନ୍ଦ୍ୱକଳହ ବାଦବିବାଦ ଭଳି ଅନ୍ତର୍ବିରୋଧ ସେଇ ଅଗ୍ରଗତିର ବେଗକୁ କରୁଚି ତ୍ୱରାନ୍ୱିତ, ଏବଂ ସେଇ ପ୍ରକ୍ରିୟାରେ, ମଣିଷକୁ କଳୁଷମୁକ୍ତ କରିକରି ଯାଉଚି ଯୁଗଯୁଗାନ୍ତର; ଯା ଫଳରେ ପରମସତ୍ତାରେ ଉପଗତହେବା ମାନବିକ ପ୍ରୟାସ ହେଉଚି ଉତ୍ତରୋତ୍ତର ପ୍ରଶସ୍ତ । ଦ୍ୱନ୍ଦ୍ୱ ବା ଅନ୍ତର୍ବିରୋଧକୁ ମାନିଚନ୍ତି ମାର୍କ୍ସ, ମାନିଚନ୍ତି 'ଅଗ୍ରଗତି'ର

ଧାରଣାକୁ; ମାତ୍ର ଅସ୍ୱୀକାରକରିଚନ୍ତି ଇତିହାସର ସରଳରୈଖିକ ଅଗ୍ର / ଊର୍ଦ୍ଧ୍ୱ ଗମନ ସାଙ୍ଗକୁ ପରମସତ୍ତା ରୂପକ ଗନ୍ତବ୍ୟକୁ । କାହିଁକିନା, ଆଖି ଆଗରେ ଥିଲା ଫରାସୀବିପ୍ଳବର ପରିଣାମ; ଯୁଗାନ୍ତ ସୂଚନାକରିଚି ଯୋଉ ବିପ୍ଳବ, ସେଇ ପୁଣି ଜନ୍ମଦେଲା ନେପୋଲିଅଁ ପରି ପରରାଜ୍ୟ ଲୋଲୁପ ନରଘାତକ ଏକନାୟକକୁ ! ବିପ୍ଳବୀ ରୋବସ୍‌ପିୟର୍ ନିହତ ହେଲେ; ଆଉ ଗୃହଯୁଦ୍ଧରେ ପ୍ରମତ୍ତହୋଇ ଜିରଣ୍ଡିନ୍ ଆଉ ଜାକବିନ୍ ବୁହାଇଦେଲେ ରକ୍ତନଦୀ । ନିର୍ବିତ୍ତ ନିପୀଡ଼ିତ ମଣିଷ, ସାମ୍ୟ-ମୈତ୍ରୀ-ଭାତୃତ୍ୱ ପରିବର୍ତ୍ତେ ପାଇଲା ପ୍ରତିହିଂସା, ନିଷ୍ପେଷଣ ଓ ଉପଦ୍ରବ । ଯୋଉ ଶ୍ରେଣୀସ୍ୱାର୍ଥରେ ଏଇ ବିପ୍ଳବ, ସେଇ ପ୍ରଲେତାରିଏତ୍, ଦେଖାଗଲା, ପ୍ରସ୍ତୁତ ହୋଇନଥିଲା ଯଥେଷ୍ଟ । ବୁର୍ଜୋୟସି ମଧ୍ୟ ପ୍ରତିପନ୍ନକଲା ନିଜକୁ କ୍ଷମତାର ଅଯୋଗ୍ୟ । ଶ୍ରମିକଶ୍ରେଣୀ ମଧ୍ୟ ଅର୍ଜନକରିନାହିଁ କ୍ଷମତା-ପରିଚାଳନାର ଦକ୍ଷତା । ସ୍ୱାଭାବିକଭାବେ ତେଣୁ ଘଟିଚି ନୃପତିମାନଙ୍କ ପୁନଃପ୍ରତିଷ୍ଠା । ମାର୍କ୍ସ ଭାବିଥିଲେ, ସ୍ୱୈରତନ୍ତ୍ରକୁ ବୁର୍ଜୋୟା ଯଦି ବିରୋଧକରେ, ଶ୍ରମିକ ହେବ ସହଯୋଗୀ; ବଦଳିଯିବ ବିପ୍ଳବର ପ୍ରେକ୍ଷିତ । ଅର୍ଥାତ୍, ରାଜନ୍ୟ ଓ ଯାଜକ ଉତ୍‌ଖାତହେବା ଉତାରୁ, ବାକି ଦୁଇଶ୍ରେଣୀ, ବୁର୍ଜୋୟା ଓ ପ୍ରଲେତାରିଏତ୍ ଭିତରେ ଦ୍ୱିତୀୟ ଯେହେତୁ ସଂଖ୍ୟାଗରିଷ୍ଠ, ରାଷ୍ଟ୍ର ହେବ କାଳକ୍ରମେ ତାହାରି କରାୟତ୍ତ । ଅନ୍ୟ ଶବ୍ଦରେ, ରାଜନ୍ୟ ଓ ଯାଜକ କ୍ଷମତା ହରାଇବା ଉତାରୁ ବୁର୍ଜୋୟା କର୍ତ୍ତା ହେଲେସୁଦ୍ଧା, ବିପ୍ଳବ ହେବ ଚିରସ୍ଥାୟୀ । ବିପ୍ଳବକୁ ଚିରସ୍ଥାୟୀ କରିବାକୁ ସବୁରକମ ପ୍ରତିରୋଧକୌଶଳରେ ଶ୍ରମିକଶ୍ରେଣୀକୁ ହେବାକୁ ପଡ଼ିବ ପାରଙ୍ଗମ: ସଂଗଠନ ହେବ ଗୋପନ, ମାତ୍ର ବିକଳ୍ପ ରାଷ୍ଟ୍ରବ୍ୟବସ୍ଥାର ଆଭିମୁଖ୍ୟ ସମ୍ବନ୍ଧରେ ପ୍ରଲେତାରିଏତ୍ ନିଜକୁ କରିବ ପରିଶୀଳିତ । ଅଥଚ ବୁର୍ଜୋୟା ସାଙ୍ଗରେ ମେଣ୍ଟବାନ୍ଧିବା ଗଣତାନ୍ତ୍ରିକ କର୍ମନୀତି କାର୍ଯ୍ୟକ୍ଷେତ୍ରରେ ପ୍ରମାଣିତହୋଇଚି ଭ୍ରାନ୍ତଆଦର୍ଶ । ବଦଳାଇଦେବାକୁ ପଡ଼ିଲା ତେଣୁ ହେଗ୍‌ଲ୍‌ଙ୍କ ଇତିହାସ-ଦର୍ଶନ; ଅର୍ଥାତ୍ ମାର୍କ୍ସ କହିଲେ, ନିଜ ଇତିହାସ ମଣିଷ ନିଜ ହାତରେ ଗଢ଼ିବ ଅବଶ୍ୟ, ମାତ୍ର ସ୍ୱାଧୀନ ଇଚ୍ଛା କାମଦେବନାହିଁ, କାହିଁକିନା, ସ୍ୱାଧୀନ ଇଚ୍ଛାକୁ ବଳବତ୍‌କରିବାକୁ ଯୋଉ ପରିସ୍ଥିତି ଅନୁକୂଳ, ତାକୁ ହାତରେ ପାଇବା ସମ୍ଭବନୁହେଁ ସବୁବେଳେ । ତେଣୁ, ଉତ୍ତରାଧିକାର ସୂତ୍ରରେ ମିଳୁ କି ଘଟଣାଚକ୍ରରେ ହାବୁଡ଼ିଯାଉ, ଯଥାପ୍ରାପ୍ତ ଓ ସାକ୍ଷାତ୍ ପରିସ୍ଥିତି ଉପରେ ନିର୍ଭରକରିବ ଇତିହାସର ଗତିବିଧି । ବିପ୍ଳବର ଗତିପଥ ପରି ଇତିହାସର ଗତିପଥ ତେଣୁ ଜମାରୁ ସରଳରୈଖିକ ନୁହେଁ, ଚେତନାର ବିକାଶ ଯେହେତୁ ଆକସ୍ମିକ ନୁହେଁ କି ଅନାୟାସ ।

କାହାରି କାହାରି ଧାରଣା, ୧୮୪୫ରୁ ଘଟିଚି ମାର୍କ୍ସବାଦରେ ଆହୁରି ଏକ ରପ୍‌ଚର୍, ଚିନ୍ତାଭାବନା କେନ୍ଦ୍ରରୁ ବ୍ୟକ୍ତିବିଶେଷ ହଟିଯାଇଚି, ଆଉ ଶୂନ୍ୟସ୍ଥାନକୁ

ପୂରଣକରିଚି ସାମାଜିକ ସମ୍ପର୍କ । *କମିଉନିଷ୍ଟ ମ୍ୟାନିଫେଷ୍ଟୋ* (୧୮୪୮) ଅବଶ୍ୟ ଲେଖାସରିଚି ବର୍ଷକ ଆଗରୁ । ସେତେବେଳେ ମନେହୋଇଥିଲା, ଧନତନ୍ତ୍ରର ସଙ୍କଟ ଏକ୍ଷଣି ଉଠିଚି ତୁଙ୍ଗକୁ; ପ୍ରଲେତାରିଏତ୍ ତାର ସୁଯୋଗନେଇ ପ୍ରତିଷ୍ଠାକରିପାରେ ଇଉରୋପରେ ଶ୍ରେଣୀହୀନ ସମାଜ । ଅଥଚ କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ସୋସାଲିଷ୍ଟଙ୍କ ଗୋଟାଏ ବଡ଼ଅଂଶ ସମର୍ଥନକରିଚି ବୋନାପାର୍ଟିଙ୍କୁ, ଏବଂ ରାଷ୍ଟ୍ରଶକ୍ତି ଉପରେ ନେପୋଲିଅଁଙ୍କ ଅନ୍ୟାୟ ବଳାତ୍କାରକୁ ମୁକାବିଲା ନକରି ଶ୍ରମଜୀବୀଶ୍ରେଣୀ ଦେଖଣାହାରୀ ଭୂମିକାରେ ରହିଚି ନିଷ୍କ୍ରିୟ । ପ୍ରଲେତାରିଏତ୍‌ର ବୈପ୍ଳବିକ ଶ୍ରେଣୀଚରିତ୍ର, ଅର୍ଥାତ୍ ଗଣଆନ୍ଦୋଳନରେ ଅଗ୍ରଣୀ ଭୂମିକା ବିଷୟରେ ତଦବଧି ଘୋଷିତ ମାର୍କ୍ସଙ୍କ ପ୍ରତ୍ୟାଶା ସ୍ୱପ୍ନଭଙ୍ଗ ଆଘାତରେ ଦୋହଲିଯାଇଚି; ଏବଂ ସେଇ ମନ୍ଥନରୁ ବାହାରିଚି ଅଭିନବ ଅବବୋଧ; ଇଡିୟଲଜି । ଫିଲଜଫି ପରି ସୁଗଠିତ ସିଷ୍ଟେମ୍ ନୁହେଁ, କିନ୍ତୁ ଅଚେତନ କି ଅବଚେତନ ପରି ପ୍ରଚ୍ଛନ୍ନ ଗୂଢ଼ ମାନସିକତା । ସେଇ ମାନସିକତାରେ ଋଳିତହୋଇ ଲକ୍ଷ୍ୟକରିଚନ୍ତି ମାର୍କ୍ସ, ମଣିଷର ସାମାଜିକ ଆଚରଣ (ଚେତନାର ବହିଃପ୍ରକାଶ) ମୂଳରେ ଅର୍ଥନୀତିର ନିର୍ଦ୍ଧାରକ ଭୂମିକା । ଲକ୍ଷ୍ୟକରିଚନ୍ତି ବୋଲି, *ଡାସ୍ କ୍ୟାପିଟା* (୧୮୬୭) ଗ୍ରନ୍ଥରେ ତୁଳାଭିଣା କରିଚନ୍ତି ପୁଞ୍ଜିତନ୍ତ୍ରକୁ ଏବଂ ପ୍ରତିପନ୍ନକରିଚନ୍ତି ପୁଞ୍ଜି ରୂପକ ଶୋଷଣପ୍ରବଣ ଉତ୍ପାଦନବ୍ୟବସ୍ଥାର ଅବଧାରିତ ବିଲୟ । ମାର୍କ୍ସବାଦର ମୃତ୍ୟୁ କାମନାକରୁଥିବା ଲୋକ ଏ ଅବସ୍ଥାନକୁ କହୁଚନ୍ତି, 'ହିଉମାନିଜ୍ମ'ରୁ ମାର୍କ୍ସଙ୍କ ପ୍ରସ୍ଥାନ; କାହିଁକିନା, ମଣିଷର ମନୁଷ୍ୟତ୍ୱ (ନିହିତ ଶୁଭବୋଧ) ସମ୍ବନ୍ଧରେ ନିଶ୍ଚିତବିଶ୍ୱାସ ପୋଷଣକରେ ବୋଲି ଖ୍ରୀଷ୍ଟାନ୍‌ପରମ୍ପରାରେ ଆଦିପାପ ବା 'ଅରିଜିନାଲ୍ ସିନ୍' ଭଳି ପ୍ରତ୍ୟୟ ତିଆରିହୋଇଚି । ଆଦିପାପ ଜାଗାରେ ମାର୍କ୍ସ ଆଣି ବସାଇଚନ୍ତି କିନ୍ତୁ 'କ୍ୟାପିଟାଲ୍', ଯା ଖଟିଖିଆ ମଣିଷର ସନ୍ତାପର କାରଣ; ଅଥଚ ପୁଞ୍ଜି କୋଉ ହିଉମାନ୍ ଏଜେଣ୍ଟ୍ ନୁହେଁ । ଆତ୍ମପକ୍ଷ ସମର୍ଥନ କରିବାକୁ ଫୟବାଖ୍‌ଙ୍କ ଉପରେ ମାର୍କ୍ସଙ୍କ ଛ'ନମ୍ବର୍ ଥିସିସ୍ ପେଶ୍‌କରାଯାଇଚି । କିନ୍ତୁ କାଣ୍ଡଜ୍ଞାନସଂପନ୍ନ ବିବାକ ଲୋକ ଜାଣନ୍ତି ଯେ, ନିହିତ ସ୍ୱଭାବରେ ଅଭିନ୍ନ ହେଲେସୁଦ୍ଧା ଶ୍ରେଣୀସମାଜରେ ସେ ଅଭିନ୍ନତା ବା ସାମ୍ୟ ମଣିଷର ଦୈନନ୍ଦିନ ବ୍ୟବହାରରେ ପ୍ରକାଶପାଏନା । ଅପରାପର ଭାବବାଦୀ ଦାର୍ଶନିକଙ୍କ ଭଳି ମଣିଷର ଅନ୍ତଃସାର (ଏସେନ୍ସ)କୁ ମାର୍କ୍ସ ଚିହ୍ନିଥିଲେ କି ନାହିଁ, ସେଥିପାଇଁ, ଅବାନ୍ତର ପ୍ରଶ୍ନ । ମାର୍କ୍ସଚିନ୍ତାରେ ଅନ୍ତଃସାର ଅପେକ୍ଷା 'ଚେତନା' ପାଏ ଅଧିକ ଗୁରୁତ୍ୱ । ଅନ୍ତଃସାର ଅଚଳ ଓ ଅଥର୍ବ; ଚେତନା ଚଳମାନ, ଆଗେଇଋଳିଚି ବିଜ୍ଞାନ ସହିତ ସମତାଳରେ । ୧୮୭୦ରେ ପ୍ୟାରିସ୍ କମିଉନ୍ ଭାଙ୍ଗିଯିବା ଉତାରୁ, ଶ୍ରେଣୀସ୍ୱାର୍ଥ ଛଡ଼ା ଆଉକୋଉ ବା କେତେ ସ୍ୱାର୍ଥ ମଣିଷକୁ ଜିଘାଂସୁକରେ, ସେକଥାକୁ

ନେଇ ପୁଣି ଆଲୋଡ଼ିତ ହୋଇଚନ୍ତି ମାର୍କ୍ସ; କାହିଁକିନା, ଶ୍ରମଜୀବୀ ତ ବିପ୍ଳବକରିଚନ୍ତି କେବଳ ଫ୍ରାନ୍ସରେ, ଇଂଲଣ୍ଡରେ ନୁହେଁ; ଇଂଲଣ୍ଡରେ ପୁଞ୍ଜିତନ୍ତ୍ରର ଦୋହନ ଶୋଷଣ ଯଦିଓ ଫ୍ରାନ୍ସ ତୁଳନାରେ ଥିଲା ଅନେକ ବେଶି ତୀବ୍ର ଓ ଉତ୍କଟ । ପ୍ୟାରିସ୍ କମିଉନ୍ ଭାଙ୍ଗିଯିବା (ପ୍ରଲେତାରିଏତ୍ ଦମନକୁ ପ୍ରତିରୋଧ କରିନପାରିବା) ଘଟଣାରୁ ମାର୍କ୍ସଙ୍କୁ ଲାଗିଲା, ସଂଘର୍ଷପରିଚାଳନାରେ ବୁର୍ଜୋୟା ସମ୍ଭବତଃ ପ୍ରଲେତାରିଏତ୍ ପ୍ରତିତୁଳନାରେ ଅଧିକ ସମର୍ଥ, ନିଜକୁ ପ୍ରସ୍ତୁତକରିପାରେ ତତ୍‌କ୍ଷଣାତ୍ । ପ୍ରତିତୁଳନାରେ ପ୍ରଲେତାରିଏତ୍‌ର ରଣନୀତି ଦୀର୍ଘସୂତ୍ରୀ ଓ ଅଙ୍କାବଙ୍କା । ଏ ଦୁର୍ବଳତାକୁ ତଥାପି କହିଚନ୍ତି ସଂଗଠନଶକ୍ତିର ଅପ୍ରତୁଳତା, ମନୋବଳ କି ସଂକଳ୍ପର ଶୈଥିଲ୍ୟ ନୁହେଁ । ସେଥିପାଇଁ, ପ୍ରଲେତାରିଏତ୍‌ର ଡିକ୍ଟେଟରସିପ୍‌କୁ ଚରମ ପରିଣତି ନକହି, କହିଚନ୍ତି 'ଆବଶ୍ୟକ ଅଭିସରଣ' (ନେସେସରି ଟ୍ରାନ୍‌ଜିସନ୍) । ଅର୍ଥାତ୍, ଶ୍ରେଣୀସଂଗ୍ରାମରେ ସଫଳ ହେଲେସୁଦ୍ଧା, ପ୍ରଥାରହିତ ଗଣତାନ୍ତ୍ରିକ ଉପାୟରେ ରାଷ୍ଟ୍ରକ୍ଷମତାର ପୁନର୍ବିନ୍ୟାସ, ନିର୍ବିତ୍ତ ପକ୍ଷରେ ସୁଗମ ନହୋଇପାରେ ! କ'ଣପାଇଁ ଏଙ୍ଗେଲ୍ସ ମାର୍କ୍ସବାଦକୁ 'ସାଇଣ୍ଟିଫିକ୍' କହିଚନ୍ତି, ଆଭାସମିଳିବ ଏଇ କଥାରୁ ।

ମାତ୍ର ଲଣ୍ଡନ୍‌ସହରର ଚର୍ଚଗେଟ୍-ଠିଁ ସ୍ଥାପିତ ମୂର୍ତ୍ତିତଳେ ଖୋଦିତ ହୋଇଚି ଗୋଟାଏ ପ୍ରତିଜ୍ଞା, ଫୟବାଖ୍‌ଙ୍କ ଉକ୍ତିଉପରେ ଏଗାରସଂଖ୍ୟକ ପ୍ରତିଜ୍ଞା: The philosophers have only *interpreted* the world, in various ways; the point is to *change* it । ଏତିକି କହିଦେଇ ଚୁପ୍‌ରହିଥିଲେ ଚଳିଥାନ୍ତା । ମାର୍କ୍ସବାଦର ପଦ୍ଧତି କିନ୍ତୁ ପ୍ରଶ୍ନଟିକୁ ଉତ୍ଥାପନକରିଦେଇ ସଙ୍ଗେସଙ୍ଗେ ଦାବିକରିବ କୈଫିୟତ୍; କାହିଁକିନା, ତତ୍ତ୍ୱଜାଲ ଭିତରୁ ବାହାରିଆସିବାର ଏକମାତ୍ର ଉପାୟ କାର୍ଯ୍ୟକ୍ଷେତ୍ରରେ ନିଜକୁ ପ୍ରତିପନ୍ନକରିବା, ଅର୍ଥାତ୍ ବସ୍ତୁତଃ ଯା ଅ-ଦର୍ଶନ (ଇଣ୍ଟରପ୍ରିଟେସନ୍), ସାକ୍ଷାତ୍ ଦର୍ଶନ ରୂପରେ ଉଦ୍‌ଭାସିତହେବାକୁ ପଡ଼ିବ ତାକୁ, ଜୀବନଯାପନର ନିତ୍ୟାଭ୍ୟାସରେ ଅର୍ଜନକରିବାକୁ ପଡ଼ିବ ସିଦ୍ଧି । ଲୁଡ୍‌ଭିଗ୍ ଆନ୍ଦ୍ରିଆଜ୍ ଫୟବାଖ୍ (୧୮୦୪-୭୨) ଲେଖିଥିଲେ *'ଦ ଏସେନ୍ସ ଅବ୍ କ୍ରିଶ୍ଚିଆନିଟି'* (୧୮୪୧); କୁହାଯାଇଥିଲା, ଈଶ୍ୱରସତ୍ତା ମଣିଷର ଉଦ୍‌ଭାବନ ମାତ୍ର, ଆପଣା ନିହିତଶକ୍ତିକୁ ଉପଲବ୍ଧିକରିବାକୁ ଅକ୍ଷମହୋଇ ମଣିଷ ଭାବେ, ଦେବତା କରେ ବା କରୁଚି । ମାର୍କ୍ସ କହିଲେ, ଖାଲି ଭାବିଲେ କ'ଣହେବ ? ଯା ଅ-ବସ୍ତୁ, ତେଣୁ ଅ-ସତ୍ୟ, ତାକୁ ଧ୍ୱଂସକରିବା କର୍ତ୍ତବ୍ୟ ! ନଚେତ୍, ଆଉ କୋଉ ବାଟରେ ସତ୍ୟକୁ ମୁହାଁମୁହିଁହେବ ମଣିଷ ? ଧ୍ୱଂସକରିବା ମାନେ ତ ଖାଲି ଅବସ୍ତୁର ଧ୍ୱଂସସାଧନ ନୁହେଁ, ନିଜ ଚେତନାର ପରିଶୁଦ୍ଧି ମଧ୍ୟ । ସେଥିପାଇଁ, ଯୋଉ ଉପାୟରେ ଏଇ ଆତ୍ମୋପଲବ୍ଧି ଅର୍ଜନ କରାଯାଏ,

ମାର୍କ୍ସ ତାକୁ ନାଁ ଦେଇଚନ୍ତି 'ରେଭୋଲ୍ୟୁସନାରି ପ୍ରାକ୍ସିସ୍' (ବୈପ୍ଳବିକ ଅନୁଶୀଳନ): Feuerbach resolves the religious essence into the human essence. But the human essence is no abstraction inherent in each single individual. In its reality it is the ensemble of the social relations । ଲେଖିଚନ୍ତି ୧୮୩୨ରେ ବୟସ ଯେତେବେଳେ ମାତ୍ର ଅଠାଇଶ, ଏବଂ ଯାକୁହିଁ ତାତ୍ତ୍ୱିକ କହୁଚନ୍ତି, ଦର୍ଶନବିଦ୍ୟା ପରମ୍ପରାରେ ବିଦାରଣ (ରପ୍ଚର୍); ମାର୍କ୍ସ କହିଚନ୍ତି ଆଧିଭୌତିକ କୋଉ ଉପାଦାନ ନୁହେଁ, ସାମାଜିକ ସମ୍ପର୍କର ଯୋଗଫଳ ହିଁ ମାନବସତ୍ତା, ଏକକ ନୁହେଁ କି ନିଃସଙ୍ଗ ନୁହେଁ । ବହିର୍ଜାଗତିକ ଶକ୍ତିର କଳ୍ପନା ତେଣୁ ସୃଷ୍ଟିକରୁଚି ଆ୍ୟାଲିଏନେସନ୍ ବା ପାରକ୍ୟ; ଜୀବନନିର୍ବାହର ବାସ୍ତବତାକୁ ଇତରଭାବିବା ବିକୃତିରୁ ହିଁ ତାର ଉତ୍ପତ୍ତି । ପାରକ୍ୟର ଅସଲ କାରଣ ତ ନିହିତ ରହିଚି ସାମାଜିକ ସମ୍ପର୍କର ଅନ୍ତଃସ୍ତଳରେ। ନିଜ ସମାଜ ଭିତରେ 'ପର'ହୋଇ ବଞ୍ଚିବା ଯେହେତୁ ଅମାନବିକ, ମାନବପ୍ରଜାତିକୁ ମାର୍କ୍ସବାଦ ଯୋଗାଇଦେଇଚି ଇନ୍ଦ୍ରିୟଗ୍ରାହ୍ୟ ପ୍ରତିବାଦର ବଳ ଆଉ ବୀର୍ଯ୍ୟ ।

ଅସହାୟହୋଇ ଲୋକ ଆକାଶକୁ ଅନାଏ ସମାଜ ଯେହେତୁ ସହାୟ ହୁଏନା; ଯୋଉ ସମ୍ପର୍କରେ ଅନ୍ୟଲୋକଙ୍କ ସାଙ୍ଗରେ ଆଜନ୍ମ ଛନ୍ଦିହୋଇ ବଞ୍ଚିରହିବାକୁ ତତ୍ପର, ସେଇ ସମ୍ପର୍କ ତାକୁ ଶୋଷଣକରେ, ବଞ୍ଚିତ କରେ, ଅପମାନିତ କରେ, କାଠପଥର ଭାବି ଇତର ଜ୍ଞାନକରେ । ଅତିପ୍ରତ୍ୟକ୍ଷ ଏଇ କଥାଗୁଡ଼ାକୁ ବୁଝିବାକୁ ଯା ଯଥେଷ୍ଟ, ତା କଣ୍ଟ୍ରାଡିକ୍ସନ୍ ବା ସ୍ୱବିରୋଧର ଧାରଣା । ଜ୍ଞାନ ଓ କର୍ମର ଦ୍ୱାନ୍ଦ୍ୱିକତା ହିଁ ଜନ୍ମଦେଇପାରେ ବିପ୍ଳବ ଚେତନା; ମାନେ, ପ୍ରତିବାଦ, ପ୍ରତିରୋଧ, ପ୍ରତିଘାତ । ସେଇ ସୂତ୍ରରେ, ପାରକ୍ୟ ଓ ପାରକ୍ୟକୁ ଘେରି ଚଳିଆସୁଚି ଯେତେରକମ ପରାବିଦ୍ୟା(ମେଟାଫିଜିକ୍ସ), ସବୁଗୁଡ଼ାକୁ ନେଇଆସିଚନ୍ତି ମାର୍କ୍ସ ଉତ୍ପାଦନବ୍ୟବସ୍ଥା ଭିତରକୁ; ବସ୍ତୁତଃ କଳକାରଖାନା ଚତ୍ୱରକୁ ସୃଷ୍ଟିକ୍ଷମ ମଣିଷ ହୋଇଚି ଯୋଉଠି କିଣାବିକାର ପଣ୍ୟ; ତାଙ୍କରି ପରିଭାଷାରେ, ନିଗେସନ୍ ଅବ୍ ପ୍ରଡକ୍ଟିଭିଟି । ନିଗେସନ୍ କାହିଁକିନା, ମଜୁରୀ / ଦରମା ବିନିମୟରେ ଅନିଚ୍ଛାକୃତ ଶ୍ରମଦାନ ନିହିତ ସୃଷ୍ଟିଶୀଳତାର ଅପଚୟ, ଆ୍ୟାଲିଏନେଟିଡ୍ ଲେବର୍ । ଏସେନ୍ସ ବା ଅନ୍ତଃସାର ତେଣୁ ବିମୂର୍ତ୍ତ ଧାରଣା ନୁହେଁ; ସମାଜାଶ୍ରିତ ମଣିଷ ପ୍ରାତ୍ୟହିକ ଜୀବନଯାତ୍ରାରେ ଯେତେ ଯା କରେ କି କରିଥାଏ, ସେଇ କ୍ରିୟା ଓ ତାର ପ୍ରତିକ୍ରିୟା ଭିତରଦେଇ ପ୍ରକାଶପାଏ ନିଜ ପ୍ରଜାତିଧର୍ମ (ସ୍ପସିଜ୍ ବିଇଙ୍ଗ୍) । ପ୍ରଜାତିଧର୍ମରେ ସର୍ଜନକ୍ଷମତା ଅଛି ଯେମିତି, ସ୍ୱତଃସ୍ଫୂର୍ତ୍ତତା ମଧ୍ୟ ସେମିତି; ସ୍ୱାଭାବିକ ଏଇ ଗୁଣଧର୍ମ ପୂର୍ଣ୍ଣବିକାଶ ଲାଭକରିପାରେ ଏକମାତ୍ର ସାମ୍ୟବାଦୀ

ସମାଜବ୍ୟବସ୍ଥା ଭିତରେ ସମ୍ପତ୍ତିର ବ୍ୟକ୍ତିଗତ ଅଧିକାର ଯେହେତୁ ସେଠି ସ୍ୱୀକୃତ ହୁଏନା । ବ୍ୟକ୍ତିଗତ ସମ୍ପତ୍ତି ମାନେ ଘରଦ୍ୱାର କି ଆସବାବପତ୍ର ନୁହେଁ; ଅନ୍ୟକୁ ବାଧ୍ୟକରି କି ବେତନଦେଇ କାମଆଦାୟକରିବାକୁ ଆବଶ୍ୟକ ଯୋଉ ସାଧନ, ତାକୁହିଁ ଧରିଚନ୍ତି ମାର୍କ୍ସ ପ୍ରାଇଭେଟ୍ ପ୍ରପର୍ଟି । ଆ୍ୟାଲିଏନେଟିଡ୍ ଲେବର୍‌କୁ ଯା ଶାସନକରେ, ତାକୁହିଁ କହିଚନ୍ତି ବ୍ୟକ୍ତିଗତ ସମ୍ପତ୍ତି । ସେଇ ସମ୍ପତ୍ତି ଅନ୍ତର୍ହିତ ହେଲେ, ବର୍ହିପ୍ରକୃତି ସହିତ ମଣିଷର ପ୍ରଜାତିଧର୍ମର ସାମଞ୍ଜସ୍ୟ ଖାଲି ସାଧିତହୁଏନା, ଶ୍ରମ ମଧ୍ୟ ଫେରିପାଏ ନିଜ ହୃତଗୌରବ (ସୃଷ୍ଟିଶୀଳତା), ଏ ଚିନ୍ତାଧାରା ସ୍ପଷ୍ଟତଃ ବୁଦ୍ଧିବାଦନୁହେଁ କି ଭାବବାଦ ନୁହେଁ, ଏକେବାରେ ତୃତୀୟ ମାତ୍ରା । କାହିଁକିନା, ଭାବୁକଙ୍କ ଭିତରେ ମାର୍କ୍ସ ହିଁ ପ୍ରଥମେ ଦେଖିଚନ୍ତି, ମଣିଷର ସକଳ କ୍ରିୟା-ପ୍ରତିକ୍ରିୟା ଉଦ୍ଦେଶ୍ୟଯୁକ୍ତ; ପ୍ରତ୍ୟେକ ପଦକ୍ଷେପ ପଛରେ କାମକରୁଚି ଭାବ ଆଉ ବୁଦ୍ଧି; ଉଦ୍ଦେଶ୍ୟଯୁକ୍ତ କର୍ମ ତେଣୁ ମଣିଷର ପ୍ରଜାତିସତ୍ତାର ଅକୃତ୍ରିମ ପ୍ରତିମା । ବିନା ମତଲବ୍‌ରେ କିଛିହେଲେ କରେନା ବୋଲି, ଭାଷା ବ୍ୟବହାର ପଛରେ ମାର୍କ୍ସ ଦେଖିଚନ୍ତି, ସମାଜର ଅନ୍ୟାନ୍ୟ ଲୋକଙ୍କ ସହିତ ସମ୍ପର୍କସ୍ଥାପନର ଆବଶ୍ୟକତା; ଭାଷା ତେଣୁ ପ୍ରତିଭାତହୋଇଚି 'ଆ୍ୟାକ୍ଟିଭିଟି'; ଏବଂ ଆ୍ୟାକ୍ଟିଭିଟି ଯେହେତୁ, ବିନା ବ୍ୟତିକ୍ରମରେ, ସକର୍ମକ, ଭାଷା ବିବେଚିତହୋଇଚି ପ୍ର୍ୟାକ୍ଟିକ୍ୟାଲ୍ କନ୍‌ସସ୍‌ନେସ୍ ବା ସକର୍ମକ ସଚେତନତା; ଏବଂ ଯେହେତୁ ସକର୍ମକ ସଚେତନତା, ଭାଷା ସର୍ବସାଧାରଣ ସମ୍ପଦ । ଯିଏ କହୁଚି ଆଉ ଯିଏ ଶୁଣୁଚି ଖାଲି ସେଇ ଦି'ଜଣଙ୍କର ନୁହେଁ, ସାରା ସମାଜର; କାହିଁକିନା, ଭାଷା ଏକ ସାମାଜିକ ଉତ୍ପାଦନ ।

ସରକାରୀ ମାର୍କ୍ସବାଦ କିନ୍ତୁ ଅ-ବସ୍ତୁ କି ଅ-ଦର୍ଶନ ନୁହେଁ; ରୀତିମତ ଆଉ ବିଧିବଦ୍ଧ ଦର୍ଶନ; ଉତ୍ପାଦନଧରଣର ଦର୍ଶନ, ଇତିହାସର ଦର୍ଶନ, ବସ୍ତୁବାଦର ଦର୍ଶନ, ବିପ୍ଳବର ଦର୍ଶନ, ଏପରିକି ଏକପ୍ରକାର ବିଜ୍ଞାନ ମଧ୍ୟ! ଏକାବେଳକେ ଏତେଗୁଡ଼ା ଦାବି ମେଣ୍ଟାଇପାରିବା କୋଉହେଲେ ଦର୍ଶନ ପକ୍ଷରେ ସମ୍ଭବପର ନୁହେଁ, ବିଶେଷତଃ ମାର୍କ୍ସ ଯେତେବେଳେ ନିଜକୁ ମାର୍କ୍ସବାଦୀ ବୋଲି ଚିହ୍ନିତକରିବାକୁ କୁଣ୍ଠିତ, କାହିଁକିନା, ତାଙ୍କ ପଦ୍ଧତି ଥିଲା *critique* । ଅର୍ଥାତ୍ ପ୍ରତୀୟମାନ ଓ ପ୍ରକୃତ ମଧ୍ୟସ୍ଥ ଭ୍ରାନ୍ତିର ନିରସନ; ଯେପରି ବୌଦ୍ଧଶାସ୍ତ୍ରରେ ମିଳିନ୍ଦ ପ୍ରଶ୍ନ । ଆଦିମ ଅବସ୍ଥାରୁ ଇଣ୍ଡଷ୍ଟ୍ରିୟାଲ୍ ସୋସାଇଟି ପର୍ଯ୍ୟନ୍ତ ମଣିଷର ପଥପର୍ଯ୍ୟଟନ, ଇତିହାସର ଗତିପ୍ରକୃତି ବିଷୟରେ ତାଙ୍କୁ ବୁଝାଇଦେଇଚି ଯେ, ଇଣ୍ଡଷ୍ଟ୍ରିଆଲ୍ ସୋସାଇଟି ବି ବିକାଶର ଚରମ ସୋପାନ ନୁହେଁ; ଏବଂ ଚରମ ସୋପାନ ବୋଲି କିଛିହେଲେ ଥାଇପାରେନା, ପରିବର୍ତ୍ତନ ହିଁ ଯେହେତୁ ଜଗତର ଅପରିବର୍ତ୍ତନୀୟ ନିୟମ । ଅନ୍ୟ ଶବ୍ଦରେ, ମଣିଷଭିତରେ ଇତିହାସଗତିରେ

ଅପରିମିତ ଏପରି ସମ୍ଭାବନା ଲକ୍ଷ୍ୟକରିଚନ୍ତି ଯେ, ଅଗ୍ରଗତିର ଚକ୍ରବାଳ କ୍ଷଣକୁ କ୍ଷଣ ଘୁଞ୍ଚିଯାଇଚି ଅକଳ୍ପନୀୟ ଦୂରତ୍ୱକୁ, ଏବଂ ସେଥିପାଇଁ, ଗନ୍ତବ୍ୟ ସମ୍ବନ୍ଧରେ ନୀରବରହିଚନ୍ତି; ଚିହ୍ନିତକରିଚନ୍ତି କେବଳ ଗତିର ସମ୍ଭାବ୍ୟ ପର୍ଯ୍ୟାୟକ୍ରମ; ଅକାଟ୍ୟତା ଦାବିକରିନାହାଁନ୍ତି ଜମାରୁ । ଗୁରୁସ୍ଥାନୀୟ ହେଗ୍ଲ କହିଚନ୍ତି, ଅନିତ୍ୟତା ଜଗତର ନିୟମ ହେଲେସୁଦ୍ଧା ସକଳ ପରିବର୍ତ୍ତନର ଗନ୍ତବ୍ୟ ଶ୍ୱାଶ୍ୱତ; ସେଠି ପହଞ୍ଚିପାରିଲେ ଯୋଉ ଚରମ ପର୍ଯ୍ୟାୟରେ ମଣିଷ ଉପନୀତହୁଏ, ତା ଆବ୍‌ସଲିଉଟ୍ ବା ପରମ । କୋଉ 'ଦର୍ଶନ' ନୁହେଁ; ନିହାତ୍ କାଣ୍ଡଜ୍ଞାନ; କାହିଁକିନା, ଦୁଇଶ'ବର୍ଷ ତଳେ କାଣ୍ଡଜ୍ଞାନ ବି ଏତେ ପାକଳହୋଇନାହିଁ । ଯେପରି, ଅନିର୍ବାପିତ ଭୋଗବାସନାକୁ ବୁଦ୍ଧ ଠଉରାଇଥିଲେ ଦୁଃଖର କାରଣ; ଅଥଚ ଲୋକଙ୍କ ଜୀବନନିର୍ବାହର ନିତ୍ୟସଙ୍ଗୀ ଥିଲା ଅନାହାର-ଅର୍ଦ୍ଧହାର, ନିରାଶ୍ରୟତା ଓ ଅଶିକ୍ଷା । ଏଇଭଳି ଭୂୟୋଦର୍ଶନ ପ୍ରାତ୍ୟହିକ ଜୀବନଯାତ୍ରା ଭିତରକୁ ପଶିବାକ୍ଷଣି, ମାର୍କ୍ସ ଦେଖିଚନ୍ତି, ତିଆରିହୁଏ ନିରୁଦ୍ଧ ଏକ ଭାବପରିମଣ୍ଡଳ, ଦୈନନ୍ଦିନ ବଞ୍ଚନାରୁ ମଣିଷକୁ ଯା ଘଉଡ଼ାଇଦେଇ ଅଭୀପ୍ସାକୁ କରେ 'ପରମ'ଅଭିମୁଖୀ । ଅଥଚ ପରିବର୍ତ୍ତନ ଲାଗିରହିଥାଏ ପଛକୁ ପଛ, ଅଟକିଯାଏନା କି ସରିଯିବା ଲକ୍ଷଣ ବି ଦେଖାଏନା। ସର୍ବୋପରି, ହେଗ୍ଲ ମଧ ସ୍ୱୀକାରକରିଚନ୍ତି ପରିବର୍ତ୍ତନର ଅବିଚ୍ଛିନ୍ନତା; ଉଦ୍‌ଭାବନ କରିଚନ୍ତି ଯୁକ୍ତି ଓ ଲଜିକ୍ ଉର୍ଦ୍ଧ୍ୱରେ ପ୍ରତିଜ୍ଞା→ବିରୋଧ→ସମନ୍ୱୟ ଭଳି ପ୍ରକରଣ, ଦର୍ଶନବିଦ୍ୟା କହୁଚି ଡାୟଲେକ୍‌ଟିକ୍ସ । ପ୍ରତିପାଦ୍ୟ: ସଂସାରରେ ପରିବ୍ୟାପ୍ତ ଯେତେ ଭାବ କି ବସ୍ତୁ, ଅନ୍ତର୍ନିହିତ ସ୍ୱବିରୋଧରୁ କେହିହେଲେ ମୁକ୍ତନୁହେଁ; ସେଇ ସ୍ୱବିରୋଧ ତାଡ଼ନାରେ ଘଟେ ଓ ଘଟୁଚି ପରିବର୍ତ୍ତନ । ହେଲେସୁଦ୍ଧା, ପରମସତ୍ତାରେ ଉପନୀତହେବା ମାତ୍ରକେ ଅନ୍ତର୍ବିରୋଧ ହୋଇଯିବ ନିର୍ବାପିତ । ଅନ୍ୟ ଶବ୍ଦରେ, ଜଗତର ଇତିହାସକୁ ପରିଚାଳିତକରୁଚି ଏଇ ଦ୍ୱାନ୍ଦ୍ୱିକତା, ଭାବସତ୍ତା ଓ ବସ୍ତୁସତ୍ତାର ଅନ୍ତର୍ବିରୋଧ, ମଣିଷର ନିତ୍ୟନୈମିତ୍ତିକତାରେ ଯା ସର୍ବଦା ପ୍ରତୀୟମାନ । ପ୍ରାତ୍ୟହିକ ଜୀବନରେ ଯେହେତୁ ପରିଦୃଷ୍ଟ, ହୋଇପାରେ 'ଦର୍ଶନ' ପଦବାଚ୍ୟ; କିନ୍ତୁ ପରମସତ୍ତାରେ ଚରମଶାନ୍ତି, ଗୋଟାପଣେ ଅନୁମାନ । ମାର୍କ୍ସ ଦେଖିଚନ୍ତି, ସମାଜରେ ମଣିଷ ରହୁଚି ଆପଣା ଗରଜରେ, ସମାଜ ବାହାରେ ଯେହେତୁ ବଞ୍ଚିପାରିବା ଅସମ୍ଭବ । ବୈପରୀତ୍ୟ ତେଣୁ ତାଡ଼ନାରୁ ଆସୁନାହିଁ; ଆସୁଚି ସହାବସ୍ଥାନ ବା ସହଯୋଗରୁ । ସହଯୋଗ ମାନେ ବିନିମୟ । ବିନିମୟରେ ବୈପରୀତ୍ୟ ରହିଲେ, ମନ ରହିଁବ ସ୍ଥିତିଶୀଳ ସମ୍ପର୍କ । ସମସ୍ୟା ମୋଟେ ସ୍ଥାନିକ କି କାଳିକ ନୁହେଁ । କିନ୍ତୁ ସ୍ଥିତିଶୀଳତା ମଧ ଆଧିଭୌତିକ କୋଉ ଅବସ୍ଥା ନୁହେଁ; ଯା ସ୍ଥିତ, ସେଥିରୁ ଅଧିକାଂଶ ଅଭ୍ୟାସରେ ପଡ଼ିଯାଇଚି ବୋଲି ଲୋକ ପରିବର୍ତ୍ତନ ଋହେଁନା । ଅର୍ଥାତ୍,

ଷ୍ଟିରିୟଟାଇପ୍‌ରେ ସନ୍ତୁଷ୍ଟ ରହେ । ହେଗ୍‌ଲ୍‌ଙ୍କ 'ସ୍ପିରିଟ୍' ବି ଗୋଟିଏ ସ୍ଟିରିୟଟାଇପ୍, ନିରୁଦ୍‌ବିଗ୍ନ ନିଶ୍ଚଳ । ଆଉ ଇତିହାସ ମଧ୍ୟ କୋଉ ଯାନ୍ତ୍ରିକ ଗତି ନୁହେଁ ଯେ, ତା ଶେଷପ୍ରାନ୍ତରେ ଅପେକ୍ଷାକରି ବସିରହିଚି ଆବ୍‌ସଲିଉଟ୍! ଅଭିଯାତ୍ରୀ ମଣିଷ ବି ନିଃସଙ୍ଗ ପରିବ୍ରାଜକ ନୁହେଁ; ଯୂଥବଦ୍ଧ, ସାମାଜିକ ଓ ସଦାଆଲୋଡ଼ିତ । କଥାଗୁଡ଼ାକୁ ଆବିଷ୍କାର କରିବାକୁ ପଡ଼ିଚି ମାର୍କ୍ସଙ୍କୁ; ତାଙ୍କ ତିରୋଧାନ ଉତାରୁ କିନ୍ତୁ ଏଙ୍ଗେଲ୍ସ ପରିବେଷଣ କରିଚନ୍ତି ନାନାଦି ଭାଷ୍ୟ ମାର୍କ୍ସ ଚିନ୍ତାକୁ ପ୍ରାଞ୍ଜଳକରିବା ସକାଶେ । ବର୍ହିପ୍ରକୃତି ଓ ଜୀବବିଜ୍ଞାନରୁ ଦେଇଚନ୍ତି ଭୂରିଭୂରି ଉଦାହରଣ; ଏକେବାରେ ଭ୍ରାନ୍ତ ପଦ୍ଧତି । ମାର୍କ୍ସଙ୍କର ଏକମାତ୍ର ଧେୟ ଇତିହାସଗତିରେ ଚଳମାନ ମଣିଷ ଓ ତାର ବାସସ୍ଥାନ, ସମାଜର କ୍ରମପରିବର୍ତ୍ତନ । ବର୍ହିପ୍ରକୃତି ବିଧାନରେ ସମାଜର ବିକାଶ ଘଟେନା, କିମ୍ବା ପ୍ରାଣୀବିଦ୍ୟା ନିୟମରେ ସମାଜାଶ୍ରୟୀ ମଣିଷ ଚଳପ୍ରଚଳ ହୁଏନା; ପ୍ରବୃତ୍ତି ଓ ଆବେଗକୁ ସମ୍ବରଣକରିବା ତା ସାମାଜିକ ଅସ୍ତିତ୍ୱର ଅପରିହାର୍ଯ୍ୟ ସର୍ତ୍ତ ।

ସେହିପରି, ପ୍ରକୃତି ସହିତ ମଣିଷର ସମ୍ପର୍କ ମଧ୍ୟ ଦ୍ୱାନ୍ଦ୍ୱିକ, କାହିଁକିନା, ଜୀବନନିର୍ବାହର ରସଦ ଆହରଣକରିବାକୁ ନିସର୍ଗକୁ ନାନାଭାବରେ ଉପଯୋଗକରେ ମଣିଷ, ସେଇ ସୂତ୍ରରେ ଉପଲବ୍ଧିକରେ ନିଜ ଅନ୍ତର୍ଗତ ସୃଷ୍ଟିଶୀଳତା । ସେତେବେଳେ ତିଆରିହୁଏ ପ୍ରକୃତି ସହିତ ଅମ୍ଳ-ମଧୁର ସମ୍ପର୍କ । ଦ୍ୱାନ୍ଦ୍ୱିକତାର ଏ ଆଇଡିଆ ମାର୍କ୍ସ ପାଇଚନ୍ତି ହେଗ୍‌ଲ୍‌ଙ୍କ ପାଖରୁ, ପ୍ରାଣୀ କି ଉଦ୍‌ଭିଦବିଦ୍ୟାରୁ ନୁହେଁ । ସୋସାଲିଜ୍‌ମ୍‌କୁ ଏଙ୍ଗେଲ୍ସ କହିଚନ୍ତି 'ସାଇଣ୍ଟିଫିକ୍'; ଏ ଶବ୍ଦ ମାର୍କ୍ସ ବ୍ୟବହାର କରିନାହାଁନ୍ତି, ସୋସାଲିଜ୍ମ ତାଙ୍କପାଇଁ ଯେହେତୁ ଏକ ଐତିହାସିକ ପରିଣତି ଓ ପର୍ଯ୍ୟାୟ; ଜମାରୁ ବିଜ୍ଞାନନୁଗାମୀ ବିବର୍ତ୍ତନ ନୁହେଁ । ଇଉଟୋପିଆର ପ୍ରତୀପ ତେଣୁ ହିଷ୍ଟରିକ୍ୟାଲ୍, ସାଇଣ୍ଟିଫିକ୍ ନୁହେଁ । ସମାଜବିକାଶ ସହିତ ବିଜ୍ଞାନର ଯଦି ପ୍ରତ୍ୟକ୍ଷ ସମ୍ବନ୍ଧ ନାହିଁ, ମାର୍କ୍ସ ତାକୁ ଅମଳଦେବେନାହିଁ ମୂଳରୁ । ଦ୍ୱାନ୍ଦ୍ୱିକତା ପ୍ରସଙ୍ଗ ବିବେଚନା କଲାବେଳେ ତେଣୁ ସତର୍କରହିବାକୁ ପଡ଼ିବ ଯେ, ଡାୟଲେକ୍‌ଟିକ୍ସ ଏକ ଦାର୍ଶନିକ ଅବବୋଧ, ବିଜ୍ଞାନର ଅବଦାନ ନୁହେଁ । ଆହୁରିକେତେ ମାର୍କ୍ସବାଦୀଙ୍କ ବିଶ୍ୱାସ ଯେ, କ୍ୟାପିଟାଲିଜ୍ମକୁ ପ୍ରତିରୋଧ ଥିଲା ତାଙ୍କର ଏକମାତ୍ର ଅଭିପ୍ରାୟ । ତାହେଲେ, ନିଜକୁ କ୍ରମାଗତ ପରିବର୍ତ୍ତନକରିବା ପ୍ରକ୍ରିୟାରେ କ୍ୟାପିଟାଲିଜ୍ମ ଯୋଉଦିନ ଆଉ କ୍ୟାପିଟାଲିଜ୍ମ ହୋଇ ରହିବନାହିଁ, ମାର୍କ୍ସଚିନ୍ତାର ପ୍ରାସଙ୍ଗିକତା କଣ ସରିଯିବ? ମାର୍କ୍ସ କ୍ୟାପିଟାଲିଜ୍ମକୁ ମଧ୍ୟ ଭାବିଚନ୍ତି ଏକ ଐତିହାସିକ ପରିଣତି ଓ ପର୍ଯ୍ୟାୟ; ସେଥିପାଇଁ ଅତିକ୍ରମଣଯୋଗ୍ୟ । ଅତିକ୍ରମକରିବାକୁ ସମକାଳର ମଣିଷ କାହିଁକି ଚେଷ୍ଟାକରିବ, ସେଇକଥା ବୁଝାଇବା ସକାଶେ ବିଶ୍ଳେଷଣକରିଚନ୍ତି ଧନତାନ୍ତ୍ରିକ ସମାଜବ୍ୟବସ୍ଥାର ଗଢ଼ଣକୁ; ବିଶ୍ଳେଷଣକୁ

ପରିଚ୍ଛିନ୍ନିତ କରିଚି ଇତିହାସବୋଧ; ଅର୍ଥାତ୍, ଆଦିମ ଅବସ୍ଥାରୁ କି ଭାବରେ ମଣିଷ ଅତିକ୍ରମକରିକରି ଆସିଚି ବିଭିନ୍ନ ଉତ୍ପାଦନ-ବଣ୍ଟନ ପର୍ଯ୍ୟାୟ । ମୂଳ ପ୍ରବଣତା ତେଣୁ କ୍ରମାଗତ ଅଗ୍ରଗତି । ଯାବତୀୟ ପରିବର୍ତ୍ତନର ହେତୁ ବୋଲି ହେଗ୍ଲ ଦ୍ୱାନ୍ଦ୍ୱିକତାକୁ ଚିହ୍ନଟକଲା ଉତାରୁ ଦର୍ଶନବିଦ୍ ଭାବିଚନ୍ତି ସବୁ ସମସ୍ୟାର ସମାଧାନ ସେଇ ବାଟରେ ହିଁ ସମ୍ଭବପର । ଅଥଚ ପରିବର୍ତ୍ତନକୁ ଇତିହାସନିର୍ମାଣର ମାନ୍ୟତାଦେଇ ଦ୍ୱାନ୍ଦ୍ୱିକତା (ଅନ୍ତର୍ଗତ ସ୍ୱବିରୋଧର ତାଡ଼ନା)କୁ ଖାଲି ଏକ ପ୍ରକ୍ରିୟା ବୋଲି ସାବ୍ୟସ୍ତକରିଦେଇଚନ୍ତି ମାର୍କ୍ସ । କରିଦେଇଚନ୍ତି ବୋଲି, ପରମ / ଚରମ ଭଳି ନିଷ୍ଫଳତା ମାର୍କ୍ସ ଚିନ୍ତାରେ ପ୍ରଶ୍ରୟପାଏନା । କ୍ରମାଗତ ଅଗ୍ରଗତିର ପ୍ରତିପାଦ୍ୟକୁ ପ୍ରମାଣକରିବା ପାଇଁ ସମର୍ଥନ ଖୋଜିବାକୁପଡ଼ିଚି ସମାଜବିକାଶ ଇତିହାସରୁ, ଯେପରି ଆଦିମସମାଜ ଗଢ଼ଣରେ ଶ୍ରେଣୀଭେଦ ଦେଖାଯାଇନାହିଁ, ଯେହେତୁ ଜଣକ ପରିଶ୍ରମରେ ଉତ୍ପନ୍ନ ଭୋଗ୍ୟବସ୍ତୁକୁ ଆଉଜଣେ ଉପଭୋଗ କରିନାହିଁ, କାହିଁକିନା, ଉତ୍ପନ୍ନ ଜିନିଷର ପରିମାଣ ଯେହେତୁ ଅତି ଅଳ୍ପ, ଉତ୍ପାଦନକୁ ବଞ୍ଚାଇରଖିବାକୁ ସବୁଯାକ ଖର୍ଚ୍ଚହୋଇଯାଇଚି, ବଳିନାହିଁ ବିଶେଷ କିଛି । କୃଷି-ଆବିଷ୍କାର ଯେତେବେଳେ ଉତ୍ପାଦନ ପରିମାଣକୁ ବଢ଼ାଇଦେଇଚି, ସମ୍ଭବହୋଇଚି ଜଣକ ପରିଶ୍ରମଲବ୍ଧ ଜିନିଷରୁ ଅନ୍ୟ କାହାକୁ ଅଂଶଦେବା ପରିସ୍ଥିତି । ଅର୍ଥାତ୍, ଶ୍ରେଣୀଭେଦ । ଲୋକଙ୍କ ଭିତରେ ଯିଏ ବଳ କି ବୁଦ୍ଧିରେ ସରସ, ଉତ୍ପାଦନର ସାଧନ, ବିଶେଷତଃ ଜମିଜମା ଉପରେ ଏକାଧିକାର ଜାରିକରିବାକୁ ଋହିଁଚି । ସେତେବେଳେ, ପରଜମିରେ ଗତରଖଟି ଯେତିକି ମିଳିଲା ସେତିକିକୁ ସମ୍ବଳକରି ବଞ୍ଚିରହିବା ଛଡ଼ା ଅନ୍ୟ ଉପାୟ ଦେଖିନାହାଁନ୍ତି ସମାଜର ସଂଖ୍ୟାଗରିଷ୍ଠ ଉତ୍ପାଦକ । ଅଥଚ ଋଷଆବାଦରୁ ବାହାରିଲା ଯେତେ ଉଦ୍‌ବୃତ୍ତ, ତାର ବଣ୍ଟନବିଧି କିଛିହେଲେ ତିଆରିକରିନାହିଁ ସମାଜ; ଫଳରେ, ଯତ୍‌କିଞ୍ଚିତ୍ ମୂଲମଜୁରୀରେ ପ୍ରାଣରକ୍ଷା ହୋଇପଡ଼ିଚି ଦୁଃସାଧ । ମାଲିକଙ୍କ ପାଖରୁ ଉତ୍ପାଦନର ସାଧନ (ଜମି, ହଳ-ଲଙ୍ଗଳ, ଶସ୍ୟବୀଜ ଇତ୍ୟାଦି) ଭଡ଼ାରେ ନେଇ, ନାନାଦି ସର୍ତ୍ତରେ ଅବଶ୍ୟ, ଋଷବାସରେ ଲାଗିଚନ୍ତି ଯେମିତିକି ଅନ୍ତତଃ ଆପଣା ପରିଶ୍ରମର ଫଳ ଆପେ ଭୋଗକରିପାରିବେ । ସମାଜଗତିର ସେଇ ପର୍ଯ୍ୟାୟରେ ସ୍ପଷ୍ଟହୋଇଚି ଯେ, ଧନ-ଉତ୍ପାଦନର ପ୍ରକୃତ ଉତ୍ସ ପରିଶ୍ରମ; ଜମିଜମା ସାଧନ ମାତ୍ର । ପରିଶ୍ରମକୁ ଛାଡ଼ିଦେଇ କୋଉହେଲେ ସାଧନର ସାଧନାହିଁ ଉତ୍ପାଦନକରିପାରିବ ଧନ କି ଉଦ୍‌ବୃତ୍ତ । ସାଧନଗୁଡ଼ିକର ମାଲିକ କିନ୍ତୁ ନିଜେ ପରିଶ୍ରମକରେନା; ଉତ୍ପନ୍ନ ଜିନିଷରୁ ଯେତିକି ନଦେଲେ ଶ୍ରମିକ ଦିହଧରି ବଞ୍ଚିପାରିବନାହିଁ, ସେତିକି ବ୍ୟୟକରି ବଳକା ଜିନିଷକୁ ଆତ୍ମସାତ୍‌କରେ, ଏବଂ କରେ ବୋଲି, ସମାଜ ବିଭାଜିତ ହୋଇଯାଇଚି ଦୁଇଶ୍ରେଣୀ

ଭିତରେ, ମାଲିକ ଆଉ ଶ୍ରମିକ । ମାଲିକ ମାନେ, ଯୋଉ ଅଳ୍ପସଂଖ୍ୟକ ଲୋକ ପରର ପରିଶ୍ରମଜାତ ଧନକୁ ଭୋଗଦଖଲକରନ୍ତି ଉତ୍ପାଦନର ସାଧନ ଯେହେତୁ ତାଙ୍କ ବ୍ୟକ୍ତିଗତ ସମ୍ପତ୍ତି । ଆଉ, ମେହେନତ୍ ସାଙ୍ଗକୁ ଉତ୍ପାଦନର କୌଶଳ ଯାର ଏକମାତ୍ର ସମ୍ବଳ, ସଂଖ୍ୟାରେ ବିପୁଳ ହେଲେସୁଦ୍ଧା, ସେଇ ଶ୍ରମିକଶ୍ରେଣୀ ପାଏ ଉତ୍ପନ୍ନ ଧନର କ୍ଷୁଦ୍ର ଭଗ୍ନାଂଶ ମାତ୍ର । ଏଭଳି ବୈଷମ୍ୟ ଉପରେ ଯୋଉ ସମାଜବ୍ୟବସ୍ଥା ଗଢ଼ିଉଠେ, ସ୍ଥାୟୀ ହୋଇପାରେନା; ଅନ୍ତର୍ନିହିତ ସ୍ୱବିରୋଧ(କଣ୍ଟ୍ରାଡିକ୍ସନ୍) ପରିବର୍ତ୍ତନକୁ କରିପକାଏ ଅନିବାର୍ଯ୍ୟ । ଏଇଠି ପହଞ୍ଚି ମାର୍କ୍ସ ନେଇଚନ୍ତି ଧନବିଜ୍ଞାନ (ଇକନମିକ୍ସ)ର ସାହାଯ୍ୟ । ଅର୍ଥାତ୍, ଧନ-ଉତ୍ପାଦନ ଓ ଧନ-ବଣ୍ଟନ ଭଳି ସାମାଜିକ ପ୍ରକ୍ରିୟାକୁ ନେଇଯାଇ ସ୍ଥାପନକରିଚନ୍ତି ଦ୍ୱାନ୍ଦ୍ୱିକତାର ଗଠନତନ୍ତ୍ର ଭିତରେ । ମାନେ, ତୁଳାଭିଣାକରିଚନ୍ତି ଆଡାମ୍ ସ୍ମିଥ୍, ଡେଭିଡ୍ ରିକାର୍ଡୋ, ମ୍ୟାଲଥସ୍, ପ୍ରୁଧୋଁଙ୍କ ଆର୍ଥସାମାଜିକ ତତ୍ତ୍ୱାବଳୀକୁ; ଦେଖିଚନ୍ତି, ସମାଜସଂଗଠନର ବସ୍ତୁଭିତ୍ତି ଯୋଉ ଉତ୍ପାଦନ ଓ ବଣ୍ଟନ, ସେ ଭିତ୍ତି ନିଶ୍ଚଳ କି ଚିରନ୍ତନ ନୁହେଁ; ଗତିଶୀଳ ଆଉ ଅସ୍ଥିର । ଜର୍ମନ୍ ଦର୍ଶନର ପରମ୍ପରାକୁ ମୁଣ୍ଡତଳକୁ ଗୋଡ଼ଉପରକୁକରି ଛିଡ଼ାକରିଦେଇଚନ୍ତି, ସେଥିପାଇଁ । କାହିଁକିନା, ଉତ୍ପାଦନ-ବଣ୍ଟନ ଯେହେତୁ ସମାଜସଂଗଠନର ମୂଳଦୁଆ, ସେ ବ୍ୟବସ୍ଥା ଅସ୍ଥିର ଓ ଚଳମାନ ହେଲେ, ଧର୍ମ ଦର୍ଶନ ଆଇନ୍‌କାନୁନ୍ ଆଚାର-ଅନୁଷ୍ଠାନ ବିଧିନିଷେଧ, କୋଉ ଗୋଟାକହେଲେ ଚିରସ୍ଥାୟୀ ହୋଇପାରେନା, ସବୁଗୁଡ଼ାକ ହୋଇପଡ଼ନ୍ତି ଅଳ୍ପାୟୁଷ ଓ ଭଙ୍ଗୁର । ମାର୍କ୍ସବାଦୀ ଯା'କୁ କହୁଚନ୍ତି ମେଟିରିଆଲିଜ୍ମ ବା ବସ୍ତୁତନ୍ତ୍ର । ଧନବିଜ୍ଞାନ ଓ ଭୂୟୋଦର୍ଶନ ମଧ୍ୟସ୍ଥ କଳ୍ପିତ ଭେଦରେଖା ମନେହୋଇଚି ସେତେବେଳେ ଟୋଟାଲିଟି ବା ସମଗ୍ରତାବୋଧର ଅନ୍ତରାୟ, କାହିଁକିନା, ମଣିଷ ଓ ତାର ବାସସ୍ଥାନ ସମାଜକୁ, ଡାୟଲେକ୍ଟିକ୍ୟାଲ୍ ଇଉନିଟି (ଦ୍ୱାନ୍ଦ୍ୱିକ ସମନ୍ୱୟ) ବୋଲି ବିବେଚନା ନକଲେ ସମଗ୍ରତାବୋଧ ସ୍ଫୁରିତହୁଏନା; ବିଶ୍ୱବ୍ରହ୍ମାଣ୍ଡ ପ୍ରତିଭାତହୁଏ ଖଣ୍ଡିତ, ବିଛିନ୍ନ, ବିଶୃଙ୍ଖଳ; ସତେ ଅବା ଅସଂପୃକ୍ତ ସତ୍ତାଗୁଡ଼ିକର ନିରୁଦ୍ଦେଶ ପ୍ରକ୍ଷେପ ! ଏବଂ ଏ ଇଉନିଟି ଇତିହାସ ଗତିରେ ହିଁ ପରିଦୃଷ୍ଟ, କାଳ୍ପନିକ କୋଉ 'ପରମ' କି 'ଅଦୃଶ୍ୟହାତ' ଯେହେତୁ ଯୋଡ଼ିଦେଉନାହିଁ ଭଗ୍ନଖଣ୍ଡଗୁଡ଼ିକୁ କିମ୍ବା ପରିଚାଳନାକରୁନାହିଁ ଶୃଙ୍ଖଳାସ୍ଥାପନର ସୂତ୍ରସିଦ୍ଧାନ୍ତ ।

କିନ୍ତୁ, ଉତ୍ପାଦନ ଓ ବଣ୍ଟନ ମଧ୍ୟସ୍ଥ ଅନ୍ତର୍ବିରୋଧରୁ ନିଷ୍କୃତିର ଉପାୟ କି ରକମ ? ନିଷ୍କୃତି ଖୋଜିବା ଧୃଷ୍ଟତା, କାହିଁକିନା, କଣ୍ଟ୍ରାଡିକ୍ସନ୍ ହିଁ ଚାଳିକାଶକ୍ତି, ବୈପରୀତ୍ୟ ହିଁ ପ୍ରେରିତକରେ ସମାଧାନ ଖୋଜିବାକୁ, ଯେପରି, କୃଷିଭିତ୍ତିକ ସମାଜବ୍ୟବସ୍ଥାରେ ମଣିଷ ଉଦ୍‌ଭାବନକରିଚି ପ୍ରଯୁକ୍ତି, ଯୋଉ ପ୍ରଯୁକ୍ତି ପ୍ରଚଳିତ ଉତ୍ପାଦନକୌଶଳକୁ

ପଛରେପକାଇ ଉତ୍ପନ୍ନଜିନିଷର ପରିମାଣକୁ ବଢ଼ାଇଦେଇପାରେ ଅପେକ୍ଷାକୃତ ଅଧିକ । ଆବିଷ୍କାର / ଉଦ୍‌ଭାବନ ତେଣୁ ସବୁବେଳେ ପ୍ରୟୋଜନ-ଭିତ୍ତିକ, ବିନା ପ୍ରୟୋଜନରେ କେହି କିଛି ଆବିଷ୍କାରକରେନା । ଆବିଷ୍କାର / ଉଦ୍‌ଭାବନ ପଛରେ ଅଲୌକିକତା ସଂଧାନ ତେଣୁ ଭ୍ରାନ୍ତଚେତନା, ଅଭିନବତ୍ୱ ସୃଷ୍ଟି ଯେହେତୁ ମନନ ଓ କର୍ମର ସ୍ୱାଭାବିକ ଅନ୍ୱୟ । ପ୍ରଯୁକ୍ତିର ଅଧିକାରୀ ତେଣୁ ଯଥାରୀତି ଦଖଲକରନ୍ତି ଉତ୍ପାଦନର ସାଧନଗୁଡ଼ିକୁ, ଏବଂ ସେଇ ସୂତ୍ରରେ, ପୁରୁଣା ପରଭୃତ ଶ୍ରେଣୀ ଜାଗାରେ ସୃଷ୍ଟିହୁଏ ନୂଆ ପରଭୃତ ଶ୍ରେଣୀ । ଉତ୍ପାଦନର ସାଧନ ଓ ପ୍ରଯୁକ୍ତି ଉପରେ ଏକାଧିକାର ବଳରେ ସେଇ ଶ୍ରେଣୀ, ଅବଶିଷ୍ଟ ଲୋକଙ୍କୁ ପରିଶ୍ରମକରାଇ ଶ୍ରମର ସୁଫଳ ଭୋଗକରିବା ସଙ୍ଗେସଙ୍ଗେ ପ୍ରଭୁତ୍ୱ ବିସ୍ତାରକରନ୍ତି ଶ୍ରମଜୀବୀଶ୍ରେଣୀ ଉପରେ । ଅନ୍ୟମାନଙ୍କ ଉପରେ ଆଧିପତ୍ୟକରୁଥିବା ଲୋକଙ୍କୁ ମାର୍କ୍ସ ନାଁଦେଇଚନ୍ତି 'ଶାସକଶ୍ରେଣୀ' । ପରିଣାମରେ, ସମାଜସଂଗଠନ ମଧ୍ୟ ଅକ୍ଷୁର୍ଣ୍ଣ ରହିପାରନା; ଉତ୍ପାଦନର ବାଗବର୍ଗ ବଦଳିଯିବା ସାଙ୍ଗକୁ ଉଦ୍‌ବୃତ୍ତବଣ୍ଟନର ଧରଣ ମଧ୍ୟ ବଦଳିଯାଏ । ହେଲେସୁଦ୍ଧା, ସଂଖ୍ୟାଗରିଷ୍ଠ ଶ୍ରମଜୀବୀ ଓ ସଂଖ୍ୟାଲଘୁ ପ୍ରଯୁକ୍ତିବିଦ୍‌ଶ୍ରେଣୀ ମଧ୍ୟସ୍ଥ ସମ୍ପତ୍ତିଗତ ତାରତମ୍ୟ ପ୍ରଶମିତ ହୁଏନା । କାହିଁକିନା, ଉତ୍ପାଦନବ୍ୟବସ୍ଥାର ଅନ୍ତର୍ଗତ ସ୍ୱବିରୋଧ ଶ୍ରେଣୀଭେଦକୁ ମଜ୍‌ବୁତ୍‌କରେ ଏବଂ ସେଇ ସ୍ୱବିରୋଧ ଉପରେ ଉଦ୍‌ଭବଘଟେ ଆହୁରିନୂଆ ପ୍ରଯୁକ୍ତିବିଦ୍‌ଶ୍ରେଣୀର । ପୁରୁଣା ପ୍ରଯୁକ୍ତିକୁ ବେଦଖଲକରି ସେମାନେ ପୁଣି ସୃଷ୍ଟିକରନ୍ତି ପରଭୃତ ଶ୍ରେଣୀ । ସକଳ ସାଧନ ସାଙ୍ଗକୁ ନବତର ପ୍ରଯୁକ୍ତି ଉପରେ ଅଧିକାର ସାବ୍ୟସ୍ତକରି ସେମାନେ ହୁଅନ୍ତି ଶାସକଶ୍ରେଣୀ । ସମାଜର ଚେହେରା ଫେର୍ ବଦଳିଯାଏ, ସଂଖ୍ୟାଗରିଷ୍ଠ ଶ୍ରେଣୀକୁ ଅଧସ୍ତନକରି ରଖିବାକୁ ଉତ୍ପାଦନ-ଧରଣରେ ଯୋଉ କ୍ରମୋନ୍ନତି ଘଟେ, ଏବଂ ସମାଜଗଢ଼ଣରେ ତଜ୍ଜନିତ ପରିବର୍ତ୍ତନ, ମାର୍କ୍ସ ଦାୟୀକରିଚନ୍ତି ତାପାଇଁ ଶ୍ରେଣୀବିଦ୍ୱେଷକୁ, କ୍ରମଶଃ ଯା ଆଗେଇଯାଇଚି ଶ୍ରେଣୀସଂଘର୍ଷ ଆଡ଼କୁ । ସେ ସଂଘର୍ଷରେ ଯୋଉ ଶ୍ରେଣୀ ଜିତିବ, ସେଇ ଏକା ତିଷ୍ଠିରହିବ, ପୂର୍ବାପେକ୍ଷା ଉନ୍ନତତର ଉତ୍ପାଦନ-କୌଶଳ ମଧ୍ୟ ପ୍ରୟୋଗକରିପାରିବ ପଛକୁପଛ । ଅବଶ୍ୟ, ପ୍ରଯୁକ୍ତି ଉପରେ ଦଖଲ ଯଦି ହୁଏ ନିରଙ୍କୁଶ । ପ୍ରଯୁକ୍ତି ସେତେବେଳେ ପରିଣତହୁଏ ଉତ୍ପାଦନର ପ୍ରଧାନ ସାଧନ, ମାତ୍ର ପ୍ରତିଯୋଗିତା ତାକୁ ନିରଙ୍କୁଶହେବାକୁ ବାଧାଦିଏ । ହେଲେସୁଦ୍ଧା, ଉତ୍ପନ୍ନ ପଣ୍ୟର ପରିଣାମ ଓ ବୈଚିତ୍ର୍ୟ ବଢ଼ିଗଲେ ଏକାଦିକ୍ରମେ, ଏବଂ ସେ ଅବସ୍ଥାକୁ କାଏମ୍ ରଖିବାକୁ ଶ୍ରମଜୀବୀଶ୍ରେଣୀକୁ ଅଧିକତର ପାରିଶ୍ରମିକ ଦେଲେସୁଦ୍ଧା, ଉଦ୍‌ବୃତ୍ତସଂଚୟ କମିଯାଏନା । ଫଳରେ, ପ୍ରତିଯୋଗିତାରେ ଜିତୁଥିବା ଶ୍ରେଣୀ ପୂର୍ବବର୍ତ୍ତୀ ଶାସକଶ୍ରେଣୀ ଅପେକ୍ଷା ଅଧିକରୁ ଅଧିକ ପୁଞ୍ଜି ଯୋଗାଡ଼କରିବାକୁ ସମର୍ଥହୁଏ । ଏ ଧାରାର ସଂପ୍ରସାର

ସମାଜର ଅତି ଅଳ୍ପଲୋକଙ୍କ ହାତରେ ଉତ୍ପାଦନଲବ୍ଧ ଉଦ୍‌ବୃତ୍ତ, ଉତ୍ପାଦନର ସାଧନ ଓ ପ୍ରଯୁକ୍ତିର ଅଧିକାରକୁ କେନ୍ଦ୍ରୀଭୂତକରିବା ସ୍ୱାଭାବିକ । ଆତ୍ମରକ୍ଷା ତାଗିଦ୍‌ରେ ସେଇ ସଂଖ୍ୟାଲଘୁ ପାରସ୍ପରିକ ପ୍ରତିଯୋଗିତାରୁ ଅବଶ୍ୟ ବିରତହୁଅନ୍ତି; କ୍ରମାଗତ ସମୃଦ୍ଧି ଆଉ ପ୍ରରୋଚିତକରେନା ପ୍ରତିଯୋଗିତାକୁ । ନକଲେ, ଉତ୍ପାଦନର ସାଧନଗୁଡ଼ିକୁ ଶାସକଶ୍ରେଣୀ ଯଦୃଚ୍ଛା ଉନ୍ନତ କରିପାରେ । ଉତ୍ପାଦନ ସାଧନର ଉତ୍ତରୋତ୍ତର ଉନ୍ନତି ମାନେ ସମାଜର ବହୁମୁଖୀ ବିକାଶ ଓ ବିକାଶର ଲୟରେ କ୍ଷୀପ୍ରତା । ମାଲିକ ହାତକୁ ଉଦ୍‌ବୃତ୍ତ ପୁରାପୁରି ଯାଉଥିଲେ ସୁଦ୍ଧା, ଶ୍ରମଜୀବୀ ଯେହେତୁ ଉତ୍ପାଦନର ଅବିଚ୍ଛେଦ୍ୟ ଅଂଶ, ପ୍ରକ୍ରିୟାଟା ଶ୍ରମଶକ୍ତିର ମନନ ଓ ଦକ୍ଷତା ବଢ଼ାଇବାକୁ ସହାୟକ । ଅର୍ଥାତ୍, ଶ୍ରମଜୀବୀ ଯେହେତୁ ପ୍ରଯୁକ୍ତି ଭଳି, ଉତ୍ପାଦନର ଶକ୍ତିବିଶେଷ, ଉତ୍ପାଦନର ଧରଣ ବଦଳିଯିବା ସଙ୍ଗେସଙ୍ଗେ ଉତ୍ପାଦକ ଭାବରେ ଉପଲବ୍ଧିକରେ ନିଜ ସାମର୍ଥ୍ୟର ଅନାବଦ୍ଧ ସମ୍ଭାବନା । କିନ୍ତୁ, ଉଭୟ ମାଲିକ ଓ ଶ୍ରମିକ ଦ୍ୱାନ୍ଦ୍ୱିକ ଅନ୍ୱୟରେ ଏଭଳି ପରିଶୀଳିତ ହୋଇହୋଇ ଆଗକୁ ଯାଉଯାଉଁ ଏପରି ଏକ ବିନ୍ଦୁରେ ପରସ୍ପରକୁ ସମ୍ମୁଖୀନହୁଅନ୍ତି, ଯୋଉଠି ଗୋଟେପଟରେ ମୁଷ୍ଟିମେୟ ଶାସକଶ୍ରେଣୀ ଯିଏ ସାଧନଗୁଡ଼ିକୁ ପରିଣତକରିଛି ଅମିତ ଧନଉତ୍ପାଦନର ଉପକରଣ, ଅନ୍ୟ ପଟରେ ଗତରଖଟି ପେଟପୋଷୁଥିବା ମଣିଷଙ୍କ ବିରାଟ ପଟୁଆର, ସେଇ ସାଧନଗୁଡ଼ିକୁ କାମରେ ଲଗାଇ ଯିଏ ଉତ୍ପନ୍ନକରେ ଅଗାଧ ସଂପଦ । ସେଇ ବିନ୍ଦୁରୁ ସଂଘର୍ଷ ଉତ୍କଟହେବା ପ୍ରତ୍ୟାଶିତ; ଅର୍ଥାତ୍ କ୍ଷମତା ଓ ସଂପଦର ଏକାଧିକାରୀ କ୍ଷୁଦ୍ର ଏକ ସ୍ୱାର୍ଥଗୋଷ୍ଠୀ ସହିତ ବଞ୍ଚିତ, କିନ୍ତୁ ପାରଦର୍ଶୀ, ବିପୁଳ ଶ୍ରମଶକ୍ତିର ନ୍ୟାୟୋଚିତ ସଂଗ୍ରାମ । ଅବଧାରିତ ପରିଣାମ ତେଣୁ ଶାସକଶ୍ରେଣୀର ପତନ ଆଉ ପ୍ରକୃତ ଉତ୍ପାଦନଶକ୍ତି ଶ୍ରମଜୀବୀଶ୍ରେଣୀର ଉତ୍ପାଦନ-ସାଧନଗୁଡ଼ିକ ଉପରେ ଅଧିକାର ପ୍ରତିଷ୍ଠା । କୌଶଳୀ ମାଲିକଙ୍କୁ ତେଣୁ ଉତ୍‌ଖାତ୍‌କରେ ଆପଣା ଉଦ୍‌ଭାବିତ କୌଶଳ । ଶ୍ରେଣୀଭେଦ ଲୋପପାଏ, ଫେରିଆସେ ସାମାଜିକ ସାମ୍ୟ; ଆଦ୍ୟାବସ୍ଥାର ଦୈନ୍ୟମଳୀନ ସାମ୍ୟ ନୁହେଁ, ପରିଣତ ଉତ୍ପାଦନବ୍ୟବସ୍ଥାରୁ ପ୍ରାପ୍ତ ପ୍ରାଚୁର୍ଯ୍ୟର ସାମ୍ୟ । ଏ ଉତ୍ତରଣ ଗଢ଼ିଉଠିଛି ଇତିହାସକୁ ହିଁ ଆଶ୍ରୟକରି, ଯୋଉ ଇତିହାସ ମଣିଷର ଆପଣା ନିର୍ମାଣ; ତାର ଚାଳିକାଶକ୍ତି ସ୍ୱବିରୋଧ ହେଲେସୁଦ୍ଧା, ଚକ୍ରବାଳରେ ନାହିଁ ବିଷାଦର କାଳିମା; ଅଛି କେବଳ ମଣିଷର ସୃଷ୍ଟିଶୀଳତା ଉପରେ ଅପରିମିତ ଆସ୍ଥା ଆଉ ବାଧାଲଂଘନର ଅନିର୍ବାଣ ଆକାଙ୍କ୍ଷା ।

ଫୟବାଖ୍‌ଙ୍କୁ ବସ୍ତୁବାଦୀ ଭାବିବା କାରଣ, ଧର୍ମୀୟ ପାରକ୍ୟକୁ ପ୍ରକୃତରେ ବିରୋଧକରିଥିଲେ ଏଇ ନବ୍ୟ ହେଗେଲିୟ । ଧର୍ମୀୟ ପାରକ୍ୟ ମାନେ, ଇହଜଗତରୁ ସୁଦୂର କୋଉ କଳ୍ପିତ ପରିସରରେ ପରିଶୁଦ୍ଧି ଓ ପରମାର୍ଥ କାମନାକରେ ଯେତେବେଳେ

ଆଧିଭୌତିକ ଶକ୍ତି ପାଖରେ ଆତ୍ମସମର୍ପଣକରି ନିହିତ ସାମର୍ଥ୍ୟରୁ ଇତରହୋଇଯାଏ ମଣିଷ । ଅଥଚ କଳ୍ପିତ ପରିସରକୁ ନିଃସଙ୍ଗ ଭାବେନା କଦାପି; ସେଠି ବି ଦେଖିବାକୁ ଚାହେଁ ସମଦଶା ମଣିଷଙ୍କ ସମଷ୍ଟି; ମାନବିକ ସମାଜ ବନ୍ଧନ । ସେଇ ପରିସରକୁ ଅନୃତ ବୋଲି ବୁଝିପାରିଲେ ଆତ୍ମପ୍ରତ୍ୟୟ ଫେରିପାଇବ, ପରଲୋକର ସମଷ୍ଟିଗତ ଜୀବନକୁ ମଧ୍ୟ ମାଟିଉପରେ ଖୋଜିପାରିବ । ଫୟବାଖ୍ ତେଣୁ କହିବାକୁ ଚାହିଁଛନ୍ତି, ଧର୍ମୀୟ ପାରକ୍ୟରୁ ମୁକୁଳିବା ବାଟ ଏକମାତ୍ର ଆତ୍ମୋଲବ୍ଧି । ମାର୍କ୍ସ ସେଇଠି ଯୋଡ଼ିଦେବାକୁ ଚାହାଁନ୍ତି, ଆତ୍ମୋପଲବ୍ଧିର ମର୍ମାର୍ଥ: ଆପଣା ବାହାରେ, ସମାଜ-ସଂସାର ବାହାରେ, ଅନ୍ୟକୋଉ ଅସ୍ତିତ୍ୱର ଅନୁମାନ ଭ୍ରାନ୍ତଚୈତନ୍ୟ ମାତ୍ର । ସେତେବେଳେ କଥାଉଠିଛି, ପଲିଟିକ୍ସ କଣ ସେଇଭଳି ଗୋଟାଏ ଭ୍ରାନ୍ତଚୈତନ୍ୟ ନୁହେଁ? ପଲିଟିକ୍ସ ତ ମେଟାଫିଜିକ୍ୟାଲ୍ ପରିସର ନୁହେଁ, ସାମ୍ୟ ମୈତ୍ରୀ ଭ୍ରାତୃତ୍ୱ ଇତ୍ୟାଦିର ପ୍ରତିଶ୍ରୁତି ଅଛି ସେଥିରେ ! ତଥାପି ପଲିଟିକ୍ସ ସମାଜରୁ ସ୍ୱତନ୍ତ୍ର, ବ୍ୟକ୍ତିଗତ କଳ୍ପନାରୁ ସ୍ୱତନ୍ତ୍ର, ପରଲୋକ ଭଳି ଆଦର୍ଶ ପରିସର । ମାର୍କ୍ସ, ତା ଜବାବରେ କହିଚନ୍ତି, ପଲିଟିକ୍ସରୁ ପ୍ରସୂତ ପାରକ୍ୟ ଭ୍ରାନ୍ତଚେତନା ହୋଇପାରେନା, କାହିଁକିନା, ସମାଜକୁ ଆଚ୍ଛନ୍ନ କରିରଖିଚି ଖଣ୍ଡ ଖଣ୍ଡ ବିଚ୍ଛିନ୍ନ ଚୈତନ୍ୟ, ଖଣ୍ଡିତ ଯୋଉ ଚୈତନ୍ୟ ମଣିଷକୁ ଅନ୍ୟ ମଣିଷ ବିରୁଦ୍ଧରେ ଅଗ୍ରସରହେବାକୁ ପ୍ରରୋଚିତକରେ, ଏବଂ ସେତେବେଳେ, ଧର୍ମ ହେଉ କି ରାଜନୀତି, ମନେହୁଏ ପରିତ୍ରାଣର ପାଥେୟ । ମାନେ, ଅଲୌକିକ । ପାରସ୍ପରିକ ଏ ବିଚ୍ଛେଦକୁ ପଛରେରଖି କେହି ବାହାରିଆସିପାରେନା ଅଲୌକିକତା କବଳରୁ, ଯଦି ନା ଫଳିତ ପ୍ରୟୋଗ ଦ୍ୱାରା ପରନିର୍ଭରତା ଭଳି ବୈଷମ୍ୟକୁ ଅତିକ୍ରମ କରିନପାରେ । ଫଳିତ ପ୍ରୟୋଗ ମାନେ ବିଧିବଦ୍ଧ ପରିକଳ୍ପନା ଓ ପ୍ରଚେଷ୍ଟା ବଳରେ ସାମାଜିକ ସମ୍ପର୍କର ପରିବର୍ତ୍ତନ । ଫିଲଜଫି ଯେହେତୁ ଭାବାତ୍ମକ ଭାଷ୍ୟ କି ବୁଦ୍ଧିଦୀପ୍ତ ବ୍ୟାଖ୍ୟା, ପାରକ୍ୟର ପ୍ରତିଷେଧକ ହେବାକୁ ଅଯୋଗ୍ୟ, କାହିଁକିନା, ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନୁହେଁ ଫିଲଜଫି । ଦରକାର ବିପ୍ଳବ; ଯୋଉ ବିପ୍ଳବର ସର୍ତ୍ତାବଳୀ ଜୀବନନିର୍ବାହ ଓ ସାମାଜିକ ସମ୍ପର୍କର ବାସ୍ତବଭିତ୍ତି ଭିତରେ ହିଁ ବିଦ୍ୟମାନ । ଦର୍ଶନ ତ ନିଜ ଲକ୍ଷ୍ୟ ବୋଲି ଘୋଷଣାକରିଚି ବନ୍ଧନମୁକ୍ତି ଆଉ ସ୍ୱଚ୍ଛଦୃଷ୍ଟି, ମାତ୍ର କାର୍ଯ୍ୟକ୍ଷେତ୍ରରେ ଯେହେତୁ ଲକ୍ଷ୍ୟରେ ପହଞ୍ଚିପାରିନାହିଁ କୁତ୍ରାପି, ଦର୍ଶନରୁ ପ୍ରସ୍ଥାନ ହିଁ ବିପ୍ଳବୀପକ୍ଷରେ ପାରକ୍ୟମୋଚନ । ଦାର୍ଶନିକ ଏକ୍ଷଣି କହୁଚନ୍ତି, ଦର୍ଶନ ଓ ବିପ୍ଳବ ଛଡ଼ା ପାରକ୍ୟମୁକ୍ତିର ତୃତୀୟ କୋଉ ବାଟ ଯଦି ଖୋଲାନାହିଁ, ବିପ୍ଳବ ଯୋଉଠି ବ୍ୟର୍ଥହେବ, ମଣିଷ କ'ଣ ନିମଜ୍ଜିତହେବ ନୈଃଶବ୍ଦରେ? କିନ୍ତୁ ନୈଃଶବ୍ଦର ବିପରୀତ 'ଉଚ୍ଚାରଣ' ମଧ୍ୟ ସକର୍ମକ, ଅର୍ଥାତ୍ ଆକ୍ଟିଭିଟି, ଯେପରି ବିପ୍ଳବ ମଧ୍ୟ ଏକ ଉଚ୍ଚାରଣ ।

ତେବେ କ'ଣ ଜଗତର ଇଣ୍ଟରପ୍ରିଟେସନ୍ କେବଳ ବହୁବଚନ, ଆଉ ବିପ୍ଲବର କର୍ମଧାରା ସବୁବେଳେ ଏକବଚନ; ଆଉ ଏକବଚନ ବୋଲି ଅପରିବର୍ତ୍ତନୀୟ ? ଆତ୍ମବିରୋଧ ଭଳି ଲାଗିପାରେ ହୁଏତ । ମାତ୍ର ସମସ୍ୟା ଏଠି ଯାୟମାନ ଜୀବନ ସହିତ ଚେତନାର ସମ୍ପର୍କ ଅର୍ଥାତ୍ ଜ୍ଞାନ ସହିତ କର୍ମର । ମାର୍କ୍ସ ଦେଖିଚନ୍ତି, ଚିନ୍ତାର ସୀମାବଦ୍ଧତା ତୁଳନାରେ କର୍ମର ଧାରାବାହିକତା ବନ୍ଧନମୁକ୍ତି ପକ୍ଷରେ ଉପଯୁକ୍ତ ଉପାୟ; କାହିଁକିନା, କର୍ମ ବା ଆକ୍ଟିଭିଟି ସଂସ୍ପର୍ଶରେ ନ ଆସିଲେ ଚିନ୍ତା ଉଦ୍ରେକହୁଏନା; ତେଣୁ କର୍ମପ୍ରବାହ ହିଁ ଚେତନାକୁ କରିପାରେ ପରିଶୁଦ୍ଧ । କର୍ମର ବିଲୁପ୍ତି ମାନେ ଚେତନାର ବିଲୁପ୍ତି । ଜଣାଶୁଣା କଥା ଯେ, ବାସ୍ତବ କି ବିଷୟକୁ ଉପଲକ୍ଷ୍ୟକରି ମଣିଷ ଭାବେ ବା ଚିନ୍ତାକରେ, ଏବଂ ଏଇ ଭାବିବା ଗୋଟାଏ ଆକ୍ଟିଭିଟି । ଦର୍ଶନ କିନ୍ତୁ ବସ୍ତୁ କି ବିଷୟ ନୁହେଁ । ଏଇ ସୀମାଗୁଡ଼ାକ ଚିହ୍ନାଇଦେବା ଉତାରୁ ଦର୍ଶନରୁ ତାଙ୍କ ନିଷ୍କ୍ରମଣ ।

ମାର୍କ୍ସଙ୍କ ସେଇ ଥେସିସ୍(ପ୍ରତିଜ୍ଞା) ଭିତରୁ ମିଳୁଚି 'ବିପ୍ଲବ' ଶବ୍ଦର ବ୍ୟବହାର, ମାତ୍ର ଶ୍ରେଣୀସଂଗ୍ରାମ ପ୍ରସଙ୍ଗ ସ୍ଥାନପାଇନାହିଁ, କାହିଁକିନା, 'ରେଭୋଲିଉସନ୍'କୁ ପାଇଥିଲେ ଫରାସୀ ପରମ୍ପରାରୁ, ଏବଂ ପ୍ରକୃତ ପ୍ରସ୍ତାବରେ, ମାର୍କ୍ସଙ୍କ ଅସଲ ଚିହ୍ନାୟନ ଏକମାତ୍ର ବିପ୍ଲବୀ, ଯିଏ ରାଜନୀତିକୁ କରିଚି ବିପ୍ଲବର ମାଧ୍ୟମ । ଏଇ କଥାଟାକୁ ପାସରିଗଲେ, ଗୋଳିଆପାଣିରେ ମାଛଧରିବା ଭଳି ଲାଗିବ ଆଳାପ-ଆଲୋଚନା । ଫରାସୀ ବିପ୍ଲବକୁ ବୁର୍ଜୋୟା ବ୍ୟର୍ଥକରିଦେଉ, କି ନେପୋଲିଅଁଙ୍କ ଏକନାୟକତ୍ୱ, ଅଥବା ପ୍ରତିବିପ୍ଲବ, ପ୍ରଲେତାରିଏତ୍ ବିରୁଦ୍ଧରେ ଲଢ଼ିଛି ସଦାସର୍ବଦା ରାଷ୍ଟ୍ରଶକ୍ତି, ଅଶିଦଶକ ଫ୍ରାନ୍ସର ଯୁବସମାଜ ଋହିଁଥିଲା ପ୍ରଲେତାରିଏତ୍‌ର ଆନ୍ଦୋଳନର ପୁନର୍ଜୀବନ; ଖାଲି ପୁନର୍ଜୀବନ ନୁହେଁ, ସମଗ୍ର ଇଉରୋପକୁ ତାର ବିସ୍ତାର । ଊନବିଂଶ ଶତକର ଉଷାଲଗ୍ନରେ ବିପ୍ଲବର ଆଭିମୁଖ୍ୟ ଭାବରେ ନିର୍ମିତହୋଇଚି ତେଣୁ କମିଉନିଜ୍ମ ନାମକ ଆଇଡିୟଲଜି; ପ୍ରଚଣ୍ଡ ରୋଷରେ ପ୍ରଜ୍ୱଳ ମାର୍କ୍ସଙ୍କର ସେଇ ଉକ୍ତି: କମିଉନିଜ୍ମ କବିକଳ୍ପନା ନୁହେଁ କି ଫେନବହୁଳ ଯୌବନ-ଉଲ୍ଲାସ; କମିଉନିଜ୍ମ ସାମ୍ୟସାଧକ ଏକ ସାମାଜିକ ଆନ୍ଦୋଳନ, ନିର୍ଦ୍ଦିଷ୍ଟ ନୀତିନିୟମ ଦ୍ୱାରା ପରିଚାଳିତ । ପ୍ରୟୋଗକରିବାକୁ ଯାଇ ପ୍ରଥମେ ବୁଝିବାକୁ ହେବ କି ପରିଣାମ ସଂପତ୍ତି-ବୈଷମ୍ୟ ସ୍ଥିତ ସମାଜରେ ବର୍ତ୍ତମାନ; ଲୋକଙ୍କ ସାମାଜିକ ବୈଷମ୍ୟର ମାତ୍ରା କି ପରିଣାମ ତୀବ୍ର; ସଂପତ୍ତିଗତ ସଂପର୍କଗୁଡ଼ାକ ତଦ୍ଦ୍ୱାରା କି ମାତ୍ରାରେ ରଞ୍ଜିତ ? ମୈତ୍ରୀ (ଫ୍ର୍ୟାଟର୍‌ନିଟି) ଯୋଉ ବିପ୍ଲବର ଲକ୍ଷ୍ୟ, ଏଇ ଉପସର୍ଗକୁ ଆଗେ ଆକଳନ ନକଲେ ତାର କର୍ମଧାରର ଆକାରପ୍ରକାର ଆଖିକୁ ଦିଶିବନାହିଁ । ଦିଶିବା ଉତାରୁ ପଛକୁ ଅନାଇବାକୁ ଅବକାଶ ରହିବନାହିଁ, କି ମଧ୍ୟପନ୍ଥା ଖୋଜିବାର

ଦୋଦୁଲ୍ୟମାନ ମାନସିକତା । ଫରାସୀ ବିପ୍ଳବ ଅଭିଜ୍ଞତାରୁ ଜଣାପଡ଼ିଚି, ଆନ୍ଦୋଳନ ଯଦି ମଝିବାଟରେ ବାଧାପାଏ, ବିପ୍ଳବ ଖାଲି ପଛକୁ ହଟିବନାହିଁ, ଅଭିଜାତ ସଂପଦଶାଳୀ ଶ୍ରେଣୀ ସେଇ ସୁଯୋଗରେ ନିଜକୁ କରିବ ପୁନଃସଂଗଠିତ । କରିସାରି, ସ୍ଥିତାବସ୍ଥାକୁ ସମ୍ଭାବ୍ୟ ଆକ୍ରମଣରୁ ରକ୍ଷାକରିବା ସକାଶେ ବାଧ୍ୟକରିବ ରାଷ୍ଟ୍ରଶକ୍ତିକୁ । ରାଷ୍ଟ୍ରଶକ୍ତି ଉଦାର କି ପ୍ରତିକ୍ରିୟାଶୀଳ, ସେ ବିଚାର ଅବାନ୍ତର, ବିପ୍ଳବର ସ୍ରୋତକୁ ଅଣଲେଉଟା କରିବାକୁ ହେଲେ, ଗଭୀରକରିବାକୁ ହେବ ଚାଳିକାଶକ୍ତିକୁ । ଭାବାଦର୍ଶର କ୍ଷମତା ଏଭଳି ସର୍ବଗ୍ରାହ୍ୟ ହେବ ଯେ ଆନ୍ଦୋଳନ କୋଉ ସଂପ୍ରଦାୟ କି ଗୋଷ୍ଠୀର ନହୋଇ ହୋଇପାରିବ ସାରା ସମାଜର ଅସ୍ଫୁଟ ଆକାଙ୍କ୍ଷାର ସାକାର ଚଳମାନ ଅଭିବ୍ୟକ୍ତି ।

ରାଷ୍ଟ୍ରର ଚରିତ୍ର ତ ଆମର ଉଦାର ଗଣତନ୍ତ୍ର; ନକ୍ସଲ୍‌ଦଳକୁ ତେବେ ନିଷିଦ୍ଧକରିଚି କାହିଁକି? ବାଧ୍ୟକରିଚି କିଏ? କିଏ ବାଧ୍ୟକରିପାରେ ସାର୍ବଭୌମ ବିଶାଳ ଏକ ଜାତିରାଷ୍ଟ୍ରକୁ? ଯିଏ କହୁଚନ୍ତି ମାର୍କ୍ସିଜ୍ମ ଇଜ୍ ଡେଡ୍, ଥରେ ଭାବିଦେଖିବେ କି?

ମନେହେବା ହୁଏତ ସ୍ୱାଭାବିକ ଯେ, ମାର୍କ୍ସ ଯୋଉ ବିପ୍ଳବ କଥା କହିଚନ୍ତି, କରିପାରିବେ ଖାଲି ଶିକ୍ଷିତଲୋକ; ମାତ୍ର ସେମାନଙ୍କୁ ଚିହ୍ନଟକରିଚନ୍ତି ଏଙ୍ଗେଲ୍ସ ସ୍ୱରଚିତ ଗ୍ରନ୍ଥ *କଣ୍ଡିସନ୍ ଅବ୍ ଦ ଓର୍କିଙ୍ଗ୍ କ୍ଲାସ୍ ଇନ୍ ଇଙ୍ଗ୍‌ଲ୍ୟାଣ୍ଡ* (୧୮୪୪)ରେ । ଏଇ ଶ୍ରମଜୀବୀ ଶ୍ରେଣୀ ବସ୍ତୁତଃ ଜର୍ମନ୍ କୃଷକ, ଲିୟନ୍ ଅଂଚଳର ଫରାସୀ କାରିଗର, ଇତାଲିର ତନ୍ତୀ ଆଉ ଶିଳ୍ପବିପ୍ଳବରୁ ଉଦ୍‌ଗତ ବ୍ରିଟିଶ୍ ଶିଳ୍ପଶ୍ରମିକ । ଏମାନଙ୍କ ଜୀବନଯାତ୍ରାରେ ଶୋଷଣର ଅଭିଜ୍ଞତା ସବୁଠୁଁ ଉଗ୍ର; ଶ୍ରେଣୀପରିଚୟ ତେଣୁ ପ୍ରଲେତାରିଏତ୍ । ଉତ୍ପାଦନର ସାଧନ ଉପରେ ଅଧିକାର ନାହିଁ; ଯୋଉ ଶ୍ରେଣୀର ଅଛି, ସେ ବୁର୍ଜୋୟା । ଆନ୍ଦୋଳନ ମାନେ ଶ୍ରମଜୀବୀ ବୁଝେ ଆର୍ଥିକ ଦୁରବସ୍ଥା ବିରୋଧରେ ପ୍ରତିବାଦ । ବିପ୍ଳବର କୋଉ ସାମୂହିକ ଆଦର୍ଶ ନିଜ ଚେଷ୍ଟାରେ ଏମାନେ ଗଢ଼ିପାରିବେନାହିଁ । ସାହାଯ୍ୟକରିବାକୁ ହେବ ବାହାରୁ କିମ୍ବା ଉପରୁ । ଚାଳିକାଶକ୍ତି ଅବଶ୍ୟ ନିର୍ଦ୍ଦିଷ୍ଟ ଆର୍ଥ-ରାଜନୀତିକ ଲକ୍ଷ୍ୟ: ଉତ୍ପାଦନର ସାଧନ ଉପରେ ଶ୍ରମଜୀବୀର ଅଧିକାର ପ୍ରତିଷ୍ଠା । ଯୁକ୍ତି କି ଫିଲଜଫି ସେ ଅଧିକାର ଛାଏଁଛାଏଁ ଦେଇପାରେନା । ଉତ୍ପାଦନର ଧରଣ ଯୋଉ ସମାଜବ୍ୟବସ୍ଥାରେ କୌଶଳହୀନ, ଆକାରହୀନ କି ଅପରିଣତ, ସେଭଳି ସମାଜ ଉତ୍ପନ୍ନକରିବ ସ୍ଥୂଳ ଓ ନିରସ ତତ୍ତ୍ୱାବଳୀ । ବୁଦ୍ଧିଜୀବୀଙ୍କ ଆଖିକୁ ଦିଶେ ଖାଲି ଭ୍ରଷ୍ଟାଚାର ଆଉ ନୈତିକ ସ୍ଖଳନ; ତତ୍ତ୍ୱ ଦେଖିପାରେନା ଶ୍ରେଣୀଭେଦ; ଦେଖିପାରେନା ସଂଘାତର ସମ୍ଭାବନା । ଇପ୍ସିତ ସମାଜ-ରୂପାନ୍ତର ରହିଯାଏ ତେଣୁ ଆକାଶ କୁସୁମ । ଫରାସୀ ବିପ୍ଳବର ଉଦାହରଣ ଦେଇଚନ୍ତି; ବୁର୍ଜୋୟା

ଥିଲା ସେଠି ମଜବୁତ୍, ରାଜନୀତି ଥିଲା ତାଙ୍କ ହାତମୁଠାରେ, ଗୀର୍ଜାର ଯାବତୀୟ ବାଜେୟାପ୍ତ ସଂପତ୍ତି କିଣିନେଇଚନ୍ତି ନିଲାମରେ । ଇଉରୋପ୍ ବିଜୟରେ ବାହାରି ନେପୋଲିଅଁ ଯୋଉ ବିଶାଳ ସମରଯନ୍ତ୍ର ପ୍ରତିଷ୍ଠାକରିଚନ୍ତି, ତାର ଠିକାଦାର ମଧ୍ୟ ବୁର୍ଜୋୟା । ଅଥଚ ନିଜେ ଉତ୍ପାଦନ କରେନା କିଛିହେଲେ; ସାଁ-ସିମୌଁ କହିଚନ୍ତି, ଆଇଡ୍ଲର୍ (ଅଳସୁଆ / ନିକାମିକା) । କାମିକା ଆଉ ନିକାମିକା ଲୋକଙ୍କ ଭିତରେ ମୁହାଁମୁହିଁ ବିରୋଧ ନାହିଁ, ମାତ୍ର ଉତ୍ପାଦନର ସାଧନଗୁଡ଼ାକ ଅଛି ନିକାମିକା ଲୋକଙ୍କ ହାତରେ; ଅଛି ବୋଲି, ମୁନାଫା ଅସୁଲ୍‌କରିପାରେ ନିକାମିକା ଲୋକ । ଘଣ୍ଟାମୂଲିଆଙ୍କ ଛଡ଼ା କାମିକା ଲୋକଙ୍କ ଭିତରେ ଅଛନ୍ତି ଦୋକାନୀ, ବ୍ୟାଙ୍କକିରାଣୀ ଓ ଆହୁରି ଢେର୍ ଖୁଚୁରାଲୋକ ଧନବଣ୍ଟନ ପ୍ରକ୍ରିୟାର ଯିଏ ସହାୟକ । ଉତ୍ପାଦନ କି ବଣ୍ଟନ, କୋଉ ଗୋଟାକରେ ହେଲେ ଭାଗନନେଇ ବୁର୍ଜୋୟା ଖାଲି ପ୍ରିଭିଲେଜ୍ ଭୋଗକରେ ଘରେବସି । ଅର୍ଥନୀତିକୁ ତେଣୁ ନେତୃତ୍ୱ ଦେଇପାରେନା । ସମାଜରେ ପ୍ରବେଶକରେ ସ୍ଥାଣୁତ୍ୱ, ଗଣତନ୍ତ୍ରକୁ ରକ୍ଷାକରିବା ତେଣୁ ସମ୍ଭବହୁଏନା । ଏଇଥିଲା ସାଁ-ସିମୌଁଙ୍କ ବିଶ୍ଳେଷଣ । କାମିକାଲୋକ ଯେହେତୁ ନିଃସମ୍ବଳ ଆଉ ପଲିଟିକ୍ସରେ ଅନଭିଜ୍ଞ, ସମାଜରେ ସଂଖ୍ୟାଗରିଷ୍ଠ ହୋଇସୁଦ୍ଧା ରାଷ୍ଟ୍ରକ୍ଷମତା ଦଖଲକରି ପାରନ୍ତିନିହିଁ । ମାର୍କ୍ସ କିନ୍ତୁ ଦେଖୁଚନ୍ତି, ନିଃସମ୍ବଳ ଲୋକଙ୍କ ରାଜତ୍ୱରେ ହିଁ ଘଟିଚି 'ରେଇନ୍ ଅବ୍ ଟେରର୍', ଗୁଲିଖାଇ ମରିଚନ୍ତି କେତେନାକେତେ ଖଟିଖିଆ ମଣିଷ, ଫ୍ରାନ୍ସ ଉପରେ ପଡ଼ିଚି ଦୁର୍ଭିକ୍ଷର କରାଳ ଛାୟା । ତଥାପି, ଶ୍ରେଣୀଚେତନା ଆବିଷ୍କାରର କୃତିତ୍ୱ ପୁରାପୁରି ସାଁ-ସିମୌଁଙ୍କର, କାହିଁକିନା, ୧୮୦୨ରେ ଲେଖୁଚନ୍ତି, ଫ୍ରାନ୍ସରେ ଯା ଘଟିଚି, ନୋବିଲିଟି ସହିତ ବୁର୍ଜୋୟାର ସଂଘାତ ନୁହେଁ; ନୋବିଲିଟି-ବୁର୍ଜୋୟା ମେଣ୍ଟ ବିପକ୍ଷରେ ଜନସାଧାରଣଙ୍କ ବିଦ୍ରୋହ । ମାର୍କ୍ସ ଦେଖୁଚନ୍ତି, ରାଜନୀତିକୁ ଯେହେତୁ ନିୟନ୍ତ୍ରଣକରୁଚି ଅର୍ଥନୀତି, ପଲିଟିକ୍ସ ନିର୍ଭରକରୁଚି ପ୍ରକୃତରେ ଉତ୍ପାଦନର ଚରିତ୍ର ଉପରେ । କରୁଚି ବୋଲି, ଆର୍ଥିକବିକାଶ ଜନ୍ମଦେଇଚି ନୂଆନୂଆ ରାଜନୀତିକ ଅନୁଷ୍ଠାନକୁ; ଯେପରି, ଶ୍ରେଣୀବିନ୍ୟାସ, ରାଷ୍ଟ୍ରର ଆକୃତି-ପ୍ରକୃତି; ଗୋଟିଏ ବାକ୍ୟରେ, ଉତ୍ପାଦନ-ବଣ୍ଟନ ପ୍ରକ୍ରିୟାକୁ ଉପରୁ କି ବାହାରୁ ନିୟନ୍ତ୍ରଣକରୁଥିବା ରୀତିନୀତି । ସେତିକିବେଳେ କିନ୍ତୁ ଫ୍ରାନ୍ସରେ ଫୁରିଅର୍, ଇଂଲ୍ୟାଣ୍ଡରେ ରବର୍ଟ ଓୟେନ୍ ପ୍ରଭୃତି ଭାବୁକଙ୍କ ଆବିର୍ଭାବ । ଫୁରିଅର୍ ଦେଖାଇଚନ୍ତି କଣ୍ଟ୍ରାଡିକ୍ସନ୍: ପ୍ରାଚୁର୍ଯ୍ୟ ସତ୍ତ୍ୱେ ଦାରିଦ୍ର୍ୟ; ସାମ୍ୟ ସତ୍ତ୍ୱେ ମଧ୍ୟବିତ୍ତର ବିଲୋପ; ପରିବାରକୁ ପବିତ୍ର ଭାବିବା ସତ୍ତ୍ୱେ ବେଶ୍ୟାବୃତ୍ତି ପ୍ରସାର । ଓୟେନ୍ ଦେଖାଇଚନ୍ତି, ଶ୍ରମଜୀବୀଶ୍ରେଣୀର ଉନ୍ନତିପଥରେ ଅନ୍ତରାୟ ବ୍ୟକ୍ତିଗତ ସଂପତ୍ତି, ଧର୍ମ, ଆଉ ପ୍ରଚଳିତ ବିବାହପ୍ରଥା । ତା'ଛଡ଼ା, ମେସିନ୍ ସଂପର୍କରେ: If this new wealth

had not been created by machinery, imperfectly as it has been applied, the wars of Europe against Napoleon and in support of the aristocratic principles of society, could not have been maintained. And yet this new power was the creation of the working class । ଅର୍ଥାତ୍ ମାର୍କ୍ସ ଯେତେବେଳେ *ହୋଲି ଫ୍ୟାମିଲି* (୧୮୪୪) କି *ମ୍ୟାନିଫେଷ୍ଟୋ* (୧୮୪୭) ଲେଖୁଚନ୍ତି, ବିପ୍ଳବ ଲାଭକରୁଚି ପୁନର୍ଜୀବନ; ଇଉରୋପର ବୁଦ୍ଧିଜୀବୀଙ୍କ ଭିତରେ ଭାଳେଣି ପଡ଼ିଯାଇଚି, କି ଉପାୟରେ ସର୍ବସାଧାରଣ (=ଦି ମାସେସ୍)ଙ୍କୁ ଶିକ୍ଷାଦୀକ୍ଷାରେ କରିହେବ ଉଜ୍ଜ୍ୱଳ, କି ଉପାୟରେ ରାଷ୍ଟ୍ରଶକ୍ତିର ଗଣତନ୍ତ୍ରକୁ କରିହେବ ଗଭୀର, କ'ଣ କଲେ ଧର୍ମଘଟ ଓ ଅବରୋଧରୁ ନିବୃତ୍ତକରିହେବ ଶ୍ରମିକଶ୍ରେଣୀକୁ ? ବହି ଦି'ଖଣ୍ଡରେ ମାର୍କ୍ସ ତେଣୁ ବୁର୍ଜୋୟାକୁ କରିଚନ୍ତି ସଂଜ୍ଞାବଦ୍ଧ: 'ସମାଜବ୍ୟବସ୍ଥାକୁ ବିଗଠିତକରୁଥିବା ଶ୍ରମଶକ୍ତି' । କାରଣ, (୧) ବୁର୍ଜୋୟା ନିଜ ସିଭିଲ୍ ସୋସାଇଟିରେ ଯୋଉ ନୈତିକତା ଅନୁସରଣକରେ, ଶ୍ରମିକକୁ ଆପଣା ଶ୍ରମର ସୁଫଳଭୋଗରୁ ବଞ୍ଚିତକରିବା ସେଇ ନୈତିକତାର ବିପରୀତ (=କଣ୍ଟ୍ରାଡିକ୍ସନ୍); (୨) ଶ୍ରମଜୀବୀର ଜୀବନଯାତ୍ରାକୁ ଅନୁପ୍ରାଣିତକରେ ଯୋଉ ମୂଲ୍ୟବୋଧ, ତାକୁ ଗଠିତକରେନା ବ୍ୟକ୍ତିଗତ ସଂପତ୍ତି କି ପ୍ରଫିଟ୍, ଦେଶପ୍ରେମ କି ବ୍ୟକ୍ତିସ୍ୱାଧୀନତା; ତେଣୁ (୩) ରାଷ୍ଟ୍ରଶକ୍ତି ବା ପ୍ରଭୁଶ୍ରେଣୀକୁ ଶ୍ରମଜୀବୀର କ୍ରମବର୍ଦ୍ଧମାନ ବିରୋଧ କେବଳ ଏକ ପରିଣାମ ବା ପ୍ରତିକ୍ରିୟା; ସମାଜର ସାଂପ୍ରତିକ ଗଠନତନ୍ତ୍ରକୁ ପାଲଟା ଜବାବ, ଯା ଏକ୍ଷଣି ସାକ୍ଷାତ୍ ବାସ୍ତବ, ପ୍ରତ୍ୟକ୍ଷ ରିଆଲିଟି ।

ଲକ୍ଷ୍ୟକରିବା କଥା, ଯୋଉ 'ବିପ୍ଳବ' କଥା କହିଥିଲେ ଥିସିସ୍‌ରେ, ତାହାରି ଅନୁଶୀଳନ (ପ୍ର୍ୟାକ୍ସିସ୍) ଉପରେ ପଡ଼ିଚି କେବଳ ଗୁରୁତ୍ୱ; ସମାଜକୁ ପୁନର୍ଗଠିତ କରିବା କାର୍ଯ୍ୟସୂଚି ନାହିଁ, କି ଅନୁଶୀଳନର ଆଭିମୁଖ୍ୟ ଭାବରେ କୋଉହେଲେ ଦାର୍ଶନିକ ମତବାଦର ଉଲ୍ଲେଖ । ମାତ୍ର ସ୍ଥିତାବସ୍ଥାର ବିଲୁପ୍ତିସାଧନ କର୍ମଧାରାରେ ପରିଣତହୋଇଚି ଆଖିରେ ଦେଖିଚନ୍ତି ଯେତେବେଳେ ଭବିଷ୍ୟତ୍‌ର ଛାୟାମୂର୍ତ୍ତି କମିଉନିଜ୍ମ, ଉଦ୍‌ଭାସିତକରିଚନ୍ତି ତାକୁ ପରବର୍ତ୍ତୀ ରଚନା *ଜର୍ମନ୍ ଆଇଡିୟଲଜିରେ* । ସେଥିରେ, ବିପ୍ଳବର ବସ୍ତୁବାଦୀ ସଂଜ୍ଞା, 'ପ୍ର୍ୟାକ୍‌ସିସ୍' (=ପ୍ର୍ୟାକ୍‌ଟିସ୍) । ଅର୍ଥାତ୍ ଆକ୍ଟିଭିଟି, ଯା ସୂଚନାକରେ ଚେତନାର ସ୍ତର ବା ପର୍ଯ୍ୟାୟ । ପ୍ର୍ୟାକ୍‌ଟିସ୍ ଆଉ କଣ୍ଟ୍ରାଡିକ୍ସନ୍ ବିଷୟରେ ମାଓ ଜେ ଦଙ୍ଗ୍ ବି ଲେଖିଚନ୍ତି ସବିସ୍ତାର, ମାତ୍ର ନିରବରହିଛନ୍ତି ପରିଣତି ସମ୍ବନ୍ଧରେ । ବିପକ୍ଷ ଶିବିର ପରିଣତିକୁ କହୁଚି ଟେଲିଅଲଜି । ଅଥଚ କୋଉହେଲେ ଭବିଷ୍ୟବାଣୀ କରିନାହାଁନ୍ତି ମୂର୍ତ୍ତିମନ୍ତ ବିପ୍ଳବ । କାହିଁକିନା, କ୍ରମାଗତ ଅନୁଶୀଳନ ଭବିଷ୍ୟତର କି

ପ୍ରକାର ରୂପ ଦେଖାଇବ ସାଧକଙ୍କୁ, ତାକୁ ମୁକ୍ତପ୍ରାନ୍ତକରି ରଖିଦେବା ମନେହୋଇଚି ଯୁକ୍ତିଯୁକ୍ତ । ଚିନ୍ତାଧାରାର ଏଇ ଲକ୍ଷଣରୁ ଅନୁମାନକରିବା କଥା, 'ଇତିହାସ' କହିଲେ ଠିକ୍ କଣ ବୁଝିଥିଲେ ମାର୍କ୍ସ । କାହିଁକିନା, ଫୟବାଖ୍ ବି ଗୋଟାଏ ପୁସ୍ତିକା ଛପାଇଥିଲେ *ଫିଲଜଫି ଅବ୍ ଦି ଫିଉଚର୍*; ଆଉଜଣେ ନବ୍ୟହେଗେଲିଆନ୍ ମୋଜେସ୍ ହେସ୍ ପ୍ରସ୍ତାବକରିଥିଲେ *ଫିଲଜଫି ଅବ୍ ଆକ୍ସନ୍* । ଉଦ୍ଦେଶ୍ୟ ମଣିଷ ଓ ସମାଜର ପରିବର୍ତ୍ତନକୁ ସୂତ୍ରବଦ୍ଧକରି ପରିଣତିବାଦୀ ବୀକ୍ଷଣ ନିର୍ମାଣ । ମାର୍କ୍ସ କିନ୍ତୁ ଆପତ୍ତି ଜଣାଇଚନ୍ତି, ସ୍ଥାନକାଳ ନିର୍ବିଶେଷରେ 'ବର୍ତ୍ତମାନ' ସହିତ ପ୍ରତିତୁଳନାରେ ' ଅତୀତ' ଯେହେତୁ ଅପରିଣତ ହେବା ନିଶ୍ଚିତ; ପଶ୍ଚାଦ୍‌ଦୃଷ୍ଟିକୁ ମନୋହର ଦିଶୁଥିଲେ ସୁଦ୍ଧା ଅତୀତ ଅପରିପକ୍ୱ । ସେ ଅବସ୍ଥାନରୁ ଭବିଷ୍ୟତ୍ ଭିତରକୁ ନିରୀକ୍ଷଣ ଦ୍ୱାନ୍ଦ୍ୱିକ ପଦ୍ଧତିର ପରିପନ୍ଥୀ; ବର୍ତ୍ତମାନ କାଳରୁ ଉଦ୍‌ଗତ କଣ୍ଟ୍ରାଡିକ୍ସନ୍ ଭବିଷ୍ୟତ୍ ବିଷୟକ ଅନୁମାନକୁ କେବଳ ସାହାଯ୍ୟକରିପାରେ । ସେହିପରି, ଆକ୍ସନ୍ ମାନେ କୋଉ ଯୋଜନା ନୁହେଁ; ଚଳମାନ କାର୍ଯ୍ୟକଳାପ ମାତ୍ର । ବାସ୍ତବ ପରିସ୍ଥିତିକୁ ମୁକାବିଲା କରିବାପାଇଁ ରକ୍ତମାଂସର ମଣିଷ ଯା କରୁଚି, କିମ୍ବା କରିବାକୁ ଯାଇ କରିପାରୁନାହିଁ, ତାକୁହିଁ କୁହାଯିବ ଆକ୍ସନ୍ । ବିଚାରର ମାନଦଣ୍ଡ ତେଣୁ ପ୍ରତ୍ୟକ୍ଷତା; ପ୍ରତ୍ୟକ୍ଷତା ହିଁ ପରିମାପକ । ଆକ୍ଟିଭିଟି ତ ଏପରି କର୍ମଧାରା ଯା ନିଜକୁ ଉନ୍ମୋଚିତକରିଚାଲୁଚି ଅନୁକ୍ଷଣ; ଦେହ-ମନ-ବୁଦ୍ଧି-ବିଚାର ଖଟାଇ ମଣିଷ ଘଟାଇଯାଉଚି ଚେତନାର ଉନ୍ମୋଚନ । ସେଇ ପ୍ରକ୍ରିୟାକୁ ଉପଲବ୍ଧିକରିବା ସକାଶେ ଇତିହାସ-ଦର୍ଶନ (ଅତୀତରୁ ଭବିଷ୍ୟତକୁ କଳନାକରିବା ଦୂରବୀକ୍ଷଣ) ଏକେବାରେ ଅଚଳ । ଭବିଷ୍ୟତର ରୂପ କିଭଳି ହେବ, ସେ ବିଷୟରେ ଆଗତୁରା କର୍ମଯୋଜନା, ବିଦ୍ୟମାନ ସମାଜବ୍ୟବସ୍ଥା ଉପରେ ଭାଷ୍ୟରଚନାଠାରୁ ଅଧିକ କିଛି ହୋଇପାରେନା । ଆକ୍ସନ୍ ଯେହେତୁ ଚଳମାନ କର୍ମ, କାମରେ କରି ଦେଖାଇବାକୁ ପଡ଼ିବ ଅଦ୍ୟ ଏବଂ ଅତ୍ର । କାମର ବିକଳ୍ପ ହୋଇପାରେନା କୋଉ ଘୋଷଣା କି ବ୍ୟାଖ୍ୟାବିବେଚନା । ବିପ୍ଳବ ବାଟରୁ ଫିଲଜଫିକୁ ତେଣୁ ହଟିଯିବାକୁ ପଡ଼ିବ, କାହିଁକିନା, ଯା ଚାଲିଚି ତା ଆକ୍ସନ୍‌ର ଦର୍ଶନ ନୁହେଁ, ସ୍ୱୟଂ ଆକ୍ସନ୍ (action sans phrases); ଅର୍ଥାତ୍ ନିରାଭରଣ ଆନ୍ଦୋଳନ । କିନ୍ତୁ ହଟିଯିବାକୁ ଏ ହୁକୁମ୍ ମାନିବ କାହିଁକି ଫିଲଜଫି ? ଆତ୍ମଖଣ୍ଡନ ପରି ଦିଶିବ ହୁଏତ ଉପରକୁ; ମାତ୍ର ଏଭଳି ବାଧା ସୃଷ୍ଟିକରିବା ଫିଲଜଫିର ନିହିତ ଶକ୍ତିର ଉଦ୍‌ବୋଧନ ମାତ୍ର; କାଣ୍ଟ କହିବାପରି ମାନବଐକ୍ୟ ନିମିତ୍ତ କର୍ତ୍ତବ୍ୟସାଧନ; ଅଥବା ହେଗ୍ଲ କରିବାଭଳି... What must be is also in fact, and what only *must* be, without *being*, has no truth। ପଲିଟିକ୍ସ ପ୍ରେକ୍ଷିତରେ ସର୍ବମାନବ ପକ୍ଷରୁ ଫିଲଜଫିର ଏ ଓକିଲାତି

ମାନବାଧିକାରକୁ ହିଁ ସ୍ୱୀକୃତି; ଅଥଚ ବୁର୍ଜୋୟାସମାଜ ହୀନବଳ ମଣିଷକୁ ସେ ଅଧିକାରରୁ ବଂଚିତକରୁଚି ବାରମ୍ବାର; ଏବଂ ଖାସ୍ ସେଇ କାରଣରୁ, ସମାଲୋଚନା ନିର୍ମମ ହେଲେସୁଦ୍ଧା ଫଳପ୍ରସୂ ଆୟୁଧ ନୁହେଁ; ଅସ୍ତ୍ର ହିଁ ଏକ୍ଷଣି ଅସଲ ସମାଲୋଚନା । ଭାବବାଦକୁ ଉଗୁଡ଼େଇପକାଇ ବସ୍ତୁବାଦକୁ ଆବାହନ । କିନ୍ତୁ ବସ୍ତୁ ତ ଏଠି ଅଦୃଶ୍ୟ; ମାର୍କ୍ସଙ୍କ ବସ୍ତୁବାଦ ତେବେ କଣ ମେଟିରିଆଲିକ୍ସ ଉଇଦ୍‌ଆଉଟ ମ୍ୟାଟର୍ ? ଏ ଆତ୍ମବିରୋଧକୁ ବୋଧଗମ୍ୟକରିବା ଫିଲଜଫିର କାମ; କାହିଁକିନା, ମାର୍କ୍ସ ତ ଆଗରୁ କହିଦେଇଚନ୍ତି, ବସ୍ତୁବାଦର ନିୟମରେ ହିଁ କେବଳ ପୃଥିବୀର ପରିବର୍ତ୍ତନ ସମ୍ଭବପର; ଏଣେ ପ୍ରଚଳିତ ବସ୍ତୁବାଦରୁ ନିଜ ଦୂରତ୍ୱ ଇଙ୍ଗିତକରୁଚନ୍ତି ତାକୁ 'ପୁରାତନ' ଆଖ୍ୟାରେ ଚିହ୍ନିତକରି; ଅଥଚ ଜଗତ୍‌କୁ ବୋଧଗମ୍ୟ କରିବା ମାନେ ତ 'ମ୍ୟାଟର୍' ର ରୂପାନ୍ତର କିମ୍ବା ଭିନ୍ନରୂପ ! ସେ ଦୃଷ୍ଟିରୁ, ମାର୍କ୍ସଙ୍କ ବସ୍ତୁବାଦ ମଧ୍ୟ ଏକପ୍ରକାର ଇଣ୍ଟରପ୍ରିଟେସନ୍ (=ସଂସାରର ଦାର୍ଶନିକ ବ୍ୟାଖ୍ୟା) ଏବଂ ବ୍ୟାଖ୍ୟା ରୂପରେ ଅପରାପର ବ୍ୟାଖ୍ୟାର ପ୍ରତିଦ୍ୱନ୍ଦ୍ୱୀ । କଣପାଇଁ ଏଭଳି ଉଦ୍‌ଭଟ ପରିସ୍ଥିତି ତିଆରିକରିଚନ୍ତି ମାର୍କ୍ସ ? ଉଦ୍ଦେଶ୍ୟ ସ୍ପଷ୍ଟତଃ ଭାବବାଦର ଖଣ୍ଡନ କିମ୍ବା ଭାବବାଦର ବିପରୀତ ଅଭିମୁଖରେ ଫିଲଜଫିକୁ ପରିଚାଳନା । କିନ୍ତୁ କାହିଁକି ?

ପ୍ରଥମ କାରଣ ହେଲା, ଭାବବାଦୀ ବ୍ୟାଖ୍ୟାରେ ପ୍ରକୃତି (=ନେଚର୍) ଓ ଇତିହାସ ଯୋଡ ସୂତ୍ରକୁ ଅବଲମ୍ବନକରେ, ତା ସ୍ପିରିଟ୍, ରିଜନ୍, ଚେତନା ଅଥବା ଆଇଡିଆ; କାର୍ଯ୍ୟକ୍ଷେତ୍ରରେ ଆକ୍ଟିଭିଟିକୁ ବିପ୍ଳବ ଭଳି ଲକ୍ଷ୍ୟଆଡ଼କୁ ଟାଣିନେଇ, ଲୋକଙ୍କୁ ଶିକ୍ଷିତକରିବାକୁ ଚେଷ୍ଟାକରେ । ଏବଂ ସେଥିପାଇଁ, ଖୋଦ୍ ଦାର୍ଶନିକ ମଧ୍ୟ ଅଣ୍ଟାଭିଡ଼ି ବାହାରିପଡ଼ିଚନ୍ତି ଶିକ୍ଷା ବିସ୍ତାର କରିବାକୁ । ପ୍ଲାଟୋ ମଧ୍ୟ ରାଜାରାଜୁଡ଼ାଙ୍କୁ ଆଦର୍ଶ ରାଷ୍ଟ୍ର ବିଷୟରେ ଶିକ୍ଷିତକରିବାକୁ ଥରକୁ ତିଥର ଆଥେନ୍ସରୁ ଯାଇଚନ୍ତି ସିରାକିଉଜ୍ ! ଗଣତାନ୍ତ୍ରିକ ଯୁଗରେ ନାଗରିକଙ୍କୁ ନୀତିଶିକ୍ଷା ବିତରଣକରିଚନ୍ତି ଦାର୍ଶନିକ, ବିଚାରକ, ଶିକ୍ଷକ, ଚିକିତ୍ସକ, ଅର୍ଥାତ୍ ନାନାଦି ଭୂମିକାରେ ଅବତୀର୍ଣ୍ଣ ହୋଇଚନ୍ତି ଦାର୍ଶନିକ ବେଳକୁ ବେଳ । ରାଜତନ୍ତ୍ର କାଳରେ ଏମାନଙ୍କ ଅଭିପ୍ରେତ ଥିଲା ସୁଶାସନ, ଗଣତନ୍ତ୍ରରେ ଏଥିକ୍ସ । କାମଗୁଡ଼ାକ ପ୍ରଶଂସନୀୟ, କିନ୍ତୁ ଉଦ୍ଦେଶ୍ୟସାଧନ ଦୁଷ୍କର । ଦର୍ଶନବିଦ୍ୟା, ଯା କାଣ୍ଟଙ୍କ ପାଖରୁ ହିଁ ଖୋଜିପାଇଚି ନିଜସ୍ୱ ଭାଷା, ସ୍ପିରିଟ୍ ରିଜନ୍ କନ୍‌ସସ୍‌ନେସ୍ ଭଳି କ୍ୟାଟିଗରି ଗୁଡ଼ାକକୁ ନିର୍ବିବାଦ ବୋଲି ଗ୍ରହଣକରିନାହିଁ । କରିନାହିଁ ବୋଲି, କାଣ୍ଟଙ୍କ ଆଗରୁ ଯା ସର୍ବସାଧରଣ ବା ଇଉନିଭର୍ସାଲ୍ ବିବେଚିତ ହୋଇଚି, ସାମ୍ପ୍ରତିକ ଦର୍ଶନଚର୍ଚ୍ଚାରେ ତା ଦ୍ୱିଧାବିଭକ୍ତ; ଅର୍ଥାତ୍ ସଂଧାନମିଳିଚି ବୈପରୀତ୍ୟର, ଯୋଡ଼ ବୈପରୀତ୍ୟକୁ ଅନ୍ତର୍ଗତ ସ୍ୱବିରୋଧ ବୋଲି ବାରମ୍ବାର ଉଲ୍ଲେଖକରିଚି ମାର୍କ୍ସଙ୍କ

ପ୍ରତିପାଦ୍ୟ । ପରୋକ୍ଷଭାବରେ ଅବଶ୍ୟ । ଯୋଉ ଦୁଇଟି ଦାର୍ଶନିକ ପ୍ରତୀକକୁ ଘନସନ୍ନିବିଷ୍ଟ କରିଚି ଏ ବୈପରୀତ୍ୟ, ତା କର୍ତ୍ତାପଣ (ସବ୍‌ଜେକ୍ଟିଭିଟି) ଆଉ ପ୍ରତିନିଧିତ୍ୱ(ରିପ୍ରେଜେଣ୍ଟେସନ୍) । ସଂଦେହ ନାହିଁ, ସଂଯୁକ୍ତ ଏ ଭାବଧାରା ଜର୍ମନ୍ ଭାବବାଦର ମହାନ୍ ଅବଦାନ । ତାକୁହିଁ ମାର୍କ୍ସ କହିଚନ୍ତି 'ଇଣ୍ଟରପ୍ରିଟେସନ୍'... the philosophers have only interpreted the world... । ମାନେ, ପ୍ରତିନିଧିତ୍ୱର ପ୍ରକାରାନ୍ତର । ଜଗତ୍ ଏଠି ଧେୟବସ୍ତୁ, ଏବଂ ତାକୁ ଧ୍ୟାନକରିବାର ଉଦ୍ଦେଶ୍ୟ ଜଗତର ଏକ ସଂହତ ମର୍ମାର୍ଥ ସଂଧାନ; ଏବଂ ସେଇ ମର୍ମାର୍ଥ ସାହାଯ୍ୟରେ ଆପାତଃ-ବିଶୃଙ୍ଖଳ ଜଗତ ଉପରେ ବୋଧଗମ୍ୟ ଶୃଙ୍ଖଳା ଆରୋପ । କିନ୍ତୁ ଭାବବାଦର ଏଇ କଳ୍ପିତ ସଂହତିରେ ମୂଲ୍ୟବୋଧ (=ସାମାଜିକ ଓ ରାଜନୀତିକ ପ୍ରିଫରେନ୍ସ) ଯେମିତି ପ୍ରାଧାନ୍ୟପାଏନା, ଜଗତର ଗତିଶୀଳତା ସେମିତି ପାଏନା ନିର୍ଦ୍ଦିଷ୍ଟତା । ସଂକ୍ଷେପରେ, ବିଶୃଙ୍ଖଳାର ପ୍ରତିକାର କି ପ୍ରତିଷେଧ ବତାଇପାରେନା ଭାବବାଦ । ପୁଣି, ପୁରୁଣା ବସ୍ତୁବାଦ ଏକମାତ୍ର ବହିର୍ପ୍ରକୃତିକୁ କରିଚି ଅବଲୋକନର କେନ୍ଦ୍ର; ସେ ଦାର୍ଶନିକତା ପ୍ରାକୃତିକ ସଂଗଠନରେ 'ମାଇଣ୍ଡ' ଜାଗାରେ ବସାଇଚି 'ମ୍ୟାଟର୍'; ତା ଫଳରେ, ଭାବବାଦୀ ମେଦିନୀଦୃଷ୍ଟିରେ ହ୍ରାସବୃଦ୍ଧି କିଛିହେଲେ ଘଟିନାହିଁ । ପୁରାତନ ବସ୍ତୁବାଦ ତେଣୁ ଭାବବାଦର ହିଁ ଛଦ୍ମବେଶ, କାହିଁକିନା, ମାଇଣ୍ଡ୍ ଜାଗାରେ ମ୍ୟାଟର୍ ଯଦି ରାଜତ୍ୱକରେ, ରାଜନୀତିରେ କିଛିହେଲେ ହେର୍‌ଫେର୍ ହୁଏନା । ଏବଂ ସେ ବସ୍ତୁବାଦକୁ ଆତ୍ମସାତ୍ କରିପାରେ ଭାବବାଦ, ଯେପରି କରିଚନ୍ତି ମନସ୍ୱୀ ହେଗ୍ଲ୍ । ମାତ୍ର ଫରାସୀବିପ୍ଳବ ପରବର୍ତ୍ତୀ ଭାବବାଦରେ ମାର୍କ୍ସ ଦେଖିଚନ୍ତି କର୍ତ୍ତା (=ସବ୍‌ଜେକ୍ଟ)ର ଆବିର୍ଭାବ; ତେଣୁ 'ଆ୍ୟାକ୍ଟିଭିଟି' ଭଳି ଆଇଡିଆ । ରିପ୍ରେଜେଣ୍ଟେସନ୍ ଅବଶ୍ୟ ଏକ ଆ୍ୟାକ୍ଟିଭିଟି; ଦର୍ଶନ ତେଣୁ କର୍ମଧାରା । କିନ୍ତୁ କର୍ତ୍ତ ନଥାଇ କର୍ମ ବି ବ୍ୟାକରଣ-ବିରୁଦ୍ଧ । ସେ କର୍ତ୍ତାକୁ ଭାବବାଦ ଚିହ୍ନଟକରିଚି 'କନ୍‌ସସ୍‌ନେସ୍' ବା ସଚେତନତା; ଅର୍ଥାତ୍ ଜଡ ଭିତରେ ବି କଳ୍ପନାକରିଚି ଚେତନା, ଯେପରି ଚୈତନ୍ୟମୟ ଜଗତ୍ । ମାର୍କ୍ସ ଦେଖିଲେ, ବାହ୍ୟଜଗତ୍ ହୁଏ ଯଦି ଚେତନାର ପରିପ୍ରକାଶ, ଆତ୍ମ (ସେଲ୍ଫ)କୁ ଗଠିତକରୁଚି ଆତ୍ମସଚେତନତା; ମାନେ, ଆତ୍ମସଚେତନତା ରୂପାୟିତ କରିପାରେ ଅରୂପକୁ; ପୁଣି ରୂପାୟିତର ବା ଘଟାଇପାରେ ରୂପାନ୍ତର । ଦର୍ଶନବିଦ୍ୟାର ପରିଭାଷାରେ, ଫର୍ମେସନ୍‌ରୁ ଟ୍ର୍ୟାନ୍ସଫର୍‌ମେସନ୍ । ଟ୍ର୍ୟାନ୍ସଫର୍‌ମେସନ୍ ବା ରୂପାନ୍ତରକୁ ମାର୍କ୍ସ କହିଚନ୍ତି 'ଇଫେକ୍ଟିଭ୍ ଫର୍‌ମେସନ୍', ଫଳପ୍ରସୂ ସଂଗଠନ । ଫଳପ୍ରସୂ ବା ଇଫେକ୍ଟିଭ୍ ମାନେ ଗତିଶୀଳ । ରୂପାନ୍ତର ତେଣୁ ଚେତନାର ଗତିଶୀଳ ରୂପ । ଫର୍ମ ଓ ଫର୍‌ମେସନ୍, ମାର୍କ୍ସବାଦୀ ଦୃଷ୍ଟିରେ, ଦୁଇ ବିପରୀତ ସତ୍ତା: ଫର୍ମ ନିଶ୍ଚଳ, ଫର୍‌ମେସନ୍ ସଦାଚଳମାନ ।

ଜଗତର ପ୍ରାକୃତିକ ରୂପ 'ଫର୍ମ', ସମାଜ କିନ୍ତୁ 'ଫରମେସନ୍' । ଅର୍ଥାତ୍, ପ୍ରତିନିଧିତ୍ୱ (=ବ୍ୟାଖ୍ୟା, ଭାଷ୍ୟ, ଧ୍ୟାନଧାରଣା) ଆଉ ଆକ୍ଟିଭିଟି (ପରିଶ୍ରମ, ଅଧ୍ୟବସାୟ, ଅନୁଶୀଳନ / ଅଭ୍ୟାସ, ପରିବର୍ତ୍ତନ / ରୂପାନ୍ତର) ମଝିରେ ସକ୍ରିୟ ପ୍ରଚ୍ଛନ୍ନ ଏକ ବିରୋଧାଭାସ, ଯାହାକୁ ବିସ୍ତାରିତକରି ପ୍ରତିନିଧିତ୍ୱ ଓ କର୍ତ୍ତାପଣକୁ ପରସ୍ପରଠାରୁ ବିଚ୍ଛିନ୍ନକରିଦେଇଚନ୍ତି ମାର୍କ୍ସ, କାହିଁକିନା, ତା ହେଲେଯାଇ ଫଳିତ କର୍ମକାଣ୍ଡ ହୋଇପାରିବ ସ୍ୱୟଂଶାସିତ ଏକ ଦାର୍ଶନିକ କ୍ୟାଟିଗରି । କିନ୍ତୁ ହୋଇଚି କି ?

ଦର୍ଶନବିଦ୍ୟା ପ୍ରେକ୍ଷିତରେ ହୋଇଚି ହୁଏତ, ବିଶେଷତଃ ବ୍ୟାବହାରିକ ପ୍ରୟୋଗସିଦ୍ଧି ଯେହେତୁ ବିମୂର୍ତ୍ତ ପ୍ରତ୍ୟୟର ଅସଲ ପରୀକ୍ଷା । ପ୍ରୟୋଗ ବ୍ୟତିରେକେ କର୍ତ୍ତାଙ୍କୁ ତେଣୁ ଅନୁମାନ କରିହୁଏନା । ନିର୍ବିକଳ୍ପ କର୍ତ୍ତା ତେଣୁ ପ୍ରୟୋଗ ବା ପ୍ର୍ୟାକ୍ଟିସ୍, ଯୋଉ ପ୍ର୍ୟାକ୍ଟିସ୍ ଚାଲିଥିବ ଯୁଗଯୁଗାନ୍ତର । ଭାବବାଦରୁ ନିଷ୍କ୍ରମଣ କଣ ତଥାପି ସମ୍ଭବପର ? ସମ୍ଭବପର କାହିଁକିନା, ଭାବବାଦର ସଂହତି ଆସୁଚି ପ୍ରତିନିଧିତ୍ୱ ଆଉ କର୍ତ୍ତାପଣର ସଂହତିରୁ ଯଦିଓ ସେ ସଂହତି ନିର୍ଭରକରୁଚି ଇତିହାସର କ୍ରମ-ଉନ୍ମୋଚନ ଉପରେ । ବାସ୍ତବ ପ୍ରୟୋଗରେ କିନ୍ତୁ ସେ ସଂହତି ନିରୁଦ୍ଦେଶ କିମ୍ବା ବହୁମୁଖୀ । ସେଥିପାଇଁ, କର୍ତ୍ତାପଣକୁ କର୍ମଧାରା ସାଙ୍ଗରେ ଗୁନ୍ଥିଦେଇ, ପ୍ରଲେତାରିଏତ୍‌ର ଅସ୍ତିତ୍ୱରୁ ଅବିଚ୍ଛିନ୍ନ ପ୍ରତିପନ୍ନକରି, ସବ୍‌ଜେକ୍ଟ ଭଳି ଦାର୍ଶନିକ କ୍ୟାଟିଗରିକୁ ମାର୍କ୍ସ ବିସ୍ଥାପିତ କରିଦେଇଚନ୍ତି ଭାବବାଦରୁ, ପୁଣି ନିଃସମ୍ବଳଙ୍କୁ କର୍ତ୍ତାରେ ପରିଣତ କରି, ଜଗତର ରୂପ ଓ ରୂପାନ୍ତରକୁ ପୁନଃପୁନଃ ବ୍ୟାଖ୍ୟାକରିବାର ଯୁକ୍ତିସଂଗତ ଭିତ୍ତି ମଧ୍ୟ ଯୋଗାଇଦେଇଚନ୍ତି ଉତ୍ତରସୁରୀ ପ୍ରଜନ୍ମକୁ । ଦେଇଚନ୍ତି ବୋଲି, ଶ୍ରେଣୀ ସଂଗ୍ରାମକୁ ଅସମ୍ବରଣୀୟ ଧରିନେଇ ସମ୍ଭବହୋଇଚି ଇତିହାସର ମର୍ମାର୍ଥ ନିର୍ମାଣ । ଦ୍ୱାନ୍ଦ୍ୱିକତାର ଏ ଆଦାନପ୍ରଦାନ, ଭାବବାଦ-ବସ୍ତୁବାଦ ମଧ୍ୟସ୍ଥ ଏ କ୍ରିୟାପ୍ରତିକିୟାରେ ମାର୍କ୍ସଙ୍କ ପକ୍ଷପାତିତ୍ୱ ନିଶ୍ଚୟ ଅଳୀକ ପ୍ରସ୍ତାବ । କାହିଁକିନା, 'ବିପ୍ଳବ' କହିଲେ ଇତିହାସ ଗତିରେ ଯା ଅମୋଘ ପ୍ରତୀୟମାନହୁଏ, ଆଦାନପ୍ରଦାନ କେବଳ ତାଆରି ସଂପ୍ରସାରଣ, ଏବଂ ସେଥିପାଇଁ, ରାଜନୀତିର ମାତ୍ରା ଏଥିରେ ଯେତେ, ଦର୍ଶନର ମାତ୍ରା ତହିଁରୁ ଊଣା ନୁହେଁ । ବିପ୍ଳବର ଦର୍ଶନକୁ ବୁଝିବାକୁ ହେଲେ ରାଜନୀତି ଭିତରଦେଇ ବୁଝିବାକୁ ପଡ଼ିବ, ଅକର୍ମକ ଅନୁଶୀଳନ ବୁଝାଇପାରିବନାହିଁ ଫିଲଜଫି କି ପଲିଟିକ୍ସ, ଭାବବାଦ କି ବସ୍ତୁବାଦ ।

ଆଧୁନିକକାଳ ଆରମ୍ଭରୁ, ଫରାସୀବିପ୍ଳବ ଓ ଆମେରିକାର ସ୍ୱାଧୀନତା ଲଢାଇ ଘଟିଯିବା ସଙ୍ଗେସଙ୍ଗେ ବିବାକ ବିପ୍ଳବକୁ ଚିହ୍ନଟକରାଯାଇଚି 'ବୁର୍ଜୋୟା', ଅର୍ଥାତ୍ କର୍ତ୍ତାଙ୍କୁ ଖୋଜି ବାହାରକରିବା ହୋଇଯାଇଚି ଦର୍ଶନଚର୍ଚ୍ଚାର ପ୍ରମୁଖ ସମସ୍ୟା,

କାହିଁକିନା, ବିପ୍ଳବ ଧାରଣାଟା ଖାଲି ପଲିଟିକ୍ସରେ ନୁହେଁ, ପଶିଯାଇଚି ବିଜ୍ଞାନପ୍ରଯୁକ୍ତିଠୁଁ ଆରମ୍ଭକରି ବିଜ୍ଞାପନ କି ପଣ୍ୟବିପଣନ ଭିତରକୁ, ଜୀବନଯାପନର ବାସ୍ତବ ଅଭିଜ୍ଞତା ତେଣୁ ବହନକରି ଆଣିଚି ବିପ୍ଳବସଚେତନତା । ଖଣ୍ଡଖଣ୍ଡ ସେଇ ଅଭିଜ୍ଞତା, ଏକତ୍ର ଅବସ୍ଥାନରେ, ଆଭାସଦେଇଚି ଯେ କାଦୁଅକୁ ଛାଞ୍ଚରେପକାଇ ଆକୃତି ଦେବାଭଳି ମଣିଷପ୍ରଜାତି କ୍ରମାଗତ ଶିକ୍ଷିତକରୁଚି ନିଜକୁ ଏବଂ ଶିକ୍ଷିତକରୁଚି ବୋଲି, ନିଜ ସକାଶେ ନିଜେ ତିଆରିକରୁଚି କେତେନାକେତେ ନୀତିନିୟମ; ଏବଂ ସେଇ ବାଟରେ, ନିଜକୁ କରୁଚି ନିର୍ବାଧ ଖାଲି ଦୈନ୍ୟଦାରିଦ୍ର୍ୟ କି ଦମନପୀଡ଼ନରୁ ନୁହେଁ, ଚିତ୍ତବିକାଶର ଯାବତୀୟ ପ୍ରତିବନ୍ଧକରୁ । ସେ ପ୍ରକ୍ରିୟାରେ ତତ୍ତ୍ୱର ପ୍ରଭାବ ଯେମିତି ସ୍ୱୀକୃତ, ବ୍ୟାବହାରିକ ପରିଣାମର ପ୍ରଭାବ ସେମିତି । ଅର୍ଥାତ୍ ଏ ଏକ ବହମାନ ଦ୍ୱାନ୍ଦ୍ୱିକ ପ୍ରଭାବ; କର୍ତ୍ତା କେତେବେଳେ ମାନବପ୍ରଜାତି (କାଣ୍ଟ), କେତେବେଳେ ନେସନ୍ (ଫିକ୍ଟ), ହେଗ୍ଲଙ୍କ ପାଇଁ କର୍ତ୍ତା ହୋଇଗଲା ପୁଣି ସଭ୍ୟତାର ଅଗ୍ରଗତି, କାଳାନୁକ୍ରମରେ ବିଶ୍ୱବିବେକର ବିକଚନ । ସେଇ ଜାଗାରେ ମାର୍କ୍ସ ଆଣି ବସାଇଦେଇଚନ୍ତି ନିର୍ବିତ୍ତ ଶ୍ରମଜୀବୀକୁ (=ମଣିଷଙ୍କ ଭିତରେ ମଣିଷ) । କର୍ତ୍ତା ତେଣୁ ସଂଘବଦ୍ଧ ସକର୍ମକ ମଣିଷ । କର୍ତ୍ତୃତ୍ୱଜର୍ଜର ସ୍ଥିତାବସ୍ଥାକୁ ବିଗଳିତକରିବା ସଙ୍ଗେସଙ୍ଗେ ସେ ମଣିଷ ନିଜକୁ କରେ ପୁନଃନିର୍ମିତ; ପ୍ର୍ୟାକ୍ଟିକ୍ୟାଲ୍ ଆକ୍ଟିଭିଟି ପ୍ରବାହରେ ଆତ୍ମଶକ୍ତି ଯେମିତି ପୁଷ୍ଟହୁଏ, ସମାନ୍ତରାଳ କର୍ମଗତିରେ ସେମିତି ପୃଥିବୀର ଚେହେରା ଯାଏ ବଦଳି । ବିଶୁଦ୍ଧ ଯୁକ୍ତି କି ଲଜିକ୍ ତେଣୁ ପ୍ରମାଣକରି ପାରିବନାହିଁ ଯେ ପ୍ର୍ୟାକ୍ସିସ୍‌କୁ କର୍ତ୍ତାଆସନରେ ବସାଇବା ଯୋଗୁଁ ମାର୍କ୍ସ ସଂପୂର୍ଣ୍ଣ ବିଚ୍ଛିନ୍ନକରିନେଇଚନ୍ତି ନିଜକୁ ଭାବବାଦର ଐତିହ୍ୟରୁ । ରପ୍‌ଚର୍ ବା ବିଦାରଣ ତେଣୁ ମେଧାବୀ ପ୍ରତୀତି, ବ୍ୟାବହାରିକ ବ୍ୟଞ୍ଜନାରେ ମାର୍କ୍ସ ସେଇ ଜର୍ମନ୍ ଇଡିୟଲଜିର ଶେଷତମ ପ୍ରତିଭୂ । ମୋଟ୍ କଥା, ମଣିଷ କାହାରି ପ୍ରତିରୂପ ନୁହେଁ, କି ଈଶ୍ୱରଙ୍କୁ ଉପଲବ୍ଧିକରିବାକୁ ଜଗକୁ ଆସିନାହିଁ, କର୍ମ ହିଁ ତାର ଜୀବନ ଆଉ ପରିଚୟ । ଅର୍ଥାତ୍ ସକଳ କର୍ମର କର୍ତ୍ତା ଏକମାତ୍ର ମଣିଷ । ଏକଥା ବସ୍ତୁବାଦ କି ଭାବବାଦ ? ଠିକଣାକରୁ ଏଥର ଇଣ୍ଟରପ୍ରିଟେସନ୍ ! ନିଜେ କିନ୍ତୁ ମାନିନାହାଁନ୍ତି ଭେଦରେଖା; ବରଂ ଲେଖୁଚନ୍ତି, Feuerbach resolves the religious essence into the human essence । ଅର୍ଥାତ୍, ଦୁଇ ରକମ ଏସେନ୍ସ (ନିର୍ଯ୍ୟାସ) ବିଦ୍ୟମାନ; ମାତ୍ର Man can be distinguished from animals by consciousness, by religion or anything else you like. They themselves begin to produce their means of subsistence, a step which is conditioned by their physical organisation. By producing their means of

subsistence men are indirectly producing their actual material life । ଭାବବାଦର ଅବସ୍ଥାନ ତେଣୁ ସମାଜର ସୁପରଷ୍ଟ୍ରକ୍‌ଚରରେ, ମୌଳିକ ଉପାଦାନ ନୁହେ ଜୀବନନିର୍ବାହର ।

ମୌଳିକ ଉପାଦାନକୁ ନିର୍ଯ୍ୟାସ ବିବେଚନାକରିବା ଦର୍ଶନବିଦ୍ୟାର ବଦ୍ଧସଂସ୍କାର, ଅରିଷ୍ଟୋଟ୍‌ଲ୍‌ଙ୍କ ବେଳରୁ ଗଡ଼ିଆସୁଚି; ଆମର ବି ଏଠି ଶଙ୍କର କହିଚନ୍ତି ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା; ମାନେ, ବ୍ରହ୍ମ ହିଁ ମୌଳିକ ଉପାଦାନ । ଇନ୍ଦ୍ରିୟଗ୍ରାହ୍ୟ ହୁଏନା କାହିଁକି ? କାହିଁକିନା, ତାକୁ ଢାଙ୍କିପକାଉଚି ନାମ ରୂପ ଆବରଣ । ଯେହେତୁ ବିମୂର୍ତ୍ତ, ନିର୍ଯ୍ୟାସ ଏକ ଆଇଡିଆ ମାତ୍ର; ମାତ୍ର ଧାରଣ / ବହନକରୁଚି ବାହ୍ୟଜଗତକୁ । ଦଳେ ତେଣୁ ଭାବିଚନ୍ତି, ନିର୍ଯ୍ୟାସ ଆଗେ ଅସ୍ତିତ୍ୱ ପଛେ । ଆଉଦଳେ କହିଚନ୍ତି, ଅସ୍ତିତ୍ୱ ହିଁ ପ୍ରାଥମିକ, କାହିଁକିନା, ନିର୍ଯ୍ୟାସ ଧାରଣାଟା ବାହାରୁଚି ତାଆରି ଦିହରୁ ବିମୂର୍ତ୍ତାୟନ ପ୍ରକ୍ରିୟାରେ । ଅର୍ଥାତ୍, କୋଉଗୋଟାଏ ଦଳ ବି ମଣିଷର ଐହିକ ଅବସ୍ଥିତିର ଅସଲ ରହସ୍ୟ ଉଦ୍‌ଘାଟନକରିବାକୁ ସମର୍ଥନୁହେଁ, ଯଦିଓ ମଣିଷ ଆକାଶ କି ପାତାଳରେ ବସବାସ କରେନା, ଜନ୍ମରୁ ମରଣ ସମାଜଭିତରେ ନାନାଦି ମଣିଷଙ୍କ ସାଙ୍ଗରେ ଅସଂଖ୍ୟ ସଂପର୍କର ଛନ୍ଦିହୋଇ ଜୀବନ କଟାଏ । ସେ ସମ୍ବନ୍ଧଗୁଡ଼ାକ ବି ଆକାଶରୁ ଖସେନା; କାମଧନ୍ଦା ଉଠାବସା କଥାବାର୍ତ୍ତା ପ୍ରେମଘୃଣା ଭାଷା ଯୌନତା ଆଧିପତ୍ୟ ସଂଘାତ ଭଳି ଆଦାନପ୍ରଦାନ ତିଆରିକରେ ସଂପର୍କ । ସେଇଥିରୁ ବାହାରକରିହେବ ସାଧାରଣ ଗୁଣଧର୍ମ; ନିର୍ଯ୍ୟାସ ଭଳି ବିଦେହୀ ବର୍ଣ୍ଣନା ଜାଗାରେ, ସାଧାରଣ ଗୁଣଧର୍ମକୁ କହିହେବ ମାନବଧର୍ମ ବା ମନୁଷ୍ୟସ୍ୱଭାବ । ମାର୍କ୍ସ ଧରିଚନ୍ତି ସେଇ ବାଟ, କାହିଁକିନା, ଅଣ୍ଟୋଲଜି (ପାରସ୍ପରିକ ନୈକଟ୍ୟ କି ଦୂରତ୍ୱ) ସ୍ଥିରକରିହେବ ଏକମାତ୍ର ସେଇ ବାଟରେ; ଆଉ, ଅଣ୍ଟୋଲଜି ଜଣାପଡ଼ିଲେ ପଲିଟିକ୍ସର ବାଗବର୍ଗ ବି ହୋଇଯିବ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ, କାହିଁକିନା, ଏ ପ୍ରଣାଳୀ ଏକକ ସତ୍ତାକୁ ସ୍ୱୀକାରକରେ ଯେତିକି, ସମଗ୍ରତାକୁ ତତୋଧିକ । କିନ୍ତୁ ଉଭୟ ପରିସରର ସ୍ଥିତି, ଗତି ଓ ପରିଣତିକୁ ନିର୍ଦ୍ଧାରଣକରୁଚି ଚେତନା । ଚେତନାକୁ ଜୀବବିଦ୍ୟା, ମନୋବିଦ୍ୟା ଓ ଧନବିଦ୍ୟାର ସାମାଜିକ ଅନ୍ୱୟ ଧରାଗଲେ ସୁଦ୍ଧା, ମାର୍କ୍ସ ବ୍ୟବହାରକରିଚନ୍ତି ଫରାସୀ ଶବ୍ଦ 'ଆଁସାଁବ୍ଲ' (ସଂଗୀତର ଐକତାନ) । ସୁରସଙ୍ଗତି ବଜାୟ ରଖିବାକୁ ହେଲେ ଅଂଶ ଓ ସମଗ୍ର ହେବେ ପରସ୍ପର ଅଭିନ୍ନ । ଟୋଟାଲିଟିର ଜର୍ମନ୍ ପ୍ରତିଶବ୍ଦ *das Ganje* ଲେଖିନାହାଁନ୍ତି, କାହିଁକିନା, ଟୋଟାଲିଟି ସୂଚନାକରେ ପରିମାଣ, ଆଁସାଁବ୍ଲ ପ୍ରକାଶକରୁଚି ବର୍ଗଗତ ଗୁଣ; ହଜାରେ ସାମାଜିକ ସଂପର୍କ ଭିତରଦେଇ ସେ ଗୁଣକୁ ସଂଜ୍ଞାବଦ୍ଧକରୁଚି ମଣିଷ ମୁହୂର୍ତ୍ତରୁ ମୁହୂର୍ତ୍ତ; ସାଧାରଣ ସେଇ ବର୍ଗଗୁଣକୁ ମାର୍କ୍ସ ଚିହ୍ନିତକରନ୍ତି ଅନ୍ତଃସାର/ନିର୍ଯ୍ୟାସ, ଯେହେତୁ କର୍ମତର

ସେଇ ଅନ୍ତଃସାର ଭିତରେ ଫିଲଜଫି (=ଅଣ୍ଟୋଲଜି) ସାଙ୍ଗକୁ ରହିଚି ପଲିଟିକ୍ସ (=ବିରୋଧ ମୀମାଂସା) । ଅର୍ଥାତ୍, ପାରସ୍ପରିକ ଦୂରତ୍ୱ, ଯା ନଥିଲେ କ୍ରିୟାପ୍ରତିକ୍ରିୟା ସମ୍ଭବହୁଏନା । କ୍ରିୟାପ୍ରତିକ୍ରିୟାର ଯୋଗଫଳ ତେଣୁ ସାମାଜିକ ସଂପର୍କର ଯୋଗଫଳ । ତାକୁ ଐକ୍ୟତାନ କହିବା ମାନେ ଉଦ୍ଦେଶ୍ୟ ଆରୋପକରିବା । ଆରୋପିତ ସେଇ ଉଦ୍ଦେଶ୍ୟ ଯଦି ବାଧାପାଏ, ପଲିଟିକ୍ସର ହେବ ସୂତ୍ରପାତ । ମାର୍କ୍ସ ତେଣୁ 'ଏସେନ୍ସ'ଅର୍ଥରେ ବ୍ୟକ୍ତିବିଶେଷର ଗୁଣାଗୁଣର ଅଦୃଶ୍ୟ କୋଉ ରହସ୍ୟମୟ ସଂସ୍କରଣ ବୁଝନ୍ତିନାହିଁ; ବର୍ଗଗୁଣ ବା ଜିନସ୍ ହିଁ ତାଙ୍କ ଦୃଷ୍ଟିରେ 'ହିଉମାନ୍ ଏସେନ୍ସ', ଯାହାକୁ ଉତ୍ତରୋତ୍ତର ବିକଚିତକରି ମଣିଷ ଗଠିତକରୁଚି ଇତିହାସର ଗତି । ଆତ୍ମବିକାଶ ଘଟୁଚି ସମାଜ ସହଯୋଗରେ; ସମାଜର ପରିବର୍ତ୍ତନ ଘଟୁଚି ସାମୂହିକ ଉଦ୍ୟମରେ; ସାମୂହିକ ସେଇ ଉଦ୍ୟମର ଅନ୍ୟନାମ ପଲିଟିକ୍ସ, କାହିଁକିନା, ବିଦ୍ରୋହ କି ବିପ୍ଳବ ସାମୂହିକ ନହେଲେ ସମାଜର ପରିବର୍ତ୍ତନ ଘଟେନା, ଏବଂ ବିପ୍ଳବ ଯେହେତୁ ଐକତାନ, ସ୍ଥିତାବସ୍ଥା ପ୍ରତି ଉଦାସୀନରହିବା ମଣିଷର ସ୍ୱଭାବ ନୁହେଁ; ଏବଂ ନୁହେଁ ବୋଲି, ବିପ୍ଳବ ଚିରସ୍ଥାୟୀ । ହେଗ୍ଲଙ୍କ ଦୃଷ୍ଟିରେ ଯା ବାସ୍ତବ, ତାହାହିଁ ଯଥାର୍ଥ (ର୍‍ୟାସନାଲ୍); ଯଥାର୍ଥ ନହେଲେ ବାସ୍ତବରେ ପରିଣତ ହୋଇପାରେନା । ମାର୍କ୍ସ କିନ୍ତୁ ର୍‍ୟାସନାଲିଟି ବିଷୟରେ ବୀତସ୍ପୃହ, କାହିଁକିନା, ବାସ୍ତବ ଯଦି ବିପ୍ଳବର ପ୍ରରୋଚନା, ତାକୁ ଯଥାର୍ଥ କି ଅଯଥାର୍ଥ କହିବା ନିରର୍ଥକ, ବିଶେଷତଃ ବିପ୍ଳବକୁ ଛାଡି ବାକି କଥାଗୁଡ଼ାକ ଯେହେତୁ ଅନିତ୍ୟ ବା ଅସ୍ଥାୟୀ । ବିପ୍ଳବ ଯେହେତୁ ଚିରସ୍ଥାୟୀ, ଯଥାର୍ଥ ଓ ବାସ୍ତବ ।

ବିଧିବଦ୍ଧ ଥିୟରି ନୁହେଁ; ଫୟରବାଖ୍‌ଙ୍କ ପ୍ରସ୍ତାବର ଜବାବ ମାତ୍ର । କିନ୍ତୁ ୧୮୪୪ ଶେଷବେଳକୁ କ୍ୟାସ୍‌ପର୍ ସ୍ମିଥ୍, ଛଦ୍ମନାମରେ ଲେଖନ୍ତି *The Ego and its Own* । ସ୍ମିଥ୍ ଯେହେତୁ ଆ୍ୟନାର୍‌କିଷ୍ଟ୍ (=ନୈରାଜ୍ୟବାଦୀ), ସ୍ପଷ୍ଟ କହିଦେଇଥିଲେ ସମାଜ କାହାରି ସଂପତ୍ତିନୁହେଁ; କିନ୍ତୁ ପ୍ରତ୍ୟେକ ଲୋକ ନିଜ ଦେହ, ପ୍ରୟୋଜନ ଓ ଚେତନାର ଏକମାତ୍ର ମାଲିକ; ତାର ଏକମାତ୍ର ପ୍ରତିପକ୍ଷ କିନ୍ତୁ ଆଧୁନିକ ରାଷ୍ଟ୍ର, ଯୋଉ ରାଷ୍ଟ୍ରଶରୀରରେ ନାଗରିକ ଉପରେ ପ୍ରଭୁତ୍ୱକରିବା ସକଳ କ୍ଷମତା ହୋଇଚି ପୁଞ୍ଜିଭୂତ; ବିଶେଷତଃ ଯେହେତୁ ଥିୟଲଜି(=ବ୍ରହ୍ମବିଦ୍ୟା) ଦୁନିଆଯାକର ପବିତ୍ର ଅଙ୍ଗଗୁଣକୁ ମଧ୍ୟଯୁଗରୁ ଉଠାଇଆଣି ଠୁଳକରୁଚି ରଜନୀତିକ ଶକ୍ତି ଆକାରରେ । ସର୍ବବ୍ୟାପ୍ତ ସେଇ ଆଧିପତ୍ୟକୁ ଆହ୍ୱାନଜଣାଇବା ହିଁ ଯଥାର୍ଥ ପୁରୁଷକାର । କାହିଁକିନା, ଯୋଉ ସାଧାରଣ କଥାଗୁଡ଼ାକ ପ୍ରତିବାଦ/ପ୍ରତିରୋଧ ସମ୍ବନ୍ଧରେ ସମାଜରେ ପ୍ରଚଳିତ, ବିନା ବ୍ୟତିକ୍ରମରେ, ବିମୂର୍ତ୍ତ ସଂଜ୍ଞା ମାତ୍ର । ଅର୍ଥାତ୍, ମଣିଷ ମାତ୍ରକେ ଯେହେତୁ ଏକ ଅଦ୍ୱିତୀୟ ସତ୍ତା, ବିଶ୍ୱଜନୀନ ପ୍ରମୁକ୍ତିର ଧାରଣା ବୈଧ ହୋଇପାରେନା; ବିଶେଷକୁ ସାଧାରଣରେ

ପରିଣତକରିବା ଆଧିପତ୍ୟବିସ୍ତାରର ଗୋଟାଏ ପୁରୁଣା କୌଶଳ । ତେଣୁ ମଣିଷ ଭିତରେ ଯା ବିଚକ୍ଷଣ (ପ୍ରତିରୋଧ ଇତ୍ୟାଦି), ବ୍ୟକ୍ତିବିଶେଷର ତା ନିଜସ୍ୱ ସଂପତ୍ତି (ପ୍ରପର୍ଟି) । ତତ୍ତ୍ୱ କି ଅନୁଷ୍ଠାନ ତା ଉପରେ ଅନୁଶାସନ ଜାରିକରିବା ଅନ୍ୟାୟ । କିନ୍ତୁ ମାର୍କ୍ସ କେବଳ 'ଏସେନ୍ସ' ପ୍ରତ୍ୟୟଟାକୁ ପ୍ରତ୍ୟାଖ୍ୟାନ କରିଚନ୍ତି, ସାଧାରଣ କୋଉ ସତ୍ୟକୁ 'ସଂଜ୍ଞା ମାତ୍ର' କହି ଉଡ଼ାଇଦେଇ ନାହାଁନ୍ତି; କ୍ୟାସ୍‌ପର୍ ସ୍ମିଥ୍‌ଙ୍କୁ ଜବାବ ନଦେଲେ ଜନଗଣ (ପିପ୍‌ଲ୍), ନେସନ୍, ଭଗବାନ, ଧର୍ମ, ମଙ୍ଗଳ, ଯୁକ୍ତି ପ୍ରଭୃତି ସର୍ବମାନ୍ୟ କ୍ୟାଟିଗରି ଖାଲି ମିଛ ହୋଇଯିବନାହିଁ, ପ୍ରଲେତାରିଏତ୍ ଓ ରେଭୋଲିଉସନ୍ ଭଳି ର୍‌ୟାଡିକ୍ୟାଲ୍ ପ୍ରତୀତି ବି ମିଛହୋଇଯିବ ଏକାସାଙ୍ଗରେ । ଆଉ, ସ୍ମିଥ୍‌ଙ୍କ ବକ୍ତବ୍ୟରେ ବ୍ୟକ୍ତିବିଶେଷର ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିଚେତନାର ସ୍ୱାତନ୍ତ୍ର୍ୟ ଯେହେତୁ ଏକମାତ୍ର ଗ୍ରାହ୍ୟବସ୍ତୁ, କମିଉନିଜ୍ମ ମଧ୍ୟ ହୋଇଯିବ ଗୋଟାଏ ଅବାନ୍ତର ପ୍ରତିଜ୍ଞା ! ହେଲେସୁଦ୍ଧା, ବୈପ୍ଲବିକ ଅନୁଶୀଳନ ଦିଶିବ ଆଧିପତ୍ୟ ବିସ୍ତାରର ଅନ୍ୟତମ ପରିକଳ୍ପ । ବୈପ୍ଲବିକ ଅନୁଶୀଳନ ଅବଶ୍ୟ 'ପ୍ର୍ୟାକ୍ସିସ୍' ତାଙ୍କ ପରିଭାଷାରେ, ତତ୍ତ୍ୱପ୍ରେରିତ କର୍ମଧାରା । କର୍ମରୁ ଲବ୍ଧ ଅଭିଜ୍ଞତା ମଧ୍ୟ ତତ୍ତ୍ୱକୁ ପରିଶୁଦ୍ଧ କରିପାରେ । ତତ୍ତ୍ୱ ଓ କର୍ମ ମଧ୍ୟସ୍ଥ ଏଇ ଆଦାନପ୍ରଦାନ ଯେହେତୁ ଅବିରତ, ଚେତନାର ଅଗ୍ର / ଉର୍ଦ୍ଧ୍ୱଗତି ମଧ୍ୟ ଅବଶ୍ୟମ୍ଭାବୀ । ସ୍ମିଥ୍‌ଙ୍କ ଆହ୍ୱାନର ସମ୍ମୁଖୀନହୋଇ ପ୍ରତୀକଧର୍ମୀ ପ୍ର୍ୟାକ୍ସିସ୍‌କୁ ଏକ୍ଷଣି ପରିଣତକରିଦେଲେ ଐତିହାସିକ ପ୍ରକ୍ରିୟା, ପ୍ରଡକ୍ସନ୍ । ଏବଂ ପ୍ରଡକ୍ସନ୍ ଯେହେତୁ ସାମୂହିକ ସାମାଜିକ କର୍ମଧାରା ଓ ଅନିବାର୍ଯ୍ୟ ଜୈବିକ ପ୍ରରୋଚନା, ତାର ଐତିହାସିକ ବାସ୍ତବତା ମଧ୍ୟ 'ସଂଜ୍ଞା'କୁ ଅପେକ୍ଷାକରେନା । ଲେଖିଲେ *ଜର୍ମନ୍ ଇଡିୟଲଜି* ।

ଭାବବାଦ ବା ଇଡିଆଲିଜ୍ମର ବୈଶିଷ୍ଟ୍ୟ ହେଲା, ଇନ୍ଦ୍ରିୟଗୋଚର ଜିନିଷର ସତ୍ୟତାକୁ ଅସ୍ୱୀକାର, କାହିଁକିନା, ଏକମାତ୍ର ସତ୍ୟବସ୍ତୁ ଯେହେତୁ ମନ ଓ ମନୋଜଗତ୍, ଜଡ଼ ଅସ୍ତିତ୍ୱ ମନର ଆଧେୟ ମାତ୍ର । ଅର୍ଥାତ୍, ମନ ଯେତେଦୂର ଭାବିପାରେ ବସ୍ତୁଜଗତର ପ୍ରସାର ଖାଲି ସେତିକିଯାଏଁ; ସୀମିତ ସାମର୍ଥ୍ୟ ନେଇ ମନ ସବୁକିଛି ଅଧିଗତ କରିପାରେନା; ଈଶ୍ୱରୀୟ ଅବଲୋକନ କିନ୍ତୁ ସୀମାବଦ୍ଧ ନୁହେଁ । ବସ୍ତୁବାଦ ବା ମେଟିରିଆଲିଜ୍ମ ବସ୍ତୁଜଗତକୁ ବିଭ୍ରମ (ମାୟା) ଭାବେନା, କାହିଁକିନା, ଯୋଉ ଜିନିଷର ଅସ୍ତିତ୍ୱ ପ୍ରତ୍ୟକ୍ଷ, ତା ପଞ୍ଚଭୂତ ଭଳି ପ୍ରାକୃତିକ ଉପାଦାନର ସମାବେଶ; ସ୍ଥାନକାଳ ଭେଦରେ ପରିଗ୍ରହକରେ ରୂପ, ରୂପାନ୍ତର । କୋଉହେଲେ ପ୍ରାକୃତିକ ପ୍ରପଞ୍ଚକୁ ବୋଧଗମ୍ୟ କରିବାକୁ ପରାବିଦ୍ୟା ଅନାବଶ୍ୟକ, ମନ ଯେହେତୁ ଭୂତବସ୍ତୁର ହିଁ ରୂପାନ୍ତର । ଅଥଚ ଆଇଡିୟଲଜି ବା ଭାବାଦର୍ଶ ବସ୍ତୁ ନୁହେଁ କି ଭାବ ନୁହେଁ; ଏପରିକିଲ, ଦ୍ୱାନ୍ଦ୍ୱିକ ସମ୍ବନ୍ଧ ମଧ୍ୟ ନୁହେଁ । କାହିଁକିନା, ପରିମାଣଗତ ଆପେକ୍ଷିକତା

ଘଟାଇପାରେ ଗୁଣଗତ ପରିବର୍ତ୍ତନ, ଯେପରି ଜଡ଼ରୁ ଜୀବନ । ପ୍ରକୃତି ତ ପରସ୍ପର ବିପରୀତ ଉପାଦାନର ଏକୀକୃତ ଅନ୍ୱୟ; ସେଥିପାଇଁ, ଅନେକ ବୈପରୀତ୍ୟର ସମାହାର । ଏକ ବୈପରୀତ୍ୟ ସହିତ ଅପର ବୈପରୀତ୍ୟର ସଂଘାତ ଯେହେତୁ ସ୍ୱାଭାବିକ, ସଂଘାତରୁ ତୃତୀୟ ଯୋଉ ମାତ୍ରା ଉଦ୍‌ଗତହୁଏ, ଉଭୟ ବୈପରୀତ୍ୟକୁ ଅତିକ୍ରମ କରିଥାଏ ସାଧାରଣତଃ । କିନ୍ତୁ ଆଇଡିୟଲଜି ସେପରି ଦାର୍ଶନିକ ଅବବୋଧ ନୁହେଁ; ନୁହେଁ ବୋଲି, ମାର୍କ୍ସ ତାକୁ ଯୋଡ଼ିଦେଇଚନ୍ତି ଇତିହାସ ସାଙ୍ଗରେ । ଇତିହାସର ଇତି ନାହିଁ ତ ଆଇଡିୟଲଜିର ବି ଇତି ନାହିଁ; ଇତିହାସର ଗଠନ ଅଛି ତ ଆଇଡିୟଲଜିର ବି ଅଛି ଷ୍ଟ୍ରକ୍‌ଚର୍ । ଅର୍ଥାତ୍, ଗଢ଼ିଉଠୁଥିବା ସମାଜସଂଗଠନରେ ସେବ୍ୟ-ସେବକ ସଂପର୍କର ସଚେତନତା । ଜୀବନଯାତ୍ରାର ନିତ୍ୟାବଶ୍ୟକ ଉତ୍ପାଦନକରିବାକୁ ଯାଇ ଯୋଉସବୁ ସଂପର୍କରେ ସାମାଜିକ ମଣିଷ ଅବଦ୍ଧହୁଏ, ତଦ୍‌ପ୍ରସୂତ ବୈପରୀତ୍ୟ, structure in dominance, ଭାବବାଦ ସହିତ ବସ୍ତୁବାଦର ବିରୋଧ ଭଳି ଅସ୍ପଷ୍ଟ, କିନ୍ତୁ ପ୍ରବଣତାରେ ପ୍ରତିବାଦୀ । ସେଇ ପ୍ରତିବାଦୀ ଚେତନା ବ୍ୟକ୍ତିବିଶେଷକୁ କର୍ତ୍ତା ବା ସବାଜେକ୍ଟ ଭାବରେ ନିର୍ମାଣକରେ; କରେ ବୋଲି, ଭାବାଦର୍ଶ ଅସ୍ତିତ୍ୱରୁ ଅବିଭାଜ୍ୟ । ସ୍ପଷ୍ଟତଃ ଶ୍ରେଣୀଚେତନା, ଉତ୍ପାଦନ-ସଂପର୍କରୁ ଯାର ଉତ୍ପତ୍ତି । ଆଧିପତ୍ୟର ଅଭିଜ୍ଞତା ଯେହେତୁ ବ୍ୟକ୍ତିଗତ, ସ୍ଥିରକରିଦିଏ ପ୍ରତ୍ୟେକ ମଣିଷର ଆପେକ୍ଷିକ ସାମାଜିକ ଅବସ୍ଥାନ; ଏବଂ ସେଇ ଚେତନା ନିର୍ଦ୍ଧାରଣକରେ ଚିନ୍ତାଚେତନାର ବାଗବର୍ଗ । ଆଉ, ଉତ୍ପାଦନସଂପର୍କରୁ ଉଠିଆସିବା ଅର୍ଥ, ତାର ମଧ ବିସ୍ତାର ଘଟେ ସମଷ୍ଟିକୁ, ଯୋଉ ବିସ୍ତାର ସମାଜକୁ ଯୋଡ଼ିଦିଏ ଇତିହାସ ସାଙ୍ଗରେ । ବ୍ୟକ୍ତିବିଶେଷର ନିରବଲମ୍ବ ମାନବିକ ସତ୍ତା, କ୍ୟାସ୍‌ପର୍ ସ୍ମିଥ୍‌ଙ୍କ ଯା ପ୍ରତିପାଦ୍ୟ, ସେଥିପାଇଁ, ବିମୂର୍ତ୍ତ ଏକ ଅବବୋଧ । ଏଇ ବିନ୍ଦୁରେ, ଆଲ୍‌ଥୁସର୍ କହୁଚନ୍ତି, ମାର୍କ୍ସବାଦର ଘଟିଚି 'ହିଉମାନିଜ୍ମ' ସହିତ ବିଚ୍ଛେଦ । କାହିଁକିନା, ଇତିହାସ କେନ୍ଦ୍ରକୁ ଚାଲିଆସିଚି ଅର୍ଥନୀତି (ଉତ୍ପାଦନ); ମଣିଷ ହୋଇଯାଇଚି ଉତ୍ପାଦନର ଉପଲକ୍ଷ୍ୟ, ପ୍ରଧାନ ଲକ୍ଷ୍ୟ ରହିଚି କେବଳ ଉଦ୍‌ବୃତ୍ତସଂଗ୍ରହ ଓ ବଣ୍ଟନ । ଏପିଷ୍ଟେମଲଜିର ଏ ଦୁରୂହ ତର୍କ ଭିତରକୁ ନପଶି କାଣ୍ଡଜ୍ଞାନ କହିଦେବ, ଉତ୍ପାଦନ-ବଣ୍ଟନ ଶୂନ୍ୟପରିସରରେ ସଂଘଟିତହୁଏନା, କି ମନୁଷ୍ୟ-ଇତର କୋଉ ଏଜେନ୍ସି ତାକୁ ପରିଚାଳିତ କରେନା । ଫଳାଫଳ ବି ଭୋଗକରେ କେବଳ ମଣିଷ; ଲକ୍ଷ୍ୟ ପରିବର୍ତ୍ତେ ଉପଲକ୍ଷ୍ୟେ ହେବ ତେବେ କାହିଁକି ?

*ଜର୍ମନ୍ ଇଡିୟଲଜି* 'ଉତ୍ପାଦନ' କୁ ଦେଖିଚି ଏକ ଆକ୍ଟିଭିଟି, ଯୋଉ ଆକ୍ଟିଭିଟି ମାଧ୍ୟମରେ ବାହ୍ୟପ୍ରକୃତିକୁ ବିବିଧ ବିଚିତ୍ର ସମ୍ଭାରରେ ରୂପାୟିତକରେ ମଣିଷ; ଅର୍ଥାତ୍ ସଂଘଟିତକରେ ରୂପାନ୍ତର, ଫର୍‌ମେସନ୍ ଆଉ ଟ୍ରାନ୍ସଫର୍‌ମେସନ୍ । ଫୟର୍‌ବାଖ୍‌ଙ୍କ

ଭିତରବାହାର ଦ୍ୱାନ୍ଦ୍ୱିକତାର ମୀମାଂସାକରିଚି ପ୍ର୍ୟାକ୍ସିସ୍ ରୂପକ ଅଣ୍ଟୋଲଜି, ଜ୍ଞାନ ଆଉ କର୍ମର ଦ୍ୱାନ୍ଦ୍ୱିକ ଅନ୍ୱୟ । ଏଥର ଇଡିୟଲଜି ଉଦ୍‌ଘାଟନ କରିଚି ଆଉଗୋଟାଏ ଅଣ୍ଟୋଲଜି, ପ୍ରଡକ୍ସନ୍ । କାହିଁକିନା, ଉତ୍ପାଦନ ହିଁ ମାନବଅସ୍ତିତ୍ୱର ପ୍ରାଥମିକ ସର୍ତ୍ତ, ମନୁଷ୍ୟତ୍ୱ । ତା ବିପରୀତରେ ଛିଡ଼ାକରିଦେଲେ ଚେତନାକୁ, ମନୁଷ୍ୟତ୍ୱର ସଚେତନତା । ଉତ୍ପାଦନ ହିଁ ଅସ୍ତିତ୍ୱରକ୍ଷାର ଅଙ୍ଗାଙ୍ଗୀ; ଏକାଧାରେ ବ୍ୟକ୍ତିଗତ, ପୁଣି ବ୍ୟକ୍ତିକୁ ଅତିକ୍ରମ କରି ସାମୂହିକ । ବାହ୍ୟପ୍ରକୃତିର ରୂପାନ୍ତର ଘଟାଏ ଯେମିତି, ମନୁଷ୍ୟତ୍ୱର ରୂପାନ୍ତର ଘଟାଏ ସେମିତି । ସେଇ ଯୌଥ-ପ୍ରକ୍ରିୟା ଗଠନକରେ 'ଇତିହାସ' । ଅନ୍ୟ ଶବ୍ଦରେ, ସାମାଜିକ ଅସ୍ତିତ୍ୱ ପଣ୍ୟ କି ଇତିହାସକୁ ଉତ୍ପାଦନକରେ ଯେତିକି, ତାଠୁଁ ବେଶି ବା ସର୍ବାଧିକ ଉପାଦାନକରେ ନିଜକୁ, ମନୁଷ୍ୟତ୍ୱକୁ । ଏଣେ, ଇଡିୟଲଜି ବି ନିଜେ ଏକ ପ୍ରଡକ୍ଟ (ମାର୍କ୍ସ ଲେଖିଚନ୍ତି, ପ୍ରଡକ୍ଟ ଅବ୍ ଇଣ୍ଟେଲେକ୍‌ଚୁଆଲ୍ ଲେବର୍) । ସଂଗଠିତ ଆକାର ପାଇଲେ, ଉତ୍ପାଦନ ଲାଭକରେ ଷ୍ଟ୍ରକ୍ଚର୍; ଭାବାଦର୍ଶ ସେମିତି ସାମୂହିକ ଚେତନାରେ ପରିଣତହୋଇ ପ୍ରାପ୍ତହୁଏ ଗଢ଼ଣ । ମାତ୍ର ଏ କେବଳ ତତ୍ତ୍ୱଭିତ୍ତି, ଇତିହାସକୁ ଉପଲବ୍ଧିକରିବା ସକାଶେ ସୂତ୍ରବିଶେଷ । ଉତ୍ପାଦନ-ବଣ୍ଟନର ଦୈନନ୍ଦିନ ପରିସରରେ ଯୋଉ ଭାବାଦର୍ଶ ଆଧିପତ୍ୟକରେ, ଏ ତତ୍ତ୍ୱଭିତ୍ତି ତା ଅନ୍ତରାଳରେ ନିମଜ୍ଜିତହୋଇ 'ଇଣ୍ଟେଲେକ୍‌ଚୁଆଲ୍' ଶ୍ରମଲବ୍ଧ ଉତ୍ପନ୍ନବସ୍ତୁକୁ ଢ଼ାଙ୍କିପକାଏ; ଯା ଫଳରେ, ଉତ୍ପାଦନ ଭିତରଦେଇ ଚେତନାର ବିକାଶ ଉପରକୁ ଦିଶେ ସତେ ଅବା କଞ୍ଚାମାଲ କି ମେସିନ୍ ଭଳି ଅର୍ଥନୀତିକ ଉପାଦାନ, ଇତିହାସଠୁଁ ବିଚ୍ଛିନ୍ନ ପରିଶ୍ରମ । ସେଥିପାଇଁ ଇଡିୟଲଜି ଆବଛା ହୋଇଯାଇ ଚିହ୍ନାପଡ଼େନା; ଚିହ୍ନଟକରିବାକୁ ଦରକାର ହୁଏ, *critique*, ଆଧିପତ୍ୟ କରୁଥିବା ଭାବାଦର୍ଶର ସମୀକ୍ଷା । କ୍ୟାସ୍‌ପର୍ ସ୍ମିଥ୍ ଯାହାକୁ ସର୍ବସାଧାରଣ (ଜେନେରାଲିଟିଜ୍) କହି, ବ୍ୟକ୍ତିସ୍ୱାଧୀନତା ଉପରେ ବଳାତ୍କାର ଭାବିଥିଲେ; ମାର୍କ୍ସ ଦେଖାଇଦେଲେ, ଆଧିପତ୍ୟକରୁଥିବା ଭାବାଦର୍ଶ କାର୍ଯ୍ୟକ୍ଷେତ୍ରରେ କିନ୍ତୁ ବ୍ୟକ୍ତିବିଶେଷଚେତନାର ବିମୂର୍ତ୍ତାୟନ । ବଳାତ୍କାରକୁ ଚିହ୍ନଟକରିବାକୁ ହେଲେ ବିମୂର୍ତ୍ତକୁ ମୂର୍ତ୍ତିଧରିବାକୁ ପଡ଼ିବ; ଅର୍ଥାତ୍, ସାଧାରଣରୁ ବିଶେଷ, ପୁଣି ଏକକରୁ ସମୂହକୁ ଠାବକରି ଇଡିୟଲଜିର ଜନ୍ମବୃତ୍ତାନ୍ତକୁ ବିସ୍ମୃତିରୁ ଉଦ୍ଧାରକଲେ ଯାଇ ସଂଶୟ ରହିବନାହିଁ ଯେ ଭାବାଦର୍ଶଗୁଡ଼ାକ ବ୍ୟକ୍ତିବିଶେଷ ଦ୍ୱାରା ଉତ୍ପନ୍ନ ଆଦର୍ଶ, ଯୋଉ ଆଦର୍ଶ ସାମୂହିକ ସାମାଜିକ ସର୍ତ୍ତ ଭାବରେ ବ୍ୟକ୍ତିକୁ ବ୍ୟକ୍ତି ସାଙ୍ଗରେ, ପୁଣି ବ୍ୟକ୍ତିକୁ ସମଷ୍ଟି ସାଙ୍ଗରେ ଯୋଡ଼ିଦିଏ; ଦିଏ ବୋଲି, ତିଆରିହୁଏ ସଂପର୍କ । ସେଥିପାଇଁ, ଯୋଉ ଧ୍ୟାନଧାରଣା ସର୍ବସାଧାରଣ, ବିମୂର୍ତ୍ତ ବୋଲି ଗୋଟାପଣେ ତାକୁ ପ୍ରତ୍ୟାଖ୍ୟାନ ନକରି କିମ୍ୱା ପୁରାପୁରି ଗ୍ରହଣ ନକରି, ଏପରି ମାନଦଣ୍ଡ

ପ୍ରୟୋଗକରିବା ଉଚିତ ଯଦ୍ୱାରା ସ୍ପଷ୍ଟହୋଇଯିବ କୋଉ ବିମୂର୍ତ୍ତ ଧାରଣାଗୁଡ଼ାକ ଅର୍ଜିତ ଉପଲବ୍ଧି, ଆଉ କୋଉଗୁଡ଼ାକ ଧୂଆଁବାଣ (ମିଷ୍ଟିଫିକେସନ୍) ।

କ୍ୟାସ୍‌ପର୍ ସ୍ମିଥ୍‌ଙ୍କ ନିହିଲକ୍ସ (ସର୍ବବ୍ୟାପୀ ଅବିଶ୍ୱାସ)କୁ ଏକେବାରେ ମୌଳିକ ସ୍ତରରେ ଆକ୍ରମଣକରିଚନ୍ତି, 'ଆଧିପତ୍ୟ' ଧାରଣାଟାକୁ ବଞ୍ଚାଇରଖିବାକୁ । ଅଧିପତ୍ୟ ଧାରଣାଟା ବିମୂର୍ତ୍ତ, କିନ୍ତୁ ବାସ୍ତବ ଜୀବନଯାପନରେ ନିତ୍ୟସକ୍ରିୟ । ଅଥଚ ମାର୍କ୍ସଙ୍କ ବିଚାରରେ, ସାକ୍ଷାତ୍ ବଞ୍ଚନା କିମ୍ବା ପ୍ରଚ୍ଛନ୍ନ ବାଧବାଧକତା ବ୍ୟକ୍ତିବିଶେଷର ଚେତନାବିକାଶ ବାଟରେ ପ୍ରତିକାରଯୋଗ୍ୟ ପ୍ରତିବନ୍ଧକ । କାହିଁକିନା,ଯା ଅଧିପତ୍ୟ କରେ, ବସ୍ତୁତଃ ତା ବଳ ପ୍ରୟୋଗକରେ; ଆଖିକୁ ଦିଶେନା, କାହିଁକିନା, ସର୍ବସାଧାରଣ ପ୍ରପଞ୍ଚ ଭାବରେ ବଳପ୍ରୟୋଗ ବିମୂର୍ତ୍ତ, ଅର୍ଥାତ୍ ଆଇଡିୟଲଜି । କ୍ୟସ୍‌ପର ସ୍ମିଥ୍‌ଙ୍କ ଜେନେରାଲିଟିଜ୍ ବା ଇଉନିଭର୍ସାଲ୍ ତେଣୁ ଗୋଟିଏ ଭାବାଦର୍ଶ । ତାକୁ ଠିଆକରିବାରେ ବ୍ୟକ୍ତିର ଭୂମିକା ଯେତିକି,ବଞ୍ଚାଇରଖିବାରେ ସମାଜର ଭୂମିକା ତଦପେକ୍ଷା ଊଣା ନୁହେଁ । କିନ୍ତୁ, ନିର୍ଦ୍ଦିଷ୍ଟ କୋଉ ଉଦ୍ଦେଶ୍ୟସାଧନ ପାଇଁ ସେଗୁଡ଼ିକୁ ତିଆରିକରାଯାଇଚି, ଧରାପଡ଼ିବ ଡମିନ୍ୟାନ୍ସର ଆପାଦମସ୍ତକ ବିଶ୍ଳେଷଣରୁ, ଫୁକୋ ଯାହାକୁ କହିଚନ୍ତି 'ଜ୍ଞାନବସ୍ତୁର ପ୍ରତ୍ନତତ୍ତ୍ୱ' ( ଆର୍କିଅଲଜି ଅବ୍ ନଲେଜ୍) । ବ୍ୟକ୍ତିବିଶେଷ ଯେ ଅନୁପମ, ନାହିଁ କରିନାହାଁନ୍ତି ମାର୍କ୍ସ, ଖାଲି ଇଉନିଭର୍ସାଲ୍ ଧାରଣାଗୁଡ଼ିକର ନିର୍ବିଚାର ବର୍ଜନକୁ ସମର୍ଥନ କରିପାରିନାହାଁନ୍ତି; ଦର୍ଶନଚର୍ଚ୍ଚାରେ ଇଡିୟଲଜି ସେଥିପାଇଁ ଅଭିନବ ଏକ ପ୍ରତିଜ୍ଞା । ପ୍ରଚଳିତ ସର୍ବସାଧାରଣ ବିଶ୍ୱାସଜଗତ୍ ହିଁ ଭାବାଦର୍ଶର ଜଗତ, ଯା ଗଠନକରୁଚି ସର୍ବାଧିକ ମଣିଷଙ୍କ ଜୀବନଦର୍ଶନ । ନିର୍ଭୁଲ୍ କି ଉପକାରୀ ବୋଲି ନୁହେଁ, ପାରସ୍ପରିକ ସଂପର୍କକୁ ଶାସନକରେ ବୋଲି; ଯେପରି, ପିତା-ପୁତ୍ର/ଗୁରୁ-ଶିଷ୍ୟ / ମାଲିକ-ମୂଲିଆ / ଖଉନ୍ଦ-ଚାକର / ପୁରୋହିତ-ଯଜମାନ ଇତ୍ୟାଦି । ବ୍ୟକ୍ତିବିଶେଷ ତେଣୁ ଆଧିପତ୍ୟର ଅନୁଶାସନରୁ ବିଚ୍ଛିନ୍ନ ନୁହେଁ ।

ସମାଜଜୀବନରେ ଆଇଡିୟଲଜିର ପ୍ରଭାବ ସାବ୍ୟସ୍ତ କରିସାରି, ଇତିହାସଗତିରେ କି ରୂପରେ ଆଇଡିୟଲ୍‌ଜି ପ୍ରକଟହୋଇଚି କ୍ରମାଗତ, ଚିହ୍ନଟକରିବାକୁ ଶ୍ରମବିଭାଜନ (ଡିଭିସନ୍ ଅବ୍ ଲେବର୍) କୁ ମାର୍କ୍ସ କରିଚନ୍ତି ମାପକାଠି । ଭାରତରେ ତାକୁ ଧରାଯାଇଚି ଜାତିଭେଦର ମୂଳସୂତ୍ର । ଅର୍ଥାତ୍, ଶ୍ରମବିଭାଜନର ପ୍ରତ୍ୟେକ ପର୍ଯ୍ୟାୟରେ ଦେଖାଯାଇଚି ଉତ୍ପାଦନ ଓ ବଣ୍ଟନ ଧରଣରେ ପରିବର୍ତ୍ତନ । ବଣ୍ଟନ ଜାଗାରେ 'ବିନିମୟ' (ଇକ୍ସଚେଞ୍ଜ୍) ବୋଧହୁଏ ଅଧିକ ଯଥାର୍ଥ କାହିଁକିନା, ଉତ୍ପନ୍ନଜିନିଷରୁ କିଛି ଅଂଶ ଦେଲାବେଳେ ବଦଳରେ କିଛି ନପାଇଲେ, କେହି କିଛି ଦିଏନା । ଅନ୍ତତଃ, ଉତ୍ପନ୍ନଜିନିଷ ଯେତେବେଳେ ବିନିମୟର ମାଧ୍ୟମ । ପ୍ରକ୍ରିୟାଟାକୁ

କାଳାନୁକ୍ରମିକ ବିକାଶ ଭାବରେ ନଦେଖିଲେ ଗତିର ଦିଗ ଧରାପଡ଼ିବନାହିଁ । ହେଗ୍ଲଙ୍କ ଇତିହାସଦର୍ଶନରେ ମଧ୍ୟ ଏ କାଳବିଭାଗକୁ ଦେଖିହେବ । ସେଭଳି ଆନୁପୂର୍ବିକ ବର୍ଣ୍ଣନା ଉପସ୍ଥାପନ ନକରି ମାର୍କ୍ସ ଦେଖାଇଚନ୍ତି ଏଭଳି ଦୃଷ୍ଟାନ୍ତ ଯା ସ୍ଥାନକାଳର ନିର୍ଦ୍ଦିଷ୍ଟତା ଅତିକ୍ରମକରି ହୋଇପାରେ ସମଗ୍ର ମାନବପ୍ରଜାତିର ଅଗ୍ରଗତିର ପ୍ରତୀକ । ଅର୍ଥାତ୍, ହେଗ୍ଲଙ୍କ ପାଖରୁ ପଥସଂଧାନ ପାଇଥିଲେ ସୁଦ୍ଧା, ମାର୍କ୍ସଙ୍କ ପାଇଁ ଇତିହାସର ଗନ୍ତବ୍ୟ ବିଷୟମୁଖୀ କୋଉ ପରମସତ୍ତା ନୁହେଁ । ପରମସତ୍ତା, ହେଗ୍ଲଙ୍କ ପାଇଁ ଥିଲା, ବସ୍ତୁତଃ ପ୍ରୁସିଆର ରାଜତନ୍ତ୍ର, ଯାର ସଞ୍ଚରଣ ବିକ୍ଷିପ୍ତ ଜର୍ମନ୍‌ଜାତିକୁ କରିପାରେ ଏକସୂତ୍ରରେ ଆବଦ୍ଧ । ମାର୍କ୍ସ ଦେଖିଲେ, ସାମାଜିକ ବାସ୍ତବକୁ ଆଇଡିୟଲଜିରେ ପରିଣତକରିବାକୁ ଚାହିଁଚନ୍ତି ହେଗ୍ଲ, ଯେପରିକି ଜର୍ମନ୍‌ଜାତିର ଭାବଜଗତ ଉପରେ ସେଇ ଆଇଡିୟଲଜି କରିପାରିବ କର୍ତ୍ତୃତ୍ୱ । ମାର୍କ୍ସଙ୍କ ପାଇଁ ଇତିହାସ ଇଡିୟଲଜିର ଲୀଳାକ୍ଷେତ୍ର ନୁହେଁ, ସମଗ୍ର ମାନବପ୍ରଜାତିର ପାରସ୍ପରିକ ନିର୍ଭରଶୀଳତାର ଚଳମାନ ଆଖ୍ୟାନ, ଯୋଉଠି ପ୍ରତ୍ୟେକ ବ୍ୟକ୍ତି, ଗୋଷ୍ଠୀ, ସମାଜର ଭୂମିକା ସକ୍ରିୟ ଓ ସଚେତନ । ଏଇ ଥିଲା ହେଗ୍ଲ-ଫୟବାଖ୍-କ୍ୟାସ୍‌ପର୍ ସ୍ମିଥ୍, ଦାର୍ଶନିକତ୍ରୟଙ୍କୁ କାର୍ଲ ମାର୍କ୍ସଙ୍କ ଜବାବ ।

ଯୋଉ ବିକାଶ ଆଡ଼କୁ ପୃଥିବୀକୁ ଆଗେଇନିଏ ଶ୍ରମବିଭାଜନ, ଅନିବାର୍ଯ୍ୟଭାବେ ସଂପତ୍ତି ଉପରେ ଅଧିକାରର ସମଲକ୍ଷଣ ନିର୍ଦ୍ଧାରଣ; ସମଷ୍ଟିଗତ କି ରାଷ୍ଟ୍ରୀୟ ମାଲିକାନାରୁ ବ୍ୟକ୍ତିଗତ, ଶ୍ରେଣୀନିର୍ବିଶେଷରେ ଅଧିକାର ସବୁଠି ଅଭେଦ । ଉତ୍ପାଦନର ପ୍ରତ୍ୟେକ ଧରଣ ତେଣୁ ମାଲିକାନାର ଐତିହାସିକ ଆଧାରର ପରିବର୍ତ୍ତନ । ଅର୍ଥାତ୍, ଉତ୍ପନ୍ନବସ୍ତୁର ଅସମ ବଣ୍ଟନ (ମାର୍କ୍ସ ଲେଖିଚନ୍ତି, ଆପ୍ରୋପ୍ରିଏସନ୍) । 'ଆପ୍ରୋପ୍ରିୟେସନ୍'ର ଆକ୍ଷରିକ ଅର୍ଥ, ସ୍ୱତ୍ୱାଧିକାର ନଥାଇ ଜୋର୍‌କରି ଯା ଦଖଲ କରାଯାଏ । ଅର୍ଥାତ୍, ବୁଦ୍ଧି କି ବଳ ପ୍ରୟୋଗକରି ଅନ୍ୟଠୁଁ ଛଡ଼ାଇନେବା ହିଁ ଆପ୍ରୋପ୍ରିୟେସନ୍ । ଶ୍ରମବିଭାଜନ, ଏ ବାଟରେ, ଗଢ଼ିଉଠୁଥିବା ଜନଗୋଷ୍ଠୀ ଭିତରକୁ ଡାକିଆଣେ ସାମାଜିକ ବିଭେଦ, ଯା ମନେହୁଏ ସ୍ୱାଭାବିକ । ଆଦିମ ସମଶ୍ରେଣୀ ଅବିଭକ୍ତ ଜନଗୋଷ୍ଠୀ ଭିତରେ ତିଆରିହୁଏ ସଂପତ୍ତିବାନ ଓ ନିଃସମ୍ବଳ ଶ୍ରେଣୀବିଭାଜନ; କୃଷକ ଓ କାରିଗର ବୃତ୍ତିବିଭାଜନ; କ୍ରେତା ଓ ବିକ୍ରେତା ବିନିମୟବିଭାଜନ । ତା ପଛକୁ ଭୂସ୍ୱାମୀ-ଭୂମିଦାସ, କାରିଗରି-ଗିଲ୍ଡଭଳି ନିକାମିକା-କାମିକା ଶୋଷକଶୋଷିତ ବିଭାଜନ । ମାତ୍ର ଯୋଉ ସଂପର୍କ ବୁଝାଇଦିଏ ବିଭାଜନର ଚରିତ୍ର, ତା ସେବ୍ୟ-ସେବକ, ପ୍ରଭୁ-ଭୃତ୍ୟ ଭଳି ଆଧିପତ୍ୟଭିତ୍ତିକ ସାମାଜିକ ସମ୍ବନ୍ଧ, ଡମିନ୍ୟାଣ୍ଟ୍ ଓ ଡମିନେଟିଡ୍ ଯୋଗସୂତ୍ର । ବୁଝାଇଦିଏ ବୋଲି, ବାସ୍ତବର ଦ୍ୱିଖଣ୍ଡନ ସୃଷ୍ଟିକରେ ବୈପରୀତ୍ୟ; ମାର୍କ୍ସ ଲେଖିଚନ୍ତି, 'କଣ୍ଟ୍ରାଡିକ୍ସନ୍' । କଣ୍ଟ୍ରାଡିକ୍ସନ୍, କାହିଁକିନା,

ମନୁଷ୍ୟସମାଜ ମୂଳତଃ ଅବିଭାଜ୍ୟ ଏବଂ ଏଇ ସର୍ବମାନ୍ୟ 'ରିଆଲିଟି' ଭିତରେ ଆପେକ୍ଷିକତାର ସ୍ଥାନନାହିଁ । ଶ୍ରେଣୀବିଭାଜନ ଭଳି ଆପେକ୍ଷିକତା, ମଣିଷ-ମଣିଷ ମଧ୍ୟସ୍ଥ ସାମାଜିକ ସଂପର୍କକୁ ପ୍ରଶସ୍ତରୁ ପ୍ରଶସ୍ତତର ନକରି, ଦୁନିଆସାରା ବିଛୁଡ଼ି ନଦେଇ, ଶ୍ରେଣୀ ଭଳି ନରୁଦ୍ଧତା ଭିତରେ ଖାଲି ସଙ୍କୁଚିତ କରେନା, କରିଦିଏ ସଂକୀର୍ଣ୍ଣ । ଐକ୍ୟରୁ ଅନୈକ୍ୟ, ସାମ୍ୟରୁ ଅସାମ୍ୟ ଭଳି କ୍ରମାଗତ ସଙ୍କୋଚନ, ସେଥିପାଇଁ, ସର୍ବଜନୀନ ସଂପର୍କଗୁଡ଼ାକୁ ରୂଢ଼ ପ୍ରତ୍ୟାଖ୍ୟାନ । ମାର୍କ୍ସ ଲେଖିଚନ୍ତି, 'ନିଗେସନ୍' । କାହିଁକିନା, ଏ ପ୍ରତ୍ୟାଖ୍ୟାନ ବିମୂର୍ତ୍ତ ନୁହେଁ । ମାଲିକାନାର ପୂର୍ବବର୍ତ୍ତୀ ଆକାରକୁ ଅସ୍ୱୀକାରକରି ପରବର୍ତ୍ତୀ ଆକାରକୁ ଅବତରଣ । ତେଣୁ ଅସ୍ୱୀକୃତିର ଅସ୍ୱୀକୃତି, ନିଗେସନ୍ ଅବ୍ ନିଗେସନ୍ । ଏଇ ବିଭାଜନଗୁଡ଼ାକୁ ଅତିକ୍ରମକରିବାର ଆନୁପୂର୍ବିକ ଆଖ୍ୟାନ ତେଣୁ 'ଇତିହାସ' ।

'ପ୍ରେମିସ୍' ମାନେ ପ୍ରତିଜ୍ଞା; ଏପରି ପ୍ରତିଜ୍ଞା ଯା ଉତ୍ପନ୍ନକରିପାରେ ଇନ୍‌ଫରେନ୍ସ ବା ସିଦ୍ଧାନ୍ତ; ମାତ୍ର ମାର୍କ୍ସପୂର୍ବବର୍ତ୍ତୀ ଦର୍ଶନଚିନ୍ତାରେ ପ୍ରେମିସ୍ ନାହିଁ, ଅଛି କେବଳ ସିଦ୍ଧାନ୍ତ । ଏକ୍ଷଣି, ନିଗେସନ୍ ଯଦି ମାର୍କ୍ସଙ୍କ ସିଦ୍ଧାନ୍ତ, ତାର ପ୍ରେମିସ୍ ହେବ ବହିର୍ପ୍ରକୃତି ସହିତ ମଣିଷର ଦ୍ୱାନ୍ଦ୍ୱିକ ସଂପର୍କ । ବହିଃପ୍ରକୃତିକୁ ବିବିଧ କୌଶଳରେ ଉପଯୋଗକରି ଜୀବନଧାରଣର ରସଦ ଆଦାୟକରେ ମଣିଷ; ପୁଣି, ନିଜେ ଯେହେତୁ ପ୍ରକୃତିର ଅଂଶବିଶେଷ (ପଞ୍ଚଭୂତ), ପ୍ରକୃତି ସାଙ୍ଗରେ ରହିଚି ସାଯୁଜ୍ୟସମ୍ବେଦନ । ସଂପର୍କର ଏଇ ସଂପ୍ରସାରଣ ସଂଗଠିତକରିଚି ନାଗରିକ (ବୁର୍ଜୋୟା) ସମାଜ; ଯୋଉ ସମାଜ ଭିତରେ ଲାଗିରହିଚି ମଣିଷ ସହିତ ପ୍ରକୃତିର ଦିଆନିଆ ଭଳି ଆହୁରି ଅନେକ 'ଇଣ୍ଟରକୋର୍ସ', ଆଧୁନିକ ପରିଭାଷାରେ କମିଉନିକେସନ୍ ବା ଯୋଗାଯୋଗ; ଯେପରି, ସଂପତ୍ତିର ବ୍ୟକ୍ତିଗତ ମାଲିକମାନଙ୍କ ଭିତରେ ପାରସ୍ପରିକ ପ୍ରତିଯୋଗିତା ସାଙ୍ଗକୁ ପାରସ୍ପରିକ ସହଯୋଗ ଓ ସହାବସ୍ଥାନ । ବୁର୍ଜୋୟା ସିଭିଲ୍ ସୋସାଇଟି ନିଜ ଅଭ୍ୟନ୍ତରରେ ତେଣୁ ପୋଷିରଖିଚି କଣ୍ଟ୍ରାଡିକ୍ସନ୍ । କାହିଁକିନା, ବ୍ୟକ୍ତିସତ୍ତା, ଜ୍ୟାସ୍‌ପର୍ ସ୍ମିଥ୍ କହିବା ଭଳି, ଯଦି ନିରାଲମ୍ବ ଓ ନିଃସର୍ତ୍ତ, କାର୍ଯ୍ୟକ୍ଷେତ୍ରରେ ସବୁଯାକ ନାଗରିକ ସର୍ତ୍ତମୁକ୍ତ ସମାନ ଅସ୍ତିତ୍ୱକୁ ଅନୁଭବକରିବା କଥା, ଯା ଅନିଶ୍ଚିତ ଓ ନିରାପତ୍ତାହୀନ । ନିଜ ଅସ୍ତିତ୍ୱ ପ୍ରତି ଯା ପ୍ରଯୋଜ୍ୟ, ଅସ୍ତିତ୍ୱକୁ ଘେରିରହିଚି ଯୋଉ ବସ୍ତୁପୁଞ୍ଜ, ସେଗୁଡ଼ିକର ମାଲିକାନା ପ୍ରତି ମଧ୍ୟ ସମାନଭାବେ ପ୍ରଯୋଜ୍ୟ । ଅର୍ଥାତ୍ ଅଧିକାରଚ୍ୟୁତ ସର୍ବବ୍ୟାପୀ ଅବସ୍ଥାନ । ଅଥଚ ଅଧିକାରହୀନ (=ମାଲିକାନାହୀନ) ଅବସ୍ଥାରେ ଜୀବନଧାରଣ ଅସମ୍ଭବ । ସମାଜ ବାହାରେ ମଣିଷ ଯେହେତୁ ବଞ୍ଚିପାରେନା, ନିଜ ବ୍ୟକ୍ତିସତ୍ତା ସାଙ୍ଗକୁ ଜୀବନନିର୍ବାହର ଉପକରଣଜଗତ ଉପରେ ଅଧିକାର ସାବ୍ୟସ୍ତକରିବା ତା

ପକ୍ଷରେ ଅବଧାରିତ । କାହାରି ଇଚ୍ଛାଅନିଚ୍ଛା ଉପରେ ଏଇ କାମ ନିର୍ଭରକରେନା । ଅଧିକାର ବା ମାଲିକାନାକୁ କେନ୍ଦ୍ରକରି ବୁର୍ଜୋୟାସମାଜ ତିଆରିହୁଏ ଯେତେବେଳେ, ସ୍ୱାଭାବିକଭାବେ ବ୍ୟବଧାନ ସୃଷ୍ଟିହୁଏ ନାଗରିକ ସମାଜରେ । କାର୍ଯ୍ୟକ୍ଷେତ୍ରରେ ସେଇ ବ୍ୟବଧାନକୁ କହୁଚୁଁ ଶ୍ରେଣୀବୈଷମ୍ୟ; ଏବଂ ସେଇ ବୈଷମ୍ୟକୁ କାର୍ଯ୍ୟକାରୀ କରେ ରାଷ୍ଟ୍ର । କରେ ବୋଲି, ସେଇ ବିନ୍ଦୁରେ ଏକାଧିପତ୍ୟ ଓ ସର୍ବଜନୀନତା ମଝିରେ ଗଢ଼ିଉଠେ ପ୍ରାଚୀର ବା କଣ୍ଟ୍ରାଡିକ୍‌ସନ୍ । ଫଳରେ, ବିସ୍ତାର ଆଉ ବର୍ଜନ, ପୁଣି କର୍ଷଣ (ଭୂମିକର୍ଷଣରୁ ଚିତ୍ତକର୍ଷଣ) ଆଉ ବର୍ବରତା ମଧ୍ୟସ୍ଥ ବ୍ୟବଧାନ ହୋଇଯାଏ ଅସ୍ୱଚ୍ଛ, ଯେପରି ସଂପଦ ଓ ଦାରିଦ୍ର୍ୟ ମଧ୍ୟସ୍ଥ ଦୂରତ୍ୱ ହୁଏ ଉତ୍କଟ । ଭୋଗ୍ୟବସ୍ତୁର ପ୍ରଦକ୍ଷିଣ ଯେହେତୁ ବହୁମୁଖୀ ଓ ସର୍ବବ୍ୟାପୀ, ଉତ୍ପାଦନର ପରବର୍ତ୍ତୀ ଧରଣକୁ ଅଭିସରଣ ମଧ ହୋଇପଡ଼େ ଦୁରତିକ୍ରମ୍ୟ; ଏବଂ ଶ୍ରମର ସମ୍ଭାବନା ଯେହେତୁ ଅପରିସୀମ, ଶ୍ରମଜୀବୀକୁ ସଂକୀର୍ଣ୍ଣ ବିଶେଷଜ୍ଞରେ ପରିଣତକରି ଉତ୍ପାଦନର ସର୍ବଜନୀନତାକୁ କରାଯାଏ ଅବରୁଦ୍ଧ; ସେତେବେଳେ ଆସେ ବିସ୍ଫୋରଣ ମୁହୂର୍ତ୍ତ । ଅର୍ଥାତ୍, ବୈପରୀତ୍ୟ ମୀମାଂସାର ମୁହୂର୍ତ୍ତ । ମାର୍କ୍ସଙ୍କ ଏଇ ଡିସ୍‌କୋର୍ସ ଗଠନରେ ରହିଚି ପ୍ରତ୍ୟେକ ନରନାରୀର ଭୂମିକା, ଡିସ୍‌କୋର୍ସ ତେଣୁ ସମଗ୍ର ମାନବପ୍ରଜାତିର ଉତ୍ତରଣର ସନ୍ଦର୍ଭ; ପାତ୍ରପାତ୍ରୀ ବ୍ୟକ୍ତିବିଶେଷ ନୁହେଁ, ମନୁଷ୍ୟତ୍ୱର ପ୍ରତିନିଧି । କର୍ମଧାରା ଦେଶ-କାଳ ନିର୍ଦ୍ଦିଷ୍ଟତାରେ ଯେତିକି, ଦେଶ-କାଳ ଉର୍ଦ୍ଧ୍ୱରେ ପ୍ରବାହିତ ଇତିହାସ ଗତିରେ ତତୋଧିକ । ଉତ୍ତରଣ ତେଣୁ ଏକ ସର୍ବାତ୍ମକ ଜାଗରଣ, ପ୍ରାକ୍‌ଇତିହାସରୁ ସାକ୍ଷାତ୍ ଇତିହାସକୁ ଅଭିଗମନ । ଏ ଇନ୍‌ଫରେନ୍ସ କିନ୍ତୁ ସୂଚନାକରିଚି ଆହୁରି ଗୋଟିଏ ପ୍ରେମିସ୍ ବା ସୂତ୍ର ଯାର ଯଥାର୍ଥ ପ୍ରୟୋଗ ବୁର୍ଜୋୟାସମାଜକୁ ହଠାତ୍ ଓଲଟାଇପକାଇ ସ୍ଥାପନ କରିପାରେ ବୈଷମ୍ୟହୀନତା । ବୈଷମ୍ୟହୀନତାକୁ ଟ୍ର୍ୟାଞ୍ଜିସନ୍ ତେଣୁ ଆସନ୍ନ; କାହିଁକିନା, ବୁର୍ଜୋୟାସମାଜରେ କର୍ମରତ ଯୋଉ ବୈପରୀତ୍ୟ, ତାର ପରିପୂର୍ଣ୍ଣ ବିକଚନ ସମୟସାପେକ୍ଷ ହେଲେସୁଦ୍ଧା ପରିଣାମ ଅନିବାର୍ଯ୍ୟ; ବିଶେଷତଃ ଏଇ କାରଣରୁ ଯେ, ବିନିମୟ (ଇକ୍ସଚେଞ୍ଜ୍) ଏକ୍ଷଣି ପୃଥିବୀସାରା ଅଭିନ୍ନ ବା ଇଉନିଭର୍ସାଲ୍ । ଉତ୍ପାଦନଶକ୍ତିର ବିକଚନ, ସେଥିପାଇଁ, ସର୍ବସାଧାରଣ ହେବାକୁ ବାଧ୍ୟ । ସାମାଜିକ ଉତ୍ପାଦନର ଏଇ ଶକ୍ତିପୁଞ୍ଜ, ପ୍ରଯୁକ୍ତିଠୁଁ ବିଜ୍ଞାନ, ବିଜ୍ଞାନଠୁଁ ଶିଳ୍ପସାହିତ୍ୟ ପର୍ଯ୍ୟନ୍ତ, ଆତ୍ମପ୍ରକାଶ ପରିଆସୁଚି ସର୍ବତ୍ର; ଯଦିଓ ଅସଲ ପରିଚୟରେ, ସେ ଆତ୍ମପ୍ରକାଶ ଅଗଣିତ ବ୍ୟକ୍ତିସାମର୍ଥ୍ୟର ବିସ୍ଫୋରଣ, ବ୍ୟାବହାରିକ ବିସ୍ଫୋରଣ । ସେଇ ବ୍ୟକ୍ତିସାମର୍ଥ୍ୟ ଅବଶ୍ୟ ରୂପାନ୍ତରିତ ହୋଇନାହିଁ ସାମୂହିକ କର୍ମପ୍ରେରଣାକୁ ଅବ୍ୟାବଧି । ବିଚ୍ଛିନ୍ନ ଏକକ ପରିସରରେ ଆବଦ୍ଧ ନିଃସଙ୍ଗ ପୃଥକ୍ ଲୋକଙ୍କ ଖଣ୍ଡିତ ଏଇ ସାମର୍ଥ୍ୟ, ପାରସ୍ପରିକ ଆଦାନପ୍ରଦାନ ପ୍ରକ୍ରିୟାରେ

ବିଶ୍ୱବ୍ୟାପୀ ସଂଯୋଗରେ ସ୍ଥାନପାଇବା ମଧ୍ୟ ସ୍ୱାଭାବିକ, ଏବଂ ସେଇ ସୂତ୍ରରେ, ମଣିଷର ଚିନ୍ତାଜଗତ ମଧ୍ୟ ପାଲଟିଯାଏ ଇଉନିଭର୍ସାଲ୍, ବିଶେଷତଃ ଯେହେତୁ, ବୈପରୀତ୍ୟର ବିଗଳନ ଜନ୍ମଦେଇପାରେନା ସଂକୀର୍ଣ୍ଣତର କୋଉହେଲେ ମାନବିକତାକୁ, ମାନବିକ ଉଦ୍ୟମ-ଉଦ୍‌ବେଗକୁ କରିପାରେନା ସଙ୍କୁଚିତ, ଜୀବନକୁ ପରିପାରେନା ସମ୍ଭୋଗସର୍ବସ୍ୱ ଓ ନିଃସଙ୍ଗ । ଉତ୍ପାଦନର ଶକ୍ତିସମୂହ ଉପରେ ସମଗ୍ରର ଅଧିକାରସାବ୍ୟସ୍ତ କେବଳ ଆଣିପାରେ ଇପ୍ସିତ ସେଇ ସର୍ବଜନୀନ ଉତ୍ତରଣ, ଯା ନେତୃତ୍ୱରେ ଇତିହାସରୁ ଦିଶୁଚି, ପ୍ରଲେତାରିଏତ୍ ହିଁ ସେଇ ବିଶ୍ୱବ୍ୟାପୀ ଶ୍ରେଣୀ, ଇଉନିଭର୍ସାଲ୍ କ୍ଲାସ୍ । ଏଇ ସିଦ୍ଧାନ୍ତ କିନ୍ତୁ ଅନ୍ୟାନ୍ୟ ରଚନା ତୁଳନାରେ ଜର୍ମନ୍ *ଆଇଡିଅଲଜି* ରେ ପାଇଚି ପୂର୍ଣ୍ଣତର ସ୍ପଷ୍ଟତା । କାହିଁକିନା, ବୁର୍ଜୋୟାସମାଜର ରୂପାନ୍ତର ଆଗତପ୍ରାୟ ଧାରଣାଟା ଆସୁଚି ବିନିମୟ ଯେହେତୁ ଇଉନିଭର୍ସାଲ୍, ବିନିମୟକୁ ବିଶ୍ୱବ୍ୟାପୀ କରିଚି ଯଦିଓ ବୁର୍ଜୋୟା ଆପଣା ଶ୍ରେଣୀସ୍ୱାର୍ଥରେ । ସାମାଜିକଶ୍ରେଣୀ ଭାବରେ ଅବଶ୍ୟ କୋଉହେଲେ ନିର୍ଦ୍ଦିଷ୍ଟ ସ୍ୱାର୍ଥର ସୁରକ୍ଷାକୁ ବୁର୍ଜୋୟା କଦାପି ମନେକରିନାହିଁ କର୍ତ୍ତବ୍ୟ । ନିଃସମ୍ବଳ, ନିର୍ଯ୍ୟାତିତ (ସଂପତ୍ତିନାହିଁ ବୋଲି ସମାଜରେ ମର୍ଯ୍ୟାଦାନାହିଁ) ତ କୋଉହେଲେ ନିର୍ଦ୍ଦିଷ୍ଟ ଗୁଣର ଏକାଧିକାରୀ ନୁହେଁ, ସବୁରକମ ଗୁଣବିଚାରରୁ ବଞ୍ଚିତହୋଇ ପ୍ରଲେତାରିଏତ୍ ହିଁ ବସ୍ତୁତଃ ସର୍ବଗୁଣର ଆକର; ମାନେ, ଅଶେଷ ସମ୍ଭାବନାର ଅଧିକାରୀ । ତା ଅସ୍ତିତ୍ୱକୁ ଯେହେତୁ ଆତ୍ମଶକ୍ତି ସୁରକ୍ଷା ଦେଇପାରେନା, ଅବଶିଷ୍ଟ ମଣିଷଙ୍କ ଶକ୍ତି ହୁଏ ତାର ଅସ୍ତିତ୍ୱର ଉତ୍ସ । ସଂପତ୍ତିବାନ୍, ଜର୍ମନ୍‌ରେ *eigentumslos;* କ୍ୟାସ୍‌ପର୍ ସ୍ମିଥ୍ କାମରେ ଲଗାଇଥିଲେ କଥାଟାକୁ । ମାର୍କ୍ସ ତାକୁ ଓଲଟାଇଦେଇଚନ୍ତି ବ୍ୟକ୍ତିଗତ ସଂପତ୍ତି ପ୍ରେକ୍ଷିତରେ, ଯେ ପ୍ରପର୍ଟି ଖାଲି ସଂପତ୍ତି ନୁହେଁ, ଗୁଣଧର୍ମ ମଧ୍ୟ; ଉଭୟ ଅର୍ଥରେ ନିଜେ ବ୍ୟବହାର କରିଚନ୍ତି ଶବ୍ଦଟାକୁ । ଯେପରି, ଯୋଉ ସର୍ବଜନୀନତା ନେତିବାଚକ, ଯେହେତୁ ତା ସଂପତ୍ତିହୀନତା, ତାକୁହିଁ ପରିଣତକରିଦେବେ ଇତିବାଚକ, ଯେହେତୁ ତା ପ୍ରାଇଭେଟ୍ ପ୍ରପର୍ଟି । ବଞ୍ଚନାକୁ କରିଦେବେ ଆପ୍ରୋପ୍ରିୟେସନ୍ ବା ଜବରଦଖଲ; ବ୍ୟକ୍ତିତ୍ୱହରଣକୁ କରିଦେବେ ବ୍ୟକ୍ତିର ବହୁମୁଖୀବିକାଶ; ଏବଂ ପ୍ରତ୍ୟେକ ପ୍ରକ୍ରିୟାର ପ୍ରେମିସ୍ ହେବ ନିରୁପମ ବହୁବିଧ ମାନବିକ ସଂପର୍କ, only the proletarians of the present day, who are completely shut off from all self-activity are in a position to achieve a complete and no longer restricted self-activity, which consists in the appropriation of a totality of productive forces and in thus postulated development of a totality of capacities । ଅର୍ଥାତ୍,

ଜବରଦଖଲ ଯେତେବେଳେ ଏକ ସାମୂହିକ ପ୍ରକଳ୍ପ, ସେତିକିବେଳେ ବ୍ୟକ୍ତିବିଶେଷ ପାଇଁ ମଧ୍ୟ ତା ଆପ୍ରୋପ୍ରିୟେସନ୍ । ବିପ୍ଳବ ତେଣୁ ପରିମାଣରେ କେବଳ କମିଉନିଷ୍ଟ ନୁହେଁ, ଆକାର ଓ ଆଧାରରେ ମଧ୍ୟ ବୈଷମ୍ୟବର୍ଜିତ । ବ୍ୟକ୍ତିସ୍ୱାଧୀନତା ସେ ପ୍ରକ୍ରିୟାରେ ଖର୍ବ ହୁଏନାହିଁ ? ମାର୍କ୍ସଙ୍କ ବିଚାରରେ, ବ୍ୟକ୍ତିସ୍ୱାଧୀନତା ବାସ୍ତବ ମୁକ୍ତିଚେତନା ଉପରେ କିନ୍ତୁ ଲଗାଇଦେଇଛି ଅଙ୍କୁଶ । ତେଣୁ, In place of the old bourgeois society, with class and class antagonisms, we shall have an association, in which the free development of each is the condition for the free development of all ।

ବକ୍ତବ୍ୟକୁ 'ତତ୍ତ୍ୱ' କି 'ଦର୍ଶନ' କହିବେନାହିଁ ମାର୍କ୍ସ, ଯେହେତୁ ତା ଅର୍ଜନକରିନାହିଁ ପ୍ରୟୋଗସିଦ୍ଧି; ଏବଂ କର୍ମଧାରାରେ ତତ୍ତ୍ୱକୁ ପରଖକରିବାବେଳେ ପରିବର୍ତ୍ତନ ଯେହେତୁ ଅବଶ୍ୟମ୍ଭାବୀ, ଫିଲଜଫି କହିବା ବି ଅସମୀଚୀନ । ତଥାପି, ପଣ୍ୟଉତ୍ପାଦନ କାମଟା ଯେହେତୁ ଶରୀରଶ୍ରମ, ମଣିଷର ଅନ୍ତର ସେଠି ପ୍ରାଧାନ୍ୟ ପାଏନା; ଭିତରବାହାର ଦ୍ୱାନ୍ଦ୍ୱିକତା ରହିଯାଏ ଅମୀମାଂସିତ । ରହିଯାଏ, ପ୍ରାକ୍‌ସିସ୍ ଓ ପୋଇଏସିସ୍ ମଧ୍ୟସ୍ଥ ପାର୍ଥକ୍ୟକୁ ଯେହେତୁ ନିଜ ଚିନ୍ତାଗଠନରୁ ସଚେତନଭାବେ କାଢ଼ିଦେଇଚନ୍ତି ମାର୍କ୍ସ । ଦୁଇଟାଯାକ ଗ୍ରୀକ୍‌ଶବ୍ଦ, ମାତ୍ର ପ୍ରାକ୍ସିସ୍ ମାଲିକଶ୍ରେଣୀର ପ୍ରିଭିଲେଜ୍ । ମାଲିକ କେବଳ ନିଜ ଅଭିରୁଚି ଅନୁଯାୟୀ ନାନାଦି କ୍ରିୟାକଳାପ ଭିତରଦେଇ କରିପାରେ ଆତ୍ମୋପଲବ୍ଧି ଏବଂ ସେଇ ସୂତ୍ରରେ ଘଟାଇପାରେ ଅନ୍ତଃସତ୍ତାର ରୂପାନ୍ତର ବା ବ୍ୟକ୍ତିଗତ ପରିପୂର୍ଣ୍ଣତା । ମଜୁରୀ ବଦଳରେ ଗତରଖଟୁଥିବା ଲୋକପାଇଁ ସେ ସୌଭାଗ୍ୟ ସାତସପନ । କିନ୍ତୁ ପୋଇଏଇନ (poiein) କ୍ରିୟାପଦରୁ ନିଷ୍ପନ୍ନହୋଇଛି ପୋଇଏସିସ୍ । ପୋଇଏଇନ୍ ମାନେ 'ଟୁ ମେକ୍' ଗଢ଼ିବା; ଗ୍ରୀକ୍‌ସମାଜରେ ବିବେଚିତ ହୋଇଛି କ୍ରିତଦାସର କୃତ୍ୟକର୍ମ । ବ୍ୟବହାରଯୋଗ୍ୟ ଜିନିଷ ହୁଏତ ଉତ୍ପନ୍ନହୁଏ; ଅନ୍ତରରେ ପୂର୍ଣ୍ଣତାବୋଧ କିନ୍ତୁ ଉଦ୍ରେକହୁଏନା । ଏଇଠ ପହଞ୍ଚି, ପ୍ରାକ୍‌ସିସ୍ ଉପରେ ପୋଇଏସିସ୍‌କୁ ଦେଇଚନ୍ତି ପ୍ରାଥମିକତା; ବସ୍ତୁବାଦର ମୋଡ଼ ଯାଇଚି ବଦଳି । କାହିଁକିନା, ବସ୍ତୁ ବା ମ୍ୟାଟର୍ ସହିତ ପୋଇଏସିସ୍‌ର ସଂପର୍କ ପ୍ରତ୍ୟକ୍ଷ, ଯୋଉ ଫ୍ରିଡମ୍ ବାସ୍ତବିକ୍ କର୍ମକ୍ଷମ; ବସ୍ତୁଭିତ୍ତିରୁ ବିଚ୍ଛିନ୍ନ ହୋଇପାରେନା ବସ୍ତୁର ରୂପାନ୍ତର ଯଦି ବୈପ୍ଲବିକ ଅନୁଶୀଳନରୁ ରୂପାନ୍ତର ଅଲଗା ନୁହେଁ; ବନ୍ଧନମୁକ୍ତି ପ୍ରସ୍ତାବଟା ଲାଗିବ ତେବେ ବାଗାଡ଼ମ୍ବର । ମାତ୍ର, ଏମିତି କୋଉ କାମଧନ୍ଦା ନାହିଁ କାମକରୁଥିବା ଲୋକ ଭିତରେ ଯା ପରିବର୍ତ୍ତନ ସଂଚାରକରେନା । କାମ ଯଦି ପରିବର୍ତ୍ତନ ସଂଚାରକରେ ମଣିଷ ଭିତରେ, ଅପରିବର୍ତ୍ତନୀୟ ଅନ୍ତଃସାର ତେବେ ସାରଶୂନ୍ୟ ଦାର୍ଶନିକତା; ପ୍ରାକ୍‌ସିସ୍

ଆଉ ପୋଇଏସିସ୍ ସେଥିପାଇଁ ପରସ୍ପର ପରିପୂରକ । ତଥାପି 'ଥିଯରି' ପଦବାଚ୍ୟ ନୁହେଁ । ଫିଲଜଫି ବିଚାରରେ ଥିଯରି ଥିଲା ଧ୍ୟାନଲବ୍ଧ ଅବଲୋକନ; ଫୟରବାଖ୍‌ଙ୍କୁ ବାଟରେ ହାବୁଡ଼ି ଧ୍ୟାନମୁଖୀ ଚିନ୍ତାଧାରାରୁ ବିଦାୟନେଇଚନ୍ତି ମାର୍କ୍ସ; କଣ୍ଟେମ୍ପ୍ଲେସନ୍ ଜାଗାରେ ବସାଇଚନ୍ତି ପ୍ର୍ୟାକ୍ସିସ୍ । ସେ ପ୍ର୍ୟାକ୍ସିସ୍ ପୁଣି ପ୍ରଡକ୍ସନ୍ ସହିତ ସମାନ୍ତରାଳ । ସେଇ ସମୀକରଣ ସମ୍ମୁଖରେ ଆଣି ଠିଆକରିଦେଲେ ଥିଯରି: 'ଚେତନାର ଉତ୍ପାଦନ' । ଇତିହାସ ପ୍ରବାହରେ ଆବିର୍ଭୂତ ସ୍ୱବିରୋଧ ହିଁ ଚେତନାର ଉତ୍ପାଦନ । କାର୍ଯ୍ୟତଃ ଅନ୍ତର୍ଦ୍ୱନ୍ଦ୍ୱର ଚେତନା ହିଁ ଇଡିୟଲଜି । ୧୮୪୫ରେ ସେଥିପାଇଁ ଦର୍ଶନବିଦ୍ୟାକୁ ପରାମର୍ଶ ଦେଇଚନ୍ତି, ଭାବାଦର୍ଶ ଦର୍ପଣରେ ଥିଯରି ମୁହଁଦେଖିବାକୁ । କିନ୍ତୁ, ଚେତନା ଉପରେ ଭାବାଦର୍ଶ ଆଧିପତ୍ୟକରେ କି ଭାବରେ, ଅଥବା ଉତ୍ପାଦନ ସାଙ୍ଗରେ ଇତିହାସ ବା କି ଭାବରେ ଅଙ୍ଗାଙ୍ଗୀ, ଇଉରୋପର ଦର୍ଶନଚର୍ଚ୍ଚା କଣ ଦେଖିପାରିଥିଲା ସେଥିରୁ ଆପଣା ଚେହେରା, ଚିହ୍ନିପାରିଥିଲା ସ୍ୱରୂପ ? ପଣ୍ୟଉତ୍ପାଦନକୁ ସମାଜର ମୂଳଦୁଆ ଧରିଲେ, ଦର୍ଶନ ଇତ୍ୟାଦି ଦିଶିବେ ସତେ ଅବା କାନ୍ଥ କି ଛାତ, ସୁପରଷ୍ଟ୍ରକ୍‌ଚର୍ । ଆଇଡିଅଲଜିର ଅବସ୍ଥାନକ୍ଷେତ୍ର ସେଇ ଉପରିସ୍ଥ ସେଇ ଗଢ଼ଣ; ତା ମୂଳଦୁଆକୁ ମାର୍କ୍ସ ଭାବିଚନ୍ତି, ଉତ୍ପାଦନପ୍ରକ୍ରିୟାରେ ପ୍ରଯୁକ୍ତ ଶ୍ରମବିଭାଜନ । ଆଇଡିୟଲଜି ତେଣୁ ସମାଜସଚେତନତା ଛଡ଼ା ଆଉକିଛି ହେବାକଥା ନୁହେଁ; କିନ୍ତୁ ୧୮୬୭ରେ *କ୍ୟାପିଟାଲ୍* ଗ୍ରନ୍ଥରେ ଲେଖିଚନ୍ତି ଆହୁରି ଗୋଟାଏ ଶବ୍ଦ, ଫେଟିଶ୍‌ଜ୍ମ ଯା ସମାଜସଚେତନତାକୁ ଘୋଡାଇପାକାଏ । ଚେତନା ତେଣୁ ବ୍ୟକ୍ତିଗତ; ସାମାଜିକତାରୁ ସ୍ୱାଧୀନହେବାକୁ ଇଚ୍ଛା ବ୍ୟକ୍ତିର ସ୍ୱାଭାବିକ ପ୍ରବଣତା । ଏ ପ୍ରବଣତା ସାମାଜିକତାରୁ ଏମିତି ଘଉଡ଼ାଇଦିଏ ଯେ, ବାସ୍ତବ ଜୀବନରେ ଯେତେ ଯାହା ଅସାଧ୍ୟ, ସେଇଗୁଡ଼ାକୁ ଖାଲି ଖୋଜିବୁଲୁଥାଏ ବ୍ୟକ୍ତିବିଶେଷର ଚେତନା । ଅର୍ଥାତ୍, ରିଆଲିଟି ଆଉ ଚେତନା ମଝିରେ ତିଆରିହୁଏ ଶୂନ୍ୟତା । ଯେପରି ନାରୀର ଅନ୍ତର୍ବାସ । ଶରୀର ନୁହେଁ, ଶରୀରର ଆବରଣ; ଯା ଶରୀର ନହୋଇ ସୁଦ୍ଧା ଉଦ୍ରେକକରିପାରେ ଯୌନଉତ୍ତେଜନା । ସେଇ ଫେଟିଶ୍ ବା ମୋହ ମଧ୍ୟ ନିଜେ ଗୋଟାଏ ଇଡିୟଲଜି । ସତ୍ୟ ବାସ୍ତବ–ଇତିହାସ ବିବାକ ରିଆଲିଟିକୁ ଉପହାସ । ବାସ୍ତବକୁ ଚିହ୍ନିନପାରିବା ଅବସ୍ଥା ତେଣୁ ଥିଯରି ଅବ୍ ନଲେଜ୍‌ର ପ୍ରତୀପ ତତ୍ତ୍ୱ: ମାୟା ମୋହ ହତବୁଦ୍ଧି । ଉତ୍ପାଦନର ଧନତାନ୍ତ୍ରିକ ଧରଣକୁ ଚିହ୍ନିନପାରିବା ଅକ୍ଷମତାକୁ ମାର୍କ୍ସ କହିଚନ୍ତି ଫେଟିଶ୍‌ଜ୍ମ । ଗଢରଖଟାଇ ନିଜ ହାତରେ ଯା ତିଆରିକରେ, ହାଟରେ ଭେଟି ତାକୁ ଚିହ୍ନିପାରେନା ଶ୍ରମିକ । ଖାଲି ଯେ ଚିହ୍ନିପାରେନା ସେତିକି ନୁହେଁ, ନିଜ ଶ୍ରମଜାତ ପଣ୍ୟ ପ୍ରତିଭାତହୁଏ ରହସ୍ୟମୟ, ନିଜଠୁଁ ଢ଼େର୍ ବଡ଼, ଅପହୁଞ୍ଚ । ଭୋଗକରିବାକୁ ତୃଷ୍ଣା ଜାତହୁଏ, ମାତ୍ର ହାତପାଏନା । ସର୍ପରେ କିନ୍ତୁ ରଜ୍ଜୁଭ୍ରମ ନୁହେଁ;

ମାୟାବାଦ ବୁଝାଇପାରିବନାହିଁ ବୋଲି ଏ ବିକାର ଇଡିୟଲଜି । ମାୟାବାଦକୁ ଅତିକ୍ରମ କରିହୁଏନା ବ୍ରହ୍ମଦର୍ଶନ ଘଟିବା ପର୍ଯ୍ୟନ୍ତ; ଇଡିୟଲଜିକୁ ଅତିକ୍ରମକରିହୁଏ, ଉତ୍ପାଦନ ସହିତ ଇତିହାସର ବିଚ୍ଛିନ୍ନ ସଂଯୋଗକୁ ପୁନରୁଦ୍ଧାର କରି । ଆଲ୍‌ଥୁସର୍ ଇଡିଅଲଜିକୁ ସେଥିପାଇଁ କହିଚନ୍ତି 'ପ୍ରବ୍ଲେମ୍ୟାଟିକ୍' । କ୍ୟାସ୍‌ପର୍ ସ୍ମିଥ୍ ଭାବିଥିଲେ, 'ଆଇଡ଼ିଆ'ଗୁଡାକ ବ୍ୟକ୍ତିସ୍ୱାଧୀନତା ଉପରେ ହସ୍ତକ୍ଷେପ, ଆଜି ଯେମିତି ଗ୍ର୍ୟାଣ୍ଡ୍‌ନ୍ୟାରେଟିଭ୍ ପ୍ରତି ଉତ୍ତରଆଧୁନିକତାର ଭ୍ରୂକୁଞ୍ଚନ । ମାତ୍ର ମାର୍କ୍ସ ଦେଖାଇଚନ୍ତି ଆଇଡିଆ ମଧ୍ୟ ଘଟାଇଦେଇପାରେ ଚେତନାର ଅଗ୍ରସରଣ; କିନ୍ତୁ ସେ ଆଇଡିଆ ଯଦି 'ସ୍ୟାକ୍ରେଡ୍', ଚେତନାର ଅବଦମନ ଅନିବାର୍ଯ୍ୟ । ଯେପରି, କ୍ୟାପିଟାଲିସ୍ମରେ ନିଜ ଶ୍ରମଜାତ ଦ୍ରବ୍ୟ ଶ୍ରମଜୀବୀ ଆଖିକୁ ଦିଶେ 'ପବିତ୍ର' । ଆଇଡିଆର ଆଧିପତ୍ୟ କ୍ୟାସ୍‌ପର୍ ସ୍ମିଥ୍‌ଙ୍କୁ ରୁଷ୍ଟକରିଚି ବୋଲି, ଦାବିକରିଚନ୍ତି ଆଇଡିଆ ଆଉ କ୍ଷମତା (ପାୱାର୍) ମଧ୍ୟସ୍ଥ ନେକ୍‌ସସ୍‌ର ପ୍ରକୃତି ନିରୂପଣ । ଚେତନା ଯଦି ଅବଲମ୍ବନକରେ ଏପରି ଆଇଡିଆକୁ ଯା ପବିତ୍ର, ସାମାଜିକ କି ରାଜନୀତିକ କ୍ଷମତାର ବାସ୍ତବତା ରହିଯାଏ, ମଣିଷର ଅକ୍ତିଆର ବାହାରେ । ମାର୍କ୍ସ, ସେଥିପାଇଁ, ଦର୍ଶନଚର୍ଚ୍ଚା ଭିତରକୁ ନେଇଆସିଲେ ଶ୍ରେଣୀଚେତନା ନୁହେଁ, ଏକେବାରେ ସବୟବ ଶ୍ରେଣୀ; ଶ୍ରମବିଭାଜନର ଦୁଇପଟରେ ଠିଆକରିଦେଲେ ଦୁଇପ୍ରକାର ବିଭେଦ । ସମାଜକୁ ବିଭାଜିତକରୁଚି ଯୋଉ ଶ୍ରେଣୀବିଭେଦ, ଆଉ ଚିନ୍ତାର ଗଢ଼ଣକୁ ଖଣ୍ଡିତକରୁଚି ଶ୍ରମ ଓ ଚେତନା ମଧ୍ୟସ୍ଥ ଯୋଉ ବ୍ୟବଧାନ । ବିମୂର୍ତ୍ତ ନୁହେଁ ଏ ବିଭେଦ; ଇଚ୍ଛାକଲେ ଛୁଇଁହେବ ଏ 'କ୍ଷମତା'କୁ; କାହିଁକିନା, ଉତ୍ପାଦନପ୍ରକ୍ରିୟାର ଦୁଇମେରୁରେ ବୁର୍ଜୋୟା ଓ ପ୍ରଲେତାରିଏତ୍, ଉଭୟର ଆପକ୍ଷିକ ଅବସ୍ଥାନ ଇନ୍ଦ୍ରିୟଗ୍ରାହ୍ୟ । ପୁଣି, ଶରୀରଶ୍ରମ ଓ ମାନସିକଶ୍ରମ ମଧ୍ୟସ୍ଥ ସାମାଜିକ ଓ ରାଜନୀତିକ ବ୍ୟବଧାନ । ଶ୍ରେଣୀଚେତନା ତେଣୁ ଅପ୍ରାସଙ୍ଗିକ; ବିବେଚ୍ୟ ଏଠି ଏକମାତ୍ର ଡମିନ୍ୟାନ୍ସ ବା ଆଧିପତ୍ୟ । କ୍ୟାସ୍ପର୍ ସ୍ମିଥ୍‌ଙ୍କ ସାଙ୍ଗରେ ମାର୍କ୍ସ ମଧ୍ୟ ଏକମତ ଯେ, ଚେତନାର ଧାରକ ଓ ବାହକ ଏକମାତ୍ର ବ୍ୟକ୍ତିବିଶେଷ, ମାତ୍ର ଅଭିଳାଷ ପୂରଣକରିବାକୁ ସକ୍ରିୟହୁଏ ଯେତେବେଳେ ଚେତନା ହୋଇଯାଏ ଇଡିୟଲଜି । ସେଇ ଇଡିୟଲଜି ଓ ତଦ୍‌ପ୍ରେରିତ କର୍ମଧାରାର ସମବାୟରେ ତିଆରିହୁଏ ପ୍ର୍ୟାକ୍‌ସିସ୍ । ଇଡିୟଲଜି ତେଣୁ ସକ୍ରିୟ ଚେତନା; ଡିସ୍‌କୋର୍ସ କି ଭାବରାଜ୍ୟର ପ୍ରତିନିଧି ନୁହେଁ । 'ଆଧିପତ୍ୟ' ଧାରଣା ତ ଡିସ୍‌କୋର୍ସରୁ ବାହାରିନାହିଁ, ଆସିଚି ଅଭିଜ୍ଞତାରୁ । ଅଭିଜ୍ଞତାପ୍ରସୂତ ବୋଲି ଇଡିୟଲଜି ଆବିଷ୍କାରକରିଚି ପ୍ରଭେଦ ଆଉ ପ୍ରଭୁତ୍ୱ, ଯା ନିଜେ ଆଇଡିଆ ମାତ୍ର । କାହିଁକିନା, The ideas of the ruling class are in every epoch the ruling ideas, i.e. the class which is the ruling

*material force* of society is at the same time its ruling *intellectual force.* The class which has the means of material production at its disposal, has control at the same time over the means of mental production, so that thereby, generally speaking, the ideas of those who lack the means of mental production are subject to it. The ruling ideas are nothing more than ideal expression of the dominant material relationships, the dominant material relationships grasped as ideas; hence of the relationship which make the one class the ruling one, therefore, the ideas of its dominance. The individuals composing the ruling class possess, among other things, consciousness, and therefore think। ଭାବନ୍ତି ସତ, କିନ୍ତୁ କଣ ଭାବନ୍ତି ସଚେତନ ସେଇ ଶାସକଶ୍ରେଣୀ ? ଯା ଭାବନ୍ତୁ, ସାରା ସମାଜକୁ ପ୍ରଭାବିତକରୁଥାଏ ନିରନ୍ତର । ମାର୍କ୍ସ କିନ୍ତୁ ଯୋଡ଼ିଦେଲେ ପଣ୍ୟଉତ୍ପାଦନର ସାଧନ । ସେ ସାଧନ ଯା ଆୟତ୍ତରେ ରହିବ, ତାହାରି ହାତରେ ରହିବ ଚିନ୍ତାଭାବନା; ଉତ୍ପାଦନର ସକଳ ସାଧନ ଆଉ ଚିନ୍ତାଭାବନାର ମିଳିତ ପରିଣାମ: ଆଧିପତ୍ୟ । ସମସ୍ୟା ସମାଧାନକରିବା ପରିବର୍ତ୍ତେ ସମସ୍ୟା (=ଆଧିପତ୍ୟ)କୁ ପୁନର୍ଗଠିତ କରିଚନ୍ତି, ଆଇଡିଅଲଜିର ଗଠନକୁ ସ୍ପଷ୍ଟକରିବା ସକାଶେ । କାହିଁକିନା, ନିର୍ଦ୍ଦିଷ୍ଟ ସାମାଜିକ ବେଷ୍ଟନୀରେ ଆଧିପତ୍ୟ, ଅର୍ଥାତ୍ 'କ୍ଷମତା', ସାଧାରଣ ବ୍ୟଞ୍ଜନାରେ 'ପ୍ରଭାବ' । ପଣ୍ୟ ଉତ୍ପାଦନ କ୍ଷେତ୍ରରେ କ୍ଷମତା, ଭାବ ଉତ୍ପାଦନ କ୍ଷେତ୍ରରେ ପ୍ରଭାବ । ଉଭୟର ଯୌଗିକ ପରିଣାମ 'ଆଧିପତ୍ୟ' । ଅଥଚ ଉଭୟ ମଝିରେ ରହିଚି ବିଭାଜନ; ରହିଚି ବୋଲି, 'କ୍ଷମତା'କୁ ବୈଧପ୍ରତିପନ୍ନକରେ ଇଡୟଲଜି, ପ୍ରଭାବ ପ୍ରତିପନ୍ନକରେ ଇଲିଉସନ୍ । ପ୍ରତିପନ୍ନକରି ଆଦାୟକରିନିଏ ଆଧିପତ୍ୟପ୍ରବଣ ରାଜନୀତି ପ୍ରତି ସମ୍ମତି । ଇଲିଉସନ୍ ହେଉ କି ରିଆଲିଟି, ଉତ୍ପତ୍ତିସ୍ଥଳ କିନ୍ତୁ ଏକମାତ୍ର ଚେତନା । କେମିତି ଉତ୍ପନ୍ନହୁଏ ଏଇ ଚେତନା, କେମିତି ଉତ୍ପନ୍ନହୁଏ ଚିନ୍ତାଭାବନା, ଯାର ଓଲଟପଟଟା ଫେଟିଶ୍ ବା ଅଚୈତନ୍ୟ ? ପ୍ଲାଟୋଙ୍କ ବେଳରୁ ଏଇ ଇନ୍‌ଭରସନ୍ ଅବ୍ ରିଆଲିଟି ସ୍ୱୀକୃତି ପାଇଆସୁଚି ଦର୍ଶନଚର୍ଚ୍ଚାରେ; ଅଥଚ ମାର୍କ୍ସ କହୁଚନ୍ତି, ରିଆଲିଟିକୁ ଚିହ୍ନିନପାରିବା କାରଣ 'ଅବିଦ୍ୟା' ନୁହେଁ, ସତ୍ୟନିରୂପଣ ସାମର୍ଥ୍ୟ ପ୍ରତ୍ୟେକ ମଣିଷର ସହଜାତ । ଇତିହାସରୁ କିନ୍ତୁ ଦିଶୁଚି, ରାଜନୀତି କ୍ଷେତ୍ରରେ ଯିଏ ଶକ୍ତିଶାଳୀ, ନିଜ କ୍ଷମତାକୁ ନିର୍ବିରୋଧ କରିବାକୁ 'ସର୍ବଜ୍ଞ' 'ତ୍ରିକାଳଦର୍ଶୀ' 'ଚଳନ୍ତିବିଷ୍ଣୁ' ଭଳି ଭାବାଦର୍ଶଗୁଡ଼ାକର ସଦୁପଯୋଗ କରିଚି ସର୍ବତ୍ର । କରିଚି ବୋଲି, ଭାବବିକାର ଘଟିଚି ସାଧାରଣ ଲୋକଙ୍କ ଭିତରେ;

ସେମାନଙ୍କ ଚିନ୍ତା ସାମର୍ଥ୍ୟ ସହିତ କ୍ଷମତାର ଏଇ ଦିବ୍ୟାୟନ ଯେହେତୁ କଣ୍ଟ୍ରାଡିକ୍ଟରି, ସେ କଣ୍ଟ୍ରାଡିକ୍ସନ୍‌କୁ ମାର୍କ୍ସ ଆଣି ଥୋଇଦେଇଚନ୍ତି ଶ୍ରମବିଭାଜନ ବନ୍ଦୋବସ୍ତ ମଝିରେ; ଶରୀରଶ୍ରମ ଓ ବୌଦ୍ଧିକଶ୍ରମ ଭଳି କ୍ଷମତାବୈପରିତ୍ୟ ମଝିରେ; ଅର୍ଥାତ୍, ଦିହଖଟଣି ଓ ଜ୍ଞାନାନ୍ୱେଷଣ ମଝିରେ, ବ୍ୟକ୍ତିସ୍ୱାର୍ଥ ଓ ସମଷ୍ଟିକଲ୍ୟାଣ ମଝିରେ । ଯୋଉ ବୈପରୀତ୍ୟ ଉଠିଆସିଚି ଶ୍ରମବିଭାଜନ ତୀବ୍ରତାରୁ, ଜନମାନସରେ ତା ପ୍ରତିଭାତହୋଇଚି ସ୍ୱୟଂଶାସିତ ଓ ବାଞ୍ଛିତ । ଫଳରେ ଚେତନା ଗଠିତହୁଏ କେମିତି, ପ୍ରତିରୋଧବିମୁଖ ଚଷାଭୂଷାଙ୍କୁ ଲକ୍ଷ୍ୟକରି ଗାନ୍ଧି ବି ବୁଝିପାରିଥିଲେ ଚମ୍ପାରଣରେ ଯେ, ପୁରୁଷାନୁକ୍ରମରେ ଶହଶହବର୍ଷଧରି ବଳଦ ପଛରେ ଚାଲିଚାଲି ମଣିଷ ବି ହୋଇଯାଇଚି ବଳଦ । ଭୟମୁକ୍ତି କଥା କହିଚନ୍ତି ଅବଶ୍ୟ; ମାତ୍ର ଭୟ ଯେ ଚେତନାର ବସ୍ତୁରୂପ, ବୁଝିପାରିନାହାଁନ୍ତି ମହାତ୍ମା । ବସ୍ତୁରୂପ ନକହି, ମାର୍କ୍ସ କହିଚନ୍ତି 'ଦି ଆଇଡିଆଲ୍ ଏକ୍ସପ୍ରେସନ୍' । ଚେତନାନିର୍ମାଣର ସାମାଜିକ ପ୍ରକ୍ରିୟାକୁ ବିଶଦକରିବା କାରଣରୁ ଇଡିୟଲଜିର କାର୍ଯ୍ୟକାରିତା ଦୃଷ୍ଟିଗୋଚର ହୋଇପାଇଚି, ଜଣାପଡ଼ିଚି ଯେ ଅସହାୟତାକୁ ସୁଦ୍ଧା ଭାବାଦର୍ଶ ପରିଣତକରିପାରେ ଆଧିପତ୍ୟ । ଚେତନା ତେଣୁ ଅସହାୟ ପାଇଁ ବିମୂର୍ତ୍ତ କଳ୍ପନା, କାହିଁକିନା, ବାସ୍ତବକୁ ଧରପାରୁନାହିଁ, ଧରିପାରୁନାହିଁ ଯେହେତୁ ଚେତନାର ଅବସ୍ଥାନଗତ ଜଟିଳତାକୁ ଠାବକରି ପାରୁନାହିଁ । (ମାର୍କ୍ସ ଲେଖିଚନ୍ତି, ଇସ୍ ଅବ୍ ଇମାନେସନ୍) । ଚିହ୍ନିପାରୁନାହିଁ, କ୍ଷମତାର ଅବିଚ୍ଛିନ୍ନ ପ୍ରବାହ ଯେହେତୁ ଆଚ୍ଛନ୍ନକରି ରଖିଚି ଚେତନାକୁ । ଆଚ୍ଛନ୍ନଅବସ୍ଥା କଟିଯିବା ମାତ୍ରକେ ସ୍ୱମହିମାରେ ଚେତନା ହୋଇପାରିବ କ୍ଷମତାର ପ୍ରସୂତୀ, ଏବଂ ପରିଶେଷରେ, ଶ୍ରମବିଭାଜନର କୁଫଳ ଇଡିୟଲଜିରୁ ଚେତନାକୁ ମୁକ୍ତକରି ଶ୍ରମବିଭାଜନକୁ ଓଲଟାଇଦେଇପାରିବ ବୈପ୍ଲବିକ ପଦ୍ଧତିରେ । ଚେତନାର ପୁନର୍ଗଠନତତ୍ତ୍ୱ ଭିତରେ କିନ୍ତୁ ପରିଦୃଷ୍ଟ ଅନେକ ଅସ୍ଥିର ଆଇଡିଆର ଭାରସାମ୍ୟ; ଯେପରି, ଫୟବାଖ୍‌ଙ୍କ ପାଖରୁ ଗୃହୀତ ଆଲିଏନେସନ୍ (=ପାରକ୍ୟ) ଧାରଣା; ମାନେ, ଧର୍ମାନୁଷଙ୍ଗ ଦ୍ୱାରା ଚେତନାରେ ସଂଚାରିତ ଅଲୌକିକତା । ପୁଣ, ଆଇଡିଆ ଓ କ୍ଷମତା ମଧ୍ୟସ୍ଥ ନେକ୍‌ସସ୍‌ରୁ ଅନୁମିତ ବ୍ୟକ୍ତିସ୍ୱାତନ୍ତ୍ର୍ୟ, ଇତିହାସଗତିରେ ଯା ବଦଳିଯାଏ ବେଳକୁ ବେଳ । ଉଭୟ ଭାବଧାରାକୁ ଯୋଡ଼ିଦେଲେ ମିଳିଯିବ ମଣିଷମଣିଷ ଭିତରେ ବସ୍ତୁ / ଭାଷା / ଭାବ ଇତ୍ୟାଦିର ଆଦାନପ୍ରଦାନ କେମିତି ଇତର ହୋଇଯାଏ, ତାର ସ୍ଥୂଳ ଧାରଣା । ସେଥିରୁ ସାମାଜିକ ସଂପର୍କର ଦୁଇ ବିଭାବ, ପ୍ରଡକ୍ଟିଭ୍ ଓ କମୁଉନିକେଟିଭ୍ ମଧ୍ୟସ୍ଥ ପାରକ୍ୟକୁ ମଧ୍ୟ ଠାବକରିହେବ । ପାରକ୍ୟ ଅବବୋଧକୁ ମାର୍କ୍ସ ଦେଖିଚନ୍ତି ଇତିହାସପ୍ରସୂତ ଉତ୍ତରାଧିକାର, ଏବଂ ସେଥିପାଇଁ, ସଂପତ୍ତି ଓ ରାଷ୍ଟ୍ରର ବିବର୍ତ୍ତନ ସହିତ ଚେତନାକୁ

ଯୋଡ଼ିଦେଇ ସ୍ପଷ୍ଟକରିଦେଇଚନ୍ତି ପରିବର୍ତ୍ତନର ବିଭିନ୍ନ ପର୍ଯ୍ୟାୟରେ ଚେତନା ହୋଇଚି କେମିତି ବିଭିନ୍ନ । ଜୈବସ୍ୱଭାବ ଭଳି ଚେତନା ତେଣୁ ଅପରିବର୍ତ୍ତନୀୟ ନୁହେଁ; ବିକାଶ ଘଟୁଚି ଇତିହାସଗତିରେ, ଯେମିତି ସଂପତ୍ତି କି ରାଷ୍ଟ୍ରର ଆକାରପ୍ରକାର । ଶ୍ରମବିଭାଜନ ଆଉ ଚିନ୍ତାବିକାଶକୁ ଧରାଯାଏ ଯଦି ଅଗ୍ରଗତିର ହେତୁ, ଗୋଟିଏ ଅନ୍ଦର ଓ ଅନ୍ୟଟି ବାହାର ହେଲେସୁଦ୍ଧା, ଉଭୟ ମଧ୍ୟସ୍ଥ ଟେନ୍‌ସନ ଇତିହାସକୁ ଦେଉଚି ଗତି ଓ ଗତିବେଗ, ଏବଂ ଯେହେତୁ ଏକାମୁଦ୍ରାର ଦୁଇପାର୍ଶ୍ୱ, ଯୋଗାଇଦିଏ ବ୍ୟକ୍ତିବିଶେଷକୁ ଆତ୍ମବିଚାରର ଭିତ୍ତି । ଅର୍ଥାତ୍, ଯା ବ୍ୟକ୍ତିବ୍ୟକ୍ତି ମଧ୍ୟରେ ଯୋଗାଯୋଗର ପରିସୀମା, ତା ଏକାବେଳକେ ଭାବଜଗତର ପରିସୀମା ମଧ୍ୟ । ଲକ୍ଷ୍ୟକରିବା କଥା, ନିର୍ଦ୍ଦିଷ୍ଟ କୌଣସି ଶ୍ରେଣୀ ସହିତ ଚେତନାକୁ ଯୋଡ଼ିବା କଥା ଭାବିନାହାଁନ୍ତି ମାର୍କ୍ସ; ବରଂ ଇଙ୍ଗିତକରିଚନ୍ତି ବୌଦ୍ଧିକ ପରିସୀମା; ଅର୍ଥାତ୍ ଚେତନାର ଶ୍ରେଣୀଚରିତ୍ର ଯା ଉତ୍ପନ୍ନକରେ ଯୋଗାଯୋଗର ପରିସୀମା । ଅନ୍ୟ ଶବ୍ଦରେ, ସମାଜର ଦିଗ୍‌ବଳୟକୁ ଘୋଡ଼ାଇପକାଏ ବର୍ଗଭେଦ, ଧର୍ମଭେଦ, ଜାତିଭେଦ, ଭାଷାଭେଦ, ପୁଣି ନେସନ୍ ନ୍ୟାସନାଲିଟି ଭଳି ହରେକରକମ ଢ଼ାଙ୍କୁଣିରେ, ସର୍ବଜନୀନତାକୁ ଯା ଅନ୍ୟାୟ ଅବରୋଧ । ଅଥଚ ଅବରୋଧଗୁଡ଼ାକ ପ୍ରାତ୍ୟହିକ ଜୀବନଯାପନରେ ଯେହେତୁ ଖୋଦିତହୋଇଯାଏ ଶିଳାଲିପି ଭଳି, ବାହାରୁ କି ଉପରୁ ଲିପିଗୁଡ଼ାକୁ ଦେଖିହୁଏନା; କଳ୍ପନାର ଶରଣପଶିବାକୁ ପଡ଼େ । କିନ୍ତୁ ଏ ବିଭାଜନଗୁଡ଼ାକ ଯେତେ ପ୍ରସାରିତହେବ, ବାସ୍ତବ ଆଉ କଳ୍ପନା ମଧ୍ୟସ୍ଥ ବ୍ୟବଧାନ ମଧ୍ୟ ପ୍ରସାରିତହେବ ସାମନୁପାତରେ । ଇଡିୟଲଜିରୁ ଉତ୍ସାରିତ ଏ ଚେତନା ତେଣୁ ବିଭେଦମୁକ୍ତ ଜଗତର ଅସମ୍ଭବ କଳ୍ପନା । ପ୍ରଲେତାରିଏତ୍‌ର ଭାବଜଗତର ପରିସୀମା ଏପରି ଏକ ବିନ୍ଦୁରେ ଅଟକିରହିଚି ଯେ ଭଲମନ୍ଦ କିଛିହେଲେ କଳନା କରିପାରେନା, ବିରୋଧ କି ବାଧା ଅତିକ୍ରମକରିବା ଭଳି ଚିନ୍ତା ସେଥିପାଇଁ ମନକୁ ଛୁଏଁନା । ଏବଂ ସେଇ ବିନ୍ଦୁ ବାହାରେ ଯେହେତୁ ସମ୍ଭାବନା ନାହିଁ କି କଳ୍ପନା ନାହିଁ, ବାଧହୋଇ ଫେରିଆସେ ପ୍ରାତ୍ୟହିକତାର କର୍କଶ ବାସ୍ତବକୁ, ମାନେ, ଐତିହାସିକ ସଚେତନତାକୁ । ସିଧା କଥାରେ, ସର୍ବଜନୀନତା ଉପଲବ୍ଧିକରିବାକୁ ଇତିହାସ ଯେତେବେଳେ ବାଟଦେଖାଉଚି, କଳ୍ପନାଜଳ୍ପନା ଖାଲି କର୍ତ୍ତବ୍ୟ ଏଡ଼ାଇଯିବାର ଲକ୍ଷଣ !

ଭାବାଦର୍ଶ ତେବେ ଚେତନାର ସାଧାରଣ ବିମୂର୍ତ୍ତାୟନ ନହୋଇ, ନିର୍ଦ୍ଦିଷ୍ଟ ଚେତନାର ନିର୍ଲିପ୍ତ ଅବସ୍ଥା ନହେବ ଅବା କାହିଁକି ? କାହିଁକିନା, ନିର୍ଦ୍ଦିଷ୍ଟତା,ବୃତ୍ତି ପେସା ଧର୍ମ ଜାତି ନିର୍ବିଶେଷରେ ବିମୂର୍ତ୍ତାୟନ ବଳରେ ପରିଣତହୁଏ ସର୍ବସାଧାରଣ ଇଡିୟଲଜି, ଏବଂ ସେଇ ସୂତ୍ରରେ, ନିର୍ଦ୍ଦିଷ୍ଟ ଭାବାଦର୍ଶ ଅର୍ଜନକରେ ମାନ୍ୟତା ।

ନିର୍ଦ୍ଦିଷ୍ଟ ଭାବାଦର୍ଶ ତେଣୁ ନିର୍ଦ୍ଦିଷ୍ଟ ସ୍ୱାର୍ଥ । ରୁସୋ ଅବଶ୍ୟ କହିଚନ୍ତି, ଆନୁଷ୍ଠାନିକ ବ୍ୟବସ୍ଥା ଛଡ଼ା ଇତିହାସରେ ଶ୍ରମବିଭାଜନ ଘଟିନାହିଁ, ଏବଂ ସେଇ ଅନୁଷ୍ଠାନଟି ସାଧାରଣତଃ ରାଷ୍ଟ୍ର, ରାଷ୍ଟ୍ରଯନ୍ତ୍ର ନୁହେଁ । ସର୍ବସମ୍ମତିକ୍ରମେ ଅନୁଷ୍ଠିତ ବୋଲି ଆରୋପ କରିପାରିଚି କଡ଼ା କଟକଣା । କଟକଣାଗୁଡ଼ାକ ଯେହେତୁ ନିଜେ ବିମୂର୍ତ୍ତ, ରାଷ୍ଟ୍ରକୁ ଧରାଯିବ ବିମୂର୍ତ୍ତାୟନର କର୍ତ୍ତା । ଅନ୍ୟ ଶବ୍ଦରେ, ବ୍ୟକ୍ତିବ୍ୟକ୍ତି ମଧ୍ୟରେ ପ୍ରକୃତ ସାମ୍ପ୍ରଦାୟିକ ଐକ୍ୟ ନଥିଲେ ବି, ରାଷ୍ଟ୍ର ତିଆରିକରିଚି ବିବିଧ ଭିତରେ ମିଳନ ବିମୂର୍ତ୍ତାୟନ ବଳରେ, ଏବଂ ସେଇ ସୂତ୍ରରେ, 'କମିଉନିଟି' ଭଳି ଆଇଡିଆ । ବ୍ୟକ୍ତିଗତ ସ୍ୱାର୍ଥ ରୂପାନ୍ତରିତ ହୋଇଚି ଏ ଭାବରେ ରାଷ୍ଟ୍ରକୁ । *ଜର୍ମନ୍ ଇଡିୟଲଜି* ରେ ମାର୍କ୍ସ ତେଣୁ ଲେଖିଚନ୍ତି, Since the state is the form in which individuals of a ruling class assert their common interest, and in which the whole civil society of an epoch is epitomised, it follows that the state mediates in the formation of all common institutions and that the institutions receive a political form. Hence the illusion that law is based on the will, and indeed on the will divorced from its real basis-on *free* will। ଅଥଚ ସ୍ୱାଧୀନ ଇଚ୍ଛାର ଦମନ ଲୋକଙ୍କ ଆଖିରେ ଧରାପଡ଼େନା, କାହିଁକିନା, ସାମାଜିକ ଉତ୍ପାଦନରେ ପ୍ରଯୁକ୍ତ ଶ୍ରମକୁ ବିଭାଜିତକରି ରାଷ୍ଟ୍ର କରିଦେଇଚି 'ଇଣ୍ଟେଲେକ୍‌ଚୁଆଲାଇଜ୍‌ଡ୍', ଦିହଖଟଣି ଆଉ ଜ୍ଞାନାର୍ଜନ ମଝିରେ ଠିଆକରିଦେଇଚି ଦୁର୍ଲଂଘ୍ୟ ପ୍ରାଚୀର । ଉଦ୍ଦେଶ୍ୟ ଥିଲା ଅବଶ୍ୟ ଆଧିପତ୍ୟର ଭିତ୍ତିପତନ, ଶରୀରଶ୍ରମ ଉପରେ ମେଧାର ପ୍ରଭୁତ୍ୱ ପ୍ରତିଷ୍ଠା । କାର୍ଯ୍ୟକ୍ଷେତ୍ରରେ କିନ୍ତୁ ଏଇ ସାମାଜିକ ଦୂରତ୍ୱ ଶ୍ରମଜୀବୀ ଆଉ ବୁଦ୍ଧିଜୀବୀ ମଝିରେ ସୃଷ୍ଟିକରିଚି ଏ୍ୟାଲିଏନେସନ୍ ବା ପାରକ୍ୟ; ଚେତନାର ଆଧିପତ୍ୟକୁ କରିଚି ଫଳପ୍ରସୂ । ଏବଂ, ଉତ୍ତମ ଅଧମ ଅଧ୍ୟୁଷିତ ସମାଜରେ ଆଦାନପ୍ରଦାନ ଯେହେତୁ କ୍ଷମତାପ୍ରୟୋଗର ଛଦ୍ମରୂପ, ସାମାଜିକ ଯୋଗାଯୋଗ ମଧ୍ୟ ରାଜନୀତିକ ପ୍ରକ୍ରିୟା ବିଶେଷ । ମାର୍କ୍ସ ତେଣୁ ଚେତନା ଉପରେ ଆରୋପକରିଚନ୍ତି ରାଜନୀତିକ ମାତ୍ରା; କାହିଁକିନା ଚେତନାର ତାରତମ୍ୟରୁ ଉଠିଆସୁଚି ଜୀବନନିର୍ବାହର ତାରତମ୍ୟ; ଏବଂ ଏ ତାରତମ୍ୟ ଯେହେତୁ ଖାଲି ମନସ୍ତାତ୍ତ୍ୱିକ ନୁହେଁ, ଇତିହାସର ଗତିକୁ ମଧ୍ୟ କରିପାରେ ପ୍ରଭାବିତ, ବିଶେଷତଃ ଯେହେତୁ Division of labour only becomes truly such from the momemnt when a division of material and mental labour appears... From this moment onwards consciousness *can really* flatter itself that it is something other than consciousness of existing practice, that it *really* represents

something without representing something real । ଅର୍ଥାତ୍ ଶ୍ରମବିଭାଜନ ଇତିହାସର ଯୋଉ ପର୍ଯ୍ୟାୟଗୁଡ଼ାକ ଭିତରଦେଇ ଗତିକରି ଏବେକା ଅବସ୍ଥାକୁ ଆସିଚି, ମାନସିକ-ଶାରୀରିକ ଶ୍ରମ ମଧ୍ୟସ୍ଥ ବ୍ୟବଧାନ ମଧ୍ୟ ସେଇ ପର୍ଯ୍ୟାୟଗୁଡ଼ାକ ଭିତରଦେଇ କ୍ରମଶଃ ତୀବ୍ର ଓ ପ୍ରଖର ହୋଇଚି ।

ମାର୍କ୍ସ କିନ୍ତୁ ଦେଖୁଚନ୍ତି କେବଳ ଶିଳ୍ପବିପ୍ଲବପରବର୍ତ୍ତୀ ଇଉରୋପକୁ; ଏବଂ ଲକ୍ଷ୍ୟକରିଚନ୍ତି ସଭ୍ୟତାର ଆଦିକାଳ ସହିତ ଊନବିଂଶଶତକ ବୁର୍ଜୋୟାର ପାର୍ଥକ୍ୟ । ଅର୍ଥାତ୍, ରାଜନୀତିରେ ଭାବ ଓ ଭାବବାଦର ଭୂମିକା, ସମାଜସଂଗଠନରେ ଭାବବାଦୀଙ୍କ ଆପେକ୍ଷିକ ସ୍ୱାଧୀନତା । ଲାଗିଚି, ସେଇମାନେ ହିଁ ତଆରିକରିଚନ୍ତି ଆଧିପତ୍ୟ ଭାବଜଗତ ଉପରେ । ଶ୍ରେଣୀଆଧିପତ୍ୟକୁ ସେଇମାନେ ବିମୂର୍ତ୍ତ କରିଦେଇଚନ୍ତି ଏଇ ଯୁକ୍ତିରେ ଯେ ନିର୍ଦ୍ଦିଷ୍ଟ କୋଉ ମଣିଷ ନୁହେଁ, ସମାଜକୁ ଶାସନକରୁଚି ଏକମାତ୍ର ଭାବାଦର୍ଶର ଉତ୍କର୍ଷ । ଭାବାଦର୍ଶ ଯେ ଶ୍ରେଣୀସ୍ୱାର୍ଥର ସାଧାରଣୀକରଣ ସାଙ୍ଗକୁ ଆଧ୍ୟାତ୍ମିକ ମହିମାକୁ ଉତ୍ତରଣ, ବାସ୍ତବ ସେଇ ପ୍ରକ୍ରିୟାକୁ ଢ଼ାଙ୍କିପକାଇଚି ଅତୀନ୍ଦ୍ରିୟ ରହସ୍ୟଜାଲ । ଢ଼ାଙ୍କିପକାଇଚି ଦୃଶ୍ୟପଟରୁ, ପୁଣି ସମସ୍ୟାପଟରୁ । ମାତ୍ର ସ୍ୱାର୍ଥକୁ ମହିମାଦେବାକୁ ହେଲେ, ଭାବୁକକୁ ହେବାକୁ ପଡ଼ିବ ରହସ୍ୟବାଦୀ; ଚିନ୍ତାକରିବା ଧରଣ, ପ୍ରଶ୍ନ ଓ ଉତ୍ତର ତିଆରିକରିବା କୌଶଳ, ବିବାକ କରିବ ଅତୀନ୍ଦ୍ରିୟକୁ ଆଶ୍ରୟ । ଏମାନଙ୍କ ଆପେକ୍ଷିକ ସାମାଜିକ ସ୍ୱାଧୀନତା ଇତିହାସଗତିରେ ପରିପୁଷ୍ଟ ହୋଇଚି, କାହିଁକିନା ଏମାନେ ଯୋଗାଇଆସିଚନ୍ତି ଅଧିଭୌତିକତା ଉତ୍ପନ୍ନକରିବାକୁ ଅନୁକୂଳ ସର୍ତ୍ତାବଳୀ । ଯେପରି, ଏମାନଙ୍କ ଜୀବନନିର୍ବାହର ନିର୍ଦ୍ଦିଷ୍ଟତା ଶ୍ରେଣୀପରିଚୟ ଉର୍ଦ୍ଧ୍ୱରେ, ଠିକ୍ ଯେମିତି ଉତ୍ପାଦିତ ଭାବଗୁଡ଼ାକ (=ଯୁକ୍ତି ମୁକ୍ତି ମାନବିକତା) ନିତ୍ୟାଭ୍ୟାସ ଉର୍ଦ୍ଧ୍ୱରେ । ସମାଜରେ ପୁଣି ରାଜନୀତିରେ, ସମକାଳର ମେଧାଜୀବୀଙ୍କ ଭୂମିକାକୁ ହୁଏତ ଉଦ୍‌ଘାଟନକରିବାକୁ ଚାହିଁଚନ୍ତି ମାର୍କ୍ସ । ଇତିହାସଗତିରେ ସେ ଭୂମିକା ନିର୍ମିତହୋଇଚି କେମିତି, ନିର୍ମିତହୋଇ ସକ୍ରିୟହୋଇଚି କେମିତି ବ୍ୟାପକତର କ୍ଷେତ୍ରରେ, ସେଇ ବିବରଣ ଉପସ୍ଥାପନକରିବା ଥିଲା ହୁଏତ ଅଭିପ୍ରାୟ । ମାତ୍ର, ପ୍ରକୃତ ପ୍ରସ୍ତାବରେ, ମେଧାଜୀବୀ ଆଉ ଅ-ମେଧାଜୀବୀ ମଧ୍ୟସ୍ଥ ବ୍ୟବଧାନ ଇତିହାସଗତିରେ କେମିତି ସାମାଜିକ ଆଧିପତ୍ୟ ଓ ରାଜନୀତିକ କ୍ଷମତାରେ ପର୍ଯ୍ୟବସିତ ହୋଇଚି, ସେତିକି କେବଳ ଥିଲା ଉପସ୍ଥିତ ବିବେଚ୍ୟ । ସେ ବିବେଚନାରୁ ଦିଶୁଚି, ମେଧା ଓ ଶ୍ରମ ମଧ୍ୟସ୍ଥ ପାର୍ଥକ୍ୟ ବାହାରେ, ସମାଜର ଅସ୍ତିତ୍ୱ ସମ୍ଭବପର ନୁହେଁ; ଏପରିକି, ନାରୀ-ପୁରୁଷ ଲିଙ୍ଗବୈଷମ୍ୟ ବାହାରେ ସୁଦ୍ଧା । ଶ୍ରେଣୀବୈଷମ୍ୟ ଏ ବ୍ୟବଧାନରୁ କ୍ରମାଗତ ଯୋଉ ଆକାରପ୍ରକାର ଆହରଣକରିଚି,

ସୂଚନାଦେଉଛି ଆଧିପତ୍ୟର ମାତ୍ରାବୃଦ୍ଧି । ତା ସଂସ୍ପର୍ଶରୁ ରାଷ୍ଟ୍ର କି ସଂସ୍କୃତି ଦୂରରେ ରହିପାରେନା । କାହିଁକିନା, ପ୍ରଭେଦ, ଦୂରତ୍ୱ, ବୈଷମ୍ୟ ପ୍ରଭୃତିକୁ ଧାରାବାହିକଭାବେ ଉତ୍ପାଦନକରିଚାଲିଚି ଇଣ୍ଟେଲେକ୍‌ଚୁଆଲ୍ । ବ୍ୟକ୍ତିଗତ ଅଭିରୁଚି ସବୁବେଳେ କାରଣ ନୁହେଁ, ଅସ୍ତିତ୍ୱସଂରକ୍ଷଣ ହିଁ ପ୍ରଧାନ ସର୍ତ୍ତ । ପ୍ରାଣଧରି ବଞ୍ଚିରହିବାର ସର୍ତ୍ତ ଯେତେବେଳେ ଭାବଉତ୍ପାଦନ, ଭାବାଦର୍ଶ ମୂଳରେ ସର୍ଜନପ୍ରତିଭା ଖୋଜିବା ଅନ୍ଧାରଘରେ କାଳିବିଲେଇ ଖୋଜିବା ସାଙ୍ଗରେ ସମାନ ।

ତେଣୁ, ଯୋଉ ଅ-ମେଧାଜୀବୀଙ୍କୁ ପ୍ରଲେତାରିଏତ୍ ଆଖ୍ୟାଦେଇଚନ୍ତି ମାର୍କ୍ସ, ସେମାନେ ସ୍ଥାନୀୟ କୋଉ ସମଷ୍ଟି ନୁହେଁ, ଦୁନିଆଯାକର ଖଟିଖିଆ ମଣିଷ; ଏପରି ଏକ ଜନପୁଞ୍ଜ ଯା ଜୀବନରେ ଶ୍ରେଣୀବୋଧ ତିଆରିହୋଇପାରେନା; ଜୀବନଯାପନର ସର୍ତ୍ତଗୁଡ଼ାକ ଶ୍ରେଣୀବୋଧରୁ ଘଉଡ଼ାଇଦିଏ । ଶ୍ରେଣୀରେ ପରିଣତହେବାକୁ ଯୋଉ ସର୍ତ୍ତ ଦରକାର, ସେମାନେ ଯେହେତୁ ତା ବାହାରେ କି ଉପରେ, ଏବଂ ନିର୍ଦ୍ଦିଷ୍ଟ କୋଉ ଶ୍ରେଣୀଅଭିଜ୍ଞାନରେ ଚିହ୍ନିତନୁହେଁ, ମାର୍କ୍ସ ତାଙ୍କୁ ଦେଖୁଚନ୍ତି ସର୍ବବ୍ୟାପୀ ବା ଇଉନିଭର୍ସାଲ୍ । ସେଇ ବ୍ୟାପକତାରୁ ଚିହ୍ନିହୁଏ ପ୍ରଲେତାରିଏତ୍‌କୁ । ଧାରଣାଟା ପାଇଚନ୍ତି ହେଗ୍‌ଲଙ୍କ *ଫିଲଜଫି ଅଵ୍ ରାଇଟ୍* (୧୮୨୧)ରୁ । ଫରାସୀବିପ୍ଳବ ପରବର୍ତ୍ତୀ ଇଉରୋପରେ ରାଷ୍ଟ୍ରର ଚରିତ୍ର ହୋଇଯାଇଚି ସବୁଠି ଏକାରକମ; ସେଇ ବ୍ୟାପକତାକୁ ଲକ୍ଷ୍ୟକରି ହେଗ୍‌ଲ ଭାବିଚନ୍ତି, ରାଷ୍ଟ୍ର ପରିଚାଳନାକରନ୍ତି ଯୋଉ ଲୋକ, ଖାଲି ଅମଲା କି ଆଜ୍ଞାବହ ନୁହେଁ, ସେମାନଙ୍କ ଅସଲ ପରିଚୟ ଇଣ୍ଟେଲେକ୍‌ଚୁଆଲ୍, *die Gelchrten* । କାହିଁକିନା ନାଗରିକସମାଜରେ ବିଭିନ୍ନ ସ୍ୱାର୍ଥ ଭିତରେ ରହିଚି ପ୍ରତିଦ୍ୱନ୍ଦ୍ୱିତା; ସାମଞ୍ଜସ୍ୟ ସାଧନକରି ତାକୁ ସର୍ବସାଧାରଣ ସ୍ୱାର୍ଥରେ ପରିଣତକରିବାକୁ ଯା ଦରକାର, ଖାଲି କର୍ମଦକ୍ଷତା ନୁହେଁ, ମେଧାପ୍ରୟୋଗର ସ୍ୱାଧୀନତା ତାର ପ୍ରାଥମିକ ସର୍ତ୍ତ । ପରସ୍ପରବିପରୀତ ନାନାଦି ସ୍ୱାର୍ଥ ଉର୍ଦ୍ଧ୍ୱକୁ ଉଠି ସର୍ବଜନର ହିତସାଧନ ସମ୍ଭବପର ନୁହେଁ ଯଦି ଆତ୍ମସଚେତନତା ଭଳି ବିମୂର୍ତ୍ତତା ହୁଏ ପ୍ରତିବନ୍ଧକ । ସେ ଦୃଷ୍ଟିରୁ ବୁଦ୍ଧିଜୀବୀ କି ପ୍ରଶାସକ ନିର୍ଦ୍ଦିଷ୍ଟ କୋଉ ସମାଜବ୍ୟବସ୍ଥାର ପ୍ରତିଭୂ ନୁହେଁ, ଦୁନିଆସାରା ତାର ବିଚରଣ । ବୁଦ୍ଧିଜୀବୀ ତେଣୁ ସ୍ୱଭାବତଃ ଇଉନିଭର୍ସାଲ୍, କାହିଁକିନା, ବହୁବିଧ ସ୍ୱାର୍ଥ ମଧ୍ୟରେ ମଧ୍ୟସ୍ଥତାକରିବା ସଙ୍ଗେସଙ୍ଗେ ବୁଦ୍ଧିଜୀବୀ ପ୍ରତିନିଧିତ୍ୱକରେ ସର୍ବସାଧାରଣ ହିତର । ସ୍ପଷ୍ଟତଃ ଏ ଏକପ୍ରକାର ପୂର୍ବଜ୍ଞାନ । ଆଧୁନିକ ରାଷ୍ଟ୍ରବ୍ୟବସ୍ଥାରେ ପ୍ରଶାସନ ଓ ସାଧାରଣ ଶିକ୍ଷା କି ଆକାର ଧାରଣକରିବ, ବିଜ୍ଞାନଗବେଷଣା କି ଜନମତଗଠନ କିଭଳି ପ୍ରଣାଳୀପ୍ରକରଣକୁ ଉପଯୋଗକରିବ, ତାହାରି ପୂର୍ବଜ୍ଞାନ । ଅନ୍ୟ ଶବ୍ଦରେ, ସମକାଳର ରାଷ୍ଟ୍ରଶକ୍ତି କି ଭାବରେ ବାନ୍ଧିଦେବ ସମାଜର ନୀତିନିୟମ, ତାର

ପୂର୍ବୋପଲବ୍ଧି ବୁଝାଇଦେଇଚି, ଉଦାରନୀତି ପ୍ରଶ୍ରୟ ପାଇବନାହିଁ କି କର୍ତ୍ତୃତ୍ୱପରାୟଣତା ଉତ୍ସାହପାଇବନାହିଁ । ଠିକ୍ ଏକାରକମ ପଦ୍ଧତିରେ ମାର୍କ୍ସ ଦେଇଚନ୍ତି ଆଇଡିୟଲଜିକୁ ଉଦ୍ଦେଶ୍ୟ ଓ ଗତିବେଗ; ଗୋଟିଏ ଶବ୍ଦରେ, ଅବୟବ । ଅର୍ଥାତ୍, ମନନସଂଜାତ ଦୂରତ୍ୱ, ଆଧିପତ୍ୟର ଗଢ଼ଣକୁ ଯା ନିର୍ଦ୍ଧାରଣକରେ, ବାସ୍ତବ ପରିସ୍ଥିତିରେ ପରିଚାଳିତହୁଏ ସାଧାରଣଶିକ୍ଷା, ସାମାଜିକସଂଗଠନ ଆଉ କ୍ଷମତାପ୍ରୟୋଗ ମାଧ୍ୟମରେ । ମୌଳିକ ସେଇ ବୈଷମ୍ୟର ନିରସନକୁ ମାର୍କ୍ସବାଦୀ ଭାବୁକ (ଯେପରି,ଗ୍ରାମ୍‌ସି କି ଆଲ୍‌ଥୁସର୍) ଭାବିଚନ୍ତି କମିଉନିଜ୍ମରୁ ଅବିଚ୍ଛେଦ୍ୟ ।, ମାର୍କ୍ସ ନିଜେ କିନ୍ତୁ ବୁଦ୍ଧିଜୀବୀଙ୍କ ମୁଣ୍ଡରେ ପଣସ ଭାଙ୍ଗିନାହାଁନ୍ତି, କାହିଁକିନା, ଅସ୍ୱାଭାବିକ ଏ ବିଭେଦକୁ ତିଆରିକରିଚି ଯେମିତି ଇତିହାସ, ଯୁଗପରେଯୁଗ ତାର ରୂପାନ୍ତର ମଧ୍ୟ ଘଟାଇଚି ପୁଣି ସେଇ ଇତିହାସ । କୋଉହେଲେ ରାଜନୀତିକ ନିଷ୍ପତ୍ତିରୁ ତେଣୁ ବାହାରିନାହିଁ ମୂର୍ଖ-ପଣ୍ଡିତ ପାର୍ଥକ୍ୟ । ପାର୍ଥ୍ୟକ ଯେହେତୁ ସଭ୍ୟତାର ଉପଜାତ, ତାର ଧାରାବାହିକତାକୁ ବଞ୍ଚାଇରଖିଜି ସଂସ୍କୃତି, ଯେପରି ପିତୃତନ୍ତ୍ର ଜାତିଭେଦ କିମ୍ବା ସହର-ମଫସଲ ପ୍ରଭେଦ । ସେ ଭେଦାଭେଦ ହିଁ ସ୍ଥାୟୀକରିଚି ଆଧିପତ୍ୟକୁ । ସମାଜଶରୀରରେ ଆପାଦମସ୍ତକ ଅଙ୍ଗୀଭୂତହେବା ଫଳରେ ଶ୍ରମର ସାମାଜିକ ସଂଗଠନକୁ ସଂକ୍ରମିତକରିବା ସମସ୍ୟା ହୋଇନାହିଁ; ପରିଣାମରେ, କାମ (=ପ୍ର୍ୟାକ୍ଟିସ୍)ଗୁଡ଼ାକ ଯେମିତି ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯାଇଚି, କାମକରୁଥିବା ମଣିଷଗୁଡ଼ାକ ସେମିତି ପରସ୍ପର ପାଖରେ ହୋଇଯାଇଚନ୍ତି ପର ବା ଇତର । ମାର୍କ୍ସଙ୍କ ଏ ବିଚାରରେ ଶ୍ରମ ପୁରାପୁରି କାୟିକ ନୁହେଁ, କି ଖାଲି ମାନସିକ ନୁହେଁ । ବିଶେଷଜ୍ଞ / ବୁଦ୍ଧିଜୀବୀ ତେଣୁ ଦୀର୍ଘସ୍ଥାୟୀ ବୈଷମ୍ୟର ସ୍ଥପତି ନୁହେଁ; ଶାସକ-ଶାସିତ ସଂପର୍କ ବରଂ ସାମାଜିକ ଅନୁଷ୍ଠାନଗୁଡ଼ିକୁ ଅନୁକରଣକରି ବିଭେଦକୁ ପରିଣତକରିଚି ହାଏରାର୍କୀ । ଅନ୍ୟ ଶବ୍ଦରେ, ଇତିହାସର ଅଧିକାଂଶ ପର୍ଯ୍ୟାୟରେ, ଉତ୍ପାଦନ-ବିନିମୟ ସମ୍ପର୍କ କି ବିବାହ / ବିଚ୍ଛେଦ ଭଳି ନିତ୍ୟାଚାର ଅସାମ୍ୟକୁ ଅପରିହାର୍ଯ୍ୟ ସର୍ତ୍ତରେ ପରିଣତକରିବା ଭଳି ସାମର୍ଥ୍ୟ ଅର୍ଜନକରି ପାରିନାହିଁ । ସ୍ପଷ୍ଟତଃ, ବୁଦ୍ଧିଜୀବୀକୁ ସମଗୁଣବିଶିଷ୍ଟ କୋଉ ଶ୍ରେଣୀ କି ସଂପ୍ରଦାୟ ବୋଲି ଭାବିନାହାଁନ୍ତି ମାର୍କ୍ସ, କାହିଁକିନା, ତାଙ୍କ ବିବେଚ୍ୟ ବିଷୟ କେବଳ ଇତିହାସପ୍ରବାହରେ ମାନସିକଶ୍ରମର ଭୂମିକା, କାୟିକଶ୍ରମର ପ୍ରତିପକ୍ଷ ଭାବରେ ମାନସିକଶ୍ରମର ଆଚରଣ । କାୟିକଶ୍ରମର ଧାରକ ଓ ବାହକ ମଧ୍ୟ ସମସ୍ୱଭାବବିଶିଷ୍ଟ ଜନପୁଞ୍ଜ ନୁହେଁ,କାହିଁକିନା, ଶ୍ରେଣୀପରିଚୟରୁ ତାକୁ ବାହାର କରିଦିଆଯାଇଚି; ବାହାରକରି ଦିଆଯାଇଚି ବୋଲି, ସର୍ବହରା । ଗ୍ରାମ୍‌ସି ମେଧାକୁ ଭାବିଚନ୍ତି କିନ୍ତୁ ବିଷଣ୍ଣ; ସର୍ବହରାର କାଣ୍ଡଜ୍ଞାନକୁ ପ୍ରସନ୍ନ; ପେସିମିଜ୍ମ ଅବ୍ ଦି ଇଣ୍ଟେଲେକ୍ଟ ଅପ୍ଟିମିଜ୍ମ

ଅବ୍ ଦି ଉଇଲ୍ । କାହିଁକିନା, ମାର୍କ୍ସବାଦକୁ ଦ୍ୱାନ୍ଦ୍ୱିକ ବସ୍ତୁବାଦ ବୋଲି ଗ୍ରହଣକରିନାହାଁନ୍ତି ଗ୍ରାମ୍‌ସି; ଚିହ୍ନିତକରିଚନ୍ତି 'ଫିଲଜଫି ଅବ୍ ପ୍ରାକ୍‌ସିସ୍' । ତାଙ୍କପାଇଁ ପ୍ରତିପକ୍ଷ ଥିଲା ମୁସୋଲିନିଙ୍କ ଫ୍ୟାସିବାଦ ଆଉ ରୋମାନ୍ କ୍ୟାଥଲିକ୍ ଗୀର୍ଜାର ଆଧିପତ୍ୟ; ଦୃଷ୍ଟିଭଙ୍ଗୀ ପୃଥକହେବା ସ୍ୱାଭାବିକ । 'ସର୍ବହରା' ବିଶେଷଣଟା ବି ହଠାତ୍ ମନକୁ ଆସିନାହିଁ; ମାର୍କ୍ସ ଏମାନଙ୍କୁ ଶ୍ରେଣୀବହିର୍ଭୂତ (=*Masse*) ଜନପୁଞ୍ଜ କହିଚନ୍ତି, ବୁର୍ଜୋୟା ବୁଦ୍ଧିଜୀବୀ ଜନସାଧାରଣଙ୍କୁ ଯେହେତୁ ଅବଜ୍ଞାସୂଚକ ସେଇ ବିଶେଷ୍ୟରେ ସମ୍ବୋଧନକରେ । ତାଙ୍କ ଦଖଲରେ ଯେହେତୁ ସଂପତ୍ତିବାଚ୍ୟ କିଛିହେଲେ ସମ୍ବଳ ନାହିଁ, ମାର୍କ୍ସ ଭାବିଚନ୍ତି, ରିଆଲିଟି ସମ୍ବନ୍ଧରେ ମଧ୍ୟ ମାୟାମମତା ନଥିବା କଥା; ନିର୍ଦ୍ଧନ ମଣିଷ ସେଥିପାଇଁ ଆଇଡିୟଲଜିର ଧାର ଧାରେନା; ଧାରେନା ବୋଲି, ଆଦର୍ଶସମାଜ କି ବିମୂର୍ତ୍ତ ଭାବଜଗତ ତା ସକାଶେ କଥାର କଥା ମାତ୍ର ।

ଏଥିରୁ ଯା ସୁସ୍ପଷ୍ଟ : ଗତରଖଟୁଥିବା ନିର୍ବିତ୍ତ ଲୋକ ଯୋଉଦିନ 'ଶ୍ରେଣୀ' ରେ ପରିଣତହେବ, ସେଦିନ ଆଉ ଶ୍ରେଣୀ ରହିବନାହିଁ; ସର୍ବହରା ଶ୍ରେଣୀଚେତନା ଲାଭକରିବା ମାନେ ବିପ୍ଳବର ସୂତ୍ରପାତ । ଶ୍ରେଣୀଚେତନା ତ ସେଇ ଆଇଡିୟଲଜି, ଯା ରିଆଲିଟି (ସଂପତ୍ତି/ମାଲିକାନା)କୁ ଆଖିରେ ଆଙ୍ଗୁଳିଗୁଞ୍ଜି ଚିହ୍ନାଇଦିଏ; ପୁଣି ଇଲିଉସନ୍; ଯେପରି, ବୁର୍ଜୋୟାର କଳ୍ପଲୋକ: ଭାଗ୍ୟବାଦ / ଧର୍ମ କି ଭଣ୍ଡାମୀ ଶ୍ରେଣୀଚେତନା କରିପାରେ ଯାହାକୁ ନିର୍ବସନ । କିନ୍ତୁ ନିଃସମ୍ବଳ ଶ୍ରମଜୀବୀ ଯେହେତୁ ଜୈବଚେତନା ଛଡ଼ା ଅନ୍ୟ ଚେତନା ଆହରଣକରିନାହିଁ, ଜଡ଼ବସ୍ତୁକୁ ନାଁଦେବା ପରି ବୁର୍ଜୋୟା ତାକୁ ନାଁଦେଇଚି ମ୍ୟାସ୍, ମ୍ୟାସେସ୍ । ଏବଂ ସର୍ବହରା ଯେହେତୁ ଭାବାଦର୍ଶବର୍ଜିତ କାଣ୍ଡଜ୍ଞାନ-ଚାଳିତ ମଣିଷ, *ମ୍ୟାନିଫେଷ୍ଟୋ* ରେ ମାର୍କ୍ସ ଦେଖାଇଚନ୍ତି, ବୁର୍ଜୋୟାସୃଷ୍ଟ ଆଇନ୍‌କାନୁନ୍‌ରୁ ଯେମିତି, ବିଶ୍ୱାସ ଆକାଙ୍‌କ୍ଷା ନୈତିକତା ଛଳଚାତୁରୀ ପବିତ୍ରତା–ସର୍ବବିଧ ବୁଦ୍ଧିଜାଲ ବାହାରେ ତାର ଚଳପ୍ରଚଳ; ଏପରିକି, the workingmen have no country ! ଆଜି ତେଣୁ ଅନୁମାନକରିବା କଥା ଶିଳ୍ପବିପ୍ଳବ ପରବର୍ତ୍ତୀ ଇଉରୋପରେ ଗତରଖଟି ପେଟପୋଷୁଥିବା ଲୋକଙ୍କୁ କି ଅବସ୍ଥାରେ ଦେଖିଥିଲେ ମାର୍କ୍ସ, ଯା ଫଳରେ ବିଶ୍ୱାସଜନ୍ମିଚି ଯେ କ୍ୟାପିଟାଲିସ୍ଟ ଶେଷପର୍ଯ୍ୟନ୍ତ ମଣିଷଠୁଁ ଯା ଶୋଷିନିଏ, ତା କେବଳ ମୁନାଫା ନୁହେଁ, ମନୁଷ୍ୟତ୍ୱ ମଧ୍ୟ । ବୁଦ୍ଧିଜୀବୀଙ୍କ ପରିଭାଷାରେ, ପ୍ରକ୍ରିୟାଟା 'ଡିହିଉମାନାଇଜେସନ୍' । ସର୍ବହରାଙ୍କ ଭିତରୁ ଭାବୁକ ବାହାରିବା କଥା ନୁହେଁ; ପ୍ରାୟ ଶହେବର୍ଷ ଉତାରୁ ଗ୍ରାମ୍‌ସି ଭାବିଚନ୍ତ, ବାହାରିବେ 'ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ୍'; ୧୯୩୭ ବେଳକୁ ଇଟାଲିର ଶିଳ୍ପଶ୍ରମିକ ହୁଏତ ସେ ଚେତନା ଅର୍ଜନକରିଚି; କିନ୍ତୁ ୧୮୪୮-୫୦ର ଫରାସୀବିପ୍ଳବରୁ ମଧ୍ୟ ମାର୍କ୍ସ

ସେ ସୂଚନା ପାଇସାରିଚନ୍ତି, ଯା ବିବୃତ୍ତହୋଇଚି *The Eighteenth Brumaire of Louis Bonaparte* ସନ୍ଦର୍ଭରେ । ପ୍ରଲେତାରିଏତ୍ ତେଣୁ ଦୁନିଆସାରା ଅଭିନ୍ନ ନୁହେଁ, ଦେଶକାଳ ଅନୁସାରେ ତାର ବିକାଶ ମଧ୍ୟ ବିଭିନ୍ନ; ଯେପରି ଐକ୍ୟ ସାଙ୍ଗକୁ ପ୍ରତିଯୋଗିତା । ପୁଣି, ଫ୍ରାନ୍ସ ଜର୍ମାନୀ ବ୍ରିଟେନ୍- ସବୁଠି ଲକ୍ଷ୍ୟକରିଚନ୍ତି ପ୍ରଲେତାରିଏତ୍ ଉପରେ ଜାତୀୟତାବାଦର ପ୍ରଭାବ, ସମ୍ରାଜ୍ୟବାଦ ଆଉ ଗଣତନ୍ତ୍ରର ପ୍ରଭାବ, ଧର୍ମ ଆଉ ସମରଶକ୍ତିର ପ୍ରଭାବ । ପଣ୍ୟଉତ୍ପାଦନ ଭିତରକୁ ଭାବାଦର୍ଶଉତ୍ପାଦନର ଅନୁପ୍ରବେଶ । ଅନ୍ୟ ଶବ୍ଦରେ, ସର୍ବହରାର ଜୀବନନିର୍ବାହ ଭଳି ନିତ୍ୟପ୍ରବୃତ୍ତ ବାସ୍ତବ ଯେ କୋଉହେଲେ ଭାବାଦର୍ଶର ଆକ୍ରମଣକୁ ପ୍ରତିରୋଧକରିପାରେ- ଏ ସିଦ୍ଧାନ୍ତ ସତ ପ୍ରମାଣିତହୋଇନାହିଁ । ନହେଲେ ସୁଦ୍ଧା, ସର୍ବହରାର ଭାବାଦର୍ଶଗୁଡ଼ାକୁ ଲୁକାଚ୍‌ଙ୍କ ଭଳି 'ଭ୍ରାନ୍ତ ଚୈତନ୍ୟ' (ଫଲସ୍ କସ୍‌ସନେସ୍) କହିନାହାନ୍ତି ମାର୍କ୍ସ । ବରଂ ପ୍ରଲେତାରିଏତ୍‌ର ନିର୍ଦ୍ଦିଷ୍ଟ କୋଉ ଭାବାଦର୍ଶ କି ଶ୍ରେଣୀଚେତନା ଅଛି ବୋଲି ଭାବିନାହାଁନ୍ତି । ଇଡିୟଲଜି ତେଣୁ ମାର୍କ୍ସଙ୍କ ବିବେଚନାରେ ଗୋଟାପଣେ ବିମୂର୍ତ୍ତ, ବାସ୍ତବକୁ ପ୍ରକଟ ନକରି ପ୍ରକଟକରେ ବାସ୍ତବର ଉତ୍କର୍ଷ କିମ୍ବା ଇନ୍‌ଭରସନ୍ (ବିଲୋମକ୍ରିୟା) । ସେ ଅର୍ଥରେ, ଆ୍ୟାଡାମ୍ ସ୍ମିଥ୍, ରିକାଡ୍ରୋ କି କେନ୍‌ସ୍‌ଙ୍କ ଉତ୍ପାଦନସଂପର୍କିତ ତତ୍ତ୍ୱାବଳୀ ଇଡିଅଲଜି ପଦବାଚ୍ୟ ନୁହେଁ, କାହିଁକିନା, ବୁର୍ଜୋୟାଉତ୍ପାଦନକୁ ବୈଧ ପ୍ରତିପନ୍ନକରିବା ସତ୍ତ୍ୱେ, ଏ ତତ୍ତ୍ୱ ବାସ୍ତବର ଉତ୍କର୍ଷ ପ୍ରମାଣକରେନା । ଅଥଚ ଉତ୍ପାଦନର ଉତ୍ତରୋତ୍ତର ଉତ୍କର୍ଷସାଧନ, ମାର୍କ୍ସଚିନ୍ତାରେ, ପୌରସମାଜକୁ ବଞ୍ଚାଇରଖିବାର ଅପରିବର୍ତ୍ତନୀୟ ସର୍ତ୍ତ । କାହିଁକିନା, ଉତ୍ପାଦନର ଉତ୍କର୍ଷ ମାନେ ଉଦ୍‌ବୃତ୍ତମୂଲ୍ୟର ଅଭିବୃଦ୍ଧି ଏବଂ ଉଦ୍‌ବୃତ୍ତମୂଲ୍ୟ ବା ପୁଞ୍ଜି ସହିତ ମୂଲମଜୁରୀ ଯେହେତୁ ଅଙ୍ଗାଙ୍ଗୀ, ଉତ୍ପାଦନର ଉତ୍କର୍ଷସାଧନ କରିନପାରିଲେ, ବୁର୍ଜୋୟାସମାଜ ତିଷ୍ଠିପାରିବନାହିଁ । ଏଭଳି ବଶ୍ଳେଷଣ ପଛରେ କିନ୍ତୁ ଆଇଡିୟଲଜି ନାହିଁ; ନାହିଁ ବୋଲି, ମାର୍କ୍ସ ତାକୁ ନାମିତ କରିଚନ୍ତି *critique* । ସେ ସମୀକ୍ଷାରେ ଯା ଧରାପଡ଼ିଚି, କୁହାଯାଇପାରେ ତା ପଣ୍ୟରତି ବା କମୋଡିଟି ଫେଟିସିଜ୍ମ ।

କମୋଡିଟି ଫେଟିଶିଜ୍ମ ଆଲୋଚିତ ହୋଇଚି *କ୍ୟାପିଟାଲ୍* ର ପ୍ରଥମ ଖଣ୍ଡରେ । ଚିନ୍ତାର ଧରଣ ଅବଶ୍ୟ ଜଟିଳ; ଯେପରି, ରିଇଫିକେସନ୍, ମାନେ, ନିର୍ବସ୍ତୁ ଉପରେ ଭାବରାଜ୍ୟରେ ବସ୍ତୁରୂପ ଆରୋପ । ବସ୍ତୁତଃ, ପୁଞ୍ଜିବାଦୀ ଶିଳ୍ପାୟନ ପ୍ରକ୍ରିୟାରେ ଶ୍ରମଜୀବୀକୁ ପଣ୍ୟରେ ରୂପାନ୍ତରିତକରିବା କୌଶଳ । ଅଥବା, ଉତ୍ପାଦନରେ ନିୟୋଜିତ ସାମାଜିକ କ୍ରିୟାକଳାପକୁ କ୍ରୟବିକ୍ରୟଯୋଗ୍ୟ ପଣ୍ୟଭାବରେ ବିବେଚନା । ରିଇଫିକେସନ୍ ଛଡ଼ା ଦ୍ୱିତୀୟ ଉପାଦାନ: ମୋଡ୍ ଅବ୍ ସବ୍‌ଜେକ୍ସନ୍ । ଅର୍ଥାତ୍, ପରିଶ୍ରମର

ବିନିମୟମୂଲ୍ୟ (=ମଜୁରୀ) ନିରୂପଣ କଲାବେଳେ ଶ୍ରମକୁ ପୁଞ୍ଜିର ଅଧସ୍ତନ ଭାବରେ ଆକଳନ । ମାନେ, ଦିହଖଟଣି ମାମୁଲି, ନଗଦଟଙ୍କା ସାକ୍ଷାତ୍ ଲକ୍ଷ୍ୟ । ତତ୍ତ୍ୱ ଗଢ଼ଣ ଭିତରେ ଉଭୟ ଉପାଦାନର ନିରନ୍ତର ଯାତାୟାତ ତିଆରିକରିଦେଉଚି 'ପଣ୍ୟରତି' ବା କମୋଡିଟି ଫେଟିଶିଜ୍ମ । ଏଇ ଫେଟିଶିଜ୍ମ ସମାଜର ସକଳ ଶ୍ରେୟବୋଧକୁ କରିଦେଉଚି ନିଷ୍ପ୍ରଭ । ମଣିଷ-ମଣିଷ ସଂପର୍କ ଦିଶୁଚି ସତେ ଅବା ଜିନିଷ- ଜିନିଷ ମଧ୍ୟସ୍ଥ ସଂପର୍କ । ବିଶଦକରିବାକୁ ମାର୍କ୍ସ ସାକ୍ଷୀ ମାନିଚନ୍ତି ଧର୍ମକୁ: In order, therefore, to find an analogy we must take flight into the misty realm of religion. There the products of the human brain apper as autonomous fligures endowed with a life of their own, which enter into relations both with each other and with the human race. So in the world of commodities with the products of men's hands. I call this fetishism which attatches itself to the products of labour as soon as they are produced as commodities, and is therefore inseparable from the production of commodities । ଅନ୍ୟ ଶବ୍ଦରେ, ବିମୂର୍ତ୍ତ ଓ ମୂର୍ତ୍ତିମନ୍ତ ମଧ୍ୟସ୍ଥ ଯୋଗସୂତ୍ର ଯେତେବେଳେ ବନିମୟମୂଲ୍ୟ (=ନଗଦ ଟଙ୍କା, ବ୍ୟାଙ୍କ୍‌ଚେକ୍, କ୍ରେଡିଟ୍ କାର୍ଡ, ଇଣ୍ଟରନେଟ୍) ଇନ୍ଦ୍ରିୟଗ୍ରାହ୍ୟ ଜୀବନ୍ତ ସଂପର୍କକୁ ବ୍ୟକ୍ତକରୁଚି ନିର୍ଜୀବ ଜଡ଼ । ଜିନିଷଟାକୁ ଯିଏ ତିଆରିକରିଚି, ମୂଲମଜୁରୀରେ ଦେଖୁଚି ଦେହମନନିର୍ଗତ ଶ୍ରମଶକ୍ତିକୁ, ଯିଏ କିଣୁଚି ସିଏ ମଧ୍ୟ ଦରଦାମରେ ଦେଖୁଚି ଜିନିଷର ଆପେକ୍ଷିକ ଗୁରୁତ୍ୱ କି ତାତ୍ପର୍ଯ୍ୟ । ଉଭୟ ଦିଗରେ ତେଣୁ ଟଙ୍କା ଭଳି ନିର୍ଜୀବ ପଦାର୍ଥ ବ୍ୟକ୍ତକରୁଚି ମର୍ମାର୍ଥ, ଭ୍ୟାଲିଉ ଆଉ ଗତି; ଯେପରି, ଅନ୍ୟାନ୍ୟ ପଣ୍ୟ ତୁଳନାରେ ଆପକ୍ଷିକ ବାଞ୍ଛନୀୟତା, ଅନ୍ୟାନ୍ୟ ପଣ୍ୟ ତୁନନାରେ ଜିନିଷଟା କେତେ ସୁଲଭ କି ଦୁର୍ମୂଲ୍ୟ, ଅନ୍ୟାନ୍ୟ ପଣ୍ୟ ତୁଳନାରେ କେତେ ବେଶି ବଢ଼ାଇପାରେ କ୍ରେତାର ସାମାଜିକ ମର୍ଯ୍ୟାଦା, ଅନ୍ୟାନ୍ୟ ପଣ୍ୟ ତୁଳନାରେ କେତେବେଶି ବିରଳ କି ଦୁର୍ଲଭ । ସବୁଯାକ ନିର୍ଦ୍ଧାରଣ କରିଦେଉଚି ଟଙ୍କା ରୂପକ ରହସ୍ୟ (ନଗଦ ନାରାୟଣ) । ଏବଂ ସାମାଜିକ ସଂପର୍କ ଯେହେତୁ ଅନେକାଂଶରେ ଅର୍ଥନୀତିକ ସଂପର୍କ, କା ହାତରେ ଠୁଳହେଲାଣି କେତେ ପରିମାଣ ବିନିମୟମୂଲ୍ୟ ଅଥବା କା ହାତରୁ କମିଗଲାଣି କି ଜମାରୁ ନାହିଁ, ବାଛବିଚାର, ପ୍ରକାଶ୍ୟରେ ହେଉ କି ପ୍ରଚ୍ଛନ୍ନ, ସ୍ଥିରକରିଦେଉଚି ସାମାଜିକ ସଂସ୍ରବର ଧରଣଧାରଣ । ଠିକ୍ ଯେମିତି ମାଧାକର୍ଷଣ ଶକ୍ତି, ଟଙ୍କାର ପୃଥିବୀପ୍ରଦକ୍ଷିଣ ପଣ୍ୟରତି ଭଳି ପ୍ରହେଳିକାକୁ କରିଦେଇଚି ବିଷୟମୁଖୀ ନିୟମ । କାଂକ୍ଷିତ ଜିନିଷ ସବୁବେଳେ ଜଡ଼ବସ୍ତୁ ନୁହେଁ ହୁଏତ, ପଶୁପକ୍ଷୀ କି ନାରୀର ଶରୀର ମଧ୍ୟ ହୋଇପାରେ, ହୋଇପାରେ

ଘାତକପୁରୁଷର ପ୍ରରିସେବା—ବୁର୍ଜୋୟା ସମାଜବ୍ୟବସ୍ଥାରେ ଏଗୁଡ଼ାକ ବିବାକ ବିକ୍ରୟ ଓ କ୍ରୟଯୋଗ୍ୟ,' ଏପରିକି, ଭୋଟ୍, ନ୍ୟାୟବିଚାର, ମାନମର୍ଯ୍ୟାଦା, ଚିକିତ୍ସା, ଶିକ୍ଷା, ପ୍ରେମ୍, ବନ୍ଧୁତ୍ୱ, ଆତିଥେୟତା କି ଈଶ୍ୱରକୃପା । ପଣ୍ୟ ସାଙ୍ଗରେ ଦରକଷାକଷି କରିପାରେ ବୋଲି, ପଣ୍ୟ ସହିତ ନିର୍ବାଧ ଯୋଗାଯୋଗ ଘଟାଇପାରେ ବୋଲି, ବିନା ବାକ୍ୟବ୍ୟୟରେ କ୍ରେତାର ହାତମୁଠାକୁ ଯେକୌଣସି ସମାଗ୍ରୀକୁ ଟାଣିଆଣେ ବୋଲି, ଟଙ୍କା ମଣିଷ ଆଖିରେ ଠାକୁର । ଟଙ୍କାକୁ ହରାଇବା ଶଙ୍କା ମଧ୍ୟ ମୃତ୍ୟୁଭୟ ପରି ଭୟଙ୍କର । ଏଇ ବାଟରେ ବିନିମୟମୂଲ୍ୟ ଆହରଣକରେ ଆଧିଭୌତିକ ମହିମା, ସର୍ବବ୍ୟାପୀ ସାମାଜିକତା ଆଉ ଲକ୍ଷ୍ମୀଠାକୁରାଣୀଙ୍କ ପ୍ରତିମା । *କ୍ୟାପିଟାଲ୍* ର ଶେଷଖଣ୍ଡରେ ମାର୍କ୍ସ ତେଣୁ ଲେଖନ୍ତି, Capital-Profit (or better still capital-interest), land-groundrent, labour-wages, this economic trinity as the connection between the components of value and wealth in gereral and its sources, completes the mystification of the capitalistic mode of production, the reification of social relations, and its immediate coalescence of the material relations of production withe their historical and social specificity: the bewitched, distorted, and upside down world haunted by Monsieur Le Capital and Madame la Terre, who are at the same time social characters and more things. It is the great merit of classical economics to have dissolved this false appearance and deception, the autonomization and ossification of the different social elements of wealth vis a vis one another, this personification of things and reification of the relations of production, this religion of everyday life...ପଣ୍ୟ ସହିତ ନଗଦନାରାୟଣର ସଂପର୍କ ବଜାରରେ କିଣାବିକା ହେଉଥିବା ଜିନିଷ ଉପରେ ଆରୋପକରିଚି ବ୍ୟକ୍ତିତ୍ୱ ,ଏବଂ ସେଥିପାଇଁ, କ୍ରେତା ବିକ୍ରେତା ଉଭୟ ସେ ସଂପର୍କ ପାଖରେ ଇତର, କାହିଁକିନା, ଯିଏ କ୍ରେତା ସିଏ ମଧ୍ୟ ହୋଇପାରେ ବିକ୍ରେତା; ଉଭୟ ମଧ୍ୟସ୍ଥ ସଂପର୍କ ତେଣୁ ବିନିମୟଯୋଗ୍ୟ । କିନ୍ତୁ ଦୁନିଆସାରା ଘୁରିବୁଲିବା ଶକ୍ତି ପଣ୍ୟକୁ କ୍ରେତା ଦେଉନାହିଁ କି ବିକ୍ରେତା ଦେଉନାହିଁ, ଦେଉଚି ଟଙ୍କାର ଆଧିଭୌତିକ ଶକ୍ତି । ସେଇ ଶକ୍ତି କରେ ପଣ୍ୟକୁ ଗତିଶୀଳ । ଅର୍ଥାତ୍, ଟଙ୍କା ନିଜ ଚିରନ୍ତନ ମୂଲ୍ୟକୁ ସଞ୍ଚାରକରୁଚି ନଶ୍ୱର ଜଡ଼ବସ୍ତୁ ଦେହରେ; ପ୍ରକ୍ରିୟାଟା କିନ୍ତୁ ଉଭୟ କ୍ରେତା ଓ ବିକ୍ରେତାକୁ ଦିଶୁଚି ସ୍ୱାଭାବିକ । ପୁଣି, ଟଙ୍କାର ପରିମାଣ ଦ୍ୱାରା ଗୋଟାଏ ଜିନିଷରୁ ଅନ୍ୟ ଜିନିଷ ଶସ୍ତା କି ମହଙ୍ଗା ବୁଝାପଡୁଚି

ବୋଲି, ଜଡ଼ବସ୍ତୁଗୁଡ଼ାକ ଭିତରେ ସ୍ଥାପିତହେଉଚି ପାରସ୍ପରିକ ସମ୍ବନ୍ଧ । ସେଇ ସମ୍ବନ୍ଧଟା ମଧ୍ୟ ବାହାରକୁ ଦିଶୁଚି ସତେ ଯେମିତି ଭାଇବନ୍ଧୁ ଭଳି ସାମାଜିକ ସଂପର୍କ । ଆର୍ଥସାମାଜିକ ଜୀବନର ଏଇ ଲକ୍ଷଣ ଆଚ୍ଛନ୍ନକରିରଖିଚି ଉତ୍ପାଦକର ଚେତନାକୁ ଯେମିତି, ଉପଭୋକ୍ତାର ଚେତନାକୁ ସେମିତି । ମାଲିକ ବୁଝିପାରୁନାହିଁ ଶ୍ରମଜୀବୀ ସହିତ ନିଜ ସଂପର୍କର ସାମାଜିକତା, ଶ୍ରମିକ ବି ବୁଝିପାରୁନାହିଁ ନିଜେ ଉତ୍ପନ୍ନକରିଥିବା ଜିନିଷଭିତରେ ଛପିରହିଚି କୋଉଠି ତା ମଣିଷପଣିଆ । ଖାଲି ଜିନିଷଗୁଡ଼ାକ ଦିଶୁଚନ୍ତି ମନୋହର, ଚଳମାନ, ଦୁର୍ଲଭ । ଏକାବେଳକେ ଇନ୍ଦ୍ରିୟଗ୍ରାହ୍ୟ ଆଉ ଅତୀନ୍ଦ୍ରିୟ । ମଣିଷ (=ପ୍ରଲେତାରିଏତ୍) ଦେଖିପାରେ, ହାତରେ ଧରିପାରେ, ମାତ୍ର ବୁଝିପାରେ କିନିଷଟା ତା ପାଇଁ ଆକାଶକୁସୁମ । ଏକାଜିନିଷରେ ପାର୍ଥିବ-ଅପାର୍ଥିବର ସହାବସ୍ଥାନ ଏଭଳି ଗୂଢ଼ ରହସ୍ୟ ଯେ ମାର୍କ୍ସ କହନ୍ତି 'ମିଷ୍ଟିକ୍ୟାଲ୍' । ଇକନମିକ୍ସ ଦିଶିଚି ତେଣୁ ସତେ ଅବା ଥିୟଲଜି (ବ୍ରହ୍ମବିଦ୍ୟା) ।

ପ୍ରତୀୟମାନରୁ ପ୍ରକୃତକୁ ଚିହ୍ନାଇଦେବା ମାର୍କ୍ସଙ୍କ ଉଦ୍ଦେଶ୍ୟ, କାହିଁକିନା, କମୋଡିଟି ଫେଟିସିଜ୍ମ ଶ୍ରମଜୀବୀକୁ ଚିହ୍ନିବାକୁ ଦିଏନା ନିଜ ସୃଷ୍ଟିଶୀଳତାର ସ୍ୱଭାବ, ଏବଂ ଜୀବନ୍ତ ଶ୍ରମକୁ କରିରଖେ ଜଡ଼ ପୁଞ୍ଜିର ଅଧସ୍ତନ । ବିନିମୟମୂଲ୍ୟ ଯେ କୌଣସି ବସ୍ତୁର ଗୁଣ କି ଧର୍ମ ନୁହେଁ, ସେଇ ବାସ୍ତବକୁ ଉଦ୍‌ଘାଟନ । ପଣ୍ୟ ଯେତେବେଳେ ବଜାରରୁ ବଜାର ପ୍ରଦକ୍ଷିଣକରେ, ବିନିମୟମୂଲ୍ୟ ସ୍ଥିର ରିହିପାରେନା; ମାତ୍ର ଯୋଉ ମୂଲ୍ୟର ହେର୍‌ଫେର୍ ହୁଏନା, ମାର୍କ୍ସ ତାକୁ କହିଚନ୍ତି, ଲେବର୍ ଟାଇମ୍, ଅର୍ଥାତ୍, ସମୟର ପରିମାଣ । କେତେଘଣ୍ଟା ଶ୍ରମ ବ୍ୟୟକଲେ ବିନିମୟମୂଲ୍ୟ ତିଆରିହୁଏ, ଅର୍ଥାତ୍ ନିର୍ଦ୍ଦିଷ୍ଟ ଜିନିଷଟିକୁ ଉତ୍ପନ୍ନକରିହେବ । ଲେବର୍‌ଟାଇମ୍ ପଣ୍ୟର ସେଇ ଅବିକୃତ ମୂଲ୍ୟ, ଏକାବେଳକେ ପ୍ରତୀୟମାନ ଓ ପ୍ରକୃତ । ତେଣୁ ସ୍ୱାଭାବିକ ଆଉ ଶାଶ୍ୱତ । ଏବଂ ସତ୍ୟ ଯେହେତୁ ସମାଜଗଢ଼ଣର କୋଉନାକୋଉ ଫର୍ମ, ପଣ୍ୟରତି ମଧ୍ୟ ବିଭ୍ରମ ନୁହେଁ; କାହିଁକିନା, ପଣ୍ୟରତି ରୂପକ ଆଧେୟ ନିରୂପଣକରିଚି ସେଇ ଆଧାର (=ଫର୍ମ)କୁ । ପଣ୍ୟରତିର ବିଶ୍ଳେଷଣ ତେଣୁ ଖୋଲି ଦେଖାଇଦେଇପାରେ ସମାଜର ସତ୍ୟରୂପକୁ । ଏବଂ ଏକାବେଳକେ ସେଇ ଐତିହାସିକ ସର୍ତ୍ତକୁ, ଯା ଗଠିତକରୁଚି ପଣ୍ୟରତି । ପ୍ରତୀୟମାନକୁ ଉପେକ୍ଷାକରିବା ଅର୍ଥ ସାମାଜିକ ସଂପର୍କଗୁଡ଼ାକୁ ଅବଜ୍ଞା । ମାର୍କ୍ସ ସେଥିପାଇଁ ରାମକୃଷ୍ଣ ପରମହଂସଙ୍କଭଳି ଟଙ୍କାକୁ ମାଟି କହିନାହାଁନ୍ତି; ବିନିମୟମୂଲ୍ୟ ଯେ ଅବଶ୍ୟମ୍ଭାବୀ, ସେଇ ସତ୍ୟକୁ ସ୍ୱୀକାରକରିଚନ୍ତ, କାହିଁକିନା, ଉତ୍ପାଦନ ଓ ବିନିମୟ ପ୍ରକ୍ରିୟାରୁ ବିନିମୟମୂଲ୍ୟ ଅବିଚ୍ଛେଦ୍ୟ, ସାମାଜିକ ବଣ୍ଟନର ଅପରିହାର୍ଯ୍ୟ ମାଧ୍ୟମ । ସମାଜର ଯା ପ୍ରୟୋଜନ, ଏକାଜାଗାରେ କି ଏକକ ପରିଶ୍ରମରେ ଉତ୍ପନ୍ନହୁଏନା,

ବିଭିନ୍ନ ଜାଗାରେ ବିଭିନ୍ନ ଜିନିଷ ଉତ୍ପନ୍ନହୁଏ । ଯେତେ ଇଚ୍ଛା ସେତେମଧ୍ୟ ଉତ୍ପନ୍ନ କରାଯାଏନା; ଚାହିଦାକୁ ଚାହିଁ ଯୋଗାଣ ବଢ଼େ କି କମେ । ଚାହିଦାଯୋଗାଣର ଅନୁପାତକୁ ନିରୂପଣକରେ ବିନିମୟ, କିନ୍ତୁ ଉତ୍ପାଦକ ଭାବେ ବିନିମୟମୂଲ୍ୟ ବସ୍ତୁତଃ ଉତ୍ପନ୍ନ ଜିନିଷର ଗୁଣ, ଉତ୍ପାଦକର ଗୁଣ ନୁହେଁ । ତେଣୁ ପଣ୍ୟ ସାଙ୍ଗରେ ଶ୍ରମର ସମ୍ପର୍କ, ମାନେ, ଉତ୍ପାଦନରେ ଶ୍ରମ ଉପଯୋଗର 'ସାମାଜିକତା' ଚେତନାରେ ଧରାପଡ଼େନା । ଯୋଉ ସାମାଜିକତା ଧରାପଡ଼େ, ତା ଦରଦାମର ଆନ୍ତଃସଂପର୍କ । ଅର୍ଥାତ୍, ମୂଲ୍ୟବିଭାଜନ ଧରାପଡ଼େ, ଶ୍ରମବିଭାଜନ ଧରାପଡ଼େନା । ମଣିଷ-ମଣିଷ ମଧ୍ୟସ୍ଥ ସଂପର୍କ ପରିବର୍ତ୍ତେ ଜିନିଷ-ଜିନିଷ ମଧ୍ୟସ୍ଥ ସଂପର୍କ ପ୍ରତୀୟମାନହୁଏ ପ୍ରକୃତ । ଏବଂ ପ୍ରତୀୟମାନ ସେଇ ବନ୍ଧନର ଯୋଗସୂତ୍ର, ଆଖିକୁ ଦିଶେ, ବିନିମୟମୂଲ୍ୟ, ପଣ୍ୟ ଭିତରେ ଅନ୍ତର୍ଗୂଢ଼ ପରିଶ୍ରମ ନୁହେଁ । ମାର୍କ୍ସ ତେଣୁ କୋଉ ଉତ୍ପାଦନ-ଧରଣରେ କେତେ ପରିମାଣ ସାମାଜିକ ଶ୍ରମ (ଲେବର୍‌ଟାଇମ) ଖର୍ଚ୍ଚହୁଏ, ତୁଳନାକରି ଦେଖାଇଚନ୍ତି, ପ୍ରତି ତୁଳନାରୁ ଯେହେତୁ ଧରାପଡ଼େ ସାମାଜିକ ବିକାଶର ଇତିହାସ-ପର୍ଯ୍ୟାୟ । ଉତ୍ପାଦନଧରଣ ମାନେ, a determinate combination of *forces* and *relations* of production. The former include the existing *means* of proucrtion, including not only technologies and raw materials but also developed powers of living men and women; the latter include the relations of appropriation of the means and products of economic activity and also the systemic objective of production । ଉତ୍ପାଦନ ତେଣୁ ନିଜେ ଏକ ସାମାଜିକ ସଂଗଠନ, ଯା ଭିତରେ ସଂପର୍କଗୁଡ଼ାକ ଉଦ୍ଦେଶ୍ୟସାଧନ ସକାଶେ ସନ୍ନିବିଷ୍ଟ (ଷ୍ଟ୍ରକ୍‌ଚର୍ଡ) । ପ୍ରତିତୁଳନାରୁ ଦିଶୁଚି, ଆଦିମ ସମାଜରେ ଉତ୍ପାଦନ ଥିଲା ଉଦରପୋଷଣକୁ ନିଅଣ୍ଟ (ସବ୍‌ସିଷ୍ଟାନ୍ସ ଇକନମି), ମଧ୍ୟଯୁଗରେ ଭୂମିଦାସ (ସର୍ଫଡମ୍) । ପୁରାପୁରି ଘରୋଇ ଉତ୍ପାଦନ ମାର୍କ୍ସଙ୍କ ଦୃଷ୍ଟିରେ, କାଳ୍ପନିକ । ଯେପରି ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ । ଅର୍ଥାତ୍ ଉତ୍ପାଦନସଂପର୍କ ମଧ୍ୟଯୁଗରେ ସୁଦ୍ଧା ସ୍ୱାଧୀନ କିମ୍ବା ପରସ୍ପର ସମକକ୍ଷ; ସ୍ଥଳବିଶେଷରେ ଦମନପ୍ରବଣ । ମାତ୍ର ମୂଲିଆମଜୁରୀଆଙ୍କ ଭିତରେ ପାରସ୍ପରିକ ସଂପର୍କ ରହିଚି ଅକୃତ୍ରିମ । ଅର୍ଥାତ୍, ଅନେକଲୋକ ଏକାସାଙ୍ଗରେ ଗତରଖଟି ଯା ଉପୁଜାଇଚନ୍ତି, ତା ସହିତ ନିଜ ସଂପର୍କକୁ ଜାଣିଚନ୍ତି ବ୍ୟକ୍ତିଗତ, ପରିଶ୍ରମଲବ୍ଧ ଜିନିଷ ସହିତ ପରିଶ୍ରମର ସଂପର୍କ ନୁହେଁ । ଶ୍ରମ ଆଉ ସାମାଜିକତା ମଝିକୁ ପଶିଆସିନାହିଁ ଜିନିଷପତ୍ର । ତିଆରିହୋଇନାହିଁ ଜିନିଷ-ଜିନିଷ ଭିତରେ ଛଦ୍ମ ସାମାଜିକତା । ସମାଜ ରହିଚି ତେଣୁ ଶ୍ରମଜୀବୀର ସମାଜ, ମଣିଷକୁ ନେଇ ତାର ସଂଗଠନ । ସେ ସଂଗଠନରେ ବୈଷମ୍ୟ ଥିଲା କି ନାହିଁ,

ବଡ଼କଥା ନୁହେଁ; ବଡ଼କଥା, ସେ ସମାଜର କର୍ତ୍ତାପୁରୁଷ ଏକମାତ୍ର ମଣିଷ, ପଣ୍ୟସମାଜ (ମାର୍କେଟ୍) ରେ ମଣିଷ କେବଳ ମଧ୍ୟସ୍ଥ, ଜିନିଷ ଜିନିଷ ଭିତରେ ମଧ୍ୟସ୍ଥ, ଠିକ୍ ଯେମିତି ବିନିମୟମୂଲ୍ୟ । ଏ ଅବମାନନାର ବିମୂର୍ତ୍ତତାକୁ ମାର୍କ୍ସ ମୂର୍ତ୍ତିମନ୍ତ କରିଚନ୍ତି ପୁଞ୍ଜିପ୍ରସାର ସହିତ ଶ୍ରମଜୀବୀର ଶୋଷଣକୁ ଅଙ୍ଗାଙ୍ଗୀ କରିଦେଇ । କାହିଁକିନା, ବିନା ମତଲବ୍‌ରେ ମଣିଷ କୁଟାଖଣ୍ଡକୁ ଦିଖଣ୍ଡ କରେନା, ମେହନତ୍ ତ ଦୂରର କଥା । ବାହ୍ୟ ପ୍ରକୃତିକୁ ଭୋଗ୍ୟପଦାର୍ଥରେ ରୂପାନ୍ତରିତ କରିବାକୁ ଦିହବଳ ସାଙ୍ଗକୁ ବୁଦ୍ଧିବଳ ପ୍ରୟୋଗ କରିଆସିଚି ସେ କ୍ରମାଗତ; ପରିଶ୍ରମ ତେଣୁ ନିରୁଦ୍ଦେଶ ହୋଇପାରେନା । ବାଗୁଡ଼ିଖେଳରେ ବି ପରିଶ୍ରମ ଅଛି, ମାତ୍ର ସେ ପରିଶ୍ରମ ବାହ୍ୟପ୍ରକୃତି ସାଙ୍ଗରେ ସାମାଜିକ ମଣିଷର ଜୀବନନିର୍ବାହକୁ ଯୋଡ଼ିପାରେନା, କାହିଁକିନା, ରୂପାନ୍ତର ଘଟାଇବା ସକାଶେ ବାଗୁଡ଼ି କେହି ଖେଳେନା । ଶ୍ରମକୁ ସେଥିପାଇଁ କରିଦେଇଚନ୍ତି ଦିଖଣ୍ଡ, ଅ୍ୟାବ୍‌ଷ୍ଟ୍ରାକ୍ଟ ଆଉ କଂକ୍ରିଟ୍ । ଏକାଜିନିଷ; ଗୋଟିଏ ଅଂଶ ବ୍ୟକ୍ତିଗତ, ଅନ୍ୟ ଅଂଶଟି ସାମୂହିକ । ଶ୍ରମପ୍ରୟୋଗରୁ ଯୋଉ ଜିନିଷଟା ଉତ୍ପନ୍ନହେଉଚି, ତା ଭିତରେ ନିହିତ ଦ୍ୱୈତସତ୍ତା; ଆବଶ୍ୟକ ମେଣ୍ଟାଇପାରେ ଉପଯୋଗିତା ବା ଦ୍ରବ୍ୟଗୁଣ, ପୁଣି ସାମାଜିକ ଶ୍ରମ ଯା ଖର୍ଚ୍ଚହୋଇଚି ଦ୍ରବ୍ୟଗୁଣ ଉତ୍ପନ୍ନକରିବାକୁ, ଅର୍ଥାତ୍ ଲେବର୍-ଟାଇମ୍ । ଲେବର୍‌ଟାଇମ୍ କରିଚି ପ୍ରାକୃତିକ ବସ୍ତୁକୁ ମଣିଷର ବ୍ୟବହାରଯୋଗ୍ୟ, ପ୍ରକୃତି ଭିତରେ ବସାଇଚି ପୁରୁଷ । ତେଣୁ ଭୋଗ୍ୟପଣ୍ୟର ଏସେନ୍ସ ବା ସାରବତ୍ତା ସାମାଜିକ ଶ୍ରମ, ଏବଂ ସେଇ ସୂତ୍ରରେ, ସାମାଜିକ ଶ୍ରମ ହିଁ ଭୋଗ୍ୟପଣ୍ୟର 'ଭ୍ୟାଲିଉ' । ସେ ଭ୍ୟାଲିଉର ଭ୍ୟାଲ୍ୟୁକୁ ବ୍ୟକ୍ତକରିପାରେ ଏକମାତ୍ର 'ବିନିମୟମୂଲ୍ୟ' ବା ଇକ୍ସଚେଞ୍ଜ୍ ଭ୍ୟାଲିଉ, କାହିଁକିନା, ଭୂଗୋଳ ଇତିହାସକୁ ବୃଦ୍ଧାଙ୍ଗୁଷ୍ଠ ଦେଖାଇ ଭୋଗ୍ୟପଣ୍ୟ ପ୍ରଦକ୍ଷିଣକରୁଚି ତମାମ ଦୁନିଆ, ଆଉ ସେଇ ସୂତ୍ରରେ ଆହରଣକରୁଚି ସର୍ବଜନୀନତା । ଘୁରିବୁଲୁଥିବା ଜିନିଷଟି ତେଣୁ ଇଉନିଭର୍ସାଲ୍ କମୋଡିଟି । ଜଗତଯାକର ମୂଲ୍ୟ ନିଜକୁ ଯେହେତୁ ବ୍ୟକ୍ତକରୁଚି ବିନିମୟମୂଲ୍ୟରେ, ବିନିମୟମୂଲ୍ୟ ହୋଇଚି ଉନିଭର୍ସାଲ୍ ଭ୍ୟାଲ୍ୟୁ । ଅର୍ଥାତ୍ ଯେକୌଣସି ଜାଗାରେ କି ସମୟରେ ଯେକୌଣସି ଜିନିଷକୁ ବିନିମୟମୂଲ୍ୟ କିଣିପାରେ କି ବିକିପାରେ । ପାରେ ବୋଲି, ଟଙ୍କା (ମନି) ବିନିମୟମୂଲ୍ୟର ସର୍ବସାଧାରଣ ତୁଲ୍ୟତା ବା ଜେନେରାଲ୍ ଇକ୍ୱିଭ୍ୟାଲେଣ୍ଟ୍ । ତା ଦର୍ପ ଦେଖିହେବ ଦୁର୍ଲଭ ଧାତୁ ସୁନାରେ । ଦର୍ପ ମାନେ ସର୍ବସାଧାରଣ ଅଭିବ୍ୟକ୍ତି । ସୁନାକୁ ସେଥିପାଇଁ ମାଟିତଳେ ଲୁଚାଇରଖୁଚନ୍ତି ଲୋକ, ଦେବଦେବୀଙ୍କୁ ଅର୍ପଣକରୁଚନ୍ତି ଲାଭପାଇବା ପ୍ରତ୍ୟାଶାରେ, ପବିତ୍ର ବିବେଚନାରେ ପୁଣି ନାକକାନ ବେକହାତ ଭଳି ଅଙ୍ଗପ୍ରତ୍ୟଙ୍ଗର ଅଳଙ୍କାର । ଏପରିକି, ସ୍ୱୟଂ ଦୁର୍ଗାଙ୍କ ବିଗ୍ରହ ମଧ୍ୟ କନକଦୁର୍ଗା । ଟଙ୍କା ତେଣୁ ଜଡ଼ବସ୍ତୁର ଆଦର୍ଶ

ରୂପ, 'ଆଇଡିଆ' । ଏ ବାଟରେ ମଣିଷର ଜୀବନଚର୍ଯ୍ୟା କେମିତି ଅବାସ୍ତବ ହୋଇଯାଏ, ସେ ପ୍ରକ୍ରିୟାକୁ କଟାକ୍ଷକରି ମାର୍କ୍ସ ଲେଖନ୍ତି, the riddle of the money fetish is therefore the riddle of the commodity fetish । ଅଥଚ ମୂଲ୍ୟର ପରିମାପକ ଭାବରେ ଶ୍ରମକୁ ପ୍ରତ୍ୟାଖ୍ୟାନକରିଚି ବୁର୍ଜୋୟାଧନବିଜ୍ଞାନ । ସେ ଇକନମିକ୍ସ ବିଚାରରେ, ପ୍ରଯୁକ୍ତି କି କଞ୍ଚାମାଲ ଭଳି ମଣିଷର ପରିଶ୍ରମ ମଧ୍ୟ ଉତ୍ପାଦନର ଅନ୍ୟତମ 'ଇନ୍‌ପୁଟ୍' । ଶ୍ରମପ୍ରୟୋଗ ସାଙ୍ଗକୁ ଶ୍ରମଜାତ ସାମଗ୍ରୀର ଉପଭୋଗ ପ୍ରକଟକରେ ଯେହେତୁ ପରିବ୍ୟାପ୍ତ ସାମାଜିକ ସଂପର୍କ, ଯୋଉ ସର୍ତ୍ତରେ ସେ ସାମାଜିକତା ହୋଇଚି କର୍ମକାରକହୀନ, ଉଦ୍ଦେଶ୍ୟରହିତ, ନିଷ୍ପ୍ରାଣ ଯାନ୍ତ୍ରିକତା, ମାର୍କ୍ସ ତହିଁରେ ଆକସ୍ମିକତା କି ଅଭିସନ୍ଧି ଦେଖିନାହାଁନ୍ତି, କାହିଁକିନା, ସର୍ତ୍ତଗୁଡ଼ାକ ଧାରାବାହିକତା ଅର୍ଜନକରିସାରିଚି ଇତିହାସଗତିରେ । ପଲିଟିକ୍ୟାଲ୍ ଇକନମି ଭିତରକୁ ଏ ଅନ୍ତର୍ଦୃଷ୍ଟି ଏକେବାରେ ମୌଳିକ, କାହିଁକିନା, ସର୍ତ୍ତଗୁଡ଼ାକର ଜନ୍ମସୂତ୍ର ମାର୍କ୍ସ ଠାବକରିଚନ୍ତି 'ମାର୍କେଟ୍'ରେ । ଅନ୍ୟ ଶବ୍ଦରେ, ଆବଶ୍ୟକ ମେଣ୍ଟାଇବା ପରିବର୍ତ୍ତେ ଉତ୍ପାଦନ ଯେତେବେଳେ ବଜାରଅଭିମୁଖୀ ହୁଏ, ଉତ୍ପନ୍ନଦ୍ରବ୍ୟକୁ ହାଟରେ ବିକି 'ଲାଭ' ଅର୍ଜନକରିବାକୁ ଉତ୍ପାଦନପ୍ରକ୍ରିୟାକୁ ସଂଗଠିତ କରିବାବେଳେ ଦରକାରପଡ଼େ ଏଇ ସର୍ତ୍ତାବଳୀ । ଶେଷତମ ଉପଭୋକ୍ତା ପାଖରେ ପହଞ୍ଚିବାପାଇଁ ଖର୍ଦ୍ଦି-ବିକ୍ରିର ନାନାଦି ସ୍ତର ଅତିକ୍ରମକରି ପଣ୍ୟକୁ ଯେହେତୁ ଆଗେଇଯିବାକୁ ହୁଏ, ଗତି କ୍ରମଶଃ ବିସ୍ତାରିତ ହୁଏ ଜାଗାରୁ ଜାଗାକୁ, ଜିନିଷରୁ ଜିନିଷକୁ, ବଜାରରୁ ବଜାରକୁ, ଉତ୍ପାଦନର ବିଭିନ୍ନ ଶାଖାପ୍ରଶାଖାକୁ । ବୃତ୍ତାକାର ଓ ପୌନପୁନିକ ଏଇ ପରିଣତି ଲାଭକରିବାକୁ ଲାଗିଯାଏ ଯୁଗଯୁଗାନ୍ତର । ଅନ୍ତିମଉପଭୋକ୍ତା ତ କୋଉ ନିର୍ଦ୍ଦିଷ୍ଟ ସମାଜରେ ଆବଦ୍ଧ ନୁହେଁ; ଉତ୍ପାଦନର ସର୍ତ୍ତଗୁଡ଼ାକ ତେଣୁ ବିସ୍ତାରିତ ହୋଇଯାଇଚି ଇତିହାସଗତିରେ ସମାଜରୁ ସମାଜକୁ, ଦେଶରୁ ଦେଶାନ୍ତର, ମହାଦେଶରୁ ମହାଦେଶ । ଇଉନିଭର୍ସାଲ୍ ହୋଇପାରିନାହିଁ ତଥାପି, ଅନ୍ତତଃ ଶ୍ରମଶକ୍ତି ଯେତେବେଳ ଯାଏଁ ମୂଲମଜୁରୀ ଆକାର ଧରି ପରିଣତହୋଇନାହିଁ ନିଜେ ଗୋଟାଏ ପଣ୍ୟ । ଶ୍ରମଶକ୍ତିର wage-labour ବା ମୂଲିଆକୁ ରୂପାନ୍ତର ଦ୍ରୁତ ଓ କ୍ଷିପ୍ର ହୋଇଚି କ୍ୟାପିଟାଲିଜ୍ମ ସହିତ ସମତାଳରେ; ମାତ୍ର ଶେଷକୁ ଏପରି ଏକ ବିନ୍ଦୁରେ ପହଞ୍ଚିଚି ଯେ ଆଗକୁ ଯିବା ଆଉ ସମ୍ଭବ ନୁହେଁ; ଅଥଚ ମଣିଷର ଅଗ୍ରଗମନ ଅଟକି ରହିପାରେନା ! ଏକମାତ୍ର ଯୋଉ ବିନ୍ଦୁରୁ ଆଗକୁ ଯାଇହେବ, ତା ଯୋଜନାବଦ୍ଧ ଉତ୍ପାଦନ । ବଜାରଅଭିମୁଖୀ କରିବା ପରିବର୍ତ୍ତେ ଉତ୍ପାଦନକୁ କରିବାକୁ ପଡ଼ିବ ସମାଜ-ଅଭିମୁଖୀ । ଅର୍ଥାତ୍, ଶ୍ରମଶକ୍ତିର ଉପଯୋଗ ଉପରେ ହେବ ସମାଜର ନିୟନ୍ତ୍ରଣ ପ୍ରତିଷ୍ଠା । ଯୋଉ ନିୟମରେ ବାସ୍ତବାୟିତ ହେବ

ଏ ନିୟନ୍ତ୍ରଣ, ତାର ସାମାଜିକ ଆଭିମୁଖ୍ୟ ଅର୍ଥନୀତିର ସର୍ବଜନୀନ ସଂଖ୍ୟାୟନ (କୋଆଣ୍ଟିଫିକେସନ୍); ସାମାଜିକ ସଂପର୍କର ସ୍ୱଚ୍ଛତା ସେତେବେଳେ ଆଦିମ ସମାଜର ସ୍ୱତଃସ୍ଫୂର୍ତ୍ତ ସର୍ତ୍ତହୋଇ ରହିବନାହିଁ (କାହିଁକିନା, ବାହ୍ୟ ପ୍ରକୃତିରୁ ଅନୁମିତ ଦେବଦେବୀ କହିଦେବେନାହିଁ ସାମାଜିକ ସଂପର୍କର ଧରଣଧାରଣ) । କହିବ ସାମାଜିକ ନିୟନ୍ତ୍ରଣ । ପଣ୍ୟରତି ସେତେବେଳେ ପ୍ରତିଭାତହେବ ଦୀର୍ଘ ଏକ ଅଭିସରଣ, ମଣିଷ ଉପରେ ପ୍ରକୃତିର ପ୍ରଭୁତ୍ୱ ଆଉ ପ୍ରକୃତି ଉପରେ ମଣିଷର ପ୍ରଭୁତ୍ୱ ମଧ୍ୟସ୍ଥ ପ୍ରଲମ୍ବିତ ଅଭିସରଣ ।

ତେବେ, ପଲିଟିକ୍ୟାଲ୍ ଇକନମି ଜମାରୁ ଫିଲଜଫି ନୁହେଁ, ଯଦିଚ ବିପ୍ଳବୀ ହେଲେସୁଦ୍ଧା ତାଲିମ୍‌ରେ ମାର୍କ୍ସ ନିଜେ ଦାର୍ଶନିକ । ତାଙ୍କ ପ୍ରତିପାଦ୍ୟ ଏଠି: ସାମାଜିକ ଆଭିମୁଖ୍ୟ ତିଆରିହୋଇପାରେନା କର୍ତ୍ତାର ଅନୁପସ୍ଥିତିରେ; ଦର୍ଶନଚିନ୍ତାରେ ଏ ଅବଶ୍ୟ ନୂଆ ଉପାଦାନ, କର୍ତ୍ତାନିରୂପଣ ବା ସବ୍‌ଜେକ୍ଟିଫିକେସନ୍ । ସବ୍‌ଜେକ୍ସନ୍ ବା ବାଧ୍ୟବାଧକତା ଆଉ ସବ୍‌ଜେକ୍ଟିଭିଟି ବା ଆତ୍ମସାପେକ୍ଷତା ଭିତରେ ଆନ୍ତଃସମ୍ପର୍କ ନିର୍ଦ୍ଧାରଣ । ଜର୍ମନ୍ ଭାବବାଦ-ପରମ୍ପରାରେ 'କର୍ତ୍ତା' ଏପରି ଏକ ବିଶ୍ୱବ୍ୟାପୀ ଚୈତନ୍ୟ ଯାର ଅବସ୍ଥିତି ସର୍ବମାନବ ଊର୍ଦ୍ଧ୍ୱରେ; ସେଇ ପ୍ରତ୍ୟୟରୁ ରିଜନ୍ ବା ଯୁକ୍ତିକୁ ଭାବିଚନ୍ତି ମଣିଷର ଏସେନ୍ସ ବା ଅନ୍ତଃସାର, ପ୍ରତ୍ୟେକ ମଣିଷର ସହଜାତ । ମାର୍କ୍ସଙ୍କୁ ଲାଗିଚି, ଆତ୍ମ (=ସେଲ୍‌ଫ୍)ର ଏ ନିର୍ମାଣ 'ମୂଳାଧାର' ଧାରଣାର ନାମାନ୍ତର ମାତ୍ର, କାହିଁକିନା, ଏଭଳି ଚୈତନ୍ୟ ଜଗତକୁ ବୋଧଗମ୍ୟକରେ ଏକାନ୍ତ ଯୋଉ ଆକାରଗୁଡ଼ିକ ସାହାଯ୍ୟରେ, କାଣ୍ଟ୍ ତାକୁ କହିଚନ୍ତି 'ନେସେସରି ଇଲିଉସନ୍', ଅଭିଜ୍ଞତା ଊର୍ଦ୍ଧ୍ୱରେ ସ୍ଥିତ କାଳ୍ପନିକ ଅଧିବିଶ୍ୱ । ମାନେ, ଯୁକ୍ତି ଦ୍ୱାରା ନିର୍ମିତ ବିମୂର୍ତ୍ତାୟନ । 'ଯୁକ୍ତି' ଜାଗାରେ କାଣ୍ଟ୍ ତେଣୁ ବସାଇଚନ୍ତି pure practical reason । ଅର୍ଥାତ୍, ଏପରି ଯୁକ୍ତି ନିର୍ଦ୍ଦିଷ୍ଟ ନୈତିକ ବିବେଚନା ଦ୍ୱାରା ଯା ରଞ୍ଜିତ ନୁହେଁ; ଏକମାତ୍ର ସହଜାତ କର୍ତ୍ତବ୍ୟବୋଧ ଦ୍ୱାରା ସଂଚାଳିତ । ମାତ୍ର ପ୍ରାକୃତିକ ଜଗତରୁ ନୈତିକ ଜଗତର ବିଚ୍ଛେଦକୁ ହେଗ୍ଲ ସମର୍ଥନ କରିନାହାଁନ୍ତି; କହିଚନ୍ତି, ଜଗତର ସ୍ୱରୂପ ଯେହେତୁ ଇତିହାସର ହିଁ ନିର୍ମାଣ, ଚୈତନ୍ୟର ଅଭିଜ୍ଞତା ଏକ ଐତିହାସିକ ଅଭିଜ୍ଞତା । ବିଭିନ୍ନ ପ୍ରତୀୟମାନ ହେଉଚି, ନିସର୍ଗ ଆଉ କୃଷ୍ଟିର ବିବିଧତା ଭିତରେ ରିଜନ୍/ସ୍ପିରିଟ୍ ଯେହେତୁ ଇତର ହୋଇଯାଇଚି; ମାତ୍ର ପରିଶେଷରେ ଖଣ୍ଡଖଣ୍ଡ ଅଭିଜ୍ଞତାରୁ ଜନ୍ମିଥିବା ପାରକ୍ୟକୁ ଆପଣା ନିୟମରେ ଅତିକ୍ରମକରି ଯଥାର୍ଥ ଅଖଣ୍ଡତାକୁ ଫେରିଆସିବ । ଏଇ ବିଷୟମୁଖୀନତା ବା ଅବ୍‌ଜେକ୍ଟିଭିଟିକୁ ପଣ୍ୟପରିକ୍ରମାର ବିଭିନ୍ନ ପରିପ୍ରକାଶ ସହିତ ସମାନ କରିଚନ୍ତି ମାର୍କ୍ସ, କାହିଁକିନା, ପରିପ୍ରକାଶଗୁଡ଼ିକର ପ୍ରତିନିଧିତ୍ୱ କରୁଚି ଅର୍ଥନୀତି, ଯା ଭିତରୁ

ଆବିଷ୍କାରକରିଚନ୍ତି କମୋଡିଟି ଫେଟିଶିଜ୍ମ ଭଳି ଯାନ୍ତ୍ରିକତା । ସେ ଯାନ୍ତ୍ରିକତା ଏପରି ସର୍ବବ୍ୟାପୀ ମେଦିନୀଦୃଷ୍ଟି ଯେ ବିନିମୟମୂଲ୍ୟ ହିଁ କରୁଚି ତାକୁ ପରିଚାଳନା । ହେଗ୍ଲୁ ଯୋଉ 'ନେଚର୍' 'କଲ୍‌ଚର୍' ଦ୍ୱୈରଥ ଅବତାରଣା କରିଚନ୍ତି, ମାର୍କ୍ସ ତାକୁ ଦେଖୁଚନ୍ତି ସମକାଳର ଜୀବନଯାପନର ସମାନ୍ତରାଳ । କାହିଁକିନା, ବୁର୍ଜୋୟା-ଅର୍ଥନୀତିର ପ୍ରତିଜ୍ଞାଗୁଡ଼ାକ ଦିଶିଚନ୍ତି forms of thought which are socially valid and therefore objective । ବିଷୟମୁଖୀନତା / ନିରପେକ୍ଷତା (=ଅବ୍‌ଜେକ୍ଟିଭିଟି) ତେଣୁ ଜଗତ୍ ସମ୍ବନ୍ଧରେ କୋଉ ଦାର୍ଶନିକ ନିଷ୍କର୍ଷ ନୁହେଁ; ସମାଜ ଆହ୍ୱାନଜଣାଉନାହିଁ ବୋଲି, ଅବ୍‌ଜେକ୍ଟିଭିଟି ମନେହେଉଚି ଯଥାର୍ଥ । ବାଧ୍ୟବାଧକତା ପ୍ରବର୍ତ୍ତନକରିବା ଆଗରୁ ଜୀବନ କେମିତି ଗଡ଼ିଚାଲିଚି, ଲକ୍ଷଣଗୁଡ଼ାକୁ ଲକ୍ଷକରି ତିଆରିହୁଏ ଜୀବନଦୃଷ୍ଟି; ଆଉ ସାଡ଼ମ୍ବର ବୁଝାଇଦିଆହୁଏ ଯେ ଜୀବନ ଯେମିତି ଗଡ଼ିଚାଲିଚି, ସେଥିରେ ଅସନ୍ତୁଷ୍ଟ ହେଲେସୁଦ୍ଧା ବିଦ୍ୟମାନ ଜଗତଟାକୁ ଗତାନୁଗତିକତାରୁ ମୁକୁଳାଇଆଣିବା ସମ୍ଭବପର ନୁହେଁ । ଦାର୍ଶନିକ ସେଇ ଅତୃପ୍ତିଗୁଡ଼ାକୁ ଇଣ୍ଟରପ୍ରେଟ୍ କରନ୍ତି, ପ୍ରତିକାର କହିପାରନ୍ତିନାହିଁ । ମାର୍କ୍ସ ବ୍ୟାଖ୍ୟା କରନ୍ତିନାହିଁ, ବିଶ୍ଳେଷଣ କରନ୍ତି; ଆଉ କହନ୍ତି, ବିଦ୍ୟମାନକୁ ବଦଳାଇଦେବା ସମ୍ଭବପର । ପଣ୍ୟପ୍ରବାହ ଓ କମ୍ପମାନ ବିନିମୟମୂଲ୍ୟ ଦ୍ୱାରା ତିଆରି ଯୋଉ ଜଗତ, ରୀତିମତ ହିସାବକିତାବ୍ ଜଗତ; ତାକୁ ମାପିହୁଏ, ଦରଦାମ ଠିକ୍‌କରିହୁଏ, ଓଜନକରିହୁଏ, ହାନିଲାଭ ହିସାବକରିହୁଏ; ଅଥଚ ସେଇ ଜଗତଟାକୁ ଯିଏ ବାଗାଉଚନ୍ତି ପ୍ରତିଦିନ, ଭାବୁଚନ୍ତି ଏ ଜଗତଟାର କ୍ଷୟନାହିଁ କି ଜରାନାହିଁ, ଯେହେତୁ ସେ ଜଗତର ପଣ୍ୟସମ୍ଭାର ହୋଇଚି ମଣିଷର ପରମାର୍ଥ ! ମାତ୍ର ଯେକୌଣସି 'ଇକନମିକ୍ ଅବ୍‌ଜେକ୍ଟ', ପଣ୍ୟ ହେଉ କି ବିନିମୟମୂଲ୍ୟ, ସ୍ୱଭାବତଃ ଖଣ୍ଡିତ; ପରିମାଣ ଦ୍ୱାରା ହେଉ, ସାମାନ୍ୟ ମାତ୍ରାରେ ହେଉ କି ବିଶେଷ ମାତ୍ରାରେ । ଇକନମିକ୍ ଅବ୍‌ଜେକ୍ଟର ଏ ହେଲା ସ୍ୱଭାବସିଦ୍ଧ 'ନେଚର୍'; ଅଥଚ ସମାଜ ଦୃଷ୍ଟିରେ, ପଣ୍ୟ ହେଉ କି ବିନିମୟମୂଲ୍ୟ, ଅଗଣ୍ୟ ଅଖଣ୍ଡ ଅସୀମ ! ଅନ୍ୟ ଶବ୍ଦରେ, ନେଚର୍ କି ନୈତିକତା (=କଲ୍‌ଚର୍), କୋଉ ଗୋଟାକହେଲେ, ଭାଙ୍ଗିପାରୁନାହିଁ ମିଛମାୟା । କିନ୍ତୁ ସ୍ୱଭାବ ଓ କୃଷ୍ଟିକୁ ଯଦି ଆକ୍ରାନ୍ତକରିଚି ପଣ୍ୟରତି, ଇତିହାସ ନିଶ୍ଚୟ ଫେରାଇଦେବ ମଣିଷ ହାତକୁ ସେଇ ସ୍ଫଟିକସ୍ୱଚ୍ଛ ଜଗତ୍, ପାରକ୍ୟ ଯାହାକୁ ବିଦୀର୍ଣ୍ଣ କରିପାରେନା କଦାଚିତ୍ ।

ମାର୍କ୍ସଙ୍କ ଏଇ ଅବଲୋକନରେ ଭାବବାଦ, ବସ୍ତୁବାଦ, ବିଜ୍ଞାନ—ମିଳିମିଶି ଏକାକାର; ମାତ୍ର ମେଦିନୀଦୃଷ୍ଟି ପୂର୍ବବର୍ତ୍ତୀ ଦାର୍ଶନିକଙ୍କ ଜଗତ୍-ପ୍ରତୀତି ତୁଳନାରେ ଏକେବାରେ ମୌଳିକ ଆଉ ଅଭିନବ । ଅଥଚ କୋଉହେଲେ କର୍ତ୍ତାର କର୍ମଧାରାରୁ ଉଠିଆସୁନାହିଁ; ବରଂ ଅଭିପ୍ରାୟ ଜାଗାରେ ଛିଡ଼ାକରୁଚି ଏପରି ଆତ୍ମସାପେକ୍ଷତା ଯା

ପୁରାପୁରି ସଚେତନ । ଅର୍ଥାତ୍ ଅବ୍‌ଜେକ୍ଟିଭିଟି ଯୋଉଠି କର୍ମକ୍ଷେତ୍ର, ମାର୍କ୍ସଙ୍କ ମେଦିନୀଦୃଷ୍ଟି ସେଠି କଳ୍ପନାକରୁଚି କର୍ତ୍ତା, ଆଉ କର୍ତ୍ତାର ଚେତନାର ନାନାଦି ଆକାରପ୍ରକାର । ତୁରୀୟ ଅବସ୍ଥାନରୁ ସେ କର୍ତ୍ତା ଘୁଞ୍ଚିଯାଇଚି ସାମାଜିକ ପ୍ରକ୍ରିୟାର ପରିଣତିକୁ; ସବ୍‌ଜେକ୍ଟିଭିଟି ଯଦି କର୍ତ୍ତୃତ୍ୱ, ସେ କର୍ତ୍ତୃତ୍ୱ ତେବେ ନିହିତ ଅଛି ସାମୂହିକ ଚେତନାରେ; ଅଥଚ ସାମୂହିକ ଚେତନା ବା ସମାଜ ତ ଅ-କର୍ତ୍ତା ବା ନନ୍-ସବ୍‌ଜେକ୍ଟ; କାହିଁକିନା, ସମାଜ ବସ୍ତୁତଃ ଏକ କର୍ମପରିସର; ଉତ୍ପାଦନ-ବିନିମୟ-ଉପଭୋଗ ଭଳି ନିତ୍ୟକର୍ମରେ ନିତ୍ୟନିୟୋଜିତ ମଣିଷ ନିଜ କାମଗୁଡ଼ାକୁ ମନେକରେ 'ସ୍ୱାଭାବିକ' । ଅର୍ଥାତ୍, ପ୍ରୟୋଗକରେନା ଚେତନା । ଚେତନାର ଭୂମିକା ସ୍ପଷ୍ଟନୁହେଁ ବୋଲି ଧନ ମନେହୁଏ ମହତ୍ତ୍ୱ; ଅର୍ଥାତ୍, ସାମାଜିକ ସତ୍ୟର ପ୍ରତିନିଧିତ୍ୱ କରେ ଜିନିଷ (ଅବ୍‌ଜେକ୍ଟ), ଯଦିଓ ପ୍ରତିନିଧିତ୍ୱ କରୁଥିବା ଜିନିଷକୁ ତିଆରିକରେ ନିଜେ । ପୁଞ୍ଜିର ରହିଚି ହଜାରେ ରକମ ଛଦ୍ମବେଶ; ଖାଲି ଟଙ୍କା (ମନି)କୁ ଚାହିଁଲେ ଦିଶୁଚି ଜଡ଼ପଦାର୍ଥ, କିନ୍ତୁ ବଳବାନ୍ ପ୍ରତିନିଧି ଯେହେତୁ ହଜାରେ ରକମ ପ୍ରତିନିଧିତ୍ୱ କରିପାରେ ସାମାଜିକ ସମ୍ପର୍କର ସେଇ କେବଳ 'ଇକନମିକ୍ ସବ୍‌ଜେକ୍ଟ'; ବୁର୍ଜୋୟା-ସମାଜରେ ସେଇ କ୍ରେତା, ସେଇ ବିକ୍ରେତା ଓ ସେଇ ସୂତ୍ରରେ, ମାଲିକ । ବିକ୍ରୟଯୋଗ୍ୟ ପଦାର୍ଥର ଯିଏ ମାଲିକ ନୁହେଁ, ବିକିବ କେବଳ ଶ୍ରମଶକ୍ତି, ମାନେ ଆପଣାକୁ । ସେ କାମ ବି ଲାଗିବ 'ସ୍ୱାଭାବିକ' । ତେଣୁ ଭାବିବା ସଙ୍ଗତ ଯେ ଜୀବନଦର୍ଶନ ତିଆରିକରିପାରେନା ସମାଜ, କର୍ତ୍ତାପଣ ଯେହେତୁ କିଣିବା-ବିକିବା ଭଳି ପଣ୍ୟରତି । (ସବ୍‌ଜେକ୍ଟର ଓଡ଼ିଆ ପ୍ରତିଶବ୍ଦ ଅବଶ୍ୟ 'ପ୍ରଜା'), ସମାଜାଶ୍ରିତ ମଣିଷ ପଣ୍ୟରତିର ପ୍ରଜା । ବିଷୟମୁଖୀ ଏଇ ସମାଜରେ ପ୍ରତିପକ୍ଷ/ ପ୍ରତିକାର ହୋଇପାରେ ତେଣୁ ଇତିହାସ ନିର୍ଦ୍ଧାରଣକରିଚି ଆଦିକାଳରୁ ଯୋଉ ଚୂଡ଼ାନ୍ତ କର୍ତ୍ତୃତ୍ୱ ବା ଡିଟର୍‌ମିନେଟ୍ ସବ୍‌ଜେକ୍ଟିଭିଟି । ଅନ୍ୟ ଶବ୍ଦରେ, କର୍ମରତ କର୍ତ୍ତା ପଣ୍ୟମାୟାରେ ମୋହଗ୍ରସ୍ତହୋଇ ପରିଣତହୋଇଚି ଯେତେବେଳେ ବିକ୍ରୟଯୋଗ୍ୟ ଅବ୍‌ଜେକ୍ଟ, ତା କର୍ତ୍ତୃତ୍ୱ ବା ସବ୍‌ଜେକ୍ଟିଭିଟିକୁ ଉଦ୍ଧାରକରିବାକୁ ପଡ଼ିବ ପ୍ରବହମାନ ଇତିହାସରୁ । ସାଙ୍କେତିକ ଏଇ ସୂତ୍ରରୁ ରିଇଫିକେସନ୍ ତତ୍ତ୍ୱର ଉତ୍ପତ୍ତି । ଗେଅର୍ଗ ଲୁକାଚ୍ ତାକୁ ଭାବିଚନ୍ତି ସର୍ବହରାର ମାନସଲୋକର ଆଣ୍ଟିଥେସିସ୍, ସବ୍‌ଜେକ୍ଟିଭିଟି ଓ ଅବ୍‌ଜେକ୍ଟିଭିଟି ମଧ୍ୟସ୍ଥ ଦ୍ୱାନ୍ଦ୍ୱିକତା । ମୀମାଂସା ଦାୟିତ୍ୱ କିନ୍ତୁ ଇତିହାସର; ଅର୍ଥାତ୍, ଇତିହାସ ଯେହେତୁ ମଣିଷର ଚୈତନ୍ୟ-ଉତ୍ତରଣର ଆନୁପୂର୍ବିକ ବୃତ୍ତାନ୍ତ, ଖୋଲିଦେଖାଇଦେବ କର୍ତ୍ତା ଆଉ କର୍ତ୍ତୃତ୍ୱ ଭଳି ବିମୂର୍ତ୍ତର ସାକାର ଅଭିରୂପ । ଲୁକାଚଙ୍କ ଏ ଇତିହାସବୋଧ ମାର୍ଟିନ୍ ହାଇଡେଗାର୍‌ଙ୍କ ଭଳି ଦାର୍ଶନିକଙ୍କୁ ମଧ୍ୟ ଭାବିତକରିଚି, କାହିଁକିନା, ଇତିହାସର ପାହାଚଗୁଡ଼ାକ ଚଢୁଚଢୁଁ ବିଂଶଶତକରେ ପହଞ୍ଚିବା ବେଳକୁ

ମଣିଷ ହଜାଇସାରିଚି ନିର୍ଦ୍ଦିଷ୍ଟ ଆତ୍ମସତ୍ତା; ଏକ୍ଷଣି, କେତେବେଳେ କୋଉ ଛଦ୍ମବେଶଧରିବ ଠିକଣାକରୁଚି, ହିତବାଦୀ ପ୍ରଯୁକ୍ତି; ଜୀବନ ତେଣୁ ରହିପାରୁନାହିଁ ଅଥେଣ୍ଟିକ୍ ବା ଅପ୍ରମାଦ, ଏବଂ ରହିପାରୁନାହିଁ ବୋଲି, ରିଇଫିକେସନ୍ ବା ନୈର୍ବ୍ୟକ୍ତିକରଣର ଏତେ ପ୍ରତାପ ।

ଲୁକାଚ୍ ଲକ୍ଷ୍ୟକରିଚନ୍ତି, ପଣ୍ୟମୂଲ୍ୟ ଯେହେତୁ ନିରୂପଣକରେ କର୍ତ୍ତାର ମୂଲ୍ୟ, କର୍ତ୍ତା ମଧ ହୋଇଯାଏ ପଣ୍ୟକୁ ରୂପାନ୍ତରିତ । ରୂପାନ୍ତର ଘଟେ ଯୋଉ ବିନ୍ଦୁରେ ଜର୍ମନିରେ ତା *verdinglichung*; ଇଂରେଜୀରେ ରିଇଫିକେସନ୍ । ମାତ୍ର ମାର୍କ୍ସ କହିଥିଲେ, ପଣ୍ୟପଣ୍ୟ ମଧ୍ୟସ୍ଥ ସମ୍ପର୍କ ସ୍ଥିରକରେ ଏକମାତ୍ର ତୁଲ୍ୟତା । ଦରଦାମ୍, ବିନିମୟ ଇତ୍ୟାଦି ତେଣୁ ସ୍ୱୟଂକ୍ରିୟ ଓ ସ୍ୱାଧୀନ । ବ୍ୟକ୍ତି-ବ୍ୟକ୍ତି ମଧ୍ୟସ୍ଥ ସମ୍ପର୍କ ପଣ୍ୟସମ୍ପର୍କର ତୁଲ୍ୟମୂଲ୍ୟ ହେଲେସୁଦ୍ଧା, ବ୍ୟକ୍ତିଗତ ସମ୍ପର୍କର ପ୍ରତିକଳ୍ପ ନୁହେଁ । ମାତ୍ର ଦୁଇଯୁଦ୍ଧ ମଧ୍ୟବର୍ତ୍ତୀ କାଳରେ ଲୁକାଚ୍ ଦେଖିଲେ, ଅବ୍‌ଜେକ୍ଟିଭିଟି ସ୍ଥିରକରୁଚି ମାର୍କେଟ୍; ବୁର୍ଜୋୟା ମୂଲ୍ୟବୋଧ ତାକୁ କହୁଚି 'ବୈଜ୍ଞାନିକ' ନିରପେକ୍ଷତା । ନିରପେକ୍ଷତାର ସେଇ ଆଦର୍ଶ, ଫିଜିକ୍ସ କି ମେକାନିକ୍ସର ଅବ୍‌ଜେକ୍ଟିଭିଟି । ବାହ୍ୟ ପ୍ରକୃତିକୁ ବୋଧଗମ୍ୟ କରିବା ସକାଶେ ବିଶ୍ୱସଂସାରକୁ ପ୍ରକାଶକରୁଚି ପରିମାଣ-ମାତ୍ରିକତାରେ; ଅର୍ଥାତ୍, ବାହ୍ୟପ୍ରକୃତି ଭିତରକୁ ଅଧିକରୁ ଅଧିକ ଅଭିକ୍ଷେପ କରୁଚି ବିଜ୍ଞାନ-ସାପେକ୍ଷ ବିଜ୍ଞାନ-ନିରପେକ୍ଷ ଭଳି ବିଭାଜକ ପାର୍ଥକ୍ୟ । ମୂଳ କିନ୍ତୁ ରହିଚି ପଣ୍ୟବିନିମୟ କାରବାରର ଧରଣଧାରଣ ଭିତରେ; ଅର୍ଥାତ୍, ବିବାକ ମୂଲ୍ୟବୋଧକୁ ଯୁକ୍ତିଗ୍ରାହ୍ୟକରି, କିମ୍ବା ମୂଲ୍ୟ ଉପରେ ଉଦ୍ଦେଶ୍ୟ ଚପାଇଦେଇ (ଯେପରି, ଲାଭ-ନୁକ୍‌ସାନ୍), ବଜାରର ବିଧାନକୁ ବିଜ୍ଞାନ ଆଣି ପୁରାଉଚି ସକଳ ପ୍ରକାର ମାନବିକ କର୍ମକାଣ୍ଡ ଭିତରେ । ପଣ୍ୟ ତେଣୁ ହୋଇଯାଇଚି ସବୁରକମ ସାମାଜିକ ଅଭିପ୍ରାୟର ମାପକାଠି, ଆଉ ସାମାଜିକ ଅଭିପ୍ରାୟ ବି ଆହରଣକରୁଚି ପଣ୍ୟର ଧରଣଧାରଣ ।

ମାର୍କେଟ୍ ସଂଗଠନରେ ଭ୍ରାମ୍ୟମାଣ ପଣ୍ୟର ଧରଣଧାରଣକୁ ବିଜ୍ଞାନଚର୍ଚ୍ଚା ଓ ସାମାଜିକ ସମ୍ପର୍କର ଉପମାନରେ ପରିଣତକରି ଲୁକାଚ୍ ଦେଖାଇଚନ୍ତି ବସ୍ତୁତଃ ଏକ ପ୍ୟାରାଡକ୍ସ (ଆପାତଃ ଆତ୍ମବିରୋଧ), କର୍ତ୍ତାପଣ ଓ ନିରପେକ୍ଷତା ମଧ୍ୟସ୍ଥ ଆପାତଃ ବିରୋଧ; ପ୍ରକୃତିର ନିୟମ ଓ ଗଣିତର ନିୟମ ଏକାସାଙ୍ଗରେ କେମିତି ଆକାଙ୍କ୍ଷା, ଆବଶ୍ୟକ ଓ ଚେତନାକୁ ବ୍ୟକ୍ତିର ଅସ୍ତିତ୍ୱରୁ କାଢ଼ିଦେଉଚି କ୍ରମଶଃ । ଇଙ୍ଗିତକରିଚନ୍ତି, ସବୁରକମ ସବ୍‌ଜେକ୍ଟିଭିଟିକୁ ଭାଙ୍ଗିପକାଇ ନୈର୍ବ୍ୟକ୍ତିକ ବିଷୟମୁଖୀନତାରେ ପର୍ଯ୍ୟବସିତକରିବା ଆୟୋଜନ । ଅର୍ଥାତ୍ ପୁଞ୍ଜିବାଦୀ ସମାଜରେ ମଣିଷର ଇତରତା ଯେ ଚରମ ପର୍ଯ୍ୟାୟରେ ଆସି ପହଞ୍ଚିଚି, ସେଇ ଲକ୍ଷଣର ବିଶ୍ଲେଷଣ । ଜର୍ମନ୍

*ଇତିହାସଚେତନା* ରେ ସେଇ ଇତରତା (=ଆଲିଏନେସନ୍)ର ସମୀକ୍ଷା କରିଚନ୍ତି ମାର୍କ୍ସ ପୁଙ୍ଖାନୁପୁଙ୍ଖ, ମାତ୍ର ଲୁକାଚ୍ କହୁଚନ୍ତି ବୁର୍ଜୋୟାସମାଜର ବୈପ୍ଳବିକ ରୂପାନ୍ତର ଏକ୍ଷଣି ଅନିବାର୍ଯ୍ୟ । ପ୍ରଲେତାରିଏତ୍‌ର ଜଡ଼ପଦାର୍ଥକୁ ରୂପାନ୍ତର ଯେହେତୁ ବାକିନାହିଁ, ବିପ୍ଳବର କର୍ତ୍ତାପଣକୁ ତାର ଉତ୍ତରଣ ଅବଶ୍ୟମ୍ଭାବୀ ଓ ଆସନ୍ନ, କାହିଁକିନା, ସେଇ ତ ଇତିହାସର ଏକମାତ୍ର କର୍ତ୍ତାପୁରୁଷ(=ନିର୍ମାତା); ପାରକ୍ୟ ଅତିକ୍ରମକରି ଯିଏ ଉପଲବ୍ଧିକରିପାରେ 'ଆତ୍ମ'ର ସ୍ୱରୂପ; ଏବଂ ସେଇ ସୂତ୍ରରେ, ସୂଚନାକରିପାରେ ଇତିହାସର ପର୍ବାନ୍ତର । ଏ ବକ୍ତବ୍ୟକୁ କେହି କେହି ଭାବିଚନ୍ତି ରହସ୍ୟବାଦ, ଯେହେତୁ ସ୍ମରଣକରାଇଦିଏ ପ୍ରଳୟ ଶେଷରେ ଶୂନ୍ୟତାରୁ ସୃଷ୍ଟିର ନବୋନ୍ମେଷ । କିନ୍ତୁ *କ୍ୟାପିଟାଲ୍* ବହିରେ ମାର୍କ୍ସ ଉଲ୍ଲେଖକରିଚନ୍ତି ଦୁଇଟି ପ୍ରତୀକ; ମନି ଆଉ ଲ'; ଦୁହିଁଙ୍କ ଭାଷାରେ ଚଳପ୍ରଚଳହୁଏ ପଣ୍ୟର ଜଗତ । 'ମନି' କହେ ତୁଲ୍ୟତା ଆଉ ପରିମାଣ (=ମାପ, ଓଜନ)ର ଭାଷା; ଲ' କହେ କଣ୍ଟ୍ରାକ୍ଟ ଆଉ ଅବ୍ଲିଗେସନ୍(ନୈତିକ ବାଧ୍ୟତା)ର ଭାଷା । ବୁର୍ଜୋୟାସମାଜରେ କର୍ତ୍ତାପଣ ତେଣୁ ଦାର୍ଶନିକ ପ୍ରତ୍ୟୟ ନୁହେଁ, ଆଇନ୍ ଓ ଅର୍ଥନୀତିର ପ୍ରତ୍ୟୟ । ସର୍ବହରା ଯଦି 'ଲିଗାଲ୍ ସବ୍‌ଜେକ୍ଟ', ନିଶ୍ଚୟ ରହିଚି ତାର ସ୍ୱାଭାବିକ ଅଧିକାର, ପ୍ରତ୍ୟେକ ପଣ୍ୟ ଯେମିତି ବହନକରୁଚି ସ୍ୱାଭାବିକ ମୂଲ୍ୟ । ବୁର୍ଜୋୟା-ପ୍ରବର୍ତ୍ତିତ ବାଣିଜ୍ୟିକ ଆଇନ୍‌ରେ ସର୍ବହରାର ଏ ସ୍ୱାଭାବିକ ଅଧିକାର ସ୍ଥାନପାଏନା ଯେମିତି, ବଜାର-ପର୍ଯ୍ୟଟନ ବାହାରେ ପଣ୍ୟର କୋଉ ସ୍ୱାଭାବିକ ମୂଲ୍ୟ ମଧ୍ୟ ସ୍ଥାନପାଇନାହିଁ ସେମିତି । ପ୍ୟାରାଡକ୍ସ ତେଣୁ ବାସ୍ତବ ନୁହେଁ, ଆପାତଃ । ବିରୋଧ ବାସ୍ତବ ନୁହେଁ, କାହିଁକିନା, ବିନିମୟ ପାକଚକ୍ରରେ ଯୋଉ ପଣ୍ୟ ନାନାଦି ରକମ ଦରଦାମ (=ପ୍ରାଇସ୍) ଦାବିକରେ, ନିଜ ଭିତରେ ବହନକରୁଚି ଯେମିତି ସ୍ୱାଭାବିକ ମୂଲ୍ୟ, ସର୍ବହରା ସେମିତି ବିନିମୟ ପାକଚକ୍ରରେ ଆବର୍ତ୍ତିତ ହେଲେସୁଦ୍ଧା ନିଜ ଭିତରେ ବହନକରୁଚି ସ୍ୱାଭାବିକ ଇଚ୍ଛାଶକ୍ତି, ଶ୍ରମଶକ୍ତି ଓ କର୍ତ୍ତାପଣ (ଅନ୍ୟଥା ଆପଣା ସଂସାର ଚଳାଇପାରନ୍ତାନାହିଁ) । ଅର୍ଥନୀତିକ ପଣ୍ୟରତି ଭଳି ଆଇନ୍‌ସମ୍ମତ ବ୍ୟକ୍ତିରତି ତେଣୁ ରହିଥିବା ସମ୍ଭବପର । କାହିଁକିନା, କାର୍ଯ୍ୟକ୍ଷେତ୍ରରେ, କଳ୍ପିତ ଏଇ ବ୍ୟକ୍ତିରତି ପ୍ରତ୍ୟେକ ଚୁକ୍ତି (=କଣ୍ଟ୍ରାକ୍ଟ)ର ବିଷୟବସ୍ତୁ । ଅର୍ଥାତ୍, ବୁର୍ଜୋୟା-ଜଗତଟା ଆଇନ୍ ଆଉ ଅର୍ଥନୀତିର ଜଗତ । ମାର୍କ୍ସଙ୍କ ଏ ଅବଲୋକନରେ ମିଷ୍ଟିସିଜ୍ମ ଖୋଜିବା ନିରର୍ଥକ । କିନ୍ତୁ ମିଷ୍ଟିସିଜ୍ମ ଏଇ ଅର୍ଥରେ ଯେ, ଲୁକାଚ୍ କଳ୍ପନାକରିଚନ୍ତି ମଣିଷ ଭିତରେ ଯଥାପ୍ରାପ୍ତ ଏକ ଅନ୍ତଃସାର ବା ଏସେନ୍ସ, ଯା ବଳରେ ସର୍ବହରା ହୋଇପାରେ ଇତିହାସର କର୍ତ୍ତା, ବିଦ୍ଧକରିପାରେ ବ୍ୟକ୍ତିଗତ ସମ୍ପତ୍ତିରୁ ଜନ୍ମନେଇଥିବା ପାରକ୍ୟକୁ । ଅଥଚ ମାର୍କ୍ସଙ୍କ ଦୃଷ୍ଟିରେ, ବସ୍ତୁରତିର ଅର୍ଥନୀତିକ ତଥା ନୈତିକ ଭିତ୍ତି, ବସ୍ତୁତଃ ତହିଁରେ ଅନ୍ତର୍ଗତ

ଉପାଦାନଗୁଡ଼ିକର ବିନିମୟମୂଲ୍ୟ ନିର୍ଦ୍ଧାରଣକରିବା ଅଦୃଶ୍ୟ 'କୋଡ୍' ବା ସଂହିତା । ବ୍ୟକ୍ତିଗତ ଇଚ୍ଛା-ଅନିଚ୍ଛା, ଦରକାର-ଅଦରକାର, ନୀତି ଓ ଅର୍ଥନୀତି ନିରିଖରେ ମଣିଷ ନିର୍ଦ୍ଦିଷ୍ଟ ଏକକ ହେଲେସୁଦ୍ଧା, ସେ ସଂହିତାର ବିଧିବିଧାନ ମାନିବାକୁ ବାଧ୍ୟ । ମାତ୍ର ସଂହିତା ଅଲଂଘନୀୟ ହେବାସତ୍ତ୍ୱେ, ବ୍ୟକ୍ତିସତ୍ତା ବହନକରୁଚି ତାର ଦ୍ୱୈରଥ: ଗୋଟେ ଦିଗରୁ ବ୍ୟକ୍ତି କେବଳ ବସ୍ତୁ (ଯେହେତୁ ବିନିମୟମୂଲ୍ୟର ପ୍ରଜା); ଅନ୍ୟ ଦିଗରୁ ବ୍ୟକ୍ତି ସାକ୍ଷାତ୍ ଉପଭୋକ୍ତା, ପ୍ରୟୋଜନ, ଇଚ୍ଛା-ଆକାଙ୍କ୍ଷା । ଏକାଧାରେ ବହିର୍ବିଶ୍ୱ ଓ ଅଭ୍ୟନ୍ତର; ଦ୍ୱାନ୍ଦ୍ୱିକ ବିଚ୍ଛରରେ ଗୋଟିକ ଅନ୍ୟଟିର ପରିପୂରକ । ଏ ଅବଲୋକନରେ ବ୍ୟକ୍ତିସତ୍ତା କିନ୍ତୁ ଇତିହାସର କର୍ତ୍ତା ନୁହେଁ; ମାତ୍ର ମାର୍କ୍ସ ପୁଣି ଦେଖୁଚନ୍ତି ଅସଂଖ୍ୟ ରକମ ଦମନ ଓ ବଶୀକରଣ, ଯା ମୂଳରେ କାମକରୁଚି ଅର୍ଥନୀତିକ ଓ ନୈତିକ ଫେଟିଶିଜ୍ମ । ଅର୍ଥାତ୍, ବ୍ୟକ୍ତିସତ୍ତାର ନିତ୍ୟନୈମିତ୍ତିକ ଆଚରଣ ସହିତ ଇତିହାସଗତିରେ ଗଠିତ ଶୃଙ୍ଖଳା-ସଙ୍କେତ ଗୁଡ଼ିକର ଆଦାନପ୍ରଦାନ । ଇଣ୍ଡିଭିଡୁଆଲିଟି ଜାଗାରେ ଲେଖିଚନ୍ତି ତେଣୁ ପର୍ସନ୍, ବ୍ୟକ୍ତିସତ୍ତା ଜାଗାରେ ପୁରୁଷ । ପଣ୍ୟ କି ଟଙ୍କା ଭଳି ବସ୍ତୁ ବିପକ୍ଷରେ ପୁରୁଷକୁ ଛିଡ଼ାକଲେ ଦିଶିବ, ଆବିଷ୍କାର କି ଉଦ୍‌ଭାବନ ନୁହେଁ, ସବୁଜାଗାରେ ସବୁକାଳରେ ଥିଲା ଆଉ ଅଛି, ଏବଂ ଚିରକାଳ ଯୋଉ କାମଟି ପୁରୁଷ କରିଆସୁଚି, ଆଉ ପାଞ୍ଚଜଣଙ୍କ ସାଙ୍ଗରେ ମିଳି ତା 'ଉତ୍ପାଦନ' । ପୁରୁଷ ତେଣୁ ଚିରବାସ୍ତବ । ପକ୍ଷାନ୍ତରେ ପୁଣି, ଉତ୍ପାଦନ-ସମ୍ପର୍କିତ ସମସ୍ତ କାର୍ଯ୍ୟକଳାପ ଯୋଉ ସମ୍ପର୍କ ଉପରେ ଠିଆହୋଇଚି, ବସ୍ତୁତଃ ତା ବିନିମୟ-ସମ୍ପର୍କ; ପଣ୍ୟ ସହିତ ପଣ୍ୟର ବିନିମୟ ପରି ପୁରୁଷ ସହିତ ପୁରୁଷର ବିନିମୟ । ମାତ୍ର ଏ ବିନିମୟ-ସମ୍ପର୍କ ଆଇନ୍‌ଦ୍ୱାରା ତିଆରି ଗୋଟାଏ ମୁଖା, ଯୋଉ ମୁଖାତଳେ ମୁହଁଲୁଚେଇ ନପାରିଲେ ପୁରୁଷ ଧାରଣ କରିପାରିବନାହିଁ ପଣ୍ୟରୂପ କି ପଣ୍ୟସମ୍ପର୍କ । ପରିଣତି ତେଣୁ, ବୁର୍ଜୋୟା-ସମାଜରେ ଅନ୍ତତଃ, ସମ୍ପତ୍ତି-ବିନିମୟ ସମ୍ପର୍କ । ସମ୍ପତ୍ତି ଉପରେ ଅଧିକାର ତେଣୁ ଜୀବନ ଉପରେ ଅଧିକାର ଭଳି ଅଲଂଘ୍ୟ; ଅଥଚ ଏ ଅଧିକାର ସହିତ ଦାୟିତ୍ୱ କି କର୍ତ୍ତବ୍ୟର ସମ୍ପର୍କ ନାହିଁ । କର୍ତ୍ତବ୍ୟ ମାନେ ସାମାଜିକ ସଂହତି ପ୍ରତି ଦାୟିତ୍ୱ, ସାମାଜିକ ସଂହତିର ଇଂରେଜୀ ପ୍ରତିଶବ୍ଦ 'ସଲିଡାରିଟି' । ପୁରୁଷର ଅଧିକାର ତେଣୁ ନାଗରିକ ଅଧିକାରରୁ ବିଚ୍ଛିନ୍ନ, ଏବଂ ବିଚ୍ଛିନ୍ନ ଅବସ୍ଥାରେ, ଯେକୌଣସି ଅଧିକାର କଳ୍ପନା ମାତ୍ର, ବିଶେଷତଃ ଯେହେତୁ ଅଲଂଘ୍ୟ ପୁରୁଷାର୍ଥ କାର୍ଯ୍ୟକ୍ଷେତ୍ରରେ ସୃଷ୍ଟିକରିଚି ବୈଷମ୍ୟ ଆଉ ସଲିଡାରିଟିକୁ କରିଚି ଉପହାସ୍ୟ । ମାନବାଧିକାର ପ୍ରତି ଏଇ ଦାୟବଦ୍ଧତା ବାଧକରିଚି ମାର୍କ୍ସଙ୍କୁ ପ୍ରୁଧୋଁଙ୍କ ଅର୍ଥନୀତିକ ଉଦାରବାଦକୁ ଆକ୍ରମଣକରିବାକୁ । ବୁର୍ଜୋୟା ଗଣତନ୍ତ୍ରରେ ମାନବାଧିକାର ଧାରଣା ଆସୁଚି ସାମ୍ୟ ଓ ସ୍ୱାଧୀନତା ଭଳି ଭାବାଦର୍ଶରୁ; ଇଂରେଜୀରେ ଇକୋଆଲିଟି

ଆ୍ୟାଣ୍ଡ୍ ଫ୍ରିଡମ୍ । ମାର୍କ୍ସ ଦେଖିଚନ୍ତି, କାର୍ଯ୍ୟକ୍ଷେତ୍ରରେ ଇକୋଆଲିଟିର ପ୍ରତିନିଧିତ୍ୱକରୁଚି ପଣ୍ୟମୂଲ୍ୟର ଇକୋଆଲିଟି, ଆଉ ଫ୍ରିଡମ୍‌ର ପ୍ରତିନିଧିତ୍ୱକରୁଚି 'ମନି' ଓ 'କମୋଡିଟି'ର ଅବାରିତ ସ୍ୱାଧୀନତା । ସାମ୍ୟ ଓ ସ୍ୱାଧୀନତାର ଅସଲ ଭିତ୍ତି, ଅର୍ଥାତ୍ ଉଭୟ ମଧ୍ୟସ୍ଥ ଆଦାନପ୍ରଦାନ ସମ୍ପର୍କ, ଆଦିମ ସମାଜରେ ଥିଲା ଅଜ୍ଞାତ; ମଧ୍ୟଯୁଗର ସମାଜ ଅସ୍ୱୀକାରକରିଚି ଏ ଅଧିକାର, ବୁର୍ଜୋୟା ସମାଜ କିନ୍ତୁ ପୁନଃପ୍ରତିଷ୍ଠିତ କରିଚି ପୁରୁଷକାର ରୂପରେ; ଅର୍ଥାତ୍ ଯା ପରିବର୍ତ୍ତନଶୀଳ, ତାକୁ ମାନବସ୍ୱଭାବର ଅବିନଶ୍ୱର ବୀଜ ବୋଲି ପ୍ରତୀୟମାନକରି, ସ୍ଥାପନକରିଚି ହାଟମଝିରେ । ଅଥଚ 'ମାର୍କେଟ୍'ରେ ପ୍ରତ୍ୟେକ ପୁରୁଷ ଅପର ପୁରୁଷଙ୍କ ବିବେଚନାରେ 'ବ୍ରହ୍ମ' ଭଳି ଏକ ସର୍ବସାଧାରଣ ମୂଲ୍ୟର ଦ୍ୟୋତକ । ଯଦିଓ ବାସ୍ତବ ଆଦାନ-ପ୍ରଦାନରେ ବ୍ରହ୍ମ, ବିନା ବ୍ୟତିକ୍ରମରେ, କ୍ରୟକ୍ଷମତା ବା ପର୍‌ଚେଜିଙ୍ଗ୍ ପାୱର୍ । ପୁରୁଷ ତେଣୁ ମୂର୍ତ୍ତିମନ୍ତ ପର୍‌ଚେଜିଙ୍ଗ୍ ପାୱର୍, ରଜା ହେଉ କି ମୂଲିଆ, ଡାକ୍ତର କି ରୋଗୀ, ଓକିଲ କି ଚୋର । ସେ ପରିଚୟଗୁଡ଼ାକ ଅପରିବର୍ତ୍ତନୀୟ ଗୁଣଧର୍ମ ନୁହେଁ, ସ୍ତରବିଭାଜିତ ସମାଜରେ ଆପେକ୍ଷିକ ଅବସ୍ଥାନ ମାତ୍ର । ପୁରୁଷର ଏକମାତ୍ର ବୈଧ ଅଭିଜ୍ଞାନ ତେଣୁ ନିର୍ଗୁଣ ସମାନଅଧିକାର-ମଣ୍ଡିତ ସ୍ୱାଧୀନ ଗ୍ରାହକ; ଅର୍ଥାତ୍ ପ୍ରଚ୍ଛନ୍ନ ବା ଉଦ୍‌ଭିନ୍ନ କ୍ରୟଶକ୍ତି । ଦର୍ଶନର ଛାତ୍ର ମାର୍କ୍ସ ପୁରୁଷର ନିହିତ ଗୁଣଧର୍ମ ବା 'ପ୍ରପର୍ଟି'କୁ ତେଣୁ ଠାବକରିଚନ୍ତି 'ପ୍ରାଇଭେଟ୍ ପ୍ରପର୍ଟି'ରେ । ବ୍ୟକ୍ତିଗତ ସମ୍ପତ୍ତିର ତୁଲ୍ୟବସ୍ତୁ ଅସୀମ; ବୁର୍ଜୋୟା ରାଜନୀତି ସେଗୁଡ଼ିକର ବିନିମୟ-ପ୍ରବାହକୁ ଏଇ ଭାବରେ ପରିଣତକରିଚି ମଣିଷଙ୍କ ସ୍ୱଭାବସିଦ୍ଧ ଆଚରଣ । ପୌରସମାଜ, ଯା ନିମଜ୍ଜିତ ହୋଇଯାଇଚି ରାଷ୍ଟ୍ରସଂଗଠନରେ କ୍ରମଶଃ, ଏଇ ସାମ୍ୟ ମୁକ୍ତି ସମ୍ପତ୍ତି ଆଉ ବେନ୍ଥାମ୍-କଥିତ ଉପଯୋଗିତାକୁ ପଣ୍ୟବିନିମୟର ସର୍ବମାନ୍ୟ ସମାନ୍ତରାଳକରି ସମାଜକୁ ପରିଣତକରିଚି ବିଶାଳ ବୈଶ୍ୟତନ୍ତ୍ର, ଦି ଗ୍ରେଟ୍ ରିପବ୍ଲିକ୍ ଅବ୍ କମର୍ସ ।

ଅନ୍ୟ ଶବ୍ଦରେ,- ମଣିଷକୁ ପଣ୍ୟ ସହିତ ଆପାଦମସ୍ତକ ସମାନକରିବା ପ୍ରକ୍ରିୟା ମାର୍କ୍ସଙ୍କ ଅବଲୋକନକୁ ପ୍ରତିଭାତହୋଇଚି ମସ୍ତବଡ଼ କଣ୍ଟ୍ରାଡିକ୍ସନ୍ ବା ବୈପରୀତ୍ୟ । ଉତ୍ପାଦନ ପରିମଣ୍ଡଳ ଭିତରକୁ ଶ୍ରମଜୀବୀ ପ୍ରବେଶାଧିକାର ପାଏ ଗତରଖଟଣି ବଳରେ ନୁହେଁ, ମାଲିକ ସାଙ୍ଗରେ ବିକାକିଣାର ଚୁକ୍ତି ବଳରେ । ଅବଶ୍ୟ ଚୁକ୍ତି ସବୁବେଳେ ସ୍ୱେଚ୍ଛାପ୍ରଣୋଦିତ, ଚୁକ୍ତିରେ ଉଭୟ ପକ୍ଷର ଅଧିକାର ଆଇନ୍ ଦୃଷ୍ଟିରେ ତୁଲ୍ୟମୂଲ୍ୟ; ଏବଂ ଚୁକ୍ତିର ସର୍ତ୍ତ ମାନି ମଜୁରୀ ବିନିମୟରେ ଶ୍ରମଶକ୍ତିର କିଣାବିକା ମଧ୍ୟ ଆଇନ୍ ଦୃଷ୍ଟିରେ ତୁଲ୍ୟମୂଲ୍ୟ । ମାତ୍ର ଚୁକ୍ତିବଦ୍ଧହେବା ସଙ୍ଗେସଙ୍ଗେ କ୍ରେତା-ବିକ୍ରେତା ସମ୍ବନ୍ଧ ରୂପାନ୍ତରିତ ହୋଇଯାଏ ବିନିମୟ-ସମ୍ପର୍କରୁ କ୍ଷମତା/ଆଧିପତ୍ୟ ସମ୍ପର୍କକୁ, ସେବ୍ୟ-ସେବକ ସମ୍ବନ୍ଧକୁ । ବଳପ୍ରୟୋଗ ଯେହେତୁ ଅନିଶ୍ଚିତ, ପ୍ରକଟହୁଏନା ସବୁବେଳେ;

ଯା ପ୍ରକଟହୁଏ, ସ୍ପଷ୍ଟତଃ ଶ୍ରମଜୀବୀ ସଲିଡାରିଟିର ହଠାତ୍ ବିଦାରଣ । ଯେକୌଣସି ବୃହତ୍ ଶିଳ୍ପସଂସ୍ଥା ସକାଶେ ଏ ପରିବର୍ତ୍ତନ ଅତ୍ୟାବଶ୍ୟକ । ଇଚ୍ଛାକରି ଶ୍ରମଜୀବୀଙ୍କୁ ପରସ୍ପର ପାଖରୁ ଅଲଗାକରିଦିଏନା ମାଲିକ; ମାତ୍ର ବ୍ୟକ୍ତିପରିଚୟରେ ପରସ୍ପରଠାରୁ ଅଲଗାହୋଇ ଚୁକ୍ତିଭିତରେ ପଶିବାକୁ ପଡ଼େ; ରୁସୋ କହିବା ପରି, ଘଟଣାଟା ସତେ ଅବା forcing individuals to be free ! ପୁଞ୍ଜିର ଗତି, ଏଇ ବାଟରେ, ହୋଇଯାଏ ବ୍ୟକ୍ତି-ନିରପେକ୍ଷ, କାହିଁକିନା, ପୁଞ୍ଜି ଆପେଆପେ ଚାଲେ; ମାଲିକାନା କି କଳକାରଖାନା ଭଳି ସୀମାବଦ୍ଧତା ତାକୁ ଓଗାଳିପାରେନା । ଓଗାଳିପାରେନା, ଉଦ୍‌ବୃତ୍ତଶ୍ରମକୁ ପୁଞ୍ଜିରେ ରୂପାନ୍ତରିତକରିବା ଯେହେତୁ ତାର ଜୈବିକ ସ୍ୱଭାବ । ନିଜକୁ କ୍ରମାଗତ ସ୍ଫୀତକରିବା ଯେହେତୁ ପୁଞ୍ଜିର ଅନ୍ତର୍ଗୂଢ଼ ନିୟମ, ତାର ସ୍ୱୟଂକ୍ରିୟତାରେ ବ୍ୟକ୍ତିବିଶେଷ (ଯେପରି ମାଲିକ) ସଚେତନ ଅବୟବ ମାତ୍ର । ଏ ପ୍ରକ୍ରିୟାରେ ସ୍ୱାଧୀନ ଇଚ୍ଛା ଯଦିଓ ପୁରୁଷର ଗୁଣବିଶେଷ କିମ୍ବା ଅଧିକାର, ପରସ୍ପରକୁ ପ୍ରତିପନ୍ନକରେ ଅସିଦ୍ଧ । ଖାଲି ଶ୍ରମଜୀବୀ ପାଇଁ ଅସିଦ୍ଧକରେନା, ପୁଞ୍ଜିପତି ବି ବ୍ୟତିକ୍ରମ ନୁହେଁ; କାହିଁକିନା, ଶ୍ରମର ସାମାଜିକ ଉପଯୋଗିତାକୁ ପୁଞ୍ଜିର ଯାନ୍ତିକ ସ୍ୱୟଂକ୍ରିୟତା ବ୍ୟାହତ କରୁଥାଏ ନିରନ୍ତର । ଅଥଚ, ପୁଞ୍ଜିର କ୍ରମବର୍ଦ୍ଧମାନ ସ୍ଫୀତି କି ଉଦ୍‌ବୃତ୍ତଶ୍ରମର ଅବିରାମ ନିଷ୍କାସନ, ଯେହେତୁ ସ୍ୱୟଂଚାଳିତ ପ୍ରକ୍ରିୟା, ସାମାଜିକ ଅଭିପ୍ରାୟ ଅଭାବରେ ସାମାଜିକ ଅସ୍ତିତ୍ୱ ବିପନ୍ନ ହେବା ଅନିବାର୍ଯ୍ୟ । ମାର୍କ୍ସ କିନ୍ତୁ ଦେଖୁଚନ୍ତି ବହୁମୁଖୀ ବୈପରୀତ୍ୟ: ଟଙ୍କା ଭଳି ଜଡ଼ପଦାର୍ଥକୁ ବିମୂର୍ତ୍ତତା ଯେମିତି ସ୍ୱୟଂକ୍ରିୟ କରୁଚି, ସୋସାଲ୍ କ୍ୟାପିଟାଲ୍ ବା ସାମାଜିକ ପୁଞ୍ଜି ସେମିତି ବିନା ବାଧାରେ ଆତ୍ମସାତ୍ କରୁଚି ମଣିଷର ଶାରୀରିକ ମାନସିକ ସକଳ ସାମର୍ଥ୍ୟ; ଉତ୍ପାଦନ-ଜନିତ ସକଳ କର୍ମକାଣ୍ଡ । ବିନା ବାଧାରେ, କାହିଁକିନା, ମଣିଷର ଏଇ ସାମର୍ଥ୍ୟଗୁଡ଼ାକ ସୋସାଲ୍ କ୍ୟାପିଟାଲ୍ ଭିତରେ ପଶିଚି ବାଧବାଧକତା ବଶତଃ ନୁହେଁ, ଅଙ୍ଗୀଭୂତହେବା ଯେହେତୁ ନିହିତ ସ୍ୱଭାବ; ପ୍ରାୟ ଆଧ୍ୟାତ୍ମିକତା । ଅର୍ଥନୀତିକ ଦୋହନ ସାଙ୍ଗକୁ ମନୁଷ୍ୟତ୍ୱର ନିତ୍ୟ ଅବମାନନା ସେ ଆଧ୍ୟାତ୍ମିକତା ଉହାଡ଼ରେ ଢାଙ୍କିହୋଇଯାଏ ଆମୂଳଚୂଳ । ଯା ଢାଙ୍କିପକାଏ, ତା ସତ୍ୟ ନୁହେଁ କି ମାୟା ନୁହେଁ; ମାନବାଧିକାରର ଏପରି କୃତ୍ରିମ ରୂପ, ଏପରି ସର୍ବମୟ ବୈପରୀତ୍ୟ, ଅକ୍ଳେଶରେ ଯା ହୋଇପାରେ ସଂଗ୍ରାମର ଆଭିମୁଖ୍ୟ ।

*କ୍ୟାପିଟାଲ୍*ର 'ଶ୍ରମିକର ଦିନଯାପନ' ଅଧ୍ୟାୟଟିକୁ ଏଇ ବିନ୍ଦୁରୁ ଲକ୍ଷ୍ୟକରିବା କଥା, କାହିଁକିନା, ଧନିକଶ୍ରେଣୀ ଓ ଶ୍ରମିକଶ୍ରେଣୀ ମଧ୍ୟସ୍ଥ ଗୃହଯୁଦ୍ଧର ବର୍ଣ୍ଣନା ଦେବାବେଳେ 'ଶ୍ରମିକର ଅଲଂଘ୍ୟ ଅଧିକାର' ଭଳି ବାଗାଡ଼ମ୍ବରକୁ ଭର୍ତ୍ସନାକରାଯାଇଚି, ଆଉ ମ୍ୟାଗ୍ନାକାର୍ଟାକୁ କରାଯାଇଚି ସମର୍ଥନ । ମାନେ, ଶ୍ରମିକକୁ ପରାମର୍ଶ ଦିଆଯାଇଚି

ଜନପ୍ରତିନିଧିଙ୍କୁ ବାଧ୍ୟକରିବେ ଏଭଳି ଆଇନ୍ ପ୍ରଣୟନକରିବାକୁ ପୁଞ୍ଜିର ଶ୍ରମିକନିଷ୍ପେଷଣକୁ ଯା ପ୍ରତିରୋଧ କରିପାରେ । ଅବଶ୍ୟ, ଧନତନ୍ତ୍ରକୁ ଅତିକ୍ରମକରିବା କଥା ମଧ୍ୟ କୁହାଯାଇଚି, ମାତ୍ର ତା ପାଇଁ ଆଇନ୍ ନୁହେଁ, ଦରକାର ବିପ୍ଳବ । ଏକକ ବା ସଂଘବଦ୍ଧ ଉଦ୍ୟମରେ ବ୍ୟକ୍ତିଗତ ନିର୍ଯାତନାର ପ୍ରତିକାର ସମ୍ଭବ ହେଲେସୁଦ୍ଧା, ପୁଞ୍ଜିର ଦୌରାତ୍ମ୍ୟର ପ୍ରତିଷେଧକ ହୋଇପାରେନା ଆଇନ୍‌କାନୁନ୍ । ଅର୍ଥାତ୍, କୋଠଋଷ କି ସମବାୟସୂତ୍ରରେ ଶିଳ୍ପ-ଉତ୍ପାଦନ ଧନତାନ୍ତ୍ରିକ ଉତ୍ପାଦନ-ଧରଣକୁ ନିଷ୍କ୍ରିୟ କରିପାରେନା; ଦରକାର ସେଥିପାଇଁ ନିଗେସନ୍ ଅବ୍ ନିଗେସନ୍, ବିରୋଧର ବିରୋଧ, କାର୍ଯ୍ୟତଃ ଉତ୍ପାଦନର ସାଧନଗୁଡ଼ିକ ଉପରେ ସମାଜର କର୍ତ୍ତୃତ୍ୱ । ଅନ୍ୟ ଶବ୍ଦରେ, ବ୍ୟକ୍ତିଗତ ସମ୍ପତ୍ତିର ବିଲୋପ । କାମଟା ଯେହେତୁ ଦୀର୍ଘକାଳୀନ ମୋବିଲାଇଜେସନ୍ ବିପ୍ଳବ ହିଁ ଏକମାତ୍ର ଉପାୟ । ଆଗରୁ କିନ୍ତୁ ଭାବିଥିଲେ, ବିପ୍ଳବ ପ୍ରାୟ ଆସନ୍ନ !

ଆଇଡିୟଲଜିରୁ ଫେଟିଶିଜ୍ମ, ବିଗ୍ରହରୁ ବିଗ୍ରହାସକ୍ତି- ମାତ୍ର ସାଧାରଣ ଭୂମି ରହିଚି ବୁର୍ଜୋୟା ସମାଜବ୍ୟବସ୍ଥାରେ ଶ୍ରମଜୀବୀର ଇତରତା । ସବାଆଗେ ଶ୍ରମବିଭାଜନର ବିସ୍ତାର କାରଣରୁ ବ୍ୟକ୍ତି ପାଖରୁ ବ୍ୟକ୍ତିର ଦୂରତ୍ୱ, କିମ୍ବା ବ୍ୟକ୍ତି ସାଙ୍ଗରେ ବ୍ୟକ୍ତିର ପ୍ରତିଯୋଗିତା; ତା ପଛକୁ ଜୀବନଯାତ୍ରାକୁ ଅନୁପ୍ରାଣିତକରେ ଯୋଉ ବୋଧ ବା ବିଧି, ତାର ବିମୂର୍ତ୍ତାୟନ; ଅର୍ଥାତ୍, ସର୍ବଜନୀନତା କିମ୍ବା ତୁଚ୍ଛତାର ଆଧିପତ୍ୟ, ମାତ୍ର ଉଭୟ ଆଇଡିୟଲଜି ଓ ଫେଟିଶିଜ୍ମର ଲକ୍ଷ୍ୟ ଯେହେତୁ ଅ୍ୟାଲିଏନେସନ୍, ସେଇ ଇତରତା-ପ୍ରସୂତ ସ୍ୱବିରୋଧର ବିଦାରଣ, ସକ୍ରିୟ ବ୍ୟକ୍ତିସତ୍ତା ଆଉ କଳ୍ପିତ ବିଶ୍ୱଜନୀନତା ମଧ୍ୟସ୍ଥ ବୈପରୀତ୍ୟର ସମୀକ୍ଷା । ଆଧୁନିକ ମଣିଷ ଯୋଉ ଜଗତର ବାସିନ୍ଦା, ସେଠି କାହୁଁକାହାଁତକ ସମ୍ପର୍କର କ୍ରମବର୍ଦ୍ଧିଷ୍ଣୁ ବିସ୍ତାର, ପ୍ରଯୁକ୍ତି ଅଗ୍ରସରହେବା ସଙ୍ଗେସଙ୍ଗେ ଅନ୍ତର୍ନିହିତ ସାମର୍ଥ୍ୟକୁ ଉପଲବ୍ଧିକରିବାର ଅଶେଷ ସମ୍ଭାବନା; ଅଥଚ କ୍ୟାପିଟାଲିସ୍ଟ ଦୃଷ୍ଟିରେ ମଣିଷର ମୂଲ୍ୟ, ମଣିଷର ଶ୍ରମ, ମଣିଷର ସମ୍ପଦ ଗୋଟାଏ ଗଡ୍ଡାଳିକା ପ୍ରବାହ ! ଏ ଅବଲୋକନ ବ୍ୟକ୍ତିସତ୍ତାର ମହିମାକୁ ଏତେଦୂର ମ୍ଳାନକରିଦେଇଚି ଯେ ଦୁନିଆସାରା ମଣିଷ ଏକ୍ଷଣି ପରସ୍ପର ସହିତ ବିନିମୟଯୋଗ୍ୟ ବ୍ରହ୍ମ ଭଳି ଏପରି ଏକ ସର୍ବସାଧାରଣ ନିର୍ଯ୍ୟାସର ଆଧାର ଯେ କେହିହେଲେ ଅନୁପମ ବା ଅଦ୍ୱିତୀୟ ହେବାକୁ ଅଯୋଗ୍ୟ । ଅବଧାରିତ ପରିଣତି ତେଣୁ ବିଶ୍ୱମୟ ଅ୍ୟାଣ୍ଟିଥେସିସ୍ । ତଦ୍‌ସମ୍ଭୂତ ଆଲିଏନେସନ୍ ତେଣୁ ମାର୍କ୍ସଙ୍କୁ ଲାଗିଚି ଏପରି ବିରାଟ ବୈପରୀତ୍ୟ ଯେ ମୀମାଂସା କରିପାରେ ଏକମାତ୍ର ବିପ୍ଳବ ।

ପାରକ୍ୟର ଉତ୍ସ ଦ୍ୱିବିଧ: (୧) ଯୋଉ ସର୍ବମାନ୍ୟ ମୂଲ୍ୟ ଓ ମର୍ମାର୍ଥ ଜୀବନକୁ ସାମଞ୍ଜସ୍ୟ ଦିଏ, ସେଗୁଡ଼ିକର ଅଲକ୍ଷ୍ୟ ବିସ୍ମରଣ; (୨) ବ୍ୟକ୍ତିସତ୍ତା ଓ ସମଷ୍ଟିଗତ

ଜୀବନ ମଧ୍ୟସ୍ଥ ଯୋଗସୂତ୍ରର ଇନ୍‌ଭରସନ୍ ବା ଉତ୍‌କ୍ରମ । ବାସ୍ତବ ସାମାଜିକ ସମ୍ପର୍କ ଏଭଳି ଦୁଇଭାଗରେ ଖଣ୍ଡିତହେବା କାରଣରୁ ସମ୍ଭବହେଉଚି ମାନବିକ ଉତ୍କର୍ଷକୁ ଜଡ଼ବସ୍ତୁ ଉପରେ ପ୍ରତ୍ୟାରୋପ; ପାରକ୍ୟର ଯା ତୃତୀୟ ମାତ୍ରା । ଅର୍ଥାତ୍, ବ୍ୟକ୍ତିସତ୍ତା ଓ ସାମୂହିକ ସତ୍ତା ମଝିରେ ବିନିମୟମୂଲ୍ୟର ଅନୁପ୍ରବେଶ । ଯେପରି ଜଡ଼ପିଣ୍ଡ ଯା ଉପରେ ଉତ୍କର୍ଷ ଆରୋପକରାଯାଇଚି, ହୋଇପାରେ ଏକ ବିଗ୍ରହ, ବିମୂର୍ତ୍ତତାର ସାକାର ପ୍ରତିମା, ଠାକୁରଠାକୁରାଣୀ । ନ୍ୟାୟ, ମୁକ୍ତି, ନୈତିକତା, ପୁଣ୍ୟ, ଦୟା, କ୍ଷମା, ପରମାର୍ଥ ଭଳି ବାୟବୀୟ ଅବବୋଧର ପ୍ରତିନିଧି, ପୁଣି ସ୍ୱାଧୀନ ଅବସ୍ଥାନରେ ସ୍ୱରାଟ୍ । ପକ୍ଷାନ୍ତରେ, ଆସକ୍ତି ବା ଫେଟିଶ୍ । ଅର୍ଥାତ୍, ଗୋଟାପଣେ ପାର୍ଥିବ ଓ ପ୍ରକୃତ, ମଣିଷ ପ୍ରତି ତାର ଆକର୍ଷଣ ଅପ୍ରତିରୋଧ୍ୟ ଯେପରି ଭୋଗ୍ୟବସ୍ତୁର ଆକର୍ଷଣ । ଏଇ ଆଇଡଲ୍ (ବିଗ୍ରହ) ଓ ଆସକ୍ତି (ଫେଟିଶ୍) ମଧ୍ୟସ୍ଥ ପାର୍ଥକ୍ୟ କି ଉପାୟରେ କ୍ଷମତା / ପ୍ରଭୁତ୍ୱ / ଆଧିପତ୍ୟ ଇତ୍ୟାଦିକୁ ଗଠିତକରେ, *ଜର୍ମନ୍ ଇଡିୟଲଜି* ରେ ତାର ସମୀକ୍ଷା ରହିଚି, ମାତ୍ର *କ୍ୟାପିଟାଲ୍* ରେ ସମୀକ୍ଷା କରାଯାଇଚି କମୋଡିଟି ଫେଟିଶିଜ୍ମ (ବସ୍ତୁଆସକ୍ତି) କି ଭାବରେ ତିଆରିକରେ ସବ୍‌ଜେକ୍ସନ୍ ବା ଅଧସ୍ତନତା (=ପ୍ରଜାପଣ) । ପ୍ରକ୍ରିୟାଯୋଡ଼ାକ ଅସଂଯୁକ୍ତ ନୁହେଁ, ଆନ୍ତଃସମ୍ପର୍କ ବି ଅସ୍ପଷ୍ଟ ନୁହେଁ । ମାତ୍ର ସାମାଜିକ କ୍ରିୟା-ପ୍ରତିକ୍ରିୟା ଯେହେତୁ ଅଭିନ୍ନ ନୁହେଁ, ଲିବରେସନ୍ (=ପ୍ରମୁକ୍ତି) ଭଳି ପ୍ରକଳ୍ପ ଉପରେ ପ୍ରଭାବର ତାରତମ୍ୟ ରହିବ । ତାରତମ୍ୟ ମାନେ ପରିଣାମରୁ ଭିନ୍ନ ଭିନ୍ନ ବିକଳ୍ପର ସମ୍ଭାବନା । ଯେପରି, ଶ୍ରମ ଆଉ ଉତ୍ପାଦନ । ଆଇଡିୟଲଜି ଦୃଷ୍ଟିରେ, ଶ୍ରମ ଯେ ଉତ୍ପାଦନର ପ୍ରଜାରେ ପରିଣତହେଉଚି, ତାର କାରଣ, ଯୋଉ ବାସ୍ତବ ସର୍ତ୍ତ ଉତ୍ପାଦନକୁ ପରିଚାଳିତକରେ, ଶ୍ରମ ସେ ସର୍ତ୍ତକୁ ବିସ୍ମୃତହୋଇଚି । ଅର୍ଥାତ୍, ସର୍ତ୍ତଗୁଡ଼ାକ ଯେହେତୁ ସୃଷ୍ଟିକରେ ଅବରୋଧ, ଶ୍ରମଜୀବୀ ନିଜ ଚେତନା ବାହାରେ ରଖିଦେଇଚି ଅବରୋଧର କାରଣକୁ; କିନ୍ତୁ, କାହାର ବା କାହାକୁ ଅବରୋଧ? ଆଇଡିୟଲଜି କହୁଚି, ସର୍ଜନଶୀଳତାର ଅବରୋଧ, କାହିଁକିନା, ଉତ୍ପାଦନ ମାତ୍ରକେ ସ୍ୱତଃପ୍ରବୃତ୍ତ ସର୍ଜନାତ୍ମକ ନିର୍ମାଣ । ସର୍ତ୍ତାବଳୀରୁ ବୁଝିବା କଥା ସର୍ଜନଶୀଳତାକୁ ଉତ୍ପାଦନର ସର୍ତ୍ତ ଦ୍ରବୀଭୂତ କରୁଚି, ନା ପୁରାପୁରି ଅସ୍ୱୀକାରକରୁଚି ଶ୍ରମଜୀବୀର ସୃଷ୍ଟିଶୀଳତାକୁ । ଏ ବିଚାର ମଝିରେ ବସିଚି ମେଧାଗତ ତାରତମ୍ୟ, ଶରୀରଶ୍ରମ ଓ ମାନସିକଶ୍ରମ ମଧ୍ୟସ୍ଥ ଅନୁମିତ ବ୍ୟବଧାନ । ସେ ବ୍ୟବଧାନରୁ ଯୋଉ ଉଚ୍ଚ-ନୀଚ ସ୍ତରଭେଦ ଜାତହୁଏ, ସେଇ ସ୍ତରଭେଦ ଗଠିତକରେ ଶ୍ରେଣୀଭେଦ; ଅର୍ଥାତ୍, ଶ୍ରେଣୀ-ଆଧିପତ୍ୟ ତିଆରିହୋଇ ନିଜକୁ ପୁନରୁତ୍ପାଦିତ କରେ ଯୁଗ ଯୁଗାନ୍ତର; ଫଳରେ, ଆଧିପତ୍ୟ ମନେହୁଏ ଖାଲି ସ୍ୱାଭାବିକ ନୁହେଁ, ବାଞ୍ଛନୀୟ ମଧ । ଫେଟିଶିଜ୍ମ କେନ୍ଦ୍ରରେ ରହିଚି କିନ୍ତୁ ବିନିମୟମୂଲ୍ୟ । ସମ୍ଭାବ୍ୟ

ସବୁରକମ ଉତ୍ପାଦନର ନିୟାମକ ଇକ୍ସଚେଞ୍ଜ୍ ଭ୍ୟାଲିଉ; ନିୟାମକ ମାନେ ଅପରାପର ସମସ୍ତ ଭ୍ୟାଲିଉ ବିନିମୟମୂଲ୍ୟର ଅଧସ୍ତନ; ଅର୍ଥାତ୍, ବିନିମୟମୂଲ୍ୟର ପୁନରୁତ୍ପାଦନ ପ୍ରତି ଦାୟବଦ୍ଧ ଅବଶିଷ୍ଟ ବିବାକ ମର୍ମ ଓ ମୂଲ୍ୟ । ପଣ୍ୟର ପର୍ଯ୍ୟଟନଚକ୍ର ସହିତ ବିନିମୟମୂଲ୍ୟ ଯେହେତୁ ଅଙ୍ଗାଙ୍ଗୀ, ଆଇନ୍ ଓ ଅର୍ଥନୀତିକ ଆନ୍ତଃସମ୍ପର୍କରେ ଦେଖିହେବ ତାର ପ୍ରତିରୂପ । ଅର୍ଥନୀତି କହୁଚି, ବିନିମୟ ଘଟିବ ତୁଲ୍ୟ ଜିନିଷ ମଧ୍ୟରେ; ଆଇନ୍ କହୁଚି, ବିନିମୟ ଘଟିବ ଚୁକ୍ତି ବା କଣ୍ଟ୍ରାକ୍ଟ ଅନୁଯାୟୀ । ତେଣୁ କିଣିବାକୁ କି ବିକିବାକୁ ସ୍ୱାଧୀନତା ଦିଆଯାଇଥିଲେ ସୁଦ୍ଧା ବ୍ୟକ୍ତିସ୍ୱାଧୀନତାକୁ କରାଯାଇଚି ଉପେକ୍ଷା; ପଣ୍ୟର ଯୋଉ ସ୍ୱାଧୀନତା ଅଛି, ତାକୁ କିଣୁଥିବା କି ବିକୁଥିବା ଲୋକଙ୍କର ସେ ସ୍ୱାଧୀନତା ନାହିଁ । ଏ ବିଚ୍ଛେଦକୁ ଉପଲବ୍ଧିକରିବାକୁ ବାଧାଦିଏ ବସ୍ତୁ-ଆସକ୍ତି । ତା'ଛଡ଼ା, ଏପରି ଅନେକ ଭ୍ୟାଲିଉ ଅଛି, ବିନିମୟମୂଲ୍ୟ ଯାହାକୁ ତଉଲିପାରେନା; ଯେପରି, ଦେଶ ଜାତି ଈଶ୍ୱର ବିପ୍ଳବ, ସେଗୁଡ଼ାକୁ ମଣିଷ ବହନକରୁଚି ଆଦର୍ଶ ରୂପରେ, କିନ୍ତୁ ହିତବାଦୀ ଭାବୁଚନ୍ତି ବ୍ୟାବହାରିକ ଉପଯୋଗିତା ହିଁ ତାର ଅସଲ ମୂଲ୍ୟ । ପ୍ରାତ୍ୟହିକ ଜୀବନନିର୍ବାହରେ ଯା ଉପଯୋଗ କରାଯାଏ, ଯେପରି, ବଶମ୍ୱଦ ନାଗରିକତା, ଲାଭ-କ୍ଷତି ହିସାବ, କର୍ମଦକ୍ଷତା, ଉପାର୍ଜନ-କ୍ଷମତା କି କ୍ରୟକ୍ଷମତା—ହିତତାବାଦୀଙ୍କ ଦୃଷ୍ଟିରେ ସବୁଯାକ ବ୍ୟାବହାରିକ ଉପଯୋଗିତା । ଅଥଚ ରାଜନୀତିରେ ଦରକାର ଉପଯୋଗିତା ସାଙ୍ଗକୁ ଆଦର୍ଶ; ସେଇ ଆଦର୍ଶକୁ ଦୃଷ୍ଟିପଥରୁ ଘଉଡ଼ାଇଦିଏ ଉପଯୋଗିତାର ଫେଟିଶିଜ୍ମ । ଅଥଚ ଇଡିୟଲଜି-ସମ୍ପର୍କିତ ତତ୍ତ୍ୱାବଳୀ, ମୂଳତଃ ଓ ଶେଷବିଚାରରେ, ରାଷ୍ଟ୍ରସମ୍ପର୍କିତ ବିଚାରବିବେଚନା, କାହିଁକିନା, ଦମନକରିବା କି ଦଣ୍ଡଦେବା ରାଷ୍ଟ୍ର ପକ୍ଷରେ ଯେମିତି ସ୍ୱାଭାବିକ ଓ ଆଇନ୍‌ସମ୍ମତ, ଅନ୍ୟକାହାରି ପକ୍ଷରେ ସେପରି ଆନୁଷ୍ଠାନିକ କି ଅକ୍ଳେଶ ନୁହେଁ । ତେଣୁ, ଆଇଡିୟଲଜିର ବିଗ୍ରହ ଯଦି ରାଷ୍ଟ୍ର, ଫେଟିଶିଜ୍ମର ବିଗ୍ରହ ତେବେ ମାର୍କେଟ୍, କାହିଁକିନା, ମାର୍କେଟ୍ ହିଁ ଦୁନିଆକୁ ପରିଣତକରିଚି କର୍ତ୍ତା-କର୍ମ, କ୍ରେତା-ବିକ୍ରେତା ଓ ପଣ୍ୟ-ପୁଞ୍ଜିର ସମାହାର । କ୍ରେତା-ବିକ୍ରେତା ସେଠି ପଣ୍ୟର ଶାସନାଧୀନ, ଜୀବନ୍ତ ମଣିଷ ବସ୍ତୁର ଦାସାନୁଦାସ । ବ୍ୟାବହାରିକ ଜୀବନଚର୍ଯ୍ୟାର ଅଧିପତି ଯଦି ଖୋଲାବଜାର, ସେଇ ବିନ୍ଦୁରୁ ମାର୍କ୍ସ ଚିନ୍ତାକରିଚନ୍ତି ବୁର୍ଜୋୟା ସମାଜବ୍ୟବସ୍ଥାର ମୂଳୋତ୍ପାଟନ, ବିଶେଷତଃ ଯେହେତୁ ବୁର୍ଜୋୟାର ସଂସ୍କାରଯାକ ସୁଶୀଳ-ସମାଜର ବିକାଶପଥରେ ସାଂଘାତିକ କଣ୍ଟ୍ରାଡିକ୍ସନ୍ । କିନ୍ତୁ ତା ପଛକୁ ଦେଖିଚନ୍ତି, କ୍ୟାପିଟାଲିସ୍ଟ-ପ୍ରସୂତ କଣ୍ଟ୍ରାଡିକ୍ସନ୍, ଯା ସାମୂହିକ ସମ୍ପର୍କଗୁଡ଼ିକରୁ ବ୍ୟକ୍ତିକୁ ସ୍ଖଳିତକରି ନିଃସଙ୍ଗକରିଦିଏ, ସାମାଜିକତା ଅର୍ଜନ ସକାଶେ ଯା ବିରାଟ ଅନ୍ତରାୟ । ବିପ୍ଳବର ପ୍ରତିପକ୍ଷ ତେଣୁ ମାନସିକ ସ୍ତରରେ ବୁର୍ଜୋୟା,

ଉତ୍ପାଦନ ସ୍ତରରେ କ୍ୟାପିଟାଲିସ୍ମ; ଏବଂ କ୍ୟାପିଟାଲିସ୍ମ ଯେହେତୁ ବୁର୍ଜୋୟା ଅର୍ଥନୀତିକ ଆଇଡିୟଲଜି, କ୍ୟାପିଟାଲିସ୍ମ ଓ ବୁର୍ଜୋୟା ମଧ୍ୟସ୍ଥ ଯୋଗସୂତ୍ର ଏକେବାରେ ପ୍ରତ୍ୟକ୍ଷ । ଅଥଚ ସାମନ୍ତତନ୍ତ୍ରରେ ବି ବୁର୍ଜୋୟା ଥିଲା । ତାର ଭାବାଦର୍ଶଗତ ଆଧିପତ୍ୟ ତେଣୁ ଉତ୍ପାଦନଧରଣରୁ ଅବିଚ୍ଛେଦ୍ୟ ନୁହେଁ । ଅନ୍ୟ ଶବ୍ଦରେ, ଧନତନ୍ତ୍ର ଯଦିଓ ମାର୍କେଟ୍‌କୁ ଗ୍ରାସକରିଚି, ଘଟଣାଟା ଘଟିଚି କେବଳ ଶିଳ୍ପବିପ୍ଲବ ଘଟିବା ଉତାରୁ; ମାତ୍ର ରାଷ୍ଟ୍ର ସାଙ୍ଗକୁ ମାର୍କେଟ୍ ମଧ୍ୟ ବହୁ ପୂର୍ବରୁ ବୁର୍ଜୋୟାର କୁକ୍ଷିଗତ । ହେଗେମନି ବା ଆଧିପତ୍ୟ ତେଣୁ ବିନିମୟମୂଲ୍ୟର ଏକକ ଅବଦାନ ନୁହେଁ; ଉତ୍ପାଦନର ସର୍ତ୍ତ ଯେମିତି ଶ୍ରମ ଉପରେ ମୂଳଧନର ଆଧିପତ୍ୟକୁ କାଏମ୍‌କରେ, ପ୍ରଚଳିତ ଆଦର୍ଶ ଓ ଭାବାଦର୍ଶକୁ ସେମିତି ଶାସନକରେ ବୁର୍ଜୋୟାର ଭାବଜଗତ । ଏବଂ ଶାସନକରେ ବୋଲି, ବୁର୍ଜୋୟା ହୋଇଚି ଶାସକଶ୍ରେଣୀ । ତାଆରି ଭାବଜଗତକୁ ପୁନରୁତ୍ପାଦିତ କରୁଚି ରାଷ୍ଟ୍ରଯନ୍ତ୍ର । ଏବଂ କରୁଚି ବୋଲି, ଅବିରତ ପୁନରୁତ୍ପାଦିତ ସେଇ ଭାବଜଗତ ରାଷ୍ଟ୍ରର ଡମିନ୍ୟାଣ୍ଟ୍ ଇଡିୟଲଜି । ଅଥଚ ଦୈନନ୍ଦିନ ଜୀବନଯାପନରେ ଯୋଉ ଭ୍ୟାଲିଉ ଡମିନ୍ୟାଣ୍ଟ୍, ଆସୁଚି କେବଳ ପଣ୍ୟଜଗତରୁ । ଅନ୍ୟ ଶବ୍ଦରେ, ଯୋଉ ଭ୍ୟାଲିଉ ଋଳିତକରେ ପଣ୍ୟକୁ ଖୋଲାବଜାରରେ, ସେଇ ଏକା ଭ୍ୟାଲିଉ ଋଳିତକରେ ମଣିଷର ଆଶା-ନିରାଶା, ଦେଣା-ପାଉଣା, ଅନ୍ନବସ୍ତ୍ର, ଶିକ୍ଷା କି ସ୍ୱାସ୍ଥ୍ୟକୁ । ବିନିମୟମୂଲ୍ୟ ବିପକ୍ଷରେ ମାର୍କ୍ସ ଅବଶ୍ୟ ଛିଡ଼ାକରିଚନ୍ତି 'ଇଉସ୍ ଭ୍ୟାଲିଉ', ଯୋଉ ଜିନିଷ ଜୀବନଧାରଣ ପାଇଁ ଅପରିହାର୍ଯ୍ୟ, କିନ୍ତୁ ଧନତନ୍ତ୍ରର କ୍ରମବିକାଶ ସହିତ ସମତାଳରେ ଇଉସ୍‌ଭ୍ୟାଲିଉ ମଧ୍ୟ ପରିଣତହୋଇଚି ଫେଟିଶ୍-ରେ; କାଲି ଯା ଥିଲା ବିଳାସସାମଗ୍ରୀ, ଆଜି ହୋଇଚି ନିତ୍ୟାବଶ୍ୟକ, ଏବଂ ସେଇ ବାଟଦେଇ, ସୃଷ୍ଟିହୋଇଚି ଯୋଉ ଆସକ୍ତି, ତାର ଆଧିପତ୍ୟକୁ କହୁଚନ୍ତି ଭୋଗବାଦ । ଭୋଗବାଦ ମଧ୍ୟ ବାସ୍ତବକୁ ଅବଗତହେବା ବାଟରେ କଣ୍ଟାବାଡ଼ ।

ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ ଯେ ମାର୍କ୍ସବାଦକୁ ମାର୍କ୍ସ କହିବେ...a general historico-philosophical theory whose supreme virtue consists in being suprahistorical । ଇତିହାସ ପ୍ରସଙ୍ଗକୁ ଦିଥର ଉଲ୍ଲେଖକରିଚନ୍ତି, ଯଦିଓ ସମସ୍ୟାପଟ ସର୍ବତ୍ର ସମାନ ହେଲେ ବି ଦୃଶ୍ୟପଟ ବିଭିନ୍ନ । ଯା ସମାନ, ତା ନେତିର ନେତି, ନିଗେସନ୍ ଅବ୍ ନିଗେସନ୍, ଅଗ୍ରାଭିମୁଖୀ କର୍ମଋଞ୍ଚଲ୍ୟ, ସାମାଜିକ ଅଶୁଭର ଇତି । ମାତ୍ର ସାମାଜିକ ଅଶୁଭର ଇତି ଇତିହାସର ଇତି ନୁହେଁ, କାହିଁକିନା, ନେତି ଆଉ ଇତି ଦ୍ୱାନ୍ଦ୍ୱିକ ମେଳବନ୍ଧନରେ ସଂଗଠିତ ଏକ ଇଉନିଟି ବା ସମନ୍ୱୟ । ଗୋଟିକର ଅନୁପସ୍ଥିତିରେ ଅନ୍ୟଟି ନିରର୍ଥକ । ଦର୍ଶନରୁ ପ୍ରସ୍ଥାନ ତେଣୁ ଦର୍ଶନରୁ ବିଦାୟ ନୁହେଁ;

ଅଧିବିଦ୍ୟାର ଅର୍ଗଳରୁ ଦର୍ଶନର ବିମୋଚନ ମାତ୍ର । ଇତିହାସ ସେଥିପାଇଁ ପ୍ରାକୃତିକ ପରିବର୍ତ୍ତନ ଭଳି ସ୍ୱୟଂଚାଳିତ କି ଆକସ୍ମିକ ନୁହେଁ । ମାନବ-ଚୈତନ୍ୟର ଇନ୍ଦ୍ରିୟଗ୍ରାହ୍ୟ ରୂପାନ୍ତର, ଗଠନ ଓ ପୁନର୍ଗଠନର ଅଗ୍ରଗତି । ସେଇ ଅଗ୍ରଗତି ବା 'ପ୍ରଗତି' ମଡର୍ନିଟି (ଆଧୁନିକୀକରଣ) କି ଉଦାର ମାନବିକତା ନୁହେଁ । ଏପରିକି, କାପିଟାଲିସ୍ମ ମଧ୍ୟ ନୁହେଁ; କ୍ୟାପିଟାଲିସ୍ମ ଅସ୍ଥାୟୀ ଏକ ଐତିହାସିକ ପର୍ଯ୍ୟାୟ । ମାର୍କ୍ସ ତା ଭିତରକୁ ଇମାରୁ ପଶନ୍ତେନାହିଁ ଯଦିନା ସମାଜତନ୍ତ୍ରକୁ ଦ୍ୱାନ୍ଦ୍ୱିକଗତିରେ ସମ୍ଭବକରୁନଥାନ୍ତା ଧନତନ୍ତ୍ର; ଆଉ ପ୍ରତିତୁଳନାରେ ସମାଜତନ୍ତ୍ର ବିଗଳିତ କରୁନଥାନ୍ତା କ୍ୟାପିଟାଲିସ୍ମ-ସଂଜାତ କଣ୍ଟ୍ରାଡିକ୍ସନ୍ । ଅଥଚ ଇତିହାସର ଏ ବସ୍ତୁତନ୍ତ୍ର ଏକ୍ଷଣି ବିଦ୍ରୂପ ଭଳି; କାହିଁକିନା, ପ୍ରଗତି ଜାଗାରେ ମେଧାବୀ ଦେଖୁଚନ୍ତି ଅବକ୍ଷୟ ବା ଡେକାଡନ୍ସ । ମାତ୍ର ଡେକାଡନ୍ସ ବା ଅଧୋଗତି ମଧ୍ୟ ଏକ କଣ୍ଟ୍ରାଡିକ୍ସନ୍; ଯେହେତୁ ପ୍ରଗତିର ପ୍ରତିପକ୍ଷ ନୁହେଁ, ତାର ବି ରହିଚି ନିଗେସନ୍ ଅବ୍ ନିଗେସନ୍ । ସେଇ ବିଚାରରେ, ଅବକ୍ଷୟ ଯାର ପ୍ରତିନିଧି ତା ଏକ ସଂଘର୍ଷ କିମ୍ବା ସଂକଟ, ମାର୍କ୍ସଙ୍କ ଭାଷାରେ କନ୍‌ଫ୍ଲିକ୍ଟ କିମ୍ବା କ୍ରାଇସିସ୍ । ମାର୍କ୍ସଙ୍କ ଇତିହାସ-ଦର୍ଶନ ମଣିଷକୁ ଖାଲି ସୁଦିନର ସ୍ୱପ୍ନ ଦେଖାଏନା, ଆଶାର କୁହୁକ ଦେଖାଇ ବାଟବଣା କରେନା; ସୁଦିନ ଯେ ଅବଶ୍ୟମ୍ଭାବୀ, ଏଇ କଥାଟାକୁ ବଦ୍ଧମୂଳ କରେ ଯୁକ୍ତିପ୍ରମାଣ ବଳରେ । ମନେରଖିବାକୁ ହେବ, ମାର୍କ୍ସଙ୍କ ତିରୋଧାନ ଉତାରୁ ଦୁଇଦୁଇଟା ମହାଯୁଦ୍ଧର ପ୍ରଳୟ ସହିବାକୁ ପଡ଼ିଚି ପୃଥିବୀକୁ, ସ୍ୱପ୍ନ ଦେଖିବାର ଅଧିକାର କିନ୍ତୁ କାଢ଼ିନେଇ ପାରିନାହିଁ ପ୍ରଳୟ । ପ୍ରଗତି ତେଣୁ ଆଶାବାଦ ନୁହେଁ ତାଙ୍କପାଇଁ, ଦ୍ୱାନ୍ଦ୍ୱିକତାର ପରିଣାମ । ପ୍ରଗତିର ଚାଳିକାଶକ୍ତି ଯେହେତୁ ଦ୍ୱାନ୍ଦ୍ୱିକତା, ସମସାମୟିକ ଭାବୁକଙ୍କ ଦ୍ୱାରା ଆଶା ଆଉ ସ୍ୱପ୍ନ ପରିବେଷଣକୁ କହିଚନ୍ତି ଇଉଟୋପିଆନ୍; ଏକ୍ଷଣି ଯା ଦରକାର, ନାକକାନ୍ଦୁରା କାବ୍ୟକବିତା ନୁହେଁ କି ବୋହେମିଆନ୍ ଗଳ୍ପଉପନ୍ୟାସ; ଦରକାର ଅବକ୍ଷୟର ଅନ୍ତର୍ଭେଦ, ସିଦ୍ଧାନ୍ତଗ୍ରହଣ ଓ ସଂଗ୍ରାମର ସୂତ୍ରପାତ । କାହିଁକିନା, ଅବକ୍ଷୟକୁ ଘେରି ତିଆରିହୋଇଚି ଯେତେ ବିଷାଦବାଦ, ସ୍ଥାନ ବିଚାରରେ ତାର ଉତ୍ପତ୍ତିସ୍ଥଳ ଇଉରୋପ-ଆମେରିକା, ଆଉ କାଳ ବିଚାରରେ ତାର ଜନ୍ମକ୍ଷଣ ବିଂଶଶତକର ଅନ୍ତିମପର୍ବ । ସେଇଥିରୁ ବାହାରିଚି ଅଭିନବ ଆଦିକଳ୍ପ: ଉତ୍ତର ଆଧୁନିକତା; ଯା ଦୃଷ୍ଟିରେ ଇତିହାସ-ପ୍ରଗତି-ସାମାଜିକନ୍ୟାୟ ଇତ୍ୟାଦି ଉନବିଂଶତକର ଯେତେ ଆବିଷ୍କାର, ବିବାକ ନିର୍ଜଳା ମହାଆଖ୍ୟାନ, ଗ୍ରାଣ୍ଡ୍ ନ୍ୟାରେଟିଭ୍ ! ମାତ୍ର ପୃଥିବୀର ଅଶିଶତାଂଶ ଲୋକ ଅଦ୍ୟାବଧି ମଡର୍ନ ବି ହୋଇପାରିନାହାଁନ୍ତି, ପୋଷ୍ଟ-ମଡର୍ଣ୍ଣ ତ ଆକାଶକଇଁଆ । ଋଷିଆ ଓ ପୂର୍ବ ଇଉରୋପରେ ସମାଜତନ୍ତ୍ରର ପତନ ଘଟିନଥିଲେ ଭୂଇଁଫୋଡ଼ ଏଇ ଆବାଜଗୁଡ଼ାକ ମୂଳରୁ ବାହରିନଥାନ୍ତା; ବାହାରିପଡ଼ି

ସୁଦ୍ଧା ଦଶ-ପନ୍ଦରବର୍ଷ ଭିତରେ ଜଡ଼ା ହୋଇଗଲାଣି; କିନ୍ତୁ ମାର୍କ୍ସବାଦ କୋଉ ଡିଭେଲପ୍‌ମେଣ୍ଟ୍ ପ୍ୟାରାଡାଇମ୍ ନୁହେଁ ଯେ ମନକଲେ ଦିହରୁ କାଢ଼ି ପୁରୁଣାଜାମାକୁ ଅଳିଆଗଦାକୁ ଫିଙ୍ଗିଦେଇହେବ ।

## ।। ନଅ ।।

ଏଇଠି ପହଞ୍ଚି ବୁଝିବାକୁ ବାକିରହେନା ଯେ ମାର୍କ୍ସବାଦର ଯା ଲକ୍ଷ୍ୟ, ତାକୁ ଉପଲବ୍ଧିକରିବାର ଏକମାତ୍ର ଉପାୟ ରାଜନୀତି, ଏବଂ ସେ ରାଜନୀତିର ପ୍ରେରଣା ଫିଲଜଫି ହେଉ କି ଇକନମିକ୍ସ, କାର୍ଯ୍ୟକ୍ଷେତ୍ରରେ ରାଜନୀତି କିନ୍ତୁ ଏକ ବୈପ୍ଳବିକ ଅନୁଶୀଳନ । ବିଶେଷତଃ ଯେହେତୁ ସବୁରକମ ଆଧିପତ୍ୟ ବିରୋଧରେ ରାଜନୀତି ଦୀର୍ଘକାଳୀନ ସଂଗ୍ରାମ, ବହୁବିଧ ନ୍ୟସ୍ତସ୍ୱାର୍ଥ ସେ ସଂଗ୍ରାମ ପ୍ରତି ବିଦ୍ୱେଷଭାବ ପୋଷଣକରିବା ପ୍ରତ୍ୟାଶିତ । ସେ ବିଦ୍ୱେଷର ଧରଣ କି ରକମ ହୋଇପାରେ, ଟମାସ୍ ହବ୍‌ସ୍ (୧୫୮୮-୧୬୭୯) ଉଦାହରଣ ଦେଇ ଲେଖିଚନ୍ତି, For I doubt not, but if it had been a thing contrary to any man's right of dominion, or to the interest of men that have dominion, *that the three angles of a triangle should be equal to two angles of a square,* that doctrine should have been , if not disputed, yet by burning of all books of geometry, suppressed, as far as he whom it concerned was able । ସଂପତ୍ତି,ଶିକ୍ଷା, ଦର୍ଶନ, ମେଧା, ରାଜନୀତି, ଅର୍ଥନୀତି, ଆଇଡିୟଲଜି-କୋଉ କର୍ତ୍ତୃତ୍ୱକୁ ଆହ୍ୱାନଜଣାଇନାହିଁ ମାର୍କ୍ସଚିନ୍ତା ? ଆକ୍ରାନ୍ତହୋଇଚି ଇଂରେଜ୍‌ର ପଲିଟିକ୍ୟାଲ୍ ଇକନମି, ଜର୍ମାନୀର ଫିଲଜଫି, ଫ୍ରାନ୍ସର ସୋସାଲିଜ୍ମ । ଫଳରେ, ନିର୍ଦ୍ଦିଷ୍ଟ ସାମାଜିକ ପରିସ୍ଥିତିକୁ ସମ୍ମୁଖୀନହୋଇ କି ଭାବରେ ବିଶ୍ଳେଷଣକଲେ ନିର୍ଭୁଲ ସିଦ୍ଧାନ୍ତରେ ପହଞ୍ଚିହେବ, ପହଞ୍ଚିସାରି ରାଜନୀତିକ କର୍ମଧାରା ସ୍ଥିରକରିହେବ ସମ୍ଭାବ୍ୟ ବୈପରୀତ୍ୟଗୁଡ଼ିକର ସମାଧାନ ସକାଶେ, ସେ ନିର୍ଦ୍ଦେଶ ଗଢ଼ିଉଠିଚି କ୍ରମପରିଣାମ ଭିତରଦେଇ । ଏବଂ ଜୀବନ୍ତ ଅଭିଜ୍ଞତା ଯେହେତୁ ତାର ତତ୍ତ୍ୱଭିତ୍ତି, ବ୍ୟାଖ୍ୟା ବା ଇଣ୍ଟର୍‌ପ୍ରିଟେସନ୍ ପାଇଁ ଝରକା ଖୋଲାରଖାଯାଇନାହିଁ । ରଖାଯାଇନାହିଁ ବୋଲି, ମାର୍କ୍ସ ଚିନ୍ତାଦିହରେ ଲେନିନ୍ କି ମାଓ କି ଆଉକାହାରି ନାଁ ଯୋଡ଼ିଦେଇ ହଟଚମଟ ଦେଖାଇବାକୁ ଅବକାଶ ମଧ୍ୟ ରହିନାହିଁ । ଏମାନେ ମାର୍କ୍ସବାଦୀ ତ ନିଶ୍ଚୟ, ନିଜ ଦେଶର ନିର୍ଦ୍ଦିଷ୍ଟ ପରିସ୍ଥିତିକୁ ଚାହିଁ ଯା କର୍ତ୍ତବ୍ୟ ମନେକରିଚନ୍ତି, କରିବାକୁ ଚେଷ୍ଟାକରିଚନ୍ତି । ମାର୍କ୍ସବାଦକୁ ସଂଶୋଧନ କରିପାରିନାହାଁନ୍ତି କି ବିକଳ୍ପବାଟ ମଧ୍ୟ

ଦେଖାଇପାରିନାହାନ୍ତି । ପ୍ରବଣତାଟା ଏପରି ସଂକ୍ରାମକ ଯେ, ଉତ୍ତର-ଆଧୁନିକତାର ଅନ୍ୟତମ ଗୁରୁ ଜାକ୍ ଦେରିଦା ନବେଦଶକରେ ଦାବିକରିଚନ୍ତି ମାର୍କ୍ସବାଦର ଉତ୍ତରାଧିକାର, (ଦ୍ର. *Specters of Marx-the State of the Debt, the Work of Mourning, and the new international*–1994) । ପ୍ରତିପାଦ୍ୟ ହେଲା, ବ୍ୟାଖ୍ୟା କୋଉ ବିଶ୍ଳେଷଣ ନୁହେଁ, ବରଂ ମେଟାଫିଜିକ୍ୟାଲ୍ ମୀମାଂସାର ନାମାନ୍ତର; କଥାଟା ଖିଆଲରଖିବା କଠିଣହୁଏ ସରକାରୀ (ଅଫିସିଆଲ୍) ମାର୍କ୍ସବାଦୀଙ୍କ କଲ୍ୟାଣରୁ । ଏବଂ ଆଜି ଯେତେବେଳେ ବୁର୍ଜୋୟା ଉଦାରନୀତିର ଜୟଜୟକାର, ବଜାରର ଭୁବନମୋହିନୀ ବର୍ଣ୍ଣବିଭା ମଝିରେ ମାର୍କ୍ସଙ୍କ ପ୍ରେତଛାୟାଛଡ଼ା ଆଉକିଛି ଦେଖାଯାଏନା ଦିଗ୍‌ବଳୟରେ । ବିଶ୍ୱବଦଳ ଉଦ୍ଦେଶ୍ୟରେ ଇତିବାଚକ କୋଉହେଲେ ସଙ୍କଳ୍ପ ଗଠନକରିବା ଯେତେବେଳେ ପ୍ରାୟଅସମ୍ଭବ, ନଓଂର୍ଥକ ସମାଲୋଚନା ହିଁ ଏକମାତ୍ର ଭରସା । ନଓଂର୍ଥକତା ସମର୍ଥନରେ ମାର୍କ୍ସଙ୍କ ଏକାଦଶ ଥିସିସ୍ ବଞ୍ଚାଇରଖିଚି ଯୋଉ ପଠନ-ଆଙ୍ଗିକ, ଅଧିବିଦ୍ୟା ବିପକ୍ଷରେ ସଂଗ୍ରାମକୁ ଜାରିରଖିପାରେ ଯୋଉ ଟେକ୍ନିକ୍, ତାଆରି ନାଁ ଡିକନ୍‌ଷ୍ଟ୍ରକ୍ସନ୍ ବା ବି-ନିର୍ମାଣ । କାମଟା ଅବଶ୍ୟ ରାଜନୀତି ନୁହେଁ; ଅଥଚ ମାର୍କ୍ସ ଚାହିଁଥିଲେ, ଫିଲଜଫିକୁ ଉପଲବ୍ଧିକରିବାକୁ ହେବ ରାଜନୀତି ମାଧ୍ୟମରେ, ଅନ୍ୟ ବାଟଗୁଡ଼ାକ ଯେହେତୁ ସଂଗ୍ରାମ ନୁହେଁ । ନିରାପଦ ମସୃଣ ପ୍ରତିବାଦ ତ ବୁର୍ଜୋୟାର ପ୍ରତିଧ୍ୱନି ମାତ୍ର ! ସମର ସେନ୍ ଲେଖିବାଭଳି, *ବାବୁବୃତ୍ତାନ୍ତ* ! ଆଲାନ୍ ସୋକଲ୍ ସେଥିପାଇଁ କହନ୍ତି, I am an unabashed old leftist who never quite understood how deconstruction was supposed to help the working class.

ସଂନ୍ଦେହ ନାହିଁ, କ୍ୟାପିଟାଲିସ୍ମ ବଢ଼ିବଢ଼ି ଶେଷକୁ କି ରୂପ ଧରିବ (ଯେପରି ଗ୍ଲୋବାଲାଇଜେସନ୍), ନିହିତ ସେଇ ସାମର୍ଥ୍ୟକୁ ଛୋଟକରି ଦେଖିଚନ୍ତି ମାର୍କ୍ସ ମାତ୍ର କ୍ୟାପିଟାଲିସ୍ମକୁ ବୁଝିବାପାଇଁ ଗଠନସମ୍ବନ୍ଧୀୟ ଯୋଉ ପ୍ରମାଣାଦି ଦାଖଲକରିଚନ୍ତି, ତାଆରି ସାହାଯ୍ୟରେ ହିଁ ବୁଝିପାରୁଛୁଁ ଏକବିଂଶ ଶତକରେ ପହଞ୍ଚି ଯୋଉ ଗଢ଼ଣ ଆହରଣକରିଚି ଧନତନ୍ତ୍ର, ଏକ ଅଯୌକ୍ତିକ ଓ ଅନୈତିକ ସିଷ୍ଟେମ୍ । ଏବଂ ନିହିତ ସେଇ ଅଯୌକ୍ତିକତା ସୂଚନାକରୁଚି ଆସନ୍ନ ଅଭିସରଣ । ଯୋଉ ସର୍ତ୍ତଗୁଡ଼ାକ ପରିପକ୍ୱହେଲେ ଅଭିସରଣ ହୁଏ ନିଶ୍ଚିତ, ସେଗୁଡ଼ାକ ରହିଚି ଏକ୍ଷଣି ଭ୍ରୂଣ ଅବସ୍ଥାରେ; ମାତ୍ର ମାର୍କ୍ସବାଦ ନଥିଲେ, ଜାଣିପାରନ୍ତୁନାହିଁ ଯେ ଦିହଖଟଣି ଆଖିକୁ ଦିଶୁଚି ଝାଳନାଳ, ମାତ୍ର ସୃଷ୍ଟିଶୀଳ ଚେତନାର ଅଗ୍ରଗତିରେ ତା ଗୋଟାଏ ମାଇଲଖୁଣ୍ଟ । ଅନ୍ୟ ଶବ୍ଦରେ, କ୍ୟାପିଟାଲିସ୍ମ ଓ ତାର ଅନ୍ତର୍ଗୂଢ଼ ବୈପରୀତ୍ୟର ଅଙ୍ଗବ୍ୟବଚ୍ଛେଦ-ମୂଳକ ଯୋଉ

ଚିହ୍ନାୟନ ରଖିଯାଇଚନ୍ତି ମାର୍କ୍ସ, ଏବଂ ନିରାମୟର ଯୋଉ ବିଧାନ ବତାଇଚନ୍ତି, ମୌଳିକ ସେଇ ଆବିଷ୍କାର ଅଦ୍ୟାବଧି ରହିଚି ଅନତିକ୍ରମ୍ୟ । ରହିଚି ବୋଲି, କ୍ୟାପିଟାଲିସ୍ମ ପୃଥିବୀରେ ରହିଥିବା ଯାଏଁ, ମାର୍କ୍ସବାଦ ଅଚଳ ହୋଇଯିବନାହିଁ; ଆଉ, ଉତ୍ତରଆଧୁନିକତା ମଧ୍ୟ ନିଜେ ଗୋଟାଏ ମେଟା-ନ୍ୟାରେଟିଭ୍, ତାର ଉତ୍ପତ୍ତି ଯେହେତୁ ସଂସ୍କୃତିର ପଣ୍ୟକରଣ ବା କମୋଡିଫିକେସନ୍‌ରୁ, ମାର୍କ୍ସ ଯାହାକୁ କହିଚନ୍ତି ଫେଟିସିଜ୍ମ । ସଂସ୍କୃତି କିମ୍ବା ମୂଲ୍ୟବୋଧ ଧନତାନ୍ତ୍ରିକ ଦେଶଗୁଡ଼ିକରେ ଦୁଇଶବର୍ଷଧରି କ୍ୟାପିଟାଲିସ୍ମ ଦ୍ୱାରା ପରିବର୍ତ୍ତିତ ହୋଇଆସୁଚି; ଆସୁଚି ବୋଲି, ତାର ନାନାଦି ପ୍ରତୀକ ମଧ୍ୟ ତିଆରିକରିଚି ଗଣମାଧ୍ୟମ । ସେଗୁଡ଼ିକ ସତ ହେଉ କି ନହେଉ, ଭୋଗ୍ୟପଣ୍ୟର ବିକ୍ରି ଓ ବିସ୍ତାରକୁ ଉତ୍ସାହଦେଉଚି । ମାତ୍ର ପୃଥିବୀର ଅଶିଶତାଂଶ ଲୋକଙ୍କ କ୍ରୟକ୍ଷମତା ଏତେତଳେ ରହିଚି ଯେ ଜୀବନନିର୍ବାହରେ ପଣ୍ୟସଂସ୍କୃତି ଏକେବାରେ ଅବାନ୍ତର । ଆଉ, କ୍ୟାପିଟାଲିସ୍ମ 'ଗ୍ଲୋବାଲ୍' ହେଲେସୁଦ୍ଧା, ଦରିଦ୍ର ଲୋକଙ୍କ ମନରେ ଭୋଗବାସନା ଜାଗ୍ରତ କରୁଥିଲେ ସୁଦ୍ଧା, କାର୍ଯ୍ୟକ୍ଷେତ୍ରରେ ରହିଚି ଅପୂର୍ଣ୍ଣ ଆକାଙ୍‌କ୍ଷା । ମାର୍କ୍ସବାଦ ସେ ଆକାଙ୍‌କ୍ଷା ପୂରଣକରିନାହିଁ, କାହିଁକିନା, ଅଦରକାରି ଜିନିଷ ଯୋଗାଇବା ତାର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଏଭଳି ମତିଭ୍ରମ ଲୋକଙ୍କର ହୁଏ କାହିଁକି, ବସ୍ତୁବାଦୀ କୈଫିୟତ୍ ନିଶ୍ଚୟ ରହିଚି । ମାର୍କ୍ସବାଦକୁ ମୃତ ବା ଅଚଳ ନକହି ଅନଗ୍ରସର ଦେଶଗୁଡ଼ିକର ଅର୍ଥନୀତିକ ଭିତ୍ତି ସମ୍ବନ୍ଧରେ ବାଦାନୁବାଦ ଉଦ୍ରେକକରିବା କଥା ଉତ୍ତରଆଧୁନିକତା । କରିପାରିବନାହିଁ, କାହିଁକିନା, ଗଣମାଧ୍ୟମର ଶାଖାପ୍ରଶାଖାକୁ ଗ୍ରାସକରି ବସିଚି ବୃହତ୍‌ପୁଞ୍ଜି । ଏ ଅବସ୍ଥାରେ ଧନତାନ୍ତ୍ରିକ ଦେଶର ଅନ୍ନବସ୍ତ୍ର ସ୍ୱାସ୍ଥ୍ୟଶିକ୍ଷା ଘରଦ୍ୱାର ପ୍ରତିତୁଳନାରେ ଗରିବ ଦେଶର ବନ୍ଦୋବସ୍ତ ସମାନ କି ନିକଟତର ଯଦି ନ ହୁଏ, କାରଣ ନିଶ୍ଚୟ ମାର୍କ୍ସବାଦର ମୃତ୍ୟୁ ନୁହେଁ । କାରଣ ସ୍ପଷ୍ଟତଃ ମାର୍କ୍ସବାଦକୁ ବୁର୍ଜୋୟାର ବିରୋଧ । ଏବଂ ଏ ବିରୋଧ ଓ ପ୍ରତିରୋଧ ମଧ୍ୟ ଆକସ୍ମିକ ନୁହେଁ । ପଛରେ ରହିଚି ସାମ୍ରାଜ୍ୟବାଦର ଇତିହାସ । ସେ ଇତିହାସ ପୃଥିବୀକୁ ଦିଭାଗ କରିଦେଇଚି; ଗୋଟେ ଭାଗ ସେବ୍ୟ, ଆଉଗୋଟେ ସେବକ । ଜୀବନସଂଗ୍ରାମ ଆଉ ଚିନ୍ତାଭାବନା ଧରଣରେ ବ୍ୟବଧାନ ତେଣୁ ଅବଧାରିତ । ସେଇ ବ୍ୟବଧାନକୁ ମାର୍କ୍ସ କହିଚନ୍ତି ପ୍ରିହିଷ୍ଟ୍ରି ବା ପ୍ରାକ୍‌ଆଧୁନିକତା । 'ପ୍ରଗତି' ପ୍ରତୀତି ତେଣୁ ମହାଆଖ୍ୟାନ ନୁହେଁ; ମାନବ-ପ୍ରଜାତିର ସୋପାନ ଅତିକ୍ରମଣର ଇତିହାସ । ଅଥଚ ଉତ୍ତର-ଆଧୁନିକତାର ପ୍ରବକ୍ତା ମଧ୍ୟ ନିଜକୁ କହୁଚନ୍ତି ବାମପନ୍ଥୀ । ମାର୍କ୍ସବାଦକୁ ବାଦ୍‌ଦେଇ ବାମପନ୍ଥା କି ବାଟରେ ତିଆରିହୁଏ, ତାର ଉଦାହରଣ, a focus on language, culture and 'discourse'...to the exclusion of the Left's traditional

'economic' concerns and the old preoccupations of political economy, a rejection of 'totalising' knowledge... in favour of an emphasis on 'difference', on varied particular identities such as gender, race, ethnicity, sexuality... a celebration of the 'marginal' and a repudiation of 'grand narratives', such as Western ideas of progress, including Marxist theories of history.. । ବ୍ୟବଧାନଗୁଡ଼ାକୁ ଚିହ୍ନଟକରିବାକୁ କଣ ଉତ୍ତରଆଧୁନିକତା ଭଳି ଚଷମା ଦରକାର ? ଦରକାର ତ ବସ୍ତୁତାନ୍ତ୍ରିକ ବିଶ୍ଳେଷଣ, କାହିଁକିନା, There is in fact, no better confirmation of historical materialism than the connection between postmodernist culture and a segmented, consumerist, and a mobile global capitalism... A materialistc understanding is... an essential step in liberating culture from the stranglehold of commodification । ଅର୍ଥାତ୍, ଧର୍ମୀୟ ରହସ୍ୟଉଦ୍‌ଘାଟନ ନୁହେଁ ଯେ ମାର୍କ୍ସ ଯୋଉଠି ଛାଡ଼ିଚନ୍ତି ଚିନ୍ତାପ୍ରବାହ ସେଇଠି ଅଟକିରହିଥିବ ! ଇତିହାସଗତିରେ ନୂଆନୂଆ ପରିସ୍ଥିତି, ପ୍ରଶ୍ନ ଓ ସଂଶୟର ଉଦ୍‌ଭବହେବା ସ୍ୱାଭାବିକ, ସେଗୁଡ଼ିକର ଅନ୍ତର୍ଭେଦ କି ଭାବରେ କରାଯାଇପାରେ, ପଦ୍ଧତି ମାର୍କ୍ସ ବତାଇଦେଇ ଯାଇଚନ୍ତି; ଯେପରି, ଆରିଷ୍ଟୋଟ୍‌ଲ୍ଙ୍କ ସମାଜରେ ଦାସପ୍ରଥାର ବିଶ୍ଳେଷଣ: ମଣିଷର ସୁପ୍ତଶକ୍ତିକୁ ଜାଗ୍ରତକରିବାକୁ ଅନ୍ତରାୟ ହେଉଚି କି ପ୍ରକାର ବାଧା ? ଆଉ, କିଭଳି କର୍ମଧାରା ଅବଲମ୍ବନକଲେ ବାଧାକୁ ହଟାଇଦେବା ସମ୍ଭବପର ? 'ଡିଫରେନ୍ସ' ଯଦି ପ୍ରାକୃତିକ, ଯେପରି ଲିଙ୍ଗଭେଦ କିମ୍ବା ଯୌନତା, ମାର୍କ୍ସବାଦ ମୀମାଂସା କରିପାରିବନାହିଁ; କିନ୍ତୁ କାରଣ ଯଦି ସାମାଜିକ କି ରାଜନୀତିକ ଅଥବା ଭାବାଦର୍ଶଗତ, ସମାଧାନସୂତ୍ର ରହିଚି ମାର୍କ୍ସଚିନ୍ତା ଭିତରେ । କାହିଁକିନା, ମାର୍କ୍ସଚିନ୍ତା ମୂଳତଃ ଏକ ବୈପ୍ଲବିକ କର୍ମଧାରା, ସଂସ୍କାରପ୍ରକଳ୍ପ ନୁହେଁ କି ସେମିନାର୍ ସିମ୍ପୋଜିୟମ୍‌ର ଉପଲକ୍ଷ୍ୟ ନୁହେଁ । ବାଦାନୁବାଦର ଅବକାଶ ରହିଚି ତେଣୁ କର୍ମଧାରା ଭିତରଦେଇ । କର୍ମଧାରା ବାହାରେ କେତେ ବାଦାନୁବାଦ, ବିବାକ ତୁଚ୍ଛ ଫିଲଜଫି, ଇଣ୍ଟରପ୍ରିଟେସନ୍ ଆଖ୍ୟାଦେଇ ଅଧାବାଟରୁ ଯାହାକୁ ବିଦାକରିଦେଇଚନ୍ତି ମାର୍କ୍ସ । ସେହିପରି, ଏଥ୍‌ନିସିଟି କି ରେସ୍ । ଏଗୁଡ଼ିକ କଣ ଅପରିବର୍ତ୍ତନୀୟ ନିଶ୍ଚଳ କ୍ୟାଟିଗରି; ନା ଚଳମାନ ସାମାଜିକ ଅବସ୍ଥାନ ? ଯିଏ ଆଜି ଟ୍ରାଇବାଲ୍, କଣ ଚିରଦିନ ଟ୍ରାଇବାଲ୍ ହୋଇ ରହିଥିବ ? ରାଜନୀତି ତାକୁ ଟ୍ରାଇବାଲ୍ କରି ରଖୁଚି, ପଞ୍ଜୁରୀ ଭିତରୁ ବାହାରିବାକୁ ଦେଉନାହିଁ । ଆର୍ଯ୍ୟ-ଅନାର୍ଯ୍ୟ-ଦ୍ରାବିଡ଼ ଭଳି 'ରେସ୍' ଅଛି କୁଆଡ଼େ; ଇତିହାସଗତିରେ ହଜାର ହଜାର ବର୍ଷଧରି ଅଙ୍ଗୀଭୂତହେଉଚନ୍ତି ଏମାନେ

ପରସ୍ପର ସହିତ ପ୍ରାକୃତିକ ପ୍ରକ୍ରିୟାରେ; ମାତ୍ର ରାଜନୀତି ଚାହେଁ 'ଡିଫରେନ୍ସ' ବଞ୍ଚିରହୁ । ଡିଫରେନ୍ସ ଯେତେବେଳେ ଆଧିପତ୍ୟର କାରଣ, ମାର୍କ୍ସଚିନ୍ତା ସେ ଆଧିପତ୍ୟକୁ ଆହ୍ୱାନଜଣାଇବ ନିଶ୍ଚୟ; ଉତ୍ତରଆଧୁନିକତାର ଛତ୍ରଛାୟା ଦରକାର ପଡ଼ିବ ନାହିଁ । ଯୌନତା ମଧ୍ୟ ଶରୀରଧର୍ମ; ତାକୁ ଚାପିଦେବାକୁ ପିତୃତନ୍ତ୍ର ଯଦି ଦମନପୀଡ଼ନକୁ ଆଶ୍ରୟକରେ, ମାର୍କ୍ସବାଦର ହସ୍ତକ୍ଷେପ ଅବଧାର୍ଯ୍ୟ । କିନ୍ତୁ କ୍ଷେତ୍ର ଯେହେତୁ ଇଡିୟଲଜିକାଲ୍, ସଂଗ୍ରାମର ଧରଣ ରାଜନୀତିକ ହୋଇପାରେନା । ଭାବାଦର୍ଶକୁ ସଫଳ ମୁକାବିଲା କରିପାରେ କେବଳ ଆତ୍ମସଚେତନତା; ଏବଂ ଆତ୍ମସଚେତନ କରିବା ମାର୍କ୍ସଚିନ୍ତାର ବିଶେଷ ଲକ୍ଷ୍ୟ । ପୃଥିବୀରେ ସର୍ବତ୍ର ପୁରୁଷ ଉପଭୋଗକରୁଚି ଅବାଧ ଯୌନସ୍ୱାଧୀନତା, ନାରୀ କରୁନାହିଁ । କାରଣ କିନ୍ତୁ ପୁରୁଷ ନୁହେଁ; ଧର୍ମ ହୋଇପାରେ, ପରିବାର ହୋଇପାରେ, ବ୍ୟକ୍ତିଗତ ସଂପତ୍ତି ହୋଇପାରେ । ଏଗୁଡ଼ିକ କିନ୍ତୁ ସମାଜର ସର୍ବମାନ୍ୟ ପ୍ରତିଷ୍ଠାନ; ସମାଜ ନ ବଦଳିଲେ ଏଗୁଡ଼ିକ ମଧ୍ୟ ବଦଳିବନାହିଁ । ଏବଂ, 'ଡିସ୍‌କୋର୍ସ' ବଦଳାଇଦେଇପାରେନା କିଛିହେଲେ, କାହିଁକିନା, କଥୋପକଥନ କି ଆଳାପଆଲୋଚନା 'ଆକ୍ଟିଭିଟି' ହେଲେସୁଦ୍ଧା ସଂଗ୍ରାମ ନୁହେଁ ଜମାରୁ; ସଂଗ୍ରାମ ନୁହେଁ ବୋଲି, ମଣିଷର କର୍ତ୍ତାପଣ ବା ସବ୍‌ଜେକ୍ଟିଭିଟି ସ୍ୱୀକାର କରେନା । ଅଥଚ କର୍ତ୍ତାପଣ ଏକ ଐତିହାସିକ ପ୍ରତୀତି । ମଣିଷ ସୀମାନ୍ତବାସୀ ବା ମାର୍ଜିନାଲ୍ ହେଲେସୁଦ୍ଧା ତାର କର୍ତ୍ତାପଣ ଏକ ସହଜାତ ଶକ୍ତି । *କ୍ୟାପିଟାଲ୍* ର ତୃତୀୟଖଣ୍ଡରେ ସେଥିପାଇଁ ଲେଖିଚନ୍ତି, All science would be superfluous if the form of appearance of things directly coincided with their essence । ମାର୍କ୍ସବାଦୀ ତେଣୁ ସବାଆଗେ ପଚାରିବେ, ସମାଜରେ ଯେତେଯାହା ଇନ୍ଦ୍ରିୟଗ୍ରାହ୍ୟ, ଅର୍ଥାତ୍ ପ୍ରତୀୟମାନ, କାହିଁକି ନିଜ ଅନ୍ତଃସାର, ଅର୍ଥାତ୍ ଏସେନ୍ସ, ଠାରୁ ଅଲଗା ? କାହିଁକି ବିଜ୍ଞାନକୁ କୁହାଯାଉଚି ପ୍ରତୀୟମାନର ଅନ୍ତର୍ଭେଦ କରିବାକୁ ? ଅନ୍ତର୍ଭେଦ କାମଟା ବି , ଏତେ କଠିନ କାହିଁକି ? କାହିଁକିନା, କ୍ୟାପିଟାଲିଜ୍ମର ଛତ୍ରଛାୟା ତଳେ ଯା ପ୍ରକୃତ ତା ସ୍ୱଚ୍ଛ କି ଅନାବିଳହୋଇ ରହିପାରେନା, ଯେପରି ଉତ୍ତରଆଧୁନିକତାର ଦୃଷ୍ଟିବିକାର ।

ମାର୍କ୍ସବାଦ ସମ୍ବନ୍ଧରେ ଆପତ୍ତି ତାଙ୍କ ଜିବଦ୍ଦଶାରେ କମ୍ ହୋଇନାହିଁ; କ୍ୟାପିଟାଲ୍ ଯେ ମଣିଷଠୁଁ ମନୁଷ୍ୟତ୍ୱ କାଢ଼ିନେଉଚି, ଅସ୍ୱୀକାରକରିନାହିଁ କେହି; କିନ୍ତୁ ପ୍ରତିକାର ଯେ ବିପ୍ଳବ, ଢ଼େର୍ ଲୋକଙ୍କ ମନକୁ ପାଉନାହିଁ; ଅଥଚ ବୁର୍ଜୋୟା ପରିବାରରେ ଜନ୍ମହୋଇ ସୁଦ୍ଧା, ବରଣକରିନେଇଛନ୍ତି ଅଭାବ, ଅସୁସ୍ଥତା, ପାରିବାରିକ ଅସ୍ୱାଚ୍ଛନ୍ଦ୍ୟ, କାହିଁକିନା, ତାଙ୍କ ନିଜ ଭାଷାରେ, I laugh at the socalled 'practical' men

with their wisdom. If one chose to be an ox, one could turn one's back on the sufferings of mankind and look after one's own skin । ଧନତନ୍ତ୍ରକୁ ବିରୋଧ ତେଣୁ ଲକ୍ଷ୍ୟ ନୁହେଁ, ଉପଲକ୍ଷ୍ୟମାତ୍ର । ମଣିଷପ୍ରଜାତିର ଦୁଃଖମୋଚନ ଯୋଉ ଲୋକର ଜୀବନ-ବ୍ରତ, ଯିଏ ସଂସାରତ୍ୟାଗୀ ସନ୍ନ୍ୟାସୀ ନୁହେଁ, କି ଧ୍ରୁବ-ପ୍ରହ୍ଲାଦ ପରି ବରପାଇନାହିଁ ଈଶ୍ୱରଙ୍କ ପାଖରୁ, ସର୍ବମାନବର ହୋଇ ଯୋଉ ସଂଗ୍ରାମକରିବ, ଜୀବନବ୍ୟାପୀ ବିପ୍ଳବ ଛଡ଼ା ଆଉ କଣ ହୋଇପାରେ ତାର ଭବିତବ୍ୟ ? ଏଇ କଥାଟା ପାସରିନଗଲେ ତାଙ୍କ ଚିନ୍ତା କି କର୍ମରେ ଛିଦ୍ରଖୋଜିବା ସହଜ ହେବନାହିଁ । ଅଥଚ, ଯୋଉ କୃତବିଦ୍ୟ ଭାବୁକ ନିଜକୁ ମାର୍କ୍ସବାଦୀ କହୁଥିଲେ ସୋଭିଏଟ୍ ଇଉନିୟନ୍ ଭାଙ୍ଗିଯିବାଯାଏଁ, ଏକ୍ଷଣି କହୁଚନ୍ତି, ଚିନ୍ତା ରହିଚି, ମାତ୍ର କାମ ସରିଯାଇଚି; ଯେପରି ଏରିକ୍ ହବ୍ସ୍‌ବଅମ୍...... Marx would live on as a major thinker... could hardly be doubled, ମାତ୍ର ରାଜନୀତିକ ପ୍ରକଳ୍ପ ଭାବରେ ମାର୍କ୍ସବାଦର ଭବିଷ୍ୟତ ସଂଶୟାତୀତ ନୁହେଁ । ଚିନ୍ତା ବଞ୍ଚିବ, କିନ୍ତୁ ହୋଇପାରିବନାହିଁ କର୍ମର ପ୍ରେରଣା । ଅଦ୍‌ଭୂତ ମେଧାବୀ ଅବସ୍ଥାନ, କାହିଁକିନା, ମାର୍କ୍ସବାଦ ସହିତ ସୋଭିଏଟ୍ ଇଉନିୟନ୍‌ର ଯୋଗସୂତ୍ର ଜଞ୍ଜିର ସହିତ ଶିକୁଳିର ସଂଯୋଗ ଭଳି; ପରସ୍ପର ବିନିମୟଯୋଗ୍ୟ ନୁହେଁ । ନୁହେଁ, କାହିଁକିନା, ନିର୍ଦ୍ଦିଷ୍ଟ କୋଉ ଭୂଖଣ୍ଡ ମାର୍କ୍ସବାଦର ଲକ୍ଷ୍ୟ ନୁହେଁ; ମାନବ-ପ୍ରମୁକ୍ତି ତାର ଅନ୍ତିମ ଗନ୍ତବ୍ୟ । ସେଥିପାଇଁ, ଇତିହାସ ହୋଇ ବି ଇତିହାସ ଊର୍ଦ୍ଧ୍ୱରେ । ବ୍ୟାରି ହିଣ୍ଡେସ୍ ଫେର୍ ଦାବିକରିଚନ୍ତି 'ପ୍ରିସାଇଜ୍ ମେକାନିକ୍ସ' ଯଦ୍ଦ୍ୱାରା 'ବେସ୍' ଯୋଡ଼ିହେଉଚି 'ସୁପରଷ୍ଟ୍ରକ୍‌ଚର୍' ସାଙ୍ଗରେ । ଜଡ଼ବିଜ୍ଞାନ ଛଡ଼ା ପ୍ରିସାଇଜ୍ ମେକାନିକ୍ସ ମାନବବିଦ୍ୟାର କୋଉହେଲେ ଶାଖାପ୍ରଶାଖାରେ ପରିଦୃଷ୍ଟ ନୁହେଁ; କାହିଁକିନା, ବସ୍ତୁ-ଉତ୍ପାଦନ ଓ ଭାବ-ଉତ୍ପାଦନର ସଂପର୍କଗୁଡ଼ାକ ସର୍ବତ୍ର ଓ ସର୍ବଦା ଆପେକ୍ଷିକ; ଯେପରି, ସମଗ୍ର ସହିତ ଅଂଶବିଶେଷର କିମ୍ବା ଅଂଶଗୁଡ଼ିକ ସହିତ ସମଗ୍ରର । ଆନ୍ତଃସଂପର୍କ ଓ ଅଦଳବଦଳ, କୋଉହେଲେ ସାମାଜିକ ସତ୍ତା ପାଇଁ ସ୍ଥିରନୁହେଁ ବୋଲି, ଚରମଲକ୍ଷ୍ୟ କି ପରମସତ୍ୟ ଭଳି ଧାରଣାଗୁଡ଼ାକ ବସ୍ତୁବାଚକ ନୁହେଁ । ଖୋଜିଲେ, ଯୁକ୍ତିସଙ୍ଗତ ସଂପର୍କ ଅବଶ୍ୟ ମିଳିବ; ଏବଂ ମିଳିବ ବୋଲି, ଲେନିନ୍ ଲେଖିଚନ୍ତି, the materialistic dialectics.... certainly does include relativism, but is not reducible to relativism, that is, it recognizes the variability of our knowledge, not in the sence of denying objective truth but in the sense that the limits and approximations of our knowledge of this truth are historically conditioned । ଅର୍ଥାତ୍ ବେସ୍-ସୁପରଷ୍ଟ୍ରକ୍‌ଚର୍

ଯୋଗସୂତ୍ର ଏକ ଯୁକ୍ତିସଂଗତ approximation, ପରମସତ୍ୟ ନୁହେଁ । ନୁହେଁ ବୋଲି, ଇତିହାସଗତିରେ ହେର୍‌ଫେର୍ ମଧ୍ୟ ଘଟିଯାଇପାରେ । ମାର୍କ୍ସବାଦୀ ତେଣୁ ପଢ଼ିସାରି ଶିଖିବେ 'how not to quote Marx' ! ବିଶେଷତଃ ଏଇ କାରଣରୁ ଯେ ଇକନମିକ୍ସ ତାଙ୍କ ଚିନ୍ତାଗଠନର ଅନୁଷଙ୍ଗ ମାତ୍ର; ଅସଲ ଆବେଗ ରାଜନୀତିକ କର୍ମଧାରା । ଉଦ୍‌ବୃତ୍ତ ମୂଲ୍ୟ, ବିନିମୟ ମୂଲ୍ୟ ଇତ୍ୟାଦି ଅର୍ଥନୀତିକ ପ୍ରତ୍ୟୟ ଆବଶ୍ୟକହୋଇଚି ଧନତନ୍ତ୍ରର ଗଢ଼ଣକୁ ବୁଝାଇବାକୁ ଦରକାର ଯେହେତୁ ଅଙ୍ଗପ୍ରତ୍ୟଙ୍ଗର ବିବରଣ । ଯେପରି, ଇତିହାସର ଗତିଧାରା ବୁଝାଇବାକୁ ଦରକାର ଉତ୍ପାଦନଧରଣର ଆନୁପୂର୍ବିକ ଆଖ୍ୟାନ । କଥାଟା ଲେଖିବାକୁ ପଡୁଚି, କାହିଁକିନା, ତୁଙ୍ଗ ମାର୍କ୍ସବାଦୀ ବୋଲାଉଥିବା ପ୍ଲେଖାନଫ୍ ଓ କାଉଟ୍‌ସ୍କୀ ସୁଦ୍ଧା ଅର୍ଥନୀତିକୁ ଭାବିଚନ୍ତି ମାର୍କ୍ସଚିନ୍ତାର ଅନ୍ତଃସାର । କିନ୍ତୁ ଜାଁ-ପଲ୍ ସାତ୍ର କହୁଚନ୍ତି, The periods of philosophical creation are rare. Between the seventeenth century and the twentieth, I see three such periods, which I would designate by the name of the men who dominated them: there is the 'moment' of Descartes and Lock, that of Kant and Hegel, finally that of Marx. These three philosophies become, each in its turn, the humus of every particular thought and the horizon of all culture; there is no going beyond them so long as man has not gone beyond the historical moment which they express. I have often remarked on the fact that an 'anti-Marxist' argument is only the apparent rejuvenation of a pre-Marxist idea. A so called 'going beyond Marxism' will be at worst only a return to pre-Marxism; at best only the rediscovery of a thought already contained in the philosophy which one believes he has gone beyond । ସାତ୍ର ଦର୍ଶନବିଦ୍ୟାର ଛାତ୍ର ଓ ଶିକ୍ଷକ; ମାତ୍ର ସୋଭିଏଟ୍ ଇଉନିୟନ୍ ଭାଙ୍ଗିଯିବା ବେଳକୁ ଜୀବତ ନଥିଲେ । ଅନ୍ୟ ଯୋଉ ମାର୍କ୍ସବାଦୀ ଅଧ୍ୟାପକ ଜୀବିତ ଥିଲେ, ଯେପରି ରବର୍ଟ ହେଇଲ୍‌ବ୍ରୋନର୍, *ନିଉୟୋର୍କର୍* ପତ୍ରିକାରେ ଜଗତକମ୍ପାଇବା ଭଳି ଯୋଉ ପ୍ରବନ୍ଧ ଲେଖିଥିଲେ, ତାର ଶିରୋନାମ ଥିଲା Triumph of Capitalism । ପ୍ରାୟ ଦଶବର୍ଷ ଉତାରୁ, ୧୯୯୭ରେ ସେଇ *ନିଉୟୋର୍କର୍* ମ୍ୟାଗାଜିନ୍‌ରେ *What's next* ? ଶିରୋନାମରେ ଫେର୍ ମାଳେଖଣ୍ଡ ଲେଖା ବାହାରିଲା, ଏବଂ ସବୁଯାକର ପ୍ରତିପାଦ୍ୟ ଥିଲା, ଏକବିଂଶ ଶତକ ସକାଶେ ମାର୍କ୍ସ ହିଁ ଏକମାତ୍ର ଦାର୍ଶନିକ ଯିଏ ରହିଯାଇଚନ୍ତି ପ୍ରାସଙ୍ଗିକ । ମାତ୍ର ଲେଖିଥିଲେ ଯିଏ,

ଜଣେହେଲେ 'ମାର୍କ୍ସବାଦୀ' ବୋଲି ବିଖ୍ୟାତ ନୁହେଁ । ଜର୍ମନ୍ କବି ଏନ୍‌ଜେନ୍ସବର୍ଗର୍ ସେଥିପାଇଁ ଲେଖିଥିଲେ,

I see you betrayed
by your disciples;
only your enemies
remained what they were.

ଏଥିରୁ ଯା ସ୍ପଷ୍ଟ, ଆଟ୍‌ଲାଣ୍ଟିକ୍ ସମୁଦ୍ରର ଉଭୟ କୂଳରେ ମହାମହା ପଣ୍ଡିତ ନିଜ ମର୍ଜି ମୁତାବିକ୍ ମାର୍କ୍ସବାଦର ବ୍ୟାଖ୍ୟାକରିଚନ୍ତି କି ଲୋକଙ୍କୁ ବୁଝାଇଚନ୍ତି; କିନ୍ତୁ ବିପ୍ଳବ କି ଜିନିଷ, କେମିତି କରିବାକୁ ହୁଏ, ନିର୍ଦ୍ଦିଷ୍ଟ କି ପରିସ୍ଥିତିରେ ତା ସମ୍ଭବପର, ବାଟରେ ହାରିଗଲେ ବିଷାଦଭଞ୍ଜନର ଉପାୟ କଣ, କିଏ ସେ କାମପାଇଁ ଉପଯୁକ୍ତ, କି ଭାବରେ ତାକୁ ପ୍ରସ୍ତୁତକରିବାକୁ ପଡ଼େ– ଏ ବିଚାରଗୁଡ଼ାକ କସ୍ମିନ୍‌କାଳେ ମନକୁ ଛୁଇଁନାହିଁ; ପୁରା ବ୍ୟାପାରଟା ଏମାନଙ୍କ ପାଇଁ ଆମେରିକା ସାଙ୍ଗରେ ସୋଭିଏଟ୍ ଇଉନିୟନ୍‌ର କଛାମୁଣ୍ଡି । ମ୍ୟାଜିଷ୍ଟ୍ରେଟ୍ ରାୟ ଶୁଣାଇଦେଲେ, ଏ ଖେପାରେ କ୍ୟାପିଟାଲିସ୍ମ ଜିତିଛି, କମିଉନିଜ୍ମ ଏମିତି ଲହୁଲୁହାଣ ହୋଇଚି ଯେ ତଳୁଉଠିବାକୁ ବଳପାଉନାହିଁ! ସେମିତି ଆଉଗୋଟେ ଅପପ୍ରଚାର, 'ଅଫିମ' । ମାର୍କ୍ସ କୁଆଡ଼େ ଧର୍ମକୁ କହିଚନ୍ତି ଅଫିମ । ଅଥଚ ଧର୍ମ ଆଦୌ ତାଙ୍କ ବିଚାର୍ଯ୍ୟ ବିଷୟ ନୁହେଁ; କାହିଁକିନା, କୌଣସି ପ୍ରକାର ଅଧିଭୌତିକତା ମଣିଷକୁ ଇତିହାସ-ଚେତନା ଦେଇପାରେନା, ଇତିହାସଚେତନା ଯେହେତୁ ତିଆରିହୁଏ ସାମାଜିକ ଘାତ-ପ୍ରତିଘାତ ଭିତରଦେଇ, ଘାତପ୍ରତିଘାତ ହିଁ ଚେତନାକୁ କରେ ସଚଳ । ଏଇ ସତ୍ୟ ଆବିଷ୍କାରକରିଥିଲେ ହେଗ୍ଲଙ୍କ ଦ୍ୱାନ୍ଦ୍ୱିକତା ଧାରଣାକୁ ଉଗୁଡ଼େଇ ପକାଇ । ଉଗୁଡ଼େଇପକାଇବା କାମକୁ ମାର୍କ୍ସବାଦୀ ପରିଭାଷାରେ କୁହାଯାଏ ଇନ୍‌ଭର୍‌ସନ୍ । ମନି ବା ମୁଦ୍ରା ଜଡ଼ପଦାର୍ଥ ହେଲେସୁଦ୍ଧା ଧନତାନ୍ତ୍ରିକ ଲଜିକ୍ ତାକୁ ଠାକୁରରେ ପରିଣତକରିଚି; ଅଥଚ ମୁଦ୍ରାକୁ ତିଆରିକରୁଚି କାରିଗର । ସେହିପରି, ଧର୍ମକୁ ତିଆରିକରିଚି ମଣିଷ, ଧର୍ମ ମଣିଷକୁ ତିଆରିକରିନାହିଁ । କିନ୍ତୁ ସମାଜ ଆଉ ରାଷ୍ଟ୍ର ଏଇ ସଂପର୍କକୁ ଉଗୁଡ଼େଇପକାଇଚି ବୋଲି, ସଂକଟ ସମ୍ମୁଖୀନ ହେଲେ ମଣିଷର ଚେତନାକୁ ଆକ୍ରାନ୍ତକରୁଚି ବିଭ୍ରମ; ମୋହଗ୍ରସ୍ତହୋଇ ପରିତ୍ରାଣ ଖୋଜୁଚି ଧର୍ମରେ । ଚେତନାର ଇନ୍‌ଭର୍ସନ୍ ବୁଝାଇବାକୁ ଲେଖିଚନ୍ତି, My dialectical method is, in its foundation, not only different. From the Hegelian, but its direct opposite. For Hegel, the thought-process, which he even transforms into an independent subject, under the name of 'the

Idea' is the creator of the actual, and the actual is only the external appearance of the Idea, With me, the reverse is true; the idea is nothing more than the real movement, overturned and translated in the human head । ସ୍ପଷ୍ଟତଃ, ଧର୍ମକୁ ମାର୍କ୍ସ ପଣ୍ଡାପଡ଼ିହାରୀଙ୍କ କାରସାଜି ମନେକରିନାହାଁନ୍ତି, ସମାଜ ଓ ରାଷ୍ଟ୍ର ଦ୍ୱାରା ଉତ୍ପାଦିତ ଚେତନା ଭାବରେ ଦେଖିଚନ୍ତି; କାହିଁକିନା, ସମାଜ ଓ ରାଷ୍ଟ୍ର ଗଠିତକରୁଚି ଏପରି ଏକ ଜଗତ ଯାର ମୁଣ୍ଡତଳକୁ ଆଉ ଗୋଡ଼ଉପରକୁ (ଇନ୍‌ଭର୍ଟେଡ); ଯା ଫଳରେ, ନିଶ୍ଚଭହୋଇ ଚେତନା ପ୍ରତିବାଦ କରିପାରେନା । ଯୋଉ ସମାଜ ଧନଦଉଲତକୁ ପୂଜାକରେ, ଦୁଃଖଶୋକରେ ମ୍ରିୟମାଣ ମଣିଷ ପ୍ରତି ଭ୍ରୂକ୍ଷେପକରିବାକୁ ବେଳପାଏନା, ଯୋଉ ରାଷ୍ଟ୍ର କଦରକରେ କେବଳ ବିତ୍ତବାନ୍ ବଳଶାଳୀକୁ, ନିଃସମ୍ବଳ ଲୋକ ତା ଦୃଷ୍ଟିରେ କୁଟାକାଠି । ଏଇଭଳି ସମାଜ ଓ ରାଷ୍ଟ୍ର ଦେଖିଚି, ଧର୍ମ ମଣିଷକୁ ଘଉଡ଼େଇ ଦେଇପାରେ ସମାଜ ଓ ରାଷ୍ଟ୍ର ପାଖରୁ ପ୍ରତିକାର ଦାବିକରିବା କାମରୁ । ମାର୍କ୍ସ ଲେଖିବାବେଳକୁ ଆନେସ୍ଥେସିଆ ବାହାରିନାହିଁ; ଯନ୍ତ୍ରଣା ଉପଶମକରିବାକୁ ଲୋକ ଖାଉଚନ୍ତି ଅଫିମ । *A Contribution to the critique of Hegel's Philosophy of Right* ରେ ତେଣୁ ଲେଖିଚନ୍ତି, Religious suffering is at one and the same time the expression of real suffering and a protest against real suffering. Religion is the sigh of the oppressed creature, the heart of a heartless world and the soul of soulless conditions. It is the opium of the people.

The abolition of religion as the illusory happiness of the people is the demand for their real happiness. To call on them to give up their illusions about their conditions is to call on them 'to give up a condition that requires illusions. The criticism of religion is therefore in embryo the criticism of that vale of tears of which religion is the halo.

.....It is therefore the task of history, once the other-world of truth has vanished, to establish the truth of the world. It is the immediate task of philosophy, which is in the service of history, to unmask self estrangement in its unholy forms once the holy form of human self-estrangement has been unmasked. Thus the criticism of heaven twins into the criticism of earth, the criticism of religion into the criticism of law and the criticism of theology into the criticism of politics.

*  *  *  *  *  *  *

ଭୁଲ୍ ବୁଝାମଣାର ମୂଳକାରଣ ଅଫିସିଆଲ୍ ମାର୍କ୍ସବାଦୀଙ୍କ ଔଦାସୀନ୍ୟ ସାଙ୍ଗକୁ ସାଧାରଣ ଶିକ୍ଷାବ୍ୟବସ୍ଥାରେ ମାର୍କ୍ସଚିନ୍ତାକୁ ସଚେତନ ଉପେକ୍ଷା । ସେଥିପାଇଁ, ସଂକ୍ଷେପରେ ହେଲେ ସୁଦ୍ଧା, ମାର୍କ୍ସବାଦର ଚାରିତ୍ରିକ ବୈଶିଷ୍ଟ୍ୟର ସୂଚନା ଦିଆଯାଇପାରେ । ଯେପରି, ବସ୍ତୁବାଦ କିମ୍ବା ଦ୍ୱାନ୍ଦ୍ୱିକତା । ବିଶେଷତଃ ଏଇ କାରଣରୁ ଯେ ଦୁଇଟିରୁ ଦେଖିବା ସମ୍ଭବପର କି ପ୍ରକାର ଜୀବନଦର୍ଶନରୁ ମାର୍କ୍ସବାର୍ଦର ଉନ୍ମେଷ । ପ୍ରଥମ ପ୍ରସ୍ତାବ, ମଣିଷ ଜଗତକୁ ଯୋଉ ଭାବରେ ବୁଝୁ କି ନବୁଝୁ, ସକଳ ଅବଲୋକନରୁ ସ୍ୱାଧୀନ ଜଗତ ଏକ ଭୂତ ଅସ୍ତିତ୍ୱ । ମଣିଷ ସେଇ ଭୂତସତ୍ତାର ଅଂଶବିଶେଷ । ଜ୍ଞାନ, ସଂସ୍କୃତି, ସମାଜବ୍ୟବସ୍ଥା ଚେତନାରେ ତାକୁ ଯେମିତି ପ୍ରତିଭାତକରୁନା କାହିଁକି, ରୂପଗୁଡ଼ିକ କିନ୍ତୁ ସେଇ ପ୍ରାଥମିକ ବସ୍ତୁସତ୍ତାର ବିବିଧ ପ୍ରତିଫଳନ । ଅର୍ଥାତ୍, ବସ୍ତୁସତ୍ତା ପ୍ରାଥମିକ; ଚେତନା କେବଳ ପ୍ରତିଫଳନ । ଦ୍ୱାନ୍ଦ୍ୱିକତା ଦ୍ୱିତୀୟ ପ୍ରସ୍ତାବ । ତା ବିବେଚନାରେ, ସେଇ ପ୍ରାଥମିକ ବସ୍ତୁସତ୍ତା ଏକ ଜଟିଳ ଅସ୍ତିତ୍ୱ, ନାନାଦି ସ୍ତରବିଶିଷ୍ଟ; ସେଗୁଡ଼ିକର ପ୍ରେକ୍ଷିତ ବିବର୍ତ୍ତିତହେଉଚି ଅନୁକ୍ଷଣ; ଯୋଗସୂତ୍ର ବଦଳିଯାଉଚି ନିରନ୍ତର; ପ୍ରକ୍ରିୟାଗୁଡ଼ାକ ଭିତରେ ପରିଲକ୍ଷିତ କିନ୍ତୁ ବୈପରୀତ୍ୟ (କଣ୍ଟ୍ରାଡିକ୍ସନ୍) । ଅର୍ଥାତ୍, ଅସଂଖ୍ୟ ଆନ୍ତଃସମ୍ପର୍କରେ ଗ୍ରଥିତ ବସ୍ତୁଜଗତ ବଦଳିଯାଉଚି ଅନବରତ, ନୂଆ ବସ୍ତୁ ଜନ୍ମନେଉଚି, ପୁରୁଣା ଉଭାଇଯାଉଚି; ବିବର୍ତ୍ତନ ଘଟାଉଚି ବିବାଦ ଓ ବୈପରୀତ୍ୟ; ଅର୍ଥାତ୍, କ୍ରିୟା-ପ୍ରତିକ୍ରିୟା । ପରସ୍ପର ବୀପରୀତ ଅଂଶଗୁଡ଼ିକ ବିଦ୍ଧକରୁଚି ପରସ୍ପରକୁ ସେଇ ବୈପରୀତ୍ୟ କାରଣରୁ । ଗତିଶୀଳ ଓ ଉନ୍ମୋଚନ-ଉନ୍ମୁଖ ଜଗତ ଭିତରେ ଘଟୁଚି ତା ଫଳରେ ଯେତେ ପରିବର୍ତ୍ତନ, ଉଭୟ ପରିମାଣାତ୍ମକ ଓ ଗୁଣାତ୍ମକ; ତେଣୁ ରୂପାନ୍ତର ଆଉ ରୂପାନ୍ତରର ପ୍ରତିକ୍ରିୟା ସମାନୁପାତିକ; ମାନେ, ଭାଙ୍ଗିବା ସାଙ୍ଗକୁ ରହିଚି ଗଢ଼ିବା । ଅନ୍ୟଶବ୍ଦରେ, ରିୟାଲିଟି ଏପରି ବାଗବର୍ଗରେ ବଦଳିଯାଉଚି ଯେ ଲଜିକ୍ ସ୍ପଷ୍ଟକରିପାରୁନାହିଁ ପରିବର୍ତ୍ତନର କାରଣ । ଲଜିକ୍ ପାରୁନାହିଁ ବୋଲି, ଦରକାର ଡାୟଲେକ୍‌ଟିକ୍ ବା ଦ୍ୱାନ୍ଦ୍ୱିକତା । ଦ୍ୱାନ୍ଦ୍ୱିକତା ତେଣୁ ଏକପ୍ରକାର ଲଜିକ୍ । ବସ୍ତୁତାନ୍ତ୍ରିକ-ଦ୍ୱାନ୍ଦ୍ୱିକ ଅଖଣ୍ଡ ଏଇ ମେଦିନୀଦୃଷ୍ଟିରୁ ଅବିଚ୍ଛେଦ୍ୟ ତେଣୁ ଏଇ ଉପଲବ୍ଧି ଯେ, ଜଗତ୍ ଅଜ୍ଞେୟ ହୋଇପାରେନା; ଜଗତକୁ ଜାଣିହେବ । ଜାଣିହେବ, ମାନେ ବୁଦ୍ଧି ଦ୍ୱାରା କରିହେବ ବୋଧଗମ୍ୟ । ଯେପରି, ପୃଥିବୀ ବାସ୍ତବିକ୍ ପଞ୍ଚଭୂତର ସମାବେଶ । ଜାଣିହେବ ତେଣୁ ସମନ୍ୱୟସାଧକ ନୀତିନିୟମର ସଂଗଠନ ମାଧ୍ୟମରେ, କାହିଁକିନା all science would be superfluous if the appearance, the form, and the nature of things

were wholly identical । ଅର୍ଥାତ୍, ସତ୍ୟ ଯେହେତୁ ଅବିଭାଜ୍ୟ, ସତ୍ୟର ଅନ୍ୱେଷଣ ମଧ୍ୟ ଅସରନ୍ତି; ପରମସତ୍ୟ ତେଣୁ ଅଳୀକ ପ୍ରସ୍ତାବ । ସତ୍ୟାନ୍ୱେଷଣର ଯେହେତୁ ଶେଷନାହିଁ, ଇତିହାସଗତିରେ ମଣିଷ ବଢ଼ାଇଚାଲିଚି ନିଜ ଜ୍ଞାନଗରିମା ।

ତା ପଛକୁ ଫିଲଜଫି । ଜଗତଟାକୁ କି ଭାବରେ ଦେଖୁଁ କି ବୁଝୁଁ, ସେଇ ଦେଖିବାବୁଝିବା ଉପରେ ନିର୍ଭରକରେ କି ଭାବରେ ବଞ୍ଚିବୁଁ, ଚିନ୍ତାକରିବୁଁ, କି କର୍ତ୍ତବ୍ୟ-ଅକର୍ତ୍ତବ୍ୟ ସ୍ଥିରକରିବୁଁ । ତାକୁ ଫିଲଜଫି କହିବା ସମୁଚିତ, ମଣିଷ ମାତ୍ରକେ ଯେହେତୁ ଜଣେଜଣେ ଦାର୍ଶନିକ । ଫିଲଜଫର୍ ନହୋଇ ଝରାନାହିଁ; ମାତ୍ର ଜୀବନଦର୍ଶନ ସଚେତନ ନିର୍ବାଚନ ନହେଲେ, ଫିଲଜଫି ପଦବାଚ୍ୟ ହେବନାହିଁ । ସେଚେତନ ମାନେ ଇତିହାସଗତିରେ ଯୋଉଠି ପହଞ୍ଚିଛୁଁ, ସେଇ ସ୍ତରରେ ଜ୍ଞାନବିଜ୍ଞାନ କ୍ଷେତ୍ରରେ ମଣିଷର ଯା ଉତ୍ତରାଧିକାର, ତା ସହିତ ସମ୍ୟକ ପରିଚୟ ସାଙ୍ଗକୁ ବୁଦ୍ଧିପ୍ରୟୋଗରେ ଯୁକ୍ତିପ୍ରବଣତା । ମାର୍କ୍ସଚିନ୍ତା ଏଇ ବ୍ୟଞ୍ଜନାରେ ହିଁ ଫିଲଜଫି । ଅର୍ଥାତ୍, ପାଠ୍ୟପୁସ୍ତକ କି ଶ୍ରେଣୀଗୃହର ବକ୍ତୃତା ନୁହେଁ; ବାସ୍ତବକୁ ଯୁକ୍ତି ସାହାଯ୍ୟରେ କ୍ରମାଗତ ମୁକାବିଲା । ଏକମାତ୍ର ଏଇ ବାଟରେ ବାସ୍ତବ ଓ ଯୁକ୍ତିକୁ ଅଧିବିଦ୍ୟା ବା ମେଟାଫିଜିକ୍ସ ଜଟାଜାଲରୁ ଉଦ୍ଧାର କରାଯାଇପାରେ । ମଣିଷର ସାମାଜିକ ଓ ବୈଦ୍ଧିକ ଅବସ୍ଥାନ ଯେହେତୁ ବଦଳିଯାଉଚି କ୍ରମାଗତ, ବାସ୍ତବ ଓ ଯୁକ୍ତିର ସଂଜ୍ଞା ମଧ୍ୟ ବଦଳିଯିବ ଘନଘନ । ପ୍ରକ୍ରିୟାଟାକୁ ଉପଲକ୍ଷ୍ୟକରି ପଲ୍ ବାରନ୍ ଲେଖନ୍ତି, to define and continuously redefine the meaning of *reason,* to assess and continuously reassess the structure of reality—confronting systematically the one with the other pointing out the shortcomings of the concrete, specific reality in terms of equally concrete, equally specific standards of reason. Remaining realistic because it derives its frame of reference from the study and observation of the attained stage of historical development and retaining the courage to be utopian because it sets its sight on the not yet realised but already visible potentialities of the future. Such intellectual effort performs an overridingly important function: it serves as a guidepost to the next steps in mankind's forward movement । ସେଇକାମ ମାର୍କ୍ସ କରିଦେଇ ଯାଇଚନ୍ତି; କ୍ୟାପିଟାଲ୍ ଭଳି ପରିବ୍ୟାପ୍ତ ବାସ୍ତବକୁ ବିଦ୍ଧକରି ପରବର୍ତ୍ତୀ ପଦକ୍ଷେପ ସକାଶେ ପଥନିର୍ଦ୍ଦେଶକ ଶିଳାସ୍ତମ୍ଭ ପୋତିଦେଇଚନ୍ତି । ରିୟାଲିଟି ମାନେ, ଏଇ ପ୍ରେକ୍ଷିତରେ, ପ୍ରତୀୟମାନତାରୁ ପ୍ରକୃତକୁ ଉଦ୍ଧାର, କ୍ୟାପିଟାଲ୍‌ର ଶରୀରତତ୍ତ୍ୱକୁ ଆବିଷ୍କାର ।

ପୁଣି, ବିପ୍ଳବ । ବିପ୍ଳବ ଏକ ଚେତନା, ନୈତିକ ଚେତନା; ଦାୟବଦ୍ଧତାର ସଂକଳ୍ପ । ମାର୍କ୍ସ କହିବା ପରି, ଦୁନିଆସାରା ମଣିଷ ଲାଞ୍ଛନା ସହ୍ୟକରୁଥିବା ବେଳେ ମୁହଁବୁଲାଇନେବା କେବଳ ବଳଦକୁ ସାଜେ; ମଣିଷ ଯେହେତୁ ବଳଦ ନୁହେଁ, ବିପ୍ଳବ ତାର ପ୍ରଜାତିଗତ ଲକ୍ଷଣ, man's species character; ସେ ଲକ୍ଷଣକୁ ଢାଙ୍କିପକାଇଛି କିନ୍ତୁ ପ୍ରାକ୍-ଇତିହାସ ବା ପ୍ରି-ହିଷ୍ଟ୍ରି । ପ୍ରକୃତ ଇତିହାସ, ପ୍ରାଗୈତିହାସିକତାରୁ ପ୍ରମୁକ୍ତି, ତେଣୁ ସମ୍ଭବପର ସାମ୍ୟବାଦୀ ସମାଜରେ; ସେଠି ପହଞ୍ଚିବାକୁ ଏକମାତ୍ର ରାସ୍ତା ଅବଶ୍ୟ ଶ୍ରେଣୀସଂଗ୍ରାମ । ପର୍ଯ୍ୟାପ୍ତ ଅର୍ଥନୀତିକ ଉନ୍ନୟନ ତାଙ୍କ ଲକ୍ଷ୍ୟ ନୁହେଁ; ଭବିଷ୍ୟତର ଚିତ୍ର ତେଣୁ ସ୍ୱପ୍ନସଦୃଶ । ସ୍ୱପ୍ନ କିନ୍ତୁ ସଫଳ ହୋଇନାହିଁ; କେବେ ହେବ କେହି ଜାଣେନା, କିନ୍ତୁ ସମରଭୂମିରୁ ପଳାଇଯିବା ବଳଦର ପ୍ରଜାତି-ଲକ୍ଷଣ । ଯୁକ୍ତି ନାହିଁ, ଲଜିକ୍ ନାହିଁ, ଐତିହାସିକ ବିବର୍ତ୍ତନକୁ ବି ପ୍ରତୀକ୍ଷା ନାହିଁ; ଏପରିକି, ନିର୍ବାସନ ପୁତ୍ରଶୋକ ଅନଟନ ଅବହେଳା–କିଛିହେଲେ ଶୀତଳ କରିପାରେନା ସ୍ୱପ୍ନପ୍ରତି ସେଇ ସଙ୍କଳ୍ପକୁ । ଝିଅ ଲରା ଲେଖିଚନ୍ତି, To fight was his idea of happiness ! ସେଇ ଯଦି ମଣିଷର ପ୍ରଜାତି-ଲକ୍ଷଣ, ଯୁଗେଯୁଗେ ଜନ୍ମହେବେ ବିପ୍ଳବୀ, ଏଠି-ସେଠି-ସବୁଠି;.... 'any moralising from safe distance is offensive' ! ଜନସାଧାରଣ ଓ କ୍ଷମତା ମଧ୍ୟରେ ଯଦି ପ୍ରତିରୋଧ ତିଆରିହୁଏ, ବିପ୍ଳବୀ ରହିବ ଜନସାଧାରଣଙ୍କ ସପକ୍ଷରେ ନିଃସର୍ତ୍ତ ଓ ନିରାପତ୍ତାହୀନ; ଅର୍ଥାତ୍, ଗଣଆନ୍ଦୋଳନ ବାହାରେ ବିପ୍ଳବ ହୁଏନା, ଆଉ ଗଣଆନ୍ଦୋଳନ ସମ୍ଭବପର ମଣିଷ ଯଦି ବୁଝିପାରେ ସାମୂହିକ ନିର୍ଯାତନା ମୂଳରେ କର୍ମରତ କି ପ୍ରକାର ସ୍ୱାର୍ଥ ବା କ୍ଷମତା । ଅନ୍ୟ ଶବ୍ଦରେ, ବିପ୍ଳବ ମାନେ ରାଜନୀତି; ବିଜ୍ଞାନ ନୁହେଁ କି ଦର୍ଶନ ନୁହେଁ, ଲଜିକ୍ ନୁହେଁ କି ଯୁକ୍ତି ନୁହେଁ । ରାଜନୀତିର ଅନୁଶାସନ ମାନିବାକୁ ପଡ଼ିବ ସେଠି ବିଶୁଦ୍ଧ ବୁଦ୍ଧିବାଦକୁ । ତତ୍ତ୍ୱଟାକୁ ହୁଏତ ଆକ୍ଷରିକ ଅର୍ଥରେ ବୁଝିଥିଲେ ଷ୍ଟାଲିନ୍ ! ମାତ୍ର ବିପ୍ଳର ପ୍ରେରଣା ଗୋଟାପଣେ ଏକ ରାଜନୀତିକ ଦାୟବଦ୍ଧତା, ଇଣ୍ଟେଲେକ୍‌ଚୁଆଲ୍ ପ୍ରସ୍ତୁତି ଛଡ଼ା ପରିଣତି ଲାଭକରେନା; ସେ ପରିଣତି ଯଦି କାର୍ଯ୍ୟକ୍ଷେତ୍ରରେ ପରୀକ୍ଷିତହୁଏ, ଗଣଆନ୍ଦୋଳନ ହିଁ ସେଇ କାର୍ଯ୍ୟକ୍ଷେତ୍ର ଯୋଉଠି ଚେତନାର ପ୍ରତିନିଧିତ୍ୱକରେ ମେଧା ଉର୍ଦ୍ଧ୍ୱରେ ଆବେଗ, ଯୋଉ ଆବେଗ ଭିତରେ ସମ୍ଭାବ୍ୟ ପରାଜୟର ଗ୍ଲାନି ସ୍ଥାନପାଏନା, ସ୍ଥାନପାଏନା ସୁବିଧାବାଦ ସହିତ ଆପୋଷ; ଏପରିକି, ମୃତ୍ୟୁଭୟ । ମେଧାବୀ ଯୁକ୍ତିବାଦୀଙ୍କୁ ମନେହେବ ରୋମାଣ୍ଟିସିଜ୍ମ; ମାତ୍ର any moralising from safe distance is offensive ! ତେଣୁ, 'ପ୍ରାକ୍ଟିକ୍ୟାଲ୍' ଲୋକ ବିପ୍ଳବୀ ହୁଏନା, କାହିଁକିନା, ପ୍ରାକ୍ଟିକ୍ୟାଲ୍ ଲୋକ ମାତ୍ରକେ, ମାର୍କ୍ସଙ୍କ ଦୃଷ୍ଟିରେ ଅନ୍ତତଃ, ବଳଦ; ମହତାବ୍‌ଙ୍କ ଦୃଷ୍ଟିରେ ଅବଶ୍ୟ 'ଚତୁରଗୃହସ୍ଥ' ।

ମାର୍କ୍ସବାଦ ଧନତନ୍ତ୍ରକୁ ବିରୋଧକରିଚି ମୁନାଫା ସ୍ତୁପୀକରଣ କି ଶ୍ରମିକଶୋଷଣ କାରଣରୁ ନୁହେଁ କେବଳ; ସବୁଠୁଁ ବଡ଼ କାରଣ, ଧନତନ୍ତ୍ର ଯେହେତୁ ମନୁଷ୍ୟତ୍ୱ ଅପହରଣକରି ମଣିଷକୁ ବଜାରର ପଣ୍ୟରେ ପରିଣତକରେ, ମଣିଷମଣିଷ ମଧ୍ୟସ୍ଥ ସମ୍ପର୍କ ଦେଣାପାଉଣାରେ ପରିଣତହୋଇ ଟଙ୍କାପଇସାକୁ ଜୀବନର ଚରମଲକ୍ଷରେ ରୂପାନ୍ତରିତ କରିଦିଏ । ସମାଜ ଆଉ ସହଯୋଗ ଚାହେଁନା, ଚାହେଁ ପ୍ରତିଯୋଗିତା । ଦୁର୍ବଳ ତେଣୁ ହାରି ଯାଉଥାଏ ଜୀବନସାରା । ଉପସର୍ଗଗୁଡ଼ାକ କିନ୍ତୁ ମଣିଷର ସ୍ୱଭାବଜାତ ନୁହେଁ, ଧନତନ୍ତ୍ର ତାକୁ ଶିଖାଏ ନିଜ ସ୍ୱଭାବ ବିରୋଧରେ ଯୁଦ୍ଧକରିବାକୁ । ଫଳରେ, ବୁଦ୍ଧିବିବେକ, ସ୍ନେହପ୍ରେମ, ତ୍ୟାଗ ତିତିକ୍ଷା, ପ୍ରତିଭା କି ଜ୍ଞାନତୃଷ୍ଣା-କୋଉ ଗୋଟାକହେଲେ ଲାଭକ୍ଷତି ହିସାବରୁ ନିସ୍ତାରପାଏନା । ମାର୍କ୍ସବାଦର ଏ ଆବିଷ୍କାର ଯେହେତୁ ଆମ ଦୈନନ୍ଦୀନ ଅଭିଜ୍ଞତା, ସ୍ରୋତ ବିରୋଧରେ ସନ୍ତରଣ ହୁଏ ଏକମାତ୍ର ପ୍ରତିକାର । ନିଦାନଗୁଡ଼ାକୁ ମାର୍କ୍ସ କହିଚନ୍ତି, the terrible inner sickness of an acquisitive society । ଆତ୍ମାର ଏଇ ଅସୁସ୍ଥତାର ନିରାମୟ, ମାର୍କ୍ସଙ୍କୁ ଲାଗିଚି, ବ୍ୟକ୍ତିଗତ ସମ୍ପତ୍ତିର ବିଲୋପ; ଏବଂ ସେ ବିଲୋପ ସମ୍ଭବପର ଯେହେତୁ ସୋସାଲିଜ୍ମରେ, ସୋସାଲିଜ୍ମକୁ ଚିହ୍ନଟକରିଚନ୍ତି ଶ୍ରେଣୀହୀନ ସମାଜରେ ପହଞ୍ଚିବାକୁ ଆବଶ୍ୟକ ଅଭିସରଣ । ସେ ଚେଷ୍ଟା ଋଷିଆରେ ହୋଇଚି; ନାନାଦି କାରଣରୁ ସଫଳହୋଇନାହିଁ, ଭାରତକୁ ସୋସାଲିଜ୍ମ ଆସିନାହିଁ; ବରଂ ଧନତନ୍ତ୍ର ସାମ୍ରାଜ୍ୟରେ ନିମଜ୍ଜିତହେବାକୁ ଆକୁଳହେଉଚି ଶାସକଶ୍ରେଣୀ । ଅବଶ୍ୟ, ସମାଜତନ୍ତ୍ରର ଯୋଉ ଗଠନତନ୍ତ୍ର କଳ୍ପନାକରିଚନ୍ତି ମାର୍କ୍ସ ତା ମୂଳଦୁଆକୁ କହିଚନ୍ତି 'ନେସେସିଟି'; ଅର୍ଥାତ୍ ଯା ନପାଇଲେ ଜୀବନଧାରଣ ବିପନ୍ନହୁଏ; ମୂଳଦୁଆ ଉପରିସ୍ଥ ଗଢ଼ଣକୁ କହିଚନ୍ତି 'ଫ୍ରୀଡମ୍'; ଅର୍ଥାତ୍ ଜୀବନନିର୍ବାହର ନିତ୍ୟାବଶ୍ୟକ ମେଣ୍ଟିଗଲା ଉତାରୁ ଅନ୍ତରର ଆବେଗରୁ ଯୋଉ କାମ ଉତ୍ସାରିତହୁଏ, ଯେପରି ଆବିଷ୍କାର, ଉଦ୍‌ଭାବନ, ସାହିତ୍ୟ, ସଂଗୀତ, ଗଣିତ, କାରୁକଳା, ପର୍ଯ୍ୟଟନ ଇତ୍ୟାଦି । ଶାସକଶ୍ରେଣୀର ଅବସ୍ଥାନ ମୂଳଦୁଆ ଉପରିସ୍ଥ ଏଇ ପରସ୍ତରେ । ଧନତନ୍ତ୍ରର ବିଶ୍ୱାୟନରେ ଅଂଶୀଦାର ହେବାକୁ ବ୍ୟାକୁଳହେଲେ ବି, ଏମାନେ ଭୁଲିଯାଉଚନ୍ତି ଯେ ୧୯୪୭ ପୂର୍ବରୁ ମଧ ଗ୍ଲୋବାଲାଇଜେସନ୍ ଅଙ୍ଗେନିଭାଇଚି ଭାରତ । ସେ ବିଶ୍ୱାୟନକୁ କୁହାଯାଉଥିଲା ଇମ୍ପିରିୟାଲିଜ୍ମ ବା ସାମ୍ରାଜ୍ୟବାଦ; ତା ମାର୍କେଟ୍ ବି ବାନ୍ଧିଥିଲା ଭାରତକୁ ପୃଥିବୀ ସାଙ୍ଗରେ; ମାତ୍ର ଆମେ ତା ବିରୋଧରେ ଲଢ଼ିଥିଲୁଁ, କାହିଁକିନା, କ୍ୟାପିଟାଲିସ୍ମର ଗଢ଼ଣକୁ ସଂହତିଦିଏ ଯୋଉ ଲଜିକ୍, ତାଆରି ଅମୋଘ ବିଧାନରେ ଇଂଲଣ୍ଡରେ ଶିଳ୍ପବିପ୍ଳବ ଘଟୁଥିଲା ଭାରତରୁ ପୁଞ୍ଜିନିଷ୍କାଷନକରି, ଇଂଲଣ୍ଡର ଉନ୍ନତି ମାନେ

ବୁଝାଉଥିଲା ଭାରତର ଅବନତି । ସ୍ୱାଧୀନତା ପାଇଲୁଁ ସତ, ବିଦେଶୀଙ୍କ ଜାଗାରେ ଯୋଉ ଦେଶୀ ସରକାର ଆସିଲେ, ଶ୍ରେଣୀଚରିତ୍ରରେ କିନ୍ତୁ ପ୍ରାୟ ଅଭିନ୍ନ; 'କ୍ଷମତା ହସ୍ତାନ୍ତର' କଥାଟା ତେଣୁ ତାତ୍ପର୍ଯ୍ୟପୂର୍ଣ୍ଣ, କାହିଁକିନା, ଦେଶର ଆର୍ଥ-ସାମାଜିକ ଗଢ଼ଣ ସାଙ୍ଗକୁ ରାଷ୍ଟ୍ର ଓ ଅମଲାତନ୍ତ୍ରର ଗଢ଼ଣ ରହିଚି ଅକ୍ଷୁର୍ଣ୍ଣ । ତେଣୁ ସ୍ୱାଧୀନତା ଆସିବା ଉତାରୁ ଆତ୍ମନିର୍ଭର ହେବାକୁ ଯେତେ ପ୍ରକାର ପ୍ରକଳ୍ପ ହାତକୁ ନିଆଗଲା, ପରିଣତି ହୋଇଚି ରାଷ୍ଟ୍ରସମର୍ଥିତ ଭାରତ-ନିର୍ଦ୍ଦିଷ୍ଟ ଏପରି ଏକ ପୁଞ୍ଜିବାଦୀ ଉନ୍ନୟନ, ଷାଠିଏଦଶକରୁ ତରିଶବର୍ଷ ଧରି ସଂକଟ ପଛକୁ ସଂକଟର ସମ୍ମୁଖୀନହୋଇ ଶେଷକୁ ଯା ୧୯୯୧ ବେଳକୁ ଆତ୍ମସମର୍ପଣ କରିଚି ଗ୍ଲୋବାଲ୍ କ୍ୟାପିଟାଲ ପାଖରେ ।

କୋଉହେଲେ ରାଜନୀତିକ ଦଳ ବା ନେତାକୁ ଦାୟୀକରି ଲାଭନାହିଁ; ରାଜନୀତିକ କର୍ମଧାରା ବୈପ୍ଲବିକ ନହେଲେ ମୌଳିକ ପରିବର୍ତ୍ତନ ଆସିପାରେନା । ମୌଳିକ ପରିବର୍ତ୍ତନ ମାନେ ସମାଜ ଗଢ଼ଣର ଅର୍ଥନୀତିକ ଭିତ୍ତିର ପରିବର୍ତ୍ତନ । ସେ ଭିତ୍ତିକୁ ଗଠିତକରୁଥିବା ଲଜିକ୍‌ର ପରିବର୍ତ୍ତନ । ନିଉଛଣା ଚଷାଭୁଷାଙ୍କ ଲାଗି ଗାନ୍ଧି ଆଖିରୁ ଲୁହଗଡ଼ାଇଥିଲେ, ମାତ୍ର ସ୍ୱାଧୀନତା ଆସିବାଦିନରୁ ନିଃସହାୟ ସେଇ କୃଷକକୁଳ ଠେଲିହୋଇଯାଉଚି ସମାଜର ସୀମାନ୍ତକୁ; ଆଉ ଉତ୍‌ପ୍ରେକ୍ଷା ଭଳି ମନେହେଲେ ସୁଦ୍ଧା ଦେଶର ଉତ୍ତରାଧିକାର ମିଳିଚି ବିରଳା କି ବିରଳାପରି ଲୋକଙ୍କୁ । ଏବଂ ନେହ୍‌ରୁ ଏ ପରିଣାମକୁ 'terrible costs of not changing the existing order' ବୋଲି ବୁଝିଥିବା ସତ୍ତ୍ୱେ, ତାଙ୍କ ସୋସାଲିଷ୍ଟିକ୍ ପ୍ୟାଟେର୍ଣ୍ଣ ଅବ୍ ସୋସାଇଟି, କାର୍ଯ୍ୟକ୍ଷେତ୍ରରେ, ପରିଣତହୋଇଚି ଭାରତ-ନିର୍ଦ୍ଦିଷ୍ଟ କ୍ୟାପିଟାଲିଜ୍ମରେ । ସ୍ୱାବଲମ୍ବନର ଜାତୀୟ ପରିକଳ୍ପନା ଭୁଷୁଡ଼ିପଡ଼ିଚି ସମସ୍ତଙ୍କ ଅଲକ୍ଷ୍ୟରେ । ଦେଶ ସ୍ୱାବଲମ୍ବୀ ହୋଇନାହିଁ କି ଲୋକ ସ୍ୱାବଲମ୍ବୀ ହୋଇନାହାନ୍ତି । ଯା ହୋଇଚି, ତା ଜନସାଧାରଣଙ୍କ ଦାରିଦ୍ର୍ୟର କ୍ରମପ୍ରସାର ଆଉ ଶାସକଶ୍ରେଣୀର ଜୀବନଶୈଳୀରେ ଭୋଗବାଦର ଅବାରିତ ଉର୍ଦ୍ଧ୍ୱଗତି । ଶାସକଶ୍ରେଣୀ ସେଥିପାଇଁ ଭବିଷ୍ୟତ ସମ୍ବନ୍ଧରେ ନିସ୍ପୃହ ଯେତିକି ଭୟଭୀତ ତତୋଧିକ । ଜାତିର ମୁଖ୍ୟସ୍ରୋତରେ ମିଶିଯିବାପାଇଁ ସେଥିପାଇଁ ସୀମାନ୍ତବାସୀଙ୍କୁ ବାରମ୍ବାର ଆହ୍ୱାନ, କିନ୍ତୁ 'ମୁଖ୍ୟସ୍ରୋତ' ତ ଖାଅ-ପିଅ-ମଉଜକର ଭଳି ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟାଚାର-ପ୍ରବଣ, ସାମ୍ପ୍ରଦାୟିକ, ଅପରାଧଲିପ୍ତ, ଅମାର୍ଜିତ ଅଶିକ୍ଷିତ ପଟୁଆର ଯା ଲୁମ୍ପେନ୍ କ୍ୟାପିଟାଲିଷ୍ଟିକ୍ ଡିଭେଲପ୍‌ମେଣ୍ଟର ଉପଜାତ । ତାକୁ ଅପ୍ରକଟ କରିବାକୁ କ୍ଷମତାସୀନ ଗୋଷ୍ଠୀ କପଟ ଦେଶାତ୍ମବୋଧକୁ ବାଡ଼େଇପିଟି ଉଠାଇବାକୁ ଚେଷ୍ଟାକରୁଚି; ଯେପରି, ଦାଣ୍ଡି ଅଭିଯାନର ପୁନରାଭିନୟ, ସିପାହୀବିଦ୍ରୋହର ଜୟଜୟକାର, ପାର୍ଲାମେଣ୍ଟରେ ଦ୍ୱିତୀୟ ସ୍ୱାଧୀନତାସଂଗ୍ରାମ ସକାଶେ ବଜ୍ରନିନାଦ । ସେ ସଂଗ୍ରାମ

କୁଆଡେ ଅର୍ଥନୀତିକ ସ୍ୱାଧୀନତା ଲାଗି ଜନଗଣଙ୍କ ସଂଗ୍ରାମ। ତା ହେଲେ, ପ୍ରଥମ ସ୍ୱାଧୀନତା ସଂଗ୍ରାମର ଉଦ୍ଦେଶ୍ୟ କଣ ଅନର୍ଥନୀତିକ ? ଆଉ, ପରବର୍ତ୍ତୀ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟରେ ଜନଗଣ ଅବା କରୁଥିଲେ କଣ ?

ଅନ୍ୟ ଶବ୍ଦରେ, ସୋସାଲିଷ୍ଟିକ୍ ପ୍ୟାଟର୍ଣ କି 'ସ୍ୱଦେଶୀ', ସ୍ଲୋଗାନ୍‌ର ଭାଷା ଯା ହେଉ, କ୍ୟାପିଟାଲିସ୍ମ 'ଗ୍ଲୋବାଲ୍' 'ନ୍ୟାସନାଲ୍' ଯୋଉ ବେଶରେ ଆସୁ, ଭାରତୀୟ ଜନଗଣ ନିଜ ଜୀବନସମସ୍ୟାର ସମାଧାନ ଖୋଜିପାଇବେ ନାହିଁ । ଶାସକବର୍ଗ ବୁଝାଉଚନ୍ତି, ବିଦେଶୀପୁଞ୍ଜି, ସମାଜର ଉପରିସ୍ଥ ଦଶଶତାଂଶ ଲୋକଙ୍କୁ ପ୍ରତ୍ୟକ୍ଷଭାବେ ଉପକୃତ କରୁଥିଲେସୁଦ୍ଧା, ଯୋଉ 'ଟ୍ରିକ୍‌ଲଡାଉନ୍ ଇଫେକ୍ଟ' ଅର୍ଥନୀତିରେ ସୃଷ୍ଟିହେବ, ସମଗ୍ର ଜନସାଧାରଣ ତା କଲ୍ୟାଣରୁ ଆଉ ଗରିବହୋଇ ରହିବେନାହିଁ । ଗାଲ୍‌ବ୍ରେଥ୍ ଏ ଯୁକ୍ତିକୁ କହିଚନ୍ତି, ଘୋଡ଼ାକୁ ଦାନାଖୁଆଇ ଜଗିବସିବା ଭଳି; ଦାନାରୁ ଖୁଦ ଯଦି ଖସି ପଡ଼ିଯାଏ, ଚଢ଼େଇ ଉପାସ ରହିବେନାହିଁ । ଅବଶ୍ୟ, ପରିସଂଖ୍ୟାନ ପେଶ୍‌କରି 'ଗ୍ରୋଥ୍‌ରେଟ୍' କଥା ବି କୁହାଯାଉଚି, ସାଧାରଣଲୋକଙ୍କ ଜୀବନମାନରେ ସେ ବୃଦ୍ଧିର ଚିହ୍ନ ଯଦିଓ ଦେଖାଯାଉନାହିଁ । ବ୍ରାଜିଲ୍‌ର ପୂର୍ବତନ ରାଷ୍ଟ୍ରପତି ୱାସିଙ୍ଗ୍‌ଟନ୍‌ରେ କ୍ରମବର୍ଦ୍ଧମାନ ଏଇ ଗ୍ରୋଥ୍‌ରେଟ୍ ବିଷୟରେ ଯା କହିଥିଲେ, ତାର ପୁନରାବୃତି ଦରକାର: the economy is doing fine, the people are not । ଭଲରହିବେ କେମିତି ? ଅର୍ଥନୀତିକୁ ଯଦି ମାର୍କେଟ୍ ଶାସନକରେ ଶ୍ରମଜୀବୀ ଦେହଖଟଣି ଛଡ଼ା ବିକିବେ ସେଠି ଆଉକଣ ? କ୍ୟାପିଟାଲିସ୍ମର ଗଠନଗତ ଲଜିକ୍ ମାର୍କେଟ୍ ଦ୍ୱାରା ପରିଚାଳିତ; ମାର୍କେଟ୍‌ରେ ଯିଏ ଜିତିଯିବ, ହାରିଯିବା ଲୋକଙ୍କ ସଂସ୍ପର୍ଶ ତା ପାଇଁ ସାଂଘାତିକ; ତେଣୁ ଦୂରତ୍ୱ ତିଆରିକରିବ ସାଧାରଣ ଲୋକଙ୍କ ସାଙ୍ଗରେ, ଯା ଭାରତୀୟ ଏଲିଟ୍ କରୁଚି ପ୍ରତିମୁହୂର୍ତ୍ତରେ । ଅଥଚ ସାଂସ୍କୃତିକ ଜଗତର ବଡ଼ପଣ୍ଡାମାନେ ରାଗରେ ଅଗ୍ନିଶର୍ମାହୋଇ ହୁରିଛାଡୁଚନ୍ତି, ବଜାର-ଅର୍ଥନୀତି ଆସିଲା ବୋଲି, ବଜାରର ସଂସ୍କୃତି ବି ପଶିବ ଆମ ଘରଭିତରକୁ ? ଏମାନେ ଜାତୀୟ ସଂସ୍କୃତିର ସରକାରୀ ଜଗୁଆଳୀ; ଜାଣନ୍ତିନାହିଁ ଯେ କାନଧରି ଟାଣିଲେ ମୁଣ୍ଡ ବି ଟାଣିହୋଇ ଆସେ ! ଫ୍ରେଡ୍ରିକ୍ ଜେମିସନ୍ କହିଲା ପରି postmodernism is the cultural logic of late capitalism !

ଏଇ ଅବସ୍ଥାରେ ବାଟ ଦେଖାଇପାରେ ମାର୍କ୍ସବାଦ; ବିକଳ୍ପ ଖୋଜିବାକୁ ସାହାଯ୍ୟ କରିପାରେ; ମାତ୍ର ସୋସାଲିଜ୍ମ ପାଇଯିବେ ବୋଲି ଲୋକଙ୍କୁ ଗ୍ୟାରେଣ୍ଟି ଦେଇପାରେନା, କାହିଁକିନା, the history of all hitherto existing society is the history of class struggle ଲେଖିସାରି, ମାର୍କ୍ସ ତତ୍‌କ୍ଷଣାତ୍ ଯୋଡ଼ିଦେଇଚନ୍ତି, each time ended, either in the revolutionary reconstitution of

society at large or in the common ruin of the contending classes । ଉତ୍ପାଦନର ଅଭୂତପୂର୍ବ ସାଫଲ୍ୟ ପାଇଁ ପ୍ରଶଂସା ମଧ୍ୟ କରିଚନ୍ତି କ୍ୟାପିଟାଲିସ୍ମକୁ; ମାତ୍ର ଦେଖାଇଦେଇଚନ୍ତି ସେଇ ସାଫଲ୍ୟପାଇବାକୁ କ୍ୟପିଟାଲିସ୍ମ କେମିତି ମଣିଷ ଓ ନିସର୍ଗ, ଉଭୟକୁ ଧ୍ୱଂସକରିଚି କ୍ରମାଗତ । ନଷ୍ଟକରିବାର ସେଇ ବିଦ୍ଧିବଦ୍ଧ ଓ ଅପ୍ରତିରୋଧ୍ୟ ପ୍ରବଣତାକୁ ଉପଲକ୍ଷ୍ୟକରି ରୋସା ଲୁକ୍‌ସେମ୍ ବୁର୍ଗ୍ ରଖିଚନ୍ତି ଆମ ଆଗରେ ଗୋଟିଏ ମାତ୍ର ପ୍ରଶ୍ନ: socialism or barbarism ? କ୍ୟାପିଟାଲିସ୍ମ ଯା ପାରିବାକଥା କରିସାରିଚି; ଏକ୍ଷଣି ସେ ଆତ୍ମରକ୍ଷାପ୍ରବଣ । ତାକୁ ଆଗେଇବାକୁ ଦେବା ମାନେ ମଣିଷପ୍ରଜାତିର ଭବିଷ୍ୟତ୍ ଭାବରେ ନୃଶଂସତାକୁ ନିମନ୍ତ୍ରଣ । ସାଫଲ୍ୟ ତେଣୁ ନିର୍ଭରକରିବ ଜନଯୁଦ୍ଧର ଚରିତ୍ର ଉପରେ ।

ସମାଜତନ୍ତ୍ର ବିଷୟରେ ଲେଖିବାବେଳେ ଜନଯୁଦ୍ଧର ଚରିତ୍ର ବିଷୟରେ ଲେଖିବାକୁ ପଡୁଛି, କାହିଁକିନା, କ୍ୟାପିଟାଲିଜ୍ମ ଆଦୌ କୋଉ ନମନୀୟ ସିଷ୍ଟେମ୍ ନୁହେଁ; ଯେହେତୁ ସ୍ୱୟଂଚାଳିତ, ତାର ଅନ୍ତର୍ନିହିତ ପ୍ରବଣତାକୁ ଅସ୍କାର୍ ଲାଙ୍ଗେ କହିଚନ୍ତି ସ୍ପଣ୍ଟେନିୟସ୍ ବା ସ୍ୱତଃସ୍ଫୂର୍ତ୍ତ । ସେଇ ସ୍ୱତଃସ୍ଫୂର୍ତ୍ତତା ଉପରେ ରାଷ୍ଟ୍ର ଯଦି ହସ୍ତକ୍ଷେପ କରେ, ତେବେ ସିଷ୍ଟେମ୍‌ଟା ଅକାମୀ ହୋଇପଡ଼େ । ସେତେବେଳେ ଆହୁରି କଠୋର ହସ୍ତକ୍ଷେପ ଦରକାରହୁଏ ଘନଘନ, ଯେତେବେଳଯାଏଁ ସିଷ୍ଟେମ୍‌ଟା ପୁରାପୁରି ଅଚଳହୋଇ ନପଡ଼ିଚି; ଅର୍ଥାତ୍ ସମାଜତନ୍ତ୍ର ଦ୍ୱାରା ଧନତନ୍ତ୍ରକୁ ଲୋକ ଅତିକ୍ରମ କରିନାହାନ୍ତି । ଲୋକ କି ରାଷ୍ଟ୍ର ଯଦି ହାରିଯାଏ, ଦେଶର ଅବସ୍ଥା ହେବ ପୁନର୍ମୂଷିକୋଭବଃ । ଅର୍ଥାତ୍ ପ୍ରାକ୍-ଧନତାନ୍ତ୍ରିକ ପ୍ରପର୍ଟି-ରିଲେସନ୍ସ ଫେରିଆସିବ । ମାତ୍ର ସ୍ୱାଧୀନ ଭାରତରେ ଦେଖାଯାଉଚି ରାଷ୍ଟ୍ର କ୍ୟାପିଟାଲିସ୍ମର ନିହିତ ପ୍ରବଣତା ଉପରେ ହସ୍ତକ୍ଷେପ କରୁନାହିଁ କିମ୍ବା କରିବାକୁ ଆଗ୍ରହୀ ମଧ୍ୟ ନୁହେଁ । ଏ ପରିସ୍ଥିତିରେ ଜନଯୁଦ୍ଧ ଛଡ଼ା ଗତ୍ୟନ୍ତର ଥାଇପାରେନା; କିନ୍ତୁ ତାର ରଣକୌଶଳ ସତ୍ୟାଗ୍ରହ କି ଭୂଦାନଯଜ୍ଞ ହେଲେ ଚଳିବନାହିଁ । କାହିଁକିନା, କ୍ୟାପିଟାଲିସ୍ମ ଯୋଉ ବାଗ୍‌ବିସ୍ତାର କରିଚି, ଯେପରି ଗଣତନ୍ତ୍ର, ବ୍ୟକ୍ତିସ୍ୱାଧୀନତା, ଫ୍ରିଡମ୍, କୋଉ ଗୋଟାକହେଲେ ସମ୍ଭବପର ନୁହେଁ କ୍ୟାପିଟାଲିସ୍ମର ଅର୍ଥନୀତିକ ଭିତ୍ତି ଅକ୍ଷୁର୍ଣ୍ଣ ରହିଥିବା ପର୍ଯ୍ୟନ୍ତ ।

□□□

# ବସୁଧୈବ କୁଟୁମ୍ବକମ୍ !

ମାନେ, ଗ୍ଲୋବାଲାଇଜେସନ୍ ବା ବିଶ୍ୱାୟନ । କାହାର ବିଶ୍ୱାୟନ ? ପଚାରିଲେ ଉତ୍ତର ମିଳୁନାହିଁ । କିନ୍ତୁ ଦେଶ ସ୍ୱାଧୀନହେବା ପରଠାରୁ ଭାବିବାଚିନ୍ତିବା ଲୋକଙ୍କ ଭିତରେ ଏଭଳି ଆସ୍ଥା ପ୍ରବଳହେଉଥିଲା ଯେ ସଭ୍ୟତାର ଭବିଷ୍ୟତ ସମାଜତନ୍ତ୍ର ଅନୁକୂଳରେ ହିଁ ଗଢ଼ିଉଠୁଚି; ନୂଆ ଶତାବ୍ଦୀ ଆରମ୍ଭରେ କିନ୍ତୁ ଦେଖାଗଲା ବିଶ୍ୱର ମାନଚିତ୍ରରୁ ସମାଜତନ୍ତ୍ର ପ୍ରାୟ ନିଶ୍ଚିହ୍ନ ହୋଇଯାଇଚି । ଚିନ୍‌ରେ ଅବଶ୍ୟ କ୍ଷମତାଦଖଲକରି ରହିଚି କମିଉନିଷ୍ଟ୍ ପାର୍ଟି; ମାତ୍ର ଆର୍ଥିକ ସମୃଦ୍ଧି ଆଉ ସମାଜତନ୍ତ୍ର ସମାର୍ଥକ ନୁହେଁ, କାହିଁକିନା, ବିସ୍ମୟକର ଆର୍ଥିକବିକାଶ ଏକଦା ଚିହ୍ନିତ କରିଚି ସୋଭିଏଟ୍ ଇଉନିୟନ୍‌କୁ କ୍ୟାପିଟାଲିସ୍ମର ପ୍ରତିସ୍ପର୍ଦ୍ଧୀ; ମାତ୍ର ସେଠି ମଧ୍ୟ ସମାଜତନ୍ତ୍ରର ଘଟିଚି ଗଜାମରୁଡ଼ି । ତା ଛଡ଼ା ଖାଲି ଆର୍ଥିକ ଉନ୍ନତି ଯଦି ଏକମାତ୍ର ଅଭୀଷ୍ଟ, ଧନତନ୍ତ୍ରରେ ଦ୍ରୁତ ଉନ୍ନତିର ଦୃଷ୍ଟାନ୍ତ ମଧ୍ୟ ବିରଳନୁହେଁ । ତା ହେଲେ ଯୋଉ ସର୍ବମାନ୍ୟ ଆନ୍ତର୍ଜାତିକ ପ୍ରତିଷ୍ଠାନଗୁଡ଼ିକ ମାଧ୍ୟମରେ ବିଶ୍ୱାୟନର କୃତ୍ୟସୂଚୀ ବାସ୍ତବାୟିତହେଉଚି ଯେପରି ବିଶ୍ୱବ୍ୟାଙ୍କ୍, ଆନ୍ତର୍ଜାତିକ ମୁଦ୍ରାକୋଷ, ବିଶ୍ୱବାଣିଜ୍ୟ ସଂଗଠନ, କାହିଁକି କହୁନାହାନ୍ତି, କର୍ମଯଜ୍ଞର ପ୍ରକୃତ ଲକ୍ଷ୍ୟ ଧନତନ୍ତ୍ରର ବିଶ୍ୱାୟନ ? ଦୁନିଆଯାକ ସମାଜବ୍ୟବସ୍ଥାର ବୁର୍ଜୋୟାକରଣ ? ସମାଜ ପରିବର୍ତ୍ତନ ଲାଗି ରାଷ୍ଟ୍ରର ହସ୍ତକ୍ଷେପ କଦାଚିତ୍ ଅନିବାର୍ଯ୍ୟ ହେଲେସୁଦ୍ଧା, ନିୟମିତ ଅବଲମ୍ବନର ନିଶ୍ଚିତତା ନାହିଁ; ଏବଂ ନାହିଁ ବୋଲି, ହେଗ୍‌ଲ୍ ଯେତେବେଳେ ରାଷ୍ଟ୍ରକୁ ସର୍ବବ୍ୟାଧିର ମହୌଷଧି ମନେକରିଚନ୍ତି, ମାର୍କ୍ସୀୟ ତତ୍ତ୍ୱବିଶ୍ୱରେ ଅଗ୍ରାଧିକାରପାଇଚି ବର୍ଗ୍ଗତର ସଂଗ୍ରାମ । ସେ ସଂଗ୍ରାମ ସମାଜକୁ ବଦଳାଇଦେବା ସଂଗେସଂଗେ ବଦଳାଇଦିଏ ରାଷ୍ଟ୍ରଶକ୍ତିର ଧରଣଧାରଣ । ଅର୍ଥାତ୍, ରାଷ୍ଟ୍ରର ବଳ ସେଠି ଅର୍ଥବଳ ନୁହେଁ; ଖାଲି ଅର୍ଥବଳ ଦ୍ୱାରା କେହି ରାଷ୍ଟ୍ରଶକ୍ତିରେ ଜାଗା ପାଏନା; ସାମାଜିକ ଅବସ୍ଥାନକୁ ସ୍ଥିରକରିଦିଏ ପରିବର୍ତ୍ତନର କର୍ମଯଜ୍ଞରେ ନାଗରିକର ନିର୍ଦ୍ଦିଷ୍ଟ ଭୂମିକା । ଅର୍ଥବଳ ଓ ରାଷ୍ଟ୍ରଶକ୍ତି ଯଦି ଅଙ୍ଗାଅଙ୍ଗୀ ହୁଏ, ଦେଶ ରହିବ; ଥିଲାବାଲା ବି ରହିବେ; କିନ୍ତୁ ସମାଜତନ୍ତ୍ରର ବିଲୋପ ଅବଧାରିତ । ଦେଶର ନବେଶତାଂଶ ଲୋକ ସମାଜର ସୀମାନ୍ତକୁ ନିର୍ବାସିତହେବା ମଧ୍ୟ ଅବଶ୍ୟମ୍ଭାବୀ ।

ତେଣୁ, ବିଶ୍ୱାୟନ ମାନେ, ପ୍ରତିପକ୍ଷ ଅଭାବରେ, ଦୁନିଆର ପୁଞ୍ଜି ଏକାଠି ହେବ, ଦୁନିଆର ଶ୍ରମଜୀବୀ ଏକାଠିହେବେନାହିଁ । ଧନତନ୍ତ୍ରର ମଉଡ଼ମଣି ଯୁକ୍ତରାଷ୍ଟ୍ର ଆମେରିକା ସୁଦ୍ଧା ବିଶ୍ୱାୟନକୁ କ୍ୟାପିଟାଲିସ୍ମ ସାଙ୍ଗରେ ଯୋଡୁନାହିଁ, ଏକମେରୁ ପୃଥିବୀର ଅପ୍ରତିଦ୍ୱନ୍ଦ୍ୱୀ ମହାଶକ୍ତି ହେବାସତ୍ତ୍ୱେ, କାହିଁକିନା ମାର୍ଗାରେଟ୍ ଥ୍ୟାଚର୍ ଯାହାକୁ କହୁଥିଲେ 'ଦେୟାର୍ ଇଜ୍ ନୋ ଅଲ୍‌ଟରନେଟିଭ୍', ତାର ବି ବିକଳ୍ପ ବାହାରିସାରିଲାଣି ଦକ୍ଷିଣ-ଆମେରିକାର ଭେନେଜୁଏଲାରେ; ହ୍ୟୁଗୋ ଚାଭେଜ୍ ଯୋଉଠି ଦେଶବାସୀଙ୍କ ସ୍ୱଚ୍ଛଳତା ଓ ସୁରକ୍ଷାକୁ ନିଶ୍ଚିତ କରିପାରିଚନ୍ତି ମାର୍କିନ୍ ସାମ୍ରାଜ୍ୟବାଦ କିମ୍ୱା ବିଶ୍ୱପୁଞ୍ଜିର ବିନା ସାହାଯ୍ୟରେ । ଏକ୍ଷଣି, ତମାମ ଲାଟିନ୍-ଆମେରିକା ପାଇଁ ଉନ୍ନୟନର ଆଦର୍ଶ କ୍ୟୁବା କିମ୍ୱା ଭେନେଜୁଏଲା । କିନ୍ତୁ ସମଗ୍ର ପଶ୍ଚିମ ଗୋଲାର୍ଦ୍ଧ ଯେତେବେଳେ ଧନତନ୍ତ୍ରରେ ପରିଷିକ୍ତ, ଆଉକୋଉ ଭୌଗୋଳିକ ପରସିରକୁ ଅଧିକାରଭୁକ୍ତ କରିବାକୁ ଚାହୁଁଚି ବିଶ୍ୱପୁଞ୍ଜି ? ଏବଂ କାହିଁକି ?

ଯଦି କୁହାଯାଏ, କଞ୍ଚାମାଲ୍ ଓ ସୁଲଭଶ୍ରମ ସକାଶେ ଚାହୁଁଚି ତଥାକଥିତ ତୃତୀୟବିଶ୍ୱକୁ ତେବେ ଜାପାନ, ଯାର ପ୍ରାକୃତିକସମ୍ପଦ ପଦବାଚ୍ୟ ପ୍ରାୟ କିଛିନାହିଁ, କେମିତି ହୋଇପାରୁଚି ପୃଥିବୀର ଦ୍ୱିତୀୟ ସମ୍ପଦଶାଳୀ ରାଷ୍ଟ୍ର ? ଯଦି କୁହାଯାଏ, ପୂର୍ବତନ ଉପନିବେଶଗୁଡ଼ିକ ଉପରେ ପୁନର୍ବାର ପ୍ରଭୁତ୍ୱ ପ୍ରତିଷ୍ଠା, ଅନ୍ତତଃ ବ୍ରିଟିଶ୍ କଲୋନୀଗୁଡ଼ିକ କ୍ଷେତ୍ରରେ ଦେଖିହେବ, ପ୍ରଭୁରାଷ୍ଟ୍ର ଇଂଲ୍ୟାଣ୍ଡ୍ ଅପେକ୍ଷା ଅନେକେ ଏକ୍ଷଣି ଅଧିକ ଧନୀ ଓ ସମ୍ପନ୍ନ । ବରଂ ଯୋଉ ଛୋଟଦେଶ, ନେପାଳ କି ଇଥିୟପିଆ, ଯିଏ କେବେହେଲେ କଲୋନି ଥିଲେନାହିଁ, ତଥାପି ରହିଚନ୍ତି ଅନଗ୍ରସର ଓ ଦରିଦ୍ର । ଧନ୍ୟତନ୍ତ୍ର ତେବେ କଣ ଗୋଟାଏ ଅସମ୍ପୂର୍ଣ୍ଣ ସିଷ୍ଟେମ୍ ? ଅସମ୍ପୂର୍ଣ୍ଣ ମାନେ ରୂପାନ୍ତର ଘଟାଇବାକୁ ଅକ୍ଷମ । ମାର୍କ୍ସ ଅବଶ୍ୟ ଟ୍ରାନ୍‌ଜିସନ୍ ବା ଅଭିସରଣ କଥା କହିଚନ୍ତି, ମାତ୍ର ସେ ଅଭିସରଣ ଉତ୍ପାଦନର ଏକ ଧରଣରୁ ଆରେକ ଧରଣକୁ ଉତୁରିବା ବାଟରେ ଟ୍ର୍ୟାନ୍‌ଜିସନ୍; ତାକୁ ଧନତନ୍ତ୍ରର transformative power (ସମାଜକୁ ବଦଳାଇଦେବା ସାମର୍ଥ୍ୟ) ସାଙ୍ଗରେ ଯୋଡ଼ିହେବ ନାହିଁ । କାହିଁକିନା, ଜମିଜମା ହରାଇ କୃଷକ ଯେତେବେଳେ କାରଖାନାର ଶ୍ରମିକ ହୁଏ, ଉତ୍ପାଦନଧରଣ ବଦଳିଯିବା ଫଳରେ ହୁଏ; କିନ୍ତୁ ଯିଏ ଜମି ହରାଇଲା, କିନ୍ତୁ ଶିଳ୍ପଶ୍ରମିକ ହୋଇପାରିଲାନାହିଁ, ପରିତ୍ୟକ୍ତ ବା ଅତିରିକ୍ତ ସେଇ ଲୋକଟି ବିଷୟରେ କ୍ୟାପିଟାଲିସ୍ମ ଯଦି ଉଦାସୀନ ରହେ, ଟ୍ରାନ୍ସଫରମେଟିଭ୍ କ୍ଷମତା ଉପରେ ଲାଗିଯିବ ପ୍ରଶ୍ନଚିହ୍ନ । ବିଶେଷତଃ ପରିତ୍ୟକ୍ତ ଲୋକଟି ଉଦ୍‌ବୃତ୍ତମୂଲ୍ୟ ଗଠନପ୍ରକ୍ରିୟା ବାହାରେ ରହିଯାଏ ଯେହେତୁ ବେମାଲୁମ୍ । ଅଥଚ ଲୋକଟି ତ ଧନତନ୍ତ୍ରର ନିଜସ୍ୱ ସୃଷ୍ଟି, ଇତିହାସର ନୁହେଁ । ଅନ୍ୟ ଶବ୍ଦରେ,

ଆର୍ଥସାମାଜିକ ବିବେଚନାରେ, କ୍ୟାପିଟାଲିସ୍ମ ନିଜେ ନିଜକୁ ପୁଷ୍ଟକରିପାରେ, ବଳକା ଲୋକଟା ତାର ଦରକାରନାହିଁ । ଅଥଚ ରାଜନୀତି ହେଉ କି ଆଇଡିୟଲଜି, କ୍ୟାପିଟାଲିସ୍ମକୁ ବାଧ୍ୟକରେ ପରିତ୍ୟକ୍ତ ଲୋକଟି କଥା ବୁଝିବାକୁ । ଅତୀତରେ ବୁଝିନାହିଁ; ବୁଝିନାହିଁ ବୋଲି, କିଏ ଅଷ୍ଟ୍ରେଲିଆ କି କାନାଡା ପଳାଇଯାଇଚି, କିଏ ମରିଯାଇଚି କି ଚୋରଡକାୟତ ହୋଇଚି । ଆଜି କିନ୍ତୁ ସେଭଳି ଉପେକ୍ଷା ସମ୍ଭବପର ନୁହେଁ, ଏବଂ ନୁହେଁ ବୋଲି, ତିଆରିହେଉଚି ପ୍ରାଣଧାରଣ-ଉପଯୋଗୀ ନ୍ୟୁନତମ ବ୍ୟବସ୍ଥା; ଯେପରି, ମାଇକ୍ରୋ-କ୍ରେଡିଟ୍, ସେଲ୍ଫହେଲ୍ପଗ୍ରୁପ୍ ଇତ୍ୟାଦି । ଏବଂ ଏଇ ଦାନଖଇରାତ ତୁଲାଉଚି ପୁଞ୍ଜି ନୁହେଁ କି ଶ୍ରମ ନୁହେଁ, ଉତ୍ପାଦନର ସାଧନ ନୁହେଁ କି ଧରଣ ନୁହେଁ, ଏକମାତ୍ର 'ମାର୍କେଟ୍' । ଏଭଳି ଗୋଟିଏ ଲୋକକୁ ସହରରେ ବୁଲୁଚି ଦେଖି, ଜଣେ ମାର୍କିନ୍ ସମାଜତାତ୍ତ୍ୱିକ ଲେଖିଚନ୍ତି, 'ପେଜାଣ୍ଟ୍ ଇନ୍ ଦ ସିଟି'; ବର୍ଣ୍ଣନା କିନ୍ତୁ ଯଥାର୍ଥ ନୁହେଁ, କାହିଁକିନା, ଏ 'ପେଜାଣ୍ଟ୍' ଟ୍ର୍ୟାନ୍‌ଜିସନ୍‌ରୁ ବାହାରିନାହିଁ, ବଜାର ଭିତରେ ହିଁ ତାର ଅବସ୍ଥାନ । ଅର୍ଥାତ୍, କ୍ୟାପିଟାଲିସ୍ମ ନିଜକୁ ବୈଧ ପ୍ରମାଣକରିବାକୁ ଅଦରକାରୀ ଲୋକଗୁଡ଼ାଙ୍କୁ ପୁନର୍ବାସନ ଯୋଗାଇଦେଉଚି 'ଇନ୍‌ଫର୍‌ମାଲ୍ ସେକ୍ଟର୍', 'ସବ୍‌ସିଷ୍ଟେନ୍ସ ଇକନମି' ଭଳି ଧୂଆଁବାଣ ସୃଷ୍ଟିକରି । ମାତ୍ର କ୍ୟାପିଟାଲ୍‌ର ରହିଚି ନିଜସ୍ୱ ଲଜିକ୍, ବଢ଼ି ନପାରିଲେ ଧ୍ୱଂସ ହୋଇଯିବ । ତେଣୁ ସବ୍‌ସିଷ୍ଟେନ୍ସ ଇକନମି ବି ଭାଙ୍ଗିପଡୁଚି ବେଳକୁ ବେଳ, ସୃଷ୍ଟି-ସ୍ଥିତି-ଲୟ ଭଳି ପାକଚକ୍ର ! ସ୍ପଷ୍ଟତଃ, ଅର୍ଜିତ ଉଦ୍‌ବୃତ୍ତମୂଲ୍ୟର ନିର୍ଦ୍ଧାରିତ ଏକ ଅଂଶ ବଞ୍ଚାଇରଖୁଚି ଏଇ ପ୍ରାଣଧାରଣ ବ୍ୟବସ୍ଥାକୁ; ସେଥିରେ ଘାଟ୍‌ତିହେଲେ ଭାଙ୍ଗିପଡୁଛି ଅନ୍ନଛତ୍ର । ଅଥଚ ମାର୍କ୍ସ ଦେଖିଥିଲେ, କ୍ୟାପିଟାଲିସ୍ମର ଅଭ୍ୟୁଦୟ ଆଗରୁ ପ୍ରାକ୍-ଆଧୁନିକ ଯେତେ ସମାଜ ଇଉରୋପ୍‌ରେ ଥିଲା, ସେଗୁଡ଼ିକର ପ୍ରଥାଗତ ଆର୍ଥସାମାଜିକ ଫ୍ରେମ୍‌ୱର୍କକୁ, ଯେପରି, ପ୍ରିମିଟିଭ୍→ସ୍ଲେଭେରି→ଫିଉଡାଲ୍, କ୍ରମାଗତ ଅଭିସରଣ ଭିତରଦେଇ ପୁଞ୍ଜିସଂଗ୍ରହ ପ୍ରକ୍ରିୟା ତାକୁ ଧୂଳିସାତ୍ କରିଦେଇଚି । ମାତ୍ର ଗ୍ଲୋବାଲାଇଜେସନ୍‌ର ଅଗ୍ରଗତରୁ ଦିଶୁଚି, ଟ୍ର୍ୟାନ୍‌ଜିସନ୍ ଆଉ କାମକରୁନାହିଁ; କରୁନାହିଁ ବୋଲି, ପେଜାଣ୍ଟ୍ ଇନ୍ ଦ ସିଟି, ଭଳି ପ୍ରପଞ୍ଚ ଚଳିତ ଶତାବ୍ଦୀରେ ଆଖିରେ ପଡୁଚି । ଔପନିବେଶିକତାରୁ ମୁକ୍ତହେବା ଉତାରୁ ହା-ହୁତାଶ କରିଛୁଁ, ସମାଜ କାହିଁକି ଫିଉଡାଲ୍‌ରୁ ଅନ୍ୟ ଟ୍ର୍ୟାନ୍‌ଜିସନ୍‌କୁ ଯାଉନାହିଁ ? ଏକ୍ଷଣି ଏକୋଇଶି ଶତକରେ ପହଞ୍ଚି ଦେଖୁଛୁଁ, ପ୍ରଗତିର ଧାରଣା ବଦଳିଯାଇଚି ପୁରାପୁରି, କାହିଁକିନା, କ୍ୟାପିଟାଲିସ୍ମ ଆଉ ଚୀନ୍‌ର ପ୍ରାଚୀର ଭାଙ୍ଗେନା, ବହୁ ଜିନିଷକୁ ରଖିଦିଏ ନିଜ ଆୟତ୍ତ ବାହାରେ, ଏପରିକି ବହୁଜିନିଷ ସୃଷ୍ଟିକରେ ଯା ସାଙ୍ଗରେ ଟ୍ର୍ୟାନ୍‌ଜିସନ୍‌ର ସଂପର୍କ ନାହିଁ । ଅର୍ଥାତ୍, ଅନେକାଂଶରେ ସମାଜ ତାର ଅତୀତକୁ

(ଅନଗ୍ରସରତାକୁ) ସାଙ୍ଗରେ ଧରି ତିଷ୍ଠିରହିଚି, କ୍ୟାପିଟାଲିସ୍ମ ତାକୁ ଛୁଇଁପାରୁନାହିଁ । ବରଂ ସୃଷ୍ଟିରକରୁଚି ନିତ୍ୟନୂତନ ଅନଗ୍ରସରତା । ସେଥିପାଇଁ, ବିଶ୍ୱାୟନର ସମାଲୋଚନା କରିପାରେ କେବଳ ପଲିଟିକ୍ୟାଲ୍ ଇକନମି; ଯେପରି, ସମାଜତତ୍ତ୍ୱ, ଅର୍‌ବାନ୍ ଜିଓଗ୍ରାଫି କିମ୍ବା ଏଥ୍ନଗ୍ରାଫି । ସେମାନେ କହୁଚନ୍ତି, ପୁଞ୍ଜିବାଦୀ ବିଶ୍ୱାୟନ ଫଳରେ ତୃତୀୟବିଶ୍ୱର ବିପୁଳସଂଖ୍ୟକ ମଣିଷ, ଅର୍ଥନୀତି ଦୃଷ୍ଟିରେ ଏକ୍ଷଣି, ସୀମାନ୍ତବାସୀ, ମାର୍ଜିନାଲାଇଜଡ୍; କାହିଁକିନା, ସମାଜର ଯୋଉ ପରିସରରେ ସେମାନେ ଅବରୁଦ୍ଧ ତା informal survivalism । ତେଣୁ ଟ୍ରାନ୍ସଫରମେସନ୍ (ରୂପାନ୍ତର) କରି ନପାରିଲେ, ଧନତନ୍ତ୍ରରେ ଦେଖାଦେବ; ଟ୍ରାନ୍‌ଜିସନ୍ (ଅଭିସରଣ); ଏ ବିଶ୍ୱାସକୁ ବଞ୍ଚାଇରଖିବା କିନ୍ତୁ କଷ୍ଟକର । କଷ୍ଟକର କାହିଁକିନା, କ୍ୟାପିଟାଲିସ୍ମର ମୌଳିକ ଯୋଉ ପରିବର୍ତ୍ତନଘଟୁଚି, ମାର୍କ୍ସବାଦୀବ୍ୟାଖା ତାର କୂଳକିନାରା କରିପାରୁନାହିଁ । କରିହେବନାହିଁ, ମାର୍କ୍ସ ଯେହେତୁ 'କ୍ୟାପିଟାଲିସ୍ମ ଶବ୍ଦଟା ଥରେହେଲେ ବି ବ୍ୟବହାର କରିନାହାଁନ୍ତି; କହିଚନ୍ତି capitalist mode of production । ଯେକୌଣସି ଉତ୍ପାଦନଧରଣର ସର୍ତ୍ତାବଳୀ ତା ବାହାରେ ଥାଏନା; ଥାଏନା ବୋଲି, ସେଇ ଧରଣକୁ ପୁନରୁତ୍ପନ୍ନ କରାଯାଇପାରେ । ମାତ୍ର ବିଶ୍ୱାୟନ ଯୋଉ ଧ୍ୱଂସବଶେଷ ସୃଷ୍ଟିକରୁଚି, ତା କୋଉ ତ୍ପାଦନ-ସର୍ତ୍ତ ନୁହେଁ, ତେଣୁ ପୁନରୁତ୍ପାଦିତ ହୋଇପାରେନା । ହୋଇପାରେନା, କାହିଁକିନା, ଉତ୍ପାଦନ ପାଇଁ ଆବଶ୍ୟକ ସବୁଯାକ ଉପକରଣ / ଉତ୍ପାଦାନ ପୁଞ୍ଜିର ସର୍‌କିଟ୍ ବା ପରିବେଷ୍ଟନ ଭିତରକୁ ଚାଲିଆସିବା ଉତାରୁ, ଯୋଉ ଶ୍ରମଶକ୍ତି ପରିତ୍ୟକ୍ତହୋଇ ବାହାରେ ରହିଗଲା, ସେ ତ ପୁରୁଣା ସମାଜର ଧ୍ୱଂସାବଶେଷ; ପୁଞ୍ଜି ସହିତ ଅସଂପର୍କିତ, କିନ୍ତୁ ରାଜନୀତିରେ ତା ସ୍ଥାନ ଗୁରୁତର । ତାକୁ ପୁନର୍ବାସନ ଦେବାକୁ ଚେଷ୍ଟା କରାଯାଉଚି, ଧନତନ୍ତ୍ର ଯେହେତୁ ପ୍ରମାଣକରିବାକୁ ଉତ୍ସୁକ ଯେ ମୁନାଫା-ସ୍ଫୀତୀକରଣ କାମଟା, ଆଫ୍ଟର୍ ଅଲ୍, ଖରାପ କାମ ନୁହେଁ । କାହିଁକିନା, ଯୋଉ ଉଦ୍‌ବୃତ୍ତମୂଲ୍ୟ ହାତକୁ ଆସୁଚି, ନୂଆ କ୍ୟାପିଟାଲ୍ ତିଆରିପାଇଁ ତାକୁ ପୁରାପୁରି ଉପଯୋଗ ନକରି, ସବ୍‌ସିଷ୍ଟେନ୍ସ ଇକନମିକୁ ଟ୍ରାନ୍ସଫର୍ କରିଦେଉଚି ଧନତନ୍ତ୍ର । ଟ୍ରାନ୍ସଫର୍ ଘଟୁଛି ଅବଶ୍ୟ ପ୍ରତିଷ୍ଠିତ ସରକାର ମାଧ୍ୟମରେ, ଏବଂ ସରକାର ଜରିଆରେ ଉପଯୋଗକୁ କୁହାଯାଉଚି 'ବିକାଶ' ବା ଡିଭେଲପ୍‌ମେଣ୍ଟ, କିନ୍ତୁ ଭୁଲ୍‌ରେ ସୁଦ୍ଧା କେହି କହୁନାହିଁ, ଏଟା 'କ୍ୟାପିଟାଲିଷ୍ଟ୍' ବିକାଶ । ବିଶେଷଣରୁ ମୁକ୍ତହୋଇ ବିକାଶ ଅର୍ଜନକରୁଚି ମାନ୍ୟତା । କିନ୍ତୁ ଦେଶ ସ୍ୱାଧୀନହେବା ସଙ୍ଗେସଙ୍ଗେ ଉନ୍ନୟନର ବିକଳ୍ପ ରାସ୍ତା ମଧ୍ୟ ଚିନ୍ତାକରାଯାଇଥିଲା, ପୂର୍ବ-ଇଉରୋପ ଓ ସୋଭିଏଟ୍ ଇଉନିୟନ୍‌ରୁ ସମାଜତନ୍ତ୍ର ଉଠିଯିବା ଉତାରୁ ସବୁରକମ ଉନ୍ନୟନ କର୍ମସୂଚୀ ଏକ୍ଷଣି ରାଜନୀତିକ

ଚିହ୍ନାୟନରୁ ସଂପୂର୍ଣ୍ଣ ସ୍ୱାଧୀନ । ମାତ୍ର ଭାରତରେ ଯୋଜନାକମିଶନ୍ ବସାଇ ବିକାଶଧାରାକୁ ମୂଳରୁ ଯେମିତି ଅରାଜନୀତିକ କରିଦିଆଯାଇଚି, ସେଭଳି ହୋଇନଥିଲେ, ଖାଲି ଋଷିଆରେ ସମାଜତନ୍ତ୍ରର ବ୍ୟର୍ଥତା କାରଣରୁ ଭାରତୀୟ ଅର୍ଥନୀତି ଭିତରକୁ ବିଶ୍ୱାୟନ ପଶିପାରନ୍ତାନାହିଁ । ପଞ୍ଚବାର୍ଷିକ ପରିକଳ୍ପନା ହେଉ କି ଗ୍ରାମଗୋଷ୍ଠୀ ଯୋଜନା, ମୂଳରୁ ବିଶେଷଜ୍ଞ ଓ ଅମଲାଙ୍କ ଅକ୍ତିଆରରେ ଚାଲୁଚି । ରାଜନୀତି ସ୍ପର୍ଶରୁ ଆର୍ଥିକ ଉନ୍ନୟନକୁ ଏମିତି ଦୂରରେ ରଖିବା ଫଳରେ, ବିଶ୍ୱାୟନ ବି ଧରିଚି ଏକାବାଟ । କିଏ କରୁଚି, କଣପାଇଁ କରୁଚି, ଲୋକଙ୍କର ସେଥିରୁ ଭଲ ହେବ କି ମନ୍ଦ ହେବ, ବୁଝିବା ବାଟଗୁଡ଼ାକ ବି ହୋଇଯାଇଚି depoliticised । ରାଜନୀତିର ଏ ଅପମୃତ୍ୟୁକୁ ବାମପନ୍ଥୀ ଅଟକାଇ ପାରିନାହାଁନ୍ତି । ଅଥଚ ଏସିଆ-ଆଫ୍ରିକାରୁ ଦାରିଦ୍ର୍ୟ ଘୁଞ୍ଚାଇ ନ ପାରିଲେ, ଦେଶଗୁଡ଼ାକ କମିଉନିଷ୍ଟ ହୋଇଯିବେ, ଏଇ ଆଶଙ୍କାରୁ ଆମେରିକାରେ ତିଆରିହୋଇଚି ଉନ୍ନୟନର ପ୍ରଚଳିତ ଡିସ୍‌କୋର୍ସ । ଏକ୍ଷଣି ଆଉ କମିଉନିଜ୍ମକୁ ଡର ନାହିଁ; ମାତ୍ର କ୍ୟାପିଟାଲିସ୍ମ ସର୍‌କିଟ୍-ଅତିରିକ୍ତ ଯୋଉ ଲୋକଗୁଡ଼ାଙ୍କୁ ବେଷ୍ଟନୀ ବାହାରକୁ ଫୋପାଡ଼ିଦେଉଚି, ଯିଏ କୃଷିରେ ନାହିଁ କି ଶିଳ୍ପରେ ନାହିଁ, ତା ପାଇଁ ଅନ୍ନ-ବସ୍ତ୍ର ଯୋଗାଡ଼ କରିନଦେଲେ ତିଆରିହେବ ବ୍ୟାପକ ଗୋଟାଏ ଆତଙ୍କଜନକ ଶ୍ରେଣୀ, ଏଇ ଉପଲବ୍ଧିରୁ ବିଶ୍ୱାୟନ ଏକ୍ଷଣି ଉନ୍ନୟନ ଡିସ୍‌କୋର୍ସକୁ ପୁନର୍ଗଠିତ କରିବାକୁ ତତ୍ପର । ପ୍ରକ୍ରିୟାଟା ଆରମ୍ଭହେଲାଣି ୧୯୭୩ରୁ ଯେତେବେଳେ ତତ୍କାଳୀନ ବିଶ୍ୱବ୍ୟାଙ୍କ୍ ପ୍ରେସିଡେଣ୍ଟ୍ ରବର୍ଟ ମ୍ୟାକ୍‌ନାମାରା ବିଖ୍ୟାତ ଏକ ଘୋଷଣାରେ ନାଇରୋବିରେ କହନ୍ତି, ଆକିଉମ୍ୟୁଲେସନ୍ ଭିତରଦେଇ ନୁହେଁ, ଚରମ ଦାରିଦ୍ର୍ୟକୁ ପ୍ରତ୍ୟକ୍ଷ ଆକ୍ରମଣ ଦ୍ୱାରା ହଟାଇଦେବାକୁ ପଡ଼ିବ । ଉନ୍ନୟନ ଡିସ୍‌କୋର୍ସ ତାକୁ କହିଚି 'ବେସିକ୍ ନିଡସ୍ ଆପ୍ରୋଚ୍' । ଷାଠିଏ ଦଶକରେ ଇନ୍ଦିରାଗାନ୍ଧି କିନ୍ତୁ ଅବିକଳ ଏଇକଥା କହିଥିଲେ, ଯା ଭାରତବର୍ଷର ରାଜନୀତିରେ ରାଷ୍ଟ୍ରର ଚରିତ୍ର ବିଷୟରେ ହୋଇଚି ନୂଆଚିନ୍ତାର ଖୋରାକ, କାହିଁକିନା, ଫର୍ଟିଲାଇଜର୍ କାରଖାନା ବସାଇଲେ ଦାରିଦ୍ର୍ୟ ମୋଚନ ହେବ, ଇନ୍ଦିରାଙ୍କୁ ଲାଗିଚି ଭୋଟ୍‌ଜିତିବା ପାଇଁ ଅବାସ୍ତବ ପ୍ରସ୍ତାବ; ଦରକାର ପ୍ରତ୍ୟକ୍ଷ ଆକ୍ରମଣ, ଗରିବି ହଟାଓ । ନାଇରୋବି ବକ୍ତୃତାରେ ଏଇ ନୀତିପାଇଚି ଓ୍ୱର୍ଲଡ୍ ବ୍ୟାଙ୍କ୍‌ର ସମର୍ଥନ । ମିଶେଲ୍ ଫୁକୋ ଯା'କୁ କହିଚନ୍ତି *governmentality* । କିନ୍ତୁ ଏଇ ବ୍ୟର୍ଥତାରୁ, ଅର୍ଥାତ୍ ଏତେ କଳକାରଖାନା ବସିଲା, କିନ୍ତୁ ଦାରିଦ୍ର୍ୟ ଘୁଞ୍ଚିଲାନାହିଁ, କ୍ୟାପିଟାଲିସ୍ମର ରାଜନୀତିକ ସମୀକ୍ଷା ତିଆରି ହୋଇପାରିଥାନ୍ତା । ଅର୍ଥାତ୍, ଆକିଉମ୍ୟୁଲେସନ୍ ଅବ୍ୟାହତ ରହିଚି, ପବ୍ଲିକ୍ ସେକ୍ଟର୍‌ରେ ହେଉ କି ପ୍ରାଇଭେଟ୍ ସେକ୍ଟର୍‌ରେ, ବିରାଟ ସଂଖ୍ୟକ ମଣିଷ ପାରିବାରିକ ଜୀବିକାରୁ ଉତ୍ଖାତ୍ ହେଉଚନ୍ତି,

କିନ୍ତୁ ନୂଆ ପରିସରରେ ତାଙ୍କୁ ଜାଗାମିଳୁନାହିଁ, ଏଇ ବାସ୍ତବତାକୁ ସାମ୍ନାରେ ରଖି ଧନତାନ୍ତ୍ରିକ ବିକାଶର ର୍‍ୟାଡିକ୍ୟାଲ୍ ସମାଲୋଚନା ଥିଲା ପ୍ରତ୍ୟାଶିତ; ମାତ୍ର ଗଭର୍ନମେଣ୍ଟାଲିଟି ପୁଣି କରିଦେଲା ତାକୁ ଡିପଲଟିସାଇଜ୍‌ଡ୍; ଅର୍ଥାତ୍ ଯୋଉ ଯୋଜନାକମିଶନ୍ କି ବୃହତ୍ ଅମଲା ଆକିଉମ୍ୟୁଲେସନ୍ ଦାୟିତ୍ୱରେ ରହିଲେ, ଫେର୍ ଉଡ଼ାଇଦେଲେ 'ଗରିବି ହଟାଓ' ଝଣ୍ଡା । ଏଇଟା ହୋଇଚି ଶେଷକୁ ଉନ୍ନୟନର ଗ୍ଲୋବାଲ୍ ଡିସ୍‌କୋର୍ସ । ଆଉ, ଯୋଉ ଲୋକଗୁଡ଼ାକ ହେଲେ କ୍ୟାପିଟାଲିଜ୍ମର ଭିକ୍ଟିମ୍, ପେଟବିକଳରେ କିଏ କୁଆଡ଼େ ଗଲା, ହିସାବ ରହିଲାନାହିଁ । ଦେଶର ବାମପନ୍ଥୀ ରାଜନୀତି ଯେ ଛିନ୍ନମୂଳ ଏଇ ଜନସମଷ୍ଟିକୁ ସଂଗଠିତ କରିପାରୁନାହିଁ ବିଶ୍ୱାୟନ ବିରୋଧରେ, ଆମ ରାଜନୀତି ପକ୍ଷରେ ତା ଅବଶ୍ୟ ଅକ୍ଷମଣୀୟ ବ୍ୟର୍ଥତା । ବିଶେଷତଃ ଏଇ କାରଣରୁ ଯେ ଦାରିଦ୍ର୍ୟମୋଚନ ପ୍ରକଳ୍ପଗୁଡ଼ାକ ଯେ ପ୍ରକୃତ ପ୍ରସ୍ତାବରେ ପଲିଟିକ୍ୟାଲ୍ ମ୍ୟାନେଜ୍‌ମେଣ୍ଟ, ପ୍ରଚ୍ଛନ୍ନ ଏଇ ସତ୍ୟ ରହିଯାଇଚି ଅନାବିଷ୍କୃତ । ପୁଞ୍ଜି ଯୋଉ ଲୋକଙ୍କୁ ବର୍ଜନକରୁଚି, ମାର୍କ୍ସ-କଥିତ ରିଜର୍ଭ ଆର୍ମି ନୁହେଁ, ଉତ୍ପାଦନ-ପ୍ରକ୍ରିୟାରୁ ସେମାନେ ଚିରକାଳପାଇଁ ବହିଷ୍କୃତ । ବାମପନ୍ଥୀ ବୁଝିବା ଉଚିତ ଯେ ବର୍ଜିତ ଏଇ ଲୋକଙ୍କ ସକାଶେ ଅଲଗା ଗୋଟାଏ ସବ୍-ଇକନମି ତିଆରିକରିଦେବା କାମକୁ କୁହାଯାଉଚି ଡିଭେଲପ୍‌ମେଣ୍ଟ । ଅନ୍ୟ ଶବ୍ଦରେ, ଉପନିବେଶୋତ୍ତର ପୁଞ୍ଜିବାଦୀ ସମାଜ ଯୋଉ ଅର୍ଥନୀତି ଅନୁସରଣ କରୁଚି, ସେଥିରେ ରହୁଚି ବିଭାଜନ; ଆକିଉମ୍ୟୁଲେସନ୍ ସକାଶେ ପୁଞ୍ଜିର ନିଜସ୍ୱ ପରିସର, ଯୋଉଠି ପ୍ରଯୁକ୍ତିର ଉନ୍ନତି ଆକିଉମ୍ୟୁଲେସନ୍‌ର ଚାଳିକାଶକ୍ତି; ଆଉ ସବ୍‌ଇକନମି ଯାର ପରିସର ବଞ୍ଚିରହିବାର ନ୍ୟୁନତମ ପ୍ରୟୋଜନ ଦ୍ୱାରା ନିୟନ୍ତ୍ରିତ । ତା ପଛରେ ପୁଞ୍ଜିର ଯୁକ୍ତି ନାହିଁ, ଏକମାତ୍ର ଯୁକ୍ତି ଜୀବନଧାରଣର ଅଧିକାର । ଉଭୟ ଇକନମି ପାଖକୁପାଖ ସକ୍ରିୟ; ଗୋଟେ ପଟରେ ଅପରିହାର୍ଯ୍ୟ 'ଗ୍ରୋଥ୍', ଆରପଟରେ ବର୍ଷକୁ ଶହେଦିନ ମଜୁରିଖଟିବା ବନ୍ଦୋବସ୍ତ । ଏଇ ବାଟରେ ଧନତାନ୍ତ୍ରିକ ବିଶ୍ୱାୟନ ନିଜକୁ ଗ୍ରହଣଯୋଗ୍ୟ କରିବାକୁ ତତ୍ପର । ଦେଖିବା କଥା, ଏ ବ୍ୟବସ୍ଥାର ରାଜନୀତିକ ତାତ୍ପର୍ଯ୍ୟ । ଦେଶୀୟ କ୍ୟାପିଟାଲିଷ୍ଟ୍ ଚାହିଁବେ ସବୁରକମ ନିୟନ୍ତ୍ରଣ ଉଠାଇନେଉ ରାଷ୍ଟ୍ର, କିନ୍ତୁ ଦରକାର ପଡ଼ିଲେ ପୀଡ଼ନ-କ୍ଷମତା ବ୍ୟବହାର କରୁ, ଯେମିତି କଳିଙ୍ଗନଗର କିମ୍ବା ନନ୍ଦୀଗ୍ରାମରେ କରିଚି । ଅଥଚ ୧୯୯୬-୯୭ରୁ ଦେଖାଗଲାଣି, ଗ୍ରୋଥ୍ ହେବ, ମାତ୍ର ବେକାରି ବଢ଼ିବ; କାହିଁକିନା, ପ୍ରଯୁକ୍ତି ଏଭଳି ଉନ୍ନତିକରିଚି ଯେ ଶ୍ରମିକ ସକାଶେ ଆଗଭଳି କାମ ଯୋଗାଇଦେବା ସମ୍ଭବପର ନୁହେଁ । ସରକାର ଏ ଯୁକ୍ତି ମାନିନେଇ କହୁଚି, ତା ହେଲେ ଇନ୍‌ଫର୍ମାଲ୍ ସେକ୍ଟର୍‌କୁ ମଦତ୍ ଦିଆଯାଉ, ସେଇଠି ସମ୍ଭବ ହୋଇପାରେ ବେକାରର ଅନ୍ନସଂସ୍ଥାନ ।

ସନ୍ଦେହ ନାହିଁ, ଏଇ ଇନ୍‌ଫର୍‌ମାଲ୍ ସେକ୍ଟର୍ ବି କ୍ୟାପିଟାଲିଜ୍ମର ସୃଷ୍ଟି, ଏବଂ 'ମାର୍କେଟ୍'ର ଅଙ୍ଗାଙ୍ଗୀ । ଯେପରି, ଆଉଟ୍‌ସୋର୍ସିଙ୍ଗ୍, ସବ୍‌କଣ୍ଟ୍ରାକ୍ଟ ଇତ୍ୟାଦି, ଯା କ୍ୟାପିଟାଲ୍‌ର ସର୍କିଟ୍ ଭିତରେ ବୁଲୁଚି । ମାତ୍ର କ୍ୟାପିଟାଲ୍‌ର ସର୍କିଟ୍ ବାହାରେ ଯୋଉ ବିପୁଳାୟତନ ଇନ୍‌ଫର୍ମାଲ୍ ସେକ୍ଟର୍, ତାର ଅସ୍ତିତ୍ୱ ସପକ୍ଷରେ ଏକମାତ୍ର ଯୁକ୍ତି ଜୀବନଧାରଣର ଅଧିକାର । ଏଇମାନେ ଆକ୍ଷରିକ ଅର୍ଥରେ ସର୍ବହରା । କେବଳ ସରକାରର ଦାୟିତ୍ୱ ନୁହେଁ, ରାଜନୀତିର ମଧ୍ୟସ୍ଥତା ତାଙ୍କପାଇଁ ଜରୁରୀ । କାହିଁକିନା, ଢ଼ୋଁକେ ପି'ଦଣ୍ଡେ ଜୀ, ବ୍ୟବସ୍ଥାରେ ଏତେଗୁଡ଼ା ଲୋକ ସନ୍ତୁଷ୍ଟହୋଇ ରହିବେନାହିଁ; ଆକ୍ୟୁମ୍ୟୁଲେସନ୍‌ର ଆଧିପତ୍ୟକୁ ପ୍ରଶ୍ନକରିବେ, ଯା ସ୍ୱାଭାବିକ ।

କର୍ମହୀନତା ଓ ତଜ୍ଜନିତ ଅସହାୟତାକୁ ବିଶ୍ୱାୟନର ପ୍ରତିଫଳ ନ କହି କ୍ୟାପିଟାଲିଜ୍ମ-ପ୍ରସୂତ କୁ-ପରିମାଣ କହିବା ହୁଏତ ଯୁକ୍ତଯୁକ୍ତ, କାହିଁକିନା, ବିଶ୍ୱବ୍ୟାଙ୍କ୍ କି ଆନ୍ତର୍ଜାତିକ ମୁଦ୍ରାକୋଷ ଯୋଉ ସର୍ତ୍ତାବଳୀ ପ୍ରବର୍ତ୍ତନକରିଚନ୍ତି ଋଣମଞ୍ଜୁର ସକାଶେ, ସେଥିରେ କ୍ୟାପିଟାଲିଜ୍ମ କି ସୋସାଲିଜ୍ମ ଭଳି ଆଇଡିଅଲଜି ସ୍ଥାନ ପାଇନାହିଁ; ପାଇନାହିଁ ବୋଲି, ଚୀନ୍ କି ଭିଏତ୍‌ନାମ୍ ଭଳି ଦେଶ ବିଶ୍ୱାୟନ ଦ୍ୱାରା ଉପକାର ପାଇଚନ୍ତି ଯଥେଷ୍ଟ । ଉପକାର ମାନେ ବିଦେଶୀ ପୁଞ୍ଜି ଓ ରପ୍ତାନି ବାଣିଜ୍ୟ । ବିନିମୟରେ କିନ୍ତୁ ଗ୍ରହଣକରିବାକୁ ପଡ଼ିଚି ରାଷ୍ଟ୍ରର ନିୟନ୍ତ୍ରଣରୁ ଅର୍ଥନୀତିର ନିସ୍ତାର; ଯେପରି ମୁକ୍ତବାଣିଜ୍ୟ ବା ଫ୍ରି ଟ୍ରେଡ୍; ପ୍ରାଇଭେଟାଇଜେସନ୍ ବା ଶିଳ୍ପଉଦ୍ୟୋଗର ବେସରକାରୀକରଣ; ଲିବରାଲାଇଜେସନ୍ ବା ବ୍ୟବସାୟବାଣିଜ୍ୟ କି ଶିଳ୍ପପ୍ରତିଷ୍ଠାନ ପରିଚାଳନା ଉପରୁ ସରକାରୀ ହସ୍ତକ୍ଷେପର ଅପସାରଣ; ଏବଂ ଷ୍ଟ୍ରକ୍‌ଚରାଲ୍ ଆଡ୍‌ଜଷ୍ଟ୍‌ମେଣ୍ଟ୍; ଅର୍ଥାତ୍ ପୂର୍ବତନ ସଂଗଠନଗୁଡ଼ିକୁ ଭାଙ୍ଗିଦେଇ ନୂଆକରି ସଜାଇବା ପାଇଁ ଆବଶ୍ୟକ ଶ୍ରମଜୀବୀଛଟାଇ ସାଙ୍ଗକୁ ଆମଦାନି-ରପ୍ତାନି ଶୁଳ୍କ ଷ୍ଟ୍ରକ୍‌ଚର୍‌ର ପୁନର୍ବିନ୍ୟାସ । ସାଂପ୍ରତିକ ସର୍ତ୍ତ ଅବଶ୍ୟ 'ଗୁଡ୍ ଗଭର୍ଣ୍ଣାନ୍ସ' । ହେଲେସୁଦ୍ଧା, ସର୍ତ୍ତଗୁଡ଼ାକ ଇଉରୋପ-ଆମେରିକା ପ୍ରତି ପ୍ରଯୋଜ୍ୟ ନୁହେଁ । ତଥାକଥିତ ତୃତୀୟବିଶ୍ୱର ସାଧାରଣଲୋକ ସର୍ତ୍ତାବଳୀର ଆର୍ଥସାମାଜିକ ତାତ୍ପର୍ଯ୍ୟ ବୁଝିପାରିବା କଥାନୁହେଁ; ଭାତଡାଲି ଲୁଗାପଟା ଚାଳଚୁଲୀ ଚାକିରିବାକିରି, ଆଉ ଜୀବିକାର ନିରାପତ୍ତା—ଏଇଗୁଡ଼ାକ ତାଙ୍କୁ ବିବ୍ରତକରେ । ବିଶ୍ୱାୟନ ଏଗୁଡ଼ାକର ମୂଳ ଦୋହଲାଇ ଦେଇଚି । ସେଥିପାଇଁ ଚାରିଆଡ଼େ କ୍ଷୋଭ; ଇଉରୋପ-ଆମେରିକାରେ ସୁଦ୍ଧା । କିନ୍ତୁ ପାଠଶାଠରେ ଧୁରନ୍ଧର ଲୋକ ଏ ଅର୍ଥନୀତିକୁ ଚିହ୍ନୁଚନ୍ତି ମାର୍କେଟ୍-ଇକନମି, ଯା କ୍ୟାପିଟାଲିଜ୍ମର ସୃଷ୍ଟି । ମାର୍କେଟ୍ ମାନେ ପ୍ରତିଯୋଗିତା, ପ୍ରତିଯୋଗିତାର ଅଦୃଶ୍ୟ ହାତ ଯୋଉଠି ଦକ୍ଷତାର ପରିମାପକ ଓ ଅଭିଭାବକ, ରାଷ୍ଟ୍ରର ହସ୍ତକ୍ଷେପ ସେଠି ଆବଶ୍ୟକତାର ଅତିରିକ୍ତ। ମାତ୍ର ମୁକ୍ତ-

ପ୍ରତିଯୋଗିତା ଏକ ତାତ୍ତ୍ୱିକ ନିର୍ମାଣ; ବାସ୍ତବ ଜଗତରେ ଦେଖାଯାଏନା; ଯା ଦେଖାଯାଏ, ତା ଏକଚାଟିଆ କାରବାର, ଧନୀ-ନିର୍ଦ୍ଧନ ବିଭେଦ, ସଂପଦ ଓ ସୁଯୋଗର ଅସମ ବଣ୍ଟନ; ଏପରିକି, ତଥ୍ୟ ଓ ତଥ୍ୟପ୍ରଯୁକ୍ତିର ମଧ୍ୟ ଅସମ ବଣ୍ଟନ । ଆଉ, ଦକ୍ଷତାର ଏକମାତ୍ର ମାନଦଣ୍ଡ ଦରମାର ତାରତମ୍ୟ । ଏବଂ ସବୁଠୁଁ ବଡ଼କଥା, ଏଇ ଦୋଷଗୁଡ଼ାକରୁ ମୁକ୍ତ ଗୋଟିଏହେଲେ ବଜାର ପୃଥିବୀରେ କୁତ୍ରାପି ଅଦ୍ୟାବଧି ଦୃଷ୍ଟିଗୋଚର ହୋଇନାହିଁ । ସମାଜତାନ୍ତ୍ରିକ ବଜାରର ଦୋଷ କୁହାଯାଉଚି 'ସର୍ଟେଜ୍' ବା ଅପ୍ରତୁଳତା ଯା ଦୁର୍ନୀତିକୁ ଜନ୍ମଦିଏ; ମାତ୍ର ମୁକ୍ତକଚ୍ଛ କ୍ୟାପିଟାଲ୍ ଯୋଉ ବଜାର ସୃଷ୍ଟିକରେ, ଗ୍ରାହକର ଆଖି ଝଲସାଇଦେଲେ ସୁଦ୍ଧା, କ୍ରୟକ୍ଷମତା ଦେଇପାରେନା ଅଧିକାଂଶ ଲୋକଙ୍କୁ କ୍ୟାପିଟାଲ୍‌ର ସହଚର ଯେହେତୁ ବେକାରତ୍ୱ । ହେଲେସୁଦ୍ଧା ସେଭଳି ବଜାର ମଧ୍ୟ ତୃତୀୟବିଶ୍ୱରେ କୋଉଠି ଗଢ଼ିଉଠିନାହିଁ; ଜମି ଶ୍ରମ ଋଣ ବୀମା ପ୍ରଭୃତି ବହୁ ପଣ୍ୟର ପୂର୍ଣ୍ଣାବୟନ ବିପଣନ ସେଥିପାଇଁ ସମ୍ଭବପର ହୋଇନାହିଁ । ସମସ୍ୟାର ସମାଧାନ କରିପାରେ ଏକମାତ୍ର ରାଷ୍ଟ୍ର । ବିଶେଷତଃ ଚାହିଦା ଅଭାବରେ ତିଆରିହୁଏ ଯଦି ଅଚଳ ଅବସ୍ଥା । ଆଉ, ଦାରିଦ୍ର୍ୟ ସୀମାରେଖା ତଳେ ଯେତେବେଳେ ଦେଶର ଚାଳିଶିଶତାଂଶ ନରନାରୀ, ସଂପତ୍ତିର ପୁନର୍ବଣ୍ଟନ କରିବ କଣ ବଜାର ? ଆନ୍ତର୍ଜାତିକ ମୁଦ୍ରାକୋଷ ଗରିବ ଦେଶଗୁଡ଼ାକ ଉପରେ ଉଦାରୀକରଣ ସର୍ତ୍ତ ଲଦିଦେବା ପଛରେ ତେଣୁ ଅର୍ଥନୀତିର ଯୁକ୍ତିନାହିଁ । ସେହିପରି ଷ୍ଟ୍ରକ୍‌ଚର୍‌ୟାଲ୍ ଆଡ୍‌ଜଷ୍ଟ୍‌ମେଣ୍ଟ; ଅର୍ଥାତ୍ ମୁଦ୍ରାସ୍ଫୀତି ହ୍ରାସ, ବଜେଟ୍ ଡେଫିସିଟ୍ ହ୍ରାସ, କର୍ମଚାରୀ ଛଟାଇ, ସର୍ବକ୍ଷେତ୍ରରେ ପ୍ରାଇଭେଟାଇଜେସନ୍ । ସର୍ତ୍ତଗୁଡ଼ାକୁ ଅକ୍ଷରେଅକ୍ଷରେ ପାଳନକରିବାକୁ ଯାଇ ଆଫ୍ରିକା, ଲାଟିନ୍‌ଆମେରିକା, ଏସିଆ ଓ ପୂର୍ବ-ଇଉରୋପ୍‌ର କିଛିଦେଶ ରାତାରାତି 'ଉନ୍ନତ'ହେବା ପରିବର୍ତ୍ତେ ଗୋଟାକ ପଛକୁ ଗୋଟାଏ କେମିତି ରସାତଳକୁ ଯାଇଚନ୍ତି ଜୋସେଫ୍ ଷ୍ଟିଗଲିଜ୍ ସେ ବୃତ୍ତାନ୍ତ ଶୁଣାଇସାରିଚନ୍ତି । ଯେପରି, ପୂର୍ବ-ଏସିଆର ଛୋଟଛୋଟ କେତେଟା ଦେଶକୁ 'ଶାର୍ଦ୍ଦୁଳ' ଭାବରେ ଚିତ୍ରଣ । ଯେତେବେଳେ ଋଣ ନେଲେ, ତାଙ୍କ ବଜେଟ୍‌ରେ ଡେଫିସିଟ୍ ପ୍ରାୟ ନଥିଲା, ମୁଦ୍ରାସ୍ଫୀତି ବି ଯତ୍‌କିଞ୍ଚିତ୍; ମାତ୍ର ବିଦେଶୀପୁଞ୍ଜି ପାଇଁ ସାହାଣମେଲା କରିଦେବା ସଙ୍ଗେସଙ୍ଗେ ଶାର୍ଦ୍ଦୁଳ ହୋଇଗଲେ ଅଚିରାତ୍ ଶୃଗାଳ । ପୁଞ୍ଜିର ବଜାରକୁ ଉନ୍ମୁକ୍ତକରିଦେବା ଭଳି ଅବସ୍ଥା ତିଆରିହୋଇନଥିଲା ବୋଲି ଏଭଳି ଦୁର୍ଗତି । ସେମିତି, ଋଷିଆରେ ପ୍ରାଇଭେଟାଇଜେସନ୍ । ଆନ୍ତର୍ଜାତିକ ମୁଦ୍ରାକୋଷ ନିର୍ଦ୍ଦେଶରେ ବିରାଟ ବିରାଟ କଳକାରଖାନାକୁ ରାତାରାତି ବିକିଦିଆଗଲା; ବିଶାଳ ସରକାରୀ ଶିଳ୍ପସଂସ୍ଥାକୁ ଉପଯୁକ୍ତ ଦାମଦେଇ କିଣିବା ଭଳି ଟଙ୍କାପଇସା ବେସରକାରୀ କ୍ରେତାଙ୍କ ହାତରେ ନଥିଲା ।

ନ୍ୟାଯ୍ୟ ମୂଲ୍ୟରୁ ଢ଼େର୍ କମ୍ ଦରରେ ଅଯୋଗ୍ୟ ଲୋକଙ୍କ ହାତକୁ ତେଣୁ ଟେକିଦିଆଗଲା; ଘରପୋଡ଼ିରୁ କୁଟାଖିଏ ନ୍ୟାୟରେ ଅମଲା ବି ଦି'ପଇସା ହାତପଇଠ କଲେ; ମାତ୍ର ଯିଏ କିଣିଲେ କାରଖାନା ଚଳାଇବେ କଣ ନା, ଜମିଜମା ଲୁହାଲକଡ଼ ବିକିଦେଇ ଲାଭ ଟଙ୍କାକୁ ନେଇ ଲୁଚାଇଦେଲେ ସୁଇସ୍ ବ୍ୟାଙ୍କ୍‌ରେ, ଆଉ ଗୋଟାକ ପଛକୁ ଗୋଟାଏ ସରକାରୀ ସଂସ୍ଥା ଏ ଭାବରେ ବନ୍ଦହୋଇଯିବା ଫଳରେ ବେକାରସମସ୍ୟା ଧରିଚି ଭୟାବହ ଆକାର । ୧୯୮୯ରେ ଦାରିଦ୍ର୍ୟ ସୀମାରେଖା ତଳେ ଥିଲେ ଦୁଇଶତାଂଶ ଲୋକ, ୧୯୯୭ରେ ହେଲେ ୨୩%; ୧୯୯୦ରେ ଯା ଥିଲା ଜାତୀୟ ଆୟର ପରିମାଣ, ୧୯୯୭ରେ ଅଧାରୁ ତଳକୁ ଖସିଆସିଲା । ଭୟଙ୍କର ଏଇ ଅବନତି କଣପାଇଁ ବରଣକରିବ ତୃତୀୟବିଶ୍ୱ ? ଋସିଆ ଓ ଚୀନ୍ ଉଭୟ କମିଉନିଷ୍ଟ ରାଷ୍ଟ୍ର; ମାତ୍ର ରାଷ୍ଟ୍ରର ବ୍ୟର୍ଥତା ବଞ୍ଚାଇ ରଖିପାରିଲାନାହିଁ ଶକ୍ତିଶାଳୀ ଶିଳ୍ପସମୃଦ୍ଧିକୁ; ଚୀନ୍ ପାରିଲା, ଯେହେତୁ ରାଷ୍ଟ୍ରଯନ୍ତ୍ରର ଭଗ୍ନଦଶା ସେଠି ଅକଳ୍ପନୀୟ । ରାଷ୍ଟ୍ର ହାତରୁ ଅର୍ଥନୀତିର ନିୟନ୍ତ୍ରଣକୁ କାଢ଼ିନେବା ପ୍ରସ୍ତାବ ସବୁରକମ ରାଷ୍ଟ୍ର ପ୍ରତି ଲାଗୁକରିବା ତେଣୁ ଅଯୌକ୍ତିକ । ଅନ୍ୟ ଶବ୍ଦରେ, ବିଶ୍ୱାୟନର ଚାଳିକାଶକ୍ତି ନ୍ୟାୟନୀତି ନୁହେଁ କି ଅର୍ଥନୀତି ନୁହେଁ, ବିଶେଷତଃ ଏଇ କାରଣରୁ ଯେ ଓର୍‌ଲ୍ଡ ବ୍ୟାଙ୍କ୍ ସ୍ୱୀକାରକରୁଚି, Even if these developing countries were to manage to double their *per capita* growth rate, while the industrialised world maintained its, it would take almost a century to close the absolute income gap between them, so great are the differences in capital and technological base of the two groups । କି ପ୍ରତ୍ୟାଶାରେ ତାହେଲେ ବିଶ୍ୱାୟନ ପଛରେ ଗୋଡ଼ାଇଛୁଁ ? ଉତ୍ତର ହୋଇପାରେ କେବଳ ଆଇଡିୟଲଜିକ୍ୟାଲ୍ (ଭାବାଦର୍ଶଗତ), କାହିଁକିନା, ଅର୍ଥନୀତିକ ଅଥବା ନୈତିକ ବାଧ୍ୟତା ଅନୁପସ୍ଥିତିରେ ଆଉକୋଉ ଗତିଦାୟକ କ୍ରିୟାଶକ୍ତି ଅନୁମାନକରିବା ଅସମୀଚୀନ; ବିଶେଷତଃ ସେଣ୍ଟର୍-ପ୍ୟାରିଫ୍ୟାରି ବା କେନ୍ଦ୍ର ପରିଧି ଭଳି ପ୍ରତ୍ୟୟ ସମାଜତତ୍ତ୍ୱରୁ ଯେହେତୁ ଅଚ୍ଛେଦ୍ୟ । ବିଦ୍ୱାନ୍ ତାକୁ ସଂଜ୍ଞାବଦ୍ଧକରିଚନ୍ତି ଏହିପରି: The centre-periphery (or core-periphery) model is a spatial metaphor which describes and attempts to explain the structural relationship between the advanced metropolitan 'centre' and a less developed 'periphery', either within a particular country, or (more commonly) as applied to the relationship between capitalist and developing societies. The former usage is common in political geography,

political sociology, and studies of labor-markets.... In sociology, however, centre-periphery models are most likely to be encountered in studies of economic underdevelopment and dependency and tend to draw on the Marxist tradition of analysis. The use of the centre-periphery model in this context assumes that the world system of production and distribution is the unit of analysis. It also assumes that underdevelopment is not a simple descriptive term that refers to a backward, traditional economy, but rather a concept rooted in a general theory of *imperialism*.... According to the centre-periphery model, underdevelopment is not the result of tradition, but is produced as part of the process necessary for the development of capitalism in the central capitalist countries—and its continued reproduction on a world scale. The theory assumes a central core of capitalist countries, in which the economy is determined by market forces, there is a high organic composition of capital, and wage-levels are relatively high. On the other hand, there is a low organic composition of capital and wage-levels do not meet the cost of reproduction of labour. Indeed, the cost of reproduction of the labour-force may be subsidized by non-capitalist economies, particularly rural subsistence production. Likewise, in peripheral economies, production and distribution may be determined largely by non-market forces such as kinship of patron-client relations. The centre-periphery model thus suggests that the global economy is characterized by a structured relationship between economic centres which, by using military, political, and trade power, extract an economic surplus from the subordinate peripheral countries. One major factor in this is inequality between wage-levels between core and periphery, which make it profitable for capitalist enterprises to locate part or all of their production in underdeveloped regions. The extraction of profit depends on that part of the cost of the reproduction of the labour-force that is not met by wages being met in the non-capitalist sector. Thus, according to proponents of the core-periphery model, the

appearance that capitalism is developing traditional and backward societies by locating enterprises in underdeveloped regions masks the structural relationship by which capital develops and prospers at the expense (or progressive underdevelopment) of non-capitalist economies.... *Oxford Dictionary of Sociology* ।

ଏ କେବଳ ମୁନାଫା ସ୍ଫୀତୀକରଣର ବର୍ଣ୍ଣନା, ଯାହାକୁ ଆକିଉମିଉଲେସନ୍ ଇକନମିକ୍ସ କୁହାଯାଉଚି । ବିଶ୍ୱାୟନର ବିଶ୍ଳେଷଣ କିନ୍ତୁ ମିଳୁନାହିଁ । ଏବଂ ସାମରିକ ବଳ, ବାଣିଜ୍ୟିକ ଓ ରାଜନୀତିକ କ୍ଷମତାର ଉପଯୋଗ ମଧ୍ୟ ବିଶ୍ୱାୟନର ଲକ୍ଷ୍ୟ ନୁହେଁ; ବିଶେଷତଃ ଆଣବିକ ମାରଣାସ୍ତ୍ର ଯେହେତୁ ଇଉରୋପ୍ କି ଆମେରିକାର ଏକାଧିକାରଭୁକ୍ତ ଶକ୍ତି ନୁହେଁ । ରାଜନୀତିକ କ୍ଷମତା ଅତୀତରେ ଯା ବୁଝାଇଚି, ଏକବିଂଶଶତକରେ ଘଟିଯାଇଚି ତାର ବିକେନ୍ଦ୍ରୀକରଣ ଏବଂ ଦୁଇଦୁଇଟା ମହାଯୁଦ୍ଧର ବିଭୀଷିକା ମଧ୍ୟ ବୁଝାଇଦେଇଚି ଊନବିଂଶଶତକର ସାମ୍ରାଜ୍ୟବାଦ ଅଚଳହୋଇଯାଇଚି ଶହେବର୍ଷ ନପୁରୁଣୁ । ପଣ୍ୟ-ଉତ୍ପାଦନ ଆରମ୍ଭହେବା ବେଳରୁ ଉଦ୍‌ବୃତ୍ତ ମୂଲ୍ୟ ବଜାରକୁ ଆସୁଚି, ସେ ବଜାର ଧନତାନ୍ତ୍ରିକ ଅଗ୍ରସର ଦେଶରେ ଥାଉ କି ସମାଜତାନ୍ତ୍ରିକ ସମାଜରେ ଗଢ଼ିଉଠୁ । କି କୌଶଳରେ ତାକୁ ଅଧିକରୁ ଅଧିକତର କରିହେବ, କୋଉହେଲେ ଆଇଡିୟଲଜି (ଭାବାଦର୍ଶ) ନୁହେଁ । ଅଥଚ, ବିଶ୍ୱାୟନ ଗୋଟିଏ ଭିସନ୍ ବା ଦର୍ଶନଶକ୍ତି, ଯେପରି ପ୍ଲାଟୋଙ୍କ *ରିପବ୍ଲିକ୍* ବା ମାର୍କ୍ସଙ୍କ ପ୍ରଲେତାରିଏତ୍‌ର ଏକନାୟକତ୍ୱ । ବାସ୍ତବରେ ପରିଣତ ହୋଇନାହିଁ; ମାତ୍ର ମଣିଷର ମନନକୁ କରୁଚି ଅଦ୍ୟାବଧି ଆଲୋଡ଼ିତ । ବିଶ୍ୱାୟନକୁ ଅନୁରୂପ ଏକ ଭାବାଦର୍ଶ ବୋଲି ଗ୍ରହଣକଲେ, ବୁଝିବାକୁ ପଡ଼ିବ ଯେ ଦୁନିଆଟା ଯେମିତି ଚାଲିଚି, ବିଶ୍ୱାୟନ ଆଣିବ ସେଥିରେ ଯୁଗାନ୍ତକାରୀ ପରିବର୍ତ୍ତନ, ପ୍ରାକ୍-ଇତିହାସରୁ ଇତିହାସକୁ ଅଭିଯାତ୍ରା ପୂର୍ଣ୍ଣତା ପାଇବ । କେନ୍ଦ୍ର-ପରିଧି ମଡେଲ୍‌ରେ ରହିଚି କିନ୍ତୁ ବିଭାଜନର ସୂଚନା, ମୁନାଫା-ନିଷ୍କାସନ ଆଳରେ ନିର୍ବିତ୍ତ ଉପରେ ବଳପୂର୍ବକ ଆଧିପତ୍ୟ । ଆଧିପତ୍ୟର ଇଂରେଜୀ ଡମିନେସନ୍; ଗ୍ରାମ୍‌ସି କହୁଚନ୍ତି, ଶିଳ୍ପୋନ୍ନତ ସମାଜରେ କର୍ତ୍ତୃତ୍ୱକରିବା ସକାଶେ ବଳପ୍ରୟୋଗ କରାଯାଏନା; ନେତୃତ୍ୱ ଦେଇ ସମ୍ମତି ଆଦାୟକରାଯାଏ ଅଧସ୍ତନର; ଆଧିପତ୍ୟର ସେଥିପାଇଁ ହିଗେମନି । ଅର୍ଥାତ୍, ସମାଜରେ ଉତ୍କଟ ଅଭାବ ନଥିଲେ ବି ଆଧିପତ୍ୟ ଷ୍ଟ୍ରକ୍‌ଚର୍ ରହିଚି କେମିତି ଅତୁଟ, କେନ୍ଦ୍ର-ପରିଧି ମଡେଲ୍ ଭେଦକରିପାରେନା ସେ ରହସ୍ୟ । ଅନ୍ୟ ଶବ୍ଦରେ, ଆର୍ଥସାମାଜିକ ଭେଦାଭେଦ ପ୍ରତି କ୍ୟାପିଟାଲିସ୍ମର ପ୍ରାସଙ୍ଗିକତା ଆନୁଷଙ୍ଗିକ ମାତ୍ର । ସେହିପରି 'ଓର୍‌ଲ୍‌ଡ୍-ସିଷ୍ଟେମ୍' ଭଳି ମେଧାବୀ ପ୍ରତ୍ୟୟ;

କ୍ୟାପିଟାଲିସ୍ମ କୁଆଡ଼େ ଜଗତଯାକ ପରିବ୍ୟାପ୍ତ! ଜ୍ଞାନଚର୍ଚ୍ଚା ଭିତରକୁ ଏ ପ୍ରତୀତି ଆଣିଚନ୍ତି ଇମାନୁଏଲ୍ ୱାଲେରଷ୍ଟାଇନ୍; ବକ୍ତବ୍ୟ କିନ୍ତୁ ଖାଲି ଭୌଗୋଳିକ ବିବରଣ; ଅର୍ଥାତ୍, କ୍ୟାପିଟାଲିସ୍ମ ଜାତି-ରାଷ୍ଟ୍ରରେ ସୀମାବଦ୍ଧ ନୁହେଁ, ତାର ବ୍ୟାପ୍ତି ବିଶ୍ୱଜନୀନ । ମାର୍କ୍ସଙ୍କ ଉକ୍ତିର ପ୍ରତିଧ୍ୱନି ମାତ୍ର; କାହିଁକିନା, କ୍ୟାପିଟାଲିସ୍ମର ନିହିତ ପ୍ରାଣଚାଞ୍ଚଲ୍ୟକୁ ମାର୍କ୍ସ ଚିହ୍ନଟକରିଚନ୍ତି ଯେତେବେଳେ, ଇଂଲ୍ୟାଣ୍ଡ ଆଉ ଉତ୍ତର-ଇଉରୋପକୁ ଡେଇଁ ପୁଞ୍ଜି ଯାଇପାରିନାହିଁ ବାହାରକୁ; ଅର୍ଥାତ୍, ସାମନ୍ତତନ୍ତ୍ରର ଅବଶେଷ ତଥାପି ସକ୍ରିୟରହିଚି ବିଶ୍ୱମୟ । ୧୮୪୮ରେ ତେଣୁ ଧନତନ୍ତ୍ରର ର୍‍ୟାଡିକାଲ୍ ଚରିତ୍ର ପ୍ରତି ଆକ୍ଷେପକରି ଲେଖିଚନ୍ତି: All fixed, fast-frozen relations, with their train of ancient and venerable prejudices and opinions, are swept away, all new-formed ones become antiquated before they ossify. All that is solid melts into air, all that is holy is profaned, and man is at last compelled to face with sober senses his real conditions of life and his relations with his kind.... The need of a constantly expanding market for its products chases the bourgeoisie over the whole surface of the globe. It must nestle everywhere, settle everywhere, establish connections everywhere । ଓ୍ୱର୍ଲ୍ଡ ବ୍ୟାଙ୍କ୍ ୧୯୯୬ ପାଇଁ ଯୋଉ ରିପୋର୍ଟ କାଢ଼ିଚି, ଉପକ୍ରମଣିକାରେ ମୁଦ୍ରିତକରିଚି *କମିଉନିଷ୍ଟ ମ୍ୟାନିଫେଷ୍ଟୋ*ର ଏଇ ଅନୁଚ୍ଛେଦ । କେନ୍ଦ୍ର-ପରିଧି କି ଓ୍ୱର୍ଲ୍ଡ-ସିଷ୍ଟେମ୍ ଧାରଣାଗୁଡ଼ିକ ତେଣୁ ପୁଞ୍ଜି-ପ୍ରସାର ପ୍ରକ୍ରିୟାରେ ପରିଲକ୍ଷିତ ସାମାନ୍ୟ ଲକ୍ଷଣ ମାତ୍ର; ବିଶ୍ୱାୟନ ଭଳି ଅସ୍ପଷ୍ଟ ଓ ଅସ୍ୱଚ୍ଛ ପ୍ରତ୍ୟୟର ବିଶ୍ଳେଷଣ ନୁହେଁ ।

ପରିଣତି ଯେ ସାମ୍ରାଜ୍ୟବାଦ ବା ଇମ୍ପିରିଆଲିସ୍ମ, ତା ମଧ୍ୟ ଲେନିନ୍‌ଙ୍କ ଉକ୍ତିର ପ୍ରତିଧ୍ୱନି । ମୂଳରୁ କିନ୍ତୁ ଇମ୍ପିରିଆଲିସ୍ମର ସଂପର୍କ ଏମ୍ପାୟାର୍ ସାଙ୍ଗରେ; ଏବଂ ତୃତୀୟ ନେପୋଲିଅଁଙ୍କ ରାଜନୀତିକ ଓ ସାମାରିକ ଉଚ୍ଚାଭିଳାଷକୁ ଲକ୍ଷ୍ୟରେ ରଖି ୧୮୬୦ରେ ପ୍ରବର୍ତ୍ତିତ । ତହିଁଉତାରୁ ଏସିଆ ଓ ଆଫ୍ରିକାରେ ଉପନିବେଶ ସ୍ଥାପନ ସକାଶେ ଇଉରୋପୀୟ ଶକ୍ତିମାନଙ୍କ ଭିତରେ ପ୍ରତିଯୋଗିତାକୁ କୁହାଯାଇଚି ସମ୍ରାଜ୍ୟବାଦ । ଲେନିନ୍ ତାକୁ ମନୋପଲି କ୍ୟାପିଟାଲିସ୍ମ ଉପରେ ପ୍ରୟୋଗକରିବା ପର୍ଯ୍ୟନ୍ତ ଇମ୍ପିରିଆଲିଜ୍ମ ଥିଲା କଲୋନିଆଲିଜ୍ମର ସମାର୍ଥକ । ପୁଞ୍ଜିବାଦର ଅନ୍ୟତମ ସ୍ତମ୍ଭ ପ୍ରତିଯୋଗିତା, ପ୍ରଥମ ମହାଯୁଦ୍ଧ (୧୯୧୪-୧୮) ବେଳକୁ ଭୁଷୁଡ଼ିପଡ଼ିଚି ଏବଂ ଧନତନ୍ତ୍ରର ଚରିତ୍ର ହୋଇଯାଇଚି ଏକଛତ୍ର; ଏକ୍ଷଣି ଯାହାକୁ କହୁଛୁ ବହୁଜାତିକ ଶିଳ୍ପସଂସ୍ଥା । ଲେନିନ୍ ଦେଖିଚନ୍ତି, ପରିଣତି ଯାଇଚି ପୁଞ୍ଜିର ନିର୍ବିରୋଧ ସଂପ୍ରସାରଣ ଆଡ଼କୁ, ଏବଂ କହିଚନ୍ତି,

ପରିଣତି ପୁଞ୍ଜିବାଦର ଶୀର୍ଷବିନ୍ଦୁ ସାମ୍ରାଜ୍ୟବାଦ । ବିଶ୍ୱାୟନ ଜମାନାରେ ପୁଞ୍ଜିର ଚରିତ୍ର ବଦଳିଯାଇଚି ଆହୁରି ବେଶି କୁହାଯାଉଚି 'ଫିନାନ୍ସ କ୍ୟାପିଟାଲ୍' । ଦଶବର୍ଷ ଆଗରୁ ଯା କଳ୍ପନାକରିହୋଇନାହିଁ, ଏକ୍ଷଣି ନିତ୍ୟନୈମିତ୍ତିକ ଘଟଣା । କମ୍ପିଉଟର୍‌ର ଗୋଟାଏ ବୋତାମ ଟିପିଦେଲେ କୋଟିକୋଟି ଡଲାର୍ ଆଖିପିଛୁଳାକେ ଯୁଆଡ଼େ ଇଚ୍ଛା ସିଆଡ଼େ ଚାଲିଯାଇପାରୁଚି । ତା ସହିତ ମୁନାଫା ପୁଞ୍ଜିଭବନର ସଂପର୍କ ଅଚ୍ଛେଦ୍ୟ ହେଲେ ବି, ବିଶ୍ୱାୟନ ଭଳି ଦୂରକଳ୍ପୀ ଭିସନ୍‌ର ଉପଜାତ ବୋଲି କହିହେବନାହିଁ । ବରଂ ଜୋସେଫ୍ ସୁମ୍ପିଟର୍ ସାମ୍ରାଜ୍ୟବାଦୀ ପ୍ରବଣତାକୁ କହିଚନ୍ତି ଶିଳ୍ପବିପ୍ଳବ-ପୂର୍ବବର୍ତ୍ତୀ (କ୍ୟାପିଟାଲିସ୍ମ-ପୂର୍ବବର୍ତ୍ତୀ) ଅଭିଜାତଶ୍ରେଣୀର ଅମାର୍ଜିତ ମାନସିକତା; କାହିଁକିନା, ବଜାର-ପ୍ରସାର ସକାଶେ ଦରକାରଥିଲା ସାମ୍ରାଜ୍ୟବାଦ କେବଳ ପ୍ରାକ୍-ପୁଞ୍ଜିବାଦୀ ସମାଜରେ । ଲେନିନ୍ ସେମିତି ଭାବିଚନ୍ତି, ସାମ୍ରାଜ୍ୟବାଦ ଶେଷହେବା ମାନେ କ୍ୟାପିଟାଲିସ୍ମର ଚିରତର ଅବସାନ । ଅନ୍ୟ ଶବ୍ଦରେ, ଆଜି ଯାହାକୁ ଇମ୍ପିରିଆଲିଜ୍ମ କୁହାଯାଉଚି, ତା ସହିତ ଅର୍ଥନୀତି (କ୍ୟାପିଟାଲ୍)ର ସିଧାସଳଖ ଯୋଗାଯୋଗ ହେଖିହେବନାହିଁ, ଯେପରି ଦେଖିହୋଇନାହିଁ ପାରସ୍ୟ ବା ରୋମାନ୍ ସାମ୍ରାଜ୍ୟବେଳେ; ଅଥବା ସୋଭିଏଟ୍ ଇଉନିୟନ୍ ସହିତ ୧୯୯୦ ପର୍ଯ୍ୟନ୍ତ ପୂର୍ବ-ଇଉରୋପର ସଂସର୍ଗରେ କିମ୍ବା ଲାଟିନ୍-ଆମେରିକାର ରାଜ୍ୟଗୁଡ଼ିକ ସହିତ ଯୁକ୍ତରାଷ୍ଟ୍ରର କାରବାରରେ ।

ବିଶ୍ୱାୟନକୁ ଭାବାଦର୍ଶ କହୁଚି, କାହିଁକିନା, ମୂଳତଃ ଏପରି ଏକ ପ୍ରପଞ୍ଚ ଯାର ଚେର ରହିଚି 'ଆଇଡିଆ'ରେ, ସେ ଆଇଡିଆ ରାଜନୀତି ସଂସ୍କୃତି କିମ୍ବା ଫିଲଜଫିରୁ ଆସିପାରେ, କିମ୍ବା ତିନିଟାଯାକ ଉପର ସଂଶ୍ଳେଷ ମଧ୍ୟ ହୋଇପାରେ, ଯେପରି ମାର୍କ୍ସଚିନ୍ତାରେ ରାଜନୀତି ଓ ଅର୍ଥନୀତି । ମାତ୍ର *ଜର୍ମନ୍ ଆଇଡିୟଲଜି* ରେ ମାର୍କ୍ସ କହିଚନ୍ତି, ନିଜେ କାହିଁକି ହେଗ୍‌ଲଙ୍କ ଭଳି ଭାବବାଦୀ ନୁହେଁ, ଏବଂ କାହିଁକି ଏତେକାଳ ହେଗ୍‌ଲଙ୍କ ଆଇଡିଆଗୁଡ଼ିକ ମୁଗ୍ଧକରି ତାଙ୍କୁ ନିଶ୍ଚେତନ କରିଦେଇଥିଲା । ଅର୍ଥାତ୍ ଭାବବାଦ ଯେ ଯୁକ୍ତି ନୁହେଁ, ବରଂ– ଆଇଡିଆ ହିଁ ଇତିହାସର ଚାଳିକାଶକ୍ତି ଏକଥା ଯେହେତୁ ଅପ୍ରତ୍ୟକ୍ଷ, ରହିଯାଇଚି ଚେତନାର ଅନ୍ତରାଳରେ, ଏବଂ ସେଥିପାଇଁ, ଶୁଦ୍ଧ ଚୈତନ୍ୟ ନୁହେଁ, ଆଇଡିୟଲଜି ମାତ୍ର । ଶୁଦ୍ଧ ଚୈତନ୍ୟକୁ ଦିଶୁଚି, ଇତିହାସ କୋଉ ନିଗୂଢ଼ ରହସ୍ୟ ନୁହେଁ, ରକ୍ତମାଂସ ମଣିଷର ପ୍ରତ୍ୟକ୍ଷ ଜୀବନଯାତ୍ରା, ପ୍ରକୃତ ପ୍ରସ୍ତାବରେ, ଶ୍ରେଣୀସଂଗ୍ରାମ । ଏ ଉପଲବ୍ଧି ଇଣ୍ଟେଲେକ୍‌ଚୁଆଲ୍ ମନକୁ ଛୁଇଁନାହିଁ, କାହିଁକିନା, ଯୁଗଧର୍ମ ପ୍ରଭାବରେ ଯୋଉ ଆଇଡିଆଗୁଡ଼ାକ ପ୍ରଭାବଶାଳୀ, ତାର ଆବେଦନ ମେଧାବୀକୁ ମୁଗ୍ଧକରିଚି; ଅଥଚ ପ୍ରତି କାଳଖଣ୍ଡରେ ଆଧିପତ୍ୟକରୁଥିବା ଆଇଡିଆ ସମକାଳର ଶାସକଶ୍ରେଣୀର ହିଁ ଆଇଡିଆ । ଅର୍ଥାତ୍, ସେ ଆଇଡିଆ

ଏପରିସବୁ ଜିନିଷକୁ ନୟନ ସମ୍ମୁଖରୁ ହଟାଇଦିଏ, ଯା ଶାସକଶ୍ରେଣୀର ସ୍ୱାର୍ଥାନୁକୂଳ ନୁହେଁ । ପ୍ରତୀୟମାନ ମନେହୁଏ ପ୍ରକୃତ । ମାର୍କ୍ସ ପ୍ରତୀୟମାନର ପ୍ରତିନିଧି ଭାବରେ ଉପସ୍ଥାପିତକରିଚନ୍ତି କୁହୁଡ଼ି ଭଳି ଧୂଆଁଳିଆ ଧର୍ମକୁ, ଯା ଜନସାଧାରଣଙ୍କ ସକାଶେ ସର୍ବବିଘ୍ନର ବିଶଲ୍ୟକରଣୀ, ....in that world the productions of the human brain appear as independent beings endowed with life and entering into relations with one another and the human race । ଅନ୍ୟ ଶବ୍ଦରେ, ବିଶ୍ୱାୟନ ଯଦି ଶାସକଶ୍ରେଣୀର ଆଇଡିଆ, ଧରିନେବାକୁ ହେବ ଭ୍ରାନ୍ତଚୈତନ୍ୟ, ଯାର ଅନ୍ୟ ନାମ ଆଇଡିୟଲଜି । ଅନ୍ୟଥା, ବିଜ୍ଞାନ-ପ୍ରଯୁକ୍ତି ଓ ସାମାଜିକ ପ୍ରବୃଦ୍ଧି ଭଳି ଅସୀମ ଯୋଉ ସଂପଦ ଆଜି ପୃଥିବୀସାରା ପୁଞ୍ଜିଭୂତ, ତାର ସମବଣ୍ଟନ ଘଟିଲେ, ଦୁନିଆସାରା ସ୍ତ୍ରୀ-ପୁରୁଷଙ୍କ ପରମାୟୁ ଅକ୍ଳେଶରେ ହୋଇପାରିବ ଯଥାକ୍ରମେ ଅଶି ଓ ପଚସ୍ତରି ବର୍ଷ; ସେ ଦୀର୍ଘଜୀବନ ଅସ୍ୱାସ୍ଥ୍ୟରେ ଖର୍ଚ୍ଚହେବନାହିଁ-ଏ ପ୍ରତିଶ୍ରୁତି ବି ଦେଇପାରେ ଡାକ୍ତରିବିଦ୍ୟା । ଦେଶ-ବିଦେଶ ନିର୍ବିଶେଷରେ ପ୍ରତ୍ୟେକ ଲୋକ କୌଣସି ଗୋଟିଏ ଭାଷାରେ ସାକ୍ଷର ହୋଇପାରିବ; ନିଷ୍କଳୁଷ ପାଣିପବନ ଯାନବାହନ, ସବୁଜ ପରିବେଶ, ଶାନ୍ତ ଶ୍ୟାମଳ ଅରଣ୍ୟ ଭଳି ସର୍ବଜନୀନ ନିତ୍ୟାବଶ୍ୟକକୁ ମଧ୍ୟ କରିପାରେ ସହଜପ୍ରାପ୍ୟ । ଆଉ, ସଂପଦର ସମବଣ୍ଟନ ଅବସିତ କରିଦେଇପାରେ ଘୋଷିତ ଅଘୋଷିତ ଯୁଦ୍ଧ ଆଉ ଦ୍ୱନ୍ଦ୍ୱ; ସମାଜରୁ ଅପରାଧର ବୀଜାଣୁକୁ ମଧ୍ୟ ନିଃଶେଷ କରାଯାଇପାରେ ସମୂଳ । ଶିଶୁ ଯଦି ବଢ଼ିହୁଏ ସ୍ନେହ ଯତ୍ନରେ, ଖାଇବାକୁ ପାଏ ପୁଷ୍ଟିକର ଖାଦ୍ୟ, ଶିକ୍ଷା ଓ ଚିକିତ୍ସାର ସୁଯୋଗ ହୁଏ ଯଦି ଅବାଧ, ଯୌବନରେ ପହଞ୍ଚି ମନୁଷ୍ୟୋଚିତ କାମଧନ୍ଦାରେ ନିଯୁକ୍ତ ହୋଇପାରେ ନିଶ୍ଚୟ । ପୃଥିବୀର ଲୋକସଂଖ୍ୟା ଏବେ ପ୍ରାୟ ୬୦୦ କୋଟି, ଏବଂ ପୃଥିବୀର ଯା ଖାଦ୍ୟୋତ୍ପାଦନ କ୍ଷମତା, ତାର ସଦୁପଯୋଗ ଆହୁରି ୪୦୦ କୋଟି ଲୋକଙ୍କ ଅନ୍ନବସ୍ତ୍ର ସଂସ୍ଥାନକରିପାରେ ଅକ୍ଳେଶରେ । ଅନ୍ନବସ୍ତ୍ର ଓ ସ୍ୱାସ୍ଥ୍ୟ-ଶିକ୍ଷା ଯୋଉଠି ସମସ୍ୟାନୁହେଁ, ନାରୀ ସେଠି ସାଧାରଣତଃ ଆତ୍ମମର୍ଯ୍ୟାଦାରେ ପ୍ରତିଷ୍ଠିତ; ସେତେବେଳେ ସିଏ ନିଜେ ସ୍ଥିରକରେ ମା'ହେବ କି ହେବନାହିଁ, ଏବଂ ଯଦି ସନ୍ତାନଧାରଣ ସପକ୍ଷରେ, ସାଧାରଣତଃ ଦୁଇ ବା ତିନିଟି ପିଲାରୁ ଅଧିକ ଚାହିଁବନାହିଁ । ନାରୀ ଯଦି ନ୍ୟାଯ୍ୟ ଶିକ୍ଷା ଓ ସମ୍ମାନର ଅଧିକାରୀ ହୁଏ, ପୃଥିବୀର ଜନସଂଖ୍ୟା ଗୋଟାଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ଉପଗତହେବା ଉତାରୁ ବଢ଼ିବନାହିଁ; ଆଉ, ଯୁଦ୍ଧର ଆଶଙ୍କା ନିର୍ମୂଳହେଲେ, ମାରଣାସ୍ତ୍ର କି ପରମାଣୁ ବୋମା ତିଆରିକରିବା ମଧ୍ୟ ଦରକାର ପଡ଼ିବନାହିଁ; ଅର୍ଥାତ୍, ଶ୍ରମ ଓ ମେଧା ସାଙ୍ଗକୁ ଦେଶର ସର୍ବସାଧାରଣ ସଂପଦର ଅପଚୟ ଘଟିବନାହିଁ । ମଣିଷ

ସେତେବେଳେ ଦୁଃସାହସିକ ସର୍ଜନଶୀଳ କାମ ଆଡ଼କୁ ମନ ବଳାଇବ । ଖ୍ରୀଷ୍ଟପୂର୍ବ ଚତୁର୍ଥଶତକରେ ପ୍ଲାଟୋ ମଧ୍ୟ ଭାବିଚନ୍ତି ବ୍ୟକ୍ତିଗତ ସଂପତ୍ତିର ବିଲୋପ କଥା, ପରିବାର ବନ୍ଧନରୁ ନାରୀର ମୁକ୍ତିପାଇବା କଥା । ସ୍ୱାଭାବିକଭାବେ, ଅନୁରୂପ ଦୁଃସାହସୀ ଭାବାଦର୍ଶ ବିଶ୍ୱାୟନ ପାଖରୁ ସାଧାରଣ ଲୋକର ପ୍ରତ୍ୟାଶା । ପ୍ରତ୍ୟାଶାପୂରଣ କେତେଦୂର ସମ୍ଭବପର, ବୁଝିହେବ ବିଗତ କୋଡ଼ିଏବର୍ଷର ଅଭିଜ୍ଞତାରୁ ଏବଂ ସେ ଅଭିଜ୍ଞତାର ପ୍ରଥମ ସୋପାନ ବିଶ୍ୱବ୍ୟାପୀ ଆର୍ଥିକ ଅସ୍ଥିରତା । କାହିଁକିନା, ପଣ୍ୟ ଓ ପରିସେବାର ଅବାଧ ସଂଚାଳନ ପୃଥିବୀକୁ ଏକୀଭୂତ ଏକକ ମାର୍କେଟ୍‌ର ପ୍ରତୀୟମାନତା ଦେଉଥିଲେ ସୁଦ୍ଧା, ଯୋଉ ଗୋଟିଏ ଜିନିଷର ଗତିବେଗର ସ୍ୱୈରାଚାର ସାଙ୍ଗକୁ ଆଘାତକରିବା କ୍ଷିପ୍ରତା ସର୍ବତ୍ର ଅନୁଭୂତ, ତା 'ଫିନାନ୍ସ'; ଫିନାନ୍ସ-ଘଟିତ ଗ୍ଲୋବାଲାଇଜେସନ୍ ତେଣୁ ପୁରା ପ୍ରପଞ୍ଚଟାର ଜନ୍ମଲକ୍ଷଣ । ଅଥଚ ଏ ଟଙ୍କା ଜମାରୁ ପୁଞ୍ଜି ନୁହେଁ; ତାର ବିନିଯୋଗ ଧରଣ ଦୂରକଳ୍ପୀ ବା ସ୍ପେକ୍ୟୁଲେଟିଭ୍ । ଅର୍ଥାତ୍, ବିନିମୟ ହାର ଯୋଉ ବଜାରରେ, ସର୍ବାଧିକ ଲାଭ ଦେଇପାରିବ କିମ୍ବା ଯୋଉ ବଜାର (ଷ୍ଟକ୍‌ଏକ୍ସଚେଞ୍ଜ)ରେ ବିକିଦେଲେ ହଠାତ୍ ଲାଭର ସମ୍ଭାବନା ଅଛି, ମୁହୂର୍ତ୍ତକ ମଧ୍ୟରେ ଉଡ଼ିଯିବ ସେଠିକି । ସେ ଖବର ଯୋଗାଇଦେଉଚି ତଥାକଥିତ ତଥ୍ୟପ୍ରଯୁକ୍ତି । ମୁଦ୍ରାର ଏଭଳି ଯିବାଆସିବା ସହିତ ଉତ୍ପାଦନର ସମ୍ବନ୍ଧ ଯେହେତୁ କଷ୍ଟକଳ୍ପିତ, ପଣ୍ୟର ଚହିଦାଯୋଗାଣ ସହିତ ଯେହେତୁ ତାର ମୌଳିକ କୋଉ ସମ୍ବନ୍ଧ ନାହିଁ, ଏ ଟଙ୍କାର ଆଗମନ ବଜାରରେ ସୃଷ୍ଟିକରିପାରେ ଏପରି ଉଲ୍ଲାସ ଯେ, ବଢ଼ିପାଣି ଭଳି ମନେହେବ ଅର୍ଥନୀତିର ସ୍ଫୀତି; ପୁଣି ଆକସ୍ମିକ ପ୍ରସ୍ଥାନ ମନେହେବ ସର୍ବସ୍ୱାନ୍ତ କରିଦେଇଚି ରାତାରାତି । ତାକୁହିଁ କୁହାଯାଉଚି ଫିନାନ୍ସ କ୍ୟାପିଟାଲ୍ । ପ୍ରାୟ ଜୁଆଖେଳ; ମାତ୍ର ଆନ୍ତର୍ଜାତିକ ମୁଦ୍ରାକୋଷ କି ବିଶ୍ୱବ୍ୟାଙ୍କ୍ ଭଳି ସର୍ବମାନ୍ୟ କର୍ତ୍ତୃତ୍ୱ ଏ କାରବାରର କେଶାଗ୍ର ମଧ୍ୟ ସ୍ପର୍ଶକରିପାରେନା । ଏମିତି କାରସାଦି ଉଦାରୀକରଣ ନୀତିର । ବରଂ ସାହାଯ୍ୟପ୍ରାର୍ଥୀ ଦେଶଗୁଡ଼ାକ ଉପରେ ଏଭଳି ଆନ୍ତର୍ଜାତିକ ପ୍ରତିଷ୍ଠାନ 'ଷ୍ଟ୍ରକ୍‌ଚରାଲ୍ ଆଡ୍‌ଜଷ୍ଟ୍‌ମେଣ୍ଟ୍' ନାଁରେ ଯୋଉ ସର୍ତ୍ତ ଆରୋପକରୁଚନ୍ତି, ଅବସ୍ଥାକୁ କରୁଚି ଆହୁରି ସଙ୍ଗୀନ୍ । ଦ୍ୱିତୀୟ ସୋପାନ, ଧନ-ବୈଷମ୍ୟ ଓ ଉପାର୍ଜନ-ବୈଷମ୍ୟର କ୍ରମବର୍ଦ୍ଧମାନ ତୀବ୍ରତା; ଲୋକଙ୍କ ଭିତରେ, ପୁଣି ଦେଶ-ଦେଶ ଭିତରେ । ବିଶ୍ୱାୟନ କାରଣରୁ ଦେଶ-ଦେଶ ଭିତରେ ବାଣିଜ୍ୟ ବଢୁଚି, ଘଟୁଚି ମୋଟ ସଂପଦର ଅଭିବୃଦ୍ଧି; ମାତ୍ର ପ୍ରତିଯୋଗିତାରେ ଜିତୁଥିବା ଓ ହାରୁଥିବା ଲୋକଙ୍କ ଭିତରେ ବ୍ୟବଧାନଟା ଏତେବେଶି ଯେ ଜଣେ ରାତାରାତି ଅମିର୍ ହେବାବେଳକୁ ଆଉଜଣେ କରୁଚି ଆତ୍ମହତ୍ୟା । ବିଶ୍ୱବ୍ୟାଙ୍କ୍ ନିଜେ ସର୍ଭେକରି ଦେଖିଚି, ୧୯୮୭ରୁ ୧୯୯୯ ଭିତରେ, ଯୋଉ ଲୋକ ଦିନକୁ ଦୁଇଡଲାର୍‌ରୁ

କମ୍ ଆୟକରନ୍ତି, ତାଙ୍କ ସଂଖ୍ୟା ବଢ଼ିଛି ପୂର୍ବାପେକ୍ଷା ୨୨୮ ମିଲିୟନ୍ । ଅଥଚ ବ୍ୟାଙ୍କ୍ କହୁଚି ଦାରିଦ୍ର୍ୟ କମିଯିବ ଭବିଷ୍ୟତରେ । କିନ୍ତୁ କେମିତି ? ତା ଛଡ଼ା, ଦିନକୁ ଦୁଇଡଲାର୍ ରୋଜଗାର ଦାରିଦ୍ର୍ୟର ଗଭୀରତା ବୁଝିବାକୁ ସଙ୍ଗତ ମାପକାଠି ହୋଇପାରେନା । ଆୟ-ବ୍ୟୟର ବ୍ୟବଧାନ ବୁଝିବାକୁ ଗଡ଼କରା ଆୟ ସହିତ ସର୍ବନିମ୍ନ ଆୟକୁ ତୁଳନା କରିବାକୁ ପଡ଼ିବ; ତାହେଲେ କିନ୍ତୁ ୨୨୮ ମିଲିୟନ୍ ଯେ କେତେ ବଢ଼ିଯିବ, କଳନା କରିହେଉନାହିଁ । ଅନ୍ୟ ଶବ୍ଦରେ, ଗ୍ଲୋବାଲାଇଜେସନ୍ ଜମାନାରେ ଆୟର ପୁନର୍ବଣ୍ଟନରେ ଅସମାନତା ବହୁଗୁଣ ବଢ଼ିଯାଇଚି, ଏବଂ ପରିଣାମରେ, ପୃଥିବୀସାରା ଅଧିକାଂଶ ଲୋକ ଆର୍ଥିକ ଦିଗରୁ ଏକ୍ଷଣି ଅସହାୟ । ଭାରତ ପରି ବିକାଶଶୀଳ ରାଷ୍ଟ୍ରରେ ଅବସ୍ଥା ନିଶ୍ଚୟ ଅପେକ୍ଷାକୃତ ଭୟଙ୍କର । କାହିଁକିନା, ରାଷ୍ଟ୍ରପୁଞ୍ଜର ହିସାବ ଅନୁସାରେ, ପୃଥିବୀର ଛ'ଶ କୋଟି ଲୋକଙ୍କ ଭିତରୁ ୮୪ କୋଟି ଭୋଗୁଚନ୍ତି ନିଦାରୁଣ ଅପୁଷ୍ଟିରେ; ଆଉ, ଭାରତୀୟ ଉପମହାଦେଶରେ ୭୦ ରୁ ୭୫ କୋଟି, ଦିନରେ ଦୁଇବେଳା ପେଟପୁରା ଖାଇବାକୁ ପାଉନାହାଁନ୍ତି । ସାରା ପୃଥିବୀରେ ୨୦ କୋଟିରୁ ବେଶି ଲୋକ ପୁଣି ଉଦ୍‌ବାସ୍ତୁ ବା ଶରଣାର୍ଥୀ । ଅର୍ଥାତ୍, ଗତ କୋଡ଼ିଏବର୍ଷ ଭିତରେ ନିରାଶ୍ରୟ ଲୋକଙ୍କ ସଂଖ୍ୟା ବଢ଼ିଛି ପାଞ୍ଚଗୁଣ । ବିଶ୍ବାୟନକୁ ଚାଲୁରଖିବାକୁ ହେଲେ ଜନବହୁଳ ଦରିଦ୍ର ଦେଶଗୁଡ଼ାକୁ ଶିଳ୍ପୋନ୍ନତ ଦେଶମାନଙ୍କ ଅପେକ୍ଷା ଦ୍ରୁତତର ଉନ୍ନୟନ ହାସଲକରିବା ଦରକାର, ଏବଂ ତା ଫଳରେ, ଦେଶ ଭିତରେ ଯେମିତି ଅସାମ୍ୟ ନବଢ଼େ, ସେଥିପ୍ରତି ନଜର ରଖିବାକୁ ପଡ଼ିବ । ଏକ୍ଷଣି ଯୋଉ ଉନ୍ନୟନ ଚାଲୁଚି, ପରିଣାମରେ ସଂପଦ ବଢୁଚି ସତ, ଯେପରି ଚୀନ୍‌ରେ, ମାତ୍ର ଥିଲାବାଲା ଆଉ ଅଭାବୀ ଲୋକଙ୍କ ଭିତରେ ଧନବୈଷମ୍ୟ ବଢୁଚି ତତୋଧିକ ।

ତୃତୀୟ ବୈଶିଷ୍ଟ୍ୟ, ନାଗରିକ ଅଧିକାର ପ୍ରତି କ୍ରମବର୍ଦ୍ଧମାନ ବିପଦ । ଗ୍ଲୋବାଲ୍ ମାର୍କେଟ୍ ମାନେ, ବହୁଜାତିକ ଶିଳ୍ପସଂସ୍ଥା ନିଜ ଉତ୍ପାଦନକେନ୍ଦ୍ରକୁ ଶସ୍ତାଶ୍ରମ ଯୋଉଠି ମିଳିବ, ସେଠିକି ଉଠାଇନେବେ । ଶସ୍ତାଶ୍ରମ ମାନେ ମୂଳମଜୁରୀ ଯଦି ଅପେକ୍ଷାକୃତ ଅଳ୍ପ, ଯେପରି ଚୀନ୍ କି ଭାରତରେ । କିନ୍ତୁ ମୂଳମଜୁରୀ ସାଙ୍ଗରେ ଜଡ଼ିତ ଜନକଲ୍ୟାଣ ବାବଦକୁ ଖର୍ଚ୍ଚ । ପୁଣି, ଗ୍ଲୋବାଲ୍ ମାର୍କେଟ୍ ମାନେ  ବିଶ୍ବବ୍ୟାପୀ ପ୍ରତିଯୋଗିତା, ଜନକଲ୍ୟାଣ ବାବଦକୁ ବ୍ୟୟ ହ୍ରାସକରିବାକୁ ଜାତିରାଷ୍ଟ୍ରମାନେ ତେଣୁ ବାଧ୍ୟ । ପ୍ରକ୍ରିୟାଟା ଆରମ୍ଭହେଲାଣି ମାର୍ଗାରେଟ୍ ଥ୍ୟାଚର୍-ରୋନାଲ୍ଡ୍ ରେଗାନ୍ ଅମଳରୁ; ଥ୍ୟାଚର୍ ସେତେବେଳେ କହିଥିଲେ, ପ୍ରତିଯୋଗିତାକୁ ମୁକାବିଲାକରିବା ଛଡ଼ା ଅନ୍ୟ ବିକଳ୍ପ ନାହିଁ, there is no alternative । ସଂକ୍ଷେପରେ କହୁଚନ୍ତି TINA; ମାତ୍ର ଭାରତ ମଧ୍ୟ ବାଛିଚି ସେଇ ବାଟକୁ । ଅର୍ଥାତ୍, ପ୍ରତିଯୋଗିତାରେ ଜାତି-ରାଷ୍ଟ୍ରର ମାର୍କେଟ୍‌କୁ

ଜିତାଇବାକୁ ହେଲେ, ସାମାଜିକ ସୁରକ୍ଷାକୁ ଜଳାଞ୍ଜଳି । କୁବା ଓ ଭେନେଜୁଏଲାରେ ଅବଶ୍ୟ ବିକଳ୍ପ ମଡେଲ୍‌ର ପରୀକ୍ଷାଚାଲିଚି, ସୁଫଳ ମଧ୍ୟ ମିଳୁଚି । ଜୋସେଫ୍ ଷ୍ଟିଗ୍‌ଲିଜ୍ ଏ ଅବସ୍ଥାକୁ ଦୂରଦୃଷ୍ଟିର ଅଭାବ ବୋଲି କହିଚନ୍ତି, କାହିଁକିନା, ଗଣତାନ୍ତ୍ରିକ ପଦ୍ଧତିରେ ଧନ ଓ ଉପାର୍ଜନର ପୁନର୍ବଣ୍ଟନ ଯେତେବେଳେ ସମ୍ଭବପର, ସାମାଜିକ ସୁରକ୍ଷାକୁ ବିପଦମୁହଁକୁ ଠେଲିଦେବା ରାଷ୍ଟ୍ର ପକ୍ଷରେ ଅକର୍ତ୍ତବ୍ୟ । ପ୍ରସଙ୍ଗଟା ତେଣୁ ଗଣତନ୍ତ୍ର ଓ ବିଶ୍ୱାୟନ ମଧ୍ୟସ୍ଥ ସଂପର୍କ ଭଳି ବୃହତର ପ୍ରଶ୍ନକୁ ଡାକିଆଣୁଚି, କାହିଁକିନା, ତୃତୀୟବିଶ୍ୱର ଜାତି-ରାଷ୍ଟ୍ର ଦିହରୁ ବିଶ୍ୱାୟନ ଚିପୁଡ଼ିନେଉଚି କ୍ଷମତା, ଧନତାନ୍ତ୍ରିକ ରାଷ୍ଟ୍ର ଯେତେବେଳେ ଉଦ୍‌ବୃତ୍ତ-ଉତ୍ପାଦନର ସୁଯୋଗ ପାଉଚନ୍ତି ନିର୍ବିରୋଧ । ଅନ୍ୟ ଶବ୍ଦରେ, ବିଶ୍ୱାୟନ ଭଳି ବାହ୍ୟ-ଅବରୋଧ ଜାତି-ରାଷ୍ଟ୍ରର ସ୍ୱାଧୀନତାକୁ ଛିଦ୍ରମୟ କରିଦେଉଚି ଅବଲୀଳାକ୍ରମେ । ଧନତନ୍ତ୍ରର ବିକଳ୍ପ ଅଛି କି ନାହିଁ, ସେ-ପ୍ରଶ୍ନର ଜବାବ ବହୁଆଗରୁ ଦେଇସାରିଚନ୍ତି କାର୍ଲ ମାର୍କ୍ସ; ତଥାପି ବିଶ୍ୱ-ପୁଞ୍ଜି ନିଜକୁ କହୁଚି ଏକେଶ୍ୱର, ନିରାକାର, ନିର୍ବିକଳ୍ପ । ତାର ବହୁନିଧ ସାମାଜିକ ପରିଣାମ ତେଣୁ କେବଳ ଆପିୟରେନ୍ସ, ଅସଲ ଧର୍ମ ଏକମେବାଦ୍ୱିତୀୟମ୍ ।

ସେଥିପାଇଁ, ଆନ୍ତର୍ଜାତିକ ପୁଞ୍ଜି ସହିତ ମୁହାଁମୁହିଁ ମୁକାବିଲା ଜାତି-ରାଷ୍ଟ୍ର ଏଡ଼ାଇଦେଇ ପାରୁନାହିଁ; କାହିଁକିନା, ପୁଞ୍ଜିର ପ୍ରତ୍ୟାଶା ଅସରନ୍ତି; ରାଜନୀତି ଉପରେ ତାର ଚାପ ମଧ୍ୟ ଗତିଶୀଳ କ୍ରେଡିବିଲିଟି ବା ବିଶ୍ୱାସଯୋଗ୍ୟତା ପ୍ରମାଣକରିବାକୁ । ପୁଞ୍ଜିଲଗାଣ ଯଦି ବିନିମୟରେ ପାଉଥିବ ସର୍ବାଧିକ ମୁନାଫା କୁଆଡ଼େହେଲେ ଯିବନାହିଁ, ସାମାନ୍ୟତମ ଆଶଙ୍କା ଦେଖିଲେ କିନ୍ତୁ ଉଡ଼ିଯିବ ଅନ୍ୟତ୍ର; ଦେଶଭିତରେ ସୁଧହାର ବଢ଼ିଯିବ ଅକସ୍ମାତ୍, ଋଣମିଳିବା ବି ହୋଇପଡ଼ିବ କଷ୍ଟକର । ଚଢ଼ାସୁଧରେ ଋଣଆଣି କୃଷି କି ଶିଳ୍ପକୁ ବଞ୍ଚାଇହେବନାହିଁ । ତେଣୁ ସାର୍ବଭୌମ ଜାତି-ରାଷ୍ଟ୍ର ଯଦି ପ୍ରୟୋଗକରେ କ୍ଷମତା, ଅଭ୍ୟନ୍ତରୀଣ ଗଣତନ୍ତ୍ର ପ୍ରତି ଦେଖାଦେବ ବିପଦ । ଲୋକ ଭୋଟ୍‌ଦେବେ; କିନ୍ତୁ ଭୋଟଦେବା ଅଧିକାର, ଯା ଉପରେ ରାଷ୍ଟ୍ରର ସିଦ୍ଧାନ୍ତଗୁଡ଼ାକ ନିର୍ଭରଶୀଳ, କିଣାବିକା ଜିନିଷରେ ପରିଣତହେବ କ୍ରମଶଃ । ପରିଣାମରେ ରାଷ୍ଟ୍ରର ନିୟନ୍ତ୍ରଣ କି କର୍ତ୍ତୃତ୍ୱ ଦୁର୍ବଳ ହେବାକୁ ବାଧ୍ୟ । ଗ୍ଲୋବାଲାଇଜେସନ୍‌ର ଲକ୍ଷ୍ୟ କିନ୍ତୁ ତ୍ରିବିଧ: ପରିପୂର୍ଣ୍ଣ ଆନ୍ତର୍ଜାତିକ ଏକୀଭବନ ଅର୍ଥନୀତିର; ବୁର୍ଜୋୟାର ଗଣତନ୍ତ୍ର ପ୍ରସାର ଓ ଦୃଢ଼ୀକରଣ; ଏବଂ ସେଇ ବାଟରେ ଜାତି-ରାଷ୍ଟ୍ରର ପରିପୋଷଣ । ତିନିଟିଯାକ ଆଭିମୁଖ୍ୟ କିନ୍ତୁ ପରସ୍ପର ବିପରୀତ, କାହିଁକିନା, ତିନିଟି ଭିତରୁ କେବଳ ଦୁଇଟିର ଏକତ୍ର ସହାବସ୍ଥାନ ସ୍ୱାଭାବିକ । ସାଂପ୍ରତିକ କ୍ୟାପିଟାଲସ୍ମ କିନ୍ତୁ ପ୍ରଥମ ଓ ତୃତୀୟକୁ ଗୁରୁତ୍ୱଦେଉଚି । ଅନ୍ୟ ବିକଳ୍ପ ବି ଚିନ୍ତାକରିହେବ; ମାତ୍ର ତିନିଟାଯାକକୁ କୋଉହେଲେ

ମେଳବନ୍ଧନରେ ଏକତ୍ର ରଖିହେବନାହିଁ । ସେଥିପାଇଁ କୁହାଯାଉଚି, ବିଶ୍ୱାୟନ ଯୋଉ ଯୋଉ ତତ୍ତ୍ୱଭିତ୍ତିକୁ ଆଶ୍ରୟକରୁଚି, ତା 'ନିୟଲିବରାଲ୍' ବା ନବ୍ୟ-ଉଦାରୀକରଣ; ଅର୍ଥାତ୍ ଧନବିଜ୍ଞାନର ଗୃହୀତ ତତ୍ତ୍ୱାବଳୀ ପ୍ରତି ପରୋକ୍ଷ ଆହ୍ୱାନ । ଆନ୍ତର୍ଜାତିକ ମୁଦ୍ରାକୋଷ ଏ ତତ୍ତ୍ୱକୁ ପ୍ରୟୋଗକରିଥିଲା ଦକ୍ଷିଣ-ପୂର୍ବ ଏସିଆରେ । ସୃଷ୍ଟିହେଲା କିନ୍ତୁ ଅଭୂତପୂର୍ବ ସଙ୍କଟ । ଷ୍ଟିଗ୍ଲିଜ୍, ପ୍ରେସିଡେଣ୍ଟ୍ କ୍ଲିଣ୍ଟନ୍‌ଙ୍କ ପରାମର୍ଶଦାତା ହେବାଆଗରୁ ଆନ୍ତର୍ଜାତିକ ମୁଦ୍ରାକୋଷର ଅର୍ଥନୀତିକ କର୍ଣ୍ଣଧାର ଥିଲେ; ମାତ୍ର ଲେଖିଚନ୍ତି, we did have adequate theories, we did know how to contrast recessions. It would have been enough to apply exactly what we economists had taught our students in one course after another, in the whole world, for more than half a century. Notwithstanding, the decisions taken were exactly the opposite of what we had preached in our basic courses. All this was for me, as an economist, at least at the beginning, exceedingly difficult to understand.

'ନିୟଲିବରାଲ୍' ଶବ୍ଦଟା ଅର୍ଥନୀତିବିଦ୍ ବ୍ୟବହାରକରନ୍ତି, ନିନ୍ଦା ନହେଲେ ବି, ଥଟାକରିବା ପାଇଁ । କାହିଁକିନା, ନବ୍ୟ-ଉଦାରବାଦ ଏପରି ଏକ ଭାବାଦର୍ଶ ଯା ମଣିଷକୁ କରିପାରେ କିଂକର୍ତ୍ତବ୍ୟବିମୂଢ଼; ଅଥଚ ନିର୍ବିଚାରରେ ଚଳାଇଯାଉଚନ୍ତି ପଲିଟିସିଆନ୍ କି ଅମଲା ଖାଲି ନୁହେଁ, ସାମ୍ବାଦିକ, ବ୍ୟାଙ୍କର୍ ଆଉ ବଣିକ; ଏପରିକି, ବାମପନ୍ଥୀ ଟ୍ରେଡ୍‌ଇଉନିଅନ୍ ନେତା । ପ୍ରକୃତ ପ୍ରସ୍ତାବରେ, ଭାବାଦର୍ଶଟା ଆଦୌ ଜଟିଳ ନୁହେଁ, ଦୁଇଟିମାତ୍ର ସ୍ୱତଃସିଦ୍ଧ ତାର ମୂଳକଥା : ଆକାରପ୍ରକାର ନିର୍ବିଶେଷରେ ମାର୍କେଟ୍ ସର୍ବଥା ଦକ୍ଷ ଓ କାର୍ଯ୍ୟକର ଅନୁଷ୍ଠାନ; ସେମିତି, ଅନ୍ତର୍ଗତ ଅନୁଷ୍ଠାନଗୁଡ଼ିକ ନିର୍ବିଶେଷରେ ରାଷ୍ଟ୍ର ମଧ୍ୟ କାର୍ଯ୍ୟକର ଓ ଦକ୍ଷ । ପୁରାତନ, ନୂତନ, ଉଦାର କି ଧ୍ରୁପଦୀ, କୋଉହେଲେ ବିଦ୍ୟାବୁଦ୍ଧିସଂପନ୍ନ ଭାବୁକ ଅନୁମୋଦନ କରିବେନାହିଁ । କଥାଟାର ରାଜନୀତିକ ତାତ୍ପର୍ଯ୍ୟ ମଧ୍ୟ ସରଳ : ରାଷ୍ଟ୍ର (ସରକାର) ଯେତେ କମ୍ ହସ୍ତକ୍ଷେପ କରିବ ସେତେ ଭଲ; ରାଷ୍ଟ୍ରାୟତ୍ତ ଶିଳ୍ପସଂସ୍ଥାଗୁଡ଼ାର ବେସରକାରୀକରଣ ତେଣୁ ବାଞ୍ଛନୀୟ; ବଜେଟ୍ ତେଣୁ ବଳକା ହେବନାହିଁ କି ଘାଟ୍‌ତି ରହିବନାହିଁ; ବାଣିଜ୍ୟ ଓ ମୁଦ୍ରାସକ୍ରାନ୍ତ କୋଉହେଲେ କର୍ମପନ୍ଥା ତେଣୁ ଅବାନ୍ତର ଓ ପରିତ୍ୟଜ୍ୟ; ସେଣ୍ଟ୍ରାଲ୍‌ବ୍ୟାଙ୍କ୍ ମଧ୍ୟ ଲୋକ କଣ ଚାହୁଁଚନ୍ତି କି ଚାହୁଁନାହାଁନ୍ତି, ସେ ବିଷୟରେ ମୁଣ୍ଡ ନଖେଳାଇ ସ୍ୱାଧୀନଭାବରେ କାମକରିବ; ମୁକ୍ତବାଣିଜ୍ୟ ବାଟର ପ୍ରତିବନ୍ଧକ ଗୁଡ଼ାକ ମଧ୍ୟ ଉଠିଯିବ; ଜନମଙ୍ଗଳ ସକାଶେ ବ୍ୟୟବରାଦ ରହିବ ନାହିଁ; ରହିଲେ ବି ହେବ ଯତ୍‌ସାମାନ୍ୟ । ଏଥିରୁ କୋଉଗୋଟାକ ହେଲେ ବିଜ୍ଞାନସମ୍ମତ ବୋଲି ପ୍ରମାଣିତ ହୋଇନାହିଁ; ବରଂ

ଜାଗାବରଜାଗା ବଜାର ଭାଙ୍ଗିପଡ଼ିବା ଫଳରେ ଅର୍ଥନୀତିବିଦ୍ ଜିଗରକରୁଚନ୍ତି ରାଷ୍ଟ୍ରକୁ ଦାୟିତ୍ୱ ମୁଣ୍ଡାଇବାକୁ, ବିଶେଷତଃ ମାର୍କେଟ୍‌କୁ ଜଙ୍ଗଲରେ ପରିଣତହେବାକୁ ଦେଇପାରେନା ଯେହେତୁ କୋଉହେଲେ ରାଷ୍ଟ୍ରବ୍ୟବସ୍ଥା, ଏବଂ ସର୍ବୋପରି, ଅର୍ଥନୀତି ଯୋଉ ନିୟମରେ ଚଳେ, ତା ଯେହେତୁ ପ୍ରାକୃତିକ ନିୟମ ନୁହେଁ, ମାର୍କେଟ୍ ବସ୍ତୁତଃ ଇକ୍ସଚେଞ୍ଜ୍ ବା ଟଙ୍କାପଇସା ବିନିମୟକୁ ନିୟନ୍ତ୍ରଣକରିବାକୁ ତିଆରି । ସେଭଳି ଆନୁଷ୍ଠାନିକ ବ୍ୟବସ୍ଥା କେମିତି ସନ୍ତୋଷଜନକ ହୋଇପାରିବ, ସେକଥା ଦେଖିବା ରାଷ୍ଟ୍ରର ହିଁ କର୍ତ୍ତବ୍ୟ, ଏବଂ ସେଥିପାଇଁ, ପଘା ଛିଣ୍ଡାଇଦେଲେ ମାର୍କେଟ୍ ଆପେଆପେ ଦକ୍ଷ ହୋଇଯାଏନା । ହୋଇପାରେନା ବୋଲି, ଅର୍ଥନୀତି ଦୃଷ୍ଟିରେ ରାଷ୍ଟ୍ର ଓ ମାର୍କେଟ୍ ପରସ୍ପରର ବିକଳ୍ପ ନୁହେଁ, ସକଳ ଅର୍ଥରେ ପରିପୂରକ ।

ଏକ୍ଷଣି ଜଣାପଡୁଚି, 'ଗ୍ଲୋବାଲାଇଜେସନ୍' ଶବ୍ଦଟାକୁ ପ୍ରଥମେ ପ୍ରୟୋଗକରନ୍ତି ଜଣେ ମାର୍କିନ୍ ସାମ୍ବାଦିକ ଥିୟଡର୍ ଲେଭିଟ୍ ୧୯୮୩ରେ, ଏବଂ ୧୯୮୮ ବେଳକୁ ତାକୁ ଲୋକପ୍ରିୟ କରନ୍ତି ଅର୍ଥନୀତିଜ୍ଞ କିନିଚି ଓହ୍ମେ ବହୁଜାତିକ କଂପାନୀମାନଙ୍କ ବାଣିଜ୍ୟ-କୌଶଳ ପରିପ୍ରେକ୍ଷିତରେ । ଅର୍ଥାତ୍, ବିଶ୍ୱାୟନ କେବଳ ପଣ୍ୟ-ପରିବହନର ବେଗବୃଦ୍ଧି, ତଥ୍ୟ ସରବରାହର କ୍ଷିପ୍ରତା, ପୁଞ୍ଜି ସଂଚାଳନର ଦ୍ରୁତତା କିମ୍ବା ଉତ୍ପାଦନର ଯାବତୀୟ ଉପକରଣ କେତେ ଶୀଘ୍ର ପୃଥିବୀର ପ୍ରତ୍ୟନ୍ତ ଅଞ୍ଚଳରେ ପହଞ୍ଚିପାରିବ, ତାର ଉପାୟ । ଟ୍ରେଡ୍ ବ୍ୟାରିଅର୍ ଉଠିଯିବା ଉତାରୁ, ନବ୍ୟଉଦାରବାଦ ପ୍ରଚାରକରିଚନ୍ତି ଆନ୍ତର୍ଜାତିକ ମାନ୍ୟତାପ୍ରାପ୍ତ ସଂସ୍ଥା, ଯେପରି ଆଇଏମ୍ଏଫ୍, ଓର୍ଲଡ୍ ବ୍ୟାଙ୍କ୍ କି ଡବ୍ଲିଉଟିଓ । ପ୍ରମୁଖ ଧନାତାନ୍ତ୍ରିକ ରାଷ୍ଟ୍ର ସେଇ ନୀତି ଅନୁସରଣ କରିଚନ୍ତି ଆଗ୍ରହରେ, ଏବଂ ତାଙ୍କ ସେଣ୍ଟ୍ରାଲ ବ୍ୟାଙ୍କ୍ ମଧ୍ୟ ପଛରେ ପଡ଼ିନାହାଁନ୍ତି । ମାତ୍ର ସମସ୍ତେ ମିଶି ଯୋଉ ଅର୍ଥନୀତି ପ୍ରଚଳନକରିଚନ୍ତି, ତାକୁ କୁହାଯାଏ ଲେଇସେଫେୟାର୍; ଅର୍ଥାତ୍ ପଣ୍ୟ ଓ ପୁଞ୍ଜି ସଂଚାଳନକ୍ଷେତ୍ରରୁ ରାଷ୍ଟ୍ରକୁ ବହିଷ୍କାର । ପ୍ରକ୍ରିୟାଟା ଯେହେତୁ ବିରୋଧରେ ବିଦୀର୍ଣ୍ଣ, ରାଜନୀତି ଓ ଜ୍ଞାନଚର୍ଚ୍ଚାରେ ତାର ବ୍ୟାଖ୍ୟା/ଭାଷ୍ୟ ବି ବହୁମୁଖୀ । ପ୍ରଥମେ ପ୍ରଶ୍ନଉଠିଚି, ଏ କୋଉ ଅଭିନବ ଉନ୍ନୟନ-ଆଦର୍ଶ, ନା ଅର୍ଥନୀତିକ କ୍ରିୟାକଳାପର ଚରିତ୍ରକୁ ଆନ୍ତର୍ଜାତିକ କରିବା ଅଭିପ୍ରାୟ କେବଳ ? ଅଧିକାଂଶ ଲୋକଙ୍କ ଧାରଣା, ଆଉକିଛି ନୁହେଁ, ଗ୍ଲୋବାଲାଇଜେସନ୍ ପ୍ରକୃତରେ କ୍ୟାପିଟାଲିଜ୍ମର ବିକଚନର ଅଗ୍ରସର ଏକ ପର୍ଯ୍ୟାୟ । ସ୍ୱମତ ସମର୍ଥନରେ ଏମାନେ ଅଙ୍କକଷି ଦେଖାଇଦେଇଚନ୍ତି, ୧୮୮୦ରୁ ପ୍ରଥମ ମହାଯୁଦ୍ଧ (୧୯୧୪-୧୮) ପର୍ଯ୍ୟନ୍ତ ଦୁନିଆସାରା ଯେତେ ପଣ୍ୟ ଓ ପରିସେବା ସରବରାହହୋଇଛି, ଏବଂ ସେଇ ସୂତ୍ରରେ ବିଦେଶରେ ପୁଞ୍ଜିବିନିଯୋଗର ଯୋଉ ହିସାବ ମିଳୁଚି, ଉତ୍ପାଦନ-ସଂପର୍କିତ ସେଇ ପ୍ରବାହ

ବିଦ୍ୟମାନ ସ୍ତର ସହିତ ଖାଲି ସମାନ ନୁହେଁ, ଟପିଯାଇଚି । ତେଣୁ ଯୋଉ ପ୍ରକ୍ରିୟା ଆଗରୁ ଚାଲିଆସିଚି, ବିଶ୍ୱାୟନ ତାକୁ କେବଳ ତୀବ୍ର ଓ ପ୍ରଗାଢ଼ କରୁଚି ଟେଲିମ୍ୟାଟିକ୍ ଓ ଇନ୍‌ଫରମେସନ୍ ଟେକ୍ନୋଲଜି ହୋଇଛି ଯେହେତୁ ବିଶାଳ ସହାୟକ । ଏ ଯେ ଏକ ଐତିହାସିକ ପ୍ରକ୍ରିୟା ଏବଂ ଅଭିନବ କୋଉ ଉଦ୍‌ଭାବନ ନୁହେଁ, ତା ସପକ୍ଷରେ *କମିଉନିଷ୍ଟ ମ୍ୟାନିଫେଷ୍ଟୋ* ରୁ ଏଇ ଅନୁଚ୍ଛେଦ ଗ୍ରହଣ କରାଯାଇଛି: The bourgeoisie has through its exploitation of the world market given a cosmopolitan character to production and consumption in every country. To the great chagrin of reactionaries, it has drawn from under the feet of industry the national ground on which is stood. All old-established national industries have been destroyed or are daily being destroyed. They are dislodged by new industries, whose introduction becomes a life and death question for all civilized nations [.........]. In place of the old local and national seclusion and selfsufficiency, we have intercourse in every direction, universal interdependence of nations.

ଆଉକିଛି ଲୋକ ବିଶ୍ୱାୟନକୁ କହୁଚନ୍ତି, ଉତ୍ଥାନଶୀଳ ଏକ ଅଭିନବତ୍ୱ, ଅନ୍ତତଃ ତିନିଟି ତାତ୍ପର୍ଯ୍ୟପୂର୍ଣ୍ଣ କାରଣରୁ: (୧)ଉତ୍ପାଦନର ସଂଗଠନକୁ ଯେମିତି, ରାଜନୀତି ଓ ଅର୍ଥନୀତିର ଆନ୍ତଃସଂପର୍କକୁ ସେମିତି, ପୁନର୍ଗଠିତ କରିବା ପ୍ରବଣତା; (୨) ସଂପଦର ମୋଟ ପରିମାଣକୁ ବଢ଼ାଇଦେବା ପ୍ରବଣତା, ଯା ସମାନୁପାତରେ ବଢ଼ାଇଦିଏ ଦାରିଦ୍ର୍ୟର ପରିମାଣ, ଏବଂ (୩) ଅର୍ଥନୀତିକ ବିଶ୍ୱାୟନ ପ୍ରକ୍ରିୟା ସହିତ ରାଜନୀତିକ ଗଣତନ୍ତ୍ରର କ୍ରମବର୍ଦ୍ଧିଷ୍ଣୁ ବିତତି ବା ଟେନ୍‌ସନ୍ । ଏକଥା ଅବଶ୍ୟ ସତ ଯେ ଉତ୍ପାଦନଜନିତ କାର୍ଯ୍ୟକଳାପର ସଂଗଠନ ବଦଳିଯାଇଚି; ଅତୀତ ସହିତ ତାର ପାର୍ଥକ୍ୟ ହେଲା, ଯୋଉ ଜାଗାରେ ଉତ୍ପାଦନ ଘଟୁଚି, ସେ ଜାଗାରେ ଆଉ ଉତ୍ପାଦନସଂକ୍ରାନ୍ତ ନିଷ୍ପତ୍ତି ନିଆହେଉନାହିଁ । ଫଳରେ, ଶିଳ୍ପସଂସ୍ଥାର ଦାୟିତ୍ୱ ରହୁନାହିଁ କର୍ମଚାରୀ, ଉପଭୋକ୍ତା, ଅଂଶୀଦାର, ସର୍ବୋପରି ଯୋଉ ଜାଗାରେ କଳକାରଖାନା ବସୁଚି ସେଠିକା ସ୍ଥାନୀୟ ଲୋକଗୋଷ୍ଠୀ ପ୍ରତି । ଅଂଶୀଦାରଙ୍କୁ ବ୍ୟବସ୍ଥାଟା ଅବଶ୍ୟ ବିବ୍ରତକରିବା କଥାନୁହେଁ; ଦୁନିଆସାରା ଯେତେ ବଜାର, ନିଜ ଅଂଶ ସେଠି ବିକିଦେଇପାରିବେ ଚଢ଼ା ଦରରେ, କିଣି ମଧ ପାରିବେ ଅନ୍ୟଲୋକର ସେୟାର; ମାତ୍ର ଅନ୍ୟମାନେ ଅତିକ୍ରମ କରିପାରିବେନାହିଁ ଭୌଗୋଳିକ ସୀମାବଦ୍ଧତା । ପୁଞ୍ଜିଲଗାଣକାରୀର ନବଲବ୍ଧ ଏଇ ଅବାଧ ଗତି ଯୋଉ ଅପସାରଣଶୀଳତାକୁ ଜନ୍ମଦେଇଚି, ବାସ୍ତବରେ ତା ଧନର

କ୍ଷମତା ପାଖରୁ ସାମାଜିକ ଦାୟଦାୟିତ୍ୱର ବିଚ୍ଛେଦ । ଅର୍ଥନୀତିର ଇତିହାସରେ ଅଭୂତପୂର୍ବ, କହିଁକିନା, ଅତୀତରେ ସଂପଦଶାଳୀ, ବିଶେଷତଃ ଶିଳ୍ପପତି, ନିଜ ଦେଶର ବିଧିନିଷେଧକୁ ଯେମିତି ଏଡ଼ାଇପାରିନାହାଁନ୍ତି, ସେମିତି ଯୋଉ ଦେଶରେ ଶିଳ୍ପ ସ୍ଥାପନକରିଚନ୍ତି, ତାର ଗଣତାନ୍ତ୍ରିକ ବିଧିବିଧାନକୁ । ଆଜି କିନ୍ତୁ କ୍ୟାପିଟାଲ୍ ଆହରଣକରିଚି ଅନାସ୍ୱାଦିତ ବନ୍ଧନମୁକ୍ତି, ଯୋଉ ଦେଶର ଭୂଇଁରୁ ମୁନାଫା ଦୋହନକରୁଚି, ସେ ଦେଶ ତାକୁ ପ୍ରଶ୍ନ ପଚାରିପାରେନା ! ଅର୍ଥାତ୍ ଧନବଳ ଏକ୍ଷଣି ରାଷ୍ଟ୍ରବହିର୍ଭୂତ ମାନ୍ୟତା । କାହିଁକିନା, ଜାତିରାଷ୍ଟ୍ରର ସାର୍ବଭୌମ କ୍ଷମତା ସହିତ ବଣିକର ଆନ୍ତର୍ଜାତିକ ବଜାରରେ ବୁଲି ବୁଲି ମୁନାଫାଖୋଜିବା ଅସମଞ୍ଜସ । ଅସମଞ୍ଜସ ବୋଲି, ନିର୍ଦ୍ଦିଷ୍ଟ ଜାତିରାଷ୍ଟ୍ରର ଅଭ୍ୟନ୍ତରୀଣ ଅର୍ଥନୀତି ଏକ୍ଷଣି ଆନ୍ତର୍ଜାତିକ ମୁଦ୍ରାକୋଷ କି ବିଶ୍ୱବାଣିଜ୍ୟ ସଂସ୍ଥାର ଅଭିଭାବକତ୍ୱ ମାନିନେବାକୁ ବାଧ; ଅନ୍ୟଥା, କୌଣସି ବାଣିଜ୍ୟିକ ଚୁକ୍ତି, ଅର୍ଥାତ୍ ବିଦେଶ ସହିତ କିଣାବିକା ପ୍ରଣାଳୀକୁ, ଆଇନ୍‌ବଦ୍ଧ କରିହେବନାହିଁ । ଅଥଚ, ବ୍ରେଟନ୍ ଉଡ୍‌ସ୍ (୧୯୪୪)ରୁ ସତୁରି ଦଶକର ମଧ୍ୟଭାଗ ପର୍ଯ୍ୟନ୍ତ ଅର୍ଥନୀତିରେ ଯୋଉ ପରସ୍ପରନିର୍ଭରତା ତିଆରିହୋଇଥିଲା, ଜାତିରାଷ୍ଟ୍ରର ମିଳିତ ରାଜନୈତିକ ସିଦ୍ଧାନ୍ତ ଫଳରେ ସମ୍ଭବହୋଇଥିଲା ସେଭଳି ଗ୍ଲୋବାଲାଇଜେସନ୍; ମାତ୍ର ୧୯୭୫ ନଭେମ୍ବର୍‌ରେ ଅନୁଷ୍ଠିତ ପ୍ୟାରିସ୍ ଶୀର୍ଷସମ୍ମିଳନୀର ନୀତି ନିର୍ଦ୍ଧାରଣ କରିଥିଲେ ମୁଖ୍ୟତଃ ବୃହତ୍ କଂପାନୀ, ବେସରକାରୀ ପ୍ରତିଷ୍ଠାନ ଓ ବାଣିଜ୍ୟିକ ଲବି । ଫଳରେ, ପାରସ୍ପରିକ ନିର୍ଭରତାର ଯୋଉ ପୁନର୍ବିନ୍ୟାସ ସୃଷ୍ଟିହୋଇଚି, ସେ ବିନ୍ୟାସ କମ୍ପାନୀମାନଙ୍କୁ ନିଜ ଜାତୀୟ ସରକାରଙ୍କ କର୍ତ୍ତୃତ୍ୱରୁ ସ୍ୱାଧୀନ କରିଦେଇଚି ବିଶେଷତଃ ମୁନାଫା ଅନ୍ୱେଷଣ ସକାଶେ । ବିଶ୍ୱାୟନ ତେଣୁ କଂପାନୀମାନଙ୍କୁ ସମର୍ଥନକରିଚି ସେଇ କ୍ଷମତାକୁ ପୁନର୍ଉଦ୍ଧାର କରିବାକୁ, ରାଜନୀତି ଯୋଉ କ୍ଷମତାକୁ କରିରଖିଥିଲା ଗୃହପାଳିତ । ଅନ୍ୟ ଶବ୍ଦରେ, ଯୋଉ ନିୟନ୍ତ୍ରଣକୁ କ୍ୟାପିଟାଲିସ୍ମ ବହୁକାଳଧରି କହିଆସିଚି ଇଉଟୋପିଆ କି ଧର୍ମମତ ପରି ଅନ୍ଧ, ସେଥିରୁ ମୁକ୍ତହୋଇଯାଇଚି ଉଦ୍‌ବୃତ୍ତସଞ୍ଚୟ । ପରିଣାମରେ, କ୍ୟାପିଟାଲିସ୍ମ ଖାଲି ଅର୍ଥନୀତିର ସ୍ୱଭାବକୁ ସଂଗଠିତକରୁନାହିଁ, ଏକାବେଳକେ ସଂଗଠିତକରୁଚି ସମାଜବ୍ୟବସ୍ଥାର ଚରିତ୍ରକୁ; ଅର୍ଥାତ୍ ଗ୍ଲୋବାଲାଇଜେସନ୍ ଉଭୟ ଅର୍ଥନୀତି ଓ ପ୍ରଶାସନର ଭିତ୍ତିକୁ ପରିମିତକରି ଜାତିରାଷ୍ଟ୍ରର ସ୍ୱାଧୀନତାକୁ ଖର୍ବକରିଚି ବହୁଳାଂଶରେ; ବିଦ୍ୱାନ୍ ତାକୁ କହୁଚନ୍ତି 'ସବ୍-ପଲିଟିସାଇଜେସନ୍' । ଇତିହାସରେ ଘଟିନାହିଁ କେବେ ଆଗରୁ । ଜାତିରାଷ୍ଟ୍ର ହାତରେ ରହିଚି ଯେତେ ରାଜନୀତିକ ଅସ୍ତ୍ରଶସ୍ତ୍ର, ଯେପରି, ନିୟନ୍ତ୍ରଣକରିବାକୁ ଆଇନ୍‌କାନୁନ୍, ଟ୍ୟାକ୍ସବସାଇବା କ୍ଷମତା, ପୁଲିସ୍ ବା ସେନାବଳ ଭଳି ସୁରକ୍ଷାବନ୍ଦୋବସ୍ତ କି ବିଦେଶନୀତି, ସବୁଗୁଡ଼ାକର ପ୍ରୟୋଗକ୍ଷେତ୍ର ଏକମାତ୍ର ନିଜ

ରାଜ୍ୟସୀମା ଭିତରେ ଏକ୍ଷଣି ଆବଦ୍ଧ; ଅଥଚ କଂପାନୀଗୁଡ଼ାକ ଏକରାଜ୍ୟରେ ପଣ୍ୟ ଉତ୍ପାଦନକରି ଅନ୍ୟରାଜ୍ୟରେ ଟ୍ୟାକ୍ସଦେଇପାରୁଚନ୍ତି, ଆଉ ତୃତୀୟରାଜ୍ୟ ପାଖରୁ ଉର୍ତ୍ତୁକୀ କି ରିହାତି ମଧ୍ୟ ଦାବିକରିପାରୁଚନ୍ତି । ସ୍ୱାଭାବିକଭାବେ ଏ ପ୍ରକ୍ରିୟା ଯୋଉ ଓଲଟପାଲଟ ଘଟାଇଦେଉଚି, ତା ସର୍ବବ୍ୟାପୀ ଅସ୍ଥିରତା ।

କନ୍‌ସେପ୍ଟ ଭାବରେ ବିଶ୍ୱାୟନ ତେଣୁ କ୍ୟାପିଟାଲିସ୍ମର ଛଦ୍ମବେଶ । ଛଦ୍ମବେଶ, କାହିଁକିନା, ଆଧୁନିକ କ୍ଷମତାତନ୍ତ୍ରର କୌଣସି କେନ୍ଦ୍ର ନାହିଁ, ମିଶେଲ୍ ଫୁକୋଙ୍କ ଦୃଷ୍ଟିରେ ସମାଜପ୍ରତିଷ୍ଠାନର ରନ୍ଧ୍ରେ ରନ୍ଧ୍ରେ କ୍ଷମତାର ଉପସ୍ଥିତି । ମାତ୍ର କେନ୍ଦ୍ରନାହିଁ ବୋଲି, ବିଶ୍ୱପୁଞ୍ଜି ତ ସ୍ଥାନହୀନ ଅବୟବହୀନ କୋଉ ଅଲୌକିକ ଶକ୍ତି ନୁହେଁ ଯେ ଦୁନିଆସାରା ସମାଜଗୁଡ଼ାକରେ ଯା ଘଟିଚାଲିଚି, ତାର ସକଳ ସମ୍ଭାବନାକୁ ନିଜ ଅଭ୍ୟନ୍ତରରେ ଆତ୍ମସ୍ଥ କରିରଖିଚି ! ତାର ଉଦ୍‌ଭବ ଓ ବିକାଶର ଇତିହାସ କଣ ଏ କ୍ଷମତାତତ୍ତ୍ୱକୁ ସମର୍ଥନ କରେ ? *କ୍ୟାପିଟାଲ୍‌*ର ପ୍ରଥମଖଣ୍ଡରେ ପୁଞ୍ଜିର ଅଭ୍ୟନ୍ତରୀଣ ଗଢ଼ଣ ବିଶ୍ଳେଷଣକରିଚନ୍ତି ମାର୍କ୍ସ; ସେଥିରୁ ପାଇଯାଇଛୁଁ 'ବିମୂର୍ତ୍ତ ଶ୍ରମ' ଓ 'ବିମୂର୍ତ୍ତ କର୍ତ୍ତା' ଭଳି ପ୍ରତ୍ୟୟର ବୈଜ୍ଞାନିକ ସଂଜ୍ଞା; ମାତ୍ର ବହି ଶେଷହେବା ବେଳକୁ ଯୋଉ ଅଂଶଟି ଯୋଡ଼ିଦେଇଚନ୍ତି, ସେଠି ବର୍ଣ୍ଣନାକରାଯାଇଚି ପୁଞ୍ଜିର ପ୍ରାଥମିକ ଆହରଣର ଇତିହାସ; ସେ ଇତିହାସ ମଧ୍ୟ ପଣ୍ୟହାଟରେ ସମମୂଲ୍ୟ ଜିନିଷର କିଣାବିକାର ମସୃଣ ବିବରଣ ନୁହେଁ; ଲୁଣ୍ଠନ ହତ୍ୟା ଜବରଦଖଲ ଯୁଦ୍ଧ ଓ ରାଜ୍ୟଜୟର ହିଂସ୍ର ଓ ରକ୍ତାକ୍ତ ବୃତ୍ତାନ୍ତ । ଆଧୁନିକ ପୁଞ୍ଜି ନିଜ ଆକୃତିପାଇଚି କ୍ଷମତାବିସ୍ତାରର ଏଇ ଦୀର୍ଘ ପ୍ରକ୍ରିୟା ଭିତରଦେଇ । ଜନ୍ମମୁହୂର୍ତ୍ତର ଧାରଣକରିନାହିଁ ଶୁଦ୍ଧ ବିମୂର୍ତ୍ତ ରୂପ; କରିନାହିଁ ବୋଲି, ବାସ୍ତବ ଇତିହାସରେ ପୁଞ୍ଜିର ଦେଶ ଅଛି, ଜାତି ଅଛି, ଦିହର ରଙ୍ଗ ଅଛି, ପିଆଦାପାଇକ ସୈନ୍ୟସାମନ୍ତ ଗୋଳାବାରୁଦ, ସବୁ ଅଛି । ଖାଲି ସେତିକି ନୁହେଁ, ପ୍ରାଥମିକ ପୁଞ୍ଜିଆହରଣ ପ୍ରକ୍ରିୟା ଆଜି ବି ଚାଲୁରହିଚି ତଥାକଥିତ ବିକାଶଶୀଳ ଅଂଚଳରେ; ଏବଂ ପୁଞ୍ଜିର ଅଗ୍ରଗତି ସେଠି ଯେତେ ଦ୍ରୁତ ତ୍ୱରାନ୍ୱିତ ହେଉଚି, ପ୍ରାଥମିକ ଆହରଣର ଧ୍ୱଂସଲୀଳା ସେତିକି ଗ୍ରାସକରୁଚି ନୂଆନୂଆ ସଂପଦ ଓ ଜନଗୋଷ୍ଠୀକୁ । ପୁଞ୍ଜିର ଯଦି କେନ୍ଦ୍ରନାହିଁ କି ଗାତ୍ର ବା ଗାତ୍ରବର୍ଣ୍ଣ, ଯୁକ୍ତରାଷ୍ଟ୍ର ଆମେରିକା, ଶୀତଳଯୁଦ୍ଧ ସରିଯାଇ ସୋଭିଏଟ୍ ଇଉନିୟନ୍ ଭାଙ୍ଗିଯିବା ସତ୍ତ୍ୱେ, କଣପାଇଁ ୧୯୩୯ ର ୫୦୦ ମିଲିଅନ୍ ଡଲାର୍ ପ୍ରତିରକ୍ଷା ବଜେଟ୍‌କୁ କ୍ରମାଗତ ବଢ଼ାଇ ଏକ୍ଷଣି କରିଚି ୩୦୦ ବିଲିଅନ୍ ଡଲାର୍‌ରୁ ବେଶି ? ଏବଂ, ସାମରିକ ଚୁକ୍ତିରେ ଆବଦ୍ଧକରିଚି ଅନ୍ୟୂନ ୫୦ଟି ଜାତି-ରାଷ୍ଟ୍ରକୁ ? ଶତାଧିକ ଦେଶରେ ରହିଚନ୍ତି ତାର ଜଳ-ସ୍ଥଳ-ଆକାଶ ବାହିନୀ ? ଏବଂ ଆୟୋଜନକୁ ବୈଧତାଦେବାକୁ ୧୯୯୭ରେ ଷ୍ଟିଭନ୍ ଆମ୍ବ୍ରୋସ୍ ଲେଖିଚନ୍ତି: Politicians looked for areas in which American influence could dominate. Businessmen looked

for profitable markets and new sources of cheap rawmaterials, the military looked for overseas bases. All found what they wanted as America inaugurated a program of expansion that had no inherent limits । ଦ୍ର. *Rise to Globalism.* ପୃ. *XII* । ତାହେଲେ କ୍ୟାପିଟାଲିସ୍ମକୁ ଗ୍ଲୋବାଲାଇଜ୍ କରିବା ଆମେରିକାର ଘୋଷିତ ଅଭିପ୍ରାୟ ହେବାସତ୍ତ୍ୱେ, ସୋଭିଏଟ୍ ଇଉନିୟନ୍‌ର ପତନକୁ ଏଣ୍ଡ୍ ଅବ୍ ସୋସାଲିଜ୍ମ ନକହି, ଏଣ୍ଡ୍ ଅବ୍ ଆଇଡିୟଲଜି, ଏଣ୍ଡ୍ ଅବ୍ ହିଷ୍ଟ୍ରି ଭଳି ଅଭିଧାରେ ଅଲୌକିକ କରାଯାଉଚି କାହିଁକି ? ମୋର୍ଗାରେଟ୍ ଥ୍ୟାଚର୍ ତ ଢେର୍ ଆଗରୁ କହିଦେଇଚନ୍ତି, ଦେଆର୍ ଇଜ୍ ନୋ ଅଲଟର୍‌ନେଟିଭ୍ ! ଅଥଚ ଜାତି-ରାଷ୍ଟ୍ରର ମଦତ୍ ବିନା ଆଗେଇପାରୁନାହିଁ ବିଶ୍ୱାୟନ, ପାରିବନାହିଁ ମଧ୍ୟ, କାହିଁକିନା, ଏଲେନ୍ ମିକିନ୍ ଉଡ୍ ଲେଖିବା ଭଳି, Contrary to much conventional wisdom today, globalization has made the state not less but more important to capital. Capital needs the state to maintain the conditions of accumulation and "competitiveness" in various ways, including direct subsidies at the tax-payers' expense, to preserve labour discipline and social order in the face of austerity and "flexibility"; to enhance the mobility of capital while blocking the mobility of labour; to administer huge rescue operations for capitalist economies in crisis....operations often organised by international agencies but always paid for by national taxes and enforced by national governments. Even the imperialism of the major capitalist states requires the collaboration of subordinate states to act as transmission belts and agents of enforcement, "Neoliberalism" is not just withdrawal of the state from social provision. It is a set of active policies, a new form of state intervention designed to enhance capitalist profitability in an integrated global market ।

ଲଗାମଛଡ଼ା ବିନିଯୋଗ ମାନେ, ଅନ୍ୟ ଉଦ୍ଦେଶ୍ୟରେ ନୁହେଁ, ଅଧିକ ଦରରେ ପଛକୁ ବିକିଦେବାପାଇଁ ପୁଞ୍ଜିର ବିନିଯୋଗ; ଅର୍ଥାତ୍ ସ୍ପେକିଉଲେସନ୍ ବା ଫଟକାବାଜିକୁ ପ୍ରଶ୍ରୟ । ଏ କାରବାରରେ, ଅନ୍ୟକିଛି ନୁହେଁ, ନଗଦଟଙ୍କା କେବଳ ହାତରୁ ବିହାତ ହୁଏ, ସମୟ ଲାଗେ ଦିନେ କି ସପ୍ତାହେ କି ମାସେ । ତା ଭିତରେ ଜଣାପଡ଼େ କୋଉଠିକି ଗଲେ ଲାଭ ମିଳିବ ଅଧିକ । ବଜାରର ଦୋଷ ନୁହେଁ, ଏଟା

ହିଁ ବଜାର । ବିକ୍ରିଦର ଯୋଉଠି ବେଶି, ପୁଞ୍ଜି ଉଡ଼ିଯିବ ତତ୍କ୍ଷଣାତ୍ ସେଇ ବଜାରକୁ । ସୁଧ ପାଇବାକୁ ଏଭଳି ଲଗାଣ କରାଯାଏନା କି ସଂପଦ ସୃଷ୍ଟିକରିବାକୁ । ଏଭଳି ବ୍ୟବସ୍ଥାକୁ କ୍ୟାପିଟାଲିସ୍ମ 'ମୁକ୍ତକଚ୍ଛ' କି 'ବନ୍ଧନମୁକ୍ତ' ବିବେଚନାକଲେ ସୁଦ୍ଧା, କେୟେନ୍ସ କହିଥିଲେ 'କ୍ୟାସିନୌ' ବା ସର୍ବସାଧାରଣ ନୃତ୍ୟଶାଳା । ପରାମର୍ଶ ଦେଇଥିଲେ ପୁଞ୍ଜିଲଗାଣକୁ ସାମାଜିକ ନିୟନ୍ତ୍ରଣ ଭିତରକୁ ଆଣିବାକୁ । 'ସୋସାଲାଇଜେସନ୍ ଅବ୍ ଇନ୍‌ଭେଷ୍ଟ୍‌ମେଣ୍ଟ୍' ମାନେ, କାର୍ଯ୍ୟକ୍ଷେତ୍ରରେ ରାଷ୍ଟ୍ରର କର୍ତ୍ତୃତ୍ୱକୁ ସ୍ୱୀକାର । ସେଇବାଟରେ ଯୁଦ୍ଧପରବର୍ତ୍ତୀ ପୃଥିବୀରେ କ୍ୟାପିଟାଲିସ୍ମ ପାଇଚି ନିର୍ଧାର୍ଯ୍ୟ ସୁସ୍ଥିତି; ସେତେବେଳେ ସୁଦ୍ଧା କେୟେନ୍ସଙ୍କ 'ଜେନେରାଲ୍ ଥିୟରି'କୁ ସୁମ୍ପିଟର୍ ବ୍ୟଙ୍ଗକରି କହିଚନ୍ତି, ଜମାରୁ 'ଜେନେରାଲ୍' ନୁହେଁ, ଗୋଟାପଣେ ବ୍ରିଟିଶ୍ । ପଘାଛିଡ଼ାଇବା ଯେ କ୍ୟାପିଟାଲ୍‌ର ଜନ୍ମଲକ୍ଷଣ, ଯୁଦ୍ଧବିଧ୍ୱସ୍ତ ଇଉରୋପରେ ସୁମ୍ପିଟ୍‌ର ଉପଲବ୍ଧିକରିଥିଲେ ବୋଲି, କେୟେନ୍ସଙ୍କ ତତ୍ତ୍ୱବିଚାର ଯେ ସ୍ଥାୟୀ ସୁଫଳ ଆଣିପାରିବନାହିଁ, ସେ ବିଷୟରେ ଥିଲେ ନିଃସଂଶୟ । ହେଲେ ସୁଦ୍ଧା, କ୍ୟାପିଟାଲ୍‌ର ଅବାଧ ଗତି ଆକସ୍ମିକ ସମୃଦ୍ଧି ସୃଷ୍ଟିକରିଚି ସର୍ବତ୍ର; ଇଂରେଜୀରେ ଯାହାକୁ କହନ୍ତି 'ବୁମ୍' । ଏ ବୁମ୍-କୁ ଆସନ୍ନସଂକଟରୁ ରକ୍ଷାକରିବାପାଇଁ ରାଷ୍ଟ୍ର ଯଦି ନିୟନ୍ତ୍ରଣ ଜାରିକରେ, କର୍ମଯୋଗାଣ ବାଧାପାଇବା ନିଶ୍ଚିତ । କିନ୍ତୁ ଫିନାନ୍ସର ବିଶ୍ୱାୟନ ରାଷ୍ଟ୍ରର ସେ କ୍ଷମତାକୁ ଖର୍ବକରିଦେଇଚି; ଅର୍ଥାତ୍ କେୟେନ୍ସ ଯୋଉ ଭାବରେ ଚାହିଦାକୁ ପରିଚାଳିତ କରିବାକୁ କହିଚନ୍ତି, ରାଷ୍ଟ୍ର ତା କରିପାରୁନାହିଁ । ଫଳରେ ଯୋଉ ସଙ୍କଟର ସମ୍ମୁଖୀନହୋଇଥିଲେ କେୟେନ୍ସ, ପୁନର୍ବାର ଘଟିଚି ତାର ଆବିର୍ଭାବ । କର୍ତ୍ତବ୍ୟ, ସେଥିପାଇଁ, ଖାଲି ଉପସ୍ଥିତ ସଙ୍କଟରୁ ବାହାରିଆସିବାକୁ ଉଦ୍ୟମ ନୁହେଁ, ଏପରି ଦୁର୍ଯୋଗ ଭବିଷ୍ୟତରେ ଯେମିତି ଆଉ ନଘଟେ, ସେ ଦିଗରେ ବ୍ୟବସ୍ଥାଗ୍ରହଣ; ଅର୍ଥାତ୍ ଫଟକାବାଜି ଯେତେବେଳେ କର୍ମସଂସ୍ଥାନର ଗ୍ୟାରେଣ୍ଟି ଦେଇପାରୁନାହିଁ, ନବ୍ୟ-ଉଦାରବାଦୀ କ୍ୟାପିଟାଲିସ୍ମର ବିକଳ୍ପ ସଂଧାନ । ଖାଲି ଯୁକ୍ତରାଷ୍ଟ୍ର ଆମେରିକାରେ ୨୦୦୭-୦୮ ଭିତରେ ବେକାର ହୋଇଯାଇଚନ୍ତି ୫୩୩୦୦୦ କର୍ମଚାରୀ; ଏବଂ କର୍ମହୀନତାର ହାର ଏକ୍ଷଣି ୧୨%ର ବେଶି, ଆଉ ଭାରତରେ ଗ୍ରୋଥ୍‌ରେଟ୍ ଖସିଆସିଚି ୯% ରୁ ୫%କୁ ।

ଏ ସଂକଟ ଆମେରିକାରେ ଯେତେବେଳେ ମୁଣ୍ଡଟେକିଲା ଗତବର୍ଷ, ବ୍ୟାଙ୍କିଙ୍ଗ୍ ଇନ୍‌ସିଉର୍‌ୟାନ୍ସ ମିଉଚୁଆଲ୍ ଫଣ୍ଡ, ରିଏଲ୍ ଇଷ୍ଟେଟ୍- କେହିହେଲେ ରକ୍ଷାପାଇଲେ ନାହିଁ; ଦେବାଳିଆ ହୋଇଗଲେ ଅନେକ କଂପାନୀ; ଏବଂ ଦେଶର ଅର୍ଥନୀତିକୁ ଧ୍ୱଂସମୁହଁରୁ ଉଦ୍ଧାରକରିବାକୁ ସରକାରୀ ତହବିଲ୍‌ରୁ କିଛିକିଛି ଭରଣାଦେଇ ଯୁକ୍ତରାଷ୍ଟ୍ର

ଚେଷ୍ଟାକଲା ମୃତଶରୀରରେ ଜୀବନ ସଂଚାରକରିବାକୁ; କିନ୍ତୁ ନାଗରିକର କଷ୍ଟାର୍ଜିତ ଟ୍ୟାକ୍ସ ଟଙ୍କାରୁ ବେପାରୀଙ୍କ କ୍ଷତି ସମ୍ଭାଳିବାକୁ ରାଷ୍ଟ୍ର ଯଥେଚ୍ଛା ଖର୍ଚ୍ଚକରିପାରେନା । ବିଶ୍ୱାୟନ ଯେହେତୁ ସାରାପୃଥିବୀର ଅର୍ଥବ୍ୟବସ୍ଥାକୁ ଏକସୂତ୍ରରେ ଛନ୍ଦିପକାଇଚି, କ୍ରମଶଃ ଏ ସଙ୍କଟ ବ୍ୟାପିଯାଇଚି ଅପରାପର ଜାତିରାଷ୍ଟ୍ରକୁ; ଭାରତ ମଧ୍ୟ ଛାଡ଼ପାଇନାହିଁ; ମାତ୍ର ଭାରତର ବ୍ୟାଙ୍କିଙ୍ଗ୍ ସିଷ୍ଟେମ୍ ଯେହେତୁ ରାଷ୍ଟ୍ରାୟତ୍ତ, ଅର୍ଥନୀତିର ମେରୁଦଣ୍ଡ ଜଖମହେଲେ ସୁଦ୍ଧା ଭାଙ୍ଗିଯାଇନାହିଁ । କିନ୍ତୁ ପ୍ରଭାତ ପଟ୍ଟନାୟକ ଲେଖିବା ପରି, The strategy that finance capital would prefer is one of protecting the financial system through the injection of public money without in any way impinging on the interests of the existing owners or large creditors, and waiting for a new bubble to emerge (and even of getting the state to help the process of formation of some new bubble) । କିନ୍ତୁ ରାଷ୍ଟ୍ର ଯଦି ହସ୍ତକ୍ଷେପ ନକରେ, ବେଳକୁ ବେଳ ଏଭଳି ସଙ୍କଟର ପୁନର୍ବିଭାବ ଅବଶ୍ୟମ୍ଭାବୀ । ବ୍ୟାଙ୍କ୍, ଷ୍ଟକ୍‌ମାର୍କେଟ୍, ମ୍ୟାନୁଫ୍ୟାକ୍ଚର — ସବୁଗୁଡ଼ାକ ଏ ଭାବରେ ପଙ୍ଗୁହୋଇଯିବା ମାନେ ହଜାରହଜାର ଲୋକ ବେକାରହେଉଥିବେ ପ୍ରତିଦିନ; ଯାହାକୁ ଆକ୍ୟୁମ୍ୟୁଲେସନ୍ ଇକନମି କହୁଛୁଁ; ଏ ସଙ୍କଟ ତାକୁ ଗଭୀରତର ବିପର୍ଯ୍ୟୟ ଭିତରକୁ ଠେଲିଦେଉଥିବ କ୍ରମାଗତ । ଜାତୀୟକରଣ ବା ନ୍ୟାସନାଲାଇଜେସନ୍ ଯଦିଓ ନିଶ୍ଚିତ ପ୍ରତିଷେଧକ, ଜି-୨୦ ଦେଶମାନେ ଯୋଉ ନୀତି ଗ୍ରହଣକରିବାକୁ ନିଷ୍ପତ୍ତିକରିଚନ୍ତି ଜାତୀୟକରଣ ସେଥିରେ ସ୍ଥାନପାଇନାହିଁ । ଢ଼େର୍ ଅଗ୍ରସର ଦେଶ ଇତିମଧ୍ୟରେ ଆନ୍ତର୍ଜାତିକ ମୁଦ୍ରାକୋଷ ଅକ୍ତିଆରରୁ ବାହାରିଗଲେଣି, କାହିଁକିନା, ରପ୍ତାନିବାଣିଜ୍ୟରୁ ଯୋଉ ଉଦ୍‌ବୃତ୍ତ ପାଇଥିଲେ, ଆଇଏମ୍‌ଏଫ୍‌ରୁ ନେଇଥିବା କରଜ ଶୁଝିଦେବାପାଇଁ କେବଳ ଯଥେଷ୍ଟ ଥିଲା । ହୁଏତ ଆଉକେତେଟା ବର୍ଷଭିତରେ ଆଇଏମ୍‌ଏଫ୍‌ରେ ଗରିବଦେଶ ଛଡ଼ା ଆଉକେହି ରହିବେନାହିଁ । ଜି-୨୦ ମାଧ୍ୟମରେ ତେଣୁ ଚେଷ୍ଟାଚାଲିଚି ଉତ୍‌ଥାନଶୀଳ ଦେଶ, ଯେପରି, ବ୍ରାଜିଲ୍ ଦକ୍ଷିଣ-ଆଫ୍ରିକା, ଭାରତ ଓ ଚୀନ୍‌କୁ ଆଇଏମ୍‌ଏଫ୍ ସାଙ୍ଗରେ ବାନ୍ଧିରଖିବାକୁ, ତାହେଲେ ଯାଇ, ଫିନାନ୍ସ କ୍ୟାପିଟାଲ୍‌ର ବିଶ୍ୱପର୍ଯ୍ୟଟନ ରହିପାରିବ ଅବ୍ୟାହତ । ଚୀନ୍ କିନ୍ତୁ ସ୍ପଷ୍ଟ ମନାକରିଦେଇଚି । ଭାରତର ଅବସ୍ଥା ବି ଏପରି ଶୋଚନୀୟ ନୁହେଁ ଯେ ଜି-୨୦ରୁ ବାହାରିଆସିଲେ ଉଚ୍ଛନ୍ନହୋଇଯିବ; କିନ୍ତୁ ଯୁକ୍ତରାଷ୍ଟ୍ର ଭାରତକୁ କହୁଚି ଉତ୍ଥାନଶୀଳ ବିଶ୍ୱଶକ୍ତି; ସେଇ ସ୍ତୋକବାକ୍ୟରେ ମୁଗ୍ଧହୋଇ ତାଙ୍କରି ଗୁଳାରେ ଚାଲିଚି ଭାରତ; ଯେପରି ଆମେରିକା ସାଙ୍ଗରେ ପରମାଣୁଚୁକ୍ତି; ଚୀନ୍‌ର ପ୍ରତିପକ୍ଷକରି ଭାରତକୁ ତେଣୁ ଗଢ଼ିବାକୁ ଚାହୁଁଚି ଧନତନ୍ତ୍ର ଏସିଆରେ । ଭାରତର

ଶାସକଶ୍ରେଣୀ ମଧ୍ୟ ସମର୍ଥନକରୁଛି ନୀତିଗତ ଏ କୌଶଳକୁ । ଏବଂ 'ନ୍ୟାସନାଲିଜ୍ମ' କହିଲେ, ମହାତ୍ମା ଗାନ୍ଧୀଙ୍କ ପାଖରୁ ଆଜିଯାଏଁ ବୁଝାଉଚି, ଶାସକଶ୍ରେଣୀର ଜାତୀୟତାବାଦ ଏକମାତ୍ର ପାର୍ଥକ୍ୟ, ବ୍ରିଟିଶ୍-ବିରୋଧୀ ଜାତୀୟତାବାଦ କିମ୍ବା ଆଧୁନିକ ହିନ୍ଦୁ କି ଦ୍ରାବିଡ଼ ଜାତୀୟତାବାଦ ଏକେବାରେ ଅଲଗା ଜିନିଷ । ଜାତୀୟତାବାଦ-ପ୍ରଣୋଦିତ ମାର୍କେଟ୍ ମଧ୍ୟ ଆକ୍ୟୁମ୍ୟୁଲେସନ୍ ଦ୍ୱାରା ପରିଚାଳିତ, ମାତ୍ର ସେ ଆକ୍ୟୁମ୍ୟୁଲେସନ୍ ଧନତାନ୍ତ୍ରିକ ଉଦ୍‌ବୃତ୍ତସଂଚୟ ନୁହେଁ । ମାନବେନ୍ଦ୍ରନାଥ ରାୟ କହିବା ପରି, a discourse of labour । ଧନତନ୍ତ୍ରରେ କିନ୍ତୁ ଉଦ୍‌ବୃତ୍ତମୂଲ୍ୟ ନିଷ୍କାସନ ହିଁ ମାର୍କେଟ୍‌କୁ ଗଠିତ, ପରିଚାଳିତ ଓ ନିୟନ୍ତ୍ରିତ କରିଥାଏ । ଶାସକଶ୍ରେଣୀ ଦୃଷ୍ଟିରେ ଗଣତନ୍ତ୍ର କିନ୍ତୁ କେବଳ ସଂବିଧାନ, ନିର୍ବାଚନ, ରାଜନୀତିକ ଦଳ, କ୍ଷମତାବିକେନ୍ଦ୍ରୀକରଣ ଇତ୍ୟାଦି; ଏ ଗଣତନ୍ତ୍ର ସମାଜକୁ ଆଗକୁ ନେଇଚି ନା ପଛକୁ, ସେ ଚିନ୍ତା ଶାସକଶ୍ରେଣୀ କରେନା; ଅନ୍ନବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟ, କାମଧନ୍ଦା, ଘରଦ୍ୱାର ସମାଜାଶ୍ରିତ ସବୁଲୋକ ସମାନଭାବରେ ପାଉଚନ୍ତି କି ନାହିଁ, ସେ ବିଚାର ଗଣତନ୍ତ୍ରରୁ ବିଚ୍ୟୁତହୋଇ ନିର୍ମାଣକରେ 'ପ୍ରଗତି' ଧାରଣାକୁ; ଏବଂ କରେ ବୋଲି, ସଂପତ୍ତିର ମାଲିକାନା ସବୁଲୋକ ସମାନ ଭାବରେ ପାଆନ୍ତିନାହିଁ; ଅର୍ଥାତ୍, ସଂପଦର ସମବଣ୍ଟନ ଘଟେନା ବୋଲି ସମାଜର 'ପ୍ରତିନିଧିତ୍ୱ' କରିପାରେନା ଶାସକଶ୍ରେଣୀ । ମାନେ, ନିଜଶ୍ରେଣୀ ଛଡ଼ା ଆଉକାହାରି ପ୍ରତିନିଧିତ୍ୱ କରିପାରେନା । ଅଥଚ ସଂପତ୍ତିର ଅଧିକାର ମାନେ, ଇଂରେଜୀରେ କୁହାଯାଉଚି 'ସୋସାଲାଇଜେସନ୍ ଅବ୍ ପ୍ରପର୍ଟି'; ଅଥଚ ନବ୍ୟ-ଉଦାରବାଦ କହୁଚି, ଯା ଚାଲିଚି ଯେମିତି ଚାଲିଚି, ଦେୟାର୍ ଇଜ୍ ନୋ ଅଲ୍‌ଟରନେଟିଭ୍ ! ତେଣୁ ଷ୍ଟ୍ରକ୍‌ଚରୟାଲ୍ ଆ୍ୟାଡ୍‌ଜଷ୍ଟ୍‌ମେଣ୍ଟ୍ ମାନେ ଆମେରିକାରେ ଯାହା ଯେମିତି ହେଉଚି, ଭାରତ କରିବ ସେଇ ବ୍ୟବସ୍ଥା ସାଙ୍ଗରେ ଆ୍ୟାଡ୍‌ଜଷ୍ଟ୍‌ମେଣ୍ଟ୍ । ଆଧୁନିକ କାଳରେ ଇମ୍ପିରିଆଲିଜ୍ମ କହିଲେ ବୁଝାଏ ଏଇ ଅସମ ବିନିମୟ । ଫିନାନ୍ସ କ୍ୟାପିଟାଲ୍ ଯୋଉ ସଂକଟର ସମ୍ମୁଖୀନହୋଇଚି, ଏବଂ ବାରମ୍ବାର ହେଉଥିବ, ତା ମୂଳରେ କର୍ମରତ କିନ୍ତୁ ଏଇ ଇମ୍ପିରିଆଲିଜ୍ମ ।

ବେଳାଏ ଲୋକଙ୍କ ଧାରଣା, ବିଶ୍ୱାୟନ ପ୍ରକ୍ରିୟାକୁ ତ୍ୱରାନ୍ୱିତକରୁଚି ତଥ୍ୟପ୍ରଯୁକ୍ତିର ବିପ୍ଳବ । କିନ୍ତୁ 'ବିପ୍ଳବ' ଶବ୍ଦଟାକୁ ନିର୍ବିଚାରରେ ପ୍ରଯୁକ୍ତିଗତ ପରିବର୍ତ୍ତନ ସାଙ୍ଗରେ ଯୋଡ଼ିଦେବା ଠିକ୍ ନୁହେଁ; କାହିଁକିନା, ଅତିସାଧାରଣ ଜିନିଷ, ଯେପରି ବାଷ୍ପଚାଳିତ ଜାହାଜ କ୍ୟାପିଟାଲିଜ୍ମ ପ୍ରସାର ସକାଶେ ଯା କରିଚି କିମ୍ବା ବିଦ୍ୟୁତ୍‌ଶକ୍ତି ମ୍ୟାନୁଫ୍ୟାକ୍‌ଚର୍ ବଢ଼ାଇବା ପାଇଁ ଯା କରିଚି, ତଥ୍ୟପ୍ରଯୁକ୍ତି ତା ସହିତ ପ୍ରତିତୁଳନାରେ ଏକେବାରେ ନଗଣ୍ୟ; ଫିନାନ୍ସ କ୍ୟାପିଟାଲ୍‌ର ଭୂପର୍ଯ୍ୟଟନ ପାଇଁ ସବୁଠୁଁ ବେଶି ଜରୁରୀ

ହେଲେସୁଦ୍ଧା । ମାତ୍ର ପ୍ରକୃତରେ, କମ୍ପ୍ୟୁଟିଙ୍ଗ୍ (=ଗଣନା) ସହିତ କମ୍ୟୁନିକେସନ୍ (=ବାର୍ତ୍ତାପ୍ରେରଣ)ର ସଂଶ୍ଳେଷ ଦୂରତ୍ୱ ଓ ସମୟକୁ ହ୍ରାସକରୁଥିଲେ ସୁଦ୍ଧା, ମଣିଷର ଚେତନାକୁ ଏପରି ପ୍ରଭାବିତକରୁନାହିଁ ଯେ, 'ବିପ୍ଳବ' ଆଖ୍ୟାରେ ଭୂଷିତ ହେବ । ପରିଣାମରେ କୁଆଡ଼େ ଏପରି ଏକ ପରିସର ଆକାଶମାର୍ଗରେ ତିଆରିହୋଇଚି ଯେ, (=ନାଁଦିଆଯାଇଚି ସାଇବେର୍ ସ୍ପେସ୍) ସେଠି ତିଆରିକରିପାରିବ ଭର୍‌ଚୁଆଲ୍ ରିଆଲିଟି; ମାନେ, ଅପ୍ରକୃତ ମନେହେବ ପ୍ରକୃତ । ହୁଏତ ସମ୍ଭବପର, ମାତ୍ର ତା ଫଳରେ, ଯୋଉ ଲଜିକ୍ କ୍ୟାପିଟାଲିସ୍ଟକୁ ବଞ୍ଚାଇରଖିଚି, ସେଥିରେ ତିଳେମାତ୍ର ହେର୍‌ଫେର୍ ହୁଏନା; କି କ୍ୟାପିଟାଲିସ୍ମର ବିକଳ୍ପ କୋଉ ଜଗତର ସ୍ୱପ୍ନ (=ଭରଚୁଆଲ୍ ରିଆଲିଟି) ମଧ୍ୟ ଦେଖାଇପାରେନା । ତେବେ, ଅଳ୍ପସମୟରେ ବେଶିକାମ କରିବାକୁ ସାହାଯ୍ୟକରିପାରେ; ଉତ୍ପାଦନ-ବଣ୍ଟନର ବିଶ୍ୱାୟନ ତାର ଅବଦାନ ନୁହେଁ । ଅନ୍ୟ ଶବ୍ଦରେ, ଫିନାନ୍ସ କ୍ୟାପିଟାଲ୍ ଯୋଉ ସମସ୍ୟା ସୃଷ୍ଟିକରିଚି, ତଥ୍ୟପ୍ରଯୁକ୍ତି ତାର ନିରସନ କରିପାରେନା, କି ସମାଧାନର ବାଟ ମଧ୍ୟ ବତାଇପାରେନା; ଅର୍ଥାତ୍ କମ୍ପିଉଟର୍ ଅନ୍ନବସ୍ତ୍ର କି ଚାକିରିବାକିରି 'ଅନ୍‌ଲୋଡ୍' କରିପାରେନା କି ସମାଜିକ ସଂପଦର ସମବଣ୍ଟନ କି ଉପାୟରେ ସମ୍ଭବପର, ସେ ଖବର ବି ତା ପର୍ଦ୍ଦାରେ ଫୁଟିଉଠେନା । ବରଂ ତଥାକଥିତ ସାଇବେର୍ ସ୍ପେସ୍ କ୍ୟାପିଟାଲିସ୍ମର ବୋଲ ମାନି ଅଜସ୍ର ତଥ୍ୟକୁ ପଣ୍ୟ ବା କମୋଡିଟିରେ ପରିଣତକରୁଚି ଦିନରାତି । କମୋଡିଫିକେସନ୍‌ର ଏ ପ୍ରତ୍ୟୟକୁ, କେହିକେହି ମନେକରୁଚନ୍ତି, ସଂସ୍କୃତି ବା କଲ୍‌ଚର୍ ପ୍ରତି ମଧ୍ୟ ପ୍ରଯୋଜ୍ୟ; ବିଶ୍ୱାନର ଯା ଅନ୍ୟତମ ଅବଦାନ; ଏବଂ ସେଭଳି ପଣ୍ୟକରଣ କୁଆଡ଼େ କ୍ଷିପ୍ରହୋଇଚି ତଥ୍ୟପ୍ରଯୁକ୍ତି କଲ୍ୟାଣରୁ । କାହିଁକିନା, ଭୋଗବାଦ ବା କନ୍‌ସିଉମରିଜ୍ମ ବିଶ୍ୱାୟନ ପ୍ରକ୍ରିୟାରୁ ଉପଜାତ । ଗୌତମ ବୁଦ୍ଧ ମଧ୍ୟ ତୃଷ୍ଣା ବା ଭୋଗବାସନାକୁ କହିଚନ୍ତି ଦୁଃଖର କାରଣ; ଏକମାତ୍ର ମାର୍କ୍ସ ଭାବିଚନ୍ତି ଆପିୟରେନ୍ସ ବା ପ୍ରତୀୟମାନକୁ ପ୍ରକୃତ ମନେକରିବା ସବୁରକମ ବିଭ୍ରାନ୍ତିର କାରଣ । ଅବଶ୍ୟ ଭାରତ ଭଳି ଅଭାବୀ ଦେଶରେ କ୍ରୟକ୍ଷମତା ଏପରି ସୀମିତ ଯେ ଢ଼େର୍ ଲୋକ ଦୁଇବେଳା ଖାଇବାକୁ ପାଆନ୍ତିନାହିଁ; ସାନପିଲା ସ୍କୁଲକୁ ନଯାଇ ଗତରଖଟି ପଇସା ଆଣନ୍ତି; ଯୋଉଠି ସ୍କୁଲ୍‌କୁ ଯାଆନ୍ତି, ଦି'ପହରେ ଗଣ୍ଡେ ଖାଇବାକୁ ମିଳିବ ବୋଲି ବାପ-ମା ଜୋର୍‌କରି ପଠାଇଦିଅନ୍ତି । ଭୋଗବାଦ ସକାଶେ ଜମାରୁ ଅନୁକୂଳ ପରିବେଶ ନୁହେଁ । ଭୋଗକରନ୍ତି ଅଳ୍ପଲୋକ; ସେମାନଙ୍କ ଶ୍ରେଣୀପରିଚୟ, ମାର୍କ୍ସୀୟ ପରିଭାଷାରେ ବୁର୍ଜୋୟା । ଇଣ୍ଟର୍‌ନେଟ୍ ଇତ୍ୟାଦି ତାଙ୍କରି ଘରେ ଅଛି । ସେମାନଙ୍କ ଜୀବନଶୈଳୀକୁ ଦେଶର କଲ୍‌ଚର୍ କୁହାଯିବ, ନା ସଂଖ୍ୟାଗରିଷ୍ଠ ଦେଶବାସୀଙ୍କ ଜୀବନଯାତ୍ରାରେ ପରିଦୃଷ୍ଟ ମୂଲ୍ୟବୋଧକୁ ? ଏଇ ପ୍ରଶ୍ନର

ଉତ୍ତର ଉପରେ ନିର୍ଭରକରୁଚି ବିଶ୍ୱାୟନ ଦ୍ୱାରା ସଂସ୍କୃତିଦୂଷଣ ଅଭିଯୋଗର ସତ୍ୟାସତ୍ୟ । ସନ୍ଦେହ ନାହିଁ, ଚୂଡ଼ାମୁଢ଼ି ଜାଗାରେ ଲୋକ ବିସ୍କିଟ୍ ଖାଉଚନ୍ତି, ପଇଡ଼ପାଣି ଜାଗାରେ କୋକାକୋଲା ବି ପେପ୍ସି, ଧୋତି ଜାଗାରେ ଟ୍ରାଉଜର୍ ପିନ୍ଧୁଚନ୍ତି ଅନେକ, ଏଠିକିସେଠିକି ଯିବାକୁ ସାଇକେଲ୍ ଦରକାର ହେଉଚି, ମାଟିହାଣ୍ଡି ଜାଗାରେ ଗୃହିଣୀ ବ୍ୟବହାରକରୁଚନ୍ତି ଆଲୁମିନିୟମ୍ ଡେକ୍‌ଚି କଡ଼ାଇ । ଧନତାନ୍ତ୍ରିକ ଉତ୍ପାଦନ ସହିତ ସଂପର୍କ ଥାଇପାରେ, ମାତ୍ର ବିଶ୍ୱାୟନ ତ ଏ ପରିବର୍ତ୍ତନ ଆଣିନାହିଁ ! ତା ଛଡ଼ା, ପରିବର୍ତ୍ତନଗୁଡ଼ାକ କଣ ସୂଚନାକରୁଚି ମୂଲ୍ୟବୋଧର ଓଲଟପାଲଟ ? ସ୍ୱଦେଶୀ ଯୁଗରେ ବି କ୍ୟାପିଟାଲିସ୍ମକୁ ଦାୟୀ କରାଯାଇନାହିଁ; ଦେଶର କାରିଗର କି ତନ୍ତୀ ବେକାର ହୋଇଯାଇଚନ୍ତି ବୋଲି ଗାନ୍ଧି ମେସିନ୍ ବର୍ଜନକରିବାକୁ ପରାମର୍ଶଦେଇଚନ୍ତି । ଆଉ, ଏମ୍.ଏନ୍.ରାୟ ମାର୍କ୍ସବାଦ ଜାଣିଥିଲେ ବୋଲି 'ସ୍ୱଦେଶୀ' କୁ କହିଚନ୍ତି, a discourse of labour । କ୍ୟାପିଟାଲିସ୍ମ ସମାଜର ବୁର୍ଜୋୟାଭିତ୍ତିକୁ ପ୍ରସାରିତକରିଚି ନିଶ୍ଚୟ, କିନ୍ତୁ ସେଭଳି ଶ୍ରେଣୀବିଭାଜନ ଗଡ଼ିଆସୁଚି ସାମନ୍ତତନ୍ତ୍ରରୁ । ବିଶ୍ୱାୟନ ବରଂ ପଣ୍ୟରେ ପରିଣତକରିଚି ନାଚଗୀତ, ଚିତ୍ରକଳା, ସ୍ଥପତ୍ୟ-ଭାସ୍କର୍ଯ୍ୟ କିମ୍ବା ସାହିତ୍ୟକୁ । ଏପରିକି, ଟୁରିଜ୍ମକୁ । ଏଗୁଡ଼ାକ କିନ୍ତୁ ସାମନ୍ତତନ୍ତ୍ରର ସୃଷ୍ଟି; ରଜା-ଜମିଦାର ଯା କରୁଥିଲେ ଗଣତାନ୍ତ୍ରିକ ରାଷ୍ଟ୍ର ମଧ୍ୟ ସେମିତି ପୁରସ୍କାର ଫୁରସ୍କାର ଦେଇ ଏଇ କାରିଗରମାନଙ୍କୁ ସାହାଯ୍ୟକରୁଚି । ଉଦ୍‌ବୃତ୍ତମୂଲ୍ୟ ଏଥିରୁ ବାହାରେନା; କ୍ୟାପିଟାଲିସ୍ମ ସର୍ଜନଶୀଳ ପରିଶ୍ରମର ପୃଷ୍ଠପୋଷକତା କରେନା । ବିଶ୍ୱାୟନ ଫଳରେ ବରଂ ଗୋଟିପୁଅ ଯାଇ ଇଉରୋପ-ଆମେରିକାରେ ବୁଲିଆସୁଚନ୍ତି; କଲ୍‌ଚର୍ ତେବେ ଦୂଷିତହେଉଚି କେମିତି ? ଏଗୁଡ଼ାକୁ ବରଂ ବିବେଚନାକରୁଚୁଁ ଅଗ୍ରଗତିର ଲକ୍ଷଣ ! ସେଇ ସାଧାରଣ ଅର୍ଥରେ କଳକାରଖାନା, ଟେଲିଫୋନ୍, ଟେଲିଭିସନ୍ ମଧ୍ୟ ଅଗ୍ରସର ଅର୍ଥନୀତିର ଲକ୍ଷଣ । ଏଭଳି ଆଧୁନିକତାର ପ୍ରତାପ ସତୁରିଦଶକ ଶେଷପର୍ଯ୍ୟନ୍ତ ପ୍ରବଳ ଥିଲା, କାହିଁକିନା, ଦୁନିଆଯାକ ଲୋକ ଧରିନେଇଥିଲେ, ପ୍ରାକ୍-ଧନତାନ୍ତ୍ରିକ ଅଂଚଳରେ ପୁଞ୍ଜିବାଦୀ ବିକାଶ ବାଟଦେଇ ସର୍ବଜନୀନ ଆଧୁନିକୀକରଣ ଘଟିବ । କିନ୍ତୁ ଔପନିବେଶିକ ଲକ୍ଷଣଗୁଡ଼ିକୁ ଆଙ୍ଗୁଳିଦେଖାଇ ମାର୍କ୍ସବାଦୀ କହିଲେ, ସାମ୍ରାଜ୍ୟବାଦୀ ଶୋଷଣ ପ୍ରାକ୍-ପୁଞ୍ଜିବାଦୀ ଦେଶମାନଙ୍କରେ ଅଦ୍‌ଭୁତ ଏକ ଶ୍ରେଣୀବିନ୍ୟାସକୁ ଜନ୍ମଦେଇଛି; ଏବଂ ସେଥିପାଇଁ, ପୁଞ୍ଜିବାଦୀ ବିକାଶର ବିଶ୍ୱଜନୀନ ନିୟମ ସେଠି ଖାଟିବନାହିଁ । ଆରମ୍ଭ ହୋଇଯାଇଚି ହରେକ ରକମ ଇତିହାସଚର୍ଚ୍ଚା; ମାତ୍ର ବୁଝିପାରିନାହାନ୍ତି କେହିହେଲେ, ଏକାବେଳକେ ଏକାଧିକ ସମାଜରେ ଏକାରକମ ଘଟଣା କାହିଁକି ଘଟିବ ବା ଘଟେ । ବିଦ୍ୱାନ୍ ସେଇଠୁ କହିଲେ, ପଲିଟିକ୍ୟାଲ୍ ଇକନମିର

ଜଣାଶୁଣା ପଦ୍ଧତିରେ ନୁହେଁ, କଲ୍‌ଚର୍‌କୁ ମଧ୍ୟ ପୁଞ୍ଜିର ବିଶ୍ୱଜନୀନ ବିସ୍ତାର ସହିତ ଯୋଡ଼ି ବିଚାରକରିବା ଦରକାର; ବିଶେଷତଃ ଯେହେତୁ କନ୍‌ସେପ୍ଟ ହିସାବରେ କଲ୍‌ଚର୍ ଗ୍ଲୋବାଲ୍ ଏବଂ ଊନବିଂଶ ଶତକ ଆରମ୍ଭରେ ଏକ କନ୍‌ସେପ୍ଟ ଜନ୍ମନେଚି ପୃଥିବୀର ବିଭିନ୍ନ ଦେଶରେ ପ୍ରାୟ ଏକାବେଳକେ । ତା ଆଗରୁ ଅବଶ୍ୟ ଧର୍ମ ଥିଲା, ବିଦ୍ୟାଚର୍ଚ୍ଚା ଥିଲା, ସାହିତ୍ୟ ଥିଲା, କାରୁଶିଳ୍ପ ଥିଲା, ଆଉ ଅଭିଜାତ ବର୍ଗଙ୍କ ଜୀବନଚର୍ଯ୍ୟା ଯେ ନିମ୍ନବର୍ଗ ତୁଳନାରେ ଏକେବାରେ ଅଲଗା, ସେ ବିଷୟରେ ମଧ୍ୟ ଥିଲା ତୀବ୍ର ସଚେତନତା । କିନ୍ତୁ ସମାଜ ଜୀବନରେ ଯେ କଲ୍‌ଚର୍ ନାମକ ଏକ ସ୍ୱତନ୍ତ୍ର ଅଙ୍ଗ ରହିଚି, ଉପଲବ୍ଧିକୁ ଆସିଲା ଦୀପାୟନ (ଏନ୍‌ଲାଇଟିନ୍‌ମେଣ୍ଟ) ପରବର୍ତ୍ତୀ ଆଧୁନିକ କାଳରେ; ଫଳରେ, ଇଂରେଜୀ ଫରାସୀ ଜର୍ମନ୍- ତିନିଟିଯାକ ଭାଷାରେ, କଲ୍‌ଚର୍ ସମ୍ବନ୍ଧରେ ଲେଖାଲେଖି ଆରମ୍ଭକରିଦେଇଚନ୍ତି ଭାବୁକ । କାହିଁକିନା, ପୁଞ୍ଜିର ଆଧିପତ୍ୟ ଦୃଢ଼ହେବା ସଂଗେସଂଗେ ପଣ୍ୟବିନିମୟ, ମାନେ ଉତ୍ପନ୍ନଦ୍ରବ୍ୟ ଓ ଶ୍ରମରୂପକ ପଣ୍ୟର କିଣାବିକା ବିଷୟରେ ଇଉରୋପ୍ ବିଶେଷ ସଚେତନ ହୋଇଉଠିଚି, ଏବଂ ସେଇ ସୂତ୍ରରେ ଉଦାରପନ୍ଥୀ ଭାବୁକ, ଯେପରି ବେନ୍‌ଥାମ୍ କି ମିଲ୍ ଭଳି ହିତବାଦୀ(=ଇଉଟିଲିଟେରିଆନ୍) ବ୍ୟକ୍ତିକ୍ରେତାର ହିତଅହିତ ସାଙ୍ଗକୁ ନାଗରିକ-ଅଧିକାର କଥା ମଧ୍ୟ ଉଠାଇଚନ୍ତି । ମାର୍କ୍ସବାଦୀ ବୀକ୍ଷାରେ ଏଇ ହେଲା ବିମୂର୍ତ୍ତ-ଶ୍ରମ ସାଙ୍ଗକୁ ବିମୂର୍ତ୍ତ-କର୍ତ୍ତା ଧାରଣାର ଉଦ୍‌ଭବ । ରୋମାଣ୍ଟିକ୍ ଭାବୁକ ଅବଶ୍ୟ ପ୍ରବଳ ଆପତ୍ତି ଉଠାଇଚନ୍ତି ଏଭଳି ବ୍ୟକ୍ତିକେନ୍ଦ୍ରିକ ଓ ବ୍ୟକ୍ତିତାଡ଼ିତ ପ୍ରତିଯୋଗିତା ବିପକ୍ଷରେ, କାହିଁକିନା, ବ୍ୟକ୍ତିସ୍ୱାର୍ଥ ହୋଇପାରେନା ସମାଜଦର୍ଶନର ମୂଳାଧାର । ଶିଳ୍ପପୁଞ୍ଜିର ପ୍ରାଦୁର୍ଭାବରୁ ଗ୍ରାମସମାଜର ଅବନତି, କାରିଗରି ଶିଳ୍ପର ଅଧୋଗତି, ଶିଳ୍ପଶ୍ରମିକ-ଜୀବନର କଦର୍ଯ୍ୟତା / ଯାନ୍ତ୍ରିକତା, ନବ୍ୟଧନିକ ଶ୍ରେଣୀର ସ୍ୱାର୍ଥପରତା ଓ କୁରୁଚି, ଉତ୍କଟଭାବେ ଫୁଟିଉଠିଚି ଏମାନଙ୍କ ରଚନାରେ । ଜୋର୍‌ଦେଇଚନ୍ତି ସମାଜଜୀବନର ଯୌଥବନ୍ଧନ ଆଉ ସେଥିପ୍ରତି ସମାଜପତିଙ୍କ ଦାୟବଦ୍ଧତା ଉପରେ । ଏଇମାନେ ହିଁ କଲ୍‌ଚର୍‌ର ଆଦ୍ୟ ସମାଲୋଚକ । ଜର୍ମନ୍ ଭାବୁକ ସିଲର୍ ଓ ହମ୍‌ବୋଲ୍ଟ 'କୁଲ୍‌ଟୁର୍' ସାଙ୍ଗରେ 'ବିଲ୍‌ଡୁଙ୍ଗ୍' ଧାରଣାକୁ ଯୋଡ଼ି ତିଆରିକଲେ ଯୋଉ ଆଦିକଳ୍ପ ଇଉରୋପ ସାରା ବ୍ୟାପିଯାଇଚି ତାର ଆବେଦନ; ଏପରିକି ଇଂରେଜୀ 'କଲ୍‌ଚର୍' ଦିହରେ ଲାଗିଯାଇଚି 'କଲ୍‌ଟିଭେସନ୍'ର ଚିହ୍ନବର୍ଣ୍ଣ । ଏଇ କନ୍‌ସେପ୍ଟ ଆସିଚି ଭାରତକୁ; କିନ୍ତୁ ସେ ସମୀକ୍ଷା ସର୍ବତ୍ର ଏକରୂପ ନୁହେଁ । ତଥାପି ସବୁଗୁଡ଼ାକୁ ଏକାତ୍ମକରିଚି ବିଶ୍ୱପୁଞ୍ଜିର ସର୍ବଜନୀନ ଚରିତ୍ର । ଅନ୍ୟ ଶବ୍ଦରେ, କଲ୍‌ଚର୍‌ର ଇତିହାସ ମଧ୍ୟ ଗ୍ଲୋବାଲ୍ ଇତିହାସ । ଏଇ ନିରିଖରେ, ଊନବିଂଶ ଶତକରୁ ଅଦ୍ୟାବଧି ଭାରତର ବିଭିନ୍ନ

ଅଂଚଳରେ କଲ୍‌ଚର୍ ସମରୂପ ଦିଶିବନାହିଁ, ଯେହେତୁ ପୁଞ୍ଜିର ଅନୁପ୍ରବେଶ ସବୁଜାଗାରେ ଏକାବେଳକେ କିମ୍ବା ସମାନ ତୀବ୍ରତାରେ ଘଟିନାହିଁ କି ଘଟୁନାହିଁ । ତେବେ, ହିତବାଦୀଙ୍କ ବ୍ୟକ୍ତିକେନ୍ଦ୍ରିକ ପ୍ରତିଯୋଗିତା-ଜଗତ ସର୍ବତ୍ର ପ୍ରତିଭାତହୋଇଚି ବିଭୀଷିକା; ଯେପରି, ଚିରସ୍ଥାୟୀ ବନ୍ଦୋବସ୍ତ ଜମାନାରେ ଭାରତୀୟ କୃଷକର ଅନାହାର ବା ଦୁର୍ଭିକ୍ଷ । ଫଳରେ, ରାଜନୀତି ହୋଇଚି ସମଷ୍ଟିକେନ୍ଦ୍ରିକ ଓ ଜାତ୍ୟାଭିମାନୀ । ପୁଣି ଊନବିଂଶ ଶତକର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବିଦେଶୀବାଣିଜ୍ୟ ସହିତ ଯୁକ୍ତ ଯେତେ ପୁଞ୍ଜିବାଦୀ, ସମସ୍ତେ ଥିଲେ ଭାରତୀୟ । ସିପାହୀବିଦ୍ରୋହ ଉତାରୁ ଇଉରୋପୀୟ ଓ ଭାରତୀୟ ପ୍ରତିଷ୍ଠାନ ପରସ୍ପର ଅଲଗା ହୋଇଯାଇଚନ୍ତି । ତେଣୁ ଊନବିଂଶ ଶତକର ପ୍ରଥମାର୍ଦ୍ଧକୁ କଲ୍‌ଚର୍ ପାଇଁ ଲିବରାଲ୍ କୁହାଯାଇପାରେ; ଦ୍ୱିତୀୟାର୍ଦ୍ଧକୁ କିନ୍ତୁ ଜାତୀୟତାବାଦୀ କହିବାକୁ ପଡ଼ିବ । ମାତ୍ର ସାମ୍ରାଜ୍ୟବାଦୀ କହିହେବନାହିଁ ବିଶ୍ୱାୟନ ଆରମ୍ଭହେବା ପର୍ଯ୍ୟନ୍ତ । କାହିଁକିନା, ଫିନାନ୍ସ କ୍ୟାପିଟାଲ୍ ଦିଗ୍‌ବଳୟରେ ଉଙ୍କିମାରିବା ପର୍ଯ୍ୟନ୍ତ କଲ୍‌ଚର୍‌ର ନିୟାମକ ଥିଲା, ଯାହାକୁ କହୁଚନ୍ତି 'ଏଥିକ୍ୟାଲ୍ ପଲିଟିକ୍ୟାଲ୍ ଇକନମି; ପ୍ରସଙ୍ଗକ୍ରମେ ଯା ଏକ୍ଷଣି ଅଭିନିବେଶ ଦାବିକରୁଚି ସ୍ପଷ୍ଟତଃ ତା ସତୁରିଦଶକରେ ଗଜୁରିଉଠିଥିବା ଆଧୁନିକ ଓ ଉତ୍ତର-ଆଧୁନିକ ଜ୍ଞାନତତ୍ତ୍ୱ । ମନସ୍ୱୀଙ୍କ ବିବେଚନାରେ, ଏ ଜ୍ଞାନତତ୍ତ୍ୱ ବିଶ୍ୱାୟନର ହିଁ ଉପଜାତ । ଆକ୍ରମଣକରାଯାଇଚି ନିୟପଜିଟିଭିଜିମ୍ ବା ନବ୍ୟଦୃଷ୍ଟବାଦ ଆଉ ଏମ୍ପିରିସିଜିମ୍‌କୁ । ଏମ୍ପିରିସିଜିମ୍ ମାନେ ଅଭିଜ୍ଞତା ହିଁ ସକଳ ଜ୍ଞାନର ଉତ୍ସ—ଏଇ ମତବାଦ; ଏବଂ ପିଜିଟିଭିଜିମ୍ ମାନେ ସ୍ପଷ୍ଟଦୃଷ୍ଟ ବସ୍ତୁହିଁ ଏକମାତ୍ର ସତ୍ୟ – ଏଇ ମତବାଦ । ଅର୍ଥାତ୍, ଜ୍ଞାନ ସବୁବେଳେ ପ୍ରତ୍ୟକ୍ଷ ଓ ଇନ୍ଦ୍ରିୟଗ୍ରାହ୍ୟ; ତା ବାହାରେ, ଯୁକ୍ତି କି ଅନୁମାନ, ଜ୍ଞାନ ପଦବାଚ୍ୟ ହୋଇପାରେନା । ଏ ମତବାଦ ତେଣୁ ଗଣିତ ବା ଲଜିକ୍ କୁ ଜ୍ଞାନର ମର୍ଯ୍ୟାଦା ଦେବନାହିଁ; ମାତ୍ର ଆକ୍ରମଣର ପ୍ରକୃତ ଲକ୍ଷ୍ୟ ଅଧିଭୌତିକତା ବା ମେଟାଫିଜିକ୍ସ । 'ଆଧୁନିକ' ପ୍ରତ୍ୟୟକୁ ବିରୁଦ୍ଧପକ୍ଷ, ଅର୍ଥାତ୍ ଉତ୍ତର-ଆଧୁନିକ, ଭାବିଚି ଅନୁରୂପ ପରାବିଦ୍ୟା; ଯା ବିଶ୍ୱାସକରେ ଅନ୍ତିମ ପରିଣାମରେ, ଏବଂ ଅନ୍ତିମ ପରିଣାମରେ ପହଞ୍ଚିବାକୁ 'ପ୍ରଗତି' ଉପରେ । ଏ ବିଚାରରେ ମାର୍କ୍ସଚିନ୍ତା ଅବଶ୍ୟ ଦୀପାୟନ-ପ୍ରସୂତ ଆଧୁନିକତା; ଏବଂ ସେଇ ସୂତ୍ରରେ, ପ୍ରଗତି/ଅଗ୍ରଗତି ଭଳି ଅଲୌକିକତାର ପ୍ରବର୍ତ୍ତକ । ସେଇ ଅଲୌକିକତାର ଅନ୍ୟ ନାମ ମେଟାନ୍ୟାରେଟିଭ୍ ବା ମହାଆଖ୍ୟାନ । ଉତ୍ତର-ଆଧୁନିକ, ଯାବତୀୟ ମହାଆଖ୍ୟାନକୁ ଜ୍ଞାନଚର୍ଚ୍ଚାରୁ ବହିଷ୍କାରକରିବାକୁ ଚାହିଁଛି; ଯା ଫଳରେ ୧୯୭୦ ପର୍ଯ୍ୟନ୍ତ ଯୋଉ କଥାଗୁଡ଼ାକୁ ଜ୍ଞାନର ମର୍ଯ୍ୟାଦା ଦିଆଯାଉଥିଲା, ଘଟିଚି ତାର ସିଂହାସନଚ୍ୟୁତି, ଅନ୍ତତଃ 'ପୋଷ୍ଟ୍' ଉପସର୍ଗ ଯୋଡ଼ାହୋଇଥିବା

ବିନୟଗୁଡ଼ିକରେ । 'ପୋଷ୍ଟ-ମଡର୍ନ', ଉପସର୍ଗଯୁକ୍ତ ଏଇ ଶବ୍ଦବନ୍ଧ ବ୍ୟବହାରକରିଚନ୍ତି ଫ୍ରାଙ୍କୁଇସ୍ ଲିୟତାର୍ ଆମେରିକା ଯାଇ, ଏବଂ ପ୍ରସ୍ତାବକରିଚନ୍ତି ଯେ କୋଉଜେଲେ ବିଷୟରେ ନିଷ୍ଠିତହେବା ଯେହେତୁ ଭ୍ରାନ୍ତମାନସିକତା, ବାଦାନୁବାଦ ହିଁ ଏକମାତ୍ର କର୍ତ୍ତବ୍ୟ; କାହିଁକିନା, ବାଦାନୁବାଦର ଉପସଂହାର ନାହିଁ, କି ନିଷ୍ଠିତସିଦ୍ଧାନ୍ତରେ ପହଞ୍ଚିବା ବାଦାନୁବାଦ୍‌ର ଲକ୍ଷ୍ୟ ନୁହେଁ। ଅର୍ଥାତ୍, ଶ୍ରେଣୀସଂଗ୍ରାମ ଫଳରେ ଧନତନ୍ତ୍ରର ପତନ ଘଟିବ, କିମ୍ବା ଧନତନ୍ତ୍ରର ପରବର୍ତ୍ତୀ ଐତିହାସିକ ପର୍ଯ୍ୟାୟ ସମାଜତନ୍ତ୍ର — କଥାଗୁଡ଼ାକ ମିଥ୍ ମାତ୍ର, ଯେପରି ଅସତ୍ୟ ଉପରେ ସତ୍ୟର୍ ଜୟ କିମ୍ବା ମଣିଷର ଉତ୍ତରଣ ଅନ୍ଧାରରୁ ଆଲୁଅକୁ । କିନ୍ତୁ, କଥାଗୁଡ଼ାକ ଉପରେ ମଣିଷର ଆସ୍ଥାରହିଚି ବୋଲି ତ ଉତ୍ଥାନ-ପତନ ଭିତରଦେଇ ଜଗତ ଚାଲିଚି ! ଉତ୍ତର-ଆଧୁନିକ କହୁଚି, କଥାଗୁଡ଼ାକୁ ସମ୍ଭବକରିବା ମୃତ୍ୟୁଶାସିତ ମଣିଷ ପକ୍ଷରେ ସାଧ୍ୟାତୀତ; ଆପଣା ସାମର୍ଥ୍ୟର ସେଇ କ୍ଷୁଦ୍ରତା ଉପଲବ୍ଧିକରିଚୁଁ ବୋଲି, 'ଆଧୁନିକ' ଭଳି କ୍ଷୁଦ୍ରତା କି ସୀମାବଦ୍ଧତାକୁ ନେଇ ନାଟକୀୟତା କରୁନାହୁଁ ।

ମେଦିନୀଦୃଷ୍ଟିରେ ଆଧୁନିକ ଓ ଉତ୍ତର-ଆଧୁନିକ ମଧ୍ୟସ୍ଥ ଏଇ ବ୍ୟବଧାନକୁ ଦର୍ଶନବିଦ୍ୟା କହେ 'ଅଣ୍ଟୋଲଜିକାଲ୍'; ଏକଥା ମଧ ସତ ଯେ ଚରମ ସତ୍ୟ କି ପରମ ମଙ୍ଗଳ ନିର୍ଦ୍ଦିଷ୍ଟ କି ଜିନିଷ କେହି ଜାଣେନା; ଏକଥା ବି ସତ ଯେ ଅନ୍ୟାୟ ଅବିଚାର ଅସତ୍ୟ ହତାଶା ସ୍ୱପ୍ନଭଙ୍ଗ, କିଛିହେଲେ ମଣିଷ ପ୍ରଜାତିର ଅଭିଜ୍ଞତାରୁ ସରିଯାଇନାହିଁ; ମାତ୍ର ଆଧୁନିକତାର ପ୍ରତ୍ୟୟଗୁଡ଼ାକ ଯୁକ୍ତିକୁ ଭିତ୍ତିକରି ଗଢ଼ିଉଠିଛି, ଅଥଚ ଉତ୍ତର-ଆଧୁନିକତା ରିଜନ୍ ବା ଯୁକ୍ତିର ସାମର୍ଥ୍ୟ ଉପରେ ଭରସାକରିବାକୁ ରାଜିନୁହେଁ । ଯୁକ୍ତ ଅବଶ୍ୟ ବିମୂର୍ତ୍ତ, କିନ୍ତୁ ତାକୁ ଧାରଣ ଓ ବହନକରୁଚି ମୂର୍ତ୍ତିମନ୍ତ ମଣିଷ; ଯା ମାଧ୍ୟମରେ ଯୁକ୍ତ ହେଉଚି କାର୍ଯ୍ୟକାରୀ । ଉତ୍ତର-ଆଧୁନିକତା ସେଇ କର୍ତ୍ତାର କର୍ତ୍ତୃତ୍ୱ ସ୍ୱୀକାରକରେନା, କାହିଁକିନା, ତାର କୋଉଜେଲେ କେନ୍ଦ୍ର ନାହିଁ, ଯେପରି କୁହାଯାଇଚି ବିଶ୍ୱାୟନର କେନ୍ଦ୍ର ନାହିଁ । ସେହିପରି, ବହି ଯିଏ ଲେଖିଚି (ଅଥର୍), ଲେଖିଥିବା ଟେକ୍ସଟ୍ ଯୋଉ ମର୍ମାର୍ଥ ପ୍ରକାଶକରିବ, ତା ଅଥରିଟି ନୁହେଁ, କାହିଁକିନା, ଭାଷାର ସ୍ୱଭାବ ଏମିତି ବିଚିତ୍ର ଯେ ଭିନ୍ନଭିନ୍ନ ପାଠକ ବାହାରକରିପାରିବେ ଏକା ଟେକ୍‌ସ୍ଟର ନାନାଦି ଅଜବ ଅର୍ଥ । 'ମିନିଙ୍ଗ୍' ଯା ଆଧୁନିକତାର ଅବଦାନ, ସେଥିପାଇଁ ଆଉଗୋଟାଏ ମିଥ୍ । ଅଥଚ ଜଗତକୁ ଯେ ମଣିଷ ଆତ୍ମସ୍ଥ କରିପାରେ ଭାଷା ସାହାଯ୍ୟରେ, ଏକଥା ମାର୍କ୍ସ କହିଚନ୍ତି ଚେତନାର ନିର୍ମାଣ ପ୍ରେକ୍ଷିତରେ । ତାହେଲେ, ମଣିଷର ସମାଜଚେତନା କଣ ଖାଲି ଅହଂକାର ଆଉ ଜଗତଟା ନିରର୍ଥକ ଭୂମଣ୍ଡଳ ? ତା ଯଦି ସତ ହୁଏ, ତେବେ ରିଆଲିଟି ଓ ଇଲିଉସନ୍ ଭଳି ଅନେକ

ବିପରୀତ ଯୁଗ୍ମପଦ କେବଳ ଭ୍ରାନ୍ତିବିଳାସ । ଅନ୍ୟ ଶବ୍ଦରେ, ମଣିଷକୁ ପଶୁଠାରୁ ଅଲଗାକରି ଚିହ୍ନାଇଦିଏ ଯୋଉ ଯୁକ୍ତି, ତାକୁ ସଂଶୟସଙ୍କୁଳ ମନେକରେ ବୋଲି ଉତ୍ତର-ଆଧୁନିକତା କୋଉହେଲେ ଦୃଢ଼ ମୂଲ୍ୟମାନକୁ ଅମଳଦିଏନା । କିନ୍ତୁ ଆଧୁନିକତା ସହିତ ଏ ବିରୋଧ ଖାଲି ନିଗେସନ୍ ବା ନେତିବାଚକ ନୁହେଁ; ସାମିତି ବ୍ୟଞ୍ଜନାରେ ଏକପ୍ରକାର ସିଦ୍ଧି ମଧ୍ୟ । ପରମ୍ପରା ବାହିତ ଅଲୌକିକ ପରାବିଦ୍ୟାକୁ ବିରୋଧକରିବା ପ୍ରକ୍ରିୟାରେ ଆଧୁନିକତାର ଉଦ୍‌ଭବ; ଉତ୍ତର-ଆଧୁନିକତା ସେଇ ବିରୋଧକୁ ନ୍ୟାଯ୍ୟ ପରିଣତିରେ ପହଞ୍ଚାଇଦେବା ଉଦ୍ୟମ ମାତ୍ର । ଅର୍ଥାତ୍, ଉତ୍ତର-ଆଧୁନିକତା ରୂପକ 'କଣ୍ଡିସନ୍' ବା ମିଜାଜ ଆଧୁନିକତାର ହିଁ ଅନ୍ତର୍ଗୂଢ଼ । ସେଇ ପ୍ରଶ୍ନକରିବା ପ୍ରବଣତାରୁ ବାହାରିଚି ଡିକନ୍‌ଷ୍ଟ୍ରକ୍ସନ୍ ବା ବିନିର୍ମାଣ । ଅର୍ଥାତ୍ ଆଧୁନିକତାର ଉଦ୍ଦୀପନାକୁ ଅଧିବିଦ୍ୟାର ଶେଷତମ ଅବଶେଷରୁ ମୁକ୍ତକରିବା ଉଲ୍ଲାସ । ସେ ଉଲ୍ଲାସ କୌଣସି ଦର୍ଶନ-ସିଷ୍ଟେମ୍ ତିଆରି କରିପାରେନା, ଯେପରି କରିପାରିନାହିଁ ଉଦାରବାଦ କି ମାର୍କ୍ସବାଦ; ମାତ୍ର ଏପରି ଏକ ସାଂସ୍କୃତିକ ଆନ୍ଦୋଳନ ସୃଷ୍ଟିକରିପାରେ ଯା ପ୍ରଚଳିତ ଯାବତୀୟ କାର୍ଯ୍ୟକଳାପକୁ ପରୀକ୍ଷାକରି ଦେଖିପାରିବ । ଫଳରେ, ତା ଭିତରେ ମଧ୍ୟ ଗଢ଼ିଉଠିଚି ପରସ୍ପର ପ୍ରତୀପ ତତ୍ତ୍ୱଦୃଷ୍ଟି, ବାମ ଦକ୍ଷିଣ ନିର୍ବିଶେଷରେ ଭିନ୍ନ ଭିନ୍ନ ରାଜନୀତି । ଆଧୁନିକତା କ୍ଷେତ୍ରରେ ମଧ୍ୟ ବ୍ୟତିକ୍ରମ ହୋଇନାହିଁ, ଯେପରି ରିନେସାଁସ୍ କି ଦୀପାୟନ । କିନ୍ତୁ ଏମାନେ (=ଉତ୍ତର-ଆଧୁନିକ) ଯେହେତୁ ରାଜନୀତିକ ପରିଣାମ ପ୍ରତି ଉଦାସୀନ, ପ୍ରକାରନ୍ତରେ ସହାୟତା କରୁଚନ୍ତି କ୍ୟାପିଟାଲ୍‌ର ଗ୍ଲୋବାଲାଇଜେସନ୍ ପ୍ରକ୍ରିୟାକୁ, ଏବଂ ସେଥିପାଇଁ, ଫ୍ରେଡ୍ରିକ୍ ଜେମିସନ୍ ଉତ୍ତର-ଆଧୁନିକତାକୁ କହିଚନ୍ତି 'କଲ୍‌ଚରାଲ୍ ଲଜିକ୍ ଅବ୍ ଲେଇଟ୍ କ୍ୟାପିଟାଲିଜ୍ମ' ।

* * * * * * *

ମାତ୍ର ଭାରତ ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର । ଷାଠିଏବର୍ଷ ହେଲାଣି ରଜା-ଜମିଦାର ଉଚ୍ଛେଦ ହୋଇଚନ୍ତି, ନାଗରିକ ପାଇଚି ସାବାଳକ ଭୋଟାଧିକାର; ସାଂବିଧାନିକ ପ୍ରଶାସନ, ଶିକ୍ଷାବ୍ୟବସ୍ଥା ମଧ୍ୟ ସର୍ବଜନୀନ । ଜନମଙ୍ଗଳ ଆୟୋଜନ ଏତେ ପ୍ରବଳ ଯେ ମେଧାବୀ ଆଉ ମନକରୁନାହାଁନ୍ତି ରାଜନୀତିକୁ । ରାଜନୀତିକୁ ଯିଏ ଆସୁଚନ୍ତି, ନିବାକ ଲକ୍ଷପତି କି କୋଟିପତି । ଯୁବସଂପ୍ରଦାୟକୁ ଲାଗିବ, ପ୍ୟାରାଡକ୍ସ । କାହିଁକିନା ଏମାନେ ପାଠପଢ଼ିଚନ୍ତି, ଚାକିରୀବାକିରି କରନ୍ତି, କାମଟାକୁ ଛାଡ଼ିଦେଇଚନ୍ତି 'ପ୍ରଫେସନାଲ୍'ମାନଙ୍କ ହାତକୁ । ଏଣେ ଭାରତର ଅନ୍ତତଃ ଛ'ଟା ଅଙ୍ଗରାଜ୍ୟରେ ଆଉଦଳେ ଯୁବକଯୁବତୀ କାନ୍ଧରେ ବନ୍ଧୁକ ପକାଇ ଅଖିଆ-ଅପିଆ

ବୁଲୁଚନ୍ତି ବଣପାହାଡ଼ରେ । ଏମାନେ ପରାର୍ଥବାଦୀ । ଭୋଟ୍ ଦରକାରନାହିଁ, ବଞ୍ଚିତ ନିର୍ଯ୍ୟାତିତ ଦେଶବାସୀଙ୍କ ସକାଶେ ଲଢ଼ାଇକରିବାକୁ ଘରଦ୍ୱାର ଆତ୍ମୀୟ-ପରିଜନ ଛାଡ଼ି ନିଖୋଜ-ହୋଇଯାଇଚନ୍ତି; ଜୀବନ ପ୍ରତି ମାୟା ନାହିଁ । ମୁଦ୍ରାର ଦୁଇପାର୍ଶ୍ୱ ଭଳି ବିଶ୍ୱାୟନରେ ଜର୍ଜର ଭାରତର ଯୁବସଂପ୍ରଦାୟର ଏଇ ଦୁଇଟି ମେରୁ । ବିଶ୍ୱପୁଞ୍ଜି ପ୍ରଥମ ମେରୁକୁ ପୋଷଣକରେ, ଦ୍ୱିତୀୟ ମେରୁକୁ ଶୋଷଣ । ପ୍ରଫେସନାଲ୍ ପଲିଟିସିଆନ୍ ଏମାନଙ୍କ ରାଜନୀତିକୁ ପ୍ରଶ୍ନକରୁନାହାଁନ୍ତି, ପ୍ରଶ୍ନକରୁଚନ୍ତି ବନ୍ଧୁକକୁ । ତାହେଲେ କଣ ବୁଝିବାକୁ ପଡ଼ିବ ଯେ ଆ୍ୟାକିଉମିଉଲେସନ୍‌ର ଏକମାତ୍ର ପ୍ରତିଷେଧକ ବନ୍ଧୁକ ? ସମାଜତନ୍ତ୍ର ଯଦି ଆସେ, ବନ୍ଧୁକ ବଳରେ ହିଁ ଆସିବ ? ଅର୍ଥାତ୍, ନୈତିକତାର ଅନୁପ୍ରେରଣା ଯଦି ବାଟସାରା ଝୁଣ୍ଟି ଝୁଣ୍ଟି ଲହୁଲୁହାଣ ହୁଏ, ପିଲା ଆଉ ହାତରୁ ଖାଇ ଘୋଡ଼ାଆଗରେ ଦୌଡ଼ିବେନାହିଁ; 'ଶତ୍ରୁ ଶୋଣିତେ ସିକ୍ତକରିୟା ମାତାକେ ଶସ୍ୟଶାଳିନୀ' କରିବେ ! କରିପାରୁନାହାଁନ୍ତି କାହିଁକି ? ରାଷ୍ଟ୍ରର ସଶସ୍ତ୍ର ପ୍ରତିରୋଧ ନିଶ୍ଚୟ ଏକ କାରଣ । ମାତ୍ର ଅସଲ କାରଣ ଲୋକଙ୍କୁ ପ୍ରସ୍ତୁତ କରାଯାଉନାହିଁ ; କରାଯାଉନାହିଁ ବୋଲି ସଂଖ୍ୟାଗରିଷ୍ଠ ଜନଗଣ ସଂଗ୍ରାମ ପ୍ରତି ଉଦାସୀନ । ରାତାରାତି ସବୁକିଛି ବଦଳାଇଦେବାକୁ ବ୍ୟଗ୍ର ସଂଗ୍ରାମୀ; ତେଣୁ ରେଲ୍‌ଲାଇନ୍ ଉପାଡୁଛନ୍ତି, ଷ୍ଟେସନ୍‌ରେ ନିଆଁ ଲଗାଉଚନ୍ତି; ନିରୀହ ଆଦିବାସୀଙ୍କୁ ବି ହତ୍ୟାକରିବାକୁ ପଛାଉନାହାଁନ୍ତି । ଏମାନେ ତାହେଲେ ବିଭେଦକାରୀ ତାମିଲ୍ ଟାଇଗର୍ କି ପଶ୍ଚିମ ଏସିଆର ଇସ୍‌ଲାମିକ୍ ସନ୍ତ୍ରାସବାଦୀଙ୍କ ଠାରୁ ଅଲଗା ବୋଲି ମନେହେବେ କାହିଁକି ସୁଶୀଳସମାଜକୁ ? ଆଉ, ଯିଏ ଭୋଟ୍‌ବଳରେ ବଦଳାଇବାକୁ ଚାହୁଁଚନ୍ତି ସମାଜକୁ / ରାଷ୍ଟ୍ରକୁ ଗତବର୍ଷ କର୍ଣ୍ଣାଟକରେ ଯେତେବେଳେ ନିର୍ବାଚନ କରାଗଲା, ୩୭୨ ଜଣ ଭୋଟ୍‌ପ୍ରାର୍ଥୀ କାଗଜପତ୍ରରେ ଘୋଷଣାକରିଥିଲେ ୯୦୨ କୋଟି ଟଙ୍କାର ଗଚ୍ଛିତ ସଂପତ୍ତି; ଗଡ଼କରା ଜଣପିଛା ଅଢ଼େଇକୋଟି; ମାତ୍ର କଂଗ୍ରେସ୍-ପ୍ରାର୍ଥୀଙ୍କ ଭାଗରେ ପଡ଼ିଛି ଜଣପିଛା ୭କୋଟି ୩୫ ଲକ୍ଷ, ବିଜେପିର ୧୭ଜଣ ପ୍ରାର୍ଥୀଙ୍କ ଗଚ୍ଛିତ ଧନର ପରିମାଣ ୫କୋଟିରୁ ୩୦ କୋଟି । ଏ ବର୍ଷ ମହାରାଷ୍ଟ୍ରରେ ସମାଜବାଦୀ ପାର୍ଟିର ପ୍ରାର୍ଥୀ ଆବୁ ଆସିମ୍ ଆଜ୍‌ମି ଘୋଷଣାକରିଚନ୍ତି ଅର୍ଜିତ ଧନର ପରିମାଣ ୧୨୬କୋଟିଟଙ୍କା; କଂଗ୍ରେସ୍‌ର ୧୬ଜଣଙ୍କ ସଂଚୟ ଜଣକା କୋଟିଏ ଟଙ୍କାରୁ ବେଶି, ମହାରାଷ୍ଟ୍ର ନବନିର୍ମାଣ ସେନାର ୧୨ଜଣ ପ୍ରାର୍ଥୀ ମଧ୍ୟ କୋଟିଏ ଟଙ୍କାରୁ ଉର୍ଦ୍ଧ୍ୱ ରୋଜଗାରର ମାଲିକ । ଖାଲି ବମ୍ବେ ଆଉ ଥାନେରୁ ୬୦ଟି ଆସନପାଇଁ ଛିଡ଼ା ହୋଇଚନ୍ତି ୪୭୦ ଜଣ; ତାଙ୍କଭିତରୁ ୧୨୨ଜଣ ଘୋଷଣାକରିଚନ୍ତି କୋଟିଏ ଟଙ୍କାରୁ ଅଧିକ ସଂପତ୍ତି । ଏମାନଙ୍କ ମୋଟ୍ ସଂପତ୍ତିର ପରିମାଣ ଟ.୪୭୦କୋଟି ଏବଂ ଏଇ

କୋଟିପତିଙ୍କ ଭିତରେ ଅଛନ୍ତି କଂଗ୍ରେସ୍‌ର ୨୨ ଜଣ, ଶିବସେନାର ୧୬, ବିଜେପିର ୧୨, ଶାରଦପାୱାର ଦଳର ୮, ରାଜ ଠାକ୍‌ରେ ଦଳର ୧୫ । ସେମିତି ହରିଆଣାରେ ୨୦୦୫ ନିର୍ବାଚନ ବେଳକୁ ୧୯% ପ୍ରାର୍ଥୀ ଥିଲେ କୋଟିପତି; ଏକ୍ଷଣି ୨୦୦୯ ରେ ଖାଲି କଂଗ୍ରେସ୍ ଦଳର ୮୦% ପ୍ରାର୍ଥୀ କୋଟିପତି । ଆଉ, ୨୦୦୫ ରେ ନିର୍ବାଚିତହୋଇଥିବା ଲୋକଙ୍କ ଭିତରୁ ଯିଏ ପୁଣି ୨୦୦୯ରେ ନିର୍ବାଚନ ଲଢୁଚନ୍ତି, ପାଞ୍ଚବର୍ଷ ଭିତରେ ତାଙ୍କ ସଂପତ୍ତିର ପରିମାଣ ବଢ଼ିଚି ୫୨% ରୁ ୫୪.୮୮% । ଫରିଦାବାଦରୁ କଂଗ୍ରେସ୍ ପ୍ରାର୍ଥୀ ଶରଦା ରାଠୋଡ଼ ପାଞ୍ଚବର୍ଷ ଭିତରେ ରୋଜଗାର ବଢ଼ାଇଛନ୍ତି ୪୫ ଲକ୍ଷ ଟଙ୍କା, ନିର୍ବାଚନପ୍ରଚାର ଦାୟିତ୍ୱରେ ଥିବା ବିନୋଦ ଶର୍ମା ୨୦୦୫ରେ ସଂପତ୍ତି ଘୋଷଣାକରିଥିଲେ ଟ.୯.୩୬ କୋଟି, ୨୦୦୯ରେ ବଢ଼ିଯାଇଚି ଟ.୮୭ କୋଟିକୁ । ଏ କୋଟିପତିଙ୍କ ଭିତରେ ଓଁ ପ୍ରକାଶ ଚଉତଲାଙ୍କ ଦଳର ଅଛନ୍ତି ୫୬ଜଣ, ଭଜନଲାଲ୍‌ଙ୍କ ଦଳର ୪୪, ବିଜେପିର ୪୧, ଏପରିକି ମାୟାବତୀଙ୍କ ବହୁଜନ ସମାଜପାର୍ଟିର ୨୯ଜଣ । କର୍ଣ୍ଣାଟକ, ମହାରାଷ୍ଟ୍ର, ହରିଆଣା ସର୍ବତ୍ର ପ୍ରାର୍ଥୀମାନଙ୍କ ବିରୋଧରେ ବିଚାରାଧୀନ ଅଭିଯୋଗ ଭିତରେ ଲୁଣ୍ଠନ, ନରହତ୍ୟା ଛଡ଼ା ନାବାଳିକାଙ୍କୁ ବେଶ୍ୟାବୃତ୍ତିରେ ନିୟୋଗକରିବା ଭଳି ଜଘନ୍ୟ ଅଭିଯୋଗ ରହିଚି । ଏଇ ରାଜ୍ୟଗୁଡ଼ିକ ଭାରତର ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦିଗର ସ୍ଥୂଳ ପରିଚୟ ଦେଉଥିଲେ ସୁଦ୍ଧା, ଅବଶିଷ୍ଟ ଅଂଚଳର ଅବସ୍ଥା ମଧ୍ୟ ବିଶ୍ୱାୟନର ଅନୁବର୍ତ୍ତୀ । ଏକମାତ୍ର ବ୍ୟତିକ୍ରମ ବାମପନ୍ଥୀ, ଯଦିଓ ଅନ୍ତର୍କଳହରେ ବିଦୀର୍ଣ୍ଣ । ନହେଲେ, ମାର୍କ୍ସ ଲେନିନ୍ ମାଓ ପ୍ରଭୃତିଙ୍କୁ ପରସ୍ପର ପ୍ରତିପକ୍ଷ ଭଳି ଉପସ୍ଥାପନ ମନେହୁଅନ୍ତା ଅନ୍ତର୍ଘାତ; ବିଶେଷତଃ ବିଶ୍ୱାୟନ କଲ୍ୟାଣରୁ କ୍ୟାପିଟାଲ୍ ଯେତେବେଳେ ଆକ୍ରାନ୍ତ କରିସାରିଲାଣି ଭାରତର ଶାସକଶ୍ରେଣୀକୁ ଆପାଦମସ୍ତକ ।

ଫଳ ହୋଇଚି, ଉନ୍ନୟନର ଯୋଉ ମଡେଲ୍ ଭାରତୀୟ ରାଷ୍ଟ୍ର ଅନୁସରଣ କରୁଚି, ତାର କ୍ରମାଗତ କୁପରିଣାମକୁ କେହି ଉପଲବ୍ଧିକରୁନାହାଁନ୍ତି, ପ୍ରତିକାରଚିନ୍ତା ତ ଦୂରର କଥା । ଏ ମଡେଲ୍ ମହାଯୁଦ୍ଧ-ପରବର୍ତ୍ତୀ ତୃତୀୟବିଶ୍ୱ ସକାଶେ ଆଦର୍ଶ ବୋଲି ବିବେଚିତ; ଅର୍ଥାତ୍ ଯୋଉ ବାଟଦେଇ ପ୍ରାକ୍-ଧନତାନ୍ତ୍ରିକ ଇଉରୋପ ଆଧୁନିକ ହୋଇଚି, ସେଇ ଧାରାକୁ ହିଁ ଅନୁସରଣ । ସ୍ଥୂଳତଃ ଏକ କୃଷିନିର୍ଭର ଆର୍ଥସାମାଜିକ ଗଢ଼ଣରୁ ଶିଳ୍ପ ଓ ପୁଞ୍ଜିନିର୍ଭର ଗଢ଼ଣକୁ ରୂପାନ୍ତର । ଇଉରୋପରେ ଏ ରୂପାନ୍ତର ରାତାରାତି ଘଟିନାହିଁ, ପ୍ରାୟ ଦୁଇଶବର୍ଷ ଲାଗିଚି; ନାନାଦି ଟ୍ରାନ୍‌ଜିସନ୍ ଭିତରଦେଇ ଗତିକରିଚି ସମାଜ; ଏବଂ ଅଭିସରଣ ଭିତରଦେଇ ଯୋଉ ଅଭିଜ୍ଞତା ସଂଚୟକରିଚି, ମାର୍କ୍ସ ତାକୁ ଗୋଟିଏ ବାକ୍ୟରେ କହିଚନ୍ତି, All that is solid melts into air ; କାହିଁକିନା,

ଏ ବାଟରେ ସମାଜ ଯା ପାଏ, ତା ପ୍ରଯୁକ୍ତିଗତ ଅଗ୍ରଗତି ଆଉ ପୁଞ୍ଜି; ମାତ୍ର ଚିରାଚରିତ ସାମାଜିକ ସଂପର୍କଗୁଡ଼ାକୁ ନଷ୍ଟକରିଦିଏ, ସାଂସ୍କୃତିକ ଐକ୍ୟକୁ କରିଦିଏ ଛିଦ୍ରମୟ । ପ୍ରାକୃତିକ ପର୍ଯ୍ୟାବରଣ ଖାଲି ଜଖମ ହୁଏନା, ବୈଦେଶିକ ଋଣଭାର ବି ବଢ଼େ । ଊନବିଂଶଶତକର ଦ୍ୱିତୀୟାର୍ଦ୍ଧ ପର୍ଯ୍ୟନ୍ତ, ଶିଳ୍ପବିପ୍ଳବର ଜନ୍ମଭୂମି ଇଂଲ୍ୟାଣ୍ଡରେ ମଧ୍ୟ ଏ ଦ୍ୱିଧା ଅତିକ୍ରମ କରିପାରିନାହାଁନ୍ତି ଚିନ୍ତାବିଦ୍; ଯେପରି, କୋଲରିଜ୍, ଆର୍‌ନଲ୍ଡ ପ୍ରଭୃତି ପ୍ରଭାବଶାଳୀ ଲେଖକ ଇଉଟିଲିଟି ଓ ଲିବରାଲ୍ ମତବାଦର ବିରୋଧିତା କରି, ଶିଳ୍ପପୁଞ୍ଜିର ପ୍ରଜା ନବ୍ୟବୁର୍ଜୋୟା ସମାଜର ବ୍ୟକ୍ତିକେନ୍ଦ୍ରିକ ନୀତିବୋଧକୁ ସାଂସ୍କୃତିକ ନୈରାଜ୍ୟ ବୋଲି ଭର୍ତ୍ସନାକରିଚନ୍ତି । ତା ଜାଗାରେ ଚାହିଁଚନ୍ତି ସମଷ୍ଟିଗତ ସଚେତନତା ଆଉ ଦାୟିତ୍ୱବୋଧ; ଯେପରି, ସମଷ୍ଟିଗତ ଧର୍ମବୋଧ, ସାଂସ୍କୃତିକ ବନ୍ଧନ ଭାବରେ ଭାଙ୍ଗିଯିବାକୁ ଦିଏନା ସମାଜକୁ । ଅର୍ଥନୀତିରେ ସେଥିପାଇଁ ଡିଭେଲପ୍‌ମେଣ୍ଟ୍ (ଉନ୍ନୟନ) ଓ ଗ୍ରୋଥ୍ (ବିକାଶ) ଭିତରେ ପ୍ରଭେଦ ସ୍ଥିରକରାଯାଇଚି । ଗ୍ରୋଥ୍ ମାନେ ହୋଇଉଠିବା, ଅର୍ଥାତ୍ ସ୍ୱାଭାବିକ ବିକାଶ; ଯେପରି ମଞ୍ଜିରୁ ଗଛ । ସେଠି ଆଗକୁ ଯିବାର ତାଡ଼ନା ଆସେ ଜୈବିକ ପ୍ରୟୋଜନ ବା ନେସେସିଟିରୁ, ଯେପରି କ୍ୟାପିଟାଲ୍‌ର ଅନ୍ତର୍ନିହିତ ଲଜିକ୍‌ରୁ । ପୁଞ୍ଜିବାଦୀ ମଡେଲ୍‌କୁ ଗ୍ରହଣକରିଛୁଁ ବୋଲି ବିଶ୍ୱପୁଞ୍ଜି ସହିତ ଇଣ୍ଟିଗ୍ରେସନ୍ ବା ଏକୀକୀକରଣ । ଅନ୍ୟଥା ତେଲ ସାଙ୍ଗରେ ପାଣି ମିଶାଇବା ଭଳି ହୁଅନ୍ତା ହାସ୍ୟକର । ଆଉ, ଇତିହାସରୁ ଯଦି ଶିକ୍ଷା ଗ୍ରହଣକରିବାକୁ ହୁଏ, ସ୍ପଷ୍ଟ ଦେଖିହେବ, ବିଗତ ଦୁଇଶବର୍ଷଧରି ଦୁନିଆସାରା ଘଟିଚି ଯେତେ ଉତ୍ଥାନପତନ, ଧନତାନ୍ତ୍ରିକ ଶିଳ୍ପାୟନ ହିଁ ହୋଇଚି ସବୁଯାକର ଚାଳିକାଶକ୍ତି; କୌଣସି ବିଷୟକୁ ଅକ୍ଷତ ଅବସ୍ଥାରେ ବଞ୍ଚିରହିବାକୁ ଦେଇନାହିଁ । ଉପାଡ଼ିଚି, କାଟିଦେଇଚି, କଠିଣକୁ କରିଚି ତରଳ, ପାହାଡ଼କୁ କରିଚି ସମତଳ, ଦୁର୍ଦ୍ଧର୍ଷକୁ କରିଚି ବଶମ୍ବଦ । ମଣିଷକୁ ସ୍ୱୟମ୍ଭର କରିବାକୁ ନୁହେଁ କି ବିପାକରୁ ରକ୍ଷାକରିବାକୁ ନୁହେଁ, ଏକମାତ୍ର ଲକ୍ଷ୍ୟ ପ୍ରାଚୁର୍ଯ୍ୟର ସୋପାନଗୁଡ଼ିକୁ ଛେଦହୀନ କ୍ରମରେ ଅତିକ୍ରମଣ; ଆଉ ସେଇ ବାଟରେ, ସମାଜର ଏକାଂଶକୁ ସୁବିଧାଭୋଗର ଅବାଧ ସୁଯୋଗ ଆଉ ଅବଶିଷ୍ଟ ଅଂଶକୁ ଛିନ୍ନମୂଳରେ ପରିଣତି । ଅଳ୍ପଦିନ ତଳେ ଅର୍ଥନୀତିବିଦ୍ ଅମିତ୍ ଭାଦୁଡ଼ି ଏକ ବକ୍ତୃତାରେ କହିଚନ୍ତି, ଦେଶର ସଂଖ୍ୟାଗରିଷ୍ଠ ଲୋକ ବିଶ୍ୱାୟନ କୋପରେ ଯେହେତୁ ବିପର୍ଯ୍ୟସ୍ତ, ତୁରନ୍ତ ଦରକାର a strategy of resistance and reconstruction । ସାମ୍ନାବ୍ୟ ରଣକୌଶଳ କି ରକମ ହୋଇପାରେ, ତାର ଇଙ୍ଗିତଦେଇ କହିଚନ୍ତି, ଅଭ୍ୟନ୍ତରୀଣ ମାର୍କେଟ୍‌ର ଦୃଢ଼ୀକରଣ ସାଙ୍ଗକୁ ପଞ୍ଚାୟତଗୁଡ଼ିକୁ ଅଧିକତର ରାଜନୀତିକ ଓ ଅର୍ଥନୀତିକ କର୍ତ୍ତୃତ୍ୱ ଦେଇ ବଳୀୟାନ କରିବାକୁ ହେବ; ଏବଂ ସଂଗେ ସଂଗେ କର୍ମଚ୍ୟୁତ ବା

କର୍ମହୀନ କେମିତି ଅଧିକରୁ ଅଧିକ ଫଳପ୍ରଦ କାମଧନ୍ଦାରେ ନିଯୁକ୍ତହୋଇପାରିବେ, ତାର ନୂଆ ନୂଆ ଆୟୋଜନ । ତାକୁ କହିଚନ୍ତି, 'ଡିଭେଲପ୍‌ମେଣ୍ଟ ଉଇଥ୍ ଡିଗ୍‌ନିଟି', କାହିଁକିନା, ବିଶ୍ୱାୟନ ଏପରି ଏକ ପ୍ରକ୍ରିୟା ଯା ଘରୋଇ ଉତ୍ପାଦନ ଉପରୁ ଅଗ୍ରାଧିକାରକୁ ସ୍ଥାନଚ୍ୟୁତକରି ଉଠାଇନିଏ ଆନ୍ତର୍ଜାତିକ ବଜାରକୁ, ଏବଂ ତା ଫଳରେ, ଆନ୍ତର୍ଜାତିକ ବଜାରର ତଣ୍ଟିକଟା ପ୍ରତିଯୋଗିତା ବାଧ୍ୟକରେ ଘରୋଇ ମାର୍କେଟ୍‌କୁ ଉତ୍ପାଦନବ୍ୟୟ କମାଇବାପାଇଁ ନିଯୁକ୍ତି ସଙ୍କୋଚନ କରିବାକୁ । କ୍ରମାଗତ କର୍ମଚ୍ୟୁତି ଓ କର୍ମହୀନତା ତେଣୁ ଅବଧାରିତ, ଯଦି ବିଶ୍ୱାୟନକୁ ବେଳକାଳଜାଣି ପ୍ରତିରୋଧ କରାନଯାଏ । ଅଭୂତପୂର୍ବ ଆର୍ଥିକ ଉନ୍ନତି, ଯା ସୁବିଧାଭୋଗୀ ଲୋକଙ୍କ ଗର୍ବର କାରଣ, is a measure of the high speed at which India of privilege is distancing itself from the India of crushing poverty । ମାନେ, ଏ ଗତିବେଗ ଯେତେ ବଢ଼ିବ, ଦେଶର ଦୁର୍ଗତି ହେବ ତାର ସମାନୁପାତିକ । We first need to understand this paradox which counterposes growth against development and challenge this dangerous obsession with growth । ସନ୍ଦେହ ନାହିଁ, ବିପଜ୍ଜନକ ଏ ଉଦ୍‌ବେଗ କର୍‌ପୋରେଟ୍ ସେକ୍ଟର୍ ପକ୍ଷରେ ସ୍ୱାଭାବିକ, ମାତ୍ର ଶିଳ୍ପସଂସ୍ଥା ଯେତେ ଚାକିରିବାକିରି ଦେଇପାରେ, ସମଗ୍ର କର୍ମନିଯୁକ୍ତିର ତା ତିନିରୁ ଚାରି ଶତାଂଶ ମାତ୍ର । ଅର୍ଥାତ୍, ଦେଶର ଅର୍ଥବ୍ୟବସ୍ଥାର ଅତି କ୍ଷୁଦ୍ର ଅଂଶ ଏଇ କର୍‌ପୋରେଟ୍ ସେକ୍ଟର୍ । ଉତ୍ପାଦନପ୍ରକ୍ରିୟାର ବ୍ୟୟଭାର ଲାଘବ କରିବାକୁ କମ୍ପାନିମାନେ ସବ୍‌କଣ୍ଟ୍ରାକ୍ଟିଙ୍ଗ୍‌କୁ ପ୍ରଶ୍ରୟଦେଉଚନ୍ତି । ମାତ୍ର ଯୋଉ ସଂସ୍ଥାଗୁଡ଼ିକ ସବ୍‌କଣ୍ଟ୍ରାକ୍ଟିଙ୍ଗ୍ କାମ କରନ୍ତି, ଶ୍ରମିକର ଦୋହନ ସେକାମରେ ହୁଏ ସର୍ବାଧିକ । କାହିଁକିନା, ଶ୍ରମ-ଆଇନ୍ କେହି ମାନନ୍ତିନାହିଁ କି ଶ୍ରମିକକୁ ଅଧିକ ଖଟାଇଲେ କି ଆଇନ୍‌କୁ ଫାଙ୍କିଦେଲେ ପାଟିଫିଟାଇବାକୁ ବି କେହିନାହିଁ ।

ଛୋଟଦେଶ ହେଲେ ବି ଭେନେଜୁଏଲା ପେଟ୍ରୋଲ୍ ଉତ୍ପାଦନକରୁଥିବା ଦେଶମାନଙ୍କ ଭିତରେ ପୃଥିବୀରେ ପଞ୍ଚମ । କିନ୍ତୁ ପେଟ୍ରୋଲ୍‌ର ଉତ୍ପାଦନ ଓ ବିପଣନ ଉପରେ କର୍ତ୍ତୃତ୍ୱ ନରହିଲେ, ଇଉରୋପ୍ କି ଆମେରିକାର ଆକିଉମିଉଲେସନ୍ ଇକନମି ବିପଦରେ ପଡ଼ିଯିବ ଅକସ୍ମାତ୍ । ସୌଦି-ଆରବ ଓ କୁଏତ୍‌ରେ ବି ରହିଛି ଖଣିଜତେଲ ଭଣ୍ଡାର; ମାତ୍ର ରାଷ୍ଟ୍ରବ୍ୟବସ୍ଥା ସେଠି ରାଜତନ୍ତ୍ର । ଗଣତନ୍ତ୍ର ସ୍ୱାର୍ଥରେ ଇରାକ୍‌କୁ ଆଗତୁରା ଆକ୍ରମଣକରିଥିଲେ ସୁଦ୍ଧା, ମାର୍କିନ୍ ଯୁକ୍ତରାଷ୍ଟ୍ର ଏଇ ଦୁଇ ରାଜତନ୍ତ୍ରକୁ ଦେଉଚି ସାମରିକ ସୁରକ୍ଷା, ଏବଂ ସେ ସୁରକ୍ଷାକୁ ନିଷ୍କଣ୍ଟକ କରିବାକୁ ତୁରସ୍କରେ ବସାଇଛି ନୌଘାଟି, ଲୋକଙ୍କ ଆପତ୍ତି ସତ୍ତ୍ୱେ । ପୃଥିବୀର ଦ୍ୱିତୀୟ ବୃହତ୍ ଗଣତନ୍ତ୍ର ବୋଲାଉଥିବା ଭାରତ

କିନ୍ତୁ ଏ ବନ୍ଦୋବସ୍ତକୁ କହୁଚି 'ଟିନା' (ଦେୟାର୍ ଇଜ୍ ନୋ ଅଲଟରନେଟିଭ୍), ଅଥଚ ହ୍ୟୁଗୋ ଚାଭେଜ୍ ଭେନେଜୁଏଲାରେ ଦେଖାଇଦେଇଚନ୍ତି 'ଟିନା'ର ଅନ୍ତଃସାରଶୂନ୍ୟତା । ପ୍ରତିକ୍ରିୟାରେ, ଆମେରିକା ବନ୍ଦକରିଦେଇଚି ଅସ୍ତ୍ରବିକ୍ରୟ । କିନ୍ତୁ ବାହାରକୁ କହୁଚି, ସନ୍ତ୍ରାସବିରୋଧୀ ଆୟୋଜନକୁ ଚାଭେଜ୍ ଯେହେତୁ ସମର୍ଥନ କରେନା, ସମଗ୍ର ଲାଟିନ୍‌ଆମେରିକା ପ୍ରତି ବିପଦ ହୋଇପାରେ ଭେନେଜୁଏଲା । ତା ଛଡ଼ା, ତମାମ ପୃଥିବୀର ଜନସାଧାରଣ ଯେତେହୁ ଅଭିନ୍ନ ଏକକ ମାନବଗୋଷ୍ଠୀ, ସେମାନଙ୍କ ସୁସ୍ଥ ଜୀବନନିର୍ବାହ ପାଇଁ ଯୋଉଠି ଯାହା ପ୍ରାକୃତିକ ସଂପଦ ରହିଚି, ବିଶ୍ୱାୟନ ଜମାନାରେ, ସମସ୍ତଙ୍କ ପାଇଁ ସହଜଲଭ୍ୟ ହେବା ଉଚିତ ଏବଂ ସେ ଦୃଷ୍ଟିରୁ, ପେଟ୍ରୋଲ୍ କୋଉହେଲେ ଜାତିରାଷ୍ଟ୍ରର ଏକଚାଟିଆ ସଂପତ୍ତି ନୁହେଁ, ବିଶେଷତଃ ଜାତିରାଷ୍ଟ୍ରର ସାର୍ବଭୌମତା ଯେହେତୁ ଅଚଳ ଏକ ପ୍ରସ୍ତାବ, ମାନବଜାତି ସ୍ୱାର୍ଥରେ ଯେକୌଣସି ଦୁରାଚାରୀ ଜାତିରାଷ୍ଟ୍ରକୁ ଆଗତୁରା ଆଘାତକରିବା ଯୁକ୍ତରାଷ୍ଟ୍ରର ନୈତିକ କର୍ତ୍ତବ୍ୟ । 'ମାନବଜାତି' ପ୍ରକୃତରେ କିନ୍ତୁ ବୁଦ୍ଧିବାଦୀ ଶ୍ୱେତାଙ୍ଗ ଓ ତାର ଶାସକଶ୍ରେଣୀ । ଅଥଚ ଚାଭେଜ୍‌ଙ୍କ ପାଇଁ ରାଜନୀତିକ ଅନୁପ୍ରେରଣା ଏକମାତ୍ର ସିମନ୍ ବୋଲିଭାର୍, ସ୍ପ୍ୟାନିସ୍ ଔପନିବେଶକତ୍ୱରୁ ଯିଏ ମୁକ୍ତକରିଚନ୍ତି ଉନବିଂଶ ଶତକରେ ଖାଲି ଭେନେଜୁଏଲାକୁ ନୁହେଁ, କଲମ୍ବିଆ, ଇକୁଏଡର୍, ପେରୁ ଓ ତାଙ୍କ ନିଜ ନାମରେ ନାମିତ ବଲିଭିଆକୁ ମଧ୍ୟ । ସ୍ୱପ୍ନ ଦେଖିଥିଲେ ଶୃଙ୍ଖଳମୁକ୍ତ ଅଖଣ୍ଡ ଦକ୍ଷିଣ-ଆମେରିକା, ଏବଂ ସେଇ ଅପୂର୍ଣ୍ଣ ଆକାଙ୍‌କ୍ଷା ଉଦ୍ଦୀପ୍ତକରିଚି ଚାଭେଜ୍‌ଙ୍କ ଦୂରଦୃଷ୍ଟି । କରିଚି ବୋଲି, ସାମ୍ରାଜ୍ୟବାଦର ନବ୍ୟଉଦାର ଆଦିକଳ୍ପ, ସାରା ପୃଥିବୀ ଉପରେ ଯା ଲଦିଦେବାକୁ ଯୁକ୍ତରାଷ୍ଟ୍ର ଆଗଭର, ତାର ପ୍ରତିପକ୍ଷ ଭୂମିକାରେ ଅବତୀର୍ଣ୍ଣହେବାକୁ ଡରିନାହାଁନ୍ତି । ଡରିବାର କାରଣ ଥିଲା କିନ୍ତୁ ପର୍ବତପ୍ରମାଣ; ଚାଭେଜ୍ ରାଷ୍ଟ୍ରନାୟକ ହେବାଯାଏଁ (୧୯୯୮) ଚାଳିଶବର୍ଷ ଧରି ଭେନେଜୁଏଲାକୁ ଶାସନକରିଚନ୍ତି ବିଭିନ୍ନ ଏକନାୟକ; କମିଉନିଷ୍ଟ୍‌ଙ୍କ ବାଟଓଗାଳିବାକୁ ଯୁକ୍ତରାଷ୍ଟ୍ର ଫାନ୍ଦିଚି ନାନାଦି ଫନ୍ଦି; ଗଣତନ୍ତ୍ର ତେଣୁ ଗୋଡ଼ରଖିବାକୁ ମାଟି ପାଇନାହିଁ । ୧୯୯୮ରୁ ପାଞ୍ଚବର୍ଷ ଆଗରୁ ସୋଭିଏଟ୍ ଇଉନିୟନ୍‌ର ଘଟିଚି ଅଧଃପାତ । ସେଇ ଶୂନ୍ୟତାରେ ଗଢ଼ିଉଠିଚି କେତେନା କେତେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ; ଦରିଦ୍ର ପ୍ରତି ପୋଷିତ କାତରଭାବ ଯେ ପ୍ରକୃତରେ କୁମ୍ଭୀରାଶ୍ରୁ, ଏଇ ମୁଖାଟାକୁ ଖୋଲିଦେବାକୁ ଚାଭେଜ୍ ମନେକରିଚନ୍ତି ପ୍ରାଥମିକ କର୍ତ୍ତବ୍ୟ । ନିଜେ ଗରିବଘରର ପିଲା, ଶ୍ୱେତାଙ୍ଗ ନୁହେଁ, ଉଚ୍ଚଶିକ୍ଷିତ ନୁହେଁ ମଧ୍ୟ, ପେସାରେ ଥିଲେ ପ୍ୟାରାଟ୍ରୁପର୍ । ଦରିଦ୍ର ଓ ଦାରିଦ୍ର୍ୟ ବିଷୟରେ ବିସ୍ତାରିତ ତତ୍ତ୍ୱଜାଲ ତେଣୁ ଆକର୍ଷଣ କରିନାହିଁ; ଏକମାତ୍ର ପୁଞ୍ଜି ତେଣୁ ଅର୍ଜିତ ଅଭିଜ୍ଞତା । ଗରିବଙ୍କୁ ସ୍ୱାସ୍ଥ୍ୟ ଶିକ୍ଷା ଓ କାମଧନ୍ଦା

ଯୋଗାଇଦେବାକୁ ଭାବିଚନ୍ତି ଯେହେତୁ ସବୁଠୁଁ ବେଶି ଜରୁରି, ପେଟ୍ରୋଲ୍-ଶିଳ୍ପରୁ ଆହରିତ ସଂପଦର ଅଧିକାଂଶ ବିନିଯୋଗ କରାଯାଇଚି ସେଇ ଉଦ୍ଦେଶ୍ୟରେ । ବିଦେଶୀ ତେଲକଂପାନୀଙ୍କ କରଭାର ବଢ଼ିଯାଇଚି ଦୁଇଗୁଣ । ପ୍ରଥମବର୍ଷ ମିଳିଚି ଅଧିକା ଏକ ବିଲିୟନ୍ ଡଲାର୍; କିନ୍ତୁ ପାଞ୍ଚବିଲିଅନ୍ ଖର୍ଚ୍ଚହୋଇଛି ଶସ୍ତାରେ ଚାଉଳ-ଡାଲି ଯୋଗାଇଦେବାକୁ, ଆଉ କ୍ୟୁବାରୁ ଡାକ୍ତରଆଣି ସ୍ୱାସ୍ଥ୍ୟ-ପରିସେବାର ବୁନିଆଦ ଗଢ଼ିତୋଳିବାକୁ । ଦି'ବର୍ଷ ଭିତରେ ଦେଢ଼ମିଲିୟନ୍ ଲୋକ ହୋଇପାରିଚନ୍ତି ଯଥାର୍ଥ ସାକ୍ଷର । କ୍ୟାରିବିଆନ୍ ଉପକୂଳର ତେରଟି ରାଜ୍ୟକୁ ତେଲ ପଠାଇଚନ୍ତି ବିନା ଲାଭରେ; ଏପରିକି, ଏକାଦରରେ ତେଲ ଯାଚିଚନ୍ତି ଆମେରିକା ଓ ବ୍ରିଟେନ୍‌ର ଗରିବଗୁରୁବାଙ୍କୁ । କ୍ଷୁବ୍ଧହେଲେ ବି, ରୁଷ୍ଟହେବା କଥାନୁହେଁ କାହାରି; ମାତ୍ର ଚାଭେଜ୍ ପ୍ରଶ୍ନକରିଚନ୍ତି ବିଶ୍ୱାୟନର ଆଦିକଳ୍ପକୁ ସମୂଳ । ଯୋଉ ଆଦିକଳ୍ପ କହୁଚି, ଧନ-ଉତ୍ପାଦନ ଅଧିକରୁ ଅଧିକ ହେଉଥିଲେ ଦରିଦ୍ର ବି ରହିବେନାହିଁ ସଂସାରରେ ଚିରକାଳ ବଞ୍ଚିତହୋଇ । ଅଥଚ ଗତ ଦୁଇଶ'ବର୍ଷର ଇତିହାସରୁ ଦେଖାଯାଉଛି, ଧନ-ଉତ୍ପାଦନର ଛେଦହୀନ ଅଭିଯାନ ପୃଥିବୀକୁ କରୁଚି ବସବାସର ଅନୁପଯୋଗୀ, ଆଉ ପ୍ରାକୃତିକ ସଂପଦ ତ ଅସରନ୍ତି ନୁହେଁ ଯେ ପୃଥିବୀ ଯୋଗାଇଯିବ କଳକାରଖାନାକୁ କଞ୍ଚାମାଲ କି ଇନ୍ଧନଶକ୍ତି ଅନନ୍ତକାଳ ! ବାଞ୍ଛିତ ଉପାୟ ତେଣୁ ଗଚ୍ଛିତ ସଂପଦର ପୁନର୍ବଣ୍ଟନ । ଧନୀ ଆହୁରିବେଶି ଧନୀ ହେଲେ, ଗରିବ ହେବେ କମ୍ ଗରିବ-ଏଇ ଯଦି ଆଭିମୁଖ୍ୟ, ସାମ୍ୟପ୍ରତିଷ୍ଠା ତେବେ ସମ୍ଭବହେବନାହିଁ କଦାପି । ଜି-ସେଭେନ୍ ନାଁଦେଇ ଧନତାନ୍ତ୍ରିକ ରାଷ୍ଟ୍ର ଯୋଉ ମେଣ୍ଟବାନ୍ଧିଚନ୍ତି, ଅଭୀଷ୍ଟ କୁଆଡ଼େ ଫ୍ରି-ମାର୍କେଟ୍ ବା ଅବାଧ ବଜାର, ଧନୀ-ନିର୍ଦ୍ଧନ ପାର୍ଥକ୍ୟ ସେ ବଜାରରେ କାମକରେନା; ସେ ବଜାର ଯଦି ସାରା ବିଶ୍ୱକୁ ପ୍ରସାରିତହୁଏ, ଦାରିଦ୍ର୍ୟମୋଚନ ସାଙ୍ଗକୁ ଗଣତନ୍ତ୍ର ବି ଚରିଯିବ ସମାଜର ସକଳ ସ୍ତରକୁ । ଅର୍ଥାତ୍, ବଜାର-ସଂପ୍ରସାରଣ ଓ ମାନବମୁକ୍ତି ସମାର୍ଥକ । ଅଥଚ ଯା ହାତରେ ଏତେ ଧନସଂପଦ ଅଛି ଯେ ବାଟପାଉନାହିଁ ଖର୍ଚ୍ଚକରିବ କେମିତି, ବଜାର ଯଦି ତାକୁ ଆହୁରି ଧନୀ କରେ, ନିର୍ଦ୍ଧନ କେମିତି ହଜାରେ ରକମ ଅଭାବଅସୁବିଧାରୁ ତ୍ରାହିପାଇବ, ସେ ରହସ୍ୟ କେହି ଫିଟାଉନାହିଁ । ନଫିଟାଇଲେ ସୁଦ୍ଧା, ଚାଭେଜ୍ ହୋଇଚନ୍ତି କ୍ରମଶଃ ସଂକ୍ରାମକ; ଯେପରି, ବଲିଭିୟାର ୨୦୦୫ ସାଧାରଣ ନିର୍ବାଚନରେ ଏଭୋ ମୋରାଲେସ୍‌ଙ୍କ ବିଜୟ । ବର୍ଷକ ଉତାରୁ, ବଲିଭିୟାର ସୈନ୍ୟ ପ୍ରାକୃତିକଗ୍ୟାସ୍-ଶିଳ୍ପକୁ ରାଷ୍ଟ୍ରାୟତ୍ତ କରିଚନ୍ତି, ତା ଭିତରେ ବ୍ରିଟିଶ୍ ଗ୍ୟାସ୍ ବି ରହିଚି; ଟ୍ୟାକ୍ସବୃଦ୍ଧି ପ୍ରସ୍ତାବ ବି କରିଚନ୍ତି ଏଭୋ, ରାଜି ନହେଲେ ଜାତୀୟକରଣ; ଅଥଚ କଂପାନୀମାନଙ୍କ ପାଖରୁ ପ୍ରାପ୍ୟ ଆୟକର, ଯା ଆଦାୟ କରିପାରୁନାହିଁ ଭାରତ

ସରକାର, ତା ପରିମାଣ ଲକ୍ଷେ କୋଡ଼ିଏହଜାର କୋଟି ଟଙ୍କା । ପୃଥିବୀର ଜନସଂଖ୍ୟାର ତିନି-ପଞ୍ଚମାଂଶର ଦୈନିକ ଆୟ ଦୁଇଡଲାର୍‌ରୁ ଊଣା; କି ଦୃଷ୍ଟିରେ ଦେଖିବେ ତେବେ ନିଜ ଦେଶର ଗଣତନ୍ତ୍ରକୁ ? ନିର୍ବାଚିତ ପ୍ରତିନିଧିଙ୍କ ସବୁଠୁଁ ବଡ଼କାମ ବଞ୍ଚିତ ଏଇ ମଣିଷଗୁଡ଼ାଙ୍କୁ ସୁରକ୍ଷାପ୍ରଦାନ; ତା ପରିବର୍ତ୍ତେ ଦେଖିବେ ଯଦି ବିତ୍ତବାନ୍ ବଳବାନ୍ ବିଦ୍ୱାନ୍ କେମିତି ଏଇ ନିଉଛଣା ଲୋକଗୁଡ଼ାଙ୍କୁ ଚିପୁଡ଼ିଖାଇ ରସାଳ ହେବେ, ସେଇ ଦାୟିତ୍ୱ ମୁଣ୍ଡକୁ ନେଇଚନ୍ତି ଜନପ୍ରତିନିଧି, କିଏ ଜାଣେ, ଚାଭେଜ୍ କି ଇଭୋଙ୍କ ଦୃଷ୍ଟାନ୍ତ ଚମକିଉଠିବନାହିଁ ବୁଭୁକ୍ଷୁର ତପ୍ତ ମାନସପଟରେ ? ପୃଥିବୀର ତଥାକଥିତ କର୍ଣ୍ଣଧାର ହୁଏତ କ୍ଷମାକରିବେନାହିଁ ଚାଭେଜ୍‌ଙ୍କୁ, ଆଖିରେ ଆଙ୍ଗୁଳିଗେଞ୍ଜା ଦେଖାଇଛନ୍ତି ଯେହେତୁ ବିଶ୍ୱାୟନର ରାଜନୀତିରୁ ଅର୍ଥନୀତି ଯେମିତି ଦୂରରେ, ଯୁକ୍ତିସଙ୍ଗତି ତତୋଧିକ । ଭାରତର ବିହ୍ୱଳ ନିରୁଦ୍ଦେଶ ଯୁବଶକ୍ତି କିନ୍ତୁ ରାଜନୀତି କି ଅର୍ଥନୀତି ପ୍ରତି ବୀତଶ୍ରଦ୍ଧ ହେବା ଅପ୍ରତ୍ୟାଶିତ ନୁହେଁ, ଏଭଳି ନିଦାରୁଣ ଆମ ଶିକ୍ଷାବ୍ୟବସ୍ଥା ! କିଭଳି ଭବିଷ୍ୟତ ତେବେ ତାଙ୍କୁ ହାତଠାରି ଡାକିବ ? ପ୍ରଶ୍ନଉଠୁଛି କାହିଁକିନା, ଚାଭେଜ୍ ଯୋଉଠୁ ସର୍ବାଧିକ ପ୍ରତିରୋଧ ସମ୍ମୁଖୀନହୋଇଚନ୍ତି, ତା ଦେଶର ମଧ୍ୟବିତ୍ତଶ୍ରେଣୀ । ସଂପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା, ଏମାନଙ୍କ ଦୃଷ୍ଟିରେ, ସ୍ତ୍ରୀ ଉପରେ ସ୍ୱାମୀର ଅଧିକାର ପରି ପବିତ୍ର । ଏମାନେ ପାଠପଢ଼ିଚନ୍ତି, ରୋଜଗାର କରନ୍ତି, କିନ୍ତୁ ଗତରଖଟନ୍ତିନାହିଁ । ସ୍ଟ୍ରକ୍‌ଚର୍‌ୟାଲ୍ ଆ୍ୟାଡ୍‌ଜଷ୍ଟ୍‌ମେଣ୍ଟ୍ ମାନେ ତେଣୁ ସବୁକଥାରେ ଆମେରିକା ପରି ହେବାକୁ ପ୍ରୟାସ । ପେଟ୍ରୋଲ୍‌ଜାତ ରାଜସ୍ୱର ସଦୁପଯୋଗ ଫଳରେ, ୧୯୯୯ ରୁ ୨୦୦୧ ଭିତରେ ଶିକ୍ଷା ବାବଦକୁ ବିନିଯୋଗ ବଢ଼ିଚି ଶତକଡ଼ା ୩.୩ ରୁ ୫.୨; ଗୃହହୀନଙ୍କୁ ବାସସ୍ଥାନ ଯୋଗାଇଦେବାକୁ ୦.୮ ରୁ ୧.୫; ସ୍ୱାସ୍ଥ୍ୟପରିସେବା ସକାଶେ ଗ୍ରସ୍ ନ୍ୟାସନାଲ୍ ପ୍ରଡକ୍ଟର ୧.୪% ରୁ ୧୧.୪% । ମଧ୍ୟବିତ୍ତଙ୍କ ପିଲା ଯାଆନ୍ତି ପ୍ରାଇଭେଟ୍ ସ୍କୁଲକୁ; ଅସୁସ୍ଥ ଯାଆନ୍ତି ନର୍ସିଙ୍ଗ୍‌ହୋମ୍‌କୁ । ମଧ୍ୟବିତ୍ତ ଭାବିଛି, ଦେଶର ସମ୍ପଦ ଅପଚୟକରୁଚି ଚାଭେଜ୍ ଭୋଟ୍‌କିଣିବା କାମରେ । ମୁଦ୍ରାମୂଲ୍ୟ ହ୍ରାସ ମଧ୍ୟ କ୍ରୁଦ୍ଧକରିଚି ସେମାନଙ୍କୁ, କାହିଁକିନା, ବିଦେଶୀ ମୋଟର୍‌ଗାଡ଼ି ବ୍ୟବହାର କି ଫ୍ଲୋରିଡ଼ାରେ ଛୁଟିକଟାଇବା ଭଳି ନାନାଦି ବାହୁଲ୍ୟ ବାଧାପାଇଚି ଅଚାନକ । ସବୁଠୁଁ ମାରାତ୍ମକ ମନେହୋଇଚି ଭୂ-ସଂସ୍କାର । ୧୫୦,୦୦୦ ଭୂମିହୀନ କିନ୍ତୁ ଜମିପାଇଚନ୍ତି, ସେଇ କାରଣରୁ । କିନ୍ତୁ ସ୍ପାନିସ୍ ଉପନିବେଶ ଉଠିଗଲା ଉତାରୁ, ଚାଳିଶବର୍ଷ ଭିତରେ ଜନସଂଖ୍ୟାର ୮୭% (ଭାରତରେ ୪୪%) ଏକ୍ଷଣି ନଗରବାସୀ । ସେଇ କାଳଖଣ୍ଡରେ, ମୋଟ ଉତ୍ପାଦନର ୫୦% ଯେତେବେଳେ କୃଷିରୁ ଆସିଚି ୧୯୬୦ରେ, ୧୯୯୯ ବେଳକୁ ଖସିଆସିଚି ୬%କୁ । ପେଟ୍ରୋଲ୍-ପଣ୍ୟରୁ ଲବ୍ଧ

ଭଡ଼ା ଇତ୍ୟାଦି ମୁଦ୍ରାବିନିମୟ ମୂଲ୍ୟକୁ ଏତେ ଉପରକୁ ଟେକିଦେଇଛି ଯେ ଦେଶଜ କୃଷିପଣ୍ୟ କି ଶିଳ୍ପପଣ୍ୟ ସମ୍ଭାଳିପାରିନାହିଁ ପ୍ରତିଯୋଗିତା । ଶ୍ରମ ତେଣୁ ଘୁଞ୍ଚିଯାଇଛି ଉତ୍ପାଦନରୁ ପରିସେବା କ୍ଷେତ୍ରକୁ । ଚାଭେଜ୍ କ୍ଷମତାକୁ ଆସିବା ବେଳକୁ କୃଷିଯୋଗ୍ୟ ଜମିର ୭୫% ରହିଛି ୫% ଲୋକଙ୍କ ହାତରେ, ଆଉ ୭୫% ଲୋକଙ୍କ ହାତରେ ରହିଛି ଜମିର ୬%, ଅଥଚ ଗ୍ରାମାଞ୍ଚଳର ଚାଷୀଙ୍କ ଭିତରୁ ୬୦% ଜମିରେ ଖଟନ୍ତି ଦିନସାରା, ମାନେ, ସେ ଜମିର ସ୍ୱତ୍ୱାଧିକାର ଅନ୍ୟ ଲୋକର, ଯିଏ ଗତରଖଟେନା ।

ଜମିର କିସମ୍‌କୁ ନଜରରେ ରଖି ପରିବାର ପିଛା ୧୦୦ ରୁ ୫୦୦୦ ହେକ୍ଟର୍ ଆୟତନସୀମା ବାନ୍ଧିଦେଇଚନ୍ତି ଚାଭେଜ୍; ଅନାବାଦୀ ଉପରେ ବସାଇଚନ୍ତି ବିଶେଷ ହାରରେ ଟ୍ୟାକ୍ସ । ଭୂମିହୀନ କୃଷକକୁ ଜମିର ଦଖଲଦେବା ତେଣୁ ସହଜ ହୋଇଛି, କାହିଁକିନା, ଭୂସଂପତ୍ତିର ଖର୍ଦ୍ଦବିକ୍ରିକୁ କରାଯାଇଚି ନିଷିଦ୍ଧ । ଅର୍ଥାତ୍ ପ୍ରତିରୋଧ ଓ ପ୍ରତିକୂଳ ସମାଲୋଚନା ସତ୍ତ୍ୱେ, ସଂପତ୍ତିର ଗଢ଼ଣ ଭିତରକୁ ସାମାଜିକ ନ୍ୟାୟ ଖାଲି ଢୁକିନାହିଁ, ଉତ୍ପାଦନ ମଧ୍ୟ ବଢ଼ିଯାଇଚି ପୂର୍ବାପେକ୍ଷା ଅନେକ ବେଶି, ଏକରିକି, ୨୦୦୭ ବେଳକୁ ଜିଡିପିର ଅନ୍ତତଃ ୧୨ ଶତାଂଶ କୃଷି ଅକ୍ତିଆରକୁ ଆସିଯିବ ବୋଲି ଅଟକଳ କରାଯାଇଚି, ଏପ୍ରିଲ୍ ୨୦୦୩ ବେଳକୁ ଯେହେତୁ ୫୦୦,୦୦୦ ହେକ୍ଟର୍ ଜମିର ସ୍ୱତ୍ୱ ପାଇଚନ୍ତି ୪୫୦୦ ଭୂମିହୀନ ପରିବାର । ଅଗଷ୍ଟ ବେଳକୁ ଆହୁରି ୧୩୦,୦୦୦ ପରିବାର ପାଇଚନ୍ତି ୧.୫ମିଲିୟନ୍ ହେକ୍ଟର୍ । ପରିବାରପିଛା ଗଡ଼କରା ୨୫ଏକର୍ । ବ୍ୟକ୍ତିଗତ ସଂପତ୍ତି ଉପରେ ରାଷ୍ଟ୍ରର ହସ୍ତକ୍ଷେପକୁ ଗଣମାଧ୍ୟମ ସମାଲୋଚନା କରିଚି ଦିନରାତି, ମାତ୍ର ଜଣାପଡ଼ିଚି ପୂର୍ବତନ ରାଷ୍ଟ୍ରପ୍ରଧାନ କାର୍ଲୋସ୍ ଆନ୍ଦ୍ରେସ୍ ପେରିଜ୍ ଦେଶର ବିଭିନ୍ନ ଅଂଚଳରେ କିଣିଥିଲେ ଅନ୍ତତଃ ୨୦,୦୦୦ ହେକ୍ଟର୍ ଜମି, ଅବଶ୍ୟ ବେନାମରେ । କିନ୍ତୁ ପ୍ରତି ଦଶଜଣରେ ଜଣେ ରହେ ସହରରେ, ତାଙ୍କ ଭିତରୁ ୬୦% ବସ୍ତି କି ଝୋପଡ଼ିରେ । ସେଇମାନଙ୍କ ଭୋଟ୍ ଚାଭେଜ୍‌କୁ ଜିତେଇଥିଲା ୧୯୯୮ରେ । ତାଙ୍କୁ ନେଇ ଅନ୍ୟତ୍ର ଥଇଥାନ କଲାଭଳି ଆର୍ଥିକ ସାମର୍ଥ୍ୟ ସରକାରର ନରହିବା କଥା । ଅଧିକାଂଶ ବସ୍ତି ଗଜୁରିଉଠିଥିଲା ଖାସ୍‌ମାହାଲ୍ ଜମି ଉପରେ, ଆଇନ୍ ଦୃଷ୍ଟିରେ ଜବରଦଖଲ । ଦଶବର୍ଷରୁ ବେଶି ଯିଏ ଏକାଜାଗାରେ ରହିଥିଲେ, ତାଙ୍କ ନାଁରେ ପ୍ରାୟ ୫୦୭୦୦୦ ପ୍ଲଟ୍ ଦରଜକରିଦେଇଚନ୍ତି ଚାଭେଜ୍ । ଏମାନେ ପୂର୍ବତନ ସରକାର ଅମଳରେ ଆଇନ୍‌ଭଙ୍ଗ ସକାଶେ ଗୁଳିକାଣ୍ଡ ପର୍ଯ୍ୟନ୍ତ ବରଦାସ୍ତ କରିଥିଲେ । ସେମିତି, ସରକାରୀ ପତିତଜମି ଓ ବ୍ୟକ୍ତିଗତ ଦଖଲରେଥିବା ପତିତଜମିକୁ ନେଇ ଗୋଚର ଶ୍ମଶାନ ମେଳଣପଡ଼ିଆ ଭଳି 'କମ୍ୟୁନାଲ୍ ପ୍ରପର୍ଟି' ମଧ୍ୟ ସୃଷ୍ଟିକରାଯାଇଚି, ଯଦ୍ୱାରା ଉପକୃତହୋଇଚନ୍ତି ଜନସଂଖ୍ୟାର ୪୦ ଶତାଂଶ ।

ଚାଭେଜ୍ କହିଚନ୍ତି 'ସମାଜ ପ୍ରତି ପ୍ରଶାସନର ଋଣପରିଶୋଧ' । କାହିଁକିନା, ଗ୍ରାମ କି ସହର ନିର୍ବିଶେଷରେ, ଏ ଋଣପରିଶୋଧ ଯୋଉ 'ବାରିୟ' (ଇଂରାଜୀ, ବ୍ୟାରୋ) ସୃଷ୍ଟିକରେ, ସାମୂହିକ ସଂଘବଦ୍ଧ ଆତ୍ମପରିଚୟକୁ ତା ଜନ୍ମଦିଏ, ଏବଂ ସେଇଥିରୁ ବାହାରେ 'କମିଉନିଟି' ଆଉ ଉଦ୍ଦେଶ୍ୟାଭିମୁଖୀ କର୍ମକାଣ୍ଡ ଯା ସମାଜ-ପରିବର୍ତ୍ତନର ସହାୟକ । ଏତେକଥା ଲେଖିବାର ଉଦ୍ଦେଶ୍ୟ, ଲାଟିନ୍ଆମେରିକା ଯେହେତୁ ତଥାକଥିତ ତୃତୀୟବିଶ୍ୱର ଅଂଶବିଶେଷ, ଭାରତ ପ୍ରତି ତାର ପ୍ରାସଙ୍ଗିକତା ।

ଅଥଚ ପୁଞ୍ଜିର ବିଶ୍ୱାୟନର ବିକଳ୍ପନାହିଁ ବୋଲି ଧରିନେଇଚି ଭାରତର ଶାସକଶ୍ରେଣୀ; ବିକଳ୍ପ ଯେ ରହିଚି, ତା ସପକ୍ଷରେ ଆଉଗୋଟିଏ ଉଦାହରଣ କ୍ୟୁବା । ଛୋଟ ଦେଶ; କିନ୍ତୁ ସାରାଦେଶକୁ ଯେତେ ପନିପରିବା ଦରକାର, ଷାଠିଏ ଶତାଂଶ ଉତ୍ପନ୍ନକରେ ନଗରାଞ୍ଚଳର ପତିତଜମିକୁ ଉଦ୍ୟାନରେ ପରିଣତକରି, ଏବଂ ରାସାୟନିକ ସାର କି କୀଟନାଶକ ବ୍ୟବହାର ନକରି । ଅର୍ଥାତ୍, ଶିଳ୍ପଜାତ ଉପକରଣର ବିନା ସାହାଯ୍ୟରେ । ସୋଭିଏଟ୍ ଇଉନିୟନ୍ ଭାଙ୍ଗିଯିବା ଉତାରୁ ଶିଳ୍ପଜାତ ଉପକରଣ ମିଳିନାହିଁ; ଏପରିକି, ଟ୍ରାକ୍ଟର୍ ସୁଦ୍ଧା । ଆମେରିକା ତ ବାସନ୍ଦକରିଚି ପଚାଶବର୍ଷରୁ ବେଶି ହେଲାଣି । ଲୋକ ଉପାସରେ ମରିଯିବା କଥା । ମାତ୍ର ସ୍ମରଣକରିଚନ୍ତି ନିଜ ଅତୀତକୁ ଯେତେବେଳେ ଚାଷକାମରେ ଯନ୍ତ୍ର କି କେମିକାଲ୍ ବ୍ୟବହାର ଜଣା ନଥିଲା; କୃଷିଉତ୍ପାଦନ ଥିଲା, ଇଂରେଜୀରେ, ଲୋ-ଇନ୍‌ପୁଟ୍; ସେଇ ବାଟଦେଇ ଆଖୁ, କଫି, କମଳା ଚାଷକୁ କରାଯାଇଚି 'ଅର୍ଗାନିକ୍' । ମାତ୍ର ଜନସମର୍ଥନ ବ୍ୟାପକ ହୋଇଚି ନଗରାଞ୍ଚଳର ଅନାବାଦୀକୁ ଯେତେବେଳେ ସାନସାନ ପରିବାକିଆରିରେ ଭାଗକରାଯାଇଚି; ସେଭଳି ପଟାଳି ସଂଖ୍ୟା ଖାଲି ହାଭାନା ସହରରେ ଏକ୍ଷଣି ୬୦,୦୦୦ରୁ ବେଶି । ଲୋକ ଅବଶ୍ୟ ଧନୀ ନୁହଁନ୍ତି; କିନ୍ତୁ ସବୁଠୁଁ ସ୍ୱାସ୍ଥ୍ୟକର ପଥ୍ୟ ସମ୍ଭବତଃ ସେଇମାନେ ଖାଆନ୍ତି ପୃଥିବୀରେ । ସମାଜତାନ୍ତ୍ରିକ ଦେଶ ସୁଦ୍ଧା ଏ ଦିଗକୁ ମନବଳାଇ ନାହାଁନ୍ତି; ଧନତାନ୍ତ୍ରିକ ଦେଶ ଭଳି ଉପଯୋଗକରିଚନ୍ତି ଯନ୍ତ୍ର-ପ୍ରଯୁକ୍ତି, ଉତ୍ପାଦନ ପରିମାଣକୁ ଯା ବଢ଼ାଇଦେଇପାରେ ବହୁଗୁଣ । ପୃଥିବୀସାରା ପ୍ରାନ୍ତିକ ଚାଷୀ ତେଣୁ ବାଧ୍ୟହୋଇଚନ୍ତି ଚାଷ ଛାଡ଼ିଦେବାକୁ, ଇଣ୍ଡଷ୍ଟ୍ରିଆଲ୍ ଇନ୍‌ପୁଟ୍ ଯେହେତୁ ତାଙ୍କ ଧରାଛୁଆଁ ବାହାରେ । ଅଥଚ 'ଡିଭେଲପ୍‌ମେଣ୍ଟ'ର ଧନତାନ୍ତ୍ରିକ ମଡେଲ୍‌ଟି କ୍ୟୁବାରେ ଦୈବାତ୍ ଅଲଭ୍ୟ ହୋଇଯିବାରୁ ଦେଖାଗଲା, ପୁଞ୍ଜିର ବିଶ୍ୱାୟନରୁ ପଘାଛିଣ୍ଡାଇ ବାହାରିଗଲେ ବି ଭୋକରେ କେହି ମରନ୍ତିନାହିଁ, କି ସମାଜରେ ଦେଖାଦିଏନା ବିଶୃଙ୍ଖଳା । ଅଥଚ କ୍ୟୁବା ଯୋଉ ବାଟରେ ନିଜ 'ଉନ୍ନୟନ'କୁ ସଂପନ୍ନକରିଚି, ମାର୍କେଟ୍ କି ଧନବିଦ୍ୟାର କୃତିତ୍ୱ ନୁହେଁ, ଆପଣା ଅବହେଳିତ ସଂପଦର ପୁନରୁଦ୍ଧାର । ସେ ସ୍ୱୟମ୍ଭରତାକୁ ଅବଶ୍ୟ

ଧ୍ୱଂସକରିଦେଇଛି ଶିଳ୍ପପ୍ରଯୁକ୍ତିର ଦୁଇଶବର୍ଷବ୍ୟାପୀ କ୍ରମାଗତ ଅଭିଘାତ, ଏବଂ ତଦ୍‌ସଂଲଗ୍ନ ଅର୍ଥନୀତିକ ଭାବାଦର୍ଶ; ଯା ନିତ୍ୟାବଶ୍ୟକ ମେଣ୍ଟାଇପାରେନା, ନିରାପତ୍ତା ଦେଇପାରେନା ଦୁର୍ଯୋଗରୁ, ଦେଇପାରେ କେବଳ କୁଡ଼୍‌କୁଡ଼୍ ଟଙ୍କା, ଚେରମୂଳରୁ ବିଚ୍ଛିନ୍ନକରି ମଣିଷକୁ କରିପାରେ ମହାଜନ। ଯେପରି ବାଂଲାଦେଶ; ୧୯୭୧ରେ ସ୍ୱତନ୍ତ୍ର ରାଷ୍ଟ୍ର ହେଲା ଯେତେବେଳେ, ଭୂମିହୀନ ଥିଲେ ଲୋକସଂଖ୍ୟାର ୩୦ ଶତାଂଶ, ଏକ୍ଷଣି ହୋଇଛି ୬୭%; ଦଳଦଳହୋଇ ଭିଟାଛାଡ଼ି ପଳାଇଯାଉଚନ୍ତି ଆଖିପାଇଲା ଯୁଆଡ଼କୁ ।

ଡିଭେଲପ୍‌ମେଣ୍ଟ, ତେବେ, କହୁଛୁଁ କାହାକୁ ? ଫଳିତ ବିଜ୍ଞାନ ତାର ଲକ୍ଷଣ ସିରକରିଚି, ସ୍ଥାନ-କାଳ ସୀମାବଦ୍ଧତାକୁ ଜୟ, ଆଉ ବହିର୍ପ୍ରକୃତିରୁ ଉତ୍ତରୋତ୍ତର ରସଦ ଆହରଣ । ଧନବିଜ୍ଞାନ କହୁଚି, ରାସ୍ତାଘାଟ ବନ୍ଦର ଇତ୍ୟାଦି ଗମନାଗମନକୁ କରିବ ସୁଗମ ଓ ସୁଲଭ; ତା ହେଲେ, କୃଷି ଓ ଶିଳ୍ପଜାତ ପଣ୍ୟର ବିପଣନ ହେବ ନିର୍ବାଧ; ଅଶିକ୍ଷା ଓ ବ୍ୟାଧିନିରାମୟ ସକାଶେ ବସିପାରିବ ସ୍କୁଲ୍, କଲେଜ୍, ଆଉ ହସ୍‌ପିଟାଲ୍; ଲୋକଙ୍କ କ୍ରୟକ୍ଷମତାର ଅଭିବୃଦ୍ଧି, ଆଉ ଆୟର ପୁନର୍ବଣ୍ଟନ ଦ୍ୱାରା ସାମାଜିକ ବୈଷମ୍ୟର ନିରୋଧ । ଧନତନ୍ତ୍ର ହେଉ କି ସମାଜତନ୍ତ୍ର, ଏଇ ଲକ୍ଷ୍ୟଗୁଡ଼ାକ ବିଷୟରେ ବିରୋଧ ଦେଖାଯାଇନାହିଁ; ଖାଲି ଗନ୍ତବ୍ୟରେ ପହଞ୍ଚିବା ପଦ୍ଧତି ସମ୍ବନ୍ଧରେ ରହୁଛି ନାନା ମୁନିଙ୍କ ନାନାମତ । ଯେପରି, ଆଡାମ୍ ସ୍ମିଥ୍ କଳ୍ପନାକରିଥିଲେ ଏକ 'ଅଦୃଶ୍ୟ ହାତ', ଉନ୍ନୟନର ଯାବତ୍ ଅସଙ୍ଗତିକୁ ସଜାଡ଼ିଦେବ ଯଥାକାଳେ । ଏକ୍ଷଣି ସେ ହାତ ଆଉ ଅଦୃଶ୍ୟ ନୁହେଁ, ଅତିଦୃଶ୍ୟମାନ୍ 'ମାର୍କେଟ୍' । ଯା ମୂଳରୁନାହିଁ, ତାକୁ 'ଡିଭେଲପ୍' କରିବା ପ୍ରଶ୍ନଉଠୁନାହିଁ; ଯା ଅଛି, କେବଳ ତାହାରି ବିକାଶସାଧନ କରାଯାଇପାରେ; ଏବଂ ସେଇ ପ୍ରତ୍ୟକ୍ଷ ଅସ୍ତିତ୍ୱଟି ସ୍ୱୟଂ ମଣିଷ । ମାର୍କ୍ସ ଭାବିଚନ୍ତି, ମଣିଷର ନିହିତ ସାମର୍ଥ୍ୟ ତାକୁ କେତେଦୂର ନେଇଯିବ, ତାର ଦିଗ୍‌ବଳୟ ନାହିଁ । ବିଷୟସଂପତ୍ତି, ସ୍ୱାସ୍ଥ୍ୟ, ଶିକ୍ଷା, ସାମାଜିକ ନିରାପତ୍ତା, ପାରସ୍ପରିକ ଆଦାନପ୍ରଦାନ ସେ ଗତିର ସହାୟକ ନିଶ୍ଚୟ; ମାତ୍ର ଏଗୁଡ଼ିକ କେତେଦୂର ବଢ଼ିପାରିବ, ତାର ସୀମା ଅଛି । ସୀମା ଅଛି, କାହିଁକିନା, ବାହ୍ୟପ୍ରକୃତିର ବହନ ଓ ସହନଶକ୍ତି ପୂର୍ବ ନିର୍ଦ୍ଧାରିତ । ସେ ନିର୍ଦ୍ଧାରଣକୁ ଡେଇଁବା ଅର୍ଥ ସଂସାରରେ ଜୀବନଧାରଣ ହୋଇପଡ଼ିବ ବିପଦାପନ୍ନ । ଉନ୍ନୟନର ମୂଳସୂତ୍ର ଧନଉତ୍ପାଦନ ତେଣୁ ନିର୍ଦ୍ଦିଷ୍ଟ ଏକ ବିନ୍ଦୁ ପର୍ଯ୍ୟନ୍ତ ବଢ଼ିପାରେ, ସେ ବିନ୍ଦୁରୁ ଆଗକୁ କି ଉପରକୁ ଯିବାକୁ ଚେଷ୍ଟା ମାନେ ବିପର୍ଯ୍ୟୟକୁ ଆମନ୍ତ୍ରଣ । ଧନତନ୍ତ୍ରର ବୟସ ପ୍ରାୟ ଦୁଇଶବର୍ଷ, ସମାଜତନ୍ତ୍ରର ତା ଅଧା ବି ନୁହେଁ । ମାତ୍ର ମଣିଷର ବିକାଶଘଟୁଚି ପ୍ରାଗୈତିହାସିକ କାଳରୁ । ଘଟୁଚି ବୋଲି, ଫଳିତ ବିଜ୍ଞାନ କି ଧନବିଜ୍ଞାନ ଉର୍ଦ୍ଧ୍ୱରେ ଡିଭେଲପ୍‌ମେଣ୍ଟ୍‌ର ରହିଚି ଏକ ଐତିହାସିକ ମାତ୍ରା; ଏବଂ

ସେଥିରୁ ସୁସ୍ପଷ୍ଟ ଯେ କ୍ଷିତି–ଅପ୍–ତେଜ୍–ମରୁତ୍ ଭଳି ଭୂତସମଷ୍ଟି ସର୍ବକାଳ ଓ ସର୍ବସ୍ଥାନରେ ହୋଇଚି ଜୀବନବିକାଶ ଓ ନିର୍ବାହର ଅପରିହାର୍ଯ୍ୟ ଅବଲମ୍ବନ । ଜମିଜମା, ନଈନାଳ, ବଣପାହାଡ଼ ସହିତ ସେଇ ସୂତ୍ରରେ ଗଢ଼ିଉଠିଚି ଅଚ୍ଛେଦ୍ୟ ଓ ଆବହମାନ ସମ୍ବନ୍ଧ । ଅନ୍ନବସ୍ତ୍ର, ଔଷଧ ଓ ଉପକରଣ ଆହରଣସୂତ୍ରରେ ମଣିଷ–ମଣିଷ ଭିତରେ ଯୋଉ ସଂପର୍କ ତିଆରି କରିଚି, ତାକୁ ହିଁ କହୁଚୁଁ କୁଟୁମ୍ବିତା ବା କିନ୍‌ସିପ୍ କିମ୍ବା କମ୍ୟୁନିଟି । ତା ଉପରେ ଭରାଦେଇ ନିଜକୁ ଯେମିତି ପୁନରୁତ୍ପାଦିତ କରିଚି ମଣିଷ, ସେମିତି ନିତ୍ୟାବଶ୍ୟକ ରସଦର ଉତ୍ପାଦନକୁ ମଧ୍ୟ । ସେ ପ୍ରଯୁକ୍ତି ଏକ୍ଷଣି ଆଦିମ, କାହିଁକିନା, ଉତ୍ପନ୍ନ ପରିମାଣକୁ ବଢ଼ାଇପାରେନା ଉତ୍ତରୋତ୍ତର । ମାତ୍ର ମଣିଷ ଚାହିଁନାହିଁ ଅଧିକ; ସେତିକିରେ ମେଣ୍ଟିଯାଇଚି ଦିନଗୁଜୁରାଣ; ନିତ୍ୟନୂତନ ଉପକରଣ ବି ଖୋଜିନାହିଁ ମନ । ସେଇ ବାଟରେ ହିଁ ମଣିଷ ହୋଇଚି ଆତ୍ମନିର୍ଭର; ଚାଷବାସ, ପଶୁପାଳନ, ଘରତିଆରି କି ମରାମତି, ଜାଲବୁଣିବା ଠୁଁ ଲୁଗାବୁଣିବା, ସବୁଯାକ ଶିଖିଚି ଆପଣା ହାତଲଗାଇ; ଏବଂ କାଳକ୍ରମେ, ନୈପୁଣ୍ୟ ମଧ୍ୟ ଅର୍ଜନକରିଚି ମନନ ଓ ଶରୀରଶ୍ରମରେ । ପ୍ରଥାଗତ ସେ ନୈପୁଣ୍ୟକୁ ‘ଡିଭେଲପ୍‌ମେଣ୍ଟ୍’ କିନ୍ତୁ ଅମଲଦିଏନା; କାହିଁକିନା, ଇଂଲଣ୍ଡରେ ଶିଳ୍ପବିପ୍ଳବ ଘଟିବା ଦିନରୁ ମଣିଷ ପହଁରୁଚି ବିପରୀତ ସ୍ରୋତରେ, ଅଥଚ ଅଭାବ ମେଣ୍ଟୁନାହିଁ କି ସୁରକ୍ଷା ମିଳୁନାହିଁ । ଯୋଉଠି ଅଭାବ ନାହିଁ, ଯେପରି ପାଶ୍ଚାତ୍ୟ ଶିଳ୍ପୋନ୍ନତ ଦେଶ, ଅଭିହିତ ହେଉଚନ୍ତି ‘ଡିଭେଲପ୍‌ଡ୍’; ତାଙ୍କୁ ଯିଏ ଅନୁକରଣ କି ଅନୁସରଣ କରୁଚନ୍ତି, ଯେପରି ଭାରତ, ବିବାକ ତେଣୁ ‘ଡିଭେଲପିଙ୍ଗ୍’ । ଶିଳ୍ପବିପ୍ଳବ ଚାଲିଥିବାବେଳେ ସେଠି ମଧ୍ୟ ଶ୍ରମଜୀବୀ ଦାବିକରିଚନ୍ତି ଦୁଇଟି ଜିନିଷ: କାର୍ଯ୍ୟକ୍ଷମ ହୋଇ ସୁସ୍ଥଶରୀରରେ ବଞ୍ଚିରହିବାକୁ ନ୍ୟୂନତମ ଅନ୍ନବସ୍ତ୍ର ବାସସ୍ଥାନ ଚିକିତ୍ସା ଓ ନିଯୁକ୍ତିର ସ୍ଥାୟୀତ୍ୱ । ଏବେସୁଦ୍ଧା ଡିଭେଲପ୍‌ମେଣ୍ଟ୍ ପାଖରୁ ସାଧାରଣ ଖଟିଖିଆ ଲୋକଙ୍କ ପ୍ରତ୍ୟାଶା ତଦପେକ୍ଷା ବେଶି ନୁହେଁ; ମାତ୍ର ରାଷ୍ଟ୍ରର ମତଲବ୍ ଶିଳ୍ପୋନ୍ନତ ଦେଶଙ୍କ ସମସରି ହେବୁଁ, ଡିଭେଲପିଙ୍ଗ୍–ରୁ ହେବୁଁ ଡିଭେଲପ୍‌ଡ୍ । ଲୋକ ତେଣୁ ଚୁଡ଼ାମୁଢ଼ି ଛାଡ଼ି ଖାଉଚନ୍ତି ପାଉଁରୁଟି–ବିସ୍କିଟ୍, ଯା ନିଜଘରେ ତିଆରିହୁଏନା, କାରଖାନାରୁ ଆସି ଦୋକାନରେ ବିକ୍ରିହୁଏ । ଜନ୍ମରୁ ମରଣଯାଏଁ ଅଭିଭାବକ ତେଣୁ ମାର୍କେଟ୍ । ଅଥଚ ମାତ୍ର ଦୁଇଶବର୍ଷ ଆଗରୁ ପୁଞ୍ଜିର ଶୋଷଣକୁ ପ୍ରତିରୋଧକରି ଲୋକ ଦାବିକରିଚନ୍ତି ଜୀବିକାର ସ୍ଥାୟୀତ୍ୱ ଆଉ ଏପରି ଉପାର୍ଜନ ଯା ସଂସାର ପ୍ରତିପାଳନ ସକାଶେ ପର୍ଯ୍ୟାପ୍ତ । ଏ ପରିମିତିବୋଧରୁ ଜଣାପଡୁଚି ପଣ୍ୟଆସକ୍ତିର ଅନୁପସ୍ଥିତି । ଏପରିକି, ଊନବିଂଶ ଶତକର ପ୍ରଥମାର୍ଦ୍ଧରେ ଚାର୍ଟିଷ୍ଟ୍ ଦାବିକରିଚନ୍ତି ଏକମାତ୍ର ଭୋଟ୍‌ଅଧିକାର, ଯେହେତୁ ଶ୍ରମିକ ସେଇ ବାଟରେ ମାଲିକ ସାଙ୍ଗରେ ହୋଇପାରିବ ରାଜନୀତିରେ ସମକକ୍ଷ ।

ବିଂଶଶତକର ଆଦ୍ୟଭାଗ ପର୍ଯ୍ୟନ୍ତ ସାଧାରଣ ନାଗରିକର ଜୀବନମାନରେ ଉନ୍ନତି ତେଣୁ ଲାଗିରହିଛି; କାହିଁକିନା, ଶ୍ରମଜୀବୀର ପ୍ରତ୍ୟାଶା ଯେହେତୁ ପୂରଣକରାଯାଇଚି ବେଳକୁ ବେଳ ଉଦ୍‌ବୃତ୍ତ-ଉତ୍ପାଦନ ବାଧାପାଇନାହିଁ ଇଉରୋପରେ । ମାତ୍ର ଦ୍ୱିତୀୟ ମହାଯୁଦ୍ଧ ଧନତନ୍ତ୍ର ସହିତ ସମାଜତନ୍ତ୍ରର ଯୋଉ ସଂଧି ସ୍ଥାପନକରିଚି, ତାର ପରିଣତି ହୋଇଚି ୧୯୪୫ ପରବର୍ତ୍ତୀ ସମାଜରେ 'ଜନମଙ୍ଗଳ'ର ଅନୁପ୍ରବେଶ । ଜନମଙ୍ଗଳ-ରାଷ୍ଟ୍ରକୁ ଧନତନ୍ତ୍ରର ସନ୍ଧି ନକହି, ପୁଞ୍ଜି ସହିତ ଶ୍ରମର ଆପୋଷ କହିବା ବରଂ ଅଧିକ ସଂଗତ । ଫଳରେ, ଉଦ୍‌ବୃତ୍ତ-ଉତ୍ପାଦନ ବ୍ୟାହତ ହୋଇନାହିଁ; ମାତ୍ର ଉପଭୋଗପ୍ରବଣତା ବଢ଼ିଚି ଚତୁର୍ଦ୍ଦିଗରେ । ଅଦ୍‌ଭୂତ ଯୋଉ ଯୁକ୍ତି ଏ ବ୍ୟବସ୍ଥା ପଛରେ କାମକରିଚି, ତା ହେଲା, ଥିଲାବାଲା ବେଶିପାଇଲେ ନଥିଲାବାଲା ବି ପ୍ରସାଦ ଲାଭକରୁଥିବେ ସମାନୁପାତରେ; ଅର୍ଥାତ୍, ସ୍ୱୟମ୍ଭରତା ଓ ସୁରକ୍ଷା ଭଳି କଥାଗୁଡ଼ାକ ଶିକାକୁ ଉଠିଗଲା, ଏବଂ ଏଇ ଭାବ ସଂପ୍ରସାରଣରେ, ଗ୍ଲୋବାଲାଇଜେସନ୍ ହେଲା ନାଟକର ନାୟକ; ଅର୍ଥାତ୍ ଧନଉତ୍ପାଦନର ମୋଟ୍ ପରିମାଣ କ୍ରମାଗତ ବଢୁଥିଲେ ଅଭାବ ଓ ଦାରିଦ୍ର୍ୟ ବି ହ୍ରାସପାଇବ ସମାନୁପାତରେ । ହୁଏତ ଅଭିପ୍ରେତ ଥିଲା ନାହିଁ; ମାତ୍ର କାର୍ଯ୍ୟକ୍ଷେତ୍ରରେ ଶ୍ରମଜୀବୀ ଭିତରୁ ଶୁଖି ଶୁଖି ମରିଯାଇଚି ପ୍ରତିରୋଧକ୍ଷମତା, ଯେପରି ଆମ ଯୁବଶକ୍ତି ଭିତରୁ ସଂଗ୍ରାମର ଉତ୍ସାହ । ଶ୍ରମଜୀବୀର ଅସଲ ଆବଶ୍ୟକକୁ ଢ଼ାଙ୍କିପକାଇଚି ପୁଞ୍ଜିର ଉତ୍ପାଦନକ୍ଷମତା, ସୁଲଭ ପଣ୍ୟର ପ୍ରାଚୁର୍ଯ୍ୟ ଆଉ ସାଧାରଣ କ୍ରୟକ୍ଷମତାର ଉଚ୍ଛଳତା । ବିଶ୍ୱାୟନ ତେଣୁ ଆତ୍ମିକ ଅଭାବକୁ କରିଦେଇଚି ବୈଷୟିକ ଉଚ୍ଛଳତାର ଅଧସ୍ତନ; ଏବଂ ଏ ଅଧସ୍ତନତା ସୁସଂଗଠିତ ଏକ ସିଷ୍ଟେମ୍, ଯା ମନନଜଗତକୁ ମଧ୍ୟ କରିପାରେ ଆକ୍ରାନ୍ତ, କାହିଁକିନା, ଅର୍ଥନୀତି ତାଙ୍କ ସମସ୍ୟାକୁ ସମାଧାନକରିବା ପରିବର୍ତ୍ତେ, ସେମାନେ ଯେ ଅର୍ଥନୀତିର ସଂକଟମୋଚନ ସକାଶେ ବ୍ୟବହୃତହେଉଚନ୍ତି, ଅପ୍ରତ୍ୟକ୍ଷ ଏଇ ସତ୍ୟ ଖଟିଖିଆ ମଣିଷର ଚେତନାକୁ ପଶୁନାହିଁ; ଏବଂ ପଶୁନାହିଁ ବୋଲି, ଗୋଷ୍ଠୀଐକ୍ୟ, ପ୍ରତିବେଶୀପ୍ରୀତି କି ପରିଜନସୁଲଭ ପାରସ୍ପର୍ଯ୍ୟ ଉଭାଇଯାଇଚି ସମାଜରୁ ମାତ୍ର କେତେଟାବର୍ଷ ଭିତରେ; ଆଉ, ସେଇ ଶୂନ୍ୟତାକୁ ପୂରଣକରୁଚି ହରେକରକମ ନିଶାଦ୍ରବ୍ୟ, ନିରୁଦ୍ଦେଶ ପର୍ଯ୍ୟଟନ, ଜୀବନଯାତ୍ରାରୁ ଉଦ୍ଦେଶ୍ୟ ଓ ଅଭିପ୍ରାୟର ଅନ୍ତର୍ଦ୍ଧାନ । ତା ସାଙ୍ଗକୁ ଅପରିମିତ ଭୋଗବାସନା ଆଉ ପ୍ରତିକଥାରେ ଆକ୍ରମଣାତ୍ମକ ମାନସିକତା, ଯା ଛେଦହୀନ ଶ୍ରୀବୃଦ୍ଧି ରୂପକ ଉପହାସର ଉପଜାତ । ଅପ୍ରତିହତ ଭୋଗବାଦ ସେଇ ଉପହାସର ନାମାନ୍ତର । ତାକୁ ଯିଏ ପ୍ରତିଯୋଧ କରୁଚି, ହେଉଛି ଗରିବଙ୍କ ଶତ୍ରୁ- ଆମେ ଟିକିଏ ଆୟେଶ କଲେ ଶଳାଙ୍କ ଦିହ ସହୁନାଇଁ । ଏଇ ତିରସ୍କାର ଜନ୍ମଦେଇଚି ଯୋଉ ଭାବାଦର୍ଶକୁ, ତାଆରି ନାଁ

'ଚିନା' । ମାତ୍ର ପୁଞ୍ଜିର ବିଶ୍ୱାୟନକୁ ନିର୍ବିକଳ୍ପ ମନେନକରି ଦେଶରେଥିବା ଧନସଂପତ୍ତିର ପୁନର୍ବଣ୍ଟନ ହୋଇପାରନ୍ତା ରାଷ୍ଟ୍ରର ସମ୍ଭାବ୍ୟ କୃତ୍ୟସୂଚି । ବିରୋଧକରିବେ ଅବଶ୍ୟ ମଧ୍ୟବିତ୍ତ । କାହିଁକିନା, ଦେଶବାସୀଙ୍କ ମେଳରେ ଏକାସାଙ୍ଗରେ ଦିନଯାପନ କରୁଥିଲେସୁଦ୍ଧା, ତାଙ୍କ ଭିତରେ ଜଣେ ବୋଲି ନିଜକୁ ଗଣେନା ମଧ୍ୟବିତ୍ତ; ମନୋଜଗତରେ ସିଏ ସର୍ବସାଧାରଣଙ୍କ ପାଖରୁ ଊର୍ଦ୍ଧ୍ୱରେ, ଏବଂ ସେଇ ସୂତ୍ରରେ, ସର୍ବସାଧାରଣଙ୍କ ପାଖରୁ ଦୂରରେ । ସାକ୍ଷାତ୍ ଶାସକଶ୍ରେଣୀ, ମାନେ, ବୁର୍ଜୋୟା । ରାଜନୀତିର ବୁର୍ଜୋୟାକରଣ ମାନେ ଇଉନିୟନ୍ କାର୍‌ବାଇଡ୍‌ର ଗ୍ୟାସ୍‌ଚର୍‌ବାଇନ୍ ଫାଟି ହଜାରହଜାର ଶ୍ରମଜୀବୀ ମରିବେ, ଗୋଖାଦ୍ୟ ସକାଶେ ବରାଦ କୋଟିକୋଟିଟଙ୍କା ଖାଇଯିବେ ମନ୍ତ୍ରୀ ଆଉ ଅମଲା, ଚାଷୀ ଆଉ ତନ୍ତୀ କରିବେ ଆତ୍ମହତ୍ୟା, ପିଲା ପାଠପଢ଼ିବାକୁ ଯିବେ ମଧ୍ୟାହ୍ନଭୋଜନ ଲାଳସାରେ, କଲେଜ୍‌ରୁ ଫେରିବା ବାଟରେ ଝିଅଙ୍କ ଉପରେ ହେବ ବଳାତ୍କାର, ଚାକିରିକରିବାକୁ ହେଲେ ଦରକାରହେବ ସ୍ଥାନସଂରକ୍ଷଣ ଇତ୍ୟାଦି । ମଧ୍ୟବିତ୍ତଚରିତ୍ରର ବୈଶିଷ୍ଟ୍ୟ ହେଲା, କଥା ଆଉ କାମ ମଝିରେ ବେଜାଏ ତଫାତ୍ । କଥାରେ ଅନୁକମ୍ପା, କାମରେ ଅବଜ୍ଞା । ତେବେ, ବିଂଶଶତକ ଶେଷହେବା ବେଳକୁ ସମାଜତନ୍ତ୍ରର ପତନ ଘଟିଚି ପୃଥିବୀରେ; ଧନତନ୍ତ୍ର ବି ବୁଝିପାରିଚି କ୍ରମାଗତ ଧନଉତ୍ପାଦନ ହୋଇପାରେନା ଚିରସ୍ଥାୟୀ ବନ୍ଦୋବସ୍ତ; ଏଇ ସନ୍ଧିକ୍ଷଣରେ ଭାରତ ନିର୍ମାଣକରିଥାନ୍ତା ଉଭୟ ତନ୍ତ୍ର ବାହାରେ, ଅତୀତ ଅଭିଜ୍ଞତା ଉପରେ ଅଧିଷ୍ଠିତ ଏପରି ଏକ ଜଗତ, ଯା ପଞ୍ଚଭୂତ ପ୍ରତି ଶ୍ରଦ୍ଧାଶୀଳ, ଯା ସଂପଦ ଉପଯୋଗରେ ପାଳନକରେ ମିତାଚାର ଓ ସଂଯମ, ଯା ଜୀବନଚର୍ଯ୍ୟାରେ ପ୍ରଶ୍ରୟଦିଏନା ଅପବ୍ୟୟ କି ଉଚ୍ଛୃଙ୍ଖଳତା, ଏବଂ ଯା ଧନବଣ୍ଟନରେ ଗୁରୁତ୍ୱଦିଏନା ପ୍ରିଭିଲେଜ୍ କି ତଜ୍ଜନିତ ତାରତମ୍ୟକୁ । ସେଇ ବାଟରେ ହୁଏତ ସଂସ୍ଥାପିତ ହୋଇପାରେ ସମସ୍ତଙ୍କ ସକାଶେ ଅନ୍ନବସ୍ତ୍ର, ଶିକ୍ଷାସ୍ୱାସ୍ଥ୍ୟ, ଶ୍ରମ ଓ ବିଶ୍ରାମର ସୁଷମ ବ୍ୟବସ୍ଥା ସାଙ୍ଗକୁ ଜୀବନ ଓ ଜୀବିକାର ସୁରକ୍ଷା । ଭାରତ ସେ ବାଟରେ ଯାଇନାହିଁ; ଯାଇନାହିଁ ବୋଲି, ପ୍ରେସିଡେଣ୍ଟ ବୁସ୍ ମାର୍କିନ୍ ପଣ୍ୟ ଓ ପରିସେବା ବିକିବା ଲାଗି ଭାରତର ମଧ୍ୟବିତ୍ତଶ୍ରେଣୀକୁ ଗଣ୍ୟକରେ 'ଭାଷ୍ଟ୍ ମାର୍‌କେଟ୍' । ମାର୍କେଟ୍ ମାନେ ଜାଣିଛୁ ଚାହିଦା ଅନୁସାରେ ଯୋଗାଣ; ଅର୍ଥାତ୍ ଏମିତି ଏକ ପ୍ରତିଷ୍ଠାନ ଯା ସ୍ଥିରକରିଦିଏ କିଏ କେତେ କିଣିବ କି ବିକିବ; ମାତ୍ର କିଣାବିକାର ମାଧ୍ୟମ ଯେହେତୁ ଟଙ୍କା, ଯା ହାତରେ ବେଶି ଟଙ୍କା, ସେଇ କେବଳ କିଣିପାରିବ ବେଶିଜିନିଷ । କିନ୍ତୁ ଆମ ସମାଜରେ କାମ ଅନୁସାରେ ପ୍ରାପ୍ୟ ମିଳେନା; ସମାଜ ଆଗତୁରା ଠିକ୍‌କରିଦେଇଚି କିଏ କଣ ପାଇବ; ଯେପରି ଚାଷୀଠୁଁ ଅଧିକ ପାଇବ ଦୋକାନୀ, ଗାଡ଼ିଡ୍ରାଇଭର୍ ଠୁଁ ବେଶି ପାଇବ

ଉଡ଼ାଜାହାଜପାଇଲଟ୍, ଶିକ୍ଷକଠୁଁ ବେଶି ପାଇବ ଅଫିସର୍, ଚାକରାଣୀଠୁଁ ବେଶି ପାଇବ ରାନ୍ଧୁଣୀ, ଆଉ ସମସ୍ତଙ୍କଠୁଁ ଯିଏ ବେଶି ପାଇବ, ସିଏ ମ୍ୟାନେଜର୍ । ଅନ୍ୟ ଶବ୍ଦରେ, ମୁନାଫାଉତ୍ପାଦନ କାମରେ ଯାର ଯେତେ ଅବଦାନ, ତଦନୁସାରେ ହୁଏ ତାର ଉପାର୍ଜନର ପରିମାଣ ନିର୍ଦ୍ଧାରଣ, ଏବଂ ସମାଜ ରୂପକ ପିରାମିଡ୍‌ରେ ନିଜ ଆପେକ୍ଷିକ ଅବସ୍ଥାନ । ଡିମ୍ୟାଣ୍ଡ୍-ସପ୍ଲାଇ ତେଣୁ ପରିଚାଳନା କରେନା 'ମାର୍କେଟ୍'କୁ; ମାର୍କେଟ୍‌କୁ ପରିଚାଳନାକରେ ମୁନାଫା । ଆଜି ଯଦି ଦେଶସାରା କୃଷକ କି କାରିଗରଙ୍କ ସଂଖ୍ୟା ହଠାତ୍ କମିଯାଏ, ମଜୁରୀ ବଢ଼ିଯିବନାହିଁ; ଶିକ୍ଷକ ଯଦି ମାସମାସଧରି ଧର୍ମଘଟକରନ୍ତି, ବେତନ ତତ୍‌କ୍ଷଣାତ୍ ବଢ଼ିଯିବନାହିଁ । ମୁନାଫା-ଉତ୍ପାଦନ କିମ୍ବା ସ୍ତୂପୀକରଣ ପ୍ରକ୍ରିୟାକୁ ଏମାନଙ୍କ ଅବଦାନ ଯତ୍‌କିଞ୍ଚିତ୍ । ଗ୍ଲୋବାଲାଇଜେସନ୍ ମାନେ ସାରାପୃଥିବୀ ଗୋଟିଏ ମାର୍କେଟ୍; ଯୋଉଠି ଅଧିକା ଦି'ପଇସା ଲାଭ ମିଳିବ, କିଣିବା-ବିକିବା ଲୋକ ଉଡ଼ିଯିବେ ସେଠିକି ମୁହୂର୍ତ୍ତକ ଭିତରେ; ସେଠି ଯଦି ମୁନାଫା କମିଯାଏ, ଉଡ଼ିଯିବେ ଆଉକୋଉଠିକି । ଦୁନିଆସାରା ମୁନାଫା ଖୋଜିବୁଲିବା କାମଟା ହିଁ ଗ୍ଲୋବାଲାଇଜେସନ୍, ତାର କୋଉହେଲେ ସାମାଜିକ ଆଭିମୁଖ୍ୟ ନାହିଁ କି ଥାଇପାରେନା । ତଥାପି, ମୂଲ୍ୟବୋଧ-ନିରପେକ୍ଷ ଭୂପର୍ଯ୍ୟଟନକୁ କୁହାଯାଉଚି ପ୍ରୋଗ୍ରେସ୍ (=ପ୍ରଗତି), ଯା ଜୁଦୀୟ-କ୍ରିଷ୍ଟାନ୍ ଭାବପରମ୍ପରାରୁ ହିଁ ଗୃହୀତ ।

ଉନ୍ନୟନର ଏ ଭାବାଦର୍ଶ ସ୍ମରଣକରାଇଦିଏ ଇହୁଦୀଜାତିର ମରୁବିଜୟ ଅଭିଯାନ; ବ୍ୟକ୍ତିବିଶେଷ ଜୀବନରେ ନିଃସଙ୍ଗତା କି ନିର୍ବାସନର ତମିସ୍ରାକୁ ଅତିକ୍ରମ ପୂର୍ବକ ଭଗବତ୍ ସାନ୍ନିଧ୍ୟଲାଭ ହୁଏତ ଏକ ଆଧ୍ୟାତ୍ମିକ ପରିକଳ୍ପ । ପ୍ରତିଶ୍ରୁତ ସ୍ୱଭୂମିରେ ଉପଗତ ହେବାପାଇଁ ପ୍ରଜନ୍ମ ପଛକୁ ପ୍ରଜନ୍ମ ଅବ୍ୟାହତ ମରୁପର୍ଯ୍ୟଟନ । ରାଷ୍ଟ୍ରର ଇତିହାସ ନିମନ୍ତେ କିନ୍ତୁ ତା ହୋଇଯାଇଚି 'ପ୍ରଗତି'ର ମେଟାଫର୍ । ପ୍ରଗତି ତେଣୁ ଭ୍ରମଣ, ଅଧୋଗତିରୁ ଊର୍ଦ୍ଧ୍ୱଗତି । କ୍ରିଷ୍ଟାନିଟି ଏଥିରୁ ଏଇ ବିଶ୍ୱାସ ପାଇଚି ଯେ ଜୀବନ ନିରୁଦ୍ଦେଶ ନୁହେଁ ; ନିର୍ଦ୍ଦିଷ୍ଟ ଗନ୍ତବ୍ୟରେ ପହଞ୍ଚିବା ତାର ଭବିତବ୍ୟ, ଏବଂ ସେ ଗନ୍ତବ୍ୟ ସ୍ୱର୍ଗରାଜ୍ୟ; ଅନ୍ତିମବିଚାର ବେଳକୁ ଚିହ୍ନାପଡ଼ିଯିବ ଭଲ-ମନ୍ଦ; କାଚ ଚାକ, ମଣି ମଣି/ କ୍ରୟ ବିକ୍ରୟେ ଜଣାଜଣି । ମାତ୍ର କାଳଚେତନା ସବୁ ସଂସ୍କୃତିରେ ସମାନ ରକମ ନୁହେଁ; ଯେପରି, ଭାରତରେ କାଳ ରୈଖିକ ନୁହେଁ, ଚକ୍ରାକାର । ଚକ୍ରାକାର କାଳଚେତନା ଉପରେ ରୈଖିକ କାଳଚେତନାକୁ ଲଦିଦେବା ଏକପ୍ରକାର ସାଂସ୍କୃତିକ ବଳାତ୍କାର; ମାତ୍ର ଅଷ୍ଟାଦଶ ଶତକ ବେଳକୁ 'ପ୍ରଗତି' ଝାଡ଼ିପକାଇଚି ନିଜ ଦିହରୁ ଧର୍ମୀୟ ଅନୁଷଙ୍ଗ; ସମାଜର ଇଷ୍ଟ-ଅନିଷ୍ଟ ବିଚାରରେ ଈଶ୍ୱରଙ୍କ ଭୂମିକାକୁ ଯଦିଓ ଅସ୍ୱୀକାର କରାଯାଇନାହିଁ । ସେଇ ହସ୍ତକ୍ଷେପକୁ ଆଡାମ୍ ସ୍ମିଥ୍ କହିଚନ୍ତି 'ଇନ୍‌ଭିଜିବ୍ଲ୍

ହ୍ୟାଣ୍ଡ୍', ଯୋଉ ହାତ ଘଡ଼ିର କଣ୍ଟା ଭଳି ସାମାଜିକ ସମସ୍ୟାଗୁଡ଼ିକୁ ସମାଧାନ ଆଡ଼କୁ ଆଗେଇନେଇଯାଏ । ଆମେ ତେଣୁ ନିଜ ଗତି (=ପ୍ରଗତି)ର ପରିଚାଳକ ହୋଇଯାଇଚୁଁ ଆଜିକି ଦୁଇଶବର୍ଷ ଆଗରୁ, ଯେତେବେଳେ ପ୍ରଗତିର ଉତ୍ସମୁଖ ସ୍ଥିରକରାଯାଇଚି ଇଣ୍ଡଷ୍ଟ୍ରିଆଲିଜ୍ମ; ଅର୍ଥାତ୍, ଶିଳ୍ପାୟନ ଛଡ଼ା ପ୍ରଗତି ସମ୍ଭବପର ନୁହେଁ । ସେଇ ଶିଳ୍ପାୟନ ହୋଇଚି ଭିକ୍ଟୋରୀୟ ସାମ୍ରାଜ୍ୟବାଦର ଚାଳିକାଶକ୍ତି । ସନ୍ଦେହ ନାହିଁ, ସେଥିରେ ନିହିତଥିଲା ନିଶ୍ଚିତତା । ନିଶ୍ଚିତତା, ଯା ଖାଲି ଅର୍ଥନୀତିରୁ ଆସିନାହିଁ, ପଛରେ ରହିଚି ନୈତିକ ଓ ସାମାଜିକ ଦୂରଦୃଷ୍ଟି । ଅର୍ଥନୀତିକ ନିଶ୍ଚିତତା ମାନେ ଛେଦହୀନ ବୈଷୟିକ ଉନ୍ନତି । ଦୈବାତ୍ ମାର୍କ୍ସ, ଆଉ କ୍ୟାପିଟାଲିଜ୍ମକୁ ଯିଏ ବିରୋଧକରନ୍ତି, ବିବାକ ଆତ୍ମସାତ୍ କରିଚନ୍ତି ଭିକ୍ଟୋରୀୟ ଏଇ ଭାବଜଗତକୁ, କାହିଁକିନା, ଇତିହାସ ଥିଲା ସେମାନଙ୍କ ସପକ୍ଷରେ; ପ୍ରଗତିକୁ ସନ୍ଦେହକରିବା ମନେହୋଇଚି ପ୍ରତ୍ୟକ୍ଷଦୃଷ୍ଟ ଜିନିଷକୁ ଅବିଶ୍ୱାସକରିବା ଭଳି ମୂଢ଼ତା । ସମାଜତନ୍ତ୍ର ତେଣୁ ଇଣ୍ଡଷ୍ଟ୍ରିଆଲିଜ୍ମର ବିରୋଧ ମାତ୍ର; ବିକଳ୍ପ ନୁହେଁ । ବିଂଶଶତକ କିନ୍ତୁ ପ୍ରଗତିର ଏଇ ପ୍ରତ୍ୟୟକୁ ଶୋଚନୀୟଭାବେ କରିଚି ପ୍ରତିଘାତ; ପ୍ରଗତିର ନୈତିକ ଓ ସାମାଜିକ ବୈଧତାକୁ ଧ୍ୱଂସକରିଦେଇଚି ପଛକୁ ପଛ ଦୁଇଦୁଇଟା ବିଶ୍ୱଯୁଦ୍ଧ ଓ ତଦ୍‌ପରବର୍ତ୍ତୀ ଶୀତଳ ଯୁଦ୍ଧ । ଇଉରୋପର ହୃଦ୍‌କେନ୍ଦ୍ରରେ ଫୁଟିଉଠିଛି ଫ୍ୟାସିବାଦ ସାଙ୍ଗକୁ ହିଟ୍‌ଲର୍ । ଇଣ୍ଡଷ୍ଟ୍ରିଆଲ୍ ପଦ୍ଧତିରେ ଇହୁଦୀନିଧନ ଧାରଣକରିଚି ଯୋଉ ଆକାରପ୍ରକାର, ଇଉରୋପବାସୀ ଭାବିଚନ୍ତି ସେଭଳି ବର୍ବରତା କେବଳ ସେଇ ନିକୃଷ୍ଟ ଜାତିମାନଙ୍କ ପକ୍ଷରେ ସମ୍ଭବପର ଯାହାଙ୍କ ରାଜ୍ୟପାଟ ସେମାନେ ଦଖଲକରିଚନ୍ତି ବାହୁବଳରେ । ସେମାନେ ମଧ୍ୟ ନିର୍ବିଚାରରେ ମଣିଷମାରିଚନ୍ତି ଅଷ୍ଟ୍ରେଲିଆ କି ଉତ୍ତର-ଆମେରିକାରେ ହିଟ୍‌ଲର୍‌ଙ୍କ ବହୁପୂର୍ବରୁ; ମାତ୍ର ସେ ଭୂଖଣ୍ଡ ଯେହେତୁ ଅନ୍ତର୍ଭୁକ୍ତ ହୋଇଯାଇଚି ନିଜ ସାମ୍ରାଜ୍ୟର, ଦୁଷ୍ଚିନ୍ତାର କାରଣ ହୋଇନାହିଁ ନିର୍ଲିପ୍ତ ନରସଂହାର । ସେଭଳି ନରସଂହାର ପରିଣତହେଲା ଯେତେବେଳେ ସାମ୍ରାଜ୍ୟବାଦର ଗୃହୀତ ଭାବାଦର୍ଶ, ଅନ୍ତତଃ ଆତ୍ମତୃପ୍ତ ଇଉରୋପର ସଭ୍ୟତା ପକ୍ଷରେ, ଲଜ୍ଜା ଲୁଚାଇବାକୁ ଜାଗା ପାଇନାହାଁନ୍ତି । ଭୂତପୂର୍ବ ସୋଭିଏଟ୍ ଇଉନିୟନ୍ ମଧ୍ୟ ବ୍ୟତିକ୍ରମ ନୁହେଁ । ସେଠି ମଧ୍ୟ ଗଢ଼ିଉଠିଚି ଗୁଲାଗ୍, ଭିନ୍ନ ମତାବଲମ୍ବୀଙ୍କୁ ଦିଆଯାଇଚି ସଶ୍ରମ କାରାଦଣ୍ଡ; ନିର୍ବାସନରୁ ମୃତ୍ୟୁଦଣ୍ଡ କିଛିହେଲେ ବିବେଚିତହୋଇନାହିଁ 'ପ୍ରଗତି'ର ପ୍ରତୀପ । ଉନ୍ନୟନର ପରିସୀମା ମନେହୋଇଚି କ୍ୟାପିଟାଲିଜ୍ମ ଠାରୁ ଅଲଗାନୁହେଁ; ଅର୍ଥାତ୍ ଅପ୍ରମିତ ସଂପଦସୃଷ୍ଟି । ପ୍ରଗତିର ପୁଲକ ତଥାପି ନିସ୍ତେଜ ହୋଇଯାଇନାହିଁ, କିନ୍ତୁ ନୈତିକ କି ସାମାଜିକ ପରିବର୍ତ୍ତନ କେହିହେଲେ ଆଉ ପ୍ରତ୍ୟାଶାକରିପାରିନାହିଁ । ପାଶ୍ଚାତ୍ୟ ଗୋଲାର୍ଦ୍ଧରେ ପ୍ରଯୁକ୍ତି ଯେହେତୁ

ପ୍ରାଚୁର୍ଯ୍ୟ ସୃଷ୍ଟିକରିଚି ପର୍ଯ୍ୟାପ୍ତ, ସେଇ ହୋଇଚି ପ୍ରଗତିର ପରିମାପ, କାହିଁକିନା, ମଣିଷର ପରମାୟୁ ବଢ଼ିଚି, ଚିକିତ୍ସାପଦ୍ଧତିରେ ଘଟିଛି ଆମୂଳ ପରିବର୍ତ୍ତନ, ଇଚ୍ଛାନୁସାରେ ଖର୍ଚ୍ଚକରିବା ଭଳି ଆୟ ମଧ୍ୟ ଆସିଚି ହାତକୁ । ପ୍ରଗତି ଉପରେ ଆସ୍ଥା ତୁଟିନାହିଁ; ଇଦାନୀଂ ବରଂ ସେ ମୋହ ଭାଙ୍ଗିବାକୁ ଆରମ୍ଭକରିଚି । ଯାହାର ମୋହଭଙ୍ଗ ହେଲା, କ୍ୟାପିଟାଲିସ୍ଟ ହେଲା, ସିଏ କୁଆଡ଼େ ପ୍ରେତାସକ୍ତିରେ ଆକ୍ରାନ୍ତ; ଫେରିଯିବାକୁ ଚାହେଁ ଅତୀତକୁ । ସଂପଦ ଉତ୍ପାଦନର ପ୍ରାଣକେନ୍ଦ୍ରରେ କିନ୍ତୁ ସମାଜର ଭୋଗବାଦୀ ସ୍ୱରୂପଟା ସମର୍ଥନପାଉନାହିଁ, ଭୋଗବାଦ ଡାକିଆଣୁଚି ଈର୍ଷା, ଦ୍ୱେଷ, ଅପରାଧ । ପ୍ରତିବେଶୀ, ସହକର୍ମୀ, ଆତ୍ମୀୟ-ପରିଜନ ଏତେକାଳ ଯୋଉଠି ଏକାଠି ବସବାସ କରିଚନ୍ତି ନିର୍ଭୟରେ, ହଠାତ୍ ସେଠି ଦେଖାଦେଇଚନ୍ତି ଗଳାକଟା, ଚୋରଖଣ୍ଡ, ପିଲାଧର୍ଷଣକାରୀ, ନିଶାଖୋର, ନିଃସଙ୍ଗ ହତାଶ ଯୁବକଯୁବତୀ । ଉନ୍ନତ ଜୀବନମାନର ସହଚର ତେଣୁ ମନୁଷ୍ୟତ୍ୱର ଅଧଃପାତ, ଏକଥା ଯିଏ କହେ, ସିଏ କିନ୍ତୁ ସାମ୍ୟବାଦର କୃଚ୍ଛ୍ରସାଧନକୁ ମଧ୍ୟ ଘୃଣାକରେ । ହେଲେସୁଦ୍ଧା, ପ୍ରଗତି ମୂଳରେ ସକ୍ରିୟ ଯୋଉ ତୀର୍ଥଯାତ୍ରାର ପ୍ରତୀକ, ତାକୁ ବିସ୍ମୃତହେବା ମାତ୍ରକେ ଉନ୍ନୟନ ଦିଶୁଚି ଦକ୍ଷତା ବା ଏଫିସିଏନ୍ସି ଭଳି ଯାନ୍ତ୍ରିକ ଧାରଣାର ପଶ୍ଚାଦ୍ଧାବନ ! ଏ ଧାରଣାକୁ ମିଶନାରୀଙ୍କ ଭଳି ବୋହିଆଣୁଚନ୍ତି ଯିଏ ପାଶ୍ଚାତ୍ୟ ଗୋଲାର୍ଦ୍ଧ ବାହାରକୁ, ସେଇ ଜି-୨୦, ବିଶ୍ୱବ୍ୟାଙ୍କ୍ କି ଆଇଏମ୍ଏଫ୍ ବେମାଲୁମ୍ ପାସରିଯାଇଚନ୍ତି, ବଡ଼ଲୋକହେବା ପ୍ରକଳ୍ପ କେମିତି ପ୍ରାଚୀନ ଐତିହ୍ୟବାହୀ ସଂସ୍କୃତି ସହିତ ତିଆରିକରିବ ସାମଞ୍ଜସ୍ୟ । ସାମ୍ୟବାଦର ସଙ୍କଟ, ଅର୍ଥାତ୍ ସୋଭିଏଟ୍ ସଂଘର ଆକସ୍ମିକ ପତନ, ସମସ୍ତଙ୍କ ଅଲକ୍ଷ୍ୟରେ ଯୋଉ କଥାଟାକୁ ଘୋଡ଼ାଇପକାଇଚି, ସାମ୍ୟବାଦର ଅସାଫଲ୍ୟ ନୁହେଁ, ଇଣ୍ଡଷ୍ଟ୍ରିଆଲ୍ ଆଦିକଳ୍ପର ଅସାଫଲ୍ୟ । ଭୋଗ୍ୟପଣ୍ୟର କ୍ରମାଗତ ବିତରଣ ସମାଜତନ୍ତ୍ର କରିପାରେନା ଅନନ୍ତକାଳ; ତାର ଏକମାତ୍ର ଅଭିପ୍ରାୟ ବୈଷମ୍ୟହୀନ ସମାଜସଂଗଠନ । ସମାଜତାନ୍ତ୍ରିକ ପ୍ରତିଦ୍ୱନ୍ଦ୍ୱୀର ପତନ ସଂଗେସଂଗେ ପଶ୍ଚିମ ଦେଖିଚି, ଅଜ୍ଞାନ-ଅନ୍ଧକାରାଚ୍ଛନ୍ନ ଭୂଖଣ୍ଡକୁ ସଂପଦସମ୍ଭୂତ ବିଜ୍ଞତାର ରପ୍ତାନି ବାଧାପାଇବା ସମ୍ଭାବନା ନାହିଁ; ମାତ୍ର ଯୋଉଦେଶର ଶିଷ୍ଟମଣ୍ଡଳୀ ଆଗ୍ରହରେ ଆଲିଙ୍ଗନକଲେ 'ପ୍ରଗତି'ର ଏଇ ଭାବାଦର୍ଶକୁ, କ୍ଷଣକସକାଶେ ଭାବିଲେନାହିଁ ନିଜ ଦେଶର ଜନଜୀବନ ଉପରେ କି ପ୍ରକାର ହୋଇପାରେ ତାର ପ୍ରତିକ୍ରିୟା । ବ୍ୟସନ, ଅପଚୟ, ଧନପ୍ରଦର୍ଶନ କି ସଂପଦଜାତ ଔଦ୍ଧତ୍ୟ ଯୋଉ ଐତିହ୍ୟରେ ବିବେଚିତହୁଏ ଅହିତ, ଉତ୍ସାହପାଏ ମିତାଚାର, ପରିହାର ଓ ବିନୟ, ଇନ୍ଦ୍ରିୟସୁଖର ଆତିଶଯ୍ୟ ସେଠି ଗୃହୀତହେବା କଥାନୁହେଁ; ମାତ୍ର କ୍ଷମତାର କର୍ଣ୍ଣଧାରଙ୍କୁ ଦିଶିଲା, ପ୍ରାଚୁର୍ଯ୍ୟର ଏ ନବଧର୍ମ ଭୋଟ୍‌ଦାତାଙ୍କ ପାଇଁ ହୋଇପାରିବ ନଦେଖିଲା ଓଉ ଛ'ଫଡ଼ା ! ବିଶ୍ୱାୟନ ରୂପକ

ଆଦିକଳ୍ପର ବିକଳ୍ପ କିନ୍ତୁ ରହିଥିଲା ଓ ରହିଚି ପ୍ରାଚ୍ୟ ସଂସ୍କୃତିରେ, ଏବଂ ରହିଚି ବୋଲି, ମଧ୍ୟପ୍ରାଚ୍ୟ ଆଜି କମ୍ପମାନ ସଂତ୍ରାସର ଉଲ୍ଲାସରେ । ଧନୀହେବାକୁ ଚାହାନ୍ତିନାହିଁ; ଚାହାଁନ୍ତି ସାଂସାରିକ ସ୍ୱାଚ୍ଛନ୍ଦ୍ୟ ଆଉ ଜୀବିକାର ସୁରକ୍ଷା; ମାତ୍ର ଗ୍ଲୋବାଲାଇଜେସନ୍‌ର ପରିଦୃଷ୍ଟ ଅଙ୍ଗପ୍ରତ୍ୟଙ୍ଗ, ଉଦାରୀକରଣ (ପାଶ୍ଚାତ୍ୟ ପୁଞ୍ଜିର ନିର୍ବାଧ ଗମନାଗମନ), ପ୍ରାଇଭେଟାଇଜେସନ୍ (ସରକାରୀ ସଂପଦର ବେସରକାରୀକରଣ), ଷ୍ଟ୍ରକ୍‌ଚରାଲ୍ ଆଡ୍‌ଜଷ୍ଟ୍‌ମେଣ୍ଟ (ପାଶ୍ଚାତ୍ୟ ଶିଳ୍ପସଂସ୍କାର ସଂଗଠନନୀତିର ଆଖିବୁଜା ପ୍ରୟୋଗ) ରାଷ୍ଟ୍ରର ଭୂମିକାକୁ ଖାଲି ହ୍ରାସକରିନାହିଁ, ଗରିବକୁ କରିଛି ଅଧିକ ଗରିବ, କର୍ମକ୍ଷମଙ୍କୁ କର୍ମହୀନ, ବିତ୍ତବାନଙ୍କୁ ବିଳାସୀ, କ୍ଷମତାବାନ୍‌ଙ୍କୁ ଦୁର୍ଦ୍ଧର୍ଷ, କ୍ଷମତାହୀନଙ୍କୁ ଅକିଞ୍ଚନ । ଟଙ୍କାପଇସା ଓ ରପ୍ତାନିବାଣିଜ୍ୟକୁ ମାତ୍ରାତିରିକ୍ତ ଗୁରୁତ୍ୱଦେବା ଫଳରେ ନିତ୍ୟପ୍ରୟୋଜନ ଜିନିଷ ସୃଷ୍ଟିକରିପାରୁନାହିଁ ବିଶ୍ୱାୟନ; ଏକାଜିନିଷକୁ ଦୁନିଆସାରା ବିକିବାପାଇଁ ତେଣୁ 'ମାର୍କେଟ୍'ର ଅବତାରଣା । ଏକାଜିନିଷକୁ ଏକାଧିକ ବିକ୍ରେତାଙ୍କୁ ଗଛାଇବାକୁ ଦରକାର ପ୍ରତିଯୋଗିତା । ଜୋର୍‌ପଡୁଛି ତେଣୁ ରପ୍ତାନି ଉପରେ । କିନ୍ତୁ ଉତ୍ପନ୍ନପଣ୍ୟ ଯଦି ରହିଯାଏ ଏକାରକମ ମାର୍କେଟ୍ ବି ତାକୁ କିଛିଦିନ ଉତାରୁ ଚାହିଁବନାହିଁ । ଅଥଚ, ଧନତନ୍ତ୍ର ପ୍ରତିଶ୍ରୁତି ଦେଇଥିଲା ଖାଲି ନୂଆ ନୂଆ ଭୋଗ୍ୟପଣ୍ୟ ସୃଷ୍ଟିକରିବନାହିଁ, ସେଗୁଡ଼ିକୁ ଶସ୍ତାଦରରେ କରିବ ସହଜଲଭ୍ୟ । ଶ୍ରାନ୍ତ ଓ ଅବସନ୍ନ ପୁଞ୍ଜି ସେ ସାମର୍ଥ୍ୟ ହରାଇବସିଚି । ଏକ୍ଷଣି ତେଣୁ ଗ୍ରାହକର କ୍ରୟଶକ୍ତି ବଢ଼ାଇବା ଦରକାର, ତେବେଯାଇ ଚାହିଦା ବଢ଼ିବ । ନିଜ ଅଞ୍ଚଳରେ କ୍ରୟକ୍ଷମତା ବଢୁନାହିଁ, ଭାରତ ଭଳି 'ଉନ୍ନୟନଶୀଳ' ଦେଶକୁ ତେଣୁ ରପ୍ତାନି ବଢୁଛି; ମାତ୍ର ନିର୍ବିତ୍ତର କ୍ରୟଶକ୍ତି ତାର ବିକ୍ରିୟଯୋଗ୍ୟ ଶକ୍ତି (=ପରିଶ୍ରମ) ପରି ସୀମିତ । ଉତ୍ପନ୍ନପଣ୍ୟକୁ ନିତ୍ୟପ୍ରୟୋଜନର ଉପଯୋଗୀକରିବା ପରିବର୍ତ୍ତେ ଚେଷ୍ଟାଚାଲିଚି ଧନୀ ଓ ଗରିବ ମଧ୍ୟସ୍ଥ ବ୍ୟବଧାନକୁ ଆହୁରି ପ୍ରଶସ୍ତକରିବାକୁ; ତେବେଯାଇ, ପଇସାବାଲା ଲୋକର କ୍ରୟକ୍ଷମତା ଏତେବେଶି ବଢ଼ିଯିବ ଯେ ଏକାଜିନିଷକୁ ବାରମ୍ବାର କିଣିପାରିବ, କିମ୍ବା ଅତିରିକ୍ତ ପରିମାଣରେ । ଏଇ କେତେଟାବର୍ଷ ଭିତରେ ଭାରତର ମଧ୍ୟବିତ୍ତ ଯେ ଦୁର୍ଦ୍ଧର୍ଷ ହୋଇଉଠିଚି, ତାର ଚାକ୍ଷୁଷ ପ୍ରମାଣ ଲୁଗାପଟା ଖିଆପିଆ ଗାଡ଼ିଘୋଡ଼ାର ରମରମା; ବଜାରକୁ ଯୋଉ ଜିନିଷ ଆସୁଚି, ଲକ୍ଷ୍ୟକଲେ ବୁଝାଯିବ ନିର୍ଦ୍ଦିଷ୍ଟ ଏକ ଟାର୍‌ଗେଟ୍ ଗ୍ରୁପ୍ ସକାଶେ ଉଦ୍ଦିଷ୍ଟ । ସେଗୁଡ଼ିକର ଯୋଗ୍ୟହେବାକୁ ମଧ୍ୟବିତ୍ତ ଏକ୍ଷଣି ଉଠିପଡ଼ି ଲାଗିଚି । ସମାଜର ସବାଉପରେ ଅଛନ୍ତି ଯିଏ, ତାଙ୍କ ସାଙ୍ଗରେ ସମକକ୍ଷହେବା ତାର ଏକମାତ୍ର ଅଭିପ୍ରାୟ । ଏ ବିଚାରରେ, କ୍ୟାପିଟାଲିସ୍ମ 'ଚରମ' କୋଉ ଉନ୍ନତି; କି ଟାର୍‌ଗେଟ୍ ଗ୍ରୁପ୍ ବାହାରେ ବ୍ୟାପକତର ଲୋକସମାଜରେ ପହଞ୍ଚିବାକୁ ବ୍ୟଗ୍ରନୁହେଁ ।

ବରଂ କ୍ରୟକ୍ଷମତାର ପୁନର୍ବଣ୍ଟନ ତାର ଅଭିପ୍ରେତ । ପୁନର୍ବଣ୍ଟନ ମାନେ ଧନୀ ଓ ନିର୍ଦ୍ଧନ ମଧ୍ୟସ୍ଥ ପାର୍ଥକ୍ୟର କ୍ରମସଂପ୍ରସରଣ । ଅଥଚ ଏ ପ୍ରପଞ୍ଚ ଏପରି ଏକ କଣ୍ଟ୍ରାଡିକ୍ସନ୍ ଯେ ବିଶ୍ୱାୟନର ବିରୋଧ / ପ୍ରତିରୋଧ ମଧ୍ୟ 'ଗ୍ଲୋବାଲ୍' ହେବାକୁ ବାଧ୍ୟ, କାହିଁକିନା, କଣ୍ଟ୍ରାଡିକ୍ସନ୍‌ଟା ଦ୍ୱିମୁଖ: ମାର୍କେଟ୍ ବନାମ ଗଣତନ୍ତ୍ର; ପୁଣି ମାର୍କେଟ୍ ବନାମ ସମାଜତନ୍ତ୍ର ।

ଏଇ କଣ୍ଟ୍ରାଡିକ୍ସନ୍‌ଗୁଡ଼ାକୁ ବିଗଳିତକରିବା ଉଦ୍ଦେଶ୍ୟରେ ସଂଗଠିତହୋଇଥିଲା ଜାତିସଂଘ; ଡିଭେଲପ୍‌ମେଣ୍ଟ୍ ମନେହୋଇଥିଲା ସର୍ବବ୍ୟାଧିର ମହୌଷଧି; ଏବଂ ସତକୁସତ ପଚାଶ ଓ ଷାଠିଏ ଦଶକରେ ସାହାଯ୍ୟ ଆକାରରେ ପ୍ରଚୁର ଟଙ୍କାପଇସା ବହିଆସିଚି ତୃତୀୟବିଶ୍ୱକୁ । କିନ୍ତୁ ଅନତିବିଳମ୍ବେ ତଥାକଥିତ ପ୍ରଥମବିଶ୍ୱର ରାଷ୍ଟ୍ରଶକ୍ତି ଜାତିସଂଘକୁ ହାତମୁଠାରେ ରଖି ଡିଭେଲପ୍‌ମେଣ୍ଟ୍ ପଛରେ ଧାଉଁଥିବା ଦେଶଗୁଡ଼ାକ ବିପକ୍ଷରେ ବ୍ୟବହାରକରିଚନ୍ତି ଜାତିସଂଘକୁ । ଅବଶ୍ୟ ମାପିଚୁପି, ସନ୍ତର୍ପଣରେ । ଏ ବାଟରେ ନବେଦଶକ ବେଳକୁ ଜାତିସଂଘ ପରିଣତହୋଇଚି କ୍ୟାପିଟାଲିଜ୍ମର ମୁଖପାତ୍ର, ଏକ୍ଷଣି ଯେମିତି ଓର୍‌ଲ୍ଡ୍ ବ୍ୟାଙ୍କ୍, ଡବ୍‌ଲିଉଟିଓ ଆଉ ଆଇଏମ୍‌ଏଫ୍ । ଇତୋମଧ୍ୟେ ହାର୍ଭାଡ଼ ପ୍ରଫେସର୍ ସାମୁଏଲ୍ ହଣ୍ଟିଙ୍ଗ୍‌ଟନ୍ ନବେଦଶକ ଆଦ୍ୟଭାଗରେ ଏଇ ପ୍ରବଣତାକୁ ତୁଳାଭିଣାକରିଚନ୍ତି *କ୍ଲାଶ୍ ଅବ୍ ସିଭିଲାଇଜେସନ୍‌ସ୍* ଗ୍ରନ୍ଥରେ: Global political and security issues are effectively settled by a directorate of the United States, Britan and France, world econmic issues by a directorate of the United States, Germany and Japan, all of which maintain extraordinarily close relations with each other to the exclusion of lesser and largely non-western countries. Decisions made at the UN security council or in the International Monetary Fund that reflect the interests of the West are presented to the world as reflecting the desires of the world community । ଏଇ ଶୌର୍ଯ୍ୟପ୍ରଦର୍ଶନ ଜବାବରେ ପ୍ରାଚ୍ୟରାଷ୍ଟ୍ର ନିଜ ସାଂସ୍କୃତିକ ଐକ୍ୟ ରୂପକ ଭିତ୍ତି ଉପରେ ଅଧିଷ୍ଠିତକରିଚନ୍ତି ଅର୍ଥନୀତିକ ମୈତ୍ରୀ । ବିଶ୍ୱରାଜନୀତିର ପ୍ରତ୍ୟାଶିତ ପରିସରରୁ ଯେହେତୁ ବଞ୍ଚିତ, ଆତ୍ମମର୍ଯ୍ୟାଦାର ଏକମାତ୍ର ଯୋଗସୂତ୍ର ହୋଇଚି ସାଂସ୍କୃତିକ ବର୍ଗମୂଳ । ଚୀନ୍‌ର ଉଦାହରଣ ଦେଇଚନ୍ତି ହଣ୍ଟିଙ୍ଗ୍‌ଟନ୍, କାହିଁକିନା, ଇରାନ୍ ଓ ଉତ୍ତର-କୋରିଆକୁ ଚୀନ୍ ଦେଇଚି ପରମାଣୁଅସ୍ତ୍ର ତିଆରି ପ୍ରଯୁକ୍ତି । ହଣ୍ଟିଙ୍ଗ୍‌ଟନ୍‌ଙ୍କ ବିବେଚନାରେ, କନ୍‌ଫୁସିଆନ୍ ଓ ଇସ୍‌ଲାମିକ୍ ସଭ୍ୟତା ମଧ୍ୟସ୍ଥ ମୈତ୍ରୀର ନିଦର୍ଶନ, Non-Western civilizations will continue to attempt to acquire the wealth, technology, skills, machines and weapons that are part of being modern. They will

also attempt to reconcile this modernity with their traditional culture and values. Their economic and military strength relative to the West will increase. Hence the West will increasingly have to accomodate these non-western modern civilisations whose power approaches that of the West but whose values and interests differ significantly from those of the West । ଏ ପରାମର୍ଶ ମୂନଃପୂତ ହୋଇନାହିଁ ପାଶ୍ଚାତ୍ୟ ଶକ୍ତିର; କହିଚି, ପ୍ରତୀଚ୍ୟର ମୂଲ୍ୟବୋଧ ବାସ୍ତବିକ ନିଖିଳ (=ଇଉନିଭର୍ସାଲ୍), ଏବଂ ସେଥିପାଇଁ, ପାଶ୍ଚାତ୍ୟ ଶକ୍ତିଗୁଡ଼ିକର ଦାୟିତ୍ୱ ରହିଚି ସାରା ପୃଥିବୀ ପ୍ରତି । ସେଇ ଦାୟିତ୍ୱ ଯଥାଯଥ ପାଳନକରିବାକୁ ହେଲେ ଅର୍ଥନୀତିକ ଓ ରାଜନୀତିକ କ୍ଷମତା ନ୍ୟାୟୋଚିତ ଆବଶ୍ୟକ । ତେବେଯାଇ ଅବଶିଷ୍ଟ ପୃଥିବୀ ବାଧ୍ୟହେବ ସର୍ବଜନୀନ ମୂଲ୍ୟବୋଧମାନଙ୍କୁ ଗ୍ରହଣକରିବାକୁ । ଜାତିସଂଘର ମାନବବିକାଶ ରିପୋର୍ଟ (୨୦୦୪) ତେଣୁ ଲେଖିଚି; The deciding issue, ultimately, has to be one of democracy । ପ୍ରଚଳିତ ଅର୍ଥରେ କମିଉନିଷ୍ଟ ଚୀନ୍ ଅବଶ୍ୟ ଗଣତନ୍ତ୍ର ନୁହେଁ, ଯେପରି ଅନେକ ଇସ୍‌ଲାମିକ୍ ରାଷ୍ଟ୍ର ସ୍ପଷ୍ଟତଃ ରାଜତନ୍ତ୍ର, ସ୍ଥଳବିଶେଷରେ ଦେବତନ୍ତ୍ର । ଫରାସୀ ବିପ୍ଳବ ଦେଇଚି ଯୋଉ ନିଖିଳ ମୂଲ୍ୟବୋଧ, ଇକୋଆଲିଟି ଓ ଫ୍ରାଟରନିଟି, ଉହ୍ୟରହିଲା କାହିଁକି ତେବେ ଜାତିସଂଘ ତାଲିକାରୁ ? ହଣ୍ଟିଙ୍ଗ୍‌ଟନ୍ କହିଲେ, 'ଆ୍ୟାକୋମୋଡେଟ୍' କର; ବିରୁଦ୍ଧଶିବିର କହିଲା, ବଳ ପ୍ରୟୋଗକର; ଜାତିସଂଘ ମଧ୍ୟ ଗଣତନ୍ତ୍ର ସ୍ୱାର୍ଥରେ ବଳପ୍ରୟୋଗ ପ୍ରତି ନିର୍ବିକାର । ନିଃସଙ୍କୋଚ ନିର୍ଲଜ ସାମ୍ରାଜ୍ୟବାଦ ଛଡ଼ା ଆଉ କଣ କୁହାଯିବ ? ଅସଲ ପ୍ରଶ୍ନ ତେଣୁ ଗଣତନ୍ତ୍ର କିମ୍ବା ବ୍ୟକ୍ତିସ୍ୱାତନ୍ତ୍ର୍ୟ ପ୍ରକୃତରେ କଣ ସର୍ବଜନୀନ ମୂଲ୍ୟମାନ ? ପାଶ୍ଚାତ୍ୟ ସଭ୍ୟତାର ପ୍ରତିନିଧିତ୍ୱକରୁଚି ଏକ୍ଷଣି ଆମେରିକା; ଦାହ୍ୟଶକ୍ତି ବା ଏନର୍ଜିର ମୁଣ୍ଡପିଛା ଖର୍ଚ୍ଚ ସେଠି ପୃଥିବୀରେ ସର୍ବାଧିକ, ପର୍ଯ୍ୟାପ୍ତ ପରିମାଣ ଏନର୍ଜୀ କିନ୍ତୁ ଦେଶ ଭିତରୁ ମିଳୁନାହିଁ; ଦୁନିଆସାରା ଯୋଉଠି ଏନର୍ଜୀ ଅଛି, ସବୁଠି ତେଣୁ ହାତପକାଇବ; କିନ୍ତୁ ଦେଶଟା ଯଦି ରାଜତନ୍ତ୍ର (ସୌଦିଆରବ, କୁଏତ୍, ଜୋର୍ଡ଼ାନ୍, ମରୋକୋ, ବାହାରିନ୍, ବ୍ରୁନେଇ) କି ଦେବତନ୍ତ୍ର (ଇରାନ୍), ଗଣତନ୍ତ୍ର ନଥିଲେ ବି ଭ୍ରୂକ୍ଷେପ କରିବନାହିଁ ଯଦି ଅବଶ୍ୟ ପେଟ୍ରୋଲ୍ ଯୋଗାଇଦେବାକୁ ରାଜିଥାଏ । ଇରାକ୍‌ରୁ ତେଲପାଇବାକୁ ନିର୍ବାଚିତ ସରକାରଙ୍କୁ କିନ୍ତୁ ଆକ୍ରମଣକରି ହଟାଇଦେବ; ନିଜ ଦେଶବାସୀଙ୍କୁ କହିବନାହିଁ ଜୀବନଶୈଳି ବଦଳାଇବାକୁ । କହିଲେ, ଭୋଟ୍ ମିଳିବନାହିଁ । କିନ୍ତୁ ଇରାନ୍‌କୁ ଯୁଦ୍ଧଜାହାଜ ପଠାଇବା ସକାଶେ ମିଥ୍ୟା ପ୍ରଚାରକରିବ ଯେ ଇରାକ୍ ଜମାକରିଚି ଜଗତ୍‌ଟାକୁ ଧ୍ୱଂସକରିଦେବା ଭଳି ମାରଣାସ୍ତ୍ର; ବିଶ୍ୱ ନିରାପତ୍ତା ଯେହେତୁ

ବିପନ୍ନ, ସାମରିକ ହସ୍ତକ୍ଷେପ ଆମେରିକାର ନୈତିକ ଦାୟିତ୍ୱ ! ଏଇ ତାହେଲେ ଗଣତନ୍ତ୍ରକୁ ବିଶ୍ୱଜନୀନ ମୂଲ୍ୟମାନ କରିପକାଇବା ଦୃଷ୍ଟାନ୍ତ ! ତା ପଛକୁ ବ୍ୟକ୍ତିସ୍ୱାଧୀନତା (ଲିବର୍ଟି/ଫ୍ରିଡମ୍) । ବିମୂର୍ତ୍ତ ପ୍ରତୀତି; ମାତ୍ର ପ୍ରୟୋଗପଦ୍ଧତିରୁ ଦିଶୁଚି, ମାଦକାସକ୍ତି ଏଇ ସ୍ୱାଧୀନତାର ଅନ୍ତର୍ଗତ । ଅନ୍ତରରେ ନୀତିବୋଧ ସୃଷ୍ଟି ନହେଲେ, ବ୍ୟକ୍ତିସ୍ୱାତନ୍ତ୍ର୍ୟ ତ ସ୍ଲୋଗାନ୍ ମାତ୍ର ! ଇଉନିଭର୍ସାଲ୍ ହେବ କେମିତି ? ବ୍ୟକ୍ତିସ୍ୱାତନ୍ତ୍ର୍ୟକୁ ଫ୍ରିଡମ୍‌ର ମର୍ଯ୍ୟାଦା ଦେବାକୁ ହେଲେ ସବାଆଗେ ଦରକାର ନୀତିବୋଧ ଉପରେ ପ୍ରତିଷ୍ଠିତ ସମାଜ । ସେ ସମାଜ ପାଶ୍ଚାତ୍ୟ ସଭ୍ୟତାରେ ବିରଳ, ବ୍ୟତିକ୍ରମ ଯଦିଓ ସ୍କ୍ୟାଣ୍ଡିନେଭିଆ । କିନ୍ତୁ ମାନବବିକାଶର ପୂର୍ବସର୍ତ୍ତ ବୋଲି ଗଣତନ୍ତ୍ରକୁ ଘୋଷଣା କଲାବେଳେ, ୨୦୦୪ ବେଳକୁ ଅନ୍ତତଃ, ଜାତିସଂଘ ଭାବିଚି ଗଣତନ୍ତ୍ର ହୋଇପାରେ ସମାଜତନ୍ତ୍ରର ବିକଳ୍ପ, ଏବଂ ସେଇ ସୂତ୍ରରେ, କ୍ୟାପିଟାଲିଜ୍ମରୁ ଉଦ୍‌ଭୂତ ସମସ୍ୟାଗୁଡ଼ାକର ମିମାଂସା । ମାତ୍ର ଧନତନ୍ତ୍ରର ପ୍ରାଣକେନ୍ଦ୍ରରେ ଦିଶୁଚି ଗଣତନ୍ତ୍ର ଏକେବାରେ ଅନ୍ତଃସାରଶୂନ୍ୟ; ଆମେରିକାର ସୈନ୍ୟସାମନ୍ତ ଇରାକ୍, ଆଫ୍‌ଗାନିସ୍ତାନ, ଏପରିକି ପାକିସ୍ତାନର ପଶ୍ଚିମରେ ମଣିଷମାରୁଚନ୍ତି କାହାଣ କାହାଣ; ଭୋଟ୍‌ଦାତାଙ୍କ ବିବେକ ବିଚଳିତହେଉନାହିଁ ବିନ୍ଦୁମାତ୍ର । ଗଣମାଧ୍ୟମ ସେଠି ନିଲାମରେ ବିକୁଚି ନିଜ ସ୍ୱାଧୀନତା । ଜଣେ ନିଗ୍ରୋକୁ ପ୍ରେସିଡେଣ୍ଟ୍ କରିଦେଲେ କିଛିହେଲେ ବଦଳିଯାଏନା, କାହିଁକିନା, ଧନତନ୍ତ୍ର ଦୃଷ୍ଟିରେ କୃଷ୍ଣକାୟ ପ୍ରେସିଡେଣ୍ଟ୍ ମାନେ ଆଫ୍ରିକାରୁ କଞ୍ଚାମାଲ୍ ଲୁଟିବା ନିର୍ବିରୋଧ । ପ୍ରକାଶ୍ୟ ବିରୋଧକୁ ଧନତନ୍ତ୍ର ଏପରି ନିର୍ବୀର୍ଯ୍ୟକରିଦେଇଚି ଯେ ଗଣତନ୍ତ୍ର ଏକ୍ଷଣି ପକ୍ଷଗ୍ରହଣ କରେନା; ଖାଲି ପଶ୍ଚିମରେ ନୁହେଁ, ପୃଥିବୀରେ ସର୍ବତ୍ର ଗଣତନ୍ତ୍ର ଏକ୍ଷଣି ନିଉଟ୍ରାଲ୍ ବା କ୍ଲୀବ । ଦଳିତ, ନାରୀ, ପରିବେଶ-ସଚେତନ କର୍ମୀ, ଆନ୍ଦୋଳନ ଜାରିରଖିଚନ୍ତି ଅବଶ୍ୟ; କିନ୍ତୁ ପୁଞ୍ଜି-ଆହରଣ ସହିତ ସେ ବିରୋଧ ସୁସଙ୍ଗତ । ଧନତନ୍ତ୍ରକୁ ପାସରିପକାଇବା ପ୍ରଶ୍ନ ତେଣୁ ଉଠୁନାହିଁ । ପୁଞ୍ଜିଆହରଣକୁ ବାଧାଦେଉଚନ୍ତି, ଏକମାତ୍ର ନକ୍ସଲ୍ !

ଜର୍ଜ ବୁସ୍, ରାଷ୍ଟ୍ରପତିପଦରୁ ଚାଲିଯିବା ଅଳ୍ପଦିନ ଆଗରୁ 'ରାଷ୍ଟ୍ରୀୟ ସୁରକ୍ଷା ରଣକୌଶଳ' ନାଁଦେଇ ଗୋଟାଏ ଘୋଷଣାପତ୍ର ପ୍ରକାଶକରିଚନ୍ତି, ଯୋଉଠି ଭାରତ, ଚୀନ୍ ଓ ରସିଆକୁ ଚିହ୍ନିତକରାଯାଇଚି ପୃଥିବୀର ତିନିଟି ଅବ୍ୟକ୍ତ ମହାଶକ୍ତି ! ମାତ୍ର ଆନ୍ତର୍ଜାତିକ ବିଧିବିଧାନକୁ ଉପେକ୍ଷାକରୁଚନ୍ତି ଯୋଉ ଦେଶ, ସେମାନଙ୍କୁ କୁହାଯାଇଚି ବଦମାସ୍, ରୋଗ୍ ଷ୍ଟେଟ୍ । ଆନ୍ତର୍ଜାତିକ ଆଇନ୍ ପାଳନକରିବା କାମରେ ଯୁକ୍ତରାଷ୍ଟ୍ର କଣ ପୃଥିବୀର ଆଦର୍ଶ ? ସର୍ବବୃହତ୍ ଗଣତନ୍ତ୍ରର ନିର୍ବାଚିତ ରାଷ୍ଟ୍ରପ୍ରଧାନ କିନ୍ତୁ ଛଳ ଜାଣନ୍ତିନାହିଁ; ସ୍ପଷ୍ଟ କହିଦେଇଚନ୍ତି: The United States has long maintained

the option of pre-emptive actions to counter a sufficient threat to our national security । ତେବେ ତ ସାରା ପୃଥିବୀର ସୁରକ୍ଷା ବିପନ୍ନ ! We will take the actions necessary to ensure that our efforts to meet our global security commitments and protect Americans are not impaired by the potential for investigations, inquiry or prosecution by the International Criminal Court, whose jurisdiction does not extend to Americans and which we do not accept । ଆନ୍ତର୍ଜାତିକ ବିଧିନିଷେଧ, ଗଣତନ୍ତ୍ରର ଧ୍ୱଜାବାହକ ଆମେରିକାକୁ କ୍ଷାନ୍ତ କରିପାରେନା ଅପକର୍ମରୁ (=ଆଗତୁରା ଅନ୍ୟଦେଶକୁ ଆକ୍ରମଣକରିବାରୁ); ଏପରିକି, ସେ ଅପକର୍ମ ମଧ୍ୟ ହୋଇପାରେନା ଅନୁସଂଧାନଯୋଗ୍ୟ କି ବିଚାରଯୋଗ୍ୟ । ପାଶ୍ଚାତ୍ୟ ଗୋଲାର୍ଦ୍ଧ ବହିର୍ଭୂତ ବିବାକ ସମାଜରେ, ଏ ପରିସ୍ଥିତିରେ, ଗୋପନ ସନ୍ତ୍ରାସ ଗଢ଼ିଉଠିବ ନା ନାହିଁ ଆମେରିକା ବିରୋଧରେ ? ଆଉ, ଯଦି ଗଢ଼ିଉଠେ, କି ଯୁକ୍ତିରେ ହେବ ଅଗଣତାନ୍ତ୍ରିକ ? ଖାଲି ସନ୍ତ୍ରାସ ନୁହେଁ, ପରମାଣୁ ଅସ୍ତ୍ରକୁ ନିଜ ଅଧିକାରରେ ପାଇବା ଲାଗି ଚେଷ୍ଟାକରିବେ କି ନାହିଁ ନିରସ୍ତ୍ର ରାଷ୍ଟ୍ର ? ବୁସ୍ ଅବଶ୍ୟ ବୁଝିଚନ୍ତି, Free trade and free markets have proven their ability to lift whole societies out of proverty so the United States will work with individual nations, entire regions, and the entire global trading community to build a world that trades in freedom and therefore grows in prosperity । ମାତ୍ର The benefits of free trade do not come at the expense of American workers । ସେହିପରି, ପରିବେଶଦୂଷଣ : Our overall objective is to reduce America's greenhouse gas emissions relative to the size of our economy... । ଦୁଇଟି ଲକ୍ଷଣ ସୁସ୍ପଷ୍ଟ: ନିରଙ୍କୁଶ ସମରଶକ୍ତି ଯା ଆନ୍ତର୍ଜାତିକ ଆଇନ୍‌କାନୁନ୍‌କୁ ଖାତିର୍‌କରେନା, ଆଉ ଅପ୍ରତିଦ୍ୱନ୍ଦ୍ୱୀ ଇଣ୍ଡଷ୍ଟ୍ରିଆଲିଜ୍ମ ଯା ଶ୍ରମଜୀବୀର ସଂଭୋଗପ୍ରବଣତାକୁ ନିୟନ୍ତ୍ରଣକରିବାକୁ ଅନିଚ୍ଛୁକ; ଏବଂ ସେଥିପାଇଁ ପରିବେଶଦୂଷଣ ପ୍ରତି ନିସ୍ପୃହ । ରସିଆ, ଚୀନ୍ ଓ ଭାରତକୁ 'ପୋଟେନ୍‌ସିଆଲ ଗ୍ରେଟ୍‌ପାଓ୍ୱର୍' କହିବା ଅର୍ଥ ଅନୁରୂପ ଇଣ୍ଡଷ୍ଟ୍ରିଆଲିଜ୍ମ ସେଠି ସମ୍ଭବପର ବୋଲି ଇଙ୍ଗିତ । ମନେହେବା ସ୍ୱାଭାବିକ ଯେ ଏଭଳି ସମ୍ମିଳିତ ଇଣ୍ଡଷ୍ଟ୍ରିଆଲ୍ ଶକ୍ତି ଯଦି ଏସିଆରେ କାଳକ୍ରମେ ଗଢ଼ିଉଠେ, ସେଇ ହେବ ପୁଞ୍ଜିର ବିଶ୍ୱାୟନ ପ୍ରତି ସବଳ ଆହ୍ୱାନ; ମାତ୍ର କ୍ୟାପିଟାଲିଜ୍ମ ନିଜ ଦୀର୍ଘ ଅଭିଜ୍ଞତାରୁ ବୁଝିସାରିଚି, ଯୋଉ ଭୋଗବାଦକୁ ଇଣ୍ଡଷ୍ଟ୍ରିଆଲିଜ୍ମ ଜନ୍ମଦେଇ ଲାଳନକରେ, ସେଥିରୁ ବିଷ ବାହାରୁ କି ଅମୃତ, ପ୍ରତିରୋଧ ବାହାରେନା କୁତ୍ରାପି ।

କିନ୍ତୁ ଛ'ବିଲିଅନ୍ ଲୋକଙ୍କୁ ଅପରିମିତ ପଣ୍ୟସମ୍ଭାର ଯୋଗାଇପାରେନା ପୃଥିବୀ, ଯେହେତୁ ଏ ଗ୍ରହଟି ଅପରିସୀମ ନୁହେଁ କି ତାର ପ୍ରାକୃତିକ ସଂପଦ ଅସରନ୍ତି ନୁହେଁ । ବୈଷୟିକ ଏଇ ସୀମା ଓ ସୀମାବଦ୍ଧତା ଧନତନ୍ତ୍ରର ଅଜ୍ଞାତନୁହେଁ ।

କିନ୍ତୁ ପୁଞ୍ଜିର ବିଶ୍ୱାୟନ ଜୀବନର ଅଭ୍ୟନ୍ତରକୁ ଅନୁପ୍ରବେଶକରୁଚି କି ଭାବରେ, ଖାଲି ବୈଷୟିକ ବିବେଚନାରୁ ପୂର୍ଣ୍ଣମାତ୍ରାରେ ବୁଝିହେବନାହିଁ । ଇଉରୋପ୍‌ରେ ସେଥିପାଇଁ ଉଦାରବାଦର ବିଶେଷଣ ବାହାରକରାଯାଇଚି 'ନବ୍ୟ' । ନବ୍ୟ-ଉଦାରବାଦ, କାହିଁକିନା, ଦୁଇଶ'ବର୍ଷଧରି ଧନତନ୍ତ୍ରକୁ ଅଙ୍ଗେନିଭାଇଚି ଇଉରୋପ୍; ଅର୍ଥନୀତି ତେଣୁ ପୁରୁଣା ପ୍ରସଙ୍ଗ, ନୂଆ ସମସ୍ୟା 'କଲ୍‌ଚର୍'; କାହିଁକିନା, ବିଶ୍ୱାୟନ ଯୁଗରେ ଦରକାରହୋଇଚି ସଂସ୍କୃତିରୁ ପ୍ରତିବାଦ/ପ୍ରତିରୋଧର ନିଷ୍କାସନ । ନବ୍ୟଉଦାରବାଦ, ସେ ବ୍ୟଞ୍ଜନାରେ, ଉତ୍ତରଆଧୁନିକତାର ନାମାନ୍ତର । ଆମେରିକାରେ ଯା ଉତ୍ତରଆଧୁନିକତା, ଇରୋପ୍‌ରେ ତା ନିୟଲିବରାଲିଜ୍ମ । ଅର୍ଥାତ୍, ଇଉରୋପ୍ ଦୃଷ୍ଟିରେ ଏ ପ୍ରବଣତା ଦୀପାୟନପ୍ରସୂତ ଉଦାରବାଦରୁ ଅନଭିପ୍ରେତ ଓ ଆତ୍ମଘାତୀ ପ୍ରସ୍ଥାନ । ଏବଂ ସବୁଠୁଁବେଶି ଉଦ୍‌ବେଗର କାରଣ, କୃଷ୍ଟିର ଏଭଳି ଅବକ୍ଷୟ ପ୍ରତି ଉଇରୋପ୍‌ର ବୁଦ୍ଧିଜୀବୀ କେହିହେଲେ ଅସନ୍ତୁଷ୍ଟ ନୁହେଁ । ଗୁଣ୍ଟେର୍ ଗ୍ରାସ୍ ବରଂ ଆଖ୍ୟାଦେଇଚନ୍ତି 'ଆ୍ୟାକମ୍ପ୍ଲିସ୍'; ଅର୍ଥାତ୍ ଶୁଣ୍ଡିର ସାକ୍ଷୀ ମାତାଲ୍ । ଚୋଟ ପଡ଼ିଚି ଆଗେ ଜାତୀୟତାବାଦ ଓ ତଦ୍‌ସମ୍ଭୂତ ଜାତିରାଷ୍ଟ୍ର ଧାରଣା ଉପରେ । ଏ ଧାରଣାକୁ ଅଷ୍ଟାଦଶଶତକର ଇଉରୋପ୍ ଖାଲି ପ୍ରସବକରିନାହିଁ, ପ୍ରସାରିତ କରିଚି ଦୁନିଆସାରା । ଖ୍ରୀଷ୍ଟାନ୍‌ଧର୍ମକୁ କେନ୍ଦ୍ରକରି ଇଉରୋପର ଐକ୍ୟ ଗଢ଼ିଉଠିଚି ସତ, ମାତ୍ର ଜାତିରାଷ୍ଟ୍ରର ସୀମା ନିର୍ଦ୍ଧାରଣକରିଚି ଭାଷା, ସାହିତ୍ୟ ଓ ଶିଳ୍ପକଳାର ସ୍ୱକୀୟତା । ଗୋଟିଏ ଶବ୍ଦରେ, ଆତ୍ମପରିଚୟ ବା ଅସ୍ମିତା । ନବ୍ୟ ଉଦାରବାଦକୁ ବାସ୍ତବାୟିତକରୁଚି ବହୁଜାତିକ ବାଣିଜ୍ୟସଂସ୍ଥା ଆଉ ଆନ୍ତର୍ଜାତିକ ମାନ୍ୟତାପ୍ରାପ୍ତ ଓ୍ୱର୍ଲ୍ଡ ଟ୍ରେଡ୍ ଅର୍ଗାନାଇଜେସନ୍, ଏବଂ ମାତ୍ର କେତେଟାବର୍ଷ ଭିତରେ ଜାତିରାଷ୍ଟ୍ରର କଂପାନୀଗୁଡ଼ିକ ଡୁବିଯାଇଚନ୍ତି ବହୁଜାତିକ କଂପାନୀର ଅତଳାୟତନ ଗର୍ଭରେ; ସେମାନଙ୍କ ଅସ୍ମିତାବିଲୁପ୍ତି ସଙ୍ଗେସଙ୍ଗେ କର୍ମଚ୍ୟୁତହୋଇଚନ୍ତି ଶହଶହ ଶ୍ରମଜୀବୀ, ଯିଏ ସେଇ ଜାତିରାଷ୍ଟ୍ରର ନାଗରିକ । ଏଠି କହୁଛୁଁ ମଲ୍ଟିନ୍ୟାସନାଲ୍, ଇଉରୋପ୍‌ରେ କହୁଚନ୍ତି ଟ୍ର୍ୟାନ୍‌ସ୍‌ନ୍ୟାସନାଲ୍; ତାର ନିୟନ୍ତ୍ରଣରହିଚି ଯୋଉଠି, ତା କୋଉହେଲେ ମେଟ୍ରପଲିଟାନ୍ କେନ୍ଦ୍ର, ନିଉୟୋର୍କ, ଲଣ୍ଡନ୍, ପ୍ୟାରିସ୍ କି ରୋମ୍ ଭଳି ମହାନଗରୀ, ଯା ଜାତିରାଷ୍ଟ୍ରର ଭୂଗୋଳଇତିହାସ ଉର୍ଦ୍ଧ୍ୱରେ । ଜାତୀୟତାବାଦକୁ ଯେ ସେମାନେ ଲଂଘନକରୁଚନ୍ତି, ସଂସ୍କୃତିକୁ ବଦଳାଇଦେବା ଉଦ୍ଦେଶ୍ୟରେ କରୁନାହାଁନ୍ତି; ମାତ୍ର ଜାତିରାଷ୍ଟ୍ରର ସଂସ୍କୃତି ଉପରେ

ଯୋଉ କର୍ତ୍ତୃତ୍ୱ ଅଲକ୍ଷ୍ୟରେ ତିଆରିହେଉଚି, ସେ ହିଗେମନି ନବ୍ୟଉଦାରବାଦର ଆବଶ୍ୟକ ସହଚର । ସେ ହିଗେମନି ବଢ଼ିବଢ଼ି ଚରମସ୍ତରରେ ପହଞ୍ଚିଲେ, ଆଇଡ଼ିଆ-ଉତ୍ପାଦନ, ଅର୍ଥାତ୍ ଶିକ୍ଷାଦୀକ୍ଷା ମନନଚିନ୍ତନ ଆପେଆପେ ହୋଇପଡ଼େ ଆକ୍ରାନ୍ତ, କାହିଁକିନା, ଜ୍ଞାନ ବା ନଲେଜ୍ କହିଲେ ଜାତୀୟ ଅସ୍ମିତା ଯା ବୁଝେ, ହିଗେମନି କରିନିଏ ତାକୁ ଅଧସ୍ତନ । ଅର୍ଥାତ୍ କର୍ତ୍ତୃତ୍ୱାଧୀନ ଜାତିରାଷ୍ଟ୍ର, ଆଧିପତ୍ୟକରୁଥିବା ସଂସ୍କୃତିକୁ ଅନୁକରଣକରେ, ନୂଆକିଛି ସୃଷ୍ଟିକରିପାରେନା ଏକକ ବା ସ୍ୱାଧୀନ ଉଦ୍ୟମରେ । ଏ ହିଗେମନି ସାମରିକ କର୍ତ୍ତୃତ୍ୱ ତୁଳନାରେ ଭୟଙ୍କର, କାହିଁକିନା, ସାମରିକ ଆକ୍ରମଣକୁ ଜାତିରାଷ୍ଟ୍ର ମୁକାବିଲା କରିପାରେ ସଦର୍ପ, କିନ୍ତୁ ସାଂସ୍କୃତିକ ଆକ୍ରମଣ, ଯା ଅପ୍ରତ୍ୟକ୍ଷ, ରାଷ୍ଟ୍ରଶକ୍ତିର ପ୍ରୟୋଗପଦ୍ଧତିରେ ଧରାପଡ଼େନା ନିୟମିତ । ଭାବୁକ ସେଥିପାଇଁ ଚିନ୍ତା କରୁଚନ୍ତି ଇଉରୋପ୍‌ରେ ରାଷ୍ଟ୍ରଶକ୍ତିର ନବାୟନ, ଆମୂଳ ପରବର୍ତ୍ତନ ।

ଅଭ୍ୟନ୍ତରୀଣ ବଜାର ସ୍ୱୟମ୍ଭର ବୋଲି, ଯେକୌଣସି ଦେଶ ରପ୍ତାନିକରିପାରେ ସାଂସ୍କୃତିକ ପଣ୍ୟ; ଯେପରି ଖବରକାଗଜ, ବହିପତ୍ର, ପତ୍ରପତ୍ରିକା ସାଙ୍ଗକୁ ଉନ୍ନତ ପ୍ରଯୁକ୍ତି ଓ ଉତ୍କୃଷ୍ଟ ମୁଦ୍ରଣଶିଳ୍ପ । ଅଭ୍ୟନ୍ତରୀଣ ବଜାର ମାନେ ନିର୍ଭରଯୋଗ୍ୟ କେତ୍ରାଗୋଷ୍ଠୀ, ବିଜ୍ଞାପନ ଓ ବିପଣନ ନେଟ୍‌ୱର୍କ, ପୋସଦାର ଲେଖକ, ଦେଶବ୍ୟାପୀ ଲାଇବ୍ରେରୀ, ଏବଂ ସର୍ବୋପରି, ବିଶ୍ୱାସଯୋଗ୍ୟ ପ୍ରେସ୍ । ପଣ୍ୟଉତ୍ପାଦନକୁ ଉତ୍ତରୋତ୍ତର ଆଗେଇନେବାକୁ ବଜାର ଯଦି ଦୃଢ଼ ହୋଇଥାଏ, ରପ୍ତାନି ହୁଏ ସେଇ ବଜାରର ଉପଜାତ, କାହିଁକିନା, ଅଭ୍ୟନ୍ତରୀଣ ବଜାରରୁ ଉତ୍ପାଦନଖର୍ଚ୍ଚ ଉଠିଆସିବା ଉତାରୁ, ଅଧିକଲାଭ ପ୍ରତ୍ୟାଶାରେ ବିଦେଶକୁ କରାଯାଇଥାଏ ରପ୍ତାନି । ଖାଲି ବହିପତ୍ର ନୁହେଁ, ଥିଏଟର୍ ନାଚଗୀତ ଛବି କି ମୂର୍ତ୍ତି ମଧ୍ୟ ଏଇ ନୀତିର ଅଧୀନ । ଓଡ଼ିଶାରେ କିନ୍ତୁ ଏ ନୀତିର ଗତି ଓଲଟାଦିଗକୁ; ଯେପରି, ଓଡ଼ିଶୀ ନାଚଗୀତ ବାହାରକୁ ପଠାଯାଏ ଓଡ଼ିଶା ଭିତରେ ଚାହିଦା ଯେହେତୁ ଯତ୍‌ସାମାନ୍ୟ । ଭାରତୀୟ ଆର୍ଟଫିଲ୍ମର ମଧ୍ୟ ସମଦଶା; ଉତ୍ପାଦନ ଯଥେଷ୍ଟ, ରପ୍ତାନି ଉଲ୍ଲେଖଯୋଗ୍ୟ ନୁହେଁ । କିନ୍ତୁ ସାଂସ୍କୃତିକ ହିଗେମନି ଯିଏ ପ୍ରୟୋଗକରେ, ରପ୍ତାନି ପରିମାଣ ତାର ଅଧିକ, ଆମଦାନି କିନ୍ତୁ ପ୍ରତିତୁଳନାରେ ଯତ୍‌କିଞ୍ଚିତ୍ । ଊନବିଂଶ ଶତକରେ ଯେମିତି ବ୍ରିଟେନ୍ କି ଫ୍ରାନ୍ସ, ଆଉ ଯୁଦ୍ଧପରବର୍ତ୍ତୀ ପୃଥିବୀରେ ଯୁକ୍ତରାଷ୍ଟ୍ର ଆମେରିକା । କିନ୍ତୁ ଜାତିରାଷ୍ଟ୍ର ଯଦି ହୁଏ ସଂରକ୍ଷଣ-ପ୍ରବଣ, ବିଂଶଶତକରେ ଯେମିତି ସୋଭିଏଟ୍ ଇଉନିୟନ୍, ଅଭ୍ୟନ୍ତରୀଣ ବଜାର ଦୃଢ଼ହେବା ସତ୍ତ୍ୱେ ରପ୍ତାନି ଖସିଯିବ ରସାତଳକୁ ଏବଂ କଦାଚିତ୍ ଯଦି ରପ୍ତାନି ସମ୍ଭବ ହୁଏ, ପରିମାଣ ହେବ ନିୟନ୍ତ୍ରିତ । ପୁଣି, ଏମିତି ଅଭ୍ୟନ୍ତରୀଣ ବଜାର ବି

ରହିଚି, ଯୋଉଠି ସ୍ୱଦେଶୀ ଯେମିତି ବିଦେଶୀ ପଣ୍ୟ ସେମିତି କାଣ୍ଡିକାଣ୍ଡି; ରପ୍ତାନି କିନ୍ତୁ ନଗଣ୍ୟ, ଯେପରି ଭାରତ କିମ୍ବା ଜାପାନ । ଫେର୍ ଦେଶ ଭିତରେ କିଛିହେଲେ ଉତ୍ପନ୍ନହୁଏନା, ଉପଭୋକ୍ତା ନିର୍ଭରକରେ ବିଦେଶରୁ ଆମଦାନି ସାଂସ୍କୃତିକ ପଣ୍ୟ ଉପରେ; ସେପରି ଦେଶ ବାଂଲାଦେଶ, ଶ୍ରୀଲଙ୍କା, ବେଲ୍‌ଜିଅମ୍ କି ବଲ୍‌ଗେରିଆ ।

'ମଧ୍ୟବିତ୍ତ' ବୋଲି ସମାଜର ଯୋଉ ଅଂଶ ଚିହ୍ନିତ, ତାର ଆର୍ବିଭାବ ଘଟିଚି ଊନବିଂଶଶତକରେ ଜଣା-ଅଧିକେ ପୃଥିବୀର ସର୍ବତ୍ର; ସାଂସ୍କୃତିକ ପଣ୍ୟର ଉତ୍ପାଦନ ସକାଶେ ଉପଯୁକ୍ତ ପ୍ରଯୁକ୍ତିର ବିକାଶ ମଧ୍ୟ ଘଟିଚି ସେତିକିବେଳେ; ଏବଂ ସର୍ବାଧିକ ଉପଭୋକ୍ତା ବି ବାହାରିଚନ୍ତି ମଧ୍ୟବିତ୍ତଶ୍ରେଣୀରୁ, ଅବସର ଓ ସାକ୍ଷରତା ଉପରେ ସେମାନଙ୍କ ଆୟତ୍ତ ଯେହେତୁ ଥିଲା ସର୍ବାଧିକ; କାହିଁକିନା, ଧର୍ମକର୍ମ ପ୍ରତି ଆସକ୍ତି ଏ ଶ୍ରେଣୀର ବୈଶିଷ୍ଟ୍ୟ ନୁହେଁ; ଏମାନଙ୍କ ଚକ୍ଷୁଶୂଳ ହୋଇଚନ୍ତି ବରଂ ଅଭିଜାତ ବିସପ୍ କି ମହନ୍ତ ପ୍ରଭୃତି ବିଶେଷ ସୁବିଧାଭୋଗୀ । ବହି ହେଉ କି ଥିଏଟର୍/ ଅପେରା, ମ୍ୟାଗାଜିନ୍ କି ଖବରକାଗଜ, ସମସ୍ତେ ଚାହିଁଚନ୍ତି କ୍ରେତାର ପସନ୍ଦକୁ ଚାହିଁ ଜିନିଷ ଯୋଗାଇଦେବାକୁ ଯଥାଶୀଘ୍ର । ଚାହିଦାଯୋଗାଣ ସୌଦାଗରିଚକ୍ର ଭିତରକୁ ସାଂସ୍କୃତିକ ଉତ୍ପାଦନ ପଶିଯିବା ମାତ୍ରକେ ଲାଭଲୋକସାନ ହିସାବ ଦୂରରେ ରହିପାରେନା; ମାତ୍ର ଇଣ୍ଡଷ୍ଟ୍ରିଆଲିଜ୍ମ ବିପକ୍ଷରେ ବୁଦ୍ଧିଜୀବୀ ଆପତ୍ତି ଜଣାଇଚନ୍ତି । ତାଙ୍କ ଭିତରେ ଅଛନ୍ତି ପୁଣି କାର୍‌ଲାଇଲ ଆଉ ମ୍ୟାଥିଉ ଆର୍‌ନଲ୍ଡ୍ । କ୍ରମଶଃ ପର୍‌ଫରମିଙ୍ଗ୍ ଆର୍ଟସ୍ ସାହିତ୍ୟକୁ କରିଚି ଉପଜୀବ୍ୟ, ଯେପରି ସତ୍ୟଜିତ୍ ରାୟଙ୍କ ଅଧିକାଂଶ ଫିଲ୍ମ । ମାତ୍ର ବିଦେଶରେ ଯୋଉ ନାଟକ କି ଫିଲ୍ମ ବାଣିଜ୍ୟିକ ସାଫଲ୍ୟ ପାଇଚି, ଦେଖାଦେଇଚି ଭାରତରେ ତାର ଅନୁକରଣ କି ଅନୁସରଣ; ଯେମିତି ବଲିଉଡ୍‌ରେ ଯେତେ ଫିଲ୍ମ ତିଆରିହୋଇଚି, ବିଷୟବସ୍ତୁ ଆସିଚି ଇଉରୋପରୁ, ଲେଖକ ମଧ୍ୟ ଇଉରୋପୀୟ । ବିକ୍ରୟଯୋଗ୍ୟତା ତେଣୁ ସ୍ଥିରକରିଚି ମାର୍କେଟିଙ୍ଗ୍ ଲଜିକ୍ । ଏଇ ଅନ୍ଧ-ଅନୁକରଣ ମୂଳରେ ଥିଲା ଲୋକ୍‌ସାନର ଆଶଙ୍କା । ତା ଛଡ଼ା, ସାଂସ୍କୃତିକ ପଣ୍ୟର ସ୍ୱଭାବ ହେଲା ଏକରୁ ଏକାଧିକ ପଣ୍ୟକୁ ଡାଇଭର୍‌ସିଫିକେସନ୍; ଯେପରି କବିତାକୁ ନାଚରେ ପ୍ରକାଶ, କି ଗଳ୍ପକୁ ନାଟକରେ, ନାଟକକୁ ସିନେମାରେ । କୋକାକୋଲା ବେପାରଠାରୁ, ଏଇ ଅର୍ଥରେ, ସଂସ୍କୃତିର ବିକାକିଣା ଅବଶ୍ୟ ଅଲଗା । ପାଟିକୁ ଭଲଲାଗିଲେ କୋକାକୋଲା ଦିନରେ ପାଞ୍ଚଥର ଖାଇହେବ, ବହି କି ପତ୍ରିକା ଦି'ଥର ପଢ଼ିବା ଦରକାରହୁଏନା ସାଧାରଣତଃ । ଏକାଜିନିଷକୁ ସେଥିପାଇଁ ନାନାଦି କୌଶଳରେ ପରିବେଷଣ କରିବାକୁ ପଡ଼େ; ଖୋଳ ବଦଳିଯାଏ, ସ୍ୱାଦ ବଦଳେନା । ସଂସ୍କୃତି ରୂପକ ଇଣ୍ଡଷ୍ଟ୍ରିକୁ ତେଣୁ ବିଂଶଶତକ ଦେଇଚି ପ୍ରଯୁକ୍ତିଗତ ଭିତ୍ତି; ଅର୍ଥାତ୍ ଏକାଜିନିଷ ଏକାବେଳକେ ପୃଥିବୀର

ବିଭିନ୍ନ କୋଣରେ ବିଭିନ୍ନ ଲୋକଙ୍କ ପାଖରେ ପହଞ୍ଚିଯାଇପାରେ ରେଡିଓ, ଟେଲିଭିସନ୍ କି ସିନେମା ମାଧ୍ୟମରେ । ମାର୍କେଟ୍ ତେଣୁ ଆଉ 'ଜାତୀୟ' ନୁହେଁ; ରୀତିମତ 'ଗ୍ଲୋବାଲ୍' । ସାଂସ୍କୃତିକ ପଣ୍ୟ, ଜାତିରାଷ୍ଟ୍ରର ପରିଧିଭିତରେ ଉତ୍ପନ୍ନହେଲେ ସୁଦ୍ଧା, ଉଡ଼ିଯାଇପାରେ ଦେଶଦେଶାନ୍ତର, ଅନ୍ୟତ୍ର ଉପଭୋଗଯୋଗ୍ୟ କରିବାପାଇଁ ତାକୁ ବଦଳାଇ ମଧ୍ୟ ଦିଆଯାଇପାରେ । ତା ହେଲେଯାଇ ଲୋକ ପଇସାଦେଇ କିଣିବେ । ସଂଗୀତ କି ଚାରୁ / କାରୁଶିଳ୍ପ କ୍ଷେତ୍ରରେ ଭାଷାବ୍ୟବଧାନ ଅବଶ୍ୟ ଅନ୍ତରାୟ ନୁହେଁ; ସେଗୁଡ଼ାକ ଟ୍ରାନ୍ସନ୍ୟାସନାଲ୍ । ଶିଳ୍ପୀକୁ ସ୍ଥାନରୁ ସ୍ଥାନାନ୍ତର ଯିବାକୁ ପଡ଼େନା, ଦରକାରହୁଏନା କନ୍‌ସର୍ଟହଲ୍, ଶ୍ରୋତା କି ଦର୍ଶକକୁ ମଧ୍ୟ ନିଜ ଘରବାହାରକୁ ଯିବା ଦରକାରନାହିଁ । ଫଳରେ, ଜୀବିତ ଶିଳ୍ପୀଙ୍କୁ ମୃତଶିଳ୍ପୀଙ୍କ ସାଙ୍ଗରେ ପ୍ରତିଯୋଗିତା କରିବାକୁ ପଡୁଚି ଯେମିତି, ଜୀବିତ ସାହିତ୍ୟିକଙ୍କୁ ମୃତସାହିତ୍ୟିକଙ୍କ ସାଙ୍ଗରେ ଅବିକଳ ସେମିତି । ଅନ୍ୟଥା, ବିକ୍ରୟଯୋଗ୍ୟତା ହ୍ରାସପାଇବ । ଏପରିକି, ଫରାସୀ ଉପନ୍ୟାସର ଅନୁବାଦ ଇତାଲିରେ ପ୍ରକାଶକ ଛାପିଚନ୍ତି ଲେଖକର ନାଁ ବଦଳାଇଦେଇ, ନିଜ ଦେଶର ଲେଖକଙ୍କ ରଚନା ଛାପିବା ପରିବର୍ତ୍ତେ; ଏବେ ଯେମିତି ବଙ୍ଗଳା ଲେଖାର ଅନୁବାଦଛାପିବାକୁ ଓଡ଼ିଶାର ପ୍ରକାଶକ ଭାବୁଚନ୍ତି ବ୍ୟବସାୟଦୃଷ୍ଟିରୁ ନିରାପଦ । ଗ୍ରାମ୍‌ସି ତେଣୁ ଦେଖିଚନ୍ତି, ଇତାଲିର ଜନସାଧାରଣ ଫରାସୀ ଇତିହାସ ବିଷୟରେ ଯେତେ ଓୟାକିବହାଲ୍, ନିଜ ଦେଶର ଇତିହାସ ବିଷୟରେ ସେତେ ନୁହେଁ । ତଥାପି, କାମଟାକୁ ଫରାସୀ ହିଗେମନି କହିହେବନାହିଁ, କାହିଁକିନା, ସେଭଳି ହିଗେମନି ପ୍ରତିଷ୍ଠାପାଇଥିଲା କେବଳ ଅପେରା ଓ ଚିତ୍ରକଳା କ୍ଷେତ୍ରରେ, ରପ୍ତାନିଯୋଗ୍ୟ ବିବେଚିତହେବାକୁ ଇଉରୋପତମାମ୍ ଚିତ୍ରକର ଆଉ ସଂଗୀତଜ୍ଞ ଦୌଡ଼ିଚନ୍ତି ଯେତେବେଳେ ପ୍ୟାରିସ୍ । ଏବେ ମଧ୍ୟ ପ୍ୟାରିସ୍ ରହିଚି, ଅନ୍ତତଃ ଚିତ୍ରକଳା କ୍ଷେତ୍ରରେ, ସେମାନଙ୍କ ତୀର୍ଥକ୍ଷେତ୍ର । ରବୀନ୍ଦ୍ରନାଥ ସୁଦ୍ଧା ନିଜ ଛବିର ପ୍ରଦର୍ଶନୀ ଆୟୋଜନକରିଚନ୍ତି ପ୍ୟାରିସ୍‌ରେ ଦେଶବାସୀଙ୍କୁ ଦେଖାଇବା ଆଗରୁ । ଅର୍ଥାତ୍, ପ୍ୟାରିସ୍ ଅନୁମୋଦନକଲେ ଛବି ହୁଏ ରପ୍ତାନିଯୋଗ୍ୟ । ଅପେରାର ବିଶ୍ୱକେନ୍ଦ୍ର ମଧ୍ୟ ପ୍ୟାରିସ୍; ମାତ୍ର ହିଗେମନି ରହିଚି ଜର୍ମନ୍ ଗୁଣୀଙ୍କ ହାତରେ, ଯେପରି ହ୍ୱାଗ୍‌ନର୍ କିମ୍ବା ଷ୍ଟ୍ରାଉସ୍ । ୧୮୮୦ ରୁ ୧୮୯୦ ଭିତରେ ପ୍ରଯୁକ୍ତିରେ ଘଟିଯାଇଚି ଯେହେତୁ ବିପ୍ଳବ, ଶବ୍ଦଗ୍ରହଣ କି ଚିତ୍ରଗ୍ରହଣ ଯନ୍ତ୍ର ସାଙ୍ଗକୁ ଶବ୍ଦ ଓ ଚିତ୍ରର ଦୂରଦୂରାନ୍ତରକୁ ସଂବହନ ହୋଇଯାଇଚି ବାଁହାତର ଖେଳ, ଏବଂ ସେଇ ସୂତ୍ରରେ, ରପ୍ତାନିବାଣିଜ୍ୟର ଘଟିଚି ଦିଗପରିବର୍ତ୍ତନ । ମାତ୍ର ସଂବହନ-ପ୍ରଯୁକ୍ତି ବିପୁଳପରିମାଣ ପୁଞ୍ଜିନିର୍ଭର, ଏବଂ ସେଥିପାଇଁ, ଉପଭୋଗର ଧରଣ ମଧ୍ୟ ବଦଳିଯାଏ । ଶ୍ରୋତାକୁ କିଣିବାକୁ ହୁଏ ହାଡ଼୍‌ଓୟାର୍, ଯେପରି ଗ୍ରାମୋଫୋନ୍ ମେସିନ୍,

ରେଡିଓ କି ଟେଲିଭିସନ୍; ତା ସାଙ୍ଗକୁ କିଣିବାକୁ ହୁଏ ସଫ୍ଟଓୟାର୍, ଯେପରି ରେକର୍ଡ଼ କି ପ୍ରୋଗ୍ରାମ୍ । ପୁଣି, ସିନେମା ଯେହେତୁ ସାମୂହିକ ଉପଭୋଗ, ସର୍ବଜନଗ୍ରାହ୍ୟ ହେବାକୁ ହେଲେ ଗୁଣଗତମାନ କମିଯିବ ଆପେଆପେ । ତଥାପି ବିଂଶଶତକରେ ରପ୍ତାନିହୋଇଚି ସାଧାରଣତଃ ହାଡ଼ଓୟାର୍; ସାଂସ୍କୃତିକ ପଣ୍ୟ ସେଥିପାଇଁ କରିପାରିନାହିଁ କର୍ତ୍ତୃତ୍ୱ । ତାର ଉତ୍ପାଦନ ଆଶ୍ରୟକରିଚି ବିଜ୍ଞାପନ କିମ୍ବା ବିଶେଷ ପରିସ୍ଥିତିରେ ରାଷ୍ଟ୍ରର ପରିପୋଷକତାକୁ; ରେକର୍ଡ଼ ପ୍ରକାଶନ ହୋଇଯାଇଚି ପୁସ୍ତକପ୍ରକାଶନ ଭଳି ବ୍ୟବସାୟ, ପାର୍ଥକ୍ୟ ଯଦିଓ ଗ୍ରାମୋଫୋନ୍ ମେସିନ୍ ଭଳି ହାଡ଼ଓୟାରର ଆବଶ୍ୟକତା । ସିନେମାକୁ ମଧ୍ୟ ବହି ବା ରେକର୍ଡ଼ ଭଳି କରାଯାଇଚି ପୁନରୁତ୍ପନ୍ନ; ଅର୍ଥାତ୍ ସିନେମା ରୂପାନ୍ତରିତ ହୋଇଚି କମୋଡିଟିକୁ । ପ୍ରଗତିର ଏଇ ବିଶେଷ ବିନ୍ଦୁରେ ଯୁକ୍ତରାଷ୍ଟ୍ର ଆମେରିକା ସଂସ୍କୃତିକ୍ଷେତ୍ରରେ ବିସ୍ତାରକରିଚି ଆଧିପତ୍ୟ; ଯେପରି, ଉତ୍ପାଦନକ୍ଷେତ୍ରରେ ଆମେରିକାର ପ୍ରାଧାନ୍ୟ ଧରିଚି ଅଲିଗୋପଲି ବା ଏକଚାଟିଆ ଚେହେରା; ବଜାରକୁ ଦୁନିଆତମାମ ପ୍ରସାରିତକରିବା ଉଦ୍ଦେଶ୍ୟରେ ଭିନ୍ନଭିନ୍ନ ସଂସ୍କୃତିର ଭିନ୍ନଭିନ୍ନ ଚାହିଦା ମେଣ୍ଟାଇଦେବାକୁ ଚେଷ୍ଟାକରିଚି; ଗ୍ରାମୋଫୋନ୍ କଂପାନୀ ଯେମିତି ଏସିଆର ବିଭିନ୍ନ ଅଂଚଳର ସଂଗୀତକୁ କ୍ୟାଟଲଗ୍‌ଭୁକ୍ତ କରିବାକୁ ଫ୍ରେଡ୍ ଗାଇସ୍‌ବର୍ଗଙ୍କୁ ପଠାଇଚି ଭାରତ । ବ୍ରହ୍ମଦେଶ, ସିଆମ୍, ଚୀନ୍ ଓ ଜାପାନ୍ ଯାଇ ସ୍ଥାନୀୟ ଗାୟକଗାୟିକାଙ୍କୁ ହୋଟେଲ୍‌ରୁମ୍‌କୁ ଡାକିଆଣି ଗାଇସ୍‌ବର୍ଗ ପ୍ରସ୍ତୁତକରିଚନ୍ତି ଅନ୍ତତଃ ଦୁଇହଜାର ରେକର୍ଡ଼ିଙ୍ଗ୍ । ମାତ୍ର ଗ୍ରାମୋଫୋନ୍ କଂପାନୀ ରେକର୍ଡ଼ ବିକେନା, ବିକେ ଗ୍ରାମୋଫୋନ୍ ମେସିନ୍ । ସ୍ଥାନୀୟ ସଙ୍ଗୀତର ରେକର୍ଡ଼ ତିଆରିକରିବା ମୂଳରେ ଥିଲା ଏସିଆର ବିଦଗ୍ଧ ଜନଙ୍କୁ ମେସିନ୍ କିଣିବାପାଇଁ ପ୍ରରୋଚନା । ସାଂସ୍କୃତିକ ସାମ୍ରାଜ୍ୟକୁ ତେଣୁ ରାଷ୍ଟ୍ର ହାତରେ ଛାଡ଼ିଦେଇଚି ବାଣିଜ୍ୟ; ତାର ଏକମାତ୍ର ଲକ୍ଷ୍ୟ ହାଡ଼ଓୟାରର ଚାହିଦା ବଢ଼ାଇବାକୁ ବଜାରସଂପ୍ରସାରଣ । ପ୍ରୋଗ୍ରାମ୍‌ଉତ୍ପାଦନ ରାଷ୍ଟ୍ରର ଏକଚାଟିଆ ଅଧିକାରହୋଇ ରହିଚି, ମାଧ୍ୟମ ରେଡିଓ ହେଉ କି ଟେଲିଭିସନ୍ । ହାଡ଼ଓୟାର୍ ଓ ସଫ୍ଟଓୟାର୍‌କୁ ଏଭଳି ବାଣ୍ଟକରିବା ମୂଳରେ ଦେଖିହେବ ରାଷ୍ଟ୍ର ଓ ବାଣିଜ୍ୟ ମଧ୍ୟସ୍ଥ ସହଯୋଗ, ଏବଂ ଦୁଇ ମହାଯୁଦ୍ଧ ମଧ୍ୟବର୍ତ୍ତୀ ସମୟରେ ଭାରତ ଯେତେ ସାଂସ୍କୃତିକ ସାମଗ୍ରୀ ଆମଦାନି କରିଚି, ଅଧିକାଂଶ ଆସିଚି ଆମେରିକାରୁ । ମାର୍କିନ୍ ସିନେମା ମଧ୍ୟ ପ୍ରତିଷ୍ଠାକରିଚି ପ୍ରାଧାନ୍ୟ । ଏକମାତ୍ର ବ୍ୟତିକ୍ରମ ଜର୍ମାନୀ, ଫ୍ରାନ୍ସ ଓ ବ୍ରିଟେନ୍, ଯିଏ ତିଆରିକରିଚନ୍ତି ନିଜ ଫିଲ୍ମ; ପୃଥିବୀର ଅବଶିଷ୍ଟ ରାଷ୍ଟ୍ର ଆମଦାନିକରିଚନ୍ତି ଆମେରିକାରୁ ।

ବିଂଶଶତକ ଶେଷପର୍ବରେ ସେଥିପାଇଁ ଏଇ ବ୍ୟତିକ୍ରମ ସତ୍ତ୍ୱେ ଦେଖାଦେଇଚି ବହୁବିକ୍ରିତ ଯୋଉ ଗଳ୍ପ-ଉପନ୍ୟାସ, ଫିଲ୍ମ କି ରେକର୍ଡ଼, ଏପରିକି ଟେଲିଭିସନ୍

ପ୍ରୋଗ୍ରାମ୍, ପ୍ରାୟ ସବୁଗୁଡ଼ାକ ଆମେରିକାନ୍, କାହିଁକିନା, ଭାରତୀୟ ଶିକ୍ଷିତବର୍ଗଙ୍କ ଦୃଷ୍ଟିରେ ଆମେରିକା ପ୍ରତୀୟମାନ ହୋଇଚି ଆନ୍ତର୍ଜାତିକତାର ପ୍ରତୀକ । ତା ମାନେ ନୁହେଁ ଯେ ବିବାକ ଭାରତୀୟ ଏକ୍ଷଣି ଆମେରିକାନ୍ ସଂସ୍କୃତିର ଉପାସକ, ଯଦିଓ ଇଂରେଜୀଭାଷାରେ ଲେଖାହୋଇଥିବା ସତ୍ତ୍ୱେ, ମାର୍କିନ୍ ଲେଖକଙ୍କ ରଚନାକୁ ଇଂରେଜୀସାହିତ୍ୟ ନକହି, ବିଶ୍ୱବିଦ୍ୟାଳୟ ଚହ୍ନିତକରୁଚନ୍ତି 'ଆମେରିକାନ୍ ଲିଟରେଚର୍' । ଅର୍ଥାତ୍, ଜାତୀୟତା ସୀମା ଅତିକ୍ରମକରି ଯୋଉ ସଂସ୍କୃତି ଏକ୍ଷଣି ପରିବ୍ୟାପ୍ତ, ତାର ଉତ୍ପାଦନକ୍ଷେତ୍ର ସାଧାରଣତଃ ଆମେରିକା । କିନ୍ତୁ କଣପାଇଁ ସଂସ୍କୃତିର ସର୍ବବୃହତ ରପ୍ତାନିକାରକ ହୋଇଚି ଆମେରିକା । କିନ୍ତୁ କଣପାଇଁ ସଂସ୍କୃତିର ସର୍ବବୃହତ୍ତ ରପ୍ତାନିକାରକ ହୋଇଚି ଆମେରିକା ? ଅଥବା, କଣପାଇଁ ମାର୍କିନ୍ ସଂସ୍କୃତି ହୋଇଚି ଏତେ ଶ୍ରଦ୍ଧାଭାଜନ ? ଗୋଟିଏ କାରଣ ନିଶ୍ଚୟ ଇଣ୍ଡଷ୍ଟ୍ରିଆଲ୍ କ୍ୟାପାସିଟି, ଅସାମାନ୍ୟ ବୈଷୟିକ ଉତ୍କର୍ଷ ଆଉ ବିପୁଳାୟତନ ଅଭ୍ୟନ୍ତରୀଣ ବଜାର । ଆଉଗୋଟିଏ କାରଣ, ବ୍ୟବସାୟ ସଂଗଠନଗୁଡ଼ିକର ଆକାରପ୍ରକାର, ଏବଂ ସେଗୁଡ଼ିକ ପ୍ରତି ରାଷ୍ଟ୍ରର ଅକୁଣ୍ଠ ପୃଷ୍ଠପୋଷକତା । ତଥାପି, କାରଣଗୁଡ଼ାକ ଅପ୍ରତୁଳ, କାହିଁକିନା, ଊନବିଂଶ ଶତକ ଆରମ୍ଭରୁ ଏକମାତ୍ର ଯୁକ୍ତରାଷ୍ଟ୍ର ସାଂସ୍କୃତିକଉତ୍ପାଦନକୁ ବିବେଚନାକରିଚି କମୋଡିଟି ଏବଂ ତଦନୁସାରେ ତାର ଉତ୍ପାଦନ ଓ ବିପଣନ । ଇଉରୋପ୍ କଳ୍ପନାକରିପାରିନାହିଁ ଏଭଳି ଉପଘାତ; ଯେପରି ଆଲେକ୍‌ଜାଣ୍ଡାର୍ ଡୁମା; ସୌଦାଗରି ଚକ୍ରର ଅନ୍ତର୍ଭୁକ୍ତ, କିନ୍ତୁ ପାଠକ ରହିଚନ୍ତି ସଙ୍କୀର୍ଣ୍ଣ ଏକ ମଧ୍ୟବିତ୍ତଶ୍ରେଣୀ । ତାଙ୍କରି ଚାହିଦାକୁ ମୁଣ୍ଡରେ ରଖି, କୁମ୍ଭାର କି ବଢ଼େଇ କଣ୍ଢେଇବାଗାଇବା ଭଳି, ଡୁମା ତିଆରିକରିଚନ୍ତି ନିଜ କ୍ରାଫ୍ଟ । ଅଥଚ କାରଖାନାରେ ଆସେମ୍ବ୍ଲିଲାଇନ୍‌ରୁ ପଣ୍ୟ ଯେମିତି ନିର୍ଗତହୁଏ, ସେଇ ପରିମାପରେ ଆମେରିକାନ୍ ଉତ୍ପନ୍ନକରିଚନ୍ତି 'ଡାଇମ୍ ନଭେଲ୍', ଗୋଟେ ଡାଇମ୍‌କୁ ଗୋଟେ ନଭେଲ୍ । ଏ ରୀତି ଏପରି ସଂକ୍ରାମକ ଯେ ତିରିଶଦଶକରେ ଜୀବନାନନ୍ଦ ଦାଶଙ୍କ କବିତା ଛପାଯାଇଚି 'ଦଶପଇସାରେ ଦଶଟି' ! ଲାଇବ୍ରେରି ଅବ୍ କଂଗ୍ରେସ୍ ସଂଗ୍ରହରେ ରହିଚି ଅନ୍ତତଃ ୪୦,୦୦୦ ଡାଇମ୍-ନଭେଲ୍, ଯା ଲେଖାଯାଇଚି ଊନବିଂଶଶତକରେ, ଏବଂ ଉତ୍ପାଦନର ଧରଣ ଇଣ୍ଡଷ୍ଟ୍ରିଆଲ୍ ହେବାମାତ୍ରକେ ଲେଖକ ହୋଇପଡ଼ିଚି ବିଶାଳକାୟ ବିପଣନଯନ୍ତ୍ରର ନଗଣ୍ୟ ଅଂଶବିଶେଷ । କାହିଁକିନା, ଯନ୍ତ୍ରଟା ଜଟିଳ, ଯାର ପ୍ରଧାନ ଶକ୍ତି ପ୍ରକାଶକ, ତା ପଛକୁ ପାଇକାରି ଆଉ ଖୁଚୁରା ବିକ୍ରେତା, ବିଜ୍ଞାପନ ଆଉ ଅତିଆବଶ୍ୟକ ପାଠକ । ଡୁମାଙ୍କ ନାଁଦେଖି ଲୋକ ବହି କିଣିବେ । ଡାଇମ୍ ନଭେଲ୍ କିଣିବେ କିନ୍ତୁ ପ୍ରକାଶକର ନାଁ ଦେଖି । ବ୍ର୍ୟାଣ୍ଡନେମ୍ ତେଣୁ ପ୍ରକାଶକ । ପରବର୍ତ୍ତୀ କାଳରେ, ଏବଂ ଭିନ୍ନ ପ୍ରେକ୍ଷିତରେ, ଦୋହାଉଠିଚି 'ଡେଥ୍ ଅବ୍ ଦ ଅଥର୍' ।

ମାତ୍ର ବ୍ର୍ୟାଣ୍ଡ୍‌ନେମ୍ ବହିର ବିକ୍ରୟଯୋଗ୍ୟତା ସ୍ଥିରକରିବା ସଙ୍ଗେସଙ୍ଗେ ଆକ୍ଷରିକ ଅର୍ଥରେ ଘଟିଯାଇଚି ଲେଖକର ଅପମୃତ୍ୟୁ । ଯେପରି ଏଡ୍‌ୱାର୍ଡ଼ ହୁଇଲର୍ । ତାଙ୍କ ଡାଇମ୍-ନଭେଲ୍‌ର ନାୟକ ଡେଡ୍‌ଉଡ୍ ଡିକ୍ । ତାଙ୍କୁ ଅନ୍ୟୂନ ତେତିଶିଖଣ୍ଡ ବହିର ନାୟକକରିବା ଉତାରୁ ହୁଇଲର୍ ନାୟିକା ପୁରାଇଲେ; ତା ନାଁ କ୍ୟାଲାମିଟି ଜେନ୍ । ମାତ୍ର ୧୮୮୫ରେ ହୁଇଲର୍ ଦେହତ୍ୟାଗକଲେ ଅପ୍ରତ୍ୟାଶିତ । ସେ ଖବରକୁ ଚପାଇଦେଇ, ହୁଇଲର୍‌ଙ୍କ ନାଁରେ ଆହୁରି ସତାନବେଖଣ୍ଡ ବହି ପ୍ରକାଶକ ଲେଖାଇନେଇଚନ୍ତି ଭିନ୍ନ ଲୋକଙ୍କ ହାତରେ ! ଏକାକଥା ଘଟିଚି ଜନପ୍ରିୟ ସଙ୍ଗୀତ କ୍ଷେତ୍ରରେ ୧୮୯୦ ବେଳକୁ; ରେଡ଼ିଓ ବାହାରିବା ଆଗରୁ । ଏଇ ଅଭ୍ୟନ୍ତରୀଣ ବଜାରରେ ପ୍ରଥମେ ପରୀକ୍ଷିତହୋଇଚି ଉତ୍ପନ୍ନପଣ୍ୟର ବିକ୍ରୟଯୋଗ୍ୟତା । ଆମେରିକାର ନାଗରିକ ଏକ ମିଶ୍ରସଂପ୍ରଦାୟ; ଅର୍ଥାତ୍, ପାଠକ / ଶ୍ରୋତା / ଦର୍ଶକ ଭିନ୍ନଭିନ୍ନ ସଂସ୍କୃତିର ଉତ୍ତରାଧିକାରୀ; ଏମିତି ପଦାର୍ଥ ତେଣୁ ତିଆରିହେବ ଯା ଏକାବେଳକେ ଖୁସିକରିପାରିବ ଗ୍ରୀକ୍, ଇଟାଲିଆନ୍, ଜର୍ମନ୍, ଜ୍ୟୁ କି ନିଗ୍ରୋ-ସମସ୍ତଙ୍କୁ; ସମସ୍ତେ କିଣିବେ । ନିର୍ବାକ୍ ଚଳଚିତ୍ର ଯୁଗରେ ହଲିଉଡ୍ ଯେ ବିଖ୍ୟାତହୋଇଚି ଜଗତ୍‌ସାରା, ତାର ପରୀକ୍ଷାଭୂମି ମଧ୍ୟ ମାର୍କିନ୍‌ମୁଲୁକ । ସବାକ୍ ସିନେମା (=ଟକି)ର ଭାଷା ହୁଏତ ଅନ୍ତରାୟ ହୋଇଥାନ୍ତା ସାଫଲ୍ୟର, କାହିଁକିନା, ଜାତିରାଷ୍ଟ୍ର ମାତ୍ରକେ ଆପଣା ସିନେମା-ଶିଳ୍ପର ପରିପୋଷକ । ସେ ପ୍ରତିବନ୍ଧକ ଦୂରକରିଦେଇଚି 'ଡବିଙ୍ଗ୍' ଭଳି ପ୍ରଯୁକ୍ତି; ତା ସାଙ୍ଗକୁ ଜୁଟିଚି ନାନାଦି ଧ୍ୱନିବିସ୍ଫୋରଣ; ଯେପରି, ବନ୍ଧୁକ-ପିସ୍ତଲ୍ ଆବାଜ, ଗାଡ଼ି କି ଉଡ଼ାଜାହାଜ ଭାଙ୍ଗିପଡ଼ିବା ଶବ୍ଦ; ଅର୍ଥାତ୍, କୋଳାହଳ, ଯା ଭାଷାର ବିକଳ୍ପ । ଅନ୍ୟ ଶବ୍ଦରେ, ଇଣ୍ଡଷ୍ଟ୍ରିଆଲ୍ ଜମାନା ସୁରୁହେବା ବେଳକୁ ଆମେରିକାର ଅଭ୍ୟନ୍ତରୀଣ ବଜାରକୁ ସାଂସ୍କୃତିକ ବ୍ୟବଧାନ ଏପରି ଖଣ୍ଡିତକରି ରଖିଚି ଯେ, ଯୁକ୍ତରାଷ୍ଟ୍ର ପ୍ରତିଭାତ ହୋଇଚି ବୈଚିତ୍ର୍ୟମୟ ଇହଜଗତର ଅବିକଳ ପ୍ରତିରୂପ । ସେଇ ଜଗତର ଗ୍ରାହକର ବିଭିନ୍ନତାକୁ ଯିଏ ସନ୍ତୁଷ୍ଟକରିପାରିବ, ସସାଗରା ମେଦିନୀ କେବଳ ତା ବଜାରର ପରିସୀମା ।

ପାଶ୍ଚାତ୍ୟ ଶିକ୍ଷାୟତନରୁ ପ୍ରଚାରିତ ଏ ଭାବାଦର୍ଶ ଯେପର୍ଯ୍ୟନ୍ତ ନିର୍ଦ୍ଧାରକ ଭୂମିକାରେ ଅବତୀର୍ଣ୍ଣହୋଇନାହିଁ, ସାଂସ୍କୃତିକ ବିଶ୍ୱାୟନର ତୀବ୍ରତା ଅନୁଭୂତ ହୋଇନାହିଁ ଭାରତରେ । ଏକ୍ଷଣି କିନ୍ତୁ ବିଶ୍ୱାୟନ ହିଁ ନିର୍ଦ୍ଧାରଣକରେ ସଂସ୍କୃତିର ମର୍ମାର୍ଥ, ଏବଂ ସେଇ ସୂତ୍ରରେ, ସାଂସ୍କୃତିକ ଉତ୍ପାଦନକୁ ଗତିଶୀଳକରେ ଯୋଉ ସାମ୍ରାଜ୍ୟବାଦ, ତା ଏକ ମୂଳଗତ ସଂସ୍କାର । ମୂଳଗତ, କାହିଁକିନା, ଏ ପ୍ରକାର କର୍ତ୍ତୃତ୍ୱକୁ ଫଳପ୍ରସୂ କରିବାକୁ ଦରକାର ଅନେକ ପୂର୍ବସର୍ତ୍ତର ପରିତୃପ୍ତି; ଏବଂ ଗୋଟାଏ କି ଯୋଡ଼ାଏ ନୁହେଁ, ସମସ୍ତ ପୂର୍ବସର୍ତ୍ତର ସମ୍ମିଳିତ ପରିପାକ କେବଳ ଏ କର୍ତ୍ତୃତ୍ୱ (=ହିଗେମନି) କୁ

କରିପାରେ ସଂଜ୍ଞାବଦ୍ଧ । ପ୍ରଥମ ସର୍ତ୍ତ ଔପନିବେଶିକତାର ଅବସାନ । ବିଶ୍ୱାୟନ ପ୍ରକ୍ରିୟା ତେଣୁ ଆରମ୍ଭହୋଇଯାଇଚି ଦ୍ୱିତୀୟ ମହାଯୁଦ୍ଧ ସରିଯିବା ସଙ୍ଗେସଙ୍ଗେ । କାହିଁକିନା, ଜାତିରାଷ୍ଟ୍ରର ପରିସର ବାହାରେ ଔପନିବେଶିକତା ନିର୍ମାଣକରିଥିଲା ଅଖଣ୍ଡ ବିଶ୍ୱବଜାର । ପନ୍ଦରରୁ ଅଠରଶତକ, ତିନିଶ'ବର୍ଷଯାଏଁ ଔପନିବେଶିକତା ଅବଶ୍ୟ ଆବଦ୍ଧରହିଚି ଉତ୍ତର ଓ ଦକ୍ଷିଣ ଆମେରିକା ଭିତରେ; ମାତ୍ର ଊନବିଂଶଶତକ ବେଳକୁ ଭେଦକରିଚି ଏସିଆ ଓ ଆଫ୍ରିକାର ଅଭ୍ୟନ୍ତର । ପୃଥିବୀ ବିଭାଜିତ ହୋଇଯାଇଚି ଦୁଇଟି ଶିବିର ମଧ୍ୟରେ, ଶିଳ୍ପୋନ୍ନତ ପଶ୍ଚିମ ଆଉ କୃଷିନିର୍ଭର ଉପକଣ୍ଠ । ସେ ବିଭାଜନ ଥିଲା ଏକ ଗଠନତନ୍ତ୍ର ବା ସିଷ୍ଟେମ୍‌ର ଅଂଶବିଶେଷ, ଯୋଉ ସିଷ୍ଟେମ୍ ବିଭିନ୍ନ ଉପନିବେଶର ଅର୍ଥବ୍ୟବସ୍ଥାକୁ ପରସ୍ପର ସହିତ ଯୋଡ଼ିଦେଇପାରେ; ଆଉ ଯୋଡ଼ିଦେଇ କରିପାରେ ଏକ କେନ୍ଦ୍ରୀୟ କର୍ତ୍ତୃତ୍ୱର ନିୟନ୍ତ୍ରଣାଧୀନ । ସମଗ୍ର ପୃଥିବୀର ଉତ୍ପାଦନ ଓ ବଣ୍ଟନ, ଏ ଭାବରେ ପରିଚାଳିତହେବା ଅବଶ୍ୟ ବିଶ୍ୱାୟନ ନୁହେଁ, କିନ୍ତୁ ବିଶ୍ୱାୟନ ସଦୃଶ ଏକ ସିଷ୍ଟେମ୍ ନିଷ୍ଚୟ; ଯା ଉପନିବେଶର ବିଲୋପ ସହିତ ଲୋପପାଇଯାଇଚି । ପ୍ରତିଯୋଗିତା-ରହିତ ସେଇ ଶୂନ୍ୟତାର ସୁଯୋଗନେଇଚି ଶ୍ରେଷ୍ଠଶକ୍ତିହୋଇ ମହାଯୁଦ୍ଧରୁ ବାହାରିଥିବା ଯୁକ୍ତରାଷ୍ଟ୍ର । ଏ ଏକ ଅଭିସରଣ, କ୍ଷୁଦ୍ର ଉପନିବେଶରୁ ବିଶ୍ୱବ୍ୟାପୀ ଗଠନତନ୍ତ୍ରକୁ ଉତ୍ତୀର୍ଣ୍ଣହେବା ଟ୍ରାନ୍‌ଜିସନ୍ । ଏ ଅଭିସରଣକୁ ଅବକ୍ଷଣକରିବାର ପୂର୍ବସର୍ତ୍ତ ତେଣୁ ସର୍ବୋତ୍କୃଷ୍ଟ ମହାଶକ୍ତିର ଅଭିଭାବକତ୍ୱ; ମୁଦ୍ରାସଂଚାଳନ କ୍ଷେତ୍ରରେ ଆମେରିକାର ଫେଡେରାଲ୍ ରିଜର୍ଭ ଯୋଉ ମୁରବୀପଣିଆ ଦେଖାଏ, ସମଗ୍ର ଇଉରୋପ କି ଜାପାନ ତାକୁ ମାନିନେବାକୁ ବାଧ୍ୟହୁଏ । ଠିକ୍ ସେମିତି ସମରବଳ; 'ନାଟୋ' ଯୋଉଠି ଧସାଇପଶେ, ପ୍ରକୃତରେ ତା ଆମେରିକାର ହସ୍ତକ୍ଷେପ; ଆଉ, ଯୋଉ ଦଶଟି ପ୍ରଧାନ କର୍‌ପୋରେସନ୍ ଦୁନିଆତମାମ ତଥ୍ୟସଂବହନ କି ସାଂସ୍କୃତିକପଣ୍ୟ ସରବରାହକରେ, ସେଥିରୁ ଛ'ଟି ଆମେରିକାନ୍ । ସର୍ବୋପରି, ବିଜ୍ଞାନ-ପ୍ରଯୁକ୍ତି ଓ ବାଣିଜ୍ୟପରିଚାଳନା କ୍ଷେତ୍ରରେ ତଥାକଥିତ ତୃତୀୟବିଶ୍ୱ ଯେତେ ମେଧାବୀ ବ୍ୟକ୍ତିତ୍ୱ ସୃଷ୍ଟିକରିଚି, ପ୍ରାୟ ସମସ୍ତେ ମାର୍କିନ୍ ଶିକ୍ଷାନୁଷ୍ଠାନରୁ ତାଲିମ୍‌ପ୍ରାପ୍ତ ଅନାବାସୀ । ଚୀନ୍ ଥିଲା ଅଧାଉପନିବେଶ, ତାର ଅବଲୁପ୍ତି ଘଟାଇଚି ଅଭ୍ୟନ୍ତରୀଣ ବିପ୍ଳବ, ଏବଂ ସେଥିପାଇଁ, ଶିଳ୍ପାୟନର ଆଦ୍ୟପର୍ବରେ ଚୀନ୍ ପରିହାରକରିଚି କ୍ୟାପିଟାଲିଜ୍ମ, ମାତ୍ର କେତେଟାବର୍ଷ ଭିତରେ ଧନତନ୍ତ୍ରର ବିଶ୍ୱାୟନ ଏଭଳି ଅନ୍ତର୍ଭେଦୀ ହୋଇଯାଇଚି ଯେ କମିଉନିଷ୍ଟ୍ ଚୀନ୍‌ଏକ୍ଷଣି ଆତ୍ମସତ୍ତା ହରାଇବସିଚି ବିଶ୍ୱପୁଞ୍ଜି ବଜାରରେ । ପୂର୍ବଇଉରୋପ୍ ଓ ସୋଭିଏଟ୍ ସଂଘ ବିଶ୍ୱାୟନ ବିପକ୍ଷରେ ଯାଇଚନ୍ତି; ଅର୍ଥାତ୍ ପୃଥିବୀର ତିନିଚତୁର୍ଥାଂଶ ଲୋକ ପୁଞ୍ଜିର ସର୍ବବ୍ୟାପୀ ବଜାରରେ ଅଂଶନେବାକୁ ଅସ୍ୱୀକାରକରିଚନ୍ତି; ବରଂ

ପୁଞ୍ଜିର ଗଠନତନ୍ତ୍ରକୁ ଜଣାଇଚନ୍ତି ଆହ୍ୱାନ । ତାଙ୍କ ସାଙ୍ଗରେ ଯୋଗଦେଇଚନ୍ତି ଭିଏତ୍‌ନାମ, କୁବା, ଆଙ୍ଗୋଲା ଆଉ ଗିନି । ଧନତନ୍ତ୍ରର ଏଇ ବିପକ୍ଷ ଶିବିର ପୁଣି ସମରାସ୍ତ୍ର, ମୂଳଧନ, ଶିଳ୍ପପ୍ରଯୁକ୍ତି ଓ ତାଲିମ୍ ଯୋଗାଇବା ସକାଶେ ତୃତୀୟବିଶ୍ୱ ପାଇଁ ହୋଇଚି ବିକଳ୍ପ ଉତ୍ସ; ବିଶେଷତଃ ଜୋଟ୍‌ନିରପେକ୍ଷ ଭାରତ, ମିଶର ଓ ସିରିଆ ସକାଶେ । ବିକଳ୍ପ ଏଇ ଉତ୍ସ ନଥିଲେ, ସ୍ୱାଧୀନତାପରବର୍ତ୍ତୀ ପଚିଶବର୍ଷ ଭିତରେ ଇସ୍ପାତ, ପେଟ୍ରୋଲ୍ ଓ ପେଟ୍ରୋକେମିକାଲ୍ ଶିଳ୍ପଗଠନରେ ଯୋଉ ଅଗ୍ରଗତି ହାସିଲ୍‌କରିଚି ଭାରତ, ସମ୍ଭବ ହୋଇନଥାନ୍ତା ସହଜରେ, ବରଂ ପାକିସ୍ଥାନ୍ ପରି ଭାରତ ବି ହୋଇଥାନ୍ତା, ଅନ୍ତତଃ ସମରାସ୍ତ୍ର ଉତ୍ପାଦନ କ୍ଷେତ୍ରରେ, ଯୁକ୍ତରାଷ୍ଟ୍ରର ବଟସ୍କର । ରାଜନୀତି, ଅର୍ଥନୀତି, ଶିଳ୍ପାୟନ ଓ ସମରଶକ୍ତିର ଏ ବିକଳ୍ପ ବିଦ୍ୟମାନ ଥିବାଯାଏଁ ବୁର୍ଜୋୟାଶ୍ରେଣୀ ନିଶ୍ଚିନ୍ତ ହୋଇପାରିନାହିଁ; ମାତ୍ର ବିଂଶଶତକର ଅନ୍ତିମ ଲଗ୍ନରେ ବିକଳ୍ପର ଅପସାରଣ ସାଙ୍ଗକୁ ଘଟିଯାଇଚି ବିଶ୍ୱବଜାର ସିଷ୍ଟେମ୍‌ରେ ଚୀନ୍‌ର ନିମଜ୍ଜନ । ଧନତନ୍ତ୍ର ତେଣୁ ପରିଣତହୋଇଚି ଏକମାତ୍ର ଗ୍ଲୋବାଲ୍ ସିଷ୍ଟେମ୍; ତଥାପି ହିଗେମନିର ବିସ୍ତାରବୃତ୍ତ ସଂପୂର୍ଣ୍ଣ ହେବନାହିଁ, ଜାତୀୟତାବାଦ ଓ ତହିଁରେ ଅନୁପ୍ରାଣିତ ବୁର୍ଜୋୟା ଯଦି ବିକଳ୍ପ ସଂଧାନରେ ରହେ ନିରଳସ । ଅଭିଜ୍ଞତାରୁ ଦିଶୁଚି, ନବ୍ୟଉଦାରବାଦ (୧୯୮୯) ଭାରତର ବାମପନ୍ଥୀଙ୍କୁ ବିବ୍ରତକରିନାହିଁ ବିଶେଷ; ମାତ୍ର ଶାସକଶ୍ରେଣୀ ବାଧହୋଇଚି ମଧ୍ୟପନ୍ଥା ଅନୁସରଣକରିବାକୁ । ଅର୍ଥାତ୍ ଲୋକଙ୍କ ହାତକୁ ପଇସା ଆସୁଚି, ଶିଳ୍ପପତି ବି ଡରୁନାହାଁନ୍ତି ପ୍ରତିଯୋଗିତାକୁ, ରାଷ୍ଟ୍ରର ପରିପୋଷକତା ବି ତାଙ୍କୁ ଦରକାର ହେଉନାହିଁ, ବହୁଜାତିକ ଶିଳ୍ପସଂଗଠନର କନିଷ୍ଠ ଅଂଶୀଦାର ହେବାକୁ ତେଣୁ କୁଣ୍ଠିତନୁହେଁ ବୁର୍ଜୋୟା । ଜୋଟ୍‌ନିରପେକ୍ଷତା କଥା ବି ଏବେ କେହି ମୁହଁରେ ଧରେନା । ଚୀନ୍‌ର ରାଷ୍ଟ୍ରପ୍ରଧାନ ତ କହିଦେଇଚନ୍ତି, ବିରାଡ଼ି ମୂଷା ଧରିପାରୁଥିବାଯାଏଁ, ତା ଦିହର ରଙ୍ଗ ନେଇ ତର୍କବିତର୍କ ଅବାନ୍ତର ।

କିନ୍ତୁ ଦୁନିଆସାରା ମୁଦ୍ରାସଂଚାଳନକୁ ଏକୀଭୂତ କରିବାପାଇଁ ଦରକାର ହୋଇଚି ନୂଆପ୍ରକାର ପ୍ରଯୁକ୍ତି, ଉତ୍ପାଦନକ୍ଷମ ପୁଞ୍ଜିକୁ ଯା ଦେଇପାରେ ଛେଦହୀନ ଗତି, ଏପରିକି ଏକ ଇନ୍‌ଫର୍‌ମେସନ୍ ହାଇଓୟେ, ଜାତିରାଷ୍ଟ୍ରର ସୀମାପରିସୀମାକୁ ଯା କରିଦେଇପାରେ ଛିଦ୍ରମୟ; ଆଉ ସେଇ ଛିଦ୍ରପଥଦେଇ ସଂବାହିତହୁଏ ଟଙ୍କାପଇସା କାରବାରଜନିତ ଖବରାଖବର, ବେପାରବଣିଜ ସଂକ୍ରାନ୍ତ ନିଷ୍ପତ୍ତି, ଅବସରବିନୋଦନର ନାନାବିଧ ଉପକରଣ; ଏପରିକି, ବ୍ୟକ୍ତିଗତ ଚିଠିପତ୍ର । ପରିଣାମ ତେଣୁ ତଥ୍ୟ ଓ ଯୋଗାଯୋଗର କମୋଡିଫିକେସନ୍ । ତାଠୁଁ ଗୁରୁତ୍ୱପୂର୍ଣ୍ଣ ଶ୍ରମଶକ୍ତିର ବିଶ୍ୱାୟନ, ଯା ଶ୍ରମଶକ୍ତିପ୍ରୟୋଗ ଇତିହାସରେ ଏକ ନବପର୍ଯ୍ୟାୟ । କାହିଁକିନା, ପରିଶ୍ରମ ସଂବାହିତହୁଏ ଇନ୍‌ଫର୍‌ମେସନ୍ ହାଇଓ୍ୱେ ବାଟଦେଇ ସାରାପୃଥିବୀକୁ; ସେ ଶ୍ରମର ବିକ୍ରେତା ହୁଏତ କୋଉହେଲେ

ଜାତିରାଷ୍ଟ୍ରର ପରିସରରେ ରହୁଛି । ଅର୍ଥାତ୍, ପ୍ରକୃତ ପ୍ରସ୍ତାବରେ ଶ୍ରମ ସଂବାହିତହେଉଚି ଦୁଇଟି ଜାତିରାଷ୍ଟ୍ର ମଧ୍ୟରେ; କାଳ୍ପନିକ କୋଉ ବିଶ୍ୱ ସହିତ କାଳ୍ପନିକ କୋଉ ବିଶ୍ୱନାଗରିକର ନୁହେଁ । ପଣ୍ୟ ଓ ପରିସେବା, ଏପରିକି ଅର୍ଥନୀତିକ ପଣ୍ୟ (ମୁଦ୍ରା, ହୁଣ୍ଡି, ଚେକ୍)ର ବିନିମୟ ଯେପର୍ଯ୍ୟନ୍ତ ଏକ ଦେଶରୁ ଅନ୍ୟ ଦେଶକୁ ବିନାସର୍ତ୍ତରେ ଯାଇ ନପାରୁଚି, ତଥ୍ୟପ୍ରଯୁକ୍ତିକୁ ବିଶ୍ୱାୟନହିଁ ସୃଷ୍ଟିକରିଚି ବୋଲି କହିବା ଅସଙ୍ଗତ । ଏଇ ଯଦି ସାମ୍ରାଜ୍ୟବାଦ, ଔପନିବେଶିକତା ତେବେ ତଥ୍ୟପ୍ରଯୁକ୍ତିକୁ ଜନ୍ମଦେଲାନାହିଁ କାହିଁକି ? କାହିଁକିନା, ଉପନିବେଶର ଅଧିବାସୀ ଥିଲେ ରଜାର ପ୍ରଜା; ଶ୍ରମବିକ୍ରେତା ବା ପ୍ରଲେତାରିଏତ୍ ନୁହେଁ । ଆଜି ପ୍ରଲେତାରିଏତ୍‌ର ସଂଖ୍ୟା, ଅବସ୍ଥାନ, ବୈଚିତ୍ର୍ୟ ଯୋଉ ମାତ୍ରାରେ ବଢୁଚି, ଉପନିବେଶରେ ଥିଲା ଅକଳ୍ପନୀୟ । ତେଣୁ, ଖାଲି ପୁଞ୍ଜି ନୁହେଁ, ଶ୍ରମ ମଧ୍ୟ ବ୍ୟବହାରକରୁଚି ଇନ୍‌ଫର୍‌ମେସନ୍ ହାଇୱେକୁ । ଅଥଚ ଶ୍ରମ ରହିଚି ଏଯାବତ୍ ବିଶ୍ୱାୟନ ବାହାରେ; ଅର୍ଥାତ୍ ତୃତୀୟବିଶ୍ୱରୁ ଶିଳ୍ପୋନ୍ନତ ଦେଶକୁ ଶ୍ରମଜୀବୀର ଯିବାଆସିବା ଏକ୍ଷଣି ସର୍ତ୍ତାଧୀନ । ତଥ୍ୟପ୍ରଯୁକ୍ତି, ଅର୍ଥନୀତି, ସଂସ୍କୃତି, ଏକାସାଙ୍ଗରେ ଯୋଉ ଜଟିଳ ଓ ଅଖଣ୍ଡ ଗଠନତନ୍ତ୍ରକୁ ଜନ୍ମଦିଏ, ତାକୁ ଶାସନରେ ରଖିବାକୁ ଦରକାର ଯେହେତୁ ସର୍ବମାନ୍ୟ ବିଶ୍ୱସଂସ୍ଥା, ତିଆରିହୋଇଚି ବିଶ୍ୱବ୍ୟାଙ୍କ୍, ଆନ୍ତର୍ଜାତିକ ମୁଦ୍ରାକୋଷ, ଗ୍ୟାଟ୍ କି ଡବ୍ଲିଉଟିଓ, ଯିଏ ଜାରିକରିପାରିବ ଦୁନିଆସାରା ଏକରୂପ ସଂଗତି । ସେଥିପାଇଁ ତିଆରିକରାଯାଇଚି ନାନାରକମ ପୂର୍ବସର୍ତ୍ତ, ବାଧ୍ୟବାଧକତା, ଦଣ୍ଡବିଧି, ଯା ଇଉରୋପ୍ କି ଆମେରିକା ଉପରେ ପ୍ରୟୋଗକରାଯାଏନା; ପ୍ରୟୋଗକ୍ଷେତ୍ର ଏକମାତ୍ର ନବ୍ୟ ଉଦାରବାଦ ଗଠିତକରିଥିବା ସାମ୍ରାଜ୍ୟ । ସେ ସାମ୍ରାଜ୍ୟକୁ, ପୁଞ୍ଜି ବିନିମୟରେ ଏପରି ନିୟନ୍ତ୍ରଣ ଜାରିକରିବାକୁ ବାଧ୍ୟକରାଯାଏ, ଯା ଆମେରିକାର ଆଇନ୍‌କାନୁନ୍ ସହିତ ସୁସମଞ୍ଜସ । ଅନ୍ୟ ଶବ୍ଦରେ, ଯୋଉ ସାମ୍ରାଜ୍ୟର ରାଜ୍ୟ ନାହିଁ କି ପ୍ରଜା ନାହିଁ, ଅଛି ଖାଲି ୱାସିଙ୍ଗ୍‌ଟନ୍‌ରେ ରାଜଧାନୀ, ହଜାର ହଜାର ମାଇଲ୍ ଦୂରରେ ଅବସ୍ଥିତ ଜାତିରାଷ୍ଟ୍ରର ଶାସନତନ୍ତ୍ରକୁ ଓଲଟପାଲଟ କରିଦେଇପାରେ ପୁଞ୍ଜିବିନିଯୋଗର ଲୋଭଦେଖାଇ । ସେ ପୁଞ୍ଜି ଅବଶ୍ୟ ପ୍ରାଇଭେଟ୍ କ୍ୟାପିଟାଲ୍ ଯା ଅଧିକ ଲାଭ ଆଶାରେ ଉଡ଼ିଯାଇପାରେ ଯତ୍ରତତ୍ର । ତାକୁ ସୁରକ୍ଷାଦେବାକୁ ଦରକାର ନୂଆରକମ ସାମରିକ ପ୍ରଯୁକ୍ତି; ଯେପରି, ଅଟୋମ୍ୟାଟିକ୍ ବ୍ୟାଟ୍ଲ୍‌ଫିଲ୍ଡସ୍ ଯା ଅବିଳମ୍ବେ ଓ ଅମୋଘଭାବେ ଧ୍ୱଂସକରିଦେଇପାରେ ଶତ୍ରୁକୁ; ଯେପରି, ପୂର୍ବତନ ଯୁଗୋସ୍ଲାଭିଆ କି ବିଦ୍ୟମାନ ଇରାକ୍ / ଆଫ୍‌ଗାନିସ୍ଥାନ୍ । ଏ ଭୂଖଣ୍ଡକୁ ବ୍ୟବହାରକରାଯାଇଚି ନୂତନ ପ୍ରଯୁକ୍ତିର ପରୀକ୍ଷାଗାର ଭାବରେ । ମାତ୍ର ଆକ୍ରମଣକୁ ନୈତିକ ବୈଧତା ଯୋଗାଇଦେଇଚି ଜାତିସଂଘ । କସ୍‌ଭୋ ଆକ୍ରମଣକରିଚି

'ନାଟୋ' । ମାତ୍ର କହିବା ବାହୁଲ୍ୟ, ଜାତିସଂଘ ଓ ନାଟୋ, ଉଭୟ ମାର୍କିନ୍ ଯୁକ୍ତରାଷ୍ଟ୍ରର ଛଦ୍ମବେଶ ମାତ୍ର । ଅନ୍ୟାୟ ଆକ୍ରମଣକୁ ନୈତିକ କର୍ତ୍ତବ୍ୟ ପ୍ରତିପନ୍ନକରିବାକୁ ବାରମ୍ବାର ବ୍ୟବହାରକରାଯାଇଚି ସେକିଉରିଟି କାଉନ୍‌ସିଲ୍‌କୁ, ଯଦିଓ ଏ ଧୂର୍ତ୍ତତା ଆରମ୍ଭହୋଇଚି ପଚାଶଦଶକରୁ କୋରିଆରେ ଯୁଦ୍ଧଲାଗିବା ବେଳରୁ । ମଝିରେ କୋଡ଼ିଏବର୍ଷ, ବିଶ୍ୱସଂଗଠନଗୁଡ଼ିକ ସହିତ ଯୁକ୍ତରାଷ୍ଟ୍ରର ଏ ଭଙ୍ଗୁର ଅଭିସଂଧି ମାଡ଼ଖାଇଚି ଭିଏତ୍‌ନାମ୍‌ରେ ଚାଲିଚି ଯେତେବେଳେ ମୁକ୍ତିସଂଗ୍ରାମ । ବୈପ୍ଳବିକ ସେଇ କାଳମାତ୍ରା ବିମ୍ବିତହୋଇଚି ଜାତିସଂଘର ସନଦ : ଚାର୍ଟର୍ ଅବ୍ ଇକନମିକ୍ ରାଇଟ୍‌ସ୍ ଆ୍ୟାଣ୍ଡ୍ ଡିଉଟିଜ୍ ଅବ୍ ଷ୍ଟେଟ୍‌ଜ୍-ରେ । ତଦନୁସାରେ ସଦସ୍ୟ ରାଷ୍ଟ୍ର ବିଦେଶୀ ପୁଞ୍ଜିର ବିନିଯୋଗ ଉପରେ ଖାଲି କର୍ତ୍ତୃତ୍ୱ ପ୍ରୟୋଗକରିବେନାହିଁ, ଆବଶ୍ୟକ ସ୍ଥଳେ ଜାତୀୟକରଣ ମଧ୍ୟ କରିପାରିବେ ବହୁଜାତିକ ବାଣିଜ୍ୟ ସଂସ୍ଥାକୁ, କରିପାରିବେ ବୈଦେଶିକ ସଂପଦର ମାଲିକାନାକୁ ଅଧିଗ୍ରହଣ, ହସ୍ତାନ୍ତର ଆଉ ନିୟନ୍ତ୍ରଣ । ଷାଠିଏଦଶକରେ ଯୋଉ ବୈପ୍ଳବିକ ରୂପ ପରିଗ୍ରହକରିଚି ଜାତୀୟତାବାଦ, ସେଇଥିରୁ ଉପୁଜିଛି ବିଶ୍ୱଶକ୍ତିଗୁଡ଼ିକ ଭିତରେ ଏଇ ଭାରସାମ୍ୟ; ଏବଂ ସେଥିରୁ ଉତ୍ସାରିତହୋଇଚି ତୃତୀୟବିଶ୍ୱରେ ଅର୍ଥନୀତିକ-ଜାତୀୟତାବାଦ । ସେଇ ଭାରସାମ୍ୟ ଅଭାବରେ ସେକିଉରିଟି କାଉନ୍‌ସିଲ୍ ପୁନର୍ବାର ପରିଣତହୋଇଚି ମାର୍କିନ୍ ବଚସ୍କର; ଓର୍‌ଲ୍ଡ ଟ୍ରେଡ୍ ଅର୍ଗାନାଇଜେସନ୍ ଅପହରଣକରିଚି ଅର୍ଥନୀତିକ ସ୍ୱାଧୀନତା; ଏବଂ ଇରାକ୍-ଆକ୍ରମଣକୁ ସମର୍ଥନକରିଚନ୍ତି ଜାତିସଂଘର ସେକ୍ରେଟାରୀ-ଜେନେରାଲ୍ କୋଫି ଆନାନ୍; ଘାନା ତାଙ୍କ ଜନ୍ମଭୂମି, ଯୋଉ ଘାନା ପ୍ରସବକରିଚି ପ୍ୟାଟ୍ରିସ୍ ଲୁମୁମ୍ବା-ଙ୍କୁ !

ମାର୍କିନ୍‌ଆକ୍ରମଣ ଆଇନ୍‌ର ଅନୁମୋଦନ ପାଇଯାଇଚି ସିନା, ଆକ୍ରମଣକୁ ସର୍ବଜନଗ୍ରାହ୍ୟ କରିବାକୁ ଦରକାର ଦୁନିଆର ଚିନ୍ତାଶୀଳଲୋକଙ୍କ ନୈତିକ ସମର୍ଥନ । ସେ ସମର୍ଥନର ଭାବାଦର୍ଶ, ଫୁକୁୟାମା ଯାହାକୁ କହିଚନ୍ତି 'ଇତିହାସର ଇତି' । ତୃତୀୟବିଶ୍ୱକୁ ଯୋଉ ବାହକ ବହନକରିଆଣୁଚନ୍ତି ସେ ବାର୍ତ୍ତା, ହରେକ ରକମ ସେଇ ଏନ୍‌ଜିଓ ଏକ୍ଷଣି ଛତୁଫୁଟିବା ପରି ସର୍ବବ୍ୟାପୀ । ସଦ୍ୟଉଦ୍‌ଭାବିତ ଏ କୌଶଳ ଆନ୍ତନିୟ ନେଗ୍ରିଙ୍କୁ ସ୍ମରଣକରାଇଦେଇଚି, ତା ଚେର ନିହିତଅଛି କେମିତି ରୋମାନ୍ ସାମ୍ରାଜ୍ୟଦ୍ୱାରା ପ୍ରବର୍ତ୍ତିତ 'ରାଇଟ୍‌ସ୍ ଅବ୍ ଇଣ୍ଟର୍‌ଭେନ୍‌ସନ୍' ତତ୍ତ୍ୱରେ । ମାର୍କିନ୍‌ମୁଲୁକର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟଗୁଡ଼ିକରୁ ପ୍ରଚାରିତହେଉଚି ତେଣୁ 'ଜଷ୍ଟ୍ ୱର୍' (=ନ୍ୟାଯ୍ୟ ଯୁଦ୍ଧ)ର ଭୂୟୋଦର୍ଶନ; ଅର୍ଥାତ୍ ଅପରାପର ସାର୍ବଭୌମ ରାଷ୍ଟ୍ର ଉପରେ ଯୁକ୍ତରାଷ୍ଟ୍ରର ଏ ସାମରିକ ହସ୍ତକ୍ଷେପ ପୁରାପୁରି ପରାର୍ଥପରତା; ମାନବାଧିକାର ରକ୍ଷାକରିବା କେବଳ ତାର ଉଦ୍ଦେଶ୍ୟ । ଆମେରିକା ଦୃଷ୍ଟିରେ ଯିଏ 'ପର' (ଦ ଅଦର୍) କି ପାଜି (ରୋଗ୍), ତାଙ୍କ

ପ୍ରତି ଆକ୍ରୋଶକୁ ଢ଼ାଙ୍କିପକାଇବାକୁ ସାର୍ବଭୌମତ୍ୱ ଆଉ ନାଗରିକତ୍ୱ ଭଳି ବଦ୍ଧମୂଳ ରାଜନୀତିକ କ୍ୟାଟିଗରିଗୁଡ଼ିକୁ ଚୂନାକରିଦେବାକୁ ଉଦ୍ୟତ ଏକ୍ଷଣି ଯୁକ୍ତରାଷ୍ଟ୍ର; କାହିଁକିନା, କେୟେନ୍ସପ୍ରବର୍ତ୍ତିତ ଜନମଙ୍ଗଳନୀତି ଇଉରୋପରୁ ଆସ୍ତେଆସ୍ତେ ବିଦାହୋଇଯାଉଚି, ଅଥଚ ତୃତୀୟବିଶ୍ୱରେ ନାଗରିକତ୍ୱ ସହିତ ଯୋଡ଼ିହୋଇ ରହିଚି ରୁଜିରୋଜଗାର, ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ନିତ୍ୟାବଶ୍ୟକ ସମ୍ବଳ ସାଙ୍ଗକୁ ଜାତୀୟତାବାଦ (=ବିଦେଶୀ ଶକ୍ତି ସାଙ୍ଗରେ ଲଢ଼ିବା ଅଧିକାର) । ସେଇ ରାଷ୍ଟ୍ର ଆସନରେ ବିଶ୍ୱାୟନ ବସାଇବାକୁ ଚାହୁଁଚି ମୁକ୍ତକଚ୍ଛ ବଜାର । ଜନମଙ୍ଗ କି ନାଗରିକଅଧିକାର ଭଳି ବାୟବୀୟ ଆଇଡିଆ ପରିବର୍ତ୍ତେ ପୃଥିବୀବ୍ୟାପୀ ଏପରି ବଜାର ଯା ସବୁମଣିଷଙ୍କୁ ଦେଇପାରେ ଅତିପ୍ରତ୍ୟକ୍ଷ କିଣାବିକାର ସମାନ ଅଧିକାର । ମାତ୍ର ଏ ବଜାରକୁ ଚାଳନକରେ ଯେହେତୁ ଧନତନ୍ତ୍ର, ଆୟର ପୁନର୍ବଣ୍ଟନ ନିମ୍ନଗତି ନହୋଇ, ହେଉଚି ଉର୍ଦ୍ଧ୍ୱମୁଖୀ । ଧନତନ୍ତ୍ରର ଏଇ ସ୍ୱାଭାବିକ ପ୍ରବଣତା ଉପରେ ହସ୍ତକ୍ଷେପ କରିପାରେ ତେଣୁ ରାଷ୍ଟ୍ର ଆଉ ନାଗରିକତ୍ୱ; କିନ୍ତୁ ରାଷ୍ଟ୍ରକୁ ସାର୍ବଭୌମତ୍ୱରୁ ବଞ୍ଚିତକରାଯିବା ଅର୍ଥ ଉଭୟ ରାଷ୍ଟ୍ର ଓ ନାଗରିକତ୍ୱ ଭଳି ପ୍ରତିଷ୍ଠିତ ପ୍ରତୀତିର ପୁନର୍ଗଠନ । ଭୌଗୋଳିକ ସୀମା ଯେହେତୁ ଛିଦ୍ରମୟ, ତାର ପୁନର୍ଗଠନ ଅନାବଶ୍ୟକ; ମାତ୍ର ନାଗରିକତ୍ୱ ହିଁ ସାର୍ବଭୌମତାକୁ କରେ ଇନ୍ଦ୍ରିୟଗ୍ରାହ୍ୟ; ପୁଣି ସମାନାଧିକାର ଭିତ୍ତିରେ ସକଳ ନାଗରିକଙ୍କୁ କରେ ସାଧାରଣସ୍ୱାର୍ଥ ପ୍ରତି ଏକନିଷ୍ଠ । ସେ ନିଷ୍ଠାକୁ ଭାଙ୍ଗିଦିଆଯାଇପାରେ ଧର୍ମ ଜାତି ସଂପ୍ରଦାୟ ପ୍ରଭୃତି ଏଥ୍‌ନିକ୍ ବିଭାଜନ ପ୍ରୟୋଗକରି; ତେବେଯାଇ କ୍ଷମତା-ରାଜନୀତି ହୋଇପାରେ ବ୍ୟକ୍ତିପରିଚୟ ଦ୍ୱାରା ନିର୍ଦ୍ଧାରିତ । ଅର୍ଥାତ୍ ରାଜନୀତି ହୋଇପାରେ ଆଇଡେନ୍‌ଟିଟି ପଲିଟିକ୍ସ । ସମାନଅଧିକାର ବା ଇକୋଆଲିଟି ଥିଲା ଯୋଉଠି ନାଗରିକର ଜନ୍ମଗତ ଦାବି, ସେଠି ଆସି ରାଜତ୍ୱକରିପାରେ ଉଚ୍ଚନିଚ ଭେଦାଭେଦ । ସାର୍ବଭୌମ ରାଷ୍ଟ୍ରର ନାଗରିକତ୍ୱ ଏ ଭାବରେ ଖଣ୍ଡଖଣ୍ଡ ହେଉଥିଲେ ସୁଦ୍ଧା, ବିଶ୍ୱନାଗରିକର ଅଧିକାର ନିମ୍ନବର୍ଗକୁ ମିଳିନାହିଁ; ମିଳିବ ସେଇମାନଙ୍କୁ ଯିଏ ବିନାକଷ୍ଟରେ ବୁଲିଆସିପାରିବେ ଦୁନିଆସାରା, ପାଠପଢ଼ିପାରିବେ, ବେପାର କି ଚାକିରିକରିପାରିବେ, ଘରତୋଳିପାରିବେ ଆଜି ବମ୍ବେରେ ତ କାଲି ବଷ୍ଟନ୍‌ରେ । ମାତ୍ର ଗତରଖଟିବାକୁ ଯିଏ ଯିବ ସୌଦିଆରବ କି କୁଏତ୍, ବିବେଚିତହେବ ସେଠି ବହିରାଗତ ବିଦେଶୀ, ପ୍ରାୟ କୟେଦୀ । ନିଜଦେଶ ଭିତରେ ମଧ୍ୟ ତା ଅବସ୍ଥା ଅଲଗା ନୁହେଁ, ବସ୍ତିବାସୀ, ଗୃହହୀନ, କର୍ମହୀନ, ଭୂମିହୀନ, କାଙ୍ଗାଳୀ । ଖାଲି ସାଂଘାଇ ସହରରେ ନିଜ ଚାଷଜମିରୁ ବିତାଡ଼ିତ ଏଇ ଅ-ନାଗରିକଙ୍କ ସଂଖ୍ୟା ହଜାର ହଜାର । ଲୁଚିଛପି ଦିନକଟାନ୍ତି; ଦେଖିଲେ ଧରିନେଇ ଖୁଆଡ଼ରେ ପୁରେଇଦେବ ପୁଲିସ୍ । ବିଶ୍ୱନାଗରିକର ଏ ଦୁର୍ଗତି କାହିଁକି ? କାହିଁକିନା, ପୁଞ୍ଜି

ସିନା ବାଧା ମାନେନା, ଶ୍ରମ କିନ୍ତୁ 'ନ୍ୟାସନାଲ୍'; ନିଜ ରାଷ୍ଟ୍ରର ସୀମାଲଂଘନ ମାନେ, ଶ୍ରମ ସକାଶେ ସାକ୍ଷାତ୍ ସ୍ୱର୍ଗାରୋହଣ ! ଅନ୍ୟ ଶବ୍ଦରେ, ଜାତିରାଷ୍ଟ୍ରର ଉଚ୍ଛେଦ ଚାହେଁନା ଗ୍ଲୋବାଲାଇଜେସନ୍ ସତକୁ ସତ; ଚାହେଁ ଏଭଳି ଜାତିରାଷ୍ଟ୍ର ଯିଏ ଶ୍ରମସଂବହନ ପ୍ରତି କେଠାର, କିନ୍ତୁ ପୁଞ୍ଜି ପାଇଁ ଯାର ସାହାଣମେଲା । ଗରିବ ଆହୁରି ଗରିବହେବା ତେଣୁ ଅବଧାରିତ, ଥିଲାବାଲା ଆହୁରି ହୃଷ୍ଟପୁଷ୍ଟ ।

ଆର୍ଥରାଜନୀତିକ ଏ ପୁନର୍ଗଠନ ସ୍ୱାଭାବିକଭାବେ ଦାବିକରିବ କଲ୍‌ଚର୍ ବା କୃଷ୍ଟିର ପୁନର୍ବିନ୍ୟାସ, ଯୋଉ ପୁନର୍ବିନ୍ୟାସର ଚରିତ୍ର ଗୋଟାପଣେ ଗ୍ଲୋବାଲ୍ । କାହିଁକିନା, ଜଗତ୍‌ବ୍ୟାପୀ ଧନତାନ୍ତ୍ରିକ ସଭ୍ୟତା, ସଂସ୍କୃତିର ସ୍ଥାନୀୟ ଆଂଚଳିକ ଓ ଜାତୀୟ ବୈଚିତ୍ର୍ୟକୁ ଏପରି ବିଦୀର୍ଣ୍ଣକରିଦେଉଚି ଯେ ମାନବପ୍ରଜାତି ଅଚିରାତ୍ ପରିଣତହେବ ଏକାଙ୍ଗ ସଭ୍ୟତାର ବିଭିନ୍ନ ଅବୟବବିଶେଷ । କାହିଁକିନା, ଗଭୀରତମ ସ୍ତରରେ ଏ ସାରୂପ୍ୟକୁ ଗଠିତକରୁଚି ଯୋଉ ଅପ୍ରତିରୋଧ୍ୟ ଶକ୍ତି, ତା ସାଂସ୍କୃତିକ ଉତ୍ପାଦନର ଆଦ୍ୟୋପାନ୍ତ ପଣ୍ୟକରଣ ବା କମୋଡିଫିକେସନ୍ । ମାତ୍ର ଆନୁଷଙ୍ଗିକ ସ୍ତରରେ ଇନ୍ଦ୍ରିୟଗ୍ରାହ୍ୟ ରୂପ ପରିଗ୍ରହକରେ ଯେତେବେଳେ ସଂସ୍କୃତି, ଏ ସଭ୍ୟତା ସେତେବେଳେ ବିଭିନ୍ନତା କି ବୈଚିତ୍ର୍ୟକୁ ଖାଲି ଉତ୍ସାହଦିଏନା, ନିଜେ ଉତ୍ପନ୍ନକରେ ବିବିଧତା ଓ ବୈଚିତ୍ର୍ୟ । ଉତ୍ପନ୍ନକରେ, କାହିଁକିନା, ଅଭିନ୍ନ ପଦାର୍ଥର ବିଭିନ୍ନ ଆଙ୍ଗିକ ସୃଷ୍ଟିକରିପାରେ ପଣ୍ୟବାଛିବାର ସ୍ୱାଧୀନତା ଭଳି ବିଭ୍ରମ । ଏ ବିଭ୍ରମକୁ ବାଦ୍‌ଦେଲେ ମାର୍କେଟ୍ ହୋଇଯିବ ଗତାନୁଗତିକ, ନିଷ୍ଫଳ । ଧନତାନ୍ତ୍ରିକ ସଭ୍ୟତା ଅବଶ୍ୟ ସୌନ୍ଦର୍ଯ୍ୟସୃଷ୍ଟିକୁ ବି ଉତ୍ସାହଦିଏ, କାହିଁକିନା, ଇସ୍‌ଥେଟିସାଇଜେସନ୍ ଦେଇପାରେ ବିନିମୟମୂଲ୍ୟକୁ ଉର୍ଦ୍ଧ୍ୱଗତି, ଇସ୍‌ଥେଟିସାଇଜେସନ୍ ଓ ମନିଟାଇଜେସନ୍ ଯେହେତୁ ପରସ୍ପର ପରିପୂରକ । ଉପଭୋଗର ଏଭଳି ପରିମଣ୍ଡଳରେ 'ସଂସ୍କୃତି' ହେବା ଉଚିତ ଇଉସ୍‌ଭ୍ୟାଲିଉର ସ୍ୱତଃସ୍ଫୂର୍ତ୍ତ ଉତ୍ପାଦନ ଓ ସାମୂହିକ ଉପଭୋଗ; ଅର୍ଥାତ୍, ଏଭଳି ପ୍ରୟୋଜନ ଯାର ତୁଷ୍ଟିବିଧାନ ଦରକାରକରେନା ବିନିମୟମୂଲ୍ୟର ମଧ୍ୟସ୍ଥତା । ସେ ପ୍ରୟୋଜନ ଭିତରେ ସୌନ୍ଦର୍ଯ୍ୟପିପାସା ମଧ୍ୟ ଅନ୍ୟତମ । ସାଂସ୍କୃକିକ ଉତ୍ପାଦନ, ମୌଳିକ ଏଇ ବ୍ୟଞ୍ଜନାରେ, ପଣ୍ୟଉତ୍ପାଦନର ଓଲଟା ପିଠି । ସଂସ୍କୃତିକୁ ଅସ୍ୱୀକାର ନକଲେ ଧନତନ୍ତ୍ର ନିଖୁଣ ହୋଇପାରେନା; ସଂସ୍କୃତିର ସୁରକ୍ଷା ମାନେ, ସେଥିପାଇଁ, କୃଷକ-ଶ୍ରମିକ ଆଦିବାସୀ-ହରିଜନଙ୍କ ସ୍ୱାଧିକାରର ସୁରକ୍ଷା; ଅର୍ଥାତ୍ ଯିଏ ଧନତନ୍ତ୍ରର ଅଙ୍ଗୀଭୂତ ହୋଇନାହାଁନ୍ତି, କିନ୍ତୁ ଧନତନ୍ତ୍ରର ସବୁଠୁଁ ଅସହାୟ ସମ୍ଭାବ୍ୟ ଶିକାର, ମନିଟାଇଜେସନ୍‌ରୁ ସେମାନଙ୍କ ସୁରକ୍ଷା । ସ୍ୱାଧିକାର ଭିତରେ ସାଂସ୍କୃତିକ ଅଧିକାର ନିଶ୍ଚୟ ଅନ୍ୟତମ; ଯେପରି, ଗଛବୃକ୍ଷ ନଈନାଳ ପାହାଡ଼ପର୍ବତ ଉପରେ ଅଧିକାର ।

ଧନଆହରଣ ବା ଆକିଉମିଉଲେସନ୍‌କୁ ଏ ଦରିଦ୍ର ଗୁରୁତ୍ୱଦେଉନାହାଁନ୍ତି ଜୀବନଯାତ୍ରାରେ; ବ୍ୟକ୍ତିସ୍ୱାତନ୍ତ୍ର୍ୟ ମଧ୍ୟ ଆକର୍ଷଣକରିପାରିନାହିଁ, ବିଶ୍ୱାୟନର ପ୍ରଲୋଭନ ମନୋହର ହେବାସତ୍ତ୍ୱେ । ବିଶ୍ୱାୟନର ଲକ୍ଷ୍ୟ ଯେହେତୁ ଅଖଣ୍ଡ ଅଭିନ୍ନ ସଂସ୍କୃତି, 'ସଂସ୍କୃତି' ଶବ୍ଦଟା ଦାବିକରିବ, ଏଇ ପ୍ରେକ୍ଷିତରେ, ଅନ୍ୟ ପ୍ରକାର ଉପଲବ୍ଧି ।

କାରଣ ଯା ହୋଇଥାଉ, ସଂସ୍କୃତିକୁ ଧରାଯାଉଛି 'ସୌନ୍ଦର୍ଯ୍ୟର ଉତ୍ପାଦନ'; ସେଇ ସୌନ୍ଦର୍ଯ୍ୟର ବ୍ୟାବହାରିକ ମୂଲ୍ୟ ବା 'ଇଉସ୍-ଭ୍ୟାଲିଉ' କୁଆଡ଼େ ଉପଭୋକ୍ତା ମନରେ ଶୁଚି ଓ ଆନନ୍ଦ ଉଦ୍ରେକକରେ । ସେ ମୂଲ୍ୟ ଯେତେବେଳେ ସାହିତ୍ୟ ସଙ୍ଗୀତ କି ଲଳିତକଳା ମାଧ୍ୟମରେ ପ୍ରକାଶପାଏ, କୁହାଯାଏ ଆର୍ଟ; ମାତ୍ର ବିନିମୟ, ବଜାର, ବିଜ୍ଞାପନ ପ୍ରଭୃତି ସୌଦାଗରିଆବର୍ତ୍ତ ଭିତରଦେଇ ଆର୍ଟ ଯଦି ଗତିଶୀଳ, ଇଉସ୍-ଭ୍ୟାଲିଉର ମଧ୍ୟ ଘଟିଯାଏ ରୂପାନ୍ତର । ସଂସ୍କୃତି ସେତେବେଳେ ଆହରଣକରେ ପୁଞ୍ଜିର ଗୁଣଧର୍ମ, କାହିଁକିନା, ଆର୍ଟ ରୂପକ ପୁଞ୍ଜିର ମାଲିକାନା ଦେଇପାରେ ଯଶଖ୍ୟାତି, ଆଭିଜାତ୍ୟ; ଏପରିକି, ବିଶେଷ ସାମାଜିକ ପ୍ରତିପତ୍ତି । ଏ ପୁଞ୍ଜିର ବିଶ୍ୱାୟନ ତେଣୁ ଉତ୍ପାଦନର ସାଧନଗୁଡ଼ିକୁ ପ୍ରସାରିତକରିବ ଦିକ୍‌ବିଦିକ୍, ଉତ୍ପାଦନର ସମ୍ଭାବନା ବ୍ୟାପକହେବ ସମାନୁପାତରେ; ଅଥଚ ଉତ୍ପାଦନ ଓ ବିନିମୟ ପ୍ରକ୍ରିୟାରେ ନିହିତ ସାମାଜିକ ସଂପର୍କ ସମ୍ଭାବନାଗୁଡ଼ାକୁ କରିପକାଇବ ଧ୍ୱଂସସାପେକ୍ଷ । ସାଂସ୍କୃତିକପଣ୍ୟର ଯୋଉ ବଜାରକୁ ପ୍ରସାରିତକରିଚି ଅତୀତକାଳର ପୁଞ୍ଜିବାଦ, ଅଭିଜାତ ସାମନ୍ତଙ୍କ ପୃଷ୍ଠପୋଷକତାରୁ ସେ ବଜାର ମୁକ୍ତକରିଚି ଅଗଣିତ ଶିଳ୍ପୀ ସଙ୍ଗୀତଜ୍ଞଙ୍କୁ, ଏବଂ ଫଳତଃ, ଶିଳ୍ପକର୍ମ ଓ କାରିଗରି କୃତ୍‌କୌଶଳର ସମ୍ଭାବନା ଓ ପରିସର ଖାଲି ବୃଦ୍ଧିପାଇନାହିଁ, ତିଆରିହୋଇଚି ଶିଳ୍ପୀ-ସାହିତ୍ୟିକ ସକାଶେ ସ୍ୱଶାସିତ ଏକ ପରିଧି । ମାତ୍ର ପରିଣାମ ହୋଇଛି ସୃଜନଶକ୍ତିର ବନ୍ଦୀଦଶା, କାହିଁକିନା, ଯୋଉ ଶିଳ୍ପକର୍ମ ପ୍ରବେଶକରିଚି ତା ସର୍କିଟ୍‌ଭିତରକୁ, ବଜାର ତାକୁ ତତ୍‌କ୍ଷଣାତ୍ କରିଦେଇଚି ପଣ୍ୟ; ଆର୍ଟ ଆଉ ସଂସ୍କୃତି ତେଣୁ ବିଭାଜିତ ହୋଇଯାଇଚି : ସ୍ଥାନୀୟ / ଜାତୀୟ । ସ୍ଥାନୀୟ ମାନେ ଯୋଉଠି ମୂଳରୁ ବଜାର ନାହିଁ, ଅଥବା ଅଛି ଯଦି, ବେଜାଏ ସଙ୍କୀର୍ଣ୍ଣ । ଜାତୀୟ ମାନେ ବଜାର ହିଁ ଏକମାତ୍ର ନିରୂପକ । ଜାତୀୟ ତେଣୁ ଆଧିପତ୍ୟକରେ ସ୍ଥାନୀୟ ଉପରେ । ବିଶ୍ୱାୟନ ପ୍ରଭାବରେ ସ୍ଥାନୀୟର ବଜାର ବି ଆଉ ସଙ୍କୁଚିତହୋଇ ରହିନାହିଁ; ଗୋଟିପୁଅ ଯାଉଚନ୍ତି ଆମେରିକା, ପଟଚିତ୍ର ଯାଉଚି ଇଉରୋପ୍, ତାଳପତ୍ର ପୋଥି ଯାଉଚି ଜର୍ମାନୀ । ସ୍ୱଶାସିତ ପରିସରର ଘଟୁଚି ଅନିବାର୍ଯ୍ୟ ସଙ୍କୋଚନ ।

ତତ୍ତ୍ୱ ସ୍ତରରେ କିନ୍ତୁ 'ସଂସ୍କୃତି'ର ସଂଜ୍ଞା ନାନାବିଧ; ଯେପରି, ସର୍ଜନଶକ୍ତି ଓ ମେଧାପ୍ରୟୋଗର ବିଶିଷ୍ଟ ବଳୟ; ଜୀବନଚର୍ଯ୍ୟାର ସମଗ୍ରତା; ଏବଂ ସେଇଭଳି

ଅନୁଶୀଳନ ଓ ଯୋଗାଯୋଗର ସମାହାର ଯଦ୍ଦ୍ୱାରା ମୂଲ୍ୟ (ଭ୍ୟାଲିଉ) ଓ ମର୍ମାର୍ଥକୁ କରାଯାଏ ଉତ୍ପନ୍ନ ଓ ବିକୀର୍ଣ୍ଣ । ତେବେ, ଜୀବନଚର୍ଯ୍ୟାର ସମଗ୍ରତା ବୋଧହୁଏ ସର୍ବାପେକ୍ଷା ଗ୍ରହଣଯୋଗ୍ୟ । କାହିଁକିନା, ସେଇଥିରୁ ବାହାରିଚି ଜାତୀୟସଂସ୍କୃତି ଅବବୋଧ; ଯେପରି, ଭାରତୀୟ / ହିନ୍ଦୁ ସଂସ୍କୃତି, ପାଶ୍ଚାତ୍ୟ ସଂସ୍କୃତି ଇତ୍ୟାଦି । କିନ୍ତୁ ସମାଜ ହୁଏ ଯଦି ବିବିଧ ବୈଷମ୍ୟରେ ବିଦୀର୍ଣ୍ଣ, ସଂସ୍କୃତି ହୋଇପାରେନା ଏକ ଓ ଅଭିନ୍ନ । ସଂସ୍କୃତି ଭିତରେ ପ୍ରବାହିତ ଯୋଉ ଜାତୀୟ ଉଦ୍ଦୀପନା, ସାମାଜିକ ବୈଷମ୍ୟ ତାକୁ ଖଣ୍ଡିତକରିବା ଅବଶ୍ୟମ୍ଭାବୀ । ସଂସ୍କୃତି ଦିଶିବ ତେଣୁ ପରସ୍ପର-ବିରୁଦ୍ଧ ସ୍ରୋତର ଚଳମାନ ବୈପରୀତ୍ୟ । ଜାତି ଧର୍ମ କି ଜାତୀୟତା ସହିତ ସଂସ୍କୃତିର ସମୀକରଣ ସେଥିପାଇଁ ଅସମୀଚୀନ, କାହିଁକିନା, ବିବିଧ ମଧ୍ୟରେ ମହାନମିଳନ, ବା ଇଉନିଟି ଇନ୍ ଡାଇଭର୍ସିଟି, ବାସ୍ତବ ଜୀବନଚଯର୍ଯ୍ୟାରେ ଏକାଧିକ ସଂସ୍କୃତି ମଧ୍ୟସ୍ଥ ପ୍ରତିଯୋଗିତା କେବଳ । ପୁଣି, ଇତିହାସବହିର୍ଭୂତ କୋଉ ବିଭାବ ନୁହେଁ ଯେ ସଂସ୍କୃତିକୁ ନେଇ ମେଧା ଓ ଇସ୍‌ଥେଟିକ୍ସ ଭଳି ବିମୂର୍ତ୍ତ ରସିକତା ଚାଲୁଥିବ । ସର୍ବୋପରି, ଯୋଉ ଜଗତରେ ଆମ ବସବାସ, ସାଂସ୍କୃତିକ ଅନୁଶୀଳନ ସେଠି ଯା ବଦଳାଇପାରେନା, ତା ଏକମାତ୍ର ପରିବର୍ତ୍ତନର ନୀତିନିୟମ ଓ ପ୍ରକ୍ରିୟା । ଏବଂ, ସଂସ୍କୃତି ସ୍ୱାଧୀନତାର ଏପରି କୋଉ ବଳୟ ନୁହେଁ ଯେ ଆତ୍ମପ୍ରକାଶ, ଆତ୍ମୋପଲବ୍ଧି କି ସମଧର୍ମା ମଣିଷଙ୍କ ସାଙ୍ଗରେ କୁଟୁମ୍ବିତା ଅନୁଭବକରିହେବ ତା ଭିତରେ ସର୍ବଦା ଓ ସର୍ବତ୍ର । ତଥା ନେତିବାଚକ ସଂଜ୍ଞାଗୁଡ଼ାକୁ ଆଲୋଚନାକରିବା ଦରକାର, କାହିଁକିନା, କେବଳ ତାହାରି ଭିତରୁ ଅସଲ ପ୍ରଶ୍ନଟି ବାହାରିପଡ଼େ : କାହାର ସଂସ୍କୃତି ? ଅର୍ଥାତ୍, ଭାରତୀୟ ଜାତୀୟତା ଭିତରେ କାହାର ସଂସ୍କୃତିକୁ ଗ୍ଲୋବାଲାଇଜେସନ୍ ନଷ୍ଟକରୁଛି ? କାହାର ସଂସ୍କୃତି ବିଶ୍ୱାୟନକୁ ଯୋଗାଇଦେଉଚି ଆଇଡିୟଲଜିକ୍ୟାଲ୍ ମେରୁଦଣ୍ଡ ସାଙ୍ଗକୁ ବୈଷୟିକ ରକ୍ତମାଂସ ? ଟେଲିକମିଉନିକେସନ୍ ଆଉ ଡିଜିଟାଇଜେସନ୍ ବଢ଼ାଇଦିଏ କାହାର ଦକ୍ଷତା; କାହା ହାତକୁ ଆଣିଦିଏ ବିନିଯୋଗଯୋଗ୍ୟ ପୁଞ୍ଜି ? ଏବଂ, ସେଇ ସୂତ୍ରରେ, କାହାକୁ ବଞ୍ଚିତକରେ ସମ୍ଭାବ୍ୟ ସାଂସ୍କୃତିକ ଉତ୍କର୍ଷରୁ ? ପ୍ରଶ୍ନଗୁଡ଼ିକ ଜରୁରୀ, ବିଶ୍ୱାୟନପ୍ରସୂତ ସଂସ୍କୃତି ଯେହେତୁ ବାଛିବାଛି କିଛିକିଛି ଜୀବନଚର୍ଯ୍ୟାକୁ ଆଘାତକରେ; ବାଛିବାଛି ଆଉକିଛି ଜୀବନଚର୍ଯ୍ୟାକୁ ଯୋଗାଏ ପରିପୁଷ୍ଟି; ଯଦିଓ ଉଭୟ ପ୍ରକାର ବଞ୍ଚାବଞ୍ଚି ସଂଗଠିତହୁଏ ଏକ ଓ ଅଭିନ୍ନ ସାଂସ୍କୃତିକ ପରିସର ଭିତରେ; ଯେପରି, ସମକାଳର ଭାରତ, ଯାର ସାଂସ୍କୃତିକ ପରିସର ଜମାରୁ ମସୃଣ ନୁହେଁ । ହେଲେସୁଦ୍ଧା, ପ୍ରତିଦ୍ୱନ୍ଦ୍ୱିତାର ମୀମାଂସା ନିଜ ବାଟରେ ନିଜେ କରନ୍ତୁ, ଆଗତୁରା ହସ୍ତକ୍ଷେପକରି ସେ ସମ୍ଭାବନାକୁ ନଷ୍ଟକରିଦିଏ କିନ୍ତୁ ବିଶ୍ୱାୟନ । ନଷ୍ଟକରିଦିଏ, କାହିଁକିନା, ଯା ସପକ୍ଷରେ

ହସ୍ତକ୍ଷେପକରେ, ତା ଜାତୀୟ ସଂସ୍କୃତି, ଅର୍ଥାତ୍ ସ୍ଥିତାବସ୍ଥା । ଅଥଚ, ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ସାମାଜିକ ଭେଦାଭେଦ ଯୋଉ ସଂସ୍କୃତିର ଲକ୍ଷଣ, 'ଜାତୀୟ' ପଦବାଚ୍ୟ ହୋଇପାରେନା । ଭେଦାଭେଦ ସଂସ୍କାର ଦୂରକରିବାକୁ ଦରକାର ପ୍ରତିଘାତପ୍ରବଣ ଗଣତାନ୍ତ୍ରିକ ପ୍ରୟାସ । କିନ୍ତୁ ବିଶ୍ୱାୟନ ବିଶ୍ୱାସକରେ 'ଚିରନ୍ତନ'ରେ; ନିଜକୁ ଅପରିବର୍ତ୍ତନୀୟ କରିବାକୁ ସେଥିପାଇଁ ସଚେଷ୍ଟ । ସେ ପରିସ୍ଥିତିରେ, ସ୍ଥିତ ସଂସ୍କୃତିର ଥିଲାବାଲାଙ୍କ ସପକ୍ଷରେ ଆଗନ୍ତୁରା ହସ୍ତକ୍ଷେପ ନିଶ୍ଚୟ ପ୍ରତିବିପ୍ଳବ ଭଳି ପ୍ରତିଘାତ । ମାତ୍ର ସଂସ୍କୃତିର ଭୂତଭିତ୍ତି ଯଦି ମୂଲ୍ୟ ଓ ମର୍ମାର୍ଥ ଉତ୍ପାଦନ, 'ଉତ୍ପାଦନ' ଭଳି ପ୍ରକ୍ରିୟା ତେବେ ଚିହ୍ନାଇଦେବ ସଂସ୍କୃତିର ଅବଶ୍ୟମ୍ଭାବୀ ଗତି ଠିକ୍ କୋଉଦିଗକୁ, ଅତୀତ ନା ଭବିଷ୍ୟତକୁ ? ଉତ୍ତରାଧିକାରରୁ ଆହରଣ, ନା ଆପଣା ପ୍ରୟାସରେ ନୂଆକିଛି ନିର୍ମାଣ ? ଭବିଷ୍ୟତ ହୁଏ ଯଦି ଗତିର ଅଭିପ୍ରେତ ଦିଗ, ତେବେ କଲଚର୍ ବା କୃଷ୍ଟି ସେଇ କାମ, ଆମେ ଯା ନିଜେ କରୁଁ କି କରିଥାଉଁ । ସେଥିରେ ମଧ୍ୟ ଦେଖିହେବ ଆଧିପତ୍ୟ କରିବାକୁ ପ୍ରତିଯୋଗିତା; ଏକାବେଳକେ ଦେଖିହେବ, ଯିଏ ହାରିଯାଇଚି ଭବିଷ୍ୟତ୍ ଉପରେ ତା ଭରସା; ଅର୍ଥାତ୍ ଏପରି ସାଂସ୍କୃତିକ ଅନୁଶୀଳନ, ଅସମ୍ଭବକୁ ସମ୍ଭବକରିବାକୁ ଯା ଭବିଷ୍ୟତ ପାଖରେ ପ୍ରତିଶ୍ରୁତିବଦ୍ଧ; ଆଗନ୍ତୁରା ଆଘାତକରି ସେ ସାମର୍ଥ୍ୟକୁ ଭାଙ୍ଗିଦେବାକୁ ଗ୍ଲୋବାଲାଇଜେସନ୍ କରିଚି ଆପଣା ପରିକଳ୍ପର ଅନୁପୂରକ ।

କିନ୍ତୁ କେମିତି ? ଉପଲବ୍ଧିକରିବାକୁ ଔପନିବେଶିକ ଭାରତର କୋଉହେଲେ ବିଦ୍ୟାୟତନର ଶ୍ରେଣୀକକ୍ଷକୁ ସ୍ମରଣକରାଯାଇପାରେ; ଦେଶର କ୍ଷୁଦ୍ରତମ ଅଂଶକୁ ବି ପହଞ୍ଚିଯାଇଚି ସେ ଶ୍ରେଣୀକକ୍ଷ, ଅଥଚ ଲୋକସଂଖ୍ୟାର ଶହେଭାଗରୁ ଦଶଭାଗ ମଧ୍ୟ ପାଇନାହିଁ ପ୍ରବେଶାଧିକାର; ମାତ୍ର ସମସ୍ତଙ୍କ ଅଲକ୍ଷ୍ୟରେ ଔପନିବେଶିକତାର ଭାବାଦର୍ଶ ପାଠ୍ୟପୁସ୍ତକ ପୃଷ୍ଠାରୁ ଉଡ଼ିଆସି ଦଖଲକରିଚି ମାନସଲୋକ । ଛାତ୍ର ଘରକୁ ଫେରି ଦେଖିଚି, ଘରଟା ସଂପୂର୍ଣ୍ଣ ଭିନ୍ନ ଜଗତ, ସେଇଠି ଅତିବାହିତହୁଏ ଦିନର ଅଧିକାଂଶ ସମୟ । ବାକି ନବେଶତାଂଶ ପିଲା ପ୍ରତ୍ୟକ୍ଷଭାବେ ପାଇନାହାନ୍ତି ଏ ଭାବାଦର୍ଶର ସଂସର୍ଗ; ସେମାନଙ୍କ ଔପନିବେଶିକ ପରିଶୀଳନ ତେଣୁ ଅଧାପନ୍ତରିଆ । ଗ୍ଲୋବାଲାଇଜେସନ୍‌ର ସଂସ୍କୃତି କିନ୍ତୁ ଶ୍ରେଣୀକକ୍ଷରେ ସମ୍ମୁଖୀନହୁଏ ଢେର୍‌ବେଶି ପିଲାଙ୍କୁ, ଆଉ ସେ ପିଲା ଘରକୁ ଫେରି ଦେଖେ ଘର ମଧ୍ୟ ଶ୍ରେଣୀକକ୍ଷର ସଂପ୍ରସାରଣ; ଅବଶ୍ୟ, ପରିବାର ଯଦି ମଧ୍ୟବିତ୍ତ । ଅହୋରାତ୍ର ଚାଲିଚି ଟେଲିଭିସନ୍, ବିଜ୍ଞାପନପ୍ରଚାର, ମିଉଜିକ୍ ସିଷ୍ଟେମ୍‌ରୁ ବିଜାତୀୟ ଗୀତବାଦ୍ୟର କୋଳାହଳ । ଗୃହପ୍ରାଙ୍ଗଣକୁ ଭାବାଦର୍ଶର ଏ ଅନୁପ୍ରବେଶ ଚିନ୍ତାପ୍ରଣାଳୀକୁ ଖାଲି ଆକ୍ରମଣକରେନା, କାମନା-ବାସନା ଖିଆପିଆ ପୋଷାକପରିଛଦ, ଚାଲିଚଳନ, ଏପରିକି ଜୀବନ ପାଖରୁ

ପ୍ରତ୍ୟାଶାଗୁଡ଼ାକୁ ମଧ୍ୟ କ୍ରମାଗତ ରଞ୍ଜିତକରିଚାଲେ । ଉପନିବେଶ ବି ଚାହିଁଚି ପ୍ରଜାର ସାକ୍ଷରତା; ମାତ୍ର ଏବେ ଯୋଉ ସାକ୍ଷରତା ବିଲଖାଲକୁ ବି ପହଞ୍ଚିଯାଇଚି, ତା ଇଲେକ୍ଟ୍ରନିକ୍; ଲେଖିବାପଢ଼ିବା ତେଣୁ ପଣ୍ଡଶ୍ରମ । ପରିବର୍ତ୍ତନର ଭଲମନ୍ଦ ଅବଶ୍ୟ ମଧ୍ୟବିତ୍ତଶ୍ରେଣୀ ଉପରେ ବର୍ତ୍ତୁଚି ସର୍ବାଧିକ, ସେଇ ଶ୍ରେଣୀ ସାଧାରଣତଃ ନିର୍ଦ୍ଧାରଣକରେ ଅଧସ୍ତନଶ୍ରେଣୀର ସଂସ୍କୃତି । ଉଚ୍ଚବର୍ଗ, ଅର୍ଥାତ୍ ଶାସକଶ୍ରେଣୀ, ଯା ଉପରେ ଆଧିପତ୍ୟକରେ, ସେଇ କରେ ଶାସକଶ୍ରେଣୀକୁ ଅନୁକରଣ । ସିଏ ବି କାମନାକରେ ନାନାଦି ଉପଭୋଗ, ପ୍ରକୃତରେ ଯା ଆକାଶକୁସୁମ ।

ରାଜନୀତି, ଭାବାଦର୍ଶ, ସୌନ୍ଦର୍ଯ୍ୟଉପଭୋଗ ପ୍ରଭୃତି ଦୃଷ୍ଟାନ୍ତ ମାଧ୍ୟମରେ ଗଣମାଧ୍ୟମ ଯୋଉ ସଂସ୍କୃତିକୁ ଲୋକପ୍ରିୟ କରେ, ସାଧାରଣତଃ ତା ମାର୍କିନ୍ ମଡେଲ୍, ଦଶବର୍ଷ ତଳେ ଯା ଥିଲା ସାତସପନ; ଅଥଚ ଟେଲିଭିସନ୍ ଏକ୍ଷଣି ମଧ୍ୟବିତ୍ତର ଅଫିମ; ଯୋଉ ଅଫିମ ସ୍ଥିରକରିଦିଏ ପସନ୍ଦ-ଅପସନ୍ଦ, କର୍ତ୍ତବ୍ୟ-ଅକର୍ତ୍ତବ୍ୟ, ପ୍ରେମ ଆଉ ଘୃଣା । ଗୋଟିଏ ଶବ୍ଦରେ, 'ସଂସ୍କୃତି' । ପିଲା ମନକରନ୍ତି ଆମେରିକାନ୍ ପିଲାଙ୍କ ଭଳି ହେବ ତାଙ୍କ ଜୀବନଶୈଳୀ; ମାତ୍ର ଶ୍ରେଣୀନିଶୁଣିର ସବାତଳ ପାହାଚରେ ରହିଚନ୍ତି ତାଙ୍କ ମା-ବାପ; ଏବଂ ସେ ପାହାଚ ପଥର ପରି ଅଟଳ । ହେଲେ ସୁଦ୍ଧା, ପିଲା କଳ୍ପନାକରନ୍ତି ଊର୍ଦ୍ଧ୍ୱଗତି । ଟେଲିଭିସନ୍ ଚ୍ୟାନେଲ୍ ଥିଲା ପ୍ରଥମେ ମାତ୍ର ଯୋଡ଼ାଏ; ପ୍ରତି ଆଞ୍ଚଳିକ ଭାଷାରେ ଗୋଟାଏ ଆଉ ସାରାଦେଶ ପାଇଁ ଦ୍ୱିତୀୟଟା । ଦୁଇଟାଯାକ ପୁଣି ବ୍ଲାକ୍ ଆଣ୍ଡ୍ ହ୍ୱାଇଟ୍ । ଏସିଆଡ୍ ଖେଳ ବେଳକୁ ରଙ୍ଗୀନ୍ ହେଲା; ତା ପଛକୁ ଆସିଛି କେବ୍ଲଟିଭି, କେବ୍ଲସଂଖ୍ୟା ଏକ୍ଷଣି ଦୁଇଶ ଛୁଇଁବାକୁ ଯାଉଚି । ସମ୍ଭବକରିଚି ପଣ୍ୟବିକ୍ରୟ ସକାଶେ ବିଜ୍ଞାପନର ପ୍ରତିଯୋଗିତା, ବିଶେଷତଃ ଯେହେତୁ ବିଜ୍ଞାପନ ଓ ବିନୋଦନ ଏକ୍ଷଣି ଓତଃପ୍ରୋତ । ବିନୋଦନ ଯେତେବେଳେ 'ଇଣ୍ଡଷ୍ଟ୍ରି, ଆନନ୍ଦଦାନ ଲାଗି ଦରକାରହୋଇଚି ବ୍ର୍ୟାଣ୍ଡ-ଅ୍ୟାମ୍ବାସାଡର୍, ନିର୍ଜୀବ ପଣ୍ୟର ଜୀବନ୍ତ ପ୍ରତିମା ବା ଆଇକନ୍ । ଯେପରି, ଅମିତାଭ ବଚନ, ଐଶ୍ୱରିୟା ରାଇ, ସାହ୍‌ରୁଖ୍ ଖାଁ, ସଚିନ୍ ତେନ୍ଦୁଲ୍‌କର୍ ଇତ୍ୟାଦି । ଗଣସଂସ୍କୃତିର ଏମାନେ ପ୍ରତିମୂର୍ତ୍ତି । ସଂସ୍କୃତିର ପ୍ରତିମୂର୍ତ୍ତିକୁ ଅଭିନ୍ନ ପ୍ରତିପନ୍ନକରାଯାଏ ନିର୍ଦ୍ଦିଷ୍ଟ କୌଣସି ପଣ୍ୟସାଙ୍ଗରେ; ଯେପରି ପେପ୍‌ସି ସାଙ୍ଗରେ ସଚିନ୍ । କ୍ରିକେଟ୍‌ର ପ୍ରବାଦପୁରୁଷ ହୋଇଯାଏ ଏକାଧାରରେ ମନୋହରଣକାରୀ ଓ ପେପ୍‌ସିବିକ୍ରେତା; ଯେପରି ଆମେରିକାନ୍ ବାସ୍କେଟ୍‌ବଲ୍‌ର କ୍ରୀଡ଼ାତାରକା ମାଇକେଲ୍ ଜୋର୍ଡନ୍ ଖେଳସରଞ୍ଜାମ ବିପଣନ ସକାଶେ ନିୟୋଜିତ; ସ୍ୟାମ୍ପୁ ପାଇଁ ସେମିତି ଐଶ୍ୱରିୟା ରାଇ । ବିନା ବ୍ୟତିକ୍ରମରେ ମାର୍କିନ୍ ବିଜ୍ଞାପନର ଅନୁକରଣ; ଅଲଗା ଖାଲି ମୁଖାବୟବ ଓ କଣ୍ଠସ୍ୱର । କଥାଗୁଡ଼ାକ ଅବଶ୍ୟ ଇଂରେଜୀ ନୁହେଁ । ଉଦ୍ଦେଶ୍ୟ

ତେଣୁ ମାର୍କିନ୍ ଜୀବନଯାପନ ଶୈଳୀକୁ ଭାରତୀୟ ମଧ୍ୟବିତ୍ତର ଶୋଇବାଘରେ ନେଇ ଠେକାଇଦେବା, ଯେପରିକି ପେପ୍ସି କି ପ୍ୟାଣ୍ଟିନେ ସ୍ୟାମ୍ପୁ କିଣି କଳ୍ପନାକରିବ ନିଜକୁ ଆମେରିକାନ୍‌ଙ୍କ ଭଳି ଆନ୍ତର୍ଜାତିକ । ବ୍ରିଟିଶ୍‌ସାମ୍ରାଜ୍ୟର ଛତ୍ରଛାୟାରେ ଏଇ ମଧ୍ୟବିତ୍ତ ମନକରିଥିଲା ସାହେବ ହେବାକୁ, ଅକ୍ସଫୋର୍ଡ଼-କେମ୍ବ୍ରିଜ୍‌ରେ ଦେଖିଥିବା ଇଂରେଜଙ୍କ ଭଳି ନିଜ ଆଚାରବିଚାରକୁ ଢାଳିସଜାଇବାକୁ; ସେ ବାଟରେ ଦେଶବାସୀଙ୍କ କତିରୁ ଦୂରକୁ ଠେଲିହୋଇଯାଇ 'ପର' ହୋଇଯାଇଛି ଶିକ୍ଷିତ ମଧ୍ୟବିତ୍ତ; ମାତ୍ର ସାଂସ୍କୃତିକ ଦୂରତ୍ୱ ସାଙ୍ଗକୁ ତିଆରିହୋଇଚି ଧନୀ-ନିର୍ଦ୍ଧନ ବ୍ୟବଧାନ, ଦେଶୀୟ ବିଦ୍ୱାନ୍ ଆଉ ବିଲାତଫେରନ୍ତାଙ୍କ ମଝିରେ ସୁଉଚ୍ଚ ପ୍ରାଚୀର । ଗ୍ଲୋବାଲାଇଜେସନ୍ କିନ୍ତୁ ବ୍ୟବଧାନ ସହ୍ୟକରିପାରେନା; ସେଥିପାଇଁ ମାର୍କେଟ୍‌କୁ କରିଚି ସଂସ୍କୃତିର ଅଭିଭାବକ; ଏବଂ ସେ ମାର୍କେଟ୍‌ର ଏକାମାତ୍ର ଧେୟ, ମାର୍କିନ୍‌ମୁଲୁକରେ ଯାହାକୁ କହନ୍ତି, 'ଡିଜ୍‌ନିଫିକେସନ୍' । କ୍ରେତାଭୂମିକାରେ ହରେକରକମ ଲୋକଙ୍କୁ ଏକୀଭୂତ କରିପାରେ, ଯେପରି ଟେଲିଭିସନ୍ ପ୍ରୋଗ୍ରାମର କ୍ରେତା ସବୁଶ୍ରେଣୀର ଗ୍ରାହକ । କିନ୍ତୁ ଗ୍ରାହକହେବାକୁ ଦରକାର କିଣିପାରିବା ସାମର୍ଥ୍ୟ । ଭାରତର ସବୁଶ୍ରେଣୀ ସେ ସାମର୍ଥ୍ୟ ସମାନଭାବେ ଅର୍ଜନକରିନାହାଁନ୍ତି ଅଦ୍ୟାବଧି; ବରଂ ଅଧିକାଂଶ ଲୋକଙ୍କ ପାଇଁ ସେ ସାମର୍ଥ୍ୟ ହ୍ରାସପାଉଛି ଦିନକୁଦିନ । ରୋମାଣ୍ଟିସାଇଜ୍ ନକରି, ସଂସ୍କୃତିକୁ ସର୍ବସାଧାରଣ ଜୀବନଯାତ୍ରାର ସମାନ୍ତରାଳ କରିବାକୁ ହେଲେ ଅବଶ୍ୟକର୍ତ୍ତବ୍ୟ ତେଣୁ ବିଶ୍ୱାୟନକୁ ବିରୋଧ । କାହିଁକିନା, ଯୋଉରକମ ସାଂସ୍କୃତିକ ପଣ୍ୟର ବିପଣନରେ ବିଶ୍ୱାୟନ ଆଗ୍ରହୀ, ତା ପାଖରେ ପହଞ୍ଚିପାରିବା ନବେଶତାଂଶ ଭାରତୀୟଙ୍କ ପକ୍ଷରେ ଦୁଃସାଧ୍ୟ ।

ଅଥଚ ତଥ୍ୟପ୍ରଯୁକ୍ତିକୁ କୁହାଯାଉଚି ଏପରି ଏକ ସାଧନ ଯା ସାରାସଂସାରକୁ ଦେଇପାରେ ନିର୍ଭେଜାଲ୍ ଗଣତନ୍ତ୍ର । ସାଧନ ଅବଶ୍ୟ ଇଣ୍ଟରନେଟ୍ ଆଉ ଓର୍‌ଲ୍ଡ୍‌ୱାଇଡ୍ ୱେବ୍; ସୃଷ୍ଟିକରିପାରେ ବାସ୍ତବର ଏପରି ପ୍ରତିରୂପ, ବୈଷମ୍ୟ ଯୋଉଠି ଅକଳ୍ପନୀୟ; ବିଲ୍ ଗେଟ୍‌ସ୍ କହିବା ପରି, All are equal in *Virtual* reality । ଭର୍ଚୁଆଲ୍ ମାନେ ପ୍ରକୃତ ନୁହେଁ, ପ୍ରତୀୟମାନ; ଅର୍ଥାତ୍ ବାସ୍ତବର ଛଦ୍ମରୂପ । ସେଇ ପ୍ରତୀୟମାନତା ମୁଷ୍ଟିମେୟ ଲୋକଙ୍କ ସକାଶେ ଅଧିଗମ୍ୟ ବୋଲି କେନ୍ଦ୍ରୀଭୂତ ହୋଇଚି ଧନବନ୍ତଙ୍କ ହାତରେ । ଯେପରି, ପୃଥିବୀର ଜନସଂଖ୍ୟାର ଅନ୍ତତଃ ଅର୍ଦ୍ଧାଂଶ ସାରାଜୀବନରେ ଥରେହେଲେ ଫୋନ୍‌ରେ କଥାକହିନାହାଁନ୍ତି; ଅଥଚ ସମଗ୍ର ଆଫ୍ରିକା ମହାଦେଶରେ ଯେତେ ଟେଲିଫୋନ୍ ଅଛି, ତଦପେକ୍ଷା ଅଧିକ ଫୋନ୍ ରହିଚି ନିଉୟୋର୍କସଂଲଗ୍ନ ମାନ୍‌ହ୍ୟାଟନ୍ ଦ୍ୱିପରେ । ପ୍ରକୃତରୁ ପ୍ରତୀୟମାନକୁ ଯିବାକୁ ଯୋଉ ବାଟ, ସେ ବାଟରେ

ଭ୍ରମଣ ତେବେ କି ଭାବରେ ସମ୍ଭବପର ? କାହିଁକିନା, ସାରା ପୃଥିବୀ ଯା ଉତ୍ପନ୍ନକରେ କି ଉପାର୍ଜନକରେ, ତାର ୭୦ ଶତାଂଶ ଉପଭୋଗକରନ୍ତି ଏକ୍ଷଣି ପୃଥିବୀର ୧୫ ଶତାଂଶ ଅଧିବାସୀ; ରେଡିଓ ଓ ଟେଲିଭିସନ୍ ଭଳି ଯନ୍ତ୍ରର ଦୁଇତୃତୀୟାଂଶ ତେଣୁ ରହିଚି ଇଉରୋପ୍ ଓ ଆମେରିକାରେ । ସେଠିସୁଦ୍ଧା ଇଣ୍ଟରନେଟ୍ ରହିଚି ଅତି ଅଳ୍ପଲୋକଙ୍କ ପାଖରେ, କାହିଁକିନା, ଯନ୍ତପାତି ଖଞ୍ଜିବା ଖର୍ଚ୍ଚ ଦୁଇହଜାର ଡଲାରରୁ କମ୍ ନୁହେଁ । ଯନ୍ତପାତିର ଉନ୍ନତି ଅବଶ୍ୟ ସାଧିତହେଉଚି କ୍ରମାଗତ । ଖର୍ଚ୍ଚ ତେଣୁ ବଢୁଚି ସମତାଳରେ । ଏବଂ ଇଣ୍ଟରନେଟ୍‌ର ନିୟମିତ ବ୍ୟବହାର ସହିତ ଅଧିକରୁ ଅଧିକ ରୋଜଗାର ଯେହେତୁ ଓତପ୍ରୋତ, ବ୍ରିଟେନ୍‌ରେ ବଢୁଚି ବର୍ଷକୁ ୨୫୦୦୦ ପାଉଣ୍ଡ, ଆମେରିକାରେ ୮୦,୦୦୦ ଡଲାର୍ । ସାଂସ୍କୃତିକ ଯୋଗାଯୋଗର ଏ ଯନ୍ତପାତିଗୁଡ଼ିକର ବ୍ୟବହାର କାଳକ୍ରମେ ବଢ଼ିବ ନିଶ୍ଚୟ, ସେଭଳି ଉପଯୋଗ କିନ୍ତୁ ବିଶେଷଜ୍ଞଙ୍କ ଭିତରେ ରହିବ ସୀମାବଦ୍ଧ, କାହିଁକିନା, ମୁଦ୍ରଣପ୍ରଯୁକ୍ତି ସୁଦ୍ଧା ଅଧିଗତହୋଇନାହିଁ ଏପର୍ଯ୍ୟନ୍ତ ଅଧିକାଂଶ ଭାରତବାସୀଙ୍କର । ବିଶେଷଜ୍ଞସଂସ୍କୃତି ମାନେ, ଲିଭିସ୍ ପଢ଼ି ଓଡ଼ିଶାରେ କିଛିଲୋକ ଯାହାକୁ କହୁଥିଲେ 'ସଂଖ୍ୟାଲଘୁ ସଂସ୍କୃତି' ଷାଠିଏସତୁରି ଦଶକରେ । ସେଇ ଧାରଣାକୁ ଯନ୍ତପାତି ଉପରେ ପ୍ରୟୋଗ ମାନେ, ମୁଁ ଯେତେ ଚଞ୍ଚଳ ଓ ସହଜରେ ବିଦେଶରେ ଥିବା ପୁଅଝିଅଙ୍କ ସାଙ୍ଗରେ କଥାବାର୍ତ୍ତାକରୁଚି କି ଇ-ମେଲ୍ ପଠାଇପାରୁଚି, ମୋ ମାମୁଘରକୁ ଖବରଦେବାକୁ ହେଲେ ପୋଷ୍ଟକାର୍ଡ଼ ଖୋଜିବା ଛଡ଼ା ଗତ୍ୟନ୍ତର ନାହିଁ, କାହିଁକିନା, ତାଙ୍କ ଗାଁକୁ ଟେଲିଫୋନ୍ ଯାଇନାହିଁ । ସ୍ପଷ୍ଟତଃ ପ୍ରତିବନ୍ଧକ ଆଉ ବୈପରୀତ୍ୟ ଏକାବେଳକେ । ବୈପରୀତ୍ୟ, କାହିଁକିନା, ନୂତନପ୍ରଯୁକ୍ତି ଭିତରେ ଅବ୍ୟକ୍ତଥାଏ ବନ୍ଧନମୁକ୍ତିର ସମ୍ଭାବନା; ଦୂରତ୍ୱ ଓ ବିଳମ୍ବକୁ, ଅନ୍ତତଃ ସାଂସ୍କୃତିକ ଯୋଗାଯୋଗ କ୍ଷେତ୍ରରେ, ହ୍ରସ୍ୱକରିବା ସଙ୍ଗେସଙ୍ଗେ ପ୍ରୟାସ ଓ ପରିଶ୍ରମକୁ ପୌନପୁନିକତାରୁ ମୁକ୍ତକରିଦେଇପାରେ ଶୃଙ୍ଖଳା । ଅର୍ଥାତ୍, ସେଇ ବାଟଦେଇ ଅଧିକରୁ ଅଧିକ ଲୋକ ପ୍ରବେଶକରନ୍ତି ସାଂସ୍କୃତିକ-ଉତ୍ପାଦନ କ୍ଷେତ୍ରକୁ, ପରୀକ୍ଷା-ନିରୀକ୍ଷା ହୁଏ ଅକ୍ଲେଶ, ଆଉ ସ୍ଥଳବିଶେଷରେ ନୂତନତ୍ୱର ଆବିର୍ଭାବ ମଧ ଘଟିଥାଏ । ସେଥିପାଇଁ, କୋଉହେଲେ ନୂତନ ପ୍ରଯୁକ୍ତିର ବିରୋଧିତା ବାଞ୍ଛନୀୟ ନୁହେଁ; ବିରୋଧିତାର ଏକମାତ୍ର କାରଣ, ଏ ପ୍ରଯୁକ୍ତି ଉପରେ ଏକ କ୍ଷୁଦ୍ରଗୋଷ୍ଠୀର ଏକାଧିକାର; କାହିଁକିନା, ସେଭଳି ଏକାଧିକାର ସାଂସ୍କୃତିକଉତ୍ପାଦନର ସାମାଜିକ ସଂପର୍କ କି ସର୍ତ୍ତକୁ ପରିଣତକରେ ଆଧିପତ୍ୟର ଆୟୁଧ; ଏବଂ ସେତେବେଳେ, କ୍ଲେଶମୁକ୍ତିର ସମ୍ଭାବନା ହୁଏ ବିପରୀତମୁଖୀ । ଯେପରି, ଗୋଟିଏହେଲେ ଖବରକାଗଜ ଆଉ ଅବଶିଷ୍ଟନାହିଁ ସମ୍ବାଦ ଉପରେ ଯିଏ ବସାଏନା ବିଜ୍ଞାପନକୁ, ଏବଂ ସେ

ଅଶ୍ଳୀଳତାର ସହଚର କ୍ଷମତାର ପର୍ନୋଗ୍ରାଫି—ଯେପରି ଶିଶୁରୁ ବୃଦ୍ଧ ଅସୁମାରି ନରନାରୀ ଯେତେବେଳେ ବୋମାମାଡ଼ରେ ମରିଚନ୍ତି ପ୍ରତିଦିନ ଇରାକ୍ କି ଆଫ୍‌ଗାନିସ୍ତାନ୍‌ରେ ସାମ୍ରାଜ୍ୟବାଦୀ ବର୍ବରତାକୁ ମୁକାବିଲକରୁକରୁ, ଭାରତର ଖବରକାଗଜ ମାର୍କିନ୍‌ମାରଣାସ୍ତ୍ରର ପ୍ରଯୁକ୍ତିଗତ ଶ୍ରେଷ୍ଠତ୍ୱର ଗୁଣକୀର୍ତ୍ତନ କରିଚନ୍ତି ଅକ୍ଳାନ୍ତ । ଇଂରେଜୀ ଖବରକାଗଜର ଧରଣଧାରଣ ଏକ୍ଷଣି ନକଲକରୁଚି ଆମେରିକାକୁ; ଯେପରି ପ୍ରଥପୃଷ୍ଠାବ୍ୟାପୀ ହୀରାଗହଣା ପରିହିତ ଅନାବୃତ ନାରୀଶରୀର କିମ୍ବା କୋଉ ଚିତ୍ରତାରକାର ବିବାହବିଚ୍ଛେଦର ସଚିତ୍ର ବିବରଣ; ପରପୃଷ୍ଠାରେ କୋଉ ବିଉଟିକୁଇନ୍‌ର ନିତମ୍ବ ଓ ସ୍ତନ । ଏଗୁଡ଼ାକୁ ଆମେରିକାରୁ ସିଧା ଉଠାଇଆଣି ଗ୍ଲୋବାଲାଇଜେସନ୍ ଆମ ଉପରେ ଲଦିଦେଉନାହିଁ; ଭାରତର ସମ୍ପଦଶାଳୀ ଶ୍ରେଣୀର ଜୀବନଶୈଳୀରୁ ଉଠିଆସୁଚି ଅନାଚାର ପ୍ରତି ପକ୍ଷପାତ । ନିର୍ବିତ୍ତ ସଂଖ୍ୟାଗରିଷ୍ଠ ତେଣୁ ଗ୍ଲୋବାଲାଇଜେସନ୍‌ର ପ୍ରତିପକ୍ଷ, କାହିଁକିନା, ଉପସର୍ଗଗୁଡ଼ାକ, ସାଂସ୍କୃତିକ କ୍ଷେତ୍ରରେ ଅନ୍ତତଃ, ଆକ୍ରମଣ ପ୍ରତିରୋଧ ଭଳି ବାହାର-ଭିତର ବୈପରୀତ୍ୟ ନୁହେଁ; ନହେଲେ, ଇଉରୋପରୁ ଗ୍ରହଣକରିଚୁ କେମିତି ସାବାଳକ ଭୋଟ୍‌ପ୍ରଥା, ଗଣତନ୍ତ୍ର କି ମାର୍କ୍ସବାଦ, ମୁଦ୍ରାଯନ୍ତ୍ର କି ଦେବାନି / ଫୌଜଦାରୀ ଆଇନ୍‌କାନୁନ୍; ଏପରିକି, ରେଳପରିବହନ ଓ କାରଖାନାରେ ତିଆରି ଭୋଗ୍ୟପଣ୍ୟ ? କାହିଁକିନା, କାମରେ ଲାଗିଚି, ଉପକାର କରିଚି । ମାତ୍ର ପ୍ରବଣତା ଏକ୍ଷଣି ବିପରୀତ ଦିଗକୁ, ଅଦରକାରୀ ଓ କ୍ଷତିକାରକ ଉପସର୍ଗଗୁଡ଼ାକ ଆଡ଼କୁ । ଦରକାରୀ-ଅଦରକାରୀ ବିବେଚନା ଅପ୍ରାସଙ୍ଗିକ ବୋଧହେଉଛି, ଦେଶର ବିତ୍ତବାନ ଉଚ୍ଚବର୍ଗ ଯେହେତୁ ପାଶ୍ଚାତ୍ୟ ମୂଲ୍ୟମାନଙ୍କୁ ଭାବୁଚି ଭୂଗୋଳ-ଇତିହାସ ଉର୍ଦ୍ଧ୍ୱରେ ନିଖିଳ ବା ସର୍ବଜନୀନ ।

କିନ୍ତୁ, ମାତ୍ର ଷାଠିଏସତୁରିବର୍ଷ ଆଗର ଇତିହାସ କହୁଚି, ଔପନିବେଶିକତାକୁ ବିରୋଧକରି ଯିଏ ଜୀବନପଣ ଲଢ଼ିଥିଲେ, ସହିଂସ କି ଅହିଂସ ମାର୍ଗରେ, ଭୂସ୍ୱାମୀ ହୁଅନ୍ତୁ କି ଦୀନଦୁଃଖୀ, ବିଦ୍ୱାନ୍ କି ନିରକ୍ଷର, ବିନା ବ୍ୟତିକ୍ରମରେ ଥିଲେ ଜାତୀୟତାବାଦୀ; ଏବଂ ରାଜନୀତି ଓ ଅର୍ଥନୀତିରେ ଜାତୀୟତାବାଦୀ ବୋଲି, ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ ସାମ୍ରାଜ୍ୟର ପ୍ରତିପକ୍ଷ । ଇଉରୋପ୍-ଆମେରିକାରେ ବି ତାଲିମ୍‌ପାଇ ଆସିଥିଲେ ତାଙ୍କ ଭିତରକୁ ଅନେକ ଲୋକ; ଜୀବନଚର୍ଯ୍ୟାରେ କିନ୍ତୁ କେହିହେଲେ ପ୍ରଶ୍ରୟଦେଇନାହିଁ ନିର୍ବିଚାର ବିଜାତୀୟତାକୁ, ପାଶ୍ଚାତ୍ୟ ଭାବାଦର୍ଶକୁ ବି ମନେକରିନାହିଁ ନିର୍ବିକଳ୍ପ କି ନିଖିଳ । ବିଦେଶରୁ ଯା ଆସୁଛି, ତାକୁ ଆକ୍ରମଣ କହିବା ତେଣୁ ଅସଙ୍ଗତ; ଦରକାର ତାର ପୁନର୍ମୂଲ୍ୟାୟନ; ଏବଂ ପୁନର୍ମୂଲ୍ୟାୟନ ଏକ ଚମଳନା ପ୍ରକ୍ରିୟା, ଜାତୀୟତାବାଦ ମଧ୍ୟ ଏକ ସାଂସ୍କୃତିକ ମୂଲ୍ୟମାନ, ଯାର ମର୍ମାର୍ଥ ଜାତିର

ଜୀବନଶୈଳୀରେ ପରିବ୍ୟାପ୍ତ । ଏବଂ ସେଇ ସୂତ୍ରରେ, ସମ୍ଭବତଃ ସବୁ ମୂଲ୍ୟମାନ ଉପରେ ତାର ସ୍ଥାନ, ବିଶେଷତଃ ସଂସ୍କୃତି ଯୋଉଠି ରଣଭୂମି ।

*   *   *   *   *   *   *

*ଇମ୍ପିରିଆଲିଜ୍ମ* କିନ୍ତୁ ଔପନିବେଶିକତା ନୁହେଁ; ମାତ୍ର ଔପନିବେଶିକତାର ସମ୍ମିଳିତ ପରିଣାମକୁ ରାଜନୀତି କହୁଚି 'ସାମ୍ରାଜ୍ୟବାଦ', ଯା ମାର୍କ୍ସବାଦପ୍ରସୂତ ଲେନିନ୍‌ଙ୍କ ବିଶ୍ୱଦୃଷ୍ଟି : ଧନତନ୍ତ୍ରର ଶୀର୍ଷପର୍ଯ୍ୟାୟ । ଶୀର୍ଷପର୍ଯ୍ୟାୟ ହେଲେସୁଦ୍ଧା, ଗ୍ଲୋବାଲାଇଜେସନ୍ ନୁହେଁ କାହିଁକିନା, ପ୍ରଥମ ମହାଯୁଦ୍ଧ ସରିଯିବା ବେଳକୁ ଲେନିନ୍‌ଙ୍କ ପକ୍ଷରେ ଜାଣିପାରିବା ସମ୍ଭବନୁହେଁ, ଯେ ବିଂଶଶତକର ଅନ୍ତିମପର୍ବରେ ଜାତିରାଷ୍ଟ୍ରର ଅସ୍ତିତ୍ୱ ହୋଇଯିବ ଅସ୍ପଷ୍ଟ, ଅଥବା ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ଭିତରେ କ୍ଷମତାବିସ୍ତାର ପ୍ରତିଯୋଗିତା ହୋଇଯିବ ଅସ୍ତମିତ । ଏକମାତ୍ର ବିବେଚ୍ୟ ଥିଲା, ଶ୍ରମଜୀବୀର ଜଗତ୍‌ବ୍ୟାପୀ ସଂଗ୍ରାମକୁ ଯୁଦ୍ଧ କେମିତି ଆଗେଇନେବ । ଐତିହାସିକ ସମସ୍ୟାପଟ ତେଣୁ ଅଲଗା, ମାତ୍ର ତାଙ୍କ ବକ୍ତବ୍ୟର ପ୍ରାସଙ୍ଗିକତା ପୁରୁଣା ହୋଇଯାଇନାହିଁ, ଗ୍ଲୋବାଲାଇଜେସନ୍‌ର କୁଫଳକୁ ଉପଲବ୍ଧିକରିବା ଲାଗି ତା ଯେହେତୁ ଏକ ଅବିଚ୍ଛିନ୍ନ ସୂତ୍ରର ଆରମ୍ଭବିନ୍ଦୁ । ସେ ବ୍ୟାଖ୍ୟାରେ ସାମ୍ରାଜ୍ୟବାଦ ଏକ ବିଶେଷ ଷ୍ଟକ୍‌ଚର୍; ରାଜ୍ୟଜୟ ନୁହେଁ କି ଲୁଣ୍ଠନଦମନ ନୁହେଁ । ପରିବର୍ତ୍ତନ ଖୋଜିବା ବାଟରେ ସଂକଟ ଯେତେବେଳେ ଉପସ୍ଥିତ ହୁଏ, ପ୍ରତିକାର ସ୍ଥିରକରିବାକୁ ଦରକାରପଡ଼େ ଅତୀତରେ ନିର୍ମିତ ଏଇଭଳି ତତ୍ତ୍ୱତଲାସ । ବିଶେଷତଃ ଏଇ କାରଣରୁ ଯେ ଲେନିନ୍ ସେତେବେଳେ ସୁଦ୍ଧା ଦେଖିଚନ୍ତି ପୃଥିବୀର ଜନସଂଖ୍ୟାର ଅଧାରୁ ବେଶି ଲୋକ ବିଦେଶୀ ଅତ୍ୟାଚାରରେ ଜର୍ଜର; ଯେତେବେଳେ ଶିଳ୍ପୋନ୍ନତ ଦେଶର ଲୋକ ଦିନମଜୁରିର କିଣାକିଙ୍କର (Wage-slave) । ଅତ୍ୟାଚାର ଓ ଅନାଚାର ବିରୋଧରେ ବିପ୍ଳବ ଯେହେତୁ ବଞ୍ଚିତମଣିଷର ଚିରପୋଷିତ ଅଭିଳାଷ, ସମ୍ଭାବ୍ୟ ସଂଗ୍ରାମ ପାଇଁ ସେମାନଙ୍କୁ ପ୍ରସ୍ତୁତକରିବା ତତ୍ତ୍ୱର ହିଁ କର୍ତ୍ତବ୍ୟ, କାହିଁକିନା, ବିପ୍ଳବର ଚେତନା ଶୂନ୍ୟରୁ ଖସେନା ତଳକୁ । ଶୂନ୍ୟ କହୁଚି କାହିଁକିନା, ଯୁଦ୍ଧ ଅବ୍ୟବହିତରେ ମାର୍କ୍ସବାଦୀ ଭାବିଚନ୍ତି, ଶ୍ରମଜୀବୀ ଏଣିକି ନିଜ ଜାତିରାଷ୍ଟ୍ରର ପରିସୀମା ଭିତରେ ଟ୍ରେଡ୍‌ଇଉନିୟନ୍ ମାଧ୍ୟମରେ ଦାବି ପୂରଣକରୁ; ପୃଥିବୀ କଥା, କ୍ୟାପିଟାଲ୍‌ର ଅମାନବିକତା କି ସମାଜତନ୍ତ୍ରର ସମ୍ଭାବନା କଥାଗୁଡ଼ାକୁ ପାସରିପକାଉ ! ଏ ଭୀରୁତା ଲେନିନ୍‌ଙ୍କ ସକାଶେ ଥିଲା ସାକ୍ଷାତ୍ ଆହ୍ୱାନ; ବିଶେଷତଃ ଏଇ କାରଣରୁ ଯେ ୧୮୮୮ରୁ ଏଙ୍ଗେଲ୍‌ସଙ୍କ ସାଙ୍ଗ ଏବଂ ଜର୍ମନ୍ ରାଜନୀତିର ଆଗଧାଡ଼ିର ନେତା ଏଡୁଆଡ଼ ବେର୍ଣ୍ଣଷ୍ଟାଇନ୍ ୧୯୦୧ରେ ପ୍ରସ୍ତାବକରିଥିଲେ ମାର୍କ୍ସବାଦର ସଂଶୋଧନ; ଯୋଉଥିରୁ

ରିଭିସନିସ୍ମ, ରିଭିସନିଷ୍ଟ (ସଂଶୋଧନବାଦୀ) ଭଳି କଥାଗୁଡ଼ାକ ବାହାରିଚି । ବର୍ତ୍ତମାନ ପ୍ରେକ୍ଷିତରେ ମଧ୍ୟ ବେର୍ଣ୍ଷ୍ଟାଇନ୍‌ଙ୍କ ଯୁକ୍ତି ସ୍ମରଣଯୋଗ୍ୟ : ଯେ, ବିପ୍ଳବ ଦ୍ୱାରା ଧନତନ୍ତ୍ରର ଉତ୍ପାଟନ ମାର୍କ୍ସ୍‌ଙ୍କୁ ମନେହୋଇଚି ଅନିବାର୍ଯ୍ୟ ଯେହେତୁ ଧନତନ୍ତ୍ରର ନିୟତିକୁ ମନେହୋଇଛି ଇତିହାସ ଦ୍ୱାରା ଅଭିଶପ୍ତ । ଏପରି ମନେହେବା କାରଣ, ଧନତନ୍ତ୍ରର ଗତି ଥିଲା ଅର୍ଥନୀତିକ ଅବରୁଦ୍ଧତା ଦିଗକୁ । ମାତ୍ର ଅଭିପ୍ରେତ ଅବରୋଧ ଘଟିନାହିଁ କି ଭବିଷ୍ୟତରେ ଘଟିବ ବୋଲି ଲକ୍ଷଣ ସୁଦ୍ଧା ଦିଶୁନାହିଁ । ଏ ପରିସ୍ଥିତିରେ ପ୍ରଲେତାରିଏତ୍ ଆଉ ହଣାକଟା ଭିତରକୁ ନପଶି, ସ୍ଥିତ ସମାଜବ୍ୟବସ୍ଥାରୁ ଶାନ୍ତିପୂର୍ଣ୍ଣ ଉପାୟରେ ଦାବିଦ୍ରବ୍ୟ ଆଦାୟକରୁ । ଭାରତରେ ରାଷ୍ଟ୍ରକ୍ଷମତା ଆଜି ଯୋଉମାନଙ୍କ କରାୟତ୍ତ, ଢେର୍‌ଲୋକ ତାଙ୍କ ଭିତରୁ ଇଂଲଣ୍ଡ-ଆମେରିକାରେ ପାଠପଢ଼ିଚନ୍ତି; ସେମାନଙ୍କ ରାଜନୀତିକ ଅବସ୍ଥାନ ବେର୍ଣ୍ଷ୍ଟାଇନ୍‌ଙ୍କ ବୌଦ୍ଧିକ ଅବସ୍ଥାନଠାରୁ ଭିନ୍ନନୁହେଁ । ବେର୍ଣ୍ଷ୍ଟାଇନ୍ ବି ଥିଲେ ଏମାନଙ୍କ ଭଳି ସୋସାଲ୍-ଡେମୋକ୍ରାଟ୍, ଏବଂ ସେକାଳର ଇଉରୋପରେ ତାଙ୍କ ଭଳି ଭାବୁକ ମଧ୍ୟ ଅଭାବ ନଥିଲେ ।

କିନ୍ତୁ ସଂଖ୍ୟାଗରିଷ୍ଠର ଇଚ୍ଛା ଯେହେତୁ ଗଣତନ୍ତ୍ରର ନିର୍ଦ୍ଧାରକ, ରାଜନୀତିକ ସ୍ୱାଧୀନତା, ଅର୍ଥାତ୍ ସାବାଳକ ଭୋଟାଧିକାର ଭଳି ନାନାଦି ବୁର୍ଜୋୟା ସାମାଜିକ-ଅବରୋଧ, ଶୋଷିତ-ନିର୍ଯ୍ୟାତିତକୁ ଭୁଲିଯିବାକୁ ବାଧକରେ ଯେ ଯୋଉ ଶ୍ରେଣୀ ତାକୁ ଦବାଇରଖିଚି, ସେ ଶ୍ରେଣୀର କର୍ତ୍ତୃତ୍ୱକୁ ପରିବ୍ୟାପ୍ତକରେ ରାଷ୍ଟ୍ର ରୂପକ ସର୍ବମାନ୍ୟ ପ୍ରତିଷ୍ଠାନ । ଏବଂ ସେଇ ରାଷ୍ଟ୍ରର ବିଧିବିଧାନ ବଳରେ ଶୋଷଣ ଓ ଆଧିପତ୍ୟ ବୈଧତା ପାଇଯାଏ ଜନସାଧାରଣଙ୍କ ଦୃଷ୍ଟିରେ । ବେର୍ଣ୍ଷ୍ଟାଇନ୍‌ଙ୍କ ଦୃଷ୍ଟିଭଙ୍ଗୀକୁ ଗୋଟିଏମାତ୍ର ବାକ୍ୟରେ ବ୍ୟକ୍ତକରିଚନ୍ତି ଲେନିନ୍ : The movement is everything, the ultimate aim is nothing । ଶୋଷିତକୁ ବେର୍ଣ୍ଷ୍ଟାଇନ୍‌ଙ୍କ ପରାମର୍ଶ ଥିଲା, ଟ୍ରେଡ୍‌ଇଉନିୟନ୍ ଭଳି ଦିହଘଷା କନ୍ଦଳରେ ଦିନପରେ ଦିନ ଲିପ୍ତରହି ଆନ୍ଦୋଳନରୁ ଯଥାସମ୍ଭବ ଲାଭଉଠାଇବା, ଏବଂ ସେଇ ସୂତ୍ରରେ, ଧନତାନ୍ତ୍ରିକ ବିଧିବ୍ୟବସ୍ଥାର ଲକ୍ଷ୍ୟଣୀୟ ଅବୟବଗୁଡ଼ାକ ପ୍ରତି ଆଖିବୁଜିଦେବା । ଅନ୍ୟ ଶବ୍ଦରେ, ଧନତନ୍ତ୍ର କୋଉ ମାର୍ଗରେ ବିବର୍ତ୍ତିତହେଉଚି ଏବଂ ସେ ବିବର୍ତ୍ତନ କି ଭାବରେ ଆନ୍ଦୋଳନର ମୂଳଲକ୍ଷ୍ୟ ସମାଜତନ୍ତ୍ର ଆଡ଼କୁ ଶ୍ରମଜୀବୀକୁ ଗତିବେଗ ଯୋଗାଉଚି, ସେକଥାକୁ ଅଯଥା ଗୁରୁତ୍ୱ ନଦେବାକୁ ବେର୍ଣ୍ଷ୍ଟାଇନ୍‌ଙ୍କ ପରାମର୍ଶ । ବେର୍ଣ୍ଷ୍ଟାଇନ୍ ତ ଏକେଲା ନୁହେଁ, 'ଶୋଧନ' ସପକ୍ଷରେ ଆହୁରି ଅନେକ ବାହାରିଚନ୍ତି; ତାଙ୍କ ସଂଶୋଧନପ୍ରସ୍ତାବ ମଧ୍ୟ ସବୁଆଡ଼କୁ ଯାଇଚି, ଖାଲି ରାଜନୀତି କି ଅର୍ଥନୀତି ନୁହେଁ; କାହିଁକିନା, ଶୋଧନବାଦ ଯୋଉ ରୂପ ପରିଗ୍ରହକରିଚି, ତା ଏକ ତତ୍ତ୍ୱ-ଷ୍ଟ୍ରକ୍‌ଚର୍; ଭୂୟୋଦର୍ଶନର ରୂପଧରିଚି ବୋଲି,

ଲେନିନ୍ ଭାବିଚନ୍ତି, ଶୋଧନବାଦ ବ୍ୟକ୍ତିଗତ ଅଭିମତ ନୁହେଁ, ସାଂସାରିକ ସୁଖସୁବିଧା ସ୍ୱାର୍ଥରେ ଚିନ୍ତାର ବିଭିନ୍ନତାକୁ ଅତିକ୍ରମକରିବା ଉଦ୍ୟମ । ପ୍ରତ୍ୟେକ ସୋସାଲ୍ ଡେମୋକ୍ରାଟ୍ ଭିତରୁ ଶୋଧନବାଦକୁ ନିଷ୍କାସିତକରିବାକୁ ଆକ୍ରମଣ ଆରମ୍ଭହୋଇଚି; ମାତ୍ର ଘଣ୍ଟାଚକଟାର ତୀବ୍ରତାକୁ ସମ୍ମୁଖୀନହୋଇ ଶ୍ରମିକଶ୍ରେଣୀର ଆନ୍ଦୋଳନ ମଧ୍ୟ ଅକ୍ଷତ ରହିନାହିଁ । ଶୋଧନବାଦର ଚେର କେତେ ଗହୀରକୁ ଭେଦିଚି, ଜଣାପଡ଼ିଚି ଯୁଦ୍ଧ ଆରମ୍ଭହୋଇଯିବା ସଙ୍ଗେସଙ୍ଗେ, କାହିଁକିନା, ଶ୍ରମିକଙ୍କ ଭିତରେ ଦେଖାଦେଇଚି ଉତ୍କଟ ସ୍ୱଦେଶପ୍ରେମ ସାଙ୍ଗକୁ ସ୍ୱଦେଶର ହିତସାଧନ ଆଳରେ ଅନ୍ୟ ଦେଶର ଶ୍ରମଜୀବୀଙ୍କୁ ବିରୋଧ; ଆଉ ଯୁଦ୍ଧକୁ ସମର୍ଥନ କି ବିରୋଧ ବିଷୟରେ ମଧ୍ୟ ଦେଖାଯାଇଚି ଇଉରୋପ୍ର ସୋସାଲ୍ ଡେମୋକ୍ରାଟ୍ଙ୍କ ଭିତରେ ତିନିପ୍ରକାର ଅବସ୍ଥାନ : ପ୍ରଥମଟି ଅବଶ୍ୟ ଦାବି ହାସିଲ୍କରିବାକୁ ଗଣତାନ୍ତ୍ରିକ ପଦ୍ଧତିରେ ଆନ୍ଦୋଳନ, ଏବଂ ସେଥିପାଇଁ, ଯୁଦ୍ଧରେ ସ୍ୱଦେଶକୁ ବିରୋଧ, ମାତ୍ର ବିପ୍ଳବ ସ୍ୱାର୍ଥରେ ନୁହେଁ, ଶାନ୍ତିସ୍ଥାପନ ଉଦ୍ଦେଶ୍ୟରେ; ଲେନିନ୍ଙ୍କ ଭାଷାରେ, peace with the socialchauvinists । ତୃତୀୟ ଅବସ୍ଥାନ ସ୍ୱୟଂ ଲେନିନ୍ ଓ ରୋସା ଲୁକ୍ସେମ୍ବୁର୍ଗ ପ୍ରଭୃତିଙ୍କର : the main enemy is within the country । କାହିଁକିନା, ଯୁଦ୍ଧର ପ୍ରକୃତ ଲକ୍ଷ୍ୟ ଶାନ୍ତିସ୍ଥାପନ ନୁହେଁ କି ଶ୍ରମିକ ସ୍ୱାର୍ଥରେ ବିପ୍ଳବ ନୁହେଁ; ଏକମାତ୍ର ଅଭିପ୍ରାୟ ସାମ୍ରାଜ୍ୟ ପ୍ରତିଷ୍ଠା; ପୃଥିବୀଟାକୁ ଭାଗବଣ୍ଟୁଆରା । 'ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧ' ସେଥିପାଇଁ ନିରର୍ଥକ ବାଗାଡ଼ମ୍ବର; ଅସଲ ଯୁଦ୍ଧ ହେବ ଶ୍ରମଜୀବୀର ଯୁଦ୍ଧ ସାକ୍ଷାତ୍ ପ୍ରତିପକ୍ଷ ନିଜ ସମାଜର ସାମ୍ରାଜ୍ୟବାଦୀ ବୁର୍ଜୋୟା ବିପକ୍ଷରେ; ଏବଂ ସେଥିପାଇଁ, ପ୍ରଲେତାରିଏତ୍ର ଉଚିତ କର୍ତବ୍ୟ ସାମ୍ରାଜ୍ୟବାଦୀ ଯୁଦ୍ଧକୁ ବିପ୍ଳବାଭିମୁଖୀକରି ଗୃହଯୁଦ୍ଧରେ ପରିଣତକରିବା । *ଇମ୍ପିରିଆଲିଜ୍ମ* ପୁସ୍ତିକାରେ ରହିଚି ଏଇ ଅବସ୍ଥାନତ୍ରୟର ଲେନିନ୍କୃତ ବିଶ୍ଳେଷଣ, ତତ୍ତ୍ୱର ଉତ୍ପତିକୁ ମାର୍କ୍ସୀୟ ପଲିଟିକ୍ୟାଲ୍ ଇକନମିର ଶୃଙ୍ଖଳାଭିତରେ ଅବସ୍ଥାପିତ ନକଲେ ବିଶ୍ୱଦୃଷ୍ଟି ଯେହେତୁ ଅସମ୍ଭବ । ଲୁକ୍ସେମ୍ବୁର୍ଗ ବି ବହିଲେଖିଚନ୍ତି ସାମ୍ରାଜ୍ୟବାଦ ବିଷୟରେ; ମାତ୍ର ବକ୍ତବ୍ୟ ଏକେବାରେ ବିମୂର୍ତ୍ତ ତତ୍ତ୍ୱ; ଲେନିନ୍ ଚାହିଁଚନ୍ତି ତତ୍ତ୍ୱ ଓ କର୍ମଧାରାର ସମବାୟ, ମାର୍କ୍ସୀୟ ପରିଭାଷାରେ 'ପ୍ରାକ୍ସିସ୍' । ତତ୍କାଳିକ ପ୍ରରୋଚନା ଅବଶ୍ୟ ଇଉରୋପର ଶ୍ରମଜୀବୀ ଆନ୍ଦୋଳନ, ମାତ୍ର କର୍ମଧାରା ବା ଅନୁଶୀଳନ ଦୃଷ୍ଟିରୁ ଲେନିନ୍ଙ୍କ ତତ୍ତ୍ୱପରିଧି ଭିତରକୁ ଚାଲିଆସିଚି ସମକାଳର ସମସ୍ତ ଅବନତ ଜାତୀୟତା । ଏବଂ, ସେଇ ସୂତ୍ରରେ, ଇଉରୋପ୍ର ଶ୍ରମିକଆନ୍ଦୋଳନ ସହିତ ତୃତୀୟବିଶ୍ୱ ଯୁକ୍ତହେବା ଫଳରେ ତାଙ୍କ 'ଆନ୍ତର୍ଜାତିକ' ଭିତରକୁ ଆସିଛି ଭାରତ, ଚୀନ୍, ଭିଏତ୍ନାମ୍ ସାଙ୍ଗକୁ ଜର୍ମାନୀ, ବିଟ୍ରେନ୍ ଓ ଫ୍ରାନ୍ସ । ମାର୍କ୍ସ ଭାବିଚନ୍ତି ପ୍ରଲେତାରିଏତ୍ କେମିତି ବିପ୍ଳବକରିବ

କେବଳ ଇଉରୋପରେ; ଉପନିବେଶ ତେଣୁ ଗୁରୁତ୍ୱପାଇନାହିଁ । ଲେନିନ୍ ହିଁ ଦେଲେ ସାମ୍ରାଜ୍ୟବାଦୀ ଦେଶମାନଙ୍କ ସହିତ ଅଧଃପତିତ ପ୍ରାଚ୍ୟସମାଜକୁ ସମାନ ଗୁରୁତ୍ୱ । କାହିଁକିନା; ଇଉରୋପର ଶାସକଶ୍ରେଣୀ ସାମ୍ରାଜ୍ୟବାଦୀ ହେବା ସତ୍ତ୍ୱେ, ଉପନିବେଶର ଶ୍ରମଜୀବୀସ୍ୱାର୍ଥରୁ ଇଉରୋପର ଶ୍ରମିକଶ୍ରେଣୀର ସ୍ୱାର୍ଥ ଯେହେତୁ ଅଲଗା ନୁହେଁ, ଉଭୟ ଗୋଲାର୍ଦ୍ଧରେ ବିପ୍ଲବର ସମ୍ଭାବନା ଭିତରେ ରହିଚି ଦ୍ୱାନ୍ଦ୍ୱିକ ସମ୍ବନ୍ଧ । *ଇମ୍ପିରିଆଲିଜ୍ମ* ପୁସ୍ତିକାର ଫରାସୀସଂସ୍କରଣ ଭୂମିକାରେ ତେଣୁ ଲେଖିଚନ୍ତି, But as a matter of fact, the capitalist threads, which in thousand different intercrossings bind these enterprises with private property in the means of production in general, have converted this railway construction into an instrument of oppressing a thousand million population of the globe that inhabits the dependent countires, as well as the wage-slaves of capital in the 'civilised' countries। ତଥାକଥିତ 'ସଭ୍ୟ' ଦୁନିଆର ବାସିନ୍ଦାନୁହେଁ ଯୋଉ ହଜାରେ ମିଲିଅନ୍ ଶ୍ରମଜୀବୀ, ବିପ୍ଲବତତ୍ତ୍ୱର ପରିମଣ୍ଡଳ ଭିତରକୁ ଯେ ଆସିଯାଇଚନ୍ତି, ତାର ଐତିହାସିକ ତାତ୍ପର୍ଯ୍ୟ, ଏକ୍ଷଣି ଯେତେବେଳେ ବିଶ୍ୱାୟନର ପ୍ରକୋପ କ୍ରମାଗତ ବଢୁଚି, ଭାରତକୁ ଉପଲବ୍ଧିକରିବାକୁ ପଡ଼ିବ । ଉଲ୍ଲାସରେ ଭାସିଯାଇନାହାନ୍ତି ଲେନିନ୍ । ବିଶେଷତଃ ଯେହେତୁ ୧୯୦୫ ବେଳକୁ ତୁରସ୍କ, ଚୀନ୍ ଓ ପାରସ୍ୟରେ ଘଟିଯାଇଚି ବିପ୍ଲବ, ଭାରତରେ ମଧ୍ୟ ଦେଖାଦେଇଚି ଆଭାସ : ଟିଳକ ଗିରଫହେବା ସଙ୍ଗେସଙ୍ଗେ ବମ୍ବେନଗରୀକୁ ଅଚଳକରିଦେଇଚି ଶ୍ରମିକ-ହରତାଳ; ଆଉ, ସାମ୍ରାଜ୍ୟବାଦୀ ଯୁଦ୍ଧରେ ଭାରତବାସୀଙ୍କୁ ତୋପମୁହଁକୁ ଠେଲିଦେବା ଫଳରେ ଶିଖିଯାଇଚନ୍ତି ଆଗ୍ନେୟାସ୍ତ୍ରର ବ୍ୟବହାର । ଅସ୍ତ୍ର ବ୍ୟବହାର-ଯୋଗ୍ୟତାକୁ ଲେନିନ୍ ଭାବିଚିନ୍ତି ଔପନିବେଶିକ ପ୍ରଜା ପକ୍ଷରେ ଚେତନାର ବିସ୍ଫୋରଣ । ଅନ୍ୟ ଶବ୍ଦରେ, ଯୁଦ୍ଧ ପୂର୍ବରୁ ଓ ଚାଲିଥିବାବେଳେ ଲକ୍ଷ୍ୟକରିଚନ୍ତି ଉପନିବେଶଗୁଡ଼ିକରେ ବୈପ୍ଲବିକ ପ୍ରକ୍ରିୟାର ସୂତ୍ରପାତ, ଯା ବଳ ସଂଗ୍ରହକରିଚି ଦ୍ରୁତ ଓ କ୍ରମାଗତ ।

ଇଉରୋପ୍, ବିଶେଷତଃ ଜର୍ମାନୀରେ, ବିପ୍ଲବର ସମ୍ଭାବନା କ୍ଷୀଣହୋଇଯିବା ସଙ୍ଗେସଙ୍ଗେ ପ୍ରାଚ୍ୟର ନିଷ୍ପେଷିତ ଜନସଂଗ୍ରାମ ଉପରେ ଆସ୍ଥାବଢ଼ିବା ସ୍ୱାଭାବିକ; ବଢ଼ିଚି ବୋଲି, ୧୯୨୩ରେ ପୁଣି ଲେଖିଚନ୍ତି : In the last analysis, the outcome of the struggle will be determined by the fact that Russia, China, India etc. account for the overwhelming majority of the population of the globe. And during the last few years it is this

majority that has been drawn into the struggle for emancipation with extraordinary rapidity, so that in this respect there cannot be the slightest doubt what the final outcome of the struggle will be. In this sense the complete victory of socialism is fully and absolutely assured । କହିବା ବାହୁଲ୍ୟ, ୧୯୨୩ରୁ ପ୍ରାୟ ତିନିଦଶକ ଉତାରୁ ଉପଲବ୍ଧ ହୋଇଚି ପ୍ରତ୍ୟାଶିତ ପରିଣାମ; କିନ୍ତୁ ଭାରତରେ ଅନ୍ତତଃ, ଶ୍ରମଜୀବୀର ସଂଗ୍ରାମ ଆଣିନାହିଁ ସ୍ୱାଧୀନତା । ଦ୍ୱିତୀୟ ମହାଯୁଦ୍ଧ ଅବ୍ୟବହିତରେ ଆସିଚି କେବଳ ରାଜନୀତିକ ମୁକ୍ତି ଖଣ୍ଡିତ ଭାରତକୁ; ଯଥାର୍ଥ ସମାତନ୍ତ୍ର ତୃତୀୟବିଶ୍ୱର କୋଉହେଲେ ଦେଶ ହାସିଲ୍‌କରି ପାରିନାହିଁ । ପାରିନାହିଁ, କାହିଁକିନା, ସ୍ୱଦେଶର ବୁର୍ଜୋୟା ବିରୋଧରେ ଯୋଉ ଗୃହଯୁଦ୍ଧ କଳ୍ପନାକରିଥିଲେ ଲେନିନ୍, ପ୍ରଲେତାରିଏତ୍ ହଟିଆସିଚି ସେଥିରୁ ଜାତିପ୍ରେମ ଜୁଆରରେ ଭାସିଯାଇ । ତଥାପି ଲେନିନ୍ କହିଥିଲେ, କମିଉନିଷ୍ଟ୍ ଇଣ୍ଟରନ୍ୟାସନାଲ୍ ଆଉ କମିଉନିଷ୍ଟ୍ ପାର୍ଟିମାନଙ୍କ କର୍ତ୍ତବ୍ୟ ହେବ ପଶ୍ଚାଦ୍‌ପଦ ଓ ବିଦେଶୀ-ଶାସନାଧୀନ ଦେଶମାନଙ୍କରେ ବୁର୍ଜୋୟାପରିଚାଳିତ ସ୍ୱାଧୀନତାଆନ୍ଦୋଳନକୁ ପୂର୍ଣ୍ଣସମର୍ଥନ; ଖାଲି ଗୋଟିଏ ସର୍ତ୍ତରେ ଯେ ପ୍ରଲେତାରିଏତ୍‌ର ସ୍ୱାର୍ଥ ଓ ସଂଗ୍ରାମ, ଭ୍ରୂଣଅବସ୍ଥାରେ ଥିଲେସୁଦ୍ଧା, ତାକୁ ବ୍ୟାହତକଲାଭଳି କୋଉହେଲେ ଆପୋଷ କରାଯିବନାହିଁ । ଏପରିକି, କୃଷକଆନ୍ଦୋଳନକୁ ଦିଆଯିବ ନିଃସର୍ତ୍ତ ସାହାଯ୍ୟ ଓ ସମର୍ଥନ against the landowners, against landed proprietorship, and the manifestations and survivals of feudalism.... । କମିଉନିଷ୍ଟ୍ ଇଣ୍ଟରନ୍ୟାସନାଲ୍‌ର ଦ୍ୱିତୀୟ କଂଗ୍ରେସ୍‌ରେ ଭାରତର ପ୍ରତିନିଧି ମାନବେନ୍ଦ୍ରନାଥ ରାୟ ବୁର୍ଜୋୟାପରିଚାଳିତ ସ୍ୱାଧୀନତାଆନ୍ଦୋଳନକୁ ସମର୍ଥନକରିବା ପ୍ରସ୍ତାବକୁ ବିରୋଧକରିଥିଲେ, ଯେହେତୁ a certain *rapproachment* had developed between the bourgeoisie of the exploiting countries and that of the colonies, so that very often the bourgeoisie of the oppressed countries, while it does support the national movement, is in full accord with the imperialist bourgeoisie, that is, joins forces with it against all revolutionary movements and revolutionary classes । ମାନବେନ୍ଦ୍ରନାଥଙ୍କ ଅନ୍ତର୍ଦୃଷ୍ଟି ଆଜି ମଧ୍ୟ ଭାବିଦେଖିବା ଭଳି ବିଷୟ; ମାତ୍ର ସେତେବେଳେ ରଫାହୋଇ ସ୍ଥିରହୋଇଚି, 'ବୁର୍ଜୋୟା-ଡେମୋକ୍ରାଟିକ୍' ଜାଗାରେ ସ୍ୱାଧୀନତାଆନ୍ଦୋଳନକୁ କୁହାଯିବ 'ନ୍ୟାସନାଲ୍-ରେଭୋଲ୍ୟୁସନାରି' । ଫଳରେ ଲେନିନ୍‌ଙ୍କ ମୂଳପ୍ରସ୍ତାବ ନିର୍ଧାରହୋଇ ଦବୁଡ଼ା ହୋଇଗଲା; ସ୍ୱଚ୍ଛତା ଜାଗାରେ

ଦେଖାଦେଲା ଦ୍ୟର୍ଥ ଅନିଶ୍ଚୟତା, ଏବଂ ଅନତିବିଳମ୍ବେ ମାନବେନ୍ଦ୍ରନାଥ ଇଣ୍ଟରନ୍ୟାସନାଲରୁ ବରଖାସ୍ତହେବା ଉତାରୁ ଭାରତର କମିଉନିଷ୍ଟ୍ ପାର୍ଟିର ଅଭିଭାବକ ନିଯୁକ୍ତହେଲା କମିଉନିଷ୍ଟ୍ ପାର୍ଟି ଅବ୍ ଗ୍ରେଟ୍ ବ୍ରିଟେନ୍ । କିନ୍ତୁ, ଉପନିବେଶର ଅବସାନ ସତ୍ତ୍ୱେ, ବୁର୍ଜୋୟା ପ୍ରତି କିଭଳି ଆଚରଣ ଉପଯୁକ୍ତ, କିମ୍ବା ଶିଳ୍ପାୟନଭିତ୍ତିକ ପୁଞ୍ଜିବାଦକୁ ଛାଡ଼ି ଦେଶର ଆର୍ଥିକ ଉନ୍ନୟନ ସମ୍ଭବପର କି ନୁହେଁ—ପ୍ରଶ୍ନଗୁଡ଼ାକ ଆମ ପିଛାଛାଡ଼ିନାହିଁ । ଛାଡ଼ିନାହିଁ ବୋଲି, ଜାଣିବାକୁ ଇଚ୍ଛାହୁଏ ଶିଳ୍ପୋନ୍ନତ ଦେଶର ପ୍ରଲେତାରିଏତ୍ ଶୋଧନବାଦୀ ହେଲା କାହିଁକି, ଅଥବା ଉତ୍କଟ ଜାତୀୟତାବାଦୀ ? ଲେନିନ୍ କହୁଚନ୍ତି, A number of new middle strata are inevitably brought into existence again and again by capitalism. These samll producers are just as invevitably being cast into the ranks of the proletariat. It is quite natural that the petty bourgeois world-outlook should again and again crop up in the ranks of the broad workers' parties । ଯୁଦ୍ଧ ଲାଗିଯିବା ସଙ୍ଗେସଙ୍ଗେ ୧୯୦୮ରେ ଲିଖିତ ଏ ଉତର ଆଉ ଯଥେଷ୍ଟ ମନେହୋଇନାହିଁ; *ଇମ୍ପିରିଆଲିଜ୍ମ* ରେ ସେଥିପାଇଁ ଦେଖିବାକୁ ମିଳୁଚି ସଂପୂର୍ଣ୍ଣ ଭିନ୍ନ ବ୍ୟାଖ୍ୟା : ପୁଞ୍ଜିପତିଙ୍କ ଭିତରେ ପାରସ୍ପରିକ ପ୍ରତିଯୋଗିତାକୁ ଅତିକ୍ରମକରି ମନୋପଲି ପର୍ଯ୍ୟାୟରେ ପହଞ୍ଚିବାଉତାରୁ କ୍ୟାପିଟାଲିସ୍ମ ହାତକୁ ଆସିଚି ବିପୁଳପରିମାଣ ବିନିଯୋଗଯୋଗ୍ୟ ମୁନାଫା ବା ସୁପରପ୍ରଫିଟ୍; ସେଥିରୁ କିୟଦଂଶ ଶ୍ରମଜୀବୀଶ୍ରେଣୀର ଉପରସ୍ତରର ଲୋକଙ୍କୁ ଉତ୍କୋଚ ଭାବରେ ଦେଇଦେଇ ସାମ୍ରାଜ୍ୟବାଦୀଗଣତନ୍ତ୍ର ତିଆରିକରିଚି ଶ୍ରମିକଙ୍କ ଭିତରେ ଅଭିଜାତତନ୍ତ୍ର (ଓ୍ୱର୍କର୍ସ୍ ଆ୍ୟାରିଷ୍ଟୋକ୍ର୍ୟାସି), ଏବଂ ସେଇ ଅଭିଜାତ ହିଁ ଟ୍ରେଡ୍ଇଉନିୟନ୍ର ନେତା କିମ୍ବା ଶ୍ରମିକଆନ୍ଦୋଳନର କର୍ତ୍ତୃପକ୍ଷ । ଏଥିରୁ ବାହାରିଚି ଅନ୍ଇକୋଆଲ୍ ଇକ୍ସଚେଞ୍ଜ୍ ବା ଅସମବିନିମୟ ତତ୍ତ୍ୱ, ଯା ସ୍ପଷ୍ଟ କରିଦେଇଚି ଅଗ୍ରସର ଧନତାନ୍ତ୍ରିକ ସମାଜରେ ଶ୍ରମଜୀବୀଶ୍ରେଣୀର ବିପ୍ଳବଚେତନା କି କାରଣରୁ ହୋଇଯାଏ କ୍ରମଶଃ ନିସ୍ତେଜ କିମ୍ବା ଦୋଦୁଲ୍ୟମାନ ।

ଲୋକ ଭାବିଚନ୍ତି, ଏ ତତ୍ତ୍ୱର ଉଦ୍ଦେଶ୍ୟ ପୃଥିବୀକୁ ବୁଝାଇଦେବା ସାମ୍ରାଜ୍ୟବାଦର ମଦତ୍ ଛଡ଼ା ପୁଞ୍ଜିବାଦ କାହିଁକି ତିଷ୍ଠିପାରିବନାହିଁ ପାଶ୍ଚାତ୍ୟ ସମାଜରେ, ଅଥବା କି ଉପାୟରେ ସାମ୍ରାଜ୍ୟବାଦ ଧନତନ୍ତ୍ରକୁ ଉଦ୍ଧାରକରୁଚି ଅନ୍ତର୍ନିହିତ ବିବିଧ ବୈପରୀତ୍ୟର ସଂଘାତରୁ । ମାତ୍ର ଲେନିନ୍ ଯାହାଙ୍କ ସକାଶେ ଲେଖିଥିଲେ, ସେମାନେ ପ୍ରଲେତାରିଏତ୍; ଜ୍ଞାନ ଓ କର୍ମର ସମବାୟରୁ ବିପ୍ଳବଚେତନା ଉତ୍ସାରିତହେବା ବାଟରେ

ସମ୍ଭାବ୍ୟ ବାଧାବିଘ୍ନକୁ ଚିହ୍ନଟକରିବା ଥିଲା ତାଙ୍କର ଏକମାତ୍ର ଅଭିପ୍ରାୟ । କାହିଁକିନା, ଧନତନ୍ତ୍ର ହେଉ କି ସାମ୍ରାଜ୍ୟବାଦ, ଚିରସ୍ଥାୟୀ କୋଉ ଚରିତ୍ରଲକ୍ଷଣ ନୁହେଁ; ଗୋଟିଏ ଗୋଟିଏ ଐତିହାସିକ ପର୍ଯ୍ୟାୟ ମାତ୍ର । ପ୍ରତିଯୋଗିତାରୁ ମନୋପଲି ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣହେବା ଉତାରୁ, ପରସ୍ପରନିର୍ଭରଶୀଳ ଦୁଇ ଭୂଖଣ୍ଡରେ ପୃଥିବୀକୁ ବିଭାଜିତ କରିଦେଇଚି ଧନତନ୍ତ୍ର : ଉତ୍ପାଦନର ପ୍ରାଥମିକ ଉପକରଣ, ଯେପରି କଞ୍ଚାମାଲ, ବଜାର, ରପ୍ତାନିର ଲକ୍ଷ୍ୟସ୍ଥଳ ଇତ୍ୟାଦି ଯୋଗାଇଦେବ ତଥାକଥିତ ତୃତୀୟବିଶ୍ୱ, ଯାର ବିଦ୍ୟମାନ ଅର୍ଥବ୍ୟବସ୍ଥା କୃଷିନିର୍ଭର; ମାତ୍ର କାରଖାନାରେ ମ୍ୟାନୁଫ୍ୟାକ୍‌ଚର୍ ସାଧିତହେବ ମେଟ୍ରପଲିଟାନ୍ ପଶ୍ଚିମରେ, କାରଖାନାରେ ପ୍ରସ୍ତୁତ ପଣ୍ୟ ସହିତ ପୁଞ୍ଜି ମଧ୍ୟ ରପ୍ତାନିହେବ ମେଟ୍ରପଲିରୁ ଅବଶିଷ୍ଟ ପୃଥିବୀକୁ । କ୍ୟାପିଟାଲିସ୍ମର ଏଇ ମନୋପଲି ଅବତାର, ସାମ୍ରାଜ୍ୟବାଦ ଅନୁପସ୍ଥିତିରେ ମଧ୍ୟ ସମ୍ଭବପର, ଅନ୍ତତଃ ତତ୍ତ୍ୱ ଦୃଷ୍ଟିରୁ; କାହିଁକିନା, ପୁଞ୍ଜିପତିଙ୍କ ଭିତରେ ପ୍ରତିଯୋଗାଗିତା କ୍ରମାଗତ ଲାଗିରହିଥିଲା ବୋଲି ତୃତୀୟବିଶ୍ୱାକୁ ନାନାଦି 'ଇକନମିକ୍ ଟେରିଟରି'ରେ ବିଭକ୍ତକରିଥିଲେ ପ୍ରତିଦ୍ୱନ୍ଦ୍ୱୀଙ୍କୁ ନିଜ ଇଲାକା ଭିତରକୁ ପୁରାଇଦେବେନାହିଁ ବୋଲି; ସାମ୍ରାଜ୍ୟବାଦ ଅପରିହାର୍ଯ୍ୟ ମନେହୋଇନାହିଁ ସେତେବେଳେ । ଅଥଚ ପ୍ରତିଯୋଗିତା ପର୍ଯ୍ୟାୟରୁ ଏକଚାଟିଆ ପର୍ଯ୍ୟାୟକୁ ଉଠିବାପାଇଁ, ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତା ଆଉ ଖଣ୍ଡିତ ଇକନମିକ୍ ଟେରିଟରି ଧାରଣାକୁ ବିଦାକରିବା ଦରକାର; ସେକାମରେ ମେଟ୍ରପଲିଟାନ୍ ରାଷ୍ଟ୍ରଗୁଡ଼ିକର ସହଯୋଗ ନମିଳିଲେ ମନୋପଲି ସଂଗଠିତହେବା ସମ୍ଭବନୁହେଁ । ସେଇ ସହଯୋଗ ହିଁ ଇମ୍ପିରିଆଲିଜ୍ମ; ଧନତନ୍ତ୍ରର ବିବର୍ତ୍ତନରୁ ଯା ଅଚ୍ଛେଦ୍ୟ । କୋଉ ତତ୍ତ୍ୱପ୍ରସୂତ ବିଧାନ ନୁହେଁ, ଇତିହାସ ପ୍ରବାହରେ ମନୁଷ୍ୟପ୍ରଜାତିର ଅଭିଜ୍ଞତା କେବଳ । ସ୍ୱୟଂ ମାର୍କ୍ସ ମଧ୍ୟ ମନୋପଲି କଳ୍ପନାକରିନାହାଁନ୍ତି, ସାମ୍ରାଜ୍ୟବାଦ ତ ଦୂରର କଥା । ଧରାପଡ଼ିଚି ଲେନିନ୍‌ଙ୍କ ଅନ୍ତର୍ଦୃଷ୍ଟିରେ, ଏବଂ ୧୯୧୪ରୁ ୧୯୪୫ ମଧ୍ୟବର୍ତ୍ତୀ ସମୟର ଇତିହାସ ସେଇ ଭବିଷ୍ୟଦୃଷ୍ଟିକୁ ସାବ୍ୟସ୍ତକରିଚି ବାସ୍ତବ ।

ଏକ୍ଷଣି, ଦ୍ୱିତୀୟ ମହାଯୁଦ୍ଧ ସରିଯିବା ଉତାରୁ ଆରମ୍ଭହୋଇଚି ଇତିହାସର ନବପର୍ଯ୍ୟାୟ; କୁହାଯାଉଚି, ପରିବର୍ତ୍ତିତ ପରିସ୍ଥିତି ଚାପରେ ଧନତନ୍ତ୍ର ମଧ୍ୟ ବଦଳିଯାଇଚି; ବଦଳି ଯଦି ଯାଇଚି, ଲେନିନ୍‌ଙ୍କ ଭବିଷ୍ୟଦୃଷ୍ଟି ସହିତ ତାର ସଂପର୍କ କି ରକମ ? ସନ୍ଦେହ ନାହିଁ, ଯୁଦ୍ଧ ମ୍ରିୟମାଣକରିଚି ଧନତନ୍ତ୍ରକୁ; ସାମାଜିକ ଶକ୍ତିମାନଙ୍କ ମଧ୍ୟରେ ଭାରସାମ୍ୟରଖିବାକୁ ପାଶ୍ଚାତ୍ୟସମାଜ ଶ୍ରମଜୀବୀଙ୍କୁ ଦେଇଚି ତେଣୁ ପ୍ରାଥମିକତା, କାହିଁକିନା, ସେଇ ଶ୍ରେଣୀର ତ୍ୟାଗସ୍ୱୀକାର ଯୁଦ୍ଧପାଇଁ ଥିଲା ସର୍ବାଧିକ । ଏଣେ ଉପନିବେଶର ସ୍ୱାଧୀନତାସଂଗ୍ରାମ ହୋଇଉଠିଚି ଉତ୍ତାଳ; ଆତ୍ମରକ୍ଷା ସକାଶେ ଧନତନ୍ତ୍ର

ଗ୍ରହଣକରିଚି ଦ୍ୱିମୁଖୀ ରଣକୌଶଳ : ବିପ୍ଳବବାଦୀ, ବିଶେଷତଃ କମିଉନିଷ୍ଟଙ୍କ ଅନ୍ତରଣ ଓ ଦମନ । ଅନ୍ୟ ପକ୍ଷରେ, ଉନିବେଶର ଦାବିକୁ ସ୍ୱୀକାରକରିବା ସଙ୍ଗେସଙ୍ଗେ ମେଟ୍ରପଲିଟାନ୍ ଶ୍ରମଜୀବୀଙ୍କୁ ବିବିଧ ଅଧିକାର ଓ ସୁବିଧା ଅର୍ପଣ । ତେବେ, ଯୁଦ୍ଧର ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ପରିଣାମ ଥିଲା, ମାର୍କିନ୍ ଯୁକ୍ତରାଷ୍ଟ୍ର ଯୁଦ୍ଧରୁ ବାହାରିଆସିଚି ପ୍ରାୟ ଅକ୍ଷତ; ଆଉ ସୋଭିଏଟ୍ ଇଉନିୟନ୍ କ୍ଷୟକ୍ଷତି ସହିଚି ଅପରିମିତ । ସମଧିକ ବିବେଚ୍ୟ କିନ୍ତୁ ଦ୍ୱିତୀୟ ରଣକୌଶଳ, କାହିଁକିନା, ତୃତୀୟବିଶ୍ୱର ଉପନିବେଶରେ କ୍ଷମତାହସ୍ତାନ୍ତର ଘଟିଚି ଯୋଉ ଶ୍ରେଣୀ ହାତକୁ, ସମାଜ ପିରାମିଡ୍‌ରେ ସିଏ ଉତ୍‌ଥାନପାଦ ବୁର୍ଜୋୟା । ତା ସାଙ୍ଗକୁ, ଧନତାନ୍ତ୍ରିକ ସମାଜରେ କେୟେନ୍ସକଥିତ ଡିମାଣ୍ଡ୍‌ମ୍ୟାନେଜ୍‌ମେଣ୍ଟ୍ ରୀତିନୀତିର ପ୍ରବର୍ତ୍ତନ; ଅର୍ଥାତ୍, ପୂର୍ଣ୍ଣ କର୍ମସଂସ୍ଥାନ ଆୟୋଜନ । ରାଷ୍ଟ୍ରର ପରିଚୟ ହୋଇଚି ତେଣୁ ଓୟେଲ୍‌ଫେଆର୍ ଷ୍ଟେଟ୍ । ତୃତୀୟବିଶ୍ୱର ସଦ୍ୟସ୍ୱାଧୀନ ଦେଶମାନେ କିନ୍ତୁ ପରସ୍ପର ସହିତ ପ୍ରତିଯୋଗିତାକୁ ଓହ୍ଲାଇପଡ଼ିଚନ୍ତି; ରପ୍ତାନି ବଢ଼ାଇ ସଂଚୟକରିବେ ବିଦେଶୀ ମୁଦ୍ରା । ମାତ୍ର ହାତରେ ଅଛି କେବଳ, ଯାହାକୁ କହନ୍ତି ପ୍ରାଇମେରି ପ୍ରଡକ୍ଟ । ମ୍ୟାନୁଫ୍ୟାକ୍‌ଚର୍ ଅଭାବରେ ବାଣିଜ୍ୟ ହରାଇଚି ସ୍ୱାଭାବିକ ଭାରସାମ୍ୟ । ଏଣେ, ଶସ୍ତାରେ ଖାଦ୍ୟବସ୍ତୁ ପାଇଯାଇ ମେଟ୍ରପଲିଟାନ୍ କେନ୍ଦ୍ର ରୋକିଦେଇଚି ମୁଦ୍ରାସ୍ଫୀତି । ଯୁଦ୍ଧବେଳେ ଯୋଉ ଅସ୍ତ୍ରଶସ୍ତ୍ର ଉତ୍ପନ୍ନ କରିଥିଲେ, ସେଥିରୁ ପାଇଚନ୍ତି ନବୀନ ପ୍ରଯୁକ୍ତି; ତାକୁହିଁ ଏକ୍ଷଣି ପ୍ରୟୋଗକରିଚନ୍ତି ଭୋଗ୍ୟପଣ୍ୟର ପରିମାଣ ଓ ବୈଚିତ୍ର ବଢ଼ାଇଦେବାକୁ । ଯୁକ୍ତରାଷ୍ଟ୍ର ପୁଣି ନିଜ ବଜେଟ୍‌କୁ ବର୍ଷପରେବର୍ଷ ନିଅଣ୍ଟିଆକରିରଖି ଇଉରୋପରେ ଡିମ୍ୟାଣ୍ଡ୍-ମ୍ୟାନେଜ୍‌ମେଣ୍ଟ୍‌କୁ ବିଫଳହେବାକୁ ଦେଇନାହିଁ; ସାମରିକ ସରଞ୍ଜାମ ଉତ୍ପାଦନକୁ ମଧ୍ୟ ଯୋଗାଇଦେଇଚି ଯଥାବିହିତ ପୁଞ୍ଜିବିନିଯୋଗ । ମୋଟ୍ ଉପରେ ଇଉରୋପରେ ଘଟିଚି ପୂର୍ଣ୍ଣ କର୍ମସଂସ୍ଥାନ ସାଙ୍ଗକୁ ଉତ୍ପାଦନ ଓ ଉତ୍ପାଦନଶକ୍ତିର ଅଭୂତପୂର୍ବ ଅଭିବୃଦ୍ଧି, ଶ୍ରମଜୀବୀଶ୍ରେଣୀର ଜୀବନମାନରେ ଅପ୍ରତ୍ୟାଶିତ ଉନ୍ନତି । ତୃତୀୟବିଶ୍ୱ ବି ପଛରେ ପଡ଼ିରହିନାହିଁ; ସବୁଠି ଘଟିଚି ଏଭଳି ସମୃଦ୍ଧି ଯା ଅଭୂତପୂର୍ବ । ଏପରିକି  ଯୋଉ ଦେଶ କମିଉନିଜ୍ମକୁ ବିରୋଧକରିଚି, ମେଟ୍ରପଲିଟାନ୍ ବଜାରରେ ପାଇଚି ଅଧିକତର ପ୍ରବେଶାଧିକାର । ଏତେଗୁଡ଼ା ପାରିପାର୍ଶ୍ୱିକ ପ୍ରପଞ୍ଚର ଆକସ୍ମିକ ମିଳନ, ୧୯୫୦ରୁ ୬୦, ଦଶବର୍ଷ ଭିତରେ କ୍ୟାପିଟାଲିଜ୍ମକୁ ପ୍ରତିଭାତକରିଚି ଯଥାର୍ଥ 'ପରିବର୍ତ୍ତନ' । ଆକସ୍ମିକ, କାହିଁକିନା, ପ୍ରପଞ୍ଚଗୁଡ଼ାକ ପୁଞ୍ଜିର ସ୍ୱାଭାବିକ ଲକ୍ଷଣରୁ ସ୍ଥାନଚ୍ୟୁତି । ପଛକୁ ଚାହିଁଲେ ଏକ୍ଷଣି ବୁଝାପଡୁଚି, ଯୁଦ୍ଧୋତ୍ତର ଗର୍ଜମାନ କୃତିତ୍ୱ, ଜନମଙ୍ଗଳ ଆସକ୍ତି, ତୃତୀୟବିଶ୍ୱକୁ ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍ ରପ୍ତାନୀ, ସେତେବେଳେ ମନେହୋଇଚି, ମାର୍କ୍ସୀୟ ଗତିନିର୍ଦ୍ଦେଶକୁ ହୁଏତ କରିଦେଇପାରେ ପର୍ଯ୍ୟୁଦସ୍ତ; ପ୍ରକୃତ

ପ୍ରସ୍ତାବରେ କିନ୍ତୁ ଯୁଦ୍ଧୋତ୍ତର ସଙ୍କଟକୁ ସମ୍ଭାଳିବାପାଇଁ ଏଗୁଡ଼ାକ ଥିଲା ଅନିବାର୍ଯ୍ୟ । ଜରୁରୀକାଳୀନ ସେଇ ପ୍ରତିକାର ଧନତନ୍ତ୍ର ରୂପକ ସିଷ୍ଟେମ୍‌ର ସ୍ୱାଭାବିକ ପ୍ରତିକ୍ରିୟା ନୁହେଁ; ନୁହେଁ ବୋଲି, ୧୯୭୦ ପାଖରୁ ଧରିଚି ନିଜ ରୂପ । ମାତ୍ର ସେ ପ୍ରତ୍ୟାଗମନକୁ ବାଧକରିଚି ପୁଣି କେତେ ପ୍ରପଞ୍ଚ । ସଂକ୍ଷେପରେ ଦେଖାଯାଇପାରେ, ବିଶେଷତଃ ପୁଞ୍ଜିର କେନ୍ଦ୍ରୀକରଣ ଏକ୍ଷଣି ଯୋଉ ତୁଙ୍ଗରେ ପହଞ୍ଚିଚି, ଲେନିନ୍ ଯେହେତୁ ଦେଇପାରିନାହାନ୍ତି ତା ଆଭାସ । ବରଂ, ଯୋଉ ଧ୍ରୁବକ ବଳରେ କେନ୍ଦ୍ରୀକରଣ ପରିମାପ କରିଥିଲେ, ତାକୁ ମଧ୍ୟ ଅତିକ୍ରମକରିସାରିଚି ଧନତନ୍ତ୍ର ଇତ୍ୟବସରେ । ଯେପରି, ଜର୍ମାନୀ କି ବ୍ରିଟେନ୍‌ରେ ଯୋଉ କେନ୍ଦ୍ରୀକରଣ ଘଟିଚି, ଲେନିନ୍‌ଙ୍କ ବିବେଚନାରେ ତା ଜର୍ମନ୍ କ୍ୟାପିଟାଲ୍ କି ବ୍ରିଟିଶ୍ କ୍ୟାପିଟାଲ୍; କାହିଁକିନା, ଉଭୟ ମେଟ୍ରପଲିଟାନ୍ କେନ୍ଦ୍ର ସେତେବେଳେ ଥିଲେ ପାରସ୍ପରିକ ପ୍ରତିଯୋଗିତାରେ ଲିପ୍ତ । ଏକ୍ଷଣି ବି ଜର୍ମାନୀ କି ବ୍ରିଟେନ୍‌ରେ ଘଟୁଚି ପୁଞ୍ଜିର କ୍ରମାଗତ କେନ୍ଦ୍ରୀକରଣ, ଏପରି ଏକ ବିଶ୍ୱାୟନ ପ୍ରକ୍ରିୟାରେ ଯେ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତାକୁ ଅତିକ୍ରମକରି ପୁଞ୍ଜି ଯାଇ ପହଞ୍ଚିଚି ଭିନ୍ନ ଏକ ମେରୁରେ । ପରିମାଣଗତ ସେ ପରିବର୍ତ୍ତନ ସମ୍ଭବପର କେବଳ ଏକ ଘନୀଭୂତ ପୃଥିବୀରେ; ମାତ୍ର ଏ ପରିବର୍ତ୍ତନ ଏକାଧାରେ ଗୁଣଗତ; କ୍ୟାପିଟାଲ୍‌କୁ ବଦଳାଇଦେବା ସଙ୍ଗେସଙ୍ଗେ ବଦଳାଇଦିଏ ଖାସ୍ ପୃଥିବୀକୁ ।

ପୁଞ୍ଜିର ବିଶ୍ୱପର୍ଯ୍ୟଟନ ତେଣୁ ନୂଆକଥା ନୁହେଁ; ଲେନିନ୍‌ଙ୍କ ଜୀବଦ୍ଦଶାରେ ମଧ୍ୟ ସକ୍ରିୟ ଥିଲା, କାହିଁକିନା, ଏଭଳି ପର୍ଯ୍ୟଟନ ଅନୁପସ୍ଥିତିରେ ସାମ୍ରାଜ୍ୟବାଦ ଗଢ଼ିଉଠେନା । ମାତ୍ର ସମକାଳର ପୁଞ୍ଜିର ଚରିତ୍ରଲକ୍ଷଣ ନିର୍ଦ୍ଦିଷ୍ଟ । ବିଂଶଶତକ ଶେଷକୁ କି ଅବସ୍ଥା ପ୍ରାପ୍ତହୋଇଥିଲା, ତା ସହିତ ତୁଳନାକଲେ ନିର୍ଦ୍ଦିଷ୍ଟ ସେଇ ଚରିତ୍ରଲକ୍ଷଣ ଜଳଜଳହୋଇ ଦେଖାଦେବ । ପୁଞ୍ଜିରପ୍ତାନି ଯେତେବେଳେ କମ୍ପମାନ କରିଚି ପୃଥିବୀକୁ, ପ୍ରଥମ ମହାଯୁଦ୍ଧ ପୂର୍ବବର୍ତ୍ତୀ ସେଇ କାଳଖଣ୍ଡରେ ରପ୍ତାନିକାରକଙ୍କ ଭିତରେ ବ୍ରିଟେନ୍ ଥିଲା ଅଗ୍ରଗଣ୍ୟ, କାହିଁକିନା, ଚାଳିଶବର୍ଷରୁ ଉର୍ଦ୍ଧ୍ୱକାଳ ତାର କରେଣ୍ଟ୍‌ଏକାଉଣ୍ଟ୍ ସରପ୍ଲସ୍, ଜିଏନ୍‌ପିର ୫ ରୁ ୧୦ ଶତାଂଶ ମଧ୍ୟରେ ସ୍ଥିରହୋଇ ରହିଚି । ଯୁଦ୍ଧଲାଗିବା କୋଡ଼ିଏବର୍ଷ ଆଗରୁ ସେ ସରପ୍ଲସ୍‌ର ବାର୍ଷିକ ଆ୍ୟାଭରେଜ୍ ଥିଲା ଆଠ ପରସେଣ୍ଟ୍ । ପ୍ରତିତୁଳନାରେ ଏକ୍ଷଣି, ସର୍ବାଧିକ ରପ୍ତାନିକାରକ ଜାପାନର କରେଣ୍ଟ୍‌ଏକାଉଣ୍ଟ୍ ସରପ୍ଲସ୍ ଗଡ଼କରା ୨.୮% ଉପରକୁ ଉଠିପାରୁନାହିଁ; କାହିଁକିନା, ପୁଞ୍ଜିରପ୍ତାନି ଏକ୍ଷଣି କରେଣ୍ଟ୍‌ଏକାଉଣ୍ଟ୍‌ରୁ ବିଚ୍ଛିନ୍ନ; ଭ୍ରାମ୍ୟମାଣ ପୁଞ୍ଜିକୁ ବ୍ୟାଲାନ୍ସ ଅବ୍ ପେୟେମେଣ୍ଟ୍ ଯୋଡ଼ିଦେଉଚି କ୍ୟାପିଟାଲ୍‌ଏକାଉଣ୍ଟ୍ ସାଙ୍ଗରେ । ସେ ପୁଞ୍ଜିକୁ ଦେଶବାହାରେ ବିନିଯୋଗ କରାହେଲେ, କୁହାଯାଉଚି ଡାଇରେକ୍ଟ ଫରେନ୍ ଇନ୍‌ଭେଷ୍ଟ୍‌ମେଣ୍ଟ୍ ବା

ଏଫ୍‌ଡିଆଇ; ବିନିଯୋଗ ଯଦି ଦୀର୍ଘକାଳୀନ, ତହିଁରୁ ଉତ୍ପନ୍ନ ପଣ୍ୟ ମଧ୍ୟ ଯିବ ବିଦେଶକୁ, କିନ୍ତୁ ପଣ୍ୟସଂଚାଳନ ପ୍ରତିଫଳିତ ହେବ ବ୍ୟାଲାନ୍ସ ଅବ୍ ପେମେଣ୍ଟର କରେଣ୍ଟ୍‌ଏକାଉଣ୍ଟ୍‌ରେ । (ଇଂରେଜୀ ଶବ୍ଦଗୁଡ଼ାକ ଯେହେତୁ ଟେକ୍ନିକାଲ, ଅନୁବାଦକଲେ ଅର୍ଥ ସ୍ପଷ୍ଟହେବନାହିଁ) । ଅର୍ଥାତ୍, ଟଙ୍କାକାରବାର ପରିମାଣରେ ବହୁଗୁଣ ବଢ଼ିଯାଇଥିଲେ ସୁଦ୍ଧା ପଣ୍ୟସରବରାହ ଅନୁପାତ ରହିଚି କେଜାଏ କମ୍ । ସେଥିପାଇଁ କୁହାଯାଉଚି 'ଫିନାନ୍ସ କ୍ୟାପିଟାଲ୍' । ଅନ୍ୟ ଶବ୍ଦରେ, ସ୍ୱଳ୍ପମିଆଦି ଏଇ ପୁଞ୍ଜିସରବରାହ ପଣ୍ୟସଂଚାଳନର ସୂଚକ ନୁହେଁ, ଅନାବୃତ୍ତ ଫଟକାବାଜି । ପୁଞ୍ଜି ରପ୍ତାନିକରୁଥିବା ଦେଶମାନଙ୍କର କରେଣ୍ଟଏକାଉଣ୍ଟ୍ ସର୍‌ପ୍ଲସ୍ କମିଯାଉଥିବାର ଏକମାତ୍ର କାରଣ ବହିର୍ବାଣିଜ୍ୟରେ ବିନିଯୋଗର ପରିମାଣ ରପ୍ତାନିଯୋଗ୍ୟ ପୁଞ୍ଜିର ମାତ୍ର ଦୁଇଶତାଂଶ । ଗ୍ଲୋବାଲାଇଜେସନ୍ ତେଣୁ ଦୀର୍ଘମିଆଦି ପୁଞ୍ଜିପ୍ରବାହର ପ୍ରତିନିଧିତ୍ୱ କରେନା । ଯାର ପ୍ରତିନିଧିତ୍ୱକରେ, ତାକୁ କହୁଚନ୍ତି 'ହଟ୍ ମନି' । ଉଡ଼ନ୍ତା ପୁଞ୍ଜି । 'ହଟ୍' କାହିଁକିନା, ଉତ୍ପାଦନକର୍ମରେ ନିୟୋଜିତ ହୁଏନା; ବାକି ଯେତେ କାମରେ ଟଙ୍କାଲଗାଣ ସମ୍ଭବପର, ସେଇଗୁଡ଼ାକୁ ଖୋଜିବୁଲେ । ଫିନାନ୍ସ କ୍ୟାପିଟାଲ୍, ସେଥିପାଇଁ, କ୍ୟାପିଟାଲ୍ ଅ୍ୟାଜ୍ ଫିନାନ୍ସ । ନିର୍ଦ୍ଦିଷ୍ଟ ଏଇ ଅର୍ଥରେ ବୁଝିନାହାଁନ୍ତି ବୋଲି, ଲେନିନ୍ ବ୍ୟବହାରକରିନାହାଁନ୍ତି *ଇମ୍ପିରିଆଲିଜ୍ମ* ବହିରେ । ସେକାଳରେ ଫିନାନ୍ସ କ୍ୟାପିଟାଲ୍ କହିଲେ ବୁଝାଉଥିଲା କ୍ୟାପିଟାଲ୍-ଇନ୍-ପ୍ରଡକ୍ସନ୍ । ପୁଞ୍ଜିର ଆକସ୍ମିକ ଗତିଶୀଳତା ନବଲବ୍ଧ ଏକ ସାଂପ୍ରତିକ ଲକ୍ଷଣ ।

ପୁଞ୍ଜିର ସାଂପ୍ରତିକ ଅଭିବ୍ୟକ୍ତି ସହିତ ଲେନିନ୍‌ଙ୍କ ଅବବୋଧର ପାର୍ଥକ୍ୟ ଅନ୍ତତଃ ତିନିପ୍ରକାର : ଯେପରି, ଫିନାନ୍ସ କ୍ୟାପିଟାଲ୍‌ର ଭିତ୍ତି, ତାଙ୍କ ଦୃଷ୍ଟିରେ, ଜାତୀୟତା; ସେ ପୁଞ୍ଜିର ସହାୟକ ମଧ୍ୟ ଜାତିରାଷ୍ଟ୍ର । ଏବେ ମଧ୍ୟ ପୁଞ୍ଜି ଶୂନ୍ୟରୁ ଖସୁନାହିଁ; କୋଉହେଲେ ଜାତିରାଷ୍ଟ୍ରରୁ ଉଡ଼ିଆସୁଚି, ମାତ୍ର ତା ଉପରେ ଜାତିରାଷ୍ଟ୍ରର ନିୟନ୍ତ୍ରଣ ନାହିଁ, କି ଜାତିରାଷ୍ଟ୍ରର ନିର୍ଦ୍ଦିଷ୍ଟ ସ୍ୱାର୍ଥରେ ତାର ବିନିଯୋଗ ହୁଏନା । ଦ୍ୱିତୀୟତଃ, ଶିଳ୍ପ ବଢ଼ିବା ସଙ୍ଗେସଙ୍ଗେ ପୁଞ୍ଜି ବି ବଢୁଥିଲା ଏକାବେଳକେ; ଏକାଠି ବଢ଼ିବା ସଂପର୍କ ମଧ୍ୟ ଏକ୍ଷଣି ଅନୁପସ୍ଥିତ, କାହିଁକିନା, ଜାତିରାଷ୍ଟ୍ରର ଅଭିଭାବକତ୍ୱ ବିନା ଶିଳ୍ପଉତ୍ପାଦନ ସହିତ ପୁଞ୍ଜିବିନିଯୋଗର ଅଙ୍ଗାଙ୍ଗୀ ସଂପର୍କ ତିଆରିହୋଇପାରେନା । ଉତ୍ପାଦନ ଓ ପୁଞ୍ଜି ପାରସ୍ପରିକ ସମବାୟରେ ବୃଦ୍ଧିପାଇବା ପରିବର୍ତ୍ତେ, ପୁଞ୍ଜିର ଲକ୍ଷ୍ୟ ଏକ୍ଷଣି ମୁନାଫାବୃଦ୍ଧିର ସମ୍ଭାବନା ପୃଥିବୀରେ ଯୋଉଠି ସର୍ବାଧିକ । ତୃତୀୟତଃ, ଗତିର ଦିଗ ଓ ବେଗର କ୍ଷିପ୍ରତା ସାମ୍ରାଜ୍ୟବାଦୀ ଦେଶମାନଙ୍କ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତାରୁ ଉତ୍ସାରିତହେଉନାହିଁ; କାହିଁକିନା, ଅଗ୍ରସର ଧନତାନ୍ତ୍ରିକ ଶକ୍ତିଗୁଡ଼ିକ ମଧ୍ୟରେ

ପରିଲକ୍ଷିତହେଉଛି ଅଭୂତପୂର୍ବ ଏକାତ୍ମତା । ପ୍ରତିଦ୍ୱନ୍ଦ୍ୱିତା ହୁଏତ ନିର୍ମୂଳ ହୋଇଯାଇନାହିଁ, ମାତ୍ର ଇରାକ୍ ଉପରେ ଆକ୍ରମଣ ବିରୋଧର କାରଣ ହେଲେସୁଦ୍ଧା, ଆନ୍ତଃବିରୋଧର ଧରଣ ସାଧାରଣତଃ ନିଃଶବ୍ଦ । ନୈଃଶବ୍ଦ୍ୟର ଅନୁଶାସନ ଆରମ୍ଭହେଲାଣି ଅବଶ୍ୟ ଜାପାନ ଉପରେ ପରମାଣୁବୋମା ପଡ଼ିବା ବେଳରୁ । ସାମ୍ରାଜ୍ୟବାଦକୁ ଲେନିନ୍ ଯେମିତି ବୁଝିଥିଲେ, ନୈଃଶବ୍ଦ୍ୟର ଆନ୍ତଃସଂପର୍କ ତାର ଅନୁମୋଦନ କେବଳ । ଅବଶ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଏ ଆନ୍ତଃସଂପର୍କ ଯୋଉ ସମଗ୍ରତାକୁ ଉଦ୍‌ଭାସିତ କରେ, ଲେନିନ୍‌ଙ୍କ ଅବଲୋକନରେ ଧରାପଡ଼ିନାହିଁ । ବିଶେଷତଃ ଯେହେତୁ ବିଶ୍ୱାୟିତ ପୁଞ୍ଜି ଏକ୍ଷଣି ଏକ ସଂଘବଦ୍ଧ ସତ୍ତା, ନିର୍ଦ୍ଦିଷ୍ଟ କୋଉ ସାମ୍ରାଜ୍ୟବାଦୀ ରାଷ୍ଟ୍ରର ଶିଳ୍ପାୟନ ସହିତ ସଂପୃକ୍ତ ତେଣୁ କଷ୍ଟକଳ୍ପିତ । ଶିଳ୍ପାୟନର ସଂକୀର୍ଣ୍ଣ ପରିସର ଓ ସୀମାବଦ୍ଧତାକୁ ପଛରେ ପକାଇ ଯେହେତୁ ଆହୁରି ହଜାରେରକମ କର୍ମକାଣ୍ଡ ଭିତରେ ବିଚ୍ଛୁରିହୋଇପଡ଼େ ସର୍ବାଧିକ ମୁନାଫା ସଂଧାନରେ, ସ୍ପେକିଉଲେସନ୍ ବା ଫଟକାବାଜି ହୋଇଚି ବିଶ୍ୱପୁଞ୍ଜିର ସର୍ବପ୍ରଧାନ ଚରିତ୍ରଲକ୍ଷଣ । ଏବଂ, ଯେହେତୁ ବିଶ୍ୱାୟିତ, ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଆନ୍ତର୍ବିଭେଦକୁ ମଧ୍ୟ କରିଦେଇପାରେ ଅବଦମିତ । କାହିଁକିନା, 'ଆଧିପତ୍ୟର ଇଲାକା' ଭଳି ଧ୍ରୁବକ ପ୍ରୟୋଗକରି ପୃଥିବୀକୁ ଯଦି ବାଣ୍ଟିଦିଆଯାଏ, ପୁଞ୍ଜିର ବିଶ୍ୱପର୍ଯ୍ୟଟନ ସମ୍ମୁଖୀନହେବ ଅନତିକ୍ରମ୍ୟ ଅବରୋଧ । ପରସ୍ପର ପରିପୂରକ ଏଇ ଲକ୍ଷଣଗୁଡ଼ିକ ଏକକ ବିନ୍ଦୁରେ ମିଳିତହୋଇ ଯୋଉ ଅସ୍ତିତ୍ୱ ନିର୍ମାଣକରେ, ପୃଥିବୀର ଇତିହାସରେ ତା ଏକାନ୍ତ ଅଭିନବ । ଏବଂ ସଂପଦ କେନ୍ଦ୍ରୀକରଣର ଯୋଉ ଗଠନତନ୍ତ୍ର ତାର ଲକ୍ଷ୍ୟ, ତା ମଧ୍ୟ ଏକାଭଳି ଅଭିନବ । ସନ୍ଦେହ ନାହିଁ, ଏ ପ୍ରକ୍ରିୟାର ଆଭାସ ରହିଚି ଲେନିନ୍‌ଙ୍କ ପର୍ଯ୍ୟବେକ୍ଷଣରେ । 'ସେଣ୍ଟ୍ରାଲାଇଜେସନ୍'ମାନେ ସେତେବେଳେ ବୁଝାଉଥିଲା ବ୍ୟାଙ୍କ୍ କି ଇନ୍‌ସ୍ୟୁରାନ୍ସ ଭଳି ପ୍ରତିଷ୍ଠାନର ବିପୁଳପରିମାଣ ସଂପଦ ଉପରେ ନିୟନ୍ତ୍ରଣ, ସଂପଦର ଉପଯୋଗ ଉପରେ ଅଭିଭାବକତ୍ୱ; ତା ଦିହରେ ଏକ୍ଷଣି ଯୋଡ଼ିଦିଆଗଲା ଅତିରିକ୍ତ ମାତ୍ରା; ଅର୍ଥାତ୍, ବିଶ୍ୱବ୍ୟାଙ୍କ୍ କି ଆନ୍ତର୍ଜାତିକ ମୁଦ୍ରାକୋଷ ଯୋଉ ସର୍ତ୍ତଗୁଡ଼ାକ ପ୍ରଚଳନକଲେ, ଦୁନିଆଯାକ ଅର୍ଥନୀତିକ ଅନୁଷ୍ଠାନ ବେଦବାକ୍ୟ ପରି ଅନୁସରଣକରିଚନ୍ତି ସେଇ ସର୍ତ୍ତାବଳୀ; ଅଥଚ, ଟଙ୍କାଗୁଡ଼ାକ କୋଉ ଆନ୍ତର୍ଜାତିକ ସଂସ୍ଥାର ବାପସଂପତ୍ତି ନୁହେଁ । ବିନିଯୋଗର ଏ ନିୟନ୍ତ୍ରଣ ଅବଶ୍ୟ ପରୋକ୍ଷ; କିନ୍ତୁ ଅତିକାୟ ଏହି ସଂଘର ବିଚରଣକ୍ଷେତ୍ର ଏକ୍ଷଣି ସସାଗରା ମେଦିନୀ, କାହିଁକିନା, ପୁଞ୍ଜିର ଗତି ଏକ୍ଷଣି ଏକମୁଖୀ, ଲକ୍ଷ୍ୟ ଅବିଳମ୍ବ ମୁନାଫାଆଦାୟ, ଟଙ୍କାରୁ ଟଙ୍କା ଉତ୍ପାଦନ । ମୂଳଧନ ନିର୍ଦ୍ଦିଷ୍ଟ ଜାତିରାଷ୍ଟ୍ରରୁ ଯାତ୍ରାଆରମ୍ଭ କଲେସୁଦ୍ଧା, ଜାତୀୟ ସ୍ୱାର୍ଥଭଳି ସଙ୍କୀର୍ଣ୍ଣତା ତା ଗତିରୋଧ କରିପାରିବନି । ପୁଞ୍ଜିଲଗ୍ନି ତେଣୁ ଏଭଳି କେନ୍ଦ୍ରୀକରଣ ସଂଗଠିତକରେ

ଯା ମୁହୂର୍ତ୍ତକ ମଧ୍ୟରେ ଯେକୌଣସି ଦେଶର ଅର୍ଥନୀତିକୁ ଦୋହଲାଇ ଦେଇପାରେ । କାହିଁକିନା, ମାନ୍ୟତାପ୍ରାପ୍ତ କ୍ରେଡିଟ୍ ରେଟିଙ୍ଗ୍ ଏଜେନ୍ସି ଯଦି କହିବ ସୁବିଧା ଅନ୍ୟତ୍ର ଅଧିକ, ସଙ୍ଗେସଙ୍ଗେ ପୁଞ୍ଜି ଦିହରେ ଲାଗିଯିବ ଡେଣା । ଏଥିରୁ ବୁଝିବା ଭୁଲ୍ ହେବ ଯେ ବହୁଜାତୀୟ ବାଣିଜ୍ୟସଂସ୍ଥାରେ ପୁଞ୍ଜିର କେନ୍ଦ୍ରୀକରଣ ଅପେକ୍ଷାକୃତ ନିରାପଦ । ଏକଚାଟିଆ ପୁଞ୍ଜିବାଦର ଜନ୍ମଲଗ୍ନରେ ସେଭଳି କେନ୍ଦ୍ରୀକରଣକୁ ସମ୍ମୁଖୀନହୋଇଚି ପୃଥିବୀ । ପ୍ରତିତୁଳନାରେ ବିଶ୍ୱାୟନ ଅର୍ବାଚୀନ ହେଲେସୁଦ୍ଧା, ସାମ୍ରାଜ୍ୟବାଦ ପ୍ରେକ୍ଷିତରେ ଗଭୀର ତାର ଅନ୍ତଃସାର । କାହିଁକିନା, ବିଶ୍ୱାୟନ ପ୍ରକୃତ ପ୍ରସ୍ତାବରେ ଏକପ୍ରକାର ସେଣ୍ଟ୍ରାଲାଇଜେସନ୍, ଏବଂ ସେଇ ସୂତ୍ରରେ, ରାଜନୀତି ପ୍ରତି ସେଣ୍ଟ୍ରାଲାଇଜେସନ୍‌ର ପ୍ରାସଙ୍ଗିକତା ସୁଦୂରପ୍ରସାରୀ ।

ଅନ୍ୟ କାରଣ ବି ରହିଚି; ମାତ୍ର ଧନତାନ୍ତ୍ରିକ ଦେଶଗୁଡ଼ିକର ଅଗ୍ରଗତି ଏକ୍ଷଣି ମନ୍ଥର; କାରଣ ଅବଶ୍ୟ କର୍ମହୀନତାର କ୍ରମବୃଦ୍ଧି, ଯା ବିଶ୍ୱାୟନର ଅବଦାନ । ଅବସ୍ଥା ସବୁଠି ସମାନ ନୁହେଁ ଅବଶ୍ୟ; ଅର୍ଥାତ୍ ମନ୍ଦାଅବସ୍ଥାର ତୀବ୍ରତା ବ୍ରିଟେନ୍ କି ଆମେରିକାରେ ଅସହଣୀୟ ସ୍ତରକୁ ଆସିନାହିଁ; ମାତ୍ର ଡିମ୍ୟାଣ୍ଡ୍‌ମ୍ୟାନେଜ୍‌ମେଣ୍ଟ୍‌ର ସୁଯୋଗ ସଙ୍କୁଚିତହୋଇଯାଇଚି ଯଥେଷ୍ଟ । ଯେପରି ଗୃହନିର୍ମାଣ, ଗାଡ଼ି କି ଗୃହୋପକରଣ ଖର୍ଦ୍ଦି, କି ବିଦେଶରେ ଛୁଟିକଟାଇବା ସକାଶେ ବ୍ୟାଙ୍କ୍‌ଋଣ, କି ମିଉଚୁଆଲ୍ ଫଣ୍ଡ୍ ବା ଇନ୍‌ସ୍ୟୁରାନ୍ସ କଂପାନୀରୁ ଆ୍ୟାଡ୍‌ଭାନ୍ସ ଖୁଜି ପାରୁନାହାନ୍ତି ଲୋକ; ଅଧିକାଂଶ ଋଣଦାତା ଦେବାଳିଆ ହୋଇଯାଇଚନ୍ତି; ଭିକ୍ଷାପାତ୍ର ହାତରେ ଧରି ଜାତୀୟ ସରକାରମାନଙ୍କ ଦ୍ୱାରସ୍ଥହୋଇଚନ୍ତି ଅନୁଦାନ ପ୍ରତ୍ୟାଶାରେ । ସରକାର କ୍ଷତିପୂରଣ କରିଦେଲେ ବି, ଟଙ୍କା ଆସିବ କରଦାତାଙ୍କ ହାତରୁ । କରଭାର ବଢ଼ାଇବାକୁ ଡରିବା ମାନେ ଜନମଙ୍ଗଳରୁ ଖର୍ଚ୍ଚକାଟ । ଜନମଙ୍ଗଳରୁ ଖର୍ଚ୍ଚକାଟ ମାନେ ବଜାରରେ ଚାହିଦା ହ୍ରାସ । ଡିମ୍ୟାଣ୍ଡ୍‌ମ୍ୟାନେଜ୍‌ମେଣ୍ଟ୍ ଚାଲିବ କେମିତି ବେକାରି ଯେତେବେଳେ ଉତ୍କଟ ଆଉ ଟଙ୍କାପଇସା ଯେତେବେଳେ 'ଆନ୍ତର୍ଜାତିକ' ? ଅଗ୍ରସର ଦେଶର ସାଧାରଣଲୋକ କ୍ରୁଦ୍ଧହେବା ସ୍ୱାଭାବିକ; କାହିଁକିନା, ଏ ଅବସ୍ଥା ମୁଦ୍ରାସ୍ଫୀତିକୁ ଡାକିଆଣେ, ଏବଂ ମୁଦ୍ରାସ୍ଫୀତି ମାନେ ସାଧାରଣଲୋକର କ୍ରୟକ୍ଷମତାର ଅଧୋଗତି । ବେକାରସମସ୍ୟା ସମାଧାନ କରିଦେବେ ବୋଲି ପ୍ରତିଶ୍ରୁତିଦେଇ ଯୋଉ ବାମପନ୍ଥୀ ନିର୍ବାଚନରେ ଜିତି ସରକାରଗଢ଼ିଥିଲେ, ବ୍ରିଟେନ୍ ଫ୍ରାନ୍ସ ଇଟାଲି ଜର୍ମାନୀ, ଯୋଉଠିହେଉ, ପାଦେହେଲେ ବି ଆଗେଇ ପାରିନାହାଁନ୍ତି, ସେଥିପାଇଁ । ବାମପନ୍ଥୀ ଆଗେଇ ପାରିନାହାଁନ୍ତି; କିନ୍ତୁ ଅର୍ଥନୀତିର ପରିଚାଳନା ଉପରେ ରାଷ୍ଟ୍ରର ନିୟନ୍ତ୍ରଣ ହୁଗୁଳା ହୋଇଯାଇଥିବାରୁ ବଜାରରେ ବଢ଼ିଚି ଫଟକାବାଜି । ଦୁର୍ବାର ଏଇ ଅବରୋଧ ବୁଝାଇଦେଇଚି ସୋସାଲ୍

ଡେମୋକ୍ରାସିରୁ ଆରମ୍ଭକରି କେୟେନ୍‌ଜିୟାନିଙ୍କୁ କିମ୍ବା ତୃତୀୟବିଶ୍ୱର ଜାତୀୟତାବାଦର ଚରମ ବ୍ୟର୍ଥତା । କାହିଁକିନା, ଏମାନେ ବିଶ୍ୱାସକରନ୍ତି, ସମାଜକୁ ବଦଳାଇବାକୁ ହେଲେ ରାଷ୍ଟ୍ରର ହସ୍ତକ୍ଷେପ ଅନିବାର୍ଯ୍ୟ; ମାତ୍ର ପୁଞ୍ଜିଲଗ୍ନିର ବିଶ୍ୱାୟନ ରାଷ୍ଟ୍ରର ବାଞ୍ଛିତ ସାମର୍ଥ୍ୟକୁ ଖର୍ବକରିଦେଇ ପ୍ରମାଣକରିଦେଇଛି ରାଜନୀତିକ ଭାବାଦର୍ଶଗୁଡ଼ିକର ଅସଙ୍ଗତି । ସୋଭିଏଟ୍ ସଂଘର ଅଧଃପାତ ମଧ୍ୟ ଏ ପ୍ରପଞ୍ଚରୁ ବ୍ୟତିକ୍ରମ ନୁହେଁ, କାହିଁକିନା, ସାଭିଏଟ୍ ରାଷ୍ଟ୍ରବ୍ୟବସ୍ଥା ସୁଦ୍ଧା ପୁଞ୍ଜିପ୍ରତ୍ୟାହାରକୁ ଅଟକାଇ ପାରିନାହିଁ ଶେଷପର୍ଯ୍ୟନ୍ତ ।

ଯୁଦ୍ଧ ସରିଯିବା ଉତାରୁ, ଇଉରୋପର ଧନତାନ୍ତ୍ରିକ ଦେଶଗୁଡ଼ିକର ଅଭ୍ୟନ୍ତରୀଣ ଚାହିଦାକୁ ମାର୍ଶାଲ୍ ପ୍ଲାନ୍ ଇତ୍ୟାଦି ମାଧ୍ୟମରେ ବଢ଼ାଇଦେଇଥିଲା ଯୁକ୍ତରାଷ୍ଟ୍ର, କର୍ମସଂସ୍ଥାନର ଭିତ୍ତିକୁ ଆଜି ମଧ୍ୟ ଦୃଢ଼ କରିଦେଇପାରିବ; ରାଷ୍ଟ୍ରପରିଚାଳନାରେ ଡିମାଣ୍ଡମ୍ୟାନେଜ୍‌ମେଣ୍ଟ୍ ତାହେଲେ ଦରକାର ପଡ଼ିବନାହିଁ । କାହିଁକିନା, ଡଲାର୍ ଏକ୍ଷଣି ସର୍ବାଧିକ ଶକ୍ତିଶାଳୀ ମୁଦ୍ରା । ଧନାତନ୍ତ୍ରିକ ଦେଶଗୁଡ଼ିକର ଅଭିଭାବକ ଯେହେତୁ ଯୁକ୍ତରାଷ୍ଟ୍ର, ନିଜ ବଜେଟ୍ ଘାଟ୍‌ତି ସାଙ୍ଗକୁ କରେଣ୍ଟ୍ ଏକାଉଣ୍ଟ୍ ଡେଫିସିଟ୍ ମଧ୍ୟ ବଢ଼ାଇଦେଇ ପାରିବ । ମାତ୍ର ଯୁକ୍ତରାଷ୍ଟ୍ରର ଅର୍ଥବ୍ୟବସ୍ଥା ଅତିମାତ୍ରାରେ ଆମଦାନିପ୍ରବଣ; ଘାଟ୍‌ତି ବଢ଼ାଇଦେଲେ, ଅନ୍ୟ କାହାର ସୁବିଧା ହେଲେସୁଦ୍ଧା ନିଜେ କିଛିମାତ୍ର ଫାଇଦା ପାଇବନାହିଁ; ବରଂ ଉପକାର ପାଇଥିବା ଦେଶଗୁଡ଼ାକରେ କର୍ମସଂସ୍ଥାନ ବଢ଼ାଇବାକୁ ଚାପବଢ଼ିବ । ଯୁକ୍ତରାଷ୍ଟ୍ରର ସୁଶୀଳ ସମାଜ ତା ସହ୍ୟକରିବନାହିଁ । ଏଣେ ତୃତୀୟବିଶ୍ୱର ଦେଶଗୁଡ଼ାକ ଉପରେ ଗ୍ଲୋବାଲାଇଜେସନ୍ ଲଦିଦେଇଚି ଉଦାରୀକରଣ ବୋଝ; ଅର୍ଥାତ୍ କର୍ମସଂସ୍ଥାନ ଉପରେ ଆକ୍ରମଣ । ତା ସାଙ୍ଗକୁ ରହିଚି ତୃତୀୟବିଶ୍ୱର ବଜାରଗୁଡ଼ାକୁ ବିଦେଶୀ ପଣ୍ୟ ଓ ପରିସେବା ବିପଣନ ଲାଗି ବଳପୂର୍ବକ ବିସ୍ତାରଣ, ଆଉ ବିସ୍ତାରିତ ସେଇ ବଜାର ଭିତରକୁ ଆନ୍ତର୍ଜାତିକ ଫିନାନ୍ସ୍‌କ୍ୟାପିଟାଲର୍ ଅବାରିତ ଗମନାଗମନ । ମିଳିତ ପରିଣାମ ତେଣୁ ମାରାତ୍ମକ; ଯଦିଓ ସାମ୍ରାଜ୍ୟବାଦୀ ପ୍ରଚାରମାଧ୍ୟମ ଚେଷ୍ଟାକରୁଚି କୁଫଳଗୁଡ଼ାକୁ ଢାଙ୍କିପକାଇବାକୁ । ସେଥିରୁ ଯୋଉ ପାଞ୍ଚଟି ଏକ୍ଷଣି ପ୍ରକଟ, ପ୍ରଥମତଃ ତା କୃଷିଜୀବୀ ଓ ଶ୍ରମଜୀବୀ ଜନସାଧାରଣଙ୍କ ନିଷ୍ପେଷଣ; ବେପାରବଣିଜ ଭିତରକୁ ଉଦାରୀକରଣ ପଶିଆସି ଶିଳ୍ପଉତ୍ପାଦନକୁ ବାଧ୍ୟକରୁଚି ବିପରୀତ ଦିଗକୁ ଚାଲିବାକୁ । ତାର ପରିଦୃଷ୍ଟ ପରିଣାମ ଡିଇଣ୍ଡସ୍ଟ୍ରିଆଲାଇଜେସନ୍; ଅର୍ଥାତ୍ ପୁଞ୍ଜି ଆସୁଚି, କିନ୍ତୁ କଳକାରଖାନା ବସୁନାହିଁ, ବରଂ ବିଦ୍ୟମାନ କଳକାରଖାନା ବିକ୍ରିହୋଇଯାଉଚି ନିଲାମରେ । ଦେଶ ତେଣୁ ବାଧହୋଇ ରପ୍ତାନିକରୁଚି କୃଷିଜାତ ପଣ୍ୟ, ପ୍ରାଇମେରି ପ୍ରଡକ୍ଟ । ଫଳରେ, ଦେଖାଦେଉଚି ଖାଦ୍ୟସଂକଟ, କୃଷକର ଭାଗ୍ୟ ନିର୍ଭରକରୁଚି ବିଶ୍ୱବଜାରରେ ଦରଦାମ କମିବା-ବଢ଼ିବା ଉପରେ । ଅଥଚ ଆନ୍ତର୍ଜାତିକ

ଫିନାନ୍ସ ଏକ କରାଳ ଆବର୍ତ୍ତ; ତା ଭିତରେ ପଡ଼ି ମନ୍ଥିହେଉଥିବା ବେଳେ ଛାତିଥରୁଚି, କାଳେ ଫଟକାବାଜିରେ ଟଙ୍କାଖଟାଉଥିବା ଲୋକଙ୍କ ଲାଭ କମିଯିବ ! କମିଗଲେ, ସେମାନଙ୍କୁ ଆଶ୍ୱସ୍ତକରିବାକୁ ସରକାର ଉର୍ଣ୍ଣକୀ ଉଠାଇଦେବେ, ଖର୍ଚ୍ଚକାଟ କରିବେ, କ୍ରମାଗତ କମାଉଥିବେ ମୁଦ୍ରାସ୍ଫୀତି, ଖର୍ବକରିଦେବେ ଖଟିଖିଆ ଲୋକଙ୍କ ନାଯ୍ୟ ଅଧିକାର । ଶେଷପରିଣତି ତେଣୁ ଏକ ନିଷ୍ପନ୍ନ ନିରୁଦ୍ୟମ ଇକନମି । ବେକାରସଂଖ୍ୟା ବୃଦ୍ଧି । ଆୟବଣ୍ଟନରେ ପଶ୍ଚାଦ୍‌ମୁଖୀ କୌଶଳ । ସମ୍ମିଳିତପ୍ରଭାବ ଦରିଦ୍ରଙ୍କୁ କରିବ କପର୍ଦ୍ଦକଶୂନ୍ୟ । ଦ୍ୱିତୀୟତଃ, ଆର୍ଥ-ରାଜନୀତିକ ସ୍ୱାଧିକାରରୁ ଜାତିରାଷ୍ଟ୍ରର ଉଚ୍ଛେଦ; କାହିଁକିନା, ତୃତୀୟବିଶ୍ୱର ରାଷ୍ଟ୍ରଗୁଡ଼ିକୁ ଅକର୍ମଣ୍ୟ କରିଦେଲେ ମେଟ୍ରପଲିଟାନ୍ କେନ୍ଦ୍ରଗୁଡ଼ିକ ମାଧ୍ୟମରେ ପୁଞ୍ଜିର ଗମନାଗମନ ବାଧା ପାଇବ; ପାଇବ ବୋଲି, ଆନ୍ତର୍ଜାତିକ ମାନ୍ୟତାପ୍ରାପ୍ତ ମାଧ୍ୟମ, ଯେପରି ବିଶ୍ୱାବ୍ୟାଙ୍କ୍ ଆନ୍ତର୍ଜାତିକ ମୁଦ୍ରାକୋଷ କି ବିଶ୍ୱବାଣିଜ୍ୟ ସଂଗଠନ ଉପରେ ମେଟ୍ରପଲିଟାନ୍ କେନ୍ଦ୍ରଗୁଡ଼ିକର ଆଧିପତ୍ୟ। ତୃତୀୟବିଶ୍ୱ ଉପରେ ନାନାଦି ପ୍ରତିକୂଳ ସର୍ତ୍ତ ଏମାନେ ଲଦିଦିଅନ୍ତି ସତ, ମାତ୍ର ସର୍ତ୍ତଗୁଡ଼ାକୁ କାର୍ଯ୍ୟକାରୀକରିବା ପାଇଁ ଦରକାର ଆହୁରି ଅନେକ ଆନୁଷଙ୍ଗିକ କାର୍ଯ୍ୟାନୁଷ୍ଠାନ; ଯେପରି, ପୁଞ୍ଜି ବିନିଯୋଗକାରୀଙ୍କ ଆସ୍ଥାଭାଜନହେବା ସକାଶେ ଖାତକଦେଶର ପ୍ରଶାସନ ରହିବ ଏଭଳି ରାଜପୁରୁଷଙ୍କ ହାତରେ ଯିଏ ସାମ୍ରାଜ୍ୟବାଦର ପାରିଷଦ; ଭାରତରେ ଯେମିତି ପ୍ରଧାନମନ୍ତ୍ରୀ, ଯୋଜନାକମିଶନ୍ ଚେୟାରମ୍ୟାନ୍, ରିଜର୍ଭବ୍ୟାଙ୍କ୍ ଗଭର୍ଣ୍ଣର୍ ପ୍ରଭୃତି ବିଶ୍ୱବ୍ୟାଙ୍କ୍‌ର ପୂର୍ବତନ କର୍ମଚାରୀ । ତୃତୀୟତଃ, ଦେଶର ପ୍ରାକୃତିକ ସଂପଦ ଓ ସ୍ଥାବର ସଂପତ୍ତିକୁ ନାମମାତ୍ର ମୂଲ୍ୟରେ; ଅର୍ଥାତ୍ ଜାତୀୟକରଣର ବିପରୀତ 'ବିଜାତୀୟକରଣ' । ଚତୁର୍ଥତଃ, ପ୍ରାଇଭେଟାଇଜେସନ୍, ଉଦାରୀକରଣର ଅନ୍ୟତମ ସ୍ତମ୍ଭ । ସେ ସର୍ତ୍ତ ଲଦିଚି ଆନ୍ତର୍ଜାତିକ ମୁଦ୍ରାକୋଷ; ମାତ୍ର ଫାଇଦା ଲୁଟୁଚନ୍ତି ବହୁଜାତିକ କଂପାନୀ ଆଉ, ଯଦି କେବେ ଧମକାଇଦେଇଚି ଆନ୍ତର୍ଜାତିକ ଫଟକାବାଜି ଯେ ବିନିଯୋଗ ପ୍ରତ୍ୟାହାରକରିନେବ, ରାଷ୍ଟ୍ରାୟତ୍ତ ଶିଳ୍ପକୁ ତତ୍‌କ୍ଷଣାତ୍ 'ବିଜାତୀୟ' କରିଦେବ ରାଷ୍ଟ୍ର । ମାତ୍ର, ଲୋକଙ୍କ ରାଜନୀତିକ କ୍ଷମତାକୁ କାଣ୍ଡଛାଣ୍ଡ ନକରି ଏତେଗୁଡ଼ା ଅଘଟଣ ଘଟାଇପାରେନା କୋଉହେଲେ ସରକାର ! ଅର୍ଥାତ୍, ଦେଶର ସାର୍ବଭୌମତାକୁ ଖାଲି ପଙ୍ଗୁକରେନା ଗ୍ଲୋବାଲାଇଜେସନ୍, ଗଣତନ୍ତ୍ରକୁ ବି କରେ ରକ୍ତହୀନ । ଗଣତାନ୍ତ୍ରିକ ଅଧିକାର ଅପହରଣକରିବାକୁ ହରେକ୍‌ରକମ ଉପାୟ ଉଦ୍‌ଭାବିତ ହୋଇଚି ପୃଥିବୀରେ; ମାତ୍ର ଭାରତରେ ଯୋଉ ଗୋଟିଏ ଉପାୟ ଦୁର୍ଦ୍ଧର୍ଷ, ତା ନବ୍ୟଉଦାରବାଦ ପ୍ରତି ସବୁ ରାଜନୀତିକଦଳଙ୍କ ଅକୁଣ୍ଠ ସମର୍ଥନ; ଦେଆର୍ ଇଜ୍ ନୋ ଅଲଟ୍ରେନେଟିଭ୍ ! ଏଇ ବୁର୍ଜୋୟା ଓ ପେଟିବୁର୍ଜୋୟା ଏପରି କିଛି କରିବାକୁ

ବା କହିବାକୁ ଅନିଚ୍ଛୁକ ଯା ପୁଞ୍ଜିପ୍ରତ୍ୟାହାରକୁ ଉତ୍ସାହ ଦେଇପାରେ । ଉଦାରୀକରଣ ନୀତିକୁ ତେଣୁ ବଡ଼ରକମ କୋଉ ବିରୋଧ ସମ୍ମୁଖୀନହେବାକୁ ପଡୁନାହିଁ । କିନ୍ତୁ, ଏକପକ୍ଷରେ ଆନ୍ତର୍ଜାତିକ ଫଟକାବାଜିକୁ ସମର୍ଥନ, ଏବଂ ଅନ୍ୟପକ୍ଷରେ ଦେଶର ଜନସାଧାରଣଙ୍କ ଆଶାଆକାଙ୍‌କ୍ଷାକୁ ଖାତିର୍, ପରସ୍ପରପରିପନ୍ଥୀ ପ୍ରସ୍ତାବ । ପ୍ରତାରିତ ଲୋକଗୁଡ଼ାକ ତେଣୁ ଅସନ୍ତୋଷ ଖଲାସକରିବାକୁ ବାଛିନିଅନ୍ତି ବିଚ୍ଛିନ୍ନତାବାଦ୍, ଜାତି-ଧର୍ମ-ଭାଷାର ଅଭିମାନ, ସାମ୍ପ୍ରଦାୟିକତା, ମୌଳବାଦ କି ସନ୍ତ୍ରାସ । ସନ୍ଦେହ ନାହିଁ, ତୃତୀୟବିଶ୍ୱର ଏ ପ୍ରବଣତା ସାମ୍ରାଜ୍ୟବାଦର ଅନୁକୂଳ, କାହିଁକିନା, କ୍ଷୁଦ୍ରସ୍ୱାର୍ଥ ଦ୍ୱାରା ଜନସାଧାରଣ ବିଭାଜିତହୋଇଗଲେ, ବିପ୍ଳବ କି ଆନ୍ଦୋଳନର ଆପେଆପେ ଘଟିଯାଏ ବିଭାଜନ; ଏବଂ ବିପଥଗାମୀ ଏଭଳି ଗଣତନ୍ତ୍ର ଉପରେ, ପ୍ରତିରୋଧ ଅଭାବରେ, ସାମ୍ରାଜ୍ୟବାଦ କରିପାରେ ହସ୍ତକ୍ଷେପ, ଯୁକ୍ତରାଷ୍ଟ୍ର ଯେପରି କରୁଚି ମାନବାଧିକାର ରକ୍ଷାକରିବା ବାହାନାରେ । ଏ ବିବେଚନାରେ, ଆନ୍ତର୍ଜାତିକ ଫିନାନ୍ସ ଦ୍ୱାରା ପରିବାହିତ ସାମ୍ରାଜ୍ୟବାଦ, ଖାଲି ଲେନିନ୍‌କଳ୍ପିତ ଇମ୍ପିରିଆଲିଜ୍ମ ପାଖରୁ ନୁହେଁ, କ୍ୟାପିଟାଲିଜ୍ମର ଗର୍ଜମାନ ପର୍ବ ଓ ଜନମଙ୍ଗଳ ଅଭ୍ୟୁଦୟକାଳ ପାଖରୁ ମଧ୍ୟ ବେଜାଏ ଫରକ୍ । ଦ୍ୱିତୀୟ ପାର୍ଥକ୍ୟ ଦେଖାଦେଇଚି ଅବଶ୍ୟ ଦ୍ୱିତୀୟ ମହାଯୁଦ୍ଧ ସରିଯିବା ଉତାରୁ । ଗ୍ଲୋବାଲାଇଜେସନ୍‌ରୁ ବାହାରିଚି ଯୋଉ ସାମ୍ରାଜ୍ୟବାଦ, ତାକୁ ତେଣୁ କୁହାଯାଇପାରେ ସୁପର୍ ଇମ୍ପିରିଆଲିଜ୍ମ । ବିଶେଷତଃ ଏଇ କାରଣରୁ ଯେ ରାଷ୍ଟ୍ରଯନ୍ତ୍ରର ଭିନ୍ନ ଭିନ୍ନ ରୂପରେଖ ସହିତ ସାମ୍ରାଜ୍ୟବାଦର ବିଭିନ୍ନ ପର୍ଯ୍ୟାୟ ମଧ୍ୟ ସମାନ୍ତରାଳ; ଲେନିନ୍ ଯୋଉ ପର୍ଯ୍ୟାୟ କଥା ଲେଖିଚନ୍ତି, ଭିନ୍ନ ଭିନ୍ନ ଫିନାନ୍ସ କ୍ୟାପିଟାଲ୍ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଥିଲା ବୋଲି ଦେଖାଦେଇଚି ସଶସ୍ତ୍ର ସଂଘର୍ଷ । ଆଜି ଆଉ ସେ ପ୍ରତିଦ୍ୱନ୍ଦ୍ୱିତା ନାହିଁ, କି ଫିନାନ୍ସ କ୍ୟାପିଟାଲ୍ ବି ଜାତୀୟ ନୁହେଁ । ଏ ଆନ୍ତର୍ଜାତିକତାକୁ କାର୍ଯ୍ୟକାରୀ କରୁଚି ଯୋଉ ରାଷ୍ଟ୍ରଯନ୍ତ୍ର, ତାର ରୂପରେଖ ବଦଳିଯିବାକୁ ତେଣୁ ବାଧ୍ୟ । କାହିଁକିନା, ବିଶ୍ୱରାଷ୍ଟ୍ର ଭଳି ବିମୂର୍ତ୍ତତାର ପ୍ରତିନିଧିତ୍ୱକରିବା ସକାଶେ ଜାତିରାଷ୍ଟ୍ର କ୍ରମଶଃ ବଦଳାଇଦେବ ଆପଣା ଗଠନତନ୍ତ୍ର । ଏକମାତ୍ର ଚରମ ସାମ୍ରାଜ୍ୟବାଦ (ସୁପର୍‌ଇମ୍ପିରିଆଲିଜ୍ମ) ନିର୍ମାଣକରିପାରେ ସେଭଳି କୋଉ ପ୍ରତିନିଧି; ତା ହେଲେଯାଇ, ଆନ୍ତର୍ଜାତିକ ସ୍ତରରେ ମିଳିତହୋଇ ଫିନାନ୍ସ କ୍ୟାପିଟାଲ୍ ଅପେକ୍ଷାକୃତ ନିର୍ବିରୋଧ ପରିମଣ୍ଡଳରେ ଚଳାଇପାରେ ପୃଥିବୀର ଯୁଗ୍ମଦୋହନ । କାର୍ଲ କୌଟସ୍କୀଙ୍କ ଏଭଳି ଅଭିମତ ଲେନିନ୍‌ଙ୍କ ମନକୁ ପାଉନାହିଁ । ପାଉନାହିଁ, କାହିଁକିନା, ପୃଥିବୀର ନିର୍ବିରୋଧ ବିଭାଜନ, ଯଦି କେବେ ସମ୍ଭବହୁଏ, ଆସିପାରେ କେବଳ ଅସ୍ଥାୟୀ ସଂଧିବିଗ୍ରହ । କାହିଁକିନା, ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ମଧ୍ୟରେ ରହିଚି କ୍ଷମତାର ତାରତମ୍ୟ; ସେ

ଆପେକ୍ଷିକତାରୁ ବାହାରିବ ଯୋଉ ବୈଷମ୍ୟ, ଧନତନ୍ତ୍ରର ସହଜାତହେବା କାରଣରୁ ବଦଳିଯିବା ଅବଶ୍ୟମ୍ଭାବୀ; ଅର୍ଥାତ୍ ପୁନର୍ବାର ପୃଥିବୀର ବିଭାଜନ, ବଳପୂର୍ବକ ।

କିନ୍ତୁ ତୃତୀୟ ଏକ ବିପରୀତ ଆବକ୍ରଗତି ଦେଖିପାରିନାହାଁନ୍ତି ଉଭୟ, ଲେନିନ୍ ପୁଣି କୌଟସ୍କୀ । ସେ ବୈପରୀତ୍ୟ ହେଲା, ସାମ୍ରାଜ୍ୟବାଦୀ ଶକ୍ତି ଭିତରୁ ଜଣକ ବଳ ଯଦି ଅବଶିଷ୍ଟ ସମସ୍ତଙ୍କ ବଳକୁ ବଳିପଡ଼େ, ଆନ୍ତଃବୈଷମ୍ୟ ବଢ଼ିଯିବା ଅବଧାରିତ । ସାମ୍ରାଜ୍ୟବାଦ ସେତେବେଳେ ହେବ ବାସ୍ତବିକ ସୁପର୍-ଇମ୍ପିରିଆଲିଜ୍ମ ଏବଂ ଦୀର୍ଘାୟୁ ନହେଲେ ସୁଦ୍ଧା, ଦୁର୍ବଳହେବନାହିଁ ଜମାରୁ । କାହିଁକିନା, ପରିସ୍ଥିତିର ଆବକ୍ରଗତି ସୃଷ୍ଟିକରିବ ଯେତେ ବୈପରୀତ୍ୟ, ଆପଣା ସ୍ୱାର୍ଥସିଦ୍ଧି ସକାଶେ ସେଗୁଡ଼ିକର ସଫଳ ପରିଚାଳନା ହୋଇପାରିବ ସହଜସାଧ୍ୟ । ସେ ସାମ୍ରାଜ୍ୟବାଦ, ସନ୍ଦେହ ନାହିଁ, କୌଟସ୍କୀକଥିତ ଚରମ ସାମ୍ରାଜ୍ୟବାଦର ନାମାନ୍ତର ମାତ୍ର; ବାସ୍ତବାୟିତ କରିପାରେ ସଂଘର୍ଷ ନୁହେଁ, ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସହମତ । ସହମତ ଉପରେ କର୍ତ୍ତୃତ୍ୱ ରହିବ ଅବଶ୍ୟ ସର୍ବପ୍ରଧାନ ସାମ୍ରାଜ୍ୟବାଦୀ ଶକ୍ତିର । ସର୍ବଶକ୍ତିମାନ ସେଇ ଶକ୍ତି ଏକ୍ଷଣି ଯୁକ୍ତରାଷ୍ଟ୍ର ଆମେରିକା । ଇରାକ୍‌ର ପ୍ରକାଣ୍ଡ ତେଲଭଣ୍ଡାର ତା କବଳରେ, ଯା ତା ମୁଦ୍ରାମୂଲ୍ୟକୁ ଖାଲି ଦୃଢ଼କରିବନାହିଁ, ଯୁଦ୍ଧ ସକାଶେ ସାଜସରଞ୍ଜାମ ଯୋଗାଡ଼କରିବାକୁ ଆନ୍ତର୍ଜାତିକ ସ୍ତରରେ ଯଦି ଋଣଗ୍ରହଣ କରିବାକୁ ବାଧ୍ୟହୁଏ, ତାକୁ ମଧ୍ୟ କରିଦେବ ସୁଲଭ । ତେଲ ଆଉ ଋଣ ଯୋଉ ସାମରିକଶକ୍ତିକୁ ପୁଷ୍ଟକରିବ, ତା ବଳରେ ଅପରାପର ଦୁର୍ଲଭ ସାମଗ୍ରୀ, ପୃଥିବୀର ଯୋଉଠି ଥାଉନା କାହିଁକି, ପାଇଯିବ ହାତପାହାନ୍ତାରେ । ଡଲାର୍ ହେବ ଆହୁରି ଦୁର୍ମୂଲ୍ୟ, ଏବଂ ଅବସ୍ଥାନଗତ ଏ ବୈପରୀତକୁ ଯୁକ୍ତରାଷ୍ଟ୍ର ଏପରି ପରିଚାଳନା କରିପାରିବ ଯେ ଅନ୍ୟକୋଉ ସାମ୍ରାଜ୍ୟବାଦୀ ଶକ୍ତି ତା କର୍ତ୍ତୃତ୍ୱକୁ ଆହ୍ୱାନଜଣାଇବାକୁ ସାହାସକରିବେନାହିଁ । ହେଲେ ସୁଦ୍ଧା, ଚରମ ଏଇ ସାମ୍ରାଜ୍ୟବାଦ କାର୍ଯ୍ୟକ୍ଷମ ହେବାକୁ ଦରକାର କରିବ ଜାତିରାଷ୍ଟ୍ରଗୁଡ଼ିକର ମାଧ୍ୟମ ଓ ସହାୟତା । ମାଧ୍ୟମ ହୋଇପାରେ ସାର୍ବଭୌମତ୍ୱର ବିଲୋପ, ଯେପରିକି ଜାତିରାଷ୍ଟ୍ର ହେବେ ଆମେରିକାର ଅଧସ୍ତନ, ଏବେ ଯେମିତି ବ୍ରିଟେନ୍; କିମ୍ବା ଆମେରିକାର ପୋଷ୍ୟ, ଏବେ ଯେମିତି ତୁରସ୍କ; ଅଥବା ଆମେରିକାର କ୍ରୀଡ଼ନକ, ଏବେ ଯେମିତି ଆଫ୍‌ଗାନିସ୍ତାନ୍ । ଜାତିରାଷ୍ଟ୍ରର ବିନା ମଧ୍ୟସ୍ଥତାରେ ତେଣୁ, ଚରମ ହେଉ କି ନରମ, କୋଉହେଲେ ସାମ୍ରାଜ୍ୟବାଦ ଆହରଣକରିପାରେନା ଗତି କିମ୍ବା ଗତିବେଗ । ଲେନିନ୍ ବଞ୍ଚିଥିବାବେଳେ ସାମ୍ରାଜ୍ୟବାଦ ପରିଚାଳିତହୋଇଚି ଏକପ୍ରକାର ରାଷ୍ଟ୍ରସିଷ୍ଟେମ୍ ମାଧ୍ୟମରେ; ଚରମ ସାମ୍ରାଜ୍ୟବାଦ ଏକ୍ଷଣି ତିଆରିକରୁଚି ବିଶ୍ୱାୟନଉପଯୋଗୀ ଅନ୍ୟ ରାଷ୍ଟ୍ରସିଷ୍ଟେମ୍ । ମହାଯୁଦ୍ଧପରବର୍ତ୍ତୀ କାଳରେ ଯୁକ୍ତରାଷ୍ଟ୍ରର ଆଧିପତ୍ୟ ଯେତେବେଳେ

ପ୍ରମାଣକରିଚି ନିଜକୁ ନିରଙ୍କୁଶ, ଚରମ ସାମ୍ରାଜ୍ୟବାଦ ଭଳି ଶବ୍ଦବନ୍ଧ ସେତେବେଳେ ମଧ ବ୍ୟବହାର କରାଯାଇଚି ଅବସ୍ଥାନ ବୁଝାଇବା ପାଇଁ; ମାତ୍ର ସୋଭିଏଟ୍ ଇଉନିୟନ୍ କି ଅପରାପର ସାମାଜତାନ୍ତିକ ଦେଶ ଖାଲି ନୁହେଁ, ଔପନିବେଶିକତାରୁ ସଦ୍ୟମୁକ୍ତ ବୁର୍ଜୋୟାରାଷ୍ଟ୍ରଗୁଡ଼ିକର ଜୋଟ୍‌ନିରପେକ୍ଷ ମେଣ୍ଟ ମଧ ସେ ନିରଙ୍କୁଶତାକୁ ଖାଲି ସଂଯତକରିନାହିଁ, କରିଚି ଏକାବେଳକେ ପ୍ରତିକୂଳ । ସୋଭିଏଟ୍ ସଂଘ ଏକ୍ଷଣି ଭୂପତିତ; ଜୋଟ୍‌ନିରପେକ୍ଷ ଆନ୍ଦୋଳନ ମଧ ପ୍ରତ୍ନବସ୍ତୁ । ଯୋଉ ପୃଥିବୀର ଚେହେରା ଏମିତି ନିସ୍ତ୍ରଭ, ତୃତୀୟବିଶ୍ୱର ଅଧିକାଂଶ ରାଷ୍ଟ୍ରର ସ୍ୱାଧୀନସତ୍ତାକୁ ସେଠି ବାଧତାମୂଳକ ଏ ବିଶ୍ୱାୟନ ବିପନ୍ନକରିବା କଷ୍ଟସାଧ୍ୟ ନୁହେଁ । ସୁପରଇମ୍ପେରିଆଲିଜ୍ମ ଚିହ୍ନାୟନ ତେଣୁ ଅଯଥାର୍ଥ ନୁହେଁ । ମାତ୍ର ଅନ୍ତର୍ନିହିତ କଣ୍ଟ୍ରାଡିକ୍ସନ୍ ତଥାପି ରହିଚି ନିଟୋଳ । ଅପରି ସାମ୍ରାଜ୍ୟବାଦୀ ଶକ୍ତିର ଅବ୍ୟକ୍ତ ପ୍ରତିଦ୍ୱନ୍ଦ୍ୱିତା ଅଥବା ସମାଜତନ୍ତ୍ରର ସାମୟିକ ପରାଜୟ ବିଗଳିତକରିପାରୁନାହିଁ ନିହିତ ସେଇ ବୈପରୀତ୍ୟଗୁଡ଼ାକୁ; ଆହ୍ୱାନଗୁଡ଼ାକ ବି ନିସ୍ତେଜ ହୋଇସୁଦ୍ଧା ମରିଯାଉନାହିଁ । ବିଷୟବ୍ୟବସ୍ଥା ସେଥିପାଇଁ ନିଶ୍ଚଳ, ଅର୍ଥନୀତି ପଶ୍ଚାଦ୍‌ମୁଖୀ, ମୁଦ୍ରାପରିମାଣ ନିମ୍ନଗାମୀ । ୧୯୫୦ରୁ ୬୦ ଯୋଉ ଦଶନ୍ଧି, ତା ସହିତ ବିଶ୍ୱାୟନର ଏଇ ହେଲା ମୌଳିକ ପ୍ରଭେଦ । କେୟେନ୍ସୀୟ ଡିମ୍ୟାଣ୍ଡ୍‌ମ୍ୟାନେଜ୍‌ମେଣ୍ଟ୍ ଓ ତଦ୍‌ପ୍ରସୂତ ଗର୍ଜମାନ ପୁଞ୍ଜିବାଦକୁ ଲକ୍ଷ୍ୟକରି, ସେ ଦଶନ୍ଧିରେ ହର୍ବଟ୍ ମାର୍କୁଜ୍‌ଙ୍କ ଭଳି ଭାବୁକଙ୍କୁ ଲାଗିଚି, ନିହିତ କଣ୍ଟ୍ରାଡିକ୍ସନ୍‌ଗୁଡ଼ାକୁ ସାମ୍ରାଜ୍ୟବାଦ ହୁଏତ ସମ୍ଭାଳିନେବ । ଚଳିତ ପର୍ଯ୍ୟାୟର ଚିତ୍ର କିନ୍ତୁ ଏକେବାରେ ଓଲଟା; ମେଟ୍ରପଲିଟାନ୍ କେନ୍ଦ୍ରଗୁଡ଼ିକରେ କର୍ମହୀନତା ସାଙ୍ଘାତିକ, ଅର୍ଥନୀତିର ମନ୍ଦା, ଶିଳ୍ପପ୍ରସାର ସ୍ଥଗିତ, ଦୈନ୍ୟ ସର୍ବବ୍ୟାପୀ, ଏବଂ ସେଥିପାଇଁ, ପ୍ରାନ୍ତବର୍ତ୍ତୀ ଦେଶଗୁଡ଼ିକ ସହିତ ବାଣିଜ୍ୟହ୍ରାସ । ତା ଦିହରେ ଆସି ମିଶୁଛି ତୃତୀୟବିଶ୍ୱର କୃଷକସମାଜର ଅସନ୍ତୋଷ । ଠିକ୍ ଯେମିତି ଘଟିଥିଲା ୧୯୩୦ ଦଶକରେ । ଉନ୍ନତ ଗୋଲାର୍ଦ୍ଧରେ ମନ୍ଦା ଯେତେଦିନ ଚାଲିବ ବୋଲି ଲୋକ ଭାବିଥିଲେ, ତାଠୁଁ ବେଶିଦିନ ଧରି ଚାଲୁଚି, ଲାଲ୍ ଚୀନ୍‌ରେ ସମାଜତନ୍ତ୍ର ଆଢୁଆଳରେ ଧନତନ୍ତ୍ରର ସାଧନା ସତ୍ତ୍ୱେ । ଧନତନ୍ତ୍ରର ଲୀଳାଭୂମି ଖାସ୍ ଯୁକ୍ତରାଷ୍ଟ୍ରରେ ଶ୍ରମିକର ମଜୁରିହାର ତିରିଶବର୍ଷ ଆଗରୁ ଯା ଥିଲା, ଏକ୍ଷଣି ତା ତଳକୁ ଖସିଯାଇଚି । ଅର୍ଥାତ୍, ଅସାମ୍ୟ ସେଠି ଆପେକ୍ଷିକ ନୁହେଁ, ଆବ୍‌ସ୍‌ଲିଉଟ୍ ।

ଚରମ ସମ୍ରାଜ୍ୟବାଦର ପ୍ରତିରୋଧ ଅବଶ୍ୟ ଅବଧାରିତ, କିନ୍ତୁ ତୃତୀୟବିଶ୍ୱ ବା ନିର୍ଦ୍ଦିଷ୍ଟଭାବେ ଭାରତରେ ପ୍ରତିରୋଧ କି ରୂପ ବା ଗତି ଆହରଣକରିବ, ଆଗତୁରା କହିହେବନାହିଁ । ଏତିକି କହିହେବ ଯେ ପ୍ରତିରୋଧର ପ୍ରଥମ ଲକ୍ଷ୍ୟ ହେବ ସ୍ୱାଧୀନ ଓ ସାର୍ବଭୌମ ଏକ ଜାତିରାଷ୍ଟ୍ର ନିର୍ମାଣ । ତା ପାଇଁ ଅବଶ୍ୟ ଦରକାର ପଡ଼ିବ ଅନ୍ୟପ୍ରକାର

ଶ୍ରେଣୀଭିତ୍ତି, କାହିଁକିନା, ସ୍ଥିତ ରାଷ୍ଟ୍ରର ବୁର୍ଜୋୟା କୋଉଦେଲେ ସାମ୍ରାଜ୍ୟବାଦବିରୋଧୀ ସଂଗ୍ରାମକୁ ନେତୃତ୍ୱଦେବାକୁ ସଂପୂର୍ଣ୍ଣ ଅକ୍ଷମ । ଅନ୍ୟପ୍ରକାର ଶ୍ରେଣୀଭିତ୍ତି ଯେତିକି, ସଂଗ୍ରାମର ସଂଗଠନ ମଧ୍ୟ ସେତିକି ଅନ୍ୟପ୍ରକାର ଅର୍ଥନୀତିକ କୃତ୍ୟସୂଚୀ; ଏପରି କୃତ୍ୟସୂଚୀ, ଯା ବାଧ୍ୟକରିପାରେ ବିଶ୍ୱାୟନକୁ, ପୁଞ୍ଜିବାଦୀ ଆବକ୍ରଗତିରୁ ଓହରିଆସି ବିକେନ୍ଦ୍ରୀକରଣକୁ ଦେବାକୁ ଅଗ୍ରାଧିକାର । ଲେନିନ୍‌ଙ୍କ ଉପଲବ୍ଧି ପ୍ରାସଙ୍ଗିକ ନହୋଇପାରେ; ମାତ୍ର କର୍ମକ୍ଷେତ୍ରର ଅଭିଜ୍ଞତା ବତାଇଦେବ ପ୍ରତିରୋଧର ମାର୍ଗଦର୍ଶନ । ଲେନିନ୍ ଭାବିଥିଲେ ବୁର୍ଜୋୟା ଶାସକଶ୍ରେଣୀ ସାଙ୍ଗରେ ଆଗେ ଗୃହଯୁଦ୍ଧ; ନହେଲେ ରାଷ୍ଟ୍ରର ଶ୍ରେଣୀଭିତ୍ତି ବଦଳିବନାହିଁ । ନହେଲେ, ସଂଗଠନ ଯଦି ହୁଏ ଅମଲାତାନ୍ତ୍ରିକ, ମଧ୍ୟମବର୍ଗ ରାଜନୀତି ବର୍ଜନକରି ପାଲଟିଯିବେ ସୁଯୋଗସଂଧାନୀ । ପୁଞ୍ଜି ଉପରେ ବ୍ରିଟେନ୍‌ର ପ୍ରଭୁତ୍ୱକୁ ଉପଲବ୍ଧିକରି ଲେନିନ୍ କଳ୍ପନାକରିଥିଲେ ସାମ୍ରାଜ୍ୟବାଦ; କିନ୍ତୁ ଏବେ ଯିଏ ପ୍ରଭୁତ୍ୱକରୁଚି, ପୁଞ୍ଜି ନୁହେଁ କି କୋଉ ନିର୍ଦ୍ଦିଷ୍ଟ ରାଷ୍ଟ୍ରର ପୁଞ୍ଜି ନୁହେଁ; ସବୁରକମ ଅବରୋଧ ଓ ପ୍ରତିଦ୍ୱନ୍ଦ୍ୱିତା ଊର୍ଦ୍ଧ୍ୱରେ ଆମେରିକାର ରାଜନୀତିକ ହିଗେମନି, ଯା ପୁଞ୍ଜିର ବିଶ୍ୱଭ୍ରମଣର ସହାୟକ ମାତ୍ର । ସେ ହିଗେମନିର ସଦର୍ପ ଅଂଶୀଦାର ତୃତୀୟବିଶ୍ୱ / ଭାରତର ବୁର୍ଜୋୟା, କାହିଁକିନା, ପ୍ରଭୁ ଓ ପ୍ରଜା, ଉଭୟଙ୍କର ଉଦ୍ଦେଶ୍ୟ ପୃଥିବୀର ଦୁର୍ବଳକୁ ଯୁଗ୍ମଦୋହନ । ଦୁର୍ବଳ ସପକ୍ଷରେ ରାଷ୍ଟ୍ର ଉପରେ ହସ୍ତକ୍ଷେପ ନିଶ୍ଚୟ ନୈତିକ କର୍ତ୍ତବ୍ୟ; ଏପରିକି କ୍ୟାପିଟାଲିସ୍ମ ଭିତରେ ନିମଗ୍ନଥାଇ ସୁଦ୍ଧା ହସ୍ତକ୍ଷେପ କରାଯାଇପାରେ; ଯେମିତି କରିଚନ୍ତି ଗାନ୍ଧି । ତାଙ୍କ ସଂଗ୍ରାମ କିନ୍ତୁ ବୈଷମ୍ୟରୁ ଉଦ୍ଧାର କରିପାରିନାହିଁ ସମାଜକୁ । ବରଂ ଉପନିବେଶରୁ ପଳାଇଯାଇ ସାମ୍ରାଜ୍ୟବାଦ ଆହରଣକରିଚି ବିଶ୍ୱାୟନର ମାତ୍ରା । ମାର୍କ୍ସ ବି ସେମିତି ଭାବିଥିଲେ, ଧନତନ୍ତ୍ର ପରିଣତହେଲେ, ମାନେ, ଉତ୍ପାଦନର ଶକ୍ତିପୁଞ୍ଜକୁ ଧନଯନ୍ତ୍ର ଯେତେବେଳେ ପ୍ରାପ୍ତବୟସ୍କ କରିଦେବ, ଶକ୍ତିଗୁଡ଼ିକ ସେତେବେଳେ ବୈପରୀତ୍ୟଗୁଡ଼ାକୁ ବିଗଳିତକରି ତିଆରିକରିପାରିବେ ଶ୍ରେଣୀହୀନ ସମାଜ । ଅଥଚ ମୂର୍ଖମୁଷୁଣ୍ଡା ଚଷାଭୁଷାଙ୍କୁ ସାଙ୍ଗରେ ଧରି ଏକାହୁମ୍ପାକେ ଲେନିନ୍ ଡେଇଁପଡ଼ିଲେ ପୁଞ୍ଜିବାଦର ପାଚିରି; ଆଉ ସେଇ ଅପୋଗଣ୍ଡଙ୍କ ଉପରେ ଲଦିଦେଲେ ଶ୍ରେଣୀହୀନ ସମାଜ । କାର୍ଯ୍ୟକ୍ଷେତ୍ରରେ ପରିଣତି ହୋଇଚି ବିପରୀତ; ଧନତନ୍ତ୍ରର ପରିଣତ ପର୍ଯ୍ୟାୟରୁ ସମାଜତନ୍ତ୍ର ବାହାରିନାହିଁ, ବାହାରିଚି ଗ୍ଲୋବାଲାଇଜେସନ୍ ରୂପକ ମାର୍କିନ୍ ସାମ୍ରାଜ୍ୟବାଦ । ବୈଷମ୍ୟହୀନ ସମାଜରେ ଧାରଣା ଆସୁଚି ତେଣୁ ଏପରି ଏକ ବିଶ୍ୱାସଜଗତରୁ ଇଂରେଜୀରେ ଯାହାକୁ କୁହାଯାଏ 'ବିଲିଫ୍-ସିଷ୍ଟେମ୍' । ସେ ବିଶ୍ୱାସ ବଦ୍ଧମୂଳ ନହେଲେ ଖାଲି ବୁଦ୍ଧି କି ମେଧା ସୃଷ୍ଟିକରିପାରେନା ସଂଗ୍ରାମର ପ୍ରରୋଚନା । ଏକଥାର ଅର୍ଥ ଏଇ ନୁହେଁ ଯେ, ମାର୍କ୍ସ

କି ଲେନିନ୍, ଖାଲି ବୁଦ୍ଧି ଓ ମେଧାକୁ ସମ୍ବଳକରି କଳ୍ପନାକରିଚନ୍ତି ବିପ୍ଳବ । ବରଂ ଏଇ ଅର୍ଥ ବାହାରୁଚି ଯେ ଦୃଢ଼ମୂଳ ବିଶ୍ୱାସ ସତ୍ତ୍ୱେ ବାଞ୍ଛିତ ସାଫଲ୍ୟ ଯଦି ନମିଳେ, ବୁଦ୍ଧି ଓ ମେଧାର ବିପରୀତପ୍ରରୋଚନା ସେ ବିଶ୍ୱାସକୁ  ନିସ୍ତେଜ କରିପାରେନା, ତଥାପି । ବୁଦ୍ଧି ଓ ମେଧାର ବିପରୀତ ପ୍ରରୋଚନା ମାନେ, ଏବେ ବି ମନସ୍ୱୀ କହୁଚନ୍ତି, ବିଶ୍ୱାୟନପ୍ରକ୍ରିୟା ଭିତରଦେଇ ଦୁନିଆତମାମ ଶ୍ରମଜୀବୀ ଯଥାକାଳେ ବୁଝିପାରିବେ ସାମ୍ରାଜ୍ୟବାଦର ଅମାନବିକତା, ଏବଂ ସେତେବେଳେ କେବଳ ତିଆରିକରିପାରିବେ ଯଥାର୍ଥ ସମାଜତନ୍ତ୍ର । ଅର୍ଥାତ୍, ପ୍ରତିରୋଧ-ପ୍ରତିବାଦ ଅବରୋଧ-ଅଭିଘାତ ଭଳି ଆକ୍ରମଣର ସମୟ ଏପର୍ଯ୍ୟନ୍ତ ଆସିନାହିଁ ! ଏଇ ଯୁକ୍ତିର ସଂପ୍ରସାରଣରେ କହିହେବ, ଭାରତର ସ୍ୱାଧୀନତାସଂଗ୍ରାମ ଏକ ଅପରିଣତ ଆନ୍ଦୋଳନ; ବ୍ରିଟିଶ୍‌ରାଜତ୍ୱକୁ କାମରେ ଲଗାଇ ଭାରତବାସୀ ନିଜକୁ ଯୋଗ୍ୟକରି ପାରିଥିଲେ, ମହରଗରୁ ଯାଇ କାନ୍ତାରରେ ପଡ଼ିନଥାନ୍ତୁ ! ତର୍କବିତର୍କର ବିଷୟ ନୁହେଁ, କାହିଁକିନା, ଯିଏ ପରାର୍ଥପର, ଯିଏ କାମନାକରେ ଯେକୌଣସି ଆଧିପତ୍ୟରୁ ମୁକ୍ତି, ତାକୁ ଉଦ୍‌ବୁଦ୍ଧକରେ ମେଧା କି ବୁଦ୍ଧିର ଗଣିତ ଅପେକ୍ଷା ଅର୍ଜିତ ବିଶ୍ୱାସ; ଯୋଉ ବିଶ୍ୱସ ନିଜେ ଏକ ସ୍ୱୟଂସଂପୂର୍ଣ୍ଣ ଜଗତ, ଯା ଗଢ଼ିଉଠେ ସଂଗ୍ରାମ ଓ ସାଧନାର ସମବାୟରେ । ସେ ଶିକ୍ଷା ବି ଖାଲି ବହିରୁ ଆସେନା; ଆସେ ଜୀବନର ପ୍ରାତ୍ୟହିକ ଘାତପ୍ରତିଘାତରୁ, ତତ୍ତ୍ୱକଥାର ସତ୍ୟାସତ୍ୟ ଯୋଉଠି ପରୀକ୍ଷିତହୁଏ କ୍ଷଣକୁ କ୍ଷଣ । ହୁଏ ବୋଲି, ରୋମା ରୋଲାଁ କହିଚନ୍ତି, ପେସିମିଜ୍ମ ଅବ୍ ଦ୍ୟ ଇଣ୍ଟେଲେକ୍ଟ, ଅପ୍ଟିମିଜ୍ମ ଅବ୍ ଦ୍ୟ ଉଇଲ୍ । ମାର୍କ୍ସ ଯଦି ବିଶ୍ୱାୟନ ସମ୍ଭାବନାକୁ ଦେଖିପାରିନାହାଁନ୍ତି, ବିଶ୍ୱାସଜଗତର ତ୍ରୁଟି କାରଣରୁ ନୁହେଁ;  ରେଳବାଇ ଟାଇମ୍‌ଟେବ୍ଲ ଲେଖୁନଥିଲେ ଯେ କହିଦେଇଯିବେ କୋଉ ଷ୍ଟେସନ୍ ଆଗକୁ ଆସିବ ଆଉକୋଉ ଷ୍ଟେସନ୍ । କେୟେନ୍ସ ବି କଣ ଜାଣିଥିଲେ,  ମଧ୍ୟପ୍ରାଚ୍ୟରୁ ପ୍ରେଟୋଲ୍ ନମିଳିଲେ ଭୁଷୁଡ଼ିପଡ଼ିବ ଜନମଙ୍ଗଳ ରାଷ୍ଟ୍ର ? ଆବିର୍ଭୂତ ହେବେ ବ୍ରିଟେନ୍‌ରେ ମାର୍ଗାରେଟ୍ ଥ୍ୟାଚର୍ ଆଉ ଆମେରିକାରେ ରନାଲ୍ଡ ରେଗାନ୍ ? ଏଗୁଡ଼ାକ କୋଉ ବହିର ଲେଖାହୋଇନାହିଁ; ଯେମିତି ଲେଖାହୋଇନାହିଁ  ବିଶ୍ୱାୟନର ପ୍ରତିରୋଧ ଆହରଣକରିବ କିଭଳି ଅବୟବ ।

*   *   *   *   *   *   *

କର୍ମଧାରାକୁ ତେଣୁ ବାଟ ଦେଖାଇବ ଅଭିପ୍ରେତ ସାମାଜିକ ସଂପର୍କ । ସେଇଥିରୁ ତିଆରିହେବ ସଂଗ୍ରାମର ଶ୍ରେଣୀଭିତ୍ତି । ସାମାଜିକ ସଂପର୍କକୁ ଗଠିତକରେ ବ୍ୟକ୍ତିଗତ ସଂପତ୍ତିର ତାରତମ୍ୟ; ବ୍ୟକ୍ତିଗତ ସଂପତ୍ତି ଯାର ବିଶେଷ ନାହିଁ, ତାର ସାମାଜିକ ପରିଚୟ ଗରିବ; ଦରକାରୁ ଯାର ଅଧିକ ଅଛି, ମହାଜନ । ଶ୍ରେଣୀଜାତ

ପ୍ରଭେଦ ସ୍ପଷ୍ଟତଃ । ଶ୍ରେଣୀବୈଷମ୍ୟ ଲୋପକରିବା ଏକମାତ୍ର ବାଟ ତେଣୁ ସାମାଜିକ ସଂପଦର ପୁନର୍ବଣ୍ଟନ; ମାତ୍ର ଧନତନ୍ତ୍ର ଦୃଷ୍ଟିରେ ସଂପତ୍ତି ଉପରେ ବ୍ୟକ୍ତିବିଶେଷର ଅଧିକାର ପବିତ୍ର; ସେଥିପାଇଁ ଅଲଂଘନୀୟ । ତା ଛଡ଼ା, ବିଖ୍ୟାତ କିଛି ଅର୍ଥନୀତିବିତ୍ କହୁଚନ୍ତି, ଏ ଅଧିକାର ଅନୁପସ୍ଥିତିରେ ଆର୍ଥିକ ଉନ୍ନତି ସମ୍ଭବ ନୁହେଁ; ମାତ୍ର ସାଧାରଣ ବୁଦ୍ଧିକୁ ଦିଶୁଚି, ସାମାଜିକସାମ୍ୟ ହିଁ ଆର୍ଥିକ ଉନ୍ନତିର ପ୍ରଧାନ ସର୍ତ୍ତ । ବିଂଶଶତକର ଅନ୍ତିମ ପର୍ବରେ ଆରମ୍ଭହୋଇଚି ଧନତନ୍ତ୍ରର ବିଶ୍ୱାୟନ; ମାତ୍ର ଇତ୍ୟବସରେ ଅନ୍ତତଃ ପାଞ୍ଚ ଟ୍ରିଲିଅନ୍ ଡଲାର୍ ଦୀନତମ ଦେଶମାନଙ୍କରୁ ଅପହରଣକରିଚନ୍ତି ସଂପଦଶାଳୀ ଶକ୍ତି; ଅସ୍ତ୍ରବଳରେ ନୁହେଁ, ଚଞ୍ଚକତା ପୂର୍ବକ । ଦେଇଚନ୍ତି ପଣ୍ୟ ନିର୍ବାଚନ ସ୍ୱାଧୀନତା, ଜୀବିକା ଅର୍ଜନ ସ୍ୱାଧୀନତା, ଭୋଟ୍‌ଦେବା ଅଧିକାର, କୋର୍ଟକଚେରୀ, ପୁଲିସ୍, ମ୍ୟାଜିଷ୍ଟ୍ରେଟ୍; ମାତ୍ର ସାମାଜିକ ସଂପଦ ଉପରେ ବ୍ୟକ୍ତିଗତ ଅଧିକାରକୁ ରଖିଦେଇଚନ୍ତି ଧରାଛୁଆଁ ବାହାରେ । ସଂପତ୍ତିଗତ ତାରତମ୍ୟ ବଢୁଚି; ବଢୁଚି ବୋଲି, ସାମାଜିକ ସଂପର୍କଗୁଡ଼ାକ ବିଦ୍ୱେଷମୁଖୀ । ବ୍ୟକ୍ତ-ଅବ୍ୟକ୍ତ ବିଦ୍ୱେଷ ଯଦି ଅନ୍ତରାଳରେ କୁହୁଳୁଥାଏ, ସମାଜ ଆଗକୁ ଯାଇପାରେନା; ଅଥଚ ମାର୍କ୍ସ ଭାବିଚନ୍ତି, ମଣିଷ ଏପରି ଏକ ପ୍ରାଣୀ, ଆଗକୁ ଚାଲିବା ଯାର ସହଜାତ ସ୍ୱଭାବ, ସୀମାବଦ୍ଧତାକୁ ଲଂଘନକରିବା ଯାର ନିୟତି । ଇତିହାସ ତେଣୁ ସୀମାଲଂଘନର ଧାରାବାହିକତା, ଯୋଉ ଧାରାରେ ସମାଜତନ୍ତ୍ର ଏକ ଆବଶ୍ୟକ ବିନ୍ଦୁ; ପ୍ରଥମ ନୁହେଁ, କି ଶେଷ ନୁହେଁ । ଯାକୁ ଇଜ୍ମ ବା 'ବାଦ' ଆଖ୍ୟାରେ ଅଳଙ୍କୃତକରିବା ଦରକାରନାହିଁ, କାହିଁକିନା, ଗାଲିଲେଓ ବି ପ୍ରତିଷ୍ଠାକରିଚନ୍ତି ଫିଜିକ୍ସ, ଏବଂ ଯା କହିଚନ୍ତି ସେଥିରୁ ଅଧିକାଂଶ ରହିଚି ଅପରିବର୍ତ୍ତିତ, ଅଥଚ ପଦାର୍ଥବିତ୍ ତାକୁ 'ଇଜ୍ମ' କହନ୍ତିନାହିଁ, ଫିଜିକ୍ସ ଯେହେତୁ ଗତିଶୀଳ ଏକ ଅନୁସନ୍ଧାନ । ଯୋଉଠି ଗତି (ଅଗ୍ରଗତି) ଧାରଣା ଅନୁପସ୍ଥିତ, ତାକୁ କୁହାଯାଏ 'ଇଜ୍ମ', ଯେମିତି ଧର୍ମମତ । କାହିଁକିନା, ଧର୍ମ ହେଲା ଉଦ୍‌ଘାଟିତ ସତ୍ୟ; ଉଦ୍‌ଘାଟନ ଉତାରୁ ଆଗ ନାହିଁ କି ପଛ ନାହିଁ, ଆବ୍‌ସଲିଉଟ୍ । ଅବଶ୍ୟ, ଗ୍ୟାଲିଲେଓ ଓ ମାର୍କ୍ସଙ୍କ ଭିତରେ ତଫାତ୍ ହେଲା, ଗାଲିଲେଓ ଏକ୍ଷଣି ପ୍ରତ୍ନବସ୍ତୁ; ମାର୍କ୍ସ ଯେହେତୁ ସମାଜପରିବର୍ତ୍ତନ ସହିତ ଜଡ଼ିତ, ଜାଦୁଘର ତାଙ୍କୁ ବାରମ୍ବାର ଫେରାଇଦେଇଚି ସଂଗ୍ରାମଭୂମିକୁ ।

ମାତ୍ର ବୁର୍ଜୋୟାଙ୍କୁ ଦେଖିଚନ୍ତି କେବଳ ଇଉରୋପ୍‌ରେ; ଆଉ ଯୋଉ 'ଏସିଆଟିକ୍' ସମାଜ କଥା ବହିରେ ଲେଖିଚନ୍ତି, ତାକୁ ବି ଦେଖିନାହାଁନ୍ତି ସ୍ୱଚକ୍ଷୁରେ । ତେବେ, ଊନବିଂଶ ଶତକରେ ବଞ୍ଚୁଥିବା ଲୋକ ପକ୍ଷରେ ପ୍ରାକ୍‌ଐତିହାସିକ ଭାରତୀୟ ସମାଜକୁ ପ୍ରତ୍ୟକ୍ଷକରିବା ସମ୍ଭବପର ନୁହେଁ । ଧନତନ୍ତ୍ର କାହିଁକି ମଣିଷର ବନ୍ଧନମୁକ୍ତି ବାଟରେ କଣ୍ଟା, କେବଳ ସେଇ କଥାଟାକୁ ବୁଝାଇବାପାଇଁ ଭାରତର ତଥାକଥିତ

ସ୍ୱୟମ୍ଭର ସମାଜସଂଗଠନକୁ ଗ୍ରହଣକରିଚନ୍ତି ଦୃଷ୍ଟାନ୍ତ । ହେଲେ ସୁଦ୍ଧା, ଏସିଆଟିକ୍ ସମାଜ କାଳ୍ପନିକ କୋଉ ଅସ୍ତିତ୍ୱ ନୁହେଁ; ମାତ୍ର ସମାଜତନ୍ତ୍ର ମଧ୍ୟ ୧୮୬୭ ବେଳକୁ ଥିଲା ନାହିଁ ନିର୍ଦ୍ଦିଷ୍ଟ କୋଉ ଐତିହାସିକ ସତ୍ତା; ପରିକଳ୍ପନା ଆକାରଧରିଚି କେବଳ । କିନ୍ତୁ ପରିକଳ୍ପିତ ଯୋଜନା ବାସ୍ତବରେ କି ଆକାରପ୍ରକାର ଧାରଣକରିବ, ନିର୍ଭରକରିବ ଦୁଇଟି ସର୍ତ୍ତ ଉପରେ: (୧) No social formation ever perishes before all the productive forces for which there is room in it have developed.... ଏବଂ (୨) and new higher relation of production never appear before.....they have matured in the womb of the old society itself । ଅନ୍ୟ ଶବ୍ଦରେ, ଋଷିଆ, ଚୀନ୍, କ୍ୟୁବା, ପୂର୍ବଜର୍ମାନୀ, ଭିଏତ୍‌ନାମ୍ ଅଥବା ପୂର୍ବଇଉରୋପରେ ହଙ୍ଗେରି, ପୋଲାଣ୍ଡ୍, ଯୁଗୋସ୍ଲୋଭିଆ, ରୁମାନିଆ ଇତ୍ୟାଦି ନିଜକୁ ସମାଜତନ୍ତ୍ର ବୋଲି ଘୋଷଣାକଲେ ସୁଦ୍ଧା, ମାର୍କ୍ସ ପରିକଳ୍ପିତ ସମାଜତନ୍ତ୍ର ନୁହେଁ । ନହେଲେ ବି, ସେଠିକା ଜନଗଣ ପୃଥିବୀର ମୋଟ୍ ଜନସଂଖ୍ୟାର ପ୍ରାୟ ଦୁଇତୃତୀୟାଂଶ, ବୁର୍ଜୋୟାସମର୍ଥିତ ସାମ୍ରାଜ୍ୟବାଦର ନିଃଶଙ୍କ ପ୍ରତିପକ୍ଷ । ନିଜ ଦେଶରେ ସଂପଦର ପୁନର୍ବଣ୍ଟନ ଅସମାଧିତ ରହିଚି, ମାତ୍ର ପୁଞ୍ଜିର ବିଶ୍ୱାୟନକୁ ଗ୍ରହଣକରିନାହାଁନ୍ତି କେହିହେଲେ । ସଂପତ୍ତିଜାତ ସାମାଜିକ ବୈଷମ୍ୟକୁ ଅଗ୍ରଗତିର ପ୍ରତିବନ୍ଧକ ଭାବିବା କାରଣ, ନିତ୍ୟାବଶ୍ୟକ ଜିନିଷଗୁଡ଼ିକ ଭିତରେ ରହିଚି ଚେତନାକୁ ଗଠିତକରିବାକୁ ସର୍ବାଧିକ ସାମର୍ଥ୍ୟ.... material life conditions the social, political and intellctual life process in general । ଏ ସତ୍ୟ ଯେହେତୁ ଇତିହାସ ଦ୍ୱାରା ସିଦ୍ଧ, ନାଁ ଦିଆଯାଇଚି ହିଷ୍ଟରିକ୍ୟାଲ୍ ମେଟିରିଆଲିଜ୍ମ; ସମାଜତନ୍ତ୍ରର ଅସଲ ଲକ୍ଷ୍ୟ ତେଣୁ ସାମାଜିକ ସଂପଦର ପୁନର୍ବଣ୍ଟନ ଭିତରଦେଇ ଚେତନାକୁ ଅନର୍ଗଳ କରିବା । ଅର୍ଥାତ୍, ପୁନର୍ବଣ୍ଟନ ଉପାୟ ମାତ୍ର, ଚେତନାର ବିକାଶ ହିଁ ଅସଲ ଲକ୍ଷ୍ୟ; ଯୋଉ ଲକ୍ଷ୍ୟକୁ ଅବରୁଦ୍ଧକରୁଚି ଚରମ ସାମ୍ରାଜ୍ୟବାଦ । ପ୍ରତିହତକରିବାକୁ ରାଜନୈତିକ ଉଦ୍ୟୋଗ ଯେମିତି ପ୍ରାଥମିକ ସର୍ତ୍ତ, ସେମିତି ଦରକାର ଇତିହାସ ପ୍ରତି ଅନ୍ତର୍ଦୃଷ୍ଟି । ସେଇ ଦୃଷ୍ଟିରେ ପ୍ରାକ୍‌ଔପନିବେଶିକ ଭାରତ (ଏସିଆଟିକ୍ ସୋସାଇଟି) ମାର୍କ୍ସଙ୍କୁ ଲାଗିଚି ନିଶ୍ଚେତନ, ନିଶ୍ଚଳ । ମଣିଷର ଗତିବିଧି ଯେହେତୁ ଅକର୍ମକ ନୁହେଁ, ଚେତନାର ବିକଚନ ଦରକାରକରେ ବହୁବିଧ କର୍ମକାଣ୍ଡରେ ଆତ୍ମନିଯୋଗ । ସନ୍ଦେହ ନାହିଁ, କାମଗୁଡ଼ାକ ଭିତରେ ଜୀବନଧାରଣର ରସଦଆହରଣ ସବୁଠୁଁ ବେଶି ଜରୁରୀ; ମାତ୍ର ସେତିକିରେ ଆବଦ୍ଧରହିବା ମଣିଷର ସ୍ୱଭାବ ବିରୁଦ୍ଧ । ଅଥଚ ପ୍ରାକ୍‌ଔପନିବେଶିକ ଭାରତୀୟ ସମାଜ ଆତ୍ମସନ୍ତୁଷ୍ଟ ଅବରୁଦ୍ଧ ଏକ ପରିମଣ୍ଡଳ: ସ୍ୱନିର୍ଭର ଜନପଦ

ସମୁଦ୍ରଭିତରେ ଦ୍ୱୀପ ଭଳି ପରସ୍ପର ବିଚ୍ଛିନ୍ନ ବା ସ୍ୱତନ୍ତ୍ର; ପାରସ୍ପରିକ ବିନିମୟ ତେଣୁ ବିବାହ ଭଳି ସଂପର୍କଠାରୁ ଅଧିକ ନୁହେଁ । ଅଥଚ ନିୟମିତ ବିନିମୟ ଘଟିଥାଏ ସାଧାରଣତଃ ହାଟବଜାରରେ, ପଣ୍ୟ ମାଧ୍ୟମରେ । ମୂଲ୍ୟବିନିମୟ ସାଙ୍ଗକୁ ଘଟେ ଭାବର ଆଦାନପ୍ରଦାନ, ଅର୍ଥାତ୍ ଆପଣା ଜଗତ ବାହାରେ ଅନ୍ୟ ଜଗତ ସହିତ ସାମାଜିକତା, ଏବଂ ସେଇ ସୂତ୍ରରେ, ରାଜନୀତିର ସୂତ୍ରପାତ । ପଣ୍ୟ ହେଲା କମୋଡିଟିର ଓଡ଼ିଆ, ନିଜେ ଖାଇବାପାଇଁ ଲୋକ ଯା ଉତ୍ପନ୍ନକରେ, ତା ପଣ୍ୟ ନୁହେଁ; ବିନିମୟପାଇଁ ଯା ଉତ୍ପାଦନକରେ, ସେତିକି କେବଳ ପଣ୍ୟ । ବିକିବା ଜିନିଷର ମୂଲ୍ୟ ବିନିମୟମୂଲ୍ୟ; ନିଜେ ଖାଇବା ଜିନିଷର ମୂଲ୍ୟ ଇଉସ୍ ଭ୍ୟାଲିଉ ବା ବ୍ୟାବହାରିକ ମୂଲ୍ୟ । 'ଶୋଷଣ' ଭଳି ଉପସର୍ଗ ବିନିମୟ ଭିତରକୁ ନପଶିଲେ ବିନିମୟମୂଲ୍ୟ ସାଧାରଣତଃ ବ୍ୟାବହାରିକ ମୂଲ୍ୟଠାରୁ ଅଧିକ । ଉଭୟ ମଧ୍ୟସ୍ଥ ବ୍ୟବଧାନ ତେଣୁ ଉଦ୍‌ବୃତ୍ତ, ଇଂରେଜିରେ ସର୍‌ପ୍ଲସ୍ ଭ୍ୟାଲିଉ । ସେଇ ସର୍‌ପ୍ଲସ୍ ବିବେଚିତହୋଇଚି ବିନିଯୋଗଯୋଗ୍ୟ ପୁଞ୍ଜି; କାହିଁକିନା, ଆବଶ୍ୟକ ମେଣ୍ଟାଇବା ସଙ୍ଗେସଙ୍ଗେ ତାହାରି ବଳରେ ନିହିତ ପ୍ରବଣତା ଅନୁଯାୟୀ ନାନାଦି କ୍ରିୟାକଳାପରେ ପ୍ରବୃତ୍ତହୋଇପାରେ ମଣିଷ, ଏକାକାମରେ ସାରାଜୀବନ କଟାଇଦେବା ଭଳି ଅବରୁଦ୍ଧତାକୁ ଲଂଘନକରିପାରେ ଅକ୍ଳେଶରେ, ଯେପରି ଭାରତରେ ଜାତିପ୍ରଥା । ସଂଚିତ ଉଦ୍‌ବୃତ୍ତ ତେଣୁ ରସଦଉତ୍ପାଦନ ପରିଶ୍ରମରୁ ଦିଏ ଅବସର, ଚିତ୍ତକର୍ଷଣ (କଲ୍‌ଚର୍) ସକାଶେ ସେ ଅବସର ଅପରିହାର୍ଯ୍ୟ । ଜୀବିକାଅର୍ଜନର ଅଭ୍ୟସ୍ତ ପରିଶ୍ରମ ବାହାରେ ଏଭଳି ପରିଶ୍ରମ ସାଧାରଣତଃ ନୂଆକିଛି ସୃଷ୍ଟିକରିବା ସକାଶେ ନିଯୁକ୍ତହୁଏ; ଯେପରି, ସାହିତ୍ୟ ସଂଗୀତ ବିଜ୍ଞାନ ଦର୍ଶନ ଆବିଷ୍କାର ଉଦ୍‌ଭାବନ ଇତ୍ୟାଦି । ପରିଶ୍ରମ ମାତ୍ରକେ ସେଥିପାଇଁ ସର୍ଜନଶୀଳ । ଅଥଚ ଧନତନ୍ତ୍ର ପରିଶ୍ରମକୁ କରିଚି ବିକ୍ରୟଯୋଗ୍ୟ କଞ୍ଚାମାଲ; ସେ ଦୁର୍ଗତିରୁ ସମାଜତନ୍ତ୍ର ଉଦ୍ଧାରକିପାରେ ମଣିଷକୁ, ଉଦ୍ଧାରକରିପାରେ ଶରୀରଶ୍ରମ ଓ ମାନସିକଶ୍ରମ ଭଳି ବୁର୍ଜୋୟାକୃତ କୃତ୍ରିମ ବିଭାଜନରୁ । ଏସିଆଟିକ୍ ସମାଜ ଯା ଉତ୍ପାଦନକରିଚି, ସବୁଯାକ କିନ୍ତୁ ବ୍ୟାବହାରିକ ମୂଲ୍ୟ; ଶ୍ରମବିଭାଜନ ମଧ୍ୟ ବଂଶଗତିରେ ଗତିହୀନ; ଯେପରି ଜାତିବୃତ୍ତି । ଶ୍ରମଲବ୍ଧ ବୈଚିତ୍ର୍ୟ ତେଣୁ ଜୀବନଯାତ୍ରାରେ ଅନୁପସ୍ଥିତ । କ୍ୟାପିଟାଲିସ୍ମ ତିଆରିକରିଚି ବିଶେଷଜ୍ଞ; ଏସିଆଟିକ୍ ଜାତିପ୍ରଥାର ପ୍ରାୟ ସମାନ୍ତରାଳ; ମାତ୍ର ବଂଶଗତିରେ ପୁନରୁତ୍ପାଦିତ ହୁଏନା । ଭାରତରେ ହୁଏ ବୋଲି, ଜାତିବୃତ୍ତିରେ ନିଶ୍ଚଳ ରହିଚି କାରିଗର ବା ଆର୍ଟିଜାନ୍ । କୃଷକ ଯେହେତୁ ଭୂସମ୍ପଦରୁ ବଂଚିତ, ଜମି ବା ଉପକରଣ ତାର ବ୍ୟକ୍ତିଗତ ସଂପତ୍ତି ନୁହେଁ, କାହିଁକିନା, ଏସିଆଟିକ୍ ସମାଜରେ ଜମି ଉପରେ ଅଧିକାର ଥିଲା ରଜାର ଅଥବା ଗ୍ରାମସମାଜର । ସଂପତ୍ତି

ଉପରେ ସାମୂହିକ ଅଧିକାର ଏ ସମାଜକୁ ଦେଇଚି ନିଚ୍ଛିଦ୍ର ସଂହତି, ମାତ୍ର କୃଷକକୁ କରିଚି ନିରୁଦ୍ୟମ । ପ୍ରାଇଭେଟ୍ ପ୍ରପର୍ଟିର ଅନୁପସ୍ଥିତି ତେଣୁ ସାମାଜିକ ନିରୁଦ୍ଧତାର ମୁଖ୍ୟ କାରଣ । ତଥାପି, କୃଷି ଓ ହସ୍ତଶିଳ୍ପର ପାରସ୍ପରିକ ନିର୍ଭରତା ସମାଜକୁ କରିଚି ସ୍ୱାବଲମ୍ବୀ; ସ୍ୱାବଲମ୍ବନ ସମାଜକୁ ଆଗକୁ ନିଏନା । କାହିଁକିନା, କେହିହେଲେ ଅନୁଭବକରେନା ପରିବର୍ତ୍ତନର ପ୍ରୟୋଜନ, ଏବଂ ସମ୍ଭାବ୍ୟ ସବୁଯାକ ଉଦ୍‌ବୃତ୍ତକୁ ଯେହେତୁ ଶୋଷିନିଏ ରାଜସ୍ୱ, କୃଷି ବା କାରିଗରିକୌଶଳର ଉନ୍ନତିବିଧାନ ମଧ ମନକୁ ଆସେନା କାହାରି । ଅନ୍ୟ ଶବ୍ଦରେ, ରାଷ୍ଟ୍ର ଯେହେତୁ ସର୍ବେସର୍ବା, ଏବଂ ସୁଶୀଳସମାଜ ଯେହେତୁ ବଳହୀନ, ବୈଦେଶିକ ଆକ୍ରମଣ (ରଜାବଦଳ କି ଠାକୁରବଦଳ) ପ୍ରତି ଜନସାଧାରଣ ସମ୍ପୂର୍ଣ୍ଣ ଉଦାସୀନ । ଇଉରୋପର ସାମନ୍ତତନ୍ତ୍ର ସହିତ ପ୍ରତିତୁଳନାରେ ମାର୍କ୍ସ ଚିହ୍ନଟକରିଚନ୍ତି ଦୁର୍ବଳତାଗୁଡ଼ାକୁ, ଏବଂ ଏଇ ସିଦ୍ଧାନ୍ତରେ ପହଞ୍ଚିଚନ୍ତି ଯେ ବ୍ୟକ୍ତିଗତ ସଂପତ୍ତି ନଥିବାରୁ ସମାଜରେ 'ଶ୍ରେଣୀ' ତିଆରିହୋଇ ପାରିନାହିଁ; ଜୀବନଧାରଣ ପ୍ରୟୋଜନରୁ ତିଆରିହୋଇଚି କେବଳ 'ଜାତି' । ନିରୁଦ୍ଧ ଏଇ ସମାଜବ୍ୟବସ୍ଥାରେ ଅନ୍ୟରକମ ଶ୍ରମବିଭାଜନ ଯେହେତୁ ସମ୍ଭବପରନୁହେଁ, ଏବଂ ଜାତି ଯେହେତୁ ଶ୍ରେଣୀ ନୁହେଁ, ଆଧିପତ୍ୟର କୋଉହେଲେ ଷ୍ଟ୍ରକ୍ଚର୍ ମଧ ସୃଷ୍ଟିହୋଇ ପାରିନାହିଁ । ମାର୍କ୍ସ ଭାବିଚନ୍ତି, ସଂପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା ଭିଆଣକରି ବ୍ରିଟିଶ୍‌ଆଧିପତ୍ୟ ଭାଙ୍ଗିଦେଇଚି ଏଇ ନିରୁଦ୍ଧତା, ଏବଂ ସେଥିପାଇଁ, ବିରୋଧ ଆସିଚି ପ୍ରଥମେ କୃଷିଜୀବୀଙ୍କ ପାଖରୁ ନୁହେଁ, ସିପାହୀଙ୍କ ପାଖରୁ । ମାନିଯିବା ମାନେ ସାମ୍ରାଜ୍ୟବାଦକୁ ପରୋକ୍ଷ ସମର୍ଥନ । ଋଷିଆର ସମାଜସଂଗଠନ ମଧ ତାଙ୍କୁ ଦିଶିଚି 'ସେମିଏସିଆଟିକ୍' ୧୮୫୩ ବେଳକୁ । କିନ୍ତୁ ବାହାରୁ କୋଉ ଶକ୍ତି ପଶିଆସି ସୁପ୍ତ ସେଇ ସମାଜର ତନ୍ଦ୍ରା ଭାଙ୍ଗିନାହିଁ । ନିରୁଦ୍ଧତା ଭାଙ୍ଗିବା ସକାଶେ ବିଦେଶୀ ହସ୍ତକ୍ଷେପ ତେବେ ଦରକାରହେବ କାହିଁକି ? ଥାକ ଉପରକୁ ଥାକ ସଜାଇ ସରଳରୈଖିକ ନିୟମରେ ମାର୍କ୍ସ ଯେମିତି ସମାଜରୂପାନ୍ତରକୁ ବ୍ୟାଖ୍ୟାକରିଚନ୍ତି, ସେ ବ୍ୟାଖ୍ୟା ସ୍ପଷ୍ଟତଃ ସବୁରକମ ସମାଜ ପ୍ରତି ପ୍ରଯୋଜ୍ୟ ହୋଇପାରେନା । ସିପାହୀ ଯାହାକୁ ସଶସ୍ତ୍ର ଆହ୍ୱାନ ଜଣାଇଚନ୍ତି, ତା ରାଜତନ୍ତ୍ର କି ସାମନ୍ତତନ୍ତ୍ର ନୁହେଁ; ସ୍ପଷ୍ଟତଃ ବିଜାତୀୟ ପ୍ରଭୁତ୍ୱ । ଭାରତୀୟ ସମାଜରେ ପରିବର୍ତ୍ତନହୀନତାର କାରଣ ତେଣୁ ଅନ୍ୟତ୍ର; ଯେପରି ହେଗ୍ଲ ଲେଖିଚନ୍ତି, The whole income belonging to every village is, as already stated, divided into two parts, of which one belongs to the rajah, the other to the cultivators, but proportionate shares are also received by the provost of the place, the judge, the

water-surveyor, the bramhin, who superintends religious worship, the astrologer (who is also a bramhin, and announces the days of good and ill omen), the smith, the carpenter, the potter, the washerman, the barber, the physician, the dancing girls, the musician, the poet. This arrangement is fixed and immutable, and subject to no one's will. All political revolutions, therefore, are matters of indiference to the common Hindoo, for his lot is unchanged. (ଦ୍ର. *The Philosophy of History*, ପୃ.୧୫୪ ।) ଶ୍ରମବିଭାଜନ ତେଣୁ ପାରକ୍ୟ (ଆ୍ୟାଲିଏନେସନ୍)କୁ ଜନ୍ମଦିଏନା; ଦିଏନା, ଯେହେତୁ ବହିଃପ୍ରକୃତି ସହିତ ମଣିଷର ଲେଶମାତ୍ର ବିରୋଧ ନାହିଁ, ଆଉ ରାଜା କି ବ୍ରାହ୍ମଣ ପ୍ରଭୁତ୍ୱ କଲେସୁଦ୍ଧା ଉତ୍ପାଦନର ସାଧନ ଉପରେ ତାଙ୍କ ପ୍ରଭୁତ୍ୱ ଖାଟେନା; ଇକନମି ଉପରେ ତାଙ୍କ କର୍ତ୍ତୃତ୍ୱ ବସ୍ତୁତଃ ଅମଲାତାନ୍ତ୍ରିକ । ରସିଆର କମିଉନିଜ୍ମ ତେଣୁ ଏଇ ଧାରାର ସଂପ୍ରସାରଣ; ଶାସକଶ୍ରେଣୀ ହାତରେ ବ୍ୟକ୍ତିଗତ ସଂପତ୍ତି ନାହିଁ, ମାତ୍ର ଇକନମି ଉପରେ ରହିଚି ଅମଲାତାନ୍ତ୍ରିକ ନିୟନ୍ତ୍ରଣ ।

ବ୍ରିଟିଶ୍ ହସ୍ତକ୍ଷେପ ସୃଷ୍ଟିକରିଚି ବ୍ୟକ୍ତିଗତ ସଂପତ୍ତି, ସ୍ୱତ୍ୱାଧିକାରକୁ ଦେଇଚି ଆଇନ୍‌ର ଅନୁମୋଦନ, କିନ୍ତୁ ଉତ୍ପାଦନର ଶକ୍ତି ଯୋଉ କୃଷକ-ଗାରିଗର-ତନ୍ତୁବାୟ-ସୌଦାଗର, ତାଙ୍କ ହାତରୁ କାଢ଼ିନେଇଚି ଉତ୍ପାଦନର ସାଧନ । ସେଇ ପ୍ରାଇମେରି ପ୍ରଡିଉସର୍ ହାତକୁ ଉତ୍ପାଦନର ସାଧନ ଫେରାଇଦେବା ତେଣୁ ସମାଜତନ୍ତ୍ରର ଅନ୍ୟତମ ଲକ୍ଷ୍ୟ । ନହେଲେ, ବୈଷୟିକ ବିକାଶ ରହିଥିବ ଅସମତଳ, ବୈଷମ୍ୟ ବଢ଼ିବ ସିନା, କମିବନାହିଁ ବିଦ୍ୱେଷ । ବଜାରବ୍ୟବସ୍ଥା ଓ ତଦ୍‌ପ୍ରସୂତ କ୍ରେତାବିକ୍ରେତା ସଂପର୍କ ଅନୁପସ୍ଥିତ ଥିଲେ ସମାଜ ନିଶ୍ଚଳ ହୋଇଯାଏନା; ଉତ୍ପାଦନର ସାଧନ ଉପରେ ସମାଜର ସାମୂହିକ ଅଧିକାର ମଧ୍ୟ ସମାଜକୁ ପଶ୍ଚାଦ୍‌ଗାମୀ କରେନା; କରେ ପରିବର୍ତ୍ତନକାମନା ଅଭାବ । ଏବଂ ପରିବର୍ତ୍ତନକାମନା ଅସ୍ଥିରକରିଥିଲା ବୋଲି, ବୁଦ୍ଧ ଅସ୍ୱୀକାରକରିଚନ୍ତି ଈଶ୍ୱରଙ୍କ ଅସ୍ତିତ୍ୱ । ତେଣୁ ଏକ୍ଷଣି ଯା ଆବଶ୍ୟକ, ତା ପ୍ରଡକ୍ଟିଭ୍ ଫୋର୍ସ୍‌ର ଚୈତନ୍ୟୋଦୟ । ସେଇ ଚେତନା ଅଭାବରେ ସ୍ୱାବଲମ୍ବୀ ଗ୍ରାମସମାଜ କି କେନ୍ଦ୍ରୀଭୂତ ରାଷ୍ଟ୍ରଶକ୍ତି ପ୍ରତିଭାତହେବେ ତେଲ ଆଉ ପାଣି; କୋଉହେଲେ ମେଧାପ୍ରଖର ତତ୍ତ୍ୱ ମିଳାଇପାରିବନାହିଁ ଉଭୟକୁ । ଗ୍ରାମସମାଜ (ନାଗରିକସମାଜ) ସ୍ୱୟଂଶାସିତ ହେବା ମାନେ, ରାଷ୍ଟ୍ରର କର୍ତ୍ତୃତ୍ୱ ହେବ ଶିଥିଳ । ସେ ପରିସ୍ଥିତିରେ ଯେକୌଣସି କେନ୍ଦ୍ରୀକରଣ ଆତ୍ମଖଣ୍ଡନ ମାତ୍ର । ଭାରତର ନାଗରିକସମାଜ, ଇଉରୋପ ତୁଳନାରେ, ପଛରେ ପଡ଼ିଥିଲା, କାହିଁକିନା, ପ୍ରଯୁକ୍ତିର ଉତ୍କର୍ଷ ରହିଯାଇଥିଲା ଅନାବିଷ୍କୃତ, ଏବଂ ଆତ୍ମସନ୍ତୁଷ୍ଟ

ଲୋକଗୁଡ଼ାକ ଉତ୍ପାଦନବୃଦ୍ଧି କି ଅଧିକତର ସୁଖସମ୍ଭୋଗ ପ୍ରତି ରହିଯାଇଥିଲେ ବିମୁଖ । ଏବଂ ସେଥିପାଇଁ, ରଜା ଆଉ ପ୍ରଜା ମଝିରେ ଗଢ଼ିଉଠିନାହିଁ କୋଉହେଲେ ମଧ୍ୟମବର୍ଗ । ଲୁହା (ପ୍ରଯୁକ୍ତି) ଅଭାବରେ କୃଷିକର୍ମ ରହିଚି ପେଟପୋଷିବାର ଏକମାତ୍ର ଅବଲମ୍ବନ । ଯଥେଷ୍ଟ ଉଦ୍‌ବୃତ୍ତ ଅଭାବରେ ଗଢ଼ିଉଠିନାହିଁ ନଗର କି ସହର; ବ୍ୟକ୍ତିଗତ ସଂପତ୍ତି ନଥିବାରୁ ତିଆରି ହୋଇପାରିନାହିଁ ବୁର୍ଜୋୟା ସାମାଜିକ ସଂପର୍କ କି ଅନୁଷ୍ଠାନ । କିନ୍ତୁ ଏଇ ଅଭାବଗୁଡ଼ାକ ମଣିଷକୁ ଭୀରୁ କି ମୂର୍ଖ କରେ ବୋଲି ଇତିହାସ କହେନା । ଅସଲକଥା ତେଣୁ, ଇଉରୋପରେ ଫରାସୀ ବିପ୍ଳବକୁ ଲକ୍ଷ୍ୟକରି ମାର୍କ୍ସ ଭାବି ବ୍ୟାକୁଳହୋଇଚନ୍ତି, ପୃଥିବୀର ଜନବହୁଳ ଜାଗା (ଏସିଆ)ରେ ଅନୁରୂପ ଘଟଣା ଘଟୁନାହିଁ କାହିଁକି ? ବସ୍ତୁବାଦୀ ବ୍ୟାଖ୍ୟା ନିର୍ମାଣକରିବାକୁ ଆଶ୍ରୟକରିଚନ୍ତି ଅପରୀକ୍ଷିତ ଇତିହାସକୁ; ଏସିଆଟିକ୍ ସମାଜ ତେଣୁ ତାଙ୍କ ଚିନ୍ତାରେ ରହିଯାଇଚି, ଆଲ୍‌ଥୁସର୍ ଯାହାକୁ କହନ୍ତି 'ପ୍ରବ୍ଲେମ୍ୟାଟିକ୍' । ପ୍ରାକ୍‌ଔପନିବେଶିକ ଭାରତର ଇତିହାସକୁ 'ନନ୍-ହିଷ୍ଟ୍ରି' କହିବା ଅର୍ଥ, ଜୀବନ ସେଠି ନିରୁପଦ୍ରବ । ମାତ୍ର ଭାରତ ଉପରେ ଯେତେ ଆକ୍ରମଣ ଆଗରୁ ହୋଇଚି ବହିରାଗତ ଶକ୍ତି ଦ୍ୱାରା, ଇଂରେଜ୍‌ର ଉପନିବେଶ ପ୍ରତିତୁଳନାରେ ଏକେବାରେ ଅଲଗା; କାହିଁକିନା, ସମାଜଜୀବନ ଭିତରକୁ ଅକସ୍ମାତ୍ ପଶିଆସିଚି ନିଷ୍ପେଷଣ, ଯୋଉ ନିଷ୍ପେଷଣ ନଷ୍ଟକରିଦେଇଚି ପୁରାତନ ମର୍ମ ଓ ମୂଲ୍ୟବୋଧ । ରାଜ୍ୟଜୟ କିମ୍ବା ମନ୍ଦିର / ବିହାର ଲୁଣ୍ଠନକରିବାକୁ ଲୋକ ଆସିଚନ୍ତି ତାଙ୍କ ଆଗରୁ; ମାତ୍ର ସେଇ ବହିରାଗତ, ପ୍ରାୟ ସମସ୍ତେ, ଭାରତକୁ କରିଚନ୍ତି ଭିଟାମାଟି । ବିଦେଶୀଙ୍କ ଭିତରେ ଇଂରେଜ୍ ହିଁ ପ୍ରଥମ ଭାରତକୁ ଦୋହନକରି ଧନରତ୍ନ ବୋହିନେବାକୁ ଆସିଚି, ଏବଂ କ୍ରମାଗତ ପ୍ରାୟ ତିନିଶ'ବର୍ଷ ପରସ୍ୱହରଣ କାମରେ ଅକ୍ଳାନ୍ତ ରହିଚି ଏଇ ବାହାନାରେ ଯେ ବର୍ବରଙ୍କୁ ସଭ୍ୟଜଗତର ଅନ୍ତର୍ଭୁକ୍ତକରିବା ତାର ସଦାବର୍ତ୍ତ । ଏ ଲୋଲୁପତା, କ୍ୟାପିଟାଲିସ୍ମର ଅଧିକରୁ ଅଧିକତର ମୁନାଫାନିଶ୍ୱାସନ ପ୍ରବଣତାର ତୁଲ୍ୟମୂଲ୍ୟ । ପ୍ରାକ୍‌ପୁଞ୍ଜିବାଦୀ ସମାଜ ତେଣୁ ପୁଞ୍ଜିବାଦର 'ଅପର'; ଉଭୟର ପାରସ୍ପର୍ଯ୍ୟ ସ୍ପଷ୍ଟକରିଦିଏ ଧନତନ୍ତ୍ରର ଅନ୍ତର୍ଗୂଢ଼ ସ୍ୱଭାବ, ଅର୍ଥାତ୍ ଯାହାକୁ ଛୁଇଁବ, ଆପାଦମସ୍ତକ ବଦଳାଇ ନଦେଇ ଛାଡ଼ିବନାହିଁ; 'ଅପର'କୁ ଆତ୍ମସାତ୍‌କରିବ ତାର ସାଂଗଠନିକ ବାଧ୍ୟବାଧକତା । ଏଣେ, ଏଇ ବୈନାଶିକ ଗତିକୁ କି ଉପାଦାନ ପ୍ରତିହତକରେ, ତା ମଧ୍ୟ ଧରାପଡ଼ିଚି ପ୍ରାକ୍‌ଇତିହାସ ପର୍ବର ଭାରତ ସହିତ ତୁଳନାରୁ; ସେ ଉପାଦାନ *ସ୍ୱାବଲମ୍ବନ* । ସେଭଳି ସ୍ୱୟମ୍ଭରସମାଜ ପରିବର୍ତ୍ତନ ସକାଶେ ପରିବର୍ତ୍ତନ କାମନାକରେନା । କ୍ୟାପିଟାଲିସ୍ମର ଉନ୍ମେଷ ସେଠି, ସ୍ୱାଭାବିକଭାବେ, ଅପ୍ରତ୍ୟାଶିତ । ଅର୍ଥାତ୍, ବଳପ୍ରୟୋଗ ବିନା ଅସମ୍ଭବ । ଇଉରୋପର ପ୍ରାଚୀନ ଇତିହାସ ଯେହେତୁ

ରଞ୍ଜିତକରିଚି ମାର୍କ୍ସଙ୍କ ଚିନ୍ତାବିନ୍ୟାସ, ସ୍ୱୟମ୍ଭର ସମାଜ ଦିଶିଚି ଅଚଞ୍ଚଳ; ମାତ୍ର ସମାଜର ଅସଲ ସଂଗଠନସୂତ୍ର ତାଙ୍କ ଦୃଷ୍ଟି ଏଡ଼ାଇଯାଇନାହିଁ; ଏବଂ ସେଇ ସଂଗଠନସୂତ୍ର କେବଳ ଶ୍ରମବିଭାଜନର ସ୍ୱକୀୟତା, ଯେପରି, ଯଜମାନି ସିଷ୍ଟେମ୍ । ପଣ୍ୟଉତ୍ପାଦନ ସକାଶେ ସେ ସିଷ୍ଟେମ୍ ଏକେବାରେ ଅକର୍ମଣ୍ୟ । ପଣ୍ୟଉତ୍ପାଦନକୁ ଚଞ୍ଚଳକରେ ଭିନ୍ନ ପ୍ରକାର ଶ୍ରମବିଭାଜନ । ଅଭୂତପୁର୍ବ ସେଇ ଶ୍ରମବିଭାଜନ ଯୋଉ ଉଦ୍‌ବୃତ୍ତ ଉତ୍ପାଦନକରିବ, ଭାରତର ଜନସାଧାରଣଙ୍କ ଦାରିଦ୍ର୍ୟମୋଚନ କାମରେ ତା ତିଳମାତ୍ର ଲାଗିବ କି ? ମାର୍କ୍ସଙ୍କ ଉତ୍ତର ଅକପଟ: The Indains will not reap the fruits of the new elements of society scattered among them by the British bourgeoisie, till in Great Britain itself the new ruling classes shall have been supplanted by the industrial proletariat, or till Hindoos themselves shall have grown strong enough to throw off the English yoke altogether (August 8, 1853) ।

କଣ ଏକଥାର ତାତ୍ପର୍ଯ୍ୟ ? ଭାରତ ସ୍ୱାଧୀନହେବା ଶହେବର୍ଷ ଆଗରୁ ଓ ସିପାହୀବିଦ୍ରୋହର ଚାରିବର୍ଷ ଆଗରୁ ଲେଖିଚନ୍ତି, ବ୍ରିଟିଶ୍ ଶିଳ୍ପଶ୍ରମିକ ନିଜ ଶାସକଶ୍ରେଣୀକୁ ପରାଭୂତକରିବା ଆଗରୁ ଭାରତବାସୀ ହଟାଇଦେବେ ବ୍ରିଟିଶ୍ ବୁର୍ଜୋୟାକୁ ! ସ୍ପଷ୍ଟତଃ, ଜାତୀୟ ମୁକ୍ତିଆନ୍ଦୋଳନ ସହିତ ସମ୍ବନ୍ଧନାହିଁ । ସମ୍ବନ୍ଧ ତେଣୁ ପୁଞ୍ଜିର ଅଗ୍ରଗତି ସହିତ, ଯାର ଲବକୁଶ ବୁର୍ଜୋୟା ଓ ପ୍ରଲେତାରିଏତ୍ ବ୍ରିଟେନ୍‌ରେ; ଏକ୍ଷଣି କିନ୍ତୁ ଭାରତୀୟ ଉପନିବେଶ ରଙ୍ଗମଞ୍ଚରେ ଅବତୀର୍ଣ୍ଣ, କାହିଁକିନା, କ୍ୟାପିଟାଲିସ୍ମ ହିଁ ସୃଷ୍ଟିକରିଚି ଏ ପ୍ରଲେତାରିଏତ୍‌କୁ, ସ୍ୱୟମ୍ଭର ସମାଜରେ ଯିଏ ଥିଲେ ଅଗଣିତ ପ୍ରାଇମେରି ପ୍ରଡିଉସର୍ । ମୁଷ୍ଟିମେୟ ପୁଞ୍ଜିପତିଙ୍କ ହାତରେ ତାଙ୍କ ଜୀବିକାକୁ କେନ୍ଦ୍ରୀଭୂତକରି ବିଦ୍ରୋହ ଲାଗି କାରଣ ଯୋଗାଇଦେଇଚି କ୍ୟାପିଟାଲିସ୍ମ, କାହିଁକିନା, ପରସ୍ପର ସହିତ ପ୍ରତିଯୋଗିତାରେ ନିଜେ ଆଗକୁ ଟପିଯିବାପାଇଁ ପ୍ରଯୁକ୍ତି ଦ୍ୱାରା ପୁଞ୍ଜିପତି କରୁଚି ସେମାନଙ୍କୁ କର୍ମଚ୍ୟୁତ । ନୂତନ ପ୍ରଯୁକ୍ତି ଓ ଅଧିକତର ଉତ୍ପାଦନ କିନ୍ତୁ ଦରକାରକରୁଚି ଦିନକୁ ଦିନ ଆହୁରି ବେଶି ମଜ୍‌ଦୁର୍ । ଅଧିକତର ଉତ୍ପାଦନରୁ ଶ୍ରମିକ ଯେହେତୁ ସାମାନ୍ୟତମ ଅଂଶ ବି ପାଉନାହିଁ, ବଳକା ପୁଞ୍ଜି ହେଉଚି କ୍ରମାଗତ କେନ୍ଦ୍ରୀଭୂତ । ଅବଧାରିତଭାବେ ଏ ଦୁର୍ଗତି ଶ୍ରମଜୀବୀକୁ ଟାଣିନେବ ସମାଜତାନ୍ତ୍ରିକ ପରିବର୍ତ୍ତନ ଆଡ଼କୁ । ଏଇ ଯୁକ୍ତିପରମ୍ପରାରେ ଜାତୀୟ ମୁକ୍ତିଆନ୍ଦୋଳନ ସ୍ଥାନ ପାଇପାରେନା ବିଶେଷତଃ ଯେହେତୁ, ସ୍ୱୟମ୍ଭର ସମାଜବ୍ୟବସ୍ଥାରେ ଅନିବାର୍ଯ୍ୟଭାବେ ଉତ୍ପାଦନ ସମାଜତାନ୍ତ୍ରିକ । ଔପନିବେଶିକ ସମାଜର ଉତ୍ପାଦନଧରଣ ଅଦ୍ୱିତୀୟ ବୁର୍ଜୋୟା । ଦ୍ୱିତୀୟ କୋଉ ଉତ୍ପାଦନ ଧରଣ

ପକ୍ଷ୍ଣହୋଇନାହିଁ ଯେ ବର୍ଣ୍ଣତକୁ କରିବ ସଂଗ୍ରାମରେ ଏକଛତ୍ର । ଉଭୟ ପ୍ରକାର ସଂଗ୍ରାମକୁ ବୁର୍ଜୋୟା ଉତ୍ପାଦନଧରଣ ବିରୋଧରେ, ପୁଣି ବିଜାତୀୟ ପ୍ରଭୁତ୍ୱ ବିରୋଧରେ, ଲେନିନ୍ ବାନ୍ଧିଚନ୍ତି ଏକସୂତ୍ରରେ, ଏଇ ଯୁକ୍ତିରେ ଯେ ଉଭୟ ମଧ୍ୟସ୍ଥ ଯୋଗସୂତ୍ର ଇମ୍ପିରିଆଲିଜ୍ମ । ଅର୍ଥାତ୍, ନିଜ ଦେଶର ଶ୍ରମଜୀବୀଙ୍କୁ ଶୋଷଣକରିବା ସାଙ୍ଗକୁ ସମଗ୍ର ପୃଥିବୀକୁ କ୍ୟାପିଟାଲ୍‌ର ସଂଘଟନ । ସେ କ୍ୟାପିଟାଲିଷ୍ଟ୍ ବିଭିନ୍ନ ଦେଶର ଲୋକ; ଖାଲି ଇଂରେଜ୍ ନୁହେଁ । ଏବଂ ସେଥିପାଇଁ, ତାଙ୍କ ଭିତରେ ଲାଗିରହିଚି ତଣ୍ଟିକଟା ପ୍ରତିଯୋଗିତା ଏବଂ ସେଇ ପ୍ରତିଦ୍ୱନ୍ଦ୍ୱିତାରୁ ଉପୁଜିଚି ବିଶ୍ୱଯୁଦ୍ଧ । ହଣାକଟାରେ ଲିପ୍ତରହି ଯୁଦ୍ଧରେ ଯିଏ ପରସ୍ପରକୁ ହତ୍ୟାକରିଚନ୍ତି, ସ୍ୱଦେଶର ଶ୍ରମଜୀବୀ ଯେତେ, ଉପନିବେଶରୁ ଭଡ଼ାକରି ଆଣିଥିବା ଖଟିଖିଆଲୋକ ତତୋଧିକ; ମାତ୍ର ଏତେଗୁଡ଼ାକ ଗରିବଲୋକଙ୍କ ଅପମୃତ୍ୟୁର ଏକମାତ୍ର ଲକ୍ଷ୍ୟ, ଶକ୍ତିଧର କୋଉ ଦେଶର ଧନପତି ଦଖଲକରିବେ ସର୍ବାଧିକ ବାଣିଜ୍ୟିକ ଇଲାକା, ଲେନିନ୍‌ଙ୍କ ପରିଭାଷାରେ 'ଇକନମିକ୍ ଟେରିଟୋରି' । ଅସହାୟ ଶ୍ରମଜୀବୀଙ୍କୁ ଆତ୍ମହନନରୁ ରକ୍ଷାକରିବାକୁ (ନିବୃତ୍ତକରିବାକୁ) ଲେନିନ୍ ଭାବିଚନ୍ତି, ବୁର୍ଜୋୟାବିରୋଧୀ ସଂଗ୍ରାମ ସହିତ ଜାତୀୟ ମୁକ୍ତିଆନ୍ଦୋଳନକୁ ଯୋଡ଼ିଦେବା ଦରକାର; ତା ହେଲେଯାଇ, ସାମ୍ରାଜ୍ୟବାଦ ବେଷ୍ଟନୀରେ ସବୁଠୁଁ ଦୁର୍ବଳ ଯୋଉ ଶିକୁଳି, ତା ଉପରେ ଆଗେ ଆଘାତକରିହେବ; ଏବଂ ଏଇ ବାଟରେ ପ୍ରତିରକ୍ଷା ଛିଦ୍ରମୟ ହୋଇଗଲେ, ସଂଗ୍ରାମର ପ୍ରବାହ ପ୍ରସାରିତହୋଇପାରିବ ବହିର୍ଜଗତକୁ, ଆଉ ମାନବପ୍ରଜାତିକୁ ବାଟକଢ଼ାଇ ନେଇଯିବ ସୋପାନ ଉତାରୁ ସୋପାନ କ୍ୟାପିଟାଲିଜ୍ମର ଶିଖର, ସାମ୍ରାଜ୍ୟବାଦରୁ ବୈଷମ୍ୟହୀନ ଯୁଦ୍ଧବିମୁଖ ସମାଜବ୍ୟବସ୍ଥା ଦିଗକୁ । ବୁର୍ଜୋୟାବିରୋଧ ଆଉ ବିଜାତୀୟ ପ୍ରଭୁତ୍ୱରୁ ମୁକ୍ତି, ପରସ୍ପରକୁ ପରିପୂରକ କରାନଗଲେ, ରାଜନୀତିକ ସ୍ୱାଧୀନତା ଉପନିବେଶ ହାସଲକଲେ ସୁଦ୍ଧା, ଧନତାନ୍ତ୍ରିକ ଶୋଷଣରୁ ମୁକୁଳି ପାରିବନାହିଁ । କ୍ୟାପିଟାଲିଜ୍ମ ସଂସର୍ଗରେ ଆସି ଭାରତର ପାରମ୍ପରିକ ଉତ୍ପାଦନଧରଣ ଉଦ୍‌ବୃତ୍ତ-ଆହରଣ ଦିଗକୁ ଗତିକରୁଚି; କିନ୍ତୁ ଉପନିବେଶ ଉଠିଗଲେ ଦେଶର ବିକାଶନୀତି ବ୍ୟକ୍ତିଗତ ସଂପତ୍ତିକୁ ବିରୋଧ କରିବ ସ୍ୱାଧୀନତାସଂଗ୍ରାମ ଯଦି ଯୁକ୍ତହୁଏ ପ୍ରଲେତାରିତ୍‌ର ଶ୍ରେଣୀ ସଂଗ୍ରାମ ସାଙ୍ଗରେ । ଅନ୍ୟଥା, ଉପନିବେଶରୁ ଉଦ୍‌ବୃତ୍ତ ବୋହିନେଇ ସାମ୍ରାଜ୍ୟବାଦୀ ଶକ୍ତି ମେଟ୍ରପଲିଟାନ୍ ପ୍ରଲେତାରିଏତ୍‌କୁ ବି କରିପକାଇବ ଦନ୍ତହୀନ । ଇଂରେଜ୍‌ଶାସନରୁ ଅବ୍ୟାହତି ମିଳିଲେ ବି ପୁଞ୍ଜିର ଶାସନରୁ ଅବ୍ୟାହତି ମିଳିବନାହିଁ । ପ୍ରାକ୍ତନ ଉପନିବେଶର ସଦ୍ୟମୁକ୍ତ ବୁର୍ଜୋୟା ମଧ୍ୟ ସାମ୍ରାଜ୍ୟବାଦର ଅଗ୍ରଗତିକୁ ଓଗାଳି ପାରିବନାହିଁ ।

ଅଭିନବ ଏଇ ବିବେଚନା; କାହିଁକିନା, ଯୋଉ କ୍ୟାପିଟାଲିଜ୍ମକୁ ବିଶ୍ଳେଷଣକରିଚନ୍ତି ମାର୍କ୍ସ, ତା ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍‌ର ଅନୁଶାସନ ସାକ୍ଷାତ୍ ଯା

ବିବେଚ୍ୟ, ତା ପ୍ରାକ୍‌ପୁଞ୍ଜିବାଦୀ ସମାଜ ଭିତରକୁ ଉଦ୍‌ବୃତ୍ତଉତ୍ପାଦନର ଅନୁପ୍ରବେଶ । ଅନୁପ୍ରବେଶ ଖାଲି ନୁହେଁ; ମେଟ୍ରପଲିଟାନ୍ କେନ୍ଦ୍ରକୁ ଉତ୍ପନ୍ନ ଉଦ୍‌ବୃତ୍ତର ବଳପୂର୍ବକ ରପ୍ତାନି । ସେଇ ଉଦ୍‌ବୃତ୍ତର ବ୍ୟାବହାରିକ ପରିଚୟ 'ଫିନାନ୍ସ କ୍ୟାପିଟାଲ୍' । ଏ ଶୋଷଣର ପ୍ରତିଷେଧକ, ଅନ୍ତତଃ ବୁର୍ଜୋୟା ସ୍ତରରେ, ହୋଇପାରେ ଜାତୀୟତାବାଦ । ଏ ବ୍ୟାଖ୍ୟାରୁ ଉଠିଆସୁଚି ଦୁଇଟି ମୌଳିକ ସଂଶୟ, (୧) ମାର୍କ୍ସ କହିଚନ୍ତି, ପ୍ରାକ୍ ଧନତାନ୍ତ୍ରିକ ପରିବେଶ, ବିଶେଷତଃ ହୁଏ ଯଦି ପରାଭୂତ ଏକ ଉପନିବେଶ, କ୍ୟାପିଟାଲିଜ୍ମର ନିହିତ ଲଜିକ୍‌କୁ ଅକର୍ମଣ୍ୟ କରିପାରେନା; (୨) ତେବେ କଣ ପରାଭୂତ ପରିବେଶହିଁ ପୁଞ୍ଜିବାଦର ବିକାଶପାଇଁ ଅପରିହାର୍ଯ୍ୟ ପୂର୍ବସର୍ତ୍ତ ? ସଂଶୟ ମୌଳିକ, କାହିଁକିନା, ଉଦ୍‌ବୃତ୍ତମୂଲ୍ୟକୁ ପୁଞ୍ଜିରେ ରୂପାନ୍ତରିତକରିବାକୁ ଦରକାର ବିନିଯୋଗ ବା ଇନ୍‌ଭେଷ୍ଟମେଣ୍ଟ; ନହେଲେ, ଉଦ୍‌ବୃତ୍ତମୂଲ୍ୟ ଆହୁରି ଅଧିକ ଉଦ୍‌ବୃତ୍ତମୂଲ୍ୟ ପ୍ରସବକରି ପାରିବନାହିଁ । ଅଥଚ ସରପ୍ଲସ୍-ଭ୍ୟାଲିଉ ଏକ ବିମୂର୍ତ୍ତ (ଆ୍ୟାବ୍‌ଷ୍ଟ୍ରାକ୍ଟ) ଧାରଣା; ପୁଞ୍ଜି ଆକାରରେ କେବଳ ଇନ୍ଦ୍ରିୟାଗ୍ରାହ୍ୟ; ଯେପରି, କଞ୍ଚାମାଲ କି ମେସିନ୍ । ଅର୍ଥାତ୍ ଅପରିବର୍ତ୍ତନୀୟ ଧ୍ରୁବକ । ଆଉ, ବେତନ / ମଜୁରି ପଇଠକରିବା ସକାଶେ ନଗଦ ଟଙ୍କା । ସେ ଟଙ୍କା, ଯେହେତୁ କମ୍‌ବେଶି ହୋଇପାରେ, ଭ୍ୟାରିଏବ୍‌ଲ୍ କ୍ୟାପିଟାଲ୍ । ଯଥେଷ୍ଟ କଞ୍ଚାମାଲ କି ଶସ୍ତା ଶ୍ରମ ନିଜ ଦେଶରେ ଦୁର୍ଲଭହେଲେ, ପ୍ରାକ୍‌ଧନତାନ୍ତ୍ରିକ ପରିବେଶକୁ ବଳପୂର୍ବକ ପଶିଆସିବ ଧନତନ୍ତ୍ର; ଏବଂ ସେଇ ସୂତ୍ରରେ, ପ୍ରାକ୍‌ଧନତନ୍ତ୍ରର ସ୍ୱାଭାବିକ ଅର୍ଥନୀତିକୁ ଲଣ୍ଡଭଣ୍ଡ ନକରି ତାର ଘରାନାହିଁ । କିନ୍ତୁ ଲଣ୍ଡଭଣ୍ଡ କରିଦେଇ ଯୋଉ ଜିନିଷ କି ଟଙ୍କା ଆହରଣକରିବ ଉଦ୍‌ବୃତ୍ତମୂଲ୍ୟ ଆକାରରେ, ତାକୁ ଯଦି ଉପନିବେଶରେ ବିନିଯୋଗ ନକରେ (ବିଦ୍ୱେଷ କାରଣରୁ ନୁହେଁ, ଚାହିଦା ଅଭାବରେ) ପ୍ରାକ୍‌ଧନତାନ୍ତ୍ରିକ ବେଷ୍ଟନୀ ସହିତ ଧନତାନ୍ତ୍ରିକ ବେଷ୍ଟନୀର ଯୋଗାଯୋଗ (ବିନିମୟ) ହେବ ଯତ୍‌ସାମାନ୍ୟ; ଅର୍ଥାତ୍ 'କ୍ୟାପିଟାଲ୍ ଗୁଡ୍‌ସ୍' ସହିତ 'କନ୍‌ସିଉମର୍ ଗୁଡ୍‌ସ୍' ର ସଦ୍‌ଭାବ ସାଧିତ ହୋଇପାରିବନାହିଁ । ମାର୍କ୍ସ ଭାବିଚନ୍ତି, ପ୍ରାଥମିକ ମୂଳଧନ ହସ୍ତଗତକରିବା ଉତାରୁ, କ୍ୟାପିଟାଲିଜ୍ମ ହୋଇଯିବ ସ୍ୱୟଂନିର୍ଭର ସିଷ୍ଟେମ୍; ପ୍ରାକ୍‌ଧନତାନ୍ତ୍ରିକ ପରିମଣ୍ଡଳ ଖୋଜିବା ଆଉ ଦରକାର ପଡ଼ିବନାହିଁ । ପ୍ରାଇମେରି ଆକ୍ୟୁମ୍ୟୁଲେସନ୍ କିନ୍ତୁ ସ୍ୱତନ୍ତ୍ର କୋଉ ପ୍ରକ୍ରିୟା ନୁହେଁ; ଇତିହାସ କହୁଚି ଉତ୍ତରୋତ୍ତର ଉଦ୍‌ବୃତ୍ତଆହରଣ ମୂଳଧନର ସହଜାତ ସ୍ୱଭାବ । ଧନତନ୍ତ୍ର ତେଣୁ ଆଖିବୁଲାଇବ ଚତୁର୍ଦ୍ଦିଗକୁ; ବିଶେଷତଃ ସେଇ ଦିଗକୁ ଉତ୍ପାଦନର ସାଧନ ଯୋଉଠି ଶସ୍ତା ଓ ସୁଲଭ । ଇତିହାସ ପ୍ରବାହରେ ପ୍ରାକ୍‌ଧନତନ୍ତ୍ର ଓ ଖାସ୍ ଧନତନ୍ତ୍ର ମଧ୍ୟରେ ବିନିମୟ ତେଣୁ ଧାରାବାହିକ ଓ ଅବିଚ୍ଛିନ୍ନ । ମାର୍କ୍ସୀୟ ପରିଭାଷାରେ, ପ୍ରି-ହିଷ୍ଟ୍ରି ଆଉ ହିଷ୍ଟ୍ରି ମଧ୍ୟରେ

ନିରନ୍ତର ଆଦାନପ୍ରଦାନ । ପ୍ରଥମ ସଂଶୟ ତେଣୁ ଅମୂଳକ, କାହିଁକିନା, ସଂଶୋଧନ ଅବଶ୍ୟମ୍ଭାବୀ । ଦ୍ୱିତୀୟ ସଂଶୟ ଅବଶ୍ୟ ଥିୟରିଟିକାଲ୍, କାହିଁକିନା, ଆଗକୁ ଚାଲିବାକୁ ଧନତନ୍ତ୍ର ଯଦି ସବୁବେଳେ ଖୋଜିବ ପରାଭୂତ ଭୌଗୋଳିକ ପରିସର, ବିନା ସାମ୍ରାଜ୍ୟବାଦରେ ସେ ପରିସର ମିଳିବନାହିଁ; ପୁଣି, ସବୁଯାକ ପ୍ରାକ୍-ଧନତାନ୍ତ୍ରିକ ସମାଜକୁ କ୍ୟାପିଟାଲିସ୍ମ ଯଦି ଗିଳିପକାଏ କାଳକ୍ରମେ, ଧନତନ୍ତ୍ର ଓ ତାର ରକ୍ଷାକବଚ ସାମ୍ରାଜ୍ୟବାଦ କଣ ଧୂଆଁହୋଇ ଉଡ଼ିଯିବ ଆକାଶକୁ ? ସାମ୍ରାଜ୍ୟବାଦକୁ ଧନତନ୍ତ୍ରର ଶିଖର ଭାବିଚନ୍ତି ସିନା, ଧନତନ୍ତ୍ର ପାଇଁ ସାମ୍ରାଜ୍ୟବାଦର ଆବଶ୍ୟକତା ତତ୍ତ୍ୱସ୍ତରରେ ବିଚାର କରିନାହାନ୍ତି ଲେନିନ୍ । ବିନା ସାମ୍ରାଜ୍ୟବାଦରେ ମୁନାଫାସଞ୍ଚୟ ହୁଏତ ଅସାଧନୁହେଁ ଧନତନ୍ତ୍ର ପକ୍ଷରେ; ମାତ୍ର ଇତିହାସରୁ ଦିଶୁଚି, ଧନତନ୍ତ୍ରକୁ ପରିବେଷ୍ଟିତ କରିରଖିଚି ପ୍ରାକ୍‌ଧନତାନ୍ତ୍ରିକ ଯୋଉ ବିପୁଳ ଭୂଭାଗ, ଆପଣା ମତଲବ୍ ଚରିତାର୍ଥକରିବାକୁ ସେ ଭୂଭାଗକୁ ଧନତନ୍ତ୍ର ବ୍ୟବହାରକରିଚି ସାମ୍ରାଜ୍ୟବାଦର ଶରଣାଗତହୋଇ । ଅନ୍ୟ ଶବ୍ଦରେ, ଧନତନ୍ତ୍ରର ପ୍ରତିରୋଧ ଯେହେତୁ ଅର୍ଥନୀତିନିର୍ଭର, ସାମ୍ରାଜ୍ୟବାଦକୁ ମୁକାବିଲାକରିପାରେ ଏକମାତ୍ର ରାଜନୀତି, ଅର୍ଥାତ୍ ସାର୍ବଭୌମ ରାଷ୍ଟ୍ର ।

କ୍ୟାପିଟାଲ୍‌ର ଲଜିକ୍‌କୁ ମାର୍କ୍ସ ଭାବିଥିଲେ ସ୍ୱୟଂସଂପୂର୍ଣ୍ଣ ଏକ ସିଷ୍ଟେମ୍; ମାତ୍ର ଉପର୍ଯ୍ୟୁକ୍ତ ବିଚାରରେ, (ସାମ୍ରାଜ୍ୟବାଦର ଶରଣ ଲୋଡ଼ିଚି ଯେହେତୁ ସଦାସର୍ବଦା) ଧନତନ୍ତ୍ର ଏକ ଅସଂପୂର୍ଣ୍ଣ ଓ ଅପରିଣତ ସିଷ୍ଟେମ୍ । କ୍ୟାପିଟାଲ୍‌ର ଭ୍ରମଣବୃତ୍ତ ମାର୍କ୍ସ ଦେଖାଇଚନ୍ତି: କମୋଡିଟି-ମନି-କମୋଡିଟି; ମାତ୍ର ପଣ୍ୟ, ଟଙ୍କାରେ ପରିଣତହେବା ଉତାରୁ, ଟଙ୍କାକୁ ଫେର୍ ପଣ୍ୟରେ ପରିଣତ ନକରି (ଯଦି ଚାହିଦା ନଥାଏ) ଗଚ୍ଛିତକରି ରଖିପାରେ ଭବିଷ୍ୟତ୍‌ଲାଭ ପ୍ରତ୍ୟାଶାରେ, ଯେମିତି ସ୍ତ୍ରୀଲୋକ ସୁନାକୁ ରଖନ୍ତି ଗହଣା ଆକାରରେ । ଟଙ୍କା ତେଣୁ ଖାଲି ବିନିମୟର ମାଧମ ନୁହେଁ, ତାର ମଧ ରହିଚି ଷ୍ଟୋର୍-ଭ୍ୟାଲିଉ । ବିନା ଷ୍ଟୋର୍‌ଭ୍ୟାଲିଉରେ ମନି ହୋଇପାରେନା ବିନିମୟର ମାଧମ । ତେବେ ସେ ଷ୍ଟୋର୍-ଭ୍ୟାଲିଉ ଅର୍ଜନ କରିପାରିବନାହିଁ ପୁଞ୍ଜି (ଟଙ୍କା) ପ୍ରତିତୁଳନାରେ ପଣ୍ୟଜଗତ୍ ହୁଏ ଯଦି ଅପ୍ରତୁଳ । ଅର୍ଥାତ୍, ଷ୍ଟୋର୍-ଭ୍ୟାଲିଉ ସବୁବେଳେ ଆପେକ୍ଷିକ; କିଣିବାକୁ ଯଦି ଜିନିଷ ନମିଳେ, ଟଙ୍କାଗଦା ଉପରେ ଶୋଇରହିଲେ ବି ଲୋକ ଉପାସରେ ମରିବେ । ସେଥିପାଇଁ ପଣ୍ୟଜଗତର ସ୍ଥିରତା, ଅନ୍ତତଃ କିଛି ପରିମାଣରେ, ଅବଶ୍ୟମ୍ଭାବୀ । ଖାଲି ନିହିତ ଗତିବେଗ ଦ୍ୱାରା କ୍ୟାପିଟାଲ୍ ଯଦି ସ୍ୱତଃପ୍ରଣୋଦିତଭାବେ ଚାଳିତହୁଏ, ବଜାରବ୍ୟବସ୍ଥା ଷ୍ଟୋର୍-ଭ୍ୟାଲିଉର ଅଭିପ୍ରେତ ଆପେକ୍ଷିକତା ହାସଲକରି ପାରିବନାହିଁ । ସେହିପରି, ଉଦ୍‌ବୃତ୍ତମୂଲ୍ୟ ଆହରଣର ଲୟ ଯଦି ଅତିରିକ୍ତ ଦ୍ରୁତ ହୁଏ, କଞ୍ଚାମାଲର ପରିମାଣ କ୍ରମଶଃ କମିବାକୁ ଲାଗିବ, ଦରଦାମ

ହୁ-ହୁ କରି ବଢ଼ିଯିବ, ଆଉ ଘାଟତି ପୂରଣକରିବାକୁ ଅନ୍ୟତ୍ର ଚାଲିଯିବାକୁ ବାଧ୍ୟହେବ କ୍ୟାପିଟାଲ୍ । ନହେଲେ, ଯୋଉ ସାଧନ ମହରଗ ହୋଇଚି, ତାର ପରିମାଣ ବଢ଼ାଇଦେବାକୁ ଚେଷ୍ଟାକରିବ; ଯେମିତି କାଗଜକଳ ପାଇଁ ବାଉଁଶ । ବାଉଁଶ କିନ୍ତୁ ଗୋଟିଏ ପ୍ରାକୃତିକ ଉପାଦାନ, ଉତ୍ପାଦନକରିବା ସମୟସାପେକ୍ଷ । ସେଇ ସମୟଭିତରେ ଦର ବଢ଼ିଯାଇପାରେ ମାତ୍ରାତିରିକ୍ତ; ଟଙ୍କା (ପୁଞ୍ଜି)ର ଷ୍ଟୋର୍-ଭ୍ୟାଲିଉ ତେଣୁ ଖସିପଡ଼ିବ ତଳକୁ । ଶ୍ରମିକ ଯଦି ବାଧ୍ୟକରନ୍ତି ମଜୁରିବୃଦ୍ଧି, ମାଲିକ ବି ବାଧ୍ୟହେବ ପଣ୍ୟମୂଲ୍ୟ ବଢ଼ାଇଦେବାକୁ । ତାହେଲେ, ମଜୁରିବୃଦ୍ଧି→ପଣ୍ୟମୂଲ୍ୟବୃଦ୍ଧି→ମଜୁରିବୃଦ୍ଧି, ସର୍ପିଳ ଏଇ ଗତିରେ, 'ମନି' ନିଜେ ଯେହେତୁ ଗୋଟିଏ ପଣ୍ୟ, ତାର ଷ୍ଟୋର୍-ଭ୍ୟାଲିଉ ବି ଖସିବ ତଳକୁ-ତଳକୁ । କେବଳ ମୁଦ୍ରା ଚଳପ୍ରଚଳ ଉପରେ ଆଧାରିତ ଯୋଉ ଅର୍ଥନୀତି, ଏଇ ବାଟରେ ହୁଏ ଅଧୋଗାମୀ । ପରିସ୍ଥିତିକୁ ମୁକାବିଲା କରିହେବ ଦୁଇ ଉପାୟରେ: ତନ୍ତବୁଣା ଲୁଗା ଜାଗାରେ ମିଲ୍‌ତିଆରି ଲୁଗା ଯଦି ଯୋଗାଇଦିଆଯାଏ ବଜାରକୁ, ତୂଳା କି ବୁଣାକାରଙ୍କ ମଜୁରି, କୋଉ ଗୋଟାକର ହେଲେ ଦର ବଢ଼ିବନାହିଁ; (୨) କର୍ମଚ୍ୟୁତ ତନ୍ତୁବାୟ କି ଭୂମିହୀନ କୃଷକ ଯଦି ଆସି ଭିଡ଼କରନ୍ତି କଳକାରଖାନାରେ ରୁଜିରୋଜଗାର ସଂଧାନରେ, ମଜୁରିବୃଦ୍ଧି ଦାବି କରିପାରିବନାହିଁ ସଂରକ୍ଷିତ ଶ୍ରମିକବାହିନୀ । ଅର୍ଥନୀତି ତାହେଲେ ସ୍ଥିରତା ଫେରିପାଇବ ଟଙ୍କା ଚଳପ୍ରଚଳ କ୍ଷେତ୍ରରେ; ମାତ୍ର ଏପରି କରିପାରିବା ସକାଶେ ପରିବେଷ୍ଟିତ ପ୍ରାକ୍‌ଧନତାନ୍ତ୍ରିକ ପରିସରକୁ ପଦାନତକରିବା ଆବଶ୍ୟକ ସର୍ତ୍ତ । ଅର୍ଥାତ୍, ମନିର ଷ୍ଟୋରଭ୍ୟାଲିଉ ବଢ଼ାଇବା ଯଦି ଉଦ୍ଦେଶ୍ୟ, କ୍ୟାପିଟାଲ୍‌ର ଶରବ୍ୟ ହେବ ପରାଭୂତ ସମାଜର ପ୍ରାକ୍-ଧନତାନ୍ତ୍ରିକ ଅପରିବର୍ତ୍ତନୀୟତା । ଦିନକୁ ଦିନ ଦୁର୍ଗତି ବଢ଼ିଲେ ସୁଦ୍ଧା, ଏ ସମାଜ ଯଦି ନ ବଦଳେ, ଦୋହନ ହୁଏ ସହଜ ଓ ନିର୍ବାଧ । ସର୍ତ୍ତସାପେକ୍ଷ ଏଭଳି ଉଦ୍‌ବୃତ୍ତଆହରଣ ତେଣୁ ପୁଞ୍ଜିବାଦର ଅସମ୍ପୂର୍ଣ୍ଣତାର ସୂଚକ । ମାର୍କେଟ୍ ଦେଇପାରୁନାହିଁ ପୂର୍ଣ୍ଣତା; ଦେଇପାରୁନାହିଁ ବୋଲି, ଆବଶ୍ୟକ ହେଉଚି ଦୁର୍ଗତ ପରାଧୀନ ଅଞ୍ଚଳରୁ ଆଖିବୁଜା ପୁଞ୍ଜିରପ୍ତାନି । ଏବଂ, ସେ ପୁଞ୍ଜି ଦୋହନକରାଯାଉଚି ବଳପୂର୍ବକ । ଆଖିବୁଜା, କାହିଁକିନା, ଯୋଉ ସମାଜରୁ ଆହରଣକରାଯାଉଚି ଏ ଧନ, ବିନିମୟରେ ସେ ସମାଜ କପାଳରେ ଜୁଟୁଚି ଅଧିକତର ଶୋଷଣ; ମାର୍କ୍ସୀୟ ପରିଭାଷାରେ, *without any quid pro quo* । ପ୍ରତିବାଦ ହୋଇଚି, ମାତ୍ର ପ୍ରତିବାଦକୁ ଦମନକରିଚି ରାଜନୀତିକ ପ୍ରଭୁତ୍ୱ; ଯେପରି, ଚିରସ୍ଥାୟୀ ବନ୍ଦୋବସ୍ତକୁ କୃଷକର ବିରୋଧ, ଦମନକରିଚି ବ୍ରିଟିଶ୍‌ସୃଷ୍ଟ ଜମିଦାରଶ୍ରେଣୀ ।

ତେବେ, ପ୍ରଥମ ମହାଯୁଦ୍ଧର ଅନତିପୂର୍ବେ ଉଦ୍‌ବୃତ୍ତଆଦାୟ ଯୋଉ ଭୟାବହ ମାତ୍ରା ଆହରଣକରିଚି, ତାର କାରଣ ଅନ୍ୟତ୍ର; ବ୍ରିଟିଶ୍‌ପୁଞ୍ଜି ଖୋଜିଚି ନୂଆ ଉପନିବେଶ,

ନାତିଶୀତୋଷ୍ଣ ପରିମଣ୍ଡଳ, ଯାର ଅଧିବାସୀ ଶ୍ୱେତାଙ୍ଗ । ମେଟ୍ରପଲିଟାନ୍ କ୍ୟାପିଟାଲ୍ ଧାଇଁଯାଇଚି ଅଷ୍ଟ୍ରେଲିଆ, ଆମେରିକା, କାନାଡା । ବୁଝାପଡ଼ିଚି, କ୍ୟାପିଟାଲ୍‌ର ଦିଗନ୍ତ ସଙ୍କୁଚିତ ହୋଇଆସୁଚି; ନୂଆ କୋଉ ଉଦ୍ଦୀପନା ତାକୁ ସଂଜୀବିତ କରି ନପାରିଲେ, ସମ୍ମୁଖୀନହେବ ଘୋର ସଂକଟ; ଏପରିକି, ସ୍ୱୟଂ କେୟେନ୍ସଙ୍କୁ ଭାବିତକରିଚି *'exhaustion of the frontier'* । ପ୍ରାକ୍‌ଧନତାନ୍ତ୍ରିକ ବଜାର ଅବଶ୍ୟ ନିଜେ ଏକ ଉଦ୍ଦୀପନା, ଉଦ୍‌ବୃତ୍ତମୂଲ୍ୟଉତ୍ପାଦନକୁ ତ୍ୱରାନ୍ୱିତକରିବା ଭଳି ପ୍ରରୋଚନା । ତା ଅଭାବରେ ବଜାରର ଏକମାତ୍ର କର୍ତ୍ତବ୍ୟ ହୋଇଚି ଉନବିଂଶଶତକ ମଧ୍ୟଭାଗରୁ ପ୍ରଥମ ମହାଯୁଦ୍ଧ ପର୍ଯ୍ୟନ୍ତ, ବ୍ରିଟେନ୍‌ର ବ୍ୟାଲାନ୍ସ ଅବ୍ ପେୟେମେଣ୍ଟ୍‌କୁ ଟେକିଧରି ସୁନାକୁ ଦେବା ସୁରକ୍ଷା । ଅର୍ଥାତ୍, ନାତିଶୀତୋଷ୍ଣ ଶ୍ୱେତାଙ୍ଗ ଅଂଚଳକୁ ଯୋଉ ପୁଞ୍ଜି ରପ୍ତାନି ହୋଇଚି, ବିବାକ ଦୋହନକରାଯାଇଚି ଉପନିବେଶଗୁଡ଼ିକରୁ । ଯେପରି, ଦରକାର ଥାଉ କି ନଥାଉ, ବ୍ରିଟେନ୍‌ର ଫାକ୍ଟରି ଯା ତିଆରିକଲେ ସବୁଗୁଡ଼ାକୁ ଆଣି ଲଦିଦିଆଗଲା ଉପନିବେଶରେ; ଆଉ, କି ଦରରେ ବିକ୍ରିହେବ, ତା ମଧ୍ୟ ଆଗତୁରା ବାନ୍ଧିଦେଇଚି ବ୍ରିଟିଶ୍ ପ୍ରଭୁ । ତା ଛଡ଼ା ରହିଚି ଜମିରୁ ଖଜଣା, ଅଫିମ ଗଞ୍ଜାଇ କାରବାରରୁ ମୋଟ ମୁନାଫା । ମାର୍କ୍ସ କହିଚନ୍ତି drain । ଫଳରେ, ଇଉରୋପର ଅନ୍ୟାନ୍ୟ ଦେଶ ବ୍ରିଟିଶ୍‌ବଜାର ଭିତରକୁ ପାଇଚି ପ୍ରବେଶାଧିକାର ଆଉ ଶ୍ୱେତାଙ୍ଗ ଉପନିବେଶ ପାଇଚି ବିନିଯୋଗଯୋଗ୍ୟ ମୂଳଧନ । ଅଥଚ ଶ୍ୱେତାଙ୍ଗଙ୍କ ବସତି ଭଳି ସାମ୍ରାଜ୍ୟର ଅଂଶବିଶେଷ ହେବା ସତ୍ତ୍ୱେ, ଭାରତ ଆକର୍ଷଣ କରିପାରିନାହିଁ ପୁଞ୍ଜିବିନିଯୋଗ । କ୍ୟାପିଟାଲ୍‌ର ଚଳିକାଶକ୍ତି ଯେ ଉଦ୍‌ବୃତ୍ତମୂଲ୍ୟ, ଏବଂ ସେ ଚଳିକାଶକ୍ତି ଯେ ମାଧ୍ୟାକର୍ଷଣ ଶକ୍ତି ପରି ପ୍ରାକୃତିକ—ଏଇ ତତ୍ତ୍ୱକୁ ପ୍ରତିଷ୍ଠାଦେବାକୁ ଯାଇ ପ୍ରାକ୍‌ଧନତାନ୍ତ୍ରିକ ଉପକଣ୍ଠ ପ୍ରତି ମନୋନିବେଶ କରିପାରିନାହାଁନ୍ତି ମାର୍କ୍ସ; ପୁଞ୍ଜିର ଆଧିପତ୍ୟକୁ ଅତିକ୍ରମକରି ସମ୍ଭାବ୍ୟ ସମାଜତନ୍ତ୍ର ଦିଗକୁ ଭାରତର ଅଭିଯାତ୍ରା ତେଣୁ ଆଲୋଚିତ ହୋଇନାହିଁ *କ୍ୟାପିଟାଲ୍* ଗ୍ରନ୍ଥରେ । ଭାରତର ଶ୍ରମଜୀବୀ କି ଉପାୟରେ ପ୍ର୍ୟାକ୍‌ସିସ୍ (ଜ୍ଞାନ ଓ କର୍ମର ସମବାୟ) ଅର୍ଜନକରିବେ, ଭାରତୀୟ ବୁଦ୍ଧିଜୀବୀଙ୍କୁ ମନେହୋଇନାହିଁ ତେଣୁ ସମସ୍ୟା; ବଲ୍‌ସେଭିକ୍ ପ୍ରଣାଳୀପଦ୍ଧତିକୁ ଧରିଚନ୍ତି ଅଧମତାରଣ ପନ୍ଥା । ତେବେ, ଯୋଉ ଗୋଟିଏ ବିଷୟରେ ମତାନୈକ୍ୟ ନାହିଁ, ତା କ୍ୟାପିଟାଲିସ୍ମର କୁଫଳ; ଯେପରି, ଅପରିମିତ ଲାଳସାକୁ ଚରିତାର୍ଥକରିବାକୁ ଅବିରତ ଧନୋତ୍ପାଦନ, ଯା ଉତ୍ପନ୍ନକରେ ଅନ୍ୟାୟ ଔଦ୍ଧତ୍ୟ ସାଙ୍ଗକୁ ପ୍ରତିଯୋଗିତା, ଶୋଷଣ ଓ ବୈଷମ୍ୟ । ଏଗୁଡ଼ାକ ଇନ୍ଦ୍ରିୟଗ୍ରାହ୍ୟ; ଯା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ତା ସାମାଜିକ ମଣିଷକୁ ଇତରକରିଦେବା ପ୍ରକ୍ରିୟା, ପ୍ରାକୃତିକ ଭାରସାମ୍ୟକୁ ବିପନ୍ନକରିଦେବା ପଦ୍ଧତି । ଧନୋତ୍ପାଦନ ଯେହେତୁ

ମଣିଷକୁ ଜଡ଼ ଉପାଦାନରେ ପରିଣତକରେ, ମାର୍କେଟ୍‌ସ୍ୱାର୍ଥରେ ସେଇ ଜଡ଼ପଦାର୍ଥକୁ ଅଳିଆଗଦାକୁ ଫିଙ୍ଗିଦେବା ସ୍ୱାଭାବିକ । କାମଟା ଯେ ଅନୈତିକ, ଜାଣିଥିଲେ ସୁଦ୍ଧା, ଉଦ୍‌ବୃତ୍ତଆହରଣ ଯେହେତୁ ଅପ୍ରତିରୋଧ, କ୍ୟାପିଟାଲିଷ୍ଟ୍ ଆଖିବୁଜିଦିଏ; ସାମାଜିକ ପରିଣାମ ପ୍ରତି ସମ୍ବେଦନଶୀଳ ହୋଇପାରେନା । କିନ୍ତୁ ଏ ପରିଣାମ ଆକସ୍ମିକ ବା ଇଚ୍ଛାକୃତ ନୁହେଁ, ଇତିହାସ ଦ୍ୱାରା ନିର୍ଦ୍ଧାରିତ; ଏବଂ ସେଥିପାଇଁ ମାର୍କ୍ସ ପୁଞ୍ଜିପତିକୁ ସଂଜ୍ଞାବଦ୍ଧ କରନ୍ତି : capital personified । ଅଥଚ ନିଜ ପରିଶ୍ରମର ସୁଫଳରୁ କ୍ରମାଗତ ବଞ୍ଚିତହୁଏ ଶ୍ରମଜୀବୀ, ଜୀବନ ଓ ଜୀବିକାର ଅନିଶ୍ଚୟତା ହୁଏ ଦିନକୁ ଦିନ ଅସହ୍ୟ, ଏବଂ ଶେଷକୁ, ବାଧହୋଇ ବାଛିନିଏ ବିଦ୍ରୋହ କି ବିପ୍ଳବ । ସେଇ ବାଟରେ ଘଟେ ସାମାଜିକ ରୂପାନ୍ତର, ଉତ୍ପାଦନଧରଣର ଆମୂଳ ପରିବର୍ତ୍ତନ । ପରିଣାମରେ ସାମାଜିକ ସାମ୍ୟ ହୁଏ ନିଶ୍ଚିତ ଓ ଦୃଢ଼ । ବାଞ୍ଛିତ ସେ ସାମ୍ୟ ଗାନ୍ଧିନୀତି ଆଣିପାରିନାହିଁ; ପାରିନାହିଁ କାହିଁକିନା, ଗାନ୍ଧି ସାମାଜିକ ସାମ୍ୟ ଅପେକ୍ଷା ଅଧିକ ଗୁରୁତ୍ୱଦେଇଚନ୍ତି ଅହିଂସା ଇତ୍ୟାଦି ବିମୂର୍ତ୍ତ ଧାରଣା ଆଉ ବ୍ୟକ୍ତିଗତ ଏକ୍ସପେରିମେଣ୍ଟକୁ; ଗାନ୍ଧିବାଦୀ ସମାଜତନ୍ତ ତେଣୁ ପର୍ଯ୍ୟବସିତ ହୋଇଚି ଦେଶବସୀଙ୍କ ପ୍ରତି କ୍ରୂର ଉପହାସ । ଦରକାର ସେଥିପାଇଁ ସମାଜତନ୍ତ ଭଳି ପ୍ରକଳ୍ପର ଇତିହାସସମ୍ମତ ବିଶ୍ଳେଷଣ । ପ୍ରକଳ୍ପର ଜନ୍ମ ଅବଶ୍ୟ ଫରାସୀ ବିପ୍ଳବରୁ; ବିଶ୍ଳେଷଣ ଦରକାର ଏଇ ବିଶ୍ୱାସରେ ଯେ ସମାଜାଶ୍ରିତ ମଣିଷ ଐକ୍ୟବଦ୍ଧହେଲେ ନିୟନ୍ତଣ / ନିର୍ଦ୍ଧାରଣ କରିପାରେ ସାମୂହିକ ଗନ୍ତବ୍ୟ । ଅଥଚ, ଯୋଉ ବୁର୍ଜୋୟାନେତୃତ୍ୱ ପରିଚ୍ଛଳିତକରିଚି ବିପ୍ଳବ, ସେଇ ବୁର୍ଜୋୟା ଶେଷକୁ ପ୍ରତିଶ୍ରୁତିକୁ ପତିପନ୍ନକରିଚି ପରିହାସ । ଜଣାପଡ଼ିଚି, ସ୍ୱାଧୀନତା-ସାମ୍ୟ-ମୈତ୍ରୀ ଭଳି ବିମୂର୍ତ୍ତ ଭାବାଦର୍ଶ ଦେଶର ଅର୍ଥବ୍ୟବସ୍ଥାରେ ପ୍ରତିଫଳିତ ନହେଲେ ବାଗାଡ଼ମ୍ବରରେ ହିଁ ଅଟକି ରହିଯିବ । ଅର୍ଥବ୍ୟବସ୍ଥାରେ ପ୍ରତିଫଳିତ ହୋଇନାହିଁ କାହିଁକିନା, ବୁର୍ଜୋୟା ସମାଜାଦର୍ଶର ମୂଳସୂତ୍ର ବ୍ୟକ୍ତିଗତ ସଂପତ୍ତି ଓ ଅବାଧ ବିପଣନ । ପୃଥିପୀର ସର୍ବତ୍ର । ବ୍ୟକ୍ତିଗତ ମାଲିକାନା ବିହରେ ଫ୍ରି ମାର୍କେଟ୍‌କୁ ଯୋଡ଼ିଦେଲେ ପୀଡ଼ନପ୍ରବଣ ଏପରି ଏକ ସିଷ୍ଟେମ୍‌ର ଆବିର୍ଭାବଘଟେ, ଯା ସମାଜଭିତରେ ଅନୈକ୍ୟ ଖାଲି ସୃଷ୍ଟିକରେନା, ଶୋଷଣକୁ ବି କରିପକାଏ ନୈର୍ବ୍ୟକ୍ତିକ । ହେଲେ ସୁଦ୍ଧା, ବ୍ୟକ୍ତିନିରପେକ୍ଷ ଏଇ ଅସମ ଲୋକତନ୍ତରେ ଉତ୍ପାଦନର ଶକ୍ତିସମୂହ ଅର୍ଜନକରିପାରେ ଅଭୂତପୂର୍ବ ଅଭିବୃଦ୍ଧି । ଶୋଷଣପୀଡ଼ନ ତେଣୁ ଆଖିକୁ ଦିଶେନା; ମାତ୍ର ସାମ୍ୟ କି ସମନ୍ୱୟ ରହିଯାଏ ସ୍ୱପ୍ନ ପରି ଅନାବୟବ । ବିପ୍ଳବ ସଂଗଠିତହେବା ମାତ୍ର କେତେଟାବର୍ଷ ଭିତରେ, ସେଥିପାଇଁ, ଫରାସୀ ଭାବୁକ ବିରୋଧକରିଚନ୍ତି ବୁର୍ଜୋୟା ପ୍ରପର୍ଟିରିଲେସନ୍ ଗୁଡ଼ାକୁ, ଅନ୍ୟଥା ଯେହେତୁ ବିପ୍ଳବର ଘୋଷିତ ଅଭୀଷ୍ଟକୁ ଜନସାଧାରଣଙ୍କ ପ୍ରାତ୍ୟହିକ ଜୀବନଯାତ୍ରାରେ

ରୂପାୟିତକରିବା ଅସମ୍ଭବ । ତାଙ୍କ ଭିତରେ ଥିଲେ ସାଁ-ସିମୋଁ, ଫୁରିଅର୍, ପ୍ରୁଦୋଁ, ଓୟେନ୍, ହଜ୍‌ସ୍କିନ୍; ମାତ୍ର ଅର୍ଥନୀତିରେ ବାଟଦେଖାଇଚି ରିକାଡ଼ୋ ଓ ସିସ୍‌ମୋଣ୍ଡିଙ୍କ ବିଘରବିବେଚନା । ଊନବିଂଶଶତକରେ ପହଞ୍ଚି, ପ୍ରବଣତା ହୋଇଯାଇଚି ଦ୍ୱିମୁଖୀ ଏବଂ ସ୍ୱାଭାବିକଭାବେ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ । ପ୍ରଥମ ପ୍ରବଣତା ବୁର୍ଜୋୟା ଅବଶ୍ୟ ପ୍ରଲେତାରିଏତ୍ ସପକ୍ଷରେ, ଅର୍ଥାତ୍ ୧୭୮୯ ଜନଜାଗରଣରୁ ପ୍ରାପ୍ତ ସୁଫଳର ଦୃଢ଼ୀକରଣ; ଦ୍ୱିତୀୟ ପ୍ରବଣତା ବୁର୍ଜୋୟା ସପକ୍ଷରେ, ଅର୍ଥାତ୍ ଉତ୍ଥାନଶୀଳ ପ୍ରଲେତାରିଏତ୍‌ର ସଂଘବଦ୍ଧ ଉଦ୍ୟମକୁ ସବଳ ମୁକାବିଲା, ଆଉ ବୁର୍ଜୋୟାନେତୃତ୍ୱର ପୁନଃପ୍ରତିଷ୍ଠା । ୧୮୭୧ ବେଳକୁ ପ୍ରଲେତାରିଏତ୍ କିନ୍ତୁ ପଛକୁ ହଟିବାକୁ ବାଧ୍ୟହୋଇଚି, ଯାହାକୁ କୁହାଯାଉଚି ପ୍ୟାରିସ୍ କମ୍ୟୁନ୍‌ର ପତନ । ବୃହତ୍ ଭୂସ୍ୱାମୀଙ୍କୁ ୧୭୮୯ରେ ବୁର୍ଜୋୟା ପରାଜିତକରିଥିଲା ବୋଲି, ସାମନ୍ତତନ୍ତ୍ରର ଘଟିଥିଲା ମୂଳୋତ୍ପାଟନ; ମାତ୍ର ପ୍ୟାରିସ୍ କମ୍ୟୁନ୍‌ର ପରାଜୟ ସୂଚନାକଲା ପ୍ରଲେତାରିଏତ୍ ଉପରେ ବୁର୍ଜୋୟାର ଏକାଧିପତ୍ୟ । କ୍ରମାଗତ ସେଇ ବୁର୍ଜୋୟାଅଭିଯାନକୁ ଗ୍ରାମ୍‌ସି କହିଚନ୍ତି 'ଚିରସ୍ଥାୟୀ ବିପ୍ଲବ', କାହିଁକିନା, ବୁର୍ଜୋୟାର ସାଫଲ୍ୟ ମୂଳରେ ଥିଲା ମଧ୍ୟବିତ୍ତ ସହିତ ତାର ମିଳିତସାମ୍ମୁଖ୍ୟ । ମଧ୍ୟବିତ୍ତ ମାନେ ସେଇ କୃଷକକୂଳ, ୧୭୮୯ରେ ବିପ୍ଳବ ଦେଇଚି ଯାହାଙ୍କୁ ଜମିଜମା ଉପରେ ବ୍ୟକ୍ତିଗତ ମାଲିକାନା । ପରାଜୟର ବିଷାଦ ତେଣୁ ଊନବିଂଶଶତକଭର ସମାଜତନ୍ତ୍ରର ଗତିକୁ ଲଉରୋପସାରା କରିଚି ମନ୍ଥର ଓ ବ୍ୟଥିତ । ପୁରୁଣା କଥାକୁ ପରତାଳକରିବାକୁ ପଡୁଚି, ଏକ୍ଷଣି ଯେହେତୁ ବିଶ୍ୱାୟନର ଶତ୍ରୁ ମିତ୍ର, ଉଭୟ ଶିବିର ବୁଝିବା ଦରକାର, ଫରାସୀ ବିପ୍ଳବରୁ ଜନ୍ମିଥିଲା ଯୋଉ ପ୍ରତିଶ୍ରୁତି, ଅଦ୍ୟାବଧି ରହିଚି ଅପୂର୍ଣ୍ଣ ।

ବିସ୍ମିତ ହେବା ଅନୁଚିତ, ବିଶ୍ୱାୟନର ମିତ୍ରଶିବିର କ୍ୟାପିଟାଲିସ୍ଟ ସପକ୍ଷରେ, କାହିଁକିନା, ବ୍ୟକ୍ତିଗତ ସଂପତ୍ତି ଭଳି ସାମାଜିକ ଅନୁଷ୍ଠାନ ମାଧ୍ୟମରେ, ବିଶେଷତଃ ବିଦ୍ୟମାନ ଗଣତାନ୍ତ୍ରିକ ବିଧିବିଧାନ ପରିଧିରେ, ଦେଶବାସୀଙ୍କ ଆଶାଆକାଙ୍‌କ୍ଷାକୁ ତୁଷ୍ଟକରିବା କଷ୍ଟସାଧ୍ୟ ନୁହେଁ । ସେଇ ସ୍ୱପ୍ନ ମଧ୍ୟ ଦେଖାଇଥିଲା ଫରାସୀ ବିପ୍ଳବ । ଶତ୍ରୁଶିବିରର ବକ୍ତବ୍ୟ ମଧ୍ୟ ବେଶି ଅଲଗା ନୁହେଁ, କାହିଁକିନା, ସମାଜତନ୍ତ୍ରୀଙ୍କ ଆନ୍ଦୋଳନ ମେଣ୍ଟାଇପାରିନାହିଁ ଜନସାଧାରଣଙ୍କ ଆଶାଆଡ଼୍‌କ୍ଷା; ତା ଛଡ଼ା, ଫରାସୀ ବିପ୍ଳବ ଭିତରୁ ବାହାରିଥିଲା ବୁର୍ଜୋୟା ପ୍ରପର୍ଟି ରିଲେସନ୍ସ, ସମାଜତନ୍ତ୍ର ନୁହେଁ । ସାମାଜିକ ବୈଷମ୍ୟର କାରଣ ତେଣୁ ବୁର୍ଜୋୟାସ୍ୱାର୍ଥରେ ତିଆରି ହୋଇଥିବା ଅନୁଷ୍ଠାନ; ଯେପରି,ବୁର୍ଜୋୟା ଗଣତନ୍ତ୍ର (ଜୋର୍ ଯାର ମୁଲୁକ ତାର) । ମାତ୍ର ସମାଜତନ୍ତ୍ର ଖାଲି ବୁର୍ଜୋୟା ଅନୁଷ୍ଠାନ ଓ ଅଭିସନ୍ଧିକୁ ଭାଙ୍ଗିବାକୁ ଚାହିଁନାହିଁ, ଚାହିଁଚି ସେଗୁଡ଼ିକୁ *ଅତିକ୍ରମକରିଯିବାକୁ* । ବୁର୍ଜୋୟା

ନେତୃତ୍ୱରେ ଲୋକ ଯୋଉ ଗଣତନ୍ତ୍ର ପାଇଚନ୍ତି, ତଥାକଥିତ କୋଉ ବିପ୍ଳବୀକର୍ତ୍ତୃତ୍ୱ ପଦତଳେ ତାକୁ ସମର୍ପଣକରିବାକୁ କହିନାହିଁ ସମାଜତନ୍ତ୍ର; ବରଂ ଚାହିଁଚି ଗଣତାନ୍ତ୍ରିକ ଅଧିକାର ହେଉ ପ୍ରତ୍ୟକ୍ଷ, ଗଭୀର ଓ ପ୍ରଶସ୍ତ । ବୁଝିବାକୁ ହେବ ତେଣୁ ଗୁଣଗତ ପାର୍ଥକ୍ୟ । ବୁର୍ଜୋୟା ବିଧିବ୍ୟବସ୍ଥାର ପୂର୍ବବର୍ତ୍ତୀ ପର୍ଯ୍ୟାୟ ସାମନ୍ତତନ୍ତ୍ର, ଯାର ଗଢ଼ଣର ପ୍ରମୁଖ ଉପାଦାନ ଜନ୍ମସୂତ୍ରରେ ପ୍ରାପ୍ତ ସଂପତ୍ତି ଓ କର୍ତ୍ତୃତ୍ୱ । ସେଇ ଉପାଦନ ଯେହେତୁ ପ୍ରିଭିଲେଜ୍ ଦିଏ ନିକମାକୁ, ସମାଜରେ ସୃଷ୍ଟିହୁଏ ବିଭାଜନ । ଉତ୍ଥାନଶୀଳ ବୁର୍ଜୋୟା ସେ ବିଭାଜନକୁ ଭାବିଚି ଅନ୍ୟାୟ ଅତ୍ୟାଚାର । ମାତ୍ର ବୁର୍ଜୋୟାବ୍ୟବସ୍ଥା ପଛକୁ ଆସିଚି ଯୋଉ ସମାଜତନ୍ତ୍ର, ବିରୋଧକରିନାହିଁ ବୁର୍ଜୋୟା କର୍ମସୂଚିକୁ, କାହିଁକିନା, ସେଇ କର୍ମସୂଚି ବଳରେ ସଂଗଠିତହୋଇଚି ବଞ୍ଚିତ / ନିର୍ଯ୍ୟାତିତର ବିପ୍ଳବ । ବରଂ ସମାଜତନ୍ତ୍ରର ଅଭିଯୋଗ ଥିଲା: ଯୋଉ କୃତ୍ୟସୂଚୀ ଭିତ୍ତିରେ ବୁର୍ଜୋୟା ମୋବିଲାଇଜ୍ କରିଥିଲା ବିପ୍ଳବ, ସେଇ କୃତ୍ୟସୂଚି ସାଙ୍ଗରେ ଏକ୍ଷଣି କରୁଚି ବିଶ୍ୱାସଘାତକତା (ଯେପରି, ସଂବିଧାନର ଡେମୋକ୍ର୍ୟାସି-ସେକିଉଲାରିଜ୍ମ-ସୋସାଲିଜ୍ମ ସହିତ ଭାରତୀୟ ବୁର୍ଜୋୟା କରିଚି ବିଶ୍ୱାସଘାତକତା) । ତା ଛଡ଼ା, ବିପ୍ଳବ ତ ସଂକଳ୍ପବଦ୍ଧ ମୁଷ୍ଟିମେୟଙ୍କ ଦ୍ୱାରା କ୍ଷମତାଦଖଲ ନୁହେଁ; ମୁଷ୍ଟିମେୟ ଲୋକଙ୍କ ଅହିଂଧିମୂଳକ କ୍ଷମତାଦଖଲକୁ ସବଳ ବିରୋଧ ! ଅର୍ଥାତ୍ ବ୍ୟାପକ ଜନଜାଗରଣ, ସଂଖ୍ୟାଲଘୁ କ୍ଷମତାଚକ୍ର ବିରୋଧରେ ଆନ୍ଦୋଳନ । ବିପ୍ଳବ ଯେହେତୁ ଗଣଭିତ୍ତିକ ଏବଂ ଗଣତନ୍ତ୍ରର ତୃଣମୂଳ ତା ଅଭିମୁଖ, ଅନିବାର୍ଯ୍ୟଭାବେ ସମାଜତନ୍ତ୍ର । ସମାଜତନ୍ତ୍ରହିଁ ପ୍ରଲେତାରିଏତ୍ର ପ୍ରତିବାଦ ଆଉ ଆଭିମୁଖ୍ୟ । ପ୍ରାଞ୍ଜଳକରିବାକୁ ମାର୍କ୍ସ ଲେଖିଚନ୍ତି, *The Eighteenth Brumaire of Louis Bonaparte* । କହିବାକୁ ଚାହିଁଚନ୍ତି, ଉଦ୍ଦେଶ୍ୟ ଓ କର୍ମଧାରା ଯେହେତୁ ବିପରୀତ, ବୁର୍ଜୋୟାର ରାଜନୀତିକ / ଅର୍ଥନୀତିକ / ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ସମାଜତନ୍ତ୍ର ଗ୍ରହଣକରିପାରେନା । ବୁର୍ଜୋୟାକୁ ପ୍ରତିରୋଧ ଓ ନୂତନ ମୂଲ୍ୟମାନ ପ୍ରବର୍ତ୍ତନ ତେଣୁ ଦୀର୍ଘକାଳୀନ ଓ ବିଘ୍ନସଙ୍କୁଳ ଏକ ପ୍ରସ୍ତାବ / ପ୍ରକଳ୍ପ । ନୂତନ ମୂଲ୍ୟମାନ ମାନେ, ଚିନ୍ତା ଓ କର୍ମର ନୈତିକ ପ୍ରରୋଚନା ଯା ଆନ୍ଦୋଳନକୁ ଦିଏ ଆତ୍ମପ୍ରତ୍ୟୟ, ସଂକଳ୍ପ ଓ ଉଦ୍ଦେଶ୍ୟସିଦ୍ଧିର ନିଶ୍ଚୟତା । ବୁର୍ଜୋୟା ଯେହେତୁ ଆତ୍ମସ୍ୱାର୍ଥରେ ପ୍ରେରିତ, ନୈତିକତା ଦାବି କରିପାରେନା । ବସ୍ତୁତଃ, ପରାର୍ଥପରତା ହିଁ ସମାଜତନ୍ତ୍ରର ନୈତିକତା । ବିଦେଶୀ ରାଜତ୍ୱର ବିରୋଧିତାକୁ 'ସତ୍ୟାଗ୍ରହ', ଭୂଦାନକୁ 'ଯଜ୍ଞ' ଭଳି ଆଖ୍ୟାଦେଇ ଏକପ୍ରକାର ନୈତିକତା ପ୍ରଚାରକରାଯାଇଚି ଅବଶ୍ୟ, ମାର୍କ୍ସଙ୍କ ଆଗରୁ ବି ସମାଜତନ୍ତ୍ର କଥା ଉଠିଚି ଇଉରୋପରେ; ବୁର୍ଜୋୟା ବିଧିବ୍ୟବସ୍ଥାର ଅନ୍ତର୍ନିହିତ ବୈପରିତ୍ୟ କିନ୍ତୁ କାହାରି ଅବଲୋକନରେ ଧରାପଡ଼ିନାହିଁ । ପଡ଼ିନାହିଁ

ବୋଲି, ସମାଜତନ୍ତ୍ର ଦିଶିଚି ସତେଅବା 'ସତ୍ୟ' ପ୍ରତି ଆଗ୍ରହ କିମ୍ବା 'ଦାନ' କି 'ଯଜ୍ଞ'; ଅଳ୍ପକଥାରେ, ତ୍ୟାଗ, ତିତିକ୍ଷା, ଉପବାସ; ଆଧୁନିକ ପରିଭାଷାରେ 'ଇଉଟୋପିଆ' । କଣ୍ଟ୍ରାଡିକ୍ସନ୍‌କୁ ଚିହ୍ନିଟକରି ନପାରିଲେ ସଂଗ୍ରାମର ପ୍ରତ୍ୟୟ ମନକୁ ଆସିବନାହିଁ । ବୁର୍ଜୋୟା ବିଧିବିଧାନରୁ ବାହାରିଚି ପୁଞ୍ଜିବାଦ, ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ, ସାମ୍ରାଜ୍ୟବାଦରୁ ଗ୍ଲୋବାଲାଇଜେସନ୍ । ପ୍ରତ୍ୟେକଟିର ଚାଳିକାଶକ୍ତି ଅମାନୁଷିକ ଆଧିପତ୍ୟ, ଦୁର୍ବଳକୁ ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ନକଲେ ଯା ସମ୍ଭବପର ହୁଏନା । ଅଥଚ ଏ ବୈପରିତ୍ୟକୁ ଢ଼ାଙ୍କିପକାଏ ଅଧିବିଦ୍ୟା (ମେଟାଫିଜିକ୍ସ), ଏବଂ ସେଥିପାଇଁ, ମାର୍କ୍ସ ବାଛିଚନ୍ତି ବସ୍ତୁବାଦ, ପର୍ଯ୍ୟାୟକ୍ରମରେ ଗତିଶୀଳ ଇତିହାସ । ଗତିଶୀଳ ବୋଲି, ଅତିକ୍ରମ କରିପାରେ ନାନାବିଧ ବୈପରୀତ୍ୟକୁ । କରିପାରେ ବୋଲି, ଧନତନ୍ତ୍ରକୁ ମାର୍କ୍ସ ଦେଖିଚନ୍ତି ସାମନ୍ତତନ୍ତ୍ର ଭଳି ଇତିହାସର ଅନ୍ୟ ଏକ ପର୍ଯ୍ୟାୟ, ଅନତିକ୍ରମ୍ୟ ମହାଜାଗତିକ କୋଉ ପ୍ରପଞ୍ଚ ନୁହେଁ । କାହିଁକିନା, ମଣିଷ ନିଜେ ଯା ତିଆରିକରିଚି, ଚାହିଁଲେ ଭାଙ୍ଗିଦେଇପାରେ; ପ୍ରକ୍ରିୟାରେ ରହସ୍ୟ ନାହିଁ, କି ସତ୍ୟ-ଅସତ୍ୟ ଭୋଗ-ତ୍ୟାଗ ଭଳି ବିପରୀତ ଯୁଗ୍ମପଦର କୋଳାହଳ । ନୈତିକତା କଥାଟାକୁ ଏଇ ପ୍ରେକ୍ଷିତରେ ବୁଝିବାକୁ ପଡ଼ିବ; ଦାରିଦ୍ର୍ୟ, ଅଶିକ୍ଷା, ଅସାମ୍ୟ, ଅବମାନନା, ଆଧିପତ୍ୟ—ଯାହା କିଛି ମଣିଷର ଅଗ୍ରଗତି ପଥରେ ଅନ୍ତରାୟ, ବିନା ବ୍ୟତିକ୍ରମରେ, ଅନୈତିକ । କାହିଁକିନା, ଏଗୁଡ଼ାକ ମଣିଷକୁ ମଣିଷପାଖରୁ କରେ ଇତର, ସମାଜକୁ କରେ ଖଣ୍ଡଖଣ୍ଡ, ଡାକିଆଣେ ଯୁଦ୍ଧ, କ୍ଷୁଧା, ଧ୍ୱଂସ । ନୈତିକ ପ୍ରୟୋଜନ ତେଣୁ ଏଗୁଡ଼ାକୁ ଅତିକ୍ରମଣ; ସେଇ ପ୍ରୟୋଜନରୁ ଧନତନ୍ତ୍ରର ଅବସାନକୁ ମାର୍କ୍ସ ଭାବିଚନ୍ତି ଇତିହାସପ୍ରବାହରେ ଅନିବାର୍ଯ୍ୟ । ଲେନିନ୍ ବି ଡାକଦେଇଚନ୍ତି ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗୃହଯୁଦ୍ଧରେ ପରିଣତକରିବାକୁ । ସମାଜତନ୍ତ୍ର ବୋଲି ଚିହ୍ନିତ ଆଦିକଳ୍ପରେ ନୈତିକ ଉତ୍କର୍ଷ ତେଣୁ ଆକସ୍ମିକ ବା ଧ୍ୟାନଲବ୍ଧ ନୁହେଁ; ଅବିସମ୍ବାଦିତ ବାସ୍ତବ । ଅନ୍ୟ ଶବ୍ଦରେ, କାରଣ ଯା ହେଉ, ସାଧାରଣ ମଣିଷର ସ୍ୱାଭାବିକ ପ୍ରତ୍ୟାଶା ଯଦି ସମାଜତନ୍ତ୍ରର ଛତ୍ରଛାୟା ତଳେ ସୁଦ୍ଧା ବାଧାପାଏ, ସେଭଳି ସମାଜତନ୍ତ୍ରର ତିରୋଧାନ ସୁଦ୍ଧା ଐତିହାସିକ ପ୍ରୟୋଜନ ।

ସେଥିପାଇଁ, ମାର୍କ୍ସଙ୍କ ପକ୍ଷରେ ମଧ୍ୟ, ଇତିହାସକୁ ତାର ସମଗ୍ରତାରେ ଉପଲବ୍ଧିକରିବା ସମ୍ଭବପର ହୋଇନାହିଁ; ବସ୍ତୁବାଦୀ ବିଶ୍ଳେଷଣ ଯେତେବେଳେ ତତ୍ତ୍ୱର ରୂପ ପରିଗ୍ରହକରୁଚି, ଧନତନ୍ତ୍ର ମଧ୍ୟ ସମାଧାକରିଚି ଏଭଳି କେତେ ଚାରିତ୍ରିକ ପରିବର୍ତ୍ତନ ଯା ବିଶ୍ଳେଷଣ ପରିଧିକୁ ଡେଇଁଯାଇଚି । ସେ ପରିବର୍ତ୍ତନ ଯଦିଓ ବସ୍ତୁବାଦୀ ବିଶ୍ଳେଷଣକୁ ଭ୍ରାନ୍ତ ପ୍ରତିପନ୍ନକରେନା, ସୃଷ୍ଟିକରେ କିନ୍ତୁ ତତ୍ତ୍ୱର ଧାରାବାହିକତାରେ ବିଚ୍ଛେଦ, ଯୋଉ

ବିଚ୍ଛେଦ ତୃତୀୟବିଶ୍ୱ ଉପରେ ସାମ୍ରାଜ୍ୟବାଦର ସୁଦୀର୍ଘ ଆଧିପତ୍ୟ । ଔପନିବେଶିକ ଯୋଗାଯୋଗ ମାର୍କ୍ସଙ୍କ ଦୃଷ୍ଟିଏଡ଼ାଇନାହିଁ ଅବଶ୍ୟ, ମାତ୍ର ନିର୍ମିତ ତତ୍ତ୍ୱର ପ୍ରଧାନ ସୂତ୍ରଗୁଡ଼ିକୁ ସେଇ ଯୋଗାଯୋଗ ଗଠିତକରିନାହିଁ; ଏପରିକି, ପ୍ରଥମ ମହାଯୁଦ୍ଧ ପର୍ଯ୍ୟନ୍ତ ସମାଜତାନ୍ତ୍ରିକ ଚିନ୍ତାଭାବନାରେ ସମ୍ରାଜ୍ୟବାଦ ରହିଯାଇଚି ଅଜ୍ଞାତ ଓ ଅବ୍ୟକ୍ତ । କାହିଁକିନା, ୧୮୫୦ରୁ ୧୯୧୪, ଧନତନ୍ତ୍ରର ଗର୍ଜମାନ ପର୍ଯ୍ୟାୟରେ ଇଉରୋପ ଅନୁଭବକରିନାହିଁ ବେକାରସମସ୍ୟାର ନୃଶଂସତା । ଶୋଷଣ ରହିଚି କିନ୍ତୁ ଅବ୍ୟାହତ, ଗଣମୁକ୍ତିର ପ୍ରତିଶ୍ରୁତି ମଧ୍ୟ ପରିଣତ ହୋଇଚି ପ୍ରତାରଣା; ମାତ୍ର ଶ୍ରମଜୀବୀର ବୈଷୟିକ ଅବସ୍ଥାର ଯୋଉ ଶୋଚନୀୟ ଅବନତି କଳ୍ପନାକରିଥିଲା ସାମଜତନ୍ତ୍ର, ଧନତନ୍ତ୍ରର ଗର୍ଜମାନ ପର୍ଯ୍ୟାୟ ଅତିକ୍ରାନ୍ତ ହେଲେସୁଦ୍ଧା, ପରିଲକ୍ଷିତ ହୋଇନାହିଁ ସେଭଳି କୋଉ ବିପର୍ଯ୍ୟୟ । ଅର୍ଥାତ୍, ତତ୍ତ୍ୱ ଓ କର୍ମଧାରାର କଳ୍ପିତ ସମନ୍ୱୟ ରହିଯାଇଚି ଅସମ୍ପୂର୍ଣ୍ଣ । ସେଇ ସୁଯୋଗରେ ବେରନ୍‌ଷ୍ଟାଇନ୍ ପ୍ରଚାରକରିଚନ୍ତି ଶୋଧନବାଦ, ଏପରିକି ଗେଅର୍ଗ ଲୁକାସ୍ ବାଧ୍ୟ ହୋଇଚନ୍ତି କହିବାକୁ ଯେ *Even false consciousness has an element of truth* । ଅଥଚ, କ୍ୟାପିଟାଲିସ୍ମର ଏଇ ଦୀର୍ଘସ୍ଥାୟୀ ଗର୍ଜନ ପଛରେ ସକ୍ରିୟ ଥିଲା, ସମାଜତନ୍ତ୍ରର ପ୍ରବକ୍ତାମାନଙ୍କ ଅଲକ୍ଷ୍ୟରେ, ଏକମାତ୍ର ଇମ୍ପିରିଆଲିଜ୍ମ । ପ୍ରାକ୍‌ଧନତାନ୍ତ୍ରିକ ତୃତୀୟବିଶ୍ୱକୁ, ସେତେବେଳକୁ, ଘଟିସାରିଚି ପୁଞ୍ଜିବାଦର ଅନୁପ୍ରବେଶ । ଇଉରୋପରେ ତେଣୁ ଚାହିଦା ବଢ଼ିଚି ପ୍ରଚୁର; ବଳକା ଲୋକଙ୍କୁ ଅଷ୍ଟ୍ରେଲିଆ, ଦକ୍ଷିଣଆଫ୍ରିକା କି ରୋଡେସିଆ ଭଳି ନାତିଶୀତୋଷ୍ଣ ଅଂଚଳରେ ମିଳିଯାଇଚି ଫାଙ୍କା ଜାଗା; ସେଠିଯାଇ ସ୍ଥାନୀୟ ଅଧିବାସୀଙ୍କୁ ମାରିହାଣି ଦଖଲକରିଚନ୍ତି ଜମି କି ଖଣି କି ଜଙ୍ଗଲ । ଏସିଆର କଞ୍ଚାମାଲ ଓ ଶସ୍ତାଶ୍ରମ ଆଗରୁ ହୋଇଥିଲା ଶ୍ୱେତାଙ୍ଗଙ୍କ କରଗତ । ମେଟ୍ରପଲିଟାନ୍ ରାଷ୍ଟ୍ର ଭିତରେ ପ୍ରତିଦ୍ୱନ୍ଦ୍ୱିତା କମିଯାଇଚି ଭାରତ ଭଳି ଉପନିବେଶରୁ ସୁନା ଯେହେତୁ କାଢ଼ିନିଆଯାଇଚି ଯଥେରୋନାସ୍ତି, ଆଉ ଉପନିବେଶର ବଜାର ଇଉରୋପୀୟ ପଣ୍ୟ ସକାଶେ ଯୋଗାଇଦେଇଚି ପ୍ରଶସ୍ତ ବିପଣନନ । ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ ଯେ ଇଉରୋପ୍ ପୂରଣ କରିପାରିନାହିଁ ମାର୍କ୍ସଙ୍କ ପ୍ରତ୍ୟାଶା । ନଜର ଫେରିଚି ସେଥିପାଇଁ ରସିଆକୁ, ସମାଜତନ୍ତ୍ରର ଅଭ୍ୟୁତ୍ଥାନ ମନେହୋଇଚି ଯେହେତୁ ଆସନ୍ନ । ତୃତୀୟବିଶ୍ୱ ରହିଯାଇଚି ମାର୍କ୍ସଙ୍କ ତତ୍ତ୍ୱଜଗତ ସୀମାନ୍ତରେ । ତୃତୀୟବିଶ୍ୱର ଘଟମାନ ମୁକ୍ତିଯୁଦ୍ଧ ସହିତ ମେଟ୍ରପଲିଟାନ୍ ଇଉରୋପ୍‌ର ସମାଜତାନ୍ତ୍ରିକ ଆନ୍ଦୋଳନକୁ ଯୋଡ଼ିଦେବା କୃତିତ୍ୱ ତେଣୁ ଲେନିନ୍‌ଙ୍କର, ଏବଂ ସେଇ ସୂତ୍ରରେ, ଲେନିନ୍ ପ୍ରବର୍ତ୍ତନକରିଚନ୍ତି ସାମ୍ରାଜ୍ୟବାଦତତ୍ତ୍ୱ ଯେ, Imperialism is the highest stage of capitalism । ବିଶ୍ୱଯୁଦ୍ଧ ଦିଶିଚି, ସେଇ ତତ୍ତ୍ୱର

ଅବଲୋକନରେ, ତୃତୀୟବିଶ୍ୱକୁ ଅଧିକାରକରିବା ସକାଶେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା । ପ୍ରଥମ ବିଶ୍ୱଯୁଦ୍ଧ ସରିଗଲା ସିନା, ଇଉରୋପ୍‌ରେ ମୁଣ୍ଡଟେକିଲା ଫ୍ୟାସିବାଦ, ଯାର ପୃଷ୍ଠପୋଷକ ଥିଲେ ଏକଚାଟିଆ ପୁଞ୍ଜିର କର୍ଣ୍ଣଧାର । ଯୋଉ ଫ୍ୟାସିବାଦ ଦ୍ୱିତୀୟ ମହାଯୁଦ୍ଧକୁ ଜନ୍ମଦେଲା, ତାର ବର୍ବରତା ଯେହେତୁ ସାରା ଇଉରୋପ୍‌କୁ ଉଚ୍ଛନ୍ନକରିଚି, ସେ ଯୁଦ୍ଧକୁ କୁହାଯାଇଚି ଚାରିପ୍ରକାର ଯୁଦ୍ଧର ଏକତ୍ରୀକରଣ, ଯେପରି, ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଅନ୍ତର୍କଳହ, ସମାଜତନ୍ତ୍ର ବିରୋଧରେ ଏକଚାଟିଆ ପୁଞ୍ଜିର ସଂଗ୍ରାମ,ଜାତୀୟମୁକ୍ତି ସକାଶେ ଚୀନ୍‌ରେ ସଂଘର୍ଷ ସାଙ୍ଗକୁ ସ୍ପେନ୍‌ରେ ଗୃହଯୁଦ୍ଧ । ଏଗୁଡ଼ିକର ମିଳିତ ପରିଣତି ଏପରି ଏକ ଯୁଗକୁ ଜନ୍ମଦେଲା, ଯେତେବେଳେ କ୍ୟାପିଟାଲିଜ୍ମର ଦଶାହୋଇଚି ମରଣାପନ୍ନ; କମିଉନିଷ୍ଟ୍ ଇଣ୍ଟରନ୍ୟାସନାଲ୍ କହିଚି, ଜେନେରାଲ୍ କ୍ରାଇସିସ୍ ଅବ୍ କ୍ୟାପିଟାଲିଜ୍ମ । କଥାଟା ଏମିତି ମନକୁ ପାଇଚି ଯେ ଗାନ୍ଧିଶିଷ୍ୟ ଜବାହାର୍‌ଲାଲ୍ ମଧ୍ୟ କହିଚନ୍ତି, ମାନବପ୍ରଜାତିକୁ ଏଇ ସଂଧିକ୍ଷଣରେ ବାଛିବାକୁ ପଡ଼ିବ ଫ୍ୟାସିଜ୍ମ ଆଉ କମିଉନିଜ୍ମ ଭିତରୁ ଗୋଟାକୁ,ଏବଂ ମୌଳିକ ଏଇ ନିର୍ବାଚନରେ, ଅଧିକାଂଶ ବାଛିବେ ନିଶ୍ଚୟ ଦ୍ୱିତୀୟଟିକୁ !

ଏକ୍ଷଣି କମିଉନିଜ୍ମ ନାଁରେ ସୋଭିଏଟ୍ ଇଉନିୟନ୍‌ରେ ଯୋଉ ଦମନ-ପୀଡ଼ନ ଚାଲିଲା, ତାକୁ ହିଁ ଗ୍ରାହ୍ୟକରାଯାଉଚି ସମାଜତନ୍ତ୍ରର ଅନୁକରଣଯୋଗ୍ୟ ରୂପାୟନ । ପଶ୍ଚିମଇଉରୋପ୍ ଯଦି ସମାଜତନ୍ତ୍ରକୁ ଗ୍ରହଣକରିଥାନ୍ତା, ରସିଆରେ ତ ଏ ଅଘଟଣ ଘଟନ୍ତାନାହିଁ, ସମାଜତନ୍ତ୍ର ପ୍ରତ୍ୟୟ ମଧ୍ୟ ରହିଥାନ୍ତା ପରିଚ୍ଛନ୍ନ । ଏଇ କଥା କହୁଚନ୍ତି ଇଦାନୀଂ ପଶ୍ଚିମର ଅଗ୍ରସର ଭାବୁକ । ମାତ୍ର ଇତିହାସର ବିଦ୍ରୂପ ଏପରି କ୍ରୂର ଯେ ବିପ୍ଳବ ସେଇ ସମାଜକୁ ଯିବାକୁ କୁଣ୍ଠିତ ଯୋଉଠି ଏ ପରିଚ୍ଛନ୍ନତା ଅବଶ୍ୟମ୍ଭାବୀ । କାହିଁକିନା, ଯୁଦ୍ଧପରବର୍ତ୍ତୀ ପୃଥିବୀରେ କ୍ୟାପିଟାଲିଜ୍ମ ନିଜକୁ ଏପରି ପୁନର୍ଗଠିତ କରିଚି ଯେ ଜେନେରାଲ୍ କ୍ରାଇସିସ୍ ଭଳି ଧାରଣା ମନେହେଉଚି ଅବାନ୍ତର ଓ ଅଳୀକ । କାହିଁକିନା ସୋଭିଏଟ୍ ଇଉନିୟନ୍ ଓ ପୂର୍ବଇଉରୋପରେ, ଅଙ୍ଗେନିଭାଇଥିବା ବର୍ବରତା ସତ୍ତ୍ୱେ, ସମାଜତନ୍ତ୍ର ନିଜକୁ ପୁନର୍ଗଠିତ କରିପାରିନାହିଁ । ଏ ମଧ୍ୟ ଇତିହାସର ଉପହାସ । ପୁଞ୍ଜିବାଦ ସଂକଟରେ ନପଡ଼ିଲେ, ସାମଜବାଦ ଯଦି ଅଚଳ, ମାର୍କ୍ସଚିନ୍ତାକୁ କଣପାଇଁ କୁହାଯିବ ସୃଷ୍ଟିଶୀଳ କି ଗତିଶୀଳ ? ସବୁରକମ ପ୍ରତିବନ୍ଧକତାରୁ ମଣିଷର ମୁକ୍ତି ଯଦି ସମାଜତନ୍ତ୍ରର ଆଭିମୁଖ୍ୟ, ଆଭିମୁଖ୍ୟକୁ ବାସ୍ତବାୟିତ କରିବାକୁ ଦରକାର ତେବେ ଉପଯୁକ୍ତ ତତ୍ତ୍ୱ । ତତ୍ତ୍ୱର ତଥ୍ୟଭିତ୍ତି ଯଦି ଭୁଲ୍, ତତ୍ତ୍ୱର ପ୍ରକରଣ ହେବ ଅନିର୍ଦ୍ଦିଷ୍ଟ; ଆଭିମୁଖ୍ୟ ତେଣୁ ବ୍ୟର୍ଥତା ଏଡ଼ାଇପାରେନା କାର୍ଯ୍ୟକ୍ଷେତ୍ରରେ । ଏଇକଥା କହିଥିଲେ ମାର୍କ୍ସ ଫୟରବାଖ୍‌ଙ୍କୁ । ପୁନର୍ଗଠିତ କ୍ୟାପିଟାଲିଜ୍ମର କାର୍ଯ୍ୟକଳାପ ତେଣୁ ତଥ୍ୟଭିତ୍ତିକ,

କ୍ରାଇସିସ୍ ବା ସଙ୍କଟ ନୁହେଁ । ସେ ତଥ୍ୟରୁ ଦେଖାଯିବ ଯଦି କ୍ୟାପିଟାଲିଜ୍ମର ଭୂମିକା ରହିଚି ଅପରିବର୍ତ୍ତିତ, ସମାଜତନ୍ତ୍ର ସ୍ଥିରକରିବ ନୂତନ କର୍ମଧାରା, ଏବଂ ସେଇ ସୂତ୍ରରେ, ଅତୀତର ଦୋଷତ୍ରୁଟି ବର୍ଜନକରି ନିଜକୁ କରିବ ପରିଶୁଦ୍ଧ । ସୋଭିଏତ୍ ସଂଘର ସାଧାରଣ ମଣିଷ କଣ ପାଇଁ ସମର୍ଥନକରିଚନ୍ତି ସମାଜତନ୍ତ୍ରର ପତନ ? ଅମଲାତନ୍ତ୍ରର କ୍ରମାଗତ ଆଧିପତ୍ୟ ଓ ରାଷ୍ଟ୍ରଦ୍ୱାରା ଅବିରତ ଉଦ୍‌ବୃତ୍ତନିଷ୍କାସନ ଲୋକଙ୍କ ଦିହରୁ ରାଜନୀତିକ ଚେତନାକୁ ଘଉଡ଼େଇଦେଇଥିଲା; ଚାହିଁଥିଲେ ରାଜନୀତିରେ ମୁକ୍ତ ପରିସର । ଇଉରୋପର ଶ୍ରମଜୀବୀର ଜୀବନମାନ ମଧ୍ୟ ହୋଇଥିଲା ଈର୍ଷାର କାରଣ, ବଞ୍ଚିତ ଥିଲା ବ୍ୟକ୍ତିସ୍ୱାଧୀନତା । ଏ ପ୍ରତ୍ୟାଶା କଣ ସମାଜତନ୍ତ୍ର ପାଖରୁ କରାଯାଇପାରେନା ? ପୁରୁଷାନୁକ୍ରମେ ବଞ୍ଚିତହେଲେ ବୋଲି ବାଛିନେଲେ ଭିନ୍ନ ରାସ୍ତା; ତାଙ୍କୁ ଥିଯରି ଶୁଣାଇବା ତେଣୁ ଚରମ ମୂର୍ଖତା । ଏ ଅଭିଜ୍ଞତାରୁ ଶିକ୍ଷା ଗ୍ରହଣକରିବା ମାନେ, ସମାଜତନ୍ତ୍ର ପାଇଁ ଯିଏ ଲଢ଼ାଇକରିବେ ରାଷ୍ଟ୍ରକ୍ଷମତା ଦଖଲକରିବା ଦିବାସ୍ୱପ୍ନକୁ ଆଗେ ମେଲାଣିଦେବାକୁ ପଡ଼ିବ, କାହିଁକିନା, ଆଇଡିଆଟା ଗୋଟାପଣେ ବୁର୍ଜୋୟା । କ୍ୟାପିଟାଲିଜ୍ମ ସେଇ ବାଟରେ ଯାଇଚି ବୋଲି, ଘଡ଼ିକିଘଡ଼ି ଉଠୁଚି ନାଭିଶ୍ୱାସ, ରାଷ୍ଟ୍ର କ୍ଷମତା ଯେହେତୁ ଗଠିକକରେ ଜନମତ, ଗଣତନ୍ତ୍ରରେ । କିନ୍ତୁ ଲୋକଙ୍କ ରାଜନୀତିକ ଚେତନାର ପ୍ରଧାନ ଉପାଦାନ ଯଦି ସମାଜତନ୍ତ୍ର ନୁହେଁ, କୋଉ ବାଟରେ ରାଷ୍ଟ୍ରକ୍ଷମତା ଦଖଲକରିବେ ସଂଗ୍ରାମୀ ? କାମକରିବାକୁ ହେବ ତେଣୁ ସିଭିଲ୍ ସୋସାଇଟି ଭିତରେ । ସେ ବାଟ ଅବଶ୍ୟ ବନ୍ଧୁର ଓ ପିଚ୍ଛିଳ । ଲୋକଙ୍କୁ ମେଣ୍ଢାକରି ରଖିଚନ୍ତି ନେତା; ମନୁଷ୍ୟୋଚିତ ମର୍ଯ୍ୟାଦାରେ ସେମାନଙ୍କୁ ପ୍ରତିଷ୍ଠିତକରିବା ସଂଗ୍ରାମୀର କର୍ତ୍ତବ୍ୟ । ବିଶେଷତଃ ଏଇ କାରଣରୁ ଯେ ସମାଜର ସ୍ଥିତି ଯଦି ପ୍ରାଚୀନ, ନଗରାୟନ ଓ ଶିଳ୍ପାୟନ ମନ୍ଥର ଓ ଖାପଛଡ଼ା, ଫ୍ୟାସିଜ୍ମ ଭଳି ପ୍ରତିକ୍ରିୟାକୁ ଅଣ୍ଡାପାରିବାକୁ କଷ୍ଟହୁଏନା ।

ସାବାଳକ ସର୍ବଜନୀନ ଭୋଟାଧିକାର ରାତାରାତି ଗଢ଼ିଉଠିନାହିଁ ଧନତାନ୍ତ୍ରିକ ସମାଜରେ, କ୍ୟାପିଟାଲିଜ୍ମର ଚେର ମାଟିଭିତରକୁ ଭେଦିବା ଉତାରୁ ବୁର୍ଜୋୟା ରାଷ୍ଟ୍ରସଂଗଠନ ହୋଇଚି ଦୃଢ଼ୀଭୂତ । ଏଭଳି ଦୃଢ଼ୀଭବନ ପ୍ରତି ସାମ୍ରାଜ୍ୟବାଦର ଅବଦାନ ମଧ୍ୟ ଊଣା ନୁହେଁ, କାହିଁକିନା, ସାମ୍ରାଜ୍ୟବାଦ କଲ୍ୟାଣରୁ ହିଁ ମେଟ୍ରପଲିଟାନ୍ ଅର୍ଥନୀତି ଲୋକଙ୍କ ଜୀବନମାନରେ ଘଟାଇପାରିଚି ସଂବୃଦ୍ଧି, ରାଷ୍ଟ୍ରସଂଗଠନକୁ ଦେଇପାରିଚି ସ୍ଥାୟୀତ୍ୱ । ପ୍ରତିତୁଳନାରେ ଗଣତାନ୍ତ୍ରିକ ଷ୍ଟ୍ରକ୍ଚର୍ ତୃତୀୟବିଶ୍ୱରେ ଦେଖାଦେଇଚି ଉପନିବେଶ ଉଠିଯିବା ଫଳରେ; ଉପନିବେଶୋତ୍ତର ସମାଜରେ ଯୋଉ ସ୍ୱାଧୀନ ରାଷ୍ଟ୍ରର ଅଭ୍ୟୁଦୟ ଘଟିଚି, ବୁର୍ଜୋୟାନେତୃତ୍ୱରେ ସଂଗଠିତ ଶ୍ରେଣୀସାମ୍ମୁଖ୍ୟ ସବୁଗୁଡ଼ାକ । ସେ ଷ୍ଟ୍ରକ୍ଚର୍ ଯଦି ନବ୍ୟ-ଉଦାରବାଦକୁ ପସନ୍ଦକରେ

କିମ୍ବା ବୁର୍ଜୋୟା ପରିଚାଳକ ଚାହାଁନ୍ତି ମେଟ୍ରପଲିଟାନ୍ ପୁଞ୍ଜିର ଅଧସ୍ତନହୋଇ ଫାଇଦା ଉଠାଇବାକୁ, ଗଣତାନ୍ତ୍ରିକ ଷ୍ଟ୍ରକ୍ଚର୍‌ଗୁଡ଼ାକୁ ଖଣ୍ଡିଆଖାବରା ନକରି ଉଦ୍ଦେଶ୍ୟସାଧନ ହୋଇପାରେନା; ବିଶେଷତଃ ଯେହେତୁ ଆଘାତଟା କ୍ଷଣସ୍ଥାୟୀ ଆକ୍ରମଣ ନୁହେଁ, କାହିଁକିନା, ନବ୍ୟ ଔପନିବେଶିକତା କି ନବ୍ୟଉଦାରୀକରଣ ଜନସାଧାରଣଙ୍କ ଜୀବନମାନକୁ ଉନ୍ନତ କରିପାରେନା କି ଦେଶର ଆର୍ଥିକ ବୁନିଆଦକୁ ସୁଦୃଢ଼ । ରାଷ୍ଟ୍ରର ବିଦ୍ୟମାନ ଷ୍ଟ୍ରକ୍ଚର୍ ତେଣୁ ସାମ୍ରାଜ୍ୟବାଦୀ ସ୍ୱାର୍ଥକୁ ଚରିତାର୍ଥ କରିପାରିବନାହିଁ । ଶାସକଶ୍ରେଣୀ ଚେଷ୍ଟାକରିବ ଛେଚିପିଟି ଷ୍ଟ୍ରକ୍‌ଚର୍‌ଟାକୁ ଉଦ୍ଦେଶ୍ୟଉପଯୋଗୀ କରିବାକୁ; ମାତ୍ର ଲୋକଙ୍କୁ ନିଜ ଶ୍ରେଣୀସ୍ୱାର୍ଥ ସମ୍ବନ୍ଧରେ ସଚେତନକରିବା ସମାଜତନ୍ତ୍ରର ଏକାନ୍ତ ଦାୟିତ୍ୱ । ସଂଘାତ ତେଣୁ ଅନିବାର୍ଯ୍ୟ । ନିର୍ବାଚନ ଲଢ଼ାଇ ନୁହେଁ କି ଅହିଂସ ପଦଯାତ୍ରା ନୁହେଁ । ଏଗୁଡ଼ାକ ଗୌଣ ପ୍ରତିବାଦ । ଅସଲ କାମ, ଗଣତନ୍ତ୍ରର ଷ୍ଟକ୍‌ଚର୍‌ଗୁଡ଼ିକ ସହିତ ସମାଜତନ୍ତ୍ରର ସଂଯୋଗସ୍ଥାପନ । ଏବଂ, ଗଣତାନ୍ତ୍ରିକ ଉପାୟରେ; କିନ୍ତୁ ଆଘାତ ଯଦି ହିଂସ୍ର ହୁଏ, ପ୍ରତିଘାତ ଅହିଂସ ହୋଇପାରେନା; ପ୍ରତିଘାତ ଯେହେତୁ ପ୍ରଲୋତାରିଏତ୍ ଚେତନାରୁ ଅଚ୍ଛେଦ୍ୟ ।

ସାମାଜିକ ଅନୈକ୍ୟର ମୂଳକାରଣ ଧନତାନ୍ତ୍ରିକ ପ୍ରପର୍ଟିରିଲେସନ୍ସ ବୋଲି କ୍ୟାପିଟାଲିସ୍ମକୁ ଏଇ ବିରୋଧ; ଅନ୍ୟଥା ସମାଜତନ୍ତ୍ର ସକାଶେ କ୍ୟାପିଟାଲିସ୍ମ ବାସ୍ତବିକ ଅପ୍ରାସଙ୍ଗିକ । ଗଣତନ୍ତ୍ର ବିଷୟରେ ମଧ୍ୟ ଏକାକଥା । ସାମଜତନ୍ତ୍ର ପାଇଁ ଗଣତନ୍ତ୍ର ପ୍ରାସଙ୍ଗିକ, କାହିଁକିନା, ସର୍ବସାଧାରଣ ସ୍ୱାର୍ଥକୁ ସାମ୍ରାଜ୍ୟବାଦ ପାଖରେ ବିକିଦେବା ଲାଗି ବୁର୍ଜୋୟାଶ୍ରେଣୀ ଗଣତାନ୍ତ୍ରିକ ଷ୍ଟ୍ରକ୍‌ଚର୍‌ଗୁଡ଼ିକୁ ବ୍ୟବହାରକରେ; ଅନ୍ୟଥା, ସମାଜତନ୍ତ୍ରର ସାଫଲ୍ୟ ପାଇଁ ଅ୍ୟାସେମ୍ବ୍ଲି ପାର୍ଲାମେଣ୍ଟ୍ ଅପରିହାର୍ଯ୍ୟ ନୁହେଁ । ସୋଭିଏଟ୍ ଇଉନିୟନ୍‌ର ପତନ ପର୍ଯ୍ୟନ୍ତ ସମାଜତାନ୍ତ୍ରିକ ଆନ୍ଦୋଳନ ଯୋଉ ଭାବରେ ଚାଲୁଥିଲା, ତାର ପୁନରାବୃତ୍ତି ତେଣୁ ଚଳିବନାହିଁ ଏକ୍ଷଣି । ଅର୍ଥାତ୍ ସମାଜତନ୍ତ୍ରର ଆଭିମୁଖ୍ୟ ହେବନାହିଁ ପାର୍ଲମେଣ୍ଟାରି ପଦ୍ଧତିରେ ସମାଜର ରୂପାନ୍ତର, କାହିଁକିନା, ମୌଳିକ ବିଭେଦ ଓ ବ୍ୟବଧାନ, ଯେପରି ମାଲିକ-ଖାତକ, ଅଭିଜାତ-ଅନ୍ତ୍ୟଜ, ଧନୀ-ନିର୍ଦ୍ଧନ, ପ୍ରଭୃତିର ଅପସାରଣ ହେବ ପ୍ରାଥମିକ ଲକ୍ଷ୍ୟ, ଅବଶ୍ୟ ଗଣଆନ୍ଦୋଳନ ମାଧ୍ୟମରେ; ଏବଂ ସେଥିପାଇଁ, ପ୍ରକାଶ୍ୟରେ ହେଉ କି ଗୋପନରେ, ସେନାବାହିନୀ-ପୁଲିସ୍-ଛାତ୍ର-ନାରୀ ସଂଗଠନଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାକୁ ପଡିବ ଆନ୍ଦୋଳନରେ । କାହିଁକିନା, ରାଷ୍ଟ୍ରର ଚରିତ୍ର ନବଦଳିଲେ ସ୍ୱୟଂ ରାଷ୍ଟ୍ର ଛିଡ଼ାହେବ ସମାଜତନ୍ତ୍ରର ପ୍ରଧାନ ପ୍ରତିପକ୍ଷ । ଖିଆଲରଖିବା ଦରକାର, ରାଷ୍ଟ୍ର ସଂଗଠିତହୋଇଚି ବୁର୍ଜୋୟାନେତୃତ୍ୱରେ, ଏବଂ ବୁର୍ଜୋୟା ଗୋଟିଏ ଆନ୍ତର୍ଜାତିକ ଶ୍ରେଣୀ, ଯାର ଚାଳିକାଶକ୍ତି ଗତିଶୀଳ ସାମ୍ରାଜ୍ୟବାଦ ।

ଅନ୍ୟ ଶବ୍ଦରେ, ମାର୍କେଟ୍ ରହିବ, ଅମଲା ରହିବେ, ପଣ୍ୟଉତ୍ପାଦନ ବି ଚାଲୁଥିବ; ରହିବନାହିଁ ଖାଲି ସଂପତ୍ତିଗତ ବୈଷମ୍ୟ, ବର୍ଣ୍ଣବୈଷମ୍ୟ, ଲିଙ୍ଗବୈଷମ୍ୟ ଆଉ ମାନସିକ ଓ ଶାରୀରିକ ପରିଶ୍ରମ ମଧ୍ୟସ୍ଥ ବ୍ୟବଧାନ । ଏଗୁଡ଼ିକ ସ୍ପଷ୍ଟତଃ ଦ୍ୱାନ୍ଦ୍ୱିକ ସମ୍ବନ୍ଧ; ମାତ୍ର ଦ୍ୱାନ୍ଦ୍ୱିକତା ଖାଲି ଗୋଟାଏ ଆଇଡିଆ ନୁହେଁ । ବୈପରୀତ୍ୟ ଭଞ୍ଜନର ଏକମାତ୍ର ଉପାୟ ତେଣୁ କର୍ମଧାରା, ବସ୍ତୁତଃ ଯା ଜୀବନବ୍ୟାପୀ ଏକ ସଂଗ୍ରାମ, ଏବଂ ସେଇ ପ୍ରେକ୍ଷିତରେ, ଲେନିନ୍‌କଥିତ ସିଭିଲ୍‌ୱର୍ ବା ଗୃହଯୁଦ୍ଧ । ଏ ଯୁଦ୍ଧ ଦୀର୍ଘକାଳଧରି ଚାଲିବନାହିଁ, ନିର୍ଭରକରିବ ବିବର୍ତ୍ତନର କୋଉ ଐତିହାସିକ ପର୍ଯ୍ୟାୟରେ ଆସି ପହଞ୍ଚିଚି ସ୍ଥିତ ସମାଜ, ସେଇ ନିର୍ଣ୍ଣୟ ଉପରେ । ହାର୍‌ମନି ବା ଐକତାନ ଜଗତର ନିୟମ; ଯିଏ ବା ଯା ତାକୁ ପ୍ରତିହତକରେ, ଏକାବେଳକେ ଅନୈତିକ । ସେଇ ଐକତାନ ସପକ୍ଷରେ ତ ପରାର୍ଥବାଦୀଙ୍କ ଆତ୍ମଦାନ !

କ୍ୟାପିଟାଲିସ୍ମ ନିଜକୁ ପୁନର୍ଗଠିତକରିଚି ମାନେ, ତୃତୀୟବିଶ୍ୱକୁ ଦୋହନର ପ୍ରଣାଳୀ ଯାଇଚି ବଦଳି; ସେ ପ୍ରଣାଳୀରେ ଅଂଶୀଦାର ହୋଇଚି ସ୍ଥାନୀୟ ବୁର୍ଜୋୟା । ଉପନିବେଶର ଅବସାନ ତେଣୁ କ୍ୟାପିଟାଲିସ୍ମ ଦିହରୁ କଳଙ୍କ ପୋଛିଦେଇଚି କିୟତ୍ ପରିମାଣ; ଶୋଷଣ ହୋଇଚି ପରୋକ୍ଷ । ସ୍ଥାନୀୟ ବୁର୍ଜୋୟା କାମଟା ସମାଧା କରିଦେବା ଫଳରେ ଦୋହନ ଆଉ ଲୁଣ୍ଠନ ଭଳି ଦିଶୁନାହିଁ । ତୃତୀୟବିଶ୍ୱର ରାଷ୍ଟ୍ର ମଧ୍ୟ ଅନୁଧାବନକରୁଚି କେନ୍‌ସୀୟ ଡିମ୍ୟାଣ୍ଡ୍ ମ୍ୟାନେଜ୍‌ମେଣ୍ଟ୍ କୌଶଳ; ଦମନପୀଡ଼ନକାରୀ ରାଷ୍ଟ୍ର ତେଣୁ ବାହାରକୁ ଦିଶୁଚି ଜନମଙ୍ଗଳରେ ନିବେଦିତପ୍ରାଣ । ଗୋଲ୍ଡ ଷ୍ଟାଣ୍ଡାର୍ଡ ବାତିଲ୍ ହୋଇଯିବା ଫଳରେ, କଳହ ପରିବର୍ତ୍ତେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ମଧ୍ୟରେ ବିରାଜକରୁଚି ଶୃଙ୍ଖଳା; ଉତ୍ପାଦନର ଅଭିବୃଦ୍ଧି ତେଣୁ ନିର୍ବାଧ, ଏବଂ ପ୍ରଯୁକ୍ତିର ବିକାଶ, ଯୁଦ୍ଧ ଯାହାକୁ ଅବରୁଦ୍ଧକରି ରଖିଥିଲା, ପାଇଚି ଏକ୍ଷଣି ପୁନର୍ଜୀବନ । ପୁଣି ବାଣିଜ୍ୟର ସର୍ତ୍ତ ଯେହେତୁ କୃଷିଜାତପଣ୍ୟ ବିପକ୍ଷରେ, ଶ୍ରମଜୀବୀଶ୍ରେଣୀର ଆବଶ୍ୟକ ଖାଦ୍ୟପେୟ ଶସ୍ତାରେ ଆମଦାନି କରାଯାଇପାରୁଚି ତୃତୀୟବିଶ୍ୱରୁ । ମୁଦ୍ରାସ୍ଫୀତି ତେଣୁ ସମସ୍ୟା ନୁହେଁ । ବୁଝାପଡୁଚି, କର୍ମକ୍ଷମ ଲୋକଙ୍କୁ ଯୋଗ୍ୟତା ଅନୁସାରେ, କାମଧନ୍ଦା ଯଦି ଯୋଗାଇଦେଇପାରେ କ୍ୟାପିଟାଲିସ୍ମ, ଜୀବନନିର୍ବାହର ନିତ୍ୟାବଶ୍ୟକ ଉପକରଣ ସମସ୍ତଙ୍କ ପାଇଁ ହୋଇପାରିବ ସୁଲଭ, ସମାଜତନ୍ତ୍ରର ପ୍ରୟୋଜନ ତେଣୁ ଘୁଞ୍ଚିଯିବ ଦୂରରୁ ଆହୁରି ଦୂରକୁ । ମାତ୍ର କ୍ୟାପିଟାଲିସ୍ମର ଗଠନତନ୍ତ୍ର ବିଚିତ୍ର; ତାର ଅର୍ଥନୀତିକ ଲଜିକ୍ ମଣିଷର ଶ୍ରମକୁ ପ୍ରଯୁକ୍ତି ଦ୍ୱାରା ସ୍ଥାନଚ୍ୟୁତ କରିବାକୁ ବାଧ୍ୟ, ନିତ୍ୟାବଶ୍ୟକ ପଣ୍ୟର ଉତ୍ପାଦନ ମଧ୍ୟ ତାର ଲକ୍ଷ୍ୟ ନୁହେଁ । ଏକମାତ୍ର ଚାଳିକାଶକ୍ତି ଉଦ୍‌ବୃତ୍ତ-ଆହରଣ । କାହିଁକିନା, ଉଦ୍‌ବୃତ୍ତ ଛଡ଼ା ପୁଞ୍ଜି ଗଠିତ

ହୋଇପାରେନା; ସେଇ ଉଦ୍‌ବୃତ୍ତ ଆହରଣପାଇଁ ଶ୍ରମକୁ ଶୋଷଣକରିବା ଛଡା ତାର ଗତ୍ୟନ୍ତର ନାହିଁ । ଗତ୍ୟନ୍ତର ନାହିଁ ପର୍ଯ୍ୟାବରଣକୁ ଦୂଷିତକରିବା ଛଡ଼ା । ଗୂଢ଼ ଅର୍ଥରେ ତେଣୁ ଧନତନ୍ତ୍ର ଖାଲି ଅନୈତିକ ନୁହେଁ, ଅମାନବିକ । ସ୍ୱାଭାବିକଭାବେ ସାଧାରଣଲୋକର ସମର୍ଥନ ପାଇପାରେନା; ପାରେନା ବୋଲି, ତାର ଏକମାତ୍ର ରକ୍ଷାକବଚ ରାଷ୍ଟ୍ରଶକ୍ତି । ଯେପରି, ପୃଥିବୀସାରା ରାଷ୍ଟ୍ର ଏକ୍ଷଣି କରଦାତା ପଇସାରୁ କଂପାନୀମାନଙ୍କ ଲୋକସାନ୍ ଭରଣାକରୁଚି ନିଷ୍କଳୁଷ ଚିତ୍ତରେ । କ୍ୟାପିଟାଲିସ୍ମ ତେଣୁ ଜାତୀୟତାବାଦକୁ କାମରେ ଲଗାଇବାକୁ ହେଳାକରିନାହିଁ । କର୍ମସଂସ୍ଥାନ ଓ ଉତ୍ପାଦନବୃଦ୍ଧି ହୋଇଯାଇଚି ପ୍ରତ୍ୟକ୍ଷଭାବେ ରାଷ୍ଟ୍ରର ଦାୟିତ୍ୱ । ଅଥଚ ଜନମାନସରେ ସମାଜତନ୍ତ୍ରର ତତ୍ତ୍ୱାବଳୀ ପ୍ରତିଭାତହୋଇଚି ନିସ୍ତେଜ, ଏବଂ ହେଉଚି ବୋଲି, ତୃତୀୟବିଶ୍ୱର ରାଷ୍ଟ୍ର ଗ୍ରହଣକରିଚନ୍ତି ଧନତାନ୍ତ୍ରିକ ଉନ୍ନୟନର ଆଦର୍ଶ । ଇତିହାସର ଉପହାସ, ଏଇ ଆଦର୍ଶର ବାସ୍ତବାୟନ ସକାଶେ ଉପନିବେଶଗୁଡ଼ାକୁ କରାଯାଇଚି କ୍ରମାଗତ ଦୋହନ ! ତେଣୁ, ସ୍ୱଭୂମିରେ ଯେତେ ବାହାଦୁରିକରୁଚି କରୁ, ଅନଗ୍ରସର ଅଂଚଳର ଉନ୍ନୟନକୁ କ୍ୟାପିଟାଲିସ୍ମ ଅବରୁଦ୍ଧକରିବ ସାମ୍ରାଜ୍ୟବାଦ ଖୁଣ୍ଟରେ ବାନ୍ଧି, କାହିଁକିନା, ଉପନିବେଶ ବିଦ୍ୟମାନ ଥିଲା ଯେତେବେଳେ, ସାମନ୍ତତନ୍ତ୍ରକୁ ଭାଙ୍ଗିନାହିଁ, କରିଚି କୋଲାବୋରେଟର୍ । ସମାଜତନ୍ତ୍ର ତେଣୁ ହଠାତ୍ ଆସିବନାହିଁ, ଆସିବ ପର୍ଯ୍ୟାକ୍ରମେ । କାହିଁକିନା, ଚୀନ୍ ଆଉ ଭିଏତ୍‌ନାମ୍ ସମାଜତନ୍ତ୍ର ନାଁରେ ଯୋଉ ବାଟ ଧରିଚନ୍ତି, ସେବାଟରେ ଆର୍ଥିକ ଉନ୍ନତି ଘଟିଚି ସିନା, ଯୋଉ ରାଜନୀତି ବଳରେ ଘଟିଚି, ସେଥିରୁ ଉପୁଜିଚି ଏପରିସବୁ କଣ୍ଟ୍ରାଡିକ୍ସନ୍, ସମାଜତନ୍ତ୍ରର ଧ୍ୟାନଧାରଣା ଯାର କିନାରା କରିପାରେନା । ଅର୍ଥାତ୍, ସମାଜତନ୍ତ୍ର ଦିଶୁଥିଲା ଯେତେବେଳେ ଭବିଷ୍ୟତହୀନ ଓ ନିଷ୍ପ୍ରଭ, ଏମିତି କେତେଗୁଡ଼ା ନୂତନ ସର୍ତ୍ତ ଆବିର୍ଭୂତହୋଇଚି ପୁନର୍ଭବ ସମ୍ଭାବନାକୁ କରୁଚି ଯା ଉଜ୍ଜ୍ୱଳ । କାହିଁକିନା, ଯୁଦ୍ଧୋତ୍ତର ଜଗତରେ ଧନତନ୍ତ୍ରକୁ ଚିତ୍ତାକର୍ଷକ କରିଥିଲା ବୈଷୟିକ ଅଭିବୃଦ୍ଧିର ଉଚ୍ଚ ହାର, କର୍ମସଂସ୍ଥାନର ଉଚ୍ଚ ସ୍ତର, ଆଉ ଜନକଲ୍ୟାଣର ରାଷ୍ଟ୍ରୀୟ ବିଧିବ୍ୟବସ୍ଥା । ଫିନାନ୍ସ କ୍ୟାପିଟାଲ୍ ଆକାଶପଥରେ ବିଶ୍ୱଭ୍ରମଣ କରିବା ଦିନରୁ, ସବୁଥିରେ ଦେଖାଦେଇଚି, ଭୟାନକ ଅବନତି । ଫିନାନ୍ସ କ୍ୟାପିଟାଲ୍ କର୍ମନିଯୋଗର ସୁଯୋଗ ସୃଷ୍ଟିକରିପାରେନା କି ଜନକଲ୍ୟାଣ ବାବଦରେ କରିପାରେନା ପୁଞ୍ଜି ବିନିଯୋଗ । ସମାଜତନ୍ତ୍ରକୁ ତେଣୁ ମୁକାବିଲାକରିବାକୁ ପଡୁଚି ଜନକଲ୍ୟାଣ ସାଙ୍ଗକୁ ଜନକଲ୍ୟାଣବିରୋଧିତା । କୌଣସି ସାମାଜିକ ପ୍ରପଞ୍ଚ ଓ ତାର ଅସ୍ୱୀକୃତି ଯେତେବେଳେ ଏକାସାଙ୍ଗରେ ସକ୍ରିୟ, ସୂଚନାକରିବ ଟ୍ୟେନ୍‌ଜିସନ୍ ବା ଅଭିସରଣ । ଫିନାନ୍ସ କ୍ୟାପିଟାଲ୍ ଯେହେତୁ ଜାତିରାଷ୍ଟ୍ରର ସୀମା ମାନେନା କି ସାମ୍ରାଜ୍ୟବାଦୀ

ରାଷ୍ଟ୍ରମାନଙ୍କ ଅନ୍ତର୍କଳହରେ ଲିପ୍ତହୁଏନା, ଯେକୌଣସି ରାଷ୍ଟ୍ରର ଫିନାନ୍ସ କ୍ୟାପିଟାଲକୁ, ବିନା ପ୍ରତିଦ୍ୱନ୍ଦ୍ୱିତାରେ, ଅଙ୍ଗୀଭୂତ କରିନେଇପାରେ । ଏ ପୁଞ୍ଜିର ବିରାଟ ଅଂଶ ଯେହେତୁ ଅଗ୍ରସର ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରୁ ବାହାରି ଅନ୍ୟତ୍ର ବିଚରଣକରେ, ଉଷ୍ମମୁଖର ହିଗେମନି ଅବିସମ୍ବାଦିତ; ମାତ୍ର ଏ ପୁଞ୍ଜି ସଂଘବଦ୍ଧ ଓ ଆନ୍ତର୍ଜାତିକ; ଶିଳ୍ପଉଦ୍ୟୋଗ ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ନୁହେଁ । ଜାତୀୟ ସ୍ତରରେ ଅର୍ଥନୀତିକ ପରିକଳ୍ପନା ସେଥିପାଇଁ ପ୍ରାସଙ୍ଗିକତା ହରାଇବସିଚି । ବିନିଯୋଗକାରୀଙ୍କୁ ମୁଦ୍ରାସ୍ଫୀତି ଘଉଡ଼ାଇଦେଉଚି ବୋଲି, କେନ୍‌ସୀୟ ଡିମ୍ୟାଣ୍ଡ୍ ମ୍ୟାନେଜ୍‌ମେଣ୍ଟ୍ ମଧ୍ୟ ବାଧାପାଉଚି । ବାତାବରଣ ଏପରି ପ୍ରତିକୂଳ ଯେ ଉତ୍ପାଦନ ଓ ବଣ୍ଟନ ପ୍ରକ୍ରିୟାରୁ ଓହରିଯିବାକୁ ବାଧହେଉଚି ରାଷ୍ଟଶକ୍ତି । ଏ ଅବସ୍ଥାରେ ଜାତୀୟତାବାଦ କି ଜନକଲ୍ୟାଣ ବେଶିଦିନ ତିଷ୍ଠି ରହିପାରେନା; ଏବଂ ଫଟକାବାଜି ଯଦି ରାଜତ୍ୱକରେ ଜାତିରାଷ୍ଟ୍ରର ଅର୍ଥବ୍ୟବସ୍ଥାରେ, ସମାଜତନ୍ତ୍ର ହୋଇଯିବ ଦୂରଅସ୍ତ୍ ।

ମାତ୍ର ଅଗ୍ରସର ଦେଶ ମଧ୍ୟ ଫିନାନ୍ସ କ୍ୟାପିଟାଲ୍ ଆକ୍ରମଣରୁ ରକ୍ଷା ପାଉନାହାଁନ୍ତି; ନିଶ୍ଚଳ ଅବସ୍ଥାକୁ ଏଡ଼ାଇବା ସକାଶେ ସେମାନେ ମଧ୍ୟ ତୃତୀୟବିଶ୍ୱକୁ ହିଁ ମୁହଁଫେରାଇବେ । ପୁଞ୍ଜିର କେନ୍ଦ୍ରୀକରଣ ଆନ୍ତର୍ଜାତିକ ସ୍ତରରେ ଏପରି ତୁଙ୍ଗକୁ ଯିବ (ଯାଉଚି) ଯେ କ୍ଷୁଦ୍ରପୁଞ୍ଜି ଉତ୍ପାଦନର ପରିସର ଆଉ ଖୋଜିପାଇବନାହିଁ ସୀମାନ୍ତବର୍ତ୍ତୀ ଅଂଚଳରେ । ତୃତୀୟବିଶ୍ୱର ପ୍ରଯୁକ୍ତିବିଦ୍ ଓ ବିଜ୍ଞାନୀ ତେଣୁ ଅପେକ୍ଷାକୃତ ଅଳ୍ପ ବେତନରେ ଅଗ୍ରସର ଦେଶକୁ ଚାଲିଯିବାକୁ ବାଧହେବେ (ହେଉଚନ୍ତି) । ଔପନିବେଶିକ ରାଜତ୍ୱରେ ଯୋଉ ଶ୍ରମବିଭାଜନ ଚାଲୁହୋଇଥିଲା, ପୁଣି ଫେରିଆସିବ (ଆସୁଚି) । କୃଷକ ମଧ୍ୟ ବାଧହେଉଚି ଧାନଗହମ (ଖାଦ୍ୟଶସ୍ୟ) ଜାଗାରେ କେବଳ ରପ୍ତାନିଯୋଗ୍ୟ ପଣ୍ୟ ଉତ୍ପାଦନକରିବାକୁ, ଯେପରି ଚିଙ୍ଗୁଡ଼ି, ଗଞ୍ଜାଇ, ଆଖୁ । ମହାରାଷ୍ଟ୍ର ଆଉ ଗୁଜୁରାଟ ଖାଦ୍ୟଶସ୍ୟ ଉତ୍ପାଦନ ଛାଡ଼ିଦେଲେଣି । ଖାଦ୍ୟଶସ୍ୟରେ ସ୍ୱାବଲମ୍ବୀ ହେବା ଭାରତ ପକ୍ଷରେ ହୋଇପଡୁଚି ଦୁଃସ୍ୱପ୍ନ; ଅଥଚ କୃଷିକୁ ଦିଆଯାଉଥିବା ଭର୍ତ୍ତୁକି କମିଯାଉଚି ବର୍ଷକୁ ବର୍ଷ । ପୁଣି, ବିଦେଶୀ ପୁଞ୍ଜି ଆକର୍ଷଣକରିବାକୁ ତୃତୀୟବିଶ୍ୱର ରାଷ୍ଟ୍ରମାନଙ୍କ ଭିତରେ ଲାଗିରହିଚି ପ୍ରତିଯୋଗିତା; ଇଣ୍ଡଷ୍ଟ୍ରୀ ଉପରୁ କରଭାର ତେଣୁ ହ୍ରାସକରାଯାଉଚି କ୍ରମାଗତ । ଅନ୍ୟ ଶବ୍ଦରେ, ଯୋଉ କାରଣସମୂହ ଏକଦା ଗ୍ରହଣଯୋଗ୍ୟ କରିଥିଲା କ୍ୟାପିଟାଲିସ୍ମକୁ, ତା' ମିଆଦ ଶେଷକରିଦେଇଚି ଆନ୍ତର୍ଜାତିକ ଫିନାନ୍ସ କ୍ୟାପିଟାଲ୍ । କ୍ୟାପିଟାଲିସ୍ମ ଏକ୍ଷଣି ଶାଗୁଣା ଭଳି ଉଡ଼ିବୁଲୁଚି ପୃଥିବୀ ଉପରେ, ଏବଂ ପରିଣାମରେ, ଉଦ୍ରେକକରୁଚି ସର୍ବବ୍ୟାପୀ ଅସନ୍ତୋଷ, କ୍ରୋଧ ଓ ସ୍ୱପ୍ନଭଙ୍ଗ, ଯା ଦିନକୁ ଦିନ ତୀବ୍ରହେବା ସ୍ୱାଭାବିକ । ତେବେ, ଖାଲି ଏଇ କାରଣରୁ ସମାଜତନ୍ତ୍ରର ପୁନର୍ଭବ ଘଟିଯିବନାହିଁ ରାତାରାତି ।

ମେଟ୍ରପଲିଟାନ୍ କ୍ୟାପିଟାଲିସ୍ମକୁ ବିଭିନ୍ନ କୋଣରୁ ବିଭିନ୍ନ ଧରଣର ପ୍ରତିରୋଧ ଆସୁଚି; ଯେପରି, ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନ କି ଇସ୍‌ଲାମିକ୍ ମୌଳବାଦ । ଏଗୁଡ଼ାକ ରୋଷାଗ୍ନି ମାତ୍ର, ଫଳପ୍ରସୂ ପ୍ରତିରୋଧ ନୁହେଁ; ସମାଜତନ୍ତ୍ର ହିଁ ଏକମାତ୍ର ପ୍ରତିସ୍ପର୍ଦ୍ଧୀ ପ୍ରତ୍ୟାଘାତ; ଅତିକ୍ରମ କରିପାରେ ଧନତନ୍ତ୍ର ରୂପକ ଷ୍ଟ୍ରକ୍‌ଚର୍‌କୁ । ଏବଂ, ସେଇ ସୂତ୍ରରେ, ଯୋଗାଇଦେଇପାରେ ସଂଗ୍ରାମର ତତ୍ତ୍ୱଭିତ୍ତି, ନୂଆ ଏକ ସକାଳ ପାଇଁ ସ୍ୱପ୍ନ ଆଉ ସାଧନା । ପ୍ରାଥମିକ ପର୍ଯ୍ୟାୟରେ, ସେ ସଂଗ୍ରାମ ସମାଜତନ୍ତ୍ରକୁ କରିବନାହିଁ ଏକମାତ୍ର ଲକ୍ଷ୍ୟ, ଗଣତନ୍ତ୍ରର ଦୃଢ଼ୀକରଣ ହେବ ପ୍ରଧାନ କୃତ୍ୟସୂଚୀ; ଅର୍ଥାତ୍ ଜନମାନସରେ ସାମ୍ୟ ଆଉ ଐକ୍ୟର ଆଦର୍ଶକୁ ବଦ୍ଧମୂଳ ପ୍ରତିଷ୍ଠା । ଜାତୀୟତାବାଦକୁ ଛାଡ଼ି ସେକାମ ହୋଇପାରେନା । ଶୁକପକ୍ଷୀ ପରି ଆନ୍ତର୍ଜାତିକତାର ବୋଲି ଶୁଣାଇଲେ କାହାରି ମନକୁ ଭେଦିବନାହିଁ; ଇତିହାସ କହିଦେଇଚି, 'ଆନ୍ତର୍ଜାତିକ' କାର୍ଯ୍ୟକାରୀ କୋଉ ପ୍ରତୀତି ନୁହେଁ; ସାଂପ୍ରତିକ ପ୍ରେକ୍ଷିତରେ ବରଂ ଭ୍ରାନ୍ତଚୈତନ୍ୟ, ଯେପରି ଆନ୍ତର୍ଜାତିକ ଫିନାନ୍ସ କ୍ୟାପିଟାଲ୍ । ମାଟି ଭେଦକରି ଯୋଉ ସମାଜରେ ଗଣତନ୍ତ୍ରର ଚେର ଗଭୀରକୁ ଯାଇନାହିଁ, ଡିକ୍ଟେଟର୍ ବାହାରିଚନ୍ତି ସେଇଠୁ, ସେ ଡିକ୍ଟେଟର୍ ଫ୍ୟାସିବାଦର ବୁଲି ଆଉଡ଼ାଉ କି କମିଉନିଜ୍ମର । ପ୍ରଲେତାରିଏତ୍ ଚାହେଁ ଶୋଷଣ ଓ ପ୍ରଭୁତ୍ୱର ବିଲୋପ, ଡିକ୍ଟେଟରସିପ୍ ତେଣୁ ତାର ଅଭିପ୍ରେତ ନୁହେଁ, କୋଉହେଲେ ସମାଜରେ ବହୁବ୍ୟବହାରରେ ଘଷରା ହୋଇଯାଇଥିବା ପୁରୁଣା ପ୍ରଲୋଭନଗୁଡ଼ାକୁ ପସରା କରି ନିଷ୍ପେଷିତକୁ ଏକତ୍ରକରିବା ଦୁଷ୍କର; ଅଥଚ ସମାଜତାନ୍ତ୍ରିକ ଆନ୍ଦୋଳନକୁ ଆଗଇନେବା ପାଇଁ ଯଥେଷ୍ଟ କାରଣ କ୍ରମଶଃ ଆତ୍ମପ୍ରକାଶ କରୁଚି । ତଥାପି, ପରାର୍ଥବାଦୀଙ୍କ କାମକୁ ଅପେକ୍ଷାକୃତ କ୍ଳେଶସାଧ କରିବ ପୁରୁଣା ପ୍ରକଳ୍ପ ଓ ତାର ନୂଆ ସଂସ୍କରଣ ମଧ୍ୟସ୍ଥ ପ୍ରଭେଦ । କାହିଁକିନା, ୧୯୪୫ ପର୍ଯ୍ୟନ୍ତ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ ଯୋଉ ପ୍ରତିଦ୍ୱନ୍ଦ୍ୱିତା ଗଢ଼ିଉଠିଥିଲା, ଏକ୍ଷଣି ପରିଣତହୋଇଚି ନିଚ୍ଛିଦ୍ର ମୈତ୍ରୀ; ଅର୍ଥାତ୍ ଯୋଉ କଣ୍ଟ୍ରାଡିକ୍ସନ୍ ଯୁଦ୍ଧପୂର୍ବବର୍ତ୍ତୀ ସମାଜତାନ୍ତ୍ରିକ ପ୍ରକଳ୍ପକୁ କାର୍ଯ୍ୟକାରୀ କରିଥିଲା, ସାଂପ୍ରତିକ ସାମ୍ରାଜ୍ୟବାଦ ସେଥିରୁ ସଂପୂର୍ଣ୍ଣ ସ୍ୱାଧୀନ ।

ତେବେ, କହିହେବନାହିଁ ପ୍ରତିଦ୍ୱନ୍ଦ୍ୱିତା ଫେର୍ ଆରମ୍ଭହେବ କି ନାହିଁ କିମ୍ବା ସୁପ୍ତ ଅବସ୍ଥାରେ ରହିଚି ଯୋଉ ଦ୍ୱେଷ ହେବନାହିଁ ଭବିଷ୍ୟତ ବିସ୍ଫୋରଣର କାରଣ । ମାତ୍ର, ତୃତୀୟବିଶ୍ୱ ପ୍ରେକ୍ଷିତରେ, ଏକ୍ଷଣି ତାଙ୍କ ଉଦ୍ଦେଶ୍ୟବିଧେୟ ଅଭିନ୍ନ । ଆଉ ତାଙ୍କ ନିଜ ଦେଶର ବୁର୍ଜୋୟା ମଧ୍ୟ ତାଙ୍କ ସାଙ୍ଗରେ ଏକାରାସ୍ତା ଓ ଏକାଲକ୍ଷ୍ୟରେ ଚାଲିବାକୁ ପୂର୍ବାପେକ୍ଷା ବେଶି ତତ୍ପର, ବୁର୍ଜୋୟାର ଶ୍ରେଣୀସ୍ୱାର୍ଥ ଯେହେତୁ ଆନ୍ତର୍ଜାତିକ

ବୁର୍ଜୋୟାସ୍ୱାର୍ଥରେ ନିମଜ୍ଜିତ ହେବାକୁ ଲାଗିଚି ଦିନକୁ ଦିନ । ସମ୍ଭାବ୍ୟ କାରଣ ହୋଇପାରେ ଅର୍ଥନୀତିକ ଉନ୍ନୟନ, ଅର୍ଥାତ୍ ଉତ୍ପାଦନବଣ୍ଟନ କ୍ଷେତ୍ରରୁ ରାଷ୍ଟ୍ର ଯେତେବେଳେ ନିଜକୁ ଅପସୃତ କରୁଚି, ଆନ୍ତର୍ଜାତିକ ଫିନାନ୍ସ ସାଙ୍ଗରେ ହାତ ନମିଳାଇଲେ ସ୍ଥାନୀୟ ବୁର୍ଜୋୟା ନୁକ୍‌ସାନ୍ ସମ୍ଭାଳି ପାରିବନାହିଁ । ପୁଣି ରାଷ୍ଟ୍ରପରିଚାଳିତ କ୍ୟାପିଟାଲିସ୍ମ (ପବ୍ଲିକ୍‌ସେକ୍ଟର) ଯଦି ଲୋପପାଇଯାଏ, ସାର୍ବଭୌମ ରାଷ୍ଟ୍ରକୁ ମଧ୍ୟ ସାମ୍ରାଜ୍ୟବାଦ ସାଙ୍ଗରେ ରଫାକରିବାକୁ ପଡ଼ିବ; ନହେଲେ, ଜନରୋଷରୁ ଅସ୍ତିତ୍ୱ ରକ୍ଷାକରିବା ଦୁଃସାଧ୍ୟ । କଣ୍ଟ୍ରାଡିକ୍ସନ୍ ତେଣୁ ରାଷ୍ଟ୍ରର ଅସ୍ତିତ୍ୱ ରକ୍ଷା ଆଉ ଖଟିଖିଆ ମଣିଷର ଜୀବନରକ୍ଷା ମଧ୍ୟସ୍ଥ ସାକ୍ଷାତ୍ ବୈପରୀତ୍ୟ । ସେଇ ବୈପରୀତ୍ୟ ତେଣୁ ସମାଜତାନ୍ତ୍ରିକ ସଂଗ୍ରାମର ଚାଳିକାଶକ୍ତି । ଆନ୍ଦୋଳନର ଗତିପ୍ରକୃତି ସେଥିପାଇଁ ପୂର୍ବାପେକ୍ଷା ଜଟିଳ ଓ ଦୁର୍ଗମ ।

ଏବଂ, ଏ ସଂଗ୍ରାମର ନେତୃତ୍ୱ ଆସିବ ଶ୍ରମଜୀବୀଶ୍ରେଣୀ ପାଖରୁ, କାହିଁକିନା, ସଂଗ୍ରାମର ପରିସରକୁ ସଙ୍କୁଚିତକରିବାକୁ ଚେଷ୍ଟାକରିବ ସ୍ଥାନୀୟ ବୁର୍ଜୋୟା । ଅଥଚ ୧୯୪୫ ପୂର୍ବବର୍ତ୍ତୀ ସାମ୍ରାଜ୍ୟବାଦୀଶକ୍ତିଙ୍କ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତା ସେ ପରିସରକୁ କରିଥିଲା ପ୍ରଶସ୍ତ ଓ ପ୍ରସାରିତ । ଦଳମତ ନିର୍ବିଶେଷରେ ଆନ୍ଦୋଳନର ଭିତ୍ତି ହେବ ତେଣୁ 'ଜାତୀୟ' । ଜାତୀୟ ହେଲେଯାଇ ସର୍ବାଧିକ ଲୋକଙ୍କୁ ମୋବିଲାଇଜ୍ କରିବା ସମ୍ଭବପର; ଏବଂ କେବଳ ଏଇ ବାଟରେ ସଂଗ୍ରାମର ସ୍ୱଭାବ ହୋଇପାରେ ଗଣତାନ୍ତ୍ରିକ, ବିଶେଷତଃ ଯେହେତୁ, ଅର୍ଥବ୍ୟବସ୍ଥାର ଉଦାରୀକରଣ ଜାତି-ଧର୍ମ-ଆଞ୍ଚଳିକତା ଭଳି ବିଭେଦଗୁଡ଼ାକୁ ଉସ୍‌କାଇଦେବାକୁ ଉତ୍ସୁକ । ଜାତୀୟଚେତନାକୁ ଗଢ଼ିଥିଲା ସାମ୍ରାଜ୍ୟବିରୋଧୀ ସଂଗ୍ରାମ; ଏକ୍ଷଣି ରାଷ୍ଟ୍ର ଖାଲି ଅପୋଷକରିନାହିଁ ସାମ୍ରାଜ୍ୟବାଦ ସାଙ୍ଗରେ, ସାମ୍ରାଜ୍ୟବାଦର କୃତ୍ୟସୂଚୀକୁ ଆଣି ଲଦିଦେଇଚି ଦେଶ ଉପରେ; ଜାତୀୟଚେତନା ତେଣୁ ଖଣ୍ଡବିଖଣ୍ଡ । ଅର୍ଥନୀତି କରିଦେଇଚି ଯେତେବେଳେ ସାହାଣମେଲା, ରାଷ୍ଟ୍ର ବି ପ୍ରତ୍ୟାହାର କରିନେଇଚି ନିୟନ୍ତ୍ରଣ । ବ୍ୟାପକ କର୍ମହୀନତା ତେଣୁ ବିଭେଦଗୁଡ଼ାକୁ ଫ୍ୟାସିଜ୍ମ ଆଡକୁ ଟାଣିନେବା ବିଚିତ୍ର ନୁହେଁ । ତା ଛଡ଼ା, କ୍ୟାପିଟାଲିସ୍ମ ତିଆରିକରିବାକୁ ଉଦ୍ୟମହେଉଚି ଏଠି ସାମନ୍ତତାନ୍ତ୍ରିକ ଆଉ ଅଧାସାମନ୍ତତାନ୍ତ୍ରିକ ମୂଳଦୁଆ ଉପରେ; ବିଭେଦପ୍ରବଣତାକୁ ସେଭଳି ଅଭିସରଣ ପୁଷ୍ଟକରିବା ସ୍ୱାଭାବିକ; ମାତ୍ର ଗଣତନ୍ତ୍ରକୁ ଲଣ୍ଡଭଣ୍ଡକରିଦେବା ପାଇଁ ଏଗୁଡ଼ିକର ସମ୍ମିଳିତ ପ୍ରଭାବ ସାମାନ୍ୟ ନୁହେଁ । ବିଭେଦ ତିଆରିକରୁଚି ଯୋଉ ପ୍ରବଣତା, ତା ମୂଳରେ କାମକରୁଚି ସାମନ୍ତତାନ୍ତ୍ରିକ/ଅଧାସାମନ୍ତତାନ୍ତ୍ରିକ ଅନେକ ସାମାଜିକ ଅନୁଷ୍ଠାନ; କ୍ୟାପିଟାଲିସ୍ମ ତୋଳାହେଉଚି ସେଇ ଅନୁଷ୍ଠାନ ଉପରେ ଭରା ଦେଇ; ନବ୍ୟସାମ୍ରାଜ୍ୟବାଦ କିନ୍ତୁ ସେଇ ଷ୍ଟ୍ରକ୍‌ଚରଗୁଡ଼ିକୁ ନିଷ୍କ୍ରିୟକରିବା ପରିବର୍ତ୍ତେ

କ୍ରମାଗତ ଉଦ୍‌ଜୀବିତ କରିଚାଲିଚି । ସମାଜତାନ୍ତ୍ରିକ ସଂଗ୍ରାମ ସେଇ ଷ୍ଟ୍ରକ୍‌ଚର୍‌ଗୁଡ଼ିକୁ ଧ୍ୱଂସକରିବା ଅବଶ୍ୟମ୍ଭାବୀ । ଇତିହାସରୁ ଦିଶୁଚି, କେବଳ ଗଣତାନ୍ତ୍ରିକ ସଂଗ୍ରାମକାଳରେ ହିଁ ସମାଜତାନ୍ତ୍ରିକ ଉଦ୍ଦୀପନା ସମୃଦ୍ଧହୋଇଚି, ଆଜି ମଧ୍ୟ ସାମ୍ରାଜ୍ୟବିରୋଧୀ ଜାତୀୟ ଆନ୍ଦୋଳନ ସଂଗଠିତ କରିବାବେଳେ ସେଇ ଗଣତନ୍ତ୍ରକୁ କାମରେ ଲଗାଇବା ଦରକାର, ଜାତୀୟତା ଯେହେତୁ ଗଣତନ୍ତ୍ର ଓ ସାମ୍ରାଜ୍ୟବାଦବିରୋଧ ସହିତ ଏକସୂତ୍ରରେ ହିଁ ଗ୍ରଥିତ ।

ଫିନାନ୍ସ କ୍ୟାପିଟାଲ୍ ଭଳି ଆନ୍ତର୍ଜାତିକ ପ୍ରପଞ୍ଚ 'ଜାତୀୟ' ଧାରଣାକୁ କାଳବିରୁଦ୍ଧ ଅର୍ଥାତ୍ ଅଚଳ ବୋଲି ବୁଝାଇବାକୁ ଚେଷ୍ଟାକରିବା ମାତ୍ର ଜାତୀୟତାର ଚେର କାଟିପାରିବନାହିଁ ଭାରତ ଭଳି ବିପୁଳାୟତନ ପ୍ରାଚୀନ ଭୂଖଣ୍ଡରେ । ଏକାମ ପାଇଁ ଯୋଉ ସଂଗଠନ ଦରକାର, ସେଥିରୁ କିଛି କିଛି ତିଆରିହେଲାଣି, ଯେପରି ପଞ୍ଚାୟତ ଓ ସମପର୍ଯ୍ୟାୟର ଢେର ଅନୁଷ୍ଠାନ, ଯୋଉଥିରେ ସାଧାରଣଲୋକ ଗ୍ରହଣକରିପାରେ ସକ୍ରିୟ ଅଂଶ । ସେଗୁଡ଼ିକର ଦୃଢ଼ୀକରଣ ଓ ସଂପ୍ରସାରଣ ହୋଇପାରେ ନୂଆ ସମାଜତନ୍ତ୍ରର କର୍ତ୍ତବ୍ୟ । ଅର୍ଥାତ୍, ଆହୁରି ବ୍ୟାପକ ବିକେନ୍ଦ୍ରୀକରଣ । ସଂପଦ ଓ କ୍ଷମତାର ବିକେନ୍ଦ୍ରୀକରଣ ସଂପୂର୍ଣ୍ଣ ହେଲେସୁଦ୍ଧା ଲୋକଙ୍କ ଜୀବନମାନ ଯେ ପାଶ୍ଚାତ୍ୟ ଧନତାନ୍ତ୍ରିକ ଦେଶର ଜୀବନମାନର ସମକକ୍ଷ ହୋଇପାରିବନାହିଁ, ଆଗତୁରା ଓ ସ୍ପଷ୍ଟଭାବେ କହିଦେବାକୁ ପଡ଼ିବ, କହିଦେବାକୁ ପଡ଼ିବ ଯେ, ଉତ୍ପାଦନକ୍ଷେତ୍ରରେ ଧନତନ୍ତ୍ରକୁ ଅନୁସରଣକଲେ ବେକାରସମସ୍ୟା ମେଣ୍ଟିବନାହିଁ; କର୍ମହୀନତା ବା କର୍ମଚ୍ୟୁତି ବଢ଼ିବ ଲୋକସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ । ସେଭଳି ଉତ୍ପାଦନ-ପଦ୍ଧତିରୁ ପୂର୍ଣ୍ଣମାତ୍ରାରେ ଫାଇଦା ଉଠାଇବାକୁ ଆବଶ୍ୟକହେବ ବିଦେଶରୁ ପଣ୍ୟ ଓ ପ୍ରଯୁକ୍ତି ଆମଦାନି, ଏବଂ ବିଦେଶ ମାନେ ସାମ୍ରାଜ୍ୟବାଦୀ ରାଷ୍ଟ୍ର । ପଣ୍ୟ ଓ ପ୍ରଯୁକ୍ତି ପାଇବାକୁ ତାଙ୍କ ଉପରେ ନିର୍ଭରକରିବା ଅର୍ଥ ସାମ୍ରାଜ୍ୟବାଦ ପାଖରେ ନତିସ୍ୱୀକାର । ସେମାନେ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲେ, ସମସ୍ୟା ଉପୁଜନ୍ତା ନାହିଁ; ମାତ୍ର ପୁଞ୍ଜିବାଦୀ ରାଷ୍ଟ୍ର ଗୁଡ଼ାକୁ ଏକଜୋଟ୍‌କରିଚି ସାମ୍ରାଜ୍ୟବାଦ; ଯେମିତି ଇରାକ୍ କି ଆଫ୍‌ଗାନିସ୍ତାନ୍‌ରେ । ତା ଛଡ଼ା, ଉଦ୍‌ଭାବନ କି ଆବିଷ୍କାରର ମର୍ଯ୍ୟାଦା ଦେଇପାରେନା ଅନୁକରଣ କି ଅନୁସରଣ; ରଖିଦିଏ ଅଧସ୍ତନକରି । ସାମଜତନ୍ତ୍ରର ଲକ୍ଷ୍ୟ କିନ୍ତୁ ବିକଳ୍ପ ସମାଜବ୍ୟବସ୍ଥା; ସେ ସମ୍ଭାବନାକୁ ଅନ୍ତତଃ ଉତ୍ସାହ; ଏବଂ ସେଥିପାଇଁ, ମାନେ, ବୁର୍ଜୋୟା ମୂଲ୍ୟବୋଧକୁ ଅତିକ୍ରମ କରିବାପାଇଁ ଧନତନ୍ତ୍ରକୁ ମୁକାବିଲା । ଏଇ ଲକ୍ଷ୍ୟକୁ ଗ୍ରାହ୍ୟକରେନା ବୋଲି, ଦେଶରୁ ପଳାଇଯାଇ ବିଦେଶରେ ଆଶ୍ରୟଖୋଜେ ବୁର୍ଜୋୟା । ଅନ୍ୟ ଶବ୍ଦରେ, କେବଳ ଭୋଗ୍ୟପଣ୍ୟ ଉତ୍ପାଦନରେ ନୁହେଁ, ଜୀବନଯାପନ ଧରଣଧାରଣରେ ମଧ୍ୟ ଲୋଭମୋହ ଭଳି ବିଭେଦକାରୀ ପ୍ରବଣତାକୁ ଦମନକରିବା ଦରକାର; କହିଁକିନା,

ଭୋଗାସକ୍ତି ମଣିଷକୁ ସ୍ୱାର୍ଥପର କରିଦେଇ ସମାଜରେ ସୃଷ୍ଟିକରେ ଅନୈକ୍ୟ ଓ ଅଶାନ୍ତି । ତା ମାନେ ନୁହେଁ ଯେ ଲୋକ ବାବାଜି ହେବେ; ସମାଜତାନ୍ତ୍ରିକ ଅର୍ଥନୀତି ଅଧିକତର ଭୋଗ୍ୟପଣ୍ୟ ଓ ସୁଖସ୍ୱାଚ୍ଛନ୍ଦ୍ୟ ସୃଷ୍ଟିକରିବା ପର୍ଯ୍ୟନ୍ତ ଅପେକ୍ଷାକରିବାକୁ ପଡ଼ିବ । ଧୈର୍ଯ୍ୟଧରି ସେ ପ୍ରତୀକ୍ଷା ତ୍ୟାଗ ନୁହେଁ, କି ତିତିକ୍ଷା ନୁହେଁ ସମଚଣ୍ଟନର ପରିଣାମ ।

ଏ ଗୋଟିଏ ଦୃଷ୍ଟିକୋଣ ମାତ୍ର; ଅତୀତକୁ ବୁଝିବା ଯେହେତୁ ଅତୀତକୁ ସର୍ବାଂଶେ ସଂରକ୍ଷଣ ନୁହେଁ, ବର୍ତ୍ତମାନ ଆଲୋକରେ ପୁନର୍ଗଠନ ମାତ୍ର । ଅତୀତର ପଦଚିହ୍ନ ଲିଭାଇହେବନାହିଁ ସେଥିରୁ, କିନ୍ତୁ ବର୍ତ୍ତମାନକୁ ନିର୍ମାଣକରିବ ଅନ୍ତର୍ଦୃଷ୍ଟି । ପୁନର୍ଗଠନ, ଯେକୌଣସି ପୁନର୍ଗଠନ, ଅବିଚ୍ଛିନ୍ନ ଏକ ପ୍ରକ୍ରିୟା, କାଳପ୍ରବାହରେ ଯେହେତୁ ଅନ୍ତର୍ଦୃଷ୍ଟି ଦାବିକରୁଥିବ ସଂଶୋଧନ କିମ୍ବା ବିଶୋଧନ । କାହିଁକିନା, ବର୍ତ୍ତମାନ ଯେହେତୁ ଏକ ରଣକ୍ଷେତ୍ର, ପାରସ୍ପରିକ ଦ୍ୱାନ୍ଦ୍ୱିକତା ଭିତରଦେଇ ପ୍ରତିଦ୍ୱନ୍ଦ୍ୱୀ ବିଚାରଗୁଡ଼ିକ ସ୍ଥିରକରୁଥିବେ କେତେଦୂର ଓ କି ପରିମାଣରେ ଅତୀତ ହୋଇପାରେ ବର୍ତ୍ତମାନ ପ୍ରତି ପ୍ରାସଙ୍ଗିକ । କହିବାକୁ ପଡ଼ିଲା, ମାନବପ୍ରଜାତିର ସାମୂହିକ ସ୍ମୃତିରୁ ସମାଜତନ୍ତ୍ର ଯେହେତୁ ନିର୍ବାପିତ ହୋଇଯାଇନାହିଁ ଅଦ୍ୟାପି ।



# ଅହିଂସା ହିଂସା ଦ୍ୱନ୍ଦ୍ୱସମାସ

ଶ୍ରମଜୀବୀଶ୍ରେଣୀର ନେତୃତ୍ୱ ଗଢ଼ିବା କାମରେ ବହୁକାଳରୁ ବ୍ୟାପୃତ ରହିଚନ୍ତି ଯୋଉ ବାମପନ୍ଥୀ, ତାଙ୍କରି କଥା ମନକୁ ଆସିବ ସବାଆଗେ, କାହିଁକିନା, ଶ୍ରମିକକୃଷକଙ୍କୁ ନେଇ ଗଣଆନ୍ଦୋଳନ ସଂଗଠିତ କରିବା ଅଭିଜ୍ଞତା ଅନ୍ୟ କୋଉ ରାଜନୀତିକ ସଂଗଠନରୁ ପ୍ରତ୍ୟାଶା କରାଯାଏନା । ପ୍ରତ୍ୟାଶା କରାଯାଏନା ବୁର୍ଜୋୟା ବିରୋଧରେ ଆନ୍ଦୋଳନର ଅଭିଜ୍ଞତା । ବିଶ୍ୱାୟିତ ଭାରତରେ କିନ୍ତୁ ବାମପନ୍ଥୀ ଆଜି ଛିନ୍ନଛତ୍ର, ନବସାମ୍ରାଜ୍ୟବାଦର ପ୍ରତିପକ୍ଷ ହେବାସତ୍ତ୍ୱେ । ବିନା ବ୍ୟତିକ୍ରମରେ ମାର୍କ୍ସଦର୍ଶନରେ ଅସ୍ଥାବାନ ହେବାସତ୍ତ୍ୱେ, ପାରସ୍ପରିକ ସ୍ୱାତନ୍ତ୍ର୍ୟ ରକ୍ଷାକରିବା ସକାଶେ ଲେନିନ୍ ଓ ମାଓଙ୍କ ନାମଧାମ ମଧ୍ୟ ବ୍ୟବହାରକରାଯାଉଚି, ସତେ ଯେମିତି ଲେନିନ୍ ଓ ମାଓଙ୍କ ବିଚାରବିବେଚନା ମାର୍କ୍ସବାଦରୁ ସ୍ୱାଧୀନ ! ଶାସକଶ୍ରେଣୀ ଏ ବିଭାଜନର ସୁଯୋଗନେବା ସ୍ୱାଭାବିକ, ଯେପରି ଇମର୍‌ଜେନ୍ସି ଜମାନାରେ ଭାରତୀୟ କମିଉନିଷ୍ଟ୍ ପାର୍ଟିର ଇନ୍ଦିରାଗାନ୍ଧିଙ୍କୁ ନିଃସର୍ତ୍ତ ସମର୍ଥନ । ଅଥବା, ଇଦାନୀଂ ମାଓବାଦୀ ପାର୍ଟିକୁ ନିଷିଦ୍ଧ ଘୋଷଣାକଲାବେଳେ ଅନ୍ୟାନ୍ୟ ବାମପନ୍ଥୀଙ୍କ ନୀରବ ଅନୁମୋଦନ । ଅବଶ୍ୟ ମାଓବାଦୀଙ୍କୁ ଛାଡ଼ି ଅବଶିଷ୍ଟ ବାମପନ୍ଥୀ ପାର୍ଲାମେଣ୍ଟାରି ରାଜନୀତିକୁ କରିଚନ୍ତି ନିର୍ବିକଳ୍ପ କର୍ମଧାରା । ଅଥଚ ଉଦ୍ଦେଶ୍ୟ ଯଦି ବିଶ୍ୱାୟନର ପ୍ରତିରୋଧ, ଆଉ ସାମ୍ୟବାଦ ଆଣିବାକୁ ସଂଗ୍ରାମ, ପଦ୍ଧତି ଓ  ସଂଗଠନ ଅନତିକ୍ରମ୍ୟ ସମସ୍ୟା ନୁହେଁ । ଅନତିକ୍ରମ୍ୟ ହେଉଚି, କାହିଁକିନା, ତଥାକଥିତ ବିପ୍ଳବୀ ଆଦର୍ଶନିଷ୍ଠାରେ ହୁଏତ ଅବିଚଳ, କିନ୍ତୁ ମରିବାକୁ ଡରୁଚନ୍ତି ବିବାକ । ଏବଂ ମରିବାକୁ ଡରିଲେ, ହିଂସାଅହିଂସା ଭଳି ନିତାନ୍ତ କୌଶଳଗତ ପ୍ରଶ୍ନ, ଦର୍ଶନବିଦ୍ୟାର ଆଧିଭୌତିକ ମାତ୍ରା ଆହରଣକରିବା ନିଶ୍ଚିତ । ପୁଞ୍ଜିର ବିଶ୍ୱାୟନ କି ମାର୍କିନ୍ ସାମ୍ରାଜ୍ୟବାଦର ବିରୋଧ ମାନେ, ରାଷ୍ଟ୍ରସଂଗଠନର ମୌଳିକ ପରିବର୍ତ୍ତନ; ସେହିପରି ସମାଜତନ୍ତ୍ର ମାନେ ଆଇନ୍‌କାନୁନ୍ ସଂଶୋଧନ କି ଉତ୍ପାଦନର ସାଧନଗୁଡ଼ିକର ଜାତୀୟକରଣ ନୁହେଁ; ବିଦ୍ୟମାନ ପ୍ରପର୍ଟି-ରିଲେସନ୍ସର ଆମୂଳ ଓଲଟପାଲଟ । ଇତିହାସର କୋଉ ପର୍ଯ୍ୟାୟରେ ଆସି ସମାଜ ପହଞ୍ଚିଚି, ସେ ପର୍ଯ୍ୟାୟ ସମାଜତନ୍ତ୍ରକୁ ବିବର୍ତ୍ତିତହେବା ସକାଶେ କେତେଦୂର ପ୍ରସ୍ତୁତ, ଏକ ବିଷୟମୁଖୀ ବିବେଚନା; ଏବଂ

ଏ ବିବେଚନାରେ ଅହିଂସ ଅଭିସରଣ ଯେକୌଣସି ବିବେକବାନ୍ ଲୋକର ଅବଶ୍ୟକାମ୍ୟ; ମାତ୍ର ପ୍ରବଳପ୍ରତାପ ଅନେକ ସ୍ୱାର୍ଥ ଯେହେତୁ ଯୁଯୁତ୍ସୁ, ବଳପ୍ରୟୋଗ ଅଧିକାଂଶ କ୍ଷେତ୍ରରେ ହୋଇଚି ନିଷତ୍ତିମୂଳକ; ହୋଇଚି ବୋଲି, ମାର୍କ୍ସ କହିଚନ୍ତି peaceful if possible, with arms if necessary । ଅହିଂସ ହେବ କି ନାହିଁ, ହେଲେ କି ପରିଣାମରେ ହେବ, ନିର୍ଭରକରେ ଶାସକଶ୍ରେଣୀର ସମ୍ବେଦନଶୀଳତା ଉପରେ । ଅର୍ଥାତ୍ ସମାଜତନ୍ତ ଯଦି ରାଷ୍ଟ୍ରର ଅଭିପ୍ରେତ ଏବଂ ବିଶ୍ୱାୟନ ପ୍ରତି ଶାସକଶ୍ରେଣୀ ଯଦି ଯୁଯୁତ୍ସୁ, ରାଜନୀତିର ଚରିତ୍ର ହେବ ଅନିର୍ବାର୍ଯ୍ୟ ଅହିଂସ; ଅଲିଭର୍ କ୍ରୋମ୍‌ୱେଲ୍ ଲୋକଙ୍କୁ କହିବା ପରି, Trust in God, and keep your powder dry ! ବାରୁଦକୁ ଶୁଖିଲା ରଖିବେ କି ଉପାୟରେ, ସଂପୂର୍ଣ୍ଣ ଭିନ୍ନ ପ୍ରଶ୍ନ; କିନ୍ତୁ ଯେମିତି ହେଉ, ଶୁଖିଲାରଖିବାକୁ ବାଧ ଯଥାର୍ଥ ସଂଗ୍ରାମୀ । ରଖିନପାରିଲେ ୧୯୭୩ରେ ଚିଲି ଯୋଉ ମୂଲ୍ୟ ଚୁକାଇଚି, ତାର ବହୁଗୁଣ ମୂଲ୍ୟ ଶୋଧକରିବାକୁ ପଡ଼ିବ ରକ୍ତ ବିନିମୟରେ । ଜନସାଧାରଣଙ୍କ ସକାଶେ ଶୋଷଣମୁକ୍ତ କଷଣମୁକ୍ତ ଜୀବନଯାପନ ଯେତେବେଳେ ସଂଗ୍ରାମର ଆଭିମୁଖ୍ୟ, କ୍ଷମତାଦଖଲକୁ ରାଜନୀତିକ ଆନ୍ଦୋଳନରୁ ବାଦ୍‌ଦେଇ ହେବନାହିଁ; ମାତ୍ର ଅସଲ ପ୍ରଶ୍ନ ଏଠି, ଠିକ୍ କି ନିର୍ଦ୍ଦିଷ୍ଟ ଆକାରପ୍ରକାର ଧାରଣକରିବ କ୍ଷମତାଦଖଲର ଲଢ଼ାଇ ? ସନ୍ଦେହ ନାହିଁ, ଆଗତୁରା କିଛିକହିବା କେବଳ କଳ୍ପନାଜଳ୍ପନା, କାହିଁକିନା, ଐତିହାସିକ ପରିସ୍ଥିତି ବଦଳିଯାଉଚି କ୍ଷଣକୁକ୍ଷଣ ! ତେଣୁ ବିପ୍ଲବ ଯେତେବେଳେ ଯୋଉଠି ଘଟିଚି, ସେଇ ଐତିହ୍ୟରୁ ଗ୍ରହଣକରିବାକୁ ପଡ଼ିବ ଯଥାସମ୍ଭବ ନିର୍ଦ୍ଦେଶ । ଯେପରି, ଫରାସୀ ବିପ୍ଲବୀ ପ୍ରେକ୍ଷିତରେ ନେପୋଲିଅଁନଙ୍କ ଉକ୍ତି, *e' engage et puis on voil* (ଆଗେ ରଣକ୍ଷେତ୍ରକୁ ପଶୁଁ, ତାପରେ ଦେଖାଯିବ) । ଅର୍ଥାତ୍ ଅବସ୍ଥା ଦେଖି ବ୍ୟବସ୍ଥା । ମାତ୍ର ରଣକ୍ଷେତ୍ର ଯଦି ବୁର୍ଜୋୟାଗଣତନ୍ତ୍ର ଏବଂ ଅବସ୍ଥାନ ଯଦି ପୁଞ୍ଜିବାଦୀ ଦୁନିଆର ସୀମାନ୍ତରେ, ସଂଗ୍ରାମୀ କଣ ବାଛିନେବେ ପାର୍ଲାମେଣ୍ଟାରୀ ରାଜୀନତି ? ଯୋଉଠି ନେଇଚନ୍ତି, ଉପରଠାଉରିଆ 'ସଂସ୍କାର'ରୁ ବେଶି ବାଟ ଆଗେଇ ପାରିନାହାଁନ୍ତି । ଅଥଚ ନିର୍ବାଚନରେ ଜିତିଆସି ଭାବିଚନ୍ତି କ୍ଷମତାଦଖଲ କାମଟା ମୋଟାମୁଟି ସମାଧାହୋଇଗଲା ! ଦୀର୍ଘକାଳୀନ ସଂଗ୍ରାମପ୍ରବଣ କୋଉହେଲେ ଗଣଆନ୍ଦୋଳନ ଆଉ ଦରକାରନାହିଁ; ସଂଗ୍ରାମ ଯା ହେବାକଥା, ପ୍ରଧାନତଃ ଆସେମ୍ବ୍ଲି ପାର୍ଲାମେଣ୍ଟ୍‌ରେ ହିଁ ହୋଇପାରିବ । କାମଟା ସ୍ପଷ୍ଟତଃ ଆଇଡିୟଲଜିରୁ ପ୍ରସ୍ଥାନ, ନିର୍ବାଚନରେ ଜିତିବା ପାଇଁ ଆଦର୍ଶନିଷ୍ଠାକୁ ବଳିଦାନ । କାହିଁକିନା, ସାବାଳକ ଭୋଟ୍‌ପ୍ରଥା ପ୍ରକୃତରେ ବୁର୍ଜୋୟା ରାଜନୀତିର ଆପଣା ଭୂସ୍ୱତ୍ୱ; ତାର ସର୍ତ୍ତାବଳୀକୁ ମାନିନେଇ ଉଠାବସା କରିବା ମାନେ ବିପ୍ଳବ ପ୍ରତି ଦାୟବଦ୍ଧତାକୁ

ଖାଲି ଅସ୍ୱୀକାର ନୁହେଁ, ଏକାବେଳକେ ରାଜନୀତିକ ଚେତନାରୁ ସ୍ଖଳନ ମଧ୍ୟ । ଯେପରି, ଗ୍ଲୋବାଲାଇଜେସନ୍‌କୁ ଆକ୍ରମଣକରୁଚନ୍ତି ସିନା, 'ଇକନମିକ୍ ରିଫର୍ମ'କୁ ବିରୋଧକରିନାହାଁନ୍ତି ପାର୍ଲାମେଣ୍ଟରେ; ମାତ୍ର ଉଭୟର ବିକଳ୍ପ କୋଉହେଲେ ବ୍ୟବସ୍ଥା ବତାଇବାକୁ ଅଦ୍ୟାବଧି ରହିଚନ୍ତି ଅପାରଗ; ବରଂ ଚାଷୀଙ୍କ ହାତରୁ ବିଲ କାଢ଼ିନେଇ ମୋଟରଗାଡ଼ି କାରଖାନା ବସାଇବାକୁ, ଦରକାରହେଲେ ଗୁଳିଚଳାଇବାକୁ କୁଣ୍ଠିତନୁହେଁ; ବୁର୍ଜୋୟା ରାଜନୀତି ତ ସେକାମ କରିଆସୁଚି ମୂଳରୁ ! ଅନ୍ୟ ଶବ୍ଦରେ, ବାମପନ୍ଥୀ ନିଜକୁ ନିର୍ବାଚନଯୋଗ୍ୟ କରିବାପାଇଁ, ବୁର୍ଜୋୟା ଯାହାକୁ 'ବିପ୍ଲବୀ' କହେ, ତାହାରି ଛାଞ୍ଚ ଓ କଳରେ ନିଜକୁ ତିଆରିକରିଚି ଯେପରିକି ଗ୍ରହଣଯୋଗ୍ୟ ହୋଇପାରିବ ବୁର୍ଜୋୟାସମାଜରେ । ଏଭଳି ଭ୍ରଷ୍ଟାଚାରକୁ ବିଦ୍ରୂପକରି ଲାସ୍କି କହିଥିଲେ, civilising influence on revolutionaries ! ଏମାନଙ୍କ ଭିତରୁ ବିଲାତଫେରନ୍ତା ଭଦ୍ରଲୋକଙ୍କୁ ଆଦର୍ଶ ପାର୍ଲାମେଣ୍ଟାରିଆନ୍ ଖେତାବ୍ ଅବଶ୍ୟ ମିଳିଚି, ଏବଂ ଏମାନେ ଯେହେତୁ ବୁର୍ଜୋୟା ରାଜନୀତିର ପ୍ରହରୀ, ଗଣମାଧ୍ୟମ ଦୃଷ୍ଟିରେ ମଧ୍ୟ ଖାଲି ବିପ୍ଳବୀ ନୁହଁନ୍ତି, ଏକେବାରେ 'ଷ୍ଟେଟ୍‌ସ୍‌ମେନ୍' !

ଗଣତନ୍ତ୍ର, ଦେଶକୁ କିଛି ଅନୁଷ୍ଠାନ ଓ ଦେଶବାସୀଙ୍କୁ କିଛି ଅଧିକାର ଦେଇଚି ନିଶ୍ଚୟ; କିନ୍ତୁ ସେଗୁଡ଼ିକୁ ନିଜର ଓ ନିଜ ଶ୍ରେଣୀର ସ୍ୱାର୍ଥସିଦ୍ଧି ସକାଶେ କ୍ରମାଗତ ବ୍ୟବହାର କରାଯାଉଚି ଜନସାଧାରଣଙ୍କ ବିପକ୍ଷରେ ବସ୍ତୁତଃ; ଏପରିକି, ଗଣତନ୍ତ୍ରର ଧ୍ୱଜାଉଡ଼ାଇ ଯୁକ୍ତରାଷ୍ଟ୍ର ନିଜ ସାମ୍ରାଜ୍ୟବାଦୀ ରାଜନୀତି ସପକ୍ଷରେ ସାରା ବିଶ୍ୱର ଜନମତକୁ ସଂଗଠିତ କରିପାରୁଚି ଇଦାନୀଂ । ଜନସ୍ୱାର୍ଥର ଏଭଳି ନିରଙ୍କୁଶ ଅବମାନନା, ସ୍ୱାଭାବିକଭାବେ, ଧନତନ୍ତ୍ର ଆଉ ସାମ୍ରାଜ୍ୟବାଦକୁ ଯିଏ ଅଶୁଭ ଭାବୁଚନ୍ତି, ତାଙ୍କ ଦୃଷ୍ଟିରେ ପାର୍ଲାମେଣ୍ଟାରି ରାଜନୀତିକୁ ସନ୍ଦେହଭାଜନ କରିସାରିଚି । ଅଥଚ ଯେକୌଣସି ଗଣଆନ୍ଦୋଳନ ପାର୍ଲାମେଣ୍ଟାରି ରାଜନୀତିର ଚରିତ୍ର ବଦଳାଇ ଦେଇପାରେ, ଯେପରି ବଦଳାଇଦେଇଚି ଏକ୍ଷଣି ଲାଟିନ୍‌ଆମେରିକାରେ । ଗଣତନ୍ତ୍ରକୁ 'ବୁର୍ଜୋୟା' କହି ବର୍ଜନକରିବା ତେଣୁ ବିପ୍ଳବ ନୁହେଁ; ବରଂ ପାର୍ଲାମେଣ୍ଟାରି ରାଜନୀତିକୁ ବିପ୍ଳବାଭିମୁଖୀ କରିବାକୁ ପାଖକୁପାଖ ସଂଘର୍ଷପ୍ରବଣ ଆନ୍ଦୋଳନ ମଧ୍ୟ ଚଳାଇଯିବା ଦରକାର । କାହିଁକିନା, ରାଲ୍‌ଫ୍ ମିଲିବ୍ୟାଣ୍ଡ୍ ଲେଖିବା ପରି ... The civic freedoms which, however inadequately, form part of bourgeois democracy are the product of centuries of unremitting popular struggles. The task of Marxist politics is to defend these freedoms and to make possible their enlargement by the removal

of their class boundaries । ଅର୍ଥାତ୍, ଶ୍ରେଣୀସ୍ୱାର୍ଥ ଓ ଜନସ୍ୱାର୍ଥ ମଧ୍ୟସ୍ଥ ଭେଦରେଖାକୁ ରାଜନୀତିରୁ ଅପସୃତ କରିପାରେ ଯଦି ପାର୍ଲାମେଣ୍ଟାରୀ କର୍ମକାଣ୍ଡ, ନିର୍ବାଚନ ଇତ୍ୟାଦିକୁ ବର୍ଜନକରିବା ନିଶ୍ଚୟ କୋଉ ବାଧ୍ୟବାଧକତା ନୁହେଁ, କାହିଁକିନା, ପାର୍ଲାମେଣ୍ଟାରୀ ରାଜନୀତିରେ ଅଂଶଗ୍ରହଣ ମାନେ ବିଦ୍ୟମାନ ସମାଜବ୍ୟବସ୍ଥାକୁ ନିଃସର୍ତ୍ତ ସମର୍ଥନ ନୁହେଁ, ଯେହେତୁ... the right of assembly and association and the freedom of the press — these are our weapons... so long as this state of affairs offers us the means of protesting against it, our use of these means does not signify that we recognise the prevailing order । ଅନ୍ୟ ଶବ୍ଦରେ, ସମାଜତନ୍ତ୍ର ପ୍ରତିଷ୍ଠାପାଇଁ ସଂଗ୍ରାମ, ମାର୍କ୍ସୀୟ ବିବେଚନାରେ ହିଂସା-ଅହିଂସା ସଂଘାତ-ଶାନ୍ତି ଭଳି ବିପରୀତ ଯୁଗ୍ମପଦର ଗ୍ରାହ୍ୟତାସଙ୍କ୍ରାନ୍ତ ସରଳ ପ୍ରଶ୍ନ ନୁହେଁ; ବିଶେଷତଃ ଯେହେତୁ ରଣଭୂମି ଏଠି ସ୍ଥିତ ସମାଜ ଯେତିକି, ଅନାଗତ ପରିକଳ୍ପିତ ସମାଜ ତଦପେକ୍ଷା ଊଣା ନୁହେଁ । ବୁର୍ଜୋୟାଗଣତନ୍ତ୍ର ଯଦି ରଣଭୂମିର ଏକାଂଶ, ଦ୍ୱିତୀୟ ଅଂଶଟି ତା ପରିଧି ବାହାରେ ପରିବ୍ୟାପ୍ତ ଅସଂଗଠିତ ନାଗରିକସମାଜ, ଏବଂ ଏଇ ଦ୍ୱିତୀୟ କ୍ଷେତ୍ରଟି ହିଁ ସ୍ଥିରକରିଦିଏ ଅନ୍ତିମ ପରିଣତି । ପରସ୍ଥିତି ଯଦି ବିପ୍ଳବର ଅନୁକୂଳ, ଆନ୍ଦୋଳନ ନିଶ୍ଚୟ ଆହ୍ୱାନଜଣାଇବ ଗଣତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକୁ; କିନ୍ତୁ ପରିସ୍ଥିତିକୁ ବିପ୍ଳବର ଅନୁକୂଳ କରିବାପାଇଁ ଦରକାର ହୋଇପାରେ ସେଇ ଅନୁଷ୍ଠାନଗୁଡ଼ାକରେ ଅଂଶଗ୍ରହଣ । ସମଗ୍ର ବିବେଚନାରେ, ବିଦ୍ୟମାନ ଅନୁଷ୍ଠାନଗୁଡ଼ିକ ମାଧ୍ୟମରେ ଆନ୍ଦୋଳନ, ସଂଗ୍ରାମର ପରିପୂରକ । ଇତିହାସ ଅନ୍ତତଃ ଅନ୍ୟକଥା କହୁନାହିଁ । ଯେପରି, ଅକ୍ଟୋବର୍ ବିପ୍ଳବ କାଳରେ ସୋଭିଏଟ୍ ଗୁଡ଼ିକରେ ବଲ୍‌ସେଭିକ୍‌ମାନଙ୍କ ଯୋଗଦାନ, ଏବଂ ଏକାବେଳକେ, ସୋଭିଏଟ୍ ବାହାରେ ଗଣଅଭ୍ୟୁତ୍ଥାନ । ମାତ୍ର ଏ ଅଭିଜ୍ଞତା ମଧ୍ୟ ବୁଝାଇଦିଏ ଯେ ଅସଲ ଶକ୍ତି ବୁର୍ଜୋୟା ଅନୁଷ୍ଠାନ ନୁହେଁ କି ଇତିହାସର ସାକ୍ଷ୍ୟ ମଧ୍ୟ ନୁହେଁ; ଅସଲ ଶକ୍ତିର ଉତ୍ସ ସଂଗଠିତ ଲୋକଶକ୍ତି; କ୍ଷମତାର ଭିତ୍ତି ତେଣୁ ଗୋଟାପଣେ ସାମାଜିକ । ସେଇ ଭିତ୍ତି, ଶେଷପର୍ଯ୍ୟନ୍ତ, ସ୍ଥିରକରିଦିଏ ସଂଗ୍ରାମ ଅହିଂସ ହେବ କି ହେବନାହିଁ । ତଥାପି, ଶାନ୍ତିପୂର୍ଣ୍ଣ ଆନ୍ଦୋଳନର ସମ୍ଭାବନା ଯୋଉଠି ଅପେକ୍ଷାକୃତ ଉଜ୍ଜ୍ୱଳ, ସେଠିସୁଦ୍ଧା ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଛାଡ଼ିବାକୁ ଶାସକଶ୍ରେଣୀ ପ୍ରସ୍ତୁତନୁହେଁ, ଏବଂ ସେ କ୍ଷେତ୍ରରେ, ମୁଷ୍ଟିମେୟ ସଚେତନ ଲୋକଙ୍କ ସହସା ଆକ୍ରମଣ ବିଫଳହେବାକୁ ହୁଏତ ବାଧ୍ୟ, କାହିଁକିନା, When it is a question of complete

transformation of the social organisation, the masses themselves must also be in it, must themselves already have grasped what is at stake, what they are going in for with body and soul । ମାତ୍ର ୧୮୭୧ରେ ଯୋଉ ଅକାରଣ ରକ୍ତପାତ ଘଟିଚି ପ୍ୟାରିସ୍‌ରେ, ତାକୁ ହିଁ ନଜରରେ ରଖି କୁହାଯାଇଚି, ପାର୍ଲାମେଣ୍ଟାରି ରାଜନୀତିରୁ ଅତିରିକ୍ତ ଯୋଉ ସଂଘାତ, ତାକୁ ହିଁ କରିବାକୁ ହେବ ଯେକୌଣସି ସଙ୍କଟଜନକ ମୁକାବିଲାର ଅପରିହାର୍ଯ୍ୟ ଅବୟବ । ଅନ୍ୟଥା, ଖାଲି ପାର୍ଲାମେଣ୍ଟାରି ଅନୁଷ୍ଠାନଗୁଡ଼ିକ ମାଧ୍ୟମରେ ଶାସକଶ୍ରେଣୀକୁ ପରାଭୂତକରିବା ଅସାଧ । ବୁର୍ଜୋୟାଗଣତନ୍ତ୍ର ବାକ୍‌ସ୍ୱାଧୀନତା ଦେଇଚି, ମତପ୍ରଚାରର ସ୍ୱାଧୀନତା ମଧ୍ୟ ଦେଇଚି, ସମ୍ବାଦମାଧ୍ୟମକୁ ଅନର୍ଗଳ କରିଚି, ଏପରିକି ଆତ୍ମରକ୍ଷାର୍ଥେ ଅସ୍ତ୍ରଧାରଣକୁ ବେଆଇନ୍ ଭାବିନାହିଁ; ମାତ୍ର ଶାସକଶ୍ରେଣୀର ସଂପତ୍ତିଜାତ କ୍ଷମତା ଯଦି ସଙ୍କଟ ସମ୍ମୁଖୀନହୁଏ, ପ୍ରତିଶୋଧ ନେବାକୁ ଗଣତନ୍ତ୍ର ପଛାଇଯିବନାହିଁ । ଏବଂ ପତିକ୍ରିୟାରେ, ସର୍ବମାନ୍ୟ ଅନୁଷ୍ଠାନଗୁଡ଼ିକର ଅପବ୍ୟବହାର କରିବାକୁ ମଧ୍ୟ ଭ୍ରୂକ୍ଷେପ କରିବନାହିଁ । ଅନୁମାନ ନୁହେଁ, ସମକାଳର ଦୈନନ୍ଦୀନ ଅଭିଜ୍ଞତା । କ୍ୟାପିଟାଲିସ୍ମ ମଧ୍ୟ ଅତିରିକ୍ତ-ପାର୍ଲାମେଣ୍ଟାରି ବଳପ୍ରୟୋଗ; ଖାଲି ସଂଜ୍ଞାରେ ନୁହେଁ, ବ୍ୟାବହାରିକ କର୍ମଧାରାରେ ମଧ୍ୟ । ଏବଂ ସେଥିପାଇଁ, ଯେକୌଣସି ପୁଞ୍ଜିବାଦୀ ରାଷ୍ଟ୍ରଭିତରେ ଅନ୍ତର୍ନିହିତ ଏପରି ଅନେକ ଜଖମକରିବା କ୍ଷମତା, ଯା ପ୍ରଥାଗତ ପାର୍ଲାମେଣ୍ଟାରି ନିୟନ୍ତ୍ରଣରୁ ଅତିରିକ୍ତ ବୋଲି, ମିଲିବ୍ୟାଣ୍ଡ୍ ପୁଣି ଲେଖିଚନ୍ତି, The 'dominant class' is not a figure of speech, it denotes a very real and formidable concentration of power, a close partnership with capital and the capitalist state, a combined force of class power and state power, armed with vast resources, and determined to use them to the full, in conjunction with its allies aborad, to prevent an effective challenge to its power । ତେଣୁ ସଭା ଶୋଭାଯାତ୍ରା ହରତାଳ ଧର୍ମଘଟ ଟ୍ରେଡ୍‌ଇଉନିୟନ୍ ଭଳି ଆତ୍ମରକ୍ଷାମୂଳକ କୋଳାହଳ ନୁହେଁ, ଏପରି ପ୍ରତ୍ୟାଘାତ ଯା କ୍ଷତକୁ କରିପାରେ ଗଭୀର ଓ ଉଦ୍‌ଭିନ୍ନ, ଯେପରି କମାରଶାଳରେ ଜ୍ୱଳନ୍ତଲୁହା ଉପରେ ବଜ୍ରପ୍ରହାର !

ଏଇ କଥା ଭିତରେ, ମୁକାବିଲା କେତେ ଶାନ୍ତିପୂର୍ଣ୍ଣ କି ସଂଘାତପ୍ରବଣ ହେବ ତାର ଉତ୍ତର ରହିଚି । ଅହିଂସା କି ହିଂସା ମଞ୍ଚକଥା ନୁହେଁ, କାହିଁକିନା, ଅହିଂସଉପାୟରେ ବୈପ୍ଳବିକ ପ୍ରକ୍ରିୟାର ପରିଚାଳନା ଅଯୌକ୍ତିକ ନୁହେଁ କି ମାର୍କ୍ସଚିନ୍ତାର ପରିପନ୍ଥୀ ମଧ୍ୟ ନୁହେଁ; ବଳପ୍ରୟୋଗ କରାଯିବ କି ନାହିଁ, ନିର୍ଭରକରୁଚି ଶାସକଶ୍ରେଣୀ

ପ୍ରତିବାଦୀ ଆନ୍ଦୋଳନକୁ ଶାନ୍ତିପୂର୍ଣ୍ଣ ରହିବାକୁ ଦେବ କି ଦେବନାହିଁ? ଅକ୍ଟୋବର୍ ବିପ୍ଲବ ପାଖରୁ ଚିଲିରେ ଆଲେନ୍ଦେଙ୍କୁ ହତ୍ୟାକରିବା ପର୍ଯ୍ୟନ୍ତ, ସାକ୍ଷ୍ୟ ବହନକରୁଚି ଇତିହାସ, ଶାସକଶ୍ରେଣୀ ପ୍ରତିରୋଧକୁ ଅହିଂସ ରହିବାକୁ ଦିଏନା; ଅଥଚ ପ୍ରତିରୋଧରେ ନିହିତ ହିଂସା ଯଦି ଶାସକଶ୍ରେଣୀର ରାଷ୍ଟ୍ରାୟତ୍ତ ହିଂସାଠାରୁ ଅପେକ୍ଷାକୃତ ଅଧିକ ହୁଏ, ଶାନ୍ତିପୂର୍ଣ୍ଣ ସମାଧାନର ବାଟ ହୋଇଯାଏ ନିଷ୍କଣ୍ଟକ । ବିପ୍ଲବାତ୍ମକ ପ୍ରତିହିଂସା ଛଡ଼ା ଆଧିପତ୍ୟକାରୀର ସହିଂସ ଦମନକୁ ସହ୍ୟକରିବା ତେଣୁ ସମ୍ଭବପର ହୁଏନା; ହୋଇନାହିଁ । କେତେ ପରିମାଣ ହିଂସା ବାସ୍ତବକ୍ଷେତ୍ରରେ ଫଳପ୍ରସୂ, ଆଗତୁରା କହିହେବନାହିଁ; ମାତ୍ର ପ୍ରକାର ଓ ପରିମାଣକୁ ନିର୍ଣ୍ଣୟକରିବ ଲୋକଙ୍କ ପ୍ରତିରୋଧଶକ୍ତିକୁ କୋଉ ସ୍ତରକୁ ଉନ୍ନୀତ କରିପାରିଚନ୍ତି ବାମପନ୍ଥୀ; ଆଉ ପରିଣାମରେ ବାମପନ୍ଥାର ପ୍ରଭାବ ସମାଜ ଉପରେ ହୋଇପାରିଚି କେତେଦୂର ବଦ୍ଧମୂଳ, କାହିଁକିନା, the larger the mass base of the revolutionary movement, the less violence will be required and the more, also, will the masses lose their fear of revolution. The increasing degree of influence of the revolutionary movement inside the army and the state apparatus has the same effect. For this reason the Russian revolution had only a minimum of casulties । ମାତ୍ର ସମାଜସଂଗଠନର ମୌଳିକ ପରିବର୍ତ୍ତନ ପାଇଁ ଯିଏ ଲଢ଼ାଇକରିବାକୁ ବାହାରିଚି, ହିଂସା କି ଅହିଂସା ତା ପାଇଁ ଏକାନ୍ତ କୌଶଳଗତ ପ୍ରଶ୍ନ; ହିଂସା ସପକ୍ଷରେ ଓକିଲାତି କରିବା ତା କାମନୁହେଁ । ବିପ୍ଲବକୁ ବଞ୍ଚାଇରଖିବାକୁ, ମାନେ, ଜନସାଧାରଣଙ୍କ ନ୍ୟାଯ୍ୟ ଅଧିକାରକୁ ଶାସକଶ୍ରେଣୀର ଆକ୍ରମଣରୁ ରକ୍ଷାକରିବାକୁ, ଯଦି ହିଂସାର ଆଶ୍ରୟନେବାକୁ ପଡ଼େ, ହିଂସା ହୋଇଯାଏ ବ୍ୟାଧିନିରାମୟର ଔଷଧ । ନହେଲେ, ସଚରାଚର ଲୋକ ହଣାକଟାକୁ ଘୃଣାକରନ୍ତି; ସାଧାରଣଲୋକର ସେଇ ପ୍ରବଣତାକୁ ବିପ୍ଳବୀ ମଧ୍ୟ ଶ୍ରଦ୍ଧାକରେ ।

କିନ୍ତୁ, ବାମପନ୍ଥୀ ଯେ ଏକ୍ଷଣି ପରସ୍ପରର ଭଗ୍ନାଂଶ ମାତ୍ର, ଏବଂ ସେଇ କାରଣରୁ, ସମ୍ମିଳିତ କୋଉହେଲେ ବିକଳ୍ପ ଲୋକଙ୍କ ପାଖରେ ଉପସ୍ଥାପନ କରିବାକୁ ଅକ୍ଷମ, ତାର ଏକମାତ୍ର କାରଣ ଭବିଷ୍ୟତ ସମ୍ବନ୍ଧରେ ସାମ୍ୟବାଦୀ ଦୂରଦୃଷ୍ଟିର ଅଭାବ । ଲୋକ ଯଦି ଆପେଆପେ ଏମାନଙ୍କୁ ସମର୍ଥନକରିବେ, ପ୍ରତିରୋଧ ହୋଇଯିବ ସ୍ୱତଃସ୍ଫୂର୍ତ୍ତ, ଏବଂ ସେତେବେଳେ, ଅସଂଗଠିତ ଭୂଇଁଫୋଡ଼ ପ୍ରତିବାଦକୁ ସମୂଳ ଧ୍ୱଂସକରିଦେବା ପ୍ରତିପକ୍ଷ ପାଇଁ ସମସ୍ୟା ନୁହେଁ । କିନ୍ତୁ, ଲୋକଙ୍କୁ ସଂଗଠିତ କରିବାକୁହେଲେ ସ୍ଥିତ ସମାଜବ୍ୟବସ୍ଥାର ବିକଳ୍ପ ମାନଚିତ୍ର ସାଙ୍ଗକୁ ବାସ୍ତବାୟିତକରିବା ଉପାୟ ସମ୍ବନ୍ଧରେ ମଧ୍ୟ ସ୍ପଷ୍ଟ ନିର୍ଦ୍ଦେଶାବଳୀ ଉପସ୍ଥାପନକରିବା ଦରକାର । କ୍ୟାପିଟାଲିସ୍ଟ

କି ଇମ୍ପିରିଆଲିଜ୍ମକୁ ପ୍ରତିରୋଧ ଏପରି ଦୁରୂହ ଆଧ୍ୟାତ୍ମିକ ସମସ୍ୟା ନୁହେଁ ଯେ ନାନାମୁନିଙ୍କ ନାନାମତକୁ ଟେକିଧରିବାକୁ ଲେନିନ୍ ମାଓ ଚେ ଗୁୟେଭେରାଙ୍କ ଦାଇକା ଭିଆଣ ଦରକାର; ବାଟ କଢ଼ାଏ ଏକମାତ୍ର ଇତିହାସ; ଯେମିତି ଏକ୍ଷଣି ଲାଟିନ୍ଆମେରିକାରେ । କିମ୍ବା, ଅଦୂର ଅତୀତରେ ଯା ଘଟିଚି ଜଘନ୍ୟ ଫରାସୀ ଆଉ ମାର୍କିନ୍ ସାମ୍ରାଜ୍ୟବାଦରେ ଜର୍ଜର ପ୍ରଯୁକ୍ତିହୀନ ସଂପଦହୀନ ଭିଏତ୍ନାମ୍‌ରେ । ଔପନିବେଶିକତାର ଅମୋଘ ଦାନ ଭାରତକୁ ଉଚ୍ଚାକାଙ୍‌କ୍ଷୀ ଏକ ମଧ୍ୟବିତ୍ତଶ୍ରେଣୀ, ଯା ଦୃଷ୍ଟିରେ ଏକମାତ୍ର ସାମ୍ୟବାଦ ହିଁ ଦରିଦ୍ରର ଆଶା ପୂରଣକରିପାରେ; ମଧ୍ୟବିତ୍ତର ଆକାଙ୍‌କ୍ଷା ନୁହେଁ । ଭିଏତ୍ନାମ୍‌ରେ ଏଭଳି କୋଉହେଲେ ଶ୍ରେଣୀ ଅତୀତରେ ନଥିଲା ବୋଲି ସାମ୍ୟବାଦର ଏକ୍ସପେରିମେଣ୍ଟ୍ ସଙ୍କଟ ସମ୍ମୁଖୀନ ହୋଇନାହିଁ । ମାର୍କିନ୍ ସମରଶକ୍ତି ଅସମ୍ଭବ ବ୍ୟୟସାପେକ୍ଷ କମ୍ପିଉଟ୍‌ର ଦ୍ୱାରା ଚାଳିତ କ୍ଷେପଣାସ୍ତ୍ର ବ୍ୟବହାର କରିଚି; ସେ ମେସିନ୍, ଧାନବିଲ ହେଉ କି ବଣଜଙ୍ଗଲ, ମଣିଷଦେହର ଗନ୍ଧ ବାରିପାରି ଅକୁସ୍ଥଳରେ ବୋମାପକାଏ । ଅଳ୍ପଦିନ ଭିତରେ ଚାଷୀ ଆଉ ବିଶ୍ୱବିଦ୍ୟାଳୟର ଛାତ୍ର ଆବିଷ୍କାର କରିଚନ୍ତି, ଗୋବର କି ବିଷ୍ଠା ଚମଡ଼ାଥଳିରେ ପୁରାଇ ଗଛଡାଳରୁ ଝୁଲାଇଦେଲେ, ଗନ୍ଧଦ୍ୱାରା ଟାଣିହୋଇଆସି ମେସିନ୍ ସେଠି ବୋମାଫୁଟାଇବ । ହଜାରହଜାର ଥଳି ରାତାରାତି ଗଛଡ଼ାଳରୁ ବାଦୁଡ଼ି ଝୁଲିବା ଭଳି ଝୁଲିବାକୁ ଲାଗିଚି । ଆଉ କୋଟିକୋଟି ଡଲାର୍ ମୂଲ୍ୟର ବୋମା ମଧ ସେଇ ବିଷ୍ଠାଥଳି ଉପରେ ଦିନରାତି ଫାଟିବାକୁ ଲାଗିଚି । ସଂଗ୍ରାମ ପ୍ରତି ନିଷ୍ଠା, ଆତ୍ମତ୍ୟାଗ, ଦେଶଭକ୍ତି ଆଉ ଆତ୍ମମର୍ଯ୍ୟାଦା ବୋଧକୁ ପୁଞ୍ଜିକରି ପ୍ରଯୁକ୍ତିହୀନ କ୍ଷୁଦ୍ର ଗୋଟାଏ ଦରିଦ୍ରଦେଶ ପୃଥିବୀର ସର୍ବଶକ୍ତିସମ୍ପନ୍ନ ମହାଶକ୍ତିକୁ କେମିତି କାବୁ କରିପକାଇଚି, ଇତିହାସରେ ତାର ତୁଳନା ମିଳିବା ମୁସ୍କିଲ୍ । ଅଥଚ ଭାରତରେ ସାମାଜିକ ବୈଷମ୍ୟ କ୍ରମାଗତ ବଢୁଥିବା ସତ୍ତ୍ୱେ କମିଉନିଷ୍ଟଙ୍କ ଆନ୍ଦୋଳନ ବ୍ୟର୍ଥହୋଇଯାଉଚି ନେତୃତ୍ୱର ହଠକାରିତା କାରଣରୁ । ଶିଳ୍ପାୟନ ନାଁରେ ନିଜ ଦଳର ଲୋକଙ୍କ ପାଇଁ ଟଙ୍କାପଇସା ଯୋଗାଡ଼ କରିଦେବା କି କ୍ୟାଡର୍ ପୋଷିବାକୁ ନାନାଦି ଛଳରେ ଅର୍ଥସଂଗ୍ରହ, ଏମାନଙ୍କୁ ଚିହ୍ନାଇଦେଇଚି, ରେନିଗେଇଡ୍ । କଥାଗୁଡ଼ାକ ଆକ୍ଷେପ ନୁହେଁ, ପରିତାପ । ବିଶେଷତଃ ଏଇ କାରଣରୁ ଯେ ଧନତନ୍ତ୍ରର ସାମ୍ପ୍ରତିକ ଅବତାର ବିବାକ କ୍ରମସଂସ୍କାର କୃତ୍ୟସୂଚିକୁ ପର୍ଯ୍ୟବସିତ କରିସାରିଲାଣି ତୁଚ୍ଛ ତାଚ୍ଛଲ୍ୟରେ, ଆଉ ପର୍ଯ୍ୟାୟକ୍ରମେ ପରିବର୍ତ୍ତନର ପ୍ରବକ୍ତାଙ୍କୁ ଅଳୀକ ଓ ଅବାନ୍ତର । ଏକମାତ୍ର ବିକଳ୍ପ ତେଣୁ ରାଜନୀତିରେ ବିପ୍ଳବ । କିନ୍ତୁ ବୈପ୍ଳବିକ ଅଭ୍ୟୁତ୍ଥାନ ମାନେ କାନ୍ଧରେ ବନ୍ଧୁକପକାଇ ରାତାରାତି ଦିଲ୍ଲୀଦଖଲ ଭଳି ଅବାସ୍ତବ ପ୍ରସ୍ତାବ ନୁହେଁ । ଯା ବାସ୍ତବ, ତା କ୍ୟାପିଟାଲିସ୍ମ ଏବଂ ତା ବିଦ୍ୟମାନ ଓ ଚଳମାନ । ତାହାରି ଭିତରେ

ରହିଥାଇ ତାକୁ ଅତିକ୍ରମକରିଯିବାକୁ ଉଦ୍ୟମ ଦୁଃସାଧ୍ୟ ଏକ ଦୁସ୍ତର ପ୍ରକଳ୍ପ । ଦୁଃସାଧ୍ୟକୁ ସାଧ୍ୟକରିବାକୁ ଦରକାର ତେଣୁ ଦୀର୍ଘକାଳୀନ ପ୍ରସ୍ତୁତିପର୍ବ, ଆଇଡିୟଲଜି ସ୍ତରରେ ଯେତିକି, ସିଭିଲ୍‌ସୋସାଇଟି ସ୍ତରରେ ତତୋଧିକ; କାହିଁକିନା, ଅବ୍ୟବହିତ ଅଭୀଷ୍ଟ ଦୂରକଳ୍ପୀ ସମାଜରୂପାନ୍ତର ସହିତ ନାଡ଼ିର ଯୋଗ ସାଧନକରି ନପାରିଲେ, ଜନସମର୍ଥନ ଦୃଢ଼ କି ଦୀର୍ଘସ୍ଥାୟୀ ହୋଇପାରେନା । ଲେନିନ୍ କହିଲାପରି, ଯେକୌଣସି ଅସନ୍ତୋଷ କି ଅଭିଯୋଗକୁ ସମଗ୍ର ସିଷ୍ଟେମ୍ ପ୍ରେକ୍ଷିତରେ ବିଚାର ନକଲେ ସ୍ଥାୟୀ ପ୍ରତିକାର ଆଖିକୁ ଦିଶିବନାହିଁ; ଅର୍ଥାତ୍ କି ପ୍ରକାର ସମାଜରୂପାନ୍ତର ବାଞ୍ଛିତ ଆର୍ଦଶ, ସେ ବିଷୟରେ ନିଶ୍ଚିତ ନହେଲେ ତାତ୍‌କାଳିକ କର୍ମପନ୍ଥାରେ ବୃହତ୍ତର ସମାଜକୁ ଦୀକ୍ଷିତ କରିହେବନାହିଁ । ଅନ୍ୟ ଶବ୍ଦରେ, ତତ୍ତ୍ୱ ଓ କର୍ମଧାରା ମଧ୍ୟସ୍ଥ ଅବିରତ ଯୋଗସୂତ୍ର ପ୍ରାତ୍ୟହିକ ପ୍ରତିରୋଧକୁ ସ୍ୱଳ୍ପମିଆଦି ଦାବିହାସଲ ଊର୍ଦ୍ଧ୍ୱକୁ ଉଠାଇନେଇ, ସଂଗ୍ରାମର ଗନ୍ତବ୍ୟ ସମ୍ବନ୍ଧରେ ସଚେତନ କରିପାରେ; ଯା ଫଳରେ, ଆତ୍ମତ୍ୟାଗ ଆହରଣକରେ ଅଲୌକିକ ମହିମା । ଏ ଯୋଗସୂତ୍ର ଦୈନନ୍ଦୀନ ସାଂସାରିକ ସଂଗ୍ରାମରୁ ଉଠିଆସେନା; ଜୀବନଯାପନ ଯେତେବେଳେ ଭାବାଦର୍ଶ ସ୍ତରରେ ବିପ୍ଳବର ଉଦ୍ଦେଶ୍ୟ ଓ ଉପାୟ ସହିତ ଛେଦହୀନ ବନ୍ଧନରେ ଯୋଡ଼ିହୋଇଯାଏ, ସେତେବେଳେ କେବଳ ସ୍ୱତଃସ୍ଫୂର୍ତ୍ତତା ଜାଗାରେ ଦେଖାଦିଏ ଅବିଚଳ ସଙ୍କଳ୍ପ । କ୍ୟାପିଟାଲିସ୍ମ କି ଇମ୍ପିରିଆଲିଜ୍ମକୁ 'ନା' କାହିବାକୁ ହେଲେ, ହୃଦୟଙ୍ଗମହେବା ଦରକାର ପ୍ରତିଦିନ ଆମେ କଣ ହରାଉଚୁଁ ଏବଂ ସଂଗ୍ରାମର ଶରିକ ହୋଇପାରିଲେ କ୍ଷତି ପରିବର୍ତ୍ତେ କି ପ୍ରକାର ପରିପୂର୍ଣ୍ଣତା ପ୍ରତ୍ୟାଶିତ । ସଂସ୍କାର ତେଣୁ ଦରକାରହୋଇପାରେ କ୍ଷେତ୍ରବିଶେଷରେ; ଯେପରି, ବୁର୍ଜୋୟା ଅନୁଷ୍ଠାନ ସହିତ ସହଯୋଗ; ମାତ୍ର ବିନା ବ୍ୟତିକ୍ରମରେ ସଂସ୍କାର ରହିବ ସଂଗ୍ରାମର ଅନୁଷଙ୍ଗ ମାତ୍ର । ଜନମାନସରେ ଯୁଗାନ୍ତକାରୀ ଏଭଳି ଶକ୍ତିର ସଂଚାରଣ ଦିନକରେ ଘଟିଯାଏନା, କି ବିନା ବାଧାବିଘ୍ନରେ ସଂଗଠିତ ହେବନାହିଁ- ଏଇ କଥାର ସତ୍ୟତା ଉପଲବ୍ଧହେଲେ ଅହିଂସା-ହିଂସା, କି ସଂସ୍କାର-ସଂଗ୍ରାମ ମଧ୍ୟସ୍ଥ ଆପାତଃଅଲଂଘ୍ୟ ବ୍ୟବଧାନ ପ୍ରତିଭାତ ହେବ ସଂପୂର୍ଣ୍ଣ ଆପେକ୍ଷିକ; ସ୍ୱତଃସ୍ଫୂର୍ତ୍ତତା ଯେ ସଂଗ୍ରାମ ହୋଇପାରେନା, ସେ ବିଷୟରେ ମଧ୍ୟ ସଂଶୟ ରହିବନାହିଁ । ବୁଦ୍ଧିବାଦୀ ଲୋକ ତଥାପି କହିବେ, ସୋସାଲିଜ୍ମକୁ ପୃଥିବୀରେ କୋଉଠିହେଲେ ସଫଳହେବାକୁ ଦେଖାଯାଉନାହିଁ; ଇତିହାସ ବି ଅତୀତରେ ତାର ଅସ୍ତିତ୍ୱ ବିଷୟରେ ନିଶ୍ଚିତ କିଛି କହିପାରୁନାହିଁ; ଅବ୍ୟବସ୍ଥିତ ଏଭଳି ପରିସ୍ଥିତରେ ମରିଚିକାରେ ଜଳଭ୍ରମ ପରି ସୋସାଲିଜ୍ମ ନିଜକୁ ସାବ୍ୟସ୍ତକରିବନାହିଁ ତ ! ଏଇଭଳି ସଂଶୟକୁ ଉପଲକ୍ଷ୍ୟକରି ଏର୍‌ନେଷ୍ଟ୍ ମ୍ୟାଣ୍ଡେଲ୍ ଲେଖିଚନ୍ତି, The platitude that 'Marxian Socialism'

does not exist anywhere in the world today is tirelessly repeated, as in effect an argument against all human progress. But was it utopian to fight for the abolition of slavery, which existed on a large scale for more than a thousand years?.... Religious oppression including the burning of heretics at the stake, was a fact of life for at least five centuries. Was it then utopian to try to establish freedom of conscience and freedom of thought?... Why should it be utopian today to try to do away with wage labour and gigantic state bureaucracies, which after all have been central structures of society for not more than two hundred years?... Utopia, in the broad sense of the word, has been one of the great motors of eventual achievement of historical progress ।

* * * * * * *

କିନ୍ତୁ ରାଜନୀତିକ ସଂଗ୍ରାମ ସଶସ୍ତ୍ର ହେବ କି ଅହିଂସ, ଏକ କୌଶଳଗତ ପ୍ରଶ୍ନ; ଅଥଚ ହିଂସାର ପ୍ରାଦୁର୍ଭାବ ଏକ୍ଷଣି ସମାଜର ସର୍ବସ୍ତରରେ, ଏବଂ ପ୍ରତ୍ୟେକ ହିଂସାକାଣ୍ଡ ପଛରେ ନିର୍ଦ୍ଦିଷ୍ଟ ଆର୍ଥସାମାଜିକ କାରଣ ରହିଥିଲେ ବି, ରାଷ୍ଟ୍ର ଦୃଷ୍ଟିରେ ବିବାକ ଘଟଣା ସନ୍ତ୍ରାସ ବା ଟେରରିସ୍ମ । ଗୁଜୁରାଟ କି ମହାରାଷ୍ଟ୍ରରେ ହିନ୍ଦୁତ୍ୱବାଦୀଙ୍କ ସନ୍ତ୍ରାସ ଯାହା, ଉତ୍ତର-ପୂର୍ବ ଭାରତର ଟ୍ରାଇବାଲ୍ କି କାଶ୍ମିର୍‌ର ମୌଳବାଦୀଙ୍କ ବିଚ୍ଛିନ୍ନତାବାଦ ସେଇଆ; ପୁଣି ମଧ୍ୟଭାରତରେ ନକ୍ସଲ ବା ମାଓବାଦୀଙ୍କ ପ୍ରତିରୋଧ କୁଆଡ଼େ ସବୁଠୁଁ ମାରାତ୍ମକ ଅଭ୍ୟନ୍ତରୀଣ ଆତଙ୍କ । ପ୍ରତିକାର ତେଣୁ ବିନା ବ୍ୟତିକ୍ରମରେ ରାଷ୍ଟ୍ରକର୍ତ୍ତୃଙ୍କ ପ୍ରତିହିଂସା, ଦେଶବ୍ୟାପୀ ଦମନ । ଏଇ ପ୍ରତିହିଂସା ପାଇଁ ଦାୟିତ୍ୱ ନେବାକୁ ପଡ଼େନା, କାହିଁକିନା, ସନ୍ତ୍ରାସଦମନ, ସାମ୍ରାଜ୍ୟବାଦ କାରଣରୁ ଏକ୍ଷଣି ଏକ ଆନ୍ତର୍ଜାତିକ ଆଇଡିୟଲଜି । ଶାସକଶ୍ରେଣୀର ଆଇଡିୟଲଜି । ଅଥଚ ପ୍ରତିକ୍ରିୟାକୁ ନୈତିକ କର୍ତ୍ତବ୍ୟ ପ୍ରତିପନ୍ନକରିବାକୁ ଭାବାଦର୍ଶର ଭିତ୍ତିକୁ ପ୍ରଶସ୍ତକରି ଗାନ୍ଧିଙ୍କ ଅହିଂସ ଆନ୍ଦୋଳନ ପ୍ରେକ୍ଷିତ ବି ବ୍ୟବହାରକରାଯାଉଚି ତତ୍ତ୍ୱସ୍ତରରେ । ସେଥିପାଇଁ, ଉଦ୍ଦେଶ୍ୟ ଓ ଉପାୟ ଭଳି ପ୍ରସଙ୍ଗ ଦାବିକରୁଚି ପୁନର୍ବାର ସମୀକ୍ଷା । ଯେପରି, ଷାଠିଏଦଶକରେ ପ୍ୟାରିସ୍‌ରେ ବିଶ୍ୱବିଦ୍ୟାଳୟ ଛାତ୍ର ବିଦ୍ରୋହକରିଚନ୍ତି ଜ୍ଞାନୀଗୁଣୀ ଲୋକ ଯେତେବେଳେ ବୁଝାଇଶୁଝାଇ ପିଲାଙ୍କୁ ଶାନ୍ତକରିବାକୁ ଆସିଚନ୍ତି ପ୍ରତିଦିନ; କିନ୍ତୁ ମୁହଁଖୋଲିବା ଆଗରୁ ପିଲା ପଚାରିଚନ୍ତି, 'କୋଉ ଜାଗାରୁ କହିବାକୁ ଚାହୁଁଚନ୍ତି ?' କାହିଁକିନା, କହିବା

ଲୋକଟି ଯିଏ ହେଉ, ଶ୍ରୋତାଙ୍କୁ ନିଜ ରାଜନୀତିକ-ଦାର୍ଶନିକ ଅବସ୍ଥାନଟା ବୁଝାଇଦେବା ଅବଶ୍ୟକୃତ୍ୟ, ଏବଂ ମାର୍କ୍ସବାଦ ହୁଏ ଯଦି ଲୋକଟିର ରାଜନୀତି ଓ ଦର୍ଶନ, ତାଙ୍କ ଜୀବନଦୃଷ୍ଟି ପିଲାଙ୍କ ଅବଲୋକନରେ ହୋଇଚି ଗ୍ରହଣଯୋଗ୍ୟ, ଅହିଂସା ହିଂସା ଦ୍ୱାନ୍ଦ୍ୱିକତା ସେଇ ଦୃଷ୍ଟିକୋଣରୁ ଏକ୍ଷଣି ବିବେଚ୍ୟ ।

ସବୁରକମ ସମାଜରେ ହିଂସା ଏକ ଅହେତୁକ ପ୍ରପଞ୍ଚ; କିନ୍ତୁ ମଣିଷର ସହଜାତ ପ୍ରବଣତା ନୁହେଁ; ଏବଂ ସେଥିପାଇଁ, ହିଂସା ପ୍ରତି ମଣିଷ ସାଧାରଣତଃ ବିମୁଖ । କିନ୍ତୁ ଜୈବିକ ଓ ସମାଜିକ ପ୍ରଭାବଗୁଡ଼ିକ ମଧ୍ୟସ୍ଥ ଆଦାନପ୍ରଦାନ ଯେହେତୁ ନିର୍ମାଣକରେ 'ସ୍ୱଭାବ', ଯୁଗରୁ ଯୁଗାନ୍ତର ଲକ୍ଷ୍ୟକରିହେବ ସ୍ୱଭାବର ଅଦଲବଦଳ । ସେଇ ଅଦଲବଦଳ ସୂଚନାକରେ ମୂଲ୍ୟବୋଧ, ଆଦର୍ଶ ଆଉ ନୈତିକତାର ଚଳମାନ ପରିବର୍ତ୍ତନ । ଅର୍ଥାତ୍ ମାନବିକତାର ଅଗ୍ରଗତି । ସେଇ ସୂତ୍ରରେ, ହିଂସା ପ୍ରତି ବିମୁଖତା ଏକ ନୈତିକ ବିବେଚନା । ସେ ବିବେଚନାରୁ ରାଜନୀତି, ଏପରିକି ବୈପ୍ଳବିକ ରାଜନୀତି, ରିହାତିପାଇବା କଥାନୁହେଁ । ବିଶେଷତଃ ଗଣତାନ୍ତ୍ରିକ ସମାଜବ୍ୟବସ୍ଥାରେ । ଆମ ରାଜନୀତିକ ବିଧିବ୍ୟବସ୍ଥା ଅଳ୍ପବିସ୍ତର ଗଣତାନ୍ତ୍ରିକ ହେବା ସତ୍ତ୍ୱେ, ସମାଜବ୍ୟବସ୍ଥା ଗଣତନ୍ତ୍ରରୁ ରହିଚି ଯୋଜନଯୋଜନ ଦୂରରେ । ଅର୍ଥାତ୍ ଗଣତାନ୍ତ୍ରିକ ବିଧିବିଧାନର ସମର୍ଥନପାଇଥିବା ବୈଷମ୍ୟଜର୍ଜର ଶ୍ରେଣୀବିଭାଜିତ ଶୋଷଣପ୍ରବଣ ଆଧିପତ୍ୟବିନ୍ୟସ୍ତ ଏଇ ସମାଜ । ଏ ଭଳି ସମାଜର ଗଢ଼ଣ ଏପରି ନ୍ୟସ୍ତସ୍ୱାର୍ଥ, ରୀତିନୀତି, କ୍ଷମତାଯୁଦ୍ଧ ଓ ରାଜନୀତିକୁ ଜନ୍ମଦିଏ, ଯାହାକୁ ବ୍ୟବହାରକରି ପ୍ରଭୁତ୍ୱକରୁଥିବା ବିତ୍ତବାନଶ୍ରେଣୀ ସମାଜର ସାଂଗଠନିକ ଦୁର୍ବଳତାରୁ ଲାଭଉଠାନ୍ତି ସବୁଠୁଁ ବେଶି । ହିଂସାର ଭୂମିକାକୁ ପ୍ରକୃତ ସାମାଜିକ ପ୍ରେକ୍ଷିତରେ ବୁଝିବାକୁ ଦିଅନ୍ତିନାହିଁ କିମ୍ବା ବୁଝିବା ବାଟରେ ବାଧା ସୃଷ୍ଟିକରନ୍ତି । ସମାଜର ଏମାନେ ଏଲିଟ୍ । ଏଲିଟ୍ ଲୋକଙ୍କୁ ଶିଖାଉଚି, ଜ୍ଞାନର ଉଦ୍ଦେଶ୍ୟ ସତ୍ୟସଂଧାନ; ମାତ୍ର ଜ୍ଞାନଚର୍ଚ୍ଚାରେ ସୃଷ୍ଟିକରିଚି ହାଇରାର୍କି ବା କ୍ରମୋଚ୍ଚ ଶ୍ରେଣୀବିଭାଗ, ଯେପରି, ଗଣିତ ଓ ପଦାର୍ଥବିଦ୍ୟା ତଳକୁ ସମାଜବିଦ୍ୟା ଓ ମନୋବିଦ୍ୟାର ସ୍ଥାନ । ବ୍ୟାରୋଜ୍ ଡନ୍‌ହ୍ୟାମ୍ କାରଣ ନିର୍ଦ୍ଦେଶ କରିଚନ୍ତି, The real reason is that the physical sciences are fairly neutral politically, while the social sceiences are full of dynamite... Generaly speaking, truth has been suffered to exist in the world just to the extent that it profited the rulers of society । ଏଭଳି ବ୍ୟୋମାନୁସନ୍ଧିତ୍ସୁଙ୍କୁ ଚମସ୍କି ତେଣୁ କହିଚନ୍ତି 'ସେକିଉଲାର୍ ପ୍ରିଷ୍ଟହୁଡ୍' । ଏମାନଙ୍କ ଦୃଷ୍ଟିରେ ହିଂସା ଏକ ବିମୂର୍ତ୍ତ ଆଇଡିଆ; ନିଷ୍ଫଳ, ଅପରାପର ସାମାଜିକ ବିଭାବଠାରୁ ବିଚ୍ଛିନ୍ନ, ସ୍ୱଭାବଗତ ଦୁର୍ଗୁଣ । ତା'ହେଲେ, ସମାଜର

ଅଧେଲୋକ ଯେ ଭୋଟ୍‌ଦେବାକୁ ଯାଉନାହାଁନ୍ତି ଭଡ଼ାଟିଆ ଗୁଣ୍ଡାଙ୍କ ଡରରେ, କିମ୍ବା ବଧୂହତ୍ୟା କି ନାରୀନିର୍ଯାତନା ଭଳି ଘଟଣା ଘଟୁଚି ଘରେବାହାରେ ପ୍ରତିଦିନ, ସେଗୁଡ଼ାକ କ'ଣ ସ୍ୱଭାବଦୋଷ ? ନା, ସାମାଜିକ/ ରାଜନୀତିକ କାରଣ କିଛି ରହିଚି ? ଅର୍ଥାତ୍, କାରଣ ପ୍ରେକ୍ଷିତ ଓ ଆକସ୍ମିକତା ଭଳି ବାସ୍ତବତା ପ୍ରତି ଉଦାସୀନରହିଲେ ଅହିଂସା-ହିଂସା ଦ୍ୱାନ୍ଦ୍ୱିକତା ମଧ୍ୟ ରହିଯିବ ଆଧ୍ୟାତ୍ମିକତା ପରି ଅଲୌକିକ । କାହିଁକିନା, ସମାଜରେ ପରିଦୃଷ୍ଟ ହିଂସାଆଚରଣ ସାଧାରଣତଃ ବ୍ୟକ୍ତିଗତ ଆକ୍ରୋଶରୁ ଉପୁଜିଥାଏ; ପୁଣି ହିଂସା ଘଟେ ଅପରାଧ ଯଦି ଲାଭଜନକ । ଟଙ୍କାପଇସା ପ୍ରତ୍ୟାଶାରୁ ମଧ୍ୟ ହିଂସା ଆବଶ୍ୟକ ହୋଇପାରେ । ଏଭଳି ହିଂସା ଆଗରୁ ଥିଲା, ଏବେ ବି ଚାଲିଚି; କିନ୍ତୁ ଯୋଉ ହିଂସା ପ୍ରତି ଏଲିଟ୍ ସଚେତନ, ତା ଫୌଜଦାରୀ କି ଜନାକାରି ଅପରାଧ ନୁହେଁ, ସମାଜରେ ଆଧିପତ୍ୟକରୁଥିବା ଲୋକମାନଙ୍କ ବିରୋଧରେ ସଂଗଠିତ ହିଂସା, ଏକମାତ୍ର । ଅସମ ଓ ପ୍ରଭୁତ୍ୱଅଧ୍ୟୁଷିତ ସମାଜରେ ଶୋଷଣ, ଅପମାନ, ପୀଡ଼ନ, ଦମନ ଯଦି ନିର୍ବାଧ, ନିପୀଡ଼ନର ଶିକାର ହତାଶ ନାରୀ-ପୁରୁଷ ପ୍ରତିଶୋଧନେବାକୁ ଚେଷ୍ଟାକରିବେ ନିଶ୍ଚୟ; ସେ ପ୍ରତିଶୋଧ ସଦାସର୍ବଦା ଅହିଂସ ହେବ, ଏ ପ୍ରତ୍ୟାଶା ନିଶ୍ଚୟ ଶିଶୁସୁଲଭ । ପ୍ରାସଙ୍ଗିକ ତେଣୁ ନୈତିକ ବିବେଚନା ।

ଜାତି ଧର୍ମ ଭାଷା ପ୍ରଭୃତିକୁ ମଝିରେ ରଖି ସଂଗଠିତହେଉଚି ବ୍ୟାପକ ହିଂସା; ମାତ୍ର ସେ ହିଂସା ଯେହେତୁ ରାଜନୀତିକ ସ୍ୱାର୍ଥର ସହାୟକ, ରାଷ୍ଟ୍ରଶକ୍ତି ସେପରି ହିଂସା ପ୍ରତି ନିସ୍ପୃହ; ଯେପରି, ୧୯୬୪ରେ ଖାସ୍ ଦିଲ୍ଲିସହରରେ ଶିଖ୍‌ନିଧନ ଯଜ୍ଞ, କିମ୍ବା ୧୯୯୨ରେ ବାବ୍‌ରି ମସ୍‌ଜିଦ୍ ଧ୍ୱଂସ । ନିଶ୍ଚୟ ନାଥୁରାମ ଗଡ୍‌ସେ ଗାନ୍ଧିଙ୍କୁ ମାରିବା ପରି ବ୍ୟକ୍ତିଗତ ହିଂସା ନୁହେଁ; ପଛରେ ରହିଚି ଆଇଡିୟଲଜି । ଯେପରି ଗୁଜୁରାଟ କି ମହାରାଷ୍ଟ୍ରରେ ଅତିସଂପ୍ରତି । କିନ୍ତୁ ଏଗୁଡ଼ିକୁ କେହି 'ଟେରରିସ୍ମ' ଆଖ୍ୟା ଦେଇନାହିଁ ବିନା ବ୍ୟତିକ୍ରମରେ ଏଭଳି ହିଂସା ବୃହତ୍ତର ଜନସମାଜର ନିରାପତ୍ତାର ପରିପନ୍ଥୀ ହେବାସତ୍ତ୍ୱେ । ମାତ୍ର ହିଂସାର ମଧ୍ୟ ରହିଚି ଶ୍ରେଣୀଚରିତ୍ର, ଯେପରି ବିହାର ଓ ଉତ୍ତରପ୍ରଦେଶରେ ଭୂମ୍ୟଧିକାରୀଙ୍କ ବିଭିନ୍ନ 'ସେନା', କିମ୍ବା ଛତିଶଗଡ଼ର ଦାନ୍ତେଓ୍ୱାଡ଼ାରେ ସଲ୍‌ଓ୍ୱା ଜୁଡୁମ୍ । ଅଥଚ କେବଳ ରାଷ୍ଟ୍ର ବିରୋଧରେ ସଂଗଠିତ ହିଂସା ହିଁ 'ଟେରରିଜ୍ମ' ପଦବାଚ୍ୟ । ପ୍ରତିରୋଧ କି ସଂଘର୍ଷ ଯଦି ରାଜନୀତିକ ହୁଏ, ଯେପରି ସିପାହୀବିଦ୍ରୋହ, ଅସ୍ତ୍ର ବ୍ୟବହାର ଅପରିହାର୍ଯ୍ୟ; ମାତ୍ର ରାଜନୀତି ସେଠି ବନ୍ଧୁକର ଅଧସ୍ତନ ନୁହେଁ, ବନ୍ଧୁକ ହିଁ ରାଜନୀତିର ଅଧସ୍ତନ । ରାଜନୀତିର ଗୁଣ ବା ମାନ ଯଦି ନିକୃଷ୍ଟ, ବନ୍ଧୁକ ପାଇଯାଏ ପ୍ରାଧାନ୍ୟ । ଯେ କୌଣସି ରାଜନୀତିକ ମୋବିଲାଇଜେସନ୍‌ର ସର୍ବଶ୍ରେଷ୍ଠ ଅସ୍ତ୍ର ପ୍ରକୃତ ଜନସମର୍ଥନ; ଖାଲି ବନ୍ଧୁକ ବଳରେ ଜନସମର୍ଥନ ଆଦାୟକରିବା ତେଣୁ

ଦୁରାଶା ମାତ୍ର । ଜନସମର୍ଥନ ଆସେ ଆନ୍ଦୋଳନର ରାଜନୀତିକ ଆଭିମୁଖ୍ୟ ପ୍ରତି ଲୋକଙ୍କ ଆନୁଗତ୍ୟରୁ; ଆଭିମୁଖ୍ୟ ଯଦି ସେମାନଙ୍କ ପ୍ରାତ୍ୟହିକ ଜୀବନନିର୍ବାହ ସମସ୍ୟା ସହିତ ଓତଃପ୍ରୋତ, ଅନୁରକ୍ତି ହୁଏ ସ୍ୱତଃସ୍ଫୁର୍ତ୍ତ । ସେତେବେଳେ ବନ୍ଧୁକ ହୋଇଯାଏ କେବଳ ଆତ୍ମରକ୍ଷାର ଆୟୁଧ । ଅନ୍ୟ ଶବ୍ଦରେ, ସଶସ୍ତ୍ର ପ୍ରତିରୋଧ ଏକ ନୈତିକ ପ୍ରତିରୋଧ, ଏବଂ ସେଥିପାଇଁ, ରାଜନୀତି ସେଇ ନୈତିକତାକୁ ପ୍ରତିଫଳିତକରିବାର ଆବଶ୍ୟକ ପୂର୍ବସର୍ତ୍ତ ଅସ୍ତ୍ର ବ୍ୟବହାର । ଏ ନୈତିକତା ବିମୂର୍ତ୍ତ କୋଉ ଆଇଡିଆ ନୁହେଁ; ବଞ୍ଚିତ, ଶୋଷିତ, ଅବମାନିତର ନିତ୍ୟନିଷ୍ପେଷଣ ଠାରୁ ଅବିଚ୍ଛେଦ୍ୟ, ଦୁଃସାଧ୍ୟ ଏ କାମ, ମାତ୍ର ବିକଳ୍ପ ନାହିଁ । ଦୁଃସାଧ୍ୟ କେବଳ ଲୋକଙ୍କ ପକ୍ଷରେ, ରାଷ୍ଟ୍ର ପାଇଁ ନୁହେଁ; ଯେପରି ଚୌଷଠି ସାଲ୍‌ରେ ଦିଲ୍ଲୀରେ ନିର୍ବାଧ ଶିଖସଂହାର ଚାଲିଥିବାବେଳେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧିଙ୍କ ପ୍ରବଚନ : ପ୍ରକାଣ୍ଡ କୋଉ ମହୀରୁହ ସହସା ଯଦି ଉପୁଡ଼ିପଡ଼େ, ଉପକଣ୍ଠର ସ୍ଥଳଭାଗ ଭୟଙ୍କରଭାବେ କମ୍ପମାନହେବା ସ୍ୱାଭାବିକ ! ଏଇ ମେ’ ୨୫ ତାରିଖ ଦିନ ଛତିଶଗଡ଼ରେ କଂଗ୍ରେସ୍ ନେତାଙ୍କ ସେନାବଳ ଦ୍ୱାରା ସୁରକ୍ଷିତ ମୋଟରଗାଡ଼ି ଶୋଭାଯାତ୍ରାକୁ ମାଓବାଦୀ ଆକ୍ରମଣକରି ଢେର୍ ଲୋକଙ୍କୁ ମାରିଦେଇଚନ୍ତି । ତାଙ୍କ ଭିତରେ ଅଛନ୍ତି ସଲଓ୍ୱା ଜୁଡୁମ୍‌ର ସ୍ରଷ୍ଟା ମହେନ୍ଦ୍ର କର୍ମା ଆଉ ତତ୍‌କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ନନ୍ଦକିଶୋର ପଟେଲ୍ । ଇଂରେଜୀ ଟେଲିଭିସନ୍ ଚାନେଲ୍ ଅହୋରାତ୍ର ହୁରି ଛାଡୁଚନ୍ତି, ସେନାବାହିନୀକୁ ପଠାଅ, ଆକାଶମାର୍ଗରୁ ବୋମାପକାଇ ଟେରରିଷ୍ଟ୍‌ଙ୍କୁ ନିର୍ମୂଳ କରିଦିଅନ୍ତୁ । କାହିଁକିନା, ଗଣତାନ୍ତ୍ରିକ ମୂଲ୍ୟବୋଧ ବିଷୟରେ ପାଟିଫିଟାଇବା ଅଧିକାର ଅନୈତିକ ଏଇ ନରଘାତକ ଦାବି କରିପାରନ୍ତିନାହିଁ ! କିନ୍ତୁ ଏମାନଙ୍କୁ ମୁକାବିଲା କରିବାକୁ ଅପ୍ରାପ୍ତବୟସ୍କ ଆଦିବାସୀ ପିଲାଙ୍କୁ ବିଭିନ୍ନ ଶିବିରରେ ସଂଗଠିତକରି ହାତରେ ବନ୍ଧୁକ ଧରାଇଦେଇ, ଟଙ୍କାପଇସା ଖାଇବାପିଇବା ଯୋଗାଇଦେଇ ସଲଓ୍ୱା ଜୁଡୁମ୍ ଭଳି ଆଦିବାସୀ ବିରୋଧରେ ଆଦିବାସୀ ଯୁଦ୍ଧ ଭିଆଣ କରିଥିଲା କିଏ ? ଭାରତ ସରକାର ମଧ୍ୟ ଏଇ ଅପକର୍ମପାଇଁ ଟଙ୍କା ଯୋଗାଇଦେଇଚି, କୁହାଯାଇଚି security-related expenditure । କାହାର ସେକିଉରିଟି ? ଦାନ୍ତେୱାଡ଼ା, ବସ୍ତର, ବିଜାପୁର ଜିଲାରେ ଲୁହା ଇତ୍ୟାଦି ଖଣିଜ ଧାତୁ ଅନ୍ୱେଷଣରେ ଏକ୍ଷଣି କମ୍ପାନିମାନେ ଗାଁକୁ ଗାଁ ଉଠାଇଦେଇ ଜମି ଦଖଲକରୁଚନ୍ତି । ସରକାର ତରଫରୁ ବଳପ୍ରୟୋଗ କରାଯାଉଛି । ଯିଏ ଘରଛଡ଼ା ହେଲେ, ସେମାନଙ୍କୁ ସଲଓ୍ୱା ଜୁଡୁମ୍‌ରେ ଅନ୍ତର୍ଭୁକ୍ତ କରାଗଲା । ଯିଏ ମାନିଲେନାହିଁ, ତାଙ୍କୁ ମାଓବାଦୀ ନାଁ ଦେଇ ଶିକାର କରାଗଲା । ଦେଶବିଦେଶରେ ପ୍ରତିବାଦ ସରବ ହୋଇଚି । ଭାରତ ସରକାରଙ୍କ ଗ୍ରାମୀଣ ବିକାଶ ମନ୍ତ୍ରି ସରଜମିନ୍ ତଦନ୍ତକରି ଲେଖିଚନ୍ତି, the biggest grab of

tribal land after Columbus । ଟାଟା ସ୍ଟିଲ୍ ଆଉ ଏସାର୍ ଷ୍ଟିଲ୍‌କୁ ଦରକାର ଏପରି ସାତଖଣ୍ଡ ମୌଜା to mine the richest lode of iron ore available in India । ବିବାକ କିନ୍ତୁ ସରକାରୀ ତଥ୍ୟ । ଦେଶର ଗଣମାଧ୍ୟମ, ପାର୍ଲାମେଣ୍ଟ, ଏପରିକି ବାମପନ୍ଥୀ ଦଳ ସୁଦ୍ଧା ପାଟିଫିଟାଇନାହାନ୍ତି । ତାହେଲେ, ଦମନ ପୀଡ଼ନ ଲୁଣ୍ଠନ ହତ୍ୟା ଧର୍ଷଣ ଯା ଚାଲିଛି ପ୍ରାୟ ଆଠବର୍ଷ ଧରି ରାଷ୍ଟ୍ର ସହାୟତାରେ, ତାର ପ୍ରତିବାଦ / ପ୍ରତିରୋଧ ସକାଶେ ପ୍ରତିହିଂସାର ଆଶ୍ରୟ ନନେଇ ଲୋକ କଣ ରାମଧୂନ୍ ଗାଇ ମୁଷ୍ଟିଭିକ୍ଷା କରିବେ ? ଏଇ ତ ଗାନ୍ଧି-ପରିକଳ୍ପିତ 'ଆତ୍ମଶକ୍ତି', ନିର୍ଯ୍ୟାତିତର ଆତ୍ମଶକ୍ତି !

ସମାଜସଂଗଠନ ଯେହେତୁ ବିବିଧ ବିଭେଦରେ ବିଦୀର୍ଣ୍ଣ, ବିଦ୍ୱେଷ ଅବଶ୍ୟମ୍ଭାବୀ; ଏବଂ ବିଦ୍ୱେଷର ପ୍ରତିକାର କି ପ୍ରତିଷେଧ ରାଷ୍ଟ୍ର ଯଦି ସଂଗଠିତ କରିନପାରେ, ରାଷ୍ଟ୍ର ପ୍ରତି ମଧ୍ୟ ବିଦ୍ୱେଷ ଉପୁଜିବ ଏକାଯୁକ୍ତିରେ । ଏ ସମ୍ଭାବନା ବିଷୟରେ ଅବହିତ ଥିଲେ ବୋଲି, ସଂବିଧାନପ୍ରଣେତା ମୌଳିକ ଅଧିକାର ଛଡ଼ା 'ଡିରେକ୍ଟିଭ୍ ପ୍ରିନ୍ସିପ୍ଲସ୍ ଅବ୍ ଷ୍ଟେଟ୍ ପଲିସି' ନାମକ ନିୟମ ପ୍ରବର୍ତ୍ତନକରିଚନ୍ତି, ମାତ୍ର ସେ ନିୟମକୁ ରାଷ୍ଟ୍ର ଯଦି ଅମାନ୍ୟକରେ, କୋର୍ଟକଚେରିର ଦ୍ୱାରସ୍ଥହେବା ନିଷିଦ୍ଧ । ଲୋକଙ୍କୁ ତେଣୁ ଛାଡ଼ିଦିଆଯାଇଚି ରାଷ୍ଟ୍ରର ଦାକ୍ଷିଣ୍ୟ ଉପରେ । ଅଧିକାର ସାବ୍ୟସ୍ତକରିବେ ତେବେ କି ଉପାୟରେ ? ଅହିଂସା ହିଂସା ଭଳି ବିମୂର୍ତ୍ତ ନୈତିକତା ଏ ପ୍ରଶ୍ନର ଉତ୍ତର ଦେଇପାରେନା; ଦେଇପାରେ ଏକମାତ୍ର ଇତିହାସ; ଇତିହାସର ଦ୍ୟର୍ଥହୀନ ଉତ୍ତର, ବଳପ୍ରୟୋଗ । ରାଷ୍ଟ୍ର ଅବଶ୍ୟ ବଳପ୍ରୟୋଗର ମୁକାବିଲାକରିବ ଅଧିକତର ବଳପ୍ରୟୋଗ ଦ୍ୱାରା; ଲୋକ ସେତେବେଳେ ଅସମ ପ୍ରତିଯୋଗିତାରେ ପାରି ନଉଠି ଆଶ୍ରୟକରିବେ ଗୋପନ ସନ୍ତ୍ରାସକୁ । ଚିରାଚରିତ ଏ ପ୍ରବଣତାକୁ ବିମୂର୍ତ୍ତ ଅହିଂସାବାଣୀ କ୍ଷାନ୍ତ କରିପାରେନା; ପାରେନା ବୋଲି, ଗାନ୍ଧି ବେଳେବେଳେ ସତ୍ୟାଗ୍ରହ ପ୍ରତ୍ୟାହାରକରିଚନ୍ତି, ଯେପରି ଚମ୍ପାରଣରେ; ମାତ୍ର ଫଳତଃ, ଲୋକଙ୍କ 'ଆତ୍ମଶକ୍ତି'ର ବିକାଶ ବାଧାପାଇଚି । ମହାତ୍ମାମାନେ ଆତ୍ମଶକ୍ତି ବଳରେ ଅନ୍ୟାୟ ସମ୍ମୁଖୀନହେବାକୁ ପରାମର୍ଶଦେଇଚନ୍ତି; ମାତ୍ର ଆତ୍ମଶକ୍ତି ବିମୂର୍ତ୍ତ କୋଉ ଆଧ୍ୟାତ୍ମିକତା ହୋଇପାରେନା, ଯେପରି ପୁରାଣକଥିତ ଧ୍ରୁବ / ପ୍ରହ୍ଲାଦଙ୍କ ପ୍ରତିରୋଧ । ଆତ୍ମଶକ୍ତି ଏକ ସର୍ଜନଶୀଳ ଅଭିବ୍ୟକ୍ତି, ଯେପରି, ପରିଶ୍ରମ ବଳରେ ବହିଃପ୍ରକୃତିରୁ ଜୀବନଧାରଣର ରସଦ-ସଂଗ୍ରହ । ସେଥିରେ ସଂଗ୍ରାମ ଯେତିକି ସହଯୋଗ ତହିଁରୁ ଊଣା ନୁହେଁ । ସେଇ ବାଟରେ ମଣିଷ ଆତ୍ମଶକ୍ତିକୁ ଉପଲବ୍ଧିକରେ । ଗାନ୍ଧିଙ୍କୁ ଅଜଣା ନଥିଲା ଯେ, ଧ୍ୟାନ କି ପ୍ରାର୍ଥନା ବିପଦଆପଦରେ ଅସହାୟର ଭରସା ହେବାସତ୍ତ୍ୱେ, ଜୀବନସଂଗ୍ରାମରେ

କୋଉହେଲେ କାମରେ ଲାଗେନା; ଏବଂ ସେଥିପାଇଁ, ବୟାଳିଶରେ 'ଭାରତ ଛାଡ଼' ଡାକ ଦେବାବେଳେ ଦେଶବାସୀଙ୍କୁ ଆହ୍ୱାନଜଣାଇଚନ୍ତି, 'ଡୁ ଅର୍ ଡାୟ୍' । ଅର୍ଥାତ୍, ମାର୍କ୍ସ କହିବା ପରି, ପିସ୍‌ଫୁଲ୍ ଇଫ୍ ପସିବ୍ଲ, ଉଇଥ୍ ଆର୍ମସ୍ ଇଫ୍ ନେସେସରି । ସ୍ପଷ୍ଟତଃ, ପରିସ୍ଥିତି ବାଧ୍ୟ ନକଲେ ମଣିଷ ଅସ୍ତ୍ର ଉଠାଇନିଏନା ହାତକୁ, ଏବଂ ଇଂରେଜ୍ ଏକଥା ବୁଝିଥିଲେ ବୋଲି, ସିପାହୀବିଦ୍ରୋହ ଅବ୍ୟବହିତରେ ପ୍ରଚଳିତକରିଚନ୍ତି ଆର୍ମସ୍ ଆ୍ୟାକ୍ଟ; ଅସ୍ତ୍ରଧାରଣ ଅଧିକାର କାଢ଼ିନିଆଯାଇଚି ଭାରତବାସୀଙ୍କ ହାତରୁ । ମାତ୍ର ସ୍ୱାଧୀନ ଭାରତର ଗଣତନ୍ତ୍ର ମଧ୍ୟ ସେ ଆଇନ୍‌କୁ ରଦ୍ଦକରିନାହିଁ ଅଦ୍ୟାବଧି । ଅଥଚ ମୁସଲ୍‌ମାନ୍ ରାଜତ୍ୱରେ ଗୁରୁ ଗୋବିନ୍ଦ ସିଂହ ଅସ୍ତ୍ରଧାରଣକୁ କରିଚନ୍ତି ସ୍ୱଧର୍ମରୁ ଅଚ୍ଛେଦ୍ୟ । ବୁର୍ଜୋୟା-ଗଣତନ୍ତ୍ର ଦମନପ୍ରବଣ ବୋଲି, ପ୍ରତି ମୁହୂର୍ତ୍ତରେ ଆଶଙ୍କାକରେ ପ୍ରତିରୋଧ, ବିନା ଅସ୍ତ୍ରରେ ପ୍ରତିରୋଧ ଯେତେବେଳେ ଦଶନହରାଇ ଦଂଶନକରିବାକୁ ଅକ୍ଷମ, ଇମର୍ଜେନ୍ସି ଭଳି ସର୍ବବ୍ୟାପୀ ଅଧିକାରହରଣ ହୋଇଯାଏ ନିର୍ବାଧ; ଏବଂ 'ସନ୍ଥ' ଉପସର୍ଗରେ ଭୂଷିତ ବିନୋବା ଇମର୍ଜେନ୍ସିକୁ କହନ୍ତି *ମହାଭାରତ* ର 'ଅନୁଶାସନ ପର୍ବ' । ସଂବିଧାନର ଡିରେକ୍ଟିଭ୍ ପ୍ରିନ୍ସିପ୍‌ଲ୍‌ସ୍ ଅଳ୍ପ ଲୋକଙ୍କ ହାତରେ ଦେଶର ସଂପଦ କେନ୍ଦ୍ରୀଭୂତ ହୋଇରହିବା ଅଥବା ଦେଶର ସମ୍ବଳର ଅସମ ବଣ୍ଟନର ବିରୋଧ କରୁଚି, ମାତ୍ର ରାଷ୍ଟ୍ରର ଚରିତ୍ର ଯେହେତୁ ବୁର୍ଜୋୟା, ସଂପଦର ପୁନର୍ବଣ୍ଟନ ଆଜିଯାଏଁ ସମ୍ଭବପର ହୋଇନାହିଁ । ବାମପନ୍ଥୀଙ୍କ ଭିତରୁ ହଠାତ୍ ମାଓବାଦୀ ଗୋଷ୍ଠୀର ଅଭ୍ୟୁଦୟକୁ ଏଇ ପ୍ରେକ୍ଷିତରେ ବିଚାର କଲେ, ସାଧାରଣ ମଣିଷ ପ୍ରତି ଅବିଚାର କରାହେବ । ମାଓବାଦୀ ଅବଶ୍ୟ ଏକ ଅନୈତିହାସିକ ପ୍ରତୀତି, କାହିଁକିନା, ମାର୍କ୍ସଚିନ୍ତା ଏକ ବିଶ୍ୱଦୃଷ୍ଟି ବା ଓର୍‌ଲ୍ଡ ଭିଉ, 'ବାଦ'ଗୁଡ଼ାକ ବ୍ୟକ୍ତିବିଶେଷର ଦୃଷ୍ଟିକୋଣ । ଖାସ୍ ଚୀନ୍‌ରେ ସେଥିପାଇଁ ମାଓଙ୍କ ନାଁରେ କୌଣସି 'ବାଦ' ପ୍ରଚଳନ କରାଯାଇନାହିଁ, କୁହାଯାଇଚି 'ମାଓ ଜେଡ୍‌ଙ୍ଗ୍ ଥଟ୍' । ମାର୍କ୍ସଚିନ୍ତା ହିଁ ଏକମାତ୍ର ଆଇଡିଅଲଜି ଯା ତତ୍ତ୍ୱ ଓ କର୍ମଧାରା ମଧ୍ୟରେ ସାଧନକରିପାରେ ସମନ୍ୱୟ; ଏବଂ ସେଇ କର୍ମଧାରାରେ ଲେନିନ୍, ଷ୍ଟାଲିନ୍, ମାଓ ପ୍ରଭୃତି ଗୋଟିଏ ଗୋଟିଏ ବିଶେଷ ପ୍ରବାହ । ସ୍ୱାଧୀନ ଅସ୍ତିତ୍ୱ ଯେହେତୁ ଅନୁପସ୍ଥିତ, ନିର୍ଦ୍ଦିଷ୍ଟ ପ୍ରବାହଗୁଡ଼ାକୁ ସର୍ବଜନୀନ ବିବେଚନାକରିବା ଅଯୌକ୍ତିକ । ଅନ୍ତତଃ ମାର୍କ୍ସୀୟ ତତ୍ତ୍ୱବିଚାରରେ ।

ଏବେ ସରକାରୀ ହିସାବ କହୁଚି, ଜନସଂଖ୍ୟାର ୫୮% ଲୋକଙ୍କ ଜୀବନନିର୍ବାହ ନିର୍ଭରକରୁଚି କୃଷି ଓ ତଦ୍‌ସମ୍ପର୍କିତ କାମଧନ୍ଦା ଉପରେ । ଜମି ସହିତ ଲୋକଙ୍କ ଜୀବନଧାରଣ ସମସ୍ୟା ଯେ ଓତଃପ୍ରୋତ, ଏକଥା ସ୍ୱାଧୀନତାସଂଗ୍ରାମ ଚାଲୁଥିବା ବେଳେ ଉପଲବ୍ଧିକରିଚନ୍ତି ସମସ୍ତେ; ଏବଂ କରିଚନ୍ତି ବୋଲି, ସ୍ୱାଧୀନତା

ପାଇବା ଉତାରୁ ସ୍ଲୋଗାନ୍ ଉଠିଚି, ଲଙ୍ଗଳ ଯାର ଜମି ତାର/ ଜାଲ ଯାର ମାଛ ତାର । ଏ ସ୍ଲୋଗାନ୍ ଖାଲି ବାମପନ୍ଥୀ ନୁହେଁ, କଂଗ୍ରେସ ବି ଦେଇଚି ବିନା ଦ୍ୱିଧାରେ । ଅଥଚ କାଳକ୍ଷେପଣ ନକରି, ଭୂମିସଂସ୍କାର ପ୍ରତି ଦାୟବଦ୍ଧତାରୁ ଇସ୍ତଫାଦେଇଚନ୍ତି ବିବାକ ରାଜ୍ୟସରକାର । ଯୋଉ ଦରିଦ୍ର ପେଟପୋଷିବାକୁ ଜମି ଉପରେ ନିର୍ଭରକରେ, ବଞ୍ଚିତହୋଇ ରହିଯାଇଚି କପାଳକୁ ଆଦରି । ଯୋଜନା କମିଶନ୍ କହୁଛି, The poor have depended on common property resources such as forests, pastures and water sources for the satisfaction of their basic survival needs. With the increasing tendency to see all resources as sources of profit the poor are being deprived of whatever access they had to such resources । ଅଥଚର ସରକାର କହୁଚି ଆର୍ଥିକ ଉନ୍ନୟନ ଘଟୁଚି କୁଆଡ଼େ ବର୍ଷକୁ ୯%; ଖାଲି ତୁଫାନ୍ କି ବର୍ଷାଭାବ କାରଣରୁ ଏ ବର୍ଷ କମିଯାଇଚି ସାମାନ୍ୟ । ଜଗତ୍ ମିଥ୍ୟା, ବ୍ରହ୍ମ ସତ୍ୟ ଭଳି କଥାଗୁଡ଼ାକ, କାହିଁକିନା, ଯୋଜନା କମିଶନ ରିପୋର୍ଟକହୁଚି, But it is a matter of common observation that the inequalities between classes, town and country and between upper castes and the underprivileged communities are increasing. The Constitution's mandate (Article 39) to prevent concentration of wealth in a few hands is ignored in policy-making । ମାଓବାଦୀଙ୍କ ଅବରୋଧ ତେବେ ବିକାଶ ବାଟରେ ଅନ୍ତରାୟ ହେଲା କେମିତି ? ଅପଶାସନ କିମ୍ବା ନ୍ୟାୟବିଚାରରେ ପକ୍ଷପାତିତ୍ୱ ତ ବଞ୍ଚିତ ନିପୀଡ଼ିତକୁ ବିଦ୍ରୋହକରିବାକୁ ବାଧକରିବ । ଏକ୍ଷଣି ୧୫ଟି ଅଙ୍ଗରାଜ୍ୟରେ ସେମାନେ ସକ୍ରିୟ; ଏପରିକି, ପଶ୍ଚିମବଙ୍ଗରେ ମଧ୍ୟ, ଯୋଉଠି ବାମପନ୍ଥୀ ସରକାର ଚଷୀଙ୍କୁ ଭୂସ୍ୱତ୍ୱରୁ ବିତାଡ଼ିତକରିଚି, ଟ୍ରାଇବାଲ୍‌ଙ୍କୁ କରିଚି କ୍ରମାଗତ ଅବହେଳା । ତେଣୁ, ସୋସାଲିଜ୍ମ କହିଲେ ବାମପନ୍ଥୀ କ'ଣ ବୁଝନ୍ତି ବଡ଼କଥା ନୁହେଁ; ବଡ଼କଥା ଏକ୍ଷଣି ସୋସାଲିସ୍ମ କହିଲେ ଭାରତର ସଂବିଧାନ କଣ ବୁଝେ; ଏବଂ ସେଇ ବିନ୍ଦୁରୁ, ରାଷ୍ଟ୍ରଶକ୍ତିର ଦୂରତ୍ୱ ଅନତିକ୍ରମ୍ୟ କି ନୁହେଁ । ତାହାରି ଉପରେ ନିର୍ଭରକରୁଚି ଅହିଂସା-ହିଂସା ଦ୍ୱାନ୍ଦ୍ୱିକତାର ବିଗଳନ । ବିଶେଷତଃ ଏଇ କାରଣରୁ ଯେ, ଲୋକ ଏପରି ନିଦାରୁଣ ଅବସ୍ଥାକୁ ଠେଲିହୋଇ ଆସିଗଲେଣି, ସୁନାମି କି ଆଇଲା ଭଳି ପ୍ରାକୃତିକ ଦୁର୍ବିପାକ ମଧ୍ୟ ଅଟକାଇ ପାରୁନାହିଁ ଲୋକସଂଖ୍ୟାର ବିସ୍ଫୋରଣ; ଅଚାନକ ହିଂସା କି ଆକସ୍ମିକ ମୃତ୍ୟୁ ମଧ୍ୟ ଭୟଭୀତ କରିପାରୁନାହିଁ । ଏମାନଙ୍କୁ ଅହିଂସାବାଣୀ ଶୁଣାଇବା ମାଛିକୁ ଶାସ୍ତ୍ରଶୁଣାଇବା ଭଳି ହାସ୍ୟକର । ହାସ୍ୟକର ବୋଲି, ଫରାସୀ ଭାବୁକ ମରିସ୍

ମାଇର୍‌ଲୋହ୍‌ପୌଁଟି କହିଥିଲେ, to teach non-violence is to strengthen established violence, that is to say, a system of production which make, misery and war inevitable... It is a violence which transcends itself on the way to the human future । ତଥାକଥିତ ମାଓବାଦୀଙ୍କ ହିଂସା, ସେଥିପାଇଁ, ସମାଜ ପକ୍ଷରେ କୋଉହେଲେ ବ୍ୟକ୍ତିଗତ ଆକ୍ରୋଶ ନୁହେଁ; ସମାଜର ବୈପ୍ଳବିକ ପରିବର୍ତ୍ତନ, ଦମନ–ଶୋଷଣ ଅବସାନ ସକାଶେ ସଶସ୍ତ୍ର ମୋବିଲାଇଜେସନ୍ ।

ଏକଥାରୁ ଉଠିଆସୁଚି ଅବଶ୍ୟ ଏଣ୍ଡ୍‌ସ୍ ଆଣ୍ଡ୍ ମିନ୍ସ ବା ଉଦ୍ଦେଶ୍ୟ ଓ ଉପାୟ ମଧ୍ୟସ୍ଥ ଆପାତଃ ବିରୋଧ; ଅର୍ଥାତ୍, ସେଇ ପୁରୁଣା ପ୍ରଶ୍ନ, ଭଲ ଉପାୟ ଅବଲମ୍ବନ ନକରି ଭଲ ଉଦ୍ଦେଶ୍ୟ ସିଦ୍ଧ ହୋଇପାରେ କି ? ସପକ୍ଷ ଓ ବିପକ୍ଷରେ ଢେର୍ ବହିପତ୍ର ଲେଖାଯାଇଚି ପୃଥିବୀରେ; ଏପରିକି, ରସେଲ୍ ମିଥ୍ୟାକଥନ ସପକ୍ଷରେ ଯୁକ୍ତିଦେଖାଇ କହିଚନ୍ତି, ଶିକାରୀ ଯଦି ବାଟରେ ହାବୁଡ଼ି ତାଙ୍କୁ ପଋରେ, ପଶୁଟା କୋଉଆଡ଼କୁ ଋଲିଗଲା, ଦେଖିଚନ୍ତି କି ? ଦେଖିଥିଲେ ବି, ବତାଇଦେବେ ଭୁଲ୍ ବାଟ । ପ୍ରଶ୍ନଟା ତେଣୁ ଆପେକ୍ଷିକ; ଶିକାରୀ ଆଉ ଅଭିପ୍ରେତ ପଶୁ ବେଳକୁ ଯୋଉ ଯୁକ୍ତି, ଶ୍ରେଣୀସଂଗ୍ରାମରେ ଶୋଷକ ଓ ଶୋଷିତ ବେଳକୁ ମଧ ସେଇ ଏକା ଯୁକ୍ତି । ଶ୍ରେଣୀସଂଗ୍ରାମର ଉଦ୍ଦେଶ୍ୟ ସବୁବେଳେ ସମାଜବ୍ୟବସ୍ଥାର ରୂପାନ୍ତର; ବିପ୍ଳବୀକୁ ସେଥିପାଇଁ ପକ୍ଷ ଗ୍ରହଣକରିବାକୁ ପଡ଼େ; ସାପ ମରିବନାହିଁ କି ବାଡ଼ି ଭାଙ୍ଗିବନାହିଁ ନୀତିରେ ଶୋଷଣପୀଡ଼ନର ସମାଧାନ ହୁଏନା । ଭାରତର ସ୍ୱାଧୀନତା ପରି ଶୋଷିତର ହସ୍ତାନ୍ତର ଘଟେ ପୁରୁଣା ଶୋଷକ ହାତରୁ ତାର ନୂଆ ସଂସ୍କରଣ ହାତକୁ; ବିପ୍ଳବୀକୁ ତେଣୁ ପ୍ରତିପଦକ୍ଷେପରେ ଆତ୍ମସମୀକ୍ଷାରେ ବ୍ୟାପୃତରହିବାକୁ ହୁଏ; ଯା କରୁଚି କି ନକରୁଚି, ସମାଜରୂପାନ୍ତର କାମରେ କେତେଦୂର ସହାୟକ ? ଯିଏ ଯା କହୁଚି କି କରୁଚି, ଲୋକଙ୍କ ସ୍ୱାର୍ଥାନୁକୂଳ ନା ଅତ୍ୟାଋରୀର ସ୍ୱାର୍ଥାନୁକୂଳ ? କଥାଗୁଡ଼ାକୁ ତତ୍ତ୍ୱ ଓ ବାସ୍ତବାୟନ ପ୍ରେକ୍ଷିତରେ ଅନୁକ୍ଷଣ ବିଋରକରିପାରିଲେ ହିଂସା ଭଲ କି ମନ୍ଦ ଭଳି ବିମୂର୍ତ୍ତ ବିବେଚନା ମନେହେବ ଅଳୀକ ଦାମ୍ଭିକତା; ଉଦ୍ଦେଶ୍ୟ ନିର୍ଦ୍ଧାରଣକରିବ ଉପାୟର ଭଲମନ୍ଦ । ଏଇ ମୁହୂର୍ତ୍ତରେ 'ଟେରର୍'ର ମୂର୍ତ୍ତିମନ୍ତ ପ୍ରତିଭୂ ଯେହେତୁ ରାଷ୍ଟ୍ରଶକ୍ତି, କାଗଜପତ୍ରରେ ଲେଖାଯାଉଛି 'ଷ୍ଟେଟ୍-ଟେରେରିଜ୍ମ'; ଉଦାହରଣ ଦିଆଯାଉଚି ESMA, MISA, NSA, ଆର୍ମଡ୍ ଫୋର୍ସେସ୍ ସ୍ପେସାଲ ପାୱାର୍‌ସ୍ ଆକ୍ଟ, ଡିଷ୍ଟର୍ବଡ୍ ଏରିଆଜ୍ ଆକ୍ଟ, ସଂବିଧାନ ଓ ପିଙ୍ଗଲକୋଡ୍‌ର ସଂଶୋଧନ । ଉଦ୍‌ଭାବନ କରାଯାଉଚି ନିତ୍ୟନୂତନ ଅପରାଧ, ନିତ୍ୟନୂତନ କର୍ତ୍ତୃତ୍ୱ(ଅଥରିଟି), କ୍ରମୋଚ୍ଚ ସୋପାନରେ ସଜ୍ଜିତ ନିତ୍ୟନୂତନ କୋର୍ଟକଚେରି, ବିନା ବିଋରରେ ଅଟକ, ବିନା

ୱାରେଣ୍ଟରେ ଗିରଫ୍, ପୁଲିସ୍‌ହାତରେ ନିର୍ଯାତନକରିବାକୁ ଅଧିକରୁ ଅଧିକ କ୍ଷମତା, କ୍ଷେତ୍ରବିଶେଷରେ ଅଧାସାମରିକ ବାହିନୀ ଓ ସେନାବାହିନୀ ନିଯୋଗ । ସାଧାରଣ ଲୋକର ନିରାପତ୍ତା ଯେ ଖାଲି ବିପନ୍ନହୋଇଚି, ତା ନୁହେଁ; ପୁଲିସ୍ ହେପାଜତରେ ନାରୀଧର୍ଷଣ, ପୁଲିସ୍ ହେପାଜତରେ ମାଡ଼ଖାଇ ମରଣ, ଏନ୍‌କାଉଣ୍ଟର୍ ଡେଥ୍-ତାଲିକାବଢ଼ାଇ ଲାଭନାହିଁ । ଶେଷକୁ ମାଓବାଦୀ ପାର୍ଟିକୁ ନିଷିଦ୍ଧଘୋଷଣା ଆଉ ଆକାଶପଥରୁ ଆକ୍ରମଣ ଧମକ । ତାହେଲେ, ସଂଗଠିତଭାବେ ସମାଜ ଉପରେ ସବୁଠୁଁ ବେଶି 'ଟେରର୍' ବିସ୍ତାରକରୁଚି କିଏ ? ରାଷ୍ଟ୍ର, ନା ସାମ୍ରାଜ୍ୟବାଦକୁ ବିରୋଧକରୁଚନ୍ତି ଯିଏ ? କୁହାଯାଉଚି, ଦେଶଟା ଗରିବ; କିନ୍ତୁ ଲୋକଙ୍କ ଉପରେ ସନ୍ତ୍ରାସବିସ୍ତାର ଲାଗି ଅର୍ଥାଭାବ ଦେଖାଯାଉନାହିଁ କୋଉଠି ।

'ଟେରରିଜ୍ମ' କଥାଟା ଆମଦାନି କରାଯାଇଚି ଆମେରିକାରୁ । ଓସାମା ବିନ୍ ଲାଦେନ୍ କୋଉ ନକ୍ସଲ ନୁହେଁ; ବିତ୍ତବାନ ପରିବାରର ସନ୍ତାନ । କଣପାଇଁ ତେବେ ଭାଙ୍ଗିପକାଇଲା ୱର୍ଲ୍ଡଟ୍ରେଡ୍ ସେଣ୍ଟର୍ ଆଉ ପେଣ୍ଟାଗନ୍‌ରୁ ଫାଳେ ? ଆରବଭୂଖଣ୍ଡର ଅଧିକାଂଶ ଦେଶରେ ମାଟିତଳେ ପେଟ୍ରୋଲ ଅଛି; ଆମେରିକା ସକାଶେ ଯା ତରଳ ସୁନା; ମାତ୍ର ୧୦୦ ମିଲିଅନ୍ ଅଳ୍ପବୟସୀ ପିଲା ସେଠି ରାସ୍ତାଉପରେ ବଢୁଛନ୍ତି, ସମସ୍ତେ ଛେଉଣ୍ଡ । ତାଙ୍କ ଭିତରୁ ଲୋକଧରିନେଇ ଇରାକ୍‌ରେ ଯୁଦ୍ଧଚଳାଉଛି ଯୁକ୍ତରାଷ୍ଟ୍ର । ପେଟ୍ରୋଲ ଅଛି, କିନ୍ତୁ ଦେଶଗୁଡ଼ାକ ରାଜତନ୍ତ୍ର; ଶାସକଶ୍ରେଣୀ ତେଣୁ ଟଙ୍କାଗୁଡ଼ାକ ନେଇଯାଇ ବିନିଯୋଗକରିଚି ଆମେରିକାରେ । ଦେଶଗୁଡ଼ାକରେ ଗୋଟିଏଶ୍ରେଣୀ ହାତରେ ଅଛି ଅମାପ ସମ୍ପତ୍ତି, ସାଧାରଣଲୋକ ଚଷକରିବାକୁ ବି ଶିଖିନାହାଁନ୍ତି; ତେଲସବୁ ବୋହିନେଉଚି ଆମେରିକା । ବିନ୍ ଲାଦେନ୍‌ର ତଥାକଥିତ ମୌଳବାଦ କି ଜିହାଦ୍ ସେଇ ପ୍ରେକ୍ଷିତରେ ତାତ୍ପର୍ଯ୍ୟପୂର୍ଣ୍ଣ; କାହିଁକିନା, ଯାହାକୁ ପାଶ୍ଚାତ୍ୟ ଭୋଗବାଦ ବା 'ଆମେରିକାନ୍ ଓୟେ ଅବ୍ ଲାଇଫ୍' କୁହାଯାଉଚି, ତାହାହିଁ ସନ୍ତ୍ରାସର ଶରବ୍ୟ; ବିଶେଷତଃ ଯେତେବେଳେ କୋଉହେଲେ ବାମପନ୍ଥୀ ବିକଳ୍ପ ଆରବ-ଭୂଖଣ୍ଡରେ ଗଢ଼ିଉଠିନାହିଁ । ଅନ୍ୟ ଶବ୍ଦରେ, ସମାଜର ବୈପ୍ଲବିକ ରୂପାନ୍ତର ନଘଟିବାଯାଏଁ ସନ୍ତ୍ରାସର ବିଲୋପ ଅସମ୍ଭବ । ଅହିଂସାବାଦୀ ଅବଶ୍ୟ, ଆଳାପ-ଆଲୋଚନା, ତର୍କ-ବିତର୍କ, ଗଣତନ୍ତ୍ର ଇତ୍ୟାଦି ବାଟଦେଇ ସମାଧାନ ଖୋଜିବେ; ମାତ୍ର ସେ ବାଟରେ ପୃଥିବୀରେ କୋଉଠିହେଲେ ସମାଜ ବଦଳିଯାଇନାହିଁ । ଯାଇନାହିଁ ବୋଲି, ସତ୍ୟଜିତ୍ ରାୟଙ୍କ ଫିଲ୍ମ *ସୀମାବନ୍ଧ* ରେ ଆଭାସ ଦିଆଯାଇଚି, ଗଡ଼ପଡ଼ତା ଶିକ୍ଷିତ ମଧ୍ୟବିତ୍ତଯୁବକ ଅପେକ୍ଷା ବିପ୍ଳବୀବେକାର ସତକୁସତ ବିଚକ୍ଷଣ; ଏପରିକି, ମ୍ୟାଗ୍‌ସେସେ ପୁରସ୍କାର ବିଜୟୀ ମହାଶ୍ୱେତା ଏକ୍ଷଣି ମାଓବାଦୀଙ୍କ ପଛରେ ।

ସନ୍ଦେହନାହିଁ, ବୁଦ୍ଧିଜୀବୀର ଏଇ ସମର୍ଥନ ମୂଳରେ କାମକରୁଚି ରାଷ୍ଟ୍ରପ୍ରବର୍ତ୍ତିତ ପ୍ରତିହିଂସାର ଆକାର-ପ୍ରକାର । ରାଷ୍ଟ୍ର ମାନେ ଶ୍ରେଣୀବିଚାରରେ ବୁର୍ଜୋୟା; ଭାରତର ମଧ୍ୟବିତ୍ତ କିନ୍ତୁ ବୁର୍ଜୋୟା ନୁହେଁ; ସାଧାରଣତଃ ଶିକ୍ଷିତ ଚାକିରୀଜୀବୀ ।

ସମାଜର ରୂପାନ୍ତର ଘଟେ କେମିତି, ଏକ ପ୍ରକ୍ରିୟା; ଏବଂ ଯେହେତୁ ପ୍ରକ୍ରିୟା, ନୀତିନିୟମ ଦ୍ୱାରା ନିର୍ଦ୍ଧାରିତ; ଅହିଂସା-ହିଂସା ବିବେଚନା ତେଣୁ ନିରର୍ଥକ । ସେଇ ନୀତିନିୟମକୁ ଆବିଷ୍କାରକରିବା ସଙ୍ଗେସଙ୍ଗେ ମାର୍କ୍ସ ସମାଜବିଦ୍ୟାର ଦ୍ୱାର ଉନ୍ମୁକ୍ତକରିଦେଇଚନ୍ତି ସାରା ପୃଥିବୀରେ; ଏବଂ ସେଇ ନୀତିନିୟମକୁ ସମାଜବିଜ୍ଞାନୀ ନାମିତକରିଚନ୍ତି ଐତିହାସିକ ବସ୍ତୁବାଦ ବା ହିଷ୍ଟ୍ରିକ୍ୟାଲ୍ ମେଟିରିଆଲିଜ୍ମ । ଯେହେତୁ ଇତିହାସ-ପ୍ରସୂତ, ପରିବର୍ତ୍ତନର ମାନଚିତ୍ର ଦେଖାଇ ଦେଇପାରେ ଗଠନଗତ ରୂପାନ୍ତର । ଯୋଉ ସମାଜର ଗତିଶୀଳତା ମାର୍କ୍ସ ବିଶ୍ଳେଷଣକରିଚନ୍ତି, ତା ଧନତାନ୍ତ୍ରିକ ସମାଜ । ଧନତନ୍ତ୍ରର ଗଠନରେ ଯାହାକୁ ଚାଳିକାଶକ୍ତି ଭାବରେ ଚିହ୍ନଟକରିଚନ୍ତି, ତା ଉତ୍ପାଦନର ଧରଣ ବା ମୋଡ୍ ଅବ୍ ପ୍ରଡକ୍ସନ୍; ହିଂସା ନୁହେଁ କି ଅହିଂସା ନୁହେଁ । ମୋଡ୍ ଅବ୍ ପ୍ରଡକ୍ସନ୍ ମାନେ ଯୋଉ ଉପାୟରେ ମଣିଷ ବହିଃପ୍ରକୃତି ସହିତ କ୍ରିୟା-ପ୍ରତିକ୍ରିୟା ବଳରେ ଜୀବନନିର୍ବାହର ଯାବତୀୟ ପ୍ରୟୋଜନ ଖାଲି ତୃପ୍ତକରେନା, ନିଜ ପ୍ରଜାତି ଓ ତାର କ୍ରମାଗତ ନିତ୍ୟାବଶ୍ୟକକୁ ମଧ୍ୟ ପୁନରୁତ୍ପନ୍ନ କରିଥାଏ; ଏବଂ ସେଥିପାଇଁ, ଏକମାତ୍ର ପୁଞ୍ଜିବାଦୀ ସମାଜର ଗଢ଼ଣ ନୁହେଁ, ଅପରାପର ସମାଜସଂଗଠନ ପ୍ରତି ମଧ୍ୟ 'ଉତ୍ପାଦନର ଧରଣ' ସମାନଭାବେ ପ୍ରଯୋଜ୍ୟ । ମାତ୍ର ଏକପ୍ରକାର ଉତ୍ପାଦନଧରଣରୁ ଉନ୍ନତତର ଉତ୍ପାଦନଧରଣକୁ ଉତ୍ତୀର୍ଣ୍ଣହେବା ପ୍ରାକୃତିକ ପ୍ରକ୍ରିୟା ନୁହେଁ । ପ୍ରାକୃତିକ ନୁହେଁ ବୋଲି, ସମାଜରୂପାନ୍ତର ଘଟିଚି ଶ୍ରେଣୀସଂଗ୍ରାମ ମାଧ୍ୟମରେ; ଏବଂ ଶ୍ରେଣୀସଂଗ୍ରାମ ମାନେ ହିଂସାର ଉପଯୋଗ ହୋଇପାରେ ଆବଶ୍ୟକ; ଏବଂ ସେ ହିଂସା ଏପରି ଭୟାନକ ଯେ, ମାର୍କ୍ସଙ୍କୁ ଲାଗିଚି, ମଣିଷର ନିହିତ ମନୁଷ୍ୟତ୍ୱକୁ ମଧ୍ୟ କଳୁଷିତକରିପାରେ । କାହିଁକିନା, ହିଂସା କୋଉ ସହଜାତ ସ୍ୱଭାବ ନୁହେଁ, ସମାଜତନ୍ତ୍ର ତେଣୁ ପୁଞ୍ଜିବାଦୀ ଉତ୍ପାଦନଧରଣର ନିଗେସନ୍ କେବଳ । କ୍ୟାପିଟାଲିଜ୍ମର ଷ୍ଟ୍ରକ୍‌ଚର୍ କିନ୍ତୁ ପ୍ରତିଯୋଗିତା ଉପରେ ପ୍ରତିଷ୍ଠିତ; ଉତ୍ପାଦନଧରଣରେ ଅନ୍ତର୍ଗୂଢ଼ ତେଣୁ ହିଂସା ଓ ପ୍ରତିହିଂସା, ସେଇ ଉତ୍ପାଦନଧରଣକୁ ଅତିକ୍ରମକରି ନପାରିଲେ ମଣିଷପ୍ରଜାତି କପାଳରେ ଅହିଂସା ଜୁଟିବନାହିଁ କସ୍ମିନ୍‌କାଳେ । କଥାଗୁଡ଼ାକ ଧ୍ୟାନଲବ୍ଧ ଅଧିବିଦ୍ୟା ନୁହେଁ; ନୁହେଁ ବୋଲି, ସତ-ମିଛ ପରୀକ୍ଷା କରାଯାଇପାରେ ପ୍ରାତ୍ୟହିକ ଅଭିଜ୍ଞତାରୁ ।

ପରିସଂଖ୍ୟାନ ପେଶ୍‌କରିବା ଦରକାରନାହିଁ; ସମକାଳର ପୃଥିବୀର ଯୋଉଆଡ଼କୁ ଚାହିଁଲେ ଦେଖିହେବ ବ୍ୟାପକ କର୍ମହୀନତା, ଗୃହହୀନତା, କ୍ଷୁଧା ଆଉ

ଦାରିଦ୍ର୍ୟ । ପଶ୍ଚିମର ବୁର୍ଜୋୟାଗଣତନ୍ତ୍ର ଜନମଙ୍ଗଳ ବାହାନାରେ ନାନାପ୍ରକାର ଉତ୍କୋଚଦେଇ ସୁଦ୍ଧା ଏ କଷଣ ଦୂରକରି ପାରୁନାହିଁ; ଛଳ-ଚାତୁରୀର ଆଶ୍ରୟନେଉଛି, ଯେପରି ନିଗ୍ରୋକୁ କରିଚି ରାଷ୍ଟ୍ରପତି । ଭାରତ ମଧ୍ୟ ପଛରେ ପଡ଼ିନାହିଁ, ରାଷ୍ଟ୍ରପତି ଜଣେ ମହିଳା; ଉପ-ରାଷ୍ଟ୍ରପତି ମୁସଲ୍‌ମାନ୍, ପ୍ରଧାନମନ୍ତ୍ରୀ ଶିଖ୍ ଆଉ ଲୋକସଭାର ସ୍ପିକର୍ ଖାଲି ଦଳିତ ନୁହେଁ, ଏକାଧାରରେ ନାରୀ । ସୁପରିକଳ୍ପିତ ଏଭଳି ବ୍ୟବସ୍ଥା ସମାଜର ଗଠନସମ୍ଭୂତ ହିଂସାକୁ ଦ୍ରବୀଭୂତ କରିପାରେନା; କରିପାରୁନାହିଁ । କାହିଁକିନା, ହିଂସାର ଅସଲ କାରଣ ଦିହର ରଙ୍ଗ, ଧର୍ମ, ଜାତି କି ଲିଙ୍ଗ ନୁହେଁ; ଅସଲ କାରଣ ବୈଷମ୍ୟ, ଯାର ମୁଖ ଓ ମୁଖା ଅସଂଖ୍ୟ । ମାତ୍ର ବୈଷମ୍ୟ ପ୍ରଧାନତଃ ସମ୍ପତ୍ତି-ଭିତ୍ତିକ । ତେଣୁ ସମ୍ପତ୍ତିର ଉତ୍ପାଦନଧରଣ ନବଦଳିବାଯାଏଁ ବୈଷମ୍ୟବିଲୋପ କବିକଳ୍ପନା । ରକ୍ତବହିବା ଦେଖିଲେ ଭାବୁଛୁଁ 'ହିଂସାରେ ଉନ୍ମତ୍ତ ପୃଥ୍ୱୀ'; କିନ୍ତୁ 'ମାର୍କେଟ୍'ରେ ଅଂଶଗ୍ରହଣ କରିନପାରି ଯୋଉ ଲକ୍ଷଲକ୍ଷ ଲୋକ ପେଟରେ ଓଦାକନା ପକାଇ ଶୋଇବାକୁ ଯାଉଚନ୍ତି ପ୍ରତିଦିନ, ଯୋଉ କୋଟିକୋଟି ପିଲା ଦିପହରେ ଗଣ୍ଡେ ଖାଇବାକୁମିଳିବ ବୋଲି, ଇସ୍କୁଲ୍‌କୁ ଯାଉଚନ୍ତି ପ୍ରତିଦିନ, ସହରବସ୍ତିରେ ଯୋଉ ହଜାରହଜାର ଯୁବତୀ ବେଶ୍ୟାବୃତ୍ତିରେ ସଢ଼ୁଚନ୍ତି ଦିନରାତି, ଯୋଉ ଚଷୀ କି ତନ୍ତୀ ଆତ୍ମହତ୍ୟାକରୁଚନ୍ତି ଗାଁଗଣ୍ଡାରେ, ଶିଳ୍ପପ୍ରସାର ନାଁରେ ଯୋଉ ଟ୍ରାଇବାଲ୍‌ଙ୍କୁ କରାଯାଉଚି ବାସଚ୍ୟୁତ ଉଦ୍‌ବାସ୍ତୁ, ତାଙ୍କ ଦିହରୁ ରକ୍ତିବହୁନାହିଁ, କାହିଁକିନା, ରକ୍ତ ଶୁଖିଯାଇଚି ଧମନୀରୁ । ଅଥଚ ଅହିଂସାର ପୂଜାରୀ ଶାସକଶ୍ରେଣୀ ବାଟ ଖୋଜିପାଉନାହିଁ କେମିତି କରିବ ପ୍ରତିକାର; ଗାନ୍ଧି ଯଦିଓ କହୁଥିଲେ ଲୁହପୋଛିଦେବେ ବିବାକ ଦୀନଦୁଃଖୀଙ୍କ ଆଖିରୁ ।

ସମାଜତନ୍ତ୍ରରେ ବିଶ୍ୱାସୀ ଲୋକଙ୍କ ପାଇଁ 'ବିପ୍ଳବ' ତେଣୁ ହିଂସା-ଅହିଂସା ଦ୍ୱନ୍ଦ୍ୱ ନୁହେଁ; ସମାଜ ଷ୍ଟ୍ରକ୍‌ଚର୍‌ର ମୌଳିକ ପରିବର୍ତ୍ତନ ଏକେବାରେ; ଉତ୍ପାଦନର ସାଧନଗୁଡ଼ିକୁ ସାମୂହିକ ନିୟନ୍ତ୍ରଣ ଭିତରକୁ ଆଣିନପାରିଲେ, ଉତ୍ପାଦନସମ୍ପର୍କ (ସେବ୍ୟ-ସେବକ ସମ୍ପର୍କ) ଆଇନ୍ ଆଖିକୁ ଦିଶିବ ଖାଲି ସମାନ; ମୌଳିକ ପରିବର୍ତ୍ତନ ଘଟିବନାହିଁ ଜମାରୁ । ଉତ୍ପାଦନ-ସାଧନକୁ ସମଗ୍ର ସମାଜର ସମ୍ପତ୍ତି କରିବାକୁ ହେଲେ, ସ୍ୱାର୍ଥର ସଂଘର୍ଷ କିନ୍ତୁ ଅନିବାର୍ଯ୍ୟ; ଏବଂ ସେ କ୍ଷେତ୍ରରେ ହିଂସା ଦରକାର କି ନୁହେଁ, ପୁରାପୁରି ଏକ କୌଶଳଗତ ପ୍ରଶ୍ନ । ଯେପରି, ଚମ୍ପାରଣରେ ଗାନ୍ଧିଙ୍କ ଅହିଂସା, କିମ୍ବା ଭାରତଛାଡ଼ ଆନ୍ଦୋଳନବେଳେ 'କରୋ ୟା ମରୋ' । ଅର୍ଥାତ୍, ଶାନ୍ତିପୂର୍ଣ୍ଣ ଅଭିସରଣ ପ୍ରକୃତରେ ବାଞ୍ଛିତ, ମାତ୍ର ପ୍ରତିପକ୍ଷ ଶାସକଶ୍ରେଣୀ ଯଦି 'ବିନା ଯୁଦ୍ଧେ ନଛାଡ଼ିବି ସୂଚ୍ୟଗ୍ର ମେଦିନୀ' ନୀତି ଧରେ, ପରିବର୍ତ୍ତନକାମୀ ବିପ୍ଳବୀ ବାଧ୍ୟହେବେ ଯୁଦ୍ଧକୁ ଯୁଦ୍ଧଦ୍ୱାରା

ମୁକାବିଲାକରିବାକୁ । ବୈଷମ୍ୟବିଲୋପକୁ ପ୍ରତିରୋଧ କରାଯାଉଚି ଯେହେତୁ ନିର୍ଦ୍ଦିଷ୍ଟ କୋଉ ଦେଶରେ ନୁହେଁ, ବସ୍ତୁତଃ ଦୁନିଆସାରା, ବ୍ୟବହାରକରାଯାଉଚି ବିପୁଳ ଅର୍ଥସମ୍ଭାର ସାଙ୍ଗକୁ ରାଜନୀତିକ କ୍ଷମତା; ଏପରିକି, ସେନାବାହିନୀ । ଅହିଂସ ସଂଗ୍ରାମ ତେବେ କୋଉଠିହେଲେ ସମ୍ଭବପର କି ? ଅଳ୍ପ କେତୋଟି ଉଦାହରଣରୁ ବୁଝାପଡ଼ିବ; ଯେପରି, ୧୯୫୩ରେ ଇରାନ୍‌ରୁ ମସାଦେଗ୍‌ଙ୍କ ଉତ୍ପାଟନ, ୧୯୫୪ରେ ଗୁଆତେମାଲାରୁ ଆର୍‌ବେଞ୍ଜ୍, ୬୪ରେ ବ୍ରାଜିଲ୍‌ରୁ ହୋଆଓ ଗୌଲାର୍ଟ, ୬୫ରେ ଡୋମିନ୍‌କାନ୍ ରିପବ୍ଲିକ୍‌ରୁ ହୁଆନ୍ ବୋସ୍, ୭୩ରେ ଚିଲିରୁ ସାଲ୍‌ଭାଦର୍ ଆଲ୍ଲେନ୍ଦେ, ଏବଂ ଅତି ସଂପ୍ରତି ଭେନେଜୁଏଲାରୁ ହୁଗୋ ସାଭେଜ୍‌ଙ୍କୁ ଉତ୍ପାଟନ ଉଦ୍ୟମ । ଅନ୍ୟ ଶବ୍ଦରେ, ଗଣତାନ୍ତ୍ରିକ ରୀତିରେ ସମାଜରୂପାନ୍ତରକୁ ଶାସକଶ୍ରେଣୀ ସବୁଠି ମନେକରିଚି କ୍ୟାପିଟାଲିସ୍ମ ପ୍ରତି ଆହ୍ୱାନ, କିମ୍ବା ସ୍ଥିତାବସ୍ଥା ପ୍ରତି ବିପଦ । ଆହ୍ୱାନ ହେଉ କି ବିପଦ, ତାକୁ ବଢ଼ିବାକୁ ଦେଇପାରେନା ଶାସକଶ୍ରେଣୀ; ତେଣୁ ଖତମ୍‌କରିବାକୁ ତତ୍ପର; ଯେପରି ଚିଲ୍ଲିର ଗଣତନ୍ତ୍ର ଉପରେ ଆମେରିକାର ସଶସ୍ତ୍ର ଚଢ଼ାଉ ଆଉ ଚଢ଼ାଉ ସମର୍ଥନରେ ହେନ୍ରି କିସିଙ୍ଗର୍‌ଙ୍କ ଘୋଷଣା, I don't see why we have to let a country go Marxist just because its people are irresponsible । ଦେଶ ସ୍ୱାଧୀନତାପାଇବା କୋଡ଼ିଏବର୍ଷ ଉତାରୁ ଗୁନାର୍ ମାଇର୍‌ଡାଲ୍ ଭାରତଆସି ଦେଖିଚନ୍ତି, Democracy has not enabled the majority of poor people to grasp, and organise themselves for utilising political power to advance their own interests । ଆଜି କଣ ବ୍ୟତିକ୍ରମ ଦେଖାଯାଉଚି ? ଯଦି ଦେଖାଯାଉଚି, ସେ କୃତିତ୍ୱ ତଥାକଥିତ ମାଓବାଦୀଙ୍କର । ଅନ୍ୟମାନେ କଣ କିଛିହେଲେ କରୁନାହାଁନ୍ତି ? ପାର୍ଲାମେଣ୍ଟାରି ପଦ୍ଧତିରେ ଚେଷ୍ଟାକରୁଚନ୍ତି ନିଶ୍ଚୟ; ମାତ୍ର ପାର୍ଲାମେଣ୍ଟାରୀ ରାଜନୀତିରେ ଥାଇସୁଦ୍ଧା ଅଲିଭର୍ କ୍ରୋମ୍‌ଓୟେଲ୍ ଲୋକଙ୍କୁ କହିଥିଲେ, Trust in god, and keep your powder dry ! ବାରୁଦ ଶୁଖିଲାରଖିବା ତେଣୁ ପାର୍ଲାମେଣ୍ଟାରୀ ରାଜନୀତିର ଅତିରିକ୍ତ ଏକ ମାତ୍ରା । ଚିଲିର ଜନସାଧାରଣ ନିଜ ବାରୁଦକୁ ଶୁଖିଲାରଖି ପାରିନଥିଲେ ବୋଲି, ରାଷ୍ଟ୍ରପତି ଆଲ୍ଲେନ୍ଦେ ନିହତ ଖାଲି ହେଲେନାହିଁ, ଆନ୍ତର୍ଜାତିକ ପୁଞ୍ଜି ତାଙ୍କ ଜାଗାରେ ବସାଇଦେଲା ଡିକ୍ଟେଟର୍ ପିନୋସେଟ୍‌କୁ ।

ହିଂସା ବିଷୟକ ଆଲୋଚନା କେନ୍ଦ୍ରରେ ଗାନ୍ଧିଙ୍କୁ ଅବଶ୍ୟ ରଖିବାକୁ ପଡ଼ିବ ବିଶେଷତଃ ଅହିଂସାର ଯେହେତୁ ଏକ୍ଷଣି ପୃଥିବୀସାରା ଜୟଜୟକାର; ଏପରିକି, ଅକ୍ଟୋବର୍ ଦୁଇତାରିଖକୁ ଜାତିସଂଘ ମଧ୍ୟ ଘୋଷଣାକରିଚି 'ୱର୍ଲ୍ଡ ନନ୍‌ଭାଓଲେନ୍ସ ଡେ' । ଅର୍ଥାତ୍, ଗାନ୍ଧି ଯେ ପୃଥିବୀର ଅନ୍ୟତମ ଶ୍ରେଷ୍ଠ ସଂଗ୍ରାମୀ, ବେମାଲୁମ୍

ପାସରିଯାଇଚି କ୍ୟାପିଟାଲିସ୍ମ; ମାଜିଘଷି ତାଙ୍କୁ ଠାକୁରକରିଦେବା ଉତାରୁ ମନେହୋଇଚି ସାମ୍ରାଜ୍ୟବାଦ ପ୍ରତି ଗାନ୍ଧିଙ୍କ 'ଅହିଂସା' ଏକ୍ଷଣି ବିଗଳିତ ନଖଦନ୍ତ । ନିଷ୍ଟିନ୍ତ ନହେଲେ, କଂଗ୍ରେସ୍‌ବାଲା ବି ଦାଣ୍ଡିଅଭିଯାନର ଅଭିନୟ କରନ୍ତେନାହିଁ । ଗାନ୍ଧିଙ୍କୁ ଆଇକନ୍‌କରି କ୍ୟାପିଟାଲିସ୍ମ ପୃଥିବୀକୁ କହୁଚି, ବିପ୍ଳବ-ଫିପ୍ଳବ କରିବାକୁହେଲେ, କେତେ ମସୃଣ ଭାବରେ କରାଯାଇପାରେ, ଥରେ ଉହିଁଦେଖ ଦକ୍ଷିଣ-ଆଫ୍ରିକାର ନେଲ୍ସନ୍ ମାଣ୍ଡେଲା କି ଯୁକ୍ତରାଷ୍ଟ୍ରର ମାର୍ଟିନ୍ ଲୁଥର୍ କିଙ୍ଗ୍ ଜୁନିୟରଙ୍କୁ; ଶାନ୍ତିର ବାର୍ତ୍ତାବହ ଏଇ ଦୁଇ କୃଷ୍ଣାଙ୍ଗ-ବିପ୍ଳବୀଙ୍କ ଦୀକ୍ଷାଗୁରୁ ତ ସେଇ ପୂର୍ବଦେଶର ମହାତ୍ମା, ବିନା ରକ୍ତପାତରେ ଯିଏ ଉଳିଶକୋଟି ମଣିଷଙ୍କୁ ଦେଇଚନ୍ତି ସାମ୍ରାଜ୍ୟବାଦରୁ ସ୍ୱାଧୀନତା ! ଅର୍ଥାତ୍, ସେଇଭଳି ରାଜନୀତି କ୍ୟାପିଟାଲିସ୍ମର ଅଭିପ୍ରେତ, କାହିଁକିନା, ସମାଜର ଷ୍ଟ୍ରକ୍‌ଚର୍‌ୟାଲ୍ ରୂପାନ୍ତର ସେ ରାଜନୀତିର ଲକ୍ଷ୍ୟ ନୁହେଁ । ନୁହେଁ ବୋଲି, ଯୁକ୍ତରାଷ୍ଟ୍ରର ସିଭିଲ୍ ରାଇଟ୍‌ସ୍ ମୁଭ୍‌ମେଣ୍ଟ୍ ହେଉ, କି ନେଲ୍‌ସନ୍ ମାଣ୍ଡେଲାଙ୍କ ଗାନ୍ଧିବାଦ ହେଉ, ମୌଳିକ ପରିବର୍ତ୍ତନ କୋଉ ଗୋଟିଏହେଲେ କ୍ଷେତ୍ରରେ ଯେ ଉପଲବ୍ଧହୋଇନାହିଁ, ସେକଥା ଚାପାପଡ଼ିଯାଉଚି ବିମୂର୍ତ୍ତ ନୈତିକତାର ରଥଚକ୍ର ତଳେ । ୧୯୬୩ରେ କିଙ୍ଗ୍‌ଙ୍କୁ ଦିଆଯାଇଚି ନୋବେଲ୍ ପୁରସ୍କାର ଯା ଗାନ୍ଧି ପାଇନାହାନ୍ତି; ମାତ୍ର ନିହତହେବା ଅବ୍ୟବହିତରେ କହିଚନ୍ତି, We are engaged in the class struggle, we have been in a reform movement... But after Selma and the voting rights bill (1965) we moved into a new era which must be an era of revolution. I think we must see the great distinction here between a reform movement and a revolutionary movement । ସେହିପରି, ଦକ୍ଷିଣ-ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ବିରୋଧରେ ପରିଚାଳିତ ମାଣ୍ଡେଲାଙ୍କ ଦଶବର୍ଷବ୍ୟାପୀ ଆନ୍ଦୋଳନର ଇତିହାସକୁ ଲକ୍ଷ୍ୟକଲେ ଦେଖାଯିବ, ଆଫ୍ରିକାନ୍ ନ୍ୟାସନାଲ୍ କଂଗ୍ରେସ୍ ଦିନକପାଇଁ ସୁଦ୍ଧା ଅହିଂସା କଥା ଉଚ୍ଚାରଣକରିନାହିଁ; ବରଂ ତାର ରହିଚି ସକ୍ରିୟ ମିଲିଟାରି ଉଇଙ୍ଗ୍ । ଏବଂ ଏପରି ଏକ ଅର୍ଥନୀତିକ କୃତ୍ୟସୂଚୀ, ଯା ସମାଜତନ୍ତ୍ର-ଅଭିମୁଖୀ । ୧୯୯୦ରେ ଜେଲ୍‌ଖାନାରୁ ଛାଡ଼ପାଇବା ଦୁଇସପ୍ତାହ ଆଗରୁ ସମର୍ଥକଙ୍କୁ 'ନୋଟ୍' ପଠାଇ ମାଣ୍ଡେଲା ଲେଖିଚନ୍ତି, The nationalisation of the mines, banks and monopoly industries is the policy of the African National Congress and changing our views... is inconceivable. Black economic empowerment is a goal we fully support and encourage, but in our situation state control of certain sectors of the economy in unavoidable । ଏଇ ଥିଲା ମାଣ୍ଡେଲାଙ୍କ

'ଅହିଂସା'ର ନମୁନା । ଏକ୍ଷଣି ଅବଶ୍ୟ ମାଣ୍ଡେଲା ଆଉଗୋଟିଏ ଆଇକନ୍; ଏବଂ ସେଇ ଭୂମିକାରେ ନବ୍ୟଉଦାରବାଦର ଅନ୍ୟତମ ପ୍ରବକ୍ତା ! ଭାରତରେ ଅବଶ୍ୟ ରାଷ୍ଟ୍ର-ପରିଚାଳିତ କ୍ୟାପିଟାଲିଜ୍ମ ଆରମ୍ଭହୋଇଯାଇଚି ସେଇ ନେହ୍ରୁ ଅମଳରୁ ! ମାର୍କ୍ସୀୟ ପରିଭାଷାରେ, କମ୍ପ୍ରାଡର୍ କ୍ୟାପିଟାଲିଜ୍ମ ।

ସନ୍ଦେହନାହିଁ, ସମାଜସଂଗଠନରେ ହିଂସା ଛାଗାପାଇବ କିନାହିଁ, ଅନେକାଂଶରେ ନିର୍ଭରକରେ ରାଜନୀତିକ ନେତୃତ୍ୱ ଉପରେ; ମାତ୍ର ନେତୃତ୍ୱ ସବୁବେଳେ ବ୍ୟକ୍ତିକେନ୍ଦ୍ରିକ କର୍ତ୍ତୃତ୍ୱ; ଏବଂ ସେଥିପାଇଁ, ନେତୃତ୍ୱର ଆଭିମୁଖ୍ୟ ସାଂଗଠନିକ ଷ୍ଟ୍ରକ୍‌ଚର୍‌କୁ ବୈପ୍ଳବିକ ରୀତିରେ ଆମୂଳ ବଦଳାଇ ଦେଇପାରେନା; ପାରେନା ବୋଲି, ଅର୍ଥନୀତିକ ଭିତ୍ତି ରହିଯାଏ ଅକ୍ଷୁର୍ଣ୍ଣ, ଏବଂ ଯୋଉ ପରିବର୍ତ୍ତନ ବିନାଦ୍ୱନ୍ଦ୍ୱରେ ସଂଗଠିତହୁଏ, ସବୁଗୁଡ଼ାକ ସୁପର୍‌ଷ୍ଟ୍ରକ୍‌ଚର୍‌ୟାଲ୍, ଯେପରି ସାଂସ୍କୃତିକ କି ଭାବାଦର୍ଶଗତ ପରିବର୍ତ୍ତନ । ଗାନ୍ଧିଙ୍କୁ ବିଚଳିତକରିଚି ଭାରତୀୟ କୃଷକର ଦୁରବସ୍ଥା; ଶୋଷଣ ଓ ଦମନ ତାକୁ କେମିତି ନିଷ୍ପ୍ରାଣ କରିଦେଇଚି, ପ୍ରତ୍ୟକ୍ଷକରି କହିଚନ୍ତି ବଳଦ ପଛରେ ପୁରୁଷାନୁକ୍ରମରେ ଗୋଡ଼ାଇଗୋଡ଼ାଇ ମଣିଷ ବି ହୋଇଯାଇଚି ବଳଦ । ଚାହିଁଚନ୍ତି ଚେତନାର ସ୍ଫୁରଣ, ଯେମିତି ବାପ ଚାହେଁ ଚଲାକଚତୁରହୋଇ ପୁଅ ଭଲମନ୍ଦ ବୁଝିପାରୁ । ମାତ୍ର କୃଷକ ଯୋଉଠି ପ୍ରତିରୋଧ ଛିଡ଼ାକରିଚି, ଗାନ୍ଧି ଓହରିଆସିଚନ୍ତି ନେତୃତ୍ୱରୁ, ପ୍ରତିରୋଧ ଯେହେତୁ ସହିଂସ । ସଂଗ୍ରାମ ତେଣୁ ବଡ଼କଥା ନୁହେଁ, ବଡ଼କଥା ସଂଗ୍ରାମର ଆଧ୍ୟାତ୍ମିକତା । ଗାନ୍ଧି ଚାହିଁଥିଲେ, ବିଦେଶୀ କବଳରୁ ଦେଶ ମୁକ୍ତହେଲେ ଚାଷୀ ହିଁ ହେବେ ରାଜ୍ୟର ମାଲିକ; ମାତ୍ର ୧୯୪୭ରେ ଦେଶର ଉତ୍ତରାଧିକାର ପାଇଲେ ବିରଳା କିମ୍ବା ସେଇଭଳି ବିତ୍ତବାନ୍ । ସାମ୍ପ୍ରଦାୟିକ ଦଙ୍ଗାହେଙ୍ଗାମ ସାଙ୍ଗକୁ ହିନ୍ଦୁ-ମୁସଲ୍‌ମାନଙ୍କ ଭିତରେ ବାଣ୍ଟିହୋଇଗଲେ ଭାରତମାତା । ନିଶ୍ଚୟ ଚାହିଁନଥିଲେ ମହାତ୍ମା; ମାତ୍ର ତାଙ୍କ ରାଜନୀତିକ ବିଚାର କି ପ୍ରୟୋଗ, ଯେପରି ଅହିଂସା / ସତ୍ୟାଗ୍ରହ / ଟ୍ରଷ୍ଟିସିପ୍ /ପ୍ରଭୃତି ଭିତରେ ବାସ୍ତବ କୋଉ ଷ୍ଟ୍ରକ୍‌ଚର୍‌ୟାଲ୍ ପରିବର୍ତ୍ତନର ସମ୍ଭାବନା ଥିଲାନାହିଁ; ଏପରିକି, ଭୂସଂସ୍କାର ମଧ୍ୟ ନଥିଲା କୃତ୍ୟସୂଚୀ, ଯା ଅଗଣିତ ଭୂମିହୀନ କୃଷକଙ୍କୁ କରିପାରିଥାନ୍ତା ଅର୍ଥନୀତି ଓ ରାଜନୀତିରେ ସବଳ ଓ ସଚଳ । ଏବଂ ସବଳ ହୋଇଥିଲେ, ଗାନ୍ଧିଙ୍କ ଘୋଷିତ ନୀତି 'the rights alike of prince and pauper' କାଳକ୍ରମେ ହୋଇଥାନ୍ତା ବାସ୍ତବାୟିତ । ହେଲାନାହିଁ, କାହିଁକିନା, ଭାରତର ଐତିହାସିକ ବିକଚନ-ପ୍ରକ୍ରିୟାରେ ସେ ନୀତି ଥିଲା ପାତିବୁର୍ଜୋୟା ଅର୍ଥନୀତି ଯା ବୃହତ୍ ବୁର୍ଜୋୟା ସ୍ୱାର୍ଥକୁ ତୁଷ୍ଟକରିବାକୁ ରାଜନୀତିକ୍ଷେତ୍ରରେ ହୋଇଚି ସହାୟକ । ସଜ୍ଞାନରେ ଏକାମ କରିନାହାଁନ୍ତି; ଆଦର୍ଶହୀନ ଚେଲାଚାମୁଣ୍ଡା ନେଇଚନ୍ତି କିନ୍ତୁ ପୂର୍ଣ୍ଣ

ସୁଯୋଗ; ଏବଂ ପରିଣାମକୁ ଲକ୍ଷ୍ୟକରି ମର୍ମାହତ ମହାତ୍ମା ସ୍ୱୀକାରକରିଚନ୍ତି, I do not understand how all these terrible things are happening in our country... What mistakes have we made, for we must have made mistakes. Otherwise how could all these things happen ? ନେହ୍ରୁଙ୍କ ସମାଜତନ୍ତ୍ରରେ ମଧ୍ୟ ଦେଖିହେବ ନିର୍ଦ୍ଦିଷ୍ଟ କୋଉଠେଲେ ମାନଚିତ୍ର ଉପସ୍ଥାପନକରିବା ବ୍ୟର୍ଥତା । ସମାଜତନ୍ତ୍ର ପ୍ରତିଷ୍ଠାକରିବାକୁ ଚାହିଁଚନ୍ତି ଅବଶ୍ୟ, କାହିଁକିନା, the only key to the solution of India's problems lies in socialism, ମାତ୍ର ଏକାନିଶ୍ୱାସରେ ପୁଣି କହିଚନ୍ତି, When I use this word I do so not in a vague, humanitarian way, but in a scientific, economic sense । ଏ କଥା କରିପାରିଲେ ଯା ମିଳିବ, ତାଙ୍କରି ଭାଷାରେ, Vast and revolutionary changes; ନ କରିପାରିଲେ terrible costs of not changing the existing order । ଅଥଚ କ୍ଷମତାସୀନହେବା ଉତାରୁ ଭୂମିସଂସ୍କାର କାମଟା ବି ମନେହେଲା ଭୟଙ୍କର, they will present numerous practical problems involving basic social conflicts (and may) give rise to organised forces of disruption । ତାହେଲେ, 'ସାଇଣ୍ଟିଫିକ୍' ଓ 'ଇକନମିକ୍' ବ୍ୟଞ୍ଜନାରେ ବଦଳିବ କେମିତି ସମାଜ ? କହିଲେ, ପ୍ଲାନିଙ୍ଗ୍ ଆଣ୍ଡ୍ ଡିଭେଲପ୍‌ମେଣ୍ଟ୍ ବଢ଼ାଇଦେଇପାରିବ ଉତ୍ପାଦନକୁ କ୍ରମାଗତ ଏବଂ ବ୍ୟବହାରକରିବ ବିଜ୍ଞାନ ଓ ପ୍ରଯୁକ୍ତିର ନବତମ ଆବିଷ୍କାରଉଦ୍‌ଭାବନ, ପ୍ରାକୃତିକ ସମ୍ପଦର ହେବ ତେଣୁ ସଦୁପଯୋଗ । ତାତ୍ପର୍ଯ୍ୟପୂର୍ଣ୍ଣ ଏଇ ଅବସ୍ଥାନଗତ ଆତ୍ମ-ପ୍ରତ୍ୟାହାର; ସମାଧାନସୂତ୍ର ଆଉ ସୋସାଲିଜ୍‌ମ ନୁହେଁ, ସେଠି ବସିଚି 'ସାଏନ୍ସ ଆଣ୍ଡ୍ ଟେକ୍ନଲଜି' । ପରିବର୍ତ୍ତନ ତେଣୁ ଷ୍ଟ୍ରକ୍‌ଚରାଲ୍ ନୁହେଁ; ସୁପରଷ୍ଟ୍ରକ୍‌ଚରାଲ୍ ମାତ୍ର । ଘଟିଚି କି ଇତିହାସରେ କୋଉଠି ବା କେତେବେଳେ ? ନେହ୍ରୁ ତ ଇତିହାସ ଉପରେ ବହିଲେଖିଚନ୍ତି ! ବିଜ୍ଞାନ ନିଶ୍ଚୟ ଅଗ୍ରଗତିର ସହାୟକ; ମାତ୍ର ନିଜେନିଜେ ଘଟାଇପାରେନା ସମାଜର ରୂପାନ୍ତର । ଷ୍ଟ୍ରକ୍‌ଚର୍-ସମ୍ପର୍କିତ ଲଜିକ୍ ତେଣୁ ଫେରିଆସିଚି; ନିର୍ମିତହୋଇଚି ପ୍ରଚ୍ଛନ୍ନ କ୍ୟାପିଟାଲିଜ୍‌ମ, ରାଷ୍ଟ୍ରସମର୍ଥିତ ପୁଞ୍ଜିବାଦ । ସୋସାଲିଷ୍ଟିକ୍ ପ୍ୟାଟର୍ଣ୍ଣ ଅବ୍ ସୋସାଇଟି ଅବଶ୍ୟ ଏକ ଆଳଙ୍କାରିକ ପ୍ରୟୋଗ; ପ୍ରକୃତ ଓ ପ୍ରତୀୟମାନ ମଧ୍ୟସ୍ଥ ବ୍ୟବଧାନକୁ ଝାପ୍‌ସାକରିଦେଇ ଭୋଟ୍ ଆଦାୟକରିପାରେ । ସୋସାଲିଜ୍‌ମକୁ ଦେଖାଇ ପାରେନା; ଦେଖାଏ ସୋସାଲିଜ୍‌ମର 'ଭିସନ୍' ।

ଭାରତ ତେଣୁ ଆଜି ଅହିଂସାର ଧ୍ୱଂସସ୍ତୂପ, ଯେମିତି ସ୍ୱୟଂ ଗାନ୍ଧି ରାସ୍ତାଘାଟରେ କତିପୟ ଧୂଳିଧୂସର ମୂର୍ତ୍ତି, ଆଉ ତାଙ୍କ ଅହିଂସା ଫିଲ୍ମତିଆରିପାଇଁ ଗାନ୍ଧିଗିରି ।

ଦେଶବାସୀଙ୍କ ଜୀବନକୁ ଯେତେଯାହା ଆଣିଦେବାକୁ ଜୀବନବ୍ୟାପୀ ତ୍ୟାଗତିତିକ୍ଷା ସହ୍ୟକରିଗଲେ, ସେଥିରୁ ଗୋଟାଏହେଲେ ଦେଶବାସୀ ପାଇନାହାଁନ୍ତି; ବରଂ ସ୍ୱାଧୀନତା-ପରବର୍ତ୍ତୀ ଭାରତର ଧନତାନ୍ତ୍ରିକ ଉନ୍ନୟନ ଗାନ୍ଧିଙ୍କ ଘୋଷିତ ଆଦର୍ଶ ପାଖରୁ ଦୂରେଇଯାଇଚି ଦିନକୁଦିନ; କ୍ରମାଗତ ସେଇ ପ୍ରକ୍ରିୟାରେ, ଦେଶର ସଂହତି ବିପନ୍ନହୋଇଚି ପର୍ବତପ୍ରମାଣ ସଂଘାତ ହିଂସ୍ରତା ଓ ଉଗ୍ରତାରେ ବିଦୀର୍ଣ୍ଣହୋଇ । ତେବେ, ଆତ୍ମମର୍ଯ୍ୟାଦା ଯୋଉ ସ୍ୱାଧୀନତା ଦେଇପାରେନା, ସେଭଳି ସ୍ୱାଧୀନତା କାମ୍ୟନୁହେଁ ବୋଲି, କହିଯାଇଚନ୍ତି, Recall the face of the poorest and the weakest human being you may have seen and ask yourself if the step you are contemplating is going to be any use to him. Will he gain anything by it? will it restore to him a control over his own life and destiny ? ଏଇ କଥାଗୁଡ଼ାକ ଯୋଉ ମଣିଷର ରାଜନୀତିକ ଆଭିମୁଖ୍ୟ, ତାକୁ ଏକ୍ଷଣି ତଥାକଥିତ ଗାନ୍ଧିବାଦୀଙ୍କ କବଳରୁ ମୁକୁଳାଇ ଆଣିପାରିଲେ ଦେଖାଯିବ, ସମାଜ ଓ ତାର ରୂପାନ୍ତର ବିଷୟରେ ମାର୍କ୍ସୀୟ ଚିନ୍ତାଧାରା ସହିତ ଉଚ୍ଚାରଣର ସାଯୁଜ୍ୟ । କିନ୍ତୁ ମାର୍କ୍ସୀୟ ଚିନ୍ତାରେ ନୈତିକତା ପ୍ରଶ୍ନର ଜାଗାରେ ରହିଚି ସମାଜତାତ୍ତ୍ୱିକ ବିଶ୍ଳେଷଣ; ଏବଂ ରହିଚି ବୋଲି, ଯୋଉ ସମାଜବ୍ୟବସ୍ଥାକୁ ସେ ବିଶ୍ଳେଷଣ ପ୍ରଶ୍ନକରେ, ସେ ବ୍ୟବସ୍ଥା ନିଜ ଅଭ୍ୟନ୍ତରରେ ପ୍ରଶ୍ନଗୁଡ଼ାକୁ ଦ୍ରବୀଭୂତ କରିପାରେନା; ଗାନ୍ଧିଙ୍କ ଅହିଂସାତତ୍ତ୍ୱକୁ କିନ୍ତୁ ଦମନପ୍ରବଣ ରାଜନୀତି ସହଜରେ ଅଙ୍ଗୀଭୂତ କରିନେଉଚି । ଅଥଚ ଗାନ୍ଧି ଚାହିଁଥିଲେ ଅହିଂସା ବଳରେ ଲଢ଼ିବେ ଦମନ-ଶୋଷଣ ସାଙ୍ଗରେ; ନୀତିବାଗୀଶ ଅହିଂସାବାଦୀଙ୍କ ଲକ୍ଷ୍ୟ କିନ୍ତୁ ଅଚଞ୍ଚଳ ସ୍ୱୟଂକ୍ରିୟ ପରିବର୍ତ୍ତନ । ମୌଳିକ ଗଠନଗତ ପରିବର୍ତ୍ତନ ଜାଗାରେ ସ୍ୱପ୍ନମୟ ଇଉଟୋପିଆ, ଯୋଉଠି ବିରୋଧ ନାହିଁ, ବିଦ୍ୱେଷ ନାହିଁ, ପ୍ରତିବାଦ ନାହିଁ କି ପ୍ରତିରୋଧ ନାହିଁ; ବିରାଜକରୁଚି ଚିରଶାନ୍ତି, ଚିରମଙ୍ଗଳ, ଚିରକଲ୍ୟାଣ । ଏଭଳି କଲ୍ୟାଣସାଧନ ସକାଶେ ଅହିଂସାବାଦୀ ଅଧିକାଂଶ କ୍ଷେତ୍ରରେ କର୍ତ୍ତୃପକ୍ଷଙ୍କ ଉପରେ ନିର୍ଭରଶୀଳ; ବିନୋବା ଯେପରି କାମନାକରିଚନ୍ତି ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତା । ବୌଦ୍ଧିକ ଏଇ ଅସଙ୍ଗତିର ପ୍ରଧାନ କାରଣ ଅବଶ୍ୟ ପୁରାତନ ଉଦ୍ଦେଶ୍ୟ-ଉପାୟ ଦ୍ୱାନ୍ଦ୍ୱିକତା । ସ୍ୱାଧୀନତା-ସଂଗ୍ରାମର ପ୍ରାଥମିକ ପର୍ଯ୍ୟାୟରେ ଏଭଳି କପଟ ନୈତିକତା ପ୍ରଶ୍ରୟପାଇନାହିଁ; ଯେପରି, ଅସ୍ତ୍ରଧାରଣ ସପକ୍ଷରେ ଅରବିନ୍ଦ କହିଚନ୍ତି, I am no impotent pacifist; ଭଗତ୍ ସିଂ ଓ ସୁଭାଷ ବୋଷ୍‌ଙ୍କ ଦୃଷ୍ଟାନ୍ତ ତ ସର୍ବଜନବିଦିତ । ଅର୍ଥାତ୍, ବିନା ଦ୍ୱିଧାରେ ସ୍ୱୀକାରକରାଯାଇଚି, ଉପାୟ ଭଲ କି ମନ୍ଦ, ନିର୍ଦ୍ଧାରଣକରେ ଉଦ୍ଦେଶ୍ୟ; ଉଦ୍ଦେଶ୍ୟ ଯଦି ଭଲ, ଯୋଉ ଉପାୟରେ ସିଦ୍ଧହୁଏ, ସେ ମଧ୍ୟ ଭଲ ।

ଉପାୟର ସାର୍ଥକତା, ଭିନ୍ନ କୋଉହେଲେ ଯୁକ୍ତିରେ, ପ୍ରତିପନ୍ନ କରାଯାଇପାରେନା । ସେଇକଥା ଲେଖିଚନ୍ତି ଜି.ସି.ଫିଲ୍ଡ *ମରାଲ୍ ଥିୟରି* ବହିରେ; Of course the end justifies the means; if we will the end we will the means to it. As for doing evil that good may come, it is really a meaningless phrase: because if good comes of it, and it was done with that intention, it cannot be evil.

ସାଧାରଣ ବୁଦ୍ଧିକୁ କଥାଟା ମନେହେବ ଦିବାଲୋକ ପରି ପରିଷ୍କାର; ମାତ୍ର ଶାକାହାରୀ-ବ୍ରହ୍ମଚାରୀ କହୁଚନ୍ତି, I suppose that of the many lessons Gandhiji taught, perhaps the most important was that means are more important than ends. If in the process of achieving the ends, the means are bad or twisted, we will not reach the ends. If our aim in life is a good life, how can we reach it by unworthly means ? ଶୁଦ୍ଧଚିତ୍ତରେ କଥାଗୁଡ଼ାକ ଉଚ୍ଚାରଣ କରାଯାଇଥିଲେ ସୁଦ୍ଧା, କରାଯାଇଛି କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ, ଏବଂ ବିଭ୍ରମକୁ ସୃଷ୍ଟିକରୁଚି ତିନିରକମ ପରସ୍ପର ସଂଯୁକ୍ତ ଯୁକ୍ତି । ପ୍ରଥମଟି ନୈତିକତା ବା ଭଲତ୍ୱର ଉତ୍ସ ସମ୍ପର୍କିତ, କାହିଁକିନା, ସ୍ୱାଧୀନ ଅବସ୍ଥାନରେ କିଛିହେଲେ ଭଲ କି ମନ୍ଦ ହୋଇପାରେନା; ଯେପରି, ଛୁରୀ । ଡାକ୍ତର ହାତରେ ଛୁରୀ ଆଉ ଘାତକ ହାତରେ ଛୁରୀ, ଏକାକିନିଷ ନୁହେଁ; ତେଣୁ ପ୍ରକୃତି ଓ ଇତିହାସରୁ ଅଲଗାହୋଇ ଏଥିକ୍ସ କି ଆଦର୍ଶ, କୋଉହେଲେ ମୂଲ୍ୟବୋଧ କି ମର୍ମାର୍ଥ, ପ୍ରକାଶ କରିପାରେନା; ପାରେନା ବୋଲି, ଆମ ନୀତିବୋଧ ଯୋଉ କଥାଗୁଡ଼ାକ ଉପରେ ପ୍ରତିଷ୍ଠିତ, ତାକୁ ସଚରାଚର ଧରାଯାଏ ଚିରନ୍ତନ ଓ ଅପରିବର୍ତ୍ତନୀୟ; ଯେପରି ଈଶ୍ୱର, ଦେବଦେବୀ, ଶାସ୍ତ୍ରସଂହିତା କିମ୍ବା ଅଲୌକିକ କୋଉ ଅଭିଜ୍ଞତା । ଯେହେତୁ ଅକାଟ୍ୟ ସତ୍ୟ, ଏଗୁଡ଼ିକୁ ପ୍ରଶ୍ନକରିବା 'ଖରାପ' କାମ । ଅଥଚ, ଦର୍ଶନରୁ ବିଜ୍ଞାନ ପର୍ଯ୍ୟନ୍ତ ସର୍ବବିଧ ବିଦ୍ୟା ବୁଝିସାରିଚନ୍ତି, ମଣିଷ ଏକ ପ୍ରାକୃତିକ ଜୀବସତ୍ତା; ପ୍ଲାଟୋ ତାକୁ ଅପରାପର ଜୀବଜନ୍ତୁଙ୍କ ଠାରୁ ସକ୍ଷମ ଭାବିଚନ୍ତି, କାହିଁକିନା, ଏକମାତ୍ର ମନୁଷ୍ୟ ନିଜ ପ୍ରାଣଧାରଣର ସମସ୍ତ ଉପାଦନ ନିଜ ହାତରେ ଉତ୍ପାଦନକରିପାରେ, ଏବଂ ଉତ୍ପାଦନକରିପାରିବା ସକାଶେ ସମାଜଭୁକ୍ତହୋଇ ବାସକରିବା ତା ପାଇଁ ସ୍ୱାଭାବିକ । ଅବଶିଷ୍ଟ ବିଷୟରେ ମଣିଷ ଆଉ ଗଛବୃକ୍ଷ କି ଜୀବଜନ୍ତୁଙ୍କ ଭିତରେ ମୌଳିକ କୌଣସି ତଫାତ୍ ନାହିଁ । ପୁଣି, ଗ୍ରୀସ୍‌ରେ ଯେମିତି ହେରାକ୍ଲିତଜ୍, ଭାରତରେ ସେମିତି ଗୌତମ ବୁଦ୍ଧ ଲକ୍ଷ୍ୟକରିଚନ୍ତି, ପୃଥିବୀରେ କିଛିହେଲେ ଚିରନ୍ତନ କି ଅପରିବର୍ତ୍ତନୀୟ ନୁହେଁ; ବୁଦ୍ଧ ତ ଈଶ୍ୱର ଓ ଶାସ୍ତ୍ରକୁ ଅସ୍ୱୀକାରକରିଚନ୍ତି ସଦର୍ପ ! ମଣିଷପାଇଁ ତେଣୁ ବାକିରହିଲା

ବିଶ୍ୱପ୍ରକୃତି ଓ ଆପଣା ସମାଜ; ସେଥିରେ ମଧ୍ୟ ନାନାଦି ପରିବର୍ତ୍ତନ ସଂଘଟିତ ହେଉଚି କ୍ଷଣକୁ କ୍ଷଣ । ସେଇ ପରିବର୍ତ୍ତନଗୁଡ଼ାକରୁ ଉଦ୍ଦେଶ୍ୟ-ବିଧେୟ ସମ୍ବନ୍ଧରେ ଅବବୋଧ ତିଆରିହେବା ସ୍ୱାଭାବିକ । ଯେପରି, ପଞ୍ଚଭୂତରୁ ଜୀବନର ଉତ୍ପତ୍ତି; ଅର୍ଥାତ୍, ଭୂତ ବା ମ୍ୟାଟର୍‌ର ବିକାଶପର୍ଯ୍ୟାୟରେ ମନୁଷ୍ୟ ଏକ ଧରଣର ପରିଣତ ସ୍ତର । ଅନ୍ୟ ଶବ୍ଦରେ, ବିକାଶକ୍ରମରେ ମ୍ୟାଟର୍ ବି ରୂପାନ୍ତରିତ ହେଉଚି, ଏବଂ ସେ ଦୃଷ୍ଟିରୁ, ମୂଳାଧାର ଭୂତ ଅପେକ୍ଷା ଭୂତର କ୍ରମାଗତ ରୂପାନ୍ତର ଉତ୍ତରୋତ୍ତର ଉନ୍ନତ । ସେଇ ଉନ୍ନତି ଭିତରେ ରହିଚି ନୈତିକତା, ଆଦର୍ଶ, ଶୁଭାଶୁଭବୋଧ ଭଳି ଅନେକ ବିମୂର୍ତ୍ତ ଅବବୋଧ; ସମାଜରେ ବଞ୍ଚିରହିବା ସକାଶେ ସେଗୁଡ଼ିକ ଦରକାର ବୋଲି ସମସ୍ତେ ମାନିନେଇଚନ୍ତି ଏକବାକ୍ୟରେ । ମାତ୍ର ଏଇ ଦରକାର, ପରିସ୍ଥିତିଭେଦରେ, ବଦଳିଯାଇପାରେ, କିମ୍ବା ମେଣ୍ଟିଯାଇପାରେ ଏକାଥରକେ, ଅବବୋଧଗୁଡ଼ାକୁ ଜାବୁଡ଼ିଧରି ଅବିନଶ୍ୱରକରିବା ପ୍ରବଣତା ତେଣୁ ଧୃଷ୍ଟତା ମାତ୍ର ।

ପୁରୁଷାନୁକ୍ରମରେ ଲୋକ ଯୋଉ ନୀତିବୋଧରେ ଅଭ୍ୟସ୍ତ, ସାଧାରଣତଃ ବାରଣବାଚକ; ତଥାପି ବିଶ୍ୱାସ ଜନ୍ମିଚି, ବାରଣଗୁଡ଼ାକ ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ମହତ୍‌ଉଦ୍ଦେଶ୍ୟ ସାଧନସକାଶେ ଉଦ୍ଦିଷ୍ଟ । କାମକାର୍ଯ୍ୟ ଆଚ୍ଚର-ବିଚ୍ଚର ଗୁଡ଼ାକୁ ତେଣୁ ସମ୍ଭାବ୍ୟ ପରିଣାମ ପରିମାପରେ ବିବେଚନା ନକରି, କରାଯାଉଚି ପରମ/ଚରମ ଭଳି କାଞ୍ଚନିକ କଷଟିରେ । ଅଥଚ ନିରାପଦ ଏଥିକୁ ପ୍ରତ୍ୟେକ କାମକୁ କର୍ମଫଳ ନିକିତିରେ ତଉଲ କରିଥାଏ । ଘରେ ସାପ ପଶିଥିଲେ, ରଜ୍ଜୁରେ ସର୍ପଭ୍ରମ ଭଳି ମାୟାବାଦକୁ ଧରିବସିଥିଲେ, ଠେଙ୍ଗା ଖୋଜିବାକୁ ଲୋକ ଭୁଲିଯିବ । ଭୁଲିଯିବ, ଆପତ୍‌କାଳ ସମୁତ୍‌ପନ୍ନେ ଅର୍ଦ୍ଧେକ ତ୍ୟଜନ୍ତି ପଣ୍ଡିତାଃର ପ୍ରକୃତ ପ୍ରୟୋଗ, (କଥିତ ଅଛି, ମା'କୁ ତୀର୍ଥଯାତ୍ରାରେ ଡଙ୍ଗାରେ ନେଇଯାଉଥିବାବେଳେ, ଡଙ୍ଗା ବୁଡ଼ିଯାଉଚି ଦେଖି ପଣ୍ଡିତପୁତ୍ର ମା'ର ମୁଣ୍ଡ କାଟିପକାଇଥିଲା) । ନୀତିନିୟମ ଯା ନିର୍ଦ୍ଧାରଣକରାଯାଇଚି, ସନ୍ଦେହ ନାହିଁ, ଲୋକଙ୍କ ଭଲପାଇଁ କରାଯାଇଚି । ସମାଜରେ ବିଶୃଙ୍ଖଳା ଆଶଙ୍କାରେ କୁହାଯାଇଚି ନିୟମଭାଙ୍ଗିଲେ ଦୁର୍ଗତି ଆସେ; ତାର ଅର୍ଥ ଏଇ ନୁହେଁ ଯେ, ପରିସ୍ଥିତି ନିର୍ବିଶେଷରେ ନିୟମ ରହିଥିବ ଅଲଂଘ୍ୟ । ନିୟମଭାଙ୍ଗିବା ପରିଣାମ ଯଦି ଅନୁକୂଳ ହୁଏ, ନିଶ୍ଚୟ ଭଙ୍ଗାଯିବ ନିୟମ, ଯେପରି ଧର୍ମରାଜ ଯୁଧିଷ୍ଠିର କୁରୁକ୍ଷେତ୍ରରେ ମିଛକହିଥିଲେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ । ତଥାପି ସଶରୀର ଯାଇଥିଲେ ସ୍ୱର୍ଗକୁ, ସକୁକୁର । ମିଥ୍ୟାକଥନକୁ କୁହାଯାଇଚି ପାପ । ତିନିଟି ଯୁକ୍ତିରୁ ପାପବୋଧ ଦ୍ୱିତୀୟ, କାହିଁକିନା, ପାପ ଖାଲି ବ୍ୟକ୍ତିଗତ ଅନୈତିକତା ନୁହେଁ, ଏକାବେଳକେ ଅନ୍ୟର କ୍ଷତିସାଧନ । କ୍ଷତି ଖାଲି ପ୍ରାଣହାନି ନୁହେଁ; ଯେକୌଣସି ପ୍ରକାର ଶାରୀରିକ ଯନ୍ତ୍ରଣାଦେବା ପାପ

ପଦବାଚ୍ୟ ବୋଲି କୁହାଯାଇଚି 'ଜୀବେ ଦୟା' । କର୍ତ୍ତବ୍ୟ ତାଡ଼ନାରେ କିନ୍ତୁ ଏଭଳି ପାପ ମଧ୍ୟ ଧର୍ତ୍ତବ୍ୟ ନୁହେଁ; ଯେପରି, ଜୀବ ମାରଣେ ମାଂସ ଖାଇ / ସେ ଜୀବ ବୈକୁଣ୍ଠେ ବସଇ । କିମ୍ବା ଶଲ୍ୟଚିକିତ୍ସା ବା ମାଷ୍ଟର୍‌ଙ୍କ ବେତ । ଉପକାର କରିବାପାଇଁ କରିବାକୁ ପଡ଼େ । ତା ମାନେ ନୁହେଁ ଯେ 'ଜୀବେ ଦୟା' ନୀତିବୋଧ ଆପେକ୍ଷିକ, କିମ୍ବା ମିଥ୍ୟାକଥନ ଖରାପ ନୁହେଁ । ତା'ହେଲେ ତ ଭଲ ଉଦ୍ଦେଶ୍ୟରେ କରୁଚି ବୋଲି ଢ଼େରରକମ କ୍ଷତିକର ଉପାୟ ଅବଲମ୍ବନ କରିହେବ ! ତା ମାନେ ଏତିକି ଯେ ସମ୍ପୂର୍ଣ୍ଣ ନୀତିବୋଧସମ୍ପନ୍ନ ମଣିଷ ମଧ୍ୟ ବେଳେବେଳେ ଏପରି ପରିସ୍ଥିତି ସମ୍ମୁଖୀନହୁଏ ଯେତେବେଳେ ହୃଦ୍‌ବୋଧହୁଏ ନିର୍ଦ୍ଦିଷ୍ଟ ଏଇ ନିୟମ ନଭାଙ୍ଗିଲେ ଅନେକ ଲୋକଙ୍କ ଅନିଷ୍ଟ ହେବ । ତୃତୀୟ ଯୁକ୍ତି ତେଣୁ ଅବଧାରିତଭାବେ ଏଇ ଯେ ଇଷ୍ଟ-ଅନିଷ୍ଟ ବିବେଚନା ଯେତେ ଗୁରୁଭାର ହେଇଥାଉ ପଛେ ନୈତିକତାର ବିରୁଦ୍ଧାଚରଣକୁ କ୍ଷାଳନକରିପାରେନା । ସଙ୍ଗତ ଯୁକ୍ତି । ସିଦ୍ଧାନ୍ତ ତେଣୁ ସହଜ ନୁହେଁ, ଓଜନକରି ଦେଖିବାକୁ ପଡ଼ିବ ଲାଭ-କ୍ଷତିର ପରିମାଣ, ଏବଂ ଲାଭର ପରିମାଣ ଯଦି କ୍ଷତିର ପରିମାଣର ବହୁଗୁଣ ହୁଏ, ଅନୈତିକ ଉପାୟକୁ ବର୍ଜନକରିବା ହେବ ଅନୈତିକ । ଉପାୟ ନିଶ୍ଚୟ ଅନୈତିକ, ମାତ୍ର ସେ ଉପାୟକୁ ବ୍ୟବହାର ନକରିବା ମାନେ ଆହୁରିବେଶି ଅନୈତିକତା । ଅର୍ଥାତ୍, ଯୋଉ ଲୋକ ନୈତିକତାକୁ ଗଣ୍ଡିକରି, ଏଇ ପରିସ୍ଥିତିରେ, ଯୁଦ୍ଧରୁ ଛତ୍ରଭଙ୍ଗ ଦିଏ, ଜମାରୁ ପୁଣ୍ୟବାନ୍ ପୁରୁଷ ନୁହେଁ; ନୈତିକତା ଦୃଷ୍ଟିରୁ ଦାୟିତ୍ୱହୀନ । ଏଇ କଥା କହିଚନ୍ତି ତୃତୀୟ ପାଣ୍ଡବକୁ ପାର୍ଥସାରଥୀ । ଅଭ୍ୟସ୍ତ ଦୃଷ୍ଟିଭଙ୍ଗୀରେ ବିଭ୍ରାନ୍ତି ଉପୁଜିବାର ତୃତୀୟ ଯୁକ୍ତି ସମ୍ବନ୍ଧରେ *ମରାଲ୍ ଥିୟରି* ସେଥିପାଇଁ କହିଚି, From the point of view of practical decision, the end does always justify the means in the sense that the course of action which will produce a balance of good results in the circumstances should be adopted. But the particular course of action which may be the best means to a particular end, may also produce other results which are not desirable, and if on striking a balance we find that this course of action will produce more evil than good, it should, of course, not be adopted । ଅନ୍ୟ ଶବ୍ଦରେ, ଯୋଉ ଉପାୟରେ ଉଦ୍ଦେଶ୍ୟ ସିଦ୍ଧହେବ ବୋଲି ସ୍ଥିରକରିବୁଁ, ପ୍ରତ୍ୟକ୍ଷ ସେଇ ପରିଣାମ ଛଡ଼ା ପରୋକ୍ଷ କି ଫଳାଫଳ ଉପୁଜିପାରେ, ଏବଂ ଉପାୟ ତୁଳନାରେ ତା କେତେଦୂର ଅବାଞ୍ଛିତ, ସେ ହିସାବ ମଧ୍ୟ ଭୁଲିଗଲେ ଚଳିବନାହିଁ; କାହିଁକିନା, ଉପାୟରୁ ଉପୁଜିପାରେ

ଏପରି ପରୋକ୍ଷ ଅନିଷ୍ଟ ଯା ଉଦ୍ଦେଶ୍ୟର ନୈତିକ ତାତ୍ପର୍ଯ୍ୟକୁ ଭ୍ରଷ୍ଟକରିଦେଇପାରେ । ଯୋଉ ଉପାୟ ବଛାଯାଇଚି, ପରିସ୍ଥିତି ପ୍ରେକ୍ଷିତରେ ଯଥାର୍ଥ ବୋଲି ବଛାଯାଇଚି; ଏବଂ ଯଥାର୍ଥ ମନେହୋଇଚି ଫଳାଫଳ ଯେହେତୁ ବାଞ୍ଛିତ, ଫଳାଫଳ ହୋଇପାରେ ଏକ କିମ୍ବା ଅନେକ, ଏବଂ ସେ ସ୍ଥଳରେ, ନିର୍ବାଚିତ ଉପାୟର ସମ୍ଭାବ୍ୟ ପରିଣାମଗୁଡ଼ାକୁ ହିସାବକୁନେବା ଅର୍ଥ, ଅନଭିପ୍ରେତ ଅନିଷ୍ଟକୁ ଯଥାସମ୍ଭବ ଉପେକ୍ଷା । ଅଥବା ବିକଳ୍ପ ଉପାୟର ଅନ୍ୱେଷଣ । ଅନଭିପ୍ରେତ ଅନିଷ୍ଟ ଅବଶ୍ୟ ଶ୍ରେଣୀଚେତନାର ଉପଜାତ, କାହିଁକିନା, ଅନ୍ୟାୟ କି ଅନିଷ୍ଟର ପ୍ରତ୍ୟୟ ଆସୁଚି ଶ୍ରେଣୀ-ଅବସ୍ଥାନର ନିର୍ଦ୍ଦିଷ୍ଟତା ଭିତରୁ; ଯେପରି, ଯିଏ ଚାକିରିକରୁଚି, ତା ଆଖିକୁ ବେକାର ଯୁବକଯୁବତୀ ଲାଗିବେନାହିଁ ଅନ୍ୟାୟର ଶିକାର; ଯାର ଜମିବାଡ଼ି ଅଛି, ତା ଆଖିକୁ ଭୂମିହୀନ ମଜୁର୍ ମନେହେବ ନାହିଁ ଅନ୍ୟାୟଭାବେ ବଞ୍ଚିତ । ଅଥବ ବେକାର କି ଭୂମିହୀନ ଚାହିଁବ ସ୍ଥିତାବସ୍ଥାର ପରିବର୍ତ୍ତନ; ସେଥିପାଇଁ ଦରକାର ହେଲେ, ସହିଂସ ସଂଗ୍ରାମ । ସେତେବେଳେ ପ୍ରତିଆକ୍ରମଣର ସମ୍ଭାବନା ସବାଆଗେ ମନକୁ ଆସିବ, ଆସିବ ଆଇନ୍‌କାନୁନ୍ କଥା, ପାପପୁଣ୍ୟ କଥା, ଏପରିକି ମୃତ୍ୟୁଚିନ୍ତା । ଏକାଧିକ ଏଇ ପରିଣାମକୁ ମନଭିତରେ ତଉଲକରିସାରି ଯଦି ଆଗକୁ ଗୋଡ଼ବଢ଼ାଏ, ହିଂସା ସେଠି ପକ୍ଷପାତହୀନ ସମଦର୍ଶୀ । ସେଥିରେ ମ୍ୟାକ୍‌ବେଥ୍‌ର ବିଷାଦ ନାହିଁ, ପାପପୁଣ୍ୟବୋଧ ଯେହେତୁ ଏପରି ଜିନିଷ ନୁହେଁ ଯେ ପାଣିଢ଼ାଳି ରକ୍ତଧୋଇଦେଲେ ଚିତ୍ତବୃତ୍ତି ନିର୍ମଳ ହୋଇଯିବ ! ନିର୍ମଳ ହୁଏନା ବୋଲି, ସେକ୍ସପିୟରଙ୍କୁ ଲେଖିବାକୁ ପଡ଼ିଚି : Will all great Neptune's ocean wash this blood clean from my hand ? No; this my hand will rather the multitudinous seas incaradine, making green one red । ଏଇ ପ୍ରେକ୍ଷିତରେ ମନକୁ ଆସିବ, ସତ୍ୟାଗ୍ରହ ଓ ଆଇନ୍‌ଅମାନ୍ୟ ପ୍ଲାବନରେ ଦେଶ ଭାସିଯାଉଥିବାବେଳେ ଭଗତ୍ ସିଂ, କି ସୁଭାସ ବୋଷଙ୍କ ଅସ୍ୱାନୁଗତ୍ୟ, ପରାଜୟ ନିଶ୍ଚିତଜାଣି ସହର୍ଷ ଆତ୍ମତ୍ୟାଗ । ଅର୍ଥାତ୍, ପୋଷିତ ଆଦର୍ଶ ପ୍ରତି ଅନୁରାଗ ଯଦି ପ୍ରଚଣ୍ଡ, ଉପାୟ ବୈଧ କି ନୁହେଁ, ବିପ୍ଳବୀ ସକାଶେ ସେ ବିଚାର ବୌଦ୍ଧିକ ଆଳସ୍ୟ । ଉପାୟଜାତ କଳୁଷ ଦେଶପ୍ରେମ ବହ୍ନିରେ ସେଠି ଅଗ୍ନିଶୁଦ୍ଧ ।

ତାହେଲେ, ଗାନ୍ଧିଙ୍କ ଅହିଂସା କଣ କିଛିହେଲେ ଦେଇନାହିଁ ଦେଶକୁ ? ମୋ ଜାଣିବାରେ, ତାଙ୍କର ସବୁଠୁଁ ବଡ଼ ଅବଦାନ 'ଭାରତୀୟ ଜାତୀୟ କଂଗ୍ରେସ୍' ନାମଧେୟ ରାଜନୀତିକ ଦଳ । ସେଇ ଦଳ ବ୍ରିଟିଶ୍ ସହିତ ଲଢ଼ିଚି, ତାକୁ ହିଁ କରାଯାଇଚି ୧୯୪୭ରେ କ୍ଷମତା ହସ୍ତାନ୍ତର, ଏବଂ ସେଇ ଦଳ, ଗାନ୍ଧିଙ୍କ ଜୀବିତାବସ୍ଥାରେ,

ଦେଶଗଙ୍କୁ ହିନ୍ଦୁ-ମୁସଲ୍‌ମାନ୍‌ଙ୍କ ଭିତରେ ବାଣ୍ଟକରିଦେବାକୁ ସମ୍ମତହୋଇଚି, କ୍ଷମତା ହସ୍ତାନ୍ତର ବିନିମୟରେ । ପରିଣାମରେ ଯୋଉ ବ୍ୟାପକ ହଣାକଟା, ନାରୀହରଣ, ଗୃହଦାହ, ଜନ୍ମଭୂମିରୁ ବିତାଡ଼ନ ଓ ସାମ୍ପ୍ରଦାୟିକଦଙ୍ଗା ଲଣ୍ଡଭଣ୍ଡକରିଦେଇଚି ଉପମହାଦେଶର ଜନଜୀବନ, ତାର ଅବଶେଷ ଆଜି ମଧ ଥରହରକରୁଚି ଭାରତର ମାଟି-ପାଣି-ପବନ । ସେ ହିଂସାର ତାଣ୍ଡବ ଦେଖି ଶୋକାତୁର ମହାତ୍ମା କହୁଚନ୍ତି, I do not understand how these terrible things are happening in our country. For many years the Congress has struggled and grown, and it has grown stronger and stronger, and advanced higher and higher; but now, after we have reached the pinnacle, somehow these horrible things are happening, and the congress is not able to do anything effective to stop them. What mistakes have we made, for we must have made mistakes? Otherwise how could all these things happen? It seems that while we were building the Congress, at the same time it was decaying; and today it is obvious that it has decayed, because it is not able to fight all the bad things that are going on in India today । ପୁନଶ୍ଚ, Everything looks dark to me, very dark, and I see very little hope. Some people say that after the dark night comes the bright dawn; but I only see the darkness of the night, I donot know when the dawn will come । ମାତ୍ର ନିଗୃହୀତ ଉଦ୍‌ବାସ୍ତୁଙ୍କ ସ୍ରୋତ ଥମିଲାନାହିଁ କି ପ୍ରାଣହାନୀ, ସମ୍ପତ୍ତିହାନୀ, ଇଜ୍ଜତହାନୀ କମିଲାନାହିଁ; ଲୋକଙ୍କ ଚେତା ଫେରାଇଆଣିବାକୁ ୧୯୪୮ ଜାନୁଆରୀ ୧୨ ତାରିଖ ଦିନ ଗାନ୍ଧିଜୀ ଜୀବନର ଶେଷତମ ଉପବାସ ପାଳନ ପୂର୍ବରୁ ଖାଲି ଏତିକି କହିଲେ ଯେ, Death for me would be a glorious deliverace rather than I should be a helpless witness to the destruction of India । ମର୍ମନ୍ତୁଦ ଏଇ ଖେଦ ବୁଝାଇଦିଏ ଅହିଂସ ରାଜନୀତିର ମର୍ମନ୍ତୁଦ ବ୍ୟର୍ଥତା । ଆଜି ବି ଭଙ୍ଗାଯାଏ ବାବ୍‌ରି ମସ୍‌ଜିଦ୍, ଆଜି ବି ଗାନ୍ଧିଙ୍କ 'ହରିଜନ' ରହିଚନ୍ତି ସମାଜର ସୀମାନ୍ତରେ ଅନ୍ତ୍ୟଜ । କିନ୍ତୁ ଗାନ୍ଧିଙ୍କ ଅନଶନ ମଧ କଂଗ୍ରେସ୍ ଭିତରେ ଦଳାଦଳି ଓ ନିର୍ବାଚିତ ପ୍ରତିନିଧିଙ୍କ ଭିତରେ ଦୁର୍ନୀତିପରାୟଣତା ('money-making activities')କୁ କରିଥିଲା ଶରବ୍ୟ; ଏପରିକି, କଂଗ୍ରେସ୍ ଦଳକୁ ଭାଙ୍ଗିଦେବାକୁ ମଧ ପ୍ରସ୍ତାବକରିଥିଲେ ଗାନ୍ଧିଜୀ । ବୋଲିବା ବାହୁଲ୍ୟ, ସବୁଗୁଡ଼ାକ କେବଳ ଅରଣ୍ୟରୋଦନ ।

ଯୁଗପୁରୁଷ ଗାନ୍ଧିଙ୍କ ଜୀବନବ୍ୟାପି ସଂଗ୍ରାମର ମହିମାକୁ ଖର୍ବକରିବାକୁ କଥାଗୁଡ଼ାକ ଲେଖୁନାହିଁ; ଭାରତର ଆପାମର ଜନସାଧାରଣଙ୍କୁ ଜାତୀୟ ମୁକ୍ତିଯୁଦ୍ଧରେ ଆଉକିଏ କରିପାରିଚି ଏକଛତ୍ର ? ଖାଲି ଏତିକି କହିବା ଉଦ୍ଦେଶ୍ୟ ଯେ, ସ୍ୱାଧୀନ ଭାରତର ରାଜନୀତିକ ଅଚରିତାର୍ଥତା ସହିତ ଆହୁରି ଅନେକ ସାମାଜିକ ଅସାମର୍ଥ୍ୟ ସକାଶେ ସ୍ୱାଧୀନତାସଂଗ୍ରାମରେ ଅହିଂସାର ରାଜନୀତିକ ଉପଯୋଗ ଅନେକାଂଶରେ ଦାୟୀ । କହିବାକୁ ପଡୁଚି, ଯେହେତୁ ଉଦ୍ଦେଶ୍ୟ-ଉପାୟ ମତବିରୋଧ ଏପରି ବିଭ୍ରାନ୍ତିକର ମାନସିକତା ସୃଷ୍ଟିକରିଚି ଯେ ବାଟଚଲାଲୋକଙ୍କୁ ଝୁଣ୍ଟିବା କି ପଡ଼ିଯିବା ବି ମନେହେଉଚି ପୁଣ୍ୟକର୍ମ । କୃତ୍ରିମ ଏଇ ପବିତ୍ରତା ସ୍ପଷ୍ଟତଃ ଏକ ରାଜନୀତିକ ପ୍ରତାରଣା ।

ବିଦେଶୀ ପ୍ରଭୁ କବଳରୁ ଜନ୍ମଭୂମିର ମୁକ୍ତିକୁ ଜୀବନର ବ୍ରତ କରିଥିଲେ ନିଶ୍ଚୟ; ବ୍ରତଯାପନର ଆପୋଷହୀନ ସର୍ତ୍ତ ଥିଲା କିନ୍ତୁ ଶାନ୍ତିପୂର୍ଣ୍ଣ ଉପାୟ । ଶାନ୍ତିପୂର୍ଣ୍ଣ ସେଇ ମୀମାଂସା ଯେତେବେଳେ 'ମାଉଣ୍ଟ୍‌ବ୍ୟାଟେନ୍ ଚୁକ୍ତି' ଆକାରରେ ଆତ୍ମପ୍ରକାଶକଲା, ଦେଖାଗଲା, ଘଟିଯାଇଚି ଭାରତମାତାଙ୍କ ବାହୁଚ୍ଛେଦ, ଏବଂ ପରିଣାମରେ, ଦେଶବ୍ୟାପୀ ହିନ୍ଦୁ-ମୁସଲ୍‌ମାନ୍ ଗୃହଯୁଦ୍ଧ; ମହାତ୍ମାଙ୍କ ଚିରପୋଷିତ ଅଭିଳାଷ ଉପରେ ନୃଶଂସ କୁଠାରାଘାତ । ଶଙ୍କାରେ ଶିହରିତ ମହାତ୍ମା ସତର୍କବାଣୀ ଘୋଷଣାକରିଚନ୍ତି, Vivisection of India can only take place over my dead body । ଆକୁଳହୋଇ ଧାଇଁଯାଇଚନ୍ତି ପୂର୍ବବଙ୍ଗ; ସାଂପ୍ରଦାୟିକ ଶାନ୍ତି ଫେରାଇଆଣି ନପାରିଲେ ନାହିଁ; ଶେଷକୁ ସାମ୍ପ୍ରଦାୟିକତା ହିଁ ହେଲା ନିଜ ଅପମୃତ୍ୟୁର କାରଣ । ହେଲେସୁଦ୍ଧା, ଦେଶବିଭାଗର ଦାୟିତ୍ୱ ଗାନ୍ଧିଙ୍କ ରାଜନୀତି ଏଡ଼ାଇଯାଇ ପାରିବନାହିଁ; ଅଥବା, ଦେଶବିଭାଗ ଯୋଉ ବିପର୍ଯ୍ୟୟ ନେଇଆସିଚି ସାଙ୍ଗରେ, ତାର ଦାୟିତ୍ୱ । ତା ମୂଲ୍ୟ ଆମେ ଖାଲି ପରିଶୋଧ କରୁନାହୁଁ, ପ୍ରଜନ୍ମ ଉତାରୁ ପ୍ରଜନ୍ମ କରିଚାଲୁଥିବା । ଅବିଭକ୍ତ ଭାରତର ଯୋଉ ଅଂଶକୁ ଘେନି ପାକିସ୍ତାନ ତିଆରିହୋଇଚି, ସେ ଅଞ୍ଚଳର ଅଧିବାସୀ ଖାଲି ଦରିଦ୍ର ମୁସଲ୍‌ମାନ କୃଷକ ନୁହେଁ, ପାକିସ୍ତାନର ଉଭୟ ପ୍ରାନ୍ତରେ ରାଜନୀତି ଥିଲା ମଧ୍ୟ ସାମନ୍ତତାନ୍ତ୍ରିକ; ଏବଂ ସେଇ ସାମନ୍ତମାନେ ହିଁ ଗଠନକରିଥିଲେ ମୁସଲିମ୍ ଲିଗ୍; ଲିଗ୍ ହୋଇଥିଲା ମୁସଲ୍‌ମାନଙ୍କ ହର୍ତ୍ତାକର୍ତ୍ତା । ଗାନ୍ଧିଙ୍କ କାର୍ଯ୍ୟକଳାପ ଭିତରେ ଏପରି କିଛି ନଥିଲା, ମୁସଲ୍‌ମାନ୍ କୃଷକଙ୍କୁ ସ୍ୱାଧୀନତାସଂଗ୍ରାମ ଭିତରକୁ ଯା ଟାଣିପାରିବ । ତାଙ୍କ ସମାଜସଂସ୍କାର କୃତ୍ୟସୂଚୀରେ ଭୂସଂସ୍କାର ସ୍ଥାନପାଇନାହିଁ କି ଅନ୍ୟ କୋଉ ର୍‍ୟାଡିକ୍ୟାଲ୍ କର୍ମଧରା; ଜାତୀୟତାବାଦ ସାଙ୍ଗରେ ବରଂ ମିଶିଥିଲା ହିନ୍ଦୁ ପୁନର୍ଭବର ସବୁଯାକ ଲକ୍ଷଣ ଓ ପ୍ରତୀକ । ମୁସଲ୍‌ମାନ ଚାଷୀ ମୁସ୍‌ଲିମ୍‌ଲିଗ୍‌ର ଡାକ

ନଶୁଣି, କଣ ଶାକାହାରି ସତ୍ୟାଗ୍ରହୀଙ୍କ ରାମଧୂନ୍ ଶୁଣିଥାଆନ୍ତେ ? ବିଶେଷତଃ ସାମ୍ରାଜ୍ୟବାଦୀ ଶକ୍ତି ଯେତେବେଳେ ଲୋକଙ୍କ ସଂହତିକୁ ଧର୍ମକୁ ଆଳକରି ଭାଙ୍ଗିଦେବାକୁ ଉଦ୍ୟତ । ପଚିଶ-ତିରିଶବର୍ଷଧରି ଖଦିପିନ୍ଧି ବଗଡ଼ାଖାଇ ପୁଲିସ୍ ହାତରୁ ନିୟମିତ ପାହାର ହଜମକରୁଥିବେ ଯୋଉ ଲୋକ, ଭିତରେ ଆଉ ଅବଶିଷ୍ଟ ରହିଥିବ କି ତେଜ ଯେ ବିପ୍ଳବର ହମ୍ବିତମ୍ବି ଦେଖାଇବେ ! ସେଇ ଶ୍ମଶାନଶାନ୍ତିର ସୁଯୋଗନେଇ ଇଂରେଜ୍ ଯୋଉ ଖେଳଖେଳିଚି, ତା ବସ୍ତୁତଃ କଂଗ୍ରେସ୍‌ମୁସଲିମ୍‌ଲିଗ୍ ଝଗଡ଼ା, ଗଡ଼ଜାତ-ମୁଗଲବନ୍ଦି ଝଗଡ଼ା, ହରିଜନ-ସବର୍ଣ୍ଣ ଝଗଡ଼ା, ଏତେରକମ ବିଭାଜନରେ ବିଧ୍ୱସ୍ତ ଯୋଉ ଜନସମଷ୍ଟି, ଇଂରେଜ୍‌କୁ ତ୍ରସ୍ତକରନ୍ତେ କେମିତି ଅହିଂସାର ଅରଟ ଦେଖାଇ ? କ୍ଷମତା-ହସ୍ତାନ୍ତର ଉତାରୁ ଅରଟଗୁଡ଼ାକ ସଙ୍ଗାକୁ ଉଠିଗଲା; ଅହିଂସ ଉପାୟରେ ଗୋରାସାହେବଙ୍କ ସ୍ଥଳାଭିଷିକ୍ତହେଲେ କଳାସାହେବ; ଜଣେହେଲେ ଆପତ୍ତିକଲାନାହିଁ ପୁରୁଣା ବିଧିବ୍ୟବସ୍ଥାକୁ ପୁନର୍ଜୀବନଦେବା ବିରୋଧରେ; କାହିଁକିନା, ଗୁନାର୍ ମାଇର୍‌ଡାଲ୍ କହିବା ପରି, the political independence has done little more than displace a foreign with a native privileged group ।

ଇଂରେଜ୍ ଯଦି ଫେରିଯାଇ ନଥାନ୍ତେ, ଗାନ୍ଧିଙ୍କ ସାଧ ନଥିଲା ତାଙ୍କୁ ହାତଧରି ଟାଣି ବାହାରକରିଦେବେ; ମାତ୍ର ଦେଖାଗଲା ସୁଭାଷ ବୋସ୍‌ଙ୍କ 'ଆଜାଦ୍ ହିନ୍ଦ୍ ଫୌଜ' ପ୍ରତି ବିପୁଳ ଜନସମର୍ଥନ; ଏପରିକି, ରୟାଲ୍ ଇଣ୍ଡିଆନ୍ ନେଭି-ର ବିଦ୍ରୋହ; ବଙ୍ଗଳାରେ ତେଭାଗା ଆଉ ତେଲେଙ୍ଗାନାରେ କୃଷକ ଅଭ୍ୟୁତ୍ଥାନ; ଅହମଦାବାଦ୍ ସୂତାକଳରେ ଧର୍ମଘଟ; ଗଡ଼ଜାତମାନଙ୍କରେ ପ୍ରଜାବିଦ୍ରୋହ; ସର୍ବୋପରି, ବିଦ୍ରୋହଗୁଡ଼ାକରେ ହିନ୍ଦୁ-ମୁସଲମାନ ସଂପ୍ରୀତି, ଭାଇସ୍‌ରୟ ୱାଭେଲ୍ ନିଜ ଡାଏରିରେ ଲେଖିଚନ୍ତି, India is on the edge of a volcano । ଗାନ୍ଧି କିନ୍ତୁ ସନ୍ଦେହକଲେ, ଅବାଞ୍ଛିତ ଏଇ ଅଶାନ୍ତି, 'delivering India over to the rabble' ଭଳି ଅଭିସନ୍ଧି, କ୍ୟାବିନେଟ୍ ମିଶନ୍‌କୁ କହିଲେ, ଭାରତ ଆସି ନିଷ୍ପତ୍ତିକରିଦିଅନ୍ତୁ କ୍ଷମତା ହେବ କେମିତି ବଣ୍ଟାକୁଣ୍ଟା । ଇଂରେଜ୍ ମଧ୍ୟ ଆଶଙ୍କାକରିଚି ନୌବାହିନୀ ଭଳି ସ୍ଥଳବାହିନୀରେ ସୁଦ୍ଧା ମୁଣ୍ଡଟେକିପାରେ ଅଘଟନକ ବିଦ୍ରୋହ, ଏବଂ ମନ ସ୍ଥିରକରିପକାଇଚି, ଭାରତଛାଡ଼ି ଚାଲିଯିବ । ମାତ୍ର ସମାଜର ତଳସ୍ତରରୁ ଅଭିନବ ଏଇ ପ୍ରତିରୋଧ ଭିତରେ ନିହିତ ବୈପ୍ଳବିକ ସମ୍ଭାବନା ଗାନ୍ଧିଙ୍କୁ ବିଚଳିତ କରିପକାଇଚି; ଦେଖିଚନ୍ତି 'red ruin and anachy' । ମାଉଣ୍ଟବ୍ୟାଟେନ୍ ଏୱାଡକୁ ଏକବାକ୍ୟରେ ମାନିନେବା ବ୍ୟତୀତ ଅନ୍ୟ କୋଉ ଅହିଂସ ମାର୍ଗ ଖୋଲାଥିଲା କି ମହାତ୍ମାଙ୍କ ସକାଶେ ? ଆଜି ଯେତେବେଳେ ପୁଞ୍ଜିର ବିଶ୍ୱାୟନ ପ୍ରକୋପରେ ଭାରତର ସର୍ବସାଧାରଣ ପର୍ଯ୍ୟୁଦସ୍ତ, ଗାନ୍ଧିଙ୍କ ଅହିଂସନୀତି

ନାନାଭାବରେ ନାନାଦି ସଂକଟରୁ ଉଦ୍ଧାର କରୁଚି ଶାସକଶ୍ରେଣୀକୁ; ମାତ୍ର କଷଣମୁକ୍ତିର ସଂଗ୍ରାମ ସରିଯାଇନାହିଁ; ଏବେ ବି ଲୋକ ଭୁଲିଯାଇନାହାଁନ୍ତି ଭଗତସିଂ କି ଅରବିନ୍ଦଙ୍କୁ ।

* * * * * * *

ମାତ୍ର, ଅଧ୍ୟାୟ ଆରମ୍ଭରେ ପ୍ରତ୍ୟାଶା କରାଯାଇଥିଲା ବାମପନ୍ଥୀଙ୍କ ନେତୃତ୍ୱ, ବିଶେଷତଃ ଯେହେତୁ ବୁର୍ଜୋୟାବିରୋଧୀ ଆନ୍ଦୋଳନର ଅଭିଜ୍ଞତା ସେମାନଙ୍କର ସର୍ବାଧିକ, ଏବଂ ଉଦ୍ଦେଶ୍ୟ-ଉପାୟ କି ହିଂସା-ଅହିଂସା କନ୍ଦଳରେ ଛନ୍ଦିହୋଇ ବିଚାର ବାଟ ହୁଡ଼ିନାହିଁ ଅଦ୍ୟାବଧି । କ୍ୟାପିଟାଲିସ୍ମ ପ୍ରକୋପରେ ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗିଯିବା ଭଳି ଏକ୍ଷଣି କିନ୍ତୁ ସେମାନଙ୍କ ହାଣ୍ଡି ଅଲଗା । ଅଥଚ ଗ୍ଲୋବାଲାଇଜେସନ୍ ଏକ ବିଶ୍ୱବ୍ୟାପୀ ପ୍ରପଞ୍ଚ, ଖଣ୍ଡିତ କି ବିକ୍ଷିପ୍ତ କୋଉ ଉଦ୍ୟମ ତାକୁ ମୁକାବିଲା କରିପାରିବା ଅସମ୍ଭବ । କାହିଁକିନା, କ୍ୟାପିଟାଲିସ୍ମ ତ ଖାଲି ଅର୍ଥନୀତି କି ରାଷ୍ଟ୍ରଶକ୍ତିକୁ ଆକ୍ରାନ୍ତ କରୁନାହିଁ, ସିଭିଲ୍ ସୋସାଇଟିର ରନ୍ଧ୍ରେରନ୍ଧ୍ରେ ତାର ପ୍ରାଦୁର୍ଭାବ; ଅଥଚ କେବଳ ସିଭିଲ୍ ସୋସାଇଟି ହୋଇପାରେ ରାଷ୍ଟ୍ରଶକ୍ତିର ଆ୍ୟାଣ୍ଟିଥିସିସ୍ । ତେଣୁ ଫିନାନ୍ସ କ୍ୟାପିଟାଲ୍ ପର୍ଯ୍ୟାୟରୁ ଧନତନ୍ତ୍ର କି ଭାବରେ ଆଗକୁ ଯିବାକୁ ଚେଷ୍ଟାକରିବ, ସେ ବିଷୟରେ ଭବିଷ୍ୟଦ୍‌ବାଣୀ ଏକ୍ଷଣି ନିର୍ବୋଧତା; କିନ୍ତୁ ସାଧାରଣଲୋକ ଯେ ସମାଜର ସୀମାନ୍ତକୁ କ୍ରମଶଃ ଠେଲିହୋଇ ଯାଉଚନ୍ତି, ତା ଆମର ଦୈନନ୍ଦୀନ ଅଭିଜ୍ଞତା । ତଦ୍‌ସଙ୍ଗେ ଜନମାନସରେ ଯେମିତି, ବୁଦ୍ଧିଜୀବୀଙ୍କ ଚିତ୍ତଲୋକରେ ସେମିତି, ନବ୍ୟଉଦାରବାଦର ପ୍ରଭାବ ହୋଇଚାଲିଚି ଗଭୀରରୁ ଗଭୀରତର । ପରିଣାମରେ, 'ଶ୍ରେଣୀ' ପ୍ରତ୍ୟୟ ଲିଭିଯାଉଚି ସମାଜରୁ, ତା ଜାଗା ଦଖଲକରୁଚି, ଧର୍ମ, ଜାତି, ଆଂଚଳିକତା, ଲିଙ୍ଗ ପ୍ରଭୃତି ବୈଷମ୍ୟ । ଏଗୁଡ଼ିକ ଅବଶ୍ୟ ଭାରତର ନିର୍ଦ୍ଦିଷ୍ଟ ସମସ୍ୟା; ଏବଂ ଏଗୁଡିକର ଉତ୍ପତ୍ତି ମଧ୍ୟ କ୍ୟାପିଟାଲିସ୍ମରୁ ନୁହେଁ । ମୂଳ ସନ୍ଧାନ କରିହେବ ଇତିହାସରୁ, ବିଶେଷତଃ ଯେହେତୁ ନିର୍ଦ୍ଦିଷ୍ଟ ଏଇ ବୈଷମ୍ୟଗୁଡାକ ନିର୍ମାଣକରୁଚି ହିଗେମନି; ସଂପତ୍ତିଗତ ବୈଷମ୍ୟ ନୁହେଁ । ସଂପତ୍ତିଗତ ବୈଷମ୍ୟ, ଅର୍ଥାତ୍ ସାମାଜିକ ଆଧିପତ୍ୟର କାରଣ, ଅନ୍ତତଃ ଭାରତରେ ନ୍ୟାୟ-ଅନ୍ୟାୟ ବିଚାର ନୁହେଁ, କାହିଁକିନା, ବିଚାରବୋଧ ତିଆରିକରେ ସିଭିଲ୍ ସୋସାଇଟି; ରାଷ୍ଟ୍ର ଦିଏ ସଂପତ୍ତି ଉପରେ ଅଧିକାର ସେଇ ବିଚାରବୋଧକୁ ଭିତ୍ତିକରି । ଏଇ ନ୍ୟାୟଅନ୍ୟାୟ ବିଚାରକୁ କୁହାଯାଇପାରେ ବୁର୍ଜୋୟାଆଇନ୍; ମାତ୍ର ବୈଷମ୍ୟଗୁଡ଼ାକୁ ବୈଧତା ଦେବାପାଇଁ ସେ ଆଇନ୍ ଯଥେଷ୍ଟ ଶକ୍ତିଶାଳୀ । ଅର୍ଥାତ୍ ରାଷ୍ଟ୍ର ଏକ ପ୍ରତିବିମ୍ବ, ସିଭିଲ୍ ସୋସାଇଟିର ପ୍ରତିବିମ୍ବ । ମାତ୍ର ବିମ୍ବ-ପ୍ରତିବିମ୍ବ ବ୍ୟାଖ୍ୟାଟା ବିମୂର୍ତ୍ତ ବୁଦ୍ଧିବାଦ ନୁହେଁ; ଗଢ଼ିଉଠିଚି ଇତିହାସ-

ପର୍ଯ୍ୟାୟକ୍ରମରେ, ଏବଂ ସେଥିପାଇଁ, ତାର ଅବରୋଧ ସମ୍ଭବପର । କାହିଁକିନା, ଇତିହାସ ପ୍ରବାହରେ ମଣିଷ ଯା ତିଆରିକରିଚି, କୋଉ ଗୋଟାକହେଲେ ଚିରସ୍ଥାୟୀ ନୁହେଁ । ମାର୍କ୍ସବାଦୀ ଅବଶ୍ୟ ବେସ୍-ସୁପରଷ୍ଟ୍ରକ୍ଚର୍ ବିନ୍ୟାସରେ ପରିବର୍ତ୍ତନକୁ ବୁଝିବାକୁ ଚାହିଁବେ; ମାତ୍ର ଭାରତର ସିଭିଲ୍ ସୋସାଇଟି ଦେଖାଉଚି, 'ବେସ୍' ବଦଳିଗଲେ ବି 'ସୁପରଷ୍ଟ୍ରକ୍ଚର୍' ବଦଳୁନାହିଁ । ପ୍ରତ୍ୟକ୍ଷଭାବେ ନିଜ ଅନୁଷ୍ଠାନଗୁଡ଼ିକ ମାଧ୍ୟମରେ ସିଭିଲ୍ ସୋସାଇଟିକୁ ରାଷ୍ଟ୍ର ଶାସନକରୁଚି ସିନା, ସାରା ସମାଜର ବିଚାରବିବେଚନା, ସଂସ୍କାର ଓ ଆଚାର-ଆଚରଣକୁ ନିର୍ଦ୍ଧାରିତକରୁଚି କିନ୍ତୁ ସିଭିଲ୍‌ସୋସାଇଟି; କରୁଚି ବୋଲି, ପ୍ରଭୁଶ୍ରେଣୀର ଆଧିପତ୍ୟ ରହିଚି ଅକ୍ଷୁର୍ଣ୍ଣ । ଅର୍ଥାତ୍, ଆଇଡିୟଲଜି ଶ୍ରେଣୀନିର୍ଦ୍ଦିଷ୍ଟ ହେଲେସୁଦ୍ଧା ସଂସ୍କୃତିର ଆବେଦନ ସର୍ବଜନୀନ; ଏବଂ ସର୍ବଜନୀନ ବୋଲି, ନିମ୍ନବର୍ଗର ସମ୍ମତି ପ୍ରଭୁଶ୍ରେଣୀର ଆଧିପତ୍ୟ ପ୍ରତି ସ୍ୱତଃସ୍ଫୂର୍ତ୍ତ । ସ୍ୱତଃସ୍ଫୂର୍ତ୍ତତା ଆଦାୟକରିବାକୁ ପ୍ରଭୁଶ୍ରେଣୀ ଆନୁଷ୍ଠାନିକ ଯୋଉ ଭିଆଣ କରିଚି, ସେ ଭିଆଣ ଗଢ଼ିଉଠିଚି ଇତିହାସ ପ୍ରବାହରେ । କ୍ୟାପିଟାଲିଷ୍ଟ୍ ସିଷ୍ଟେମ ଅବଶ୍ୟ ଏ ବ୍ୟବସ୍ଥାର ସମାନ୍ତରାଳ । ଏ ବ୍ୟବସ୍ଥା ଯଦି କ୍ୟାପିଟାଲିଜ୍ମକୁ ବିରୋଧ କରେ, ରାଷ୍ଟ୍ରଶକ୍ତିର ହସ୍ତକ୍ଷେପ ହୋଇପଡ଼େ ଅନିବାର୍ଯ୍ୟ । ତେଣୁ ଖାଲି ରାଜୀନତିକ ନେତୃତ୍ୱ ଦ୍ୱାରା ପ୍ରତିରୋଧ ସଫଳହେବନାହିଁ; ଦରକାର ହେବ ସାଂସ୍କୃତିକ ଓ ନୈତିକ ନେତୃତ୍ୱ । କାହିଁକିନା, ସର୍ବସାଧାରଣଙ୍କ କାଣ୍ଡଜ୍ଞାନକୁ ଉଦ୍‌ବୁଦ୍ଧକରି ନପାରିଲେ କାହାକୁ ନେଇ ବିପ୍ଳବ (କ୍ୟାପିଟାଲିଜ୍ମର ପ୍ରତିରୋଧ) ସଂଗଠିତକରିବେ ବାମପନ୍ଥୀ ? ଅର୍ଥାତ୍, ଗୁଳିବାରୁଦର ଲଢ଼ାଇ ଆଗରୁ ଲଢ଼ାଇଚାଲିବ 'ଆଇଡିଆ'ର । ପ୍ରତିଷ୍ଠାକରିବାକୁ ହେବ ଆଇଡିଆର ହିଗେମନି । ବୁର୍ଜୋୟା ହିଗେମନିକୁ ପରାସ୍ତ ନକରି ସିଭିଲ୍‌ସୋସାଇଟିକୁ ବଦଳାଇ ହେବନାହିଁ; ଏବଂ ସିଭିଲ୍‌ସୋସାଇଟିକୁ ବଦଳାଇ ନପାରିଲେ ରାଷ୍ଟ୍ର ଉପରେ ଆଧିପତ୍ୟ ରହିଯିବ ଦୁଃସ୍ୱପ୍ନ ।

କମନ୍‌ସେନ୍ସ ବା କାଣ୍ଡଜ୍ଞାନର ଅନ୍ୟନାମ ଚେତନା; ତାକୁ ବଦଳାଇବାକୁ ହେଲେ ଆଖିରେ ପଡ଼ିବ, ଲୋକଙ୍କ ସାମୂହିକ ଜୀବନନିର୍ବାହକୁ କେମିତି ଏକାସୂତ୍ରରେ ବାନ୍ଧିରଖୁଛି କିଛି ସର୍ବସାଧାରଣ ଧାରଣା ବା ବିଶ୍ୱାସ । କିନ୍ତୁ ଇତିହାସସୂତ୍ରରେ ପ୍ରାପ୍ତ ଅନେକ ଧାନ ଧାରଣା ମଧ୍ୟ ବଦଳିଯାଇଚି ପରିସ୍ଥିତି ଉପରେ । ଅର୍ଥାତ୍, ହେଗ୍ଲକଥିତ ଡାୟଲେକ୍‌ଟିକ୍ସ ବା ଦ୍ୱାନ୍ଦ୍ୱିକତା ମଣିଷର ଏକ ଅନ୍ତର୍ନିହିତ ଗୁଣଧର୍ମ ; ନହେଲେ, ସଂସାରରେ, ସମାଜରେ ବିବିଧ ଘାତପ୍ରତିଘାତ ସାଙ୍ଗରେ ଯୁଝି କର୍ତ୍ତବ୍ୟ ସ୍ଥିରକରି ପାରନ୍ତାନାହିଁ । କର୍ତ୍ତବ୍ୟ ସ୍ଥିରକରିବା ପ୍ରକ୍ରିୟାରେ କାଣ୍ଡଜ୍ଞାନ ଯେହେତୁ ଅପରିହାର୍ଯ୍ୟ, ପ୍ରତ୍ୟେକ ମଣିଷ ନିଜବାଟରେ ଜଣେ ଦାର୍ଶନିକ । ହୁଏତ ମାର୍କ୍ସ ପଢ଼ିନାହିଁ, କିନ୍ତୁ

କ୍ୟାପିଟାଲିସ୍ଟ ଜୀବନଯାତ୍ରାକୁ ବିଘ୍ନିତକରୁଚି କେମିତି, କିମ୍ବା ନବସାମ୍ରାଜ୍ୟବାଦ ପୁଅନାତିଙ୍କ ଭବିଷ୍ୟତକୁ ବିପନ୍ନକରୁଛି କେମିତି, ବୁଝିପାରିବା ପାଇଁ ବାହାରୁ ଡାୟଲେକ୍‌ଟିକ୍ସ ଆମଦାନି ଦରକାରହୁଏନା । ଗ୍ଲୋବାଲାଇଜେସନ୍ ଯେ ମାର୍କେଟ୍ ମଡେଲ୍‌ରେ ସାରା ଜଗତକୁ ପୁନର୍ବିନ୍ୟସ୍ତ କରିବାକୁ ଉଦ୍‌ଗ୍ରୀବ, ସେଇ ବାଟରେ ଜୀବନର ସମସ୍ତ ସଂପଦକୁ ବିକ୍ରୟଯୋଗ୍ୟ କରିପାରିବା ତାର ଲକ୍ଷ୍ୟ, ଏକଥା ଲୋକଙ୍କୁ ଏପର୍ଯ୍ୟନ୍ତ ବାମପନ୍ଥୀ ବୁଝାଇପାରିନାହାଁନ୍ତି; ବରଂ ରାଷ୍ଟ୍ର ସହିତ ଏକସ୍ୱରରେ ସ୍ଲୋଗାନ୍‌ଦେଉଛନ୍ତି 'ଟିନା' (ଦେୟାର ଇଜ୍ ନୋ ଅଲ୍‌ଟରନେଟିଭ୍) । ଅନ୍ୟ ବିକଳ୍ପନାହିଁ ଯଦି ହୁଏ ବିଶ୍ୱାୟନର ଲଜିକ୍, ତେବେ ଜଗତ୍‌ଯାକର କ୍ୟାପିଟାଲ୍‌କୁ ଏକୀଭୂତକରି ଅଖଣ୍ଡକରିବାକୁ ଚେଷ୍ଟାକରିବା ପ୍ରତ୍ୟାଶିତ ; ଏବଂ ଏକାବେଳକେ, ସବୁରକମ ପ୍ରତିରୋଧକୁ ଭାଙ୍ଗି ଖଣ୍ଡଖଣ୍ଡ କରିଦେବାକୁ ଆୟୋଜନ ମଧ୍ୟ । ପରିଣାମରେ ଦେଖାଯାଉଚି, ବିବିଧତା ଓ ବ୍ୟବଧାନକୁ ପୁଞ୍ଜିକରି ହରେକ୍‌ରକମ୍ ଅସ୍ମିତାବୈଶିଷ୍ଟ୍ୟର ଉଦ୍‌ଯାପନ; ଦଳିତକୁ ଦଳନକରିବା ଉଦ୍‌ଯୋଗ ଯେତିକି, ସିଂହାସନରେ ବସାଇବା ଉଦ୍‌ଯୋଗ ତଦପେକ୍ଷା ଊଣାନୁହେଁ । ଅନ୍ୟ ଶବ୍ଦରେ, ମୁନାଫାଅର୍ଜନ ଅଭିଯାନରେ ବିଶ୍ୱପୁଞ୍ଜି ଯେତେବେଳେ ଏକତ୍ରିତ, ବିପରୀତ ମେରୁରେ ଖଟିଖିଆଲୋକ ନାନାଦି ଉଦ୍ଦେଶ୍ୟରେ, ନାନାଦି ବାଗବର୍ଗରେ, ଛିନ୍ନଛତ୍ରହୋଇ ଆତ୍ମପରିଚୟ ଜ୍ଞାପନକରିବାକୁ ବ୍ୟତିବ୍ୟସ୍ତ । ସେଇ ବ୍ୟବଧାନ ଉଦ୍‌ଯାପନ ଉତ୍ସବରେ ଦେଖିହେବ ଅନେକ ତଥାକଥିତ ବୁଦ୍ଧିଜୀବୀଙ୍କୁ ପୁରୋହିତ ଭୂମିକାରେ, କାହିଁକିନା, ଉତ୍ତରଆଧୁନିକତା କୁଆଡ଼େ ବଦଳାଇଦେଇଛି ସେମାନଙ୍କ ଜୀବନଦର୍ଶନ ! ଅଭିନ୍ନ ଓ ଅବିଭାଜ୍ୟ ଦୂରଦୃଷ୍ଟି ବା ଭିସନ୍ ଲୋକଙ୍କ ଭିତରେ ସଂଚରିତ କରିନପାରିଲେ ବିଶ୍ୱପୁଞ୍ଜି ବିପକ୍ଷରେ ସମ୍ଭବହେବ କେମିତି ମୋବିଲାଇଜେସନ୍ ? ଦରକାର ତେଣୁ କାଣ୍ଡଜ୍ଞାନର ରାଜନୀତିକରଣ । ଦେଶବାହାରୁ ବିପ୍ଳବର ମଡେଲ୍ ଆମଦାନିକରି ଲୋକଙ୍କ ଉପରେ ଲଦିଦେବା ଅନୁମୋଦନ କରିନାହାଁନ୍ତି ମାର୍କ୍ସ; ତଥାପି ରଣ୍ଡିଭେ ଅକ୍ଟୋବର୍ ବିପ୍ଳବର ରସିଆନ୍ ମଡେଲ୍ ଓ ପରବର୍ତ୍ତୀ ସମୟରେ ରାଜେଶ୍ୱର ରାଓ ଚିନା ମଡେଲ୍ ଆମଦାନିକରି ଲଦିଦେଇଚନ୍ତି ବାମପନ୍ଥୀଙ୍କ କାନ୍ଧରେ । ଉଭୟଙ୍କର ଶୋଚନୀୟ ବ୍ୟର୍ଥତା ବାମପନ୍ଥୀ ଭୁଲିଯାଇନାହାଁନ୍ତି ନିଶ୍ଚୟ ! ବ୍ୟର୍ଥତାର ଏକମାତ୍ର କାରଣ, ବାମପନ୍ଥୀ ଭାବିଚନ୍ତି, ବିପ୍ଳବ ମାନେ ରାଷ୍ଟ୍ରକ୍ଷମତା ଦଖଲ; ରାଷ୍ଟ୍ରକ୍ଷମତା ଦଖଲ ନକଲେ ପ୍ରଲେତାରିଏତ୍ ଡିକ୍ଟେଟର୍ ହେବ ଫେର୍ କମିତି ? ପ୍ରଲେତାରିଏତ୍‌କୁ ଯେ ଏକନାୟକ ହେବାପାଇଁ ଦୀର୍ଘକାଳଧରି ଯୋଗ୍ୟତା ଅର୍ଜନକରିବାକୁ ପଡ଼ିବ, ବାମପନ୍ଥୀ ପାସରିପକାଇଚନ୍ତି ବେମାଲୁମ୍ । ସେ ଯୋଗ୍ୟତା ସ୍ପଷ୍ଟତଃ ଏପରି ବୌଦ୍ଧିକ ସାମର୍ଥ୍ୟ ଯଦ୍ଦ୍ୱାରା ତାର

ପ୍ରଭୁତ୍ୱ (ହିଗେମନି) ସ୍ୱୀକୃତହେବ ସମାଜର ସର୍ବସ୍ତରରେ । କେବେ ହେବ କହିହେବନାହିଁ; ମାତ୍ର ଯଦି କୋଉଠି ହୁଏ, ତାକୁ ହିଁ 'ବିପ୍ଲବ' କହିବା ସଙ୍ଗତ । ଶୋଷଣ ମାଧ୍ୟମରେ ମୁନାଫାନିଷ୍କାସନ ଖାଲି ନୁହେଁ, ଲୋକଙ୍କ ଭାବରାଜ୍ୟରେ ମଧ୍ୟ କ୍ୟାପିଟାଲିଷ୍ଟର ଆଧିପତ୍ୟ ଦୁର୍ମର । ସେଇ ଆଧିପତ୍ୟ ସାଙ୍ଗରେ ବଳ କଛାକଛି କରିବାକୁ ପ୍ରଲେତାରିଏତ୍‌କୁ ତିଆରିକରିବା ବାମପନ୍ଥୀଙ୍କ ଆବଧାରିତ ଦାୟିତ୍ୱ ।ସେଇ କଥାକୁ ମାର୍କ୍ସ ଅନ୍ୟ ଭାବରେ ଲେଖିଚନ୍ତି.... we merely show the world what it is really fighting for, and consciousness is something that it has to acquire, even if it does not want to ।

କମିଉନିଷ୍ଟମାନଙ୍କ କର୍ତ୍ତବ୍ୟ, ସେଥିପାଇଁ, ମାର୍କ୍ସଙ୍କ ପଦ୍ଧତି ଓ ମୂଳନୀତି ସହିତ ଏକାତ୍ମବୋଧ; ଶୁଆଚନ୍ଦ୍ରେଇ ପରି, the point is to change it, ଆଉଡ଼ାଇବା ନୁହେଁ । ପରିବର୍ତ୍ତନ ପାଇଁ ଛୋଟବଡ଼ ଲଢ଼ାଇ ଘରିଆଡ଼େ ଚାଲିଚି, ଅଧିକାଂଶ ଲଢ଼ାଇ ସାଙ୍ଗରେ କମିଉଷ୍ଟଙ୍କ ସଂସ୍ରବ ନାହିଁ, କାହିଁକିନା, ଲୋକଗୁଡ଼ାକ ତାଙ୍କ ପାର୍ଟିଲୋକ ନୁହଁନ୍ତି । ପାର୍ଟିଲୋକ ହେବାକୁ କେହି ବାଧ୍ୟନୁହେଁ, ମାତ୍ର ଲଢ଼ାଇ ଯଦି ପୁଞ୍ଜି ବିରୋଧରେ, ତାଙ୍କ ସହିତ ନିଜକୁ ସାମିଲ୍‌କରିବେନାହିଁ କାହିଁକି କମିଉନିଷ୍ଟ୍ ? ମାର୍କ୍ସ ତ ଦ୍ୟର୍ଥହୀନ ଭାଷାରେ କହିଦେଇଚନ୍ତି, ...we do not confront the world in a doctrinaire way with a new principle; here is the truth, kneel down before it ! we devlop new principles for the world out of the world's own principles । ଅର୍ଥାତ୍, ପରିସ୍ଥିତିର ସଦୁପଯୋଗକରି ଏପରି ନୀତନିୟମ ସ୍ଥିରକରିବାକୁ ହେବ ଲୋକଙ୍କ ବିଷୟମୁଖୀ ସଂଗ୍ରାମକୁ ଯା ଖାଲି ସଂହତିଦେବନାହିଁ, ଏକାବେଳକେ କରିବ ଶକ୍ତିଶାଳୀ । କାମକରିବାକୁ ହେଲେ ଲୋକଙ୍କ ପାଖରୁ ଶିଖିବାକୁ ପଡ଼ିବ, ଏବଂ ପ୍ରକ୍ରିୟାଟା ଯେହେତୁ ଦ୍ୱିମୁଖୀ, ପାର୍ଟି ବାହାରେ ଯିଏ ରହିଚନ୍ତି, ସେମାନଙ୍କୁ ମଧ୍ୟ ଅବହେଳାକରିବା ଚଳିବନାହିଁ; ତାଙ୍କ କାର୍ଯ୍ୟକଳାପ ଯଦି ଲୋକପ୍ରିୟତା ଅର୍ଜନକରିଥାଏ । ନିଜ ବିଚାର କି କାମ ଲୋକଙ୍କୁ କାହିଁକି ଆକର୍ଷଣକରୁନାହିଁ କି କରୁଚି, ଜାଣିବାକୁ ହେଲେ ସର୍ବାଦୌ କର୍ତ୍ତବ୍ୟ ଆତ୍ମସମୀକ୍ଷା; ନିର୍ମମ ଆତ୍ମସମୀକ୍ଷା କେବଳ ବୁଝାଇଦେଇପାରେ କ୍ରମଶଃ ନିଃସଙ୍ଗ ହୋଇପଡ଼ିବା କାରଣ । ପାର୍ଟି କୋଉ ବ୍ରାହ୍ମଣଶାସନ ନୁହେଁ ଯେ ଭିନ୍ନଜାତିର ଲୋକ ଜୁତାପିନ୍ଧି କି ଛତାଧରି ଦାଣ୍ଡରେ ଚାଲିପାରିବେ ନାହିଁ । ଅଥଚ ବାମପନ୍ଥୀଙ୍କ ଭିତରେ ଜାତିଭେଦ ଏକ୍ଷଣି ପ୍ରବଳ । କିଏ ବିଶୁଦ୍ଧ ମାର୍କ୍ସବାଦୀ ତ ଆଉକାହାକୁ ଦରକାର ଲେନିନ୍‌ଙ୍କ ସାଙ୍ଗରେ ପାଚନ କି ମାଓଙ୍କ ନାଁରେ ବନ୍ଧୁକ । ଅଥଚ ସମସ୍ତେ ଲଢୁଚନ୍ତି

କୁଅଡ଼େ ସାମ୍ରାଜ୍ୟବାଦ ବିରୋଧରେ ! ଛୋଟଛୋଟ ଲଢ଼ାଇର ଯୋଗଫଳ କିନ୍ତୁ ବିରାଟ ସଂଗ୍ରାମ; ସୋଭିଟ୍ ସଂଘର ପତନ ଉତାରୁ, ଏମାନେ କିନ୍ତୁ ଗୁର୍ଖାଲ୍ୟାଣ୍ଡ, ବୋଡୋଲ୍ୟାଣ୍ଡ, ତେଲେଙ୍ଗାନା କି ଝାଡ଼ଖଣ୍ଡ ଭଳି ଲୋକପ୍ରିୟ ଆନ୍ଦୋଳନରୁ ନିଜକୁ ରଖିଚନ୍ତି ଦୂରରେ; ସୁଯୋଗନେଇଚି ବିଜେପି । ବିଚ୍ଛିନ୍ନତାବାଦୀ / ସାମ୍ପ୍ରଦାୟିକତାବାଦୀ ଭଳି ଗାଳିଗୁଡ଼ାକ ଛପିହେଉଥିଲେ, ସାଧାରଣଲୋକ କଣ ରହୁଁଛନ୍ତି ବୁଝିବେ କେମିତି ବାମପନ୍ଥୀ କି ଭାବିବେ କେମିତି ପ୍ରତିକାରର ଉପାୟ ? ତିଆରି କରିବେ କେମିତି ଯୁକ୍ତଫ୍ରଣ୍ଟ୍ ? ପଚାରିବାକୁ କାହାରି ସାହସପାଉନାହିଁ, କାହିଁକିନା, ପାର୍ଟିର ଶୃଙ୍ଖଳା କର୍ମୀପାଖରୁ ଦାବିକରେ ନିଃସର୍ତ୍ତ ଆତ୍ମସମର୍ପଣ । କର୍ମୀହେବାକୁ ତାହେଲେ ମନକରିବ କିଏ କାହିଁକି ? ହାତୀଘୋଡ଼ା ତ ମିଳୁନାହିଁ କର୍ମୀକୁ; ପେଟକୁ ଖାଇ ଯିଏ କର୍ମୀହେବାକୁ ଆସିବେ, ସାଧାରଣତଃ ଆଉକୋଉ କାମକୁ ଯୋଗ୍ୟନୁହେଁ । ପଲ୍ ବାରନ୍ ଅବଶ୍ୟ ଇଉରୋପ-ଆମେରିକାରେ ଦେଖିଛନ୍ତି ମେଧାକର୍ମୀ, କିନ୍ତୁ ଭାରତରେ ମେଧାବୀ ଆଉ ଆସୁନାହାଁନ୍ତି ବାମପନ୍ଥାକୁ; ଯିଏ ଆସୁଛନ୍ତି, ବିବାକ wage-labour । ଭୁଲିଗଲେ ଭୁଲ୍‌ହେବ ଯେ କମିଉନିଜ୍ମ ମୂଳତଃ ସମାଜପରିବର୍ତ୍ତନ ଅଭିମୁଖୀ ଏକ ଇଣ୍ଟେଲେକ୍‌ଚୁଆଲ୍ ପରମ୍ପରା; ଏବଂ ସେ ପରମ୍ପରାକୁ ଉପଲବ୍ଧିକରିବାକୁ ପ୍ରବର୍ତ୍ତିତହୋଇଛି ହିଷ୍ଟରିକାଲ୍ ମେଟିରିଆଲିଜ୍ମ । ମାର୍କ୍ସ ଲେନିନ୍ ଗ୍ରାମ୍ଶି ପ୍ରଭୃତି ଦେଖିଛନ୍ତି ପ୍ରଧାନତଃ ଇଉରୋପ; ଅବଲୋକନର ବାଗବର୍ଗ ପଥନିର୍ଦ୍ଦେଶକ ହେଲେସୁଦ୍ଧା, ସାଧାରଣସୂତ୍ର ଗୁଡ଼ାକର ପ୍ରୟୋଗଯୋଗ୍ୟତାକୁ ପରଖକରିବା କଥା ନିର୍ଦ୍ଦିଷ୍ଟ ସମାଜର ନିର୍ଦ୍ଦିଷ୍ଟ ଇତିହାସ; ବିଶେଷ ସେଇ ଇତିହାସ ଆଲୋକରେ ଐତିହାସିକ ବସ୍ତୁବାଦର ପୁନର୍ବିବେଚନା । ଅର୍ଥାତ୍, ଶେଷ ବିଚାରରେ, ସମାଜରୂପାନ୍ତରର ପନ୍ଥାପଦ୍ଧତିକୁ ଆହରଣକରିବାକୁ ପଡ଼ିବ ଆପଣା ଦେଶର ଇତିହାସଗତିରୁ । ରସିଆ କି ଚିନ୍‌ରୁ ନୁହେଁ । କାହିଁକିନା, ମୋ ଭଳି ଅଭାଜନ ବି ଦେଖିପାରୁଛି ସାମନ୍ତତନ୍ତ୍ରରୁ ଉତରଣଘଟିଛି ଇଉରୋପ୍, ରସିଆ ଓ ଚିନ୍‌ରେ ଭିନ୍ନଭିନ୍ନ ବାଟରେ; ଏବଂ ପରିଣାମରେ, ଇଉରୋପ 'କ୍ୟାପିଟାଲିଜ୍ମରେ ଉପଗତହେବା ସତ୍ତ୍ୱେ, ରସିଆକୁ ଆସିଛି କ୍ୟାପିଟାଲିଜ୍ମ ଉଇଦ୍‌ଆଉଟ୍ କ୍ୟାପିଟାଲ୍', ଆଉ ଚିନ୍‌କୁ ଆସିଛି 'ମାର୍କେଟ୍ ସୋସାଲିଜ୍ମ' । ଭାରତର ବାମପନ୍ଥୀ ନିଜ ସଂଗ୍ରାମକୁ (=ଫିଉଡାଲିଜ୍ମକୁ ଅତିକ୍ରମକରିବା ସଂଗ୍ରାମକୁ) ଦେଶର ଇତିହାସ ସାଙ୍ଗରେ ଅନ୍ୱିତ କରିପାରିଛନ୍ତି କି ଅଦ୍ୟାବଧି ? ପାରି ଯେ ନାହାଁନ୍ତି, ତାର ପ୍ରମାଣ, ଦାମୋଦର ଧର୍ମାନନ୍ଦ କୋସମ୍ବିଙ୍କ ତୀବ୍ର ସମାଲୋଚନା ପ୍ରତି ରହସ୍ୟମୟ ନୀରବତା ।

ଇତିହାସଦୃଷ୍ଟି ମାନେ ମାର୍କ୍ସଙ୍କ ପଦ୍ଧତିନିର୍ଦ୍ଦେଶିତ 'ଇମ୍ୟାନେଣ୍ଟ୍ ଭିଉ'; ଇମ୍ୟାନେଣ୍ଟ=ଅନ୍ତର୍ବାସୀ; ଅର୍ଥାତ୍ ଇତିହାସ ଭିତରେ ପରିବ୍ୟାପ୍ତ ଏପରି ଧାରଣା ଯେ

ଭଗବାନ ତିଆରିକରିଛନ୍ତି ଆଉ ପରିଚାଳନାକରୁଛନ୍ତି ବିଶ୍ୱସଂସାର । ମାର୍କ୍ସଙ୍କ କଥାକୁ ସଂକ୍ଷେପରେ ବ୍ୟକ୍ତକରିଛନ୍ତି ଆନ୍ତନିଓ ଗ୍ରାମ୍‌ସି, Two points must orient the discussion (a) that no society sets itself tasks for whose accomplihment the necessary and sufficient conditions do not either already exist or not at least beginning to emerge and develop; (b) that no society breaks down and can be replaced untill it has developed all the forms of life which are implicit in its internal relations; (c) from a reflection or these two principles, one can move on to develop a whole series of further principles of historical methodology. Meanwhile, while studying structure, it is necessary to distinguish organic movements (relativly permanent) from movements which may by termed 'conjectural' (which appears as occasional, immediate almost accidental) । ଅନ୍ୟ ଶବ୍ଦରେ, ତତ୍ତ୍ୱର ଉତ୍ସ ମାର୍କ୍ସ ଲେନିନ୍, ଗ୍ରାମ୍‌ସି, ଯିଏ ହୁଅନ୍ତୁ, ପ୍ରକୃତ ଓ ଜୀବନ୍ତ ଇତିହାସର ଅନୁମୋଦନ ବିନା କାହାରି ତତ୍ତ୍ୱ ପ୍ରୟୋଗଯୋଗ୍ୟ ହୋଇପାରେନା । ମହାମତି ଭାବୁକ ନିଶ୍ଚୟ, ମାତ୍ର ଏମାନଙ୍କ ସମ୍ମିଳିତ ମନୀଷା, ଇତିହାସର ସତ୍ୟ ତୁଳନାରେ ଗୌଣ, କାହିଁକିନା, ବିବିଧ ଐତିହାସିକ ତଥ୍ୟର ଆବିଷ୍କାର ସଙ୍ଗେସଙ୍ଗେ, ବିକାଶପର୍ଯ୍ୟାୟ ସମ୍ବନ୍ଧୀୟ ସମସ୍ତ ତତ୍ତ୍ୱ ଦାବିକରିବ ପୁନର୍ବିଚାର । କୋଉହେଲେ ବାମପନ୍ଥୀ ପାର୍ଟି, ସେଥିପାଇଁ, ଆମଦାନିକରିଥିବା ତତ୍ତ୍ୱଗୁଡ଼ାକୁ ଲୋକଙ୍କ ଉପରେ ଉପରପାହଚରୁ ଲଦିଦେବନାହିଁ, ସ୍ୱୟଂ ମାର୍କ୍ସ ଯେପରି ଲଦିଦେଇନାହାଁନ୍ତି ପୃଥିବୀ ଉପରେ ସ୍ୱଆବିଷ୍କୃତ ନୀତିନିୟମ । ପାର୍ଟି ଯାହାକୁ 'ସତ୍ୟ' କହିବ, ଇତିହାସର ସତ୍ୟ ହୋଇଥିବା ଆବଶ୍ୟକ; ନହେଲେ ଇତିହାସ ହିଁ ଆଗେଇଯିବ ପାର୍ଟିକୁ ପଛରେପକାଇ, ଚଞ୍ଚଳ ହେଉ କି ଡେରିରେ । ଇତିହାସଗତି ସହିତ ସମତାଳରେ ଚାଲିବାକୁ ହେଲେ, ସବୁରକମ ଲୋକଙ୍କ କଥା ଶୁଣିବାକୁ ପଡ଼ିବ, ଖାଲି ପାର୍ଟିକାଡର୍‌ଙ୍କ କଥା ନୁହେଁ । ଶତ୍ରୁଙ୍କ କଥାକୁ ବି ମନଦେଇ ଶୁଣିବାକୁ ପଡ଼ିବ, ପାର୍ଟି ବାହାରେ ରହିଛନ୍ତି ଯେତେ ମେଧାବୀ ମଣିଷ, ସେମାନଙ୍କ ବକ୍ତବ୍ୟ ବି ଦାବିକରିବ ସଯତ୍ନ ସମୀକ୍ଷା, ଏବଂ ଦର୍ଶନ ବିଜ୍ଞାନ ସାହିତ୍ୟର ନବ ନବ ଉନ୍ମେଷ ମଧ ନଜର ଏଡ଼ାଇଯିବନାହିଁ ପାର୍ଟିର । ଏଇ ଅଭିଜ୍ଞତାର ନିର୍ଯ୍ୟାସ ସ୍ଥିରକରିବ ସଂଗଠନ ଧାରଣକରିବ କିଭଳି ଆକାରପ୍ରକାର । ଅର୍ଥାତ୍, ଅନ୍ଧାଧୁନିଆ ରୀତିରେ, ଠିକ୍ ମନେହେଉଚି ବୋଲି, ତତ୍ତ୍ୱ ବଖାଣିବନାହିଁ ପାର୍ଟି, ଯେପରି କରି ଠକିଥିଲେ ବାକୁନିନ୍ । କିନ୍ତୁ ସତ୍ୟାଗ୍ରହ ଭଳି ପ୍ରତିରୋଧ (ପ୍ୟାସିଭ୍

ରେଜିସ୍‌ଟ୍ୟାନସ୍) ସବୁଠୁଁ ବେଶି ଅନିଷ୍ଟକର ରଣକୌଶଳ, କାହିଁକିନା, ସେଇ ବାଟରେ ହିଁ ଶାସକଶ୍ରେଣୀ ଆପଣା ଆଧିପତ୍ୟ ପ୍ରତି ସମ୍ମତି ଆଦାୟକରେ । ଗ୍ରାମ୍‌ସି ଦେଖିଚନ୍ତି, ସମ୍ମୁଖସମର ପାଇଁ କ୍ଷେତ୍ର ପ୍ରସ୍ତୁତ; ମାତ୍ର ପାର୍ଟିର ସଂଗଠନ ପଙ୍ଗୁ, କିମ୍ୱା ତାର ବିଗ୍ରହ ରକ୍ଷଣଶୀଳ । ଯୋଦ୍ଧା ହନ୍ତସନ୍ତ ହୋଇଚନ୍ତି ଅଯଥାରେ । ଏ ପ୍ରକ୍ରିୟା, ଅନ୍ତତଃ ଇଉରୋପରେ, ଲାଗିରହିଚି ୧୮୪୮ରୁ ଫ୍ୟାସିଜ୍‌ମର ଅଭ୍ୟୁଦୟ ପର୍ଯ୍ୟନ୍ତ । ୧୮୪୮ରେ *କମିଉନିଷ୍ଟ୍ ମ୍ୟାନିଫେଷ୍ଟୋ* ଦେଖିଚି ସାରା ଇଉରୋପ ଉପରେ କମିଉନିଜ୍‌ମର ପ୍ରେତଛାୟା (ସ୍ପେକ୍‌ଟର); ମାର୍କ୍‌ସ୍‌ଏଙ୍ଗେଲ୍‌ସ୍‌ଙ୍କ ଯଥାର୍ଥ ଇତିହାସବୋଧ । ତେଣୁ ଖାଲି ଇସ୍ତାହାରର ଜନ୍ମନୁହେଁ, ଖାସ୍ କମିଉନିଜ୍‌ମର ଜନ୍ମ ୧୮୪୮ ରେ; ଇଉରୋପର ବୁର୍ଜୋୟା ସାମନ୍ତତନ୍ତ୍ରକୁ ମୁକାବିଲାକରିବାକୁ ଧରିଚି କିନ୍ତୁ ପ୍ୟାସିଭ୍ ରେଭୋଲିଉସନ୍‌ର ବାଟ, ଫ୍ରାନ୍ସ କି ଇଂଲ୍ୟାଣ୍ଡ୍ ଭଳି ସମ୍ମୁଖସମରକୁ ଓହ୍ଲାଇପଡ଼ିନାହିଁ । କାହିଁକିନା, କ୍ରମୱେଲ୍ କି ଜାକୋବିନ୍‌ଙ୍କ ସାହସ ଅଭାବଥିଲା ଏନଙ୍କ ପାଖରେ । ରକ୍ତକ୍ଷୟକୁ ଡରିଚନ୍ତି, ଯେମିତି ଗାନ୍ଧି ଡରିଚେନ୍ତି ପ୍ରାୟ ଶହେବର୍ଷ ଉତାରୁ ଅଖଣ୍ଡ ଭାରତରେ । ଅସଲ କମିଉନିଜ୍‌ମ ନୁହେଁ; ପ୍ରେତଛାୟା କେବଳ, କିନ୍ତୁ ଏମିତି ଭୟଭୀତ କରିପକାଇଚ ଯେ ପୁଞ୍ଜିବାଦୀ ସମାଜ ଅପେକ୍ଷା କଲ୍ୟାଣକର ଅନ୍ୟକୋଉ ସମାଜପ୍ରତିଷ୍ଠା କଥା ବେମାଲୁମ୍ ପାସରିପକାଇଚି ଇଉରୋପର ବୁର୍ଜୋୟା । ଏ ଇତିହାସରୁ କି ଶିକ୍ଷା ଗ୍ରହଣକରିଚନ୍ତି ଭାରତର ବାମପନ୍ଥୀ ? ପାର୍ଲାମେଣ୍ଟାରି ଗଣତନ୍ତ୍ର ? ମାତ୍ର ଗ୍ରାମ୍‌ସି ଦେଖିଚନ୍ତି, ଫ୍ୟାସିଜ୍‌ମରେ ପହଞ୍ଚିବା ପର୍ଯ୍ୟନ୍ତ ନାନାଦି ଅଭିସରଣ; ଯେପରି, ସିଜରିଜ୍‌ମ (ଭୟାନକ ଝୁଙ୍କିନେଇ ଭାରସାମ୍ୟରକ୍ଷା), କୋଆଲିସନ୍ ମାଧ୍ୟମରେ ଆପୋଷ, ପିଦ୍‌ମଣ୍ଟିୟ ପ୍ରବଣତା (କୋଆଲିସନ୍ ଭିତରେ ଥାଇ ଶରିକମାନଙ୍କ ଉପରେ ସର୍ଦ୍ଦାରିକରିବା ଉଦ୍ୟମ), ନେପୋଲିଅନିକ୍ ଏକ୍ସପୋର୍ଟ (ଜାତୀୟତା ପ୍ରତି ଆବେଦନ, ସିଭିଲ୍‌କୋଡ୍ ଇତ୍ୟାଦି ପ୍ରଚଳନ) । ଯୁଦ୍ଧକାଳୀନ ପରିସ୍ଥିତି; କିନ୍ତୁ ଯୁଦ୍ଧକରିବାକୁ ଅନିଚ୍ଛା । ଇକନମିଜ୍‌ମ (ହାତୀଦେବୁଁ ଘୋଡ଼ାଦେବୁଁ ଭଳି ପ୍ରଲୋଭନ ଦେଖାଇ କ୍ଷମତାରକ୍ଷା) । ଜାତିରାଷ୍ଟ୍ର, କିନ୍ତୁ ଜନସମର୍ଥନ ଅଭାବ; ଅମଲାତାନ୍ତ୍ରିକ କେନ୍ଦ୍ରୀଭବନ; ସମାଜର ସ୍ୱୀକୃତିପାଇଥିବା ଐତିହ୍ୟମୁଖୀ ବୁଦ୍ଧିଜୀବୀଙ୍କ ରାଜନୀତିକ ନେତୃତ୍ୱ ପ୍ରତି ଆକର୍ଷଣ; ଏବଂବିଧ ଅସଂଖ୍ୟ ସ୍ଖଳନ । ଏଥିରୁ ଦେଖିବାକଥା, ଶାସକଶ୍ରେଣୀର କୋଆଲିସନ୍ ଆଉ କମିଉନିଷ୍ଟ୍ ପାର୍ଟି ନେତୃତ୍ୱାଧୀନ କୋଆଲିସନ୍ ମଧ୍ୟସ୍ଥ ପାର୍ଥକ୍ୟ । ମାତ୍ର ପକ୍ଷପାତହୀନ ଗ୍ରାମ୍‌ସିଙ୍କ ବିଗ୍ରହ । କମିଉନିଷ୍ଟ୍ ପାର୍ଟିକୁ ଆଗତୁରା ସତର୍କକରି ପ୍ୟାସିଭ୍ ରେଭୋଲିଉସନ୍ ପରିହାରକରିବାକୁ କହିଚନ୍ତି ସବାଆଗେ, କାହିଁକିନା, ଅକର୍ମକ ସେ ନୀତି ଜନଜାଗରଣ ପ୍ରତି ପରାଜୟ ତୁଲ୍ୟ; ଲୋକଙ୍କ ଉତ୍ସାହ ଉପରେ ଥଣ୍ଡାପାଣି ଢାଳିଦେବା

ଭଳି ଅବିମୃଶ୍ୟକାରିତା । କାହିଁକିନା, ପାର୍ଟି ହେଉଛି ଭବିଷ୍ୟତ୍‌କାଳର ରାଷ୍ଟ୍ର (ଇଣ୍ଟିଗ୍ର୍ୟାଲ୍ ଷ୍ଟେଟ୍; ଏଥିକ୍ୟାଲ୍ ଷ୍ଟେଟ୍; କଲ୍‌ଚର୍‌ୟାଲ୍ ଲିଡରସିପ୍; ଇଣ୍ଟେଲେକ୍‌ଚୁଆଲ୍ ଆଣ୍ଡ୍ ମରାଲ ଲିଡର୍‌ସିପ୍; ପାର୍ଟି ଆଜ୍ ଦ ୟୁନିଟି ଅବ୍ ଥିୟରି ଆ୍ୟାଣ୍ଡ୍ ପ୍ରାକ୍‌ସିସ୍, ଇଉନିଟି ଅବ୍ କମନ୍‌ସେନ୍ସ, ରିଲିଜନ୍ ଆ୍ୟାଣ୍ଡ୍ ଫିଲଜଫି ଇତ୍ୟାଦି ଇତ୍ୟାଦି) । ପ୍ୟାସିଭ୍ ରେଭୋଲିଉସନ୍ ତେଣୁ ଏଇ ଉପାଦାନଗୁଡ଼ିକର ଅନୁପସ୍ଥିତି; ପାର୍ଟି ଭିତରେ, ପୁଣି ଭବିଷ୍ୟତ୍‌ରାଷ୍ଟ୍ର ସଂଗଠନରେ । କଥାର ସତ୍ୟତା, ସତ୍ୟାଗ୍ରହରୁ ଉଠିଥିବା କଂଗ୍ରେସ୍‌ପରିଚାଳିତ ରାଷ୍ଟ୍ରବ୍ୟବସ୍ଥାକୁ ଦେଖିଲେ, ଛାଏଁଛାଏଁ ଧରାପଡ଼େ; ମାତ୍ର ଭାରତର କୋଉହେଲେ ବାମପନ୍ଥୀ ସଂଗଠନ ଭବିଷ୍ୟତରାଷ୍ଟ୍ରର ଅଙ୍କୁର ବୋଲି ନିଜକୁ କଳ୍ପନାକରିପାରେ କି ? କରିବାକୁ ହେଲେ, ଘଟପରିବର୍ତ୍ତନ କରିବାକୁ ପଡ଼ିବ; ଏବେ ଯେମିତି ଦିଶୁଚି ଲୋକଙ୍କ ଆଖିକୁ, ତାଠାରୁ ଏକେବାରେ ଅଲଗା । ଅର୍ଥାତ୍, କାମଟା ଦ୍ୱିମାତ୍ରିକ; ଅସମ ଏକ ସମାଜର ରୂପାନ୍ତର ଯେମିତି ତାର ଲକ୍ଷ୍ୟ, ନିଜକୁ ସେଇ ରୂପାନ୍ତରିତ ସମାଜର ଭ୍ରୂଣରୂପ ଭାବରେ ସେମିତି ସଂଗଠନ । ସଂକ୍ଷେପରେ, ବ୍ୟକ୍ତିବିଶେଷର ବିଶ୍ୱଦୃଷ୍ଟି ପାର୍ଟିର ଓରଲ୍ଡଭିଉ ହେବନାହିଁ, ଇତିହାସର ଇମ୍ୟାନେଣ୍ଟ୍ ଭିଉ ହେବ ପାର୍ଟିର ବିଶ୍ୱଦୃଷ୍ଟି । ତା ହେଲେଯାଇ ଲୋକ କହିବେ କମିଉନିଷ୍ଟ୍ ଯା କହୁଛନ୍ତି, ସବୁଗୁଡ଼ାକ ଆମ ମନଭିତରର କଥା; ତେବେ ଆହୁରି ଯେତେକଥା କହୁଚନ୍ତି ଆଗରୁ ଆମେ ଭାବିପାରିନାହୁଁ । ତହିଁଉତାରୁ ଆଶ୍ଚର୍ଯ୍ୟହେବେ, ବଳକା କଥାଗୁଡ଼ାକ ଏମାନେ ପାଇଲେ କୁହାରୁ ? ସେତେବେଳେ ପାର୍ଟି ହେବ ଶିକ୍ଷକ ।

ମାତ୍ର ଗ୍ରାମ୍‌ଶି ଆଉଗୋଟିଏ କଥା ମଧ୍ୟ କହିଚନ୍ତି, ଗ୍ଲୋବାଲାଇଜେସନ୍ ପ୍ରେକ୍ଷିତରେ ଯା ତାତ୍ପର୍ଯ୍ୟପୂର୍ଣ୍ଣ, ଅକ୍ଟୋବର୍ ବିପ୍ଲବରୁ ଆଜିଯାଏଁ କ୍ୟାପିଟାଲିସ୍ଟ କଣ ଶିଖିଚି କମିଉନିସ୍ଟଙ୍କ ପାଖରୁ ? ଆଉ, କମିଉନିସ୍ଟ ବି କଣ ଶିଖିଚନ୍ତି କ୍ୟାପିଟାଲିସ୍ଟ ପାଖରୁ ? ଗ୍ରାମ୍‌ଶି କହିଚନ୍ତି, ଇଉରୋପର ଶାସକଶ୍ରେଣୀ ଶ୍ରଦ୍ଧାପୂର୍ବକ ଶୁଣିଚି ମାର୍କ୍ସଙ୍କ ବକ୍ତବ୍ୟ, ଆଉ ସମୟ ଯେତେ ଆଗେଇଯାଇଚି, ମାର୍କ୍ସଙ୍କ କଥାର ସତ୍ୟତା ବିଷୟରେ ସେତେବେଶି ହୋଇଚି ନିଃସଂଶୟ; ଯେପରି, in so long as there is room for productive forces to grow under the existing production relations, people would not prefer revolutionary tasks । ୧୯୧୭ ରୁ ୧୯୫୦ ଭିତରେ ଦୁଇଦୁଇଟା ବିଶ୍ୱଯୁଦ୍ଧ ଓ ଗଣତନ୍ତ୍ର ଉପରେ ଫ୍ୟାସିବାଦର ଦୌରାତ୍ମ୍ୟ ସତ୍ତ୍ୱେ ଇଉରୋପର ଶାସକଶ୍ରେଣୀ ମାର୍କ୍ସଙ୍କ ଉଚ୍ଚାରଣର ଗୁରୁତ୍ୱ ଭୁଲିଯାଇନାହିଁ । ଭୁଲିଯାଇନାହିଁ ବୋଲି, ଗତ ପଚାଶବର୍ଷ ଭିତରେ ବିଜ୍ଞାନ ଓ ପ୍ରଯୁକ୍ତି ଯୋଉ ମାତ୍ରାରେ ଅଗ୍ରସରହୋଇଚି, ବିପ୍ଲବର ସମ୍ଭାବନାକୁ ଖାଲି ଘୁଞ୍ଚାଇଦେଇନାହିଁ,

ବିଶ୍ୱାୟନର ଗତିବେଗକୁ ମଧ୍ୟ କରିଦେଇଛି ମନ୍ଥର । ଅର୍ଥାତ୍, ଇଉରୋପରେ ଅନ୍ତତଃ, ପ୍ରଡକ୍ଟିଭ୍ ଫୋର୍ସ ଆଉ ପ୍ରଡକ୍ସନ୍ ରିଲେସନ୍ ଭିତରେ କଣ୍ଟ୍ରାଡିକ୍ସନ୍ ଖାଲିଆଖିରେ ଦେଖିହେଉନାହିଁ; କମିଉନିସ୍ଟଙ୍କ ଅକର୍ମଣ୍ୟତାର ସୁଯୋଗନେଇ ତେଣୁ ଜଗାବରଜାଗା ଗଜୁରିଉଠିଚି ଏନ୍.ଜି.ଓ । ଆଉ, ବିଶ୍ୱବ୍ୟାଙ୍କ୍‌ର ନଜର ଏକ୍ଷଣି ଦଳିତ, ନିଗ୍ରୋ ଓ ନାରୀଙ୍କ ଉପରେ । ବ୍ୟାଙ୍କ୍ ପରିଭାଷାରେ, 'ଫ୍ରଣ୍ଟିୟର୍ ଏରିଆ' । ଅର୍ଥାତ୍ ଶ୍ରେଣୀଗତ ଶୋଷଣ ନୁହେଁ, ଗତରଖଟି ବଞ୍ଚୁଥିବା ମଣିଷଙ୍କ ସମ୍ମୁଖଭାଗ ଅଣ-ଶ୍ରେଣୀ । ଏମାନଙ୍କ ପ୍ରତି କଉନିସ୍ଟଙ୍କ ମନୋଭାବ କି ରକମ ? ଅନ୍ତତଃ ଲିଙ୍ଗଭେଦ ପ୍ରତି ? କାହିଁକିନା, ଶ୍ରେଣୀଭେଦ ତୁଳନାରେ ଲିଙ୍ଗଭେଦକୁ କହିହେବ ଅଧିକ 'ଇଉନିଭର୍ସାଲ୍' । ଅବଶ୍ୟ, ଶ୍ରେଣୀସଂଗ୍ରାମକୁ ଛାଡ଼ି କମିଉନିସ୍ଟ ଆଉ କମିଉନିସ୍ଟହୋଇ ରହିପାରିବେନାହିଁ; ମାତ୍ର ସମାଜର 'ଟୋଟାଲିଟି'ର ପ୍ରତିନିଧିତ୍ୱ କରିବାକୁହେଲେ, ଶ୍ରେଣୀସଂଗ୍ରାମ ବାହାରେ ମଧ୍ୟ ଢେର୍ ସଂଗ୍ରାମ ଅପେକ୍ଷାକରୁଚି, ଦଳ ଉପଦଳ ରୂପରେ ନୁହେଁ, ସଂହତ ସଂଗଠିତ ଏକଛତ୍ରଶକ୍ତି ରୂପରେ । ଏ ଉଦ୍ୟମକୁ ମୂଳରୁ ମାରିବାକୁ କ୍ୟାପିଟାଲିସ୍ଟ ଏକ୍ଷଣି ବିଶ୍ୱବ୍ୟାଙ୍କ୍ ଜରିଆରେ ଚେଷ୍ଟାକରୁଚି ଶ୍ରମଜୀବୀର 'ଏମ୍ପାଓର୍‌ମେଣ୍ଟ୍'; ମାନେ ମୌଳିକ କୋଉ ପରିବର୍ତ୍ତନ ନୁହେଁ; ତଥାପି କମିଉନିସ୍ଟଙ୍କୁ ଅଟକାଇପାରିବ ବାଟଘାଟରେ । ତେବେସୁଦ୍ଧା ୧୯୮୯ରେ ସୋଭିଏଟ୍ ସଂଘର ପତନ ଉତାରୁ ଅନ୍ତର୍କଳହରେ କାଳକ୍ଷେପକରିବା ଛଡ଼ା ସକାରାତ୍ମକ କୋଉହେଲେ ଆଗ୍ରହ ଦେଖାଇନାହାଁନ୍ତି ବାମପନ୍ଥୀ ।

କାରଣ ନିଶ୍ଚୟ ଐତିହାସିକ; ନୂଆକିଛି କରିବାପାଇଁ ବିଦେଶରୁ ଆଇଡିଆ ଆମଦାନିର ଦୂରାରୋଗ୍ୟ ଅଭ୍ୟାସ । ଏଇ ବଦଭ୍ୟାସକୁ ଲକ୍ଷ୍ୟକରି ଦାମୋଦର ଧର୍ମାନନ୍ଦ କୋସମ୍ବୀ କହିଥିଲେ, ଅବିଭକ୍ତ କମିଉନିଷ୍ଟ୍ ପାର୍ଟି ଭାରତର ଇତିହାସ ବିଷୟରେ ବସ୍ତୁତଃ ନିରକ୍ଷର; ଜେନେରାଲ୍ ସେକ୍ରେଟାରୀ ଶ୍ରୀପାଦ ଅମୃତ ଡାଙ୍ଗେଙ୍କ ବହି *From primitive communism to Slavery in Ancient India* କୁ ନେହ୍‌ରୁଙ୍କ *Discovery of India* ସହିତ ତୁଳନାକରି କୋସମ୍ବି ଦେଖାଇଥିଲେ, ଇଉରୋପର ଇତିହାସକୁ ଏଙ୍ଗେଲ୍ସ ଯୋଉ ଭାବରେ ବୁଝିଚନ୍ତି ତାଙ୍କ *Family, Private property and the State* ରଚନାରେ, ଡାଙ୍ଗେ ନିର୍ବିଘ୍ନରେ ସେଇ ମଡେଲ୍‌କୁ ଆଣି ଅବିକଳ ଲଦିଦେଇଚନ୍ତି ଭାରତ ଇତିହାସ ଉପରେ । ଡାଙ୍ଗେଙ୍କ ବହିକୁ ନେହ୍‌ରୁଙ୍କ ବହି ସାଙ୍ଗରେ ତୁଳନାକଲେ, ଗ୍ରାମ୍‌ଷ୍ଚିଙ୍କ ଉପଲବ୍ଧି ଯେ, ୧୯୧୭ର ଅକ୍ଟୋବର୍ ବିପ୍ଳବ ଉତାରୁ ଦୁନିଆସାରା ଶାସକଶ୍ରେଣୀ ମାର୍କ୍ସୀୟ ତତ୍ତ୍ୱଜଗତରୁ ଶିକ୍ଷା ଗ୍ରହଣକରିଚନ୍ତି ଯଥାସମ୍ଭବ, ମନେହେବନାହିଁ ବିବଦମାନ । ନେହ୍‌ରୁ ବୁର୍ଜୋୟାଶ୍ରେଣୀର ନେତା ହୋଇସୁଦ୍ଧା ନିର୍ଦ୍ୱିଧାରେ କହିଚନ୍ତି, ଇତିହାସକୁ ବୁଝିବାପାଇଁ

ମାର୍କ୍ସ ଯୋଉବାଟ ବତାଇଚନ୍ତି, ଅପରାପର ପଦ୍ଧତି ତୁଳନାରେ ତା ଅଧିକତର ବିଜ୍ଞାନସମ୍ମତ । ଅଥଚ କମିଉନିଷ୍ଟ ନେତୃତ୍ୱ ଇଉରୋପ, ରସିଆ କି ଚୀନର ସାଫଲ୍ୟରେ ମୁଗ୍ଧହୋଇ ଆଖିବୁଜି ଅନୁକରଣକରିଚି ଏଙ୍ଗେଲ୍ସଙ୍କୁ । ଅନ୍ୟ ଶବ୍ଦରେ, ଭାରତର ବୁର୍ଜୋୟା ଯେତେବେଳେ ବୟଃପ୍ରାପ୍ତିର ଲକ୍ଷଣଦେଖାଇଚି, ଶ୍ରେଣୀର ଗଢ଼ଣକୁ ବିଶ୍ଳେଷଣକରିବାକୁ ଯାଇ, ମାର୍କ୍ସପ୍ରଦର୍ଶିତ ପଦ୍ଧତି ଜାଗାରେ ତାଙ୍କେ ଅବଲମ୍ବନକରିଚନ୍ତି ବହୁବ୍ୟବହାରରେ ଜୀର୍ଣ୍ଣ ଏଙ୍ଗେଲ୍ସଙ୍କ ମଡେଲ୍ । କୋସମ୍ବି ସେଥିପାଇଁ ଲେଖନ୍ତି, The outstanding characteristic of a backward bourgeoisie, the desire to profit without labour or grasp of technique, is reflected in the superficial research so common in india, it would be pathetic to find it also in the writings of one who has suffered for his belief in Marxism । ବିନା ପରିଶ୍ରମରେ (ଚିନ୍ତାଭାବନା କି ଗବେଷଣା ଛଡ଼ା) ମହତ୍ କିଛି ଉତ୍ପାଦନକରିବା ଅଭିଳାଷ ଯେହେତୁ ଅନଗ୍ରସର ବୁର୍ଜୋୟାର ଜାତିଲକ୍ଷଣ, ସରକାରୀ ମାର୍କ୍ସବାଦ (କୋସମ୍ବିଙ୍କ ପରିଭାଷା ଅଫିସିଆଲ୍ ମାର୍କ୍ସିଜ୍ମ) ବିଦେଶରେ ଯୋଉଠି ଯାହା ବଡ଼କାମ ହୋଇଚି, ଆମର ବି ଅବିକଳ ସେମିତି ହୋଇଚି ବୋଲି ପ୍ରଚାରକରିବାକୁ ବ୍ୟାକୁଳ; ଯେପରି, ମଣିଷକୁ ଅସ୍ଥାବର ସଂପତ୍ତି ଭାବରେ କ୍ରୟବିକ୍ରୟ, ଇଉରୋପରେ ଯା ସ୍ଲେଭେରି ବା ଦାସପ୍ରଥା, ତାଙ୍କେ ତାର ସମାନ୍ତରାଳ ଖୋଜିପାଇଚନ୍ତି ଭାରତ ଇତିହାସରେ; ଶ୍ରେଣୀବିକାଶ କ୍ରମରେ । ତହିଁଉତାରୁ କୋସମ୍ବିଙ୍କ ମନ୍ତବ୍ୟ, ଭାରତରେ ଏଭଳି ମଣିଷ ବେପାର କେବେ କେହି କରିନାହିଁ, ଏବଂ ପ୍ରାଚୀନଭାରତରେ ଯାହାଙ୍କୁ 'ଦସ୍ୟୁ' କୁହାଯାଉଥିଲା, ସେମାନେ ଆଧୁନିକ ଶୂଦ୍ର; ଶୂଦ୍ର ସୃଷ୍ଟିହୋଇଚନ୍ତି ରାଷ୍ଟ୍ରର ସହଯୋଗିତାରେ । ହୋଇଚନ୍ତି ବୋଲି, ଦାସପ୍ରଥା ତିଆରି ହୋଇପାରିନାହିଁ ଭାରତରେ; ଏବଂ ସେଥିପାଇଁ, ନୀଚଜାତି ଲୋକଙ୍କୁ ତାଙ୍କେ ଯେମିତି 'ସ୍ଲେଭ୍' ସାଙ୍ଗରେ ସମାନକରିଚନ୍ତି, ତା ଉତ୍ତପ୍ତ କଳ୍ପନା ମାତ୍ର । ତେଣୁ, ବହିର ଶିରୋନାମ ସୁଦ୍ଧା ବିଭ୍ରାନ୍ତିକର, କାହିଁକିନା, ଭାରତରେ ପ୍ରିମିଟିଭ୍ କମିଉନିଜ୍ମ କି ସ୍ଲେଭରି, କୋଉ ଗୋଟାକହେଲେ ଗଢ଼ିଉଠିନାହିଁ । କୃତ୍ୟବିଦ୍ୟ ପ୍ରାଚ୍ୟବିଦ୍ୟାବିଦ୍ ତେଣୁ ମନ୍ତବ୍ୟକରିଚନ୍ତି, ମାର୍କ୍ସବାଦ is not substitute for thinking; ନୂଆ ବାଟରେ ଭାବିବା ଓ ସଂଗ୍ରାମ କରିବାର ପଥନିର୍ଦ୍ଦେଶକ ମାତ୍ର । ଏକାକଥା କହିହେବ ଚୀନ୍‌ର ସାମନ୍ତତନ୍ତ ସାଙ୍ଗରେ ସମାନ୍ତରାଳ ଆବିଷ୍କାର ସମ୍ବନ୍ଧରେ, ଅର୍ଥାତ୍, ୟେନାନ୍ ମଡେଲ୍‌ର ସଶସ୍ତ୍ର ସଂଘର୍ଷର ଅନୁକରଣ । ୧୯୯୫ରେ ଅନୁଷ୍ଠିତ ଆନ୍ତର୍ଜାତିକ କର୍ମଶାଳାରେ ବାମପନ୍ଥୀ ସ୍ୱୀକାରକରିଚନ୍ତି, ଭାରତୀୟ ସାମନ୍ତତନ୍ତ୍ରର

ବିଶେଷତ୍ୱ ସେମାନେ ଚିହ୍ନଟକରି ପାରିନାହାଁନ୍ତି । ଭାରତର ଇତିହାସଧାରା କିପରି ଏକ ବିଶେଷ ଧାରା, ରହିଯାଇଚି ତେଣୁ ଅନଧିଗତ । ତଥାପି ଭାରତୀୟ ଜନଗଣଙ୍କ ପାଖରୁ ପ୍ରତ୍ୟାଶାକରିଚନ୍ତି ଚିନା ମଡେଲ୍‌ର ଶ୍ରେଣୀସଂଗ୍ରାମ । ଜେଲ୍‌ଭିତରୁ କମ୍ରେଡ୍ ଆପ୍ପାରାଓ କିନ୍ତୁ ଚୀନ୍ ସହିତ ପ୍ରଭେଦ ନିରୂପଣକରି ଲେଖିଚନ୍ତି, ସମାଜର ଉପର ସ୍ତରରୁ ସାମନ୍ତତନ୍ତ୍ର ଲଦିଦିଆଯାଇଚି ଭାରତରେ; ସ୍ୱାଭାବିକ ଜୈବିକ ପ୍ରକ୍ରିୟାରେ ଗଢ଼ିଉଠିନାହିଁ; ଏବଂ ରାଷ୍ଟ୍ରଯନ୍ତ୍ର ଏଠି ଖାଲି ନିଷ୍ଛିଦ୍ରଭାବେ କେନ୍ଦ୍ରୀଭୂତ ନୁହେଁ, ତାର ପରାକ୍ରମ ମଧ ଦୁର୍ଦ୍ଦାନ୍ତ । ଅର୍ଥାତ୍ ଚୀନ୍‌ର ଦୃଷ୍ଟାନ୍ତ ସମାନ୍ତରାଳ ହୋଇପାରେନା । ଭାରତର କେନ୍ଦ୍ରୀଭୂତ ରାଷ୍ଟ୍ରଯନ୍ତ୍ର ରାଜନୀତିକ-ସାମରିକ କାୟଦାରେ ଶାସକଶ୍ରେଣୀକୁ ଖାଲି ଏକଛତ୍ର କରେନା, ସୁରକ୍ଷା ଯୋଗାଇଦିଏ ଅହୋରାତ୍ର; ସେଇ ସୂତ୍ରରେ, ଖଟିଖିଆଲୋକଙ୍କୁ ସଂଗଠିତ/ଐକବଦ୍ଧହେବାକୁ ବାଧାଦିଏ । ଅଥଚ ଚୀନରେ ରାଷ୍ଟ୍ରଯନ୍ତ୍ରର ନିର୍ଦ୍ଦିଷ୍ଟ କୋଉ କେନ୍ଦ୍ର ଥିଲାନାହିଁ; ଶାସକସଂପ୍ରଦାୟ ଥିଲେ ଅସଂଗଠିତ ଭୂମ୍ୟଧିକାରୀ, ତାଙ୍କ ଭିତରେ ଥିଲେ ପୁଣି ବିବଦମାନ ଦଳ-ଉପଦଳ । ସୈନ୍ୟଦଳ ତେଣୁ ସାମନ୍ତ-ପ୍ରଭୁଙ୍କ ବ୍ୟକ୍ତିଗତ ଶକ୍ତି, ଯଦ୍ଦ୍ୱାରା ସମ୍ଭବ ହୋଇଥିଲା ଆତ୍ମରକ୍ଷା । ଚୀନା କମିଉନିଷ୍ଟ୍ ପାର୍ଟି ପାଇଁ ତେଣୁ ସହଜ ହୋଇଚି ପଛକୁ ପଛ ଅବଲୀଳାରେ ଜମିଦାରଙ୍କ କବଳରୁ ବିଲବାଡ଼ି ଛଡ଼ାଇଆଣିବା । ଜମିଦାରଙ୍କ ସାଙ୍ଗରେ ସଂଘର୍ଷରେ ଲିପ୍ତହେବା ଆଗରୁ କମିଉନିଷ୍ଟ୍ ଆକଳନକରିଚନ୍ତି ବିକ୍ଷିପ୍ତ ଭୂମ୍ୟଧିରୀଙ୍କ ପ୍ରତି କୃଷକକୂଳର ବିଦ୍ୱେଷର ତୀବ୍ରତା ସାଙ୍ଗକୁ କୃଷକବିଦ୍ରୋହୀଙ୍କ ବିପକ୍ଷରେ ବଳପ୍ରୟୋଗର ଧାରାବାହିକତା । ମୋବିଲାଇଜେସନ୍ ସଶସ୍ତ୍ର ହେବାସତ୍ତ୍ୱେ ପ୍ରତିଆକ୍ରମଣ ତେଣୁ ଶକ୍ତିସଂଗ୍ରହ କରିପାରିନାହିଁ । ଆପ୍ପାରାଓଙ୍କ ଦଲିଲ୍ ଏଇଠି ସରିଯାଇନାହିଁ; ମାତ୍ର ୧୯୯୫ରେ ଯଦି ଏଇ ପ୍ରତୀତି ଜନ୍ମିଚି, ୧୯୫୦ରେ କୋସମ୍ବିଙ୍କ ସମାଲୋଚନା ସତ୍ତ୍ୱେ ଚେତାପଶିଲାନାହିଁ କାହିଁକି ? ତେବେ, ପିପ୍ଲସ୍ ୱର୍ ଗ୍ରୁପ୍ ୧୯୯୫ରେ ଯା କହିଚି, କୋସମ୍ବିଙ୍କ ବକ୍ତବ୍ୟର ତା ୧୦% ମାତ୍ର ।

କୋସମ୍ବି କହିଚନ୍ତି, ଭାରତୀୟ ପରମ୍ପରାରେ ସାମନ୍ତତନ୍ତ୍ର ପ୍ରତି ନିହିତରହିଚି ଦୁଇଟି ପ୍ରମୁଖ ପ୍ରବଣତା; ଗୋଟିଏ ଋଣକ୍ୟପ୍ରବଣତା, ଅନ୍ୟଟି ମନୁପ୍ରବଣତା । ଉଭୟ ପ୍ରବଣତା ପ୍ରାଚୀନ ଭାରତର ଦୀର୍ଘସ୍ଥାୟୀ ଅନେକ ଅନୁଷ୍ଠାନ ମୂଳରେ ଯେହେତୁ ସକ୍ରିୟ, ଆପ୍ପାଓଙ୍କ ଦଲିଲ୍‌ର ଦୃଷ୍ଟିଭଙ୍ଗୀ, ଖୁବ୍ ବେଶିହେଲେ, ଖଣ୍ଡିତ; କାହିଁକିନା, ନଜରରେ ପଡ଼ିଚି ଏକମାତ୍ର ଋଣକ୍ୟ-ପ୍ରବଣତା, ମାନେ, ସମାଜର ଉପରସ୍ତରରୁ ସାମନ୍ତତନ୍ତ୍ରର ଅଭ୍ୟୁଦୟ । ନଜର ଏଡ଼ାଇଯାଇଚି ମନୁ-ପ୍ରବଣତା; ମାନେ, ସବାତଳୁ ସାମନ୍ତତନ୍ତ୍ରର ଉଦ୍‌ଭବ; ବର୍ଣ୍ଣାଶ୍ରମ ଦ୍ୱାରା ସୋପାନକ୍ରମରେ ତଳୁ ଉପରକୁ ସାମନ୍ତତନ୍ତ୍ରର

ସଂଗଠନ ଆଉ ସଂଗଠନକୁ ସ୍ଥାୟୀତ୍ୱଦେବା ସକାଶେ ଐତିହ୍ୟବାହୀ ଇଣ୍ଟେଲେକ୍‌ଚୁଆଲ୍‌ଙ୍କ ସମ୍ମିଳିତ ଅବଦାନ । ଉପରୁ ଓ ତଳୁ, ଉଭୟ ମାର୍ଗରେ, ସମାଜସଂଗଠନକୁ ଅର୍ଥନୀତି ଓ ଭାବାଦର୍ଶ, ଉଭୟ ସ୍ତରରେ, ନିୟନ୍ତ୍ରଣକରିବା ଫଳରେ ଭାରତର ରାଜନ୍ୟବର୍ଗ ମଣିଷକୁ ହାଟବଜାରରେ ଗୋରୁଛେଳି ଭଳି କିଣାବିକା ଦୁଷ୍କର୍ମକୁ ଏଡ଼ାଇଯାଇଚନ୍ତି; ଇଉରୋପରେ କିନ୍ତୁ ଦାସପ୍ରଥା ତିଆରିକରିଚି ଖୋଦ୍ ଶାସକଶ୍ରେଣୀ । ସେହିପରି, ସାଧାରଣଲୋକଙ୍କ ଆଶାଆକାଙ୍କ୍ଷାକୁ ଦମନକରିବାକୁ, ଚୀନ୍‌ରେ ଯେମିତି ସ୍ଥାନୀୟ କି ଜାତୀୟ ସ୍ତରରେ ସେନା ମୁତୟନକରାଯାଇଚି ଘନ ଘନ, ସେ ପ୍ରୟୋଜନ ଭାରତରେ ମୂଳରୁ ଦେଖାଦେଇନାହିଁ । ଆପ୍ପାରାଓଙ୍କ ଦଲିଲ୍ ତେଣୁ ପୂର୍ବାଭାସ ଦେଇଚି ଯେ ଚିନା ମଡେଲ୍‌ର ସଶସ୍ତ୍ର ପ୍ରତିରୋଧ ଭାରତ ସକାଶେ ଫଳପ୍ରସୂ ନୁହେଁ । ଦ୍ୟର୍ଥହୀନ ଭାଷାରେ ଅବଶ୍ୟ ଘୋଷଣାକରିନାହିଁ ଅସ୍ତ୍ରବର୍ଜନ । କିନ୍ତୁ ୧୯୯୫ରୁ ପ୍ରାୟ ପନ୍ଦରବର୍ଷ ଅତିବାହିତ ହୋଇଥିଲେ ସୁଦ୍ଧା ମାଓବାଦୀ କଣପାଇଁ ଅଭିନୟ କରିଚାଲିଚନ୍ତି ସେଇ ପୁରୁଣା ନାଟକ ? ଏ ହେଉଚି ସେଇ ମାନସିକତା, ଯେ ପାର୍ଟି ବାହାରେ ଯେତେଲୋକ, ବିଦ୍ୱାନ୍ ହୁଅନ୍ତୁ କି ଦୂରଦର୍ଶୀ, ବିବାକ କେବଳ ସନ୍ଦେହଭାଜନ ଗୁପ୍ତଶତ୍ରୁ; ତାଙ୍କ ସଂସ୍ପର୍ଶରୁ ସଂଗଠନକୁ ବଞ୍ଚାଇରଖିବା ସଂଗ୍ରାମୀ କର୍ତ୍ତବ୍ୟ ! ଅନ୍ୟଥା, କୋସମ୍ବି ଯୋଉ ହିଷ୍ଟ୍ରିୟଗ୍ରାଫି ଉପସ୍ଥାପନ କରିଚନ୍ତି, ସେ ବିଷୟରେ ବିତର୍କ ଚଳାଇଥାଆନ୍ତା ଅବିଭକ୍ତ କମିଉନିଷ୍ଟ୍ ପାର୍ଟି । ଆଜି ବି ସେ ପ୍ରସ୍ତାବ ତିଷ୍ଠିରହିଚି, ମାତ୍ର ଅଧଡଜନ ପାର୍ଟି ଭିତରୁ ଗୋଟାଏହେଲେ ପ୍ରତିକ୍ରିୟା ଜଣାଇବାକୁ ଅମଙ୍ଗ ।

ଦର୍ଶନବିଦ୍ୟାରେ ପରସ୍ପରବିରୋଧୀ ଦୁଇଟି ବିଚାର ଅବ୍ୟାବଧି ବଞ୍ଚିରହିଚି: ଗୋଟିଏ ହେଲା, ନିଖିଳ (ଇଉନିଭର୍ସାଲ୍) ବନାମ ନିର୍ଦ୍ଦିଷ୍ଟ (ପାର୍ଟିକୁଲାର୍); ଅନ୍ୟଟି, ପ୍ରକୃତ (ରିଆଲିଟି) ବନାମ ପ୍ରତୀୟମାନ (ଆପିଏରାନ୍ସ) । ରାଜନୀତିକ ଦଳ, ଗ୍ରାମ୍‌ସିଙ୍କ ବିବେଚନାରେ, ଗୋଟିଏ ଇଉନିଭର୍ସାଲ୍; କିନ୍ତୁ ତାର ପ୍ରବଣତା ହେଲା, ସାରା ସମାଜ (ଟୋଟାଲିଟି) ପ୍ରତିଫଳିତହେବ ଦୂରକଞ୍ଚୀ ଏକ ସମାଜଦର୍ଶନରେ; ଏବଂ ଦୂରକଞ୍ଚୀ ସେଇ ଭିସନ୍ ଉତ୍ସାରିତହେବ ଇତିହାସ ପ୍ରତି ସମାଜର 'ଇମ୍ୟାନେଣ୍ଟ୍ ଭିଉ' ସମୀକ୍ଷାରୁ । କୋସମ୍ବି ଉପସ୍ଥାପନକରିଚନ୍ତି ସେଇ ଇମ୍ୟାନେଣ୍ଟ୍ ଭିଉ; ମାର୍କ୍ସ ବଞ୍ଚିଥିଲେ, 'ଏସିଆଟିକ୍ ମୋଡ୍' ପ୍ରତୀତିକୁ ମଧ୍ୟ ସଂଶୋଧନ କରିଥାନ୍ତେ ହୁଏତ ଏଇ ହିଷ୍ଟ୍ରିଅଗ୍ରାଫି ଆଲୋକରେ । କାହିଁକିନା, ଭାରତୀୟ ପ୍ରାଚୀନ ସମାଜ ନିଶ୍ଚଳ ନଥିଲା ବ୍ରିଟିଶ୍ ଆଗମନ ପର୍ଯ୍ୟନ୍ତ । ଶ୍ରେଣୀ ଥିଲା, ଆଉ ଶ୍ରେଣୀବିଦ୍ୱେଷ ବି ରହିଥିଲା, କିନ୍ତୁ ବୈପରୀତ୍ୟଭଞ୍ଜନ ପାଇଁ ଦରକାରହୋଇନାହିଁ ଶ୍ରେଣୀସଂଗ୍ରାମ । ହୋଇନାହିଁ ବୋଲି, ବାମପନ୍ଥୀଙ୍କ ଭିତରେ ଆଜିପର୍ଯ୍ୟନ୍ତ ଆବିର୍ଭୂତ ହେଉନାହାଁନ୍ତି ଗ୍ରାମ୍‌ସି ଯାହାଙ୍କୁ ଆଖ୍ୟାଦେଇଚନ୍ତି 'ଅର୍ଗାନିକ୍

ଇଣ୍ଟେଲେକ୍‌ଚୁଆଲ୍‌' । ଅନଗ୍ରସର ବୁର୍ଜୋୟା ହିଁ ବିଦେଶରୁ ଯଥାପ୍ରାପ୍ତ 'ଭଇସ୍‌ଡମ୍‌' ଉଧାରଆଣି , ତିଆରି ଆଲୁଅରେ ଜାଳୁଚନ୍ତି କାଳ୍ପନିକ ବିପ୍ଳବର ମଶାଲ । କ୍ରୋଧବଶତଃ ଲେଖୁନାହିଁ, ଗଭୀର ଖେଦ ବାଧକରୁଚି ଲେଖିବାକୁ, କାହିଁକିନା, କ୍ୟାପିଟାଲିସ୍ମ ହାତଗୋଡ଼ ଗୋଟାଇ ବସିରହିବନାହିଁ; ବଞ୍ଚିତଶୋଷିତଙ୍କୁ ଯେମିତି ନିରସ୍ତକରିବାକୁ ଚେଷ୍ଟାକରିଚି, ପ୍ରତିରୋଧକୁ ସେମିତି ପାକୁଆ କରିଦେବାକୁ; ଏବଂ ନୂତନ ପ୍ରଯୁକ୍ତି ଓ ବିଜ୍ଞାନର ସୁଯୋଗନେଇ ବାରମ୍ବାର ପୂରଣକରିଦେଉଚି ପୁରୁଣା କ୍ଷତ ଆଉ କ୍ଷତି । ଏପରିକି, ଶ୍ରମଜୀବୀକୁ ମଧ୍ୟ ନିଜ ନୈତିକ ଅବସ୍ଥାନରୁ ଶିଖାଇପାରୁଚି କଠିନ ପରିଶ୍ରମର ପୁରସ୍କାର (କର୍ମସଂସ୍କୃତି) । ଫିନାନ୍ସ କ୍ୟାପିଟାଲ୍‌ ଭିତରେ ମଧ୍ୟ ସକାରାତ୍ମକ ପ୍ରବଣତାର ଘଟୁଚି ଆବିର୍ଭାବ, ଗ୍ଲୋବାଲାଇଜେସନ୍‌ ଯେହେତୁ ସମ୍ମୁଖୀନହେଉଚି ସଙ୍କଟ ; ଅର୍ଥାତ୍‌ ମାର୍କ୍ସଙ୍କ ପାଖରୁ ଶିକ୍ଷା ଗ୍ରହଣକରିବାକୁ ଧନତନ୍ତ୍ର ତଥାପି ଉତ୍ସୁକ । (ଫିନାନ୍ସ କ୍ୟାପିଟାଲ୍‌କୁ ମାର୍କ୍ସ ଆଖ୍ୟା ଦେଇଥିଲେ, capital without private property) । ସେହି ଉଦ୍ଧତ ପୁଞ୍ଜି ବାମପନ୍ଥୀଙ୍କ ନିଷ୍କ୍ରିୟତାର ସୁଯୋଗନେଇ ସମାଜତାନ୍ତ୍ରିକ ଆନ୍ଦୋଳନଗୁଡ଼ାକୁ ଘେରିପକାଉଚି ଜାଗାବରଜାଗା, ଆଉ ଅଜଗର ଭଳି କଣ୍ଟ୍ରାଡିକ୍ସନ୍‌ଗୁଡାକୁ ମୀମାଂସା ନକରି ଗିଳିପକାଉଚି ଆମୂଳଚୂଳ । ତେଣୁ ସାଂପ୍ରତିକ ବାମପନ୍ଥୀ ମୋବିଲାଇଜେସନ୍‌ ଗୁଡ଼ାକୁ ବାଧାଦେଲେ, ଯାହାକୁ ଡାୟଲେକଟିକ୍ସ କହୁଛୁ, ତା ପ୍ରତି କରାହେବ ଘୋର ଅବିଚାର । ସନ୍ଦେହ ନାହିଁ, ସେ ମୋବିଲାଇଜେସନ୍‌ ସକାଶେ ହିଂସା କି ଅହିଂସା ରଣକୌଶଳ ମାତ୍ର, ଭାବାଦର୍ଶ ନୁହେଁ । ଅର୍ଥାତ୍‌ ହିଂସାକୁ ପ୍ରତିରୋଧ ସକାଶେ ହିଂସାର ଉପଯୋଗ । କିନ୍ତୁ ଭାରତୀୟ ଦର୍ଶନ ପରମ୍ପରାରେ ହିଂସା-ଅହିଂସା ଜମାରୁ ବିପରୀତ ଯୁଗ୍ମପଦ ନୁହେଁ, ଯେପରି କୁରୁ-ପାଣ୍ଡବ ଯୁଦ୍ଧ କି ରାମ-ରାବଣ ଯୁଦ୍ଧକୁ ଶାସ୍ତ୍ରର ସ୍ୱୀକୃତି । ଅହିଂସା ମାନେ, ଆମ ଶାସ୍ତ୍ର କହୁଚି, ଆତ୍ମବତ୍‌ ମନ୍ୟତେ ଜଗତ୍‌ । ଅର୍ଥାତ୍‌ ନିଜ ପରିପଟରେ ଯେତେ ଜଡ଼ ଆଉ ଜୀବ, ବିବାକ ଯେହେତୁ ସୃଷ୍ଟିର ଅଂଶବିଶେଷ, ସବୁଯାକ ଚେତନାଯୁକ୍ତ, କୀଟପତଙ୍ଗଠାରୁ ଲତାଗୁଳ୍ମ କି ମାଟି-ପଥର, କେହିହେଲେ ନିଶ୍ଚେତନ ନୁହେଁ; ତେଣୁ ସେମାନଙ୍କ ସହିତ ଆତ୍ମ-ପର ପାର୍ଥକ୍ୟ ଅଧର୍ମ । ତା ମାନେ ନୁହେଁ ଯେ ମଶା କାମୁଡ଼ିଲେ, ତାକୁ ମାରିବନାହିଁ । ଇଂରେଜଙ୍କ ସାଙ୍ଗରେ ବଳରେ ପାରିବେନାହିଁ ବୋଲି ଗାନ୍ଧିଙ୍କର ଏଇ ବାଇନାରି ବା ବିପରୀତ ଯୁଗ୍ମପଦର ଭିଆଣ । ଆଉ ଅହିଂସାକୁ ଭାଲୋରାଇଜେସନ୍‌, ଅର୍ଥାତ୍‌ ମୂଲ୍ୟବୃଦ୍ଧି । ଅରବିନ୍ଦଙ୍କ ବିଚାରରେ କିନ୍ତୁ ଭୀରୁତା ।

□□□

# ଦର୍ପଣେ ବୃହନ୍ନଳା

ବିରାଟରଜାର ଅନ୍ତଃପୁରରେ, ପାଣ୍ଡବଙ୍କ ଅଜ୍ଞାତବାସ ପର୍ବରେ, ମହାବୀର ଅର୍ଜୁନ ହିଞ୍ଜଡ଼ା ସାଜି ରାଜକନ୍ୟାଙ୍କୁ ନାଚଗୀତ ଶିଖାଉଥିଲେ, ଏବଂ ଆତ୍ମପରିଚୟ ଗୋପନରଖିବାକୁ ନାଁନେଇଥିଲେ, ବୃହନ୍ନଳା । ବୃହନ୍ନଳା ଏଠି ଇଣ୍ଟେଲେକ୍‌ଚୁଆଲ୍‌ର ମେଟାଫର୍ ବା ରୂପକ । ଇଣ୍ଟେଲେକ୍‌ଚୁଆଲ୍‌କୁ 'ବୁଦ୍ଧିଜୀବୀ' କହୁନାହିଁ ଶବ୍ଦଟା ଭିତରେ ଯେହେତୁ ଅବଜ୍ଞା ଛପିରହିଚି; କିଏ କି ଉପାୟରେ ଜୀବିକା ନିର୍ବାହକରେ, ତଦନୁସାରେ ପରିଚୟ ଗଠନକରିବାକୁ ହେଲେ, ବୁଦ୍ଧଙ୍କୁ ଭିକ୍ଷାଜୀବୀ ଓ ଗାନ୍ଧିଙ୍କୁ ଚାନ୍ଦାଜୀବୀ କହିହେବ; ମାତ୍ର ସଂଭ୍ରମ ରହିବନାହିଁ କି ଶ୍ରଦ୍ଧା । ଯେପରି, ସାଂସ୍କୃତିକ ବିପ୍ଳବ ପର୍ବରେ ପ୍ରଜ୍ଞାକୁ ମାଓ ମନେକରିଚନ୍ତି ପ୍ରବଞ୍ଚନା କି ଆବର୍ଜନା; ସମ୍ଭବତଃ ବୁଦ୍ଧିଜୀବୀଙ୍କ ଭିତରେ ଅନ୍ତର୍ଗୂଢ଼ ଏଇ ବୃହନ୍ନଳାଙ୍କୁ ଚିହ୍ନିପାରିଥିଲେ । ମାତ୍ର ଏ ବୁଦ୍ଧିଜୀବୀଙ୍କ ଦର୍ପଣ କାଗଜରେ ତିଆରି, ନିଜ ମୁହଁ ନିଜେ ଦେଖିପାରନ୍ତିନାହିଁ; ବୃହନ୍ନଳା କିନ୍ତୁ ଛଦ୍ମବେଶୀ ବୋଲି ନିଜକୁ ଚିହ୍ନିପାରେ ପ୍ରତିଦିନ, କାହିଁକିନା, ରଜାଘର ଦର୍ପଣଟା କାଚରେ ତିଆରି । ଉପହାସ ମନେହୋଇପାରେ; ମାତ୍ର ସାଧାରଣ ଲୋକଙ୍କ ପାଖରୁ ବୁଦ୍ଧିଜୀବୀର ଦୂରତ୍ୱ ଯେହେତୁ ଅନତିକ୍ରମ୍ୟ, ସମାଜରେ ତାର ନିର୍ଦ୍ଦିଷ୍ଟ ଭୂମିକା ବିଷୟରେ ସ୍ଥିର ଅବବୋଧ ତିଆରିହେବା ସମ୍ଭବପର ନୁହେଁ । ବାଦବିବାଦ ଏଡ଼ାଇଯିବା ସକାଶେ ତେଣୁ 'ଇଣ୍ଟେଲେକ୍‌ଚୁଆଲ୍' ହିଁ ଲେଖିବି । ଇଣ୍ଟେଲେକ୍‌ଚୁଆଲ୍ କପାଳରେ କିନ୍ତୁ ଲାଞ୍ଛନା ଜୁଟିଥାଏ ସଚରାଚର, ଯେପରି ସୋକ୍ରଟିଜ୍‌ଙ୍କ ବିଷପାନ । ନିଜେ ଯା ଠିକ୍ ବୋଲି ବିବେଚନାକରେ, ତାର ଟେକରଖିବାକୁ ପ୍ରାଣଦଣ୍ଡକୁ ବି ମନେକରେ ତୁଚ୍ଛ । ଉପଲବ୍ଧି ସହିତ ଆପୋଷ କରିବାକୁ ରାଜି ନହେଲେ ଯାହାଙ୍କ ସ୍ୱାର୍ଥରେ ଆଘାତ ଲାଗିବ, ତାଙ୍କ ପାଖରୁ ପ୍ରତିଆକ୍ରମଣ ଆସିବା ଯେହେତୁ ଅସ୍ୱାଭାବିକ ନୁହେଁ, ଇଣ୍ଟେଲେକ୍‌ଚୁଆଲ୍ ସମ୍ଭାବ୍ୟ ପରିଣାମକୁ ବି ସ୍ୱୀକାର କରିନିଏ, ଯେପରି ଗାଲିଲେଓ । ଏଥିରୁ ଏଇ ସ୍ଥୂଳ ସତ୍ୟରେ ଉପନୀତହେବା ସମ୍ଭବ ଯେ ନିଜ ଚାରିପଟରେ ଦିନପରେ ଦିନ ଯା ଚାଲିଚି, ଯେମିତି ଚାଲୁଚି, ସେଗୁଡ଼ାକ ପ୍ରତି ଅତୃପ୍ତି ହିଁ ତାର ଚାଳିକାଶକ୍ତି । ହୁଏତ ଅଧିକାଂଶ ମଣିଷଙ୍କ ଭିତରେ ଜଳୁଚି ଅତୃପ୍ତିର ଏ ଅଗ୍ନିଶିଖା, ମାତ୍ର,

ଭଳିକାଶକ୍ତିରେ ରୂପାନ୍ତରିତ ହେଉନାହିଁ ଯେହେତୁ ବୃହନ୍ନଳାର ଛଦ୍ମବେଶ ମନେହେଉଚି ନିରାପଦ । କଥାଟା କେବଳ ବିଜ୍ଞଜନଙ୍କ ପ୍ରତି ପ୍ରଯୋଜ୍ୟ । ଦେଶର ଅଧିକାଂଶ ଲୋକ କିନ୍ତୁ ଅଜ୍ଞଜନ; ସେମାନଙ୍କ ମାନସିକ ଜଡ଼ତା ଦୂରକରିବା ଇଣ୍ଟେଲେକ୍‌ଚୁଆଲ୍‌ର ଅସଲ କାମ; *ବାଇବ୍‌ଲ* ତେଣୁ କହିଚି, The young men dream dreams and old men see visions। କିନ୍ତୁ ଆମ ସମାଜରେ ପ୍ରବୀଣଲୋକ ବି କୋଉହେଲେ 'ଭିସନ୍' ଦେଖିପାରିନ୍ତିନାହିଁ କାହିଁକି ? ହେଗ୍‌ଲ ତାଙ୍କ *ଦର୍ଶନର ଇତିହାସ* ରେ ଲେଖିଚନ୍ତି, ଭାରତବାସୀଙ୍କ ମନରେ ଦ୍ୱନ୍ଦ୍ୱଭାବ (ଆ୍ୟାଣ୍ଟିଥେସିସ୍) ସ୍ଥାନପାଇନାହିଁ ପୁନଃପୁନଃ ବୈଦେଶିକ ଶାସନାଧୀନ ହେବାସତ୍ତ୍ୱେ; ତେଣୁ, କୋଉହେଲେ ରାଜନୀତିକ ବିପ୍ଳବ ସାଧନକରି ପାରିନାହାଁନ୍ତି । ହେଗ୍‌ଲ ଲେଖିଥିଲେ ୧୮୧୭ରେ; ୧୮୫୭ରେ ସିପାହୀ କରିଚନ୍ତି ବିଦ୍ରୋହ । ପୂର୍ବଜନ୍ମ, କର୍ମଫଳ, ଭାଗ୍ୟ କି କିସ୍‌ମତ୍ ମନକୁ ତେଣୁ ପୁରାପୁରି ଖଞ୍ଜା କରିଦେଇନାହିଁ । ଇଣ୍ଟେଲେକ୍‌ଚୁଆଲ୍ ତାଙ୍କ ଆଗରେ କୋଉ ଭିସନ୍ ଉପସ୍ଥାପନ କରନ୍ତୁ କି ନକରନ୍ତୁ, ଲୋକ ସ୍ୱପ୍ନଦେଖୁଚନ୍ତି ପରିବର୍ତ୍ତନର । ବୃହନ୍ନଳା ବି ଦର୍ପଣରେ ମୁହଁଦେଖି ଭାଳୁଚି ଅଜ୍ଞାତବାସର ଦିନ କେବେ ଶେଷହେବ !

କିନ୍ତୁ ଓଡ଼ିଆଶବ୍ଦ 'ବୁଦ୍ଧିଜୀବୀ' ଦ୍ୱାରା ସୋକ୍ରତିଜ୍ କି ଗାଲିଲେଓଙ୍କୁ ବୁଝୁନା; ମନେପଡ଼ନ୍ତି ଲେଖକ କବି ବିଜ୍ଞାନୀ ଅଧ୍ୟାପକ ସମ୍ପାଦିକ ଓକିଲ ଚିତ୍ରକର, ସଂଗୀତଜ୍ଞ ଇତ୍ୟାଦି ପେସାଜୀବୀ; ନହେଲେ, ବୃହତ୍ ହାକିମ ବା ରାଜନେତା । କାହିଁକିନା, ବୁଦ୍ଧିର ପରିମାଣ ଅନ୍ୟମାନଙ୍କଠାରୁ ଅଧିକ ନହେଲେ ଏ କାମଗୁଡ଼ାକୁ କ୍ରମାଗତ କରିପାରିବା ଅସାଧ୍ୟସାଧନ । ଧାରଣାଟା ଶତକଡ଼ା ଶହେ ଭୁଲ୍ ନୁହେଁ, କାହିଁକିନା, ଯଥେଷ୍ଟ ଜ୍ଞାନଗରିମା ଅଧ୍ୟବସାୟ ଓ ଅନୁଶୀଳନ ବିନା ପ୍ରତିଯୋଗିତାରେ ପାରିଉଠିବା ଦୁଃସାଧ୍ୟ । ସେଇ ଅର୍ଥରେ ବୁଦ୍ଧି ମଧ୍ୟ ଚଳାଖି କି ଚତୁର୍ଯ୍ୟ । ଏବଂ ସେଇ ବୁଦ୍ଧି ବଳରେ ଯଦି କେହି ଜୀବନରେ ଉନ୍ନତିକରେ, ସମାଜ ତାକୁ ପ୍ରଶଂସାକରେ, ସମୀହ କରେନା । ଅର୍ଥାତ୍, ପ୍ରତିଷ୍ଠା ବା ସାଫଲ୍ୟ କାହାକୁ ଇଣ୍ଟେଲେକ୍‌ଚୁଆଲ୍ ପଦବାଚ୍ୟ କରିପାରେନା । 'ଆପଣା ସୃଷ୍ଟିର ଜାଲେ ମାୟାମୁଗ୍ଧ ଉର୍ଣ୍ଣନାଭ ସମ' ଏଇ ଲୋକଙ୍କୁ ପଲ୍ ବାରନ୍, ସେଥିପାଇଁ, ନାଁଦେଇଚନ୍ତି 'ମେଧାକର୍ମୀ' । କାହିଁକିନା, ପେସାଗତ ନୈପୁଣ୍ୟର କ୍ଷୁଦ୍ରଗଣ୍ଡି ଉର୍ଦ୍ଧ୍ୱରେ ଅନ୍ୟ କୌଣସି ଦାୟବଦ୍ଧତା ବିଷୟବାସନାର ତାମସିକତାକୁ ଅତିକ୍ରମକରିବାକୁ ଦିଏନା । ଏମାନେ ସାଧାରଣତଃ ସହରବାସୀ ମଧ୍ୟବିତ୍ତ । ଏବଂ ପ୍ରତିଷ୍ଠାନ, ସରକାର କିମ୍ବା କୌଣସି ରାଜନୀତିକ ଦଳର ଅନୁଗତ । ଅର୍ଥାତ୍ ନିରପେକ୍ଷତା ଓ ମନସ୍ୱୀତାର ଭାଣ କଲେସୁଦ୍ଧା, କଣ କହିଲେ କି ଲେଖିଲେ ସୁବିଧାହେବ, ସେହି ଅନୁସାରେ ଚଳାଫେରା କରିଥାଆନ୍ତି । ପ୍ରତିଷ୍ଠାନର ଏଇ

ଅନୁଚରଙ୍କୁ ଲକ୍ଷ୍ୟକରି କେହିଜଣେ ଲେଖିଚନ୍ତି, 'ଲୁସିଫର୍ ହିଁ ଜଗତର ଆଦ୍ୟ ବୁଦ୍ଧିଜୀବୀ' ! ଆଉଜଣେ ଗାନ୍ଧିବାଦୀ ଲୋକସେବକ ଲେଖିଚନ୍ତି, 'ଏମାନେ ପ୍ରାୟ ସମସ୍ତେ cynic, ଘୋର ଆତ୍ମକେନ୍ଦ୍ରିକ, ମଣିଷ ଉପରେ ବିଶ୍ୱାସନାହିଁ, ସେଥିପାଇଁ ଆତ୍ମବିଶ୍ୱାସ ବି ଢ଼େର୍ କମ୍, ନିଜ ଜୀବନର ସାଧନାକ୍ଷେତ୍ରରେ କ୍ଲାନ୍ତ ଉଦାସୀନ, ବିଶେଷତଃ ଲେଖାପଢ଼ା କି ଗବେଷଣା ଯଦି ସାଧନାର ବିଷୟ; ଏପରିକି, ସାମାଜିକ ଦାୟଦାୟିତ୍ୱ ବହିର୍ଭୂତ ଏକାନ୍ତ ବ୍ୟକ୍ତିଗତ ଶିଳ୍ପ ସାହିତ୍ୟ ଗବେଷଣା ସମ୍ବନ୍ଧରେ ମଧ୍ୟ ଅନାଗ୍ରହୀ' । ଆହୁରି ଅନେକ ତୀକ୍ଷ୍ଣ କଥାବାର୍ତ୍ତା ଉଦ୍ଧାର କରାଯାଇପାରେ, ମାତ୍ର ବିଦ୍ୟାର ଦାସତ୍ୱ କି ପାଣ୍ଡିତ୍ୟର ଅନୁଚରବୃତ୍ତି ଦେଶଟାକୁ ଛାଇପକାଇଚି ଭାବିଲେ 'ବୁଦ୍ଧିଜୀବୀ' ପ୍ରତି ଅବିଚାର କରାହେବ । କାହିଁକିନା, ଏକ୍ଷଣି ତ ବହୁଜାତିକ ବାଣିଜ୍ୟସଂସ୍ଥା, ରାଜନୀତି ଠାରୁ ଆହୁରିବଡ଼ ଜାହାଜ ଆଣି ବାଛିବାଛି ମେଧାବୀଙ୍କୁ ଛାଙ୍କିନେଉଚି; ତଥାପି କ୍ୟାପିଟାଲ୍‌ର ସ୍ୱର୍ଗପୁରୀ ଆମେରିକା କି ଜାପାନରେ ସୁଦ୍ଧା ମଣିଷର ଗୁଣବତ୍ତାକୁ ପୁରାପୁରି କିଣାଯାଇ ପାରୁନାହିଁ । କାହିଁକିନା, ବିଦ୍ୟାର ସହଜାତ ଧର୍ମ ମୁକ୍ତିପ୍ରବଣତା; ଭୟଶୂନ୍ୟ ଚିତ୍ତ, ଜ୍ଞାନ ପାଇଁ ଅନନ୍ତ ପିପାସା, ଦୁର୍ମର ଉଚ୍ଚଶିର । ନିଶ୍ଚୟ ଦୁର୍ଲଭ; କିନ୍ତୁ ଏଇ ଦୁର୍ଦ୍ଦିନରେ ବି ଏକେବାରେ ବିଲୁପ୍ତ ହୋଇଯାଇନାହିଁ । ସେଇ ମଣିଷଗୁଡ଼ାଙ୍କ ମର୍ଯ୍ୟାଦାରକ୍ଷା ସକାଶେ 'ବୁଦ୍ଧିଜୀବୀ' ଶବ୍ଦଟିର ଅର୍ଥ ନିର୍ଦ୍ଦିଷ୍ଟକରାଯିବା ଦରକାର, ଏମାନଙ୍କୁ ଆଉ ଯୋଉ ନାଁରେ ଚିହ୍ନଟକରାଯାଉ, 'ବୁଦ୍ଧିଜୀବୀ' ନକହିବା ବୁଦ୍ଧିମାନର କାମ ।

ମାର୍କ୍ସ ତ ନିର୍ବିତ୍ତର ଏକନାୟକତ୍ୱରେ ବିଶ୍ୱାସୀ; ଇଣ୍ଟେଲେକ୍‌ଚୁଆଲ୍ ସେଠି କରିବ କଣ ? ପ୍ଲାଟୋ ଅନ୍ତତଃ ଫିଲଜଫର୍-କିଙ୍ଗ୍ ପ୍ରସ୍ତାବ କରିଛନ୍ତି; ମାର୍କ୍ସଙ୍କ 'କିଙ୍ଗ୍' ତ ସ୍ୱୟଂ ପ୍ରଲେତାରିଏତ୍, କାହିଁକି ମାନିବ ଇଣ୍ଟେଲେକ୍‌ଚୁଆଲ୍‌କୁ ? ପ୍ୟାରିସ୍ କମିଉନ୍ ଅଭିଜ୍ଞତାରୁ ଦେଖାଗଲା, ଭାବାଦର୍ଶ ପ୍ରେରଣାରେ ବୁର୍ଜୋୟାଶ୍ରେଣୀରୁ ଆସିଥିବା ମେଧାବୀ ମଧ୍ୟ ହୋଇପାରିବ ଶ୍ରମଜୀବୀର ଆତ୍ମୀୟ; ମାତ୍ର ନିର୍ବିତ୍ତର ଶ୍ରେଣୀମୁକ୍ତି ତା ନିଜ ଚେଷ୍ଟାରେ ହିଁ ସମ୍ଭବପର; ଖାଲି ପ୍ରାଥମିକ ଅବସ୍ଥାରେ ହିତବ୍ରତୀ ବୁର୍ଜୋୟାର ଦାକ୍ଷିଣ୍ୟ ଦରକାରକରିବ ନିର୍ବିତ୍ତ । ମାର୍କ୍ସଙ୍କ ଏ 'ଭିସନ୍' ମନେହୋଇନାହିଁ ଲେନିନ୍‌ଙ୍କୁ କାର୍ଯ୍ୟକର, ଜୋର୍‌ଦେଇଚନ୍ତି ସଚେତନ ବୁଦ୍ଧିଜୀବୀର ଦାୟିତ୍ୱ ଉପରେ । ବାହାରୁ ଶ୍ରମିକଶ୍ରେଣୀକୁ ବିପ୍ଳବଚୈତନ୍ୟରେ ଉଦ୍‌ବୁଦ୍ଧକରିବା ସେମାନଙ୍କ କର୍ତ୍ତବ୍ୟ । ମାତ୍ର ଶ୍ରମିକର ଜୀବନର ଅଭିଜ୍ଞତା କଣ ବୁଦ୍ଧିଜୀବୀର ଅଭିଜ୍ଞତା ସାଙ୍ଗରେ ସମାନ ? କଳ୍ପନାକରାଯାଇଚି ମଧ୍ୟସ୍ଥତା ବା ମିଡିଏସନ୍ । ଅର୍ଥାତ୍, ଶ୍ରମଜୀବୀ ଯେମିତି ବୁଦ୍ଧିଜୀବୀ ପାଖରୁ ଶିଖିବ, ବୁଦ୍ଧିଜୀବୀ ସେମିତି ଶିଖିବ ଶ୍ରମଜୀବୀ ପାଖରୁ, କାହିଁକିନା, ଜନ୍ମସୂତ୍ରରେ

ହେଉ କି ବଡ଼ହୋଇଉଠିବା ପ୍ରକ୍ରିୟାରେ ହେଉ, ଉଭୟଙ୍କ ମଧ୍ୟରେ ଭାବାଦର୍ଶଗତ ବ୍ୟବଧାନ ଅବଧାରିତ । ତେବେ, ଖାଲି ବିଦ୍ୟାବୁଦ୍ଧି କି ଆତ୍ମତ୍ୟାଗ ଦ୍ୱାରା ସାମାଜିକ ଅସ୍ତିତ୍ୱର ନିର୍ଦ୍ଦିଷ୍ଟତାକୁ ଅତିକ୍ରମକରିହେବ ବୋଲି ମନେହୁଏନା; ଜୀବନଯାତ୍ରା ଓ ଚୈତନ୍ୟ ଯେହେତୁ ଓତପ୍ରୋତ, ଆତ୍ମସଚେତନ ଭାବେ ବୁଦ୍ଧିଜୀବୀ ଯଦି ନିଜକୁ ଭାଙ୍ଗିପକାଇ ପୁଣି ପୁନର୍ଗଠିତ କରିବାକୁ ତତ୍ପର ନହୁଏ, ଶୋଷିତ ଶ୍ରେଣୀକୁ ଜ୍ଞାନ କି ଚେତନା, କିଛିହେଲେ ଦେଇପାରିବନାହିଁ । ଯାକୁ ହିଁ ମାର୍କ୍ସ କହିଚନ୍ତି, the educator must be educated । କିନ୍ତୁ ବୁଦ୍ଧିବିଦ୍ୟା ମଣିଷକୁ ଅହଂକାରୀ କରେ; ଅହଂକାରକୁ କେମିତି ଜୟକରିହେବ, ମାର୍କ୍ସ କି ଲେନିନ୍ କିଛି ହେଲେ କହିଲେନାହିଁ । ଫଳରେ, ନିର୍ବିତ୍ତକୁ ଏକନାୟକ କରିବାକୁ ଯାଇ ବୁଦ୍ଧିଜୀବୀ ହୋଇଗଲା ଅଦୃଶ୍ୟ, ତାର ଆତ୍ମପରିଚୟ ପୋଛିହୋଇଗଲା ସ୍କିମ୍ ଭିତରୁ । ମାତ୍ର କାର୍ଯ୍ୟକ୍ଷେତ୍ରରେ ଯେହେତୁ ପାର୍ଟି ଓହ୍ଲାଇଚି ବୁଦ୍ଧିଜୀବୀ ଭୂମିକାକୁ, ଫଳ ହୋଇଚି ବିପରୀତ; ଗଢ଼ିଉଠିଚି ପାର୍ଟିରୂପକ ବିଶାଳ ଅମଲାତନ୍ତ୍ର । ଇଣ୍ଟେଲେକ୍‌ଚୁଆଲ୍‌ର ଜାଗା ଦଖଲକରିଚି ଚଲାଖି ।

ମାତ୍ର ଇଣ୍ଟେଲେକ୍‌ଚୁଆଲ୍ (ପ୍ଲାଟୋଙ୍କ ପରିଭାଷାରେ, ଫିଲଜଫର୍) ଦୃଶ୍ୟମାନ ହେଉ କି ନେପଥ୍ୟରେ ଥାଉ, ଶୋଷିତଶ୍ରେଣୀକୁ କି ଦୀକ୍ଷାରେ କରିବ ଦୀକ୍ଷିତ ? କାହିଁକିନା, ନିର୍ବିତ୍ତର ଏକନାୟକତ୍ୱ କୋଉ କର୍ମଧାରା ନୁହେଁ, ଦର୍ଶନପ୍ରସୂତ ପ୍ରତ୍ୟୟ ମାତ୍ର । ଆଜି ଯେତେବେଳେ ବିଶ୍ୱାୟନର ପ୍ରତିରୋଧ ଲୋକଙ୍କ ବାଞ୍ଛିତ ଲକ୍ଷ୍ୟ, ଏବଂ ସେ ଲକ୍ଷ୍ୟରେ ପହଞ୍ଚିବା ବାଟରେ ପ୍ରତିବନ୍ଧକ ହିମାଳୟ ସଦୃଶ, କି ସମାଧାନ ପ୍ରତ୍ୟାଶା କରାଯାଇପାରେ ଇଣ୍ଟେଲେକ୍‌ଚୁଆଲ୍‌ଙ୍କ ପାଖରୁ ? କ୍ୟାପିଟାଲିସ୍ଟର ନିଗେସନ୍ ? କାହିଁକିନା, କ୍ୟାପିଟାଲିସ୍ମ ନିର୍ଦ୍ଦିଷ୍ଟ ଶ୍ରେଣୀଗତ ବିରୁଦ୍ଧରେ ନୁହେଁ, ସମଗ୍ର ମାନବସତ୍ତା ପାଇଁ ଅନୈତିକ, all that is solid melts into air । ମାତ୍ର କଠିନକୁ ତରଳକରିବା କାମ ଆରମ୍ଭହେଲାଣି କୋଉକାଳରୁ, ମାର୍କ୍ସଙ୍କ ଆବିର୍ଭାବର ଗୋଟାଏ ଯୁଗ ଆଗରୁ, ଯେତେବେଳେ କଲମ୍ବସ ଯାଇଁ ହାଣିପକାଇଚି ଶହଶହ ରେଡ୍‌ଇଣ୍ଡିଆନ୍, ବୋହିଆଣିଚି ଖଣିରୁ ଖୋଳି ସୁନା; କ୍ୟାପ୍ଟେନ୍ କୁକ୍ ବି ଏକାକଥା କରିଚି ଅଷ୍ଟ୍ରେଲିଆରେ; ଆଲେକ୍‌ଜାଣ୍ଡ୍ରିଆର ବିଶ୍ୱବିଖ୍ୟାତ ଲାଇବ୍ରେରିକୁ ପୋଡ଼ିଦେଇଚନ୍ତି ମୁସଲ୍‌ମାନ୍; ନାଳନ୍ଦାର ବିଶ୍ୱବିଦ୍ୟାଳୟକୁ ଧୂଳିସାତ୍ କରିଦେଇଚି ବକ୍ତିଆର୍ ଖିଲ୍‌ଜୀ । କଣ କରୁଥିଲା ଇଣ୍ଟେଲେକ୍‌ଚୁଆଲ୍ ସେତେବେଳେ ? କି ପରାମର୍ଶ ଦେଇଥିଲା ରବର୍ଟ କ୍ଲାଇଭ୍‌କୁ ପଲାସୀର ରଣକ୍ଷେତ୍ରରେ ? ସ୍ମର୍ତ୍ତବ୍ୟ ତେଣୁ ମାର୍କ୍ସଙ୍କ ଜନ୍ମର ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଯା ଲେଖିଯାଇଚନ୍ତି ଫ୍ରେଡ୍‌ରିଖ୍ ହେନ୍‌ରିଖ୍ ଜାକବି : Philosophy cannot produce its own subject matter; that always lies in present

or past history . We construe philosophy badly, when we construe it, if that past contains which we are unable to repeat. We are able to pronounce reliable judgment only on that which lies immediately before us.... people's behaviour should not be deriveed from their philosophy, rather their philosophy should be derived from their behaviour. their history does not flow from their way of thinking, but their thinking flows from their history । ଇଣ୍ଟେଲେକ୍‌ଚୁଆଲ୍ ଯଦି ସତକୁସତ ଆତ୍ମରକ୍ଷାପ୍ରବଣ ନହୁଏ, ଜଗତ୍‌ଟାକୁ ଦେଖିପାରେନା ଖାଲି ଅଭିଯୁକ୍ତ ଓ ଅଭିଯୋଗକାରୀଙ୍କ ଦ୍ୱାରା ଭର୍ତ୍ତି; ଚିରନ୍ତନ କିଛି ମୂଲ୍ୟମାନ ତାକୁ ରଖିବାକୁ ପଡ଼େ ଜୟପରାଜୟ ଉର୍ଦ୍ଧ୍ୱରେ । ନିଜର ଲାଭ ହେଉ, କି କ୍ଷତି ହେଉ । ଅର୍ଥାତ୍, ଶିକ୍ଷକହେବା ଏକ ନୈତିକ ଦାୟିତ୍ୱ, ଏବଂ ସେଥିପାଇଁ, ପାର୍ଟି ସ୍ଲୋଗାନ୍‌କୁ ନିର୍ବିଚାରରେ ପୁନରାବୃତ୍ତି ଇଣ୍ଟେଲେକ୍‌ଚୁଆଲ୍ ପକ୍ଷରେ ଆତ୍ମଖଣ୍ଡନ । ଯଦି ନିର୍ବିତର ଶିକ୍ଷକ ହେବାକୁ ହୁଏ, ତେବେ ଖାଲି ମାର୍କ୍ସବାଦ ନୁହେଁ, ସତ୍ୟ ବୋଲି ନିଜ ଜୀବନରେ ଯା ଉପଲବ୍ଧିକରିଚି, ସେକଥା ବି କହିବାକୁ ଭୁଲିଯିବନାହିଁ ମାର୍କ୍ସଚିନ୍ତା ପ୍ରେକ୍ଷିତରେ । କହିବାକୁ ଭୁଲିଯିବନାହିଁ, ଚେତନା ସ୍ଥାନାନ୍ତରଯୋଗ୍ୟ ବସ୍ତୁ ନୁହେଁ, ଦ୍ୱାନ୍ଦ୍ୱିକ ପ୍ରକ୍ରିୟାରେ ଅର୍ଜନକରିବାକୁ ପଡ଼େ ସାରାଜୀବନ । ଶିକ୍ଷକ ଭୂମିକାରେ ନିଜେ ବ୍ୟକ୍ତିବିଶେଷ ମାତ୍ର; ମଣିଷ ଭାବରେ ସାର୍ଥକହେବାକୁ ସମଗ୍ର ବିଶ୍ୱର ସମୁଦାୟ ସମସ୍ୟାରେ ଉଦ୍‌ବିଗ୍ନ ହେବାକୁ ପଡ଼େ; ଅନାଗତ ପ୍ରଜନ୍ମର ଭବିଷ୍ୟତ ତାକୁ ବ୍ୟାକୁଳ କରେ; ସେଥିପାଇଁ, ସମାଜରୂପାନ୍ତର କାମରେ ଅଗ୍ରଚାରୀ ହେବାକୁ ଚେଷ୍ଟାକରେ ମାତ୍ର; ମିଥ୍ୟା ଅକଲ୍ୟାଣ ଅଶୁଭ ବିରୋଧରେ ପ୍ରତିବାଦ କରିନପାରିଲେ ବିବେକ ପାଖରେ ମନେହୁଏ ନିଜକୁ ଅପରାଧୀ । ଯେପରି, କୃଷ୍ଣକାୟ କବି ବେନ୍‌ଜାମିନ୍ ଜେଫାନିଆ ପ୍ରତ୍ୟାଖ୍ୟାନ କରିଥିଲେ ଅର୍ଡର୍ ଅବ୍ ବ୍ରିଟିଶ୍ ଏମ୍ପାୟାର୍ ଖିତାବ୍: ଯେତେବେଳେ 'ଏମ୍ପାୟାର୍' ଶବ୍ଦଟା କାନରେ ବାଜେ, କ୍ରୋଧରେ ଉତ୍ତପ୍ତହୁଏ ଦେହମନ, ସ୍ମରଣ କରାଇଦିଏ ଦାସତ୍ୱ ଆଉ ହଜାରବର୍ଷର ଅତ୍ୟାଚାର, ସ୍ମରଣ କରାଇଦିଏ କି ଭାବରେ ଆମ ପିତାମହୀମାନେ ହୋଇଥିଲେ ଧର୍ଷିତା, କି ଭାବରେ ଚାବୁକ ପ୍ରହାରରେ ପିତାମହମାନଙ୍କ ପିଠି ଫାଟିଯାଇଥିଲା ଫଡ଼ାଫଡ଼ା । ରମାଁ ରଲାଁ ମଧ୍ୟ ବର୍ଜନକରିଥିଲେ ଜର୍ମାନୀର ଗ୍ୟୋୟେଟେ ପୁରସ୍କାର ୧୯୩୩ରେ, ତାଙ୍କ ପ୍ରତିବାଦୀ ଶିଳ୍ପୀସତ୍ତା ନତ୍‌ସୀ ସଂସ୍ରବରେ କଳୁଷିତହେବ, ଏଇ ଆଶଙ୍କାରେ । ଏବଂ ସ୍ୱଦେଶର ଅପରାପର ଶିଳ୍ପୀଙ୍କ ସ୍ଖଳନ ସଂପର୍କରେ ସଚେତନଥିଲେ ବୋଲି, ବନ୍ଧୁଙ୍କୁ ଲେଖିଥିଲେ, 'ବୁଦ୍ଧିଜୀବୀଗୁଡ଼ାକ ପ୍ରକୃତରେ ସୁନାଶିକୁଳିରେ ବନ୍ଧାହୋଇଥିବା ସରକାରୀ କୁକୁର' । ନିଜଦେଶ ଆଡ଼କୁ

ରହିଁଲେ ଆମ ମୁଣ୍ଡ କିନ୍ତୁ ଲଜ୍ଜାରେ ନତହୋଇଯାଏ, ଉପରକୁ ଉଠାଇବାକୁ ସାହାସ କୁଳାଏନା । ରଲାଁ ଲେଖିଦେଲେ ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ପୋଷାକୁକୁର; ସେଇ କଥାଟାକୁ ଲେଖିବାବେଳକୁ ଆମକୁ ଖୋଜିବାକୁ ପଡୁଚି *ମହାଭାରତ* ରୁ ଦାଇକା: ବୃହନ୍ନଳା ! ଏଇ ଭୀରୁତା କିନ୍ତୁ ବ୍ୟକ୍ତିବିଶେଷର ସ୍ଖଳନ ନୁହେଁ; ମଧ୍ୟବିତ୍ତର ଉତ୍ତରାଧିକାର ।

ଆମ ଦେଶର ମଧ୍ୟବିତ୍ତ ବିଶେଷ କୋଉ ଅର୍ଥନୀତିକ ଶ୍ରେଣୀ ନୁହେଁ; ତାକୁ ଚିହ୍ନଟକରିବାକୁ ହେଲେ ଦେଖିବାକୁ ହେବ ତାର ମର୍ଯ୍ୟାଦାବୋଧର ଧରଣ, କ୍ରମ ଓ ଆଡ଼ମ୍ବର; ଏବଂ ସେଇ ସୂତ୍ରରେ, ସମାଜର ଅନ୍ୟାନ୍ୟ ଲୋକଙ୍କ ପାଖରୁ ଦୂରତ୍ୱ । ମଧ୍ୟବିତ୍ତତା, ସେଥିପାଇଁ, ବିଶିଷ୍ଟ ଏକ ମାନସିକ ବିଭାବ । ଇଉରୋପର ବୁର୍ଜୋୟା କିନ୍ତୁ ସୃଷ୍ଟିଶୀଳ ଶ୍ରେଣୀ; ସାମାଜିକ ବ୍ୟବଧାନକୁ ପୁଞ୍ଜିକରି ଗଢ଼ିଉଠିଥିବା ଭାରତୀୟ ମଧ୍ୟବିତ୍ତ ତାର ସମାନ୍ତରାଳ ବା ସମସ୍ୱଭାବ ନୁହେଁ, ଯଦିଓ ଦେଶର ଅଧିକାଂଶ ବିପ୍ଳବୀ, ବିଜ୍ଞାନୀ, କବି, ଚିକିତ୍ସକ, ପ୍ରଯୁକ୍ତିବିଦ୍, ଶିକ୍ଷକ ଓ ସାମ୍ବାଦିକ ମଧ୍ୟବିତ୍ତର ହିଁ ଅବତଂଶ । ହେଲେସୁଦ୍ଧା, ବିପୁଳାୟତନ ଜନସମାଜରେ ଏମାନେ ନିର୍ଜନ ନିରୁପଦ୍ରବ ଦ୍ୱୀପ ନୁହେଁ; ରାଷ୍ଟ୍ର ଓ ଅର୍ଥନୀତିର ସଂଗଠନ ଯଦିଓ ଏମାନଙ୍କୁ ନିଃସଙ୍ଗ କରିଦେଉଛି; ଅର୍ଥାତ୍, ରାଜନୀତି କି ଅର୍ଥନୀତି ଅସ୍ଥିର ହେଲେସୁଦ୍ଧା ତଜ୍ଜନିତ ଦୋଦୁଲ୍ୟମାନତା ଏମାନଙ୍କ ଚେତନାକୁ ଗଭୀରଭାବେ ସ୍ପର୍ଶକରିପାରେନା, ଶିକ୍ଷିତ ମଧ୍ୟବିତ୍ତ ଯେହେତୁ, ନଗରନିର୍ଭର ପେସାଜୀବୀ । ସ୍ପର୍ଶକରିପାରେନା ବୋଲି, ଏମାନଙ୍କ ସାଂସ୍କୃତିକ ସଂକଟ ମଧ୍ୟ ସର୍ବଜନ ଦୃଷ୍ଟିଗ୍ରାହ୍ୟ ନୁହେଁ; ମାତ୍ର ରାଷ୍ଟ୍ର କି ଅର୍ଥନୀତିର ସଙ୍କଟମୋଚନ ସାଂସ୍କୃତିକ ସଂକଟମୋଚନ ଅପେକ୍ଷା ସହଜତର, ସାଂସ୍କୃତିକ ସଂକଟର ପ୍ରଭାବ ଯେହେତୁ ଆପେକ୍ଷିକଭାବେ ଦୂରବଗାହ । ଚରିତ୍ରବୈଶିଷ୍ଟ୍ୟ ତେଣୁ ସହଜରେ ଆଖିରେ ପଡ଼େନା; ପଡ଼ିବ, ବୈଶିଷ୍ଟ୍ୟକୁ ଯଦି ଅବକ୍ଷୟ ବୋଲି ଚିହ୍ନିହୁଏ । ଯେପରି, ଅର୍ଜୁନର ବୃହନ୍ନଳା ଭୂମିକାକୁ ଅଧଃପତନ । ଅର୍ଜୁନ ଯେମିତି ସେକାଳର ଶାସକଶ୍ରେଣୀର ପ୍ରତିଭୂ, ସାଂପ୍ରତିକ କାଳର ତଥାକଥିତ ବୁଦ୍ଧିଜୀବୀ (ମଧ୍ୟବିତ୍ତ) ମଧ୍ୟ ଶାସକଶ୍ରେଣୀରେ ଅନ୍ତର୍ଭୁକ୍ତ, ଯେପରି ଦେଖାଯାଇଚି ଇନ୍ଦିରା ଗାନ୍ଧିଙ୍କ ଇମର୍ଜେନ୍ସୀ ଅମଳରେ । ଭାରତରେ ଶିକ୍ଷିତ ମଧ୍ୟବିତ୍ତ, ମତାନ୍ତରେ ବୁଦ୍ଧିଜୀବୀ (ରାମମୋହନ ରାୟଙ୍କ ପାଖରୁ ଜବାହାର୍‌ଲାଲ୍ ନେହରୁଙ୍କ ପର୍ଯ୍ୟନ୍ତ) ଦେଶର ସାଧାରଣଲୋକଙ୍କ ଆସ୍ଥା ଅର୍ଜନ କରିପାରିନାହିଁ; ପାରିନାହିଁ ବୋଲି, ତାଙ୍କ ଆଧିପତ୍ୟ ପ୍ରତି ଲୋକଙ୍କ ସମ୍ମତିନାହିଁ; ସମ୍ମତିନାହିଁ ବୋଲି, ଲୋକଙ୍କ ଉପରେ ଦମନନୀତି ପ୍ରୟୋଗକରି ଶାସକଶ୍ରେଣୀ ନିଜ ଟେକରଖିଚି । ସେଇ ଶ୍ରେଣୀର ସ୍ତାବକ / ଅନୁଗତ / ଅନ୍ତର୍ଗତ ମନସ୍ୱୀଙ୍କୁ ରଲାଁ ନାମିତ କରିଚନ୍ତି ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର କୁକୁର । ଦମନ ଦ୍ୱାରା ସମ୍ମତିଆଦାୟ, 'ସଂସ୍କୃତି' ପଦବାଚ୍ୟ

ନୁହେଁ , ବିଶେଷତଃ ଯେହେତୁ ଜନସାଧାରଣ ଯୋଉ ଚେତନାର ଧାରକ / ବାହକ, ତା ସ୍ୱାୟତ୍ତ ଓ ସ୍ୱଶାସିତ; ସେଥିରେ ବାଧବାଧକତାର ଜାଗାନାହିଁ । ସ୍ୱଶାସିତ ସେଇ ଚେତନାକୁ, ଇତିହାସରୁ ଦିଶୁଚି, ଦମନନୀତି ନିଷ୍କ୍ରିୟ କରିଦେଇ ପାରେନା; ପାରେନା ବୋଲି, ଗଣଆନ୍ଦୋଳନରେ ଲୋକ ଯେତେବେଳେ ସାମିଲ୍‌ହୋଇଚନ୍ତି, ଆପଣା ଗରଜରେ ବିପଦକୁ ଖାତିରନକରି ଜମାୟତ୍ ତିଆରିକରିଚନ୍ତି ଏଲିଟ୍ ବା ବୁଦ୍ଧିଜୀବୀଙ୍କ ସମର୍ଥନ କି ସହଯୋଗ ଛଡ଼ା । ଏଲିଟ୍‌ଙ୍କ ରାଜନୀତି ଓ ଚଷାମୂଲିଆଙ୍କ ରାଜନୀତି ଭିତରେ ସେଥିପାଇଁ ଯୋଜନ ଯୋଜନ ଦୂରତ୍ୱ । ଖଟିଖିଆ ଲୋକ ଜାଣନ୍ତି, ବାବୁମାନଙ୍କୁ ସିନା କିଛି ଦେବାକୁ ପଡ଼ିବ, ତାଙ୍କ ପାଖରୁ ଆଦେଶ କି ଉପଦେଶ ଛଡ଼ା ମିଳିବା ଭଳି କିଛିହେଲେ ନାହିଁ ।

କଥାବଢ଼ାଇ ଲାଭନାହିଁ; ଏଇ ମଧ୍ୟବିତ୍ତ ଏଲିଟ୍ ସିପାହୀବିଦ୍ରୋହ ପରବର୍ତ୍ତୀ ଭାରତକୁ ବ୍ରିଟିଶ୍ ଔପନିଶିକତାର ଏକାନ୍ତ ଉପଢୌକନ । ୧୮୫୭ ବିଦ୍ରୋହ ଇଂରେଜ୍ ଦମନକରିଚି ନୃଶଂସ ପ୍ରତିଶୋଧରେ ଉନ୍ମତ୍ତହୋଇ; ବୁଝିପାରିଚି ଇଂରେଜ୍ ଆଧିପତ୍ୟ ପ୍ରତି ଲୋକଙ୍କ ସମ୍ମତି ନାହିଁ; ନାନ୍ୟପନ୍ଥା ଦମନପୀଡ଼ନ; ଭାରତୀୟଙ୍କ ହାତରେ ସ୍ୱଜାତିର ଶୋଷଣ-ପେଷଣ । ବାହାରକୁ କହିଚି, ପ୍ରାଚ୍ୟଦେଶର ବର୍ବରଲୋକଙ୍କୁ 'ଆଧୁନିକ'କରିବାକୁ ଏଇ କଷ୍ଟସ୍ୱୀକାର । ୧୮୫୦-୬୦ ବେଳକୁ ଜିଲ୍ଲାସହରମାନଙ୍କରେ ଇଂରାଜୀଶିକ୍ଷାନିର୍ଭର ମୁଷ୍ଟିମେୟ ଏକ ମଧ୍ୟବିତ୍ତ ଶ୍ରେଣୀର ଆବିର୍ଭାବ ଘଟିଚି; ଅତିଦ୍ରୁତ ତା ଚେହେରା ଓ ଚରିତ୍ର ବାରିହୋଇପଡ଼ିଚି ମଳିମୁଣ୍ଡିଆଙ୍କ ଭିତରେ । ସରକାରି ବେସରକାରି ଚାକିରିବାକିରି ତ ରହିଚି; ତା ଛଡ଼ା, ନୂଆନୂଆ ସହର ପାଇଁ ଇଂରେଜ୍ ପୃଷ୍ଟପୋଷକତାରେ ଗଢ଼ିଉଠିଚି ସାନବଡ଼ ନାନାଦି ବେପାରବଣିଜ; ଆଉ ସେ ବେଉସାକୁ ଆଶ୍ରୟକରି ଢେର୍ ରକମ ବୃତ୍ତି । ସହରନିର୍ଭର ଏ ଏଲିଟ୍‌କୁ ଛାଡ଼ିଦେଲେ, ମଫସଲରେ ଆଉ ଏକ ନାତିବୃହତ୍ ଗୋଷ୍ଠୀ, ଯାହାକୁ ସୃଷ୍ଟିକରିଚି ସାମ୍ରାଜ୍ୟବାଦ, ଯେପରି, ଜମିଦାର୍ ତାଲୁକ୍‌ଦାର୍ ଜୋତ୍‌ଦାର୍ ସିକ୍‌ଦାର୍ ତରଫ୍‌ଦାର ଠିକ୍‌ଲାଦାର ଇତ୍ୟାଦି ସାନବଡ଼ ଭୂମ୍ୟଧିକାରୀ । ଏଇ ତିନିଟି ନାତିବୃହତ୍ ଗୋଷ୍ଠୀ ହୋଇଚନ୍ତି ନବସୃଷ୍ଟ ମଧ୍ୟବିତ୍ତଶ୍ରେଣୀର ଭିତ୍ତିସ୍ତମ୍ଭ । ଯେହେତୁ ସାମ୍ରାଜ୍ୟବାଦର ଭିଆଣ, ଇଂରେଜୀଭାଷା ଓ ଶିକ୍ଷା ପ୍ରଭାବରେ ଏମାନଙ୍କ ଭାବନାକଳ୍ପନାର ଧରଣରେ ମଧ୍ୟ ଫୁଟିଉଠିଚି ପାଶ୍ଚାତ୍ୟମୁଖୀନତା ପ୍ରକଟଭାବରେ; ଏମାନଙ୍କ ସଂଖ୍ୟାବୃଦ୍ଧି ଘଟିଚି କ୍ରମାଗତ ଯେତେବେଳେ ସହରରେ, ସାଧାରଣ ଲୋକ ଗରିବରୁ ଆହୁରି ବେଶି ଗରିବହୋଇଚନ୍ତି ମଫସଲରେ । ଜମିର ନୂଆମାଲିକ ହେଲେ ଯିଏ, କେହିହେଲେ ଚଷୀନୁହେଁ; ଜଳସେଚନ ବିଷୟରେ ସଚେତନତା ନାହିଁ; ଇଂରେଜ୍ ତ ଆହୁରି

ବେଶି ଉଦାସୀନ । କୃଷିର କ୍ରମାବନତି ତେଣୁ ଅନିବାର୍ଯ୍ୟ; ତା ସାଙ୍ଗକୁ ପୌନପୁନିକ ଦୁର୍ଭିକ୍ଷ । କଞ୍ଚାମାଲ ବିଦେଶକୁ ରପ୍ତାନିହୋଇଯିବା ଫଳରେ ସ୍ଥାନୀୟ କାରୁ / ଘରୁ ଶିଳ୍ପର ଉତ୍ସ ମଧ୍ୟ ଶୁଖିଯାଇଚି, ତନ୍ତୀ ସର୍ବସ୍ୱାନ୍ତହୋଇ ଆତ୍ମହତ୍ୟା କରିଚନ୍ତି । ତାହେଲେ, କି କରମ ଶାସନନୀତି ପ୍ରରୋଚିତକରିଚି ୧୭୯୩ର ଚିରସ୍ଥାୟୀ ବନ୍ଦୋବସ୍ତ ? ରଣଜିତ୍ ଗୁହ ଲେଖିଚନ୍ତି, Physiocratic thought, the precursor of Political Economy, was an implacable critique of feudalism in its native habitat and proved to be a real force in undermining the *ancien rigime.* Ironically, however, while being grafted to India by the most advanced capitalist power of that age, it became instrumental in building a new-feudal organisation of landed property and in the absorption and reproduction of pre-capitalist elements in a colonial regime.In other words, a typically bourgeois form of knowledge was bent backwards to admit itself to the relations of power in a semi-feudal society. (ଦ୍ର. *Role property,* 1982) । ଅନ୍ୟ ଶବ୍ଦରେ, ସଂପତ୍ତିର 'ବ୍ୟକ୍ତିଗତ ମାଲିକାନା' ଔପନିବେଶିକତା ଦ୍ୱାରା ବାହାରୁ ଆମଦାନିକରାହୋଇଥିବା ଅବବୋଧ କେବଳ ନୁହେଁ, ବ୍ୟକ୍ତିଗତ ମାଲିକାନା ପାଶ୍ଚାତ୍ୟ ଆଧୁନିକତାର ଜନ୍ମଲକ୍ଷଣ ମଧ୍ୟ, ଏବଂ ସେଇ ସୂତ୍ରରେ, ଖାଲି ରାଷ୍ଟ୍ରଚାଳିତ ଅର୍ଥନୀତି ନୁହେଁ, ସମାଜସମ୍ପର୍କିତ ଯାବତୀୟ ନୂତନ ତତ୍ତ୍ୱପ୍ରକରଣର ପ୍ରାଥମିକ ପ୍ରେରଣା । ସେଇ ତତ୍ତ୍ୱଜ୍ଞାନରେ ସାମ୍ରାଜ୍ୟବାଦ ପରିସିକ୍ତକରିଥିଲା ନବସୃଷ୍ଟ ଭାରତୀୟ ମଧ୍ୟବିତ୍ତଶ୍ରେଣୀର ଜୀବନଚର୍ଯ୍ୟାକୁ । ଏକ୍ଷଣି ଏଷ୍ଟାବ୍ଲିସ୍‌ମେଣ୍ଟ କହିଲେ ବୁଝିବାକୁ ହେବ ସେଇ ଲୋକମାନଙ୍କୁ, ଜୀବନନିର୍ବାହର କୋଉହେଲେ ଆବଶ୍ୟକ ଉପାଦାନକୁ ଉତ୍ପନ୍ନକରି ଯିଏ ନାନାଦି ଅଭିନବ ଉପାୟରେ ମୁନାଫା ଯୋଗାଡ଼କରିବାକୁ ବ୍ୟତିବ୍ୟସ୍ତ । ତଥାକଥିତ ବୁଦ୍ଧିଜୀବୀ ଏଇ ଲୋକଗୋଷ୍ଠୀର ଅଂଶବିଶେଷ ମାତ୍ର; ଏବଂ ଅଂଶବିଶେଷ ବୋଲି, କ୍ଷମତା-ହସ୍ତାନ୍ତର ସଙ୍ଗେସଙ୍ଗେ ଇଲାକା ଭାଗକରିନେଇଚନ୍ତି ନିଜଭିତରେ ।

୧୮୭୦-୮୦ ଦଶକରେ ମଫସଲରେ ଯେତେବେଳେ ରୟତ୍ ଓ କାରିଗର ଶ୍ରେଣୀର ନାଭିଶ୍ୱାସ ଉଠିଚି, ସହର ଓ ଉପକଣ୍ଠର ମଧ୍ୟବିତ୍ତ ଅଧିବାସୀଙ୍କ ଭିତରେ ଦେଖାଦେଇଚି ଖାଲି ଧନସମୃଦ୍ଧି ନୁହେଁ, ରୀତିମତ ପରିତୃପ୍ତି; ଏବଂ ଅବସ୍ଥାର ବ୍ୟତିକ୍ରମ ଘଟିନାହିଁ ବିଂଶଶତକର ପ୍ରଥମ ଦଶକ ପର୍ଯ୍ୟନ୍ତ, ଯେତେବେଳେ ଔପନିବେଶିକ ଶାସନ-ଶୋଷଣ ବିରୋଧରେ ଭାରତର ପଶ୍ଚିମା ଉପକୂଳରେ ଶୁଣାଯାଇଚି ଅରବିନ୍ଦଙ୍କ ବଜ୍ରନିର୍ଘୋଷ । ମାତ୍ର ୧୮୩୦ର -୮୦, ଏଇ ପଚାଶବର୍ଷ ଭିତରେ

ସାଧିତହୋଇଯାଇଚି ସମାଜର ବିଭାଜନ: ଗ୍ରାମାଞ୍ଚଳରେ କୃଷକକୁଳର ବ୍ୟାପକ ଅଧୋଗତି ସାଙ୍ଗକୁ ସହରାଞ୍ଚଳରେ ନୂତନ ଏକ ସୌଭାଗ୍ୟବାନ୍ ମଧ୍ୟବିତ୍ତଶ୍ରେଣୀର ସଂପ୍ରସାରଣ । ସହରାଞ୍ଚଳ ଅବଶ୍ୟ ରାଷ୍ଟ୍ରପ୍ରଭୁର କର୍ତ୍ତୃତ୍ୱର କେନ୍ଦ୍ର । ସ୍ୱାଭାବିକଭାବେ, ସମାଜର ନେତୃତ୍ୱର କେନ୍ଦ୍ର ଥିଲା ପୁରୁଷାନୁକ୍ରମେ ଯୋଉ ଗ୍ରାମସମଷ୍ଟି, ସେ ଐତିହ୍ୟ ସ୍ଥାନାନ୍ତରିତ ହୋଇଯାଇଚି ସହରବାସୀ ଇଂରେଜୀ-ଶିକ୍ଷିତ ଅପେକ୍ଷାକୃତ ବିତ୍ତବାନ, ମଧ୍ୟବିତ୍ତ ହାତକୁ । ସାମାଜିକ ନେତୃତ୍ୱର ଚେହେରା ଓ ଚରିତ୍ରର ଏଇ ପରିବର୍ତ୍ତନ କେତେ ଗଭୀର ଅର୍ଥବହ, ଏକ୍ଷଣି ବି ପୁରାପୁରି ବୁଝିପାରିନାହୁଁ । ଭାରତୀୟ ପରମ୍ପରାରେ ଏପରି ଅଭୂନକ ବିଦାରଣ ଆଗରୁ କେବେ ଲକ୍ଷ୍ୟକରାଯାଇନାହିଁ । ତେଣୁ ବିଗତ ଶହେବର୍ଷ ଭିତରେ ଭାରତର ରାଷ୍ଟ୍ର, ସମାଜ ଓ ସଂସ୍କୃତିରେ ଯା ଘଟିଚି କି ଘଟୁଚି, ଭଲ କି ନାକରା, ତାର ସମସ୍ତ ଦାୟଦାୟିତ୍ୱ ନବସୃଷ୍ଟ ଏଇ ମଧ୍ୟବିତ୍ତଶ୍ରେଣୀର । ଆକର୍ଷଣୀୟ ଯୋଉ ଜଗତର ସଂଧାନଦେଇଚି ଇଂରେଜ୍ ଦେଶବାସୀଙ୍କ ପାଖରେ ସେ ଜଗତକୁ ଅନୁବାଦକରିଚି ମୁଷ୍ଟିମେୟ ଏଇ ମଧ୍ୟବିତ୍ତ ଅଗ୍ରଗାମୀ । ସନ୍ଦେହ ନାହିଁ, ଇଂରେଜ୍ ସହିତ ସେଇ ସଂଳାପ, ତାର ଧ୍ୱନିପ୍ରତିଧ୍ୱନି କି କ୍ରିୟାପ୍ରତିକ୍ରିୟା ଏଇ ସୀମିତ ଅଗ୍ରଗାମୀଙ୍କ ଭିତରେ ହିଁ ରହିଚି ସୀମିତ, ମାତ୍ର ଏ ଶ୍ରେଣୀର ସଂପ୍ରସାର ବୋଧହୁଏ ବାଧାପାଇଚି ପ୍ରଥମ ମହାଯୁଦ୍ଧ ଅବ୍ୟବହିତରେ । କାହିଁକିନା, ସେତିକିବେଳରୁ ଦେଖାଦେଇଚି, ଅବଶ୍ୟ ଇତସ୍ତତ ଭାବରେ, ଏ ଶ୍ରେଣୀର ସୀମାନ୍ତରେ ଅବସ୍ଥାନକରୁଥିବା ଲୋକଙ୍କ ଭିତରେ ବିକ୍ଷୋଭ ଆଉ ବିରୋଧ । ରାଜନୀତିକ ରୂପ ହୁଏତ ଏକାରକମ ନୁହେଁ; କାହିଁକିନା, ଶିକ୍ଷିତ ବେକାରର କର୍ମସମସ୍ୟା ସବୁଜାଗାରେ ସମାନ ନୁହେଁ କି ସବୁ ପେସାରେ । ତଥାପି, ଦୁଇ ମହାଯୁଦ୍ଧର ମଧ୍ୟମର୍ତ୍ତୀ ସମୟରେ ଦେଶର ସ୍ୱାଧୀନତାସଂଗ୍ରାମକୁ ଯୋଉ ଶ୍ରେଣୀ ନେତୃତ୍ୱ ଦେଇଚି, ସିଏ ଏଇ ଇଂରେଜୀପଢୁଆ ପାଶ୍ଚାତ୍ୟାଭିମୁଖୀ ମଧ୍ୟବିତ୍ତ । ଏପରିକି, ସ୍ୱୟଂ ଗାନ୍ଧି ଏ ଶ୍ରେଣୀର ବାହାରେ କି ଉର୍ଦ୍ଧ୍ୱରେ ନୁହେଁ । ଅଥଚ, ଦେଶର ସମଗ୍ର ଜନସଂଖ୍ୟାର ଏମାନେ ନଗଣ୍ୟ ଭଗ୍ନାଂଶ । କିନ୍ତୁ, ଏମାନଙ୍କ ନେତୃତ୍ୱରେ ଯେହେତୁ କ୍ଷମତାହସ୍ତାନ୍ତର ସାଧିତହୋଇଚି, ଏମାନେ ହିଁ ଏକ୍ଷଣି ଦେଶର ଶାସକଶ୍ରେଣୀ; ଛକିରିବାକିରି, ବ୍ୟବସାବଣିଜ, ପାଠଶାଠ, ରାଜନୀତି-ଅର୍ଥନୀତି-ସମାଜନୀତି, ସବୁଠିଁ ଏମାନେ କର୍ଣ୍ଣଧାର । ଅର୍ଥାତ୍, ସଂସ୍କୃତିଟା ଗୋଟାପଣେ ମଧ୍ୟବିତ୍ତସଂସ୍କୃତି, ଖଟିଖିଆ ଲୋକଙ୍କ ସଂସ୍କୃତି ନୁହଁ । କର୍ତ୍ତୃତ୍ୱକରୁଥିବା ମଧ୍ୟବିତ୍ତ, ତାହେଲେ, କାହିଁକି ଚାହିଁବ ପରିବର୍ତ୍ତନ ? ଏକମାତ୍ର କାରଣ, ତାର ହିଗେମନି ପ୍ରତି ସମ୍ମତି ବା ସମର୍ଥନ ନାହିଁ ଜନସମାଜର; ରଣଜିତ୍ ଗୁହଙ୍କ ଭାଷାରେ, ଡମିନାନ୍ସ ଉଇଦ୍‌ଆଉଟ୍ ହିଗେମନି । ଅର୍ଥାତ୍, ସାଂସ୍କୃତିକ ନେତୃତ୍ୱର ଅଧିକାରୀ ନହୋଇ, କ୍ଷମତା ବଳରେ ପ୍ରତାପ । ଠିକ୍

ଯୋଉକଥା ଇଂରେଜ୍ କରିଥିଲା, ଏକ୍ଷଣି କରୁଚି ମଧ୍ୟବିତ୍ତ । ଟାଡା, ପୋଟା, ମିସା, ଭାରତରକ୍ଷା ଆଇନ୍, ଅଭ୍ୟନ୍ତରୀଣ ନିରାପତ୍ତା ଆଇନ୍ ଭଳି ଆହୁରି ଅନେକ ଫ୍ୟାସିଷ୍ଟ କାନୁନ୍ ଚଳୁରଖି ନିର୍ବାଚନ ଅନୁଷ୍ଠିତକରୁଚି, ବିନା ବିଚାରରେ ହଜାରହଜାର ଲୋକଙ୍କୁ ଅଟକରଖି, ବିଧାନସଭା ବା ଲୋକସଭାରେ ଅବାଧ ବିତର୍କକୁ ସୁଯୋଗଦେଉଚି । ପ୍ରତିବର୍ଷ ପୁଲିସ୍‌ବାହୀନୀର ସଂପ୍ରସାରଣ ଘଟାଇ ବଜେଟ୍‌ର ଦଫାରଫା କରୁଚି; ଏପରିକି, ରେଳବାଇ ସକାଶେ ସୁରକ୍ଷାବାହିନୀ, ଶିଳ୍ପସଂସ୍ଥା ସକାଶେ ସୁରକ୍ଷାବାହିନୀ ଥାଉଁଥାଉଁ ଏବର୍ଷ ପର୍ଯ୍ୟଟକଙ୍କ ପାଇଁ ସୁରକ୍ଷାବାହିନୀର ପ୍ରସ୍ତାବ କରାଯାଇଚି । କାହା କବଳରୁ ଏଇ ସୁରକ୍ଷା ଦାବି ? ଜନସାଧାରଣଙ୍କ କବଳରୁ ନିଶ୍ଚୟ । ଅଥଚ ମୁହଁରେ କହୁଚି ତାଙ୍କରି ସମର୍ଥନ ଓ ସମ୍ମତିକ୍ରମେ ଏତେସବୁ ଆତସବାଜି । ଅବଶ୍ୟ, ଏଷ୍ଟାବ୍ଲିସ୍‌ମେଣ୍ଟର ଧାରଣା, ଦେଶର ପ୍ରତ୍ୟେକ ନରନାରୀ ବିକ୍ରୟଯୋଗ୍ୟ ପଣ୍ୟ; ବୁଦ୍ଧିଜୀବୀ ବି କେହି ବ୍ୟତିକ୍ରମ ନୁହେଁ; ଖାଲି ଦରଦାମ ତଫାତ୍ ହୋଇପାରେ; ଆଉ, ଦର ଯଦି ନପଟେ, ଭାଙ୍ଗି ଚୁର୍‌ମାର୍ କରିଦେବାକୁ ଅବା କେତେକ୍ଷଣ ? ଏଷ୍ଟାବ୍ଲିସ୍‌ମେଣ୍ଟର ନିନ୍ଦା-ପ୍ରଶଂସା ପଛରେ କିନ୍ତୁ କୋଉହେଲେ ଆଦର୍ଶଗତ ଅନୁରାଗବିରାଗ କାମକରେନା; କାମକରେ ଏକମାତ୍ର ବ୍ୟକ୍ତିଗତ ମାଲିକାନା ବଜାୟରଖିବା ଶ୍ରେଣୀସ୍ୱାର୍ଥ । ଅର୍ଥାତ୍, ବ୍ୟବସାୟିକ ଆଗ୍ରହ । ବ୍ୟବସାୟ ଆଖିରେ 'ମଣିଷ' ଶବ୍ଦଟାର ଏକମାତ୍ର ଅର୍ଥ, ଗ୍ରାହକ / ଭୋଟର୍ / ଟୁରିଷ୍ଟ; ଏକମାତ୍ର ଲକ୍ଷ୍ୟ, ମୁନାଫା । ତା ଫଳରେ ଲୋକଗୁଡ଼ାକ ଯଦି ବୁଦ୍ଧିଶୁଦ୍ଧି ବିସର୍ଜନଦେଇ ଆହାର-ନିଦ୍ରା-ମୈଥୁନସର୍ବସ୍ୱ ଜୀବରେ ପରିଣତହୁଅନ୍ତି, ଏଷ୍ଟାବ୍ଲିସ୍‌ମେଣ୍ଟ ଭ୍ରୂକ୍ଷେପ କରିବନାହିଁ । କାହିଁକିନା, ମଣିଷର ମର୍ଯ୍ୟାଦାବୋଧକୁ ଖାତିର୍‌କଲେ ବ୍ୟକ୍ତିଗତ ସମ୍ପତ୍ତି ଓ ତଦ୍‌ପ୍ରସୂତ ମୁନାଫା ମହିମା ହରାଇବା ନିଶ୍ଚିତ । ଅଥଚ ବ୍ୟକ୍ତିଗତ ମାଲିକାନାର ଉଚ୍ଛେଦହିଁ କେବଳ ବିପ୍ଳବ, ଯା ପୁଞ୍ଜିବାଦୀ ସମାଜବ୍ୟବସ୍ଥାରେ ସମ୍ଭବପର ନୁହେଁ । ତଥାପି, ବୁଦ୍ଧିଜୀବୀ ଚାହିଁଲେ, ଏଇ ମର୍ଯ୍ୟାଦାବୋଧକୁ ଜନସାଧାରଣଙ୍କ ଭିତରେ ସଂଚାରିତ କରିପାରେ, ଏବଂ ସେଥିପାଇଁ, ବୁଦ୍ଧିଜୀବୀକୁ ସବାଆଗେ ପୁଞ୍ଜି ସହିତ ସଂସ୍ରବ ତ୍ୟାଗକରିବାକୁ ପଡ଼ିବ । ଯୁଦ୍ଧନୀତିରୁ ଏ ତ୍ୟାଗତିତିକ୍ଷା ଅବିଚ୍ଛେଦ୍ୟ । ସେ ତ୍ୟାଗ ସ୍ୱୀକାରକରିବାକୁ ମନୋବଳ ନାହିଁ ବୋଲି, ଦେଶ ଏପର୍ଯ୍ୟନ୍ତ ଇଉରୋପର ସାଂସ୍କୃତିକ ଉପନିବେଶ; ସବୁରକମ ର୍ୟାଡିକ୍ୟାଲ୍ ଉଦ୍ୟମ-ଉଦ୍‌ଯୋଗ ସତ୍ତ୍ୱେ ନିଜ ଚେର କାହାରି ଆଖିକୁ ଦିଶୁନାହିଁ । ଦିଶୁନାହିଁ ବୋଲି, ଭାରତୀୟ ଇଣ୍ଟେଲେକ୍‌ଚୁଆଲ୍‌କୁ ମନେହୁଏ ଆଂଲୋଇଣ୍ଡିଆନ୍ ଜାତୀୟ ଜାରଜ , ଏଷ୍ଟାବ୍ଲିସ୍‌ମେଣ୍ଟର ସୁନାଶିକୁଳିରେ ବନ୍ଧାହୋଇଥିବା ସାରମେୟ । ଆଉ ଗଣମାଧ୍ୟମ ଯା କରୁ କି କହୁ, 'ଗଣ' ସହିତ ସେ ମାଧ୍ୟମର କିଛିହେଲେ ସଂପର୍କ ନାହିଁ, ପଣ୍ୟବିକ୍ରୟ ଛଡ଼ା ।

'ଏଷ୍ଟାବ୍ଲିସ୍‌ମେଣ୍ଟ୍' କିନ୍ତୁ ଗୋଟାଏ ପୁରୁଣା ଇଂରାଜି ଶବ୍ଦ; ଖାସ୍ ଇଂଲଣ୍ଡରୁ ତାର ବ୍ୟାବହାରିକ ପ୍ରୟୋଗ ତେଣୁ ଦେଖିବାକୁ ପଡ଼ିବ; ନହେଲେ ଅର୍ଥବ୍ୟଞ୍ଜନା ସ୍ପଷ୍ଟହେବନାହିଁ । ନିଉ ଷ୍ଟେଟ୍‌ସ୍‌ମ୍ୟାନ୍ ପତ୍ରିକାର ସଂପାଦକ କିଙ୍ଗ୍‌ସ୍ଲି ମାର୍ଟିନ୍ ଅର୍ଥନିର୍ଦ୍ଦେଶକରି ଲେଖିଥିଲେ, ସବୁଠୁଁ ଭଲ ସଂଜ୍ଞା ବୋଧହୁଏ ଏଇ ଯେ, ସରକାରର ସେଇ ଅଂଶ, ଯାହାକୁ ଗଣତାନ୍ତ୍ରିକ ନିୟନ୍ତ୍ରଣ ଅଧୀନକୁ ଅଣାଯାଇନାହିଁ; ଯେପରି, ରଜା କି ରାଣୀ, ରାଜପରିବାର କି ଶାଖାପ୍ରଶାଖା, ଏକାନ୍ତ ସଚିବ କିମ୍ବା ମନ୍ତ୍ରୀସଭାର ସଚିବ, ପ୍ରଥାଗତ କର୍ମକର୍ତ୍ତା ଯେପରି ଲର୍ଡ଼ ହାଇ ଷ୍ଟୁଅର୍ଡ଼, ଉତ୍ସବଅନୁଷ୍ଠାନ ଛଡ଼ା ଯାହାଙ୍କ କଥା ପ୍ରକାଶ୍ୟରେ କୁହାଯାଏନା । ତା ଛଡ଼ା ଅଛନ୍ତି ପୁରୁଷାନୁକ୍ରମରେ ରାଜନୀତିକରୁଥିବା ଅଭିଜାତ ଲୋକବାକ, ଯେପରି ସଲ୍‌ସ୍‌ବେରି ପରିବାର । ପୁଣି, ଆର୍ଚ ବିପସ୍, ବ୍ୟାଙ୍କ୍ ଅବ୍ ଇଂଲଣ୍ଡର ଗଭର୍ନର, ଦ ଟାଇମ୍‌ସ୍‌ର ସଂପାଦକ, ବିବିସିର ପ୍ରଧାନ ପରିଚାଳକ, ବୈଦେଶିକ ଓ ଗୁପ୍ତଚର ବିଭାଗର ବଡ଼କର୍ତ୍ତା, କିଛି ଅଭିଜ୍ଞ ଅମଲା ଓ ସାମରିକ ବାହିନୀର ମୁଖ୍ୟ । ଅବଶ୍ୟ ପ୍ରଧାନମନ୍ତ୍ରୀ ଓ ତାଙ୍କ ସହକର୍ମୀ ଅନିବାର୍ଯ୍ୟଭାବେ ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ଅନ୍ତର୍ଭୁକ୍ତ । ଯେକୌଣସି ପ୍ରଭାବଶାଳୀ ରାଜନେତାଙ୍କୁ ଚୁପ୍‌କରିରଖିବାକୁ, ପଠାଇଦିଆହୁଏ ପ୍ରିଭି କାଉନ୍‌ସିଲ୍‌କୁ, ବିରୋଧୀ ଦଳର ନେତାଙ୍କୁ ମୋଟା ଦରମାଦେଇ ଏଷ୍ଟାବ୍ଲିସ୍‌ମେଣ୍ଟ୍‌ରେ ସାମିଲ୍ କରିଦିଆହୁଏ । ଏଥିରୁ କଣ ବୁଝିବା ଆମେ ? ରାଜନୀତିକରୁଥିବା ଲୋକ ତ ଏଠି ସାତବର୍ଣ୍ଣ ଏଣ୍ଡୁଅ ! ମୂଳକଥା ତେଣୁ ଖାନ୍‌ଦାନ୍ କିଛି ପରିବାର ଆଉ ବିବାହସୂତ୍ରରେ ତାଙ୍କ ସହିତ ଆବଦ୍ଧ ଆଉକିଛି ପରିବାର ବ୍ରିଟେନ୍‌ର ସମସ୍ତ ବ୍ୟବସାବାଣିଜ୍ୟକୁ କବ୍ଜାକରି ରଖିଚନ୍ତି; ଆଉ ଯୋଉଭଳି ସାମାଜିକ-ରାଜନୀତିକ ବିଧିବ୍ୟବସ୍ଥା ବହାଲ୍‌ରହିଲେ ବିନା ସଂଘାତରେ 'ଅ୍ୟାକିଉମିଉଲେସନ୍' ମସୃଣହେବ, ସେ ବ୍ୟବସ୍ଥାକୁ ନିରାପଦକରିବାକୁ ସମାଜଜୀବନର ପ୍ରତ୍ୟେକ ଘାଟିଜାଗାରେ 'ନିଜଲୋକ'ଙ୍କୁ ଜଗୁଆଳିକରି ବସାଇଚନ୍ତି । ପାର୍ଲାମେଣ୍ଟ୍‌ର ସଭ୍ୟ କିନ୍ତୁ ଭାବନ୍ତି, ସେମାନେ ହିଁ ଚଳାଉଚନ୍ତି ଦେଶର ଭଲମନ୍ଦ । ରଥ ଭାବେ ମୁଁ ଜଗନ୍ନାଥ, ବଡ଼ଦାଣ୍ଡ ଭାବେ ମୁଁ; ଅସଲ ଲୋକ କିନ୍ତୁ ସଲ୍‌ସ୍‌ବେରୀ, କାଓଡେରି, ବିଭର୍‌ବ୍ରୁକ୍, ମାର୍ଲବରୋ ଆଉ ଡିଭନ୍‌ଶାୟାର୍ ଭଳି ପୁଞ୍ଜିପତି । ଏମାନଙ୍କ ଶିକ୍ଷାରମ୍ଭ ଇଟନ୍ କି ହ୍ୟାରୋ ଭଳି ବୁନିଆଦିଥିବା ସ୍କୁଲ୍‌ରେ, ଶିକ୍ଷାସମାପ୍ତି ଅକ୍ସ୍‌ଫୋର୍ଡ଼ର ଅଲ୍ ସୋଅଲ୍ କଲେଜ୍ କିମ୍ବା ସାମରିକ ଶିକ୍ଷାକେନ୍ଦ୍ର ସ୍ୟାଣ୍ଡହର୍ଷ୍ଟରେ । ବସାଉଠା ପାଇଁ ରହିଚି ଏପରି କ୍ଲବ୍, ସାଧାରଣଲୋକ ଯୋଉଠିକି ଭରସି ପାରିବେନାହିଁ । ଆଗତୁରା ନୋଟିସ୍‌ଦେଇ କେହି ମିଟିଂକରନ୍ତିନାହିଁ କି ଆଲୋଚ୍ୟ ବିଷୟ ଜଣାନ୍ତିନାହିଁ ବାହାରକୁ । ଡିନର୍‌ଟେବ୍‌ଲ୍‌ରେ ବସି କାମଧନ୍ଦା

ଠିକ୍‌କରିନିଅନ୍ତି, ପାର୍ଲାମେଣ୍ଟ୍ ଓ ପ୍ରଚାରଯନ୍ତ୍ର ସେଇ ସିଦ୍ଧାନ୍ତକୁ ଜାଣନ୍ତି 'ଜନମତ'; ଆଉ, ଯୋଉ ଦଳ ପରେ କ୍ଷମତାକୁ ଆସୁ, ଲଡ଼୍ ବାଲ୍‌ଫୋର୍ କହିବେ, କନ୍‌ଜରଭେଟିଭ୍ ହିଁ ବସିଚନ୍ତି ଗଦିରେ । କିଙ୍ଗ୍‌ସ୍ଲି ମାର୍ଟିନ୍ ତ ସଂପାଦକ, ମାତ୍ର ଦ *ଅକ୍ସଫୋଡ଼୍ ଡିକ୍ସନାରୀ ଫର ରାଇଟର୍ସ ଆଣ୍ଡ୍ ଏଡିଟର୍ସ* ଲେଖିଚି, ଏଷ୍ଟାବ୍ଲିସ୍‌ମେଣ୍ଟ୍ ମାନେ the values held by the established sector of society, ସମାଜର ପ୍ରତିଷ୍ଠିତ ଅଂଶ ଯୋଉ ମୂଲ୍ୟବୋଧକୁ ଧାରଣକରନ୍ତି । ଭାରତୀୟ ସମାଜର ପ୍ରତିଷ୍ଠିତ ଅଂଶ ତେବେ କୋଉ ମୂଲ୍ୟବୋଧଗୁଡ଼ିକୁ ଶ୍ରେୟଃ ବିବେଚନା କରନ୍ତି ?

ରାତାରାତି କେହି ପ୍ରତିଷ୍ଠାପାଏନା; ଏ ପ୍ରାପ୍ତି ଏକ ଐତିହାସିକ ପ୍ରକ୍ରିୟା; ତେଣୁ କାର୍ଯ୍ୟକାରଣ ଶୃଙ୍ଖଳାର ଫଳଶ୍ରୁତି । ବ୍ୟାପକ, ଗଭୀର କୋଉ ସମାଜବିପ୍ଳବ କାରଣରୁ ଇଂରେଜ ଭାରତ ଛାଡ଼ିଯାଇନାହିଁ, ଏବଂ ସେଥିପାଇଁ, ଲୋକଙ୍କ ଶ୍ରେଣୀଅବସ୍ଥାନରେ ବ୍ୟାପକ କୋଉ ଉତ୍ଥାନପତନ ମଧ ଘଟିନାହିଁ, ମଧ୍ୟବିତ୍ତଶ୍ରେଣୀର ଏକାଧିପତ୍ୟ କାଏମ୍ ରହିଚି, ନିମ୍ନବର୍ଗ ବରଂ ମହରଗରୁ ଯାଇ କାନ୍ତାରରେ ପଡ଼ିଚନ୍ତି । ତେବେ, ଭାରତର ଏଷ୍ଟାବ୍ଲିସ୍‌ମେଣ୍ଟ୍ ଉପରେ ମଧ୍ୟବିତ୍ତଶ୍ରେଣୀର ଅକ୍ତିଆର, ସାଧାରଣଭାବେ ଅନସ୍ୱୀକାର୍ଯ୍ୟ ହେଲେସୁଦ୍ଧା, ସେ ପ୍ରତିଷ୍ଠାନକୁ ଚକ୍ଷୁଷକରିହେବ କେବଳ ରାଜଧାନୀ ଦିଲ୍ଲୀରେ; ଡୁନ୍‌ସ୍କୁଲ୍, ସେଣ୍ଟ୍ ଷ୍ଟିଭନ୍ କଲେଜ୍, ଅକ୍ସଫୋଡ଼୍ କି ହାର୍ଭାଡ଼୍‌ରୁ ପାଠପଢ଼ିଆସିଥିବା ମଧ୍ୟବିତ୍ତ, ପୂର୍ବତନ ରଜାଜମିଦାରଙ୍କ ପୁଅନାତି କି ଝିଅବୋହୂ, ବ୍ରିଟିଶ୍ ଅମଳର ଆଇସିଏସ୍ ଲୋକଙ୍କ ପିଲାକବିଲା, କେନ୍ଦ୍ରୀୟ ମନ୍ତ୍ରୀସଭା, ବିଭିନ୍ନ ବଣିକସଭା, ଇଂରେଜୀ ଖବରକାଗଜ କି ଟେଲିଭିସନ୍ – ସବୁଗୁଡ଼ାକ ଏଠି ତ୍ରିଗୁଣରଜ୍ଜୁ କରେ ଧରି / ମୃଗୀ ନଚ୍ଚଏ ନରହରି । କୋଉ ଅଜାଅମଳର କଂଗ୍ରେସ୍‌ରେ ପଶି ଜେଲ୍‌ଯାଇଥିଲେ, ସେଭଳି ଲୋକଙ୍କ ପିଲାଙ୍କୁ ବି ଏ ଭିଡ଼ଭିତରେ ଦେଖିହେବ । ଫେର୍ ଅଛି ସାହିତ୍ୟ ଏକାଡେମି, ସଂଗୀତ ନାଟକ ଏକାଡେମି, ଲଳିତକଳା ଏକାଡେମି । ଏମାନଙ୍କର ଗୋଟାଏ ଅଂଶ ଯୋଉ ଅଂଚଳରୁ ଆସନ୍ତି, ତାକୁ କହୁଚନ୍ତି କାମଧେନୁ ବଳୟ, ଅର୍ଥାତ୍ ହିନ୍ଦୀଭାଷୀ ପ୍ରଦେଶ । କିନ୍ତୁ ହିନ୍ଦୀଭାଷା ପ୍ରକୃତରେ ନିୟାମକ ନୁହେଁ, କାହିଁକିନା, ହିନ୍ଦୀ ଏମାନଙ୍କ ଭାଷଣର ଭାଷା, ପୃଷ୍ଠାଏ-ଦିପୃଷ୍ଠା ଲେଖିପାରିବେ କି ନାହିଁ ସନ୍ଦେହ । ଉତ୍ତର-ଦକ୍ଷିଣ-ପୂର୍ବ-ପଶ୍ଚିମ, ଯୋଉ କୋଣରୁ ଆସନ୍ତୁ, ଏମାନଙ୍କ ମତବିନିମୟର ଭାଷା ପ୍ରଧାନତଃ ଇଂରେଜୀ । ଗାନ୍ଧି ତ ଅନ୍ତତଃ ଆତ୍ମଜୀବନୀ ଲେଖିଥିଲେ ମାତୃଭାଷା ଗୁଜରାଟିରେ, ଜବାହରଲାଲ୍ ନେହରୁ ସାରାଜୀବନରେ କଣ ହିନ୍ଦୀରେ କିଛି ଲେଖିଚନ୍ତି ? ଝିଅକୁ ବି ଚିଠିଲେଖିଚନ୍ତି ଇଂରେଜୀରେ । ନାତି ବେଳକୁ ତ ହାଇଟେକ୍, କମ୍ପ୍ୟୁଟର୍, ଇଣ୍ଟର୍‌ନେଟ୍ – ଭାରତୀୟ ଭାଷାରେ ଯାର ପ୍ରତିଶବ୍ଦ

ମିଳୁନାହିଁ । ଏ ତ ଅନେକ ଦୂରର କାରବାର; ବସ୍ତିରେ ରହୁଥିବା ଲୋକ ବି ପକାଘରେ ରହୁଥିବା ଲୋକଙ୍କୁ ଭାବନ୍ତି ବଡ଼ଲୋକ । ଅସଲ ବଡ଼ଲୋକ କିନ୍ତୁ ଧରାଛୁଆଁ ବାହାରେ । ଦେଖିଲେ ଦେଖୁଥିବେ ଇନ୍‌କମ୍‌ଟ୍ୟାକ୍ସ କି ସିବିଆଇ ଇନ୍‌ସ୍ପେକ୍ଟର୍ ଆଉ ଇଂରେଜୀ ମିଡିଅମ୍ ସ୍କୁଲ୍‌ର ମାଷ୍ଟରମାଷ୍ଟ୍ରାଣୀ; ନିତ୍ୟ ଦେଖୁଥିବା ଅବଶ୍ୟ ମେହନ୍ତର, ନୌକର୍ କି ଆୟା । ଏ ବଡ଼ଲୋକ ଦିଲ୍ଲୀରେ ଥାଉ କି ଆଉକୋଉଠି, ଦିଲ୍ଲୀର ସେ କେହିନୁହେଁ, ବିଶ୍ୱଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ତଳଆଡ଼ର ଲୋକ; ଫ୍ଲେବୟ ପଢ଼େ, ରାତିରେ ଖିଆଲହେଲେ ସକାଳେ ଉଡ଼ିଯାଏ ସୁଇଜରଲ୍ୟାଣ୍ଡ୍ । ବହୁବର୍ଷ ପୂର୍ବେ ବେକାର ଯୁବକଙ୍କ ଗୋଟେ ପଟୁଆର ବିଡ଼ଲା ଘରମୁହଁ ଯାଏଁ ଯାଇଥିଲା, କେ କେ ବିଡ଼ଲା ବାହାରିଆସି ସାମ୍ବାଦିକଙ୍କୁ କହିଲେ; ଦେଶର ଯା ଅବସ୍ଥା, ବୟସ କମ୍‌ହୋଇଥିଲେ ମୁଁ ବି ନକ୍ସଲ୍ ହୁଅନ୍ତି ! ବାହାରଲୋକ ଆଉ ଦରକାର ନୁହେଁ, ଦରକାର ପଡ଼ିଲେ ବିଡ଼ଲାଘରର ପିଲା ବି ନକ୍ସଲ୍ ଅଭିନୟ କରିପାରେ । କେ.କେ ମରିଗଲେଣି; ତାଙ୍କ ଇଂରେଜୀ କାଗଜର ପ୍ରଚାର ଦିଲ୍ଲୀସହରରେ କିନ୍ତୁ ସର୍ବାଧିକ; ସାହିତ୍ୟିକଙ୍କୁ 'ସରସ୍ୱତୀ ସମ୍ମାନ' ଦିଅନ୍ତି ଫିବରଷ ପାଞ୍ଚଲକ୍ଷଟଙ୍କା; ଓଡ଼ିଶାର ସୌଭାଗ୍ୟ, ରମାକାନ୍ତ ରଥ ଆଉ ମନୋଜ ଦାସ ସେ ସମ୍ମାନରେ ଭୂଷିତ ହୋଇସାରିଚନ୍ତି । ଦିଲ୍ଲୀରେ ପୁଣି ଅଛି ପରିକଳ୍ପନା କମିଶନ୍; ଦେଶର ଭବିଷ୍ୟତ୍‌କଥା ଚିନ୍ତାକରି ଭଲଭଲ କଥା କହନ୍ତି; ମିଛକଥା ନୁହେଁ, ମାତ୍ର ଏତେବଡ଼ ଗୋଟାଏ ଜାତିର ନୈତିକ ମେରୁଦଣ୍ଡକୁ ସିଧାକରିବା କଣ ସହଜକଥା ! ତେଣୁ କ୍ଷମତାରେ ଯୋଉ ଦଳ ଥାଉ, ପରୁଆ କରେନା, ଗଦିରେ ଯେତେଦିନ ବସ—ମାଲ୍ କମାଓ ! ନିରକ୍ଷର ନିକମା ଲୋକ ତ ରାଜନୀତି ବାହାରେ; ରାଜନୀତିର ଦର୍ଶନ, ସାମାଜିକ-ଆର୍ଥିକ ଅବସ୍ଥାର ଆମୂଳ ପରିବର୍ତ୍ତନ—ଯୁକ୍ତାକ୍ଷରଯୁକ୍ତ ବଡ଼ବଡ଼ ଏଇ ବୁଲିଗୁଡ଼ାକ ତା'ପାଇଁ କାଲ ଆଗରେ ମୂଳାଚୋବାଇବା ଭଳି । ସିରାଜ-ଉ-ଦୌଲାଙ୍କୁ କ୍ଲାଇଭ୍ ଯେତେବେଳେ ରଣକ୍ଷେତ୍ରରେ ପରାସ୍ତକଲେ, ଗାଁଲୋକ ପଲାସି ଆମ୍ବତୋଟାରେ ଗଛଡ଼ାଳରେ ବସି ଲଢ଼ାଇ ଦେଖୁଥିଲେ, ଟେକାଟାଏ ବି କେହି ଫିଙ୍ଗିନାହିଁ ଗୋରାଫଉଜଙ୍କ ଉପରକୁ; ଏବଂ ସେ ଘଟଣାର ଶହେବର୍ଷ ଉତାରୁ ଯେତେବେଳେ ମିଉଟିନି ସଂଗଠିତକଲେ ସିପାହୀ, ସହରବାସୀ ଇଂରେଜୀଶିକ୍ଷିତ ମଧ୍ୟବିତ୍ତ କଣ କରିଥିଲା, ସେକାଳର ବୁଦ୍ଧିଜୀବୀ ପ୍ୟାରୀଚାନ୍ଦ ମିତ୍ରଙ୍କ ଜବାନ୍‌ରେ ଶୁଣାଯାଉ:

"ଲକ୍ଷ୍ନୌୟେର୍ ବାଦ୍‌ସାକେ କେଲ୍ଲାୟ୍ ପୋରା ହଲୋ, ଗୋରାରା ସମୟ ପେୟେ ଦୁଷ୍ଟେର୍ ବଡ଼ ବଡ଼ ଘରେ ଲୁଟ୍‌ତରାଜ୍ ଆରମ୍ଭ କଲ୍ଲେ, ମର୍ଶାଲ୍ ଲା ଜାରି ହଲୋ, ଯେ ଛାପାଯନ୍ତ୍ରେର୍ କଲ୍ୟାଣେ ହୁତୋମ୍ ନିର୍ଭୟେ ଏତ କଥା ଅକ୍ଲେଶେ

କଇତେ ପାଚ୍ଛେନ୍, ଯେ ଛାପାଯନ୍ତ୍ର କି ରାଜା କି ପ୍ରଜା କି ସେପାଇ ପାହାରା - କି ଖୋଲାର୍ ଘର୍, ସକଲ୍‌କେ ଏକ୍ ରକମ୍ ଦ୍ୟାଖେ, ବ୍ରିଟିଶ୍ କୁଲେର୍ ସେଇ ଚିରପରିଚିତ ଛାପାଯନ୍ତ୍ରେର୍ ସ୍ୱାଧୀନତା ମିଉଟିନି ଉପଲକ୍ଷେ କିଛୁକାଲ୍ ଶିକ୍‌ଲି ପର୍‌ଲେନ୍ । ବାଙ୍ଗାଲିରା କ୍ରମେ ବେଗତିକ୍ ଦେଖେ ଗୋପାଲ୍ ମଲ୍ଲିକେର୍ ବାଡ଼ିତେ ସଭା କରେ ସାହେବ୍‌ଦେର୍ ବୁଝିୟେ ଦିଲେନ୍ ଯେ 'ଯଦିଓ ଏକ ଶ ବଛର୍ ହୟେ ଗ୍ୟାଲୋ, ତବୁ ତାଁରା ଆଜ୍‌ଓ ସେଇ ହତଭାଗା ମ୍ୟାଡ଼ା ବାଙ୍ଗାଲିଇ ଆଚେନ୍—ବହୁଦିନ୍ ବ୍ରିଟିଶ୍ ସହବାସେ, ବ୍ରିଟିଶ୍ ଶିକ୍ଷାୟ ଓ ବ୍ରିଟିଶ୍ ବ୍ୟବହାରେଓ ଆମେରିକାନ୍‌ଦେର୍ ମତ ହତେ ପାରେନ୍ ନି । (ପାରବେନ୍ କି ନା, ତାର୍‌ଓ ବଡ଼ ସନ୍ଦେହ !) ତାଦେର୍ ବଡ଼ ମାନୁଷ୍‌ଦେର୍ ମଧ୍ୟେ ଅନେକେ ତୁଫାନେର୍ ଭୟେ ଗଙ୍ଗାୟ ନୌକୋ ଚଡ଼େନ୍ ନା—ରାତିରେ ପ୍ରସ୍ରାବ୍ କତେ ହଲେ ସ୍ତୀର ବା ଚାକର୍ ଚାକ୍‌ରାଣୀର୍ ହାତ୍ ଧରେ ଘରେର୍ ବାଇରେ ଯାନ୍..... ।"

ଦେଶର ଦୀନହୀନଙ୍କ ପ୍ରତି ସବୁରକମ ସଦିଚ୍ଛା ସତ୍ତ୍ୱେ, ମଧ୍ୟବିତ୍ତର ସଙ୍କଟ ସମ୍ମୁଖୀନହେବା ପତିଆର ଯେ କେତେ ଭଙ୍ଗୁର, ଅନୁମାନର ବିଷୟନୁହେଁ ଏକ୍ଷଣି; ରୀତିମତ ଇତିହାସ । ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ଉଦ୍‌ଛିଷ୍ଟ ଆଦିକୁତାର ମାଡ଼ ହଜମ ନକଲେ ଇଣ୍ଟେଲେକ୍‌ଚୁଆଲ୍ କାହା ଭରସାରେ ଘରୁ ଗୋଡ଼କାଢ଼ିବ ? ତାର ତ ତୁଫାନ୍‌କୁ ଡର ! ରଜତଖଣ୍ଡର ପ୍ରଲୋଭନରୁ ତେଣୁ ଦାୟବଦ୍ଧତା ବା କମିଟ୍‌ମେଣ୍ଟ୍ ପ୍ରତି ଅଶ୍ରଦ୍ଧା । କିନ୍ତୁ, ଦାୟବର୍ଜନ ମାନେ ନିଷ୍କ୍ରିୟତା; କୋଉ ବାଟରେ ଯିବେ, ସେ ବିଷୟରେ ଅନିଶ୍ଚୟତା, ଯୋଉ ଅନିଶ୍ଚୟତା ଅଗୋଚରରେ ଅନେକ କୁକର୍ମ-ଅପକର୍ମ କରାଇନିଏ । ଅବ୍ୟବସ୍ଥିତଚିତ୍ତ ଏଇ ବୁଦ୍ଧିଜୀବୀ ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ହିଁ ମାନସସନ୍ତାନ । କିନ୍ତୁ ଯୋଉ ନବ୍ୟବିତ୍ତବାନ୍, ଇଂରେଜୀଶିକ୍ଷାରେ କୃତବିଦ୍ୟ, ସାହେବଙ୍କ ସହିତ ସଂଳାପରତ, 'ହୁତୋମ୍'ଙ୍କ ବିବରଣରେ କେହିହେଲେ ଅବ୍ୟବସ୍ଥିତଚିତ୍ତ ନୁହେଁ । ଜାଣନ୍ତି, ଇଂରେଜ୍ ପ୍ରଭୁତ୍ୱ ପ୍ରତି ଜନସାଧାରଣ ବିମୁଖ; ଏବଂ ବିମୁଖ ବୋଲି, ସିପାହୀଙ୍କ ବିଦ୍ରୋହ ପ୍ରତି ଦେଶବ୍ୟାପୀ ସମର୍ଥନ । ଜାଣନ୍ତି, ଆମେରିକା ବି ଏକଦା ଥିଲା ବ୍ରିଟିଶ୍ କଲୋନି, ଯୁଦ୍ଧକରି ବ୍ରିଟିଶ୍‌କୁ ହଟାଇଦେଇଚି; କିନ୍ତୁ ସେମାନେ ଗୋରାଲୋକ, ଭାଷା ଧର୍ମ ଓ ସ୍ୱଭାବଚରିତ୍ରରେ ଇଂରେଜ୍‌ଠୁ ଅଲଗା ନୁହେଁ । ଭାରତରେ ଇଂରେଜ୍ ହୁଏତ ଆଶଙ୍କା କରୁଚି, ଶହେବର୍ଷବ୍ୟାପୀ ସହବାସ ଫଳରେ ଭାରତର ଶିକ୍ଷିତ ଲୋକ (ମ୍ୟାକଲେଙ୍କ ଭାଷାରେ, ଗାତ୍ରବର୍ଣ୍ଣରେ ଭିନ୍ନ, କିନ୍ତୁ ଶିକ୍ଷାଦୀକ୍ଷା ମନନସାଧନ ସ୍ୱଭାବଚରିତ୍ରରେ ଇଂରେଜ୍‌ଠୁଁ ଅଲଗା ନୁହେଁ । ଭାରତରେ ଇଂରେଜ୍‌ଠାରୁ ଅଭିନ୍ନ) ହୁଏତ ଆମେରିକାନ୍ ବିଦ୍ରୋହୀଙ୍କ ଭଳି ଗଣପ୍ରତିରୋଧର ନେତୃତ୍ୱ ନେବ । ଆହୁରି

ମଧ୍ୟ ଜାଣନ୍ତି, ଏ ଆଶଙ୍କା ଅମୂଳକ ନୁହେଁ କି ଅପ୍ରତ୍ୟାଶିତ ନୁହେଁ । 'ହୁତୋମ୍' ନିଜେ ସେଇ ଗୋଷ୍ଠୀର ଲୋକ; ଜମିଦାରସନ୍ତାନ, ଛାପାଖାନାର ମାଲିକ, ଇଂରେଜୀ ଶିକ୍ଷାରେ ଶିକ୍ଷିତ । ବକ୍ରୋକ୍ତି ପ୍ରୟୋଗକରି ରସିକତା କରିଚନ୍ତି, ବଙ୍ଗାଳୀ କୁଆଡ଼େ କହିଲେ, ଆମେ ତ ମେଣ୍ଢା, ଆମେରିକାନ୍‌ଙ୍କ ଭଳି ହେବୁ ଫେର୍ କେମିତି ? ସାହେବ କଣ ଏଇକଥା ଶୁଣି ଲୁଟ୍‌ତରାଜ୍ ବନ୍ଦକରିଦେଲେ ? ଉଠାଇଦେଲେ ଛାପାଖାନା ଉପରେ ନିଷେଧାଜ୍ଞା ?

କଲିକତା ସେତେବେଳେ ଅଖଣ୍ଡ ଭାରତର ରାଜଧାନୀ; ଅଦୂରରେ ବ୍ୟାରାକ୍‌ପୁରଠିଁ ସୈନ୍ୟଛାଉଣି । ଯୋଉ ଭାରତୀୟ, ହିନ୍ଦୁ କି ମୁସଲ୍‌ମାନ୍ ସିପେଇ, ଚାକିରୀକରିବାକୁ ବାହାରିଥିଲେ, ସମସ୍ତେ ଚଷାଭୁଷା ଘରର ପିଲା । ତାଙ୍କରି ଭିତରୁ ମଙ୍ଗଳ ପାଣ୍ଡେ ଗୁଳିମାରିଥିଲା ଗୋରାଅଫିସର୍‌କୁ । ତହିଁଉତାରୁ ତ ମିଉନିଟି ! ସେଥିରେ ହିନ୍ଦୁ ଥିଲେ, ମୁସଲ୍‌ମାନ୍ ବି ଥିଲେ । କଲିକତାର ଇଣ୍ଟେଲେକ୍‌ଚୁଆଲ୍‌ଙ୍କ ଯୁକ୍ତି ଥିଲା: ଦେଖ, ଏମାନେ ମଳିମୁଣ୍ଡିଆ ଲୋକ, ଜମିଜମା ନାହିଁ କି ବେପାରବ୍ୟପାର ନାହିଁ, ଲଢ଼ାଇରେ ପ୍ରାଣଦେବାକୁ ଡରିବେ କାହିଁକି ? ପ୍ରାଣ ଛଡ଼ା ତ ଆଉକିଛି ହରାଇବା ଭୟନାହିଁ ! ଆମକୁ ତ ତମେ ରଜା-ଜମିଦାର କରିଚ, ଇଂରେଜୀ ଶିଖାଇ ହାକିମହୁକୁମା କରିଚ, ତମ ସାଙ୍ଗରେ ବେପାରବଣିଜକରି ସହର ଭିତରେ ଇମାରତ୍ ତୋଳିଛୁଁ । ଓୟାଜିଦ୍ ଅଲି ଶାହାକୁ ଲକ୍ଷ୍ନୌରୁ ବାନ୍ଧିଆଣିଚ: ଏଥର ଦେଖ, ବବୁର୍ଚି-ଖାନ୍‌ସମା ବାଇଜି-ବେଗମ୍ ବିବାକ ଉଠିଆସିବେ ଲକ୍ଷ୍ନୌରୁ କଲିକତା; ଆମେ ବି ହବୁଁ ନବାବ୍-ବାଦ୍‌ସା । କିନ୍ତୁ ତମେ ରହିଥିଲେ ତ ଆମେ ହେବୁଁ ଏ ଦେଶର ଉପଶାସକ ! ଇଂରେଜ୍ ବୁଝିଲା, ମୂଳକଥା ବ୍ୟକ୍ତିଗତ ସଂପତ୍ତି ଓ ତଦ୍‌ଲବ୍ଧ ଅବାରିତ ମୁନାଫା । ସେଥିରେ ଆଞ୍ଚ ନଲାଗିଲେ ଭାରତର ଶିକ୍ଷିତ ମଧ୍ୟବିତ୍ତ ବିଦ୍ରୋହକରିବନାହିଁ; ବରଂ ହେବ ସାମ୍ରାଜ୍ୟର କୋଲାବରେଟର୍ । ଜନସାଧାରଣଙ୍କ ପ୍ରତି ବିଶ୍ୱାସଘାତକତା କରିଥିବା ଏଇ ଲୋକମାନଙ୍କ ଅହଂକାରକୁ ସ୍ଫୀତକରିବା ସକାଶେ ଆରମ୍ଭହେଲା ତେଣୁ ଏଡଉଆଡ଼ ସଇଦ୍ ଯାହକୁ କହିଚନ୍ତି *ଓରିଏଣ୍ଟାଲିଜ୍ମ* ; ରବୀନ୍ଦ୍ରନାଥଙ୍କ ଭାଷାରେ, ମୋକ୍ଷମୁଲାର୍ ବଲେଛେ ଆର୍ଯ୍ୟ / ତାଇ ଭୁଲିୟାଛି ସକଲ କାର୍ଯ୍ୟ । ଇତିହାସର ଏଇ ଧାରାବାହିକତାରେ ଆଜି ବି କଣ ଛେଦପଡ଼ିଚି ?

ପଡ଼ିନାହିଁ, କାହିଁକିନା, ନଗରନିର୍ଭର, ଇଂରେଜୀ ଭାଷା ଓ ଶିକ୍ଷାରେ ଦୀକ୍ଷିତ, ପାଶ୍ଚାତ୍ୟାଭିମୁଖୀ ମଧ୍ୟବିତ୍ତଶ୍ରେଣୀ ହିଁ ଭାରତବର୍ଷର ଆଧୁନିକତାର ଅଗ୍ରଦୂତ; ସେଇମାନେ ମଧ୍ୟଯୁଗର ସାମନ୍ତତନ୍ତ୍ର, ସ୍ମୃତି-ପୁରାଣ-ଶାସିତ ପୁରୋହିତତନ୍ତ୍ରର ପ୍ରାୟାନ୍ଧକାରରୁ ଦେଶକୁ ମୁକ୍ତକରି ସମସାମୟିକ ପୃଥିବୀ ସହିତ ଆତ୍ମୀୟତା ବନ୍ଧନରେ

ଯୁକ୍ତକରିଚନ୍ତି । ମଧ୍ୟଯୁଗୀୟ କୂପମଣ୍ଡୂକତାରୁ ଉଦ୍ଧାରର ଉପାୟ, ଇତିହାସର ସେଇ ସଂଧିକ୍ଷଣରେ ଅନ୍ତତଃ, ମନେହୋଇଥିଲା ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ, ପ୍ରଯୋଗବିଦ୍ୟା ଓ ଚିନ୍ତା-ଭାବନା-କଳ୍ପନା (=ଜୀବନଦର୍ଶନ)ରେ ଇଂରେଜୀଶିକ୍ଷାର ପ୍ରସାର । ସନ୍ଦେହ ନାହିଁ, ଏଭଳି ଆବିଷ୍କାର ମୂଳରେ କାମକରିଚି ନିଜ ଶ୍ରେଣୀଆଧିପତ୍ୟ ବିସ୍ତାରର ଅଦମ୍ୟ ଅଭିଳାଷ । ଇତିହାସପ୍ରସୂତ ଏଇ ମଧ୍ୟବିତ୍ତଶ୍ରେଣୀ ଯେ ସାଂପ୍ରତିକ ଭାରତର ସାମାଜିକ ନେତୃତ୍ୱରେ ଅଧିଷ୍ଠିତହେଲା, ତା ମୂଳରେ ମଧ୍ୟ କର୍ମରତ ଏକାରକମ ଉଚ୍ଚାକାଂକ୍ଷା । ଏ ଧରଣର ଆଧୁନିକୀକରଣ ପ୍ରକୃତରେ ଥିଲା ଔପନିବେଶିକତାର ପରିପନ୍ଥୀ, କାହିଁକିନା, ବିଲାତର ଶିଳ୍ପବିପ୍ଳବ ଭାରତରେ ଘଟିବାକୁ ଦେଇନାହିଁ ଇଂରେଜ୍; ରେଳଗାଡ଼ି, ଟେଲିଗ୍ରାଫ୍ ଥିଲା ପ୍ରଶାସନର ପ୍ରୟୋଜନ, ବିଜ୍ଞାନ ବା ପ୍ରୟୋଗବିଦ୍ୟା ପ୍ରସାର ସକାଶେ ନୁହେଁ । ଫଳରେ, କେବଳ ଅନୁକରଣ କରିବାକୁ ଶିଖିଲୁଁ, ମୌଳିକ କିଛି ଗଢ଼ିପାରିଲୁଁନାହିଁ । ରାମମୋହନ ରାୟ ପ୍ରଭୃତିଙ୍କ ଲେଖା ପଢ଼ିଲେ ମନେହୁଏନା ଭାରତର ସାମାଜିକ ନେତୃତ୍ୱରେ ରହିଥିବା ଲୋକ ସତକୁସତ ମୌଳିକତା ଚାହିଁଥିଲେ; ଚାହିଁଥିଲେ ସଂସ୍କାର, ଯା କାର୍ଯ୍ୟକ୍ଷେତ୍ରରେ ଅନୁକରଣ ମାତ୍ର । ଫଳରେ, ମାର୍କ୍ସ ଯେମିତି ସମାଜ-ରୂପାନ୍ତରର ଜୈବକ୍ରିୟା ଦେଖାଇଚନ୍ତି, ଏକ ଅବସ୍ଥାରୁ ଅନ୍ୟ ଏକ ଉନ୍ନତ ଅବସ୍ଥାକୁ ଉତ୍ତରଣ, ଭାରତରେ ସେ ପ୍ରକ୍ରିୟା ସାମନ୍ତତନ୍ତ୍ରରେ ହିଁ ଅଟକି ରହିଗଲା । ଆମ ବୁଦ୍ଧିଜୀବୀ, ସେଥିପାଇଁ, ମଧ୍ୟଯୁଗର ରାଜାରାଜୁଡ଼ାଙ୍କ ପାରିଷଦ ସ୍ତରରୁ ଉପରକୁ ଉଠିପାରିନାହାଁନ୍ତି । ବିବର୍ତ୍ତନର ଯୋଉ ପର୍ଯ୍ୟାୟରେ ରହିବ ସମାଜ, ତାର ମେଧାକର୍ମୀଙ୍କ କର୍ମକାଣ୍ଡରେ ସେଇ ପର୍ଯ୍ୟାୟ ପ୍ରତିଫଳିତହେବା ସ୍ୱାଭାବିକ । ସ୍ୱାଭାବିକ ବୋଲି, ସମାଜକୁ ମାର୍କ୍ସ କହିଚନ୍ତି 'ଫର୍‌ମେସନ୍', ଅର୍ଥାତ୍ ଫିନିସ୍‌ଡ୍ ଫର୍ମ ନୁହେଁ, ତିଆରି ଚାଲିଚି । ପାଶ୍ଚାତ୍ୟ ସମାଜର ବିବର୍ତ୍ତିତ ସ୍ତରରେ ନପହଞ୍ଚି ଆମ ଲୋକ ଯଦି ସାହେବଙ୍କ ଭଳି ହେବାକୁ ମନକରିବେ, ଅନୁକରଣ ଛଡ଼ା ଆଉ ଉପାୟ କଣ ? ରାଜନୀତିରେ ଯେମିତି, ସଂସ୍କୃତିରେ ସେମିତି । କାହିଁକିନା, ଦୁଇଟାଯାକ ପରସ୍ପର ଛନ୍ଦାଛନ୍ଦି; ରାଷ୍ଟ୍ରର ଚରିତ୍ର ବହନକରେ ସଂସ୍କୃତି, ରାଷ୍ଟ୍ରର ଚରିତ୍ର ବଦଳିଲେ ସଂସ୍କୃତିର ଚରିତ୍ର ବି ବଦଳିଯାଏ । ବ୍ରିଟିଶ୍-ଭାରତ ଓ ସ୍ୱାଧୀନ ଭାରତ ଭିତରେ ବଦଳିଯିବାର ବଡ଼ କୋଉ ଲକ୍ଷଣ ଅଦ୍ୟାବଧି ପରିଲକ୍ଷିତ ହୋଇନାହିଁ । ମଧ୍ୟବିତ୍ତର ହିଗେମନି ପରି ରାଷ୍ଟ୍ରଗଠନ ଓ ସଂସ୍କୃତି ପରିଚାଳନାରେ ରହିଚି ତଥାପି ଅବିଦୀର୍ଣ୍ଣ ଧାରାବାହିକତା । ବିକାଶର ଜୈବଶୃଙ୍ଖଳାକୁ ଅବରୁଦ୍ଧକରି ରଖିଚି ଅନୁକରଣ-ପ୍ରବଣତା । ସଂପତ୍ତିର ବ୍ୟକ୍ତିଗତ ମାଲିକାନା ହୁଏତ ସେଇ ଅନୁକରଣ ପ୍ରବଣତାର ଅବଧାରିତ ଉପସର୍ଗ । ଯାବତ୍ ସଂପତ୍ତି କିନ୍ତୁ ମାଟି-ପାଣି-ପବନ-ନିଆଁରୁ ବାହାରିଚି;

ଏଗୁଡ଼ାକ ପ୍ରକୃତିର ଦାନ; ମଣିଷ ସୃଷ୍ଟିକରିନାହିଁ, ହାତମୁଠାରେ ବାନ୍ଧିରଖିବାକୁ ତେବେ ବ୍ୟାକୁଳତା କାହିଁକି ? ଅନ୍ୟ କାମକୁ ମନଦିଅ । କିଏ କହିବ କାହାକୁ ? ଏ ପ୍ରବଣତା କିନ୍ତୁ ଶିକ୍ଷାକ୍ଷେତ୍ରରେ ସବୁଠୁଁ ବେଶି ପ୍ରକଟ; ଶ୍ରେଣୀଗୃହର ପଠନପାଠନ ପାଖରୁ ଗବେଷଣା କି ଅନୁସଂଧାନ ସବୁଠି ପରିବ୍ୟାପ୍ତ ଇଉରୋପ୍-ଆମେରିକାର ଅନୁମୋଦନ ପାଇବାକୁ ଆତୁର ଉତ୍କଣ୍ଠା । ଅର୍ଥାତ୍ ଜ୍ଞାନଚର୍ଚ୍ଚା ପଛରେ ଯୋଉ ଉଦ୍‌ବେଗ କର୍ମରତ ତା ସହିତ ନିଜ ସମାଜର ସମ୍ପର୍କ ପ୍ରାୟ ଅନୁପସ୍ଥିତ । କେମ୍ବ୍ରିଜ୍‌ରୁ ଫିଜିକ୍ସ ପଢ଼ି ଆସି ମହଲାନବିସ୍ ବନାଇବେ ଅର୍ଥନୀତିର ପଞ୍ଚବାର୍ଷିକ ଯୋଜନା; ମଡେଲ୍ ଆଣିବେ ସୋଭିଏଟ୍ ଋଷିଆରୁ ! ଭାରତର ଧର୍ମଦର୍ଶନକୁ ଇଂରେଜୀ ଗଦ୍ୟରେ ଲେଖିପକାଇଚନ୍ତି ବୋଲି, ରାଧାକ୍ରିଷ୍ଣନ୍ ବିବେଚିତହେବେ 'ଫିଲ୍‌ଜଫର୍' ! ବିଶୁଦ୍ଧ ବିଜ୍ଞାନର ଅବଶ୍ୟ ଦେଶ-ବିଦେଶ ନାହିଁ, ଦୁନିଆସାରା ସେ ବିଦ୍ୟା ଅଦ୍ୱୈତ । କିନ୍ତୁ ପ୍ରୟୋଗବିଦ୍ୟା ଯେହେତୁ ବ୍ୟାବହାରିକ ବିଜ୍ଞାନ, ସ୍ଥାନକାଳ ପ୍ରାସଙ୍ଗିକତା ଅବଶ୍ୟମ୍ଭାବୀ । ଦେଶ ସ୍ୱାଧୀନହେବା ଉତାରୁ ଏ ଦିଗରେ କାଣ୍ଡିକାଣ୍ଡି ଟଙ୍କା ଖର୍ଚ୍ଚକରାଯାଇଚି; ଯେପରି, ବିଜୁ ପଟ୍ଟନାୟକଙ୍କ କୋଇଲାରୁ ପ୍ରେଟ୍ରଲ୍ କାଢ଼ିବା ସଂକଳ୍ପ । ସବୁଠି କିନ୍ତୁ ବ୍ୟର୍ଥତା, କାହିଁକିନା, ଅନୁକରଣକରି କୋଉହେଲେ ଜାତି ସ୍ୱନିର୍ଭର ହୋଇନାହିଁ । ସମାଜବିଦ୍ୟାର କ୍ଷେତ୍ର ମଧ୍ୟ ବ୍ୟତିକ୍ରମ ନୁହେଁ । ବିଦେଶୀ ଶକ୍ତି ଓ ଶାସକ ଯେମିତି ଚାହିଁଚି, ସେମିତି ଭାବିଛୁଁ କି କରିଛୁଁ । ଦେଶହିତୈଷୀ ଭାବୁକ କହିଚନ୍ତି, ମନର ସ୍ୱାଭାବିକ ମନୀଷା, ତା ଫଳରେ, କ୍ରମଶଃ କ୍ଷୀଣ ହୋଇଯାଇଚି; ଅନ୍ୟର ଇଚ୍ଛା, ଅନ୍ୟର ଶିକ୍ଷା, ଅନ୍ୟର କଥା (ଭାଷା) ଆମକୁ ନିଜ ସାମର୍ଥ୍ୟରେ ପ୍ରକୃତିସ୍ଥ ହେବାକୁ ଦେଇନାହିଁ । ଏ ଅବସ୍ଥା କଣ ବଦଳିଯାଇଚି ଏକ୍ଷଣି ? ବରଂ ବିଦେଶର ଅନୁକରଣ ଏତେବେଶି ବଢ଼ିଯାଇଚି ଯେ ପରୋକ୍ଷରେ ମାନିନେଇଛୁ କ୍ୟାପିଟାଲିସ୍ମର ଶ୍ରେଷ୍ଠତ୍ୱ; ଏବଂ ପଚାରିଲେ କହୁଛୁ, ଏସବୁ ତ ବିଶ୍ୱଜନୀନ, ଇଉନିଭର୍ସାଲ୍ ! କଣ ପଞ୍ଚଭୂତ ? ପାଶ୍ଚାତ୍ୟ ଅଭିଜ୍ଞତା ଉପରେ ଆମ ଜ୍ଞାନଚର୍ଚ୍ଚା ଯେହେତୁ ମୂଳତଃ ନିର୍ଭରଶୀଳ, କଦବା କେମିତି ବ୍ୟତିକ୍ରମ ଦେଖିଲେ ମନେହୁଏ ବିରାଟ କୃତିତ୍ୱ, ଯେପରି କୋସମ୍ବୀଙ୍କ ଇତିହାସବିଶ୍ଳେଷଣ; ଏପରିକି, ଶ୍ରୀନିବାସଙ୍କ 'ସଂସ୍କୃତାୟନ' ଆବିଷ୍କାର କି ରାମାନୁଜନ୍‌ଙ୍କ ଗଣିତଚର୍ଚ୍ଚା । ଏ ଅବସ୍ଥାକୁ ସଙ୍କଟ କହିବା ଅର୍ଥ, ଇତିହାସରୁ ଦିଶୁଚି, ଅନ୍ୟତର ସଭ୍ୟତା / ସଂସ୍କୃତିର ଆମଦାନି ବା ଧାରକରି କୌଣସି ଧ୍ୟାନଧାରଣା, ଯୁକ୍ତିପଦ୍ଧତି, ଛାଞ୍ଚ କି କଳ୍ପ, ବେଶିଦିନ କାହାର ଆତ୍ମିକ ଉତ୍କର୍ଷ ଘଟାଇପାରିନାହିଁ । ଯେପରି, ଏଇ କଲିକତା ସହରରେ ଲିଟ୍ଲ ଥିଏଟର୍ ଆନ୍ଦୋଳନ କି ହଙ୍ଗ୍ରୀ ଜେନେରେସନ୍ କବିତା । ପାଞ୍ଚଦର୍ଶବର୍ଷ ଭିତରେ ଚିହ୍ନବର୍ଣ୍ଣ ବି ଖୋଜିଲେ ମିଳୁନାହିଁ;

ସାହିତ୍ୟକୁ ବଞ୍ଚାଇରଖିଚି ଗଣମାଧ୍ୟମ ସାଙ୍ଗକୁ ପୁରସ୍କାର ନେଟ୍‌ୱର୍କ, କାହିଁକିନା, ଦେଶର ସାକ୍ଷର ସଂଖ୍ୟା ଶତକଡ଼ା ତିରିଶରୁ ବେଶି ନୁହେଁ । ଧନବିଜ୍ଞାନରେ ଏ ଅବସ୍ଥାକୁ ଚିହ୍ନିତକରାଯାଏ 'ଅଣ୍ଡରଡ଼ିଭେଲପ୍‌ମେଣ୍ଟ୍' । ବୁଦ୍ଧିର ଦାସତ୍ୱ । ବକ୍ତବ୍ୟକୁ ସ୍ପଷ୍ଟକରିବା ଦରକାର; 'କଜିଟେସନ୍' ଆଉ 'ଥଟ୍', ଉଭୟର ଓଡ଼ିଆ ପ୍ରତିଶବ୍ଦ ପ୍ରାୟ ସମାର୍ଥବୋଧକ । ନାନାଦି ବିଷୟରେ ଭାବୁକ ଚିନ୍ତାକରିପାରନ୍ତି, କିନ୍ତୁ ସେଭଳି ଅନୁଧ୍ୟାନର ନିର୍ଦ୍ଦିଷ୍ଟ ପ୍ରେକ୍ଷିତ ବା କଣ୍ଟେକ୍‌ସ୍ଟ ଥାଏ; ମାତ୍ର 'ଥଟ୍' ସବୁବେଳେ ପ୍ରେକ୍ଷିତକୁ ଅତିକ୍ରମ କରେ । ଅର୍ଥାତ୍, ସାଂସାରିକ ବିବେଚନା ବା ଉଦ୍‌ବେଗରୁ ଥଟ୍ ଉତ୍ସାରିତ ହୁଏନା । ପର୍ଯ୍ୟବେକ୍ଷଣ କି ଅଭିଜ୍ଞତା ଯଦି ତାର ଅନୁପ୍ରେରଣା ନୁହେଁ, ପ୍ରାସଙ୍ଗିକ ହେବ କେମିତି ଯେ କୌଣସି ଥଟ୍ ? ସାହିତ୍ୟ-ବିଚାରରେ ଗୋଟାଏ ଶବ୍ଦବନ୍ଧ ବ୍ୟବହାର କରାଯାଏ : ହିଉମାନ୍ କଣ୍ଡିସନ୍ । ଇତିହାସ ଗତିରେ ମଣିଷ ବଦଳିବା ସଙ୍ଗେ ସଙ୍ଗେ ସେ କଣ୍ଡିସନ୍ ମଧ୍ୟ ବଦଳିଯାଏ । ଜୀବନଯାପନର ପ୍ରାତ୍ୟହିକତା ଉର୍ଦ୍ଧ୍ୱରେ ତାର ଅବସ୍ଥାନ, ମାନେ ରୁଟିନ୍ ନୁହେଁ କି ସିଷ୍ଟେମ୍ ନୁହେଁ । ତାର ଏକମାତ୍ର ଉତ୍ସ ଜୀବନ କେମିତି ବିତାଉଛୁଁ ମୃତ୍ୟୁଶାସିତ ଏଇ ଆୟୁକାଳକୁ ବ୍ୟୟ ବା ଅପବ୍ୟୟକରି, ସେ ବିଷୟରେ ଅନ୍ତର୍ଦୃଷ୍ଟି । ହ୍ୟାବରମାସ୍ କହିଚନ୍ତି, 'ଇଉଟୋପିଆନ୍ ଏନର୍ଜି' । ଏ ତେଜୋମୟତା ଉନବିଂଶ ଶତକ ପାରହୋଇ ନିଷ୍ପ୍ରଭ ହୋଇଯାଇଚି ବୋଲି, ଏକ୍ଷଣି ରବ ଉଠିଚି 'ଡେଥ୍ ଅବ୍ ଦି ଇଣ୍ଟେଲେକ୍‌ଚୁଆଲ୍'; ଅର୍ଥାତ୍, ଏକ୍ଷଣି ଭାବୁକ ଆଉ ସ୍ୱପ୍ନ ଦେଖେନା, ତାକୁ ଅହୋରାତ୍ର ଆବୋରି ରହିଚି ରୁଟିନ୍ । ପ୍ରତ୍ୟକ୍ଷ ଘରକରଣା ବାହାରେ ଯୋଉ ଜଗତ୍, ସେ ଜଗତ ତାକୁ ବିବ୍ରତକରେନା । ଭାରତରେ କିନ୍ତୁ ଉନବିଂଶ ଶତକର ତିନି-ଚତୁର୍ଥାଂଶ ଏଭଳି ଢ଼େର୍ ସର୍ଜନଶୀଳ ଲୋକଙ୍କ ତ୍ୟାଗ ଓ ଚିନ୍ତାମହିମାରେ ତେଜୋମୟ, ଯାହାଙ୍କୁ ହଠାତ୍ ସ୍ମରଣକରାଯାଇପାରେ, ଯେପରି ଅରବିନ୍ଦ, ଦାଦାଭାଇ ନାଓରଜୀ କିମ୍ବା ରବୀନ୍ଦ୍ରନାଥ । ଏମାନେ ସମସ୍ତେ ମଧ୍ୟବିତ୍ତ ଓ ଇଉରୋପ-ଆମେରିକା ଚିନ୍ତାଭାବନା ସହିତ ଯଥେଷ୍ଟ ପରିଚିତ । ଅଥଚ ବର୍ତ୍ତମାନର ମଧ୍ୟବିତ୍ତଶ୍ରେଣୀ ଏତେ ସମ୍ଭୋଗପ୍ରବଣ ଯେ ଆତ୍ମସନ୍ତୁଷ୍ଟି ଗ୍ରାସକରିଚି ବିକଳ୍ପ ଅନ୍ୟ କୋଉ ରିଆଲିଟି ପ୍ରତି ଅନ୍ତର୍ଦୃଷ୍ଟି । ଅର୍ଥାତ୍, ତଥାକଥିତ ଇଣ୍ଟେଲେକ୍‌ଚୁଆଲ୍ ମଧ୍ୟ ଫ୍ରାନ୍‌ସିସ୍ ଫୁକୁୟାମାଙ୍କ ଭଳି ଧରିନେଇଚି, ଇତିହାସର ଅନ୍ବେଷି ଉତାରୁ ଥଟ୍ ମଧ୍ୟ ହୋଇଯାଇଚି ପ୍ରତ୍ନବସ୍ତୁ । ତେବେ, ଗାନ୍ଧି ମଧ୍ୟ ରହିଁଥିଲେ ମଧ୍ୟବିତ୍ତଶ୍ରେଣୀକୁ ସାଧାରଣ ମଣିଷଙ୍କ ବିସ୍ତୃତତର ଭୂମି ଉପରେ ପ୍ରସାରିତକରିବାକୁ । ପାରିନାହାଁନ୍ତି, ଯେହେତୁ ଶ୍ରେଣୀସଂଗ୍ରାମ ବ୍ୟତିରେକେ ପ୍ରିଭିଲେଜ୍ କେହି ଛାଡ଼େନା । ଗାନ୍ଧିଙ୍କ ଅନୁଗାମୀ ମଧ୍ୟ ଛାଡ଼ିନାହାଁନ୍ତି । ଛାଡ଼ିନାହାଁନ୍ତି ବୋଲି, ସ୍ୱାଧୀନ ଭାରତରେ ଏଇ ନଗରନିର୍ଭର,

ଇଂରେଜୀ-ବିଶାରଦ, ପାଶ୍ଚାତ୍ୟାଭିମୁଖୀ, ଅନୁକରଣପ୍ରିୟ ମଧ୍ୟବିତ୍ତର ଆଧିପତ୍ୟ ହୋଇଚି ଦୀର୍ଘାୟିତ । ଅବଶ୍ୟ, ପାଶ୍ଚାତ୍ୟମୁଖୀନତାର ପ୍ରଥମ ଓ ପ୍ରଧାନ ସର୍ତ୍ତ ଥିଲା / ରହିଚି କମିଉନିଜ୍ମର ବିରୋଧ; ଆମେରିକା ସେଥିପାଇଁ ଢ଼ାଳିଚାଲିଚି ଟନ୍ ପଛକୁ ଟନ୍ ଡଲାର୍ ପୃଥିବୀ ତମାମ । ମଧ୍ୟବିତ୍ତର ଶ୍ରୀବୃଦ୍ଧିର ଅନ୍ୟତମ କାରଣ ତେଣୁ ସାମ୍ୟବାଦ-ବିରୋଧୀତା । ଅଥଚ, ସ୍ୱଜାତ୍ୟବୋଧ ମାତ୍ର ଏମାନଙ୍କର ଏକେବାରେ ତାମସିକ । କାରଣ ହୋଇପାରେ, ସହରଗୁଡ଼ାକର ପରିସର ଯେହେତୁ ଆମୂଳଚୂଳ 'କଲୋନାଇଜ୍ଡ୍', ସୃଷ୍ଟିକରିବା ଅବକାଶ ନଥିବା ସାଙ୍ଗରେ ସମାନ; ସ୍ୱଜାତ୍ୟବୋଧ ଆଶ୍ରୟକରିଚି ଗାଁଗଣ୍ଡାକୁ, ଯେପରି, ପ୍ରାୟ ସବୁ ଭାରତୀୟ ଭାଷାରେ ଲେଖାଯାଇଥିବା ଗଳ୍ପଉପନ୍ୟାସ ବିଂଶଶତକର ମଧ୍ୟଭାଗ ପର୍ଯ୍ୟନ୍ତ । ଏବଂ ସେଥିରୁ ଚିହ୍ନିହେବ ଭାରତୀୟ ସମାଜର 'ପ୍ରତିଷ୍ଠିତ ଅଂଶର ମୂଲ୍ୟବୋଧ'; ଓଡ଼ିଶାରେ ଯେମିତି ଫକୀରମୋହନଙ୍କ ପାଖରୁ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ । ସମାଜଟାକୁ ବଦଳାଇବା କଥା କାହାରି ମନକୁ ଛୁଇଁନାହିଁ । ଉଦାର ହୃଦୟର ପରିଚୟ ଅଛି, ଅନାଚାର-ଅତ୍ୟାଚାରର ମୁକାବିଲା ନାହିଁ । ମୁକାବିଲା ନାହିଁ ମାନେ, ବଞ୍ଚିତଲାଞ୍ଛିତର ସ୍ୱାଭାବିକ ପ୍ରତିବାଦ ଯେ ପ୍ରତ୍ୟାଘାତ, ଏକଥା ମୁହଁଖୋଲି କହିବାକୁ ଡରିଚନ୍ତି । ଏଲିଟ୍ ଦୃଷ୍ଟିରେ ଅବଶ୍ୟ ପ୍ରତିବାଦ-ପ୍ରତିରୋଧ ସବୁବେଳେ ଓ ସର୍ବତ୍ର ଲ' ଆ୍ୟାଣ୍ଡ୍ ଅର୍ଡ଼ର ସମସ୍ୟା; ସାହିତ୍ୟର ବିଷୟ ହେବାକୁ ଅଯୋଗ୍ୟ । ପ୍ରତିତୁଳନାରେ, ଜନସାଧାରଣଙ୍କ ଅଧସ୍ତନ ସାମାଜିକ ଅବସ୍ଥା ଯେ ସଂପତ୍ତିର ଷ୍ଟ୍ରକ୍ଚର୍, ଆଇନ୍‌କାନୁନ୍‌ର ବିଧିନିଷେଧ, ଧର୍ମବୋଧର ଆତିଶଯ୍ୟ ଆଉ ସର୍ବବ୍ୟାପୀ ଲୋକାଚାର ଦ୍ୱାରା ଗଠିତ, ସାହିତ୍ୟିକମାନେ ବୁଝିବାକୁ ସମର୍ଥ ହୋଇନାହାନ୍ତି କୋଉଠି ।

ବାକି ରହିଲା ସାମ୍ୟବାଦବିରୋଧିତା । ମାତ୍ର ଗୋଟିଏ ଉଦାହରଣଦେଲେ ଯଥେଷ୍ଟ ହେବ; ତେଲେଙ୍ଗାନାର କୃଷକବିଦ୍ରୋହ । ସଶସ୍ତ୍ର ଅବଶ୍ୟ । ଜାତ୍ୟାଭିମାନୀ ଏଲିଟ୍ ଯେତେବେଳେ ଇଂରେଜ୍ ସାଙ୍ଗରେ କ୍ଷମତାହସ୍ତାନ୍ତରର ଦର କଷାକଷି କରୁଚନ୍ତି, ସେତିକିବେଳେ ଭାରତର ସର୍ବବୃହତ୍ ଦେଶୀୟ ରାଜ୍ୟ ହାଇଦରାବାଦରେ କମିଉନିଷ୍ଟ୍ ନେତୃତ୍ୱରେ କୃଷକଅଭ୍ୟୁତ୍ଥାନ ସଂଗଠିତହୋଇଚି ଜମିରୁ ଉଚ୍ଛେଦ ଓ ବଳପୂର୍ବକ ଖଜଣା ଅସୁଲ୍ ବିରୋଧରେ । ୧୯୪୭ ବେଳକୁ ଯୋଗଦେଇଥିଲେ ୧୫୦ ଗାଁ, ଦେଶ ସ୍ୱାଧୀନହେବା ଉତାରୁ ଆହୁରି ୧୫୦୦ ଗାଁ ପଶିଛନ୍ତି ଜମାୟେତ୍ ଭିତରକୁ; ଉଦ୍ଦେଶ୍ୟ ନିଜାମ୍‌କୁ ଗାଦିଚ୍ୟୁତକରିବା । ୪୮ ବେଳକୁ ଯେତେଗୁଡ଼ା ଜାଗାରେ ଗେରିଲା ମୁକ୍ତାଞ୍ଚଳ ପ୍ରତିଷ୍ଠାକରିଥିଲେ, ଜନଅଦାଲତ ଆଉ ଜନଯୋଦ୍ଧା ବାହିନୀ ସେଠି ତିଆରିହୋଇସାରିଚି, ଏବଂ ସେତିକିବେଳକୁ ନେହ୍‌ରୁ / ପଟେଲ୍

ସୈନ୍ୟବାହିନୀକୁ ପଠାଇଦେଲେ, ଖାଲି ନିଜାମ୍‌କୁ ବିତାଡ଼ିତକରିବାକୁ ନୁହେଁ, କୃଷକଅଭ୍ୟୁତ୍ଥାନକୁ ମଧ୍ୟ ଧୂଳିସାତ୍ କରିଦେବା ପାଇଁ । ନିଜାମ୍‌ଙ୍କର ବିଶେଷକିଛି କ୍ଷତିହୋଇନାହିଁ; ବିରାଟ ଅଙ୍କର ପ୍ରିଭିପର୍ସ ସାଙ୍ଗକୁ ସ୍ୱାଧୀନ ଭାରତରେ ହୋଇଚନ୍ତି 'ରାଜପ୍ରମୁଖ' । ତାଙ୍କ ଅତ୍ୟାଚାରୀ ହାକିମ ଓ ପୁଲିସ୍ ବି ନିଜ ପଦପଦବୀରେ ବହାଲ୍‌ରହିଚନ୍ତି, ଶୋଷଣପୀଡ଼ନର ମୂଳାଧାର ଜମିଦାର ଓ ମହାଜନ ମଧ୍ୟ ଦଣ୍ଡପାଇ ନାହାନ୍ତି ଜଣେହେଲେ । ମାତ୍ର ଭାରତୀୟ ସୈନ୍ୟବାହିନୀ ଯୋଉଠି ମୁକ୍ତାଞ୍ଚଳକୁ ପଶିଚି, ଜମିଦାର / ମହାଜନ ମାନଙ୍କୁ ଡାକିଆଣି ଜମି, ଧାନ, ଅସ୍ଥାବର ସଂପତ୍ତି ଚାଷୀଙ୍କ ହାତରୁ ଜବତ୍‌କରି ଫେରାଇଦେଇଚି । ତେଲେଙ୍ଗାନାର ଯୋଉ ପାଞ୍ଚଟା ଜିଲ୍ଲା କୃଷକ ଦଖଲ କରିନେଇଚନ୍ତି, ସେଠି ବିପ୍ଳବକୁ ଭଣ୍ଡୁର୍ କରିଦେଇଥିବା କାରଣରୁ ନିଜାମ୍‌ଙ୍କୁ କରାଯାଇଚି ପୁରସ୍କୃତ । ଦିନ ପରେ ଦିନ ସେନାବାହିନୀ ଗାଁଗୁଡ଼ାକ ଉପରେ ଚଢ଼ାଉକରି ଘନଘନ ବଳାତ୍କାର ଧର୍ଷଣ ଆଉ ନରହତ୍ୟାର ଯୋଉ ତାଣ୍ଡବ ଲଗାଇଦେଇଚି, ସୁନ୍ଦରାୟାଙ୍କ *Telengana People's Struggle and its Lessons (1972)* ପୁସ୍ତକରେ ତା ବିବରଣ ଏହିପରି : In Manukota-khammam talukas 10-25 villages were raided at a time. Hundreds of people used to be severely beaten up and made to run in front of running lorries. Whoever could not run ahead of lorries were tied behind lorries and dragged..... In Loyopalli and surrounding villages, people were thrown into thorny bushes and were trampled upon by the military with their boots on.... the whole place was splattered with blood. These brutes raped 20 women in Balapala, 70 in Seema-Lapadu of Ilendu taluka, 80 in Narmeta and Nanganurul, villages of Jangam taluka.... In Nereda 70 women were stripped naked, chameleons tied to their thighs and chilli powder thrown into the wounds.....Comrade Rangayya of Chandupalli was tied to a cart and burnt alive. Comeade Ganji Satyanaraya of Malkapuram... and Comrade Harijan Muthayya had their eyes gouged out, testicles cut and thrust into their mouths, and later hacked to pieces....

ସତୁରି ଦଶକରେ, ପଶ୍ଚିମବଙ୍ଗରେ ପ୍ରାୟ ଗୋଟାଏ ପ୍ରଜନ୍ମର ଯୁବକଯୁବତୀ କିଶୋରୀଙ୍କୁ ନକ୍ସଲଦମନ ଆଳରେ ମାରିଦିଆଗଲା କିମ୍ବା ପଙ୍ଗୁ କରିଦିଆଗଲା, ବିଲାତଫେରନ୍ତା କମିଉନିଷ୍ଟ (ଜ୍ୟୋତି ବସୁ / ଇନ୍ଦ୍ରଜିତ୍ ଗୁପ୍ତ), ବିଲାତଫେରନ୍ତା

ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥଶଙ୍କର ରାୟଙ୍କୁ ପ୍ରଶ୍ନ ପର୍ଯ୍ୟନ୍ତ ପଚାରିନାହାନ୍ତି କେହି । ଆଜି ଯେତେବେଳେ ମାଓବାଦୀଦମନ ନାଁରେ ହେଲିକପ୍ଟର୍‌ରୁ ବୋମା ପକାଯାଉଚି, ଏଲିଟ୍ ସଂପ୍ରଦାୟ ରହିଚି ନୀରବ; ଯଦିଓ ଜନସାଧାରଣଙ୍କ କଷ୍ଟାର୍ଜିତ ଟିକସ ପଇସାରୁ ଏ ଦମନଲୀଳାର ବ୍ୟୟଭାର ମେଣ୍ଟାଉଚି ସରକାର । କାହା ସ୍ୱାର୍ଥରେ କିମ୍ବା କାହାକୁ ସୁରକ୍ଷାଦେବାକୁ ରକ୍ତକ୍ଷୟୀ ଏ ଆୟୋଜନ ? ଇଣ୍ଟେଲେକ୍‌ଚୁଆଲ୍ ପଚାରୁଚନ୍ତି କି କୋଉଠି ? 'ହୁତୋମ୍' ଅନ୍ତତଃ ବିଦ୍ରୂପକରିଥିଲେ ଏଭଳି ନିଷ୍କ୍ରିୟତାକୁ ! ପୁଣି ମାର୍ଶାଲ୍ ଲ' ଜାରିହୋଇଥିବା ସତ୍ତ୍ୱେ, ପରାଧୀନ ଭାରତରେ ।

ଅଥଚ ନଗରନିର୍ଭର ଇଂରେଜୀ-ଶିକ୍ଷିତ ମଧ୍ୟବିତ୍ତ ଏଲିଟ୍ ବିକ୍ଷିପ୍ତ ଏକ ମୁଷ୍ଟିମେୟ ଶ୍ରେଣୀ; ଯାର ସାମାଜିକ ନେତୃତ୍ୱ ଉନବିଂଶ ଓ ବିଂଶଶତକ ସାରା ଲୋକ ମୋଟାମୁଟି ମାନିନେଇଚନ୍ତି; ଖାଲି ମାନିନେଇ ନାହାଁନ୍ତି, 'ସଂସ୍କୃତାନୟ' ପ୍ରକ୍ରିୟାରେ ଅନୁକରଣକରିଚନ୍ତି ଅନେକ । କିନ୍ତୁ ଗ୍ଲୋବାଲାଇଜେସନ୍ ପର୍ବରେ ପରିଲକ୍ଷିତହେଉଚି ଏଇ ସ୍ୱଳ୍ପକାୟ ଶ୍ରେଣୀର ସାଂଘାତିକ ଅବକ୍ଷୟ; ଏବଂ ଏପରି ଏକ ନୂତନ ନେତୃତ୍ୱର ଅଭ୍ୟୁଦୟ ଯାର ଚେର ରହିଚି ମାଟିର ଗହୀରରେ; ଏବଂ ଯେହେତୁ ତାର ମାନସିକତା ଆଧୁନିକ ଓ ବୃହତ୍ତର ମାନବ ସମାଜ ସମ୍ବନ୍ଧରେ ସଚେତନ, ପରିବର୍ତ୍ତନ ଘଟାଇବାକୁ ହୁଏତ ସମର୍ଥ । ପରିବର୍ତ୍ତନ ସହସା ଆସେନା; ଲୋକ କାମନାକଲେ ମଧ୍ୟ,ଦରକାରହୁଏ ସୁଦୀର୍ଘ ପ୍ରସ୍ତୁତି । କାହିଁକିନା, ମଧ୍ୟବିତ୍ତଶ୍ରେଣୀର ଚେହେରା ଓ ଚରିତ୍ରରେ ଅବକ୍ଷୟ ଦେଖାଦେଲେ ସୁଦ୍ଧା, ଆଧିପତ୍ୟର ଯୋଉ ଇନ୍‌ଫ୍ରାଷ୍ଟ୍ରକ୍‌ଚର ମଧ୍ୟବିତ୍ତ ତିଆରିକରିଚି ଦେଢ଼ଶ'ବର୍ଷଧରି, ତା ଦିହରେ ଆଘାତ ଲାଗିନାହିଁ ବିନ୍ଦୁମାତ୍ର । ଯେପରି, ଦେଶର ସବୁଠୁ ବଡ଼ ଉତ୍ପାଦନ କ୍ଷେତ୍ର ରିହିଚି କୃଷିକର୍ମ, ଏବଂ କୃଷିର ପ୍ରଯୁକ୍ତିଗତ ଉନ୍ନତି ଘଟିଲେ ସୁଦ୍ଧା କୃଷକ ରହିଚି ଦୀନହୀନ, କାହିଁକିନା, ଉତ୍ପାଦନ-ସଂପର୍କ ବା ପ୍ରଡକ୍ସନ୍-ରିଲେସନ୍ ବଦଳିନାହିଁ, ସେଇ ଚିରସ୍ଥାୟୀ ବନ୍ଦୋବସ୍ତ କାଳରୁ ବଦଳିନାହିଁ, କୃଷିଜାତ ପଣ୍ୟର ପରିମାଣ ବଢ଼ିଚି ଯଦିଓ ବହୁଗୁଣ । ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଉନ୍ନତି ହୋଇଚି, କୋଟିପତିଙ୍କ ସଂଖ୍ୟା ବଢ଼ିଚି, ଲୋକ ହୋଇଚନ୍ତି ଯଦିଓ ଅଧିକରୁ ଅଧିକ କର୍ମହୀନ । କିନ୍ତୁ ଶ୍ରେଣୀ ହିସାବରେ ବଣିକ କେବେ ସମାଜର ନେତୃତ୍ୱ କରିନାହିଁ; ମଧ୍ୟବିତ୍ତଶ୍ରେଣୀକୁ ନେତୃତ୍ୱର ସାଧନ ଯୋଗାଇଦେଇଚି ବରାବର । ଫଳରେ, ମଧ୍ୟବିତ୍ତ ଭିତରେ ବି ଦେଖିହେବ ଅବକ୍ଷୟଜନିତ ଶ୍ରେଣୀ-ବିଭାଜନ । ଏଲିଟ୍‌ର ବଡ଼ ଆଶ୍ରୟ ସରକାରି ଚାକିରି କିମ୍ବା ବିଭିନ୍ନ ପେସା, ଯେପରି ଡାକ୍ତର୍, ଇଂଜିନିୟର୍, ଓକିଲ, ସମ୍ପାଦିକ, ଶିକ୍ଷକ ପ୍ରଭୃତି, ଯୋଉ ବୃତ୍ତିରେ ଇଂରେଜୀ ବିଦ୍ୟା ଅପରିହାର୍ଯ୍ୟ । ପ୍ରବଳ ପ୍ରତିଯୋଗିତା ସମ୍ମୁଖୀନହୋଇ ମଧ୍ୟବିତ୍ତ ଏବେ ନେତୃତ୍ୱ

ଭୂମିକାରୁ ଘୁଞ୍ଚିଆସୁଚି, ଗ୍ରହଣକରୁଚି ଅନୁଚର କିମ୍ବା ପୋଷ୍ୟର ଭୂମିକା, ଯା କ୍ୟାପିଟାଲିସ୍ଟର ଅବଧାର୍ଯ୍ୟ ଲକ୍ଷଣ । ମଧ୍ୟବିତ୍ତ ଯେହେତୁ ଭାସମାନ, ତାର ସଂପ୍ରସାରଣ ସମ୍ଭବପର ନୁହେଁ ଶ୍ରେଣୀ ହିସାବରେ । ମଧ୍ୟବିତ୍ତ ଏକ୍ଷଣି ବସ୍ତୁତଃ ଗୋଟିଏ ଦ୍ୱୀପ, ସ୍ୱାର୍ଥରକ୍ଷାପ୍ରବଣ ଅନିଶ୍ଚିତ ଏକକ । ଏତେଗୁଡ଼ାକ ବୈପରୀତ୍ୟ ସାଧାରଣ ମଣିଷର ନଜର ଏଡ଼ାଇଯିବା କଥାନୁହେଁ ତଥ୍ୟପ୍ରଯୁକ୍ତି ଜମାନାରେ । ନୁହେଁ ବୋଲି, ଏଲିଟ୍‌ର ଆଚରଆଚରଣ ଆସେମ୍ବ୍ଲି-ପାର୍ଲାମେଣ୍ଟ୍‌ରେ ଯେମିତି, ଅଫିସ୍ ଅଦାଲତ କି ବଜାରହାଟରେ ସେମିତି, ସଚିତ୍ର ଓ ବହୁବର୍ଣ୍ଣ । ଗୋଟିଏ ବାକ୍ୟରେ, ମଧ୍ୟବିତ୍ତସଂସ୍କୃତି ଯେହେତୁ ବିଦୀର୍ଣ୍ଣ, ଖଟିଖିଆ ଲୋକଙ୍କୁ ହିଁ ଗ୍ରହଣକରିବାକୁ ହେବ ସମାଜର ନେତୃତ୍ୱ । ଖଟିଖିଆ ଲୋକ ମାନେ ଶ୍ରମଜୀବୀ ଶ୍ରେଣୀ; କିନ୍ତୁ ଆମ ସମାଜ ଖାଲି ଶ୍ରେଣୀବିଦ୍ୱେଷ ଦ୍ୱାରା ବିଭାଜିତ ନୁହେଁ, କୁଳ ବର୍ଣ୍ଣ ଜାତି ଧର୍ମ ଭଳି ଅଜସ୍ର ସଂସ୍କାର ଲୋକଙ୍କୁ ପରସ୍ପର ପାଖରୁ ଦୂରକୁ ଠେଲିଦେଇଚି । ମଧ୍ୟବିତ୍ତ ଏଲିଟ୍‌ର ସାଧାରଣଲୋକଙ୍କ ପାଖରୁ ଦୂରତ୍ୱ ତେଣୁ ଖାଲି ସଂପତ୍ତିଗତ ନୁହେଁ, ସାମାଜିକ ଓ ମାନସିକ ଦୂରତ୍ୱ ମଧ୍ୟ କଠିନ ଓ ଜଟିଳ । କିନ୍ତୁ ଗତରଖଟି ଯିଏ ପେଟପୋଷନ୍ତି, ତାଙ୍କ ଭିତରେ ଜାତିଉପଜାତିଗତ ପ୍ରଭେଦ ବା ସାମାଜିକ ଦୂରତ୍ୱ ବହୁକାଳରୁ ଚଳିଆସୁଥିଲେ ସୁଦ୍ଧା, ମାନସିକ ଦୂରତ୍ୱ ସବିଶେଷ ନୁହେଁ । ସାମାଜିକ ଦୂରତ୍ୱ ସଂସ୍କୃତିଜାତ; ସଂପତ୍ତିର ତାରତମ୍ୟ ମଧ୍ୟ ଆହୁରିବଡ଼ ଅନ୍ତରାୟ; ମାତ୍ର ମାନସିକ ଦୂରତ୍ୱର ହେତୁ ଶ୍ରମଜାତ, ଯେପରି ଶାରୀରିକ ଶ୍ରମ / ମାନସିକ ଶ୍ରମ ଭଳି କଳ୍ପିତ ଦୂରତ୍ୱ । ଏଲିଟ୍ ସବୁବେଳେ ଦାବିକରିଚି ମାନସିକ ଶ୍ରମ ଉପରେ ଏକାଧିକାର; ସାଧାରଣଲୋକର ଜୀବିକାର ଅବଲମ୍ବନ ଏକମାତ୍ର ଶରୀରଶ୍ରମ । ମାନସିକ ଦୂରତ୍ୱ ନଥିଲେ ବା କମ୍‌ହେଲେ, ଆଉ ସଂପତ୍ତିର ବ୍ୟକ୍ତିଗତ ମାଲିକାନା ବାଦ ନସାଧିଲେ, ସାମାଜିକ ଦୂରତ୍ୱ ଆପେଆପେ ହ୍ରସ୍ୱହେବାକୁ ଲାଗେ । ସେଇ ବାଟରେ ତିଆରିହୁଏ ସଲିଡାରିଟି ବା ଏକତ୍ୱବୋଧ । ତେଣିକି ନେତୃତ୍ୱର ପ୍ରଶ୍ନ ଆଇଡିଅଲଜିର ସମସ୍ୟା । ଯେପରି, ପାର୍ଲାମେଣ୍ଟାରି, ସଶସ୍ତ୍ର ନା ନିରାମିଷ ଇତ୍ୟାଦି । ବ୍ରିଟିଶ୍ ପଣ୍ଡିତ ବୁଝିଥିଲେ ବୋଲି, ରିସ୍‌ଲି (ନୃତତ୍ତ୍ୱ) ଓ ଗ୍ରିୟରସନ୍ (ଭାଷାତତ୍ତ୍ୱ) ଅନୁସଂଧାନକରି ଲେଖିଚନ୍ତି, ଭାରତୀୟ ଜୀବନରେ ଏମିତିକିଛି ନାହିଁ ଯା ଜାତୀୟ ଐକ୍ୟ ଗଠିତ କରିପାରେ ଏକମାତ୍ର ପ୍ୟାକ୍ସ-ବ୍ରିଟାନିକା ଛଡ଼ା । କିପ୍ଲିଙ୍ଗଙ୍କ ସାହିତ୍ୟ ରଚନାରେ ମଧ୍ୟ ଏଇ ସାମ୍ରାଜ୍ୟବାଦର ଅନୁରଣନ । ଅଥଚ ଠିକ୍ ସେଇ ସମୟରେ ମାର୍କ୍ସ ପ୍ରତ୍ୟକ୍ଷକରିଚନ୍ତି ବିଲାତରେ ଶିଳ୍ପବିପ୍ଲବ; ଏବଂ ସେଇଥିରୁ ବାହାରିଚି ତାଙ୍କ ପରିଶ୍ରମତତ୍ତ୍ୱ । ସେତେବେଳେ ସୁଦ୍ଧା (ସିପାହୀବିଦ୍ରୋହ ଅବ୍ୟବହିତରେ) ବ୍ରିଟିଶ୍ ପଣ୍ଡିତ ଭାରତୀୟ ଲୋକସମଷ୍ଟି ଭିତରେ ଏକମାତ୍ର ଏକତାବଦ୍ଧ ସଂଖ୍ୟାଲଘୁ ବୋଲି

ଚିହ୍ନିତକରିଚନ୍ତି ମୁସଲ୍‌ମାନ୍‌ଙ୍କୁ । ଏ ଖବର ଯୋଗାଇଚନ୍ତି ମସ୍ତିଷ୍କ ଭଡ଼ାଖଟାଉଥିବା ଆମ ମଧ୍ୟବିତ୍ତ ଇଂରେଜୀଶିକ୍ଷିତ ହିନ୍ଦୁ ବୁଦ୍ଧିଜୀବୀ । ଚାଳିକାଶକ୍ତି ଅବଶ୍ୟ ଶ୍ରେଣୀସ୍ୱାର୍ଥ । ନହେଲେ, ସାହେବ ତ ସ୍ୱଚକ୍ଷୁରେ ଦେଖିଥିଲେ, ବିଦ୍ରୋହୀ ଏକତାବଦ୍ଧ ହିନ୍ଦୁ ଓ ମୁସଲ୍‌ମାନ୍ ଉଭୟ ଧର୍ମାବଲମ୍ବୀ ସିପାହୀ । ଏ ହିନ୍ଦୁ ବୁଦ୍ଧିଜୀବୀ ହେଲେ ପରବର୍ତ୍ତୀ କାଳରେ ଆଇସିଏସ୍‌ରୁ ବିତାଡ଼ିତ ଓ ତହିଁଉତାରୁ କଂଗ୍ରେସ୍‌ନେତା ସୁରେନ୍ଦ୍ରନାଥ ବ୍ୟାନାର୍ଜୀ । ତାଙ୍କରି ବିରୋଧରେ ଅରବିନ୍ଦ ସମର୍ଥନକରିଥିଲେ ଟିଳକଙ୍କୁ । ଅରବିନ୍ଦ ତ ଆପାଦମସ୍ତକ ସାହେବ ! ସେକାଳର ନବ୍ୟଶିକ୍ଷିତ ମଧ୍ୟବିତ୍ତ ଏଲିଟ୍ ଯିଏ ସାହେବହେବାକୁ ମନକରି, ପୁରାସାହେବ ହୋଇପାରିନାହିଁ, ଯେପରି, ଠାକୁରରୁ ଟେଗୋର୍, ମିତ୍ରରୁ ମିଟର୍, ଘୋଷରୁ ଗସ୍, ଦତ୍ତରୁ ଡ଼ଟ୍ ଇତ୍ୟାଦି । ଏ ସଂକ୍ରମଣ ଶ୍ରମଜୀବୀଙ୍କୁ ଛୁଇଁନାହିଁ । ମସ୍ତିଷ୍କ ସିଏ ଭଡ଼ା ଲଗାଇନାହିଁ । ଏମାନଙ୍କ ଆଗରୁ ଅବଶ୍ୟ ରାମମୋହନ ଯାଇଥିଲେ ବିଲାତ, ତାଙ୍କ ଆଗ୍ରହର ବିଷୟ ଥିଲା କିନ୍ତୁ ଫରାସୀ ବିପ୍ଳବ ।

ରାମମୋହନଙ୍କ ପରେପରେ ଢେର୍ ମଧ୍ୟବିତ୍ତ ଯାଇଚନ୍ତି ଇଉରୋପ୍, ବିଶେଷତଃ ଊନବିଂଶଶତାବ୍ଦୀ ସରିଆସିବା ବେଳକୁ । ସେତେବେଳକୁ ଖାଲି ମାର୍କ୍ସ କି ଏଙ୍ଗେଲ୍ସ ନୁହେଁ, ମ୍ୟାଟ୍‌ସିନି ବି ରହିଚନ୍ତି ଲଣ୍ଡନ୍‌ରେ । କୋଉହେଲେ ଭାରତୀୟ ଏମାନଙ୍କୁ ଭେଟିନାହିଁ । ସୁରେନ୍ ବ୍ୟାନାର୍ଜୀ ଫେରିଆସି ମ୍ୟାଟ୍‌ସିନିଙ୍କ କଥା କହିଥିଲେ ନିଶ୍ଚୟ, ସାକ୍ଷାତ୍‌ହୋଇନାହିଁ କିନ୍ତୁ କସ୍ମିନ୍‌କାଳେ । ବିଂଶଶତକ ଆରମ୍ଭରେ ଲଣ୍ଡନ୍‌ରେ ରହୁଥିଲେ ଖୋଦ୍ ଲେନିନ୍, ପ୍ଲେଖାନଫ୍, କ୍ରପ୍‌ଟ୍‌କିନ୍ । କୋଉହେଲେ ଭାରତୀୟ ସେମାନଙ୍କୁ ଖୋଜିନାହିଁ; ଖାଲି ବିବେକାନନ୍ଦ କ୍ରପ୍‌ଟ୍‌କିନ୍‌ଙ୍କୁ ଭେଟିଥିଲେ ପ୍ୟାରିସ୍‌ରେ । କଥାଗୁଡ଼ାକ ଲେଖୁଚି, କାହିଁକିନା, ଦେଶ ସ୍ୱାଧୀନହେବା ଯାଏଁ ଝାଙ୍କଝାଙ୍କ ଭାରତୀୟ ଇଉରୋପ୍ ଯାଇଚନ୍ତି; ପରେ ଆମେରିକା ଯାଇଚନ୍ତି ଓ ଯାଉଚନ୍ତି । ସେତେବେଳେ ଯାଉଥିଲେ ଆଇ.ସି.ଏସ୍ କି ବ୍ୟାରିଷ୍ଟର୍ ହେବାକୁ । କେହିଅବା ଡାକ୍ତରି ପଢ଼ିବାକୁ । ଆମ ଶିକ୍ଷକ ବି ଥିଲେ କଲେଜ୍‌ରେ ଇଉରୋପ୍-ଆମେରିକା ଫେରନ୍ତା ଯୁବକ । କେହି କିନ୍ତୁ ସେ ଦେଶର ଭାବୁକ ବା ପଲିଟିସିଆନଙ୍କୁ କେବେହେଲେ ଭେଟିଥିବା କଥା କହିନାହାଁନ୍ତି । ଅଧିକାଂଶ ଇଂରେଜୀ ଛଡା ଭିନ୍ନ ଭାଷା ବି ଜାଣନ୍ତିନାହିଁ । ଫଳରେ କେବଳ ପାଠ୍ୟପୁସ୍ତକ ପାକୁଳିକରି ଫେରିଆସିଚନ୍ତି ଅଧିକ ଦି'ପଇସା ରୋଜଗାର ଯୋଗାଡ଼ରେ । ସଂପତ୍ତିର ବ୍ୟକ୍ତିଗତ ମାଲିକାନା ଏମାନଙ୍କୁ ଅନ୍ଧକରିଦେଇଚି ନୂଆ ଆଇଡିଆ, ନୂଆ ଆନ୍ଦୋଳନ, ନୂଆ ଦୃଷ୍ଟିକୋଣ ପ୍ରତି, ଯା ସମାଜ ଉପରେ ପ୍ରୟୋଗ କରିପାରିଥାନ୍ତେ ହୁଏତ; ମାତ୍ର ମତ୍‌ଲବ୍ ଥିଲା ବିପରୀତ ।

ରାଜନୀତି, ସମାଜତତ୍ତ୍ୱ, ଦର୍ଶନ କି ଅର୍ଥନୀତି ଆକର୍ଷଣ କରିପାରିନାହିଁ ସେଥିପାଇଁ । ବ୍ରିଟେନ୍ ଛଡ଼ା ଅନ୍ୟ ଦେଶର ଇତିହାସ ମଧ୍ୟ ମନେହୋଇନାହିଁ ପ୍ରାସଙ୍ଗିକ, ସଭ୍ୟତାସଂସ୍କୃତି ତ ଦୂରଅସ୍ତୁ । ଦେଶର ଅବସ୍ଥାକୁ ପ୍ରତିତୁଳନାରେ ବିଚାରକରିବା ଗୋଲାମମାନଙ୍କ ପକ୍ଷରେ ସମ୍ଭବ ହୁଅନ୍ତା ଅବା କେମିତି ? ସୌଭାଗ୍ୟର କଥା, ଗୋଲାମି ଯେତେବେଳେ ମଜ୍ଜାଗତ ହୋଇନାହିଁ, 'ହୁତୋମ୍'ଙ୍କ ବଙ୍ଗାଳୀ ଅନ୍ତତଃ ଆମେରିକାର ଗୃହଯୁଦ୍ଧ କଥା ଉଠାଇଚନ୍ତି ଇଂରେଜ୍ ସାଙ୍ଗରେ ! ଆଜି କିନ୍ତୁ ଗ୍ଲୋବାଲାଇଜେସନ୍ ଓଲଟପାଲଟ କରିଦେଇଚି ବିବାକ, ଯୁବକଯୁବତୀ ପୂର୍ବାପେକ୍ଷା ଅନେକ ବେଶି ଶିକ୍ଷିତ, ଭାବାଲୁତା ସେମାନଙ୍କୁ ମୁଗ୍ଧକରେନା, ସମାଜକୁ କ୍ୟାପିଟାଲିସ୍ମ କବଳରୁ ଉଦ୍ଧାରକରିବାକୁ ଅଧିକାଂଶ ତ୍ୟାଗ ସ୍ୱୀକାରକରିବାକୁ ପ୍ରସ୍ତୁତ । ପ୍ରଚଳିତ କ୍ଷମତାରାଜନୀତିର ପଙ୍କିଳ ଆବର୍ତ୍ତ ବୋଧହେଉଚି ଅସହଣୀୟ, ଆଉ ଚିନ୍ତାକ୍ଷେତ୍ରରେ ବିପ୍ଳବ ଅପ୍ରତିରୋଧ୍ୟ । ସଂଗ୍ରାମର ପ୍ରେରଣା ଯେହେତୁ ଆସେ ଅସ୍ତିତ୍ୱର ସଙ୍କଟରୁ, ସ୍ରୋତର ବିପରୀତ ଦିଗକୁ ସନ୍ତରଣ ହୁଏ ତଥାକଥିତ 'ପ୍ରଗତି'କୁ ଦୃଢ଼ ପ୍ରତ୍ୟାଖ୍ୟାନ । ଦ୍ୱାନ୍ଦ୍ୱିକତା କେନ୍ଦ୍ରରୁ ଘୁଞ୍ଚିଯାଇ 'ପ୍ରଗତି' ହେବ ଚଳମାନ ପ୍ରକ୍ରିୟା, କାହିଁକିନା, ପ୍ରଗତି କୋଉ ପୂର୍ବନିର୍ଦ୍ଧାରିତ ପ୍ରାପ୍ତି ନୁହେଁ, ପରିଣାମ ମାତ୍ର; ବୈରାଚରଣ ବିକଶିତହେବାର ପରିଣାମ; ଯୋଉ ବୈରାଚରଣ ଏକାବେଳକେ ରାଜନୀତିକ ଓ ଲଜିକ୍ୟାଲ୍ । ଲଜିକ୍ୟାଲ୍, କାହିଁକିନା, ଶ୍ରମ ପ୍ରତି ଅବଜ୍ଞାରୁ ଆସୁଚି ବୈରାଚରଣ । କିନ୍ତୁ ସଂସାରଅଭିଜ୍ଞ ଲୋକ ନିଶ୍ଚୟ ପଚାରିବେ, ଘରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବା କାମକୁ ବାହାରିବ କିଏ ?

କିନ୍ତୁ, ରାସ୍ତା ମଣିଷ ଖୋଜେ କାହିଁକି ? ଗୋଟିଏ ବିନ୍ଦୁରୁ ଆଉଗୋଟିଏ ବିନ୍ଦୁକୁ ଯିବାକୁ ହେଲେ ଦରକାର ରାସ୍ତା, ମାନେ, ଗନ୍ତବ୍ୟରେ ପହଞ୍ଚିବା ଉପାୟ । କିଏ ବତାଏ ଏ ବାଟ ପିଲାଙ୍କୁ ? ନିଶ୍ଚୟ ପରିବାର, ସ୍କୁଲ୍‌କଲେଜ୍, ସମାଜ ଆଉ ରାଷ୍ଟ୍ର । ଅଧିକାଂଶ ଲୋକ ସେଇ ବାଟରେ ହିଁ ଲକ୍ଷ୍ୟରେ ପହଞ୍ଚନ୍ତି । ଇହଲୋକରୁ ମୁକ୍ତିର ମାର୍ଗ ବତାଇଥାଆନ୍ତି ଅବଶ୍ୟ ଗୁରୁ । କାହିଁକିନା, ସେଇ କେବଳ ଜାଣିଚନ୍ତି ବାଟସାରା କେତେ ବାଧା,ଦ୍ୱିଧା, ସଂଶୟ, ଅତୃପ୍ତି । ମାତ୍ର ଲକ୍ଷ୍ୟ ସେଠି ଆଧ୍ୟାତ୍ମିକ । ଓଡ଼ିଶାରେ ଆମ ପିଲା, ଜନ୍ମସୂତ୍ରରେ ଯୋଉ ଧର୍ମ କି ଜାତିରୁ ଆସୁ ପଛେ, ଏଇଭଳି ସଂସ୍କାର ଭିତରଦେଇ ବଡ଼ହୁଏ । ମାତ୍ର ଘରୁ ଗୋଡ଼କାଢ଼ି ବାହାରକୁ ଆସିଲେ ସମ୍ମୁଖୀନହୁଏ ଯୋଉ ଜଗତ୍, ତା ସାଙ୍ଗରେ ସଂସ୍କାରଗୁଡ଼ାକ ମିଳେନା । ଅଭିଭାବକ ସେତେବେଳେ କହନ୍ତି, ପାଠଶାଠ ପଢ଼ିଚ, ଭାବିବାକୁ ଚିନ୍ତିବାକୁ ଶିଖିଚ, ଚେଷ୍ଟାକଲେ ବାଧାଗୁଡ଼ାକ ବି ଡେଇଁଯାଇ ପାରିବ । ଅଥଚ ଜଗତ୍ ଯୋଉ ବେଗରେ ବଦଳିଯାଉଚି,

ତା ସହିତ ଏ ପରାମର୍ଶ ତାଳଦେଇ ପାରୁନାହିଁ । ପାରୁନାହିଁ ବୋଲି, ଦରକାର ହେଉଚି ସଂପୂର୍ଣ୍ଣ ଭିନ୍ନ ଏକ ଜୀବନଦର୍ଶନ, ପ୍ରଥାଗତ ମେଦିନୀଦୃଷ୍ଟିର ଯା ବିକଳ୍ପ । ତାର ମୂଳ ପ୍ରସ୍ତାବ, (୧) ଯୋଉ ନିୟମରେ ଜଗତ୍ ଚାଲୁଚି, ତା କେବଳ ପରିବର୍ତ୍ତନ, ଏବଂ (୨) ବିଦ୍ୟମାନ ଲୌକିକ ଜଗତ୍‌ଟା ହିଁ ଏକମାତ୍ର ବାସ୍ତବ, ଅପ୍ରାକୃତ ନୁହେଁ କି ଅଜ୍ଞେୟ ନୁହେଁ, (୩) ଅତୀତରେ ଯା ଜଣାପଡ଼ିନାହିଁ, ଏକ୍ଷଣି ଜଣାପଡୁଚି; ଏକ୍ଷଣି ଯା ଅଜ୍ଞାତ ରହିଚି କାଳକ୍ରମେ ଜଣାପଡ଼ିବ, ବୁଦ୍ଧିର ଅଗମ୍ୟ କିଛିହେଲେ ଥାଇପାରେନା, (୪) ମଣିଷ ଓ ବାହ୍ୟପ୍ରକୃତି ବାହାରେ ଆଉକିଛି ଯେହେତୁ ଅବାସ୍ତବ କଳ୍ପନା, ଦୁଃଖଶୋକ କୃତିତ୍ୱବ୍ୟର୍ଥତା ପାଇଁ ଭାଗ୍ୟ କି ବିଧାତା ଭଳି କଳ୍ପନା ଅବାନ୍ତର, ଏବଂ ସେଥିପାଇଁ, (୫) ସବୁଠୁଁ ବେଶି ନିର୍ଭରଯୋଗ୍ୟ ଶକ୍ତି ଆତ୍ମଶକ୍ତି; ଏବଂ ମଣିଷର ସହାୟ ଏକମାତ୍ର ମଣିଷ । କୁହାଯାଇପାରେ, ପ୍ରଥାବିରୁଦ୍ଧ ଶିକ୍ଷାର ପ୍ରଥମ ସୋପାନ । ପରିବାର ଦିଏନା । ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ / ରାଷ୍ଟ୍ର କି ସମାଜ ମଧ୍ୟ ଦିଏନା । ଅବଶ୍ୟ, ମଣିଷ ମଧ୍ୟ ମଣିଷର ଶତ୍ରୁ ହୋଇପାରେ; କିନ୍ତୁ ତା ଆକସ୍ମିକ ନୁହେଁ କି ଦୈବବିଧାନ ନୁହେଁ । ଅଜ୍ଞାତକୁ ଜାଣିବ ତେବେ କେମିତି ? ଜାଣିବା ଉପାୟ, ପଠାଣି ସାଆନ୍ତ କହିବା ପରି, ଧୀ-ଯନ୍ତ୍ର; ଯା ଅଜ୍ଞାତକୁ ବିଦ୍ଧ କରିପାରେ । ଅଜଣା ପ୍ରତି ଯୋଉ ଭୟ ଶୈଶବରେ ମନଭିତରକୁ ପୁରାଇଦିଆହୁଏ, ପରିଣତ ବୟସରେ ସେ ଭୟ ନାନାଦି ଅବତାରରେ ପ୍ରକଟହୁଏ, ଯେପରି ଆଇନ୍‌କୁ ଭୟ, ପୁଲିସ୍‌କୁ ଭୟ, ଅଭାବକୁ ଭୟ, ଉପରବାଲାଙ୍କୁ ଭୟ । ଭୟ ଯଦି ହୁଏ ନିତ୍ୟାଚାର, ସଂସାର-ସମାଜ-ରାଷ୍ଟ୍ର ସକାଶେ ଅଧିକାଂଶ ମଣିଷଙ୍କୁ ଦବାଇରଖିବା ଜମାରୁ ସମସ୍ୟା ନୁହେଁ । ଅନାଚାର-ଅତ୍ୟାଚାର, ଶୋଷଣ-ଦମନ ହୋଇଯାଏ ଦୀର୍ଘଜୀବୀ; ଅସଲ ଶତ୍ରୁକୁ ଚିହ୍ନିବା ଆଉ ସମ୍ଭବହୁଏନା । ଶତ୍ରୁ ତେଣୁ ବାହାରେ ନାହିଁ; ତାଙ୍କୁ ମୁକାବିଲାକରିବାକୁ ଦରକାର କେବଳ ସଂକଳ୍ପ । ବିନା ବିଚାରରେ ମାନିବନାହିଁ, ବିନା ପ୍ରମାଣରେ ବିଶ୍ୱାସକରିବନାହିଁ-ଏଇ ଅମାନିଆପଣ ହିଁ ଧୀଯନ୍ତ୍ରକୁ ସ୍ୱୀକୃତି ।

କିନ୍ତୁ କଥାଗୁଡ଼ାକ ଭିତରେ ନୀତିବୋଧ କାହିଁ, ଯା ସୁସ୍ଥ ସମାଜଜୀବନ ପାଇଁ ଅପରିହାର୍ଯ୍ୟ । ଖାଇବା-ପିଇବା-ରହିବା ସକାଶେ କାମକରିବାକୁ ପଡ଼େ ପ୍ରତ୍ୟେକ ମଣିଷକୁ, ଗଳଦ୍‌ଘର୍ମ ସେଇ ଜଞ୍ଜାଳ ଭିତରେ ବି ମଣିଷ ଅନ୍ଧକୁ ହାତଧରି ରାସ୍ତା ପାରକରାଏ, ହଠାତ୍ ଜଖମହୋଇଥିବା ଲୋକକୁ ଡାକ୍ତରଖାନାକୁ ବୋହିନିଏ, ବସ୍‌ଟ୍ରେନ୍‌ରେ ସ୍ତ୍ରୀଲୋକ କି ଅକର୍ମଣ୍ୟ ଲୋକକୁ ବସିବାକୁ ଜାଗା ଛାଡ଼ିଦିଏ, ବାଟରେ କଣ୍ଟାପଡ଼ିଥିଲେ ଉଠାଇ ଫୋପାଡ଼ିଦିଏ, ଅତିଶୟ ଦରିଦ୍ରଲୋକ କି ଭିକାରୀକୁ ପଇସାଟିଏ ଦିଏ ସମସ୍ତଙ୍କ ଅଲକ୍ଷ୍ୟରେ । ଅର୍ଥାତ୍, ନିଜ ବଞ୍ଚିବା ବାହାରେ କିଛିହେଲେ

ପରାର୍ଥପରତା । ପର ଲାଗି ଏମିତି କରିଆସୁଚି ମଣିଷ ଆବହମାନ କାଳରୁ; ତାହାରି ଉପରେ ତିଷ୍ଠିରହିଚି ସମାଜଜୀବନ । ଶତକଡ଼ା ଶହେ ଲୋକ ଯଦି ଦିନରାତି ଆଖର ଗୋଟାଉଥାନ୍ତେ, ସମାଜର ତଳିତଳାନ୍ତରେ ଯୋଉ ଲୋକଗୁଡ଼ାକଙ୍କ ଦିନଯାପନ, ବଞ୍ଚିପାରନ୍ତେନାହିଁ ଜମାରୁ । ତାଆରି ନାଁ ନୀତିବୋଧ, ଦୟା କି ଦାକ୍ଷିଣ୍ୟ ନୁହେଁ । ସେଇ ନୀତିବୋଧରୁ କଲେଜ୍‌ପିଲା ନକ୍ସଲ୍ ହୁଅନ୍ତି; ଗୃହବଧୂ ସାମିଲ୍‌ହୁଏ ଶୋଭାଯାତ୍ରାରେ; ଶ୍ରମିକ କରେ ଟ୍ରେଡ୍ ଇଉନିୟନ୍ । ସେଇ ପ୍ରବୃତ୍ତିରୁ ମଣିଷ ପଢ଼ାଶୁଣାକରେ, ଲାଭନୁକ୍‌ସାନ୍ ହିସାବରୁ ନୁହେଁ । ତେବେ, ନିଜ କାମଟା ଆଗେ ନସାରିଲେ ପରପାଇଁ କେହି ଘରୁ ବାହାରେନା; ଆଜିକାଲି ମଧ୍ୟବିତ୍ତ କି ଗରିବ ପିଲାଙ୍କ ଭିତରେ ଦିଶୁଚି ଏଇ ପ୍ରବଣତା; ତଥାପି ବ୍ୟତିକ୍ରମ ରହିଚି, କାହିଁକିନା, ପରାର୍ଥପରତା ଭିନ୍ନ ଗୋଟାଏ ପ୍ରବୃତ୍ତି; ଯିଏ କରେ ସେହି ଏକା ବୁଝେ; ଯିଏ ବୁଝେନା, ତର୍କକରେ: ସ୍ୱୟଂ ଭଗବାନ ଏ କାମରେ ବହୁଯୁଗରୁ ପରିଶ୍ରମ କରିଆସୁଚନ୍ତି, ବଦଳିଚି କିଛି ? କିନ୍ତୁ, ଯଦି ବଦଳିନାହିଁ, କୋଉହେଲେ ପ୍ରାକୃତିକ କାରଣରୁ ବଦଳିନାହିଁ, ନା କିଛିଲୋକ ଚେଷ୍ଟାକରି ବଦଳିବାକୁ କ୍ରମାଗତ ବାଧାଦେଇଚନ୍ତି ବୋଲି ବଦଳିନାହିଁ ? ଯଦି ବାଧା ଦେଉଚନ୍ତି, ତାଙ୍କୁ ରୋକିବାକୁ କିଛି ନକଲେ ତ ଅଧୋଗତି ହେବ ଆହୁରି ଦୁସ୍ତର । ରୋକିବାକୁ ଚେଷ୍ଟାକଲେ ସିନା ନୂଆକିଛି ଭାବିବାକୁ ସୁଯୋଗ ଆସିବ ! ଆଉ ଭାବିବାକୁ ସୁଯୋଗପାଇ ଯଦି ଭାବିବ, ଭାବିବାର ଶେଷନାହିଁ, ଜାଣିବାର ଅନ୍ତନାହିଁ, ତେବେ ତ ଜୀବନସାରା ଚକୁଳିରୁ ବିନ୍ଧଗଣୁଥିବ - ନଂ ଶୁକ୍ଳଂ ନ କୃଷ୍ଣଂ / ନ ପୀତଂ ନ ରକ୍ତଂ – ନେତି ନେତି । କାହିଁକି ଲେଖୁଚି ଏତେକଥା ? କାହିଁକିନା, ଯୋଉ ଜଗତ୍‌ରେ ଏକ୍ଷଣି ବଞ୍ଚିଛୁ, କୋଉହେଲେ ଗ୍ୟାରେଣ୍ଟି ନାହିଁ ସେଠି । କୋଉହେଲେ ସମସ୍ୟାର ଚୂଡ଼ାନ୍ତ ସମାଧାନ ନାହିଁ । ଯଥାପ୍ରାପ୍ତ ଉପସଂହାର ବି ଅଚଳ । ନୀତିଅନୀତି ମଧ୍ୟ ଚରମ କି ପରମ ଜ୍ଞାନରେ ଗ୍ରାହ୍ୟ ନୁହେଁ । ବରଂ, ଯୋଉ ଚିହ୍ନଗୁଡ଼ାକୁ ସମ୍ବଳକରି ଚଳପ୍ରଚଳହେଉ, ତା ଭିତରେ ବି ସକ୍ରିୟ ବିପରୀତଧର୍ମୀ ଚିହ୍ନଗୁଡ଼ାକର ତତ୍ପରତା । ଦ୍ୱିଧା କି ଅନିଶ୍ଚୟତାର ମର୍ମଉଦ୍‌ଘାଟନ ତେଣୁ ସହଜ କି ସରଳ ନୁହେଁ; ବଳକଷାକଷି କରିବାକୁ ପଡ଼ିବ । ବାହାରୁ କେହି ସାହାଯ୍ୟ କରିବନାହିଁ; ବାହାରେ ତ ଅଛନ୍ତି ଖାଲି ମଣିଷ ଆଉ ବାହ୍ୟପ୍ରକୃତି । ବାକିଯାକ ସିଂହାସନ ଶୂନ୍ୟହୋଇଯାଇଚି ଏକବିଂଶ ଶତକରେ ପହଞ୍ଚିବା ବେଳକୁ ପୃଥିବୀ । ରହିଚି ସ୍ଥାନକାଳ ଉର୍ଦ୍ଧ୍ୱରେ କେବଳ ଗ୍ଲୋବାଲାଇଜେସନ୍, ଅଭ୍ରଭେଦୀ ତାର ଅଭିଯାନ । ତାକୁ ସମ୍ମୁଖୀନହେବାକୁ ବାଟ ଦେଖାଇପାରେନା ଗୁରୁ, ପଥଦେଖାଏ ସ୍ୱୟଂ ପଥ ! ଆଉ ପଥଚାରୀ । ଅଥଚ, ମଣିଷର କୃତିତ୍ୱ ବୋଲି ଯୋଉ କଥାଗୁଡ଼ାକୁ ଭାବୁଁ,

ସେଥିରୁ ଗୋଟିଏହେଲେ ପ୍ରବହମାନ ଜୀବନରୁ ଆସିନାହିଁ; ଅଧ୍ୟବସାୟପୂର୍ବକ ଅର୍ଜନକରିବାକୁ ପଡ଼ିଚି । ସେ ବାଟରେ ଖାଲଢିପ ରହିଚି, ଠିକି ଶିଖିବାକୁ ପଡ଼ିବ । ତାର ମଧ ପ୍ରୟୋଜନ ଅଛି । କଠିନ କାମ; ଲୋକ ବାହାରିବେ ଅଳ୍ପ; ତଥାପି ଆବେଗର ଗଡ୍ଡଳିକା ସ୍ରୁଅରେ ଭାସିଯିବା ଅପେକ୍ଷା ଭୁଲ୍‌କରି ଜୋରିମାନା ଗଣିବାରେ ଗୌରବ ବେଶି । ଖାଲି ଆହାରନିଦ୍ରାମୈଥୁନର ପୌନପୁନିକତା ପାଇଁ ମଣିଷ ତ ସମାଜ ଗଢ଼ିନାହିଁ କି ରାଷ୍ଟ୍ର ଗଢ଼ିନାହିଁ ! ଯଦି ଅନ୍ୟ ଆବଶ୍ୟକ ନଥାନ୍ତା, ମଣିଷ ଏବେ ବି ହୋଇରହିଥାନ୍ତା ମାଙ୍କଡ଼ପ୍ରଜାତିର ଅନ୍ୟତମ ଶାଖା । ରହିଥିଲେ, ହୁଏତ ଏଇ କ୍ଲାନ୍ତି ଏଇ ବିବଶତା, ଆକ୍ରମଣ କରନ୍ତାନାହିଁ । କିନ୍ତୁ ମାଙ୍କଡ଼ହୋଇ ନରହିବାକୁ ଗଢ଼ିଥିଲା ଯୋଉ ସମାଜ କି ରାଷ୍ଟ୍ର, ସ୍ଥବିରହୋଇ ପରିଣତହୋଇଚି ଅଚଳାୟତନ । ସଜାଡ଼ିବାକୁ ପଡ଼ିବ କଳକବ୍‌ଜା । ଏତିକି କରିବାପାଇଁ ଅପାରଗ ବୋଲି ସଂଦେହ ନହେଲେ, ପ୍ରଶ୍ନ ଉଠନ୍ତାନାହିଁ ଆପୋଷକରିବ କି ନାହିଁ ? ସମାଜ କି ରାଷ୍ଟ୍ରକୁ ବଦଳାଇଦେବା ତ କାହୁଁକାହାଁତକ ଦୂରର କଥା ! ସେଇ ଅପାରଗତାକୁ, ନିଜ ଜୀବନରେ ହେଉ କି ସମାଜଜୀବନରେ, ସୁଧାରି ନପାରିଲେ, ଅନ୍ୟକୁ ଉଦ୍‌ବୋଧନଦେଉଥିଲେ ବିଶ୍ୱାସଯୋଗ୍ୟ ହେବନାହିଁ । ଦରକାର ସେଥିପାଇଁ ଅନେକ ଲୋକ । କୌଣସି କିଛି ବଦଳାଇଦେବା ଜଣକର ସାଧ ନୁହେଁ; ମାତ୍ର ସମଭାବାପନ୍ନ ଲୋକ ଯତ୍ରତତ୍ର ମିଳନ୍ତିନାହିଁ । ଖୋଜିବାକୁ ହେବ, ଚିହ୍ନିବାକୁ ହେବ । ତା ହେଲେଯାଇ ହୋଇପାରେ ଦୃଷ୍ଟିଭଙ୍ଗୀର ଅଭିଘାତ, ଆସିପାରେ ତହିଁରୁ ନିର୍ଗତ ବିଚ୍ଛରର ଭାରସାମ୍ୟ । ସମବେତ ବିଚ୍ଛରରେ ଏକାଗ୍ରତା ନଥିଲେ କର୍ତ୍ତବ୍ୟକର୍ମ ନିର୍ଦ୍ଦିଷ୍ଟ କୋଉ ଆଦର୍ଶକୁ ଧରିରଖି ପାରେନା, ବିଶେଷତଃ ଲକ୍ଷ୍ୟ ଯଦି ହୁଏ ଦୀର୍ଘକାଳୀନ ଅନୁଶୀଳନ ।

ଲୋକଙ୍କୁ ଏ କାମରୁ ନିବୃତ୍ତକରିବା ପାଇଁ ଶାସକଶ୍ରେଣୀ ଆବିଷ୍କାରକରିଚି ରକ୍ଷାକବଚ: ପାର୍ଲାମେଣ୍ଟାରୀ ଗଣତନ୍ତ୍ର । କିନ୍ତୁ ଷାଠିଏସତୁରି ଦଶକରେ ଦେଶବ୍ୟାପୀ କୃଷକଆନ୍ଦୋଳନ, ନିର୍ମମ ଦମନପୀଡ଼ନ ସତ୍ତ୍ୱେ, ବୁଝାଇଦେଇଚି ସଂସଦୀୟ ଗଣତନ୍ତ୍ରର ବ୍ୟର୍ଥତା । ନକ୍ସଲ୍ ଆନ୍ଦୋଳନ ଏକ୍ଷଣି ମଫସଲ ଛାଡ଼ି ସହରକୁ ପଶିଚି । ଗାନ୍ଧିଙ୍କ ସ୍ୱାଧୀନତାଆନ୍ଦୋଳନ ରାଷ୍ଟ୍ରଶକ୍ତିକୁ ଆହ୍ୱାନଜଣାଇଥିଲା ସିନା, ରାଷ୍ଟ୍ରର ଚରିତ୍ର ବଦଳାଇବାକୁ ଚେଷ୍ଟାକରିନାହିଁ । ସେଇ ରାଷ୍ଟ୍ର ଗ୍ଲୋବାଲାଇଜେସନ୍ ଯୁଗରେ ସାମ୍ରାଜ୍ୟବାଦର ହାତବାରିସୀ । ଯା ଥିଲା ଔପନିବେଶିକ ପ୍ରଭୁତ୍ୱର କ୍ରିୟାସାଧକ ଅବୟବ, ଏକ୍ଷଣି ହୋଇଚି ବିଶ୍ୱାୟନ ପ୍ରକ୍ରିୟାର କ୍ରିୟାସାଧକ । ମାଲିକ ବଦଳହୋଇଚି ମାତ୍ର, ଆଉସବୁ ରହିଚି ଯେମିତି ଥିଲା, ସେମିତି । ସ୍ୱାଧୀନତାପୂର୍ବ ରାଷ୍ଟ୍ରଯନ୍ତ୍ର ସହିତ ସ୍ୱାଧୀନତାପରବର୍ତ୍ତୀ ରାଷ୍ଟ୍ରଯନ୍ତ୍ରର ଗୁଣଗତ ବ୍ୟବଧାନ ନାହିଁ ।

ଜନସାଧାରଣ ତେଣୁ ତାର ପ୍ରଭୁତ୍ୱକୁ ସ୍ୱୀକାରକରିବାକୁ ସମ୍ମତନୁହେଁ; ସମ୍ମତି କିନ୍ତୁ ଆଦାୟକରାଯାଉଚି ବଳପୂର୍ବକ । ସିଭିଲ୍ ସୋସାଇଟି ଓ ଷ୍ଟେଟ୍ ମଧ୍ୟରେ ଦେଖାଦେଇଚି ତେଣୁ ଅନତିକ୍ରମ୍ୟ ବ୍ୟବଧାନ; ଇଂରେଜୀରେ ଆ୍ୟାଲିଏନେସନ୍ । ଯିଏ ଏକ୍ଷଣି ଶାସକଶ୍ରେଣୀ, ବିଦେଶୀଶାସନ କାଳରେ ଜନସାଧାରଣଙ୍କ ପାଖରୁ ପାଇଚନ୍ତି କିନ୍ତୁ ଅକୁଣ୍ଠ ସମର୍ଥନ । ଶାସନକ୍ଷମତାକୁ ଆସି ରାଷ୍ଟ୍ରର ଚେହେରା ଓ ଚରିତ୍ର ବଦଳାଇଦେଇ ପାରିଥାନ୍ତେ, ଅନ୍ତତଃ ସେଇଭଳି ଥିଲା ଗାନ୍ଧିଆନ୍ଦୋଳନର ଆଭିମୁଖ୍ୟ; ବଦଳାଇ ନାହାଁନ୍ତି ଶ୍ରେଣୀସ୍ୱାର୍ଥ ଚାଗିଦ୍‌ରୁ । ଏବଂ ସେଇ ସ୍ୱାର୍ଥର ଚରିତ୍ର ବୁର୍ଜୋୟା । ଅତଏବ ଜନଆନ୍ଦୋଳନ୍‌ର ଶରବ୍ୟ ସ୍ୱୟଂ ରାଷ୍ଟ୍ରଯନ୍ତ୍ର । ଇଣ୍ଟେଲେକ୍‌ଚୁଆଲ୍‌ର ଭୂମିକା, ଏଇ ପ୍ରେକ୍ଷିତରେ କିଭଳି ହେବା ସମୀଚୀନ, ଆନ୍ତନିଓ ଗ୍ରାମ୍‌ଶ୍ଚି କାରାଗୃହରେ ବସି ଭାବିଥିଲେ ଇଟାଲିରେ । ଅବଶ୍ୟ, ଭାରତର ଅଭିଜ୍ଞତା ଇଟାଲି ସହିତ ସର୍ବାଂଶରେ ସମାନ ହୋଇପାରେନା । ତଥାପି ତାଙ୍କ ଚିନ୍ତାର ତତ୍ତ୍ୱଗତ ପ୍ରାସଙ୍ଗିକତା ଆମ ପିଲାଙ୍କ ସକାଶେ ଯତ୍‌ପରୋନାସ୍ତି । କାହିଁକିନା, ବିଦେଶୀ ଅଧିକୃତ ଉପନିବେଶରେ ପ୍ରଜା ସହିତ ରାଷ୍ଟ୍ରର ସଂପର୍କ ହେଗ୍‌ଲପ୍ରବର୍ତ୍ତିତ ଦ୍ୱାନ୍ଦ୍ୱିକତା ବିଚାରରେ ସେବ୍ୟସେବକ (ମାଷ୍ଟର୍-ସର୍‌ଭ୍ୟାଣ୍ଟ୍), ସ୍ୱାଧୀନ ସାର୍ବଭୌମ ଆଧିପତ୍ୟ କେନ୍ଦ୍ରରେ ରହିଚି କିନ୍ତୁ 'ହଗେମନି'; ଅର୍ଥାତ୍, ପ୍ରଜାର ସମ୍ମତି ଥିବାରୁ ଆଧିପତ୍ୟ ହୋଇପାରୁଚି ନିର୍ବାଧ । 'ହିଗେମନି' ପ୍ରତ୍ୟୟଟା ଗ୍ରାମଣ୍ଚିଙ୍କ ନିଜସ୍ୱ । ଭାରତରେ ଆଜି ରାଷ୍ଟ୍ରର ମାଲିକ ଇଂରେଜ୍ ନୁହେଁ, ଜନଗଣ । ସେମାନଙ୍କ ସମ୍ମତି ଯା ପଛରେ ରହିବ, ଲୋକଙ୍କ ତରଫରୁ କରିବ ରାଷ୍ଟ୍ରପରିଚ୍ଛଳନା । ଜବରଦସ୍ତି କଲେ, ଲୋକ ରାଷ୍ଟ୍ରକୁ ବଦଳାଇଦେବେ । ଅଳ୍ପ କଥାରେ ଏଇ ହେଲା ହିଗେମନିର ତାତ୍ପର୍ଯ୍ୟ । କିନ୍ତୁ ଲୋକଙ୍କ ହାତରେ ପୁଲିସ୍ କି ସେନାବାହିନୀ ନାହିଁ, ବଦଳାଇବେ କେମିତି ? ଗ୍ରାମ୍‌ଶ୍ଚିଙ୍କ ପାଖରୁ ଶିଖିବାକୁ ପଡ଼ିବ ।

ବ୍ରିଟିଶ୍ ରାଜପୁରୁଷ ଭାବିଥିଲେ, ସମ୍ମତିପାଇବାକୁ ହେଲେ ସଦାଶୟ ହେବାକୁ ପଡ଼ିବ; କିନ୍ତୁ ଦେଖିଲେ, ଖାଲି ସଦାଶୟହେଲେ ଶୋଷଣ କରିହେବନାହିଁ; ସଦାଶୟତା ସାଙ୍ଗରେ ମିଶାଇଲେ ଭୀତି । କିନ୍ତୁ ଅନତିବିଳମ୍ବେ ଆବିଷ୍କାରକଲେ, ଦୁଇଟାଯାକ ତେଲ ଆଉ ପାଣି ଭଳି; କାହା ସାଙ୍ଗରେ କେହି ମିଶିପାରେନା । ସେଇଠୁ ଆଧିପତ୍ୟର ଚାଳିକାଶକ୍ତି ହେଲା ଅବିମିଶ୍ର ଭୟଭୀତି । ବିଦେଶାଗତ ପ୍ରଭୁ ଖାଲି ଭୟଦେଖାଇ ଏତେବଡ଼ ଦେଶକୁ ସମ୍ଭାଳିବା ଯେ ସମ୍ଭବନୁହେଁ, ଉପଲବ୍ଧିକରିଚନ୍ତି କାଳକ୍ରମେ । ସେତେବେଳେ ଭାବିଚନ୍ତି, ନିଜକୁ ନିରାପଦ ରଖିବାକୁ ହେଲେ ସ୍ଥାନୀୟ ପ୍ରଜାର ସମର୍ଥନ ଯୋଗାଡ଼କରିବା ଦରକାର । ସମର୍ଥନ ମିଳିଚି ଏଲିଟ୍‌ଙ୍କ ପାଖରୁ; ଏବଂ ମିଳିଚି ବୋଲି ବିଦେଶୀ ଆଧିପତ୍ୟ ସ୍ଥାୟୀହୋଇଚି ପ୍ରାୟ ଦୁଇଶତାବ୍ଦ । ଆଶ୍ଚର୍ଯ୍ୟହେବା

ଉଚିତନୁହେଁ, କାହିଁକିନା, ସାଂପ୍ରତିକ ଇରାକ୍ ଆଡ଼କୁ ଅନାଇଲେ ଦିଶୁଚି, ଦେଶଟାକୁ ବଳପୂର୍ବକ ମାଡ଼ିବସି ନାରଖାର କରୁଥିଲେ ବି, ଯୁକ୍ତରାଷ୍ଟ୍ରକୁ ଖୋଜିବାକୁ ପଡୁନାହିଁ କୋଲାବରେଟର୍, ସୁଯୋଗକୁ ଅପେକ୍ଷାକରି ବସିଚନ୍ତି ବହୁପୂର୍ବରୁ । ଭାରତରେ ବ୍ରିଟିଶ୍‌ପ୍ରଭୁ ଓ ବିଜିତ ପ୍ରଜାଙ୍କ ସଂପର୍କ ସ୍ୱାଭାବିକଭାବେ କ୍ଷମତାର ବିରାଟ ଅସାମ୍ୟ ଦ୍ୱାରା ଚିହ୍ନିତ; ଏବଂ ସେ ଅସାମ୍ୟ ନାନାଦିଗରୁ ଜଟିଳ । କିନ୍ତୁ ରାଜନୀତିକ କ୍ଷମତା ନହେଲେ ବି, ସାମାଜିକ ଆଧିପତ୍ୟ ଦୃଷ୍ଟିରୁ ଅଭ୍ୟନ୍ତରୀଣ ସିଭିଲ୍ ସୋସାଇଟିରେ ଭାରତବାସୀଙ୍କ ଭିତରେ ଥିଲା ଯୋଉ ସେବ୍ୟ-ସେବକ ସଂପର୍କର ଗ୍ରନ୍ଥିବହୁଳ ବିସ୍ତାରିତ ଜାତି, ତାକୁ ଶ୍ରେଣୀ ଜାତି ବୟସ ଲିଙ୍ଗ ପ୍ରଭୃତିର ଆପେକ୍ଷିକ ଅବସ୍ଥାନରୁ ଲକ୍ଷ୍ୟକଲେ କର୍ତ୍ତୃତ୍ୱର ଷ୍ଟ୍ରକ୍ଚର୍ ଯେ କେତେ ବିଚିତ୍ର ଓ ସ୍ତରବିଶିଷ୍ଟ, ମୋଟାମୁଟି ଧାରଣାକରିହେବ । ଏ ଷ୍ଟ୍ରକ୍ଚର୍ ଅବଶ୍ୟ କ୍ରମୋଚ୍ଚ ସୋପାନରେ ସଜ୍ଜିତ । ସେଇ ହିଏରାର୍କିର ବୈଚିତ୍ର୍ୟ ଖାଲି ବ୍ୟାପକ ସାମାଜିକ ବୈଷମ୍ୟକୁ ଇଙ୍ଗିତକରୁନାହିଁ, ବୁଝାଇଦେଉଚି କର୍ତ୍ତା କିଏ ଆଉ ଅଧସ୍ତନ କିଏ; କିଏ କ୍ଷମତାବାନ୍, କିଏ କ୍ଷମତାହୀନ । ଇତିହାସଗତିରେ 'କ୍ଷମତା' ଯେ ଏଇ ଭଙ୍ଗୀରେ ପ୍ରକଟହୋଇଚି, ସେଥିରୁ ପୁଣି ଦେଖିହେବ କୋଉ କର୍ତ୍ତୃତ୍ୱ ବଳପ୍ରୟୋଗ ସାଙ୍ଗକୁ ପ୍ରରୋଚନା ମିଶାଇ ତିଆରି, ଆଉ କୋଉ କର୍ତ୍ତୃତ୍ୱ ମୂଳରେ ରହିଚି ସହଯୋଗିତା ସାଙ୍ଗକୁ ପ୍ରତିରୋଧ । ଯେକୌଣସି ଅସମ ସମାଜରେ କ୍ଷମତାବାନ୍ ଓ କ୍ଷମତାଧୀନ ମଧ୍ୟସ୍ଥ ସଂପର୍କରେ ବିଭିନ୍ନ ରକମ ଉପାଦାନର ମିଶ୍ରଣ ପରିପୁଷ୍ଟ, ମାତ୍ର ଉପାଦାନଗୁଡ଼ିକର ସହାବସ୍ଥାନ ବୁଝାଇଦେବ କର୍ତ୍ତୃତ୍ୱ ବା ଅଧୀନତ୍ୱର ଭିତ୍ତି ସ୍ଥାୟୀ ନୁହେଁ; ସୁଯୋଗ ପାଇଲେ ବିଦୀର୍ଣ୍ଣ ହୋଇଯାଇପାରେ; ବିଦୀର୍ଣ୍ଣହୋଇପାରେ ବୋଲି, ସଂପର୍କର ବୈଷମ୍ୟ ଗତିଶୀଳ । ମାର୍କ୍ସ ଏଇ ଡମିନ୍ୟାନ୍ସ ଓ ସବଡ଼ିନେସନ୍‌କୁ କହିଛନ୍ତି 'ଅର୍ଗାନିକ୍ କମ୍ପୋଜିସନ୍', କାହିଁକିନା, ଗୋଟାକୁ ଛାଡ଼ି ଅନ୍ୟଟାକୁ ଭାବିହେବନାହିଁ । ଏବଂ ଯେହେତୁ 'ଜୈବ', ଏ କମ୍ପୋଜିସନ୍ ନିଜକୁ ପୁନରୁତ୍ପନ୍ନ କରିପାରେ ବାରମ୍ବାର । କମ୍ପୋଜିସନ୍ ମାନେ, କର୍ତ୍ତୃତ୍ୱ ଆଉ ଅଧସ୍ତନତାର ସଂପର୍କଗତ ଅବିଚ୍ଛିନ୍ନତା । ଏଇ ଦିଗରୁ 'ହିଗେମନି', କ୍ଷମତାବାନ୍‌ର ହେଉ କି କ୍ଷମତାହୀନର ହେଉ, କର୍ତ୍ତୃତ୍ୱର ଏକାନ୍ତ ଆବଶ୍ୟକ ସର୍ତ୍ତ । ଅର୍ଥାତ୍, ସହଯୋଗିତା ଯଦି ବାଧ୍ୟବାଧକତାରୁ ଅଧିକ ପ୍ରବଳ, ଡମିନ୍ୟାନ୍ସ ପାଲଟିଯାଏ ହିଗେମନି । ଇଏ ଏଭଳି ଗତିଶୀଳ ଏକ ପ୍ରତ୍ୟୟ, ଯା ଆଧିପତ୍ୟକୁ ଉନ୍ମୁକ୍ତକରିରଖିଚି ସବୁବେଳେ ପ୍ରତିରୋଧ ଆଡ଼କୁ । ଅଧସ୍ତନର ସମ୍ମତି ଆଦାୟକରାଯାଇପାରେ ବଳପୂର୍ବକ, କିନ୍ତୁ ସେତେବେଳେ ସେ କୋଲାବରେଟର୍ ହେବନାହିଁ; କ୍ଷମତାର ଭାଗଦେଇ ମଧ୍ୟ ସମ୍ମତି ଅସୁଲ୍‌କରାଯାଇପାରେ; ସେତେବେଳେ ମିଳେ ସହଯୋଗ । ମାତ୍ର କାର୍ଯ୍ୟକ୍ଷେତ୍ରରେ

ଦରକାରହୁଏ ଉଭୟର ପାଚନ; ସେତେବେଳେ, ଉପାଦାନର ଅନୁପାନ ନିର୍ଣ୍ଣୟକରେ ହିଗେମନିର ସ୍ଥାୟିତ୍ୱ । ରାଜନୀତି କ୍ଷେତ୍ରରେ ତେଣୁ ହିଗେମନି ସ୍ୱଭାବତଃ ସଙ୍କଟସଙ୍କୁଳ ଏକ ପ୍ରତ୍ୟୟ । ଦ୍ୟର୍ଥବୋଧକ ଓ ସନ୍ଦମାନ । ଭାରତର ଇତିହାସରେ ଏ ପ୍ରତ୍ୟୟକୁ ଶାସକଶ୍ରେଣୀ ଯୋଉ ଭାବରେ ଉପଭୋଗ କରିଆସିଚି, ବୁଝିବା ଦୁଷ୍କର ଯେ ସହଯୋଗୀତାର ଅନୁପାନ ବେଶି ନା ବଳପ୍ରୟୋଗ ଉପାଦାନଟା ହିଁ ଏକକ ନିର୍ଦ୍ଧାରକ । ଗ୍ରାମ୍‌ଷି ଲେଖିବାବେଳକୁ ଇଟାଲିରେ ରାଜତ୍ୱ କରୁଥିଲା ଫ୍ୟାସିଜ୍ମ; ମାତ୍ର ବିଦେଶୀ ଦଖଲକରି ନଥିଲେ ରାଜ୍ୟ ବା ରାଷ୍ଟ୍ରକୁ । ତେଣୁ ତାଙ୍କ ଉପଲବ୍ଧିକୁ ଅବିକଳ ବ୍ୟବହାରକରିବା ଠିକ୍‌ନୁହେଁ । ଯେପରି, ଗାନ୍ଧି ବ୍ରିଟିଶ୍‌ରାଜକୁ ସମର୍ଥନକରିଚନ୍ତି ୧୯୨୧ ପର୍ଯ୍ୟନ୍ତ, କାହିଁକିନା, ସ୍କୁଲ୍‌କଲେଜ୍ କୋର୍ଟକଚେରୀ ଗୁଡ଼ାକ ଦେଖି ବିଶ୍ୱାସ ଜନ୍ମିଚି, ବ୍ରିଟିଶ୍ ରାଜତ୍ୱ ବାସ୍ତବିକ୍ ଆଇନ୍‌ର ଶାସନ । କିନ୍ତୁ ଜାଲିଆନ୍‌ୱାଲାବାଗ୍ ହତ୍ୟାକାଣ୍ଡ ଓ ରଓଲାଟ୍ ଆ୍ୟାକ୍ଟର ଅପବ୍ୟବହାର ଦେଖି ଆରମ୍ଭକରିଚନ୍ତି ଅସହଯୋଗ । କୋଲାବରେଟର୍ ଭୂମିକାରୁ ଶତ୍ରୁର ଭୂମିକାକୁ ଏ ସ୍ଥାନାନ୍ତରରୁ ହିଗେମନିର ତାତ୍ପର୍ଯ୍ୟ ସ୍ପଷ୍ଟ ହେବନାହିଁ । ସେଥିପାଇଁ, ଦ୍ୟର୍ଥବୋଧକ ବା ଆ୍ୟାମ୍ବିଗୁଅସ୍ । ଶତ୍ରୁହେଲେ, କାହିଁକିନା, ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ ନହେଲେ, ଆଇନର୍ ଶାସନ କେବଳ ବାଗାଡ଼ମ୍ବର, ଏବଂ ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ ହୋଇପାରିବେ ଯଦି ବିଜାତୀୟ 'ଜୋର୍ ଯାର ମୁଲକ୍ ତାର' ଲୋପପାଇ ସ୍ଥାପିତହୁଏ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ର । ତା ହେଲେଯାଇ 'ସମାନତା' ପାଇବ ରାଷ୍ଟ୍ରନୀତିର ମର୍ଯ୍ୟାଦା, ପ୍ରଜା ହେବ ନାଗରିକ । ଅନ୍ୟ ଶବ୍ଦରେ, ଗାନ୍ଧି ଉପଲବ୍ଧିକଲେ, ବ୍ରିଟିଶ୍‌ରାଜର ହିଗେମନି ନାହିଁ, ଅଛି କେବଳ ଡମିନ୍ୟାନ୍ସ । ଆହ୍ୱାନଜଣାଇଲେ ସେଇ ଡମିନ୍ୟାନ୍ସକୁ ଗଣଆନ୍ଦୋଳନ ମାଧ୍ୟମରେ । କାମଟା ଆମୂଳଚୂଳ ରାଜନୀତିକ, ମାନେ, ରାଜଶକ୍ତି ସହିତ ଲୋକଶକ୍ତିର ଲଢ଼ାଇ । ଏ ଲଢ଼ାଇରେ ଲୋକଶକ୍ତି ଯଦି ରାଜଶକ୍ତିରୁ ଅଧିକ ହୁଏ, ରାଷ୍ଟ୍ରର ସ୍ୱୈରତାନ୍ତ୍ରିକ ଚରିତ୍ର ଛାଏଁଛାଏଁ ବଦଳିଯିବ । ଲୋକ ଦଖଲକରିବେ ରାଷ୍ଟ୍ରଯନ୍ତ୍ର । ଜୋର୍‌ଦେଇଚନ୍ତି ସେଥିପାଇଁ ଲୋକଙ୍କ ସଲିଡାରିଟି ଉପରେ, ଜାତି-ଉପଜାତି ଭିତରେ ଯେମିତି, ଧନୀ-ଗରିବ ଭିତରେ ସେମିତି ହିଗେମନି ରହିଥିଲା । ସେଗୁଡ଼ାକୁ ଗାନ୍ଧି ଉପେକ୍ଷାକରିଚନ୍ତି, କାହିଁକିନା ବ୍ରିଟିଶ୍ ସ୍ୱୈରତନ୍ତ୍ର ଦୃଷ୍ଟିରେ ସମସ୍ତ ଭାରତୀୟ ବିନା ବ୍ୟତିକ୍ରମରେ ଅଧସ୍ତନ ପ୍ରଜା । ଏଲିଟ୍ କୋଲାବରେଟର୍ ବି ବ୍ୟତିକ୍ରମ ନୁହେଁ । ଅଧସ୍ତନତାର ଚିହ୍ନାୟନକୁ ଜାତୀୟ ଚରିତ୍ର ଦେଇନଥିଲେ ପ୍ରତିରୋଧ ହୋଇଥାନ୍ତା ଅନ୍ତର୍ଦ୍ୱନ୍ଦ୍ୱରେ ଖଣ୍ଡିତ ।

ସର୍ବାତ୍ମକ ଓ ସାଧାରଣ ଏଇ ଚିହ୍ନାୟନ ତେବେ ଗୃହୀତହେଲାନାହିଁ କାହିଁକି ବ୍ରିଟିଶ୍ ଭାରତଛାଡ଼ି ଚାଲିଯିବା ଉତାରୁ ? କାହିଁକିନା, ବ୍ରିଟିଶ୍ ଆସିବା ଆଗରୁ ସୁଦ୍ଧା

ଭାରତର ସିଭିଲ୍ ସୋସାଇଟିରେ ଏଲିଟ୍‌ର ଆଧିପତ୍ୟ ଅତୁଟଥିଲା, ଏବଂ ତାର ଉପଜାତ ଯୋଉ ଅସନ୍ତୋଷ, ତା ମଧ୍ୟ ଅପ୍ରକଟ ଥିଲାନାହିଁ । ନିଆଁ ନ ଦିଶିଲେ ବି ଧୂଆଁ ଦିଶିଚି ନାନା ଭଙ୍ଗୀ, ରୂପ ଓ ତୀବ୍ରତାରେ । ସୁପ୍ତ ସେଇ ବିଭେଦ ଏକ୍ଷଣି ମୁଣ୍ଡଟେକିଲା, ଇଂରେଜ୍‌ର ଜାଗା ଯେହେତୁ ଦଖଲକଲା ଏଲିଟ୍; ଏବଂ ଅଧସ୍ତନ ସାଧାରଣ ଲୋକଙ୍କୁ ପୂର୍ବପରି ଇତରକରି ରଖିଲା କ୍ଷମତାର ସୀମାନ୍ତରେ । ଗ୍ରାମଶ୍ଚିପ୍ରଦତ୍ତ ବ୍ୟାଖ୍ୟାର ଆଲୋକରେ କହିହେବ, ସ୍ୱାଧୀନତାସଂଗ୍ରାମ ବେଳେ ଲୋକଙ୍କ ଯୋଉ 'ସମ୍ମତି' ନେତୃତ୍ୱକୁ କରିଥିଲା କ୍ଷମତାବାନ୍, ଅର୍ଜିତ ସେଇ ସମ୍ମତିକୁ ସାର୍ବଭୌମ ରାଷ୍ଟ୍ର ଉପରେ ହିଗେମନି ନିର୍ମାଣ ସକାଶେ ଏଲିଟ୍ କାମରେ ଲଗାଇଲାନାହିଁ; କିମ୍ବା ହିଗେମନି ନିର୍ମାଣକରିବାକୁ ଯାଇ ବ୍ୟର୍ଥ ହୋଇଯାଇଚି । ଭାରତ ନାମଧେୟ ଜାତିରାଷ୍ଟ୍ର ତେଣୁ ପ୍ରମାଣ କରିଦେଇଚି, ଜନସମ୍ମତି ଉପରେ ଆଧାରିତ ସଂଗ୍ରାମ ଯଦି ରାଜନୀତିକ କ୍ଷମତା ପ୍ରତ୍ୟାଶାରେ କରାଯାଏ, ନେତୃତ୍ୱ ଶେଷପର୍ଯ୍ୟନ୍ତ କ୍ଷମତା ଦଖଲକଲେ ସୁଦ୍ଧା, ଜନସମ୍ମତି ଆପେ ଆପେ ହିଗେମନିରେ ରୂପାନ୍ତରିତ ହୁଏନା । ଅନ୍ୟ ଶବ୍ଦରେ, ପରିବର୍ତ୍ତିତ ପରିସ୍ଥିତିରେ ଅନ୍ୟପ୍ରକାର ରାଷ୍ଟ୍ର ସଂଗଠିତ କରିନପାରିଲେ, ଅର୍ଥାତ୍ ଆହୁରି ଥରେ ଜନଯୁଦ୍ଧରେ ପ୍ରବୃତ୍ତ ନହେଲେ, ସର୍ବସାଧାରଣଙ୍କ ହିଗେମନି ପ୍ରତିଷ୍ଠାପାଇବନାହିଁ । ଜନସମ୍ମତିର ଧାରାବାହିକତା ବ୍ୟାହତହୋଇଚି, ଖୁବ୍ ସମ୍ଭବତଃ, ଔପନିବେଶିକତା ବିରୋଧରେ ସଂଗଠିତ ସଂଗ୍ରାମର ଉପାୟ ଥିଲା ଯେହେତୁ ଦ୍ୱିବିଧ; ଯେପରି, ଯୋଉ ଶିକ୍ଷିତ ଅନୁପ୍ରେରିତ ଏଲିଟ୍‌କୁ ନେଇ ଗାନ୍ଧି ନିଜେ ରଣକ୍ଷେତ୍ରକୁ ଓହ୍ଲାଇଲେ, ସେମାନେ ଥିଲେ ତାଲିମ୍‌ପ୍ରାପ୍ତ ଓ ଶୃଙ୍ଖଳାବଦ୍ଧ । ଗାନ୍ଧି ତ ଶୃଙ୍ଖଳା ଉପରେ ଦେଇଚନ୍ତି ଅନବରତ ଗୁରୁତ୍ୱ । କିନ୍ତୁ ଜନସମୁଦ୍ରରେ ଏମାନେ ଥିଲେ ଶଙ୍ଖେ ପଣା । ମୋବିଲାଇଜେସନ୍‌ର ଆକାର ଓ ଉତ୍ତେଜନା ତିଆରିକରିଚନ୍ତି ଯୋଉମାନେ, କେହିହେଲେ ତାଲିମ୍ ପାଇନାହାଁନ୍ତି କି 'ସତ୍ୟାଗ୍ରହ' 'ଅହିଂସା' ଭଳି ଭାବଗର୍ଭକ କଥାର ମର୍ମ ବୁଝିନାହାଁନ୍ତି । ସେ ଯୋଗ୍ୟତା ତାଙ୍କର ଥିଲାନାହିଁ । ସେମାନଙ୍କ ମୋବିଲାଇଜେସନ୍‌କୁ କୁହାଯାଇପାରେ ପ୍ରାକ୍-ଆଧୁନିକ । ସମସ୍ତେ ଚଷାଭୁଷା କି ଅନ୍ତ୍ୟଜ ଜାତି / ଶ୍ରେଣୀର ଲୋକ । 'ସ୍ୱରାଜ' ମାନେ ତାଙ୍କପାଇଁ ଅରଟରେ ସୂତାକାଟିବା କି ସମୁଦ୍ରପାଣିରୁ ଲୁଣମାରିବା, ଗୋରାଙ୍କୁ ଏକେଲାପାଇଲେ ପିଟିବା କି ଥାନାଉପରକୁ ଚଢ଼ିଯାଇ ପତାକାପୋତିବା । ମିଛ ସତ କହି ପେନ୍‌ସନ୍ ନେଉଚନ୍ତି, କାହିଁକିନା, ପାର୍ଲାମେଣ୍ଟାରି ପଦ୍ଧତି ମାନେ ଏଲିଟ୍‌ଙ୍କ ସାର୍ଟିଫିକେଟ୍ କି ସୁପାରିଶ୍ । ସଂଗଠନ ତେଣୁ ଆଧୁନିକ (ଏଲିଟ୍) ଆଉ ପ୍ରାକ୍-ଆଧୁନିକ (ଅଧସ୍ତନ) । ସଂଗଠନ ବୋଲି ବି କହିହେବନାହିଁ; ଏଲିଟ୍ ଦୃଷ୍ଟିରେ 'ସ୍ୱତଃସ୍ଫୂର୍ତ୍ତ ଜାଗରଣ' । ଯୋଉଠି

ଜାଗରଣ ସ୍ୱତଃସ୍ଫୂର୍ତ୍ତ (ଚମ୍ପାରଣ-ଚଉରିଚଉରା), ଗାନ୍ଧି ଉପାସରହିଚନ୍ତି ପ୍ରତିବାଦରେ । ଏବେକା ଶାସକଶ୍ରେଣୀ ଏମାନଙ୍କ ସମ୍ମତିପାଇବାକୁ ତଥାପି ଚେଷ୍ଟାକରୁଚି । କମିଉନିଷ୍ଟ ବି ପଶିପାରୁନାହାଁନ୍ତି ଭିତରକୁ । ତାଙ୍କର ଅଛି ଏମିତି ଶୃଙ୍ଖଳାବିଧି ଯା ଗାନ୍ଧିଙ୍କ ଅନୁଶାସନଠାରୁ ଆହୁରି କଡ଼ା । କାହିଁକିନା, ସେମାନେ ମଧ୍ୟ ଏଲିଟ୍ । ଗ୍ରାମ୍‌ଚି କିନ୍ତୁ ଦରିଦ୍ରଲୋକ, ପାଠ ବି ପଢ଼ିନଥିଲେ ବେଶି, ତେଣୁ କୋଉହେଲେ 'ସମଷ୍ଟି' ତିଆରିକରି ପାରିନାହାଁନ୍ତି, ବନ୍ଦିଶାଳାରେ ଅସୁସ୍ଥ ଅବସ୍ଥାରେ ସାଙ୍କେତିକ ଭାଷାରେ ଯୋଉ ଟୀକାଟିପ୍ପଣୀ ଛାଡ଼ିଯାଇଚନ୍ତି, ସେଥିରୁ କିଛିକିଛି ମନ୍ତବ୍ୟ ଆମ କାମରେ ଲାଗିପାରେ; ଯେପରି, ଏଭଳି ଗୋଳମାଳିଆ ପରିସ୍ଥିତିରେ ଇଣ୍ଟେଲେକ୍‌ଚୁଆଲ୍ କରିବେ କଣ ? କାହିଁକିନା, ହିଗେମନିର ଉତ୍ସ ସଦାସର୍ବଦା ଅସାମ୍ୟ ।

କିନ୍ତୁ ଇଣ୍ଟେଲେକ୍‌ଚୁଆଲ୍ କିଏ ? ଗ୍ରାମ୍‌ଚି କହିଚନ୍ତି, ଆମେ ସମସ୍ତେ ଜଣେ ଜଣେ ଇଣ୍ଟେଲେକ୍‌ଚୁଆଲ୍ । ଏବଂ ସେଥିପାଇଁ, କାଉଣ୍ଟରହିଗେମନି ଗଢ଼ିତୋଳିବାକୁ ସମର୍ଥ । ଭାରତବର୍ଷ ଯଦି ହୁଏ ନିର୍ଦ୍ଦିଷ୍ଟ ପ୍ରେକ୍ଷିତ, ବୁର୍ଜୋୟାରାଷ୍ଟ୍ର ଜନସାଧାରଣଙ୍କ ସମ୍ମତି ଆଦାୟକରୁଚି ଉତ୍କୋଚ ଓ ବନ୍ଧୁକ ମାଧ୍ୟମରେ; ଆହୁରି ଅନେକ ସୂକ୍ଷ୍ମତର କୌଶଳ ବି ରହିଚି । ଜନସାଧାରଣଙ୍କ ସ୍ୱାର୍ଥରେ, ରାଷ୍ଟ୍ରର ସେଇ କପଟ ହିଗେମନି ବିପକ୍ଷରେ କାଉଣ୍ଟର୍-ହିଗେମନି ଖାଡ଼ାକରିବ ଇଣ୍ଟେଲେକ୍‌ଚୁଆଲ୍ । କିନ୍ତୁ ଇଣ୍ଟେଲେକ୍‌ଚୁଆଲ୍ ବି କହିପାରେ, ଭାବୁକ ଭାବରେ ତାର ଚିନ୍ତା ଓ କର୍ମଧାରା ଯେହେତୁ ସ୍ୱଶାସିତ (ଅଟୋନମସ୍) ଏବଂ ରାଷ୍ଟ୍ର ତାକୁ ପୁରସ୍କାରଦେଉଚି ସିନା , କ୍ଷତି ତ କିଛି କରୁନାହିଁ ! ଗ୍ରାମ୍‌ଚି କହିବେ, କଥାଗୁଡ଼ାକ କେବଳ କାଣ୍ଡଜ୍ଞାନ (=କମନ୍‌ସେନ୍ସ) ପ୍ରସୂତ; ଗଭୀର ବିବେଚନା ଏ ବକ୍ତବ୍ୟର ହେତୁ ହୋଇପାରେନା, ଇତିହାସଚେତନା ଯେହେତୁ କାମକରୁନାହିଁ । ସମାଜକୁ ଯଦି ଏକ ଷ୍ଟ୍ରକ୍‌ଚର୍ ଧରାଯାଏ, ପରିବାର-ବିଦ୍ୟାଳୟ-ମନ୍ଦିର-ହସ୍ପିଟାଲ-ଟ୍ରେଡ୍ ଇଉନିୟନ୍-କ୍ଲବ୍-ପ୍ରେସରଗ୍ରୁପ୍ ପ୍ରଭୃତି ଅନୁଷ୍ଠାନ ସେଇ ଷ୍ଟ୍ରକ୍‌ଚରର ଉପରିଭାଗ, ସୁପରଷ୍ଟ୍ରକ୍‌ଚର୍ । ସୁପରଷ୍ଟ୍ରକ୍‌ଚର୍ ନିର୍ଦ୍ଧାରଣକରେ ରାଷ୍ଟ୍ରର ରୂପରେଖ; ଏବଂ ସିଭିଲ୍ ସୋସାଇଟି ଯେହେତୁ ସେଇ ସୁପରଷ୍ଟ୍ରକ୍ଚର୍, ରାଷ୍ଟ୍ର ପ୍ରତିଭାତକରେ ସମାଜର ଚରିତ୍ରଲକ୍ଷଣ । ଅନ୍ୟ ଶବ୍ଦରେ, ସିଭିଲ୍ ସୋସାଇଟି ନିୟନ୍ତ୍ରଣକରେ ନୈତିକ ଓ ବୌଦ୍ଧିକ ଶିକ୍ଷା, ଆଉ ରାଷ୍ଟ୍ରର କାମ ରାଜନୀତିକ ତଥା ଆଇଡିୟଲଜିକ୍ୟାଲ୍ । ସିଭିଲ୍ ସୋସାଇଟିରୁ ରାଜନୀତିକ ଦଳମାନଙ୍କୁ ବାଦ୍‌ଦେଇଚନ୍ତି, କାହିଁକିନା, ସେଗୁଡ଼ାକର ଷ୍ଟ୍ରକ୍‌ଚର୍ ରାଷ୍ଟ୍ରର ଗଢ଼ଣ ଭଳି ଉପରତଳ । ଇତିହାସରୁ ଦିଶୁଚି, ସିଭିଲ୍ ସୋସାଇଟିର ଏଇ ଅଙ୍ଗପ୍ରତ୍ୟଙ୍ଗ, ଗ୍ରାମ୍‌ଚିଙ୍କ ପରିଭାଷାରେ, ନନ୍-ଇକନମିକ୍ ଆଉ ନନ୍-ଷ୍ଟେଟ୍ । ମାତ୍ର ସମାଜରେ ଯେହେତୁ

ଭଙ୍ଗାଗଢ଼ା ଲାଗିରହିଚି (ଫରମେସନ୍ ଆ୍ୟାଣ୍ଡ୍ ରିଫରମେସନ୍), କ୍ୟାପିଟାଲିଜ୍ମ ତା ଭିତରକୁ ପଶିଆସି କହୁଚି, ଧନତନ୍ତ୍ର କୁଆଡ଼େ ବିଶ୍ୱଜନୀନ (ଇଉନିଭର୍ସାଲ୍) । ଅର୍ଥାତ୍, ଫରମେସନ୍-ରିଫରମେସନ୍ ଊର୍ଦ୍ଧ୍ୱରେ; କାହିଁକିନା, ସିଭିଲ୍ ସୋସାଇଟି ଆଉ ନୀତି କି ବୁଦ୍ଧିକୁ ଶୋଧନକରେନା, ତାର ଏକମାତ୍ର ଧେୟ ଧନ-ଉତ୍ପାଦନ । ଫଳରେ, ସୁପରଷ୍ଟ୍ରକ୍‌ଚର୍ ଯୋଉ ସୁଶୀଳ ସମାଜ, ତା ଉପରେ ହିଗେମନି ବିସ୍ତାରକରିଚି ବିତ୍ତବାନ୍ ଏକ ସଂଖ୍ୟାଲଘୁ ଶ୍ରେଣୀ । ସମାଜର ଗଠନ ତେଣୁ ଅର୍ଥନୀତିକଶ୍ରେଣୀ→ସୁଶୀଳସମାଜ→ ସାର୍ବଭୌମ ରାଷ୍ଟ୍ର । ଏ ତିନିଟି ସ୍ତରକୁ ଓ ସ୍ତରଗୁଡ଼ାକର ଆପେକ୍ଷିକ ଗୁରୁତ୍ୱକୁ ନିରୀହ କାଣ୍ଡଜ୍ଞାନ ଉନ୍ମୋଚନ କରିପାରେନା, କି ପ୍ରାତ୍ୟହିକ ଜୀବନଯାତ୍ରାରେ ସେଇ ଗୁରୁତ୍ୱର ପ୍ରତିଫଳନକୁ ଚିହ୍ନିପାରେନା ସନ୍ଦେହ ନାହିଁ, ଗ୍ରାମଷ୍ଟିଙ୍କ ନଜରରେ ରହିଚି ଏକମାତ୍ର ଇଉରୋପ୍‌ର ଶିଳ୍ପୋନ୍ନତ ସମାଜ; କଥାଗୁଡ଼ାକ ଭାରତ ପ୍ରତି ସର୍ବାଂଶରେ ପ୍ରଯୋଜ୍ୟ ନହେଲେ ବି ଆଂଶିକ ହେବା ସମ୍ଭବପର । ଲକ୍ଷ୍ୟକରିବା କଥା, ଅର୍ଥନୀତିକୁ ସିଭିଲ୍ ସୋସାଇଟି ସହିତ ଅଙ୍ଗାଙ୍ଗୀ ନକରି, ଗ୍ରାମ୍‌ଷ୍ଟି ରାଷ୍ଟ୍ରକୁ ବସାଇଚନ୍ତି ଇକନମିର ସହଚର ଭୂମିକାରେ, ଗ୍ଲୋବାଲାଇଜେସନ୍ ଯୁଗରେ ଆମେ ଯା ହାଡ଼େହାଡ଼େ ବୁଝୁଚୁଁ । ତେଣୁ ଖାଲି ବ୍ୟକ୍ତିଗତ ଆଚରଣରେ ନୁହେଁ, ଦେଶର ରାଜନୀତିରେ ମଧ୍ୟ ଇତିହାସଚେତନା ବୁଝାଇଦିଏ ଆମେ ଯୋଉଠି ରହିଚୁଁ, ସେଠିକି ଆସିଲୁଁ କୋଉ ବାଟଦେଇ, ଏବଂ ସେ ଅବସ୍ଥା ଯଦି ଅଭିପ୍ରେତ ନୁହେଁ, କେତେଦୂର ସମର୍ଥ ଇଣ୍ଟେଲେକ୍‌ଚୁଆଲ୍ ନିଜକୁ ଆଉ ସମାଜକୁ ପୁନର୍ଗଠିତକରିବାକୁ ? ଭାବୁକର ଅଟୋନମି ତେଣୁ ଏକ ଭାବବାଦୀ ପ୍ରତୀତି; ତା ସହିତ ପ୍ରତ୍ୟକ୍ଷ ଅଭିଜ୍ଞତାର ସଂସ୍ରବ ନାହିଁ । ପୁରସ୍କାର ଦେଇଚି ରାଷ୍ଟ୍ର ସେଇମାନଙ୍କୁ ଯିଏ ମସ୍ତିଷ୍କ ଭଡ଼ାଲଗାଇବାକୁ ସମ୍ମତ, ସ୍ୱଶାସିତ ନୁହେଁ । ଅବଶ କୋଉ ଅଭିନବ ଉପସର୍ଗ ନୁହେଁ, ମଧ୍ୟଯୁଗରେ କ୍ୟାଥଲିକ୍ ଧର୍ମ ଏ କାମ କରିଚି ଇଉରୋପ୍‌ରେ; ବ୍ରାହ୍ମଣ ପୁରୋହିତ ଜ୍ୟୋତିଷ କରିଚନ୍ତି ଭାରତରେ; ଗ୍ରାମ୍‌ଷି ସେମାନଙ୍କୁ କହିଚନ୍ତି, ଟ୍ର୍ୟାଡିସନାଲ୍ ଇଣ୍ଟେଲେକ୍‌ଚୁଆଲ୍ । ସୁବର୍ଣ୍ଣକୁଣ୍ଡଳ ପାଟପଥା ସବୁଯୁଗରେ ରହିଚି; ବୁଝିବାକୁ ହେବ ଇତିହାସ ପ୍ରତି ସେମାନଙ୍କ ଅନ୍ତର୍ଦୃଷ୍ଟି । ଇତିହାସ-ସଚେତନତା ଥିଲେ ବୁଝିବା ଦୁରୂହ ନୁହେଁ ଯେ ମହାକାଶ-ଗବେଷଣା କି ଔଷଧ-ଉଦ୍‌ଭାବନ ପଛରେ କି ରାଜନୀତି ରହିଚି । ସେଠି ମଧ୍ୟ ହିଗେମନି ଆଉ କାଉଣ୍ଟର୍-ହିଗେମନି ।

ଇଣ୍ଟେଲେକ୍‌ଚୁଆଲ୍‌ର କାମ, ସେଥିପାଇଁ, କିଛି ଜରୁରି ପ୍ରଶ୍ନର ଜବାବ ଖୋଜିବା; ଯେପରି, କ୍ଷମତା ଜିନିଷଟା କଣ ଖାଲି ଆଧିପତ୍ୟ ଓ ପ୍ରତିରୋଧର ଛକାପଞ୍ଝା ? ନା ଆଧିପତ୍ୟ କରୁଥିବା ଶକ୍ତି ମଧ୍ୟ ଅଧସ୍ତନ ଭଳି ଜଖମ ? ଅଧସ୍ତନର ପ୍ରତିରୋଧକୁ ଉତ୍କୋଚ କି ବନ୍ଧୁକ ଦନ୍ତହୀନ କରିଦେଇପାରେ କି ?

କରିବା ଯଦି ସମ୍ଭବପର, ସଂସ୍କୃତି (କଲ୍‌ଚର୍) ସେଠି ସହାୟହେବ କାହାର ? ଅର୍ଥାତ୍, ପ୍ରଭୁତ୍ୱକାରୀ ଶକ୍ତି ଖାଲି ଭାବାଦର୍ଶ (ଯେପରି, କ୍ୟାପିଟାଲିଜ୍ମ) ଦ୍ୱାରା ସମାଜରେ ହିଗେମନି ସୃଷ୍ଟିକରିପାରେ କି ? ଯଦି ପାରେ, କ୍ଷତିକାରକ ସେଇ ମୂଲ୍ୟବୋଧକୁ ଅଧସ୍ତନ ଜନସମଷ୍ଟି ଆପଣା ମନନ ଓ ଜୀବନ ପକ୍ଷରେ କଲ୍ୟାଣକର ବୋଲି ଗ୍ରହଣକରିପାରେ କି ? ସ୍ୱତଃପ୍ରବୃତ୍ତ ହୋଇ ? ଆଜିର ଦୁନିଆରେ ଏଇ ପ୍ରଶ୍ନଗୁଡ଼ାକ ଅତିଶୟ ଜରୁରୀ । ସଦୁତ୍ତର ଦେଇପାରେ ଯିଏ, ସେହି ହେବ ବୁଦ୍ଧିଜୀବୀ । ପ୍ରଶ୍ନଗୁଡ଼ାକର କୂଟାଭାସ ହୁଏତ ତା ଆଗରେ ଆଣି ଠିଆକରିଦେବ ବିମର୍ଷ ଏକ ନିୟତି; ସେ ବିଷାଦକୁ ଇଚ୍ଛାଶକ୍ତିର ପ୍ରଖର ତେଜରେ ନିରସ୍ତକରିଦେବା ମଧ୍ୟ ତାର କର୍ତ୍ତବ୍ୟ ।

କିନ୍ତୁ, ଗ୍ରାମ୍‌ଶ୍ଚି କହିବା ପରି, ବିବାକ୍ ଲୋକ କଣ ହୋଇପାରିବେ ବୁଦ୍ଧିଜୀବୀ ? ଜାଗାଟା ଇଉରୋପ୍ ହେଲେସୁଦ୍ଧା । କ୍ୟାପିଟାଲିସ୍ମ ତ ତାକୁ ଗ୍ରାହକରେ ପରିଣତ କରିସାରିଚି; ଦରକାର ଥାଉ କି ନଥାଉ, ଆଖିବୁଜି କେମିତି ଜିନିଷ କିଣୁଥିବ, ସେଥିପାଇଁ ତାକୁ ପ୍ରରୋଚିତ କରାଯାଉଚି ଦିନରାତି । କ୍ୟାପିଟାଲିସ୍ମକୁ 'ନା' କହିବ ତେବେ କେମିତି ? ଗ୍ରାମ୍‌ଶ୍ଚିଙ୍କ ଉତ୍ତର: ବହିଃପ୍ରକୃତିର ଅଂଶବିଶେଷ ହୋଇସୁଦ୍ଧା ମଣିଷ ପ୍ରକୃତି ଦିହରେ ନିଜକୁ ହଜାଇଦିଏନା; ତା ପାଖରୁ ବରଂ ବଞ୍ଚିବାର ରସଦ ଆଦାୟକରେ । କେମିତି ? ଖଟଣି ଆଉ କୌଶଳ ପ୍ରୟୋଗକରି । ସେଥିପାଇଁ ସଂପର୍କଟା ଯାନ୍ତ୍ରିକ ନୁହେଁ; ସକର୍ମକ ଓ ସଚେତନ । ପ୍ରତ୍ୟେକ ମଣିଷ ଏଇ ବାଟରେ ବଦଳିଯାଉଚି ଅବିରତ, ଅନ୍ତତଃ ଯେତେଦୂର ବହିର୍ଜଗତ ସହିତ ଏଇ ଜଟିଳ ସଂପର୍କକୁ ଅଦଳବଦଳ କରିପାରୁଚି ଆବଶ୍ୟକ ଅନୁସାରେ । ଅଜସ୍ର ସଂପର୍କରେ ଛନ୍ଦିହୋଇ ସମ୍ପର୍କଗୁଡ଼ାକୁ ବୁଝିବାକୁ ଶିଖୁଚି, ଯା ସକର୍ମକ ଏକ ସଚେତନତା । ଏବଂ ଏଇ ବାଟରେ ଗଠିତହୋଇଚି ତାର ବ୍ୟକ୍ତିତ୍ୱ । ମାନବିକ ସଂପର୍କର ପରିଚାଳନା ଯେହେତୁ ଯାନ୍ତ୍ରିକ ନୁହେଁ, ପ୍ରତ୍ୟେକ ସଂପର୍କ ତାକୁ ସଚେତନକରେ ଅପୂର୍ଣ୍ଣତା କିମ୍ବା ଅପାରଗତା ସମ୍ବନ୍ଧରେ, ଏବଂ ସେଇ ସୂତ୍ରରେ ଘଟେ ଆତ୍ମଶୁଦ୍ଧି । ଇତିହାସଚେତନା ବୁଝାଇଦିଏ ଏଇ ରୀତିରେ ମଣିଷ ବଦଳିଯାଉଚି, ସଂପର୍କ ବଦଳିଯାଉଚି, ଦୁନିଆ ବି ବଦଳିଯାଇଚି ଚିରକାଳ । ଏବଂ ବଦଳିଯିବା ଓ ବଦଳାଇଦେବା ସାମର୍ଥ୍ୟ ଯେହେତୁ ଅର୍ଜନକରିଚି ଏଇ ସୂତ୍ରରେ, ପ୍ରତ୍ୟେକ ମଣିଷ, ରାଜନୀତି କି ଅର୍ଥନୀତିରେ ଅବସ୍ଥାନଗତ ଆପେକ୍ଷିକତା ନିର୍ବିଶେଷରେ, ଜଣେ ଇଣ୍ଟେଲେକ୍‌ଚୁଆଲ୍ । କାହିଁକିନା, ଇତିହାସଚେତନାରୁ ଉଠିଆସେ ନୀତିବୋଧ, ମାନେ, କି ପ୍ରକାର ଜୀବନଯାପନ ଉପଯୁକ୍ତ, ଆଉ କି ପ୍ରକାର ସମାଜବ୍ୟବସ୍ଥା ସେଭଳି ଜୀବନଯାପନ ପକ୍ଷରେ ସହାୟକ

ତଦ୍‌ବିଷୟକ ଚିନ୍ତାଚେତନା । ସମାଜର ବୈପ୍ଳବିକ ପରିବର୍ତ୍ତନ ଘଟାଇବାକାମରେ ଇଣ୍ଟେଲେକ୍‌ଚୁଆଲ୍‌ର ଭୂମିକା ତେଣୁ ଇନ୍ଧନ ସ୍ୱରୂପ । ମାତ୍ର, ଏତେ ସରଳ ନୁହେଁ ଗ୍ରାମ୍‌ଶ୍ଚିଙ୍କ ବକ୍ତବ୍ୟ । ଖାଲି ବାଞ୍ଛିତମାର୍ଗରେ ସଂପର୍କ ପରିଚାଳନା କରିପାରିଲେ କେହି ବିପ୍ଳବ କରେନା । 'ଇଣ୍ଟେଲେକ୍‌ଚୁଆଲ୍' ଶବ୍ଦଟାକୁ ତେଣୁ ବ୍ୟବହାରକରିଚିନ୍ତି ଦୁଇରକମ ପ୍ରେକ୍ଷିତରେ : ସାଧାରଣତଃ ଇଣ୍ଟେଲିଜେନ୍ସିଆ (ବୁଦ୍ଧିଶାଳୀ ସଂପ୍ରଦାୟ) ଯିଏ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧକରନ୍ତି ଜୀବନଦର୍ଶନ ଓ ଭାବାଦର୍ଶ ବୋଧରେ, ଏବଂ ଲୋକଙ୍କୁ ଦୀକ୍ଷିତକରିପାରିଲେ, ଶାସକଶ୍ରେଣୀକୁ ଯୋଗାଇଦିଅନ୍ତି ପ୍ରଭୁତ୍ୱକରିବା ଉପକରଣ, କାହିଁକିନା, ଲୋକ ସେତେବେଳେ 'ହିଗେମନି'କୁ ପ୍ରଶ୍ନକରନ୍ତିନାହିଁ । ପୁଣି, ପ୍ରତ୍ୟେକ ଲୋକ ଜଣେ ଜଣେ ଇଣ୍ଟେଲେକ୍‌ଚୁଆଲ୍, କାହିଁକିନା, କୋଉହେଲେ କାମରେ ସିଏ ନିଶ୍ଚୟ ଦକ୍ଷ; କୋଉହେଲେ ଭାଷାରେ ନିଶ୍ଚୟ ପାରଙ୍ଗମ; ମେଧାବୀ କାର୍ଯ୍ୟକଳାପ ତା ପକ୍ଷରେ ଦୁଃସାଧ୍ୟ ନୁହେଁ : Each man.... carries on some form of intellecutal activity, that is he is a 'Philosopher' and artist, a man of taste, he participates in a particular conception of the world, has a conscious line of moral conduct and therefore contributes to sustain a conception of the world to modify it, that is to bring into being new modes of thought । ସ୍ତମ୍ଭିତହେବା କଥା, ସମାଜ-ରାଜନୀତି-ଶିକ୍ଷା-ସାହିତ୍ୟ, କୋଉହେଲେ କ୍ଷେତ୍ରରେ, ସାଧାରଣଲୋକଙ୍କୁ ଏଭଳି ଦୃଷ୍ଟିରେ ଆମେ ଅଦ୍ୟାବଧି ଦେଖିନାହୁଁ; ଦେଖିନାହୁଁ ବୋଲି, ଏତେ ହତାଶା !

କିନ୍ତୁ ବିବାକ ଲୋକ ଯଦି ବୁଦ୍ଧଜନ, ସ୍ୱତନ୍ତ୍ର ବୁଦ୍ଧୀଜୀବୀଶ୍ରେଣୀ ବାହାରିଲେ କୁଆଡୁ ସମାଜରେ, ଆଉ କୋଉକାମ କରୁଚନ୍ତି ବୋଲି, ତାଙ୍କ ପ୍ରତି ଏତେ ସମୀହ ? ଗ୍ରାମ୍‌ଶ୍ଚି ଏଇଠି ମେଧାକୁ ବୃତ୍ତି ସହିତ ଯୁକ୍ତକରିଚନ୍ତି, କାହିଁକିନା, ଇତିହାସରୁ ଦିଶୁଚି, ଏଭଳି ଏକ ବୃତ୍ତିଜୀବୀଶ୍ରେଣୀ (ଶ୍ରମଜୀବୀ ନୁହେଁ) ସମାଜବିକାଶର ପ୍ରତିପର୍ଯ୍ୟାୟରେ ଦେଖାଦେଇଚି ନିର୍ଦ୍ଦିଷ୍ଟ କ୍ରିୟାକର୍ମକୁ ଉପଲକ୍ଷ୍ୟକରି । ଅର୍ଥାତ୍, ବିବାକ ଲୋକ ବୁଦ୍ଧିବିବେକ ପ୍ରୟୋଗକରି ଜୀବନଯାତ୍ରା ନିର୍ବାହକରୁଥିଲେ ସୁଦ୍ଧା, ସମାଜବ୍ୟବସ୍ଥାରେ ସମସ୍ତେ 'ଇଣ୍ଟେଲେକ୍‌ଚୁଆଲ୍'ର ନିର୍ଦ୍ଦିଷ୍ଟ ଭୂମିକା ପାଳନକରନ୍ତିନାହିଁ; ସେଥିପାଇଁ, because it can happen that everyone at some time fries a couple of eggs or sews up a tear in his jacket, we do not necessarily say that everyone is a cook or a tailor । ଅର୍ଥାତ୍, ବିଶେଷଜ୍ଞ । ଆଜି ଯେତେବେଳେ ସିଭିଲ୍ ସୋସାଇଟିର ଅଭିଭାବକ ହୋଇଚି 'ମାର୍କେଟ୍', ସ୍ୱାଭାବିକଭାବେ ପ୍ରଶ୍ନ ଉଠିବ, କୋଉ କଥାରେ ବିଶେଷଜ୍ଞ ? ଗ୍ରାମ୍‌ଶ୍ଚିଙ୍କ ଇଙ୍ଗିତ,

ମାର୍କେଟ୍‌ର ଆଧିପତ୍ୟ ପ୍ରତି କାଉଣ୍ଟର୍-ହିଗେମନି ସଂଗଠିତ କରିବାକୁ ଶ୍ରମଜୀବୀଶ୍ରେଣୀ ଓ 'କଲ୍‌ଚର୍' ମଧ୍ୟରେ ମଧ୍ୟସ୍ଥତା କରିପାରିବା ସାମର୍ଥ୍ୟରୁ ଯିଏ, ବାସ୍ତବ ବିବେଚନାରେ, ସଂସ୍କୃତିର ବିଶେଷଜ୍ଞ । ସେଇ ତାର ନିର୍ଦ୍ଦିଷ୍ଟ ସାମାଜିକ ଭୂମିକା । ଆଉଗୋଟିଏ ପାର୍ଥକ୍ୟ ମଧ୍ୟ ଦେଖାଇଚନ୍ତି; ମାତ୍ର ଦୁର୍ବୋଧ ମନେହେଉଚି ଏକ୍ଷଣି । ପାର୍ଥକ୍ୟଟା ଟ୍ର୍ୟାଡିସନ୍ୟାଲ୍ (ଐତିହ୍ୟବାହୀ) ଓ ଅର୍‌ଗାନିକ୍ (ଜୈବ) ଇଣ୍ଟେଲେକ୍‌ଚୁଆଲ୍ ମଧ୍ୟସ୍ଥ । ନାଁ ଅଲଗାହେଲେ ବି, ଗୁଣଗତ ତାରତମ୍ୟ ସୁସ୍ପଷ୍ଟ ନୁହେଁ, କାହିଁକିନା, ଶ୍ରମଜୀବୀ ଓ ସଂସ୍କୃତି ମଝିରେ ଯଦି ସେତୁବନ୍ଧ, ଜୈବ କି ଐତିହ୍ୟବାହୀ କୋଉହେଲେ ସଦର୍ଥକ ଚିହ୍ନାୟନ ନୁହେଁ । ଐତିହ୍ୟବାହୀଙ୍କୁ କହିଚନ୍ତି, ଯିଏ ବୁଦ୍ଧିବିଦ୍ୟା କ୍ଷେତ୍ରରେ ସମାଜକୁ ନେତୃତ୍ୱଦେଇଥାନ୍ତି ସଚରାଚର । ଆଉ, ଜୈବ ସେଇମାନେ ଯିଏ ନିଜ ସାମାଜିକଶ୍ରେଣୀର ଅଙ୍ଗାଙ୍ଗୀ; ଅର୍ଥାତ୍, ଶ୍ରେଣୀ-ପରିଚୟରେ ନିମ୍ନବର୍ଗ ଐତିହ୍ୟବାହୀଙ୍କ ସହିତ ପ୍ରତିତୁଳନାରେ ଅନ୍ତତଃ । ଉଦାହରଣ ଦେଇଚନ୍ତି, ମଧ୍ୟଯୁଗରେ ସାମନ୍ତତନ୍ତ୍ର ସହିତ ଧର୍ମଯାଜକଙ୍କ ସଂପର୍କ । ଭାରତରେ ଯେମିତି ବ୍ରାହ୍ମଣଙ୍କ ସହିତ ରାଜନ୍ୟଙ୍କ ଯଜମାନି ସଂପର୍କ । ଅର୍ଥାତ୍, ଶାସକ ସହିତ ଯାଜକର 'ଜୈବ' ସଂପର୍କ । ଅନ୍ୟ ଶବ୍ଦରେ, ଆଜି ଯିଏ ଐତିହ୍ୟବାହୀ, ଏକଦା ଥିଲେ ଅର୍ଗାନିକ୍ : The category of ecclesiastics can be considered the category of intellectuals organically bound to the landed aristocracy । କିନ୍ତୁ କାଳକ୍ରମେ ମାଲିକଶ୍ରେଣୀ ଦୁର୍ବଳହୋଇପଡ଼ିବା ଫଳରେ ଜୈବବନ୍ଧନ ବି ଛିନ୍ନହୋଇଯାଇଚି, ଏବଂ ବୁଦ୍ଧିବିଦ୍ୟାର ଅଗ୍ରଦୂତ put themeselves forward as autonomous and independent of the dominant social group । ଭାରତରେ ଏମାନଙ୍କୁ ଚିହ୍ନିବା କେମିତି ? ଏମାନେ ତ ଇଉରୋପ୍‌ର କ୍ଲର୍ଜି ନୁହନ୍ତି, ରଜାଜମିଦାର ବି ଉଠିଯାଇଚନ୍ତି । ଏମାନଙ୍କ ନବ-ସଂସ୍କରଣ ହେଲେ ଅଧ୍ୟାପକ, ଓକିଲ, ଡାକ୍ତର, ସାମ୍ବାଦିକ, ଲେଖକ ପ୍ରଭୃତି ଶାସକଶ୍ରେଣୀର ଯିଏ 'ନିଜଲୋକ' । ନିର୍ଦ୍ଦିଷ୍ଟ ସାମାଜିକଶ୍ରେଣୀ ନୁହେଁ, କିନ୍ତୁ ଅଟୋନୋମସ୍ ଓ ଇଣ୍ଡିପେଣ୍ଡେଣ୍ଟ୍; ଅଥଚ ଶାସକଶ୍ରେଣୀର ହିଗେମନି ବଜାୟରଖିବାକୁ ସହାୟକ । ସେଇ ବିଚାରରେ ଏମାନେ ମଧ୍ୟ ଅର୍ଗାନିକ୍ । କିନ୍ତୁ ଗ୍ରାମ୍‌ସି କହୁଚନ୍ତି, କ୍ୟାଥଲିକ୍ କ୍ଲର୍ଜି, ରୋମାନ୍ ସାମ୍ରାଜ୍ୟର ପତନ ସତ୍ତ୍ୱେ ବଞ୍ଚିରହିଚନ୍ତି ଯେହେତୁ ସଚେତନଭାବେ ବଦଳାଇଦେଇଚନ୍ତି ନିଜ ଭୂମିକା । ଶାସକ ବଦଳିଗଲେ ସୁଦ୍ଧା ଜନସାଧାରଣଙ୍କ ସହିତ ତାଙ୍କର ସଂପର୍କ ରହିଚି ବୋଲି, ବିଜ୍ଞାନର ନୂଆନୂଆ ଆବିଷ୍କାରଉଦ୍ଭାବନ ଅଥବା ଦାର୍ଶନିକ ଅବବୋଧ ପ୍ରତି, ସମସ୍ତଙ୍କ ଅଲକ୍ଷ୍ୟରେ, ବିଦ୍ୱେଷ ଉଭାଇଯାଇଚି ।

କିନ୍ତୁ ସମାଜରେ ଯଦି କେବେ ସଂଘାତ ଦେଖାଦିଏ, ଐତିହ୍ୟବାହୀ ଏଇ ସାଂଘିକଙ୍କ ଲୋକସଂପର୍କ ହୋଇପଡ଼ିବ ଦ୍ୱିମୁଖୀ, with the clergy simply providing the opinion of the masses in the interest of a social order with which the priests no longer have the organic ties which existed in the middle Ages । ଏ ଉପସର୍ଗର ସମାନ୍ତରାଳ ଭାରତରେ ମଧ୍ୟ ରହିଚି; ଗ୍ରାମ୍‌ଷି କିନ୍ତୁ କିଛି ଲେଖିନାହାଁନ୍ତି । ଅନୁମାନକରି ତାଙ୍କ ସିଦ୍ଧାନ୍ତ ବୋଲି କିଛିହେଲେ ଚଳାଇଦେବା ଅନ୍ୟାୟ ।

ମାତ୍ର ଐତିହ୍ୟବାହୀ ବୁଦ୍ଧିଜୀବୀ ଧର୍ମଯାଜକ ନୁହନ୍ତି ସବୁଯାକ; ନିର୍ଦ୍ଦିଷ୍ଟ ଯୋଉ ବୁଦ୍ଧିଜୀବୀଙ୍କୁ ଦୃଷ୍ଟିରେ ରଖି ଟ୍ର୍ୟାଡିସନ୍ୟାଲ୍ ଇଣ୍ଟେଲେକ୍‌ଚୁଆଲ୍ ସମ୍ବନ୍ଧରେ ଲେଖିଚନ୍ତି, ସିଏ ଅବଶ୍ୟ ବେନେଡେଟୋ କ୍ରୋଚ୍ୟେ (୧୮୬୬-୧୯୫୨), ଇଟାଲିର ସର୍ବଶ୍ରେଷ୍ଠ ଭାବବାଦୀ ଭାବୁକ; ମାତ୍ର ଗ୍ରାମ୍‌ଷି କହୁଚନ୍ତି, the whole of idealist philosophy can easily be defined as the expression of that social utopia by which the intellecutuals think of themselves as independent, autonomous, endowed with a character of their own । ସୋସାଲ୍ ଇଉଟୋପିଆ; ମାନେ, ସର୍ପରେ ରଜ୍ଜୁଭ୍ରମ । ମାତ୍ର ସ୍ୱାତନ୍ତ୍ୟ (ଇଣ୍ଡିପେଣ୍ଡେଣ୍ଟ)ର ଅନୁଭବ ଆସୁଚି କୁଆଡୁ ? କ୍ରୋଚ୍ୟେ ନିଜେ ଭୂମ୍ୟଧିକାରୀ; ନିଜକୁ ତାହେଲେ ଜମିଠୁଁ ସ୍ୱାଧୀନ ଭାବିବା କଥାନୁହେଁ । ମାତ୍ର ଯୋଉ ସମାଜରେ ତାଙ୍କ ଭଳି ରହସ୍ୟବାଦୀଙ୍କ ଜୀବନନିର୍ବାହ, ତା ଏକ ଶ୍ରେଣୀଅଧ୍ୟୁଷିତ ସମାଜ; ଏବଂ ନିଜକୁ ଲିବର୍‌ୟାଲ୍ ଆଖ୍ୟା ଦେଲେସୁଦ୍ଧା ସେ ସମାଜର ଶାସକଶ୍ରେଣୀ ଶିଳ୍ପପତି । ତାଙ୍କରି ଉଦାରବାଦର ପ୍ରବକ୍ତା ବିବାକ ଭାବବାଦୀ ଭାବୁକ; ଯେମିତି ସାମନ୍ତବାଦୀ ଅଭିଜାତଙ୍କ ମୁଖପାତ୍ର ଥିଲେ କ୍ୟାଥଲିକ୍ ଯାଜକ । ଅନ୍ୟ ଶବ୍ଦରେ, ଐତିହ୍ୟବାହୀ ହୁଅନ୍ତୁ କି ଅର୍ଗାନିକ୍, ଜ୍ଞାନଉତ୍ପାଦନ କର୍ତ୍ତବ୍ୟ ହେଲେସୁଦ୍ଧା, କ୍ଷମତାବାନ୍‌ର କୋଲାବରେଟର୍ ସଦାସର୍ବଦା । ଏଇ ତେଣୁ ଇତିହାସର ଶିକ୍ଷା । ଭାରତରେ କିନ୍ତୁ ଔପନିବେଶିକ ରାଷ୍ଟ୍ର ସହିତ ଯୋଉ ଚିନ୍ତାଶୀଳ ଲୋକଙ୍କର ଥିଲା ଜୈବ ସମ୍ପର୍କ, ସେମାନେ ବିବାକ ସିଭିଲିଆନ୍, ଯେପରି ଗଣତାନ୍ତ୍ରିକ ଭାରତରେ ଆଇଏଏସ୍ । ଏମାନେ ହିଁ ରାଷ୍ଟ୍ରର ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ୍, ସୁଶୀଳସମାଜର ନୁହେଁ । ଏବଂ ଟ୍ର୍ୟାଡିସନାଲ୍ ମଧ୍ୟ ଏଇ ଅର୍ଥରେ ଯେ ଏମାନେ ବହନକରି ଚାଲିଚନ୍ତି ବ୍ରିଟିଶ୍ ହିଗେମନିକୁ ଛେଦହୀନ ଶୃଙ୍ଖଳାରେ । କିନ୍ତୁ ଗ୍ରାମ୍‌ଷି ନିଜେ ମଧ୍ୟ ଜଣେ ଇଣ୍ଟେଲେକ୍‌ଚୁଆଲ୍; ଭାବବାଦ ଯଦି ପରିତ୍ୟଜ୍ୟ, ଚେତନାର ଅଭିମୁଖ ହେବ ତେବେ କୋଉ ଦିଗକୁ ? ମାର୍କ୍ସ ଆଉ ଏଙ୍ଗେଲ୍‌ସଙ୍କ ଉଦାହରଣ

ଦେଇଚନ୍ତି; ନିଜେ ଐତିହ୍ୟବାହୀ ହୋଇସୁଦ୍ଧା ସେମାନେ *କମିଉନିଷ୍ଟ ମ୍ୟାନିଫେଷ୍ଟୋ* ରେ ଆବେଦନ କରିଚନ୍ତି: ବୁଦ୍ଧିଜୀବୀ ନିଜ କୃତ୍ରିମ ଭାବଜଗତ ଛାଡ଼ି ବାହାରିଆସୁ, ଯୁକ୍ତକରୁ ନିଜକୁ ସେଇ ଶ୍ରେଣୀ ସାଙ୍ଗରେ, the class that has the future in its hands । ଏଇ ଭବିଷ୍ୟତ୍‌କୁ ଗ୍ରାମ୍‌ଶି କହିଚନ୍ତି 'ଆମେରିକାନିଜ୍ମ ଆଣ୍ଡ୍ ଫୋର୍ଡ଼ିଜ୍ମ', ଯା ଭିତରଦେଇ ଏକ୍ଷଣି ଗତିକରୁଛୁଁ । ତାର ଆଦ୍ୟ ଉପସର୍ଗ ହେଲା, industry and trade, before being business, are a social *service* । ଇଟାଲିରେ ଜେଲ୍‌ଭିତରେ ବସି ଜାଣିଲେ କେମିତି ? ରୋଟାରି କ୍ଲବ୍ ଦେଖି । ବେପାରିଙ୍କ ସମାଜସେବା ! ଅର୍ଥାତ୍ ଅତି ପ୍ରତ୍ୟକ୍ଷ ଭାବରେ ଶିଳ୍ପପତି ହିଁ ସେଠି ଶାସକଶ୍ରେଣୀ । Hegemony is born in the factory and to be exercised requires minimal number of political and ideological intermediaries । କିନ୍ତୁ କ୍ୟାପିଟାଲିଜ୍ମ ନିଜକୁ ପୃଥିବୀସାରା ଦୃଢ଼ୀଭୂତ କରିବାକୁ ଜନ୍ମଭୂମି ଇଉରୋପରେ କାହିଁକି କାମଟା କରିପାରିବନାହିଁ ? କାହିଁକିନା, there do not exist numerous classes without an essential function in the world of production, that is totally parasitic classes. European 'tradition',European 'civilisation' is on the other hand characterised by the existence of such classes, created by the 'richness' and 'complexity' of past history which has left a pile of passive sediment through the phenomena of saturation and fossilisation of the state officials and the intellecuals, of the intellectuals, of the clergy and the landed proprietors, of predatory commerce and of the army.... we can say therefore that the older the history, the more numerous and burdensome is this sedimentation of a mass of useless idlers who live on'inheritance' of their 'ancestors', of these pensioners of economic history । ଭାରତ ସହିତ ଐତିହାସିକ ସାମଞ୍ଜସ୍ୟଗୁଡ଼ାକ ଲକ୍ଷ୍ୟଣୀୟ ନିଶ୍ଚୟ ! ଭାରତ କାହିଁକି ଆମେରିକାନିଜ୍ମ ଆଡ଼କୁ ମନବଳାଇଚି, ବୁଝିହେବ ଅବଶ୍ୟ; କିନ୍ତୁ ସମ୍ଭାବ୍ୟ ପରିଣତି, ଗ୍ରାମ୍‌ଶି କହୁଚନ୍ତି,.... destined necessarily to end up in a form of Bonapartism । ଗ୍ଲୋବାଲାଇଜେସନ୍ କଣ ବୋନାପାର୍ଟିଜ୍ମ ନୁହେଁ ?

ବିବେଚ୍ୟ କିନ୍ତୁ ବୁଦ୍ଧିଜୀବୀ । ଜୈବବୁଦ୍ଧିଜୀବୀ ତେଣୁ ଉଭୟ ଐତିହ୍ୟବାହୀ, ଯିଏ ଉପଲବ୍ଧିକରିଚନ୍ତି କୋଉଦିଗକୁ ମୁହାଁଉଚି ଇତିହାସ, ଆଉ ବିପ୍ଳବ ପଥରେ ଗୋଡ଼ରଖିଚନ୍ତି ଯିଏ ଶ୍ରେଣୀଚେତନାରେ ଉଦ୍‌ବୁଦ୍ଧହୋଇ । ଅର୍ଥାତ୍, ପାର୍ଟିର କର୍ମୀ କି

ନେତା । ବିମୂର୍ତ୍ତ ଏଇ ତତ୍ତ୍ୱବିବେଚନାରେ ରତଥାଇ ମଧ୍ୟ, ଜୀବନର ଅଭିଜ୍ଞତା ଓ ଇତିହାସରୁ ଉଦାହରଣ ଖୋଜିଚନ୍ତି ଏକାସାଙ୍ଗରେ, କାହିଁକିନା, ନିଜେ ପାର୍ଟିଭିତରର ଲୋକ (ଜୈବ); ଐତିହ୍ୟବାହୀଙ୍କ ମର୍ମ କିନ୍ତୁ ଉଦ୍‌ଘାଟନ କରିପାରିବ ଇତିହାସ । ଦାନ୍ତେଙ୍କ *ଡ଼ିଭାଇନ୍ କମେଡି* ସେଇ ଇତିହାସ : the mode of being of the new intellectuals can no longer consist in eloquence, which is an exterior and momentary mover of feelings and passions, but in participation in practical life as constructor, organiser, 'permanent persuader and persuader not just a simple orator' । ଅବଶ୍ୟ, ବଦ୍ଧପରିକରହୋଇ ଏ ରାସ୍ତାକୁ ଯିଏ ବାହାରିବ, ଜାଣିଚି ଥିଏଟର୍‌କରିବାକୁ ବାହାରିନାହିଁ; ଏବଂ ରାସ୍ତାଟା ବି ଦୀର୍ଘ, ଗନ୍ତବ୍ୟରେ ପହଞ୍ଚିବା ମଧ୍ୟ ନିଜ ଜୀବନକାଳ ଭିତରେ ସମ୍ଭବ ନହୋଇପାରେ । କିନ୍ତୁ ପରିବର୍ତ୍ତନ ଯେହେତୁ ଅମୋଘ ନିୟମ, କାମଟା ନିହାତି କୁକୁଡ଼ିପହଁରା ହୋଇପାରେନା । କାହିଁକିନା, କଲ୍‌ଚର୍ ଜମାରୁ ସୁପରଷ୍ଟ୍ରକ୍‌ଚର୍ ନୁହେଁ, ଯାପିତ ଜୀବନର ଅଙ୍ଗାଙ୍ଗୀ; ସେଇ କେବଳ ଯୋଡ଼ିପାରେ ବୁଦ୍ଧିଜୀବୀଙ୍କୁ ସାଧାରଣଲୋକ ସାଙ୍ଗରେ, ପାର୍ଟିକୁ ଜନଗଣଙ୍କ ସାଙ୍ଗରେ, ଏବଂ ସେ କଲ୍‌ଚର୍ ଅବଶ୍ୟ କ୍ୟାଥଲିକ୍ ଧର୍ମଧାରାର ବିପରୀତ, the position of the philosophy of praxis is the antithesis of that of catholicism ।

'ପ୍ରାକ୍‌ସିସ୍', କାହିଁକିନା, ଫ୍ୟାସିଷ୍ଟ ରାଜତ୍ୱରେ ମାର୍କ୍ସବାଦ ନାଁ ମୁହଁରୁ ବାହାରିଲେ, ମୁଣ୍ଡପାତ ! ଫିଲଜଫି ଅବ୍ ପ୍ରାକ୍‌ସିସ୍ ମାନେ ସାକ୍ଷାତ୍ ମାର୍କ୍ସବାଦ, ଯା dose not tend to leave the simple' in their primitive philosophy of common sense, but rather to lead them to a higher conception of life. If it affirms the need for contact between intellectuals and 'simple' it is not in order to restrict scientific activity and preserve unity, at the low level of the masses, but precisely in order to construct an intellectual-moral block which can make politically possible the intellectual progress of the mass and not only of small intellectual groups । ଅର୍ଥାତ୍, ବିପ୍ଳବୀ ସଂଗଠନ (ପାର୍ଟି) ଆଉ ସଂଗଠନର ନେତୃତ୍ୱକରିବେ ଯୋଉ ବୁଦ୍ଧିଜୀବୀ, ଉଭୟଙ୍କ ଭୂମିକା ଗୀର୍ଜା ଏବଂ କ୍ୟାଥଲିକ୍‌ଯାଜକଙ୍କ ଭୂମିକାଠାରୁ ବିଶେଷ ଫରକ ନୁହେଁ, କାହିଁକିନା, ଖ୍ରୀଷ୍ଟାନ୍‌ଧର୍ମର ଅଭ୍ୟୁଦୟ କାଳରେ ସମାଜର ସଂହତିକୁ ଦୃଢ଼ୀଭୂତକରିଚନ୍ତି ଯାଜକ ଲୋକଙ୍କୁ ଭାବାଦର୍ଶରେ ଶିକ୍ଷିତକରି, ରକ୍ଷାକରିଚନ୍ତି the ideological unity of the entire social bloc which that ideology

serves to cement । ଭାରି ତାତ୍ପର୍ଯ୍ୟପୂର୍ଣ୍ଣ ଏଇ ବକ୍ତବ୍ୟ, ବିଶେଷତଃ, ଭାରତ ଭଳି ବହୁପୁରାତନ ଐତିହ୍ୟବାହୀ ସମାଜରେ । କ୍ୟାଥଲିକ୍‌ଧର୍ମ ରୋମାନ୍‌ସାମ୍ରାଜ୍ୟକୁ ଏକଦା ଐକ୍ୟବଦ୍ଧ କରିଚି, ସମାଜର ସଂହତିକୁ ବିଚ୍ଛିନ୍ନତାରୁ ରକ୍ଷାକରିଚି; କିନ୍ତୁ ଲୋକଙ୍କ ସରଳବିଶ୍ୱାସର ସୁଯୋଗନେଇ । ଅର୍ଥାତ୍, କେବଳ କାଣ୍ଡଜ୍ଞାନକୁ ଉଦ୍‌ବୁଦ୍ଧକରି । ହୁଏତ ନୀତିଶିକ୍ଷା; କିନ୍ତୁ ଅବୈଜ୍ଞାନିକ । ମାର୍କ୍ସବାଦକୁ କାଣ୍ଡଜ୍ଞାନ (କମନ୍‌ସେନ୍ସ) ଅଧିଗତ କରିପାରିବନାହିଁ; ପାରିବନାହିଁ ବୋଲି ପାଦ୍ରୀଙ୍କ ଜାଗାରେ ଦରକାର ଇଣ୍ଟେଲେକ୍‌ଚୁଆଲ୍, ଇତିହାସଚେତନା ଭିତରଦେଇ ନୂତନ ମୂଲ୍ୟବୋଧ / ନୈତିକତାରେ ଦୀକ୍ଷିତକରିବେ ଯିଏ ଅଦ୍ୟାବଧି ବୋଧଶୂନ୍ୟ (ସିମ୍ପ୍ଲ) ହୋଇ ରହିଥିବା ଜନଗଣଙ୍କୁ । ସେଇ ଦୃଷ୍ଟିରୁ, କ୍ୟାଥଲିକ୍ ଭାବାଦର୍ଶ ଏଥିକ୍ସ (ଆତ୍ମରଶୁଦ୍ଧି) ଶିଖାଇଥିଲେ ସୁଦ୍ଧା, ଚିନ୍ତା ଓ କର୍ମର ଦ୍ୱାନ୍ଦ୍ୱିକତାରୁ ଉତ୍ପନ୍ନ 'ଫିଲଜଫି ଅବ୍ ପ୍ରାକ୍‌ସିସ୍'ର ଆଣ୍ଟିଥିସିସ୍ । ଧର୍ମକୁ ନେଇ ଭାରତରେ ରାଜନୀତି କରାଯାଏ; ସବୁ ଦଳ କରନ୍ତି; କାହିଁକିନା, ନିରକ୍ଷରତା ଓ ଅଜ୍ଞତାର ଜାଡ଼୍ୟରେ ଅବରୁଦ୍ଧ ଲୋକଙ୍କ ଭୋଟ୍ ଯୋଗାଡ଼୍‌କରିବାକୁ ସେଇ ବାଟଟା ପ୍ରଶସ୍ତ । ଏଭଳି ସିଭିଲ୍‌ସୋସାଇଟିର ଇତିହାସଚେତନା, ସାଧାରଣତଃ ଗାଲଗପ (ଓରାଲ୍ ଟ୍ର୍ୟାଡିସନ୍) ଦ୍ୱାରା ହିଁ ନିର୍ମିତ; ବିପ୍ଳବର ଦର୍ଶନ ସହିତ ଏ ସମାଜ ପରିଚିତହେବ କେମିତି, ପଙ୍ଗୁ ଗିରି ଲଂଘନକରିବା ଭଳି ସମସ୍ୟା । କାହିଁକିନା, ଶାସକଶ୍ରେଣୀ ଲୋକଙ୍କ ଉପରେ ଯୋଉ ଆଧିପତ୍ୟକରୁଚି, କରିପାରୁଚି କେବଳ ଲୋକଙ୍କ ସମ୍ମତି ପାଇଚି ବୋଲି । ଗ୍ରାମ୍‌ସ୍କିଙ୍କ ପରିଭାଷାରେ, ହିଗେମନି ଆଧିପତ୍ୟ ସମ୍ମତି । ବେସ୍ (ଭିତ୍ତି) ବଦଳିଗଲେ, ସୁପରଷ୍ଟ୍ରକ୍‌ଚର୍ (ଷ୍ଟ୍ରକ୍‌ଚର୍‌ର ଉପରିଭାଗ) ଛାଏଁଛାଏଁ ବଦଳିଯିବ—ଭଳି ଯାନ୍ତ୍ରିକ ଫର୍ମୁଲାକୁ, ସେଥିପାଇଁ, ଅମଳଦେଇନାହାଁନ୍ତି, କାହିଁକିନା ମାର୍କ୍ସଚିନ୍ତାରେ, ବେସ୍ କେବଳ ଅର୍ଥନୀତିକ ଭିତ୍ତି । ଗ୍ରାମ୍‌ସ୍କି ବି ମାନନ୍ତି; ନହେଲେ, ଆମେରିକାର ଫୋଡ଼ିଜ୍ମ ଉପରେ ପୁରା ଗୋଟାଏ ଅଧ୍ୟାୟ ବ୍ୟୟକରିଥାନ୍ତେ କାହିଁକି ? ତତ୍ତ୍ୱ କିନ୍ତୁ ଡଗ୍‌ମା ନୁହେଁ; ନିର୍ଦ୍ଦିଷ୍ଟ ସମାଜର ନିର୍ଦ୍ଦିଷ୍ଟ ଇତିହାସ ସ୍ଥିରକରିଦିଏ ତତ୍ତ୍ୱର ପ୍ରୟୋଗପଦ୍ଧତି । ଗ୍ରାମ୍‌ସ୍କି ଦେଖିଚନ୍ତି, ଇଟାଲିର ଇତିହାସରୁ ଅନ୍ତତଃ, ନୈତିକ ଓ ବୌଦ୍ଧିକ ଭାବାଦର୍ଶରୁ ଉଦ୍‌ଗତହୋଇଚି ହିଗେମନି, ଅର୍ଥନୀତିରୁ ନୁହେଁ । ନହେଲେ, ସମାଜରୂପାନ୍ତର କାମରେ ଇଣ୍ଟେଲେକ୍‌ଚୁଆଲ୍‌କୁ ଏତେବେଶି ଗୁରୁତ୍ୱଦେବା କଥାନୁହେଁ । ଆମେରିକା ପ୍ରସଙ୍ଗରେ କିନ୍ତୁ କହିଚନ୍ତି, hegemony is anchored in the factory ଅର୍ଥାତ୍, କ୍ୟାପିଟାଲିଜ୍ମର ଏଥିକ୍ସ (ଫୋଡ଼ିଜ୍ମ) ଫ୍ୟାକ୍ଟରିରୁ ସିଭିଲ୍‌ସୋସାଇଟି, ପୁଣି ସିଭିଲ୍‌ସୋସାଇଟିରୁ ରାଷ୍ଟ୍ର ପର୍ଯ୍ୟନ୍ତ ଫିଲ୍‌ଟର୍‌ହୋଇ ବହିଯାଉଚି । ଶିଳ୍ପପତି ଯାହାକୁ ଚାହିଁବେ, ସେଇ ହେବ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ୍ ।

ସେଥିପାଇଁ, ଇଣ୍ଟେଲେକ୍‌ଚୁଆଲ୍‌କୁ ସର୍ବସାଧାରଣଙ୍କ ସାଙ୍ଗରେ ଓତପ୍ରୋତହେବାକୁ କହିଚନ୍ତି; ଅନ୍ୟଥା, ବୁଦ୍ଧିବାଦୀ–ଜ୍ଞାନପାପୀ ପରିଣତହେବ ଏଭଳି ଏକ ସେନାପତି, ଯାର ସୈନ୍ୟ ନାହିଁ କି ଅସ୍ତ୍ର ନାହିଁ ।

କିନ୍ତୁ ଜୈବ ଆଉ ଐତିହ୍ୟବାହୀ ଭଳି ବିଭାଜନର ଏକମାତ୍ର ଉଦ୍ଦେଶ୍ୟ, ଶ୍ରେଣୀଚରିତ୍ର ଉପରେ ଗୁରୁତ୍ୱଆରୋପ । କାହିଁକିନା, ବୁଦ୍ଧିଜୀବୀ ରହିଚନ୍ତି ସମାଜ ସଂଗଠନରେ ସର୍ବତ୍ର; ସ୍କୁଲ୍‌-କଲେଜ୍‌, ଅଫିସ୍‌-ଅଦାଲତ୍‌, କଳକାରଖାନା, ଋଷବାସ, ରାଜନୀତି, ସାହିତ୍ୟ କି ସାମ୍ବାଦିକତା – ସବୁଠି ଅଛନ୍ତି ବୁଦ୍ଧିଜୀବୀ; ଗ୍ରାମ୍‌ଶି ଯାହାଙ୍କୁ କହିଚନ୍ତି technicians of knowledge । ହୁଏତ ନିଜ ଶ୍ରେଣୀଚରିତ୍ର ବିଷୟରେ କେହି ସଚେତନ ନୁହେଁ । ହୁଏତ ଭାବନ୍ତି, ନିଜ ବିଶ୍ୱାସଜଗତଟା ପକ୍ଷପାତଶୂନ୍ୟ ସର୍ବଜନୀନ; ଉଦାହରଣ ଦାନ୍ତେ କି କ୍ରୋଚ୍ୟେ । ମାତ୍ର ବାସ୍ତବ ବିବେଚନାରେ, କୋଉ ନା କୋଉ ନିର୍ଦ୍ଦିଷ୍ଟ ସାମାଜିକ ଶ୍ରେଣୀର ହିଗେମନିକୁ ଅଗ୍ରସରକରିଥାନ୍ତି ସମସ୍ତେ; ଅର୍ଥାତ୍‌ ଅଗୋଚରରେ ପକ୍ଷଗ୍ରହଣ କରିଥାନ୍ତି ଜ୍ଞାନକର୍ମଶାଳାର ବିବାକ କାରିଗର । ସେଥିପାଇଁ, ଦେଖାଯାଏ ସରକାରୀ ଅମଲା, ପୁଲିସ୍‌, ମ୍ୟାଜିଷ୍ଟ୍ରେଟ୍‌, ଓକିଲ, ଏପରିକି କଳକାରଖାନାର ମ୍ୟାନେଜର୍‌ ସ୍ଥିତ ସମାଜଶୃଙ୍ଖଳାକୁ ରକ୍ଷାକରିବାକୁ ଅନୁକ୍ଷଣ ତତ୍ପର । ଅର୍ଗାନିକ୍‌ ଇଣ୍ଟେଲେକ୍‌ଚୁଆଲ୍‌ କିନ୍ତୁ ଯେକୌଣସି ଶ୍ରେଣୀରୁ ଆସିପାରେ; ତାର ଏକମାତ୍ର ଅଭିଜ୍ଞାନ, ନିଜ ଶ୍ରେଣୀର ସ୍ୱାର୍ଥରକ୍ଷାରେ ନିବିଷ୍ଟ, କୋଉ ସିଷ୍ଟେମ୍‌ ସ୍ୱାର୍ଥରେ ନୁହେଁ । ଗ୍ରାମ୍‌ଶି ଦେଖିଚନ୍ତି, ସମାଜର ପରିବର୍ତ୍ତନ ସାଧନକରିବାକୁ ଉଭୟ ପ୍ରକାର ବୁଦ୍ଧିଜୀବୀଙ୍କ ମିଳିତସାମ୍ମୁଖ୍ୟ ଦରକାର ବୈପ୍ଲବିକ ପାର୍ଟିର ତତ୍ତ୍ୱାବଧାନରେ । ଜାଣନ୍ତି, ହିଗେମନିର ଭିତ୍ତି ଯେହେତୁ ବିପୁଳ ଲୋକମତ, ବୈପ୍ଲବିକ ଭାବାଦର୍ଶକୁ ସାଧାରଣ ମଣିଷର କାଣ୍ଡଜ୍ଞାନର ଅନୁମୋଦନ / ସମର୍ଥନ ଆଦାୟକରିବାକୁ ପଡ଼ିବ । କାହିଁକିନା, ଯୋଉ ଭାବାଦର୍ଶ ଆଧିପତ୍ୟକରୁଚି, ଜନସାଧାରଣଙ୍କ କାଣ୍ଡଜ୍ଞାନ (କମନ୍‌ସେନ୍ସ) ତାକୁ ଗ୍ରହଣକରିଚି ବୋଲି ଶାସକଶ୍ରେଣୀ ତାଙ୍କ ସମ୍ମତି ଆଦାୟକରିପାରିଚି । ଅଥଚ, ସେ ଭାବାଦର୍ଶ (ଆଇଡିୟଲଜି) ପ୍ରତିନିଧିତ୍ୱକରେ କେବଳ ଶାସକଶ୍ରେଣୀ ସ୍ୱାର୍ଥର, ଶାସିତର ସ୍ୱାର୍ଥର ନୁହେଁ; ପ୍ରଚଳିତ ସଂସ୍କୃତି ଯେହେତୁ ସେଭଳି ଆଧିପତ୍ୟକୁ ନାଯ୍ୟ ପ୍ରତିଭାତକରୁଚି କାଣ୍ଡଜ୍ଞାନ ଆଗରେ ! କରିଆସୁଚି ଯୁଗଯୁଗଧରି । ସେ ଆଧିପତ୍ୟ ଯେ ଅନ୍ୟାୟ ଆଧିପତ୍ୟ, ପ୍ରତିପନ୍ନ କରିପାରେ ଏକମାତ୍ର କାଉଣ୍ଟର୍‌-ହେଗେମନି । ତା ପାଇଁ ଦରକାର ସାଂଗଠନିକ କର୍ମତତ୍ପରତା ଆଉ ଉଦ୍ୟୋଗ-ଅଭିଯାନ । ଅର୍ଥାତ୍‌ 'ଫିଲଜଫି ଅବ୍‌ ପ୍ରାକ୍‌ସିସ୍‌'କୁ କାଣ୍ଡଜ୍ଞାନରେ ପରିଣତକରିବା ଦରକାର, ଯେପରି କ୍ୟାଥଲିକ୍‌ ଏଥିକ୍ସକୁ କରିଥିଲା ଚର୍ଚ୍ଚ । ସନ୍ଦେହ ନାହିଁ, କାମଟା ଦୀର୍ଘକାଳୀନ ଓ

ବାଟଟା କଣ୍ଟକାକୀର୍ଣ୍ଣ । ଭାରତରେ ଆଧିପତ୍ୟକରୁଚି ବୁର୍ଜୋୟାର ସ୍ୱାର୍ଥ; ବୁର୍ଜୋୟା ପୁଣି ଏକ ଆନ୍ତର୍ଜାତିକ ଶ୍ରେଣୀ । ସର୍ବୋପରି, ଅଜସ୍ର ବାଦ-ପ୍ରତିବାଦ ସତ୍ତ୍ୱେ, ଭାରତର ସାଂସ୍କୃତିକ ପରିମଣ୍ଡଳ ରହିଚି ମୂଳତଃ ଭାବବାଦୀ; ଯେପରି, ଯେତେ ରକମ ବୈଷମ୍ୟ ବା ଦୁର୍ଭୋଗ ଚାଲିଆସୁଚି ଆବହମାନ ସମାଜରେ, ଜନମାନସରେ ସବୁଗୁଡ଼ାକ କର୍ମଫଳ କି ପ୍ରାରବ୍ଧ । ଏ ବି ଏଥିକ୍ସ । ସେଥିପାଇଁ, ଲୋକଙ୍କ ସାଙ୍ଗରେ ଘନିଷ୍ଠ ସଂଯୋଗ ମାନେ, ଗ୍ରାମ୍‌ଶି ଭାବିଚନ୍ତି, ବିଭିନ୍ନ ସ୍ୱାର୍ଥର ଲୋକଙ୍କର ଏକଛତ୍ର ସଂଘ (bloc), ଅର୍ଥାତ୍, 'ନ୍ୟାସନାଲ୍-ପପୁଲାର୍ ମ୍ୟାସ୍' । ସେଇ ଜନତା ସାଙ୍ଗରେ କାରବାର କରିବାବେଳେ ବୁଦ୍ଧିଜୀବୀ ଯା କରିବେ, ତା struggle against... the false heroisms and pseudo-aristocracies and stimulate the formation of homogeneous, compact social blocs, which will give birth to their own intellectuals, their own commands, their own vanguard–who in turn will react upon those blocs in order to develop them ।

ଗ୍ରାମ୍‌ଶିଙ୍କ ଚିନ୍ତାଜଗତରେ ଇଣ୍ଟେଲେକ୍‌ଚୁଆଲ୍ ଗୁରୁତ୍ୱପାଇବା କାରଣ ଅବଶ୍ୟ ଇଟାଲିର ଇତିହାସ ଓ ସମାଜ ଆଉ ଉଭୟ କ୍ଷେତ୍ରରେ ବୁଦ୍ଧିଜୀବୀଙ୍କ କ୍ରିୟାକଳାପ । ସେ ଇତିହାସର ଯୋଉ ପର୍ବ ତାଙ୍କ କଳ୍ପନାକୁ ଉଦ୍‌ଜୀବିତକରିଚି, ତା ରିନେସାନ୍ସ ଓ ପରବର୍ତ୍ତୀ ରିସର୍ଜିମେଣ୍ଟୋ । ଏଇ ରିସର୍ଜିମେଣ୍ଟୋ କାଳରେ ବୈପ୍ଲବିକ ପନ୍ଥାରେ ଇଟାଲି ହାସଲକରିଚି ଜାତୀୟ ଐକ୍ୟ । ରିନେସାନ୍ସ କାଳରେ ଅବଶ୍ୟ ଚର୍ଚର ରାଜତ୍ୱରୁ ମୁକ୍ତହୋଇ ଇଟାଲିରେ ବହିଯାଇଚି ଉଦାରବାଦର ବନ୍ୟା । ସେଇ ଧାରାର ଉତ୍ତରସୂରୀ କ୍ରୋଚ୍ୟେ, ୧୯୨୧ରେ ପ୍ରକାଶିତ ବସ୍ତୁବାଦସମ୍ପର୍କିତ ରଚନାରେ ମାର୍କ୍ସଙ୍କୁ କହିଛନ୍ତି the Machiavelei of the proletariat । ସେଇ ଇଙ୍ଗିତରୁ ଗ୍ରାମ୍‌ଶି ଷୋଡ଼ଶଶତକ ଇଟାଲି ଉପରେ ମ୍ୟାକିଆଭେଲି ଯୋଉ ଭାବଧାରା ପ୍ରୟୋଗକରିଥିଲେ, ବିଂଶଶତକ ପ୍ରେକ୍ଷିତରେ ତାର ପ୍ରାସଙ୍ଗିକତାକୁ ବ୍ୟାଖ୍ୟାକରିଛନ୍ତି ବିଶଦ; ଆଉ ମ୍ୟାକିଆଭେଲିଙ୍କ ପ୍ରିନ୍ସ ମଡେଲ୍‌ରେ ଲେଖିଛନ୍ତି ମଡର୍ଣ୍ଣ ପ୍ରିନ୍ସ। ଅବଶ୍ୟ ଚାରିଶବର୍ଷ ଆଗର ରାଜପୁତ୍ର ସେଠି ନାୟକ ନୁହେଁ; ବିଂଶଶତକରେ ଏକାକାମ କରିବ ରାଜନୀତିକ ଦଳ। ଗ୍ରାମ୍‌ଶି ସ୍ପଷ୍ଟକରିନଥିଲେ ସୁଦ୍ଧା, ଦଳ ନିଶ୍ଚୟ କମିଉନିଷ୍ଟ ପାର୍ଟି : The modern prince the prince-myth cannot be a real person, a concrete individual, it can only be an organism, a complex element of society, in which a collective will... begins to take concrete form. Such an organism has already been provided by historical development and it is

the political party, the first cell in which germs of a collective will come together and tend to become universal and total । ଗ୍ରୀକ୍ ଦାର୍ଶନିକ ପ୍ଲାଟୋ ଯେମିତି 'ଫିଲଜଫର୍-କିଙ୍ଗ୍' ଚିନ୍ତାକରିଥିଲେ, ମ୍ୟାକିଆଭେଲି ସେମିତି ନିଜ ସମୟର ଶାସକଶ୍ରେଣୀକୁ ଶିକ୍ଷାଦେବାକୁ ଚାହିଁଥିଲେ, ବାଧ୍ୟକରିଥିଲେ ଇଟାଲି ଯୋଉ ରାଜନୀତିକ ବାସ୍ତବତା ଭିତରଦେଇ ଗତିକରିଛି, ଚର୍ଚ୍ଚର ଅନୁଶାସନକୁ ଭ୍ରୂକ୍ଷେପ ନକରି ସେଇ ବାସ୍ତବକୁ ମୁକାବିଲାକରିବାକୁ। ତେବେଯାଇ ଅଭିନବ ଏକ ରାଜକୁମାର ପ୍ରଲେତାରିଏତ୍‌କୁ ପ୍ରସ୍ତୁତକରିପାରିବ ଭବିଷ୍ୟତ ଶାସକ ଶ୍ରେଣୀରେ ପରିଣତ ହେବାକୁ। ଏ କାମ କରିବାରେ ଗ୍ରାମ୍‌ଚି କହୁଛନ୍ତି, The greatness of Machiavelli consists in having distinguished politics from ethics । ଖାଲି ପାର୍ଥକ୍ୟ ଦେଖାଇନାହାନ୍ତି, ରାଜନୀତି ଭିତରୁ ଭ୍ରାନ୍ତ ଏଇ ଏଥିକ୍ସକୁ ଉତ୍ପାଟନକରି ରାଜନୀତିରେ ଲିପ୍ତ ଲୋକଙ୍କ ଗତିକୁ କରିଦେଇଛନ୍ତି ନିର୍ବାଧ, ଯେପରିକି ଏପରି ଏକ ସମାଜକୁ ସେମାନେ ସଂଗଠିତ କରିପାରିବେ ରାଜନୀତି ଓ ଏଥିକ୍ସ ଯୋଉଠି ପରସ୍ପର ବୈରୀ ନୁହେଁ; ଯୋଉଠି politics is conceived as a process which will open up into morality, that is, it tends to open up into a form of association which politics and morality will both have been transcended । ମାନେ , ଏପରି ଏକ ଆଦର୍ଶ ସମାଜବ୍ୟବସ୍ଥା, ହେଗ୍ଲ ଯୋଉଠି କଳ୍ପନାକରିଥିଲେ ରାଷ୍ଟ୍ରର ବିଧିନିଷେଧ ସହିତ ବ୍ୟକ୍ତିବିଶେଷର ବିବେକ ଏକାତ୍ମ । (ସେଭଳି ଅବସ୍ଥାରେ ଏଥେନ୍ସ ପହଞ୍ଚିପାରି ନଥିଲା ବୋଲି, ସୋକ୍ରଟିଜ୍‌ଙ୍କୁ ବିଷଖାଇ ମରିବାକୁ ପଡିଚି। 'ସୋସାଲ୍ ଇଉଟୋପିଆ' ମନେହୋଇନାହିଁ କିନ୍ତୁ ଗ୍ରାମ୍‌ଚିଙ୍କୁ, ମୁସୋଲିନିଙ୍କ ବନ୍ଦିଶାଳାରେ କାରାରୁଦ୍ଧ ହୋଇ । ହୋଇପାରେ ଇଚ୍ଛାପୂରଣ; ମାତ୍ର କଥାଟାକୁ ଏତେବାଟ ଟାଣିନେଇଛନ୍ତି ଯେ ସନ୍ଦେହହୁଏନା ଗ୍ରାମ୍‌ଚି ନୈରାଜ୍ୟବାଦୀ (ଆ୍ୟାନାର୍‌କିଷ୍ଟ)।

ଊନବିଂଶ ଶତାବ୍ଦୀର ସମାଜଚିନ୍ତାରେ ଗୋଟାଏ ପ୍ରବଣତା ଥିଲା, ଗ୍ରାମ୍‌ଚି ଯାହାକୁ କହିଚନ୍ତି, intellectual and moral reform; ମାର୍କ୍ସଙ୍କ ରଚନାରେ ଯଦିଓ ଦେଖିହେବନାହିଁ । ବରଂ କହିଚନ୍ତି, ଯିଏ ଯେତିକି ପାରିବ କାମକରିବ, ଯେତିକି ନହେଲେ ନଚଳେ ସେତିକି ଭୋଗକରିବ । କିନ୍ତୁ *ମଡର୍ଣ୍ଣ ପ୍ରିନ୍ସ* ତ ମାର୍କ୍ସ ନୁହେଁ, ସ୍ୱୟଂ କମିଉନିଷ୍ଟ ପାର୍ଟି । ତେଣୁ as it develops, revolutionises the whole system of intellectual and moral relations, in that its development means precisely that any given act is seen as useful or harmful, as virtuous

or as wicked, only in so far as it has as its point of reference the modern Prince itself, and helps to strengthen or to oppose it. In men's consciences, the Prince takes the place of the divinity or the categorical imperative, and becomes the basis for a modern laicism and for a complete laicisation of all aspects of life and all customary relationships । ଅର୍ଥାତ୍, ପାର୍ଟିର ଉଦ୍ଦେଶ୍ୟ ହେବ ଅଭୂତପୂର୍ବ ଏକ ରାଜନୀତିକ ଇଚ୍ଛାଶକ୍ତିର ସର୍ଜନା; ହୁଏତ ଯୁଗ ଯୁଗ ଲାଗିଯିବ, ଏବଂ ସେଥିପାଇଁ, ବିଂଶଶତକରେ ବିପ୍ଳବ କୋଉ ବ୍ୟକ୍ତିବିଶେଷ ଦ୍ୱାରା ସାଧିତହେବନାହିଁ । ସଂଘବଦ୍ଧ ସମବେତ ମଣିଷ ସେ ଦାୟିତ୍ୱ ନେବ, କାହିଁକିନା, ବ୍ୟକ୍ତିବିଶେଷର ଉଦ୍ୟମ, ଜୀବନର ଦୈର୍ଘ୍ୟ ପରି ହ୍ରସ୍ୱ; ଆଉ, ତା ଉଦ୍ୟମ ମଧ୍ୟ ଏତେ ଅଳ୍ପ ପରମାୟୁ ଭିତରେ 'ଅର୍ଗାନିକ୍' ପର୍ଯ୍ୟାୟରେ ପହଞ୍ଚିପାରିବନାହିଁ ହୁଏତ । ଏଭଳି ସଂଘବଦ୍ଧ ଉଦ୍ୟମ କିନ୍ତୁ ଅତୀତରେ ହୋଇଚି, ଯେପରି ୧୯୧୯ ଓ୧୯୨୦ରେ; ଫଳରେ, ପ୍ରବଳ ଉତ୍ତେଜନା ବିଚ୍ଛୁରିତହୋଇଚି ଦେଶସାରା; କିନ୍ତୁ ବୁଝାଯାଇଚି, ପ୍ରାଚୀନ ଏକ ସମାଜରେ ପରିବର୍ତ୍ତନର ଗତି ଦ୍ରୁତ ହୋଇପାରେନା । ଗ୍ରାମ୍‌ସି ତେଣୁ ଇତିହାସଗତିରେ ଆକସ୍ମିକତା ନଦେଖି, ଦେଖିଚନ୍ତି ମନ୍ଥର ପୁଣି ଚଞ୍ଚଳ ଗତି କେମିତି ପଛକୁ ପଛ ଆସେ; ନିଷ୍କ୍ରିୟ ପ୍ରତିରୋଧ ପଛକୁ ଆସେ କର୍ମଚାଞ୍ଚଲ୍ୟ । ଫରାସୀବିପ୍ଳବରୁ ପର୍ଯ୍ୟବେକ୍ଷଣ କରିଚନ୍ତି ଏଇ ପର୍ଯ୍ୟାୟ ପରମ୍ପରା । ୧୭୮୯ରୁ ୧୭୯୯, ଅର୍ଥାତ୍ ନେପୋଲିଅଁଙ୍କ ଉତ୍ଥାନ ପର୍ଯ୍ୟନ୍ତ ମାତ୍ର ଦଶବର୍ଷ ଭିତରେ ରାଜତନ୍ତ୍ରର ପତନ, ସାମନ୍ତତନ୍ତ୍ରର ପତନ, ଚର୍ଚ୍ଚର ପତନ ଭଳି ଯୁଗାନ୍ତକାରୀ ଘଟଣା ଘଟିଯାଇଚି ଦ୍ରୁତଲୟରେ । ତା ପଛକୁ ଆସିଚି ନିଷ୍କ୍ରିୟତା; ମିଆଦ ପ୍ରାୟ ଅର୍ଦ୍ଧଶତାବ୍ଦୀ, ମାତ୍ର ୧୮୪୮ରେ ପୁଣି ଆସିଚି ଜାଗରଣ, ଏବଂ ସ୍ଥାୟୀହୋଇଚି କୋଡ଼ିଏବର୍ଷରୁ ବେଶି, ଯଦିଓ ୧୮୭୦ ପରବର୍ତ୍ତୀ କାଳରେ ସମାଜର ପରିବର୍ତ୍ତନ ଧରିଚି ଭିନ୍ନ ରାସ୍ତା; ଏବଂ ମାତ୍ର ଶହେବର୍ଷ ଭିତରେ ଏତେ ମାତ୍ରାରେ ଉତ୍ଥାନପତନ ଯେ ଲେଖିବାକୁ ବାଧ୍ୟକରିଚି ଗ୍ରାମ୍‌ସିଙ୍କୁ, The same thing happens in the art of politics as in military art । ପ୍ରତିରୋଧର ରାଜନୀତିକୁ 'ମିଲିଟାରି ଆର୍ଟ' ସହିତ ତୁଳନାକରିଚନ୍ତି, ସକ୍ରିୟ ଜନଯୁଦ୍ଧ ଯେହେତୁ 'ଚଟୁ ଆଇଁଷ, ବେଣ୍ଟ ନିରାମିଷ' ହୁଏନା; ହୁଏନା ବୋଲି, ସଂଗ୍ରାମର ରୂପ ବିଧିବଦ୍ଧ 'ଓ୍ୱର୍': The war of movement becomes increasingly a war of position and one can say that a state wins a war according to how far it prepares it minutely and technically in time of peace । ଲେଖିଚନ୍ତି ଯେତେବେଳେ, ନିଜେ ରହିଚନ୍ତି କାରାଗାରରେ ଅକର୍ମଣ୍ୟ ।

ମାତ୍ର କମିଉନିଷ୍ଟ୍ ପାର୍ଟିର ନେତୃତ୍ୱକରିଚନ୍ତି ଯେତେବେଳେ, ଅହରହ ଭାବିତହୋଇଚନ୍ତି ସଂଗଠନର ଜନଭିତ୍ତି କେମିତି ଚିନ୍ତାଭାବନାରେ ଉନ୍ନତହେବ; ନହେଲେ, ଏକେବାରେ ତଳେରହିଲେ ଯୋଉ କର୍ମୀ, ପାର୍ଟି ସିଦ୍ଧାନ୍ତକୁ ମାନିବା ନମାନିବା ଦୂରେଥାଉ, ଉପଲବ୍ଧିକରିବେ କେମିତି ସିଦ୍ଧାନ୍ତର ମର୍ମ ଆଉ ମୂଲ୍ୟ ? ଏବେ ଯୋଉ ପାର୍ଟିକୁ ଆଖ୍ୟାଦେଲେ 'ମଡର୍ଣ୍ଣ ପ୍ରିନ୍ସ', ଊନବିଂଶଶତକ ଇଟାଲିର ଇତିହାସରେ କି ଭୂମିକା ପାଳନକରିଚି ସେଇ ରାଜକୁମାର ? କରିଚି ବୋଲି ସିନା, ମ୍ୟାକିଆଭେଲିଙ୍କୁ ଉପଲକ୍ଷ୍ୟକରି ବିଂଶଶତକରେ ବିପ୍ଳବର ବେଗକୁ ତ୍ୱରାନ୍ୱିତକରିବାକୁ ଚାହିଁଚନ୍ତି ଗ୍ରାମ୍‌ସି ! ଧାରଣାଟା ଅବଶ୍ୟ ତାତ୍ତ୍ୱିକ, କାହିଁକିନା, ଜେଲ୍‌ଖାନା ଭିତରେ ତାର ପ୍ରୟୋଗଯୋଗ୍ୟତା ପରଖକରିବା ସମ୍ଭବପରନୁହେଁ । ସେ ତତ୍ତ୍ୱରେ (ରଣକୌଶଳରେ) ୱର୍ ଅବ୍ ପଜିସନ୍ କିନ୍ତୁ ୱର୍ ଅବ୍ ମୁଭ୍‌ମେଣ୍ଟ୍ ଠାରୁ କମ୍ ନିର୍ଭରଯୋଗ୍ୟ ନୁହେଁ; ଏବଂ ସେଥିପାଇଁ, ଉଭୟ ମଧ୍ୟସ୍ଥ ତଫାତ୍‌କୁ ସ୍ପଷ୍ଟକରିବା ଦରକାର ପଡ଼ିଚି; ବିଶେଷତଃ ଯେହେତୁ ୧୮୪୮ର ଫରାସୀ ବିପ୍ଳବ, ଚିରସ୍ଥାୟୀ ବିପ୍ଳବ ବା permanent revolution ଭଳି ପ୍ରତ୍ୟୟକୁ ପ୍ରତିଭାତକରିଚି ମନୋହର । ଗ୍ରାମ୍‌ସିଙ୍କ ପ୍ରତ୍ୟକ୍ଷ ଶରବ୍ୟ ଥିଲେ କିନ୍ତୁ ତ୍ରତ୍‌ସ୍କୀ । ତ୍ରତ୍‌ସ୍କୀ କହୁଥିଲେ, ବିପ୍ଳବର ଅଗ୍ରଗତିରେ ମୁହୂର୍ତ୍ତକ ନିବୃତ୍ତି ବି ଅନିଷ୍ଟକର; ଗନ୍ତବ୍ୟରେ ପହଞ୍ଚିବା ପର୍ଯ୍ୟନ୍ତ ଆରାମ୍ ହାରାମ୍ । ଗ୍ରାମ୍‌ସି କହିଲେ, The formula of 'permanent revolution' is appropriate to a histoical period in which the large mass political parties and the large economic unions did not exist and when society was so to speak still in a state of fluidity । କିନ୍ତୁ କେନ୍ଦ୍ରୀଭୂତ ରାଷ୍ଟ୍ର (ଯା ସମାଜର ଅବଶିଷ୍ଟ ଅନୁଷ୍ଠାନ / ପ୍ରତିଷ୍ଠାନ ଠାରୁ ଅଲଗା, ଦମନକରିବା କି ବାଧ୍ୟକରିବା କ୍ଷମତା ଯେହେତୁ ତାର ଏକଚାଟିଆ) ଆଉ ତାକୁ ପ୍ରତିରୋଧକରିବାକୁ ବୃହତ୍ ଜନଭିତ୍ତିକ ସଂଗଠନର ସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ, ଚିରସ୍ଥାୟୀ ବିପ୍ଳବ ଜାଗାରେ ଉଦ୍‌ଭୂତହେବ 'ସିଭିଲ୍ ହିଗେମନି' ଧାରଣା; ଏବଂ ଏପରି ହିଗେମନି ବା କର୍ତ୍ତୃତ୍ୱ ପ୍ରତିଷ୍ଠାକରିବା ଯେକୌଣସି ଶାସକଶ୍ରେଣୀର ଅସ୍ତିତ୍ୱ ବଜାୟରଖିବାକୁ ଯେହେତୁ ଅପରିହାର୍ଯ୍ୟ, ବିପ୍ଳବକୁ ଶିରୋଧାର୍ଯ୍ୟକରିଥିବା ପାର୍ଟି ବା ମଡର୍ଣ୍ଣ ପ୍ରିନ୍ସ ସାମାଜିକ କର୍ତ୍ତୃତ୍ୱ ନିର୍ମାଣକରିବାକୁ ଲାଗିପଡ଼ିବ; ଆଉ,ଦରକାରପଡ଼ିଲେ, ଲୋକଙ୍କ ଚେତନାର କ୍ରମବିକଚନ ସକାଶେ ବ୍ୟବହାରକରିବ 'ନିଷ୍କ୍ରିୟ ବିପ୍ଳବ' କି ୱର୍ ଅବ୍ ପଜିସନ୍' ଭଳି ପର୍ଯ୍ୟାୟ । ଚେତନାବିକାଶ କଥାଟା ବାୟବୀୟ, କାହିଁକିନା, ପ୍ରଶ୍ନ ଉଠିବ କି ଜିନିଷର ଚେତନା ? ଗ୍ରାମ୍‌ସି ତ କହିସାରିଚନ୍ତି, ମଣିଷ ମାତ୍ରକେ ଗୋଟିଏ ଗୋଟିଏ

ଅଣୁବିଶ୍ୱ, ସେ ବିଶ୍ୱର ପରିଚ୍ଛଳକ କମନ୍‌ସେନ୍ସ ବା କାଣ୍ଡଜ୍ଞାନ । କାଣ୍ଡଜ୍ଞାନ ବଡ଼କୋଉ ପରିବର୍ତ୍ତନ ନିଶ୍ଚୟ ଘଟାଇପାରେନା; କାଣ୍ଡଜ୍ଞାନକୁ ସେଥିପାଇଁ ଉନ୍ନୀତହେବାକୁ ପଡ଼ିବ ଶ୍ରେଣୀସଚେତନତା ସ୍ତରକୁ; ଶ୍ରେଣୀସଚେତନତା ଦ୍ୱାରା ହିଁ ମଣିଷ ବୁଝିପାରିବ ସମଗ୍ର ସମାଜକୁ, ରାଷ୍ଟ୍ରକୁ, ପୃଥିବୀକୁ । ନବୁଝିପାରିଲେ ବଦଳାଇପାରିବା କଥା ଭାବିବ କେମିତି ଅବା କାହିଁକି ? ଶ୍ରେଣୀଚେତନା, ଏଇ ଅର୍ଥରେ ,ବିଶ୍ୱସଂସାରରେ ମଣିଷର ଆପେକ୍ଷିକ ଅବସ୍ଥାନର ଚେତନା; ଆଉ ଆପେକ୍ଷିକତାର କାରଣ ଖୋଜିବାକୁ ପ୍ରେରଣା । ତେଣୁ ସମୟ ଦରକାର, ଅଧ୍ୟବସାୟ ଦରକାର ।

ହିଗେମନି ପ୍ରତ୍ୟୟ, ଗ୍ରାମ୍‌ଶ୍ଚି କହୁଚନ୍ତି, ପାଇଚନ୍ତି ଲେନିନ୍‌ଙ୍କ ପାଖରୁ । ଲେନିନ୍ ଜିଗରକରିଚନ୍ତି, ପାର୍ଟିର ସର୍ବାପେକ୍ଷା ଜରୁରି କର୍ତ୍ତବ୍ୟ ଲୋକଙ୍କୁ ବୁଝାଇଦେବା ପାର୍ଟି ଯା କହୁଚି, କାହିଁକି କହୁଚି; ଆଉ ଯା କହୁଚି, ତା ମୂଳରେ ବି ରକମ ଆଇଡିୟଲଜି କର୍ମରତ ? ତା ନହେଲେ, ନଗଦ କିଛି ହାତେହାତେ ପାଇଯିବାକୁ ଲୋଭ ଚେତନାକୁ ଆଛନ୍ନକରିବ । ଲେନିନ୍‌ଙ୍କ ପରିଭାଷାରେ ଯା economism। ଇକନମିଜ୍ମରୁ ଲୋକଙ୍କୁ ନିବୃତ୍ତକରିବାକୁ ଦରକାର ରାଜନୀତିକ ଶିକ୍ଷା; ପ୍ରକୃତ ପ୍ରସ୍ତାବରେ, ଦାର୍ଶନିକ ଅବବୋଧ । ଗ୍ରାମ୍‌ଶ୍ଚିଙ୍କୁ ମନେହୋଇଚି, ମାର୍କ୍ସବାଦକୁ ଲେନିନ୍‌ଙ୍କ ଏ ଅବଦାନର ତାତ୍ପର୍ଯ୍ୟ, ଜନଚେତନାର ଉନ୍ମୀଳନ, ଯା ନଘଟିଲେ ବିପ୍ଳବପ୍ରତ୍ୟାଶା ନିରର୍ଥକ: Lenin advanced philosophy as philosophy in so far as he had advanced political doctrine and practice. The realisation of an apparatus of hegemony, in so far as it creates a new ideological soil and determines a reform of consciousness and of the methods of knowledge, is a fact of knowledge, a philosophical fact. In Crocean language : when we succeed in introucing a new morality with a new conception of the world, we end up by introducing that conception of the world too, so that an entire reform of philosophy is brought about। ଗଣଚେତନା ବିଷୟରେ ଅବିକଳ ଏଇ କଥାଗୁଡ଼ାକୁ ଲେନିନ୍ କହିଥିଲେ କି ନାହିଁ, ସେ ବିଷୟରେ ମତଭେଦ ଥାଇପାରେ; ମାତ୍ର ଜେଲ୍‌ଖାନାରେ ବସି ଗ୍ରାମ୍‌ଶ୍ଚିଙ୍କ ହୃଦ୍‌ବୋଧ ହୋଇଚି ଯେ ମାର୍କ୍ସୀୟ ତତ୍ତ୍ୱଭଣ୍ଡାରକୁ ଏ ଏକ ବିଶିଷ୍ଟ ସଂଯୋଜନ । କଥାଗୁଡ଼ାକୁ ଅବଶ୍ୟ ତତ୍‌କ୍ଷଣାତ୍ ପରଖକରିଚନ୍ତି କ୍ରୋଚ୍ୟେଙ୍କ ଦୃଷ୍ଟିଭଙ୍ଗୀକୁ ପୁନର୍ବିନ୍ୟସ୍ତକରି, ଯା ଫଳରେ ହିଗେମନି ସଂପର୍କିତ ନିଜସ୍ୱ ବିଧିବିଧାନ ପାଇଯାଇଚି ଉଭୟ ଗୁରୁଙ୍କ ଅନୁମୋଦନ । କିନ୍ତୁ ନିର୍ଦ୍ଦିଷ୍ଟ ଏକ ରାଜନୀତିକ ଶ୍ରେଣୀର କର୍ତ୍ତୃତ୍ୱ କହିଲେ, ଗ୍ରାମ୍‌ଶ୍ଚି ବୁଝିଥିଲେ, ସେଇ ଶ୍ରେଣୀ, ସମାଜର ଅପରାପର

ଶ୍ରେଣୀକୁ ଯିଏ ଏପରି ଉଦ୍‌ବୁଦ୍ଧକରିବ ଯେ, କର୍ତ୍ତୃତ୍ୱ କାମନାକରୁଥିବା ଶ୍ରେଣୀର ନୈତିକତା, ରାଜନୀତିକ ଆଦର୍ଶ ଓ ସାଂସ୍କୃତିକ ମୂଲ୍ୟବୋଧକୁ ନିର୍ଦ୍ୱିଧାରେ ସେମାନେ ଗ୍ରହଣକରିନେବେ; ଯେପରି ବ୍ରାହ୍ମଣ୍ୟ ଭାବବାଦକୁ ଗ୍ରହଣକରିଚି ଆକୁମାରୀହିମାଳୟ । ଶାସକଶ୍ରେଣୀ ଯଦି ଏ କାମରେ କୃତାର୍ଥ ହୁଏ, ବଳପ୍ରୟୋଗ ଦରକାରହୁଏନା ବିଶେଷ, ଯେପରି ହୋଇନାହିଁ ଉନବିଂଶ ଶତକରେ ଉଦାରବାଦୀଙ୍କ ପାଇଁ: The 'normal' exercise of hegemony in the area which has become classical, that of the parliamentary regime, is characterised by the combination of force and consensus which vary in their balance with each other, without force exceeding consensus too much. Thus it tries to achieve that force should appear to be supported by the agreement of the majority, expressed by the so called organs of public opinion–newspapers and associations.... Midway between consensus and force stands corruption and fraud (which is characteristic of certain situations in which the exercise of the function of hegemony is difficult, making the use of force too dangerous)। ସଙ୍କଟକାଳରେ, ଅର୍ଥାତ୍ ପ୍ରଥମ ମହାଯୁଦ୍ଧର ଅବ୍ୟବହିତରେ, ହିଗେମନିର ସ୍ୱାଭାବିକ ଯନ୍ତ୍ରପାତି ଅଚଳହୋଇଯିବା ଲକ୍ଷଣ ଦେଖାଯାଇଚି; ରାଜନୀତିକ ଦଳଗୁଡ଼ାକର ଛିନ୍ନଛତ୍ର ଅବସ୍ଥା; କୋଉ ଗୋଟାକ ଜନସମଷ୍ଟି ସେଭଳି ସହମତ ହାସଲକରିବାକୁ ସକ୍ଷମନୁହେଁ ଯା ତାକୁ ଦେଇପାରିବ ସିଂହାସନର ଅଧିକାର । କ୍ଷମତାର ଅଦଳବଦଳ ତେଣୁ ଅବଶ୍ୟମ୍ଭାବୀ, ଯେପରି ଆଜି ଭାରତରେ । ଏଭଳି ପରିସ୍ଥିତିରେ ଆବଶ୍ୟକ ହିଗେମନି ଆଦାୟର ନୂତନ କୃତ୍‌କୌଶଳ, ସହମତ ହାସଲକରିବାର ନୂଆ ରାଜନୀତିକ ଭିତ୍ତି, ଅଥବା / ଅନ୍ୟଥା, ବଳପ୍ରୟୋଗପୂର୍ବକ କ୍ଷମତାଦଖଲ ।

କିନ୍ତୁ ସଚରାଚର ଯା ଦେଖାଯାଏ, ରାଜନୀତିକ କ୍ଷମତାରେ ଅଧିଷ୍ଠିତହେବା ଆଗରୁ ଶାସନକ୍ଷମତା-ପ୍ରୟାସୀ ଶ୍ରେଣୀ ଜନସାଧାରଣଙ୍କ ଭିତରେ ନିଜ ନୈତିକ ଓ ବୌଦ୍ଧିକ ନେତୃତ୍ୱ ପ୍ରତିଷ୍ଠାକରି ସାରିଥାଏ । ଏ କାମରେ ସଫଳହେବା ସକାଶେ ନିଜ ଶ୍ରେଣୀ ଭିତରେ, ନିଜ ସଂଗଠନ ଭିତରେ, ଏପରି ଏକ ସମପ୍ରକୃତି ପ୍ରାଣକେନ୍ଦ୍ର ରହିଥିବା ଦରକାର, ଅପରାପର ଗୋଷ୍ଠୀର ସମର୍ଥନ ଆଦାୟକରିବାକୁ  ଯା ସମର୍ଥ (ଉଦାହରଣ ଦେଇଚନ୍ତି, ମଧ୍ୟପନ୍ଥୀ ଉଦାରବାଦୀ କେମିତି ରିସୋର୍ଜିମେଣ୍ଟୋ କାଳରେ ଉଭୟ ପ୍ରକାର ଇଣ୍ଟେଲେକ୍‌ଚୁଆଲ୍ ଆଉ ଅଧିକାଂଶ କୃଷକଙ୍କ ସମର୍ଥନ ଆକର୍ଷଣକରି ପାରିଚନ୍ତି) । ଶାସନକ୍ଷମତା କାମନାକରୁଥିବା ଶ୍ରେଣୀକୁ ତେଣୁ ଅନ୍ୟାନ୍ୟ ଶ୍ରେଣୀର

ସ୍ୱାର୍ଥ ପ୍ରତି ମଧ୍ୟ ସଜାଗରହିବାକୁ ପଡ଼ିବ: The fact of hegemony undoubtedly presupposes that the interests and tendencies of the groups over which hegemony is to be exercised are taken into account, that there is a certain equillibrium of compromise, that is, the ruling group makes sacrifices of an economic-corporate kind, but it is also indubitable that such compromises cannot effect what is essential । ଅନ୍ୟ ଶବ୍ଦରେ, ହିଗେମନି ହାସଲକରିବା ସକାଶେ ଶାସକଶ୍ରେଣୀକୁ ଦୁଇଟି ପର୍ଯ୍ୟାୟ ଭିତରଦେଇ ଗତିକରିବାକୁ ପଡ଼ିବ; କୌଣସି ପର୍ଯ୍ୟାୟ କିନ୍ତୁ ଅପେକ୍ଷାକୃତ ହ୍ରସ୍ୱ ନୁହେଁ । ଆଦ୍ୟ ପର୍ଯ୍ୟାୟରେ ଅବଶ୍ୟ ଓର୍ ଅବ୍ ପଜିସନ୍; ଅର୍ଥାତ୍ ପ୍ରସ୍ତୁତି ମାତ୍ର । ପରବର୍ତ୍ତୀ ପର୍ଯ୍ୟାୟରେ ସାଂସ୍କୃତିକ କର୍ତ୍ତୃତ୍ୱ ସାଙ୍ଗକୁ ଆଇଡିଅଲଜି କ୍ରମଶଃ ହେବ ଦୃଢ଼ମୂଳ, ଏବଂ ସଫଳହେବାକୁ ସମାଜର ଅନ୍ୟାନ୍ୟ ବର୍ଗ ସହିତ କରିବ ସହଯୋଗସ୍ଥାପନ । ଏଇ ସହଯୋଗ ପାଇବାକୁ କିଛିପରିମାଣରେ ସେମାନଙ୍କ ସ୍ୱାର୍ଥ ପ୍ରତି ଶ୍ରଦ୍ଧାଦେଖାଇବାକୁ ହୋଇପାରେ; ଆବଶ୍ୟକ ସ୍ଥଳେ, ଦାବିଦାବାଗୁଡ଼ାକୁ ସୁଦ୍ଧା ଅଳ୍ପବିସ୍ତର ମାନିନେଲେ କ୍ଷତିନାହିଁ । ଦୀର୍ଘକାଳୀନ ଏଇ ଐତିହାସିକ ପ୍ରକ୍ରିୟାରେ ସର୍ବାପେକ୍ଷା ଅଧିକ ଗୁରୁତ୍ୱଦେଇଚନ୍ତି ଗ୍ରାମ୍‌ଶି ଇଣ୍ଟେଲେକ୍‌ଚୁଆଲ୍‌କୁ । କାହିଁକିନା, ଜନସମର୍ଥନ ଯୋଗାଡ଼କରିବା ଯେମିତି, ହିଗେମନିର ଲାଳନପାଳନ ସେମିତି, ମୂଳତଃ ଏକ ଶିକ୍ଷାଦାନ ଆଉ ଶିକ୍ଷାଗ୍ରହଣ ପ୍ରକଳ୍ପ; Every relationship of 'hegemony' is necessarily a pedagogic relationship । ଏ ଆଦାନପ୍ରଦାନ କେତେଦୂର କୃତାର୍ଥ, କହିଦେବ ନୂତନଚେତନାର ସଂଚ୍ଚର ଯାଇପାରିଚି କେତେଦୂର । ଗ୍ରାମ୍‌ଶିଙ୍କ ନିଜ କଥାରେ, କି ପରିମାଣରେ ଗଠିତହୋଇଚି ବାଞ୍ଛିତ collective national will । ଏଇଠି ପହଞ୍ଚି ମନେହେଉଚି, ଗ୍ରାମ୍‌ଶି ଚାହିଁଚନ୍ତି ବୁର୍ଜୋୟାର ସହଯୋଗ, କାହିଁକିନା, ଐତିହ୍ୟବାହୀ ଇଣ୍ଟେଲେକ୍‌ଚୁଆଲ୍ ବୁର୍ଜୋୟା ହୋଇଥିବା ସ୍ୱାଭାବିକ । ବିଦ୍ୟାଚର୍ଚ୍ଚା, ବିଜ୍ଞାନ ଦର୍ଶନ, ଯେକୌଣସି ପ୍ରାଚୀନ ସମାଜରେ ଥିଲା ବୁର୍ଜୋୟାର ଏକାଧିକାର; ଜେଲ୍‌ଭିତରେ ଥାଇ, ସେନ୍‌ସର୍‌ର ନଜର ଏଡ଼ାଇବାକୁ ଇଣ୍ଟେଲେକ୍‌ଚୁଆଲ୍‌ର ଶ୍ରେଣୀଚରିତ୍ର ବ୍ୟାଖ୍ୟା କରିନଥିଲେ ବି, ଯଥେଷ୍ଟ ଇଙ୍ଗିତ ଛାଡ଼ିଯାଇଚନ୍ତି ଗ୍ରାମ୍‌ଶି ନିଜ କାରାକାହାଣୀରେ ଯେ ବୁର୍ଜୋୟାକୁ ସାଙ୍ଗରେ ନନେଲେ ଶ୍ରମଜୀବୀର ବିପ୍ଳବଚେଷ୍ଟା 'ନ୍ୟାସନାଲ୍-ପପୁଲାର୍' ହୋଇପାରିବନାହିଁ । ହୋଇନପାରିଲେ, ରିଫର୍ମେସନ୍ କାଳରେ ଯେମିତି, ଇଉରୋପ୍‌ର ବିଂଶଶତକ ଇତିହାସର ମୁଖ୍ୟଧାରାରୁ ସେମିତି, ଇଟାଲି ରହିଯିବ ଇତର; ରହିଚି ଯେମିତି ଫ୍ୟାସିଷ୍ଟ୍ ଜମାନାରେ । ରହିଚି ବୋଲି, *ଡିଭାଇନ୍ କମେଡି* ର ନରକ ସହିତ ସାଦୃଶ୍ୟ ଦେଖୁଚନ୍ତି

ସମକାଳୀନ ସ୍ୱଦେଶର । କହିବା ବାହୁଲ୍ୟ, ନ୍ୟାସନାଲ୍-ପପୁଲାର୍, ବାସ୍ତବ ବିବେଚନାରେ, ଏକ ମିଳିତ-ସାଲ୍ମୁଖ୍ୟ; ସମାଜର ବୁଦ୍ଧିଜୀବୀ ସଂପ୍ରଦାୟ ସହିତ ଶ୍ରମଜୀବୀ ସଂପ୍ରଦାୟର 'ବ୍ଲକ୍', ଯା ଜନ୍ମଦେଇପାରେ ନୂଆ ଏକ ସମାଜବ୍ୟବସ୍ଥାକୁ । ମାର୍କ୍ସୀୟ ଭିତ୍ତି-ଉପରିଭାଗ ତତ୍ତ୍ୱର ଦ୍ୱାନ୍ଦ୍ୱିକତା ଏ ବିଷୟରେ ଯାନ୍ତ୍ରିକତାକୁ ପ୍ରଶ୍ରୟଦେଇନାହିଁ । ସେଥିପାଇଁ, ଇଣ୍ଟେଲେକ୍‌ଚୁଆଲ୍‌କୁ ପରାମର୍ଶଦେଇଚନ୍ତି ଜନସାଧାରଣଙ୍କ ସହିତ ଖାଲି ଅନ୍ତରଙ୍ଗହେବାକୁ ନୁହେଁ, ବକ୍ତବ୍ୟ (ଆଇଡିଆ)କୁ ମଧ୍ୟ କରିବେ କାଣ୍ଡଜ୍ଞାନ ଭଳି ପ୍ରାଞ୍ଜଳ: The error of the intellectual consists in believing that it is possible to know without understanding and especially without feeling and passion.... that an intellctual can be an intellectural....if he is distinct and detached from the people-nation (*pololo-nazione*), without feeling the elemental passions of the people, understanding them and thus explaining and justifying them in a particular historical situation, connecting them dialectically to the laws of history, to a superior conception of the world.... history and politics cannot be made without this passion, without this emotional bond between intellectuals and the people-nation. In the absence of such a bond the relations between intellectuals and the people-nation are reduced to contacts of a purely bureaucratic formal kind, the intellectuals become a caste or a priesthood । ଆବେଗ ଆସକ୍ତି ଦରଦ ନଥିଲେ ଜନସଂଯୋଗ ଅମଲାଙ୍କ କର୍ତ୍ତବ୍ୟସମ୍ପାଦନ ପରି ନିଷ୍ପ୍ରାଣ; କିନ୍ତୁ ସହାନୁଭବ ପାଇବ କୁଆଡୁ ବୁଦ୍ଧିଜୀବୀ ? ପାଇବ, ଜନଜୀବନର ପ୍ରାକୃତିକ / ମୌଳିକ ଦୋଷଗୁଣ ସହିତ ପରିଚିତହେଲେ । ସେଇ ଦୋଷଗୁଣ ଲୋକଙ୍କ ବିଶ୍ୱାସଜଗତର ଲକ୍ଷଣ । ଲୋକସଂସ୍କୃତିକୁ ଆତ୍ମସାତ୍ କରିନପାରିଲେ ବିଦ୍ୱାନ୍ ତେଣୁ ରହିଯିବେ, ସଂଗୀତ-ସାହିତ୍ୟ-ରସାନଭିଜ୍ଞ ସାକ୍ଷାତ୍ ପଶୁ, ପୁଚ୍ଛବିଷାଣହୀନଃ । ଜ୍ଞାନ ଆଉ ଉପଲବ୍ଧି ମଧ୍ୟସ୍ଥ ତଫାତ୍ ଦେଖାଇଚନ୍ତି ଗ୍ରାମ୍‌ସି; କିନ୍ତୁ ପାର୍ଟିକୁ ଯଦି ମଡର୍ଣ୍ଣ ପ୍ରିନ୍ସ ହେବାକୁ ହୁଏ, ଅନୁଶାସନପର୍ବ ବି ହେବ କଠିନ । ଅଗ୍ରଚର ଓ ଅନୁଚରଙ୍କ ଏ ସଂପର୍କ, ପାର୍ଟିଶୃଙ୍ଖଳାରେ ଯାହାକୁ କହନ୍ତି 'ଅଭ୍ୟନ୍ତରୀଣ ଗଣତନ୍ତ୍ର'; ଆଇଡିଅଲଜିକ୍ୟାଲ୍ ନିର୍ଦ୍ଧାରକ ସେଇ ଶୃଙ୍ଖଳା । ତୁରିନ୍‌ରେ ଫ୍ୟାକ୍ଟରି କାଉନ୍‌ସିଲ୍ ଆନ୍ଦୋଳନ କଲାବେଳେ ଗ୍ରାମ୍‌ସି ଦେଖିଚନ୍ତି, ନେତା ଓ ଶ୍ରମିକଙ୍କ ଐତିହାସିକ ସାମ୍ମୁଖ୍ୟ ସମ୍ଭବପର ହେବନାହିଁ ଯଦି ସାଂସ୍କୃତିକ ଆବେଗ ଆସକ୍ତି ଦରଦ ସେତୁବନ୍ଧ ଭଳି କାମ ନକରେ; ସମ୍ପର୍କଟା

ଯଦି ନହୁଏ 'ଅର୍ଗାନିକ୍' ....in the result of an organic participation in which feeling and passion become understanding and thence knowledge..., the realisation of a life in common which alone is a social force, only then is the 'historic bloc' created । ସଂପର୍କ ପ୍ରସଙ୍ଗରେ ଏତେ ସ୍ପର୍ଶକାତରହେବା କାରଣ ବୋଧହୁଏ ପାର୍ଟିଭିତରେ, ପୁଣି ସରକାରୀ କଳଭିତରେ, ଅମଲାତାନ୍ତ୍ରିକ ପ୍ରାଦୁର୍ଭାବ । ନିଜେ ପ୍ରତ୍ୟକ୍ଷକରିଥିଲେ; ଦେଖିଥିଲେ ଅକାରଣ ଦାମ୍ଭିକତା, ପରିବର୍ତ୍ତନବିମୁଖତା, ସାଧାରଣ ଲୋକକୁ ଅବଜ୍ଞା ଓ ଅବହେଳା । ଅର୍ଗାନିକ୍, ଏଇ ପ୍ରେକ୍ଷିତରେ, ବ୍ୟୁରୋକ୍ର୍ୟାଟିକ୍‌ର ବିପରୀତ । ମାତ୍ର ମାଓଙ୍କ ମହାଚୀନ୍‌ରେ, ଗ୍ରାମ୍‌ଶ୍ଚିଙ୍କ ଏ ଲେଖାର ତିରିଶବର୍ଷ ଉତାରୁ, ବୁଦ୍ଧିଜୀବୀଙ୍କୁ ବାଧ୍ୟକରାଯାଇଚି କ୍ଷେତଖମାର କି କଳକାରଖାନାରେ ମଝିରେମଝିରେ ଯାଇ ଗତରଖଟି ଆସିବାକୁ । ବୋଧହୁଏ, ସାଧାରଣ ମଣିଷର ଦୈନନ୍ଦୀନ ଜୀବନନିର୍ବାହର କଷଣ ବୁଦ୍ଧିଜୀବୀ ଯଦି ଅଙ୍ଗେନିଭାଏ, ପୂର୍ବୋକ୍ତ ଆବେଗ ଆସକ୍ତି ଦରଦ ଇତ୍ୟାଦି ଆକାଶରୁ ଖସିବନାହିଁ । ପରିଣାମରେ, ବୁଦ୍ଧିଜୀବୀ ଓ ଶ୍ରମଜୀବୀ ଭିତରେ ହିଷ୍ଟରିକ୍ ବ୍ଲକ୍ ତିଆରିହୋଇଥିବା ଚିହ୍ନବର୍ଣ୍ଣ ଆଜି ନଜରରେ ପଡୁନାହିଁ ମହାଚୀନ୍‌ରେ ।

କିନ୍ତୁ ଗତ ପାଞ୍ଚବର୍ଷ ଧରି ଶିଳ୍ପାୟନ ଓ ଉନ୍ନୟନର ଯୋଡ଼ ପ୍ରକ୍ରିୟାଟି କ୍ରିୟାଶୀଳ ଓ କ୍ରମଶ ବେଗବାନ, ଯାର ଅଭିଘାତ ସାମାଜିକ ଜୀବନର ଚିହ୍ନା ଛକଗୁଡ଼ାକୁ ଦ୍ରୁତ ବଦଳାଇଦେଉଚି, ତାର ଚରିତ୍ର ଓ ଅଭିମୁଖ ସମ୍ପର୍କରେ ବୁଦ୍ଧିଜୀବୀଙ୍କ ଅନୁଭବର କୋଉହେଲେ ସମଗ୍ରତା ଭାରତରେ ମଧ୍ୟ ଆଖିରେ ପଡୁନାହିଁ । ବରଂ ଏଗୁଡ଼ାକୁ ଦେଖାହେଉଚି ସତେ ଯେମିତି ପୁରାପୁରି ପ୍ରଶାସନିକ ବ୍ୟାପାର, ଗୁଡ୍ ଗଭର୍ନାନ୍ସ; ମାନେ, ଅମଲାତନ୍ତ୍ରର କର୍ମକୁଶଳତା, ଦକ୍ଷତା ଇତ୍ୟାଦି । ଅର୍ଥାତ୍, ଅ-ରାଜନୀତିକ ସମାଜରେ କ୍ଷମତାର ଉତ୍ପାଦନ, ବଣ୍ଟନ ଓ ପୁନର୍ବଣ୍ଟନ ପ୍ରକ୍ରିୟାଟାକୁ ଆମେ କହୁଛୁଁ ରାଜନୀତି । ଗୁଡ୍ ଗର୍ଭନାନ୍ସ ପ୍ରକ୍ରିୟାରେ ସମାଜରେ କ୍ଷମତା-ବିନ୍ୟାସ କେମିତି ପାଲଟିଯାଉଚି, ତିଆରିହେଉଚି ନୂଆ ନୂଆ ଦ୍ୱନ୍ଦ୍ୱର ପରିସର, ଲୋକଙ୍କୁ ବୁଝାଇବା କୋଉ ବିଶେଷଜ୍ଞ, ପ୍ରଯୁକ୍ତିବିଦ୍ କି ବୃହତ୍ ଅମଲାର କାମ ନୁହେଁ । ସେମାନେ, ପ୍ରକୃତ ପ୍ରସ୍ତାବରେ, ରାଜନୀତିହୀନ ପ୍ରକଳ୍ପଗୁଡ଼ିକର ମ୍ୟାନେଜର୍; ଅର୍ଥାତ୍ ଗୁଡ୍ ଗର୍ଭନାନ୍ସର ସାଫଲ୍ୟ ନିର୍ଭରକରେ ଦକ୍ଷ ମ୍ୟାନେଜ୍‌ମେଣ୍ଟ ଉପରେ; ଅର୍ଥାତ୍ ରାଜନୀତିର ମୃତ୍ୟୁ ଯୋଉଠି, ପ୍ରଶାସନିକତାର ଆରମ୍ଭ ସେଇଠି । ବୁଦ୍ଧିଜୀବୀ ତେବେ ଅର୍ଗାନିକ୍ ହେବ କେମିତି ଯଦି ବ୍ୟୁରୋକ୍ର୍ୟାଟ୍-କୁ ବିରୋଧ ନକରେ ?

□□□

# ଯେ ପକ୍ଷୀ ଉଡ଼େ ଯେତେଦୂର

ନିଜକୁ କି ସମାଜକୁ ବଦଳାଇବା ଅଭିଳାଷ, ଜଣାପଡୁଚି, ଉପଯୁକ୍ତ ଶିକ୍ଷାବ୍ୟବସ୍ଥା ଦ୍ୱାରା ପୁଷ୍ଟ ଓ ପରିବର୍ଦ୍ଧିତ ହୁଏ; ଏବଂ ସେ ପ୍ରକ୍ରିୟାର ପରିଣତିକୁ କୁହାଯାଏ ଚେତନାର ବିକାଶ । ତଦ୍ରୂପ ବିକାଶ ସକାଶେ ବିଗତ ଦୁଇଶ'ବର୍ଷ ଭିତରେ, ଓଡ଼ିଶାରେ ଅନ୍ତତଃ, କିଭଳି ଉଦ୍‌ଯୋଗ ଅନୁଷ୍ଠିତହୋଇଚି, ସାହିତ୍ୟରୁ ତାର ନିଦର୍ଶନ ଦେଖିହେବ; ଯେପରି, ଊନବିଂଶ ଶତକରେ ଫକୀରମୋହନଙ୍କ *ରାଣ୍ଡିପୁଅ ଅନନ୍ତା* ଗଳ୍ପରେ :

ଅବଧାନଙ୍କର ଗୋଡ଼ଘଷା, ପାଲଟା ଲୁଗା କଚା, ସଙ୍କୁଡ଼ି ଧୁଆ, ବିଲକୁଲ କାମ ପିଲାମାନେ କରନ୍ତି । ଯେତେ ବଡ଼ଲୋକର ପୁଅ ହେଉ ପଛକେ, ଅବଧାନ ଗୋଡ଼ ଘଷିବ । ଗୁରୁଙ୍କ ଗୋଡ଼ ଘଷିଲେ ପାଠ ଆସେ । ଅବଧାନ ପିକାଟିଏ ଭଲ କରି ମୋଡ଼ିଲେ-ନିଆଁଖୁଣ୍ଟାରେ ପିକାଟିଏ ଲଗେଇଦେଇ ଦି'କଳ ଭିଡ଼ିଲେ । ଫୁ କରି ଧୂଆଁ ଛାଡ଼ିଦେଇ କହିଲେ, 'କିବେ ମୁକୁନ୍ଦା ! ଧୂଆଁ ଲାଗୁନାହିଁ ଯେ ?'

ମୁକୁନ୍ଦ କହିଲା – ମୁଁ କ'ଣ କରିବି ଅବଧାନେ ? ବାବା ତ କାଲି ହାଟରୁ ଏଇ ଧୂଆଁ ଆଣିଛି ।

ଅବଧାନେ – ବେ ବିନ୍ଦିଆ ! ତୋ ବାପ କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଆଣିଲୁ ନାହିଁ ତ ?

ବିନୋଦ – ମୁଁ କ'ଣ କରିବି ଅବଧାନେ, ମା ତାକୁ ବିଡ଼ାବାନ୍ଧି ଶିକା ଉପରେ ରଖିଦେଇଛି, ମୋ ହାତ ପାଇଲା ନାହିଁ ।

ଅବଧାନେ – ଆଚ୍ଛା, ତୁ ଗୋଟାଏ କାମ କରିବୁ । ତୋ ମାଆ ଯେତେବେଳେ ଗାଧୋଇ ଯାଇଥିବ କି ତୁ ଗୋଟାଏ ବଡ଼ ପାଛିଆ ଉଗାଡ଼ି ପକାଇବୁ, ତା ଉପରେ ଚଢ଼ି ଶିକାରୁ ଧୂଆଁପତ୍ର କାଢ଼ିବୁ । ସେଥିରୁ ଦୁଇ ଚାରିଖଣ୍ଡ କାଢ଼ିନେଇ ବିଡ଼ାବାନ୍ଧି ଶିକାରେ ଥୋଇଦେବୁ । ଖବରଦାର ! ବେଶି ଗୁଡ଼ାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନ ଆଣିବୁ ଅନାଇଥା ଏ ବେତକୁ ।"

ବିଂଶଶତକରେ ଗୋପୀନାଥ ମହାନ୍ତି ଜଣେ ହାଡ଼ିପିଲାର ପାଠପଢ଼ିବା ବୃତ୍ତାନ୍ତ ଶୁଣାଇଚନ୍ତି *ହରିଜନ* ଉପନ୍ୟାସରେ :

..... ସବୁ ନକଲକରିବାକୁ ପ୍ରାଣ ଡାକେ; କିନ୍ତୁ ମନ ଯେତେ ଅମଡ଼ା ମାଡ଼ିଲେ ବି ସନିଆ ଝୁଣ୍ଟିହୁଏ-ପଇସା ନାହିଁ । ....ବୋଉ ନାହିଁ ତା'ର ବି ଆଶା ଥିଲା, ସନିଆ ମଣିଷ ହେବ । ସାହି ପାଖେ ଗୋଟିଏ ଇସ୍କୁଲ, ଭେଦାକରି ଛୁଆଁ ଶ୍ରେଣୀର ମଜୁରିଆମାନେ ବସାଇଥିଲେ ତାଙ୍କ ପିଲାଙ୍କ ପାଇଁ । ସନିଆ ବୋଉ ରୋଗରେ ଥୁରୁଥୁରୁ ଅକାଳେ ବୁଢ଼ୀ । ମାଷ୍ଟରଙ୍କ ଆଗେ ଭୂଇଁରେ ମୁଣ୍ଡ କୋଡ଼ିକୋଡ଼ି କେତେ ଜୁହାର କରି କଥା ଛିଣ୍ଡାଇଦେଲା, ଇସ୍କୁଲ ବାହାରେ ପିଣ୍ଡା ତଳେ ବସି ତା ପୁଅଟି ପାଠ ପଢ଼ିବ । ସେମିତି ସେ ମଣିଷ ହେବ । ସତରେ ଦିନେ ସନିଆକୁ କାଖେଇ, ମୁଢ଼ି ମୁଆଁଟିଏ ହାତରେ ଧରେଇ ଦେଇ, ପାଠ ପଢ଼ିବାକୁ ବସେଇଦେଇ ଆସିଥିଲା । ଆଶାରେ ଜକଜକ ଦିଶୁଥିଲା ତାର ଦିନଗଣୁଥିବା ମୁହଁର ଖୋଳପା । ଦିନାକେତେ ସନିଆ ଯାଇଥିଲା କେବଳ ମୁଢ଼ିମୁଆଁ ଆଶାରେ । ସେଇଠି ଓଳିତଳେ ବସି ମନଇଚ୍ଛା ଖଡ଼ିରେ ଗାରାଏ । ଘର ଭିତରେ ପିଲାଏ ପଢୁଥାନ୍ତି । ଏତିକି ବଦଳରେ ସନିଆକୁ କାମ କରିବାକୁ ପଡ଼େ । ସେ ପିଣ୍ଡା ଲିପେ, ପିଲାଏ ଝାଡ଼ାଫେରି ଦେଲେ ସଫାକରେ, ଅନ୍ୟମାନେ ଖାଇଥିବା ଚୀନାବାଦାମ ଚୋପା ଅଣ୍ଟିରେ ପୁରେଇ ଘରକୁ ଲେଉଟେ । ବେଶିଦିନ ଚଳିପାରିଲା ନାହିଁ, ଦିନେ ସନିଆର ମା ଆବିଷ୍କାର କଲା, ପାଠ ପଢ଼ିଯିବା ପୁଅର ଗୋଟାଏ ପତିଆରା । ମୁଢ଼ିମୁଆଁର ଆକାର ଆଙ୍କିବା ଛଡ଼ା ଆଉ ସେ କିଛି ଜାଣେନାହିଁ ।

ଏକ୍ଷଣି ଏକବିଂଶ ଶତାବ୍ଦରେ ଅବଶ୍ୟ ଇଂରେଜୀମିଡିୟମ୍ ସ୍କୁଲ୍‌ଗୁଡ଼ାକ ପ୍ରତି ଅଭିଭାବକଙ୍କ ପକ୍ଷପାତ; ମାତ୍ର ଚେତନାର ବିକାଶ ଭଳି ପ୍ରଶ୍ନର ଉତ୍ତର ଅଦ୍ୟାବଧି ମିଳିନାହିଁ, ସମାଜର ବିକାଶ ତ କୋଉ ଛାର୍ କଥା ! ତାର କାରଣ, ଶିକ୍ଷାବ୍ୟବସ୍ଥା ଯେ ଏକ ନିର୍ଦ୍ଦିଷ୍ଟ ରାଜନୀତିକ ଭାବାଦର୍ଶ ଦ୍ୱାରା ପରିଚାଳିତ, ସେକଥା ଲୋକଙ୍କ ମନକୁ ଛୁଇଁନାହିଁ । ଚେତନା ତ ଶୂନ୍ୟଗର୍ଭ ବିମୂର୍ତ୍ତତା ନୁହେଁ, ତାର ବି ଅଛି ଅବୟବ, ଏବଂ ଅଛି ବୋଲି, ସକର୍ମକ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଶିଶୁପାଠ୍ୟ ବର୍ଣ୍ଣପରିଚୟ ଲେଖିଲେ ଯେତେବେଳେ, ନିର୍ଦ୍ଦ୍ୱିଧାରେ କହିଲେ, ଓ୍ୱାରେନ୍ ହେଷ୍ଟିଙ୍ଗସ୍ ଆସିବା ଆଗରୁ ସର୍ବଜନୀନ ସାକ୍ଷରତାର ଆୟୋଜନ କେବେହେଲେ ହୋଇନାହିଁ, କାହିଁକିନା, ଶାସକକୁଳ ଧରିନେଇଚି ଶିକ୍ଷା ହିଁ ମଣିଷକୁ ବିଦ୍ରୋହୀକରେ । ଶିକ୍ଷା ରହିଯାଇଚି ତେଣୁ ପ୍ରଧାନତଃ ପାରିବାରିକ / କୌଳିକ ଉଦ୍‌ଯୋଗ । ଏବଂ ଯୋଉ ପରିବାର ସେ କାମରେ ଆତ୍ମନିୟୋଗ କରିଚି, ଜୀବନନିର୍ବାହ ପାଇଁ ପାଇଚି ବ୍ରହ୍ମୋତ୍ତର ଲାଖରାଜ; ମାନେ, ଶରୀରଶ୍ରମରୁ ଅବ୍ୟାହତି । ଚେତନାବିକାଶ ଦିହରେ ନିଷ୍କର ଭୂସଂପତ୍ତିକୁ ଯୋଡ଼ିଦେବା ଅର୍ଥ ରାଜନୀତି (ଶାସନକ୍ଷମତାକୁ)କୁ ନିଷ୍କଣ୍ଟକ କରିଦେବା । ନଗରରାଷ୍ଟ୍ର

ଆଥେନ୍ସରେ ରାଷ୍ଟ୍ରକ୍ଷମତାପ୍ରତ୍ୟାଶୀ ଯୁବକଙ୍କୁ ଶିକ୍ଷାଦେଇଚନ୍ତି ବହିରାଗତ ସୋଫିଷ୍ଟ୍ ଅର୍ଥବିନିମୟରେ । ବିଦ୍ରୂପକରି ସୋକ୍ରେଟିଜ୍ ସୋଫିସ୍ଟଙ୍କୁ କହିଚନ୍ତି, ବିଦ୍ୟାବିକ୍ରେତା । ମାତ୍ର ବିଦ୍ରୂପର ଅସଲ କାରଣ, ସୋଫିଷ୍ଟ୍ ଶିଖାଇଚନ୍ତି,ପରବର୍ତ୍ତୀକାଳରେ ଦର୍ଶନବିଦ୍ୟା ଯାହାକୁ ନାଁଦେଇଚି ସ୍କେପ୍ଟିସିଜ୍ମ; ଅର୍ଥାତ୍ ଯଥାପ୍ରାପ୍ତ ବିଶ୍ୱାସ ବା ରୀତିନୀତିକୁ ସ୍ୱୟଂସିଦ୍ଧ ବୋଲି ଗ୍ରହଣ ନକରିବାକୁ । ଜ୍ଞାନ ହୋଇଯାଇଚି ତେଣୁ ଆପେକ୍ଷିକ । ସେଇ ପ୍ରଭାବରେ ହେରାକ୍ଲିଟସ୍ ଉପଲବ୍ଧିକରିଚନ୍ତି, ଜଗତ୍‌ରେ ଯୋଉ ଗୋଟିଏ ଜିନିଷ ଅପରିବର୍ତ୍ତନୀୟ, ତା ଏକମାତ୍ର ନିଜେ ପରିବର୍ତ୍ତନ । କୁହାଯାଇପାରେ ଚେତନାବିକାଶର ଅୟମାରମ୍ଭ । ବ୍ରିଟିଶ୍ ବନ୍ଦୋବସ୍ତ କିନ୍ତୁ ଲାଖରାଜ ବ୍ୟବସ୍ଥାକୁ ମାନିନେଇଚି, ଯଦିଓ ସଂସ୍କୃତ ଓ ଆର୍ବୀ-ଫାର୍ସୀ ଉପରୁ ଗୁରୁତ୍ୱ ଲୋପକରି ଚାଲୁକରିଚି ଇଂରେଜୀ । ଫଳରେ, ଗାଁଗଣ୍ଡାରେ ରହିଗଲା ଯେତେ ଚାଟଶାଳୀ ପିଲାଙ୍କୁ ଶିଖାଇଚି ମାତୃଭାଷାରେ କାମଚଳାଇବା ଭଳି ଭାଷାଜ୍ଞାନ ସାଙ୍ଗକୁ ଜମିବାଡ଼ି କି ବଜାରହାଟରେ କାମରେଲାଗିବା ଭଳି ଗଣିତ । ସ୍ୱାଧୀନତାପୂର୍ବବର୍ତ୍ତୀ ଏବଂ ସ୍ୱାଧୀନତାପରବର୍ତ୍ତୀ ଯୋଉ ଦୁଇଟି ବିଦ୍ୟାଳୟର ଦୃଷ୍ଟାନ୍ତ ଫକୀରମୋହନ ଆଉ ଗୋପିବାବୁଙ୍କ ଲେଖାରୁ ଯଥାକ୍ରମେ ଉଦ୍ଧାରକରାଯାଇଚି, ଉଭୟ ସେଇ ଚାଟଶାଳୀ । ଚେତନାବିକାଶ ତାର ଅଭିପ୍ରେତ ନୁହେଁ, କି ରାଷ୍ଟ୍ର ମଧ୍ୟ ତାର ପୃଷ୍ଠପୋଷକ ନୁହେଁ; ଗାଁବାଲା ନିଜ ଗରଜରେ ବସାଇଚନ୍ତି । ଓଡ଼ିଶାରେ ଅନ୍ତତଃ ସବୁଗାଁରେ ଥିଲା ଚାଟଶାଳୀ ଇଂରେଜ୍‌ଙ୍କ ଆଗମନ (୧୮୦୩) ଆଗରୁ । ମାଷ୍ଟର୍‌ଙ୍କ ପରିଚୟ ମାଟିବଂଶ ଅବଧାନ । ଲାଖରାଜ ଜୁଟିନାହିଁ କପାଳରେ; ତେଣୁ ବ୍ୟାବହାରିକ ଶିକ୍ଷାଦେଇଚନ୍ତି କେବଳ । ନିଜେ ମୁଁ ଯୁକ୍ତାକ୍ଷର, କଡ଼ାଗଣ୍ଡା, ଜରିପ, ପଣକାହାଣ ଚାଟଶାଳୀରେ ହିଁ ଶିଖିଚି । ଜାତିଭେଦ ନଥିଲା; ମାତ୍ର ମାଷ୍ଟର୍ ବ୍ରାହ୍ମଣପିଲାଙ୍କ ପ୍ରଣାମ ଗହଣକରନ୍ତିନାହିଁ, କି ବାସନମାଜିଦେବାକୁ କି ଗୋଡ଼ ମୋଡ଼ିଦେବାକୁ ଡାକନ୍ତିନାହିଁ । ତଥାପି, ସ୍କୁଲ୍‌କୁ ଯେତେ ପିଲା ଆସନ୍ତି ତାର ବହୁଗୁଣ ରହିଥିଲେ ଶିକ୍ଷାବ୍ୟବସ୍ଥା ବାହାରେ । ତାକୁ ସାଧାରଣ ସାମାଜିକ ସମସ୍ୟା ବୋଲି କେହି କେବେ ଭାବିନାହିଁ । ଅଥଚ ଚାଟଶାଳୀ ଶିକ୍ଷାର ବ୍ୟୟଭାର ଥିଲା ନାମମାତ୍ର; ଚାଉଳପନିପରିବା ଦେଲେ ବି ଚଳିଯାଏ । ଅନ୍ୟ ଶବ୍ଦରେ, ମ୍ୟାକଲେଙ୍କ ମିନିଟ୍‌ସ୍ (୧୮୩୫) ଘୋଷଣା ପୂର୍ବରୁ ରାଷ୍ଟ୍ର କୋଉହେଲେ ଶିକ୍ଷାନୀତି ପ୍ରବର୍ତ୍ତନକରିନାହିଁ, କାହିଁକିନା, ସ୍ଥାନୀୟ ଲୋକଙ୍କ ଚେତନାବିକାଶ ଯେ ଇଂରେଜରାଜତ୍ୱକୁ ଦୃଢ଼ୀଭୂତ କରିପାରେ, ସେ ଧାରଣା ବିଦେଶୀ ପ୍ରଭୁର ମନକୁ ଛୁଇଁନାହିଁ । ସିପାହୀବିଦ୍ରୋହ ପୂର୍ବବର୍ତ୍ତୀ କାଳରେ ଇଂରେଜ୍ ନିଜେ ଥିଲା ଏଠି ସ୍ୱଳ୍ପଶିକ୍ଷିତ କିମ୍ବା ସାକ୍ଷର ମାତ୍ର । ମାତ୍ର ଔପନିବେଶିକ 'ଆଧୁନିକତା' ସଂଗଠନକରିଚି ଯୋଉ

ସାମାଜିକ ପରିବର୍ତ୍ତନ, ଦେଶଜ ବ୍ୟାବହାରିକ ଶିକ୍ଷା ତା ସହିତ ସଙ୍ଗତି ରଖିପାରିନାହିଁ; ପାରିନାହିଁ ବୋଲି, ଗାଁଗଣ୍ଡାର ଅବସ୍ଥାପନ୍ନ ଲୋକ ବି ଚାହିଁଚନ୍ତି, ତାଙ୍କ ପିଲା ଇଂରେଜୀ-ସ୍କୁଲ୍ (ଯେପରି, ମାଇନର୍ ସ୍କୁଲ୍, ହାଇସ୍କୁଲ୍ ଇତ୍ୟାଦି)ରେ ପାଠପଢ଼ିବେ, ହେଉପଛେ ପଢ଼ାଖର୍ଚ୍ଚ ଦୁର୍ମୂଲ୍ୟ । ଏଭଳି ସ୍କୁଲ୍ ବସିଚି ସାଧାରଣତଃ ଜିଲ୍ଲା କି ମହକୁମା ସହରରେ । ଶିକ୍ଷକଙ୍କୁ ତାଲିମ୍‌ଦେବାକୁ ସ୍କୁଲ୍ ବସିଚି ସାଧାରଣତଃ ରାଜଧାନୀ- ସହରରେ । ଛପାବହି ଆଉ କାଗଜ-କଲମ ତେଣୁ ସିଲଟ-ଖଡ଼ି ଆଉ ଅବଧାନମାନଙ୍କୁ ଦେଇଚି ଯାବଜ୍ଜୀବନ କାରାଦଣ୍ଡ । ନ'ଅଙ୍କ ଦୁର୍ଭିକ୍ଷବେଳେ ଅନ୍ନଛତ୍ରରେ ଭାତଖାଇ ଯୋଉ ଛତରଖିଆ ଖ୍ରୀଷ୍ଟାନ୍‌ହେଲେ, ମିଶନାରୀ ତାଙ୍କ ସକାଶେ ମଧ୍ୟ ସ୍କୁଲଖୋଲିଚନ୍ତି ଉପକୂଳବର୍ତ୍ତୀ ସବୁ ଜିଲ୍ଲାରେ । ନାରୀଶିକ୍ଷା ପ୍ରଚଳନ ମୁଖ୍ୟତଃ ମିଶନାରୀଙ୍କ କୃତିତ୍ୱ । ମାତ୍ର ସେମାନେ ସାଧାରଣତଃ ପ୍ରୋଟେଷ୍ଟ୍ୟାଣ୍ଟ୍ । ମାଇନର୍ କି ହାଇସ୍କୁଲ୍‌ରେ ଗ୍ଲୋବ୍ ବ୍ୟବହାର କରାଯାଇଚି; ଚେତନାବିକାଶ କାମରେ ଗ୍ଲୋବ୍ କେତେଦୂର ସାହାଯ୍ୟକରିଚି, ଜାଣିବାର ଉପାୟ ନାହିଁ; ମାତ୍ର କରିଥିବ ନିଶ୍ଚୟ । ପିଲା ଅନ୍ତତଃ ଠାବ କରିପାରିଥିବେ ଇଂଲଣ୍ଡ୍ ଜାଗାଟାର ଅକ୍ଷାଂଶ-ଦ୍ରାଘିମା । ଫଳରେ, ପିଲା କଣ ବୁଝିପାରିଥିଲେ, ସେମାନେ ଅତ୍ୟାଚାରିତ ପ୍ରଜା ?

୧୭୭୪ରେ କଲିକତାରେ ବସିଚି ସୁପ୍ରିମ୍ କୋର୍ଟ; କିନ୍ତୁ ଜଜ୍ ଆଉ ଓକିଲ ବିବାକ୍ ଇଂରେଜ୍ । ଅଧସ୍ତନ ଚାକିରିପାଇଁ ସାମାନ୍ୟ ଇଂରେଜିଜ୍ଞାନ ଅବଶ୍ୟ ଯଥେଷ୍ଟ, କାହିଁକିନା, ସ୍କୁଲ୍‌ମାଷ୍ଟରଙ୍କ ପାଖରୁ ତଦପେକ୍ଷା ଅଧିକ ପ୍ରତ୍ୟାଶା ବିବେଚିତହୋଇଚି ଅସଙ୍ଗତ । କିନ୍ତୁ ସରକାରୀ କାମର ପରିଧି ଓ ଦାୟିତ୍ୱ ବଢ଼ିଚି ଅତି ଦ୍ରୁତଲୟରେ; ତା ପାଇଁ ଯୋଗ୍ୟତାର ମାନ ତେଣୁ ବଢ଼ିଯାଇଚି ହଠାତ୍; ଏବଂ ଚାହିଦାଯୋଗାଣ ପରିମାପରେ ଉଚ୍ଚମାନର ଶିକ୍ଷାପାଇଁ ଦାବି ବି ବଢ଼ିଚି ସମାନୁପାତ । ଇଂରେଜ୍ ଦେଖିଚି, ବିଜାତୀୟ ପ୍ରଭୁତ୍ୱର ସ୍ଥାୟିତ୍ୱ ନିର୍ଭରକରୁଚି ଆଇନ୍‌ମାନି ଚଳୁଥିବା ସମାଜବ୍ୟବସ୍ଥା ଉପରେ; ଅର୍ଥାତ୍ ଦରକାର ଏକ ସିଭିଲ୍ ସୋସାଇଟି, ଏବଂ ସେଭଳି ସମାଜ ତିଆରିକରିବାକୁ ଶିକ୍ଷାର ଗୁରୁତ୍ୱ ସର୍ବାଧିକ । ସେଭଳି ଶିକ୍ଷାକୁ କୁହାଯାଇଚି ଲିବର୍‍ୟାଲ୍ ଏଡୁକେସନ୍ । ତାର ଅନିବାର୍ଯ୍ୟ ଫଳଶ୍ରୁତି, ବଙ୍ଗାଳୀ ଯାହାକୁ କହୁଚନ୍ତି 'ବାବୁ-କଲଚର୍'; ମାନେ ପରଶ୍ରମଜୀବୀ ଶିକ୍ଷିତଲୋକର ଅବସରର ଅପଚୟ । ବାବୁ କିନ୍ତୁ 'ଅପଚୟ' ଭାବିନାହାଁନ୍ତି, କାହିଁକିନା, ମଦଅଫିମ, ବେଶ୍ୟାଗମନ, ଗୋମାଂସ ଭକ୍ଷଣ, ଯାତ୍ରାଥିଏଟର୍‌ପ୍ରୀତି କି ପୌତ୍ତଳିକତା ପ୍ରତି ବିରକ୍ତି-ବିବେଚିତହୋଇଚି ଭଦ୍ରଲୋକର ଲକ୍ଷଣ ! ଗତରଖଟି ପେଟପୋଷୁଥିବା ଶ୍ରମଜୀବୀ କିନ୍ତୁ ରହିଯାଇଚନ୍ତି ମାୟାମୁଗ୍ଧ ଏଇ ଚକ୍ର ବାହାରେ । ଇଂରେଜ୍‌କୁ ଦାୟୀ କରିହେବନାହିଁ, ୧୮୩୫ ପର୍ଯ୍ୟନ୍ତ ଯେହେତୁ

କୋଉହେଲେ ଶିକ୍ଷାନୀତି ପ୍ରବର୍ତ୍ତିତହୋଇନାହିଁ । ବାବୁକଲ୍‌ଚର୍ ବସ୍ତୁତଃ ବେସରକାରୀ ଉଦ୍ୟୋଗରେ ଚେତନାର ବିକାଶ ! ସରକାରୀ ଶିକ୍ଷାନୀତି ପ୍ରଣୀତହେଲା ଯେତେବେଳେ ଏକମାତ୍ର ଜେମ୍‌ସ୍ ମିଲ୍ କହିଥିଲେ, ଭାରତ ଭଳି ଜନବହୁଳ ଦେଶରେ ସମସ୍ତଙ୍କୁ ଇଂରେଜୀ ଶିଖାଇବା ଏକେବାରେ ଅବସ୍ତାବ ପ୍ରସ୍ତାବ; ମାତୃଭାଷା ଉପରେ ଗୁରୁତ୍ୱ ଆରୋପ ତେଣୁ ସମୀଚୀନ; ବିଶେଷତଃ ଯେହେତୁ ଆୟର୍‌ଲ୍ୟାଣ୍ଡ୍‌କୁ କଷ୍ଟକରି ଇଂରେଜୀ ଶିଖାଇଥିଲେ ବି, ଆଇରିସ୍ କେତେବେଳେ ଇଂରେଜ୍‌କୁ ଭାବିନାହାଁନ୍ତି ଆତ୍ମୀୟ । ବୋଲିବା ବାହୁଲ୍ୟ କର୍ତ୍ତୃପକ୍ଷ କର୍ଣ୍ଣପାତ କରିନାହାଁନ୍ତି । ଲ' ମେମ୍ବର୍ ଟମାସ୍ ବ୍ୟାବିଙ୍ଗ୍‌ଟନ୍ ମ୍ୟାକଲେ ତେଣୁ ୧୮୩୫ରେ ଗଭର୍ଣ୍ଣର୍‌ଜେନେରାଲ୍ ବେଣ୍ଟିକ୍‌ଙ୍କ ପାଖରେ ପେଶ୍‌କରନ୍ତି ବିଖ୍ୟାତ୍ ସେଇ 'ମିନିଟ୍', ରାଜା ରାମମୋହନ ରାୟଙ୍କ ପାଖରୁ ପାଇଚି ଯା ଅକୁଣ୍ଠ ସମର୍ଥନ । ଏ ମଧ୍ୟ ଚେତନାର ବିକାଶ; ଇଂରେଜ୍ ଆଉ ଇଂରେଜୀ ପ୍ରତି ମୋହ । ଯୁଦ୍ଧଜୟ ମାଧ୍ୟମରେ ରାଜତ୍ୱକରୁଥିବା ବିଦେଶୀ ଏଭଳି ମୋହ ତିଆରିକରିବା ସ୍ୱାଭାବିକ; ମାତ୍ର ମ୍ୟାକଲେ ଯେତେବେଳେ କହିଲେ, ତିରିଶବର୍ଷ ଭିତରେ ଇଂରେଜୀ ପଢ଼ିଥିବା ଭାରତୀୟ କେହିହେଲେ ପିତୁଳା ପୂଜାକରିବେନାହଁ, ଏବଂ ଧର୍ମୀୟ ବିଶ୍ୱାସରେ ହସ୍ତକ୍ଷେପ ନକରି ସୁଦ୍ଧା ସମ୍ଭବହେବ ସେଇ ପରିବର୍ତ୍ତନ, ଭାରତୀୟ ଏଲିଟ୍ ପାଟିଫିଟାଇନାହିଁ; କାହିଁକିନା, ମ୍ୟାକଲେ ଦ୍ୟର୍ଥହୀନ ଭାଷାରେ କହିଚନ୍ତି, ଇଂରେଜୀକୁ ଶିକ୍ଷାବ୍ୟବସ୍ଥାର ଶୀର୍ଷରେ ରଖିବା କାରଣ, ରକ୍ତ ଓ ବର୍ଣ୍ଣରେ ଭାରତୀୟ, କିନ୍ତୁ ରୁଚି ମତବାଦ ନୀତିବୋଧ ଓ ମେଦିନୀଦୃଷ୍ଟିରେ ସଂପୂର୍ଣ୍ଣ ଇଂରେଜ୍ ଯୋଉ ଭଦ୍ରସମାଜ ବାହାରିବ, ସେଇ ହେବ ଇଂରେଜ୍ ମୁନିବ ଓ ସ୍ଥାନୀୟ ପ୍ରଜାଙ୍କ ମଧ୍ୟରେ ଯୋଗସୂତ୍ର । କ୍ଲାଇଭ୍ ବ୍ୟବହାରକରିଥିଲେ ବନ୍ଧୁକ ଆଉ କମାଣ; ମ୍ୟାକଲେ କିନ୍ତୁ ବ୍ୟବହାର କରିଚନ୍ତି ନିରସ୍ତ୍ର ଇଂରେଜୀଭାଷା । ସେଥିପାଇଁ, ଶିକ୍ଷାନୀତି ଯେ ବାସ୍ତବିକ କ୍ଷମତାରାଜନୀତି, ବୁଝିବାକୁ ଲାଗିଗଲା ଭାରତକୁ ଶତାଧିକ ବର୍ଷ । କିନ୍ତୁ ନମାନି ଉପାୟ ନାହିଁ ଯେ ଗ୍ରାମଶିଙ୍କ ଠିକ୍ ଶହେବର୍ଷ ଆଗରୁ ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ ପ୍ରତ୍ୟୟଟା ମ୍ୟାକଲେଙ୍କ ମନକୁ ଆସିଚି; ଇଂରେଜ୍‌ର ଆଧିପତ୍ୟ ବା ହିଗେମନିକୁ ସର୍ବାଂଶରେ ସାର୍ଥକକରିଚି ଏଇ ଭାରତୀୟ ବୁଦ୍ଧିଜୀବୀ । ଅର୍ଥାତ୍ ବିଦେଶୀ ପ୍ରଭୁ ଓ ଭାରତୀୟ ପ୍ରଜା ମଝିରେ ବାବୁମାନେ ଖାଲି ଭାବାଦର୍ଶ ସ୍ତରରେ ନୁହେଁ, ପ୍ରାତ୍ୟହିକ ଜୀବନଚର୍ଯ୍ୟାରେ ଇଂରେଜ୍ ସାଙ୍ଗରେ ନିର୍ମାଣକରିଚନ୍ତି 'ଜୈବ' ବନ୍ଧନ, ଏବଂ ସେଇ ପ୍ରକ୍ରିୟାରେ, ଐତିହ୍ୟବାହୀ ଇଣ୍ଟେଲେକ୍‌ଚୁଆଲ୍‌କୁ କରିଦେଇଚନ୍ତି ସ୍ଥାନଚ୍ୟୁତ । ସିଭିଲ୍ ସୋସାଇଟି ଭିତରୁ ତେଣୁ ପ୍ରତିରୋଧର ପ୍ରରୋଚନା ନିସ୍ତେଜ ହୋଇଯାଇଚି । ଏଇ ଜୈବ ବନ୍ଧନ ତିଆରିକରିବାକୁ ଲାଗିଚି ଅବଶ୍ୟ ଶତାଧିକ

ବର୍ଷ । କିନ୍ତୁ ଜନସାଧାରଣଙ୍କ ଶିକ୍ଷାର ପ୍ରୟୋଜନ କଣ ଏକାରକମ ? ସିନିଆ ଆଉ ବିନୋଦର ଚାହିଦା କଣ ଅଭିନ୍ନ ? ଫଳରେ, ଇଂରେଜୀ ଭାଷାରେ ଅନବରତ ତାଲିମ୍ ସାଙ୍ଗକୁ ପ୍ରିଣ୍ଟକ୍ୟାପିଟାଲିସ୍ମର ସର୍ବବ୍ୟାପୀ ପ୍ରସାର ଭାରତୀୟ ବୁଦ୍ଧିଜୀବୀର ମାନସିକ ଗଢ଼ଣକୁ ଏକା ଛାଞ୍ଚରେ ପକାଇଚି ସିନା, ସଂସ୍କୃତି ହୋଇପାରିନାହିଁ ସମସତ୍ତ୍ୱ । ଯାହାଙ୍କୁ ନକ୍ସଲ୍ କହୁଛୁ, ସେ ପିଲା ବି ଇଂରେଜୀପଢ଼ି ମଣିଷହୋଇଚନ୍ତି ! ବାଦ୍‌ବାକି ପିଲା ବୁଝିଚନ୍ତି, ଅବସର ବ୍ୟୟକରିବାର ମାର୍ଜିତ ଉପାୟ ବହିପଢ଼ିବା, ସାହେବହେବା ନୁହେଁ । କିନ୍ତୁ ବହିକିଣିବା ସାମର୍ଥ୍ୟନାହିଁ ବେଶି ପିଲାଙ୍କର, ଆଉ ସାମର୍ଥ୍ୟ ଥିଲେ ବି ବହିମିଳିବା ମୁସ୍କିଲ୍ । ଲକ୍ଷଣ ଗୁଡ଼ାକ ଚେତନାର ସ୍ୱାଭାବିକ ବିକାଶ ନୁହେଁ । ବାଟ ରୁଦ୍ଧକରିଦେଇଚି ଇଂରେଜୀ; ସଂସ୍କୃତିସଂପନ୍ନ ନହୋଇ ଖାଲି 'ମାର୍ଜିତ'ହୋଇ ରହିଯାଇଚୁଁ ।

ବିନା ବ୍ୟତିକ୍ରମରେ, ଶିକ୍ଷାଦାନ ପ୍ରକଳ୍ପ ଯଦି ରାଜନୀତିପ୍ରସୂତ, ଖାଲି ଭାଷା ଶିଖାଇଦେଲେ କି ବହିପତ୍ର ପଢ଼ାଇଦେଲେ ଉଦ୍ଦେଶ୍ୟ ସିଦ୍ଧହୋଇ ପାରିବ କି ? ପ୍ରକୃତରେ କିନ୍ତୁ ଶ୍ରେଣୀଗୃହ ଭିତରେ କତିପୟ ଜୀବନକୁ କରାଯାଉଚି ଆବଦ୍ଧ; ତହିଁଉତାରୁ ପ୍ରୟୋଗକରାଯାଉଚି ଜ୍ଞାନ, ଜୀବନଟାକୁ ବଦଳାଇଦେବା ଉଦ୍ଦେଶ୍ୟରେ, କାହିଁକିନା, ତା ହେଲେ ସିନା ଶ୍ରେଣୀଗୃହ ବାହାରେ ଯୋଉ ଜଗତ୍, ତାକୁ ସିଏ ବଦଳାଇବାକୁ ହେବ ଉଦ୍ୟତ ! ଆହରିତ ଜ୍ଞାନ ସେତେବେଳେ ହୋଇପାରିବ ଆୟୁଧ । କିନ୍ତୁ ଯିଏ ଦୁଃଖଯାତନା ଜ୍ୱାଳାରେ ହୋଇଯାଇଚି ଅକର୍ମଣ୍ୟ, ତାର ସାମାଜିକ ଅବସ୍ଥାନରୁ ନିରୀକ୍ଷଣକଲେ ଦିଶିବ, ଶୁଦ୍ଧଜ୍ଞାନ ଯୋଉ ରୂପାନ୍ତର ଘଟାଇପାରିବ ବୋଲି ଶ୍ରେଣୀଗୃହରେ ପ୍ରତ୍ୟାଶା କରାଯାଇଥିଲା, ତା ଘଟିନାହିଁ; ଜୀବନ ରହିଚି ଅପରିବର୍ତ୍ତିତ, ଅଥର୍ବ । ଅଥଚ ଜ୍ଞାନକୁ ଯଦି କର୍ମରେ ପରିଣତକରାଯାଏ, ପ୍ରତ୍ୟାଶିତ ପରିବର୍ତ୍ତନ ଘଟିଯାଇପାରେ ନିଶ୍ଚୟ । ଅନୁଶୀଳନର ଅସଲ ଅର୍ଥ ତେଣୁ ଜ୍ଞାନକୁ ଏଇଭଳି କର୍ମରେ ରୂପାନ୍ତର; ପରିବର୍ତ୍ତନ ଘଟାଇପାରିବ ଯୋଉ କ୍ରିୟାକଳାପ, ତାକୁ ଚୈତନ୍ୟରେ ଧାରଣ; ଆଉ ସେ ଚୈତନ୍ୟକୁ ପରିବର୍ତ୍ତନଶୀଳ କାର୍ଯ୍ୟକଳାପରେ ରୂପାନ୍ତର—ଦ୍ୱାନ୍ଦ୍ୱିକ ଗତିଶୀଳତା । ଅନ୍ୟ ଶବ୍ଦରେ, ପ୍ରସ୍ତାବିତ ଶିକ୍ଷାନୀତିକୁ ପ୍ରେରିତକରୁଚି ଯୋଉ ରାଜନୀତି, ତା ବଞ୍ଚିତ ଅବମାନିତର ଚେତନାର ଅବରୁଦ୍ଧତା । ଚେତନାର ସ୍ୱଭାବ କିନ୍ତୁ ଊର୍ଦ୍ଧ୍ୱମୁଖୀ ଏବଂ ପରିବର୍ତ୍ତନ ଯଦି ଅପରିବର୍ତ୍ତନୀୟ, ନୈରାଶ୍ୟ ମଧ୍ୟ ହୋଇପାରେନା ସ୍ଥାୟୀ କୋଉ ଉପସର୍ଗ । କାହିଁକିନା, ପ୍ରତିଭା ଆସେ ମେହନତ୍‌ରୁ, ଅଧୀତ ବିଦ୍ୟାର ପ୍ରୟୋଗଯୋଗ୍ୟତାରୁ । ମଣିଷର ମନ ତ ଗୋଟିଏ ଅଲେଖା ପୃଷ୍ଠା, ତା ଉପରେ ଦାଗପଡୁଚି ବହିର୍ବିଶ୍ୱ ପଶିଆସୁଚି ଯେତେବେଳେ ଚେତନାକୁ । ଅର୍ଥହୀନ ବିକ୍ଷିପ୍ତ

ସେଇ ଦାଗଗୁଡ଼ାକୁ ପରସ୍ପର ସହିତ ଅନ୍ୱିତକରି ମନ ତିଆରିକରୁଚି ଜଗତର ମର୍ମାର୍ଥ । ଏ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିପାରେ ଶ୍ରେଣୀଗୃହରେ ବିଦ୍ୟାଦାନ; ଯିଏ ଶ୍ରେଣୀଗୃହରେ ପ୍ରବେଶ-ଅଧିକାରରୁ ବଞ୍ଚିତ, ସିଏ ମଧ୍ୟ ମୂର୍ଖ କି ନିର୍ବୋଧ ନୁହେଁ; କେବଳ ଯୁକ୍ତକରିପାରୁନାହିଁ ମେହନତ୍ ସାଙ୍ଗରେ ମନଭିତରେ ଚାଲିଥିବା ଆଲୋଡ଼ନକୁ । ଏପରି କୋଉ ବ୍ୟର୍ଥତା ନୁହେଁ ଯେ ପୃଥିବୀ ଦିଶିବ ଅନ୍ଧକାର । କିନ୍ତୁ ଜୀବନକୁ ଯଦି ବଦଳାଇବାକୁ ହୁଏ, ପ୍ରକଟ୍ଟା ହୋଇପଡ଼େ ରାଜନୀତି, କାହିଁକିନା, ମଣିଷ ନିଃସଙ୍ଗ ନୁହେଁ କି ପୃଥିବୀ ନିର୍ଜନ ନୁହେଁ । ପ୍ରକୃତିରୁ ବଞ୍ଚିବାର ରସଦସଂଗ୍ରହ ଯେମିତି ସଂଗ୍ରାମ, ବଞ୍ଚନା ପ୍ରତାରଣାରୁ ନିଜକୁ ମୁକ୍ତକରିବା ବି ସେଇଭଳି ସଂଗ୍ରାମ; ଏବଂ ସଂଗ୍ରାମ ମାନେ କ୍ଷମତାର ପ୍ରତିଯୋଗିତା । ଏ ପ୍ରତିଯୋଗିତା ଯଦି ବୁଦ୍ଧି କି ଜ୍ଞାନ ବଳରେ ଚାଲୁଥାନ୍ତା, ହାରିଗଲେ ବି କ୍ଷୋଭ ରହନ୍ତାନାହିଁ; ମାତ୍ର ଯୋଉ ସମାଜରେ ବଞ୍ଚୁଛୁଁ, ସେଥିରେ ତିଆରିକରାଯାଇଚି ଅଜସ୍ର ପ୍ରିଭିଲେଜ୍ । କରାଯାଇଚି ବୋଲି, ବୁଦ୍ଧି କି ଯୁକ୍ତିକୁ ପ୍ରୟୋଗକରାଯାଉଚି ଅନ୍ୟାୟ ଅତ୍ୟାଚାର ଇତ୍ୟାଦିକୁ ବୈଧ ପ୍ରତିପନ୍ନକରିବା କାମରେ । ଏପରିକି, ମିଶେଲ୍ ଫୁକୋ କହୁଛନ୍ତି: ଜେଲ୍‌ଖାନା ସ୍କୁଲ୍ ପାଗଳଗାରଦ ସେନାବାହିନୀ କି ଥାନା ପୁଲିସ୍, ପ୍ରକୃତରେ ଶୃଙ୍ଖଳାରକ୍ଷାପାଇଁ ତିଆରିହୋଇନାହିଁ; ଏମାନଙ୍କ କାମ କେବଳ ବଳାତ୍କାର (କ୍ଷମତାର ଅସମ ଲଢ଼ାଇ)କୁ ଯୁକ୍ତିଯୁକ୍ତ ପ୍ରତିଭାତକରିବା । ଏ ଲକ୍ଷଣଗୁଡ଼ାକ ଧନତାନ୍ତ୍ରିକ ସମାଜବ୍ୟବସ୍ଥାରେ ଏତେ ଉତ୍କଟ ଯେ ଅଗ୍ରଗତି ବା ପ୍ରୋଗ୍ରେସ୍ ଭଳି ପ୍ରତ୍ୟୟକୁ ବ୍ୟଙ୍ଗକରି କୁହାଯାଉଚି ମହାଆଖ୍ୟାନ, ଗ୍ରାଣ୍ଡ୍ ନ୍ୟାରେଟିଭ୍! ଗତି ଜାଗାରେ ମନସ୍ୱୀ ଦେଖୁଚନ୍ତି ସ୍ଥାଣୁତ୍ୱ । ଚତୁର୍ଦ୍ଦିଗରେ ଯଦି ଏତେ ରାଜନୀତି, ଶ୍ରେଣୀଗୃହଟା ଅନାକ୍ରମ୍ୟ ହୋଇ ରହିବ କେମିତି ?

ପରିବାର ଭଳି ଶ୍ରେଣୀଗୃହ ସିଭିଲ୍ ସୋସାଇଟିର ପ୍ରାଥମିକ ପ୍ରତିଷ୍ଠାନ, ମନେହେବା ସ୍ୱାଭାବିକ ଯେ ଚେତନା ଆସେ ଶିକ୍ଷାରୁ, ଏବଂ ଚେତନାରୁ ଆସେ ପରିବର୍ତ୍ତନ ଘଟାଇବା ସଂକଳ୍ପ; ଜୀବନଦର୍ଶନ ତିଆରିକରିବାକୁ ସାଜସରଞ୍ଜାମ । ହେଲେସୁଦ୍ଧା, ଶିକ୍ଷା କହିଲେ ରାଷ୍ଟ୍ର ଯା ବୁଝେ, ରାମକୃଷ୍ଣ ମିଶନ୍, କିମ୍ବା ଅଧିକାଂଶ ଅଭିଭାବକ ସେଇ ଅର୍ଥରେ ପାଠପଢ଼ା କାମଟାକୁ ବୁଝନ୍ତିନାହିଁ । ଚେତନା ତେବେ ହେବ କେମିତି ସମାର୍ଥବୋଧକ ? ଆଉ, ପରିବର୍ତ୍ତନକୁ ଯଦି କୁହାଯିବ ବିପ୍ଳବ, ପିଲାଙ୍କୁ କେହି ସ୍କୁଲ୍‌କୁ ପଠାଇବେନାହିଁ ! ଧାନଗହମ ବେଶି ଫଳାଇପାରିଲେ, କୁହାଯାଉଚି ସବୁଜବିପ୍ଳବ; ହାତରେ ନକରି କମ୍ପିଉଟରରେ କରିପାରିଲେ ତଥ୍ୟପ୍ରଯୁକ୍ତି ବିପ୍ଳବ; ଶାଢ଼ୀ ନପିନ୍ଧି ଜିନ୍‌ସ୍‌ପିନ୍ଧିଲେ ପୋଷାକବିପ୍ଳବ ! ଦରକାର ତେଣୁ ବିଚାରବିବେଚନା । ଯାବତୀୟ ପରିବର୍ତ୍ତନ ଅବଶ୍ୟ ବିପ୍ଳବ ପଦବାଚ୍ୟ ହୋଇପାରେନା; ଶିକ୍ଷା ମାନେ

ଅକ୍ଷର କି ସଂଖ୍ୟା ସାଙ୍ଗରେ ପରିଚୟ ନିଶ୍ଚୟ; ମାତ୍ର ସେଥିରେ ମଧ୍ୟ ଦରକାର ବିଚାର: ଯା ଶିଖିଲୁଁ, ଠିକ୍ ନା ଭୁଲ୍ ? ଠିକ୍‌ହେଲେ, କେତେଦୂର ଠିକ୍ ? କାହିଁକିନା, ଛପାଅକ୍ଷରରେ ଯା ପଢ଼ୁଁ, ବେଦବାକ୍ୟ ଭାବିବାକୁ ଶିଖାଯାଏ ସ୍କୁଲ୍‌କଲେଜ୍; ମାନେ 'ସତ୍ୟର' ଅଦ୍ୱିତୀୟ ସର୍ତ୍ତ ଛପାଅକ୍ଷର ! ସତ୍ୟକୁ ଅବଶ୍ୟ ଠାବ କରାଯାଇପାରେ ଦୁଇ ବାଟରେ: ତଥ୍ୟକୁ ତଉଲକରି, ପୁଣି ଯୁକ୍ତିର କଷଟିରେ ଘଷି । ଉଭୟ ଉପାୟ ଯୋଉଠି ଦୁର୍ଲଭ ନୁହେଁ, ତଥ୍ୟ ଆଉ ଯୁକ୍ତି ଯୋଡ଼ିହେବେ ଦ୍ୱାନ୍ଦ୍ୱିକତା ମେଳବନ୍ଧନରେ; ଆଉ, ତଥ୍ୟ ଯୋଉଠି ଅଲଭ୍ୟ, ଯୁକ୍ତି ଏକମାତ୍ର ଭରସା । କିନ୍ତୁ ଯୁକ୍ତି ବି ହୋଇପାରେ କୁଯୁକ୍ତି, ଇଂରେଜୀରେ 'ର୍‌ୟାସନାଲାଇଜେସନ୍'; ଅନେକ ଗର୍ହିତକଥାକୁ ଏବାଟରେ ସିଦ୍ଧକରାଯାଏ । ତଫାତ୍‌ଗୁଡ଼ାକୁ ତେଣୁ ଚିହ୍ନିବାକୁ ପଡ଼ିବ, ମାନେ, ଚିହ୍ନିଶିଖିବାକୁ ପଡ଼ିବ । ଏ ବିଚାରବୁଦ୍ଧି ଆୟତ୍ତହେଲେ ଶିକ୍ଷା ସାର୍ଥକ । କିନ୍ତୁ ଚେତନା ? ଆଖି କାନ ମନ ଖୋଲାରଖିଲେ ସମ୍ବେଦନ ମିଳେ; ସମ୍ବେଦନ (ସେନ୍‌ସେସନ୍) କିନ୍ତୁ ଚେତନାର ପ୍ରମାଣ ନୁହେଁ । ଦୈନନ୍ଦୀନ ଜୀବନରେ କେତେକଥା ଦେଖୁଁ, କେତେକଥା ଶୁଣୁଁ, ମନକୁ ନେଉନା । ବିଜ୍ଞାନରେ ଡକ୍ଟରେଟ୍ କିନ୍ତୁ ନାହାକକୁ ହାତଦେଖାଏ, ଗାଧୋଇ ଆସି ହନୁମାନ ଚାଳିଶା ପଢ଼େ । ତେଣୁ ଶିକ୍ଷା ଅଛି, ଚେତନା ହୋଇନାହିଁ । କାହିଁକିନା, ଶିକ୍ଷାକୁ ଯେମିତି, ଚେତନାକୁ ସେମିତି ଅର୍ଜନକରିବାକୁ ପଡ଼େ । ଅକ୍ଷର କି ଅଙ୍କ ଜାଣିଗଲେ ଯେମିତି ଜ୍ଞାନ ହୋଇଯାଏନା, କୋଉହେଲେ ବିଷୟରେ ଜ୍ଞାନ ଅର୍ଜନକଲେ ସେମିତି ଚେତନା ଛାଏଁ ଛାଏଁ ଆସିଯାଏନା । ସାପ ଆଉ ବାଡ଼ି ମଧ୍ୟସ୍ଥ ପାର୍ଥକ୍ୟ ବୁଝିପାରିବା ଯଦି 'ଶିକ୍ଷା' ହୁଏ, ବାଡ଼ି ଭାଙ୍ଗିଗଲେ ସୁଦ୍ଧା ସାପକୁ ମାରିବ କି ନାହିଁ - ସେ ବିବେଚନା 'ଚେତନା'; କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଠଉରାଇବାର ମାନସିକ ସାମର୍ଥ୍ୟ । ବାକିରହିଲା ପରିବର୍ତ୍ତନ । ପରିବର୍ତ୍ତନ ତ ପ୍ରାକୃତିକ ନିୟମ ! ଶିକ୍ଷା ଓ ଚେତନା, ଉଭୟ ସକାଶେ ତେଣୁ ପରିବର୍ତ୍ତନ 'ସତ୍ୟ' । କିନ୍ତୁ ଜ୍ଞାନ ଓ ଚେତନା ସମ୍ବଳିତ ମଣିଷ ଯୋଉ ପରିବର୍ତ୍ତନ କାମନାକରେ, ପ୍ରାକୃତିକ ପରିବର୍ତ୍ତନ ଭଳି ସ୍ୱୟଂଚାଳିତ ହୋଇପାରେନା । ଘଟାଇବାକୁ ପଡ଼େ । ଶ୍ରେଣୀଗୃହ ତା ପାଇଁ କାହାରିକୁ ପ୍ରସ୍ତୁତକରେନା, କରିପାରେନା । ବରଂ, ଯା ଯେମିତି ରହିଚି, ଯା ଯେମିତି ଚାଲିଛି, ନିର୍ବିଘ୍ନରେ କେମିତି କାଳକାଳ ଚାଲୁଥିବ କି ଅଟଳହୋଇ ରହିଥିବ, କୌଶଳଟି ଯତ୍ନକରି ଅଭ୍ୟାସକରାଏ ।

ତଥାପି କବି ଲେଖନ୍ତି, ଆରେ ଆରେ ବାୟାରଜା /ଡିବିଡିବି ଡମରୁ ବଜା / ନାଚିବି ମୁଁ ଲଙ୍ଗଳାହୋଇ /ତୁ ତାଳିମାରି ଦେଖିବୁ ମଜା /ଫଟକରେ ଅଟକ ରହି / ଗଲିଣି ମୁଁ ବେଦମ ହୋଇ /ଏଥର ମୁଁ ମାରିବି ଡିଆଁ /ଉଡ଼ାଇଦେଇ ମୁକ୍ତି ଧ୍ୱଜା । କିନ୍ତୁ

ଏ ତ ବ୍ୟକ୍ତିବିଶେଷର ସମସ୍ୟା, ଆଖିଖୋଲି ଅନାଇଲେ ଏଭଳି ଅନେକ ସମସ୍ୟା ଦୃଷ୍ଟିରେ ପଡ଼ିବ ଚତୁର୍ଦ୍ଦିଗରେ; ସେଥିରୁ ଗୋଟିଏଲେଖାଁ ବାଛିବାଛି ବେଳକୁବେଳ ସମାଧାନ କରିପାରିଲେ, କାମଟାକୁ କୁହାଯିବ ସଂସ୍କାରସାଧନ; ସବୁସମସ୍ୟାର ଆଦିମୂଳକୁ ଚିହ୍ନଟିକରି ଏକାଟାଣକେ ଉପାଡ଼ିପକାଇ ପାରିଲେ କୁହାଯିବ ବିପ୍ଳବ । ମାତ୍ର ବିବାକ ସମସ୍ୟାର ଚେରମୂଳକୁ ଚିହ୍ନଟକରି ଧରିପାରିବା ସହଜକାମ ନୁହେଁ ଜମାରୁ । ବାଟରେ ଅସୁମାରି ବିପଦଆପଦ । ବାଟହୁଡ଼ିବାର ଆଶଙ୍କା ରହିଚି, କାମଟା ପୁଣି କ୍ଷଣକିଆ କାମ ନୁହେଁ, ଦିନକରେ ବି ସରିବନାହିଁ। ଦରକାର ଦୀର୍ଘ କଷ୍ଟକର ପ୍ରସ୍ତୁତିପର୍ବ, ଯା ଶ୍ରେଣୀଗୃହରୁ ହିଁ ଆରମ୍ଭହେବା କଥା । ହେଉନାହିଁ ବୋଲି, ଖାଲ ଢିପ ଡେଇଁ ଯାଉଯାଉଁ ପିଲା ଝୁଣ୍ଟୁଚନ୍ତି ବାରମ୍ୱାର । କିନ୍ତୁ ସବୁପିଲାଙ୍କ ଭିତରେ ପରିବର୍ତ୍ତନର ଆକର୍ଷଣ ଏତେ ପ୍ରବଳ ଯେ ଦିନେ ନା ଦିନେ ଆଗପଛହୋଇ ଆସିବେ ସମସ୍ତେ। କିନ୍ତୁ ପରିବାର, ପରିବେଶ, ସ୍କୁଲ୍-କଲେଜ୍‌ରୁ ଯା ମିଳେ, ଏ କାମ ସକାଶେ ଯଥେଷ୍ଟ ନୁହେଁ । ଯଥେଷ୍ଟ ନୁହେଁ ବୋଲି, ଠିକି ଶିଖିବା ଛଡ଼ା ଉପାୟ ନାହିଁ । ଏ ଶିକ୍ଷାରେ ଭୁଲ୍ ଭ୍ରାନ୍ତି ଥାଇପାରେ, ମାତ୍ର କାମଟା ଯେହେତୁ ଦୁନିଆଟାକୁ ଭିନ୍ନରୂପରେ ଦେଖିବା, ଶିଖିବାକୁ ହେବ ପରସ୍ପର ପାଖରୁ, ଶିଖାଇବାକୁ ହେବ ପରସ୍ପରକୁ । ବିଷର୍ଣ୍ଣ କି ଅବସନ୍ନହେଲେ, ପ୍ରତିଷେଧକ ଏକମାତ୍ର ଚେତନା; ଯୋଉ ଚେତନା ଆସେ ବାସ୍ତବ ଅଭିଜ୍ଞତାରୁ । ବାସ୍ତବ ଅଭିଜ୍ଞତା ହିଁ ତିଆରିକରିପାରେ ବିଶ୍ୱାସ ଆଉ ଆତ୍ମବିଶ୍ୱାସ । ପ୍ରଚଳିତ ଶିକ୍ଷାବ୍ୟବସ୍ଥା ସେ ବାଟରେ ଯିବାକୁ ଉତ୍ସାହଦିଏନା; ଦେଇପାରେନା ଯେହେତୁ ତା ଏକ ନିୟନ୍ତ୍ରଣ ବନ୍ଦୋବସ୍ତ । ମୁଣ୍ଡିଆଳ, ସମାଜ ଆଉ ରାଷ୍ଟ୍ର । ସମାଜ ଚାହେଁନା, ପିଲା ହେବେ ରାଣ୍ଡିପୁଅ ଅନନ୍ତା; ରାଷ୍ଟ୍ର ଚାହେଁନା ଶିକ୍ଷିତ ଯୁବକଯୁବତୀ ହେବେ ରାଷ୍ଟ୍ରରୂପକ ଭାବାଦର୍ଶର ପ୍ରତିପକ୍ଷ । ଶିକ୍ଷାନୁଷ୍ଠାନକୁ ସମାଜ ଯୋଗାଇଦିଏ ଛାତ୍ରଛାତ୍ରୀ, ରାଷ୍ଟ୍ର ଦିଏ ଆର୍ଥିକ ସମ୍ୱଳ— ପ୍ରକ୍ରିୟା ଉତ୍ପନ୍ନକରେ 'ମାନବସମ୍ପଦ' । ଗୋଠଖଣ୍ଡିଆ 'ମାନବସମ୍ପଦ'ର ମର୍ଯ୍ୟାଦା ପାଏନା; ଉତ୍ପାଦନପ୍ରକ୍ରିୟାର ଉପଜାତ ହେଲେସୁଦ୍ଧା, ଗୋଠଖଣ୍ଡିଆ ବର୍ଜ୍ୟପଦାର୍ଥ । କାହିଁକିନା, ୧୯୪୭ରୁ ଯେତେ କମିଶନ୍ ବସିଚି, ରାଧାକୃଷ୍ଣନ୍-ମୁଦାଲିଅର୍-କୋଠାରି, ସମସ୍ତଙ୍କ ସୁପାରିଶ ଏକସ୍ୱରରେ କହିଚି, ସମାଜପରିବର୍ତ୍ତନର ଉପାୟ ଯେହେତୁ ଶିକ୍ଷା, ଶିକ୍ଷାକ୍ଷେତ୍ରରେ ବିପ୍ଳବ ଆସିବା ଅନିବାର୍ଯ୍ୟ; କିନ୍ତୁ ସମାଜ ହେଉ କି ରାଷ୍ଟ୍ର, ପରିବର୍ତ୍ତନର ଘଣ୍ଟି ବିଳେଇ ବେକରେ ବାନ୍ଧିବ କିଏ ? ଆଉ, ପଢ଼ାଶୁଣାରେ ଚଉକଷହୋଇ ଚାକିରିବାକିରି କରିପାରିଲେ (ଯଦି ଦୈବାତ୍ ମିଳିଯାଏ), ଶିକ୍ଷାର ଅସଲ ଉଦ୍ଦେଶ୍ୟ ବାସ୍ତବାୟିତ ହୁଏ କି ? ଦୁଇଟାଯାକ ପ୍ରଶ୍ନରୁ କୋଉଗୋଟାକର

ଉତ୍ତର ମହାମାନ୍ୟ କମିଶନ୍ ଦେଇପାରିନାହାଁନ୍ତି । ଏଇ ୫୦-୬୦ବର୍ଷ ଭିତରେ ଓଡ଼ିଶାରେ ଢ଼େର୍ ସ୍କୁଲ୍‌କଲେଜ୍ ଖୋଲିଚି, ଇଉନିଭରସିଟି ସଂଖ୍ୟା ବି ବଢ଼ିଚି, ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣହୋଇ ଅନେକ ଲୋକ ପର୍ବତପ୍ରମାଣ ଚାକିରି ବି ପାଇଚନ୍ତି; ମାତ୍ର ସମାଜପରିବର୍ତ୍ତନ କଥା ଭାବିନାହିଁ କେହି । ପର୍ବତ ପ୍ରସବକରିଚି କେବଳ କିଛି ମୂଷିକ । ଯୋଉ ଶିକ୍ଷା ଖାଲି ଗ୍ରାସାଚ୍ଛାଦନ ଯୋଗାଡ଼ର ଫିକର, ମଣିଷକୁ ନିଜ ବାହାରକୁ କି ଉପରକୁ ଉଠାଇନେବା ତା ପାଇଁ ତ ଅର୍ଜୁନର ବିଷାଦଭଙ୍ଗ ! ହେଲେ ସୁଦ୍ଧା, ସମାଜ କି ସଂସାର ମାନିବାକୁ କେବେ ଦ୍ୱିଧାକରିନାହିଁ ଯେ ଶିକ୍ଷା ମାନେ ଖାଲି ଉଦରପୋଷଣ ନୁହେଁ, ଉଦରପୋଷଣ ବାହାରେ ଆହୁରି କେତେକଥା ଜାଣିବା, ବୁଝିବା ଆଉ କରିବା ଦରକାର । ଦ୍ୱିତୀୟ ପ୍ରସ୍ତାବ କିନ୍ତୁ ପ୍ରଥମଟିକୁ ବେଶି ସାହାଯ୍ୟ କରୁନାହିଁ; ପ୍ରଥମଟି ବରଂ ଦ୍ୱିତୀୟ ସକାଶେ ତିଆରିକରିପାରେ ଚାହିଦା । ପ୍ରଥମଟିର ଅଭାବ ଏତେ ଅଧିକ ଯେ ଦ୍ୱିତୀୟପାଇଁ ଆଗ୍ରହ ମନେହେବ ବିଳାସିତା । କାରଣ ଅବଶ୍ୟ ଶିକ୍ଷାର ଦୋଷ ନୁହେଁ, ଦେଶର ଅର୍ଥନୀତିର ଧରଣ । ଯୋଉ ଶିକ୍ଷା କଲ୍ୟାଣରୁ ବୁଝିପାରୁଛୁଁ, ପ୍ରଥାଗତ ଶିକ୍ଷା ଲାଭକରିବା ସତ୍ତ୍ୱେ ଉଦରପୋଷଣର ଅନ୍ତରାୟ ହେଉଚି ରାଷ୍ଟ୍ରର ଅର୍ଥନୀତି, ସେ ଶିକ୍ଷାକୁ ବରଂ ବ୍ୟବହାରକରିବା ଦରକାର ଅମାନବିକ ଅର୍ଥନୀତିର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍‌କୁ ଧ୍ୱଂସକରିଦେବା କାମରେ । କେବେ କାମଧନ୍ଦା ମିଳିବ, ଆଉ ମିଳିଲେଯାଇ ସମ୍ମୁଖୀନହେବି ଜୀବନକୁ— ବସିବସି ଭାଳୁଥିଲେ, ଦୁଇଟାରୁ ଗୋଟାଏ ବି ସମ୍ଭବହେବନାହିଁ, କାହିଁକିନା ପରୀକ୍ଷାରେ କେମିତି ବେଶି ନମ୍ବର ମିଳିବ, ମିଳିଲେ ଚାକିରିର ସାଇଜ୍ କେତେବଡ଼ ହେବ, ସାଇଜ୍ ବଡ଼ ହେଲେ କୋଉଭଳି ଝିଅକୁ ବାହାହେବି, ଚାକିରିକୁ ଦେଖି ତା ବାପ କି ରକମ ଯୌତୁକ ହେବ, ଜମିଖଣ୍ଡେ ଦେବ କି ନାହିଁ, ଦେଲେ ତା ଉପରେ କେତେବଡ଼ ଘର ତୋଳିବି—ପାଣିରେ ଚିନି ଭଳି, ଏଇ ବିବେଚନା ପ୍ରଚଳିତ ଶିକ୍ଷା ସାଙ୍ଗରେ ମିଶିରହିଚି । ରହିଚି ବୋଲି, ସମାଜ ପରିବର୍ତ୍ତନ କାମରେ ସେ ବିଦ୍ୟାକୁ ଲଗାଇବା ମସ୍ତବଡ଼ ମୂର୍ଖତା । ରାଷ୍ଟ୍ରର କୃପା ଆଉ ସମାଜର ସଦିଚ୍ଛା ସେ ଶିକ୍ଷାର ଭିତ୍ତିଭୂମି, ପ୍ରଭୁକୁ ତେଣୁ ଆହ୍ୱାନଜଣାଇବା ସମ୍ଭବ ହୁଏନା । ସାକ୍ଷର କରିଦିଏ, ବିଜ୍ଞାନ ବି ଶିଖାଇଦିଏ, ଏପରିକି ଉଚ୍ଚାଙ୍ଗ ଗଣିତ, ଧନବିଦ୍ୟା ଆଉ ଇତିହାସ; ମାତ୍ର ପରିବର୍ତ୍ତନକାମୀ ମାନସିକତା କି ବିଦ୍ରୋହର ଚେତନା ତିଆରିକରିବା ତା କ୍ଷମତାର ଅତିରିକ୍ତ । ସେ ଚେତନା ତିଆରିହୁଏ ଯେତେବେଳେ, ହୁଏ ପାଠ୍ୟକ୍ରମ ବାହାରେ; ବହିପତ୍ର ପଢ଼ାପଢ଼ିକରି ଦଶଜଣଙ୍କ ସାଙ୍ଗରେ ଏକାଠି ବସାଉଠାକରି, ଜୀବନର ଚଳମାନ ଅଭିଜ୍ଞତାକୁ କଞ୍ଚାମାଲ ଭଳି କାମରେଲଗାଇ ଚଳମାନ ମସ୍ତିଷ୍କ ଗଢ଼ିଦିଏ ପରିବର୍ତ୍ତନକାମୀ ମାନସ । ଶିକ୍ଷାଟା ତେଣୁ ଖାଲି ପ୍ରଥାବହିର୍ଭୂତ

ନୁହେଁ, ପ୍ରଥାର ପ୍ରତିପକ୍ଷ । ପ୍ରତିପକ୍ଷ, ପ୍ରତିରୋଧ ସମ୍ମୁଖୀନହେବା ସ୍ୱାଭାବିକ; ମାତ୍ର ବହୁ ସହସ୍ରବର୍ଷ ପ୍ରତିରୋଧ ସତ୍ତ୍ୱେ, ସମାଜ କି ରାଷ୍ଟ୍ର, ବାଟ ଓଗାଳିପାରିନାହିଁ । ଇତିହାସଗତିରେ ଅର୍ଜିତ ଅଭିଜ୍ଞତା ଅଭିଯାତ୍ରୀ ସକାଶେ ହୋଇଛି ଏକାଧାରରେ ପାଥେୟ ଓ ସଂଚୟ । ପ୍ରଚଳିତ ଶିକ୍ଷା ଏଭଳି ଅଭିଯାତ୍ରୀକୁ ଉଦ୍‌ବୁଦ୍ଧ କରିବ କେମିତି ? ମୂଳତଃ ତା ବୃତ୍ତିଶିକ୍ଷା; ପୁରସ୍କାର-ତିରସ୍କାର ଉପରେ ନିର୍ମିତ ଯୋଗ୍ୟତାବିଚାର। ସେ ପରୀକ୍ଷାରେ ପାସ୍‌କରିଗଲେ ମଧ୍ୟ ସାଫଲ୍ୟରେ ରହିଚି ସ୍ତରଭେଦ, କାହିଁକିନା, ବୃତ୍ତିର ସମବଣ୍ଟନ ଅନ୍ୟଥା ସମ୍ଭବନୁହେଁ । ମାନେ, ଯିଏ ପାସ୍‌କରିଗଲେ, ତାଙ୍କୁ ଝଡ଼ାବଛା ନକଲେ ଆଗ-ପଛ ଉପର-ତଳ ଜଣାପଡ଼ିବ ନାହିଁ । ସେଇ ଝଡ଼ାବଛାର ପରିଣାମ ନିର୍ଦ୍ଧାରଣକରେ ସାମାଜିକ ମର୍ଯ୍ୟାଦା, ଅର୍ଥାତ୍ ଆତ୍ମପ୍ରତିଷ୍ଠା । ସେ ଶିକ୍ଷା ତେଣୁ ସ୍ୱୟଂସଂପୂର୍ଣ୍ଣ କୋଉ ଉଦ୍ଦେଶ୍ୟ ନୁହେଁ, ଉପାୟ ମାତ୍ର । ଅଥଚ ସେଇ ଉପାୟକୁ ହାତରେ ପାଇବାକୁ ସହଜାତ ମେଧା ଯଥେଷ୍ଟ ନୁହେଁ; ଦରକାର ଆର୍ଥିକ ସଂଗତି, କ୍ୟାରିଅର୍ ପ୍ଲାନିଙ୍ଗ୍, ଇଂରେଜୀଭାଷାରେ ଦକ୍ଷତା, କମ୍ପିଉଟର୍ ବ୍ୟବହାରରେ ଅଭିଜ୍ଞତା, ସପ୍ରତିଭ ଆଦବକାୟଦା, ଇତ୍ୟାଦି । ଭାରତ ଭଳି ଅଭାବୀ ଜାଗାରେ ଯୋଗାଡ଼କରିପାରିବେ ମୁଷ୍ଟିମେୟ ପିଲା; ସେଥିପାଇଁ ହୁଏତ ଗରିବଘରୁ ଶ୍ରୀନିବାସ ରାମାନୁଜନ୍ କି ମେଘନାଦ ସାହା ଆଉ ବାହାରୁନାହାଁନ୍ତି । ପ୍ରତିଯୋଗିତାର ଅଣନିଶ୍ୱାସୀ ଚାପ ବି ସମସ୍ତଙ୍କ ଦିହରେ ଯିବା କଥାନୁହେଁ; ସୁଯୋଗ-ସୁବିଧା, ସଂଗତି-ସ୍ୱାଚ୍ଛନ୍ଦ୍ୟ ଯାହାର ଅଛି, ଅନ୍ୟମାନଙ୍କୁ ପଛରେ ପକାଇ ଆଗକୁ ମାଡ଼ିଯିବ । ମଫସଲପିଲା ଆଉ ସହରପିଲାଙ୍କ ଭିତରେ ତେଣୁ ବିସ୍ତର ତଫାତ୍ । ମଫସଲ ପିଲାଙ୍କ ପଛରେ ଅଧିକ ଖର୍ଚ୍ଚକଲେ କଣ ପ୍ରତିଯୋଗିତାରେ ଆଗକୁ ଯାଇପାରନ୍ତେ ? ତାହେଲେ ସବୁଠୁଁ ଧନୀଦେଶ ଆମେରିକା କାହିଁକି ପୃଥିବୀସାରା ଖୋଜିବୁଲୁଚି ଉପଯୁକ୍ତ ପିଲାଙ୍କୁ ପାଇବ କୋଉଠୁ ? ତାଙ୍କ ନିଜ ପିଲାଗୁଡ଼ାକ ଅଗାଡ଼ି ! ବ୍ୟାପକ ସ୍ୱାର୍ଥପରତା, ଚୂଡ଼ାନ୍ତ ଆତ୍ମକେନ୍ଦ୍ରିକତା । ଆମେରିକା ନହେଲେ ପୁଞ୍ଜିବାଦୀ ଦେଶ, ସୋଭିଏଟ୍ ଋଷିଆରେ ହେଲା କଣ ? ଛପନ ମସିହାରୁ ଢେର୍ ଅଦଳବଦଳ ଘଟିଚି; ଶିକ୍ଷାବ୍ୟବସ୍ଥା ରହିଚି କିନ୍ତୁ ଅନାହତ, ଆଉ ଦେଶର ଗର୍ବ; ଶତ୍ରୁ ବି ଦେଖିଆସି ପ୍ରଶଂସାକରିଛନ୍ତି । ଗଣିତ, ବିଜ୍ଞାନ ଆଉ କାରିଗରି ବିଦ୍ୟାରେ ପିଲାଙ୍କ ପ୍ରବେଶ ଦେଇ ମୁଗ୍ଧ ହୋଇଚନ୍ତି ବିଦେଶୀ ଗୁଣୀଜନ । ସମାଜଜୀବନରେ ସେ ବିଦ୍ୟା କିନ୍ତୁ କୋଉହେଲେ ସଦ୍‌ଗୁଣକୁ ଜନ୍ମଦେଇନାହିଁ। ବର୍ଣ୍ଣମୟ ବିଚିତ୍ର ଭୋଗବାଦର ଡାକଶୁଣିବାକୁ ସତେଯେମିତି ଉତ୍‌କର୍ଣ୍ଣହୋଇ ରହିଥିଲା ଋଷିଆର ଯୁବସମାଜ । ଗୋଆ ସମୁଦ୍ରସୈକତରେ ଅର୍ଦ୍ଧନଗ୍ନ ନିଶାଗ୍ରସ୍ତ ଏଇ ଯୁବତୀଯୁବକଙ୍କୁ ଦେଖିଲେ କିଏ କହିବ ସମାଜବାଦରେ ପାଇଛନ୍ତି

ଦୀର୍ଘ ତାଲିମ୍? ଏଗୁଡ଼ାକୁ ଦେଖି ମନେହେଉଚି, କଲୋନିଆଲ୍ ହେଲେ ବି, 'ଶିକ୍ଷା' ଜିନିଷଟାକୁ ବୁଝିଛୁଁ ସନ୍ଦର୍ଭରେ, କାହିଁକିନା, ପ୍ରଥାଗତ ଶିକ୍ଷାର ରହିଛି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ: ବିଶେଷ କୋଉ ବିଷୟରେ ବଢ଼ାଇଦେବ ଜ୍ଞାନ ଆଉ ଦକ୍ଷତା; କିଏ ଡାକ୍ତର୍ ଏଞ୍ଜିନିୟର୍ ହେବ ତ ଆଉକେହି ପ୍ରଶାସକ-ସାମ୍ବାଦିକ-ଅଧ୍ୟାପକ ହେବ; କିଛି ନପାରିଲେ କିରାଣୀ । ଏସବୁ ବାହାରେ ମଧ୍ୟ ଅନେକ ରକମ ପେସା ଥିଲା ଆଉ ରହିଚି। ଏକେବାରେ ନିରକ୍ଷର ବି କରିପାରିବ ମାତ୍ର ସେକାମରେ ଦକ୍ଷହେବାକୁ ଲାଗେ ଅଲଗା ରକମ ଶିକ୍ଷା । ସେଠି ମଧ୍ୟ ବଢ଼େଇ, କମାର, କୁମ୍ଭାର, ସେମିନ୍‌ମ୍ୟାନ୍, ମେକାନିକ୍, ପ୍ଲମ୍ବର୍, ଇଲେକ୍ଟ୍ରିସିଆନ୍, ରାଜମିସ୍ତ୍ରୀ, ଭଳି କର୍ମୀଙ୍କ ଭିତରେ ଦକ୍ଷ-ଅଦକ୍ଷ ସ୍ତରଭେଦ ଅଛି; ମାତ୍ର ପ୍ରଥାଗତ ଶିକ୍ଷାବ୍ୟବସ୍ଥାରେ ଜାଗାନାହିଁ । ସମ୍ଭବତଃ ମୂଳରୁ ଧରିନିଆଯାଇଚି, ଶିକ୍ଷା ଖାଲି ସ୍କୁଲ-କଲେଜ୍ ଦିଏନା, ସାରା ସମାଜ ମଣିଷର ଶିକ୍ଷାକ୍ଷେତ୍ର; ଯେପରି, ଆଚାର-ଆଚରଣ ସଭ୍ୟତାଭବ୍ୟତା କି ସଣ୍ଢଣା ପୁଅଝିଅ ଶିଖନ୍ତି ପରିବାର ଭିତରେ । ଭଲ-ମନ୍ଦ, ଉଚିତ-ଅନୁଚିତ, ନ୍ୟାୟ-ଅନ୍ୟାୟ ବୋଧଗୁଡ଼ାକ ଆସେ ଆପଣା ଅଣୁବିଶ୍ୱରୁ । ସବାଉପରେ ଅବଶ୍ୟ ରାଷ୍ଟ୍ର; ମାନେ, ରାଜନୀତି, ଅର୍ଥନୀତି, ଆଇନ୍-ଶୃଙ୍ଖଳା । ତା ଛୁଆଁ ତ ଦେହରେ ଲାଗୁଚି ପ୍ରତି ମୁହୂର୍ତ୍ତରେ । ଏକାସାଙ୍ଗରେ ଶିକ୍ଷା ଦେଇଦେଇ ତିଆରିକରୁଛନ୍ତି ନାଗରିକ ଏବଂ ସେଇ ସୂତ୍ରରେ, ସରବରାହହେଉଚି 'ଆପେ ବଞ୍ଚିଲେ ବାପର ନାଁ' ଭଳି ଜୀବନଦର୍ଶନ, 'ହେଡ଼ାଖିଆ ପଠାଣ' ଭଳି ବିଦ୍ୱେଷ, ବ୍ରାହ୍ମଣ 'ଛତିଶ ପାଟକର ରଜା' ଭଳି ପ୍ରୌଢ଼ି, ଭକ୍ଷ୍ୟ-ଅଭକ୍ଷ୍ୟ ସ୍ପୃଶ୍ୟ-ଅସ୍ପୃଶ୍ୟ ଭଳି ଘୃଣା, ସଂପର୍କରେ ଦୂରତ୍ୱ ଆଉ ନିକଟତ୍ୱର ଆପେକ୍ଷିକତା - ଏଗୁଡ଼ାକର ମିଳିତଶକ୍ତି ପ୍ରଥାଗତ ଶିକ୍ଷାଠାରୁ ଅନେକ ବେଶି ଦୃଢ଼ ଓ ସଂଚରଣକ୍ଷମ । ଏଇ ଜାଗାଟିରେ ପ୍ରଥାଗତ ଶିକ୍ଷା ବଡ଼ ଅସହାୟ । ଅସହାୟ ବୋଲି, ସମାଜ ବିଚାରରେ ପୁଥି-ବାଇଗଣ ବାଡ଼ି-ବାଇଗଣ ପାଖରେ ଅଧମ । ଏ ବିଚାର ତତ୍ତ୍ୱ ଓ ପ୍ରୟୋଗ ମଧ୍ୟସ୍ଥ ଦୂରତ୍ୱକୁ ସ୍ୱୀକୃତି କେବଳ ନୁହେଁ, ପ୍ରୟୋଗ ଯେ ଶିକ୍ଷାଠାରୁ ବେଶି ବଳବାନ୍, ଏଇ ସତ୍ୟକୁ ଅନୁମୋଦନ । କାହିଁକିନା, ଶଲ୍ୟଚିକିତ୍ସାବିଦ୍ ଡାକ୍ତର୍ ଛୁରୀଧରିବା ମାତ୍ରକେ ଇଷ୍ଟ ଜପକରିବ; ଭୂତତ୍ତ୍ୱ ପଢ଼ାଉଥିବା ଅଧ୍ୟାପକର ପାଞ୍ଚଆଙ୍ଗୁଳିରେ ପାଞ୍ଚରକମ ଗ୍ରହରତ୍ନ; ଜୁଲଜି ପଢ଼ାଉଚନ୍ତି ଯୋଉ ମହିଳା, ଝିଟିପିଟି ଚିଁଚିଁକଲେ କହିବେ 'ସତ୍-ସତ୍'; ତେଣୁ ପୁଥିବାଇଗଣ ସର୍ବତ୍ର; ବାଡ଼ିବାଇଗଣ ତ ବାଡ଼ିରେ ଅଛି, ତୋଳିଆଣିଲେ ରନ୍ଧାହେବ ! କିନ୍ତୁ ବାଇଗଣ ତ ଭୋଗ୍ୟପଣ୍ୟ, ପୁଥିଟାକୁ ତା ସାଙ୍ଗରେ ଉପମାଦେବା ମାନେ ପୁଥି କଣ କୋଉ ପଣ୍ୟଦ୍ରବ୍ୟ ? ଏ ଶିକ୍ଷା ବି ଆସିଚି ପ୍ରଚଳିତ ଶିକ୍ଷାବ୍ୟବସ୍ଥାରୁ; 'ଶିକ୍ଷା' ଗୋଟାଏ କିଣା-ବିକା ଜିନିଷ ! ଆଉକଣ ଦେଇପାରେ ଏ

ଶିକ୍ଷା ? ବିଶେଷ କୋଉ ପାଠକୁ ବାଟି ପିଆଇଦେବା ସଙ୍ଗେସଙ୍ଗେ ସେବନକାରୀକୁ କରିଦେଇପାରେ ବାଧ୍ୟ ନାଗରିକ, ବଶମ୍ବଦ ଭୋଟର୍ । ସେ ଶିକ୍ଷାକୁ ଆତ୍ମସ୍ଥକରିସୁଦ୍ଧା ଲୋକ ଯଦି ଗୁଣ୍ଡା ଦଗାବାଜ ଲାଞ୍ଚୁଆ ନହୁଏ, ହେବନାହିଁ କେବଳ ପରିବେଶ ଗୁଣରୁ, ବ୍ୟକ୍ତିଗତ ବିଶ୍ୱାସରୁ । ସେଥିପାଇଁ, ମଦୁଆ ଡାକ୍ତର୍, ରିସ୍‌ପତ୍‌ଖୋର୍ ହାକିମ୍, ଟିଉସନ୍‌ବାଜ ମାଷ୍ଟର୍ କି ଲମ୍ପଟ ମନ୍ତ୍ରୀକୁ ଦେଖିଲେ ସରଳ ଗ୍ରାମବାସୀ ତାଟକାହୁଅନ୍ତି: ଏତେ ପାଠଶାଠ ପଢ଼ି ଶଳାଟାର ଏ ଫେର୍ କି ବେଭାର ! ମାତ୍ର ଶିକ୍ଷା କଣ ଶିଖାଇଚି ଋଚିତ୍ରଗତ ସ୍ଖଳନ ? ଏ ତ ପରିବେଶ-ପରିଜନଙ୍କ ଏକାନ୍ତ ଅବଦାନ; ଅବଶ୍ୟ ଶିକ୍ଷା ବି ସେଇ ପରିବେଶର ଅଂଶବିଶେଷ । ମାତ୍ର ପ୍ରଥାଗତ ଶିକ୍ଷା ସେଇ ପରିଜନ-ପରିବେଶକୁ ବଳିପଡ଼ିବା ଭଳି ଶକ୍ତି ଅର୍ଜନକରିନାହିଁ କି କରିପାରିବ ନାହିଁ । ପ୍ରଚଳିତ ଶିକ୍ଷାକୁ ତେଣୁ ଉପେକ୍ଷାକରିବା ପ୍ରଶ୍ନ ଉଠୁନାହିଁ, ସବୁରକମ ସମାଜରେ ଥିଲା ଆଉ ରହିଚି; ତାଆରି ବାଟଦେଇ ସମସ୍ତଙ୍କୁ ଚାଲିବାକୁ ପଡ଼ିବ, କାହିଁକିନା, ତାକୁ ଛାଡ଼ି ରୁଟି-ରୁଜି ଯୋଗାଡ଼କରିବା ପ୍ରାୟ ଅସମ୍ଭବ । ସୀମିତ ସେଇ ଉଦ୍ଦେଶ୍ୟ ପାଖରୁ ବେଶିକିଛି ଦାବିକଲେ, ଦେଇପାରିବନାହିଁ । କଥାଟାକୁ ଭୁଲିଯାଇଛୁଁ ବୋଲି, ସମାଜ-ମାନସରେ ଗଢ଼ିଉଠିଚି ଏକ ଉଦ୍‌ଭଟ ସମୀକରଣ: 'ଶିକ୍ଷା'= ପ୍ରଚଳିତ ପ୍ରଥାଗତ ଶିକ୍ଷା । ମାନେ, ପୁଅଝିଅଙ୍କୁ ନେଇ ସ୍କୁଲ୍‌ରେ କୌଣସିମତେ ଭର୍ତ୍ତିକରିଦେଇ ପାରିଲେ ବାପା-ମା ଖଲାସ । ତେଣିକି ଯଦି ପିଲା ବିଗିଡ଼ିଯାଏ, ମାଷ୍ଟର୍-ମାଷ୍ଟରାଣୀ ଶତକଡ଼ା ଶହେ ଦାୟୀ । ଏତେଗୁଡ଼ା ଦରମା ନେଉଛନ୍ତି ନହେଲେ କାହିଁକି ? କିୟତ୍ ବତ୍ସର ଅନ୍ତେ, ଏଇ ଯନ୍ତାରୁ ଯୋଉ 'ସଫଳ ମାନବ' ବାହାରିଆସେ, ଇଂରେଜୀରେ କୁହାଯାଏ ସ୍ନବ୍ ବା ଦାମ୍ଭିକ । ତା ଦୃଷ୍ଟିରେ, ଯାର ଡିଗ୍ରୀ ନାହିଁ ସିଏ ଗଣ୍ଡମୂର୍ଖ; ଅର୍ଥାତ୍, ସମବୟସୀ କୋଉହେଲେ ପିଲା, ବାପର ଟଙ୍କାନାହିଁ ବୋଲି ଯିଏ ବେଶି ପଢ଼ିପାରିନାହିଁ, ତାହାରି ବିଶେଷଣ ଆଉ, ଆପଣା ଅର୍ଜିତ ଡିଗ୍ରୀ ଇତ୍ୟାଦି ଯଦି ମନମାଫିକ୍ ଟଙ୍କା ଆଣିନପାରେ, ତେବେ ତନ୍ତ୍ରମାର୍ଗରେ ଲକ୍ଷ୍ମୀଉପାସନା !

ତଥାପି, ପ୍ରଚଳିତ ଶିକ୍ଷାବ୍ୟବସ୍ଥା ଭିତରେ ବି ରହିଚି ପ୍ରଥାବିରୋଧୀ ବ୍ୟତିକ୍ରମ; ଯେମିତି ଫକୀରମୋହନ ବାଲେଶ୍ୱର ସହରରେ ବସାଇଚନ୍ତି ଝିଅମାନଙ୍କ ପାଇଁ ବିଦ୍ୟାଳୟ, ଅବଶ୍ୟ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଅନୁକରଣରେ । ଊନବିଂଶ ଶତକ ମଝାମଝି ବିଦ୍ୟାସାଗର କହିଲେ, ଝିଅ ଏଣିକି ପାଠ ପଢ଼ିବେ; ସ୍କୁଲ୍ ଖୋଲିଲେ । ଏକେବାରେ ପ୍ରାଥମିକ ଅବସ୍ଥା: ଅ-ଆ କ-ଖ, ମିଶାଣ-ଫେଡ଼ାଣ-ଗୁଣନ-ହରଣ । ସେତିକି ବି ଦେହରେ ଗଲାନାହିଁ ଲୋକଙ୍କର; ପ୍ରଚାରକଲେ, ପାଠପଢ଼ିଲେ ଅକାଳରେ ବିଧବା ହେବେ । ଲୋକଗୁଡ଼ାକ ନିଜେ କିନ୍ତୁ ଶିକ୍ଷିତ । ବିଦ୍ୟାସାଗର ତ ଝିଅମାନଙ୍କ

ଅଭିଭାବକଙ୍କୁ *ମହାନିର୍ବାଣତନ୍ତ୍ର* ଦେଖାଇସାରିଥିଲେ; ଲେଖାଅଛି ପୁଅକୁ ଯେମିତି ଝିଅକୁ ସେମିତି ଆଦରରେ ପାଳିବ, ଯତ୍ନକରି ଶିକ୍ଷାଦେବ । ବୈଧବ୍ୟ ସାଙ୍ଗରେ ପାଠପଢ଼ାର ଯେ ସାମାନ୍ୟତମ ସଂପର୍କନାହିଁ, ଜାଣିଶୁଣି ଲୋକ ଗୁଜବ ପ୍ରଚାରକଲେ କାହିଁକି ? ଲୋକାଚାର ଭାଙ୍ଗିବାକୁ ସାହସ ଅଭାବ । ଫକୀରମୋହନଙ୍କୁ କିନ୍ତୁ ବାଲେଶ୍ୱର ଜମିଦାର କହିଥିଲେ, ପାଠପଢ଼ିଲେ ଝିଅ ପ୍ରେମିକକୁ ଚିଠିଲେଖିବେ। ପାଇଲେ କୋଉଠୁ ସାହସ ଈଶ୍ୱରଚନ୍ଦ୍ର ? *ମହାନିର୍ବାଣତନ୍ତ୍ର* କଣ ଏକେଲା ପଢ଼ିଥିଲେ ? ଶାସ୍ତ୍ର ତେଣୁ ଉପଲକ୍ଷ୍ୟ ମାତ୍ର । ଜୀବନର ଅଭିଜ୍ଞତାରୁ ବୁଝିଥିଲେ, ନିଜ ଭାଗ୍ୟଡୋରି ନିଜ ହାତରେ ଝିଅ ଯଦି ନରଖିବେ, କୋଉହେଲେ ସାମାଜସଂସ୍କାର ଟେରମଡ଼ାଇ ପାରିବନାହିଁ । ପ୍ରଥାଗତ ଶିକ୍ଷାରୁ ଏଇ ବୋଧ ଜନ୍ମନେଇନାହିଁ । ସଂସ୍କୃତକଲେଜ୍‌ରେ ପଢ଼ାହେଉଥିବା ଅଳଙ୍କାର-ବ୍ୟାକରଣ-ଦର୍ଶନ-ନିରୁକ୍ତରୁ ଏ ବୋଧ ଉଠିଆସିନାହିଁ । ନିରାଳମ୍ବ ବ୍ୟକ୍ତିଗତ ଉପଲବ୍ଧି । ପ୍ରଥାବିରୋଧୀ ଚିନ୍ତାଜଗତରୁ ପାଇଥିଲେ ପ୍ରଥାବିରୋଧୀ କର୍ମଧାରା । ସେ ଜଗତର ପାଠ୍ୟକ୍ରମ ନାହିଁ କି ପାଠ୍ୟପୁସ୍ତକ ନାହିଁ; କି ପ୍ରତିଷ୍ଠାନ ନୁହେଁ ଯେ ଡିଗ୍ରି-ଡିପ୍ଲୋମା ଦେଇପାରିବ । ପ୍ରଥାବିରୋଧୀ ଚିନ୍ତାର ବ୍ୟାବହାରିକ ମୂଲ୍ୟ ମଧ କଡ଼ାକର ନୁହେଁ; ଚାକିରିରେ ପ୍ରମୋସନ୍ ଦେଇପାରେନା, ବିବାହରେ ଯୌତୁକ ଆଣିପାରେନା, ସମାଜରେ ବି ସମ୍ମାନ ବଢ଼ାଏନା; ଯୁଆଡ଼କୁ ଚାହିଁଲେ, ଖାଲି ନାହିଁ ନାହିଁ ନାହିଁ । ଅର୍ଥାତ୍, ଗତାନୁଗତିକ ଜୀବନ ଯାହାକୁ ଚିଟାଲାଗେ, ଚାରିପଟର ଚଳମାନ ଜୀବନ ପ୍ରତି ଯାର ସଜାଗ କୌତୂହଳ, ସାମାଜିକ ଦମନ / ରାଜନୀତିକ ପୀଡ଼ନ /ଅର୍ଥନୀତିକ ଶୋଷଣ, ଯାହାକୁ ଉତ୍ତେଜିତକରେ, ଅବିଚାର ଅନାଚାର କାହିଁକି ଘଟେ, ଜାଣିବାକୁ ଉତ୍ସୁକହେବ ନିଶ୍ଚୟ । ଜ୍ଞାନଅନ୍ୱେଷଣ ସେଠି ଉଦ୍ଦେଶ୍ୟ ନୁହେଁ; ଦଶଜଣଙ୍କ ଭିତରେ ନିଜକୁ ଜଣେ ବୋଲି ଭାବିବାକୁ, ଅନ୍ୟର ସୁଖଦୁଃଖ ସାଙ୍ଗରେ ଆପଣା ସୁଖଦୁଃଖକୁ ଯୋଡ଼ିବାକୁ ପ୍ରେରିତକରେ ଯୋଉ ଶିକ୍ଷା, ସେଇ କେବଳ ଟାଣିନେଇଯାଏ ପରପାଇଁ କିଛିକରିପାରିବା ଉତ୍କଣ୍ଠା ଆଡ଼କୁ । ଶିକ୍ଷକ ସେ ଶିକ୍ଷା ଦେଇପାରେନା; ଯିଏ ଟାଣିହୋଇ ଯାଏ, ସେହି ଶିକ୍ଷକ, ସେହି ପୁଣି ଛାତ୍ର । ଆର୍ଥାତ୍, ସୁଶିକ୍ଷିତ । ସୁଶିକ୍ଷିତ ଲୋକ ମାତ୍ରକେ ସ୍ୱଶିକ୍ଷିତ । ମାତ୍ର ଯୋଉ ପରିବେଶରେ ଆମ ଜୀବନନିର୍ବାହ, ପରିବାର, ସମାଜ, ରାଷ୍ଟ୍ର, କେହିହେଲେ ପରର ଭଲମନ୍ଦ ସାଙ୍ଗରେ ନିଜ ଭଲମନ୍ଦକୁ ଯୋଡ଼ିବାକୁ କହେନା, କାହିଁକିନା, ସେମାନଙ୍କ ସ୍ୱାର୍ଥରେ ଆଞ୍ଚଲାଗେ । ପ୍ରଥାବିରୋଧୀ ଶିକ୍ଷା ତେଣୁ ଏଇ ତିନିଶକ୍ତିଙ୍କ କବଳରୁ କାଢ଼ିଆଣିପାରେ । ତିନିଶକ୍ତିଙ୍କ ସାଙ୍ଗରେ ତେବେ ଶିକ୍ଷାର ବିରୋଧଘଟିବ ନିଶ୍ଚୟ । ଜୀବନ ବାହାରକୁ ଯେମିତି ଦିଶେ, ଅସଲ ଚେହେରା ଅଧିକାଂଶ କ୍ଷେତ୍ରରେ ବିଲ୍‌କୁଲ୍

ଅଲଗା; ଯେପରି, ଧାର୍ମିକ ହେଲେ ଲୋକ ସତ୍ୟବାଦୀ ହୁଏନା, ବିଜ୍ଞାନୀ ହେଲେ କୁସଂସ୍କାର ଯାଏନା, ଓଷାବ୍ରତ କଲେ ସ୍ତ୍ରୀଲୋକ ଦୟାଳୁ ହୁଏନା । ପ୍ରଚଳିତ ଶିକ୍ଷା କେବଳ ବାହାରର ଚେହେରାଟାକୁ ଦେଖିବାକୁ ଶିଖାଏ; ପ୍ରଥାବିରୋଧୀ ଶିକ୍ଷା କିନ୍ତୁ ଚିହ୍ନାଇଦିଏ ଅସଲ ସ୍ୱରୂପ । ପ୍ରଚଳିତ ଶିକ୍ଷା ପଛରେ ରହିଛି ତେଣୁ ସମାଜ-ସଂସାର ଓ ରାଷ୍ଟ୍ରର ସମର୍ଥନ । ପ୍ରଥାବିରୋଧୀ ଶିକ୍ଷା ଯେହେତୁ ଛଦ୍ମବେଶ ଖୋଲିଦେଇ ଦେଖେ ଆଉ ଦେଖାଏ, ଦାବିକରେ ବିଦାରଣ । ଦର୍ଶନବିଦ୍ୟାର ପରିଭାଷାରେ ରପ୍‌ଚର୍, କାହିଁକିନା, ସତ୍ୟସଂଧାନ ମାତ୍ରକେ ବିଦ୍ରୋହ । ପ୍ରଚଳିତ ଶିକ୍ଷାର ଏକମାତ୍ର ଲକ୍ଷ୍ୟ ଛାତ୍ରକୁ ସୁଶୀଳ, ସୁଉପାୟୀ, ସତର୍କ ନାଗରିକରେ ପରିଣତକରିବା; ଅଥଚ ପ୍ରତିବାଦୀ ଶିକ୍ଷାବ୍ୟବସ୍ଥାରେ ଛାତ୍ର ହୁଏ ପ୍ରଶ୍ନମୁଖର, ପରିବର୍ତ୍ତନକାମୀ, ବିଦ୍ରୋହୀ । ତଥାପି ପ୍ରଚଳିତ ଶିକ୍ଷାକୁ ଖଣ୍ଡିଆଖାବରାକରି ବିକଳାଙ୍ଗକରିବା କାମ୍ୟନୁହେଁ, କାହିଁକିନା, ସଂସ୍କାର ସାଧନକରି ସମାଜକୁ ବଦଳାଇହୁଏନା; ସଂସାରକୁ ଧରାବନ୍ଧା ଗତରୁ ଓହରାଇହୁଏନା; ରାଷ୍ଟ୍ରର ଦମନପୀଡ଼ନକୁ ପ୍ରତିରୋଧ କରିହୁଏନା । ପ୍ରଚଳିତ ଶିକ୍ଷାରୁ କେତେ ରହିବ ଆଉ କେତେ ବାଦ୍‌ଯିବ ନିର୍ଭରକରୁଚି ପ୍ରଥାବିରୋଧୀ ଶିକ୍ଷାରୁ ପ୍ରାପ୍ତ ବିଚାରବିବେଚନା ଉପରେ । ଯା ଛାଡ଼ିଦେବି, ବଦଳରେ ପାଇବି କଣ, ସେ ବୁଦ୍ଧି ବି ବାହାରିବ ସେଇ ପ୍ରଥାବିରୋଧୀ ଶିକ୍ଷାରୁ; ଏବଂ ଦେଶ-କାଳ-ପରିସ୍ଥିତି ନିରିଖରେ ବର୍ଜନ-ପୂରଣ-ଗ୍ରହଣ ଚାଲୁଥିବ ସାରାଜୀବନ । ଆଜି ଯା ପ୍ରଥାବିରୋଧୀ କାଲି ହୋଇଯାଇପାରେ ପ୍ରଥାଗତ, ଯେପରି ସ୍ତ୍ରୀଶିକ୍ଷା । ଅନତିକ୍ରମ୍ୟ ପ୍ରାଚୀର ତେଣୁ କଳ୍ପନା ମାତ୍ର, ଲଂଘନର ବୁଦ୍ଧିଟା ଅସଲ । ଏକାଳର ଚାହିଦାକୁ ଚାହିଁ ଧର୍ମଶିକ୍ଷା ବାଦ୍‌ପଡ଼ିଛି ପାଠ୍ୟକ୍ରମରୁ, ଗୃହୀତହୋଇଚି କମ୍ପ୍ୟୁଟର୍; ସେକାଳର ଚାହିଦାକୁ ଚାହିଁ ବିଦ୍ୟାସାଗର ସଂସ୍କୃତକଲେଜ୍ ପାଠ୍ୟକ୍ରମରେ ପୁରାଇଥିଲେ ବୀଜଗଣିତ ଜ୍ୟାମିତି, ମୀମାଂସାକୁ ଘୋଷଣାକରିଥିଲେ 'ଭ୍ରାନ୍ତଦର୍ଶନ' । ପ୍ରଥାବିରୋଧୀ କାମ ନିଶ୍ଚୟ । ସଚେତନ ମଣିଷ ତେଣୁ ପ୍ରଚଳିତ ଶିକ୍ଷାର ସୁଯୋଗକୁ ଛାଡ଼ିବନାହିଁ, କିନ୍ତୁ ବନ୍ଧାପଡ଼ିବନାହିଁ; ଅର୍ଥାତ୍, ଗୁରୁ, ଶାସ୍ତ୍ର, ଲୋକାଚାର ରାଷ୍ଟ୍ରର ନିଷେଧ ପ୍ରଭୃତିକୁ ପରୁଆ ନକରି ନିଜ ଶିଙ୍ଘରେ ମାଟିଖୋଳିବ, ଖୋଳୁଥିବ । ସହଯାତ୍ରୀ ହୁଏତ ଜୁଟିବେନାହିଁ ବେଶି; ତେବେସୁଦ୍ଧା, ଏକେବାରେ ଏକାହୋଇପଡ଼ିବା ଭଳି ପରିସ୍ଥିତି ମଧ୍ୟ କରିପାରିବ ନାହିଁ ଅବରୋଧ । କାହିଁକିନା, ଜନସମାଗମ ଭିତରେ ନୀତିଭ୍ରଷ୍ଟ ଜୀବନ କଟାଇବା ଅପେକ୍ଷା ଏକାନ୍ତ ଅବସ୍ଥିତିରେ ନୀତିନିଷ୍ଠ ଜୀବନ ବାସ୍ତବିକ ଏକପ୍ରକାର ରୋମାନ୍ସ ! ମାତ୍ର କର୍ମକ୍ଷେତ୍ର କାହାର ବଡ଼, କାହାର ସେତେବଡ଼ ନୁହେଁ । ସେଥିପାଇଁ, କେହି ହୁଏତ ଖାଲି ପ୍ରଥାବିରୋଧୀ ଆଚରଣକରି ଅଟକିରହନ୍ତି, ଆଉ କେହି ଗଣ୍ଡି ପାରହୋଇ ଚାଲିଯାଆନ୍ତି ବହୁଦୂର । ସମସ୍ୟା ତେଣୁ ସାଧର, ସାଧନର ନୁହେଁ ।

ଗଣ୍ଠି ପାରହେବାକୁ କିନ୍ତୁ ସବାଆଗେ ଦରକାର ବିକଳ୍ପ ଜୀବନଦର୍ଶନ । ମାନେ, ଜଗତ୍‌ଟା ଲୌକିକ ବୋଲି ଉପଲବ୍ଧି ଆସିଲେ ଜିଜ୍ଞାସା ହୋଇପାରେ ଅନିର୍ବାଣ । ପରିବର୍ତ୍ତନକୁ ଅନିବାର୍ଯ୍ୟ ବୋଲି ଉପଲବ୍ଧି ଆସିଲେ, ବୁଦ୍ଧିବୃତ୍ତି ବି ସେଇ ଦିଗକୁ ହୁଏ ପରିଚାଳିତ । ପ୍ରବୀଣ କହିବେ, ସମସ୍ତେ ପାରିବେନାହିଁ । ନିଜେ ଯିଏ ହାରିଯାଇଚି, ଅନ୍ୟକୁ ଦେଖିବାକୁ ଚାହେଁ ପରାଭୂତ । ମାତ୍ର ପ୍ରବୃତ୍ତି ଭଳି ବୁଦ୍ଧିବୃତ୍ତି ବି ମଣିଷର ସହଜାତ, ଜନ୍ମସୂତ୍ରରେ ହିଁ ମଣିଷ ଯୁକ୍ତିପ୍ରବଣ । ଯୁକ୍ତିପ୍ରବଣ, କାହିଁକିନା, ବଞ୍ଚିରହିବାକୁ ଯେତେ ଯାହା ଦରକାର, ବୁଦ୍ଧିଖଟାଇ ନିଜେ ଉତ୍ପନ୍ନକରେ, ଅପର ପ୍ରାଣୀ ପାରନ୍ତିନାହିଁ । ଅଟକିଯିବା କି ହାରିଯିବା ତେଣୁ ସ୍ୱଭାବ-ଲକ୍ଷଣ ନୁହେଁ । ସଂସାର-ସମାଜ-ଶାସନ ଯୋଉ ଚାପ ତିଆରି କରିଚାଲିଚି ପ୍ରତି ମୁହୂର୍ତ୍ତରେ, ତାର ଗୁରୁଭାର ମୌଳିକ ଏଇ ଯୁକ୍ତିପ୍ରବଣତା ଉପରେ ସବୁଠୁଁ ବେଶି; ଏବଂ ବେଶି ବୋଲି, ଅଧିକାଂଶ ଲୋକ ବିହ୍ୱଳହୋଇ ବୁଦ୍ଧି ଖଟାଇବାକୁ ଡରନ୍ତି। ସମସ୍ତେ ବୁଝନ୍ତି, ଦୁନିଆ ବଦଳିଯାଉଚି କ୍ଷଣକୁକ୍ଷଣ, ନିଜକୁ ବଦଳାଇବାକୁ ମନକଲା ମାତ୍ରକେ କିନ୍ତୁ ପରିବାର-ସମାଜ-ରାଷ୍ଟ୍ର ପ୍ରଭୃତି କର୍ତ୍ତୃତ୍ୱ, ରେଡିମେଡ୍ ସମାଧାନ ଆଣି ଠିଆକରିଦେବେ । ସେପରି ଗୋଟିଏ ସମାଧାନ: ମରିଗଲେ ଦେହଟା ପୋଡ଼ାହେବ କିମ୍ୱା ପୋତାହେବ । ଡାକ୍ତରିବିଦ୍ୟାଟା ପଢ଼ାହେବ ତେବେ କେମିତି ? ଦିହଟାକୁ ଡାକ୍ତରଖାନାକୁ ଦେଇଦେଲେ ତ ପାଠପଢ଼ାକାମରେ ଲାଗନ୍ତା । କର୍ତ୍ତୃତ୍ୱ ଏଭଳି ସମାଧାନ ଦେଇପାରେନା । ସେମିତି, ଜଣକ ଦିହରୁ ରକ୍ତ କାଢ଼ିଆଣି ଆଉଜଣକ ଧମନୀରେ ପୁରାଇହୁଅନ୍ତାନାହିଁ ଶାସ୍ତ୍ରରେ ସେଭଳି ବିଧାନ ଯେହେତୁ ନାହିଁ; କିନ୍ତୁ ଶାସ୍ତ୍ର ରଚନାବେଳେ ତ ଏଭଳି କରଣକୌଶଳ ଆବିଷ୍କୃତ ହୋଇନାହିଁ । ବିକଳ୍ପ ଜୀବନଦର୍ଶନ ତେଣୁ ପଚାରିପାରେ, ହଜାରେବର୍ଷ ତଳେ ଯା ଚାଲୁହୋଇଥିଲା, ଏକ୍ଷଣି ତାକୁ ବଞ୍ଚାଇରଖି କାହାର କି ଫାଇଦା ? *ମାଳବିକାଗ୍ନିମିତ୍ର* ନାଟକ ଆରମ୍ଭରେ କାଳିଦାସ ଲେଖିଚନ୍ତି, ପୁରୁଣା ବୋଲି କିଛି ଭଲହୁଏନା କି ନୂଆ ବୋଲି ଅବଦ୍ୟ (=ନିନ୍ଦନୀୟ), ଜ୍ଞାନୀ ବିବେଚନାକରି ଗୁଣଚିହ୍ନନ୍ତି, ମୂର୍ଖ ପରପାଟିରେ ପିଠାଖାଏ । କିନ୍ତୁ, ବିକଳ୍ପ ଜୀବନଦର୍ଶନର ମୂଳଦୁଆ ଯୁକ୍ତିପ୍ରବଣତା ହେଲେସୁଦ୍ଧା, ତାକୁ ଆକ୍ରାନ୍ତକରିଚି ଏକ୍ଷଣି ଭୋଗବାଦ । ଭୋଗ ଆଉ ଭୋଗବାଦ ଏକାଜିନିଷ ନୁହେଁ; ଭୋଗରେ ଅଚି ସଂଯମ, ଭୋଗବାଦ ନିଃସର୍ତ୍ତ ସମର୍ପଣ, ସହଜ ପ୍ରବୃତ୍ତି ପାଖରେ ନିଃସର୍ତ୍ତ ସମର୍ପଣ । ଜୈବ ପ୍ରବୃତ୍ତିକୁ ସଂଯତକରିପାରେ ଯୁକ୍ତି; ମାତ୍ର ବାସ୍ତବ ଅଭିଜ୍ଞତା କହୁଚି, ପୁଞ୍ଜିବାଦୀ ହେଉ କି ସାମ୍ୟବାଦୀ, ଉଭୟ ପରିସରରେ ପ୍ରବଣତା ଅଭିନ୍ନ । ସେ ପ୍ରବଣତା ଯେହେତୁ ଅଯୌକ୍ତିକ, ଶେଷ ମୀମାଂସା ହୋଇପାରେନା ଶତକଡ଼ାଶହେ ମଣିଷ ନିଃସ୍ୱାର୍ଥପର ହେବେ, ଚିନ୍ତାକରି ଭୋଗବୃତ୍ତିକୁ

ସଂଯତକରିବେ—ଏ ପ୍ରତ୍ୟାଶା ମଧ୍ୟ ଅବାସ୍ତବ । ଅବାସ୍ତବ ବୋଲି, ଲେନିନ୍ ମଧ୍ୟ କହିବାକୁ ଭୁଲିନାହାଁନ୍ତି ଯେ ଶ୍ରେଣୀହୀନ ସମାଜ ଯେତେଦିନ ସଂହତ ନକରଚି ନିଜକୁ, ନିଜ ବୁନିୟାଦକୁ ସ୍ଥାୟୀକରି ନପାରିଚି, କିଛିଲୋକ ଅବଶିଷ୍ଟ ରହିବେ ଚିନ୍ତାକରିବାକୁ ଯିଏ ଅପାରଗ (ଦ୍ର. *'ବାମପନ୍ଥୀ' କମିଉନିଜ୍ମ, ଏକ ଶିଶୁରୋଗ* ଅଧ୍ୟାୟ-୪) । ତହିଁଉତାରୁ ତିକ୍ତସ୍ୱରରେ କହିଚନ୍ତି, ଘଟଣା ଅନ୍ୟ ରକମ ହୋଇଥିଲେ ପୁଞ୍ଜିବାଦ ଶୋଷଣ କରିପାରନ୍ତାନାହିଁ ଏଭାବରେ । ଏଠି ଯିଏ ଦେଶ ଚଳାଉଚନ୍ତି, ବିବାକ ହୁଅନ୍ତି ଯଦି ବିଳାସୀ ଓ ଶଠ, ସମ୍ଭୋଗଲିପ୍ସୁ ଓ ସ୍ୱଜନପୋଷକ, ନୀରବ ପ୍ରତିବାଦ ଉଠିବ ଅବଶ୍ୟ; ଭୋଗବାଦକୁ କିନ୍ତୁ ଏକ ଆଦର୍ଶରେ ପରିଣତକରି ଲୋକଙ୍କ ଆଗରେ ଥୋଇଦେଇଚି ରୁଲିଙ୍ଗ୍ କ୍ଲାସ୍ । ବଞ୍ଚିତଲୋକ ଭାବିବ, ଶଳା ଏକେଲା ଖାଇବ କାହିଁକି, ଆମେ ବି ଫାଉମାରି ଦେଖିବା ! ଯୁକ୍ତିବାଦୀ କିନ୍ତୁ ଭାବିବ, ଯୋଉଠି ଆସି ପହଞ୍ଚିଚି, ଦିନକରେ କି ଯୁଗକରେ ପାରିନାହିଁ; ଇତିହାସର ଅଗଣିତ ଛକ ପାରହୋଇଆସିଚି, ଆଗକୁ ଆହୁରି କେତେ ଛକ ରହିଚି କିଏ କହିବ ! ଅପରିବର୍ତ୍ତନୀୟ ମାନବସ୍ୱଭାବ ବୋଲି କିଛି ଥିଲାନାହିଁ କି ରହିବନାହିଁ ; ସେଇମାନଙ୍କ ସଂଖ୍ୟା କେମିତି ବଢ଼ିବ – ଆମପାଇଁ ଅସଲ ଚ୍ୟାଲେଞ୍ଜ୍ । ନିଜେ ଭୋଗକରିବାଠୁଁ ଅନ୍ୟପାଇଁ ତ୍ୟାଗକରିବାରେ ଯୋଉ ଗୌରବ, ଅନୁଭବକରିବାକୁ ଅଧ୍ୟବସାୟ ଲାଗେ; ଅଧ୍ୟବସାୟ ଲାଗେ ଉପଲବ୍ଧିକରିବାକୁ ସଂଭୋଗର ଭଙ୍ଗୁରତା । ସମ୍ଭୋଗ ଯେ କାମନାକୁ ପ୍ରଶମିତ କରିପାରେନା, ତାର ଦାର୍ଶନିକ ଅଭିଧା, ପ୍ୟାରାଡକ୍ସ ଅବ୍ ହେଡନିଜ୍ମ (ସମ୍ଭୋଗସୁଖର କୂଟାଭାସ) । ସମ୍ଭୋଗର ସୁଯୋଗ, ଏ ଦୁନିଆରେ, ପାଆନ୍ତି ଅତି ଅଳ୍ପଲୋକ; ରଜା-ମହାରଜା ନହେଲେ, ଯା ଇଛା ତା କରିବା, କୋଉ କାଳରେ ବି ସମ୍ଭବହୋଇନାହିଁ; କିନ୍ତୁ ଯଯାତି ଥିଲେ ରାଜାଧିରାଜ । ବୃଦ୍ଧାବସ୍ଥାରେ ପୁଅଠୁଁ ଯୌବନ ଉଧାରନେଇ ଭୋଗକରିଥିଲେ ଇନ୍ଦ୍ରିୟସୁଖ, ମାତ୍ର ଜରାକୁ ଫାଙ୍କିଦେଇ ପାରିଲେନାହିଁ, କି 'କାମ'କୁ କରିପାରିଲେନାହିଁ ନିର୍ବାପିତ: ନଜାତୁ କାମଃ କାମାନାମ୍ ଉପଭୋଗେନ ଶାମ୍ୟତି । ହବିଷା କୃଷ୍ଣବର୍ତ୍ମେର ଭୂୟ ଏକାଭିବର୍ଧତେ ।

କିନ୍ତୁ ଯୋଉ ସମୟରେ ବଞ୍ଚୁଛୁଁ, ସବୁରକମ ପୂର୍ବାନୁମାନକୁ ମିଛ ପ୍ରତିପନ୍ନକରୁଚି ପ୍ରକୃତ ଘଟଣା । କାହିଁକିନା, ଘଟଣା ତ ଇତିହାସ, ତାର ପୁଣି ହିସାବକିତାବ ହେବ କେମିତି ଆଗତୁରା ? ବିଶେଷତଃ ଜ୍ଞାନର ଯୋଉ ଗଢ଼ଣ ଉପରେ ପୂର୍ବାନୁମାନର ପ୍ରତିଷ୍ଠା, ସେ ଗଢ଼ଣଟାକୁ ବି ଯଦି ଭାଙ୍ଗିପକାଇ ଦିଏ ବାସ୍ତବ ଘଟଣା । ଅର୍ଥାତ୍, ଆରଣ୍ୟକ ପ୍ରସନ୍ନତା ଯୋଉ ଜାଗାରେ ବିରାଜକରିବ ବୋଲି କହିଆସିଚି ପ୍ରଚଳିତ ଶିକ୍ଷାବ୍ୟବସ୍ଥା ଏତେକାଳ, ସେଠି ହଠାତ୍ ଘଟିଯାଉଚି ବିସ୍ଫୋରଣ; ଅଥଚ ପ୍ରଚଳିତ

ଶିକ୍ଷା ଶିଖାଇଚି ନିଶ୍ଚଳ ସମାଜ ହିଁ ସୁସ୍ଥିର ସମାଜ । ସୁସ୍ଥିରତା ପ୍ରତି ଅନ୍ଧଆସକ୍ତି ସେଥିପାଇଁ ଇତିହାସ ପ୍ରତି ଅବଜ୍ଞା । ସୁସ୍ଥିରତା ଅବବୋଧକୁ ବିଦାରିତ କରିପାରେ ଯଦି ହିଂସ୍ରତା ବା ଭାଓଲେନ୍ସ, ନିଷ୍କ୍ରିୟ ଚେତନା ଜାଗାରେ ଦେଖାଦେବ ପୁନର୍ବିବେଚନାର ପ୍ରୟୋଜନ ସାଙ୍ଗକୁ କର୍ମଧାରାର ନବାୟନ । ମସୃଣ ଦୈନନ୍ଦୀନତାରେ ବିଭୋର ଭାବୁକକୁଳ ମୁକାବିଲାକରିବେ ତରଙ୍ଗ ପଛକୁ ତରଙ୍ଗ, ବୈପରୀତ୍ୟ ଆଉ ଆତ୍ମଖଣ୍ଡନ, କାହିଁକିନା, ଘଟଣାଗୁଡ଼ାକର ମିଳିତ ଅଭିଘାତ ଆବରଣଖୋଲି ଦେଖାଇଦେବ ଲୋକ ଓ ତାଙ୍କ ମେଦିନୀଦୃଷ୍ଟିର ନିର୍ବସନ ଅଙ୍ଗପ୍ରତ୍ୟଙ୍ଗ । ତେବେଯାଇ ଜଣାପଡ଼ିବ ଅନିଶ୍ଚିତତା ଭିତରେ ନିତ୍ୟ କଣ ଆଉ ନୂତନ ଅବା କଣ ? ଅର୍ଥାତ୍, ପ୍ରଥାବିରୋଧୀ ଶିକ୍ଷା ମୂଳତଃ ରାଜନୀତିକ । ଅଥଚ ଶିକ୍ଷାଦାନର ସର୍ବୋଚ୍ଚ ସ୍ତରରେ ସୁଦ୍ଧା ଅଦ୍ୟାବଧି କୁହାଯାଉଚି, ଜ୍ଞାନାହରଣର ପ୍ରକୃଷ୍ଟ ଉପାୟ, ବିଦ୍ୟାକୁ ରାଜନୀତି ସଂସ୍ପର୍ଶରୁ ଦୂରରେ ରଖିବା, ଡିପଲିଟିସାଇଜେସନ୍ । କିନ୍ତୁ ବିଦ୍ୟାର୍ଥୀ, ଷାଠିଏ ଦଶକରେ ଯେମିତି ଫ୍ରାନ୍ସରେ ଦାବିକରିଛନ୍ତି ନିଜ ଶ୍ରେଣୀପରିଚୟକୁ ସ୍ୱୀକୃତି, ଏଠି ଏବେ ସେଇ ଦାବି କରୁଚି ଯୁବସଂପ୍ରଦାୟ, ବୁଦ୍ଧିଜୀବୀ, ଶ୍ରମିକ । ଆମେରିକା ପ୍ରଭୃତି ପୁଞ୍ଜିବାଦୀ ଦେଶର ଶିକ୍ଷାପ୍ରତିଷ୍ଠାନ, ଉତ୍ତରରେ କହୁଚନ୍ତି, ଶ୍ରେଣୀସଂଗ୍ରାମ ଦ୍ୱାରା ପୃଥିବୀର କୋଉଠିହେଲେ ପରିବର୍ତ୍ତନ ଘଟିନାହିଁ; ଯେତିକି ଘଟିଚି ବା ଯୋଉଠି ଘଟିଚି, ଚାଳିକାଶକ୍ତି ଏକମାତ୍ର ଟେକ୍ନଲଜି ବା ପ୍ରଯୁକ୍ତିବିଦ୍ୟା । ତେଣୁ ମାର୍କ୍ସ ଯୋଉ ଆ୍ୟାଲିଏନେସନ୍ ବା ପାରକ୍ୟ କଥା ଭାବିଚନ୍ତି, ଭୋଗବାଦୀ ସମାଜବ୍ୟବସ୍ଥାରେ ତାର ସମ୍ଭାବନା କାହିଁ ? ଚତୁର୍ଦ୍ଦିଗରେ ପ୍ରାଚୁର୍ଯ୍ୟ, ଅସରନ୍ତି ଅବସର, ଅପରିସୀମ ଇନ୍ଦ୍ରିୟସୁଖ, ନିଜପାଖରୁ ନିଜେ ପରହୋଇଯିବାକୁ ଅବକାଶ କାହିଁ ? ଆମେରିକାରେ ସେଥିପାଇଁ ବିପ୍ଳବୀର ପ୍ରତିଶବ୍ଦ ଚେଞ୍ଜ୍ଏଜେଣ୍ଟ୍ ଆଉ ପ୍ରତିବାଦୀର ପ୍ରତିଶବ୍ଦ ହୁଇସିଲ୍ ବ୍ଲୋଅର୍ । ସର୍ବାଂଶରେ ହୁଏତ ମିଛନୁହେଁ, କିନ୍ତୁ ମାର୍କ୍ସ କହିଚନ୍ତି ପାରକ୍ୟର ଉତ୍ସ ଶ୍ରମବିଭାଜନ ବା ଡିଭିସନ୍ ଅବ୍ ଲେବର୍ । ସେଇ ବିଭାଜନ କାମିକାମଣିଷର ବହୁମୁଖୀ ବିକଚନକୁ ବ୍ୟାହତକରେ ବୋଲି, ଜୀବନର ନିହିତ ସମ୍ଭାବନାଗୁଡ଼ାକୁ ବାସ୍ତବାୟିତ କରିପାରେନା । ଉତ୍ତରରେ କୁହାଯାଉଥିଲା, ୧୯୬୮ ମେ'ମାସ ପର୍ଯ୍ୟନ୍ତ, ଏଗୁଡ଼ାକ ବିବାକ ଊନବିଂଶ ଶତକର ହ୍ୟାଙ୍ଗ୍ଓଭର୍; ବେଳକାଳ ଢେର୍ ପାଲଟିଯାଇଚି ।

୬୮ ସାଲରେ ଦେଖାଗଲା, ଟେକ୍ନଲଜିର ପାଚିରି ପଛରେ ବୁର୍ଜୋୟା ଆତ୍ମଗୋପନ କରିଥିଲେ ସୁଦ୍ଧା ପ୍ରମେଥିୟୁସ୍ ଭଳି ଶ୍ରମଜୀବୀଶ୍ରେଣୀ ପୁନର୍ବାର ଜଣାଇଚି ଆହ୍ୱାନ, ଏବଂ ଶ୍ରେଣୀବିଦ୍ୱେଷକୁ ଏଡ଼ାଇଯିବା ପାଇଁ ପୁନର୍ବାର ପାର୍ଲାମେଣ୍ଟାରି

ଗଣତନ୍ତ୍ରର ଘୁଣଖିଆ ଆଦର୍ଶକୁ ଟେକିଧରିଚି ଶାସକଶ୍ରେଣୀ । ଅନ୍ୟ ଶବ୍ଦରେ, ଭୋଗବାଦ-ଆଇଡିୟଲଜି ପ୍ରମେଥିୟୁସ୍‌କୁ ବି ମୁଗ୍ଧକରିଚି ଅଳ୍ପବିସ୍ତର । ମାତ୍ର ଯୁବସଂପ୍ରଦାୟ / ବୁଦ୍ଧିଜୀବୀ-ଶ୍ରମିକ (ଛାତ୍ରଛାତ୍ରୀ) ଏ ପ୍ରଭାବକୁ ଅତିକ୍ରମକରିବେ କେମିତି ? ବିଦ୍ରୋହ ଓ ଭାଓଲେନ୍ସ ମନେହୋଇଚି ଅଧମତାରଣ ପନ୍ଥା । ସନ୍ଦେହ ନାହିଁ, ଫ୍ରାନ୍ସ ସହିତ ଆମ ବ୍ୟବଧାନ ବହୁ ଯୋଜନ, କିନ୍ତୁ ଶିକ୍ଷାବ୍ୟବସ୍ଥାର ଲକ୍ଷ୍ୟ ଯେ ଜ୍ଞାନଗରିମା ଉତ୍ପାଦନ, ପ୍ରଡକ୍ସନ୍ ଅବ୍ ନଲେଜ୍, ସେଥିରେ ଅନ୍ତତଃ ବ୍ୟବଧାନ ନରହିବା କଥା । ଏବଂ ଜ୍ଞାନଗରିମାର ଲକ୍ଷ୍ୟ ଯେ ମନୁଷ୍ୟତ୍ୱ ଉତ୍କର୍ଷ ସାଙ୍ଗକୁ ସାମୂହିକ / ସାମାଜିକ ଉତ୍କର୍ଷ, ତା ମଧ୍ୟ ଅବିସମ୍ବାଦିତ । ଏ ବିକାଶର ଲୟ ଓ ସ୍ତର ଯେହେତୁ ଦୁନିଆସାରା ସମାନ ନୁହେଁ, ଜ୍ଞାନ-ଉତ୍ପାଦନର ବୁର୍ଜୋୟାକରଣକୁ ପ୍ରତିହତକରିବା ସହଜନୁହେଁ କି ଅଳ୍ପଦିନରେ ସମ୍ଭବନୁହେଁ; ଅଭିସରଣ ବା ଟ୍ରାନ୍‌ଜିସନ୍ ହୁଏତ ଏକାଧିକ ଶତାବ୍ଦୀ ଦୀର୍ଘ ହୋଇପାରେ । କିନ୍ତୁ ଜ୍ଞାନ-ଉତ୍ପାଦନର ସାଧନଗୁଡ଼ାକୁ ବ୍ୟକ୍ତିଗତ ମାଲିକାନାରୁ ମୁକ୍ତକରିବା, ପ୍ରକ୍ରିୟାର ପ୍ରାଥମିକ ପର୍ଯ୍ୟାୟ । ଅବୈତନିକ କିମ୍ବା ସର୍ବଜନୀନ ପ୍ରାଥମିକ ଶିକ୍ଷା ବୁର୍ଜୋୟାର ସଂସଦୀୟ ଗଣତନ୍ତ୍ର ପରି ଭୋଗବାଦ (କନ୍‌ସପ୍‌ସନ୍)କୁ ଉତ୍କୋଚରେ ପରିଣତକରିବା କୌଶଳ ମାତ୍ର । କାହିଁକିନା, ଶିକ୍ଷାର ଉଦ୍ଦେଶ୍ୟ ଏଠି ଲୋକଙ୍କୁ ସକ୍ଷମକରିବା (ଏମ୍‌ପାୱାର୍‌ମେଣ୍ଟ); ତେଣୁ ପାୱର୍ ବା କ୍ଷମତା ହେବାକଥା ପରିକଳ୍ପନାର କେନ୍ଦ୍ର । କ୍ଷମତା କିନ୍ତୁ ଅ-ଆ-କ-ଖ-ରେ ନାହିଁ; ନାହିଁ ବୋଲି, 'କ୍ଷମତା' କହିଲେ ନିରକ୍ଷର ଲୋକ ବି ବୁଝେ ରାଜନୀତିକ କ୍ଷମତା । ହଳକରିବା କିମ୍ବା ଯୁଦ୍ଧକରିବା, କ୍ଷମତା ନୁହେଁ । ବିନା ରାଜନୀତିକ କ୍ଷମତାରେ ସମାଜକୁ କିଏ ବଦଳାଇବ କେମିତି, ନା ନିଜକୁ ବଦଳାଇବ ଅବା କେମିତି ? ପ୍ରଥମେ ତ ପିଲା ଜାଣିବା ଦରକାର ଦେଶ ଯୋଉ ଉଦ୍‌ବୃତ୍ତମୂଲ୍ୟ (ସର୍‌ପ୍ଲସ୍‌ଭ୍ୟାଲିଉ) ଉତ୍ପନ୍ନକରୁଚି, ସମାଜଭିତରେ ତାର ବଣ୍ଟନହେଉଚି କି ଭାଗରେ, କା ଭାଗରେ ପଡୁଚି କେତେ ଆଉ କାହିଁକି ? ଅର୍ଥାତ୍ ଅର୍ଥନୀତି ସହିତ ରାଜନୀତିର ସମ୍ବନ୍ଧ । ସେକଥା ନଜଣାଇ, 'ଉତ୍ତର ଦିଗେ ବୃକ୍ଷଡାଳେ / ପେଚା ରାବଇ ରାତ୍ରିକାଳେ' ମୁଖସ୍ଥକରାଇଲେ କି ମାନସିକ ଉତ୍କର୍ଷ ଜୁଟିବ ତା କପାଳକୁ ? ମଧ୍ୟାହ୍ନ-ଭୋଜନ ଖାଇଖାଇ ପିଲା ତ ଲାଞ୍ଚୁଆ ହୋଇସାରିଚି ! ରାଷ୍ଟ୍ର ପ୍ରତି ଅନୁରକ୍ତି କିଣାଯାଉଚି ବାଲ୍ୟକାଳରୁ; ଅଥଚ ଜାଣିପାରୁନାହିଁ ଡାଲିଚାଉଳ କିଛିହେଲେ ରାଷ୍ଟ୍ର ଉତ୍ପନ୍ନକରେନା; ମାଗଣାରେ ଖାଇବାକୁ ଦେଉଚି କେମିତି, ଆଉ କାହିଁକି ? ଛାତ୍ର ଏ ବିଷୟରେ ନ ଭାବିଲେ, ଏକ୍ଷଣି ଗ୍ଲୋବ୍ ଆଉ ନେସନ୍ ମଝିରେ ଯେ କ୍ୟାପିଟାଲିସ୍ମ କାମକରୁଚି, ତଫାତ୍‌ଗୁଡ଼ାକୁ ପୋଛିଦେଉଛି, କଦାଚ ବୁଝିପାରିବନାହିଁ, ପ୍ରତିକାରକରିବା ତ ଦୂରର କଥା ।

ଯୋଉ ସମାଜ ଶିକ୍ଷାକ୍ଷେତ୍ରରେ ଅଗ୍ରସର, ଇତିହାସଗତିରେ ଯାଇପାରୁନାହିଁ କାହିଁକି ଆହୁରି ଆଗକୁ ? କାହିଁକିନା, କ୍ଷମତାର ଗଢ଼ଣ ତିଆରିକରିଚି ଅନ୍ତରାୟ; ଯେପରି ରାଷ୍ଟ୍ର (= ଆଇଡିୟଲଜି) କିମ୍ୱା ମନି (=ଟଙ୍କା) । ଉଭୟ ଆଇଡିୟଲଜି ଆଉ ମନି, ନିଜେ ଗୋଟିଏ ଗୋଟିଏ 'କ୍ଷମତା' । ସମାଜର ନାନାଦି ସ୍ତରରେ, ଯେପରି ସଂସ୍କୃତି, ଧର୍ମାଚରଣ, ରାଜନୀତିକ ପ୍ରତିନିଧିତ୍ୱ, ଶ୍ରେଣୀବିନ୍ୟାସ କିମ୍ୱା ଜାତି-ଉପଜାତି ଭେଦାଭେଦ ପ୍ରଭୃତି ସୋପାନରେ ଆଇଡିୟଲଜି ଆଉ ମନି-ର ବିପୁଳ କ୍ଷମତା ସମାଜାଶ୍ରୟୀ ପ୍ରତ୍ୟେକ ମଣିଷର ପ୍ରାତ୍ୟହିକ ଅଭିଜ୍ଞତା; ମାତ୍ର ଏ ଶକ୍ତି ଯେ ଇତିହାସର ସ୍ୱାଭାବିକ ଗତିକୁ ମନ୍ଥର କରିଦେଇପାରେ, ସହଜରେ ମନକୁ ଆସେନା; କାହିଁକିନା, ନିତ୍ୟାଭ୍ୟାସରେ ବ୍ୟାପକହୋଇ ଏ ଶକ୍ତିର ପ୍ରାଦୁର୍ଭାବ ସ୍ଥୂଳକରିଦେଇଚି ଆମ ସମ୍ବେଦନଶୀଳତା । ମାର୍କ୍ସ କିନ୍ତୁ ଆଇଡିୟଲଜିକୁ ଦେଇନାହାନ୍ତି ଜ୍ଞାନର ମର୍ଯ୍ୟାଦା, ରାଷ୍ଟ୍ର ଯେହେତୁ ଏକ ମଧ୍ୟବର୍ତ୍ତୀକାଳୀନ ପ୍ରତିଷ୍ଠାନ, ଯାର ଅବଲୁପ୍ତି ଅନିବାର୍ଯ୍ୟ । ତା ହେଲେ, ସବୁରକମ ଭାବାଦର୍ଶ ପ୍ରତିଭାତ ହେବ ସ୍ୱଳ୍ପାୟୁ । ମାତ୍ର ଇଚ୍ଛାକଲେ ତ ରାଷ୍ଟ୍ର ଭାଙ୍ଗିଯିବ ନାହିଁ; ବିଲୋପକୁ ଚାଳିତକରିବ ଇତିହାସ ଆଉ ଦ୍ୱାନ୍ଦ୍ୱିକତା । ତା ଛଡ଼ା, ରାଷ୍ଟ୍ର ଏକ ସାମାଜିକ ସମଗ୍ରତା ବା ଟୋଟାଲିଟି; ତା ଭିତରେ ସୈନ୍ୟବାହିନୀ, ପୁଲିସ୍‌ଫଉଜ, କୋର୍ଟକଚେରି, ରାଜନୀତି ଆଉ ଅର୍ଥନୀତି ଯେମିତି ସକ୍ରିୟ, ଶିକ୍ଷା ସଂସ୍କୃତି ଧର୍ମ ବର୍ଣ୍ଣ ଜାତି ମଧ୍ୟ ସେମିତି । ସବୁଗୁଡ଼ାକ ଏକାସାଙ୍ଗରେ ନବଦଳିଲେ, ରାଷ୍ଟ୍ରର ବିଲୋପ ଅସମ୍ଭବ । ଏଇ ଟୋଟାଲିଟିକୁ ସ୍ପଷ୍ଟ ଦେଖିପାରୁନାହୁଁ ଶ୍ରମବିଭାଜନର ଦୌରାତ୍ମ୍ୟ ଯେହେତୁ ଜାଣିବାକାମଟାକୁ (=ଜ୍ଞାନାର୍ଜନକୁ) ସଂସ୍କୃତି ପାଖରୁ କାଢ଼ିନେଇଚି; ଅବଧାରିତ ପରିଣତି ତେଣୁ ନାଇଲିଜ୍ମ, ସବୁକଥାକୁ ଅବିଶ୍ୱାସ । ପ୍ରତ୍ୟେକ ସଂସ୍କୃତିରେ ଜ୍ଞାନାର୍ଜନ ଖାଲି ଅନୁଶୀଳନ କି ଅନୁସଂଧାନ ନୁହେଁ, ଧାରାବାହିକ ପରମ୍ପରା । କାମଟାକୁ ଯେତେବେଳେ ଖାଲି ଉଦରପୋଷଣ / ଜୀବିକାର୍ଜନ ଉଦ୍ଦେଶ୍ୟରେ ଚାଳିତ କରାଯାଏ, ଅପରାପର ସାଂସ୍କୃତିକ ଅନୁଶୀଳନଠାରୁ ଘଟିଯାଏ ବିଚ୍ଛେଦ, ଆଉ ସେଇ ବାଟରେ ଖଣ୍ଡିତହୋଇ ଟୋଟାଲିଟି ବା ସାମାଜିକ ସମଗ୍ରତା ହୋଇପଡ଼େ ଅନିର୍ଦ୍ଦିଷ୍ଟ ।

ତା ହେଲେ, ମେ' ୧୯୬୮ରେ ପ୍ୟାରିସ୍ ସହରରେ ଯୋଉ ଧ୍ୱଂସଲୀଳା ସଂଗଠିତ କଲେ ଛାତ୍ରଛାତ୍ରୀ, କଣ ଥିଲା ଉଦ୍ଦେଶ୍ୟ ? ସବୁରକମ ଭାବାଦର୍ଶକୁ ପ୍ରତ୍ୟାଖ୍ୟାନ, ଏବଂ ଏପରି ଏକ ତତ୍ତ୍ୱର ଅନ୍ୱେଷଣ ଯା କୋଉହେଲେ ଅର୍ଥକରୀ ଉଦ୍ଦେଶ୍ୟ ଆଡ଼କୁ ମନକୁ ଟାଣିନିଏନା । ଅର୍ଥାତ୍, ନୂତନ ଜୀବନଦର୍ଶନ । ସେମାନଙ୍କ ଆଗରେ ଆଣି ରଖାଗଲା ବିଶ୍ୱବିଖ୍ୟାତ ଭାବୁକମାନଙ୍କ ନିଦର୍ଶନ; ଶୁଣିଲେ ନାହିଁ;

କହିଲେ, ଚିନ୍ତାର ପୁଣି ନାୟକ ଥାଏ ନା କଣ ? ଅର୍ଥାତ୍, ଭାବିବା କାମଟାର କେହି ଅଭିଭାବକ ନାହିଁ । ଏଇ ଅଭିଭାବକମାନଙ୍କୁ ସୃଷ୍ଟିକରି ଶାସକଶ୍ରେଣୀ ସମାଜକୁ କରିଦେଇଛି ଅବରୁଦ୍ଧ । ଶିକ୍ଷକ ବୁଝାଇଲେ, ଉତ୍ପାଦନଶୀଳତା ଉପରେ ନିର୍ଭରକରେ ସମାଜର ଅଗ୍ରଗତି; ପିଲା କହିଲେ, ଉତ୍ପାଦନ ଯଦି ସୁଖ ଦେଇନପାରେ ଉତ୍ପାଦନଶୀଳତା ଗ୍ରାସାଚ୍ଛାଦନ ଯୋଗାଡ଼ର ଉପାୟ ଭାବରେ କେବଳ an end in itself ! ଅଧିକ ଉତ୍ପାଦନ ଆଉ ଅଧିକ ମୁନାଫା-ଅର୍ଜନ ସଂଗଠିତ କରୁକରୁଁ ଜୀବନତମାମ ଖତମ; ଅବସର (ଫ୍ରିଟାଇମ୍) ବି କିଣିବାକୁ ପଡୁଚି ଟେଲିଭିସନ୍ କି ତଦ୍ରୂପ ଦୀର୍ଘସ୍ଥାୟୀ ପଣ୍ୟର ବିନିମୟରେ । ଏପରିକି, ଟେକ୍ନଲଜି ବି ନିରପେକ୍ଷ ନୁହେଁ, କାହିଁକିନା, ତାର ପରିପ୍ରେକ୍ଷିତ ଓ ପ୍ରେରଣା କେବଳ ଆଧିପତ୍ୟ-ବିସ୍ତାର, ବହିଃପ୍ରକୃତିକୁ ରୂପାନ୍ତରିତ କରିବା ଯନ୍ତ୍ର ଭୂମିକାରେ ମଣିଷ ଉପରେ କର୍ତ୍ତୃତ୍ୱ, ମଣିଷର ଉତ୍ପାଦନଶୀଳତା (ସର୍ଜନଶୀଳତା) ଉପରେ ହସ୍ତକ୍ଷେପ । ସେଥିରୁ ଜନ୍ମନେଇଚି ଯୋଉ ପଣ୍ୟଜଗତ୍, ମୋଟରଗାଡ଼ି ହାଇଓୟେ କଳକବ୍ଜା କି ଗୃହୋପକରଣ, ଏକାସାଙ୍ଗରେ ଆକ୍ରମଣକରୁଚି ଦେହକୁ ଆଉ ମନକୁ, ଆଉ ଏଇ ଇତର ଜିନିଷଗୁଡ଼ାକ ସାଙ୍ଗରେ ଅହୋରାତ୍ର ଓତପ୍ରୋତହୋଇ କର୍ତ୍ତାପଣ ହରାଇ ମଣିଷ ବି ପାଲଟିଯାଉଚି ବିକ୍ରୟଯୋଗ୍ୟ ପଦାର୍ଥ । ମନର ଯା ସ୍ୱାଭାବିକ ଧର୍ମ, ଦୋଷଦର୍ଶନ / ଅସମ୍ମତି / ପ୍ରତ୍ୟାଖ୍ୟାନ / ଅସ୍ୱୀକାର, ସବୁଯାକ ମଞ୍ଜି ଶୁଖିଯାଇ ଅନ୍ତର୍ହିତ ହୋଇଯିବ ଏଇ ପ୍ରକ୍ରିୟାରେ । ସମାଜଟା ଇଣ୍ଡଷ୍ଟ୍ରିଆଲ୍ ସୋସାଇଟି ବୋଲି ଚିନ୍ତା ଉପରେ ଏତେ ବେଶି ବଳାତ୍କାର, ପିଲାଙ୍କୁ କରିଚି କ୍ରୁଦ୍ଧ ଆଉ ପ୍ରତିବାଦୀ । ସେତେ ଆଗକୁ ଆମେ ଯାଇପାରିନାହୁଁ, ମାତ୍ର ଯୋଉ ରାସ୍ତାଧରିଛୁଁ, ସେଇ ବିନ୍ଦୁରେ ପହଞ୍ଚିବାକୁ ବେଶିଡେରି ହେବନାହିଁ । ଶିକ୍ଷାବ୍ୟବସ୍ଥା କଣ ପ୍ରସ୍ତୁତକରୁଚି ପିଲାଙ୍କୁ ପ୍ରତିବାଦକରିବାକୁ ? ନା, ମୁକ୍ତଚିନ୍ତାପାଇଁ ଯେତେ ଗଳିକନ୍ଦି ଖୋଲା ଅଛି, ସବୁଗୁଡ଼ାକୁ ସେଇ ଅମୁହାଁ ବୃତ୍ତରେ ସାମିଲ୍‌କରିଦେବାକୁ ତତ୍ପର, ଯୋଉ ବୃତ୍ତକୁ କହୁଛୁଁ କ୍ଲୋଜଡ୍ ସୋସାଇଟି ! ଟୋଟାଲିଟିର ସମକକ୍ଷ ! ଏଇଭଳି ଏକ କୃତ୍ରିମ ଟୋଟାଲିଟିର ପ୍ରତିରୂପ ସମକାଳର ମାର୍କିନ୍ ସମାଜ; ଅଥଚ ଅସଲ ଟୋଟାଲିଟିକୁ ସେମାନେ ଦେଖିଆସିଚନ୍ତି ଭିଏତ୍‌ନାମ୍‌ରେ । ଖୁବ୍ ସମ୍ଭବତଃ, ଯେକୌଣସି ଇଣ୍ଡଷ୍ଟ୍ରିଆଲ୍ ସୋସାଇଟିର ଗଢ଼ଣ ଏପରି ପୁଙ୍ଖାନୁପୁଙ୍ଖ ଓ ନିରଂଧ୍ର ଯେ ନିଶ୍ଚଳ ନହୋଇ ତାର ଗତ୍ୟନ୍ତର ନାହିଁ । କିନ୍ତୁ ଆମକୁ ତ ଦରକାର ପରିବର୍ତ୍ତନ, ଗତିଶୀଳତା । ବିଦେଶରୁ ବିଶ୍ୱବିଦ୍ୟାଳୟ ଆସି ଏଠି ତମ୍ବୁପକାଇଲେ କିମ୍ବା ମୁନାଫାଖୋର୍ ସ୍ଥାନୀୟ ଲୋକ ବିଦେଶ ଅନୁକରଣରେ ଶିକ୍ଷାକୁ ଚିଙ୍ଗୁଡ଼ି କି ବାସମତି ଚାଉଳ ବେପାରରେ ପରିଣତକଲେ କେବେହେଲେ ଆସିପାରିବ ବାଞ୍ଛିତ

ପରିବର୍ତ୍ତନ ? ହୁଏତ ମୁଷ୍ଟିମେୟ ଲୋକଙ୍କ ପାଇଁ ଜୀବିକାଅର୍ଜନର ପଥ ସୁଗମ ହେବ ଜାତୀୟ ସ୍ୱାର୍ଥ ବିନିମୟରେ ।

କ୍ଲୋଜଡ୍ ସୋସାଇଟି ହେଲେସୁଦ୍ଧା, ଛାତ୍ର ଆଉ ବୁଦ୍ଧିଜୀବୀଙ୍କ ଆନ୍ଦୋଳନ ଦେଖାଇଦେଇଚି, ଯୋଉ ଫାଟ ବାହାରିପଡ଼ିଚି ଦୁର୍ଗକାନ୍ଥରେ, ତାର ଦୈର୍ଘ୍ୟପ୍ରସ୍ଥ ବଢ଼ିବ କ୍ରମଶଃ; କାହିଁକିନା, ବିକଳ୍ପ ଜୀବନଦର୍ଶନ ପ୍ରକୃତ ପ୍ରସ୍ତାବରେ ଏକ ଜୀବନବ୍ୟାପୀ ଅନୁଶୀଳନ ବା ପ୍ର୍ୟାକ୍‌ସିସ୍ । କୋଉହେଲେ ପ୍ର୍ୟାକ୍‌ସିସ୍ ଅବଶ୍ୟ ସ୍ୱତଃସ୍ଫୂର୍ତ୍ତତାକୁ ପୁଞ୍ଜିକରି ଆଗେଇପାରେନା; ଆନୁଷ୍ଠାନିକ ପ୍ରୟୋଗ ତେଣୁ ସ୍କୁଲ୍-କଲେଜ୍‌କୁ ହିଁ କରିବ କର୍ମକ୍ଷେତ୍ର । ଅନ୍ୟଥା, ବିକ୍ଷିପ୍ତ ଉଦ୍ୟମ ଜୀବନଦର୍ଶନକୁ ପ୍ରତିଭାତକରିବ ଇଉଟୋପିଆ । ତର୍କ ଛଳରେ କୁହାଯାଉଚି ଆର୍ଥସାମାଜିକ ଭିତ୍ତି ନବଦଳିଲେ, ସୁପରଷ୍ଟ୍ରକ୍‌ଚର୍ ଯୋଉ ଶିକ୍ଷାବ୍ୟବସ୍ଥା (ଅର୍ଥାତ୍ ରାଜନୀତି), ବଦଳିଯାଇ ପାରେନା । କିନ୍ତୁ ଆମର ଏଠି ରାଜନୀତି ଏକ ଭଙ୍ଗୁର ଓ ଆତ୍ମରକ୍ଷା-ପ୍ରବଣ ଷ୍ଟ୍ରକ୍‌ଚର୍; ଆଉ ବ୍ୟାପକ ଦମନପୀଡ଼ନ ରାଷ୍ଟ୍ରକୁ କରୁଚି ଦିନକୁଦିନ ଦୁର୍ବଳ । ଏଭଳି ପରିସ୍ଥିତିରେ ନୂଆ କୋଉ ମୂଲ୍ୟବୋଧ ସୃଷ୍ଟିକରିବା ସମ୍ଭବନୁହେଁ, ପ୍ରଚଣ୍ଡ ହିଂସାତ୍ମକ ପ୍ରତିରୋଧ ବ୍ୟତୀତ । ପ୍ରତିରୋଧ ମାନେ, ଇଂରାଜୀ 'କଣ୍ଟେଷ୍ଟେସନ୍'; ଯା ଖାଲି ରାଜନୀତିକ ନୁହେଁ, ବୁର୍ଜୋୟାର ଯାବତୀୟ ପ୍ରତିଷ୍ଠାନ, ଆର୍ଥସାମାଜିକ ସାଂସ୍କୃତିକ ଓ ଭାବାଦର୍ଶସଂଜାତ ସ୍ଟ୍ରକ୍‌ଚରଗୁଡ଼ାକୁ ସହିଂସ ପ୍ରତିରୋଧ କାହିଁକିନା, ସବୁଠି ଦିଶୁଚି ଭୟାନକ କଣ୍ଟ୍ରାଡିକ୍ସନ୍ ଆଉ କଣ୍ଟ୍ରାଡିକ୍ସନ୍‌କୁ ପ୍ରଶମିତକରିବାକୁ କଠୋର ଦମନନୀତି ସାଙ୍ଗକୁ ନାନାବିଧ ଉତ୍କୋଚର ପ୍ରଲୋଭନ । ଆର୍ଥସାମାଜିକ ଭିତ୍ତିକୁ ଆକ୍ରମଣ ମାନେ, ଅନ୍ତତଃ ମାର୍କ୍ସୀୟ ଚିନ୍ତାଧାରାରେ, ବ୍ୟକ୍ତିଗତ ସଂପତ୍ତି ଓ ଉତ୍ପାଦନ-ସାଧନଗୁଡ଼ିକର ବ୍ୟକ୍ତିଗତ ଭୋଗଦଖଲକୁ ଆକ୍ରମଣ । ଅର୍ଥନୀତିରେ ସଙ୍କଟ ଦେଖାଦେଇପାରେ; ସେ ସଙ୍କଟ କିନ୍ତୁ ବିପ୍ଳବ ଡାକିଆଣେନା; ତା ଉପରେ ଗଢ଼ିଉଠିଛି ଯୋଉ ପ୍ରଯୁକ୍ତି, ଶ୍ରମବିଭାଜନ ଓ ପ୍ରପର୍ଟି ରିଲେସନ୍ (ଗୋଟିଏ ଶବ୍ଦରେ, ରାଜନୀତି), ସେଥିରେ ଯଦି ସଙ୍କଟ ଦେଖାଦିଏ ବିଗଳିତହୋଇଯାଏ ସୁପରଷ୍ଟ୍ରକ୍‌ଚର୍ (ରାଷ୍ଟ୍ର) । ପୁଞ୍ଜିବାଦୀ ସମାଜ ସକାଶେ ମୁଖ୍ୟତଃ ପ୍ରଯୋଜ୍ୟ, ମାତ୍ର ଭାରତର ସମାଜଗତି ମଧ୍ୟ ବିଶ୍ୱାୟନପର୍ବରେ, ପୁଞ୍ଜିବାଦ ଦିଗକୁ ଆଗୁଆନ୍ । କିନ୍ତୁ ଶିକ୍ଷାବ୍ୟବସ୍ଥା କର୍ତ୍ତବ୍ୟ, ଅର୍ଥନୀତି ରାଜନୀତି ଇତ୍ୟାଦି ଖଣ୍ଡିତ ବିବେଚନାରେ ବିଚାର ନକରି, ଦେଶକୁ ତାର ସମଗ୍ରତା (ଟୋଟାଲିଟି)ରେ ବିଶ୍ଳେଷଣ, କାହିଁକିନା, କ୍ୟାପିଟାଲ୍ ସାମ୍ରାଜ୍ୟବାଦର ରୂପଧରିବା ସଙ୍ଗେସଙ୍ଗେ ବୁର୍ଜୋୟା ସମାଜବ୍ୟବସ୍ଥାର ଘଟିଯାଇଚି ନବାୟନ, ପ୍ରତିଯୋଗିତା ଜାଗାରେ ଦେଖାଦେଇଚି ମନୋପଲି ଏବଂ ଅନତିପୂର୍ବେ ମନୋପଲି ଜାଗାରେ ଫିନାନ୍ସ କ୍ୟାପିଟାଲ୍ । ରାଷ୍ଟ୍ରର ବିନା ସାହାଯ୍ୟରେ ଏଗୁଡ଼ାକ

ସକ୍ରିୟ ହୋଇପାରେନା । କଣ୍ଟ୍ରାଡିକ୍ସନ୍‌ର ଧରଣଧାରଣ ତେଣୁ ପୂର୍ବବତ୍ ନୁହେଁ; ବିଶେଷତଃ ଯେହେତୁ ଗ୍ଲୋବାଲାଇଜେସନ୍ ଯୋଉ ସାମ୍ରାଜ୍ୟବାଦକୁ ମଦତ୍‌ଯୋଗାଉଛି, ତାର ଚରିତ୍ର ପ୍ରଧାନତଃ ରାଜନୀତିକ । ରାଜନୀତିକୁ ଉନ୍ନୟନର ଲୟ ଯେହେତୁ ସର୍ବତ୍ର ସମାନ ନୁହେଁ ଏବଂ ରାଷ୍ଟ୍ରର କର୍ତ୍ତୃତ୍ୱ ତିଷ୍ଠିରହିଛି କେବଳ ହିଂସା (ଦମନ-ପୀଡ଼ନ) ଉପରେ । ବିଶ୍ୱାୟନ ଛଦ୍ମବେଶରେ ଏଇ ସାମ୍ରାଜ୍ୟବାଦ ଏକପ୍ରକାର ଅଭିସରଣ ବା ଟ୍ର୍ୟାନ୍‌ଜିସନ୍ ପ୍ରସବକରିବା ଅବଶ୍ୟମ୍ଭାବୀ; ଅର୍ଥାତ୍ ଏକ ପ୍ରକାର ସମାଜବ୍ୟବସ୍ଥା ଓ ରାଷ୍ଟ୍ରସଙ୍ଗଠନରୁ ଅନ୍ୟରକମ ସମାଜ ଓ ରାଷ୍ଟ୍ରବ୍ୟବସ୍ଥାକୁ ଅଭିସରଣ, ଏବଂ ସେଇ ଅଭିସରଣ ପର୍ଯ୍ୟାୟରେ ସାମାଜିକ ଉତ୍ପାଦନ ଓ ପ୍ରପର୍ଟି-ରିଲେସନ୍ସ ଯୋଉ ଧକ୍କାଖାଇବ, ସମ୍ଭାଳିବାକୁ ସହିଂସ କୌଶଳ । କାହିଁକିନା, ଔପନିବେଶିକତାର ଅବସାନ ଉତାରୁ ଇମ୍ପିରିଆଲିଜ୍ମର ଅଭିଭାବକ ସିନା ବଦଳିଯାଇଚି, ସ୍ୱୟଂ ଇମ୍ପିରିଆଲିଜ୍ମ ବଦଳିନାହିଁ; ଏପରିକି, ଆପଣା ଭୂଖଣ୍ଡରେ ସୁଦ୍ଧା ଅଭ୍ୟନ୍ତରୀଣ ମାର୍କେଟ୍‌କୁ କରିବାକୁ ଚାହେଁ 'ଉପଭୋକ୍ତାର ସମାଜ', ସୋସାଇଟି ଅବ୍ କନ୍‌ସପ୍‌ସନ୍ । ଗୋଟିଏହେଲେ ବୈପରୀତ୍ୟ ବା କଣ୍ଟ୍ରାଡିକ୍ସନ୍ ତେଣୁ ବିଗଳିତହୋଇନାହିଁ । ବିପ୍ଳବର ସର୍ତ୍ତଗୁଡ଼ିକ ରହିଚି ଅକ୍ଷୁର୍ଣ୍ଣ, ମାତ୍ର ଚେତନାରୁ ସେଗୁଡ଼ିକୁ ନିଷ୍କାସିତକରାଯାଉଚି, କୋଉଠି ଆଇଡିୟଲଜି, କୋଉଠି ପାର୍ଲାମେଣ୍ଟ, କୋଉଠି ଦମନ, ଆଉକୋଉଠି ହିଂସ୍ର ପ୍ରତିରୋଧ ଦ୍ୱାରା । ଅନ୍ୟ ଶବ୍ଦରେ, ଯାହାକୁ ଆକ୍ରମଣ କି ଦଳନ କରାଯାଉଚି, କୋଉ ବୈଷୟିକ ହେତୁ ବା ଉପାଦାନ ନୁହେଁ; ମଣିଷର ମନନଶକ୍ତି ବା ଚେତନା । ଚେତନା ସେଥିପାଇଁ ଟୋଟାଲିଟି (ସମଗ୍ରତା)କୁ ଠାବ କରିପାରେନା । ଯା ପ୍ରକୃତ ବା ଇନ୍ଦ୍ରିୟଗ୍ରାହ୍ୟ, ସବୁଯାକ ଯେହେତୁ ବ୍ୟବଧାନ, ଅସାମ୍ୟ ବିକୃତି କି ଧ୍ୱଂସାବଶେଷ । ଟୋଟାଲିଟି ଜାଗାରେ ଏ ଯୋଉ ଶୂନ୍ୟତା, ଦମନପ୍ରବଣ କ୍ଷମତା ତାକୁ ଭରିଦେବାକୁ ଚେଷ୍ଟାକରେ ବାଗାଡ଼ମ୍ବର, କପଟ ଦାର୍ଶନିକତା ଆଉ ବଳପ୍ରୟୋଗ ଦ୍ୱାରା । ଏ ଅବସ୍ଥାରେ, ଜ୍ଞାନ ବା ନଲେଜ୍ ହୋଇପାରେ ସର୍ବବୃହତ୍ ସାମାଜିକ ଓ ଉତ୍ପାଦିକା ଶକ୍ତି; କିନ୍ତୁ ସେ ଜ୍ଞାନ ଯୋଉଠି ଉତ୍ପନ୍ନହୁଏ, ଶିକ୍ଷାବ୍ୟବସ୍ଥା ତ ତାର ସର୍ବୋଚ୍ଚ ସୋପାନ ! ତେବେ ଏକଥା ମଧ୍ୟ ସତ ଯେ, ଶାସକଶ୍ରେଣୀ ଯେତେବେଳେ ସାମ୍ରାଜ୍ୟ କି ମାର୍କେଟ୍ ସ୍ୱାର୍ଥରେ ପ୍ରତିବାଦକୁ ଦମନକରେ କି ହିଂସାକୁ କରେ ରକ୍ଷାକବଚ, ଯୁକ୍ତି କି ବୁଦ୍ଧି ବଳରେ କରେନା; କରେ 'କ୍ଷମତା' ବଳରେ । କାଣ୍ଡଜ୍ଞାନ ତେଣୁ 'କ୍ଷମତା' ମନେହେବା ସ୍ୱାଭାବିକ, ବୁଦ୍ଧିବିବେଚନା ଉର୍ଦ୍ଧ୍ୱରେ । ଅର୍ଥାତ୍, ଏକମାତ୍ର 'ସତ୍ୟ' ଗୁଳିବାରୁଦ ବା ବନ୍ଧୁକ, ବାକି କଥାଗୁଡ଼ାକ ବିନୋବା ଭାବେ ! ପରିବର୍ତ୍ତନକାମୀ ମଣିଷ କଳ୍ପନାକରିବାକୁ ଭଲପାଏ; କଣ ସମ୍ଭବପର କଣ ନୁହେଁ, ସେକଥାକୁ ନେଇ ବି ପରତାଳ କରେ ।

କଳ୍ପନାକରିଥିବା ବନ୍ଧୁକ ବି ପ୍ରତିଭାତ ହୋଇପାରେ 'ସମ୍ଭବପର' । ଅର୍ଥାତ୍, 'ରାଷ୍ଟ୍ର' ଓ 'କ୍ଷମତା' ଦଖଲକରିବା ସମ୍ଭବପର । କିନ୍ତୁ ସେ ଷ୍ଟ୍ରକ୍‌ଚର୍‌ଗୁଡ଼ାକ ତ ବିଦ୍ୟମାନ, ମାଲିକ ବଦଳକରିଦେଇ ଲାଭ କଣ ? ଯା ରହିଚି, ତାଠୁଁ ଅଧିକ ବା ଉନ୍ନତ କିଛି କଳ୍ପନାକରିବାକୁ ଶିଖାଇବା ତେଣୁ ଶିକ୍ଷାବ୍ୟବସ୍ଥାର କର୍ତ୍ତବ୍ୟ; ସମ୍ଭବପର କି ନୁହେଁ ବିଚାରକରିବା ବୁଦ୍ଧି ଓ ଯୁକ୍ତିର କାମ । ସମ୍ଭବପର କି ନୁହେଁ ଭାବିବା ଆଗରୁ ଦେଖିବାକଥା ଶାସକଶ୍ରେଣୀର ଏମିତି କୋଉ ଗୁଣର ଅଭାବ ଆଖିକୁ ଜଳଜଳ ଦିଶୁଚି ଯେ, ନତଡ଼ିଲେ ନୁହେଁ ? ସେଇ ଗୁଣଗୁଡ଼ାକୁ କଣ ନିଜେ ଅର୍ଜନକରିସାରିଚି ? ସେମାନେ ତ ଦାବିକରୁଚନ୍ତି ନିଜକୁ ଲୋକଙ୍କ ପ୍ରତିନିଧି, ଆମେ ତେବେ କରୁଛୁଁ କାହାର ପ୍ରତିନିଧିତ୍ୱ ? ଅନ୍ୟ ଶବ୍ଦରେ, ସେମାନେ ଯଦି ଲୋକଙ୍କ ପ୍ରତି ବିଶ୍ୱାସଘାତକତା କି ପ୍ରତାରଣାକରୁଚନ୍ତି, ଆମ ବିପ୍ଳବଚିନ୍ତା କାହିଁକି ତତ୍ତ୍ୱହୀନ ଦୁଃସାହସିକତା ନୁହେଁ ? ବିନା ତତ୍ତ୍ୱରେ କର୍ମ ଖାଲି ନିରୁଦ୍ଦେଶ ଆତ୍ମକ୍ଷୟ ! ତାତ୍ତ୍ୱିକ କହୁଚନ୍ତି, ଉଚ୍ଚଶିକ୍ଷାର ଲକ୍ଷ୍ୟ ବଡ଼ବଡ଼ ଡିଗ୍ରୀ ନୁହେଁ, ନୂଆ ନୂଆ 'ଆଇଡିଆ'ର ଉତ୍ପାଦନ; ସଂସ୍କୃତରେ କୁହାଯାଇଚି ନବନବ ଉନ୍ମେଷଶାଳିନୀ ପ୍ରଜ୍ଞାଃ । ଗ୍ଲୋବାଲାଇଜେସନ୍ ସେଇଭଳି ଗୋଟିଏ ଆଇଡିଆ; ଅଥଚ ତା ସାମ୍ରାଜ୍ୟବାଦ ସାଙ୍ଗରେ ସମାନ । ସେହିପରି 'ନେସନ୍' ବି ଗୋଟିଏ ଆଇଡିଆ; ଅଥଚ ନାତ୍‌ସୀ ଜର୍ମାନୀରେ ସେଥିରୁ ବାହାରିଲା ଫ୍ୟାସିଜ୍ମ । ଅର୍ଥାତ୍, ଯୋଉ ଆଇଡିଆକୁ କଳ୍ପନାକରାଯାଇଥିଲା ବନ୍ଧନମୁକ୍ତିର ଚାବିକାଠି, କାର୍ଯ୍ୟକ୍ଷେତ୍ରରେ ତିଆରିକରିଚି ଦୁର୍ଲଂଘ୍ୟ ଆଧିପତ୍ୟର ଷ୍ଟ୍ରକ୍‌ଚର୍ । ଅଥଚ ଗ୍ରାମ୍‌ସି କହୁଚନ୍ତି 'ଅର୍ଗାନିକ୍' ଇଣ୍ଟେଲେକ୍‌ଚୁଆଲ୍ ତିଆରିକରିବା ଶିକ୍ଷାବ୍ୟବସ୍ଥାର ସବୁଠୁଁ ବଡ଼ ଦାୟୀତ୍ୱ, କାହିଁକିନା, ସେଇ କେବଳ ନିର୍ମାଣକରିପାରିବ କାଉଣ୍ଟର୍-ହିଗେମନି । ବ୍ରିଟିଶ୍ ଅମଳରେ ଯେମିତି ବିଖ୍ୟାତ ସିଭିଲିଆନ୍ ରମେଶଚନ୍ଦ୍ର ଦତ୍ତ ଖାଡ଼ାକରିଥିଲେ 'ଡ୍ରେଇନ୍ ଥିୟରି' । କିନ୍ତୁ ଏ ଆଇଡିଆଗୁଡ଼ାକର ନିର୍ଦ୍ଦିଷ୍ଟ ପ୍ରେକ୍ଷିତ ଅଛି; ପ୍ରେକ୍ଷିତ ଅତିକ୍ରମ କରିପାରିଲେ ଆଇଡିଆ ହୋଇପାରିବ 'ଥଟ୍' । ଆଉ, ସେଇ ଥଟ୍ ହୁଏ ଯଦି ହିଗେମନି ବା ଆଧିପତ୍ୟ, ଭାବାଦର୍ଶର ହିଗେମନିକୁ ଅନୁଗମନ କରିବ ରାଜନୀତିକ ହିଗେମନି । ମନେହୁଏ, ଗ୍ରାମ୍‌ସି ଚାହିଁଚନ୍ତି ଏଇ ଧରଣର କାଉଣ୍ଟର୍-ହିଗେମନି ଯା ନ୍ୟାସନାଲ୍-ପପୁଲାର । ମାତ୍ର ତା ସକାଶେ ସାଧାରଣ ଶିକ୍ଷା ବ୍ୟବସ୍ଥାକୁ ଉପଯୋଗ କରାଯାଇ ପାରେ କି ? କରିହେବ, ଯଦି ପରିଚିତ କୋଉହେଲେ ରାଜନୀତିକ ଭାବାଦର୍ଶ ସପକ୍ଷ ବା ବିପକ୍ଷରେ ନଯାଇ, ମ୍ୟାକଲେ ବ୍ରିଟିଶ୍ ହେଗେମନି ସକାଶେ ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ୍ ତିଆରିକରିବା ଭଳି ଆମେ ନିଜ ସମାଜସ୍ଥିତ ବଞ୍ଚନା ଅବମାନନା ଅସାମ୍ୟ ବିରୋଧରେ କାଉଣ୍ଟର୍-ହିଗେମନି ତିଆରିକରିବାକୁ ଶିକ୍ଷିତକରୁଁ

ଛାତ୍ରଛାତ୍ରୀଙ୍କୁ । ଅର୍ଥାତ୍ ପିଲା ନିଜ ବଜାର-ଦର ବଢ଼ାଇବାକୁ ଲାଗି ନପଡ଼ି ମନେକରିବେ ନିଜ ସମାଜ ପ୍ରତି ନିଜ ପ୍ରାସଙ୍ଗିକତା ପ୍ରମାଣକରିବାକୁ । ତା ହେଲେଯାଇ ଆଇଡିଆ ପାଇବାକୁ ବାରଦୁଆର ଶୁଣିପିଣ୍ଡା ବୁଲିବାକୁ ପଡ଼ିବନାହିଁ । ପରାଙ୍ଗପୁଷ୍ଟ ବା ପରନିର୍ଭର କୋଉହେଲେ ବୁଦ୍ଧିଜୀବୀ ଲଢ଼ିପାରେନା କ୍ୟାପିଟାଲ୍‌ର ହିଗେମନି ସାଙ୍ଗରେ, କର୍ମକ୍ଷେତ୍ର ବିଜ୍ଞାନ ସାହିତ୍ୟ, ସାମ୍ୟଦିକତା, ସମାଜବିଦ୍ୟା କି ଧନବିଦ୍ୟା ଯାହା ହେଉ । ଅନ୍ୟ ଶବ୍ଦରେ, ଶିକ୍ଷାର ଲକ୍ଷ୍ୟ ଖାଲି ଉଦରପୋଷଣ ପାଇଁ ଛାତ୍ରଛାତ୍ରୀଙ୍କୁ ପ୍ରସ୍ତୁତ ନକରି, ତାଙ୍କ ମେଦିନୀଦୃଷ୍ଟି (ଜର୍ମନ୍ ଭାଷାରେ, *Weltanschamung*) କୁ ଏପରି ଉଦ୍‌ବୋଧନ, ଯା ମେଧାର ପଣ୍ୟକରଣକୁ ମାନିନେବନାହିଁ । ମେଧାର ପଣ୍ୟକରଣକୁ ବିରୋଧ ମାନେ ସମାଜରେ ସୌଦାଗରୀ ମୂଲ୍ୟମାନକୁ ସଦର୍ପ ପ୍ରତିରୋଧ; ଏବଂ କଠିନ ଏଇ ସାଧନାରେ ସାଫଲ୍ୟ ପାଇବା ମାନେ ଲୋକଙ୍କ ଅବଲୋକନରେ ଅର୍ଗାନିକ୍ ଇଣ୍ଟେଲେକ୍‌ଚୁଆଲ୍ ବୋଲି ସ୍ୱୀକୃତି ଓ ସମର୍ଥନ ।

କଥାଗୁଡ଼ାକ ଭାବିବା କଥା ସୋସାଲ୍ ସାଏନ୍ସର ଛାତ୍ର, କାହିଁକିନା, ବିଜ୍ଞାନ ଏଞ୍ଜିନିୟରିଙ୍ଗ୍ କି ମ୍ୟାନେଜ୍‌ମେଣ୍ଟ୍ ଯିଏ ପଢୁଚନ୍ତି, ତାଙ୍କୁ କାମ ମିଳିଯାଉଚି ତତ୍‌କ୍ଷଣାତ୍ । ଅଦରକାରିହୋଇ ପଡ଼ିରହୁଚନ୍ତି ସାହିତ୍ୟ-ଇତିହାସ-ଦର୍ଶନ-ନୃତତ୍ତ୍ୱ କି ସମାଜତତ୍ତ୍ୱ ପଢ଼ିଥିବା ପିଲା । ହତାଶା ସାଙ୍ଗକୁ କ୍ରୋଧ ତାଙ୍କୁ ଉତ୍ୟକ୍ତ କରିବା କଥା । ଦିଶିବ, ଯିଏ ଟେକ୍ନିକ୍ୟାଲ୍ ବିଷୟ ପଢ଼ିଚନ୍ତି, ଦେଶର ଉତ୍ପାଦନ-ବ୍ୟବସ୍ଥା ତାଙ୍କୁ ଘୋଷାରିନେଉଚି; ଆଉ, ସମାଜକୁ ଯିଏ ଏକ ଟୋଟାଲିଟି ଭାବରେ ଦେଖିବାକୁ ଶିଖିଚନ୍ତି (ତେଣୁ ପରିବର୍ତ୍ତନ ଘଟାଇବାକୁ ସକ୍ଷମ), ସେମାନେ ରହିଯାଉଚନ୍ତି ଅର୍ଥନୀତିର ସୀମାନ୍ତରେ । ଏ ନିଶ୍ଚୟ ଏପରି ଏକ ଅବସ୍ଥା, ଯାହାକୁ କହିହେବ ସାମାଜିକ ଶୂନ୍ୟତା; ଲେନିନ୍ ଯାହାକୁ ଭାବିଚନ୍ତି ସମାଜର ସୁପରଷ୍ଟ୍ରକ୍‌ଚର୍‌ରେ ଦୁର୍ବଳତମ ଶିକୁଳି । ତାଆରି ଉପରେ ଆଘାତକରିବେ ? କିନ୍ତୁ ଯିବେ କୁଆଡ଼କୁ ? ରାସ୍ତା ଛଡ଼ା ଆଉକୋଉ ପରିସର କଣ ଖୋଲାରଖିଚି ସଂସାର-ସମାଜ-ରାଷ୍ଟ୍ର ? ଖାଲି ଅ୍ୟାଲିଏନେଟିଡ୍ ବା ଇତରହୋଇ ରହିନାହାଁନ୍ତି, ଅବଜ୍ଞାର ଅପମାନ ମଧ୍ୟ ଆକ୍ରାନ୍ତକରିଚି ତାଙ୍କ ଚେତନାକୁ । ଏ ଅବସ୍ଥାରେ, ଏଇ ଜଗତ୍ ସହିତ କି ସଂପର୍କରେ ଛନ୍ଦିହେବେ, ସେଇ ବିଚାର ସ୍ଥିରକରିବ ସେମାନଙ୍କ ସଂଜ୍ଞା, ବୟସ କରିବନାହଁ । ସଂଜ୍ଞା ଖୋଜିବା ସୂତ୍ରରେ ପ୍ରତ୍ୟାଖାନକରିବାକୁ ପଡ଼ିବ ପ୍ରଚଳିତ ମୂଲ୍ୟମାନ; ମାନେ, ଆରମ୍ଭହୋଇଯିବ କଣ୍ଟେଷ୍ଟେସନ୍, ଯା ସ୍ୱତଃସ୍ଫୂର୍ତ୍ତ । ପ୍ରତିଷ୍ଠିତ କୋଉହେଲେ ଅନୁଷ୍ଠାନ / ପ୍ରତିଷ୍ଠାନ ସମର୍ଥନ କରିବନାହିଁ; ସ୍ୱତଃସ୍ଫୂର୍ତ୍ତତା ଛଡ଼ା ତେଣୁ ଗତି ଖୋଜିପାଇବନାହିଁ କି ଘଟଣା ଘଟାଇପାରିବନାହିଁ । ଏ କଣ୍ଟେଷ୍ଟେସନ୍ କିନ୍ତୁ ନିରର୍ଥକ ନୁହେଁ; ଅସମର୍ଥ ହୋଇସୁଦ୍ଧା ନିରର୍ଥକ ନୁହେଁ ।

ଅସମର୍ଥ, କାହିଁକିନା, ପଛରେ କୋଉହେଲେ ସଂଗଠନ ନାହିଁ । ସମାଜବ୍ୟବସ୍ଥାରେ ଅନୁଷ୍ଠାନରହିତ ଏକମାତ୍ର ପରିସର ଯେହେତୁ ରାସ୍ତା, ସେଇ ରାସ୍ତାରୁ ହିଁ କଣ୍ଟେଷ୍ଟେସନ୍ ପ୍ରସାରିତହେବ ଅନୁଷ୍ଠାନ / ପ୍ରତିଷ୍ଠାନକୁ । ଅର୍ଥାତ୍ ରାସ୍ତା ପରିଗ୍ରହକରିବ ରାଜନୀତିର ଗୁଣାଗୁଣ, କାହିଁକିନା, ସମାଜର ଅନ୍ୟଯେତେ ଅନୁଷ୍ଠାନ, ସବୁଠି ବିରାଜକରୁଚି ରାଜନୀତିକ ଶୂନ୍ୟତା । 'ପଲିଟିକ୍ୟାଲ୍ ସ୍ପେସ୍' ଧାରଣାଟା ଯଦି ଏଇ ଭାବରେ ବଦଳିଯାଏ, ରାସ୍ତାର ଅର୍ଥ ବି ବଦଳିଯିବ ଏକାସାଙ୍ଗରେ ।

ସ୍ୱତଃସ୍ଫୂର୍ତ୍ତତା ଯଦି ରାସ୍ତାକୁ କରିପକାଏ ରାଜନୀତିକ କଣ୍ଟେଷ୍ଟ୍‌ର ଲୀଳାକ୍ଷେତ୍ର, ଯୋଉ ପ୍ରପଞ୍ଚକୁ କହୁଛୁଁ ଭାଓଲେନ୍ସ ବା ହିଂସା, କେହି ତାକୁ ଓଗାଳିପାରିବନାହିଁ । ହିଂସା ତେଣୁ ଖାଲି କଣ୍ଟେଷ୍ଟେସନ୍‌ର ଉପଜାତ ନୁହେଁ, ସ୍ୱତଃସ୍ଫୂର୍ତ୍ତତା ତାର ଉତ୍ସ । ଆତ୍ମପ୍ରକାଶ ଲାଗି ଯୋଉଶକ୍ତି ବାଟଖୋଜୁଥିଲା, ଯଦି ସ୍ୱତଃସ୍ଫୂର୍ତ୍ତତାକୁ ବହନ ନକରେ, ବଞ୍ଚିରହିବ କେମିତି ? ପ୍ରକାଶ୍ୟ ହିଂସା ଛଡ଼ା ଅସ୍ଫୁଟ ହିଂସା ମଧ୍ୟ ଆତ୍ମପ୍ରକାଶ ଖୋଜିପାରେ । 'କ୍ଷମତା'ଯୋଉ ହିଂସା ପ୍ରୟୋଗକରେ, ସାଧାରଣତଃ ତା ଅସ୍ଫୁଟ; କାହିଁକିନା, ଜାନ୍ତବ ହସ୍ତକ୍ଷେପ ସମାଜରେ ପରିଗଣିତହୁଏ ବର୍ବର । ମ୍ୟାକିଆଭେଲି ବି ଏକାବେଳକେ ସବୁଯାକ ଦାନ୍ତ-ନଖ ବାହାରକରିବାକୁ ମନାକରିଚନ୍ତି । ଯୋଉ ଶାସନ ପୁଲିସ୍ କି ସେନାବାହିନୀକୁ ଦମନପୀଡ଼ନ କାମରେ ଘନଘନ ବ୍ୟବହାରକରେ, 'ଆବ୍‌ସଲିଉଟ୍ ପଲିଟିକ୍ସ' ଭଳି ପ୍ରତୀତିକୁ ବିକଶିତକରିବା ତା ସାଧ ବାହାରେ; ଏପରିକି ସାମରିକ ରାଜତ୍ୱ ପକ୍ଷରେ ସୁଦ୍ଧା । ଆବ୍‌ସଲିଉଟ୍ ପଲିଟିକ୍ସ ମାନେ ପ୍ରତିପକ୍ଷକୁ ସମୂଳ ବିଧ୍ୱଂସ; ଏକେବାରେ ନକଲେ ନୁହେଁ ଯୋଉ ପରିସ୍ଥିତିରେ । ସେଭଳି ପରିସ୍ଥିତି ଆସିବାଯାଏଁ ଖୁଚୁରା ବଳପ୍ରୟୋଗ ହୁଏତ ପ୍ରତିପକ୍ଷକୁ ସୁଯୋଗ ଦେବ ବିରୋଧୀ ଶକ୍ତିର ପ୍ରତିନିଧି ଭାବରେ ନିଜକୁ ସଂଗଠିତକରିବାକୁ; କ୍ଷମତା ସେଭଳି ଝୁଙ୍କି ନିଏନା, ନିତାନ୍ତ ବାଧ୍ୟ ନହେଲେ ନିଏନା । ବିଶୁଦ୍ଧ ହିଂସ୍ରତା ତେଣୁ ରୋମାଣ୍ଟିକ୍ କଳ୍ପନା, କାହିଁକିନା, ହିଂସା-ପ୍ରତିହିଂସା ଏକ ବିପରୀତ ଯୁଗ୍ମ-ପଦ; ଗୋଟାକ ଅନୁପସ୍ଥିତିରେ ଅନ୍ୟଟା ଅଯୌକ୍ତିକ । ଭାଓଲେନ୍ସ ଅଭ୍ୟାସରେ ପରିଣତହେଲେ ଅକର୍ମଣ୍ୟ ହୋଇଯିବା ସ୍ୱାଭାବିକ, ଏବଂ ସେତେବେଳେ, କାଉଣ୍ଟର୍-ଭାଓଲେନ୍ସ ତାକୁ ସମୂଳ ଧ୍ୱଂସକରିଦେଇ ପାରେ । ଦରକାର ତେଣୁ ଫିଲଜଫି: ନିଃସର୍ତ୍ତ ସ୍ୱତଃସ୍ଫୂର୍ତ୍ତତା ଭଳି ତତ୍ତ୍ୱଭିତ୍ତି, ଭାଓଲେନ୍ସର ବି ମେଟାଫିଜିକ୍ସ । ଶ୍ରେଣୀସଂଗ୍ରାମକୁ ଇତିହାସ ଦୁର୍ବଳ କରିଦେଇଚି, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଆସି ବସିଚି ତା ଆସନରେ; କିନ୍ତୁ ଦୀର୍ଘକାଳଧରି ସାମାଜିକ ସଂପର୍କଗୁଡ଼ାକ ସ୍ଥାଣୁତ୍ୱ ଭୋଗକରିବା ଉତାରୁ, ଘଟଣାପ୍ରବାହରୁ ଦେଖାଯାଉଚି, ଫିଲଜଫିର ଘଟିପାରେ ନବଜନ୍ମ। କାହିଁକିନା, ଏ ଦର୍ଶନ ଦାୟବଦ୍ଧତାର ଦର୍ଶନ, ନିଜ ଜୀବନକୁ ପାଣି

ନଛଡ଼ାଇ, ମିତ୍ରକୁ ହେଉ କି ଶତ୍ରୁକୁ, ସମ୍ମୁଖୀନହୁଏନା କେହି ଅସ୍ତ୍ରଧରି । ଏବଂ, ତା ଫଳରେ ଯଦି ପ୍ରାଣ ଚାଲିଯାଏ, ପ୍ରାଣଦାନ ବିବେଚିତହୁଏ ବିରଳ ମହିମା, ଆତ୍ମସମ୍ମାନର ଉପାଧି । ଯୋଉ ଜଗତରେ ଆତ୍ମସମ୍ମାନ ନାହିଁ କି ଇଚ୍ଛାଶକ୍ତି ନାହିଁ, ଅବଶିଷ୍ଟ ରହିଚି ଖାଲି ଖାଇପିଇ ବଞ୍ଚି ରହିବା ଉଦ୍‌ବେଗ, ସେ ଜଗତ ସକାଶେ ଏ ଦାୟବଦ୍ଧତା ନିଶ୍ଚୟ ଅପ୍ରତ୍ୟାଶିତ ବିପଦ । ଗତିହୀନତା ବା ନିଷ୍ଫଳତା ଯଦି ଭାବାଦର୍ଶର ମର୍ଯ୍ୟାଦା ପାଏ, ଭାଓଲେନ୍ସକୁ ଫିଲଜଫି କହିବା ଅଦାର୍ଶନିକତା ହେବ ଅବା କାହିଁକି, ଯଦି ମୃତ୍ୟୁରୁ ନେଇଯାଏ ଅମୃତକୁ ଆଉ ଅସତ୍ୟରୁ ସତ୍ୟକୁ ?

ଏଗୁଡ଼ାକ ଅବଶ୍ୟ କାବ୍ୟକବିତା; ମୁଭ୍‌ମେଣ୍ଟ୍ ବା ଆନ୍ଦୋଳନ ପଛରେ ତତ୍ତ୍ୱବିଚାର କାମକରିବାକୁ ବାଧ୍ୟ; କିନ୍ତୁ ତତ୍ତ୍ୱ ବା ଥିଅରି ଆନ୍ଦୋଳନ ଭିତରୁ ହିଁ ଉଠିଆସିବା ଆବଶ୍ୟକ; କାହିଁକିନା, ଆଗକୁ ଯାଉଯାଉଁ ଆନ୍ଦୋଳନ ନିଜକୁ ଖୋଲି ଦେଖାଇଦିଏ, ଅନ୍ତର୍ନିହିତ ଶକ୍ତିକୁ ପ୍ରକଟକରେ, ଆଉ ସେଇ ସୂତ୍ରରେ, ନିଜ ତତ୍ତ୍ୱ ନିର୍ମାଣକରିବା କ୍ଷମତାକୁ ମଧ୍ୟ କରିଦିଏ ନିର୍ବାଧ । ପ୍ରତିଷ୍ଠିତ କୋଉ ତତ୍ତ୍ୱର ଉପାଦାନ ଯଦି ଲକ୍ଷ୍ୟକରାଯାଏ, ବୁଝିବାକୁ ହେବ, ତାର ଅବଦାନ ସୀମିତ ମାତ୍ର ।

ଲେଖିବା ଉଦ୍ଦେଶ୍ୟ, ଶିକ୍ଷାସଂସ୍କାର ପଛରେ କି ତତ୍ତ୍ୱ କାମକରୁଚି, ତା ପ୍ରତି ସାମାନ୍ୟ ମନୋଯୋଗ । ଦେଖିହେବ, ସ୍କୁଲ୍-କଲେଜ୍ ଯୋଉ ଜାଗାରେ ଗଢ଼ିଉଠୁଚି, ବିବାକ ଅପନ୍ତରା; ନିକଟରେ ହୁଏତ ବସ୍ତି ଅଛି, କି ଅଦୂରରେ ଛୋଟ କାରଖାନା; ରାସ୍ତା ପକାଇବାକୁ ଖୋଳାଖୋଳି ଚାଲିଚି, ରେଳଲାଇନ୍ ଯାଉଚି ହୁଏତ । ଗଛବୃଛ ବିରଳ । ଆଖପାଖର ଲୋକବାକ ବିବାକ ମଳିମୁଣ୍ଡିଆ । ପ୍ରକଳ୍ପର ପରିବେଶ ସ୍ପଷ୍ଟ କହିଦେଉଚି ସ୍ୱଳ୍ପଆୟ ଲୋକଙ୍କ ସକାଶେ ଏ ବ୍ୟବସ୍ଥା । ଶିକ୍ଷାକ୍ରମ ଓ ଶିକ୍ଷକଙ୍କୁ ବଛାଯାଇଚି କି ରକମ ପିଲାଙ୍କୁ ପଢ଼ାଇବେ, ସେଇ କଥାଟାକୁ ମୁଣ୍ଡରେ ରଖି । ପିଲା ସ୍କୁଲ୍‌ରୁ ବାହାରି ଯେମିତି ଛୋଟଛୋଟ କାମଧନ୍ଦା ପାଇପାରିବେ, ତାହାହିଁ ସବୁଠୁଁ ବଡ଼ ବିବେଚନା । ଅନ୍ୟ ଶବ୍ଦରେ, ପ୍ରକଳ୍ପର ଉଦ୍ଦେଶ୍ୟ ଜମାରୁ ନୁହେଁ ଯେ ଏ ପିଲା ଭବିଷ୍ୟତରେ ଇଣ୍ଟେଲେକ୍‌ଚୁଆଲ୍ ହେବେ । କିରାଣୀ ହୋଇପାରିଲେ ଯଥେଷ୍ଟ । ଅର୍ଥାତ୍, ସାମାଜିକ ଶ୍ରମ-ବିଭାଜନକୁ ନଜରରେ ରଖି ବିଦ୍ୟାଳୟର ତତ୍ତ୍ୱତଲାସ ଠିକ୍‌କରାଯାଉଚି । ପୁରାତନ ସହରର ଉପକଣ୍ଠରେ ଜାଗା ମିଳିଥିବାରୁ ସ୍କୁଲ୍‌ଟା ପ୍ରକୃତରେ ଅଭିଶପ୍ତ । ପରିତ୍ୟକ୍ତ ଏକ ଶୂନ୍ୟତା ତେଣୁ ପ୍ରକଟକରିଦିଏ 'ପ୍ରାନ୍ତିକ' କହିଲେ, ସମାଜ ଯଥାର୍ଥ କଣ ବୁଝେ; ଅର୍ଥାତ୍ ସୁଖସନ୍ତୋଷର ଅଭାବ କୋଉଠି ମୂର୍ତ୍ତିମନ୍ତ । ଏ ପରିମଣ୍ଡଳରେ, କୋଉହେଲେ ଶୂନ୍ୟତାକୁ ଶିକ୍ଷା ପୂରଣକରିପାରିବ ବୋଲି ଆଶାକରିବା ବୃଥା; କାହିଁକିନା, ଜ୍ଞାନଅନ୍ତର୍ଭୁକ୍ତ ବିଷୟ ଓ ବିଦ୍ୟାଳୟର

ବହିରାବରଣ ଶିକ୍ଷାର ଉଦ୍ଦେଶ୍ୟ ସହିତ ସଙ୍ଗତି ରଖିବାକୁ ଅକ୍ଷମ । ଏଠି ପାଠପଢ଼ିବାକୁ ଆସିବା ମାନେ ହିନ୍ଦିସିନେମାର ଫ୍ୟାଣ୍ଟାସି ଦେଖିବା; ଭବିଷ୍ୟତର ଫ୍ୟାଣ୍ଟାସି, ବୁର୍ଜୋୟା ପରିଭାଷାରେ ଇଉଟୋପିଆ । ମାତ୍ର ବିଶ୍ୱବିଦ୍ୟାଳୟର କଥା ବି ଅଲଗା ନୁହେଁ । ସେଠି ମଧ ପୁଅଙ୍କ ପାଖରୁ ଝିଅଙ୍କୁ ଅଲଗା ରଖାଯାଏ, ଆଉ ଉଭୟ ମନେକରନ୍ତି, ଏଗୁଡ଼ାକ ଅହେତୁକ କଟକଣା, 'କ୍ଷମତା'ର ଅପପ୍ରୟୋଗ । କିନ୍ତୁ ପାଠ ମଧ ଫଙ୍କ୍‌ସନାଲ୍ ବା କ୍ରିୟାମୂଳକ; ଅର୍ଥାତ୍ ଇଣ୍ଡଷ୍ଟ୍ରିଆଲ୍ ସୋସାଇଟି ଗଢ଼ିତୋଳିବା ଲାଗି ଯୋଉ ରକମ ଜ୍ଞାନ ଉପଯୁକ୍ତ, ତାହାରି ପଠନପାଠନ । ବିରାଟ ବିରାଟ ହଲ୍, ଛୋଟ ଛୋଟ କ୍ଲାସ୍‌ରୁମ୍, ଆଡ୍‌ମିନିଷ୍ଟ୍ରେଟିଭ୍ ବ୍ଲକ୍, ହୋଷ୍ଟେଲ୍, ଲାଇବ୍ରେରୀ – ନିତିଦିନିଆ ପରିବେଶ; କିନ୍ତୁ ଏପରି ଏକ ସାଂସ୍କୃତିକ ପରିମଣ୍ଡଳ ଛାତ୍ରଛାତ୍ରୀଙ୍କ ପାରିବାରିକ ଦୀନତା ପ୍ରତିତୁଳନାରେ ଯୋଉଠି ମନେହେବ, ଦାନବୀୟ ଅଭିସନ୍ଧି ! ଏଇ ସରକାରି ସଂସ୍କୃତି ଆଉ ସରକାରଦ୍ୱାରା ପରିବେଷିତ ବିଶେଷ ଜ୍ଞାନ, ବାସ୍ତବ (=ଦରିଦ୍ର ଅବଜ୍ଞାତ ଅବସ୍ଥା) ଆଉ କଳ୍ପନା (ପୃଥିବୀର ବିପୁଳତ୍ୱ, ଇତିହାସର ସମାରୋହ) ଉଭୟର ସ୍ୱାଦ ଚାଖିବାକୁ ଦିଏ ପିଲାଙ୍କୁ; ମାତ୍ର ପରିଶେଷରେ ଦେଶଜ ସଂସ୍କୃତି, ଅନୁଷ୍ଠାନ, ଆଉ ପ୍ରଥାଗତ ଜ୍ଞାନଗରିମାକୁ ନାନାଦି ଖଣ୍ଡରେ ବିଭାଜିତକରି 'ଶିକ୍ଷା'ର ଐକ୍ୟକୁ କରିଦିଏ ଲଣ୍ଡଭଣ୍ଡ । ଏମାନେ ପରମ୍ପରିକ ଅଭିଭାବକତ୍ୱକୁ ଅସ୍ୱୀକାରକରିନ୍ତି; ଅର୍ଥାତ୍ ବାପ, ଶିକ୍ଷକ ଆଉ ପଲିଟିସିଆନ୍‌ଙ୍କ କର୍ତ୍ତୃତ୍ୱକୁ । ପ୍ରତିବାଦ ପ୍ରଥମେ ବାଚନିକ ଭାଓଲେନ୍ସ, ସେଇଠୁ ଲମ୍ବିଯାଏ କାୟିକ ବା ସକର୍ମକ ପର୍ଯ୍ୟାୟକୁ । ଭାଓଲେନ୍ସର ଏଇ ବ୍ୟାଖ୍ୟା କିନ୍ତୁ ଅପୂର୍ଣ୍ଣ ; ମନୋଭଙ୍ଗୀ ବୁଝାଯାଉଚି, ମାତ୍ର ରାଜନୀତିକ ଅନ୍ତଃସାରର ସଂଧାନ ମିଳୁନାହିଁ । କର୍ତ୍ତୃତ୍ୱର ଏ ସଂକଟ ପ୍ରାତ୍ୟହିକ ଜୀବନଯାତ୍ରାର ବାହ୍ୟ ଲକ୍ଷଣ ମାତ୍ର । ପ୍ରାତ୍ୟହିକ ଜୀବନ ଉର୍ଦ୍ଧ୍ୱରେ ରହିଚି ରାଷ୍ଟ୍ର ଆଉ ତାର ଅସଂଖ୍ୟ ଅନୁଷ୍ଠାନ; ପ୍ରାତ୍ୟହିକ ଜୀବନକୁ ଏକସୂତ୍ରରେ ଯା ଗୁନ୍ଥିରଖିଚି । ତା ଭିତରେ ଇଉନିଭର୍ସିଟି ଛାତ୍ରଛାତ୍ରୀଙ୍କ ଭାବଜଗତ ଓ କର୍ମଜଗତ ଧରାପଡ଼େନା । ପାଠ୍ୟକ୍ରମ ବାହାରେ ପଢ଼ାଶୁଣାକରନ୍ତି ବିସ୍ତର; ଅନ୍ତତଃ ଅଧିକାଂଶ । ଏବଂ ଆଦ୍ୟଜୀବନର ଅଭିଜ୍ଞତା ସେମାନଙ୍କୁ ବିହ୍ୱଳକରେ; କଣ ରଖିଚି ଏ ସମାଜ ତାଙ୍କ କପାଳରେ ? ଅଧିକାଂଶ ମନେକରନ୍ତି ନିଜକୁ ଅରକ୍ଷ୍ୟ, କାହିଁକିନା, ସମ୍ଭାବନା ଗୁଡ଼ାକ ସଙ୍କୁଚିତ । ସେଇଠୁ ଆରମ୍ଭହୋଇଯାଏ ସିଦ୍ଧାନ୍ତଗୁଡ଼ାକ ବିରୋଧରେ କଣ୍ଟେଷ୍ଟେସନ୍ । ପୁରାତନ ଶ୍ରେଣୀବିଭେଦ (=ବୁର୍ଜୋୟା, ମଧ୍ୟବିତ୍ତ, ନିମ୍ନମଧ୍ୟବିତ୍ତ, ନିର୍ବିତ୍ତ) ଘୁଞ୍ଚିଯାଏ, କାହିଁକିନା, ଶତ୍ରୁ ତ ସମସ୍ତଙ୍କ ପାଇଁ ଅଭିନ୍ନ । ବିଶେଷ ସୁବିଧାଭୋଗୀ, ଶିକ୍ଷାୟତନ ବାହାରେ ସେଭଳି ଧାରଣା ପ୍ରଚଳିତ, ସଂଗ୍ରାମର ପୁରୋଭାଗରେ ନିଜ ନିଜ ଜାଗା ବାଛିନିଅନ୍ତି; ହୁଅନ୍ତି ରଜନୀତିର ଅଗ୍ରଦୂତ । ସମାଜକୁ

ତ ଆହ୍ୱାନଜଣାନ୍ତି, ନିଜକୁ ଓ ପରସ୍ପରକୁ ମଧ୍ୟ ଛାଡ଼ନ୍ତିନାହିଁ । ପୂର୍ବନିର୍ଦ୍ଧାରିତ ବିଧିବିଧାନ ଏଇ ବାଟରେ ଭାଙ୍ଗିଯାଏ । ଶିକ୍ଷକ ଯୋଉ ବିଦ୍ୟା ବିତରଣକରିଥିଲେ, ମନେହୁଏ ପ୍ରତିଶ୍ରୁତି ପୂରଣକରିବାକୁ ଅଯୋଗ୍ୟ, ଆବଶ୍ୟକତା ପୂରଣକରିବାକୁ ତ ଜମାରୁ ନୁହେଁ। କଣ ପ୍ରମାଣକରୁଚି ଏଇ ନାଶକତା ? ରାଷ୍ଟ୍ରପ୍ରବର୍ତ୍ତିତ ସାଂସ୍କୃତିକ ପ୍ରକଳ୍ପର ଚରମ ବ୍ୟର୍ଥତା, ଶିକ୍ଷସଂସ୍ଥା ଭଳି ଯୋଉ ଜ୍ଞାନର ସଂଗଠନ, ଆଉ ଶିକ୍ଷପ୍ରୟାସର ସ୍ୱାର୍ଥରକ୍ଷାକରିବା ଯୋଉ ଜ୍ଞାନର ଉଦ୍ଦେଶ୍ୟ, ସେ ଜ୍ଞାନ, ତାର ଶିକ୍ଷକ, ତାର ବିଦ୍ୟାୟତନ-ସବୁଗୁଡ଼ାକର ମିଳିତ ବ୍ୟର୍ଥତା । ଷାଠିଏଦଶକ ଫ୍ରାନ୍ସରେ ଦେଖାଯାଇଚି, ବିଷାଦଗ୍ରସ୍ତ ଏଇ ଛାତ୍ରଛାତ୍ରୀ ଜ୍ଞାନ କହିଲେ ଯୋଉ ବିମୂର୍ତ୍ତ ମନନକୁ ସାଧାରଣତଃ ବୁଝାଏ, ତା ପାଖ ପଶିବାକୁ ନାରାଜ; ଅର୍ଥାତ୍, ମାନ୍ୟତାପ୍ରାପ୍ତ ଅନୁଷ୍ଠାନ (ଯେପରି ସ୍କୁଲ୍-କଲେଜ୍-ଇଉନିଭର୍ସିଟି) ଆଉ ଅବିଦ୍ୟାରୁ ବିମୁକ୍ତି ଭଳି ଚିରାଚରିତ ଭାବାଦର୍ଶ, ଇଣ୍ଟେଲେକ୍ଟ ଆଉ ରାଜନୀତି ମଝିରେ ଯୋଉ ବିଚ୍ଛେଦ କଳ୍ପନାକରିଚନ୍ତି, ସେ ବିଚ୍ଛେଦକୁ ଏ ପିଲା ହସି ଉଡ଼ାଇଦେଇଚନ୍ତି। କଥା ଆଉ କାମ ଭିତରେ କୋଉହେଲେ ବିଭାଜନକୁ ମାନିନେବା 'ଶିକ୍ଷା'ର ଧର୍ମନୁହେଁ ବୋଲି କହିଚନ୍ତି ଶିକ୍ଷକମାନଙ୍କୁ। ପୂର୍ବାଚରିତ ସର୍ତ୍ତାବଳୀକୁ ପ୍ରତ୍ୟାଖ୍ୟାନକରିବା ଫଳରେ ଜ୍ଞାନାହରଣ ପ୍ରକ୍ରିୟା ଭିତରକୁ ପଶିଆସିଚି ରାଜନୀତି, ଯା ଏକ ସାମୂହିକ ଉଦ୍ୟୋଗ, ମନାନ୍ତର କି ମତାନ୍ତର ସତ୍ତ୍ୱେ । ମେସିନ୍‌ଗନ୍ କି ଟ୍ୟାଙ୍କ୍ ଲଗାଇ ସହରକେନ୍ଦ୍ରିକ ଏ ଗେରିଲାଙ୍କୁ ଉଡ଼ାଇ ଦିଆଯାଇପାରେ; କିନ୍ତୁ କ୍ଷମତା ଓ କ୍ଷମତାବାନ୍‌ର ଚିନ୍ତାଧାରାକୁ ଦୋହଲାଇଦେବାକୁ ଏମାନେ ଯଥେଷ୍ଟ । ପିଲା କିନ୍ତୁ ସମାଜର ସମର୍ଥନ ପାଇନାହାଁନ୍ତି, କାହିଁକିନା, ବିସ୍ଫୋରଣ ଯେତେବେଳେ ଅଚାନକ, ରାଜନୀତିକ ସଚେତନତା ଭିତରେ ଦେଖାଦିଏ କୂଟାଭାସ ବା ପ୍ୟାରାଡକ୍ସ । କାହିଁକି ? ହଠାତ୍ କହିହେବ ନାହିଁ । ଜଣିବା-ବୁଝିବାର ଅଭ୍ୟସ୍ତ ରୀତିନୀତି ହୁଏତ ମର୍ମ ଉଦ୍‌ଘାଟନ କରିବାକୁ ସମର୍ଥ ହୁଏନା । ମାତ୍ର ବୁଝିବାକୁ ବାକିରହେନା, କି ପ୍ରକାର ସମ୍ଭାବନା ଆସନ୍ନ ଓ ଅନିବାର୍ଯ୍ୟ । ସମୂଳଧ୍ୱଂସର ଦମନନୀତିକୁ ରାଜନୀତିକ ସ୍ୱତଃସ୍ଫୂର୍ତ୍ତତା ଯେ ସଦର୍ପ ମୁକାବିଲା କରିପାରେ, ରାଜନୀତିକ ସଚେତନତାପାଇଁ ଏଇ କଥାଟା ରହିଯାଇଚି ପ୍ୟାରାଡକ୍ସ । ଆନ୍ଦୋଳନ କାହିଁକି ଗନ୍ତବ୍ୟରେ ପହଞ୍ଚିପାରିନାହିଁ, ଢ଼େର୍ ରକମ ବ୍ୟାଖ୍ୟା ସମ୍ଭବପର; ମାତ୍ର ସାଫଲ୍ୟ ବା ବ୍ୟର୍ଥତାର କାରଣ ଅନୁସଂଧାନ କଲାବେଳେ ଏଣିକି ଯୋଉ ନୂଆ କ୍ୟାଟିଗରିଟିକୁ ପାସରିଗଲେ ଚଳିବନାହିଁ, ତା ନାଁ ସ୍ୱତଃସ୍ଫୂର୍ତ୍ତତା । ରାଜନୀତିକ ସ୍ୱତଃସ୍ଫୂର୍ତ୍ତତା । ଯୋଉ ସ୍ୱତସ୍ଫୂର୍ତ୍ତତାର ଆନୁଷ୍ଠାନିକ ସମର୍ଥନ ନାହିଁ, ପୂର୍ବକଳ୍ପିତ କୃତ୍ୟସୂଚି ନାହିଁ, ଦୃଢ଼ ସଂଗଠନ ନାହିଁ କି ନିର୍ଦ୍ଦିଷ୍ଟ କୋଉ ନେତା ନାହିଁ । ନେତା ଜାଗାରେ ଦେଖାଦେଇଚନ୍ତି ମୁଖପାତ୍ର । ମୌଳିକ ଏଇ ପାର୍ଥକ୍ୟଗୁଡ଼ାକ ସମାଜପତିଙ୍କୁ ବୁଝାଇଦେଇଚି ପ୍ରତିବାଦ-ପ୍ରତିରୋଧର

ସୀମାସରହଦ୍ ନାହିଁ, ଶ୍ରମବିଭାଜନ ନାହିଁ କି ସ୍ପେସାଲାଇଜେସନ୍ ନାହିଁ; ପିଲାଙ୍କ ଏଇ ସଂସ୍କୃତି, ଭ୍ରୂଣାବସ୍ଥା ହେଲେସୁଦ୍ଧା, ଐକ୍ୟସାଧନକାରୀ ସଂସ୍କୃତି ।

ଫ୍ରାନ୍ସରେ ଛାତ୍ରଛାତ୍ରୀ ଯା କରିପାରିଲେ, ଆମ ପିଲା ଅବିକଳ ପାରିବେନାହିଁ, କାହିଁକିନା, ନଗରାୟନ କି ଶିଳ୍ପାୟନ ଏଡ଼େବଡ଼ ଦେଶକୁ ସମସ୍ୱଭାବ କରିପାରିନାହିଁ; ବିଶ୍ୱବିଦ୍ୟାଳୟ ଗୁଡ଼ାକ ବି ଗୋଟାଏ ଗୋଟାଏ ଫ୍ୟାକ୍ଟରି; ପିଲା ଆସନ୍ତି, ପାଠପଢ଼ିଲେ ଚାକିରି ମିଳିବ ବୋଲି । ଏବେ କଡ଼ାକଡ଼ି ହେଉଚି; ନହେଲେ, ମାଷ୍ଟର୍ ଯିଏ ହେଉଥିଲେ, ଭଲ ଆଉକିଛି ପାଇପାରିଲେନାହିଁ ବୋଲି, କର୍ମକୁ ଆଦରି, ଶିକ୍ଷକ ହେଉଥିଲେ । ପାଠପଢୁଥିବା ପିଲା, ପରିଶ୍ରମ କରୁଥିଲେ ମଧ୍ୟ, ସେ ପରିଶ୍ରମର ବିନିମୟମୂଲ୍ୟ ନାହିଁ; କିନ୍ତୁ ଯୋଉ ରକମ ଶ୍ରମଶକ୍ତି ଛାତ୍ର ଆହରଣକରେ, ନିର୍ଦ୍ଦିଷ୍ଟ ପ୍ରକାର ଉତ୍ପାଦନ ଆଉ ନିର୍ଦ୍ଦିଷ୍ଟ ବଜାରର ଚାହିଦା ମେଣ୍ଟାଇବାକୁ ଉପଯୁକ୍ତ । ସମ୍ଭାବ୍ୟ ପରିଣତି ତେଣୁ ଶ୍ରମଜୀବୀଶ୍ରେଣୀ ଠାରୁ ନିଜକୁ ଅଲଗା ମନେନକରିବା । ମାତ୍ର ଯିଏ ବୁଦ୍ଧିଜୀବୀ, ତା ଶ୍ରମଶକ୍ତିର ଧରଣ ଓ ମାର୍କେଟ୍ ଏକେବାରେ ଅଲଗା । ସେଗ୍ରିଗେସନ୍ ବା ନିଃସଙ୍ଗତା ତେଣୁ ଅବଶ୍ୟମ୍ଭାବୀ । ମାତ୍ର ରାଜନୀତିକ ପ୍ରତିରୋଧ ଛିଡ଼ାକରିବାକୁ ଦରକାର ଇଣ୍ଟିଗ୍ରେସନ୍ (ଏକାତ୍ମକତା), ସେଗ୍ରିଗେସନ୍ ନୁହେଁ । ପାର୍ଥକ୍ୟ ସୁସ୍ପଷ୍ଟ, କାହିଁକିନା, ଶ୍ରମଜୀବୀ ଦିନଗୁଜୁରାଣ ମେଣ୍ଟାଇବାକୁ ଯୋଉ କାମକରେ, ବା ଯା ଉତ୍ପନ୍ନକରେ, ତହିଁରେ ସୃଷ୍ଟିଶୀଳତା ଥାଏନା; ପ୍ରାତ୍ୟହିକ ଜୀବନଯାତ୍ରାରେ ଶ୍ରମଜୀବୀ କୌତୂହଳଶୂନ୍ୟ ଉପଭୋକ୍ତା କେବଳ । ସ୍କୁଲ୍-କଲେଜ୍‌ରେ ଛାତ୍ର-ଶିକ୍ଷକ ସଂପର୍କ ବି ଏଇ ଶ୍ରମଜୀବୀ-ବୁଦ୍ଧିଜୀବୀ ନଜିର୍‌ର ଅନୁରୂପ । ଅଧ୍ୟାୟ ଆରମ୍ଭରେ ସାହିତ୍ୟରୁ ତାର ଉଦାହରଣ ଦିଆଯାଇଚି । ଇଉନିଭରସିଟି ଶବ୍ଦଟା ବୁଝାଉଚି ଯା ସର୍ବଜନୀନ, ତାର ପ୍ରତିନିଧି । ଆସିଚି ମଧ୍ୟ ଇଉରୋପରୁ, କିନ୍ତୁ ଶିଳ୍ପବିପ୍ଳବ ଘଟିବା ପୂର୍ବରୁ ତାର ଅଭ୍ୟୁଦୟ । ଅର୍ଥାତ୍, ଯୋଉ ସମାଜର ଭିତ୍ତି ପ୍ରାକ୍-ପୁଞ୍ଜିବାଦୀ ଓ ପ୍ରାକ୍-ଇଣ୍ଡଷ୍ଟ୍ରିଆଲ୍ ବିଶ୍ୱବିଦ୍ୟାଳୟ ସେଇ ସମାଜର ସୁପରଷ୍ଟ୍ରକ୍‌ଚର୍ । ଏତେକାଳ ବଞ୍ଚିରହିଚି, ଅନୁଷ୍ଠାନ ଓ ଭାବାଦର୍ଶର ଅନ୍ୱୟ ଯେହେତୁ ବଜ୍ରକଠିନ । ସମକାଳର ସମାଜର ଭାବାଦର୍ଶ ଧନତାନ୍ତ୍ରିକ । ବିଶ୍ୱବିଦ୍ୟାଳୟର କାମ ଜ୍ଞାନ, ଆଇଡିଆ ଆଉ ମାନବ ଉତ୍ପାଦନ; ଧନତାନ୍ତ୍ରିକ ସମାଜ / ରାଷ୍ଟ୍ର ନିଶ୍ଚୟ ଚାହିଁବ, ଜ୍ଞାନ, ଆଇଡିଆ ଆଉ ମଣିଷ ଏପରି ହେବେ ଯେ ଧନଉତ୍ପାଦନ କାମଟାକୁ କରିଥିବେ ଶିରୋଧାର୍ଯ୍ୟ । ସର୍ବଜନୀନତା ତେବେ ଆସିବ କୁଆଡୁ ? ବଜାର ଯେମିତି ଚାହିଁବ, ଶ୍ରମବିଭାଜନ, ସ୍ପେସାଲାଇଜେସନ୍, ସ୍ୱୟଂକ୍ରିୟ ଯନ୍ତ୍ରପାତି ମାଧ୍ୟମରେ ହିଁ ଜ୍ଞାନକୁ କି ଆଇଡିଆକୁ ଖୋଜିବାକୁ ପଡ଼ିବ । ମାର୍କ୍ସ କହୁଚନ୍ତି, ଜ୍ଞାନାନ୍ୱେଷଣ ସାର୍ଥକ ହୋଇପାରେ ମୂଳଧନକୁ

ଘେରି ଯେତେ ବିବାଦ ଓ ବୈପରୀତ୍ୟ ହୋଇଯିବ ଯେତେବେଳେ ବିଗଳିତ । ଭାଓଲେନ୍ସ ଓ ସେଇ ବୈପରୀତ୍ୟର ଉପଜାତ; ପାଠପଢ଼ିବା କାମଟା ତେବେ ନ୍ୟାଯ୍ୟ ପରଣତିରେ ପହଞ୍ଚିବ କେମିତି ? ପହଂଞ୍ଚି ନପାରିଲେ ଉପୁଜିବ ବିଦ୍ରୋହ; ତାକୁ ଦମନକରିବାକୁ ଆହୁରି ଅଧିକ ହିଂସା । ଅଥଚ ପାଠପଢ଼ିବା ମାନେ ସମାଜର ସମଗ୍ରତାର ଚେତନା-ଅର୍ଜନ; ଖଣ୍ଡିତ କୋଉ ଆଇଡିୟଲଜିର ନୁହଁ । ବିଜ୍ଞଲୋକ ଅବଶ୍ୟ ପର୍ଯ୍ୟାୟଟାକୁ କହୁଚନ୍ତି ଅଭିସରଣ । ଭାଓଲେନ୍ସ ତେବେ ତାର ଅଂଶବିଶେଷ, କାହିଁକିନା, ପ୍ରତିଷ୍ଠିତ ଷ୍ଟ୍ରକ୍‌ଚରଗୁଡ଼ାକୁ ଅନ୍ୟ ବାଟରେ ଅତିକ୍ରମକରିବା ସମ୍ଭବପର ନୁହେଁ । ଜ୍ଞାନ ତ ପୁଞ୍ଜି ନୁହେଁ ଯେ ବ୍ୟାଙ୍କ୍‌ରେ ଟଙ୍କାଭଳି ସ୍କୁଲ୍-କଲେଜ୍‌ରେ ଜମାକରି ରଖିହେବ; ପ୍ରତିବାଦରୁ ବି ବାହାରିପାରେ ଜ୍ଞାନ୍ । ଖାଲି ଜ୍ଞାନ ନୁହେଁ, ଜ୍ଞାନ ଆଉ କର୍ମର ସମନ୍ୱୟ । ଯା କୋଉ ପ୍ୟାକେଜ୍‌ଡ୍ ପ୍ରଡକ୍ଟ ନୁହେଁ, ଯେପରି ସ୍କୁଲ୍-କଲେଜ୍‌ର ପାଠ । ଅର୍ଥାତ୍ ବିକ୍ରୟଯୋଗ୍ୟ ପଣ୍ୟ । ରାଜନୀତିକ ଚେତନା ହୁଏତ ଦେଖାଇଦେବ ଆହୁରି କେତେ ସମ୍ଭାବନା ସୁପ୍ତହୋଇ ରହିଚି ଭାଓଲେନ୍ସ ଭିତରେ, ଯା ବାସ୍ତବ ଓ ଅଧୀତ ବିଦ୍ୟାକୁ ଏକାଠି କରିପାରେ ।

ସ୍ୱତଃସ୍ଫୂର୍ତ୍ତତାକୁ ସରକାରୀ କମିଉନିଷ୍ଟ୍ ମନେକରନ୍ତି ଭ୍ରାନ୍ତଚେତନା, ଫଲ୍‌ସ୍ କନ୍‌ସସ୍‌ନେସ୍ । ସ୍ୱୟଂ ମାର୍କ୍ସ କିନ୍ତୁ, ରାଷ୍ଟ୍ର-ସିଭିଲ୍‌ସୋସାଇଟି-କ୍ଷମତା ଭଳି ଏକ ଟୋଟାଲିଟି କଳ୍ପନାକରିଛନ୍ତି; ଆଉ ତା ଭିତରେ ଦେଖିଛନ୍ତି ଦୁଇଟି ପରିମଣ୍ଡଳ: ସ୍ଫିଅର୍ ଅଵ୍ ନେସେସିଟି, ଆଉ ସ୍ଫିଅର୍ ଅଵ୍ ଫ୍ରିଡମ୍ । ଖାଦ୍ୟ ବସ୍ତ୍ର ଶିକ୍ଷା ସ୍ୱାସ୍ଥ୍ୟ ତଥା ସେଗୁଡ଼ିକର ଉତ୍ପାଦନ ଓ ବଣ୍ଟନ ରହିଚି ପ୍ରୟୋଜନର ପରିମଣ୍ଡଳ ଭିତରେ । ଫ୍ରିଡମ୍‌ର ପରିମଣ୍ଡଳ ମାନେ, ଜୀବନଧାରଣର ପ୍ରାଥମିକ ସର୍ତ୍ତ ପୂରଣହୋଇଯିବା ଉତାରୁ ଅନ୍ୟ ଯୋଉ ଅଭିଳାଷ ଚରିତାର୍ଥକରିବାକୁ ମଣିଷ ଉଦ୍‌ବେଗ ଅନୁଭବକରେ । ମୁକ୍ତି ତେଣୁ ପ୍ରୟୋଜନମେଣ୍ଟାଇବା ବାଧ୍ୟବାଧକତା ଉର୍ଦ୍ଧ୍ୱରେ ସ୍ୱାଧୀନତାର ପରିମଣ୍ଡଳକୁ ଉତ୍ତରଣ । ଅନ୍ୟ ଶବ୍ଦରେ, ସ୍ୱତଃସ୍ଫୂର୍ତ୍ତତା । ମାତ୍ର ଶ୍ରେଣୀବିଭାଜିତ ସମାଜରେ ଉଭୟ ପରିମଣ୍ଡଳ ଉପରେ ରହିଚି ବୁର୍ଜୋୟାର କର୍ତ୍ତୃତ୍ୱ । ତେଣୁ ମୁକ୍ତିର ପରିମଣ୍ଡଳକୁ ପଶିବାକୁ ହେଲେ ପୁଞ୍ଜିର ନିୟନ୍ତ୍ରଣରୁ ବାହାରିଆସିବା ଦରକାର, ବ୍ୟକ୍ତିଗତ ମାଲିକାନାର ଧ୍ୱଂସସାଧନ ବାଟଦେଇ । ପୂର୍ବ-ଇଉରୋପ୍ ଓ ସୋଭିଏଟ୍ ଋଷିଆରେ ସଂପତ୍ତି ଉପରୁ ବ୍ୟକ୍ତିଗତ ମାଲିକାନା ଉଠିଯାଇଥିଲା; ଲୋକଗୁଡ଼ାକ କଣ ପହଞ୍ଚିଥିଲେ ସ୍ଫିୟର୍ ଅଵ୍ ଫ୍ରିଡମ୍‌ରେ ? ଅନ୍ତରାୟ ହୋଇଥିଲା ରାଷ୍ଟ୍ର । ସାମ୍ୟଚେତନାର ଯାନ୍ତ୍ରିକତାରେ ପିଷ୍ଟ ଖଟିଖିଆ ମଣିଷ ମନୁଷ୍ୟତ୍ୱ ମହିମାରୁ ନିର୍ବାସିତହୋଇ ରହିଚି; ଫ୍ରାନ୍ସର ଛାତ୍ରସମାଜ ତେଣୁ କମିଉନିଷ୍ଟ୍ ପାର୍ଟିର ନେତୃତ୍ୱକୁ ଚ୍ୟାଲେଞ୍ଜ୍ ଜଣାଇଚି । ପ୍ରଲେତାରିଆନ୍ ଚେତନା ବୋଲି ଯୋଉ

ଛକ ବନ୍ଧାହୋଇଛି, ଜନଗଣଙ୍କ ଆଚରଣ ସେଥିରୁ ସୂତାଏ ଏପଟସେପଟ ହେଲେ, ବିବାକ ବିବେଚିତହେବେ ନିଶ୍ଚେତନ ଜଡ଼! ଆଉ, ଯୋଉ କନେଷ୍ଟବଲ ଦଳବାନ୍ଧି ଆସି ପିଲାଙ୍କ ଉପରକୁ ଗୁଳିଚଳାଉଚନ୍ତି, ସେମାନେ କଣ ସଚେତନ ନା ଯନ୍ତ୍ରବିଶେଷ? ପିଲାଙ୍କ ଭାଓଲେନ୍ସ ଉପରେ ବିଧିନିଷେଧ ନାହିଁ, ତାକୁ ଯଦି 'ଶ୍ରେଣୀଚେତନା'ର ନିୟନ୍ତ୍ରଣକୁ ଅଣାଯିବ, ଷ୍ଫିୟର୍ ଅବ୍ ଫ୍ରିଡମ୍ ଉପରେ ବଳାତ୍କାର ହେବ ନାହିଁକି? ଛାତ୍ର ପୁଞ୍ଜିର ଦାସ ନୁହେଁ; କାହିଁକିନା, ପୁଞ୍ଜିର ଉତ୍ପାଦନ-ପ୍ରକ୍ରିୟାରେ ଅଂଶଗ୍ରହଣ ନକରିବା ସ୍ୱାଧୀନତା ତାର ରହିଚି। ରାଷ୍ଟ୍ରର ନାହିଁ । ରାଷ୍ଟ୍ର ଯୋଉଠି ଖାଲି କ୍ଷମତା ବଳରେ ରାଜୁତିକରେ, ଘଟିଯାଏ ରାଜନୀତିର ମୃତ୍ୟୁ; କାହିଁକିନା, ରାଜନୀତିର କାମ ହେଲା ସିଭିଲ୍‌ସୋସାଇଟି ତରଫରୁ ରାଷ୍ଟ୍ରଯନ୍ତ୍ରରେ ହସ୍ତକ୍ଷେପ; ରାଷ୍ଟ୍ର ମାଧ୍ୟମରେ ସମାଜ ଉପରେ ପ୍ରଭୁତ୍ୱ ନୁହେଁ । ପ୍ରକୃତ ରାଜନୈତିକ ଦଳ ତେଣୁ ସେଇ ସଂଗଠନ ଯିଏ ରାଷ୍ଟ୍ରକ୍ଷମତାରେ ଅଂଶନେବାକୁ ଚାହେଁନା; ଷ୍ଫିୟର୍ ଅବ୍ ଫ୍ରିଡମ୍ ସ୍ୱାର୍ଥରେ ରାଷ୍ଟ୍ରକୁ ବିହିତ କର୍ତ୍ତବ୍ୟକରିବାକୁ ବାଧ୍ୟକରେ । ଗଣଆନ୍ଦୋଳନ ଭିତରଦେଇ ବାଧ୍ୟକରେ । ସେ ଆନ୍ଦୋଳନ ଯେ ଅହିଂସ ହେବ, ସେ ଗ୍ୟାରେଣ୍ଟି ସିଭିଲ୍‌ସୋସାଇଟି ଦେଇପାରେନା, ରାଷ୍ଟ୍ରର ଏକମାତ୍ର ବଳ ଯେହେତୁ ଅସ୍ତ୍ରବଳ । ପୁରା ବୟାନଟା ନହେଲେ ବି, କଥାଗୁଡ଼ାକ ବାକୁନିନ୍ କହିଥିଲେ ମାର୍କ୍ସଙ୍କୁ। କଥାଟାର ପ୍ରମାଣପାଇଲି, ଦେଖିଲି ଯେତେବେଳେ ଶ୍ୟାମ୍ ବେନେଗେଲ୍‌ଙ୍କ ଛବି *ଅଙ୍କୁର୍*; ଆଠ-ଦଶ ବର୍ଷର ଛୁଆ ଅନ୍ତରାଳରୁ ଟେକାମାରି ଭାଙ୍ଗିପକାଇଚି ଜମିଦାରଘର ଝରକାକାଚ । ଫଲ୍ସ କନ୍‌ସସ୍‌ନେସ୍?

ମାତ୍ର ବକ୍ଷ୍ୟମାଣ ବିଷୟ ଏଠି 'ଶିକ୍ଷା' । ଜଗତଯାକ ଲୋକଙ୍କ ଧାରଣା, ଭଲକରି ପାଠଶାଠ ପଢ଼ିଲେ ଭଲମଣିଷ ହୁଅନ୍ତି । 'ଭଲମଣିଷ' କହିବା ମାତ୍ରକେ ମନକୁ ଆସୁଛି ଅନେକ ମୂଲ୍ୟବୋଧ ଯାହାକୁ ଶ୍ରେୟଃମନେକରୁଁ ଜୀବନରେ, ଏବଂ ନୈତିକତା ପ୍ରତି ଦାୟବଦ୍ଧତା । ପାଠ୍ୟକ୍ରମ ମଧ୍ୟ ତଦନୁଯାୟୀ ତିଆରିହୁଏ । ବୃହତ୍ତର ସମାଜ, ପିତାମାତା, ଶିକ୍ଷକ / ଶିକ୍ଷାବିଦ୍ ଏବଂ ଯୋଉମାନେ ଚାକିରିବାକିରି ଦିଅନ୍ତି— ସମସ୍ତଙ୍କ ପ୍ରତ୍ୟାଶାକୁ ବିଚାରକୁ ନେଇ, କଣ ପଢ଼ାଯିବ, କାହାକୁ ପଢ଼ାଯିବ କି ଭାବରେ ପଢ଼ାଯିବ- ସ୍ଥିରହୋଇଥାଏ । କିନ୍ତୁ ରାଜନୀତି ସାଙ୍ଗରେ ଏ ଶିକ୍ଷାର ସଂପର୍କ କି ରକମ, କେହି କହନ୍ତିନାହିଁ; ବରଂ ଛଳକରନ୍ତି, ରାଜୀନୀତି ଯଦି ପାଠପଢ଼ା ଭିତରକୁ ପଶେ, ପିଲା ବିବାକ ବାଲୁଙ୍ଗା ହୋଇଯିବେ! ହୋଇଚନ୍ତି ବି କ୍ୱଚିତ୍ କଦାଚିତ୍ । ମାନେ, ପାଠପଢ଼ାକୁ ଅବହେଳାକରି ନ୍ୟାୟଅନ୍ୟାୟ ବିବେଚନା ଦ୍ୱାରା ପ୍ରେରିତହୋଇ ପ୍ରତିବାଦ କି ପ୍ରତିରୋଧ ଛିଡ଼ାକରିଚନ୍ତି ଅନ୍ୟ ପିଲାଙ୍କୁ ସାଙ୍ଗରେ ଧରି । ଅଥଚ ଶିକ୍ଷାବ୍ୟବସ୍ଥା ପ୍ରଚଳନକରିଚି ନିଜେ ରାଷ୍ଟ୍ର, ପରିଚାଳନାକରୁଚନ୍ତି ବିଶେଷଜ୍ଞ,

ଫଳାଫଳକୁ ଲକ୍ଷ୍ୟରଖିଚନ୍ତି ଅଭିଭାବକ । ଏଇ ପିତୃତାନ୍ତ୍ରିକ ବ୍ୟବସ୍ଥା ସ୍ୱାଭାବିକଭାବେ ଚାହିଁବନାହିଁ ପିଲା, ପାଠପଢ଼ିବାକୁ ଯାଇ ଅନ୍ୟକାମରେ ମାତିବେ । ତାହେଲେ, ପ୍ରଶ୍ନ ଉଠିବ, କଣ ଏମିତି ପଢ଼ାହେଉଚି ଯେ ନପଢ଼ିଲେ ଜୀବନାଟା ମାଟିହୋଇଯିବ ! ଅର୍ଥାତ୍ ଶିକ୍ଷାବ୍ୟବସ୍ଥା କାହାକୁ କଣ ଦେଇଚି ? ଅନ୍ୟ ଶବ୍ଦରେ, ଯେକୌଣସି ସଭ୍ୟସମାଜରେ ଅତ୍ୟାବଶ୍ୟକ ବୋଲି ଛାତ୍ରକୁ ଯାହା ପଢ଼ାଯାଏ, ପିଲାଟି ପାଖରୁ କଣ ପ୍ରତ୍ୟାଶାକରାଯାଏ ବୋଲି ପଢ଼ାଯାଏ ? ଏ ବିଷୟରେ ତର୍କବିତର୍କ ନହେଲେ, ଯଥାପ୍ରାପ୍ତ ବିଦ୍ୟାକୁ ପାକୁଳି କରିକରି ଯୁଗଯୁଗ ବିତିଯିବ । ବିଶେଷତଃ, ପିତାମାତା ଯା ଚାହାଁନ୍ତି, ଚାକିରିବାକିରି ଯିଏ ଦିଅନ୍ତି, ହୁଏତ ଅନ୍ୟପ୍ରକାର ଯୋଗ୍ୟତା ଚାହାଁନ୍ତି, ସାମାଜିକ ଉତ୍ପାଦନର ଉପଭୋକ୍ତାଙ୍କ ପ୍ରତ୍ୟାଶା ଏଇ ଦୁଇପ୍ରକାର ଅଭିଭାବକଙ୍କ ଚାହିଦାଠାରୁ ମଧ୍ୟ ଭିନ୍ନହୋଇପାରେ। ଅର୍ଥାତ୍ ମୂଲ୍ୟବୋଧ ବା ଭ୍ୟାଲିଉବିବେଚନା ଯେମିତି ସମାନନୁହେଁ, ନୀତି-ଦୁର୍ନୀତି ଭଳି ମରାଲ୍ ବିବେଚନା ସେମିତି ଅଭିନ୍ନ ନୁହେଁ। ଏତେପ୍ରକାର ଅଭିଭାବକଙ୍କ ପକ୍ଷରୁ ନିଷ୍ପତ୍ତି ଗ୍ରହଣକରିବାକୁ ଆଇନ୍-ପ୍ରଣୟନ ଛଡ଼ା ଅନ୍ୟ ଉପାୟ ନାହିଁ । ତେଣୁ 'ରାଜନୀତି' ଭଳି ଉପାଦାନ ପାଠପଢ଼ା ଭିତରକୁ ପଶିବ । ପେସାଦାର ଶିକ୍ଷାବିଦ୍, ଓକିଲ କି ଡାକ୍ତର୍ ଦାବିକରିବା ଭଳି, ଦାବିକରିବେ 'ଶିକ୍ଷା'ର ସଂଜ୍ଞା । ସମସ୍ତେ ରାଜିହେବେ, ପ୍ରାଥମିକ ସ୍ତରରେ ଭାଷାବ୍ୟବହାର ଆଉ ସଂଖ୍ୟାବ୍ୟବହାର ଭଳି ଆକ୍ଟିଭିଟି ହିଁ ଅସଲ ଶିକ୍ଷା । କେହିକେହି କହିବେ, ଶିକ୍ଷା ତ ଜୀବନବ୍ୟାପୀ ସାଧନା, ତାର ପେର୍ ଶେଷ ଅଛି ନା କଣ ? ଅନ୍ୟକେହି କହିବେ, ଜୀବନବ୍ୟାପୀ ସାଧନାକରୁଥିବ ତ ଖାଇବ କଣ ? ଶିକ୍ଷା ଏପରି ଏକ ପଣ୍ୟ, ଯାହାକୁ ଅଳ୍ପ-ବିସ୍ତର ପରିମାଣରେ, ସାଧ୍ୟାନୁଯାୟୀ ଯଜମାନ ବା ଉପଭୋକ୍ତା କିଣିବାକୁ ଆସନ୍ତି । ବିଚାରଟା ତେଣୁ ବ୍ୟାବହାରିକ ମୂଲ୍ୟ ଅଥବା ବିନିମୟମୂଲ୍ୟ ନିରୂପଣ; ଫିଲଜଫି ନୁହେଁ । ରାଷ୍ଟ୍ର ଯେହେତୁ ଶିକ୍ଷାବ୍ୟବସ୍ଥାର ସର୍ବମୟ କର୍ତ୍ତା, ଦାର୍ଶନିକ ଅବବୋଧ ବ୍ୟତିରେକେ ମଧ୍ୟ ପ୍ରଣୟନକରିପାରେ କୋଉହେଲେ ଶିକ୍ଷାନୀତି । କାହିଁକିନା, ମଣିଷ ଆଉ ସମାଜ ଉପରେ ଶିକ୍ଷାର ପ୍ରଭାବ ଗତିଶୀଳ; ଗତିଶୀଳ ବୋଲି, ପିଲା ବଡ଼ହୋଇ କି ରକମ ମଣିଷ ହେବ, ସେ ବିଚାର ମଧ୍ୟ ଗତିଶୀଳ । ସେଇ ଦାର୍ଶନିକତା ସ୍ଥିରକରିଦିଏ କି ବିଷୟ ପଢ଼ାହେବ, କାହାକୁ ପଢ଼ାହେବ, କେତେଦିନ ପଢ଼ାହେବ, କି ପଦ୍ଧତିରେ ପଢ଼ାହେବ, କିଏ ପଢ଼ାଇବେ, କି ରକମ ହେବ ତାଙ୍କ ଯୋଗ୍ୟତା ଇତ୍ୟାଦି ।

ଦାର୍ଶନିକତାର ଆଦ୍ୟପ୍ରବର୍ତ୍ତକ ଅବଶ୍ୟ ପ୍ଲାଟୋ । ତାଙ୍କ ଗୁରୁ ସୋକ୍ରଟିଜ୍‌ଙ୍କ ଆଗରେ ଆଥେନ୍ସ ଭଳି ବହୁଧାଆନ୍ଦୋଳିତ ନଗରରାଷ୍ଟ୍ରର ସମସ୍ୟା ଥିଲା: ଭର୍‌ଟିଉ (ସୁଗୁଣ) ଲୋକଙ୍କୁ ଶିଖାଇହେବ କି ନାହିଁ ? *ରିପବ୍ଲିକ୍* ଡାୟଲଗ୍‌ରେ ପ୍ଲାଟୋ

ସମାଧାନସୂତ୍ର ଭାବରେ ଯୋଉ ଶୃଙ୍ଖଳାର ଅବତାରଣା କରିଚନ୍ତି, ଆଧୁନିକ ରାଜନୀତି ଦୃଷ୍ଟିରେ ସେ ଶୃଙ୍ଖଳା ଆପତ୍ତିଜନକ ସନ୍ଦେହ ନାହିଁ; ମାତ୍ର ରାଷ୍ଟ୍ରୀୟଉ ଶିକ୍ଷାବ୍ୟବସ୍ଥା ପଛରେ ଯେ ନିର୍ଦ୍ଦିଷ୍ଟ ରାଜନୀତିକ ଦର୍ଶନବୋଧ ସଦାସର୍ବଦା ସକ୍ରିୟ ଏଇ ଧାରଣାଟା ତାର ଧ୍ରୁପଦୀ ଦୃଷ୍ଟାନ୍ତ । ସେ ଧାରଣାର ମୂଳପ୍ରତ୍ୟୟ: 'ଉତ୍ତମ'ର ପ୍ରତୀତି ଗଢ଼ିଉଠେ ପରିପାର୍ଶ୍ୱରେ ଯା 'ଉତ୍ତମ' କ୍ରମାଗତ ତାହାରି ସଂସ୍ପର୍ଶରେ, ଏବଂ ସେଥିପାଇଁ, ସମଗ୍ର ଶିକ୍ଷାବ୍ୟବସ୍ଥାର ଲକ୍ଷ୍ୟ ନିତ୍ୟାଭ୍ୟାସ ଦ୍ୱାରା ଉତ୍ତମ ପ୍ରତି ଅଦମ୍ୟ ଆସ୍ପୃହାନିର୍ମାଣ । ତଥାପି ସଂଶୟ ରହିଯାଏ, ଶିକ୍ଷାର୍ଥୀର ଚତୁର୍ଦ୍ଦିଗରେ କୋଉ ଜିନିଷ ଭଲ ଆଉ କୋଉ ଜିନିଷ ନାକରା, ସ୍ଥିରକରିବା କର୍ତ୍ତୃତ୍ୱ ରହିବ କା ହାତରେ? ବିଦ୍ୟାର୍ଥୀ ହାତରେ ଅବଶ୍ୟ ନୁହେଁ। ତେବେ କଣ ଶିକ୍ଷକ ହାତରେ? ପ୍ଲାଟୋଙ୍କ ସ୍ପଷ୍ଟ ଜବାବ, ଫିଲଜଫର୍‌କିଙ୍ଗ୍ ଯୋଉ ରାଜ୍ୟର କର୍ଣ୍ଣଧାର, ଏକମାତ୍ର ସେଇ ରାଜ୍ୟ ହାତରେ । କାହିଁକିନା, ଦୀର୍ଘ ଅନୁଶୀଳନ ବଳରେ ଶୁଭ-ଅଶୁଭ ଅବଗତହୋଇଚି ବୋଲି, ହୋଇପାରିଚି ରଜା; ଏବଂ ରାଜତ୍ୱ ଯେ ତା ସକାଶେ ଉପଭୋଗ୍ୟ, ତା ମଧ୍ୟ ନୁହେଁ । କାହିଁକିନା, ତାର ବ୍ୟକ୍ତିଗତ ସଂପତ୍ତି ନାହିଁ, ନିର୍ଦ୍ଦିଷ୍ଟ କୋଉ ରମଣୀ ନାହିଁ କି ସନ୍ତାନ ନାହିଁ । ପାରିଲେ, ଜୀବନଟା ବିତାଇଦିଅନ୍ତା ଗଣିତ ଓ ଦର୍ଶନବିଦ୍ୟା ଚର୍ଚ୍ଚାରେ, ମାତ୍ର ଜନଗଣଙ୍କ ଚାରିତ୍ରିକ ଉତ୍କର୍ଷସାଧନକୁ ଯେହେତୁ କରିଚି ଜୀବନର ବ୍ରତ, ରାଷ୍ଟ୍ରର ହିତ ହିଁ ତାର ସର୍ବବିଧ ସୁଖ । ନିହିତ ଅଭିରୁଚି ଅନୁଯାୟୀ କିଏ କଣ ପଢ଼ିବ ସେକଥା ତେଣୁ ବିଚାର୍ଯ୍ୟ ନୁହେଁ; ସେଇ କଥା ପଢ଼ିବ କି ପଢ଼ାଇବ, ରାଷ୍ଟ ଯା ସ୍ଥିରକରିବ ଜନକଲ୍ୟାଣ ସ୍ୱାର୍ଥରେ । ଅନ୍ୟ ଶବ୍ଦରେ, 'ଉତ୍ତମ' କି ପଦାର୍ଥ ଏବଂ ରାଷ୍ଟ୍ରହିତ ମଧ୍ୟ କି ଜିନିଷ, ଉଭୟର ଉତ୍ତର ଜାଣିଛି ଏକମାତ୍ର ସରକାର । ପାଠ୍ୟକ୍ରମ, ନିର୍ଘଣ୍ଟ, ପାଠବସ୍ତୁ, ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷକ ନିର୍ବାଚନ, ବିଦ୍ୟାର୍ଥୀର ନିହିତ ପ୍ରବଣତା – ସବୁଗୁଡ଼ାକ ଏକାଧାରରେ ତେଣୁ ଏଡୁକେସନ୍ ଆଉ ପଲିଟିକ୍ସ! କିଭଳି ବିଦ୍ୟାୟତନ ଏଭଳି ଶିକ୍ଷାଦାନ ପାଇଁ ଉପଯୁକ୍ତ, ତା ହେବ ନିଶ୍ଚୟ ରାଜନୀତି ଦୃଷ୍ଟିରୁ ବାଞ୍ଛନୀୟ, କାହିଁକିନା, ଜନ୍ ଷ୍ଟୁଆର୍ଟ ମିଲ୍, ଊନବିଂଶ ଶତକରେ *ଅନ୍ ଲିବର୍ଟି* ବହିରେ ଏ ତତ୍ତ୍ୱକୁ କଟାକ୍ଷକରି ଲେଖିଚନ୍ତି:

A general State education is a mere contrivance for moulding people to be exactly like one another : and as the mould in which it casts them is that which pleases the predominant power in the government, whether this be a monarch, a priesthood, an aristocracy or the majority of the existing generation; in proportion as it is efficient and successful, it establishes a despotism over the mind, leading by natural tendency to one over the body ।

ତାହେଲେ, ଶିକ୍ଷାବ୍ୟବସ୍ଥାକୁ ଜେନେରାଲ୍ ବା ସର୍ବସାଧାରଣ ନକରି ଉପାୟ କାହିଁ? ସାଧାରଣ କରଦାତାର ବ୍ୟୟରେ ଯୋଉ ବ୍ୟବସ୍ଥା ପରିଚାଳିତ, ସେ ବ୍ୟବସ୍ଥା ସର୍ବଜନୀନ ହେବାକୁ ବାଧ୍ୟ, ଏବଂ ସେଇ ସୂତ୍ରରେ ସଂଖ୍ୟାଗରିଷ୍ଠର ଶାସନ ମଧ୍ୟ ଅନିବାର୍ଯ୍ୟ । ରାଜନୀତିକୁ ଛାଡ଼ି ଶିକ୍ଷାନୀତି ତେବେ ନିର୍ଦ୍ଧାରିତହେବ କେମିତି? ମିଲ୍ ଜାଣନ୍ତିନାହିଁ ଉତ୍ତର । ଶିକ୍ଷାର ନୈତିକ ଦାୟବଦ୍ଧତା ତେଣୁ ସାମ୍ଭାବ୍ୟ ରାଜନୀତିକ ଦାୟବଦ୍ଧତା । ପ୍ଲାଟୋଙ୍କ ମୂଳପ୍ରସ୍ତାବ ତେଣୁ ଅପ୍ରତିରୋଧ; କିନ୍ତୁ ସିଦ୍ଧାନ୍ତଗ୍ରହଣ ଏକ୍ଷଣି ଫିଲଜଫର୍-କିଙ୍ଗ୍ କରନ୍ତି ନାହିଁ; କରନ୍ତି କ୍ଷମତାସୀନ ପଲିଟିସିଆନ୍ ।

ଦେଶର ଲୋକ କିନ୍ତୁ ଚାହାଁନ୍ତି ପାଠପଢ଼ି ପିଲା ଭଲମଣିଷ ହେବେ; ଜୀବନଯାପନରେ ନ୍ୟାୟପରାୟଣ ହେବେ; ସମସ୍ତଙ୍କ ପ୍ରତି ସମଦୃଷ୍ଟି ରଖିବେ; ଅନ୍ୟର ଅନିଷ୍ଟ କରିବେନାହିଁ; ସତ୍‌ଉପାୟରେ ଜୀବିକା ଅର୍ଜନକରିବେ, ଇତ୍ୟାଦି । ପଲିଟିସିଆନ୍ ଯେ ସଜ୍ଞାନରେ ଏଇ ମୂଲ୍ୟବୋଧ ଗୁଡ଼ାକ ପ୍ରତି ଶ୍ରଦ୍ଧାଶୀଳ ନୁହେଁ, ଜୋର୍‌କରି କହିହେବନାହିଁ । ତାହେଲେ, ସରକାରୀ ଶିକ୍ଷାନୀତି ଶତକଡ଼ା ଶହେ ରାଜନୀତି ପ୍ରଣୋଦିତ—ଆଂଶିକ ସତ୍ୟ ମାତ୍ର; ଅଥଚ ଶ୍ରେଣୀବିଭାଜିତ ସମାଜରେ ମୂଲ୍ୟବୋଧ ଗୁଡ଼ାକ ଶ୍ରେଣୀସ୍ୱାର୍ଥ ଦ୍ୱାରା ରଞ୍ଜିତ ନହୋଇ ରହିପାରେନା । ନୀତିବୋଧ, ସୌନ୍ଦର୍ଯ୍ୟବୋଧ ପ୍ରଭୃତି ବିବାକ ବିମୂର୍ତ୍ତ ବିବେଚନା ମଧ୍ୟ ଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ହିଁ ପିଲା ଅବଗତହୁଅନ୍ତି । ସେ ବିବେଚନାକୁ ରାଜନୀତିକ କହିବା ହୁଏତ ସଂଗତ ନୁହେଁ; ଏବଂ ମାତ୍ରାଟା ଯୋଉଠି ସ୍ପଷ୍ଟତଃ ରାଜନୀତି, ଅନ୍ତତଃ ପାର୍ଟି-ପଲିଟିକ୍ସ ହୋଇପାରେନା । କିନ୍ତୁ 'ଉତ୍ତମ ଜୀବନ' ପକ୍ଷରେ ସମଦୃଷ୍ଟି ବା ଇକୋଆଲିଟି ଯଦି ଅପରିହାର୍ଯ୍ୟ, ଆମ ସମାଜରେ ସମଦୃଷ୍ଟି ତେବେ ଗୋଟାପଣେ ରାଜନୀତି । ବୋଲିବା ବାହୁଲ୍ୟ, ଜଷ୍ଟିସ୍ ବା ନ୍ୟାୟପରାୟଣତା ମଧ୍ୟ ସମଦୃଷ୍ଟିରୁ ଅବିଭାଜ୍ୟ । ସୋକ୍ରଟିଜ୍ ଯାହାକୁ 'ଭର୍‌ଟିଉ' କହିଚନ୍ତି, ପ୍ରକୃତ ପ୍ରସ୍ତାବରେ ଅନେକ ଗୁଡ଼ାଏ ଗୁଣର ସମାହାର; ଯା ଭିତରେ ଜଷ୍ଟିସ୍ ଆଉ ଇକୋଆଲିଟିର ଗୁରୁତ୍ୱ ସର୍ବାଧିକ । ଏବଂ, 'ଉତ୍ତମ-ଜୀବନ'କୁ ଅନମନୀୟ କୋଉ ସଂଜ୍ଞା ଭିତରେ ବାନ୍ଧିପକାଇ ନଥିଲେ ମଧ୍ୟ, କହିଚନ୍ତି, an unexamined life is not worthliving । ଇକୋଆଲିଟି ଅଭାବରେ ଜଷ୍ଟିସ୍ ଯେମିତି ଅକର୍ମଣ୍ୟ, ପଲିଟିକ୍ସ ଅଭାବରେ ମରାଲିଟି ସେମିତି ସ୍ଥୂଳବୁଦ୍ଧି । ସର୍ବସାଧାରଣ ହିତ ସକାଶେ ରାଜନୀତି ବ୍ୟକ୍ତିଗତ ସ୍ୱାଧୀନତା ଉପରେ ହସ୍ତକ୍ଷେପକରେ; ଇକୋଆଲିଟି ଭଳି ମୂଲ୍ୟବୋଧରୁ ତେଣୁ ଉତ୍ସାରିତ ସେଇ ହସ୍ତକ୍ଷେପ । ସେମିତି, ବିଭିନ୍ନ ସାମାଜିକବର୍ଗର ସଂପତ୍ତିଗତ ତାରତମ୍ୟରେ ଭାରସାମ୍ୟ ସ୍ଥାପନକରିବାକୁ ରାଜନୀତି କରିଥାଏ ଧନର ପୁନର୍ବଣ୍ଟନ; ଜଷ୍ଟିସ୍ ଭଳି ମୂଲ୍ୟବୋଧ ପୁନର୍ବଣ୍ଟନର

ପ୍ରେରିକାଶକ୍ତି । ମାତ୍ର ଇକୋଆଲିଟି ହେଉ କି ଜଷ୍ଟିସ୍, କହିପାରିବ ନାହିଁ, ଜୀବନରେ କି ଜିନିଷ ଶ୍ରେୟ; ସୋକ୍ରେଟିଜ୍ କହିଚନ୍ତି ଶୌର୍ଯ୍ୟ; ମାତ୍ର ମୁଁ ଭାବୁଚି, ଜୀବନରେ କି ଜିନିଷ ଶ୍ରେୟଃ, ମାନେ, କି ଜିନିଷର ଅନୁପସ୍ଥିତିରେ ଜୀବନଯାପନ ନିରର୍ଥକ, ବିଚାରକରିବାକୁ ସବୁଠୁଁ ବେଶି ଦରକାର କଳ୍ପନାଶକ୍ତି । ମିଲ୍ ଆଶଙ୍କାକରିଚନ୍ତି, ପଢ଼ାଶୁଣା ଏକାରକମ ହେଲେ, ପିଲାଗୁଡ଼ାକ ବି ହୋଇଯିବେ ଏକାରକମ । ନିର୍ଦ୍ଦିଷ୍ଟ ଗୋଟାଏ ସୀମା ପର୍ଯ୍ୟନ୍ତ ଆଶଙ୍କା ଅମୂଳକ ନୁହେଁ; କିନ୍ତୁ ବାସ୍ତବ ଜୀବନରେ ପଢ଼ାଶୁଣା ଆମକୁ ଏକାରକମ କରିଚି ନା କରିପାରେ? ପାର୍ଥକ୍ୟଟା ତ ତେଣୁ କଳ୍ପନାଶକ୍ତିରେ! କି ପ୍ରକାର ସମାଜ ଉତ୍ତମ-ଜୀବନ ପକ୍ଷରେ ସହାୟକ, କଳ୍ପନାକରାଯାଇପାରେ କେବଳ ପାଠପଢ଼ିବା କାଳରେ। ଡାଫଡିଲ୍ ଫୁଲ କି ନାଇଟିଙ୍ଗେଲ୍ ଚଢ଼େଇର ବର୍ଣ୍ଣନା ପଢୁଚନ୍ତି ପିଲା ଇଂରାଜୀରେ; ଜୀବନରେ ଦେଖିନାହାଁନ୍ତି କେବେହେଲେ; କଳ୍ପନାରେ ଏପରି ଏକ ଭାବରାଜ୍ୟରେ ବିଚରଣକରିପାରୁଚନ୍ତି, ବାସ୍ତବ ଅପେକ୍ଷା ଯା ମନୋହର। କଣ ପଢ଼ିବେ, ତେଣୁ, ମୂଲ୍ୟବୋଧ ସଂପର୍କିତ ଏକ ସିଦ୍ଧାନ୍ତ, ଛାତ୍ରଛାତ୍ରୀ ଯା ନେଇପାରିବେ ନିଜେ ନିଜେ, କାହିଁକିନା, ସ୍କୁଲ୍ କି କଲେଜ୍‌ରୁ ବହାରିଆସିବା ଉତାରୁ କି ଧରଣ ଜୀବନ ତାଙ୍କ ସକାଶେ ମୂଲ୍ୟବାନ, ନିଜେ କଳ୍ପନାକଲେ ସୁଦ୍ଧା, ବାଞ୍ଛନୀୟ କି ନୁହେଁ, ସ୍ଥିରକରିପାରିବେ ବାପା-ମା, ଶିକ୍ଷକ, ଇଉନିଭର୍‌ସିଟି, ପଲିଟିସିଆନ୍ । ସ୍ଥିରକରିପାରିବେ ମାନେ, ବିଦ୍ୟାର୍ଥୀର ଦୂରକଳ୍ପ (=ଭିସନ୍)କୁ ସମୃଦ୍ଧ କରିପାରିବେ ନିଜସ୍ୱ ଅବଦାନ ଦ୍ୱାରା । କୌତୂହଳହୀନ ପେସାଦାର କିନ୍ତୁ ଏଭଳି ଅଭିଭାବକତ୍ୱ କରିବାକୁ ଅଯୋଗ୍ୟ, ଯେତେବଡ଼ ପଣ୍ଡିତ ହୋଇଥାଉ ପଛେ। ବୋଲିବା ବାହୁଲ୍ୟ, ଏ ଅଭିଭାବକତ୍ୱ ମଧ୍ୟ ରାଜନୀତିକ; କାହିଁକିନା, ସିଦ୍ଧାନ୍ତ ନେବାବେଳେ 'କ୍ଷମତା' ପ୍ରଶ୍ନଟାକୁ ଏଡ଼ାଇଦେଇ ହେବନାହିଁ; ଗଣତନ୍ତ୍ର ତ ରାଜନୀତିର ଗୋଟାଏ ରୂପ ମାତ୍ର!

କଳ୍ପନାଶକ୍ତି ମାନେ ଯେହେତୁ କାମଧନ୍ଦାରୁ ଇସ୍ତଫା ନୁହେଁ, କଳ୍ପନା ଓ ପରିଶ୍ରମ ଉଭୟର ଯୌଥ-ଉପଯୋଗ ହୋଇପାରେ ମାର୍କ୍ସ ଯାହାକୁ କହିଚନ୍ତି 'ଫ୍ରିଡମ୍', ସେଇଠି ଅବତରଣ । କାମଧନ୍ଦା ମାଧ୍ୟମରେ ହିଁ କଳ୍ପନାଶକ୍ତି ହୁଏ ପ୍ରସାରିତ; ପରିଶ୍ରମ ତେଣୁ ଖାଲି ଜୀବିକାଅର୍ଜନ ପାଇଁ ନୁହେଁ; ଜୀବିକାଅର୍ଜନକରିବା ଦକ୍ଷତା, ବିନା କଳ୍ପନାଶକ୍ତିରେ ମଧ, ଆୟତ୍ତ କରାଯାଇପାରେ; କିନ୍ତୁ କୌଣସି କିଛିକୁ ବଦଳାଇଦେବା ବିନା କଳ୍ପନାଶକ୍ତିରେ ଅସମ୍ଭବ; 'ଫ୍ରିଡମ୍'କୁ କଳ୍ପନାକରିପାରିଲେ ତ କର୍ମଧାରା ସେ ଦିଗକୁ ଆଗେଇବ! ଅର୍ଥାତ୍ ଭବିଷ୍ୟତ ପ୍ରତିଭାତହେବ ମାନଚିତ୍ର ଭଳି, ବର୍ତ୍ତମାନ ଠାରୁ ତାର ପ୍ରଭେଦ ଜଳଜଳହୋଇ ଭାସିଉଠିବ ନେତ୍ରପଟରେ! ସେଭଳି ବଦଳିଯିବା କି ବଦଳାଇଦେବାର ଆବଶ୍ୟକ ପୂର୍ବସର୍ତ୍ତ ତେଣୁ କଳ୍ପନାକରିବା ସାମର୍ଥ୍ୟ ।

ପାଠ୍ୟକ୍ରମରେ କିଭଳି ମୂଲ୍ୟବୋଧ ଅନ୍ତର୍ଭୁକ୍ତହେବ ନିର୍ଭରକରୁଚି ତେଣୁ ପାଠର ବଦଳାଇଦେବା ସମ୍ଭାବନା ଉପରେ । ଯା ଅଛି ବା ଚାଲିଚି, ତାକୁ ବଦଳାଇଦେବାକୁ ଚେଷ୍ଟା ମାନେ, ତା ଭିତରେ କି ଜିନିଷର ଅଭାବ ଅଛି, କଳ୍ପନାରେ ସେ ଅଭାବକୁ ଦେଖିପାରିବା । ତହିଁଉତାରୁ ଅବଶ୍ୟ ଅଭାବର ସମୀକ୍ଷା; ସମୀକ୍ଷା ଉତାରୁ ପରିବର୍ତ୍ତନର ପରିକଳ୍ପନା ଓ ସଂକଳ୍ପଗ୍ରହଣ । ମାତ୍ର କର୍ମର ଉଦ୍ୟମ ସମୀକ୍ଷା-ସମାଲୋଚନା ବିନା ଯେ ନିରର୍ଥକ, ସେ ବିଷୟରେ ସଚେତନତା ମଧ୍ୟ ଆବଶ୍ୟକ ପୂର୍ବ-ସର୍ତ୍ତ । ଅନ୍ୟ ଶବ୍ଦରେ, ଶିକ୍ଷାବ୍ୟବସ୍ଥାର ସଂସ୍କାର କଥା କହିବାବେଳେ ସବାଆଗେ ଆଖିଆଗରେ ରହିବ କି ରକମ ଜୀବନମାର୍ଗ ତିଆରିକରିପାରିବ ଅଭିପ୍ରେତ ସଂସ୍କାର । ଅର୍ଥାତ୍, ବିଶୁଦ୍ଧ ଏଡୁକେସନ୍, ବିଶୁଦ୍ଧ ମରାଲିଟି ଅଥବା ବିଶୁଦ୍ଧ ପଲିଟିକ୍ସ ଖାଲି କଥାର କଥା; ସବୁଗୁଡ଼ାକ ଆବର୍ତ୍ତରୁ ବାହାରିବ ସେଭଳି ଜୀବନଚର୍ଯ୍ୟା ଯା ସମାଜର ଭବିତବ୍ୟ ।

ସେଇ ଆବର୍ତ୍ତ, ଉପସ୍ଥିତ ସମୟରେ, ଶିକ୍ଷାବ୍ୟବସ୍ଥା ଭିତରକୁ କ୍ୟାପିଟାଲିସ୍ମର ଅଚାନକ ଅନୁପ୍ରବେଶ; ଖାସ୍ କ୍ୟାପିଟାଲିସ୍ମ ନକହି, ତାର 'ଲଜିକ୍' କହିବା ଅଧିକ ପ୍ରାସଙ୍ଗିକ; ଯୋଉ ଲଜିକ୍ ଜୀବନର ବିବାକ ବିଭାବକୁ ମନେକରେ କ୍ରୟ-ବିକ୍ରୟଯୋଗ୍ୟ ପଣ୍ୟଦ୍ରବ୍ୟ, ଏବଂ ସେଇ ସୂତ୍ରରେ, ଶିକ୍ଷା ଓ ସଂସ୍କୃତିକୁ ଏପରି ଏକ ଷ୍ଟ୍ରକ୍‌ଚର୍ ଯାହାକୁ ନିଜ ସୁପର୍‌ଷ୍ଟ୍ରକ୍‌ଚର୍ (ମାର୍କେଟ୍)ରେ ଅଙ୍ଗୀଭୂତ କରିପାରିଲେ, ତୃତୀୟବିଶ୍ୱର ମନନଜଗତ୍ ମଧ୍ୟ ହୋଇପାରିବ ମୁନାଫା-ସ୍ଫୀକରଣର ଉତ୍ସ ବିଶେଷ । ସେଇ ଉଦ୍ୟୋଗର ପ୍ରାରମ୍ଭିକ ପର୍ବ ଅବଶ୍ୟ ଶ୍ରେଣୀ-ସଂପର୍କିତ ବିଚାରବିବେଚନାକୁ ପାଠ୍ୟକ୍ରମରୁ ଅପସାରଣ, ଆଉ ସମାଜବିକାଶ ପ୍ରକ୍ରିୟାରେ ପରିଲକ୍ଷିତ ବୈପରୀତ୍ୟ (କଣ୍ଟ୍ରାଡିକ୍ସନ୍) ଗୁଡ଼ାକୁ ଅବଜ୍ଞା କି ଅବହେଳା । ଇତିହାସର ବସ୍ତୁବାଦୀ ବୀକ୍ଷାକୁ ଶିକ୍ଷାକ୍ରମରୁ ବାଦ୍‌ଦେଇ ନପାରିଲେ, ସ୍ଥୂଳ ହସ୍ତକ୍ଷେପ ଯେହେତୁ ମନନକ୍ଷେତ୍ରରେ ବିକଟ ଶକ୍ତିପ୍ରଦର୍ଶନ, ଇତିହାସର ଇତି, ଭାବାଦର୍ଶର ମୃତ୍ୟୁ ଇତ୍ୟାଦି ଅଳୀକ କିଛି ପ୍ରତିଜ୍ଞାକୁ ବିଦ୍ୟାର ମର୍ଯ୍ୟାଦା ଦିଆଯାଉଚି ଉତ୍ତର-ଆଧୁନିକୀକରଣ ଛଳରେ । ଜର୍ମନ୍ ଦାର୍ଶନିକ ୟୁର୍‌ଗେନ୍ ହାବର୍‌ମାସ୍ ଅବଶ୍ୟ ଉତ୍ତର-ଆଧୁନିକତାକୁ କଟାକ୍ଷକରି କହିଛନ୍ତି, ଆଧୁନିକତା ପ୍ରକଳ୍ପ, ଯା ଦୀପାୟନ ବା ଏନ୍‌ଲାଇଟିନ୍‌ମେଣ୍ଟ୍ ଆନ୍ଦୋଳନରୁ ବାହାରିଥିଲା ଇଉରୋପ୍‌ରେ, ମିଆଦ ନପୂରୁଣୁ ତା ଦିହରେ 'ଉତ୍ତର-' (=post.) ଭଳି ଉପସର୍ଗ ସଂଯୋଗ ଅସଲ ସଙ୍କଟରୁ ବିଦ୍ୟାର୍ଥୀଙ୍କୁ ଘଉଡ଼େଇଦେବ। କାହିଁକିନା, ଅସଲ ସଙ୍କଟ ଆଧୁନିକତାର ଦୁର୍ଗୁଣ ନୁହେଁ; ନବକଳେବର ଇମ୍ପେରିଆଲିଜ୍ମର । ଶିକ୍ଷାବ୍ୟବସ୍ଥାର ସଂସ୍କାର ଯୋଉ ଚିନ୍ତାବିଦ୍‌ଙ୍କୁ ଭାବିତକରୁଛି, କ୍ୟାପିଟାଲିସ୍ମର ବିଶ୍ୱାୟନ ଅଭିଯାନକୁ ବିଦ୍ୟାବୀକିରଣ ପ୍ରେକ୍ଷିତରେ ଭାବୁଛନ୍ତି ଅବାନ୍ତର; ପ୍ରକୃତରେ କିନ୍ତୁ ସାହାଯ୍ୟକରୁଚନ୍ତି

ପୁଞ୍ଜିର ଗ୍ଲୋବାଲାଇଜେସନ୍‌କୁ; ଯେପରି, ମିଶେଲ୍ ଫୁକୋଙ୍କ 'କର୍ତ୍ତାର ମୃତ୍ୟୁ' (ଡେଥ୍ ଅବ୍ ଦି ସବ୍‌ଜେକ୍ଟ) ତତ୍ତ୍ୱ । କର୍ତ୍ତା ଯଦି ମୃତ, ମଲାମଣିଷକୁ ନେଇ ପରିବର୍ତ୍ତନ କଥା ଚିନ୍ତାକରିବା ବାତୁଳତା ମାତ୍ର । ଉତ୍ତରଆଧୁନିକତା କହୁଚି, ନିଜକୁ କି ସମାଜକୁ ବଦଳାଇବା ପ୍ରସ୍ତାବ ଗୋଟାଏ ମହାଆଖ୍ୟାନ, କାହିଁକିନା, ମଣିଷ ଏକ୍ଷଣି ନିଃସହାୟ, କୋଉହେଲେ ସ୍ଥିରପ୍ରତ୍ୟୟ ତାକୁ ଚାଳିତକରେନା, କୋଉହେଲେ ମୂଲ୍ୟବୋଧ କି ମର୍ମାର୍ଥ ତାର ଉପଲବ୍ଧିକୁ ଉଦ୍ଦୀପିତକରେନା, ଜ୍ଞାନ କି ବିଜ୍ଞାନ ମଧ୍ୟ ବଳସଂଚାର କରିପାରେନା ଚିତ୍ତଲୋକରେ; ଏକବିଂଶ ଶତାବ୍ଦୀରେ ପହଞ୍ଚି ପୃଥିବୀ ପ୍ରତ୍ୟକ୍ଷକରୁଚି ବିବାକ ଗ୍ର୍ୟାଣ୍ଡ୍ ନ୍ୟାରେଟିଭ୍‌ର ଅନ୍ତ୍ୟେଷ୍ଟି । ସ୍ପଷ୍ଟତଃ, ଏ ବିଚାର-ଜଗତରେ ଡାୟଲେକ୍‌ଟିକ୍ସ ବା ଦ୍ୱାନ୍ଦ୍ୱିକତାର ଜାଗାନାହିଁ; ଦ୍ୱାନ୍ଦ୍ୱିକତା ଥିଲେ ଦେଖିପାରନ୍ତା ଦୁନିଆଯାକ ବୈପରୀତ୍ୟ: ଅସମ ସମାଜବ୍ୟବସ୍ଥା, ବ୍ୟାପକ ଧନବୈଷମ୍ୟ, ଫିନାନ୍ସ କ୍ୟାପିଟାଲ୍ ଦ୍ୱାରା ନିର୍ବିତ୍ତଙ୍କୁ ଦୋହନ, ପୃଥିବୀର ଅଧେ ଲୋକଙ୍କ ଜୀବନରେ ଅନ୍ନକଷ୍ଟ, ଅଶିକ୍ଷା, ଅପୁଷ୍ଟି, ଅନ୍ଧକାର । ସେଇଭଳି, ନବ୍ୟ ଉଦାରବାଦ ଦୃଷ୍ଟିରେ ସଂସ୍କୃତିଗୁଡ଼ାକ କୁଆଡ଼େ 'ମଲ୍ଟିକଲ୍‌ଚରାଲ୍', ଆଉ ଶିକ୍ଷା କୁଆଡ଼େ ଛନ୍ଦିହୋଇପଡ଼ିଚି 'ପଲିଟିକ୍ସ ଅବ୍ ଡାଇଭର୍‌ସିଟି' ଜାଲରେ; ଅର୍ଥାତ୍, ଶିକ୍ଷାର କୋଉହେଲେ ସର୍ବଜନୀନ ଲକ୍ଷ୍ୟ ନାହିଁ, ଅଛି କେବଳ ବିକ୍ଷିପ୍ତ ଖଣ୍ଡିତ ଗୃହପାଳିତ ପଶୁମାନଙ୍କ ତାଲିମ୍ ! ଲକ୍ଷ୍ୟକରିବା କଥା, ପଲିଟିକ୍ୟାଲ୍ ଇକନମି ସଂପର୍କରେ ଶିରପୀଡ଼ା ଜମାରୁ ନାହିଁ, ସଂସ୍କୃତିର ପ୍ରତିନିଧିତ୍ୱହିଁ ପାଉଛି ଗୁରୁତ୍ୱ । ସଂସ୍କୃତିର ଢଙ୍ଗରଙ୍ଗ ଯେ ଇକନମି ଦ୍ୱାରା ପାଏ ଆକାର-ପ୍ରକାର, କୋଉହେଲେ ରାଜନୀତିକ ଭାବାଦର୍ଶକୁ ଆକ୍ରମଣକରିବା ବେଳେ, ଭୁଲିଯିବା କଥାନୁହେଁ । ଷାଠିଏ ଦଶକ ଶେଷଆଡ଼କୁ ପ୍ରତିଘାତ ଆସିଚି ତେଣୁ ବ୍ରାଜିଲ୍‌ରୁ, ପାଉଲୋ ଫ୍ରେଇରେ ପ୍ରଚାର କରିଚନ୍ତି ବିପରୀତ ଶିକ୍ଷାତତ୍ତ୍ୱ । ଖାଲି ତତ୍ତ୍ୱଗଠନ ନୁହେଁ (ଦ୍ର. *ପେଡାଗଜି ଅବ୍ ହୋପ୍*, ୧୯୯୪), ପରୀକ୍ଷାକରିଚନ୍ତି ବ୍ରାଜିଲ୍‌ର କୃଷକକୁଳ ଭିତରେ, ଯା ପାଇଁ, ସାମରିକ ଶାସନ ନିକ୍ଷେପକରିଛି ତାଙ୍କୁ କାରାଗାରରେ । ଶିକ୍ଷାବ୍ୟବସ୍ଥାର ସ୍ଥିତ ଷ୍ଟ୍ରକ୍‌ଚର୍ ଯେ ସିଭିଲ୍‌ସୋସାଇଟିକୁ ବଦଳାଇ ପାରିବନାହିଁ, ଖାଲି ସାମ୍ବିଧାନିକ ଉପାୟରେ ପୁରୁଣା ଆଧିପତ୍ୟ(ହିଗେମନି) ଗୁଡ଼ାକୁ ଯେ ସମାଜଭିତରୁ ନିର୍ମୂଳ କରିହେବନାହିଁ - ଏଇ ଉପଲବ୍ଧିରୁ 'ଅପ୍ରେସନ୍' (=ପୀଡ଼ନ) କୁ ରଖିଚନ୍ତି ଶିକ୍ଷାତତ୍ତ୍ୱ କେନ୍ଦ୍ରରେ; ଅର୍ଥାତ୍ ଶିକ୍ଷାବ୍ୟବସ୍ଥାର ବିଦ୍ୟମାନ ସଂଗଠନଟା ବାସ୍ତବିକ ଏକ ପୀଡ଼ନକାରୀ ସଂଗଠନ; ତାର ପାଠ୍ୟକ୍ରମ ଓ ପଠନପାଠନ ବନ୍ଦୋବସ୍ତ ଏଭଳି ଢ଼ଙ୍ଗରେ ତିଆରି ଯେ ପୀଡ଼ାଦେଇଦେଇ ଛାତ୍ରକୁ ଶିକ୍ଷିତକରେ ! ନୂତନ ଶିକ୍ଷାପଦ୍ଧତିର କର୍ତ୍ତବ୍ୟ ସେଥିପାଇଁ ଅପ୍ରେସର୍ ଆଉ ଅପ୍ରେସନ୍ ଭଳି ଦ୍ୱୈତବାଦକୁ ଜ୍ଞାନଚର୍ଚ୍ଚାରୁ ନିଷ୍କାସନ । ରାଜନୀତିକ

ପରିଭାଷାରେ, ହିଗେମନିର ବିଲୋପ । ଫ୍ରେଇରେ ଏଇ ନିଃଶବ୍ଦ ପୀଡ଼ନ ମୂଳରେ ଦେଖୁଚନ୍ତି ଔପନିବେଶିକତାରୁ ଉଦ୍‌ଗତ ସଂଘାତ, ଯୋଉ ସଂଘାତ ପ୍ରେକ୍ଷିତରେ ଛାତ୍ରର ମେଦିନୀଦୃଷ୍ଟି ତିଆରିକରେ ସ୍ଥିତ ଶିକ୍ଷାବ୍ୟବସ୍ଥା ଜୀବନ ଓ ଜଗତ୍ ସମ୍ବନ୍ଧରେ; ଅର୍ଥାତ୍, ସାମ୍ରାଜ୍ୟବାଦୀର ଆପଣା ଦୃଷ୍ଟିରେ ପୃଥିବୀକୁ ଦେଖିବାକୁ / ବୁଝିବାକୁ ଶିଖାଏ (ଯେପରି, ମୁଦ୍ରାଯନ୍ତ୍ରରୁ ଯା ନିର୍ଗତହୁଏ, ତାହା ହିଁ ଅକାଟ୍ୟ ସତ୍ୟ) । ତେଣୁ ଅନ୍ୟାୟ ଆଉ ଅନ୍ୟାୟରୁ ନିର୍ଗତ ଦୁର୍ଦ୍ଦଶା ପ୍ରତି ସମୀକ୍ଷାମୂଳକ ମନୋଭାବ ତିଆରିକରି ନପାରିଲେ ପେଡାଗଜି (=ବିଦ୍ୟାବିକୀରଣ) 'ଶିକ୍ଷା' ପଦବାଚ୍ୟ ହୋଇପାରେନା; ଛାତ୍ରକୁ ବୁଝିବାକୁ ପଡ଼ିବ ଏକ୍ଷଣି ତା ନିଜ ଅବସ୍ଥାଟା ପୃଥିବୀର ଅବସ୍ଥା ସାଙ୍ଗରେ କେତେ ଭାବରେ ଜଡ଼ିତ । ଏବଂ ଖାଲି ବୁଝିପାରିଲେ ଶିକ୍ଷା ସରିଯିବନାହିଁ, ବୁଝିପାରିବା ହେବ ସାମୂହିକ କୋଉଁ ନା କୋଉଁ ଉଦ୍ୟୋଗ ସାଙ୍ଗରେ ନିଜକୁ ଯୁକ୍ତକରିବାକୁ ଅନୁପ୍ରେରଣା ।

ଆର୍ଥ-ସାମାଜିକ ପରିମଣ୍ଡଳରେ 'ଅପ୍ରେସନ୍'କୁ ଚିହ୍ନଟକରିହେବ ସମାଲୋଚନାମୂଳକ ମନୋଭାବ ଯଦି ଶିକ୍ଷା ମାଧ୍ୟମରେ ତିଆରି ହୋଇଯାଏ; ମାତ୍ର ସାଂସ୍କୃତିକ ପରିମଣ୍ଡଳରେ ପୀଡ଼ନର ଚିହ୍ନାୟନ ଅଧ୍ୟବସାୟସାଧ୍ୟ, ଏବଂ ସେଥିପାଇଁ, ଫ୍ରେଇରେଙ୍କ ଶିକ୍ଷାନୀତିରେ ପାଠପଢ଼ିବାର ସାଂସ୍କୃତିକ ମାତ୍ରା ଉପରେ ଜୋର୍‌ପଡ଼ିଚି ଅଧିକ । ସାଂସ୍କୃତିକ ମାତ୍ରା ମାନେ ବ୍ୟକ୍ତିତ୍ୱଗଠନ ସହିତ ସମାଜସଂଗଠନର ସମ୍ପର୍କ । ନିର୍ଦ୍ଦିଷ୍ଟଭାବେ ଅପ୍ରେସନ୍‌କୁ ସମାଜର ଲକ୍ଷଣବିଶେଷ ଓ ବ୍ୟକ୍ତିତ୍ୱର ସାଂସ୍କୃତିକ ଅଭିଜ୍ଞାନରେ ପରିଣତକରିଚି କେମିତି ପ୍ରଚଳିତ ଶିକ୍ଷାବ୍ୟବସ୍ଥା । ଫ୍ରେଇରେଙ୍କ ଧାରଣା, ଦଳିତ (=ଅପ୍ରେସ୍‌ଡ୍) ହିଁ ସଂସ୍କୃତିର ନିର୍ମାତା, ଅଥଚ ପ୍ରଜନ୍ମ ଉତାରୁ ପ୍ରଜନ୍ମ ସାଂସ୍କୃତିକ ସାମଗ୍ରୀର ମାଲିକାନାରୁ ଖାଲି ବଞ୍ଚିତନୁହେଁ, ଜିନିଷଗୁଡ଼ାକ ଯେ ତାଆରି ହାତରେ ତିଆରି, ସେ ସଚେତନତା ମଧ୍ୟ କାଢ଼ିନିଆଯାଇଚି ତା ଅଧିକାରରୁ। ସେମାନଙ୍କୁ ତେଣୁ ଅକ୍ଷର କି ସଂଖ୍ୟା ଶିଖାଇବା ଆଗରୁ ବୁଝାଇଦେବାକୁ ପଡ଼ିବ ପ୍ରାକୃତିକ ଜଗତ ସହିତ ସଂପର୍କ; ଯେପରି, ମାଟି କି ଗଛବୃଛକୁ 'ପଢ଼ିବେ' କେମିତି । କାହିଁକିନା, ସଂସ୍କୃତିର ଅସଲ ପ୍ରତିନିଧି ହେବାସତ୍ତ୍ୱେ ଯୋଉ ସଂସ୍କୃତିରେ ଦିନାତିପାତ କରନ୍ତି, ଫ୍ରେଇରେଙ୍କ ପରିଭାଷାରେ ତା ସାକ୍ଷାତ୍ 'କଲ୍‌ଚର୍ ଅବ୍ ସାଇଲେନ୍ସ' । ଯୋଉ ସାଇଲେନ୍ସକୁ ଲାଳନକରେ ହିଗେମନି । ଫ୍ରେଇରେ ଉଦାହରଣ ଦେଇଚନ୍ତି ଜଣେ ମହିଳାର, ଯିଏ କାଦୁଅଚେଲାରୁ ହାଣ୍ଡିଆଟିକା ଗଢ଼େ । ଫୁଲଦାନିର ଛବି ଦେଖାଇ ପଢ଼ାଇବାକୁ ଆରମ୍ଭକଲେ ପାଉଲୋ, ପ୍ରକୃତି ସହିତ ମଣିଷର ସଂପର୍କ: During a discussion of this situation in Cultural Circle..... I was moved to hear a woman say with emotion, ' I make culture. I know how to

make that (the vase)' । ଏ ବାଟରେ ପ୍ରାକ୍‌ଇତିହାସ ଆଉ ଇତିହାସ କେମିତି ଖଟିଖିଆ ମଣିଷର ଅଚେତନ-ଅବଚେତନରେ ପାହାଚ-ପାହାଚ ହୋଇ ଶୋଇରହିଚି, ଉପରକୁ ଉଠିଆସେ। ସେଇ ସ୍ତରଗୁଡ଼ାକୁ ଢ଼ାଙ୍କିପକାଇଚି ସାମ୍ରାଜ୍ୟବାଦୀ ଶିକ୍ଷାୟନ । କିନ୍ତୁ ଶିକାରୀର ବନ୍ଧୁକ? ଛାତ୍ର କହିଚନ୍ତି, ପଶୁପକ୍ଷୀ ମାରିବାକୁ ସୁବିଧା ହୋଇଚି ଯେମିତି, ହିଂସ୍ରଜନ୍ତୁ କବଳରୁ ଆତ୍ମରକ୍ଷା ମଧ୍ୟ ସେମିତି । ଫ୍ରେଇରେ ବୁଝାଇଚନ୍ତି, only to the extent that it contributes to the humanization of man, and is employed towards his liberation । ଯୁଦ୍ଧୋତ୍ତର ପୃଥିବୀ (୧୯୪୫) କୁ ରାଷ୍ଟ୍ର କେମିତି ବ୍ୟାଖ୍ୟାକରେ, ପ୍ରଚଳିତ ଶିକ୍ଷାବ୍ୟବସ୍ଥା ସେଇ ବ୍ୟାଖ୍ୟାର ବାହକ । ଫ୍ରେଇରେ ସେଇ ବ୍ୟାଖ୍ୟାର ଏକାଧିପତ୍ୟକୁ ଆହ୍ୱାନଜଣାଇଚନ୍ତି ଶୀକ୍ଷାର୍ଥୀକୁ 'ଦୁର୍ଗତ' ଭୂମିକାକୁ ଓହ୍ଲାଇଆଣି । ଏବଂ ଦୁର୍ଦ୍ଦଶାରୁ ମୁକୁଳିବା ବାଟ ବି ବତାଇଦେଇଚନ୍ତି ପେଡାଗଜି ମାଧ୍ୟମରେ । ସେଥିରେ 'ଆଧୁନିକତା' , 'ଉନ୍ନୟନ' ପ୍ରଭୃତି ଯୁଦ୍ଧୋତ୍ତର ଦୂରକଳ୍ପ ପ୍ରତି ଅସମ୍ମତି ରହିଚି ଯେତିକି, ସଂଳାପ ଚଳାଇଯିବାର ଅବକାଶ ତତୋଧିକ । କିନ୍ତୁ ଭାରତୀୟ ରାଷ୍ଟ୍ରର ଚରିତ୍ର ଧୂର୍ତ୍ତ; ଆରମ୍ଭକରିଦେଇଚି ସର୍ବଶିକ୍ଷା ଅଭିଯାନ; ଉପରକୁ ଦିଶୁଚି ଝକଝକ, ତଳେ କୁହୁଳୁଚି ବାଧ୍ୟବାଧକତା । ନୈଶବ୍ଦ୍ୟର ସଂସ୍କୃତି । ଯା ଚାଲିଚି, ତାକୁ ଆଖିବୁଜି ପାଟିବୁଜି ମାନିନେବାକୁ ପ୍ରରୋଚନା । ଅଥଚ ଫ୍ରେଇରେ ଚାହିଁଚନ୍ତି ସର୍ବଜନୀନ ଶିକ୍ଷା ମାଧ୍ୟମରେ ଉପନିବେଶୋତ୍ତର ସମାଜର ପୁନର୍ଗଠନ । ସେ କାମ୍, ଅବଶ୍ୟ ଅଶିଦଶକରେ ଇମର୍‌ଜେନ୍ସି ବେଳକୁ ଖତମ୍ ହୋଇଯାଇଚି । ଏଣିକି କେବଳ 'କ୍ଷମତା'ର ଲୀଳା । ପ୍ରତିକ୍ରିୟାରେ ପିଲା କାନ୍ଧକୁ ଉଠାଇନେଉଚନ୍ତି ବନ୍ଧୁକ । ମାତ୍ର ଫ୍ରେଇରେ, ଗ୍ରାମ୍‌ସ୍କିଙ୍କ ଭଳି, ଭାବିଥିଲେ ଦମନପୀଡ଼ନ ବିରୋଧରେ ସଂଗ୍ରାମ ବି ହୋଇପାରିବ ଗଣତାନ୍ତ୍ରିକ, ଯଦି ଅନୁପ୍ରେରଣା ଆସେ ପରିବର୍ତ୍ତିତ ସାଂସ୍କୃତିକ ପରିମଣ୍ଡଳରୁ । ଫ୍ରେଇରେ ଏଭଳି ଭାବିବାଯୋଗୁଁ, 'କ୍ଷମତା'କୁ ଶିକ୍ଷା ଦ୍ୱାରା ମୁକାବିଲାକରିବା ଜୀବନଦର୍ଶନକୁ ବିରୋଧକରିଚନ୍ତି ପାଶ୍ଚାତ୍ୟ ଶିକ୍ଷାବିଦ୍; ମାତ୍ର ଉତ୍ତରରେ (ଦ୍ର. *ହାରଭାଡ଼ ଏଡୁକେସନ୍ ରିଭିଉ,* ଫଲ୍, ୧୯୯୫) ଫ୍ରେଇରେ ଲେଖିଚନ୍ତି: I think it is an ethical duty for educators to intervene in challenging students to critically engage with their world so they can act upon it and on it. I do not accept the present philosophical posture in which truth is relative and lies and truths are merely narratives. They have the right to say so. They also have the right to say, as some thinkers have been saying, that with the fall of communism we have reached the end of history. They have

all the right to propose, as I also have the right to reject their proposals. I would have to point out that history continues, and I cannot remain silent before an error. By the same token, if a student wants to kill himself in front of me in my class, I cannot remain neutral. I must intervene, as I must intervene in teaching the peasants that their hunger is socially constructed and work with them to help identify those responsible for this social construction, which is in my view, a crime against humanity.

ଏଥିରୁ ବୁଝିବା କଥା, ହସ୍ତକ୍ଷେପ ନକରିବା ଭଳି ଦାର୍ଶନିକତା ପ୍ରତି ଫ୍ରେଇରେଙ୍କ ବୌଦ୍ଧିକ ଆପତ୍ତି, ଏବଂ ଶିକ୍ଷାତତ୍ତ୍ୱ ଉପରେ ସେ ଆପତ୍ତିର ପ୍ରଭାବ । ଶିକ୍ଷିତହୋଇ ଛାତ୍ର ଅପ୍ରେସର୍-ଅପ୍ରେସ୍‌ଡ୍ ସଂପର୍କଟାକୁ ଓଲଟାଇ ଦେବ, ଏଭଳି ଅଭିପ୍ରାୟ ଜାଗାରେ ପୀଡ଼କ-ପୀଡ଼ିତ ବିପରୀତ ଯୁଗ୍ମପଦର ସମୂଳ ଉତ୍ପାଟନ ତାଙ୍କ ଶିକ୍ଷାନୀତିର ଲକ୍ଷ୍ୟ । ଶିକ୍ଷକର କର୍ତ୍ତବ୍ୟ ତେଣୁ 'ଏଥିକ୍ୟାଲ୍', ପଲିଟିକ୍ୟାଲ୍ ନୁହେଁ । ନୁହେଁ ବୋଲି, ହତାଶା କି ନାଇଲିଜ୍ମ ତାଙ୍କ ଚିନ୍ତାଗଠନରେ ସ୍ଥାନପାଇନାହିଁ; ଉଭୟ କ୍ୟାପିଟାଲିଜ୍ମ ଆଉ ଇମ୍ପିରିଆଲିଜ୍ମ ଚେତନାର ବିକଟନ ପାଇଁ ବିବେଚିତ ହୋଇଚି ଅନ୍‌ଏଥିକ୍ୟାଲ୍; ଏବଂ ଉଭୟକୁ ଅତିକ୍ରମ କରିବାର ଉପାୟ ପଲିଟିକ୍ୟାଲ୍ । ଶିକ୍ଷାନୀତି ପ୍ରଣୟନ କରିବାବେଳେ ଜରୁରି ଏଇ ପ୍ରତୀତି କିନ୍ତୁ ଔପନିବେଶିକତାରୁ ସଦ୍ୟମୁକ୍ତ ଭାରତରାଷ୍ଟ୍ରର ଉନ୍ନୟନ-କୋଳାହଳ ଭିତରେ ମନସ୍ୱୀଙ୍କୁ ଲାଗୁଚି ଅଭିସମ୍ପାତ ! 'କ୍ଷମତା'କୁ ଦରକାର ଖାଲି ନୈଶବ୍ଦ୍ୟର ସଂସ୍କୃତି; ପାଉଲୋ ଫ୍ରେଇରେଙ୍କ ଭାଷାରେ, କଲ୍‌ଚର୍ ଅବ୍ ସାଇଲେନ୍ସ, ଏଥିକ୍ସ ଆଉ ପଲିଟିକ୍ସ ଯେହେତୁ 'merely narratives' !

□□□

# ନିୟତି ସହିତ ଅଭିସାର

ସେହିଭଳି ଗୋଟିଏ ନ୍ୟାରେଟିଭ୍-ଶୁଣାଇ ବହି ଶେଷକରାଯାଉ । ଲୋଭନୀୟ କୌଣସି ସମ୍ଭାବନାକୁ ନଜରରେ ରଖି ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଶପଥନେବା ବେଳେ, ଜବାହରଲାଲ୍ କହିଥିଲେ, ବିଶ୍ୱ ଯେତେବେଳେ ନିଦ୍ରାମଗନ, ଭାରତ ବାହାରୁଚି ନିୟତି ସହିତ ଅଭିସାରରେ । ସେଇ 'ଟ୍ରାଇଷ୍ଟ ଉଇଥ୍ ଡେଷ୍ଟିନି' ହୋଇଚି ଅଧ୍ୟାୟର ଶିରୋନାମା । ଚାହିଁଥିଲେ, ହୋଇପାରିଥାନ୍ତେ ଖଣ୍ଡିତ ଭାରତର ଏକାଧିପତି; ବ୍ରିଟିଶ୍-ମୂଲ୍ୟମାନରେ ଆବାଲ୍ୟ ଲାଳିତ ଗାନ୍ଧିଶିଷ୍ୟ କିନ୍ତୁ ସମ୍ବରଣକରିଚନ୍ତି ସେ ପ୍ରବଣତା; ମାତ୍ର ଚିନ୍ତା ଆଉ କର୍ମରେ ଆମୃତ୍ୟୁ ରହିଚନ୍ତି ଏକତରଫା, ଇଉନିଲ୍ୟାଟ୍‌ରଲ୍ । ଢେର୍ ବିଶେଷଜ୍ଞଙ୍କୁ ଡାକିଚନ୍ତି, ପରାମର୍ଶ ଲୋଡ଼ିଚନ୍ତି, କିନ୍ତୁ ନିଜେ ଯା ବୁଝିଚନ୍ତି, ଇଞ୍ଚେହେଲେ ଘୁଞ୍ଚିନାହାଁନ୍ତି ସେଥିରୁ । ତାଙ୍କ ପଛକୁ ଝିଅ, ନାତି କି ନାତୁଣୀବୋହୂ ହୋଇଚନ୍ତି ଦେଶର କର୍ଣ୍ଣଧାର; ନିୟତି ସହିତ ଅଭିସାର ତେଣୁ ଚାଲୁରହିଚି । ସ୍ୱାଧୀନ ଭାରତର ଲାଭ-ନୁକ୍‌ସାନ୍ ଭଲ-ମନ୍ଦ ସକାଶେ ଏଇ ରାଜବଂଶକୁ ଦାୟୀକରିବା ସେଥିପାଇଁ ସମୀଚୀନ ।

ଅଭିସାରରେ ବାହାରିବା ବେଳକୁ ଦୃଷ୍ଟିରେ ଆଗେ ପଡ଼ିଥିବ ବ୍ରିଟିଶ୍‌ରାଜତ୍ୱରେ କେତେ ହାନି କି ଲାଭ ହୋଇଚି; ଆଉ ଯୁଦ୍ଧୋତ୍ତର ପୃଥିବୀରେ ସାହେବଙ୍କ ସମକକ୍ଷ ହେବାକୁ ହେଲେ, କୃତ୍ୟସୂଚିରେ ଅଗ୍ରାଧିକାର ପାଇବ କିଭଳି ଆୟୋଜନ କି ଉଦ୍ୟମ । ପ୍ରଥମେ ତ ଆଖିକୁ ଦିଶିଥିବ ଆଙ୍ଗ୍ଲୋସ୍ୟାକ୍ସନ୍ ଜଗତର ଶିଳ୍ପବିପ୍ଳବ । ସଂଘଠିତ ହୋଇଚି ପ୍ରାୟ ଦୁଇଶବର୍ଷ ପୂର୍ବରୁ । ଇଂରେଜ୍ ସେଥିରୁ ବଞ୍ଚିତକରି ରଖିଚି ଭାରତକୁ । ରଖିଚି ବୋଲି, ଦେଶ ଖାଲି ଦରିଦ୍ର ନୁହେଁ, ହଜାରେ ରକମ ବୈଷମ୍ୟରେ ଜର୍ଜର । ପୃଥିବୀ ଇତିହାସରେ ଇଣ୍ଡଷ୍ଟ୍ରିଆଲ୍ ରେଭୋଲିଉସନ୍ ସୂଚନାକରିଚି ଯୁଗାନ୍ତର, କାହିଁକିନା, ଅଠରଶତକ ମଧ୍ୟଭାଗରୁ ପଶ୍ଚିମ ଗୋଲାର୍ଦ୍ଧର ପ୍ରାୟ ସର୍ବତ୍ର ମୁଣ୍ଡପିଛା ଉପାର୍ଜନ ବଢ଼ିଯାଇଚି ପୂର୍ବାପେକ୍ଷା ୧୫ ରୁ ୨୦ ଗୁଣ । ଶିଳ୍ପକ୍ଷେତ୍ରର ପରିବର୍ତ୍ତନ କୃଷି ଓ ପରିସେବା କ୍ଷେତ୍ରକୁ ପ୍ରସାରିତହୋଇଚି ଧୀରେ ଧୀରେ; ଊନବିଂଶ ଶତକ ଦ୍ୱିତୀୟାର୍ଦ୍ଧରେ ଏସିଆରୁ ଜାପାନ କେବଳ ଅନ୍ତର୍ଭୁକ୍ତହୋଇଚି ସମ୍ମିଳିତ ଏଇ ଅର୍ଥବ୍ୟବସ୍ଥା ଭିତରେ ।

୧୯୪୫ ଉତାରୁ ଯୋଉ ଜାଗାଗୁଡ଼ାକୁ ପ୍ରତୀଚ୍ୟ ବୁଦ୍ଧିଜୀବୀ ବିବେଚନାକରିଚନ୍ତି ଏସିଆର ବାଘ, ସେମାନେ ମଧ୍ଯ ଗୋଷ୍ଠୀଭୁକ୍ତହୋଇଚନ୍ତି ଆଧୁନିକୀକରଣ ପ୍ରୟାସରେ; ମାତ୍ର ଚୀନ୍ ଆଉ ଭାରତ ରହିଯାଇଚନ୍ତି ପଛରେ । ଫଳରେ, ଧନବଣ୍ଟନ କ୍ଷେତ୍ରରେ ଦେଖାଦେଇଚି ବ୍ୟାପକ ବୈଷମ୍ୟ; ଉନବିଂଶ ଶତକ ମଧ୍ୟଭାଗରୁ ଏ ବୈଷମ୍ୟ ବଢ଼ିଚାଲିଚି ଅବ୍ୟାହତ । ସ୍ୱାଭାବିକଭାବେ ପ୍ରଶ୍ନଉଠିବ, ଶିଳ୍ପବିପ୍ଳବ ଘଟାଇବାକୁ ସେମାନଙ୍କ ହାତରେ ଏମିତି କଣ ଥିଲା, ଯା ଆମର ନଥିଲା କି ନାହିଁ? କାହିଁକିନା, ବିଶ୍ୱବ୍ୟାପୀ ଏତେ ବଡ଼ ପରିବର୍ତ୍ତନ ଆକସ୍ମିକ ହୋଇପାରେନା, କି ଦୈବାତ୍ କିଛି ଯନ୍ତ୍ରପାତି କି ଉତ୍ପାଦନକୌଶଳ ହାତକୁ ଆସିଗଲା ବୋଲି, ମଣିଷର ଜୀବନଧାରାକୁ ଓଲଟପାଲଟ କରିଦେଇ ପାରେନା । କୃଷିଭିତ୍ତିରୁ ଶିଳ୍ପଭିତ୍ତିକୁ ଉତୁରିବାକୁ ଯେକୌଣସି ସମାଜକୁ ଦୀର୍ଘକାଳୀନ ଟ୍ରାନ୍‌ଜିସନ୍ ଭିତରଦେଇ ଯିବାକୁ ପଡ଼େ । ଅଠରଶତକ ଆଗରୁ ଇଉରୋପ୍ ଓ ଏସିଆ ଭିତରେ ଉତ୍ପାଦନଶୀଳତା କିମ୍ବା ଆୟର ତାରତମ୍ୟ ଦୃଷ୍ଟିଗୋଚର ହୋଇନାହିଁ; ୧୭୮୦ ଉତାରୁ ଇଂଲଣ୍ଡ୍ ପାଇଯାଇଚି ଶସ୍ତାରେ ବିପୁଳପରିମାଣ କୋଇଲା, ଯା ଷ୍ଟିମ୍ଏଞ୍ଜିନ୍‌କୁ କରିଚି ଶିଳ୍ପ-ଉତ୍ପାଦନର ଚାଳିକାଶକ୍ତି; ତା ପଛକୁ ଉପନିବେଶମାନଙ୍କରୁ ପାଇଚି ଶସ୍ତା କପା ଆଉ ଚିନି । ନିଜ ଦେଶର ଜମିଜମାର ସ୍ୱଳ୍ପତା ତେଣୁ ଅନ୍ତରାୟ ହୋଇନାହିଁ । ଜମି ଅଭାବରୁ ଲୋକ ଭୋକରେ ମରିନାହାଁନ୍ତି; ଗାଁ ଛାଡ଼ି ସହରକୁ ଚାଲିଆସିଚନ୍ତି କଳକାରଖାନାରେ କାମକରିବାକୁ । ଜମି / ଚାଷ ଉପରୁ ତେଣୁ ଚାପ କମିଚି, ଶିଳ୍ପଶ୍ରମିକର କର୍ମକୁଶଳତା ବି ବଢ଼ିଚି । ଏକ୍ଷଣି କହୁଚନ୍ତି, 'ହିଉମାନ୍ କ୍ୟାପିଟାଲ୍ ଫର୍‌ମେସନ୍' । ଏଭଳି ମାନବସଂପଦ ଶୂନ୍ୟରେ ତିଆରିହୁଏନା; ଉଦ୍ଦୀପନା ବା ଇନ୍‌ସେଣ୍ଟିଭ୍, ଆନୁଷ୍ଠାନିକ ଜ୍ଞାନ ଆଉ ଅର୍ଥନୀତିର ଗଢ଼ଣ, ପାରସ୍ପରିକ କ୍ରିୟାପ୍ରତିକ୍ରିୟା ବାଟଦେଇ ସୃଷ୍ଟିକରନ୍ତି ମାନବସଂପଦ । ଏ କ୍ରିୟାପ୍ରତିକ୍ରିୟା ଯୋଉଠି ଗଭୀର ଓ ବ୍ୟାପକ, ଅର୍ଥନୀତିରେ ଅଗ୍ରସରତା ସେଠି ଅପେକ୍ଷାକୃତ ଅଧିକ । ଅଠରଶତକ ଇଂଲଣ୍ଡ୍‌ରେ କୋଇଲା କି କପା ଖାଲି ପାଣିଦରରେ ସଂଗ୍ରହକରାଯାଇନାହିଁ, ସେଥିରୁ ତିଆରି ଜିନିଷକୁ ଯୋଉ ଦରରେ ବିକ୍ରିକରାଯାଇଚି, ସେମିତ୍ ବାଷ୍ପଶକ୍ତି ଓ ଅନ୍ୟାନ୍ୟ କ୍ୟାପିଟାଲ୍ ଗୁଡ୍‌ସ ଯେହେତୁ ସେଇ ବିକ୍ରୟମୂଲ୍ୟରୁ ଢ଼େର୍ କମ୍‌ଦରରେ ମିଳିଚି, ମଜୁରିହାର ବି ରହିଚି ଚଢ଼ା, ଋଣ ଉପରେ ସୁଧହାର ଅନେକ କମ୍ । ଶିଳ୍ପକର୍ମୀ ନିଜ ଦକ୍ଷତା ବଢ଼ାଇବାକୁ ତେଣୁ ଲାଗିପଡ଼ିଚନ୍ତି । ଅର୍ଥାତ୍, ଅଠରଶତକରୁ କ୍ରମାଗତ ଦେଢ଼ଶବର୍ଷଧରି, କାରିଗର ସୌଦାଗର କୃଷକ ଆଉ ଶ୍ରମିକ, ଯୋଉ ସଂଗ୍ରାମ ଚଳାଇଯାଇଚନ୍ତି, ତା ଫଳରେ ସୃଷ୍ଟିହୋଇଚି ଏପରିସବୁ ସାମାଜିକ ଅନୁଷ୍ଠାନ ଯା ବିପ୍ଳବାତ୍ମକ ପରିବର୍ତ୍ତନକୁ କରିପାରେ ତ୍ୱରାନ୍ୱିତ । ଅଥଚ ଭାବବାଦୀ

କହୁଚନ୍ତି, ତାଙ୍କ ପଛରେ ଥିଲା 'ଏନ୍‌ଲାଇଟିନ୍‌ମେଣ୍ଟ' ଐତିହ୍ୟ । ଆମ ପଛରେ ଥିଲାନାହିଁ । ଅର୍ଥାତ୍, ଯୁକ୍ତି, ବିଜ୍ଞାନ, ଧର୍ମର ଡଗ୍‌ମାକୁ ଅବଜ୍ଞାକରିବା ଭଳି 'ପ୍ରଗତି' ଧାରଣା ସହିତ ପରିଚିତହୋଇନାହିଁ ଭାରତ । ଏନ୍‌ଲାଇଟିନ୍‌ମେଣ୍ଟ୍ ଯଦି ପଶ୍ଚିମଗୋଲାର୍ଦ୍ଧକୁ ପ୍ରଗତିପ୍ରସୂତ ଅନୁପମ ମନନକ୍ଷମତା ଦେଇଥିଲା, ବିଂଶଶତକରେ ଦୁଇଦୁଇଟା ମହାଯୁଦ୍ଧ ସଂଗଠିତହେଲା କେମିତି ମଝିରେ ମାତ୍ର କୋଡ଼ିଏବର୍ଷ ବ୍ୟବଧାନ ସତ୍ତ୍ୱେ ? ଏବଂ ଏକମାତ୍ର ଇଉରୋପ୍‌ରେ ? ଆଉ, ସେଇ ଦୀପାୟନ ଯଦି ନେଇଆସିଥିଲେ ଭାରତକୁ, କଣପାଇଁ ସଂଗଠିତହୋଇଥିଲା ଏଠି ସ୍ୱାଧୀନତାସଂଗ୍ରାମ ? ୧୮୫୩, ଅର୍ଥାତ୍ ସିପାହୀବିଦ୍ରୋହର ମାତ୍ର ଚାରିବର୍ଷ ଆଗରୁ ମାର୍କ୍ସ ଲେଖିଥିଲେ, England has to fulfil a double mission in India, one destructive, the other regenerating the annihilation of old Asiatic society, and laying the material foundations of Western society in Asia । ଅଚିରାତ୍ ତେଣୁ ପ୍ରଶ୍ନଉଠିଥିଲା, ଇଂରେଜ୍ ଭାରତକୁ 'ଇଣ୍ଡଷ୍ଟ୍ରିଆଲାଇଜ୍' କରୁଚି ନା ଡିଇଣ୍ଡସ୍ଟ୍ରିଆଲାଇଜ୍ କରୁଚି ? ଦାଦାଭାଇ ନାଓରୋଜି, ରମେଶଚନ୍ଦ୍ର ଦତ୍ତ, ସ୍ୱୟଂ ଗାନ୍ଧି ନାନାଦି ବାଗବର୍ଗରେ ପ୍ରମାଣକରିଚନ୍ତି, ଇଂଲଣ୍ଡର ଶିଳ୍ପବିପ୍ଳବ ସଂଘଟିତହୋଇଚି ଭାରତରୁ ସବୁରକମ ସମ୍ବଳ ଚିପୁଡ଼ିନେଇ । ଜାତୀୟତାବାଦୀ କହିଚନ୍ତି 'ଦି ଡ୍ରେଇନ୍'; ବ୍ରିଟିଶ୍ କହିଚି 'ଅଫିସିଅଲ୍ ଟ୍ରାନ୍ସଫର୍' । ଏ ତର୍କର ଉତ୍ତରରେ ପୁଣି କହିଚନ୍ତି ଯେ ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ, ଏଇ ରିତିନୀତି ପ୍ରଚଳନକରି ବହୁବିଭାଜିତ ଭାରତୀୟ ସମାଜକୁ ଇଂରେଜ୍ ଦେଇଚି ସଂହତି, ପ୍ରତିଷ୍ଠାକରିଚି 'ସିଭିଲ୍ ସୋସାଇଟି' ।

*ଭାରତ ଆବିଷ୍କାର* ଓ *ପୃଥିବୀ ଇତିହାସ ପ୍ରତି ଦୃଷ୍ଟିପାତ* ଭଳି ବହି ଲେଖିଥିବା ନେହ୍‌ରୁ କଥାଗୁଡ଼ାକୁ ହାଡ଼େହାଡ଼େ ଉପଲବ୍ଧିକରିଥିବା କଥା । ମାତ୍ର ଡିଇଣ୍ଡଷ୍ଟ୍ରିଆଲାଇଜେସନ୍ ଏକ ଐତିହାସିକ ପ୍ରକ୍ରିୟା; ମାନିନେବା ତେଣୁ ଉଚିତ ଯେ ଆଧୁନିକ କାଳରେ ଯାହାକୁ 'ଇଣ୍ଡଷ୍ଟ୍ରି' କୁହାଯାଉଚି, ଅତିଅଳ୍ପ ହେଲେସୁଦ୍ଧା, ବ୍ରିଟିଶ୍‌ଅମଳରେ ହିଁ ବସିଚି ଭାରତରେ, ଏବଂ ଏକାବେଳକେ ପାରମ୍ପରିକ ଶିଳ୍ପ ଓ କାରିଗରୀ ନୈପୁଣ୍ୟକୁ ଧ୍ୱଂସକରିଦେଇଚି ଭାରତରୁ । ଘଟିଚି ଅବଶ୍ୟ ପୃଥିବୀସାରା; ଏବଂ ଶିଳ୍ପ ଯୋଉଠି ଅର୍ଥନୀତିର ମୂଳାଧାର, ଆଜି ବି ସେଠି ସକ୍ରିୟରହିଚି ଏକାରକମ ଦ୍ୱାନ୍ଦ୍ୱିକ ପ୍ରକ୍ରିୟା । ମନେହେବା ତେଣୁ ସଂଗତ ଯେ ଆର୍ଥସାମାଜିକ ପଲିସି କି ରାଜନୀତି ପ୍ରକୃତରେ ଦାୟୀନୁହେଁ, କାହିଁକିନା, ପରିବର୍ତ୍ତନ ଘଟାଉଚି ପ୍ରଯୁକ୍ତିର ଅଗ୍ରଗତି । ମାତ୍ର ଧନତାନ୍ତ୍ରିକ ଶିଳ୍ପାୟନ (=ମୁନାଫାବଢ଼ାଇବା ପ୍ରତିଯୋଗିତା) ଯୋଉଠି ଏକମାତ୍ର ସ୍ଥିରଲକ୍ଷ୍ୟ, ତିନିଟି ଲକ୍ଷଣ ଉପରେ ନିର୍ଭରକରେ ତାର ସାଫଲ୍ୟ; ଯେପରି, (୧) କୃଷି

ତୁଳନାରେ ମ୍ୟାନୁଫ୍ୟାକ୍‌ଚରିଙ୍ଗ୍ କ୍ଷେତ୍ରରେ ଜାତୀୟ ଆୟର ଅଭିବୃଦ୍ଧି; (୨) ମ୍ୟାନୁଫ୍ୟାକ୍‌ଚରିଙ୍ଗ୍ କ୍ଷେତ୍ରରେ ଲୋକସଂଖ୍ୟାର ଅପେକ୍ଷାକୃତ ଅଧିକ ଅନୁପାତର କର୍ମନିଯୋଗ; ଏବଂ (୩) ଶିଳ୍ପ-ଉତ୍ପାଦନରେ କ୍ରମାଗତ ଅଧିକରୁ ଅଧିକ ମେସିନ୍ ଉପଯୋଗ । ଯେତିକି ପରିସଂଖ୍ୟାନ ମିଳିଚି, ସେଥିରୁ କିନ୍ତୁ ଦିଶୁଚି, ସାରା ଊନବିଂଶଶତକ ବ୍ୟାପୀ ଭାରତରେ ତିନିଟିରୁ ଗୋଟିଏହେଲେ ଲକ୍ଷଣ ବି ପରିଦୃଷ୍ଟ ହୋଇନାହିଁ; ଏବଂ ମ୍ୟାନୁଫ୍ୟାକ୍‌ଚରିଙ୍ଗ୍‌ରେ ମେସିନ୍‌ର ଉପଯୋଗ ଯେହେତୁ ଆଦୌ ବଢ଼ିନାହିଁ, ଜାତୀୟଆୟରେ ଶିଳ୍ପଜାତପଣ୍ୟର ଅଂଶ କମିଯାଇଚି କ୍ରମାଗତ । ଇଂରେଜ୍ ଅବଶ୍ୟ ଝୋଟକଳ ବସାଇ ମ୍ୟାନୁଫ୍ୟାକ୍‌ଚର୍ ବଢ଼ାଇଚି, ମାତ୍ର ଆପଣା କଳକାରଖାନାରେ ବ୍ୟବହାର ତାଗିଦ୍‌ରେ ସେଭଳି କରିବାକୁ ବାଧହୋଇଚି । ସେହିପରି, କୋଇଲା, ଖଣି, ଲୁଗାକଳ କିମ୍ବା ଚା'ବଗିଚା । ଯଦି କୁହାଯିବ ଯେ ତା ଫଳରେ ପ୍ରଯୁକ୍ତିର ଉନ୍ନତିଘଟିଚି, ଆଉ ଶ୍ରମସାଧ୍ୟ କାମରୁ ଲୋକ ଅବ୍ୟାହତି ପାଇଚନ୍ତି, ଦେଖିବାକୁ ହେବ, ମେସିନ୍ ଯାହାକୁ କର୍ମଚ୍ୟୁତ କରିଚି, ବଞ୍ଚିରହିବା ପାଇଁ ତାର ଅନ୍ୟ କୋଉ ସଙ୍ଗତି ଥିଲା କି ନାହିଁ । ଯୋଉ କାରିଗରକୁ ମେସିନ୍ ନିକମାକରିଦେଇଚି, ଚାଷ ଛଡ଼ା ତାଙ୍କର ଅନ୍ୟ ଉପାୟ ନଥିଲା; କିନ୍ତୁ କୃଷିରେ ସୁଦ୍ଧା ବଞ୍ଚିବାର ସମ୍ବଳ ଯୋଗାଡ଼କରିବା ହୋଇପଡ଼ିଚି ପଙ୍ଗୁର ଗିରିଲଂଘନ, କାହିଁକିନା, ଟ୍ୟାକ୍ସେସନ୍ ମାଧ୍ୟମରେ ଆୟର ପୁନର୍ବଣ୍ଟନ, ଅର୍ଥାତ୍ ପ୍ରଯୁକ୍ତି ଯେତେବେଳେ କାରଖାନାର ଉତ୍ପାଦନ ବଢ଼ାଇଦେଇଚି, ବର୍ଦ୍ଧିତ ଉତ୍ପାଦନ ଉପରେ ଶୁଳ୍କବସାଇ ଛଟାଇହୋଇଥିବା ଲୋକଙ୍କୁ କିଛି ଆୟକରିବାକୁ ସୁଯୋଗଦେବା, ବ୍ରିଟିଶ୍ ମନେକରିଚି ମୁନାଫାବୃଦ୍ଧିର ପ୍ରତିବନ୍ଧକ; କାହିଁକିନା, ବିଲାତରେ ନୂଆ ମେସିନ୍ ବସିଲେ, ଭାରତରେ ଶ୍ରମିକ ହୋଇଚନ୍ତି ବେକାର । କେବଳ ଭାରତରେ ଶିଳ୍ପବସାଇ ଏମାନଙ୍କୁ କାମ ଯୋଗାଇଦେଇ ହୋଇଥାନ୍ତା । ସ୍ଥାନଚ୍ୟୁତ କାରିଗରଶ୍ରେଣୀ କିନ୍ତୁ ଚାଷକରିବାକୁ ବାହାରି ଦେଖିଚନ୍ତି, ବଜାର କୋଉହେଲେ ନିୟମରେ ଚଳେନା, କାହିଁକିନା, ସବୁଯାକ ଜମି ଠୁଳହୋଇ ରହିଚି ଜମିଦାରଙ୍କ ଅକ୍ତିଆରରେ ।

କୁହାଯାଇପାରେ, ଚିରସ୍ଥାୟୀ ବନ୍ଦୋବସ୍ତ ତ ଏକରକମ ଭୂସଂସ୍କାର; ଜମି ଉପରେ ବ୍ୟକ୍ତିଗତ ମାଲିକାନା ସୃଷ୍ଟିକରି ଇଂରେଜ୍ ଚାଷୀକୁ ଦେଇଚି ବରଂ ସୁରକ୍ଷା । ତେବେ ତ ଜମିଜମାର ଦେଶବ୍ୟାପୀ ଏକ ମାର୍କେଟ୍ ତିଆରିହୋଇଥାନ୍ତା, ଭୂମିହୀନ ବି ଜମିକିଣି ହୋଇପାରିଥାନ୍ତା ମାଲିକ । ମାତ୍ର ବ୍ରିଟିଶ୍ ଯା ସୃଷ୍ଟିକରିଚି, ମାର୍କେଟ୍ ନୁହେଁ, ମଧ୍ୟସ୍ୱତ୍ୱାଧିକାରୀ । ହରେକ ରକମ ମଧ୍ୟସ୍ୱତ୍ୱାଧିକାରୀ । ମାର୍କେଟ୍ ସେଥିପାଇଁ କୃଷକର ନୁହେଁ, ମଧ୍ୟସ୍ୱତ୍ୱାଧିକାରୀର । ଜମିହସ୍ତାନ୍ତର ତେଣୁ ସହଜନୁହେଁ, କାହିଁକିନା,

ମଧ୍ୟସ୍ୱତ୍ୱକୁ ମଧ୍ୟ ନିଲାମ କରାଯାଇପାରେ; କୃଷକ ସେ ପ୍ରତିଯୋଗିତାରୁ ବହୁ ଦୂରରେ । ତା ଛଡ଼ା ରଜା-ପ୍ରଜାଙ୍କୁ ନେଇ ଗଠିତ ଯୋଉ ସମାଜ, ତାର ଗଢ଼ଣକୁ ଅକ୍ଷତରଖିବା ସଙ୍ଗେସଙ୍ଗେ ଖଜଣାଆଦାୟର ବନ୍ଦୋବସ୍ତକୁ ସ୍ଥାୟୀକରିଦେବା ଥିଲା ଇଂରେଜ୍‌ର ଉଦ୍ଦେଶ୍ୟ । ଏ ବାଟରେ, ମଧ୍ୟସ୍ୱତ୍ୱାଧିକାରୀ ବିନା ପରିଶ୍ରମରେ ଲାଭବାନ୍‌ହେବା ବେଳକୁ, ଖଟିଖିଆ ଚାଷୀ ଖାଲି ପେଟକୁଖାଇ ବଞ୍ଚିରହିଚି କିମ୍ବା ଖଜଣାଦାଉରେ ହୋଇଯାଇଚି ସର୍ବସ୍ୱାନ୍ତ । ଗ୍ରାମାଞ୍ଚଳର ଅଧିକାଂଶ ଲୋକଙ୍କୁ ତେଣୁ କୋଉହେଲେ ସୁରକ୍ଷା ମିଳିନାହିଁ, ସୁରକ୍ଷା ମଧ୍ୟ ମିଳିନାହିଁ ସହରର ଶ୍ରମଜୀବୀଙ୍କୁ, କାହିଁକିନା, ବ୍ରିଟିଶ୍ ଯୋଉ ଇଣ୍ଡଷ୍ଟ୍ରି ବସାଇଛି, ଭାରତରେ ଶିଳ୍ପବିକାଶର ଭିତିସ୍ଥାପନ କରିବାକୁ ବସାଇନାହିଁ, ନିଜ ଦେଶର ଶିଳ୍ପାୟନକୁ ସୁଗମକରିବାକୁ ଯେତିକି ଦରକାର, ସେତିକିମାତ୍ର କରିଦେଇଚି । ଫଳରେ, ଟାଟା-ବିରଳା ଭଳି ମୁଷ୍ଟିମେୟ ବଣିକ ହୁଏତ ଉପକାର ପାଇଚନ୍ତି, ଅଧିକାଂଶ ସହରବାସୀଙ୍କୁ କିନ୍ତୁ ଗ୍ରାସକରିଚି ବେଳକୁବେଳ ଦୁର୍ଭିକ୍ଷ, ଯା ଆହୁରି ବେଶି ମୁନାଫା ଦୋହନପାଇଁ ଯୋଗାଇଦେଇଚି ଉପଲକ୍ଷ୍ୟ । ଅଥଚ ଜାତୀୟ ଆୟର ୩% ରୁ ୪% ନିୟମିତ ପଠାଯାଇଚି ଲଣ୍ଡନ୍‌କୁ; ବିଦେଶୀ ଶାସନକୁ ଭାରତରେ କାୟେମ୍‌ରଖିବାକୁ ଖେସାରତ୍ । ବିଲାତରେ ଯୋଉ ମେସିନ୍ ପୁରୁଣା କି ଅଚଳ, ଭାରତୀୟ ବେପାରୀଙ୍କୁ ବାଧକରାଯାଇଚି କିଣିଆଣି କାମରେ ଲଗାଇବାକୁ । ସେହିପରି, ଜଏଣ୍ଟ୍-ଷ୍ଟକ୍ ବ୍ୟାଙ୍କ୍‌ଗୁଡ଼ାକର ମାଲିକାନା । ଇଂରେଜ୍‌ର ଏକଚାଟିଆ । ଫଳରେ, ଭାରତୀୟ ଉଦ୍ୟୋଗପତି, ଇଉରୋପୀୟ ବ୍ୟବସାୟୀ ଯୋଉ ଉଦାର ସର୍ତ୍ତରେ ଋଣପାଇଚନ୍ତି, ବଂଚିତହୋଇଚନ୍ତି ସେଥିରୁ ବିନା ବ୍ୟତିକ୍ରମରେ ।

ତାହେଲେ, ଭାରତର ସିଭିଲ୍‌ସୋସାଇଟିର ଭିତିପତନ ଦାବିଟା କେତେଦୂର ଯୁକ୍ତିଯୁକ୍ତ ? ସେବ୍ୟ-ସେବକ ସଂପର୍କ ଦ୍ୱାରା ଯୋଉ ସମାଜ ପରିସିକ୍ତ, ବ୍ରିଟିଶ୍ ସେଠି 'ଆଦିବାସୀ' ଭଳି ଏଥ୍‌ନିକ୍ ପରିଚିତି ଉଦ୍‌ଭାବନକରି କ୍ଷାନ୍ତହୋଇନାହିଁ; ନାରୀ-ପୁରୁଷ ସଂପର୍କରେ ପିତୃତନ୍ତ୍ରକୁ ଦେଇଚି ଉତ୍ସାହ, ଯେପରି ବିବାହ କି ସଂପତ୍ତିର ଉତ୍ତରାଧିକାରରେ । ଦେଶର ଅର୍ଥନୀତିକୁ ଏକଛତ୍ର ନକରି ମାର୍କେଟ୍ ଉପରେ ନିର୍ଭରକରେନା, ଏପରି ଅନେକ ସାମାଜିକ ସଂପର୍କ ଭିତରେ ଦମନପ୍ରବଣତାକୁ ପ୍ରଶ୍ରୟଦେଇ, ଯୋଉ ସାମାଜିକ ଷ୍ଟ୍ରକ୍‌ଚର୍‌କୁ ନିରଙ୍କୁଶକରିବାକୁ ଚାହିଁଚି, କୋଉହେଲେ ସୁଶୀଳସମାଜ ତା ଭିତରୁ ଉଠିଆସିପାରେନା; ଏବଂ ପାରେନା ବୋଲି, ସମାଜର ଅଧିକାଂଶ ନରନାରୀ ନିଜକୁ ନିରାପଦ ମନେକରନ୍ତିନାହିଁ କି ସେକ୍ୟୁଲାର୍ ମନେକରନ୍ତିନାହିଁ । ଅର୍ଥାତ୍, ଜୀବନଯାପନ ଯୋଉଠି ନିର୍ବିଘ୍ନ ନୁହେଁ, ସେଠି ନାଗରିକ ସ୍ୱାଧୀନତା ତ କଳ୍ପନା ମାତ୍ର ! ଏ ସମସ୍ୟା ଖାଲି ବ୍ରିଟିଶ୍‌ରାଜତ୍ୱକୁ ବିବ୍ରତକରିନାହିଁ,

ଅଦ୍ୟାବଧି ରହିଚି ଶାସକଶ୍ରେଣୀର ଶିରପୀଡ଼ା । କିନ୍ତୁ, ନିଶ୍ଛିଦ୍ର ସିଭିଲ୍‌ସୋସାଇଟି ସଂଗଠିତ ହୋଇନପାରିବାର ଏକମାତ୍ର କାରଣ ଯେ ବ୍ୟାପକ ସାମାଜିକ ଓ ଅର୍ଥନୀତିକ ଅସାମ୍ୟ, ସେ ବିଷୟରେ ଦ୍ୱିମତର ଅବକାଶ ନାହିଁ । ତା ହେଲେ, ନିୟତି ସହିତ ଅଭିସାର ଶ୍ରେଣୀ-ବିଭାଜନ ବିରୋଧରେ ଅବିରତ ସଂଗ୍ରାମ ଛଡ଼ା ଅନ୍ୟକୋଉ ଅଲୌକିକ ବିସ୍ମୟ ହୋଇପାରେନା । ଅଥଚ ସ୍ୱାଧୀନ ଭାରତରେ ଶ୍ରେଣୀପ୍ରାଚୀର ଦିନକୁଦିନ ଦୃଢ଼ହେଉଚି ପୁରୁଣା କାୟେମୀସ୍ୱାର୍ଥକୁ ଖାଲି କେନ୍ଦ୍ରକରି ନୁହେଁ, ନୂଆ ନୂଆ ଅନେକ ବିଭାଜନ ପ୍ରତିଷ୍ଠାପାଉଚି କ୍ରମାଗତ । ବିଭାଜନର ଉତ୍ସ ଅବଶ୍ୟ ଏକମାତ୍ର ଶ୍ରେଣୀଅସାମ୍ୟ ନୁହେଁ; ବୃହତ୍ତର ପ୍ରେକ୍ଷିତରେ ବିଭେଦ-ସୃଷ୍ଟିକାରୀ ସଂପର୍କ ହୋଇପାରେ ଲିଙ୍ଗ, ଜାତି (କାଷ୍ଟ), ବର୍ଣ୍ଣ, ଆଞ୍ଚଳିକତା, ଭାଷା ବା ଧର୍ମ ଇତ୍ୟାଦି । ନାରୀ-ପୁରୁଷ ବୈଷମ୍ୟ ସାମାଜିକ ଅସାମ୍ୟର ଏକ ବଡ଼ ଉପାଦାନ ହେଲେସୁଦ୍ଧା ଅନେକଦିନ ଯାଏଁ ଆମ ଦୃଷ୍ଟିରେ ପଡିନାହିଁ, ପଡ଼ିନାହିଁ କାହିଁକିନା, ଶ୍ରେଣୀ ସଂପର୍କଟା ହୋଇପଡ଼ିବ ତେବେ ଅବହେଳିତ ଆଉ ଗୌଣ । ଅସାମ୍ୟର ବହୁବିଧ ଉତ୍ସଗୁଡ଼ାକ କଣ ତେବେ ଏକେବାରେ ଅଲଗା ଅଲଗା ବାଟଧରି ଚାଲୁଚି ? ଯେପରି, ଶ୍ରେଣୀ ଅଛି, ଲିଙ୍ଗ ଅଛି, ଜାତି-ବର୍ଣ୍ଣ ଅଛି; ମାତ୍ର କାହାରି ସାଙ୍ଗରେ କାହାରି ସଂପର୍କ ନାହିଁ । ପ୍ରକୃତରେ ଏଗୁଡ଼ାକ କିନ୍ତୁ ପରସ୍ପର ପରିପୂରକ; ଏକ ଅପରକୁ ତୀକ୍ଷ୍ଣ କି ତୀବ୍ର କରିଥାଏ । ହେଲେ ସୁଦ୍ଧା, ଖାଲି ନିଜ ସ୍ୱକୀୟ ଭୂମିକାରେ ଶ୍ରେଣୀ ଗୁରୁତ୍ୱପୂର୍ଣ୍ଣ ନୁହେଁ; ଅସାମ୍ୟର ଅନ୍ୟାନ୍ୟ ଉପାଦାନକୁ ତା ବିବର୍ଦ୍ଧିତ କରିପାରେ; ମାନେ, ଅନ୍ୟାନ୍ୟ ଅସାମ୍ୟର କୁଫଳକୁ ଶ୍ରେଣୀବୈଷମ୍ୟ ବହୁଗୁଣ ବଢ଼ାଇଦିଏ । ଅନ୍ୟାୟ-ଅବିଚାରର ସଂହତ ଉପଲବ୍ଧି ସାଙ୍ଗରେ ଶ୍ରେଣୀକୁ ମିଳାଇବା ଗୁରୁତ୍ୱ ତେଣୁ ଅପରିସୀମ । କାହିଁକିନା, ପ୍ରତ୍ୟେକ ନାଗରିକର ରହିଚି ଶ୍ରେଣୀପରିଚୟ, ଜାତିବର୍ଣ୍ଣ ପରିଚୟ, ଲିଙ୍ଗ ପରିଚୟ, ଭାଷା ପରିଚୟ , ଗୋଷ୍ଠୀ ପରିଚୟ, ଆଞ୍ଚଳିକତା-ପରିଚୟ; କିନ୍ତୁ ଅବଶିଷ୍ଟ ପରିଚୟଗୁଡ଼ାକୁ ଶ୍ରେଣୀପରିଚୟ, ସ୍ଥଳବିଶେଷରେ ଗୌଣକରୁଥିଲେ ସୁଦ୍ଧା, ସାଧାରଣତଃ ତୀବ୍ର କରିଥାଏ। ବୃହତ୍ତର ଏଇ ଉପଲବ୍ଧି ଛଡ଼ା ବୈଷମ୍ୟକୁ ତାର ସମଗ୍ରତାରେ ଉପଲବ୍ଧି କରିହେବ ନାହିଁ । ଗଣତନ୍ତ୍ରରେ କିନ୍ତୁ ବୈଷମ୍ୟକୁ ବିରୋଧକରିବା କଥା ନିର୍ବାଚିତ ଲୋକପ୍ରତିନିଧିଙ୍କର; ସେମାନେ ବି ଗୋଟିଏ ଶ୍ରେଣୀ, ଶାସକଶ୍ରେଣୀ । ସେମାନଙ୍କୁ, ମାନେ, ସର୍ବଜନୀନ ଭୋଟାଧିକାର ଭିତ୍ତିରେ ଗଣତନ୍ତ୍ରକୁ, ଭାରତରେ ସୃଷ୍ଟିକରିଚନ୍ତି ନେହ୍‌ରୁ । କାହିଁକିନା, ଜନକଲ୍ୟାଣକୁ ଜୀବନର ବ୍ରତ ନକଲେ ଭୋଟ୍ ମିଳେନା । ଅଥଚ ଯୋଉ ବୈଷମ୍ୟଗୁଡ଼ାକ ଦ୍ୱାରା ଜନସାଧାରଣ ପୀଡ଼ିତ, ଜନପ୍ରତିନିଧି ମଧ୍ୟ ସେଥିରୁ ମୁକ୍ତନୁହେଁ; ବରଂ ସେଇ ବୈଷମ୍ୟକୁ ପୁଞ୍ଜିକରି ଭୋଟ୍ ଯୁଦ୍ଧରେ ଜିତିବାକୁ

ତତ୍ପର; ଏକମାତ୍ର ଲକ୍ଷ୍ୟ ରାଜନୀତିକ କ୍ଷମତା। କ୍ଷମତା ବଳରେ ବି ବୈଷମ୍ୟ ବିଲୋପ କରାଯାଇପାରେ; ଯେପରି ହୋଇଚି ଚୀନ୍ କି ରସିଆରେ । କିନ୍ତୁ ବିଭାଜନଗୁଡ଼ାକୁ ଦମନ ନକରି ଆହୁରି ଶକ୍ତିଶାଳୀ କରିପାରେ 'ଶ୍ରେଣୀ' । ଏବଂ ଯେହେତୁ କାହାରି ଜୀବନନିର୍ବାହ ଶ୍ରେଣୀନିରପେକ୍ଷ ନୁହେଁ, ଶ୍ରେଣୀବୈଷମ୍ୟକୁ କି ଭାବରେ ଶକ୍ତିଶାଳୀ କରାଯାଏ, ବ୍ୟବସ୍ଥାଗୁଡ଼ାକ ସମସ୍ତଙ୍କ ପ୍ରାତ୍ୟହିକ ଅଭିଜ୍ଞତା । ଯେପରି, ଆମ ସ୍ତ୍ରୀଲୋକଙ୍କ ଭିତରେ ଅସ୍ୱାଭାବିକ ରୁଗ୍ଣତା ଓ ମୃତ୍ୟୁହାର । ଅଥଚ ଦକ୍ଷିଣ ଏସିଆରେ ଅନ୍ତତଃ, ଉଚ୍ଚଶ୍ରେଣୀର ନାରୀ ପୃଥିବୀର ବହୁଦେଶର ନାରୀଙ୍କ ତୁଳନାରେ ନାନାଦି କ୍ଷେତ୍ରରେ ଯଥେଷ୍ଟ ଅଗ୍ରସର; ଏପରିକି ଭାରତ ପାକିସ୍ତାନ ବାଂଲାଦେଶ ଓ ଶ୍ରୀଲଙ୍କା, ସବୁଠିଁ ନାରୀ ହୋଇଚନ୍ତି ପ୍ରଧାନମନ୍ତ୍ରୀ । ଆମେରିକା, ଫ୍ରାନ୍ସ, ଇଟାଲି, ଏପରିକି ଜାପାନରେ, ଅଦୂର ଭବିଷ୍ୟତରେ ଏ ସମ୍ଭାବନା ଦୂର୍ ଅସ୍ତ୍ର! ଅର୍ଥାତ୍, ଆମ ସମାଜରେ ବଡ଼ଘରର ଝିଅବୋହୂ ଲିଙ୍ଗବଞ୍ଚନାର ଶିକାର ନୁହେଁ କି ଶ୍ରେଣୀବଞ୍ଚନାର । ତାଙ୍କ ସକାଶେ ପାର୍ଲାମେଣ୍ଟ୍‌ରେ ୩୩% ସଭ୍ୟପଦ ସଂରକ୍ଷିତକରିବାକୁ ଚେଷ୍ଟାଚାଲିଚି । ଦଳିତ-ନେତା ଜଗଜ୍ଜୀବନ ରାମ ପାର୍ଲାମେଣ୍ଟ୍‌ରେ ଇମର୍ଜେନ୍ସି ଜାରିକରିବା ପ୍ରସ୍ତାବ ଆଣିଥିଲେ; ତାଙ୍କ ଝିଅ ଏକ୍ଷଣି ଲୋକସଭାର ସ୍ପିକର୍ । ଜାତିବର୍ଣ୍ଣ-ବଞ୍ଚନା ଖାଟୁନାହିଁ କି ଲିଙ୍ଗବଞ୍ଚନା ଖାଟୁନାହିଁ । ଅର୍ଥାତ୍, ଶ୍ରେଣୀବୈଷମ୍ୟକୁ ପ୍ରାତିଷ୍ଠାନିକ ଉପାୟରେ ମଧ୍ୟ ଶକ୍ତିଶାଳୀ କରାଯାଇପାରେ ।

ଅନ୍ୟ ଶବ୍ଦରେ, ସାମାଜିକ ବୈଷମ୍ୟ ବିଚାରରେ ଲିଙ୍ଗଭେଦ ଗୁରୁତର ଉପାଦାନ ହେଲେସୁଦ୍ଧା, ସ୍ପଷ୍ଟତଃ, ଶ୍ରେଣୀନିରପେକ୍ଷ ନୁହେଁ, କାହିଁକିନା, ନିମ୍ନଶ୍ରେଣୀର ନାରୀ ସକାଶେ ଲିଙ୍ଗବଞ୍ଚନା ଓ ଶ୍ରେଣୀବଞ୍ଚନା ଏକବିନ୍ଦୁରେ ମିଳିତହୋଇ ଜୀବନକୁ କରେ ଦୁଃସହ । ଝିଅହୋଇ ଜନ୍ମିଚି ବୋଲି, ଗଞ୍ଜଣା ସାଙ୍ଗରେ ମିଶିଯାଏ ଦୈନ୍ୟର ଯାତନା । ସେଇପରି, ନୀଚଜାତିରେ ଜନ୍ମହେବା ତ ଗୋଟିଏ ଅଭିଶାପ, ତା ସାଙ୍ଗରେ ମିଶିଯାଏ ଯଦି ଦାରିଦ୍ର୍ୟ, ଜାତିଗତ ବଞ୍ଚନା ହୋଇପଡ଼େ ଅଭିଶାପ ଠାରୁ ବେଶି ଅସହ୍ୟ । ଏଇ ପ୍ରେକ୍ଷିତରେ ଆଦିବାସୀ-ହରିଜନଙ୍କ ସମସ୍ୟା ବିଚାରକରିବା କଥା, ବିଚାରକରିବା କଥା ଯେ ଜାତି-ଜାତି ଭିତରେ, କି ଧର୍ମୀୟ ଗୋଷ୍ଠୀଙ୍କ ଭିତରେ, ଯେତେବେଳେ ଦ୍ୱନ୍ଦ୍ୱ କି ହିଂସାତ୍ମକ ଘଟଣା ଘଟେ, ସେଗୁଡ଼ାକ ନିଛକ ଆତ୍ମଶ୍ଳାଘାର ଦ୍ୱନ୍ଦ୍ୱ, ନା ଅସଲ କାରଣ ଶ୍ରେଣୀଗତ ଅର୍ଥନୀତି । ଯେପରି, ବିହାରରେ ରଣବୀର ସେନା, ଭୂମିହାର ଓ ରାଜପୁତ୍‌ଙ୍କ ମଦତ୍‌ରେ ତିଆରି; ଆକ୍ରମଣର ଲକ୍ଷ୍ୟ ଭୂମିହୀନ ଦଳିତ । ତା ମାନେ ନୁହେଁ ଯେ ଜାତି ମଣିଷକୁ ଏକତ୍ର କରେନା; ତା ମାନେ, ସଂଘର୍ଷଗୁଡ଼ାକୁ ବୃହତର ପ୍ରେକ୍ଷିତରେ ଦେଖିବା ଦରକାର, ଶ୍ରେଣୀ ଯୋଉ ପ୍ରେକ୍ଷିତର

ଅନ୍ତର୍ଭୁକ୍ତ । ଅର୍ଥାତ୍, ଦୈନ୍ୟ ସହିତ ଜାତି-ଧର୍ମର ଆନ୍ତର୍ସଂପର୍କ ଓ ପରିପୂରକତା । ବଞ୍ଚନାର ବିଭିନ୍ନ କାରଣ ଯେହେତୁ ପରସ୍ପର ନିରପେକ୍ଷ ଭୂମିକାରେ ସକ୍ରିୟନୁହେଁ, ଶ୍ରେଣୀକୁ ଯୁକ୍ତକରିବାକୁ ହେବ ଦାରିଦ୍ର୍ୟ ସାଙ୍ଗରେ; ମାଲିକାନା ଆଉ ନିଃସ୍ୱତା ସାଙ୍ଗରେ; କାମ ଆଉ ପେସା ସାଙ୍ଗରେ ଏବଂ ଏ ଭାବରେ ଶ୍ରେଣୀର ବ୍ୟାପ୍ତି ଯେହେତୁ ବହୁଧା ପ୍ରସାରିତ, ହଜାରେ ରକମ ସଂଘର୍ଷ ଭିତରେ ଦେଖିବାକୁ ମିଳିବ ଶ୍ରେଣୀର ବହିଃପ୍ରକାଶ । ନିମ୍ନବର୍ଗ ଓ ନାରୀର ଶ୍ରେଣୀଚରିତ୍ର ପାସୋରିଗଲେ, ସରକାରୀ ସୁବିଧାସୁଯୋଗ କି ଟଙ୍କାପଇସା ପାଇବେ କେବଳ ତାଙ୍କଭିତରେ ଯିଏ ଅପେକ୍ଷାକୃତ ସ୍ୱଚ୍ଛଳ ।

ଅସାମ୍ୟ ବା ଇନ୍‌ଇକୋଆଲିଟିର ଉପାଦାନ ବିଚିତ୍ର, ଏବଂ ସେଇ କାରଣରୁ ବହିଃପ୍ରକାଶ ମଧ୍ୟ ବିବିଧ । ଶ୍ରେଣୀ ମଧ୍ୟ ବହୁକଣ୍ଠରେ କଥା କହେ; କଥାଗୁଡ଼ାକ ଭିତରେ ଖୋଜିଲେ, ବିରୋଧ ବି ମିଳିପାରେ । କିନ୍ତୁ ସମାଜର ଅବଦମିତ ବର୍ଗର ଅବସ୍ଥା ବୁଝିବାକୁ ଶ୍ରେଣୀର ଭୂମିକା ଯେ ପ୍ରଧାନ, ବହୁକଣ୍ଠର ବିରୋଧ ସେ ପ୍ରାଧାନ୍ୟକୁ ଦୁର୍ବଳକରେନା; ପାର୍ଥକ୍ୟ ବୁଝିବା ସଙ୍ଗେ ସଙ୍ଗେ ତେଣୁ ବୁଝିବାକୁ ପଡ଼ିବ ଆନ୍ତଃସଂପର୍କ । କାହିଁକିନା, ଦୈନ୍ୟର ରୂପଭେଦ ମଧ୍ୟ ଅନେକ; ଯେପରି, ଅର୍ଥନୀତିକ, ରାଜନୀତିକ, ନିରକ୍ଷରତା, ସ୍ୱାସ୍ଥ୍ୟାଭାବ, କ୍ଷମତାହୀନତା, କର୍ମହୀନତା ଇତ୍ୟାଦି । ଏକାବେଳକେ ଏକାଜାଗାରେ ପ୍ରକାଶପାଏନା ହୁଏତ; କିନ୍ତୁ ଖାଲି ଆୟ ମାପରେ ଅର୍ଥନୀତିକ ବଞ୍ଚନା ଧରାପଡ଼େନା । କାହିଁକିନା, ଥିଲାବାଲାଙ୍କ ଅପେକ୍ଷା ନଥିବାବାଲାଙ୍କ ସଂଖ୍ୟା ଏତେ ବିପୁଳ ଯେ ବିଭାଜକ ରେଖାଟାକୁ ଚିହ୍ନିବାକୁ ଡେରିହୁଏନା । ଅଳ୍ପଲୋକ ଥିଲାବାଲା, ଆରାମରେ ଦିନକଟାନ୍ତି; ଅଧିକାଂଶ ଲୋକ କଠୋର ପରିଶ୍ରମ କରିସୁଦ୍ଧା ଯଥେଷ୍ଟ ଉପାର୍ଜନ କରିପାରନ୍ତିନାହିଁ । କିଛି ଲୋକ ରାଜନୀତିକଭାବେ ଖୁବ୍ ଶକ୍ତିଶାଳୀ, ଅବଶିଷ୍ଟ ଲୋକ ପ୍ରାୟ ଅସହାୟ । ପୁଲିସ୍ ଶକ୍ତିଶାଳୀଲୋକଙ୍କୁ ଖାତିର୍‌କରେ, ଅନ୍ୟମାନଙ୍କୁ କ୍ଲେଶଦେବାକୁ ଇତସ୍ତତ କରେନା । ଏଗୁଡ଼ାକ ବୈଷମ୍ୟର ରୂପଭେଦ । କିନ୍ତୁ ଶ୍ରେଣୀରପରିଚୟ କେନ୍ଦ୍ରରେ ରହିଚନ୍ତି ଯିଏ, ଆୟ ଓ ସଂପଦ ବିଚାରରେ ଦରିଦ୍ର, ଏକାସାଙ୍ଗରେ ପୁଣି ନିରକ୍ଷର, ଆଉ ଦିନସାରା ଗତରଖଟି ମଜୁରି ପାଆନ୍ତି ସାମାନ୍ୟ । ସେଇ ଲୋକଟି ଅବଶ୍ୟ ରାଜନୀତିରେ ପ୍ରଭାବହୀନ, ଜନହିତ ପାଇଁ ସରକାର ଦେଉଥିବା ସୁବିଧାସୁଯୋଗରୁ ବଞ୍ଚିତ; ତାଙ୍କ ସାଙ୍ଗରେ ପୁଲିସ୍ କି ଅମଲା କଠୋର ବ୍ୟବହାର କରିବାକୁ ଦ୍ୱିଧାକରନ୍ତିନାହିଁ । ଏଇ ନିଃସ୍ୱ ଆଉ ତାର 'ଅପର' ଆଫ୍ଲୁଏଣ୍ଟ୍ ମଧ୍ୟସ୍ଥ ବିଭାଜକ ରେଖାଟିକୁ ଅନୁଧାବନ କରିପାରିଲେ ଆମ ସାମାଜିକ-ଅର୍ଥନୈତିକ-ରାଜନୈତିକ ଉପଲବ୍ଧି ଗଭୀରତର ହୋଇପାରେ; ଅଭିସାରର କୁଞ୍ଜବନରୁ ଘୁଞ୍ଚିଯାଇପାରେ ଅନ୍ଧାର । ସନ୍ଦେହନାହିଁ, ରାଷ୍ଟ୍ରପରିଚାଳିତ ଅନେକ ପ୍ରତିଷ୍ଠାନ ଦିନକୁ

ଦିନ ଗଜୁରିଉଠୁଚି, ଯାର ଉଦ୍ଦେଶ୍ୟ ବୈଷମ୍ୟ ହ୍ରାସକରିବା । ଏମାନଙ୍କ ଲକ୍ଷ୍ୟ ନିଶ୍ଚୟ ଧନୀଲୋକ ନୁହେଁ କି ସଂପଦଶାଳୀ କୋଉ ଗୋଷ୍ଠୀ ନୁହେଁ। ମାତ୍ର ଏମାନେ ଯାହାକୁ ନଜରରେ ରଖି ଜିପ୍‌ରେ ବସନ୍ତି, ବିବାକ ମଧ୍ୟବିତ୍ତ । ଏକେବାରେ ଲେଙ୍ଗୁଟିପିନ୍ଧା ଗରିବ ଏମାନଙ୍କ ଦୃଷ୍ଟି ଆକର୍ଷଣ କରିପାରେନା । ଫଳରେ ଶ୍ରେଣୀବିଭାଜନ ହୁଏ ଆହୁରି ଉକ୍ରଟ । ଦୁଇଟିମାତ୍ର ଉଦାହରଣ ନିଆଯାଉ: କ୍ଷୁଧା ଆଉ ନିରକ୍ଷରତା ।

ଆଦିବାସୀଙ୍କ ଭିତରେ ଦୁର୍ଭିକ୍ଷ ପଡ଼େନା, ଫଳମୂଳ ପତ୍ର କି ମଞ୍ଜି ଖାଇ ଭୋକ ମେଣ୍ଟାଇଦିଅନ୍ତି । କିନ୍ତୁ ଏ ଖୋରାକିରେ ଅପୁଷ୍ଟି ଦୂରହୁଏନା । ହେବା କଥା ନୁହେଁ । ଏମାନଙ୍କ କ୍ଷେତ୍ରରେ ତେଣୁ ଅର୍ଦ୍ଧାହାର ଓ ଅପୁଷ୍ଟିର ଅବସ୍ଥାନ ଏକତ୍ର । ଅବସ୍ଥା ଏତେ ମାରାତ୍ମକ ଯେ ସବ୍-ସାହାରା ଆଫ୍ରିକାର ଅତି ଦରିଦ୍ର ଲୋକଙ୍କ ତୁଳନାରେ, ଏମାନଙ୍କ ଅପୁଷ୍ଟି ପ୍ରାୟ ଦି'ଗୁଣ । ଏବେ ଦେଶଦ୍ରୋହ ଅପରାଧରେ ମୃତ୍ୟୁଦଣ୍ଡ ପାଇଥିବା ଡାକ୍ତର ବିନାୟକ ସେନ୍ ଛତିଶ୍‌ଗଡ଼ରେ ଆଦିବାସୀଙ୍କ ଭିତରେ ଚିକିତ୍ସାକାମ କରୁଚନ୍ତି ବହୁବର୍ଷ ହେଲାଣି; ଖାଲି ବିଳାସପୁର ଜିଲ୍ଲାରେ ଅନୁସଂଧାନ ଚଳାଇ ଦେଖିଚନ୍ତି, ପ୍ରତିବର୍ଷ ଅଗଷ୍ଟ୍‌ରୁ ନଭେମ୍ବର୍ ଭିତରେ ଅଧିକାଂଶ ଲୋକ ଆକ୍ରାନ୍ତହୁଅନ୍ତି ମ୍ୟାଲେରିଆ, ନହେଲେ ଯକ୍ଷ୍ମାରୋଗରେ; ଏବଂ ବିଳାସପୁର ଯେହେତୁ ଉପଦ୍ରୁତ ଅଞ୍ଚଳ ନୁହେଁ, ଡାକ୍ତର ସେନ୍ ଲେଖିଛନ୍ତି... so the government argument that Maoist violence is responsible for the terrible level of underdevelopment, poverty and inequality does not hold here... if body mass index is monitored on the monthly basis, there is a dip of BMI when rice harvest from the previous year runs out.... The starvation leads to low immunity of the body and so malaria sets in. Also 95 percent of pulmonary tuberculosis cases have been found with BMI less than 18.5 ।

ବୟସ ଅନୁପାତରେ ଓଜନ ମାପି ଦେଖାଯାଇଚି, ଦେଶର ଅନ୍ତତଃ ୫୦% ଶିଶୁ ଯେମିତି ବରାବର ଅପୁଷ୍ଟିର ଶିକାର, ୫୦% ପ୍ରାପ୍ତବୟସ୍କ ନାରୀ ସେମିତି ରକ୍ତାଳ୍ପତାର । ଗର୍ଭାବସ୍ଥାରେ ଶିଶୁ ଯଦି ଅପୁଷ୍ଟିରେ ଭୋଗେ, ପରବର୍ତ୍ତୀ ଜୀବନରେ ହୃଦ୍‌ରୋଗ ସମ୍ଭାବନା ପ୍ରବଳ। ଭୟଙ୍କର ଏ ପରିସ୍ଥିତି; କିନ୍ତୁ ରାଜନୀତିକ ଆଲୋଚନାରେ ସ୍ଥାନପାଏନା; ଅଥଚ ବାରମ୍ବାର ଦାବିକରାହୁଏ ଯେ ସ୍ୱାଧୀନହେବା ଉତାରୁ ଭାରତ ଖାଦ୍ୟ-ସମସ୍ୟା ଭଲଭାବରେ ସମାଧାନ କରିଦେଇଚି । ଦୁର୍ଭିକ୍ଷ ଦୂରୀକରଣ ସାଙ୍ଗରେ ଅପୁଷ୍ଟି ଦୂରୀକରଣକୁ ହୁଏତ ଘାଣ୍ଟିପକାଏ ରାଜନୀତି । ମାତ୍ର ଦୁର୍ଭିକ୍ଷ ଦୂରକରିବା ଅପେକ୍ଷାକୃତ ସହଜ, କାହିଁକିନା, ଅନାହାର / ଅର୍ଦ୍ଧାହାର ଓ

ଅପୁଷ୍ଟିର ସ୍ଥାୟୀ ନିରାକରଣ ଢ଼େର ଜଟିଳ; ଏବଂ ଜଟିଳ ବୋଲି, ସାରା ପୃଥିବୀରେ ଭାରତର ସାଫଲ୍ୟ, ଏ କ୍ଷେତ୍ରରେ, ସର୍ବନିକୃଷ୍ଟ । କିନ୍ତୁ ସରକାରୀ ଗୋଦାମରେ ମହଜୁଦ୍‌ରହିଚି ପର୍ବତପ୍ରମାଣ ଖାଦ୍ୟଶସ୍ୟ । ଅର୍ଥନୀତିବିଦ୍ ଜଁ ଦ୍ରେଜ୍-ଙ୍କ ହିସାବ ଅନୁସାରେ ବସ୍ତାଗୁଡ଼ାକୁ ଯଦି ପଛକୁ ପଛ ରଖି ସଜାଇଦିଆହୁଏ, ଧାଡ଼ିର ଲମ୍ବା ହେବ ଦଶଲକ୍ଷ କିଲୋମିଟର୍ । ଅର୍ଥାତ୍, ଯୋଉ ଲୋକଙ୍କୁ କୁହାଯାଉଚି ଦାରିଦ୍ର୍ୟସୀମାରେଖା ତଳେ, ଜଣପିଛା ତାଙ୍କୁ ଏକଟନ୍ ଖାଦ୍ୟଶସ୍ୟ ଯୋଗାଇ ଦିଆଯାଇପାରେ; କିଣିବା କ୍ଷମତା କିନ୍ତୁ କାହାରି ନାହିଁ, ମାଲିକଚାଷୀଙ୍କୁ ଖୁସୀରଖିବାକୁ ଶସ୍ୟସଂଗ୍ରହ ମୂଲ୍ୟ ବଢ଼ାଇ ଦିଆଯାଉଚି ଯଦିଓ ବର୍ଷକୁ ବର୍ଷ । ବିସ୍ମୟକର ଏଇ ବ୍ୟବସ୍ଥାର ଶ୍ରେଣୀବିଶ୍ଳେଷଣ ରାଜନୀତି କରେନା; ହାତରେ ଭୋଟ୍-ଅଧିକାର ଧରାଇଦେଇ ଜୀବନର ଅଧିକାରରୁ ବଞ୍ଚିତକରାଯାଏ ବୋଲି ସୁପ୍ରିମ୍‌କୋର୍ଟରେ ଲୋକ ଫେରାଦ୍ ହେଉଚନ୍ତି; ଫଳ ଅବଶ୍ୟ ଅଗ୍ରେ ଧାବତି  ଧାବତି । ଅର୍ଥାତ୍, ସମସ୍ୟାର ସମାଧାନ ଯେ ଅଚିରାତ୍ ଭୂମିସଂସ୍କାର, ଭୂସମ୍ପଦର ପୁନର୍ବଣ୍ଟନ୍, ଲୋକପ୍ରତିନିଧିଙ୍କ ମୁଣ୍ଡକୁ ସରଳ ଏଇ ସତ୍ୟଟି ପ୍ରବେଶକରିବାକୁ ଚାହେଁନା । କାହିଁକିନା, ଏମାନେ ମାଲିକଶ୍ରେଣୀ । ରାହୁଲ ଗାନ୍ଧିର ବି ହରିଆଣାରେ ଚାଷଜମି ଅଛି, ଦିଲ୍ଲୀ କନଟ୍‌ପ୍ଲେସ୍‌ରେ ଅଛି ଦୋକାନ । ତା ଭିଣୋଇ ରବର୍ଟ ଉଡ଼ାଜାହାଜରେ ଯାତ୍ରାକଲେ, ପୋଲିସ୍ ତଲାସକରେନା; ତଲାସରୁ ଛାଡ଼ପାଇଥିବା ତାଲିକାର ଶୀର୍ଷରେ ଅଛନ୍ତି ଅବଶ୍ୟ ସ୍ୱୟଂ ରାଷ୍ଟ୍ରପତି ।

ଦ୍ୱିତୀୟ ଉଦାହରଣ ପ୍ରାଥମିକଶିକ୍ଷା । ଏବଂ ତାର ସବୁଠୁଁ ବଡ଼ ସମସ୍ୟା ଆର୍ଥିକ ଅନଟନ । ଯଥେଷ୍ଟ ସଂଖ୍ୟକ ସ୍କୁଲ୍ ନାହିଁ କି ଯେତିକି ସ୍କୁଲ୍ ଅଛି, ପାଠପଢ଼ିବାର ଦରକାର ସରଞ୍ଜାମ ସେଠି ମିଳେନା । ତା ଛଡ଼ା, ପ୍ରାଥମିକ ଶିକ୍ଷାର ପ୍ରାତିଷ୍ଠାନିକ ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ ମଧ୍ୟ ମୂଳରୁ ଦୁର୍ବଳ । ସେଇ ଦୁର୍ବଳ ଇନ୍‌ଫ୍ରାଷ୍ଟ୍ରକ୍‌ଚର୍‌କୁ ବି ଦକ୍ଷତା ସହିତ ପରିଚାଳନା କରାଯାଏନା । ଫଳରେ, ପ୍ରଥମ ପ୍ରଜନ୍ମର ବିଦ୍ୟାର୍ଥୀଙ୍କୁ ସ୍କୁଲ୍‌କୁ ପଠାଇବାକୁ କେହିହେଲେ ଆଗ୍ରହୀ ନୁହେଁ । ଯେକୌଣସି ପ୍ରାଇମେରି ସ୍କୁଲ୍‌କୁ ହଠାତ୍ ପଶିଗଲେ, ଆଖିରେ ଆଗେ ପଡ଼ିବ ଶିକ୍ଷକଙ୍କ ଅନୁପସ୍ଥିତି; ଆଦିବାସୀ ଅଞ୍ଚଳର ସ୍କୁଲ୍‌ରେ ଏ ଅନୁପସ୍ଥିତି ଆହୁରି ଉତ୍କଟ । ଅବସ୍ଥାପନ୍ନ ପରିବାରର ପିଲା ଯୋଉ ସ୍କୁଲ୍‌କୁ ଯାଆନ୍ତି, ଶିକ୍ଷକଙ୍କ ଅନୁପସ୍ଥିତି ସେଠି କିନ୍ତୁ ଗୁରୁତର ନୁହେଁ । ଗୁରୁତର ନହେଲେ ବି, ଅନେକ ପିଲାଙ୍କୁ ପ୍ରାଇଭେଟ୍ ଟିଉସନ୍ ନେବାକୁ ପଡ଼େ ଶିକ୍ଷାର ପରିପୂରକ ପାଇବାକୁ । ଆର୍ଥିକ କାରଣରୁ ଅଧିକାଂଶ ପ୍ରାଇଭେଟ୍ ଟିଉସନ୍ ନେଇପାରିନ୍ତି ନାହିଁ । ମନରେ ସେଥିପାଇଁ ଆକ୍ଷେପ ରହିଯାଏ ବରାବର, କାହିଁକିନା ତୃତୀୟ କି ଚତୁର୍ଥ ଶ୍ରେଣୀର ଛାତ୍ରଛାତ୍ରୀ ବି ନିଜ ନାଁଟା ନିର୍ଭୁଲ୍  ଲେଖିପାରୁନାହାଁନ୍ତି । ଟଙ୍କା ଖର୍ଚ୍ଚକରି ପ୍ରାଇଭେଟ୍ ଟିଉସନ୍‌କୁ

ଯିବା ମାନେ ବିନାମୂଲ୍ୟରେ ଶିକ୍ଷାପାଇବା ଅଧିକାର ଭାରତୀୟ ଶିଶୁପାଖରୁ କାଢ଼ିନିଆଯିବା । କୁହାଯାଉଚି କିନ୍ତୁ ଶିକ୍ଷାର ଅଧିକାର ପିଲାଙ୍କ ମୌଳିକ ଅଧିକାର । ତା ଉପରେ ରହିଚି ଶିକ୍ଷକ ଓ ଦରିଦ୍ର ପରିବାରଗୁଡ଼ିକ ମଝିରେ ତୀବ୍ର ଶ୍ରେଣୀବୈଷମ୍ୟ । ଏବଂ ଏତଦ୍‌ସତ୍ତ୍ୱେ, ବିଭିନ୍ନ ରାଜନୀତିକ ଦଳ ସହିତ ସଂଯୁକ୍ତ ଇଉନିଅନ୍ ଶିକ୍ଷକଙ୍କ ଶ୍ରେଣୀସ୍ୱାର୍ଥ ପ୍ରତି ଯେତିକି ସଜାଗ, ଛାତ୍ର ଓ ଅଭିଭାବକଙ୍କ ପ୍ରତି ସେତିକି ଉଦାସୀନ । ସ୍କୁଲ୍ ଚାଲିବ କି ବାଗରେ, ଦରିଦ୍ର ପିଲାଙ୍କ ଅଭିଭାବକଙ୍କୁ କେହି ପଚାରେନା: ଅଭିଭାବକ ବି ଭାବନ୍ତି ମାଷ୍ଟର ପାଠପଢ଼ିଚନ୍ତି, ସିଏ ମୂର୍ଖଲୋକ, କଣ ଅବା କହିପାରିବେ ? ପରିଦର୍ଶକ ମାଷ୍ଟରଙ୍କ ଇଉନିଅଁନ୍‌କୁ ଡରନ୍ତି, ଶୃଙ୍ଖଳା ଆଣିବେ ଫେର୍ କେମିତି ? ସମାଜର ନିମ୍ନବର୍ଗରୁ ଯୋଉ ପିଲା ପାଠପଢ଼ିବାକୁ ଆସନ୍ତି, ଶ୍ରେଣୀବିଭକ୍ତ ଏଇ ବ୍ୟବସ୍ଥାରେ ତାଙ୍କ କପାଳରେ ଜୁଟେ କେବଳ ଅବହେଳା ଆଉ ଅବମାନନା । ଅଥଚ ମାଷ୍ଟରଙ୍କ ଦରମା ଘରଭଡ଼ା ଓ ମହଙ୍ଗା ଭତ୍ତା ସମେତ, ମାସକୁ ଏକ୍ଷଣି ୧୦ ହଜାର ଟଙ୍କାରୁ ବେଶି । ଗରିବ ଅଭିଭାବକର ରୋଜଗାର, ଖୁବ୍ ବେଶିହେଲେ, ୩ ହଜାର । ଶ୍ରେଣୀବଦ୍ଧ ଗୋଷ୍ଠୀ ରୂପରେ ସ୍କୁଲ୍‌ଶିକ୍ଷକ ତେଣୁ ଗରିବ ଛାତ୍ରଛାତ୍ରୀଙ୍କ ବାପ-ମା' (=ପରିବାର) ପାଖରୁ ଅପହୁଞ୍ଚ ଦୂରତ୍ୱକୁ ନିଜକୁ ଘୁଞ୍ଚାଇନେଇଚି । ଯୋଉ ଶ୍ରେଣୀପ୍ରାଚୀର ଦୁଃସ୍ଥ ପରିବାରର ପିଲାଙ୍କୁ ଶିକ୍ଷାଲାଭରୁ ବଂଚିତକରିଚି, ଶିକ୍ଷକ ଓ ଦୁଃସ୍ଥ ପରିବାରଙ୍କ ଭିତରେ ଅର୍ଥନୀତିକ ଓ ସାମାଜିକ ପାର୍ଥକ୍ୟ କ୍ରମାଗତ ବୃଦ୍ଧିପାଉଥିବାରୁ, ସେଇ ପ୍ରାଚୀରର ବାଧା ହୋଇଉଠୁଛି ଆହୁରି ପ୍ରବଳ ।

ଗ୍ରାମାଞ୍ଚଳର ଦୁଃସ୍ଥ ପରିବାରର ଶିଶୁଙ୍କ ଶିକ୍ଷା-ସ୍ୱାସ୍ଥ୍ୟର କରୁଣ ଅବସ୍ଥା କଥା ଲେଖିବାବେଳେ ମନେପଡୁଛି ୧୯୭୫-୭୭ର ଇମର୍‌ଜେନ୍ସୀ କାଳରେ ସହରାଞ୍ଚଳରେ ବୁଲ୍‌ଡୋଜର୍ ଚଳାଇ ଖଟିଖିଆ ଲୋକଙ୍କ ବସ୍ତିଗୁଡ଼ାକୁ ଧୂଳିସାତ୍ କରାଯାଇଥିବା ଘଟଣା; ଛୁଆଗୁଡ଼ାକୁ ଉଠାଇନେଇ ପୁଲିସ୍ ରଖିଚି ଘେରଭିତରେ, ଛାଡ଼ିଦେଇଚନ୍ତି ବାପା-ମା'ଙ୍କୁ ଅସ୍ତ୍ରୋପଚାର ଦ୍ୱାରା ଯଥାକ୍ରମେ ନିର୍ବୀର୍ଯ୍ୟ ଓ ବନ୍ଧ୍ୟା କରାଯିବା ଉତାରୁ । ସମ୍ପନ୍ନ ପରିବାରର ଶିଶୁ ଏ କଷଣ ପ୍ରତ୍ୟକ୍ଷକରିନାହାଁନ୍ତି; ଭୂଇଁରୁ ଉଚ୍ଛେଦହୋଇ ଦୁର୍ଗତ ଏଇ ନାରୀ-ପୁରୁଷ-ଶିଶୁ କୁଆଡ଼େ ଗଲେ,କେହି ଜାଣେନା; କାହିଁକିନା, ଖାଲି ସେନ୍‌ସର୍‌ସିପ୍ ଜାରିହୋଇନାହିଁ, ଖବରକାଗଜ ଗୁଡ଼ାକର ଇଲେକ୍ଟ୍ରିକ୍‌ଲାଇନ୍ ବି କାଟିଦିଆଯାଇଚି । ଜନସାଧାରଣଙ୍କ ଉପରେ ଦମନଲୀଳା ଏପରି ବୀଭତ୍ସରୂପ ଧାରଣକରିଚି ଯେ, ଏକଦା ନେହ୍‌ରୁଙ୍କ ସହଯୋଦ୍ଧା ଜୟପ୍ରକାଶ ନାରାୟଣ ପୁଲିସ୍ ଓ ସେନାବାହିନୀକୁ ଡାକଦେଇଚନ୍ତି ଅନ୍ୟାୟ ଆଦେଶ ଅମାନ୍ୟକରିବାକୁ । ଇନ୍ଦିରା ଗାନ୍ଧିଙ୍କ ସୁହୃଦ୍, ସିର୍ଦ୍ଧାର୍ଥ ରାୟ, ବଙ୍ଗଳାର ଗୋଟାଏ ପ୍ରଜନ୍ମକୁ

ଧ୍ୱଂସକରିଦେଇଚନ୍ତି ନକ୍ସଲ୍ ଆଖ୍ୟାଦେଇ । ନେହ୍‌ରୁ ଅବଶ୍ୟ କରାର୍‌କରିଥିଲେ ଆମେରିକା ପାଖରେ, କମିଉନିଜ୍ମକୁ ପୁରାଇଦେବେନାହିଁ ଭାରତରେ । ଡାନିଏଲ୍ ମନିହାନ୍ ଲେଖିଚନ୍ତି, ଆମେରିକା ପାଖରୁ ଟଙ୍କା ବି ମିଳିଥିଲା ନିର୍ବାଚିତ ପ୍ରଥମ କମିଉନିଷ୍ଟ ସରକାରକୁ ଭାଙ୍ଗିଦେବା ପାଇଁ କେରଳରେ। ତଥାପି ଇନ୍ଦିରା ଗାନ୍ଧିଙ୍କ ନାଁରେ ବିଶ୍ୱବିଦ୍ୟାଳୟ ଖାଲି ନୁହେଁ, ଆନ୍ତର୍ଜାତିକ ବିମାନବନ୍ଦର ବି ନାମିତକରାଯାଇଚି ଦିଲ୍ଲୀରେ । ନେହ୍‌ରୁଙ୍କ ନାଁରେ ବି ବିଶ୍ୱବିଦ୍ୟାଳୟ ବସିଚି, ଏକମାତ୍ର ଯୁକ୍ତିସଂଗତ କାରଣ ହୋଇପାରେ, ବାକ୍‌ସ୍ୱାଧୀନତା ଦେଇଯାଇଚନ୍ତି ଭାରତବାସୀଙ୍କୁ; ଯାହାକୁ ଉପଲକ୍ଷକରି ଇମର୍ଜେନ୍ସି ପରେ ପରେ ଇ.ପି.ଟମ୍ପ୍‌ସନ୍ ଲେଖିଥିଲେ, All the convergent influences of the world run through this society, Hindu, Muslim, Christian, Secular, Stalinist, liberal, Maoist, Democratic, Socialist, Gandhian. There is not a thought that is being thought in the West or East that is not active in some Indian mind । କିନ୍ତୁ ଉତ୍ତର-ପୂର୍ବ ଭାରତରେ ରାଜୀବ ଗାନ୍ଧି ନାଁରେ କଣପାଇଁ ଇଉନିଭର୍ସିଟି ବସାଇଚି ଭାରତ ସରକାର, ସେ ରସହ୍ୟ ବୁଫର୍ସ-ବନ୍ଧୁକକିଣା କଳଙ୍କ ଭଳି ରହିଯାଇଚି ଅନୁଦ୍‌ଘାଟିତ । କିମ୍ବା କମଳା ନେହ୍‌ରୁଙ୍କ ନାଁରେ ଗୁଜରାଟ୍‌ରେ ଚିଡ଼ିଆଖାନା । କୌଣସି ପ୍ରାଥମିକସ୍କୁଲ୍ କପାଳରେ ସେ ସୌଭାଗ୍ୟ ଜୁଟିନାହିଁ । ଶିକ୍ଷାବ୍ୟବସ୍ଥାର ଏଇ ଅସମ ବଣ୍ଟନକୁ ଲକ୍ଷ୍ୟକରି ଅମର୍ତ୍ତ୍ୟ ସେନ୍ ଲେଖିଚନ୍ତି, Higher education is expanding dramatically, and India has one of the largest higher educated populations in the world—for every student that China sends to the university we send as many as six. In contrast, while China is getting close to universal literacy, We are very far away from it. Half the Indian adult population happens still to be illiterate, two-thirds of Indian women are illiterate. India is the only major country in the world that is trying to approach the 21st century with the bulk of the country illiterate. And given the fact that among the commitments that Pandit Nehru emphasised in his speech on the "tryst with destiny" was the removal of illiteracy and ignorance, our failure in this regard is quite amazing । ପୁନଶ୍ଚ, The interesting feature of East Asain economic growth is that it is founded on a shared base of general education, a high level of literacy being a common characteristic of all these countries. It is

sometimes overlooked that at the time of Meiji restoration in the middle of the 19th century, well before its industrialisation programme, Japan already had a rate of literacy that was higher than that of Europe. These are very pro-education countries and their education has not been, as in India, concentrated only on the elite.... The case of China is particularly interesting to observe because educational expansion took place before the economic reforms... And it is one of history's ironies—Adam Smith, I imagine, would have described it as an unintended consequence of human actions—that one of the beneficiaries of the Maoist programme of mass education was market-led economic development in post-reform China. Unlike in India, where market opportunities are concentrated in the hands of relatively few, in the Chinese case they can be much more widely shared, because the basic level of education was so widely shared. .......*in politics as much as in economics, demand is an important influence on supply. We ultimately get what we strongly demand-that is why politics is so important and agitations are important; that is why drawing attention to deprivations is important and having a high-profile perspective in such matters as gender equality is important. The more we bring the deprivations that blight the lives of many Indians into the political arena, the more likely it is that we will be able to overcome them and achieve what we really hoped we would achieve at the time when Independence came.....* । (ବକ୍ରାକ୍ଷର ମଦ୍‌କୃତ)

କିନ୍ତୁ ସ୍ୱାଧୀନତା ଅବ୍ୟବହିତରେ ନେହ୍‌ରୁ ସ୍ଥିରକଲେ ବୈଷମ୍ୟରେ ଖଣ୍ଡିତ ଭାରତକୁ ଯଦି ଏକଛତ୍ର ଇଗାଲିଟାରିଆନ୍ ସମାଜରେ ରୂପାନ୍ତରିତ କରିବାକୁ ହୁଏ, ସବାଆଗେ ଦରକାର ଏକ ଲିଖିତ ସଂବିଧାନ । ସାଧାରଣତଃ, ଏଭଳି ଗୁରୁତ୍ୱପୂର୍ଣ୍ଣ କାମରେ ହାତଦେବା ଆଗରୁ, ପ୍ରୟୋଗକ୍ଷେତ୍ରଟାକୁ ସଂଜ୍ଞାବଦ୍ଧ କରାଯାଇଥାଏ । ମାତ୍ର ନେହ୍‌ରୁ ଧରିନେଲେ, କ୍ଷମତାହସ୍ତାନ୍ତର ବେଳେ ବ୍ରିଟିଶ୍ ଯୋଉ ଭୂଖଣ୍ଡ ଛାଡ଼ିଯାଇଚି, ତା ତାଙ୍କ ନିର୍ବିବାଦ ଟେରିଟରି । ଚୀନ୍, ପାକିସ୍ତାନ, ବ୍ରହ୍ମଦେଶ କି ସିଂହଳ, କାହାରି

ସହିତ ଆଲୋଚନା କଲେନାହିଁ, ନବନିର୍ମିତ ରାଷ୍ଟ୍ରର ସର୍ବମାନ୍ୟ ସୀମାରେଖା ହୋଇପାରେ କି ରକମ ? ପ୍ରୟୋଗକ୍ଷେତ୍ର ମାନେ, ଅନ୍ତତଃ ଜବାହରଲାଲ୍‌ଙ୍କ ବିବେଚନାରେ, ଏକୀଭୂତ 'ଇଉନିଅନ୍' । ଅନୈକ୍ୟକୁ ଲୁଚାଇବା ପାଇଁ ପାଟିରେ କହିଲେ 'ଫେଡେରେସନ୍' । ପିତାଙ୍କ ମତଲବ୍ ଠିକ୍ ବୁଝିଥିଲେ ବୋଲି, ଇନ୍ଦିରା ଗାନ୍ଧି ଧରିନେଲେ ଭାରତବର୍ଷ ତାଙ୍କ ପୈତୃକ ସଂପତ୍ତି, ତାମିଲ୍‌ନାଡୁର ରାମନାଥପୁରମ୍ ଜିଲ୍ଲାର ଯୋଉ କଚ୍ଛତିଭୂ ଉପଦ୍ୱୀପ ଥିଲା ଭାରତର ଅବିଭାଜ୍ୟ ଉତ୍ତରାଧିକାର, ୧୯୭୪ରେ ଦାନକରିଦେଲେ ସିଂହଳକୁ । ଏକ୍ଷଣି ଭାରତୀୟ ଧୀବର ମାଛଧରିବାକୁ ଗଲେ ସିଂହଳର ନୌବାହିନୀ ଗୁଳିକରି ମାରିଦେଉଚି । ସଂବିଧାନର ଆର୍ଟିକ୍ଲ 3 (C) ଅନୁସାରେ ସଂବିଧାନ ସଂଶୋଧନ ନକରି ଏଭଳି ଦାନଖଇରାତ କରାଯାଇ ପାରେନା । ତେଣୁ କଚ୍ଛତିଭୁ ହସ୍ତାନ୍ତରକୁ ସୁପ୍ରିମ୍‌କୋର୍ଟରେ ଆହ୍ୱାନଜଣାଇଚନ୍ତି ସେକାଳର ଜନସଂଘ ନେତା କୃଷ୍ଣମୂର୍ତ୍ତି । ମାତ୍ର ଆଇନ୍ ବିଚାର କରିବେ ଯୋଉ ନ୍ୟାୟମୂର୍ତ୍ତି, ଅର୍ଥାତ୍ ଚିଫ୍‌ଜଷ୍ଟିସ୍ ଭଗବତୀ, ସେତେବେଳକୁ 'କମିଟେଡ୍' ହୋଇସାରିଚନ୍ତି; ବିନା ଶୁଣାଣିରେ ଖାରିଜ୍‌କରିଦେଲେ ରିଟ୍ ଆବେଦନ । ସେଇ ସମ୍ବିଧାନ ଉପରେ ଛିଡ଼ାହୋଇ ଇମର୍ଜେନ୍ସି ଜାରିକରିଦେଲେ ଇନ୍ଦିରା ଗାନ୍ଧି; ରାଷ୍ଟ୍ରପତି ରାତିଅଧରେ ନିଦରୁ ଉଠି ଅନୁମୋଦନ କରିଦେଲେ ! ତେଣୁ କାହା ସ୍ୱାର୍ଥରେ ସମ୍ବିଧାନ ପ୍ରଣୟନକରାଯାଇଚି, ପ୍ରଶ୍ନର ଗୁରୁତ୍ୱ ସମଧିକ । ବିଶେଷତଃ ଯେହେତୁ ନେହ୍‌ରୁ ବି ଛାଡ଼ିଦେଇଚନ୍ତି କାଶ୍ମିର୍‌ରୁ ଚେନାଏ, ପାକିସ୍ତାନ ଯାହାକୁ କହୁଚି 'ଆଜାଦ୍ କାଶ୍ମିର୍' ।

କ୍ଷମତାହସ୍ତାନ୍ତରର ଚାରିବର୍ଷ ଉତାରୁ ପ୍ରବର୍ତ୍ତିତହୋଇଚି ସମ୍ବିଧାନ; ଏଇ ଚାରିବର୍ଷ ଭିତରେ କନ୍‌ଷ୍ଟିଟୁଏଣ୍ଟ୍ ଆ୍ୟାସେମ୍ବ୍ଲି ସାବାଳକ ଭୋଟ୍ ଅଧିକାରକୁ ଅନୁମୋଦନ କରିବାକୁ ଇତସ୍ତତ କରିଚି; ଅର୍ଥାତ୍ ବିରୋଧକରିଚି ଦୁଇଟି କାରଣରୁ: (୧) ଦେଶଭିତରେ ନାନାଦି ବିଭେଦକାରୀ ଶକ୍ତି ସେତେବେଳକୁ ସକ୍ରିୟ, (୨) କଂଗ୍ରେସ ଦଳ, ନିଜକୁ ଯିଏ ମନେକରିଚି ଔପନିବେଶିକ ଶକ୍ତିର ପ୍ରକୃତ ଉତ୍ତରାଧିକାରୀ, ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରୁ ବୁଝିପାରିଚି ପ୍ରତ୍ୟକ୍ଷ ଗଣତନ୍ତ୍ର ସକାଶେ ଦେଶର ଆପାମର ଜନସାଧାରଣ ପରିପକ୍ୱ ହୋଇନାହାଁନ୍ତି । ପରିପକ୍ୱ ମାନେ ଇଂଲଣ୍ଡ୍ କି ଫ୍ରାନ୍ସର ଲୋକଙ୍କ ଭଳି ପୂର୍ବରୁ ପ୍ରସ୍ତୁତ । ତେଣୁ ଆଇନ୍‌ର ଶାସନ ମାନେ କଂଗ୍ରେସ ଦଳର ନେତା ଯେମିତି ଆଇନ୍‌କୁ ବୁଝିଚନ୍ତି, ତଦନୁସାରେ ଲୋକଙ୍କୁ ନିୟନ୍ତ୍ରଣ । ଆଇନ୍ ଶିଖିଥିଲେ ବା ବୁଝିଥିଲେ ଇଂରେଜ୍‌ଙ୍କ ପାଖରୁ, ଏବଂ ଇଂରେଜ୍‌ଙ୍କ ରାଜତ୍ୱ ଯୋଉ ଆଇନ୍ ଉପରେ ତିଷ୍ଠିରହିଥିଲା, ତା ଉଭୟ ଔପନିବେଶିକ ଓ ସାମ୍ରାଜ୍ୟବାଦୀ । ସେ ଆଇନ୍ ଇଷ୍ଟ୍

ଇଣ୍ଡିଆ କଂପାନୀ ଯୋଉଠି ଭାଙ୍ଗିଚି, ବିଚାରହୋଇଚି ବ୍ରିଟିଶ୍ ପାର୍ଲାମେଣ୍ଟରେ, ଯେପରି ରବର୍ଟ କ୍ଲାଇଭ୍ କି ୱାରେନ୍ ହେଷ୍ଟିଙ୍ଗ୍‌ସ୍‌ଙ୍କ ଅପରାଧର ପ୍ରକାଶ୍ୟ ବିଚାର । ସେମାନେ ତ ଉପନିବେଶ ସ୍ୱାର୍ଥରେ ଅନ୍ୟାୟ କରିଚନ୍ତି, ତାକୁ ଅପରାଧ କୁହାଯିବ କାହିଁକି ? ଉପନିବେଶସ୍ଥାପନ ମାନେ ତ ଅସ୍ତ୍ରବଳରେ ରାଜ୍ୟଦଖଲ, ବାହୁବଳ ପ୍ରୟୋଗକରି ପ୍ରଜାଙ୍କୁ ଦମନ, ବିଜିତ ଲୋକଙ୍କ ଉପରେ ହିଂସାପ୍ରୟୋଗର ଅବାଧ ଅଧିକାର; କ୍ଷମତାର ଉତ୍ସ ତେଣୁ ଇଂଲଣ୍ଡ ସ୍ୱାର୍ଥରେ ଅନ୍ୟାୟ ବଳପ୍ରୟୋଗ । ହାଉସ୍ ଅବ୍ ଲର୍ଡ଼ସ୍‌କୁ ୧୭୮୮ରେ ଏଇକଥା କହିଚନ୍ତି ଗଭର୍ଣ୍ଣର୍‌ଜେନେରାଲ୍ ହେଷ୍ଟିଙ୍ଗ୍‌ସ୍ । ପ୍ରତିବାଦକରିଚନ୍ତି ଭାରତର ଜନଗଣଙ୍କ ପ୍ରତିନିଧିତ୍ୱ କରୁଥିବା ଏଡ୍‌ମଣ୍ଡ ବର୍କ୍ (୧୭୨୯-୭୯); ଫରାସୀ ବିପ୍ଳବ ଉପରେ ବହି ଲେଖିଚନ୍ତି । ବର୍କ୍‌ଙ୍କ ଯୁକ୍ତି ଥିଲା, ଆଇନ୍ କେବେହେଲେ ସ୍ୱେଚ୍ଛାଚାରୀ ହୋଇପାରେନା; ଉପନିବେଶରେ, ଯୋଉଠି ପୂର୍ବରୁ କିଛି ବିଧିବିଧାନ ନାହିଁ, ଅନ୍ତତଃ ନ୍ୟାଚରାଲ୍ ଜଷ୍ଟିସ୍ ପ୍ରୟୋଗକରିବାକୁ ପ୍ରଶାସନ ବାଧ୍ୟ, କାହିଁକିନା, ଶାସନ ରଜା କରୁ କି କଂପାନୀ, ଗଭର୍ଣ୍ଣର୍-ଜେନେରାଲ୍ ଭାରତବର୍ଷର ଜନସାଧାରଣଙ୍କୁ ନ୍ୟାୟବିଚାରରୁ ବଂଚିତ କରିପାରିବେନାହିଁ । ବର୍କ୍ ଯୋଉ ନ୍ୟାୟବିଚାର କଥା କହିଚନ୍ତି, ତାର ନ୍ୟାସନାଲିଟି ନାହିଁ କି ଟେରିଟୋରି ନାହିଁ; ତା ଏକାବେଳକେ ସ୍ୱାଭାବିକ ଏବଂ ସ୍ୱୈରତନ୍ତ୍ରର ପରିପନ୍ଥୀ । କୁହାଯାଇପାରେ ଔପନିବେଶିକ ବନାମ ସାମ୍ରାଜ୍ୟବାଦୀ ଡିସ୍‌କୋର୍ସ; ହେଷ୍ଟିଙ୍ଗ୍‌ସ୍‌ଙ୍କ ଇମ୍ପିଚ୍‌ମେଣ୍ଟ ସେଇ ଡିସ୍‌କୋର୍ସର ପ୍ରତିଫଳ । ସିପାହୀବିଦ୍ରୋହ ଅବ୍ୟବହିତରେ ୧୮୫୮ରେ ଇଷ୍ଟ ଇଣ୍ଡିଆ କଂପାନୀ ପାଖରୁ କ୍ରାଉନ୍, ଅର୍ଥାତ୍ ମହାରାଣୀ ଭିକ୍ଟୋରିଆଙ୍କ ପାଖକୁ ରାଜତ୍ୱ ହସ୍ତାନ୍ତରିତ ହୋଇଯାଇଚି । ଅର୍ଥାତ୍, ଏପରି ଏକ କୌଶଳ ଯା ବ୍ରିଟେନ୍‌ର ସ୍ୱାର୍ଥ ଓ ଆତ୍ମପରିଚୟକୁ ଢ଼ାଙ୍କିପକାଏ । ଆତ୍ମପରିଚୟ ମାନେ, ଭାରତୀୟଙ୍କ ଦୃଷ୍ଟିରେ ଔପନିବେଶିକ ପ୍ରଭୁ, ବହିରାଗତ ଶତ୍ରୁ ନୁହେଁ । ଅନ୍ୟ ଶବ୍ଦରେ, ନ୍ୟାୟବିଚାରର ଭିତ୍ତି ଗୋଟେପଟରେ 'ସମଦର୍ଶିତା (ଏକୁଇଟି), ଆରପଟରେ ସ୍ୱେଚ୍ଛା ଆଚରଣର ସ୍ୱାଧୀନତା (ଲିବର୍ଟି) । ସମଦର୍ଶିତା ସକାଶେ ନିର୍ଦ୍ଦିଷ୍ଟ ବିଧିବିଧାନ ବାନ୍ଧିଦିଆଯାଇନାହିଁ, କାହିଁକିନା, ତା ସ୍ୱାଭାବିକ, ନ୍ୟାଚରାଲ୍ । ଏଇ ଦୁଇଟି ସ୍ତମ୍ଭ ଉପରେ, ବା ତନ୍ମଧ୍ୟସ୍ଥ ଡିସ୍‌କୋର୍ସ ଉପରେ, ଛିଡ଼ାହୋଇଚି ଭାରତରେ ବ୍ରିଟିଶ୍‌ସାମ୍ରାଜ୍ୟ । ଏକଥାର ତାତ୍ପର୍ଯ୍ୟ ହେଲା, ଆଦାଲତରେ ଯୋଉ ଆଇନ୍‌କାନୁନ୍ ପ୍ରଯୁକ୍ତହେବ, ସେ ଆଇନ୍ ଧରିନେବ ଯେ ବ୍ରିଟିଶ୍ ରଜା କି ରାଣୀ, ନୈତିକତା ଦୃଷ୍ଟିରୁ ନ୍ୟାୟବିଚାରର ଅସଲ ଉତ୍ସ; ତାଙ୍କରି ଦାକ୍ଷିଣ୍ୟ ଓ ଅନୁକମ୍ପାର ଅନୁଗାମୀ ପ୍ରଶାସନ ଓ ପ୍ରଜା ମଧ୍ୟସ୍ଥ ନୀତିନିୟମ । ଏ ବ୍ୟବସ୍ଥା ସପକ୍ଷରେ ଦାବିକରାଯାଇଚି, ଭାରତୀୟ ସମାଜ ଅଭ୍ୟନ୍ତରୀଣ ବିଦ୍ୱେଷ ଓ ସଂଘର୍ଷ ଦ୍ୱାରା ଏପରି

ବିଦୀର୍ଣ୍ଣ ଯେ ନ୍ୟାୟ ଓ ଶୃଙ୍ଖଳା ପ୍ରତିଷ୍ଠାକରିବାକୁ ଏକାନ୍ତ ଦରକାର ଏପରି ନିରପେକ୍ଷ ଆଗ୍ରହଶୂନ୍ୟ ଶକ୍ତି, ଯା ନିଜେ ଭାରତୀୟ ନୁହେଁ ।

ନ୍ୟାୟବିଚାର ଯଦି ଲିବର୍ଟି ହୁଏ, ବ୍ରିଟିଶ୍‌ସାମ୍ରାଜ୍ୟ କିରକମ ଭବିଷ୍ୟତ କଳ୍ପନାକରିଚି ଭାରତ ସକାଶେ? ଚିରସ୍ଥାୟୀ ପରାଧୀନତା ନିଶ୍ଚୟ ନୁହେଁ । ଆଉ, କଳ୍ପିତ ସେ ଭବିଷ୍ୟତ ଯଦି ଲିବର୍ଟି ହୁଏ, ତେବେ ତା ହେବ ବ୍ରିଟିଶ୍ ରଜା କି ରାଣୀଙ୍କ ବଦାନ୍ୟତା । ଐତିହାସିକ ଏଇ ରାଜନୀତିକ ଉତ୍ତରାଧିକାର ଉପନିବେଶିକୋତ୍ତର ଭାରତରେ ଯଥାର୍ଥତା ହରାଇନାହିଁ, କାହିଁକିନା, ବିଦେଶୀ ରଜା ହାତରୁ ଦାନଖଇରାତ ରୂପରେ ସ୍ୱାଧୀନତା ପାଇବାକୁ ଉଦ୍‌ଗ୍ରୀବ ହୋଇଚି କଂଗ୍ରେସ୍ ଦଳ; ହୋଇଛି ବୋଲି, ସ୍ୱାଧୀନତାକୁ ମନେକରିନାହିଁ ସଂଗ୍ରାମ ଦ୍ୱାରା ଅର୍ଜିତ ସ୍ୱାଧିକାର; ମନେକରିଚି ପ୍ରଜାବତ୍ସଳ ରାଜଶକ୍ତିର ଭାରତୀୟଙ୍କୁ ପରାଧୀନତାରୁ ଅବ୍ୟାହତି । କାହିଁକିନା, ମୌଖିକ ଆସ୍ଫାଳନ ଛଡ଼ା, କଂଗ୍ରେସ୍ କେବେ ଭାବିପାରିନାହିଁ ବ୍ରିଟିଶ୍‌ଆୟତ୍ତ ବହିର୍ଭୂତ ନିଃସର୍ତ୍ତ ରାଜନୀତିକ ମୁକ୍ତି, ଅହିଂସ ଆନ୍ଦୋଳନ ଦ୍ୱାରା ଆଦୌ ସମ୍ଭବପର । ଏକଥାର ପ୍ରମାଣ, ଗାନ୍ଧିଙ୍କ ଆବିର୍ଭାବ ପୂର୍ବରୁ, ବ୍ରିଟିଶ୍ ସାର୍ବଭୌମତା ଅଧୀନରେ 'ହୋମ୍‌ରୁଲ୍'କୁ ଆନ୍ଦୋଳନର ଏକମାତ୍ର ଲକ୍ଷ୍ୟ ବୋଲି ଘୋଷଣାକରିଚି ଜାତୀୟ କଂଗ୍ରେସ । ଅର୍ଥାତ୍ ସ୍ୱୀକାରକରିଚି ବ୍ରିଟିଶ୍‌ରାଜତନ୍ତ୍ରର ବଶ୍ୟତା । କିନ୍ତୁ ଗାନ୍ଧି ଯେତେବେଳେ ଆନ୍ଦୋଳନର ଆଭିମୁଖ୍ୟକୁ ବଦଳାଇଦେଲେ, ସାମ୍ରାଜ୍ୟବାଦୀ ନ୍ୟାୟନୀତିରୁ ଓହରିଯାଇ ଜାତୀୟ ମୁକ୍ତି ଓ ସ୍ୱାଧୀନ ଜାତିରାଷ୍ଟ୍ର ଆଦାୟକରିବାକୁ କଂଗ୍ରେସ୍ ହୋଇଚି ବଦ୍ଧପରିକର । କ୍ଷମତା-ହସ୍ତାନ୍ତର ଉତାରୁ ଗାନ୍ଧି କିନ୍ତୁ ହୋଇଯାଇଚନ୍ତି ଅପାଙ୍‌କ୍ତେୟ, କାହିଁକିନା, ତ୍ୟାଗତିତିକ୍ଷା ବିବେଚିତହୋଇଚି ରାଜ୍ୟଶାସନ ପକ୍ଷରେ ହାସ୍ୟକର । ଗାନ୍ଧିଙ୍କ ଏଇ ଭାବବାଦ ପଶ୍ଚାତ୍‌ପଟକୁ ଅପସୃତହୋଇଯିବା, ଏବଂ ନବସଂଗଠିତ କଂଗ୍ରେସ୍ ଅକ୍ତିଆରକୁ ଶାସନାଯନ୍ତ୍ର ଆସିଯିବା, ସାମୟିକଭାବେ ସ୍ଥଗିତରହିଥିବା ସାମ୍ରାଜ୍ୟବାଦୀ ନ୍ୟାୟବିଧାନର ଡିସ୍‌କୋର୍ସକୁ କରିଦେଇଚି ପୁନର୍ଜୀବିତ, ଏବଂ ଡିସ୍‌କୋର୍ସକୁ କରାଯାଇଚି ଭାରତୀୟ ସଂବିଧାନର ଭିତ୍ତିସ୍ତମ୍ଭ । ଅର୍ଥାତ୍, ନ୍ୟାୟବିଚାର ମାନେ ସମଦର୍ଶିତା ।

ଅବଶିଷ୍ଟ ଉତ୍ତରାଧିକାର, ଅର୍ଥାତ୍ ରାଜତନ୍ତ୍ରର ଅନୁକମ୍ପାକୁ ନ୍ୟାୟବିଧାନ ବୋଲି ବିବେଚନା, ନିଜକୁ ପୁନର୍ଜୀବିତକରିଚି ଜାତୀୟ କଂଗ୍ରେସ୍‌କୁ ଏକ ରାଜବଂଶରେ ପରିଣତକରି, ଯୋଉ ରାଜବଂଶ ଅଧୁନା ଭାରତବର୍ଷର ରାଜନୀତିର ସବୁଠୁଁ ଶକ୍ତିଶାଳୀ ତାଡ଼ନା । ଅର୍ଥାତ୍ ନେହ୍‌ରୁ-ଗାନ୍ଧି ପରିବାର । ନେହ୍‌ରୁଙ୍କ ସହଯୋଦ୍ଧା ସୁଭାଷ ବସୁ, ଜୟପ୍ରକାଶ, ଲୋହିଆ, ରାଜେନ୍ଦ୍ରପ୍ରସାଦ, ବଲ୍ଲଭଭାଇ ପଟେଲ, କୃପାଳିନୀ କି

ରାଜଗୋପାଳାଚାରୀ, କେହିହେଲେ ଅପେକ୍ଷାକୃତ କମ୍ ବଳିଷ୍ଠ ନେତା ନୁହେଁ; କିନ୍ତୁ 'ଜାତିର ପିତା' ଗାନ୍ଧି ବାଛିଲେ ଜବାହରଲାଲ୍‌ଙ୍କୁ ଉତ୍ତରାଧିକାରୀ । ଖାଲି ସେତିକି ନୁହେଁ, ୧୯୪୭ ଆଗରୁ ଗାନ୍ଧିଙ୍କ ସମର୍ଥନରେ ନେହ୍‌ରୁ ହୋଇଚନ୍ତି ଜାତୀୟ କଂଗ୍ରେସ୍‌ର ଚାରିଚାରିଥର ପ୍ରେସିଡେଣ୍ଟ, ଅଥଚ ସୁଭାଷ ବସୁ ଯେତେବେଳେ ଗାନ୍ଧି-ମନୋନୀତ ପ୍ରାର୍ଥୀଙ୍କୁ ହରାଇଦେଇ ଦ୍ୱିତୀୟବାର ପ୍ରେସିଡେଣ୍ଟ ନିର୍ବାଚିତହେଲେ, ଗାନ୍ଧି କହିଚନ୍ତି, "Pattabhi's defeat is my defeat" । ସ୍ପଷ୍ଟତଃ ଦେଶ ସ୍ୱାଧୀନହେବା ବେଳକୁ କଂଗ୍ରେସ୍ ଭିତରୁ ଗଣତାନ୍ତ୍ରିକ ବିଧିବ୍ୟବସ୍ଥା ଲୋପପାଇଚି । ସଂବିଧାନର ଭୂମିକାରେ ଯା କୁହାଯାଇଚି, We the people of India give to ourselves this Constitution, ଏକେବାରେ ସୁଆଙ୍ଗର ସଂଳାପ, କାହିଁକିନା, ନେହ୍‌ରୁ ବି କଂଗ୍ରେସ୍‌ଲୋକଙ୍କ ଇଚ୍ଛା-ଅନିଚ୍ଛାକୁ କେବେ ଖାତିର୍‌କରିନାହାଁନ୍ତି; ରାଷ୍ଟ୍ରଶକ୍ତି ହିଁ ଲୋକଙ୍କ ଉପରେ ଚପାଇଦେଇଚି ସଂବିଧାନ । ସାବାଳକ ଭୋଟ୍‌ବ୍ୟବସ୍ଥାର ମୂଳଉତ୍ସ ତେଣୁ ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନର ଜନଭିତ୍ତି । ସେଇ ବାଟରେ ସାଧାରଣ ଲୋକ କଷଣମୁକ୍ତିକୁ ମନେକରିଚି ଆପଣା କଷ୍ଟାର୍ଜିତ ପୁଣ୍ୟଫଳ । ଅର୍ଥାତ୍, ରାଷ୍ଟ୍ରକୁ ନିୟନ୍ତ୍ରଣ ଓ ପ୍ରତିରୋଧକରିବା ଲୋକଙ୍କ ଅକ୍ତିଆର ବହିର୍ଭୂତ ନୁହେଁ । ଦୀର୍ଘକାଳବ୍ୟାପୀ ରାଜନୀତିକ ପ୍ରତିରୋଧରୁ ଲବ୍ଧ ଶକ୍ତିଶାଳୀ ଏଇ ଜନମାନସକୁ ଅବଜ୍ଞାକରିବା ରାଷ୍ଟ୍ର ପକ୍ଷରେ ଅସମ୍ଭବ ହୋଇଥାନ୍ତା ଯଦି ସର୍ବଜନୀନ ସାବାଳକ ଭୋଟ୍‌ପ୍ରଥାକୁ ପଞ୍ଚବାର୍ଷିକୀ କରାଯାଇ ନଥାନ୍ତା ୧୯୫୧ରେ । ତଥାପି ସାଧାରଣ ନିର୍ବାଚନରେ ସେବର୍ଷ କଂଗ୍ରେସ ପାଇଚି ୪୩% ଭୋଟ୍ । ଏତେ ଭୋଟ୍ ବି ପାଇନଥାନ୍ତା ଭୋଟ୍‌ପ୍ରଥା ହୋଇଥାନ୍ତା ଯଦି ପ୍ରତ୍ୟକ୍ଷ । ଅର୍ଥାତ୍ ପ୍ରତ୍ୟକ୍ଷ ହସ୍ତକ୍ଷେପ, ଯେପରି ରେଫରେଣ୍ଡମ୍ କି ରିକଲ୍ । ତା ବଳରେ ରାଜନୀତିରେ ପ୍ରତ୍ୟକ୍ଷଭାବେ ପରିବର୍ତ୍ତନ ପ୍ରବର୍ତ୍ତନକରିବା କ୍ଷମତା ଭୋଟାଧିକାର ଦେଇଥାନ୍ତା ଯଦି ଲୋକଙ୍କୁ । ସୁଚିନ୍ତିତଭାବେ ସେ କ୍ଷମତାରୁ ଲୋକଙ୍କୁ ବଂଚିତକରି ସଂବିଧାନ ଯା ସାଧିତକରିଚି, ତା କେବଳ ଲୋକଙ୍କ ପ୍ରତି, ଏବଂ ସେଇ ସୂତ୍ରରେ ଗଣତନ୍ତ୍ର ପ୍ରତି, ଅବିଶ୍ୱାସ । ଆଉ, ବ୍ରିଟିଶ୍‌ସାମ୍ରାଜ୍ୟ ସହିତ ଭାରତର ସଂବିଧାନନିର୍ମାତାଙ୍କ ଚଳମାନ ଯୋଗସୂତ୍ର । ଦେଶ 'ରିପବ୍ଲିକ୍'ରେ ନାମାନ୍ତରିତ ହେବାବେଳକୁ କଂଗ୍ରେସ୍ ଭିତରୁ ବାହାରିଯାଇଚନ୍ତି ସୋସାଲିଷ୍ଟ; ୫୧ ନିର୍ବାଚନରେ ତଥାପି ପାଇଚନ୍ତି ୧୬% ଭୋଟ୍ । କମିଉନିଷ୍ଟ, ସୋଭିଏଟ୍ ଇଉନିୟନ୍‌ରୁ ଟଙ୍କାପଇସା ପାଉଥିଲେ ସୁଦ୍ଧା, ତାଙ୍କ ତତ୍ତ୍ୱାବଧାରକ ହୋଇରହିଚି କମିଉନିଷ୍ଟ ପାର୍ଟି ଅବ୍ ଗ୍ରେଟ୍ ବ୍ରିଟେନ୍ । ସୁଭାଷ ବୋସ୍‌ଙ୍କୁ 'ଇମ୍ପିରିଆଲିଷ୍ଟ ଡଗ୍' କହିଥିବା କାରଣରୁ ପାର୍ଟି ସେକ୍ରେଟେରି ଅଜୟ ଘୋଷଙ୍କୁ ଶୁଣିବାକୁ ପଡ଼ିଚି ଷ୍ଟାଲିନ୍‌ଙ୍କ ପାଖରୁ ତୀବ୍ର ଭର୍ତ୍ସନା ।

ତେଣୁ ରାଷ୍ଟ୍ର ଉପରେ ନେହରୁଙ୍କ ନିରଙ୍କୁଶ ବ୍ୟକ୍ତିଗତ କର୍ତ୍ତୃତ୍ୱକୁ ଆହ୍ୱାନଜଣାଇବା ଭଳି ଅବିଶିଷ୍ଟ ରହିନାହିଁ କୋଉହେଲେ ରାଜନୀତିକ ଶକ୍ତି । କନ୍ୟା ଇନ୍ଦିରା କିନ୍ତୁ ନିଜ ବ୍ୟକ୍ତିଗତ କର୍ତ୍ତୃତ୍ୱକୁ ଦୃଢ଼ତର କରିବାପାଇଁ କଂଗ୍ରେସ୍‌କୁ ଭାଙ୍ଗିଦେଇଚନ୍ତି ୧୯୬୯ରେ, ଯେତେବେଳେ ରାଷ୍ଟ୍ରପତି ପଦ ସକାଶେ ମନୋନୀତ କଂଗ୍ରେସ୍-ପ୍ରାର୍ଥୀଙ୍କ ବିରୋଧରେ ଛିଡ଼ାକରିଚନ୍ତି ସ୍ୱଅନୁଗତ ବରାହ ଭେଙ୍କଟ ଗିରିଙ୍କୁ । ଏବଂ ପୂର୍ବପାକିସ୍ତାନକୁ ସୈନ୍ୟବାହିନୀ ପଠାଇ ବାଂଲାଦେଶ୍ ତିଆରିକରିଦେବା ଫଳରେ ୧୯୭୧ ନିର୍ବାଚନରେ ପାଇଚନ୍ତି ପାର୍ଲାମେଣ୍ଟ୍‌ରେ ବିପୁଳ ସଂଖ୍ୟାଗରିଷ୍ଠତା । ସେ ସଂଖ୍ୟାଧିକାର ସଦ୍‌ବ୍ୟବହାର କରିଚନ୍ତି ସଂବିଧାନକୁ ୪୨ଥର ପାଇଁ ସଂଶୋଧନକରି; ଯା ଫଳରେ, ସୁପ୍ରିମ୍‌କୋର୍ଟ ଯାହାକୁ 'ବେସିକ୍ ଷ୍ଟ୍ରକ୍‌ଚର୍' କହିଥିଲା, ଧୂଳିସାତ୍ ହୋଇଯାଇଚି ଅକସ୍ମାତ୍ । ସରତବର୍ଷ ଧରି କଂଗ୍ରେସ୍‌ର ସାଂଗଠନିକ ନିର୍ବାଚନ ଡାକିନାହାଁନ୍ତି; ଇମର୍‌ଜେନ୍ସିର ସୁଯୋଗନେଇ ଅଫିସ୍-ଅଦାଲତ ଗୁଡ଼ାକୁ କରିଦେଇଚନ୍ତି 'କମିଟିଡ୍'! ଯୋଉ ରାଜବଂଶର ଭିତ୍ତିପତନ କରିଥିଲେ ବାପ, ଝିଅ ତାକୁ ଦେଇଦେଲେ ମୌରସି ପଟା! ଗଭୀର ଦୁଃଖ ଓ ବିସ୍ମୟର କଥା, ଏ ଅଘଟଣ ଦେଶର ବୁଦ୍ଧିଜୀବୀଙ୍କ ବିବେକକୁ ଆଘାତ କରିନାହିଁ; ବରଂ ଟ୍ରେନ୍ ଠିକ୍ ସମୟରେ ଚାଲୁଚି, ଅବର୍ଜ୍ୟା ବସ୍ତିଗୁଡ଼ାକ ଭଙ୍ଗାଯାଉଚି, ମୂଲମଜୁରିଆଙ୍କ ଆପତ୍ତି ପୁଲିସ୍ ଶୁଣୁନାହିଁ ଦେଖି, ମଧ୍ୟବିତ୍ତ ଯଥାରୀତି କ୍ଲବ୍-ସିନେମା-ଥିଏଟର୍-ରେଷ୍ଟୋରାଁ ଇତ୍ୟାଦିର ଆମୋଦ ନିର୍ବିଘ୍ନରେ ଉପଭୋଗକରିଚନ୍ତି; ଏପରିକି, ସନ୍ଥ ବିନୋବା ଇମର୍ଜେନ୍ସିକୁ ତୁଳନାକରିଚନ୍ତି *ମହାଭାରତ* ର ଅନୁଶାସନପର୍ବ ସାଙ୍ଗରେ । ସେତିକିବେଳୁଁ ରାଷ୍ଟ୍ରର ଚରିତ୍ର କିଭଳି ଦମନପ୍ରବଣ ହୋଇଯାଇଚି, ବୁଝିହେବ ଯଦି ଇନ୍ଦିରା-ହତ୍ୟାର ଅବ୍ୟବହିତରେ ଶିଖ୍‌ସଂପ୍ରଦାୟ ଉପରେ ନିର୍ବାଧ ହଣାକଟା ଓ ପୋଡ଼ାଜଳାକୁ ଲକ୍ଷ୍ୟକରାଯାଏ । ରାଜ୍ୟବଂଶ ନେଇଚି ପ୍ରତିଶୋଧ । ହେଲେସୁଦ୍ଧା, ଦେଶର ଲୋକଙ୍କ ପୋଡ଼ାକପାଳକୁ ଜୁଟିଲା ଅବା କି ଖିରିପୁରି ? କାହିଁକିନା, କଂଗ୍ରେସ୍ ଦଳର ଶହେବର୍ଷ ପୂରିଲା ଯେତେବେଳେ ୧୯୮୫ରେ, ଇନ୍ଦିରାପୁତ୍ର ରାଜୀବ କହିଲେ, ଲୋକଙ୍କ ଉପକାରପାଇଁ ଟଙ୍କାଟିଏ ଖର୍ଚ୍ଚକଲେ ଗରିବକୁ ମିଳୁଚି ୧୫ ପଇସା; ମଝିରେ ପଇସାଟାକୁ ବାଟମାରଣା କରୁଚନ୍ତି କ୍ଷମତାର ଦଲାଲ୍ (ପାୱର୍ ବ୍ରୋକର୍) । ଅଥଚ ଅବିଳମ୍ବେ ପ୍ରଘଟହେଲା ଯେ ଦେଶର ପ୍ରତିରକ୍ଷା ସକାଶେ ସ୍ୱେଡେନ୍‌ରୁ ବନ୍ଧୁକ କିଣିବାକୁ ରାଜୀବ ରିସ୍‌ପତ୍ ଖାଇଚନ୍ତି କୋଟି କୋଟି ଟଙ୍କା; ନିର୍ବାଚନବେଳେ ସ୍ଲୋଗାନ୍ ଉଠିଲା, 'ଗଲିଗଲିମେଁ ସ୍ୱର୍ ହୈ, ରାଜୀବ ଗାନ୍ଧି ଚୋର୍ ହୈ'; ମାମଲା ଏବେ ସୁଦ୍ଧା ତୁଟିନାହିଁ । ମାତ୍ର ଏଇ ବିମାନଚାଳକର ବି ସଂହାର ଘଟିଚି ଗୁପ୍ତଘାତକ ହାତରେ । ମୁସଲମାନ୍‌ଙ୍କ ଭୋଟ୍

ଯୋଗାଡ଼କରିବାକୁ ସ୍ୱାମୀପରିତ୍ୟକ୍ତା ଅସହାୟ ସାହା ବାନୋଙ୍କୁ ଭରଣପୋଷଣ ପାଇଁ ସୁପ୍ରିମ୍‌କୋର୍ଟ ଯୋଉ ରାୟଦେଇଥିଲେ, ସମ୍ବିଧାନ ସଂଶୋଧନକରି ରାଜୀବ ସମଗ୍ର ମୁସଲିମ୍‌ମହିଳାଙ୍କୁ ବଂଚିତକରିଚନ୍ତି ସେଇ ନ୍ୟାୟବିଚାରରୁ; ହିନ୍ଦୁଙ୍କ ଭୋଟ୍ ପାଇବାକୁ ବାବ୍‌ରି-ମସ୍‌ଜିଦ୍ ପରିସରରେ ଶିଳାନ୍ୟାସ କରିଚନ୍ତି ରାମମନ୍ଦିରର । ତଥାପି ପରବର୍ତ୍ତୀ ନିର୍ବାଚନରେ କଂଗ୍ରେସ୍ ପାଇନାହିଁ ପାର୍ଲାମେଣ୍ଟ୍‌ରେ ସଂଖ୍ୟାଗରିଷ୍ଠତା; ନରସିଂହ ରାଓଙ୍କୁ କିଣିବାକୁ ପଡ଼ିଚି ଆଦିବାସୀଙ୍କ ଭୋଟ୍ । ସ୍ପଷ୍ଟ ହୋଇଯାଇଚି, ରାଜନୀତି କି ରାଷ୍ଟ୍ରପରିଚାଳନାରେ ଏପରି କେହିନାହିଁ, ଯାହାକୁ କିଣିହେବନାହିଁ । ସଂକ୍ରାମକବ୍ୟାଧି ପରି ଏ ଉପସର୍ଗ ସଭିଲ୍‌ସୋସାଇଟିକୁ ବି ଚରିଯାଇଛି ଧୀରେ ଧୀରେ । ଦରଦାମ ବଢୁଚି କାହିଁକି ପଚାରିଲେ, ଚିଦମ୍ବରମ୍ କହୁଚନ୍ତି, ଲୋକଙ୍କ ହାତକୁ ପଇସା ଆସିଚି, କିଣିପାରିବା ଆଉ ସମସ୍ୟା ନୁହେଁ; ସିଭିଲ୍‌ସୋସାଇଟି କିନ୍ତୁ ପ୍ରତିବାଦକରୁନାହିଁ । ଲକ୍ଷ୍ୟକରିବା କଥା ତେଣୁ ରାଜବଂଶର ଶ୍ରେଣୀଚରିତ୍ର; ଅର୍ଥାତ୍, ରାଜବଂଶ ଖାଲି କଂଗ୍ରେସ୍‌କୁ ବୁର୍ଜୋୟା କରିନାହିଁ, ବିପକ୍ଷ ଶକ୍ତି (ଯେପରି, ବିଜେପି କି ଡିଏମ୍‌କେ) କୁ ମଧ୍ୟ କରିଦେଇଚି ବୁର୍ଜୋୟା । ଏକାବେଳକେ ସିଭିଲ୍‌ସୋସାଇଟିର ଗୋଟାଏ ବଡ଼ ଅବୟବ, ଗଣମାଧ୍ୟମକୁ ସୁଦ୍ଧା ।

ଏକ୍ଷଣି କୁହାଯାଉଚି, ପୁରା ଗୋଟାଏ ଟ୍ରିଲିୟନ୍ ମାର୍କିନ୍ ଡଲାର୍ ଭାରତୀୟ ଧନୀ ଲୁଚାଇରଖିଚନ୍ତି ବିଦେଶୀ ବ୍ୟାଙ୍କ୍‌ରେ ; ବିବାକ୍ କୁଆଡ଼େ କଳାଟଙ୍କା । ରାଜନୀତିକ କ୍ଷମତାରେ କିନ୍ତୁ କଂଗ୍ରେସ୍ ରହିଲା ଆଉ ଦଶବର୍ଷ, ୨୦୦୪ରୁ ୨୦୧୪; ଯାର କର୍ଣ୍ଣଧାର ରାଜୀବଙ୍କ ବିଧବା ଇଟାଲୀୟ ଲଳନା ସନିଆ । ତାଙ୍କ ତତ୍ତ୍ୱାବଧାନରେ ପ୍ରଧାନମନ୍ତ୍ରୀ କାମ ଯିଏ ତୁଲାଇଲେ, ବିଶ୍ୱବ୍ୟାଙ୍କ୍‌ର ପୂର୍ବତନ କର୍ମଚାରୀ, ଭାରତର ରିଜର୍ଭ ବ୍ୟାଙ୍କ୍‌ର ପୂର୍ବତନ ଗଭର୍ଣ୍ଣର୍ । କିଏ କୋଉଠି ଟଙ୍କାରଖିଚି, ଆବିଷ୍କାରକରିବା ତାଙ୍କ ପକ୍ଷରେ ତେଣୁ ଅସମ୍ଭବ ନୁହେଁ, ବିଶେଷତଃ ଯେହେତୁ ବିଦେଶୀ ବ୍ୟାଙ୍କ୍ ଆବଶ୍ୟକ ତଥ୍ୟ ଜଣାଇଦେବାକୁ ଅସମ୍ମତ ନୁହେଁ; ଅସମ୍ମତ ମଧ୍ୟ ନୁହେଁ ଆନ୍ତର୍ଜାତିକ ମୁଦ୍ରାକୋଷ । କିନ୍ତୁ କଂଗ୍ରେସ୍ ସକାଶେ ସଦ୍ଦାମ୍ ହୁସେନ୍ ପାଖରୁ ନଟବର ସିଂ ତେଲପରମିଟ୍ (=ବିଦେଶୀମୁଦ୍ରା) ଆଣିଚନ୍ତି ବୋଲି ଜାତିସଂଘକୁ ଭଲ୍‌କର୍ ଜଣାଇବା ଉତାରୁ ସନିଆ ନଟବରଙ୍କୁ ମନ୍ତ୍ରୀଚାକିରୀରୁ କାଢ଼ିଦେଇଚନ୍ତି; ଇଟାଲୀୟ ବଣିକ କୁଓଟ୍ରିଚିଙ୍କ ବ୍ୟାଙ୍କିଙ୍ଗ୍ କାରବାରକୁ କିନ୍ତୁ ସାହାଯ୍ୟକରୁଚନ୍ତି ପ୍ରକାଶ୍ୟରେ; ସିବିଆଇ ବି ତା ବାଳ ବଙ୍କାକରି ପାରୁନାହିଁ । ଏବେ ତ ଟେଲିକମ୍ ମନ୍ତ୍ରୀ ଏ.ରାଜା ୧.୭୯ ଲକ୍ଷକୋଟି ଟଙ୍କା ଖାଇଚି ବୋଲି ସୁପ୍ରିମ୍‌କୋର୍ଟରେ ମୋକଦ୍ଦମା ଚାଲୁଚି । କଂଗ୍ରେସ୍ ଏମ.ପି. ସୁରେଶ କଲମାଦି ସେମିତି କମନ୍‌ୱେଲ୍‌ଥ ଖେଳରୁ କେତେ କୋଟି ଖାଇଚି,

ହିସାବ କରାଯାଉଚି ଅଦାଲତରେ । ସବୁଠୁଁ ବେଶିଟଙ୍କା ପୁନାର ଗୋଟାଏ ଘୋଡାରଖୁଆଳ, ହସନ୍ ଅଲି ଖାଁ, ଉଡ଼ାଇନେଇ ଜୁରିଖ୍‌ରେ ରଖିଚି ବୋଲି ଗୁଜବ; ଖାଲି ୨୦୦୭ ସାଲରେ ଜମାକରିଚି ଆଠ ମିଲିଅନ୍ ଡଲାର୍; ମାତ୍ର ୧୯୯୯ରୁ ଦାଖଲକରିନାହିଁ ଇନ୍‌କମ୍‌ଟ୍ୟାକ୍ସ ରିଟର୍ଣ୍ଣ । ଏନ୍‌ଫୋର୍ସମେଣ୍ଟ ଡିରେକ୍ଟୋରେଟ୍ ଜାଣିପାରିଚି, ସଉଦିଆରବର ମାରଣାସ୍ତ୍ରବେପାରୀ ଆଦ୍‌ନନ୍ କାସୋଗି ସହିତ ହସନ୍ ଅଲି ଓତପ୍ରୋତ ଜଡ଼ିତ । ଅର୍ଥାତ୍ ସନ୍ତ୍ରାସବାଦୀଙ୍କୁ ଗୋପନରେ ଅସ୍ତ୍ରଶସ୍ତ୍ର ଯୋଗାଇଦେବା ତାର ଅସଲ କାରବାର । ତା ବାଳ ବି ବଙ୍କାକରି ପାରିନାହିଁ ମହାମାନ୍ୟ ଭାରତୀୟ ରାଷ୍ଟ୍ର । ଏବଂ ମାର୍ଚ୍ଚ ୨୦୧୦ରେ ଯେତେବେଳେ ଜଣାପଡିଚି ଯେ କିଛି କଂଗ୍ରେସ୍‌ନେତାଙ୍କ ସାଙ୍ଗରେ ତାର ସଂଯୋଗରହିଚି ବରାବର, ମହାରାଷ୍ଟ୍ର ଆସେମ୍ବ୍ଲିରେ କଥାଟା ଉଠିଚି; ପୁଲିସ୍‌ରିପୋର୍ଟରୁ ଦେଖାଯାଇଚି, ସନିଆ ଗାନ୍ଧିଙ୍କ ପଲିଟିକ୍ୟାଲ୍ ସେକ୍ରେଟାରୀ ଅହମଦ୍ ପଟେଲ୍ ପ୍ରକୃତରେ ହସନ୍ ଅଲି ଓ ନିଜ ମୁନିବଙ୍କ ମଝିରେ ରହିଚନ୍ତି ସେତୁବନ୍ଧ । ତେବେ, ପୁରା ଗୋଟାଏ ଟ୍ରିଲିୟନ୍ ଡଲାର୍ ଉଡ଼ାଇନେଇନାହିଁ ଏକେଲା ହସନ୍ ଅଲି ନାମକ ଘୋଡ଼ାବେପାରୀ; ସବୁଶ୍ରେଣୀରେ ଲୋକ ଅଛନ୍ତି, ପଲିଟିସିଆନ୍‌ଙ୍କ ସଂଖ୍ୟା ସମ୍ଭବତଃ ସର୍ବାଧିକ । ଏଣେ ଭାରତ ରାଷ୍ଟ୍ରର ଦୁର୍ନୀତିନିବାରଣ କମିଶନର୍ ସୁପ୍ରିମ୍‌କୋର୍ଟକୁ କହିଚନ୍ତି, ଅଧିକାଂଶ ପାର୍ଲାମେଣ୍ଟ୍‌ସଭ୍ୟଙ୍କ ବିରୋଧରେ କ୍ରିମିନ୍ୟାଲ୍ ଚାର୍ଜ ବିଚାରାଧୀନ ଥିବାବେଳେ ଏକେଲା କାହିଁକି ଇସ୍ତଫାଦେବେ ?

ଅନ୍ୟ ଶବ୍ଦରେ, ଏମାନେ କେହି ଦେଶଦ୍ରୋହୀ ନୁହେଁ; ଦେଶଦ୍ରୋହୀ କେବଳ ତଥାକଥିତ ମାଓବାଦୀ; ଏପରିକି, ଡାକ୍ତରଙ୍କ ଡାକ୍ତର୍ ବିନାୟକ ସେନ୍ । ତାଙ୍କ ପାର୍ଟିକୁ ବି ବେଆଇନ୍ ଘୋଷଣାକରିଚି ସରକାର; ରାଷ୍ଟ୍ରର ଶ୍ରେଣୀଚରିତ୍ର ତେଣୁ କୋଉ ଗବେଷଣାର ବିଷୟ ନୁହେଁ । ସନିଆ-ପୁତ୍ର ରାହୁଲ, ପ୍ରଧାନମନ୍ତ୍ରୀହେବା ବାଟରେ କାଳେ କଣ୍ଟାହେବ, ଆନ୍ଧ୍ରପ୍ରଦେଶର ଯୁବନେତା ଜଗନ୍‌ମୋହନ ରେଡ୍ଡିକୁ ସେଥିପାଇଁ ବହିଷ୍କୃତକରାଯାଇଚି; ପାର୍ଟିରୁ ପ୍ରତିଭା ପଟିଲ୍‌ଙ୍କ ରାଷ୍ଟ୍ରପତି ହେବା ମୂଳରେ ରାଜବଂଶ ପ୍ରତି ତାଙ୍କ ଅଚଳା ଭକ୍ତିକୁ ଦାୟୀକରିଥିବାରୁ ରାଜସ୍ଥାନର ମନ୍ତ୍ରୀ ଅମିନ୍ ଖାଁକୁ ଇସ୍ତଫାଦେବାକୁ ପଡ଼ିଚି; ଜଗନ୍‌ମୋହନ ଅବଶ୍ୟ ପ୍ରଧାନମନ୍ତ୍ରୀଙ୍କୁ କହିଥିଲେ 'ରବର୍‌ଷ୍ଟ୍ୟାମ୍ପ୍' । ତଥାପି, ରାଜୀବ ଗାନ୍ଧିଙ୍କ ଅପମୃତ୍ୟୁ ପାଖରୁ ଆଜିପର୍ଯ୍ୟନ୍ତ କଂଗ୍ରେସ୍ ପାର୍ଲାମେଣ୍ଟରେ ଏକକ ସଂଖ୍ୟାଗରିଷ୍ଠତା ଅର୍ଜନକରି ପାରିନାହିଁ । କ୍ଷମତାଲୋଭରେ ଛେଳି-କୁକୁର ଏକଜୋଟ୍‌ହୋଇ ବନାଇଚନ୍ତି କୋଆଲିସନ୍ । ଅର୍ଥାତ୍, ଏକପ୍ରକାର ରାଜନୀତିକ ଶୂନ୍ୟତା; କାହିଁକିନା, ଦେଶର ସ୍ୱାର୍ଥରେ ରାଜନୀତି ଚାଳିତ ହୁଏନା, ରାଜନୀତିକ ଦଳ ବା ରାଜବଂଶର ସ୍ୱାର୍ଥ ଦେଶକୁ ଶାସନକରେ ।

କୁହାଯାଇପାରେ, ଦେଶର ସ୍ୱାର୍ଥରେ ରାଜନୀତି ଯଦି ଚାଲୁନାହିଁ, ନବେଦଶକ ଆଗରୁ ଅର୍ଥନୀତିକ ଉନ୍ନତି (ଗ୍ରୋଥ୍) ଯୋଉ 'ହିନ୍ଦୁ-ରେଟ୍' ୩%ରେ ଥିଲା, ଆଜି କେମିତି ୮ ରୁ ୯% ବଢ଼ିଚି ? ଚିନ୍ ଠୁଁ ମାତ୍ର ୧% ଉଣା ! କେମିତି ଦେଶ ଗଣ୍ୟହେଉଚି ପୃଥିବୀର ଅନ୍ୟତମ ଉତ୍ଥାନଶୀଳ ବୃହତ୍‌ଶକ୍ତି ? ଏଗୁଡ଼ାକ, ଜୀବନ ନିର୍ବାହର ଅଭିଜ୍ଞତା କହୁଚି, ପ୍ରଚାର ମାତ୍ର ! ଯୋଉ ଗ୍ଲୋବାଲ୍ କରପୋରେସନ୍‌ଗୁଡ଼ାକ ମୁଖ୍ୟଭୂମିକା ଅଙ୍ଗୁରିଚନ୍ତି ଅର୍ଥନୀତିର ବିକାଶରେ, ଏବଂ ସେଇ ସୂତ୍ରରେ, ପ୍ରଭାବିତ କରୁଚନ୍ତି ରାଜନୀତିକୁ, କଥାଗୁଡ଼ାକ ତାଙ୍କର ମୁଖନିଃସୃତ । ଦଶବର୍ଷକରୁ ବେଶି କାଳ ଅଭିବୃଦ୍ଧିର ଏକ ଉଚ୍ଚହାର ସତ୍ତ୍ୱେ, ଦେଶର ଏକତୃତୀୟାଂଶରୁ ବେଶି ଲୋକ ପଶୁବତ୍ ସଢ଼ୁଚନ୍ତି ଦୁଃଖ-ଦାରିଦ୍ର୍ୟରେ । ୪୨% ଲୋକଙ୍କ କ୍ରୟକ୍ଷମତା ଗୋଟାଏ ମାର୍କିନ୍‌ଡଲାରରୁ ବି ଉଣା; ତିନିଚତୁର୍ଥାଂଶ ଲୋକଙ୍କ ଦୈନିକ ଉପାର୍ଜନ କୋଡ଼ିଏଟଙ୍କା ତଳକୁ । ଖାଦ୍ୟପେୟରୁ ବଞ୍ଚନା ଗତ ଦୁଇଦଶକଧରି ଗ୍ରାମାଞ୍ଚଳରେ କମିନାହିଁ; ଶିଶୁକିଶୋରଙ୍କ ୫୦% ରୁ ବେଶି ଅପୁଷ୍ଟିରେ ଭୋଗୁଚନ୍ତି ଯେମିତି, ରକ୍ତାଳ୍ପତାରେ ଭୋଗୁଚନ୍ତି ସେମିତି ଅଧିକାଂଶ ନାରୀ । ମନଗଢ଼ା ପରିସଂଖ୍ୟାନ ନୁହେଁ ଏଗୁଡ଼ାକ । ପେନ୍‌ସନ୍ ହେଉ, ରହିବାଘର ହେଉ, ରାସ୍ତାଘାଟ ହେଉ, ସ୍କୁଲ୍‌କଲେଜ୍ ହେଉ, ବିମାନବନ୍ଦର ହେଉ, ବିବାକ କିନ୍ତୁ ନାମିତହୋଇଚି ଇନ୍ଦିରା କି ରାଜୀବଙ୍କ ନାମାନୁସାରେ; ସତେ ଯେମିତି ଜମିଦାରି ଆୟରୁ ଖଇରାତ୍ କରିଦେଇଚି ରାଜବଂଶ ! ବଂଶାନୁକ୍ରମିକ ଅଭିସାରର ଏଇ ଚିହ୍ନଗୁଡ଼ାକ ତେବେ ସୁରକ୍ଷିତ ରହୁଚି କେମିତି ? କେମିତି ନା, ଅର୍ଥନୀତିର ଗ୍ଲୋବାଲାଇଜେସନ୍ ଫଳରେ ଗାଁଗହଳକୁ ବି ବିଜୁଳି-ସଡ଼କ-ପାଣି କେତେଜାଗାରେ ଯାଇଚି; ଜମିଜାଗା ଯାଆର ଅଛି, ମାଟିଘର ଜାଗାରେ ତୋଳିଚି କୋଠା । ସହରଗୁଡ଼ାକରେ କିନ୍ତୁ 'ଆଧୁନିକୀକରଣ'ର ଏଇ ଚିହ୍ନ ସାଙ୍ଗକୁ ତତ୍‌ସଂଲଗ୍ନ ଧନଦଉଲତର ବିକଟ ପ୍ରକାଶ ଆଖିରେ ପଡ଼ିବା ସହଜ । ଖାଲି ୨୦୦୭ରେ ଆମ ବିଲିଅନାରଙ୍କ ସଂଖ୍ୟା ଟପିଯାଇଚି ଜାପାନର ଧନକୁବେରଙ୍କ ସଂଖ୍ୟାକୁ; ୨୦୦୪ରେ ଯା ଥିଲା ୯, ୨୦୦୭ରେ ହୋଇଚି ୪୦ । ଭାରତକୁ ତେଣୁ ଅକ୍ଳେଶରେ କହିହେବ ଏସିଆ ମହାଦେଶର ସବୁଠୁଁ ସଂପଦଶାଳୀ ରାଷ୍ଟ୍ର । ଆର୍ଥିକ ଉନ୍ନତି ତେଣୁ ନିଶ୍ଚୟ ଘଟିଚି, ମାତ୍ର ସୀମାବଦ୍ଧ ରହିଚି ବିଶାଳ ଭୂଖଣ୍ଡର ମୁଷ୍ଟିମେୟ ଅଧିବାସୀଙ୍କ ଆୟଉରେ । ଅବଶିଷ୍ଟ ଲୋକ, କିଏ ଜମି ହରାଇଚି, କିଏ ଚାକିରୀରୁ ବହିଷ୍କୃତହୋଇଚି, କିଏ ଭିଟାମାଟିରୁ ହୋଇଚି ଉତ୍ପାଟିତ, କି ଅଧବାଟରୁ ପାଠପଢ଼ା ଛାଡ଼ିଦେଇଚି, କୋଉ ସ୍ତ୍ରୀଲୋକ ଉପରେ ବଳାତ୍କାର ହୋଇଚି କି ଯୌତୁକ ଆଣିପାରିନାହିଁ ବୋଲି ପୋଡ଼ି ମାରିଦିଆଯାଇଚି । ବିଭିନ୍ନ ଧରଣର ଲୋକଗୋଷ୍ଠୀ

ପାଇଁ ଗ୍ଲୋବାଲାଇଜେସନ୍‌ର ଏଇ କାଳଖଣ୍ଡ ହୋଇଚି, ଡିକେନ୍ସ ଲେଖିବା ପରି, It was the best of times, it was the worst of times....। କାହିଁକିନା, ଆୟସ୍ତରର ଅସାଧାରଣ ଉର୍ଦ୍ଧ୍ୱଗତି ସମ୍ଭବପର ହୋଇଚି ସ୍ଥାୟୀ ଚାକିରିବାକିରିର ଅଭୂତପୂର୍ବ ସଙ୍କୋଚନ ଫଳରେ । ଗ୍ରସ୍ ଡମେଷ୍ଟିକ୍ ପ୍ରଡକ୍ଟ (ଜିଡିପି) ବଢ଼ିଚି ଯେତେବେଳେ ୭% ହାରରେ, ସଂଗଠିତ ଉତ୍ପାଦନକ୍ଷେତ୍ରରେ କର୍ମସୁଯୋଗ ବଢ଼ିଚି ମାତ୍ର ୧% ହାରରେ । କ୍ରମବର୍ଦ୍ଧମାନ ଶ୍ରମଜୀବୀଶ୍ରେଣୀ ତେଣୁ ଠେଲିହୋଇ ଅସଂଗଠିତ କ୍ଷେତ୍ର ଭିତରକୁ ପଶିଯିବାକୁ ବାଧହୋଇଚି; ଅର୍ଥାତ୍ ଶୋଷଣ ପୀଡ଼ନ ସହ୍ୟକରୁଚନ୍ତି ଅସହାୟହୋଇ । କାହିଁକିନା, ଅସଂଗଠିତ କ୍ଷେତ୍ରରେ କିମ୍ବା ସ୍ୱନିର୍ଭର ଶ୍ରମରେ ଆୟର ଅନୁପାତ ସବୁବେଳେ ଯତ୍‌କିଞ୍ଚିତ୍ । ଅନ୍ୟପକ୍ଷରେ ବୃହତ୍ ବଣିକସଂସ୍ଥା (କର୍‌ପୋରେଟ୍) ଯା ଉତ୍ପନ୍ନକରେ, ଦେଶର ବିତ୍ତଶାଳୀ ଲୋକଙ୍କୁ ଆଉ ବିଦେଶର ଚାହିଦାକୁ ଦୃଷ୍ଟିରେ ରଖି କରିଥାଏ ଏବଂ ପ୍ରଯୁକ୍ତିନିର୍ଭର ସେଭଳି ଉତ୍ପାଦନରୁ ଶ୍ରମଜୀବୀଙ୍କ ସଂଖ୍ୟା କମାଇପାରିଲେ ମୁନାଫା ବଢ଼ିବା ହୁଏ ସହଜତର । ଫଳରେ ଅବଶ୍ୟ, କଂପାନୀର କର୍ମଚାରୀ ଓ ଅଂଶୀଦାର ମଧ ଲାଭବାନ ହୁଅନ୍ତି । ସେମାନେ କିନ୍ତୁ ଦିହଖଟଣିରେ ଚଳିବା ଲୋକ ନୁହଁନ୍ତି । ଅର୍ଥାତ କର୍ମଚ୍ୟୁତ କି କର୍ମହୀନର କଷଣ ମେଣ୍ଟାଇବାକୁ ରାଷ୍ଟ୍ର ଇମାରୁ ତତ୍ପରହୁଏନା, କାହିଁକିନା, ବଜାର (ପ୍ରାଇଭେଟ୍ ସେକ୍ଟର୍) ସେ ଦିଗରେ ଅଧିକରୁ ଅଧିକ ଉତ୍ସାହୀହେବ ମନେକରି ଶ୍ରମବଜାରରେ ହସ୍ତକ୍ଷେପ କରେନା । କିନ୍ତୁ ବୃହତ୍ ଶିଳ୍ପସଂସ୍ଥାଗୁଡ଼ିକୁ ରାଷ୍ଟ୍ର ସବୁରକମ ମଦତ୍‌ଦେବାକୁ ଉଦ୍‌ଗ୍ରୀବ; ଯେପରି, ସ୍ୱଳ୍ପମୂଲ୍ୟରେ ଜମି, ପାଣି, ବିଦ୍ୟୁତ୍ । ଏ ଗୁଡ଼ାକ ଜନସାଧାରଣଙ୍କର ସ୍ୱାର୍ଥରେ କରାଯାଉଚି ବୋଲି ପ୍ରଚାରକରାଯାଏ । ଇଂରେଜୀରେ 'ପବ୍ଲିକ୍ ଇଣ୍ଟରେଷ୍ଟ୍' । ଜମି, ପାଣି ଇତ୍ୟାଦି ଅଧିଗ୍ରହଣ ସକାଶେ ପୁଲିସ୍ କି ଅନ୍ୟ ପ୍ରକାର ରାଷ୍ଟ୍ରଶକ୍ତି ପ୍ରୟୋଗକରାଯିବା ଫଳରେ ଲୋକ, ଅଧିକାଂଶ ଜାଗାରେ, ଜୀବିକାର୍ଜନର ଏକମାତ୍ର ଉପାୟରୁ ବଂଚିତହୁଅନ୍ତି, କର୍‌ପୋରେଟ୍ କିନ୍ତୁ ଏଇ ପ୍ରାକୃତିକ ସଂପଦକୁ ବେଶି ଖର୍ଚ୍ଚ କି ବେଶିକଷ୍ଟ ନକରି ପାଇଯାଏ । ଏପରିକି, କର୍‌ପୋରେଟ୍ ମଧ ରାଜନୀତିକରୁଥିବା ଲୋକଙ୍କୁ ହାତକରିବା ଲାଗି 'ଲବିଷ୍ଟ' ନିଯୋଗକରେ, ଯେପରି ନୀରା ରାଡିଆ । ଭାରତ ସରକାରରେ କିଏ ମନ୍ତ୍ରୀ ହେବ, ଏବଂ ମନ୍ତ୍ରୀହେଲେ କେଉ ବିଭାଗ ଦାୟିତ୍ୱରେ ରହିବ, ଲବିଷ୍ଟ ନିର୍ବିଘ୍ନରେ ଯୋଗାଡ଼କରିଦେଇ ପାରେ । ଅନ୍ୟ ଶବ୍ଦରେ, କେନ୍ଦ୍ରରେ ହେଉ କି ରାଜ୍ୟରେ, ବ୍ୟକ୍ତିଗତ ବେପାରବଣିଜର ପୃଷ୍ଠପୋଷକ ହୋଇଚି ସ୍ୱୟଂ ରାଷ୍ଟ୍ର; ଦରିଦ୍ର ଓ ବୃହତ୍‌ପୁଞ୍ଜି ମଝିରେ ନିୟାମକ କି ମଧ୍ୟସ୍ଥ ନହୋଇ, ଗରିବ ଭୂମିହୀନ କର୍ମହୀନ ମଣିଷକୁ ଛାଡ଼ିଦେଉଚି ରାଘବବାଳିଆ ମୁହଁକୁ; ଏଥିରେ ସାମାନ୍ୟତମ

ବ୍ୟତିକ୍ରମ ଘଟିଲେ, ରତନ ଟାଟା କହିନ୍ତ, ଭାରତ ଗୋଟାଏ 'ବେନାନା ରିପବ୍ଲିକ୍' । ସନିଆ-ଜାମାତା ରବର୍ଟ ଭଦ୍ର କହେ, ବେନାନା ରିପବ୍ଲିକ୍ ଅବ୍ ମ୍ୟାଙ୍ଗୋମେନ୍ । ଆମ୍ ଆଦ୍‌ମିର ଇଂରେଜୀ ତାପାଇଁ ମ୍ୟାଙ୍ଗୋମେନ୍ । ଫଳରେ, ୧୯୯୦ ପାଖରୁ କର୍‌ପୋରେଟ୍ ମୁନାଫା ବଢ଼ିଚି ଜିଡିପି-ର ତିନିଗୁଣ, ଜମି ଦଖଲପାଇଁ କିନ୍ତୁ ଗୁଳିଚାଲିଚି ବହୁବାର । ଉନ୍ନୟନର ଏଇ ଭୟଙ୍କର ଆବର୍ତ୍ତ ସବୁଠୁଁ ବେଶି ପର୍ଯ୍ୟୁଦସ୍ତକରିଚି ବଣଜଙ୍ଗଲରେ ପାହାଡ଼ପର୍ବତରୁ ଦାନା ସଂଗ୍ରହକରି ବଞ୍ଚୁଥିବା ଲୋକଙ୍କୁ । କାହିଁକିନା, ତାଙ୍କରି କୁଡ଼ିଆତଳ ଜମିତଳେ ରହିଚି ଖଣିଜ । ଅଳ୍ପ କଥାରେ, ଏଇ ରକମ ବିକାଶରୁ ସାମୟିକଭାବେ ଢ଼େର୍ ଧନସଂପଦର ଆଗମ ହେଲେସୁଦ୍ଧା, ଦେଶବ୍ୟାପୀ ଅସାମ୍ୟକୁ ଆହୁରି ତୀବ୍ର, ଆହୁରି ଦୀର୍ଘସ୍ଥାୟୀ ଓ ଆହୁରି ଅସହଣୀୟ କରିବା ପକ୍ଷରେ ଡିଭେଲପ୍‌ମେଣ୍ଟ୍ ହୋଇଚି ସନ୍ତ୍ରାସ ଭଳି ସାଂଘାତିକ ।

ଅର୍ଥନୀତିରେ ହେଉ କି ରାଜନୀତିରେ, ଧନଉତ୍ପାଦନର ଏଇ ଧରଣକୁ କୁହାଯାଏ କ୍ୟାପିଟାଲିସ୍ମ ବା ଧନତନ୍ତ୍ର । ଏ ବ୍ୟବସ୍ଥାରେ ଏପରିସବୁ ଜିନିଷ ଓ ପରିସେବା ତିଆରିହୁଏ ଯା ସମାଜର ଉପର ସ୍ତରର ଲୋକଙ୍କ ଚାହିଦା ମେଣ୍ଟାଏ, କାହିଁକିନା, କିଣିପାରିବା କ୍ଷମତା କେବଳ ସେଇ ଶ୍ରେଣୀର ଉତ୍ତରୋତ୍ତର ବଢୁଥାଏ । ଏ ପ୍ରକ୍ରିୟା ଯେହେତୁ ଧନବାନ୍ ଓ କ୍ରମବର୍ଦ୍ଧିଷ୍ଣୁ ମଧ୍ୟବତ୍ତିଶ୍ରେଣୀର ସ୍ୱାର୍ଥର ଅନୁକୂଳ, ନାନାଦି ଦାର୍ଶନିକ ମହିମାରେ ତାକୁ ମଣ୍ଡିତ କରାଯାଏ, ଯେପରି 'ଆଧୁନିକତା' କି 'ପ୍ରଗତି', ପ୍ରକୃତ ପ୍ରସ୍ତାବରେ ଯା କ୍ଷମତା ଷ୍ଟ୍ରକ୍‌ଚର୍‌ର ଆଇଡିୟଲଜି । ଦିନକୁ ଦିନ ଅବଶ୍ୟ ବିଦେଶରୁ ବେଶିରୁ ବେଶି ପୁଞ୍ଜି ଆସି 'ପ୍ରଗତିଶୀଳ' ଏଇ ବଜାରରେ ଲଗାଣ କରାଯାଇଚି, କିନ୍ତୁ ସେ ଲଗାଣର ଉଦ୍ଦେଶ୍ୟ ଦେଶବାହାର ବଜାରର ଆବଶ୍ୟକତାକୁ ତୁଷ୍ଟକରିବା; ସମ୍ଭବପର ହୋଇଚି ଏଠି ନବେଦଶକରୁ । ରାଷ୍ଟ୍ର ଯୋଉ ସାହାଣମେଲା ନୀତି ଅବଲମ୍ବନକରୁଚି, ଏ ହେଲା ତାହାରି ପରିଣାମ । ତଥାପି, ପୃଥିବୀର କୋଉହେଲେ ପ୍ରତ୍ୟନ୍ତ ବା ଦୁର୍ଗମ ସ୍ଥାନରେ ମୁନାଫା ଅର୍ଜନର ସମ୍ଭାବନା ଯଦି ଅପେକ୍ଷାକୃତ ଅଧିକ ହୁଏ, ତଥ୍ୟପ୍ରଯୁକ୍ତି କଲ୍ୟାଣରୁ ନିମେଷକ ମଧ୍ୟରେ ଜାଣିପାରି, ଦ୍ରୁତଗତିଶୀଳ ଫିନାନ୍ସ କ୍ୟାପିଟାଲ ଆଖିପିଛୁଡ଼ାକେ ଉଡ଼ିଯିବ । ବିଦେଶର ବଜାରଗୁଡ଼ାକରେ ମଧ୍ୟ ତଣ୍ଟିକଟା ପ୍ରତିଯୋଗିତା କାମକରୁଚି ଅହୋରାତ୍ର; ଭାରତ ସେଠି କୌଣସି ଦୀର୍ଘସ୍ଥାୟୀ ଆସନ ଅଦୂର ଭବିଷ୍ୟତରେ ଜମାଇପାରିବା ସମ୍ଭାବନା ଜମାରୁ ନାହିଁ । ଅର୍ଥାତ୍, ବିଦେଶର ବଜାର ଯେ ଭାରତର ସାଧାରଣଲୋକ ସକାଶେ ବିଶେଷ କୋଉ ସୁବିଧା-ସୁଯୋଗ ଆଣିଦେଇ ପାରିବ, ସେଭଳି ପ୍ରତ୍ୟାଶା ଦୁରାଶା ମାତ୍ର । ଗାନ୍ଧିଙ୍କ ସ୍ୱଦେଶୀ ଆନ୍ଦୋଳନ କାଳରୁ ଧନତାନ୍ତ୍ରିକ ଶିଳ୍ପାୟନର ବିକଳ୍ପ

ଖୋଜାଚାଲୁଚି, ମାତ୍ର ସଂବିଧାନରେ 'ସୋସାଲିଜ୍ମ' ଆମର ଲକ୍ଷ୍ୟ ବୋଲି ଘୋଷଣା କରାଯାଇଥିଲେ ସୁଦ୍ଧା, ବୃହତ୍ ଭୂମ୍ୟଧିକାରୀଙ୍କ କବଳରୁ ବଳକା ଜମି କାଢ଼ିଆଣି ଭୂମିହୀନ ହଳିଆ-ମୂଲିଆଙ୍କୁ ଇଞ୍ଚେ ହେଲେ ଦିଆଯାଇନାହିଁ । କାରଣ ହୁଏତ ଜମିମାଲିକଙ୍କୁ ଏତେ ପରିମାଣ କ୍ଷତିପୂରଣ ଦେଇପାରିବା ସମ୍ବଳ ରାଷ୍ଟ୍ରର ନାହିଁ । କିନ୍ତୁ, ପ୍ରକୃତିର ଦାନ ଭୂମି, ବଣପାହାଡ଼, ପାଣିପବନ ସକାଶେ କାହାକୁ କିଏ କ୍ଷତିପୂରଣ ଦେବ କାହିଁକି ? କାହିଁକିନା, ସଂପତ୍ତି ଉପରେ ବ୍ୟକ୍ତିଗତ ମାଲିକାନାକୁ ସଂବିଧାନ କହିଚି ମୌଳିକ ଅଧିକାର; ଲୋକଙ୍କ ଖାଇବା-ପିଇବା ଅଧିକାର କିନ୍ତୁ 'ମୌଳିକ' ନୁହେଁ । ଦେଶର ପ୍ରାକୃତିକ ସଂପଦର ସମବଣ୍ଟନ / ପୁନର୍ବଣ୍ଟନ ନଘଟିଲେ, 'ଗରିବି ହଟାଓ' କମ୍ପିନ୍‌କାଳେ ସମ୍ଭବ ହେବ କି ? କିନ୍ତୁ ପୁଞ୍ଜିବାଦୀ ଉନ୍ନୟନ ଏପରି ଏକ ପ୍ରକ୍ରିୟା, ଯା ସଂପଦ ପୁନର୍ବଣ୍ଟନକରିବାକୁ ରାଜନୀତିକୁ ଅବକାଶ ଦିଏନା । ଦରକାର ତେଣୁ ଉତ୍ପାଦନ-ପ୍ୟାଟର୍ଣ୍ଣର ଆମୂଳ ପରିବର୍ତ୍ତନ । କାହିଁକିନା, ସଂପଦର ପୁନର୍ବଣ୍ଟନ ମାନେ କ୍ଷମତାର ପୁନର୍ବଣ୍ଟନ । ଏ କାମରେ ବାହାରୁ କିଛିହେଲେ ସାହାଯ୍ୟ ମିଳିବନାହିଁ; କାହିଁକିନା, ଶୀତଳଯୁଦ୍ଧର ଜମାନା ସରିଯାଇଛି; ପୃଥିବୀ ଏକ୍ଷଣି ଏକମେରୁ, ଧନତନ୍ତ୍ର ଆଉ ହୃତ୍‌ପିଣ୍ଡ । ଗତିଶୀଳତା ହରାଇ ସଭିଲ୍‌ସୋସାଇଟି ବି ସେଠି ଅଥର୍ବ । ଏକମେରୁତ୍ୱର ପ୍ରବଣତା ହେଲା, ସାରା ପୃଥିବୀକୁ ବତାଇବ, କିଏ କଣ କରିବ କି ନକରିବ । କଥା ନମାନିଲେ ତୁମେ ଟେରରିଷ୍ଟ୍ ! କିନ୍ତୁ ଟେରରିଜ୍ମ-ବିରୋଧ ଯୁଦ୍ଧରେ କେହିହେଲେ ଜିତିପାରେନା, କାହିଁକିନା, ସେ ଯୁଦ୍ଧ ଭିନ୍ନକୋଉ ଦେଶ ବିରୋଧରେ ଯୁଦ୍ଧ ନୁହେଁ ।

ଏ ଅବସ୍ଥାରେ ସରବ ହେବାକଥା ଦେଶର ଇଣ୍ଟେଲେକ୍‌ଚୁଆଲ୍, ଛାତ୍ର ଓ ପ୍ରାପ୍ତବୟସ୍କ ଯୁବକଯୁବତୀ । କହିଁକିନା, ଆଉକିଛି ନହେଉ, ସମାଜର ସୀମାନ୍ତକୁ ଯୋଉ ଅସହାୟ ମଣିଷଗୁଡ଼ାଙ୍କୁ ଠେଲିନେଇଯାଇଚି ରାଷ୍ଟ୍ର କ୍ରମାଗତ ଓ ନିର୍ବାଧ, ସେଇ ଦୁର୍ଗତ ଲୋକଗୁଡ଼ାକ ଯେହେତୁ ସଂଖ୍ୟାଗରିଷ୍ଠ ଓ ନିର୍ବିତ୍ତ, ତାଙ୍କ ପ୍ରତି କର୍ତ୍ତବ୍ୟ ଅସ୍ୱୀକାର ମାନେ ବିବେକ ପାଖରୁ ଗଣଇସ୍ତାଫା । ମନେପଡୁଚି, କବି ଅଡେନ୍ ଏକଦା ଲେଖିଥିଲେ, I and the public know/what all school children learn/ Those to whom evil is done/Do evil in return । ବହିର ଆଦ୍ୟଭାଗରେ ବଙ୍କିମ୍‌ଚନ୍ଦ୍ରଙ୍କ *ଆନନ୍ଦମଠ* ଉପନ୍ୟାସର ଚର୍ଚ୍ଚାକରାଯାଇଚି; ବଙ୍କିମ୍ ଦେଖିଚନ୍ତି, ଦେଶକୁ ଭାତଖୁଆଉଚି ଯୋଉ ଚାଷୀ, ଦୁର୍ଭିକ୍ଷରେ ମରୁଚି; ମହାମହିମ ବ୍ରିଟିଶ୍ ସରକାର ତଥାପି ତାକୁ ଚିପୁଡୁଚି । ଅଥଚ ଲୋକ ନଥିଲେ, ରାଷ୍ଟ୍ର ରହବିନାହିଁ, ଲୋକଙ୍କୁ ନେଇ ରାଷ୍ଟ୍ର । ଲୋକ ତ ମଳିମୁଣ୍ଡିଆ, ରଜାଜମିଦାର ନୁହେଁ, କି ଲକ୍ଷପତି କୋଟିପତି ବଣିକ ମହାଜନ ନୁହଁ । ସେଇ ସାଧାରଣ ଲୋକଙ୍କୁ ନେଇ ରଚିତହୋଇଚି

ଇତିହାସ, ଏବଂ ହୋଇଚି ବୋଲି, ରାଜବଂଶର ଉତ୍ଥାନ-ପତନ ଅପେକ୍ଷା ଲଗୁଡ଼ରୁ କେମିତି ଲଙ୍ଗଳ ବାହାରିଲା, ଇତିହାସ ପାଇଁ ଅଧିକ ପ୍ରାସଙ୍ଗିକ । ବଙ୍କିମ୍ ସେଥିପାଇଁ ପରାଧନୀ ଦେଶର ପରାର୍ଥବାଦୀ ଯୁବକଙ୍କୁ ସଶସ୍ତ୍ର ପ୍ରତିରୋଧର ଉଦ୍‌ବୋଧନ ଶୁଣାଇଚନ୍ତି, ନିଜେ ଉଚ୍ଚପଦସ୍ଥ ରାଜପୁରୁଷ ହୋଇଥିବା ସତ୍ତ୍ୱେ । ସ୍ୱାଧୀନରାଷ୍ଟ୍ରର ନାଗରିକ ଆଜିର ଇଣ୍ଟେଲେକ୍‌ଚୁଆଲ୍ ଅନେକ ବେଶି ପରିଣତ ଓ ଅନେକ ବେଶି ସୁରକ୍ଷିତ । ବଙ୍କିମ୍ ଯଦି ଦୁଇଶ'ବର୍ଷ ଆଗରୁ ବୁଝିପାରିଥିଲେ ଔପନିବେଶିକ ସାମ୍ରାଜ୍ୟବାଦର ଦରିଦ୍ର ଜନସାଧାରଣଙ୍କ ଉପରେ କୁପ୍ରଭାବ, ଆଜିର ଇଣ୍ଟେଲେକ୍‌ଚୁଆଙ୍କୁ କେମିତି ମରଣମୁହଁକୁ ଠେଲିଦେଉଚି, ଉପଲବ୍ଧିକରିବାର ବିଚକ୍ଷଣତା କୋଉ କୃତିତ୍ୱ  ନୁହେଁ । ଏବଂ ଏ ଉପଲବ୍ଧି ଯେହେତୁ ଐତିହାସିକ ଅଭିଜ୍ଞତା, ଜନସାଧାରଣଙ୍କ ଚୈତନ୍ୟରେ ପ୍ରତିରୋଧ-ପ୍ରତିଜ୍ଞାକୁ ସଂଚାରିତକରିବା ମଧ୍ୟ ଐତିହାସିକ ଦାୟିତ୍ୱ । ସନ୍ଦେହ ନାହିଁ, ପ୍ରତିରୋଧର ଚେତନା ରାଜନୀତି-ନିରପେକ୍ଷ ନୁହେଁ, କିନ୍ତୁ ଏ ସେଇ ପ୍ରକାର ରାଜନୀତି ଯା ସମାଜକୁ ଫେରାଇ ଦେଇପାରେ ସାମ୍ୟପ୍ରତିଷ୍ଠା ଆଡ଼କୁ । ଅର୍ଥାତ୍, ଏ ରାଜନୀତି କେନ୍ଦ୍ରରେ ରହିଚି ସମାଜର ରୂପାନ୍ତର; ଯା ସିଂହାସନରୁ ଖାଲି ରାଜବଂଶକୁ ହଟାଇଦେଲେ, ତତ୍‌କ୍ଷଣାତ୍ ଘଟିଯିବନାହିଁ । କାହିଁକିନା, ଅନ୍ତରାୟ ହୋଇ ବାଟରେ ଛିଡ଼ାହୁଏ ଗ୍ଲୋବାଲାଇଜେସନ୍-ପୁଷ୍ଟ ମଧ୍ୟବିତ୍ତ । ଏଇ ମଧ୍ୟବର୍ତ୍ତୀ-ଶ୍ରେଣୀ ଖାଲି ଇଂରେଜୀପଢୁଆ ସହରବାସୀ ନୁହେଁ, ଗାଁଗହଳିରେ ମଧ୍ୟ ଏ ଶ୍ରେଣୀର ପ୍ରାଦୁର୍ଭାବ ନିତ୍ୟଦିନର ଘଟଣା । ଏମାନଙ୍କ 'ଆଧୁନିକତା' ସାମ୍ରାଜ୍ୟବାଦରୁ ଋଣସୂତ୍ରରେ ଆହରିତ; ଠିକ୍ ଯେମିତି ବ୍ରିଟିଶ୍‌ରାଜତ୍ୱ କାଳରେ । ଅର୍ଥାତ୍, ଆତ୍ମପ୍ରତ୍ୟୟହୀନ; ତେଣୁ ଦ୍ୱିଧାବିଭକ୍ତ ଓ ଦୋଦୁଲ୍ୟମାନ । ଅପାଠୁଆ ମଳିମୁଣ୍ଡିଆ ଅଜାତିକୁ ଏମାନେ ସାଙ୍ଗରେ ନେବେନାହିଁ, ନିଅନ୍ତିନାହିଁ । କାହିଁକିନା, ଶ୍ରେଣୀସ୍ୱାର୍ଥ ଏମାନଙ୍କୁ ନିର୍ବିତ୍ତ ନିଷ୍ପେଷିତ ପାଖରୁ ଅଲଗାକରି ରଖେ । ରଖେ ବୋଲି, ଏମାନଙ୍କ ଦୃଢ଼ ଧାରଣା, ସମାଜରୂପାନ୍ତର ଓ ରାଜନୀତି, ଦୁଇଟି ଅଲଗା ଜିନିଷ । ଗୋଟିଏ 'କଲଚର୍‌ୟାଲ୍', ଅନ୍ୟଟି ନିର୍ଭେଜାଲ୍ କ୍ଷମତାଯୁଦ୍ଧ । କିନ୍ତୁ କଲ୍‌ଚର୍ ଯଦି ସାମ୍ରାଜ୍ୟବାଦୀ, ରାଜନୀତିକୁ ଆବିଳ କରିବନାହିଁ କି ? ଆଉ, ରାଜନୀତି ଯଦି ସାମ୍ରାଜ୍ୟବାଦୀ, କଲ୍‌ଚର୍ ରହିବ କେମିତି ଅସୂର୍ଯ୍ୟମ୍ପଶ୍ୟା ? ସ୍ୱୟଂ ମୋହନଦାସ ଗାନ୍ଧି ମଧ୍ୟ ସେ ଦ୍ୱନ୍ଦ୍ୱରୁ ଉତ୍ତୀର୍ଣ୍ଣହୋଇ ପାରିନାହାନ୍ତି; କଳ୍ପନାକରିଚନ୍ତି ରାମରାଜ୍ୟ । ନାନାଦି ବୈଷମ୍ୟରେ ପୀଡ଼ିତ ଅଗଣିତ ନରନାରୀ କଣ ରାମରାଜ୍ୟର ପ୍ରଜାହେବାକୁ ଉପଯୁକ୍ତ ? ଏଭଳି ଯୋଗ୍ୟତାକୁ ବିଦ୍ୱାନ୍ କହୁଚନ୍ତି 'ଏମ୍ପାଓର୍‌ମେଣ୍ଟ' । ଅର୍ଜନକରିବାକୁ ପଡ଼େ, ଆକାଶରୁ ଖସେନା । ଅର୍ଜନକରିବାକୁ ଯାଇ ପରାଜୟ ବି

ଆସିପାରେ, ବାରମ୍ବାର ଆସିପାରେ । ସେଇ କିନ୍ତୁ ଆମ ସାଂସ୍କୃତିକ ଅଭିଜ୍ଞତା, କଷ୍ଟସାଧ୍ୟ ଦୃଢ଼ପ୍ରତିଜ୍ଞ ଅଭିଯାନ, ସତେ ଯେମିତି ନୀଳନଦୀର ଉତ୍ସ ଖୋଜିବାକୁ ଯାଇ ଲିଭିଙ୍ଗ୍‌ଷ୍ଟୋନ୍ ଠୋକର୍ ଖାଉଚନ୍ତି ଆଫ୍ରିକାର ଶ୍ୱାପଦସଙ୍କୁଳ ଘନଅରଣ୍ୟରେ ! କିନ୍ତୁ ପରାଜୟକୁ ପ୍ରତ୍ୟାଖ୍ୟାନ ନକଲେ ଆବିଷ୍କାରକରିହୁଏନା ଆତ୍ମମର୍ଯ୍ୟାଦା; ବାରମ୍ବାର ପ୍ରତ୍ୟାଖ୍ୟାନ ମାନେ ବାରମ୍ବାର ନିଜକୁ ନୂଆକରି ଆବିଷ୍କାର । ଏଇ କଥା କହିଚନ୍ତି ନୋମ୍ ଚମ୍‌ସ୍କି ବୁଦ୍ଧିଜୀବୀର ଭୂମିକା ପ୍ରେକ୍ଷିତରେ । ଇଣ୍ଟେଲେକ୍‌ଚୁଆଲ୍, ଯୋଉ ପେସାର ଲୋକ ହେଉନା କାହିଁକି, ନିଜେ ନବଦଳି ଅନ୍ୟକୁ ବଦଳାଇପାରେ; ସମାଜରେ / ଜୀବନରେ ପରିବର୍ତ୍ତନ ଆଣିବାକୁ ଅନୁପ୍ରେରିତ କରିପାରେ; ଅର୍ଥାତ୍, ଖାଲି ବିଶ୍ଳେଷଣ କି ବ୍ୟାଖ୍ୟା କରି କ୍ଷାନ୍ତହୁଏନା, କାହାରି ସକାଶେ ଓକିଲାତି ବି କରେନା । କ୍ଷମତାର ଦୌରାତ୍ମ୍ୟ, ପ୍ରିଭିଲେଜ୍‌ର ପ୍ରଭୁତ୍ୱକୁ ଚ୍ୟାଲେଞ୍ଜ୍‌କରିବା ପାଇଁ ଯଦି ସଂଗ୍ରାମଭୂମିରେ ଅବତୀର୍ଣ୍ଣହେବାକୁ ପଡ଼େ, ସେଭଳି ବିପଜ୍ଜନକ ଅବସ୍ଥାକୁ ହୃଷ୍ଟଚିତ୍ତରେ ବାଛିନେବାପାଇଁ ଲୋକଙ୍କୁ ପ୍ରରୋଚିତକରେ । ରାଷ୍ଟ୍ର, ଯେକୌଣସି ରାଷ୍ଟ୍ର, ସେଇଭଳି ଲୋକଙ୍କୁ ପ୍ରତିପାଳିତକରେ ଯିଏ ରାଷ୍ଟ୍ରର ଭାବାଦର୍ଶକୁ ଖାଲି ଅନୁମୋଦନ କରନ୍ତିନାହିଁ, ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ବଚସ୍କରହୋଇ ଦି'ପଇସା ଉପଢ଼ୌକନ ବି ଯୋଗାଡ଼କରନ୍ତି, ଏବଂ ରାଜନୀତିରେ ସ୍ଥିତାବସ୍ଥାକୁ ନିଃସର୍ତ୍ତ ସମର୍ଥନ ଜଣାଇଥାନ୍ତି ସଚରାଚର । ଅନ୍ୟଦିଗରେ, ଏପରି ଲୋକ ଅଛନ୍ତି, ଯେପରି ବର୍‌ଟ୍ରାଣ୍ଡ୍ ରସେଲ୍ କି ଏଡ୍‌ଉଆଡ଼୍ ସଇଦ୍, ଯିଏ ନିଜ ବିଶେଷ ବିଦ୍ୟାର ପରିସର ବାହାରକୁ ନଯାଇ ମଧ୍ୟ ରାଜନୀତିକ ବିଷୟରେ ମୁଖର, ସତେ ଯେମିତି ପ୍ରତିପକ୍ଷ । ଯୋଉ ସମସ୍ୟା ସର୍ବସାଧାରଣ, ସେ ବିଷୟରେ କହିବା କି ଲେଖିବାପାଇଁ ବିଶେଷ କୋଉ ବିଦ୍ୟାର ଏକାଧିକାରକୁ ମାନନ୍ତିନାହିଁ । କାହିଁକିନା, ଦମନ-ପୀଡ଼ନ କି ଶୋଷଣ-ଦୋହନକୁ ବୁଝିବାକୁ ବିଶେଷ କୋଉ ବିଦ୍ୟାବୁଦ୍ଧି ଆବଶ୍ୟକ ହୁଏନା । ସରକାରି ଇଣ୍ଟେଲେକ୍‌ଚୁଆଲ୍ ଏମାନଙ୍କୁ କହୁଚନ୍ତି 'କଲ୍‌ଚର୍‌ୟାଲ୍-ଆ୍ୟାକାଡେମିକ୍'ର ସଙ୍କଟ, କାହିଁକିନା, ଭିନ୍ନମତାବଲମ୍ବୀ ଏ ପ୍ରଫେସର୍ ରାଜନୀତି ଆଉ ଇସ୍‌ଥେଟିକ୍ସ, ମତାନ୍ତରେ, ସମାଜସଂକ୍ରାନ୍ତ ଆଇଡିଆ ଆଉ ସାହିତ୍ୟସଂକ୍ରାନ୍ତ ମୂଲ୍ୟମାନକୁ ପରସ୍ପରଠାରୁ ବିଚ୍ଛିନ୍ନକରିନେଇଛନ୍ତି । କହିବା ତେଣୁ ସହଜ ଯେ ସର୍ବସାଧାରଣ କ୍ଷେତ୍ରରେ ଘଟୁଥିବା ବାଦବିବାଦ ଭିତରକୁ ବିଶେଷଜ୍ଞ ପଶିବା ଗର୍ହିତ । ଚମସ୍କିଙ୍କ ଧାରଣା, ଖାଲି ବିଶ୍ୱବିଦ୍ୟାଳୟ ପଠନପାଠନ ଭିତରେ ଆବଦ୍ଧରହିବା ଇଣ୍ଟେଲେକ୍‌ଚୁଆଲ୍‌ର ଅଧୋଗତି, କାହିଁକିନା, ଅମଲାତନ୍ତ୍ରଶାସିତ ସମାଜରେ ବୁଦ୍ଧିଜୀବୀ ନିଜକୁ ତେବେ ପରିଣତକରିବ କମୋଡିଟି, ବିକ୍ରୟଯୋଗ୍ୟ ପଣ୍ୟ ।

ମୋଟ୍ କଥା, ଏଇ ମୁହୂର୍ତ୍ତରେ ଇତିହାସର ଏକ ଅରାଜକ ପର୍ଯ୍ୟାୟ ଭିତରଦେଇ ଯେହେତୁ ଗତିକରୁଛୁ, ତୀବ୍ର କୋଉ ଅଭିଜ୍ଞତାକୁ ମୁକାବିଲାକରିବାକୁ ବୁଦ୍ଧିଜୀବୀଙ୍କୁ ଅକ୍ଷମକରୁଚି ଅବସାଦ; ଲିଭିଙ୍ଗ୍‌ଷ୍ଟୋନ୍‌ଙ୍କ ଦୁର୍ଗମ ପରିସରକୁ ତେଣୁ ଫେରିଯିବା କଥା । କାହିଁକିନା, ଦେଶର ୬୦୨ ଜିଲ୍ଲା ଭିତରୁ ୧୬୫ ଏକ୍ଷଣି ଉପଦ୍ରୁତ, ସରକାରଙ୍କ ଶାସନ ସେଠି ଚଳେନା । ଆକସ୍ମିକ ଘଟଣା ନୁହେଁ, କାହିଁକିନା, ଆନ୍ତର୍ଜାତିକ ମାନ୍ୟତାପ୍ରାପ୍ତ ଅନୁଷ୍ଠାନଙ୍କ ହିସାବରେ ଅନ୍ୟୂନ ସାତକୋଟି ଲୋକ ରହିଚନ୍ତି ଦାରିଦ୍ର୍ୟ ସୀମାରେଖା ତଳେ; ବୟସ ମଧ୍ୟ ୩୫ବର୍ଷରୁ କମ୍ । ସେଥିରୁ ତିନିକୋଟି ବେକାର । ପ୍ରତିବାଦ ଯୋଉ ଆକାରରେ ହେବାକଥା, ହୁଏତ ହେଉନାହିଁ; କିନ୍ତୁ ଅବସ୍ଥାଟା କଣ ଯୁବକ-ଯୁବତୀଙ୍କ ବିଦ୍ରୋହପାଇଁ ଉର୍ବର ନୁହେଁ? ରାଷ୍ଟ୍ର କିନ୍ତୁ ତାଙ୍କୁ ଗଣ୍ୟକରୁଚି ଦେଶଦ୍ରୋହୀ; ସଶସ୍ତ୍ର ଦମନର ଉପଯୁକ୍ତ ଲକ୍ଷ୍ୟ । ଶସସ୍ତ୍ରଦମନ କାରଣରୁ ଦାନ୍ତେୱାଡ଼ାର ସାତଶ'ଗାଁରୁ ସାଢ଼େତିନିଲକ୍ଷ ଲୋକ ଘରଛାଡ଼ି ଜଙ୍ଗଲଭିତରକୁ ପଳାଇଚନ୍ତି ବୋଲି ଭେଲୋର୍ ହସ୍‌ପିଟାଲ୍‌ରୁ ବିନାୟକ ସେନ୍ ଜଣାଇଚନ୍ତି । ଏକ୍ଷଣି, ଆନ୍ଧ୍ରପ୍ରଦେଶ-ଓଡ଼ିଶା-ଛତିଶଗଡ଼-ଝାଡ଼ଖଣ୍ଡ-ବିହାର-ପଶ୍ଚିମବଙ୍ଗ ଆଉ ମହାରାଷ୍ଟ୍ରର ନାଗପୁର ଅଞ୍ଚଳରୁ ବିବାକ ବିଦ୍ରୋହୀଙ୍କୁ ଯଦି ଗୁଳିକରି ମାରିଦିଆଯାଏ, ଶୋଷଣ-ଉତ୍ପୀଡ଼ନ କେମିତି ସମାଜରୁ ଦୂରହୋଇଯିବ, ସୁସ୍ଥମସ୍ତିଷ୍କରେ ବୁଝିପାରିବା ସମ୍ଭବନୁହେଁ । ଦୁର୍ଗତଲୋକ ତେବେ ଅଭିସାରରେ ବାହାରିବେ କା ସାଙ୍ଗରେ? ନିୟତି ତ ତାଙ୍କପାଇଁ ନିର୍ଘାତ ଅପଘାତ, ମୁକ୍ତକଚ୍ଛ ଖୋଲା ବଜାର ! ସେଠିକି ଯିବାକୁ ଦରକା'ର ଅଣ୍ଟିରେ ପଇସା; ଯା ଅଣ୍ଟିରେ ପଇସା ଅଛି, ଅର୍ଥାତ୍ ବ୍ୟକ୍ତିଗତ ସଂପତ୍ତି, ତା ପାଇଁ ପୁଲିସ୍ ଅଛି, ଆଇନ୍ ଅଛି, ଅଦାଲତ ଅଛି; ଯା'ର ନାହିଁ, ତା ଲାଗି ରହିଚି କଣ ଖାଲି ବନ୍ଧୁକ ଆଉ ଜେଲ୍‌ଖାନା? ହିଉମାନ୍ ଏସେନ୍ସ ବା ମାନବାର୍ଥ କଣ ତେବେ କବିକଳ୍ପନା? ମାର୍କ୍ସଙ୍କ ବିବେଚନାରେ, ମଣିଷ ହିଁ ନିର୍ମାଣକରେ ନିଜ ନିୟତି, ସେଇ ତାର ମାନବାର୍ଥ । ସେ ମଣିଷ ଏକକ ମଣିଷ ହୋଇପାରେନା, ମାନବାର୍ଥ ତାର ସାମାଜିକ ଓ ସଂଘବଦ୍ଧ ପରିଚୟ । ସେ ପରିଚୟ ଯଦି ରାଜନୀତିକ, ବିଚାରକରିବ କଣ ସଶସ୍ତ୍ର ପୁଲିସ୍‌ବାହିନୀ? ଯୁକ୍ତି ତ ତେବେ ଜୋର୍ ଯାର ମୁଲକ୍ ତାର !

ସମସ୍ତେ ଜାଣନ୍ତି, ଉପାସ-ଭୋକ ଅସହ୍ୟହେଲେ ବି, ବିପ୍ଳବ ହୁଏନା; ଷାଠିଏବର୍ଷହେଲା ହୋଇନାହିଁ; ଖାଲି ବିଭେଦ ବଢ଼ିଚି । ମାତ୍ର ରାଷ୍ଟ୍ର ଏକ୍ଷଣି ଆପାଦମସ୍ତକ ସଶସ୍ତ୍ର । ଏ ଲକ୍ଷଣ ନିଜ ନିରାପତ୍ତା ବିଷୟରେ ସଂଦେହ, କି କ୍ଷମତା ସମ୍ବନ୍ଧରେ ଆଶଙ୍କା, ବୁଝିବା ମୁସ୍କିଲ୍; କିନ୍ତୁ ଜବରଦସ୍ତ ଏଇ ରାଷ୍ଟ୍ର ଜନମାନସକୁ ଜିତିନେଇଚି । ସେଇ ଜନମାନସକୁ ନିର୍ବାସିତ ବୁଦ୍ଧିଜୀବୀ ତେଣୁ ଅନ୍ୱେଷଣକରୁ

ଲୋକଙ୍କ ନିହିତ ସୃଷ୍ଟିଶୀଳତା ପ୍ରତିହତହୁଏ କାହିଁକି ? ଇତିହାସର ଧାରାବାହିକତା ରହିଚି, ନା ଗ୍ଲୋବାଲାଇଜେସନ୍‌ର ଆକସ୍ମିକତାରୁ ଜନ୍ମନେଇଚି ଅସ୍ଥାୟୀ ଏଇ ଅବକ୍ଷୟ ? ତେବେଯାଇ ଅନୁମାନକରିହେବ କି ପ୍ରକାର ଭବିଷ୍ୟତ ଅପେକ୍ଷାକରୁଚି ସମ୍ମୁଖରେ । ଏରିକ୍ ହବ୍ସବଅମ୍ ଏ ସଂକଟକୁ କହିଚନ୍ତି 'ଡେମୋକ୍ର୍ୟାଟାଇଜେସନ୍ ଅବ୍ ଭାଓଲେନ୍ସ'; ଅର୍ଥାତ୍, ହିଂସା ଖାଲି ରାଜନୀତିର ଚାରିକାନ୍ଥ ଭିତରେ ଅଟକି ରହିନାହିଁ । ତାର ବିଚରଣକ୍ଷେତ୍ର ଏକ୍ଷଣି ସାମାଜିକ ସଂପର୍କର ବିସ୍ତାରିତ ପରିଧି; ଅଥଚ ଜାତି-ରାଷ୍ଟ୍ରର ଭୂଗୋଳକୁ ସମାଜ ଟପିଚାଲିଚି ଅବିରାମ; ବାଟଯାକ ତେଣୁ ଗଜୁରିଉଠିଚି ନାନାଦି ବିଚିତ୍ର କର୍ତ୍ତୃତ୍ୱର ଷ୍ଟ୍ରକ୍‌ଚର୍, ଏବଂ କର୍ତ୍ତୃତ୍ୱର ପ୍ରସାର ସାଙ୍ଗକୁ କର୍ତ୍ତୃତ୍ୱର ପ୍ରତିରୋଧ; ଅର୍ଥାତ୍ ହିଂସା ପଛକୁ ପ୍ରତିହିଂସା । ଗଣତନ୍ତ୍ର ତେଣୁ ଆଉ ସଂଖ୍ୟାଗରିଷ୍ଠର ଶାସନ ନୁହେଁ; କର୍ତ୍ତୃତ୍ୱହୀନ ଏକ ସମାଜବ୍ୟବସ୍ଥା । କର୍ତ୍ତୃତ୍ୱର ସବୁରକମ ଷ୍ଟ୍ରକ୍‌ଚରକୁ ଅତିକ୍ରମକରିପାରେ ଯୋଉ ଷ୍ଟ୍ରକ୍‌ଚର୍, ଏକମାତ୍ର ସେଇ କରିପାରେ ଜନମାନସର ପ୍ରତିନିଧିତ୍ୱ । ଏବଂ ମତଦ୍ୱୈଧ ଯେହେତୁ ମାନବେତିହାସରୁ ଅଚ୍ଛେଦ୍ୟ, ପ୍ରତିଷ୍ଠିତ କର୍ତ୍ତୃତ୍ୱ, ଅର୍ଥାତ୍ ରାଷ୍ଟ୍ର / ସରକାରଙ୍କୁ ପ୍ରତିରୋଧକରିବା ମଧ୍ୟ ନ୍ୟାୟସଂଗତ; ଯେପରି ନର୍ମଦାନଈ ଉପରେ ବନ୍ଧନିର୍ମାଣ କି କାରଖାନାକୁ ଜମିଦେବାପାଇଁ ଉର୍ବର ଚାଷଜମିର ବଳପୂର୍ବକ ଅଧିଗ୍ରହଣ । ପୁଣି, ରାଜନୀତିର ସଂସ୍ରବ ଛଡ଼ା ମଧ୍ୟ, ବିବେକର ତାଡ଼ନା ମଣିଷକୁ ବିଦ୍ରୋହୀ କରିଦେଇପାରେ । ଅନ୍ୟ ଶବ୍ଦରେ, ଦୁନିଆରେ ଏମିତି ମଣିଷ ନାହିଁ, ଜୀବନର କୋଉନାକୋଉ ମୁହୂର୍ତ୍ତରେ ବିଦ୍ରୋହ କରେନା; ବିନା ବ୍ୟତିକ୍ରମରେ କିନ୍ତୁ ବିବାକଲୋକ ଶୃଙ୍ଖଳାମାନି ଚଳନ୍ତି । ନିର୍ଦ୍ଦିଷ୍ଟ କାରଣରୁ ବାଧ୍ୟ ନହେଲେ, କର୍ତ୍ତୃତ୍ୱକୁ ଅସ୍ୱୀକାରକରିବା କାହାରି ସହଜାତ ସ୍ୱଭାବ ନୁହେଁ । ତେଣୁ କ୍ଷଣକୁ କ୍ଷଣ ବଦଳିଯାଉଥିବା ଜଗତରେ ଯା ଅନୁଦାର କି ଅନୈତିକ, ତାକୁ ପ୍ରତିରୋଧ ସମ୍ମୁଖୀନହେବାକୁ ପଡୁଚି / ପଡ଼ିବ । ପ୍ରତିବାଦ / ପ୍ରତିରୋଧ, ସେଥିପାଇଁ, ଗଣତନ୍ତ୍ରରୁ ବିଚ୍ଛିନ୍ନନୁହେଁ । ଗଣତନ୍ତ୍ରକୁ 'ଗଣତନ୍ତ୍ର' ହୋଇ ରହିବାକୁ ହେଲେ, ପ୍ରତିବାଦ / ପ୍ରତିରୋଧ ସକାଶେ ବାଟ ଛାଡ଼ିଦେବାକୁ ପଡ଼ିବ, ନଚେତ୍ ପରିବର୍ତ୍ତନ ଆସିପାରିବନାହିଁ । ପରିବର୍ତ୍ତନ ଆସିପାରିବନାହିଁ ଜନମାନସରେ ଯଦି ଏ ପ୍ରଶ୍ନ ନଜାଗେ ଯେ ଦେଶସାରା ଯେ ଏତେ ଧରପକଡ଼, କିଏ ଚଳାଉଚି ଏବଂ କାହା ସ୍ୱାର୍ଥରେ ? ଦେଶବ୍ୟାପୀ ଯେ ଏତେ ଲୁଟ୍‌ତରାଜ, କିଏ ଚଳାଉଚି ଏବଂ କାହା ସ୍ୱାର୍ଥରେ ? ଏ ନିଷ୍ପେଷଣ କଣ ଅନନ୍ତକାଳପାଇଁ ଚାଲିଥିବ, ନା ସବୁକଥାର ଶେଷଥିବା ଭଳି, ତାର ବି ଶେଷ ଅଛି ? ଯଦି ତାର ଶେଷ ଥାଏ, ଦିନଶେଷରେ ରାତି ଭଳି ପ୍ରାକୃତିକ ନିୟମରେ ଆସେ, ନା ତାକୁ ଆଣିବାକୁ ପଡ଼େ ? ଯଦି ଆଣିବାକୁ ପଡ଼େ, ତେବେ

ଯିଏ ଗୃହହୀନ, ସମ୍ବଳହୀନ, କର୍ମହୀନ, କପର୍ଦ୍ଦକଶୂନ୍ୟ, କର୍ତ୍ତୃତ୍ୱର ଆକଟ ଅବଜ୍ଞା ଅପମାନ ସମ୍ମୁଖୀନହୋଇ ଦେଖିବ କଣ ସପିଙ୍ଗ୍‌ମଲ୍ ଆଉ କେଣ୍ଟକୀ ଫ୍ରାଇଡ୍‌ଚିକେନ୍‌ର ସ୍ୱପ୍ନ ? ନା ବାଧହୋଇ ଛାଡ଼ିଆସିଥିବା ଅତୀତକୁ, ଅତୀତର ଅଧିକାରଗୁଡ଼ାକୁ; ଅଳ୍ପକଥାରେ, ନିଜ ଇତିହାସକୁ ? ଇତିହାସର ଗତିକୁ ସେ ସ୍ମୃତି ଅବଶ୍ୟ ବଦଳାଇ ପାରିବନାହିଁ, ମାତ୍ର ଭବିଷ୍ୟତକୁ ଛଡ଼ାଇଆଣିପାରିବ ଅତ୍ୟାଚାରୀର ହାତମୁଠାରୁ ।

ସ୍ମୃତି ହିଁ ଯେହେତୁ ଇତିହାସ, ସ୍ମୃତିରୁ ଉତ୍ସାରିତ ହେବାକଥା କଳ୍ପନା । ଅର୍ଥାତ୍ ସାହିତ୍ୟ ଆଉ ଦର୍ଶନ । କାହିଁକିନା, ଜନମାନସ ଅନୁକ୍ଷଣ ସୃଷ୍ଟିଶୀଳ । ମଣିଷର ପରିଚୟ କିନ୍ତୁ ଏକମାତ୍ରିକ ନୁହେଁ; ଖାଲି ନିଃଶ୍ୱାସ ଉପରେ ବିଶ୍ୱାସରଖି ଯିଏ ବଞ୍ଚୁଥାଏ, ସିଏ ଜୀବନ୍ମୃତ; ବିଶ୍ୱାସ ଯେତେବେଳେ ନିଃଶ୍ୱାସ ହୁଏ, କଳ୍ପନାରେ ଲାଗେ ଡେଣା । ସେଇ ବିଶ୍ୱାସ ଭିତରେ ରାଜନୀତି ରହିଥିବା ସ୍ୱାଭାବିକ, କାହିଁକିନା, ରାଜନୀତି ଛଡ଼ା ବିଶ୍ୱାସ ତିଆରିହୁଏନା । କିନ୍ତୁ ବିଭିନ୍ନ ବିଶ୍ୱାସଭିତରେ ଐକ୍ୟ ସବୁବେଳେ ସମ୍ଭବପର ନୁହେଁ । ସେ କ୍ଷେତ୍ରରେ ପ୍ଲୁରାଲିଜ୍ମ ହିଁ ଶ୍ରେୟଃ, ଅର୍ଥାତ୍ ଗଣତାନ୍ତ୍ରିକ ଉପାୟ । କାହିଁକିନା, ବୁଦ୍ଧିଜୀବୀଙ୍କ ଧାରଣା, ସାମ୍ରାଜ୍ୟବାଦୀ ବିଶ୍ୱରେ ରାଷ୍ଟ୍ର ୯୧.ଣି ଏତେ ଶକ୍ତିଶାଳୀ ଯେ ପ୍ରତ୍ୟକ୍ଷ-ସଂଘାତ ନିର୍ବିତ୍ତ ଶ୍ରମଜୀବୀଙ୍କୁ ବିଜୟଦେବା ଅନିଶ୍ଚିତ । ତେଣୁ ରାଷ୍ଟ୍ରଯନ୍ତ୍ର ଭିତରେ ଶ୍ରେଣୀସଂଗ୍ରାମକୁ ପୂରାଇଦେବା ବିଧେୟ । ଅର୍ଥାତ୍, ପାର୍ଲାମେଣ୍ଟ୍ ବାହାରେ ଶ୍ରମଜୀବୀ ଓ ତାର ସହଯୋଦ୍ଧାମାନଙ୍କର ଐକବଦ୍ଧ ଅଭିଯାନ । ଫଳତଃ ପ୍ରତ୍ୟକ୍ଷ ଗଣତନ୍ତ୍ର ମାଧ୍ୟମରେ ରାଷ୍ଟ୍ରର ବୁର୍ଜୋୟାଚରିତ୍ରକୁ ସମୂଳ ଉଚ୍ଛେଦ ମତାନ୍ତରେ, ରାଷ୍ଟ୍ର ରହିଚି ଯେହେତୁ ସମସ୍ୟାର କେନ୍ଦ୍ରରେ, ମାର୍କ୍ସ-ଲେନିନ୍-ମାଓଙ୍କ ରଚନାବଳୀ ବାହାରେ ସମସ୍ୟାର ସମାଧାନ ଖୋଜିବା ବାଞ୍ଛନୀୟ । ବିଶେଷତଃ ଆଧୁନିକ ରାଷ୍ଟ୍ରଯନ୍ତ୍ର ଯେହେତୁ ଦୁଇଭାଗରେ ବିଭକ୍ତ, ମତାଦର୍ଶଗତ ଯନ୍ତ୍ର (ଆଇଡିୟଲଜିକ୍ୟାଲ୍ ଆପାରଟସ୍) ଆଉ ପୀଡ଼ନମୂଳକ ଯନ୍ତ୍ର (କୋଅରସିଭ୍ ଆପାରଟସ୍) । ଉଭୟଙ୍କୁ ବ୍ୟବହାରକରାଯାଏ ଧନୀକଶ୍ରେଣୀ ସ୍ୱାର୍ଥରେ; ମାତ୍ର ଉଭୟ ଭିତରେ ରହିଚନ୍ତି ଅନେକ ଶ୍ରେଣୀନିରପେକ୍ଷ ମଣିଷ । ଶାସକଶ୍ରେଣୀର ନିରାପତ୍ତା ଯେହେତୁ ଅସ୍ତ୍ରନିର୍ଭର, ସେନାବାହିନୀ ସହିତ ରାଷ୍ଟ୍ରକୁ ଆଁତାତ୍ ତିଆରିକରିବାକୁ ପଡ଼େ । ସେନାବାହିନୀ ସ୍ୱତଃପ୍ରବୃତ୍ତହୋଇ ଶାସକଶ୍ରେଣୀଙ୍କୁ ସମର୍ଥନକରେନା । ଅଦୂର ଅତୀତର ଇଜିପ୍ଟକୁ ଦେଖିଲେ, କଥାଟା ପୁରାପୁରି ମିଛ ଲାଗୁନାହିଁ । ସନ୍ଦେହ ନାହିଁ, ସାଧାରଣ ସୈନିକ କି ନିମ୍ନବର୍ଗ ପୁଲିସ୍ ବହୁଳାଂଶରେ କୃଷକ-ଶ୍ରମିକ ପରିବାରର ସନ୍ତାନ । ମାତ୍ର ସେମାନେ କଣ ରାଜନୈତିକ ଭାବେ ସଚେତନ ? ତେଣୁ ତୃତୀୟ ଗୋଷ୍ଠୀର ଧାରଣା, ବିପ୍ଳବୀଙ୍କ ନେତୃତ୍ୱରେ ଶୋଷିତ ଜନଗଣଙ୍କୁ ନେଇ ସମାଜର ବିଭିନ୍ନ ସ୍ତରରେ ଯଦି ସଚେତନ ଗଣଆନ୍ଦୋଳନ ସଂଗଠିତ

କରାଯାଏ, ଶ୍ରେଣୀସଂଗ୍ରାମ ଚାପରେ ଶାସକଶ୍ରେଣୀର ନିପୀଡ଼ନଯନ୍ତ୍ର ତେବେ ଅବଶହୋଇପଡ଼ିବ । ନିମ୍ନବର୍ଗ ସୈନିକ କି ପୋଲିସ୍ ସେତେବେଳେ ସେନାବାହିନୀ କି ପୁଲିସ୍‌ବାହିନୀର କ୍ରମୋଚ୍ଚସୋପାନରେ ସଜ୍ଜିତ ଷ୍ଟ୍ରକ୍‌ଚର୍‌କୁ ଚ୍ୟାଲେଞ୍ଜ୍ କରିବେ । ତିନିଟିଯାକ ଆଇଡିଆରୁ ଜଣାପଡ଼ୁଚି, ସମସ୍ତେ ଚାହାଁନ୍ତି ଧନବାଦୀ ରାଷ୍ଟ୍ର ଆଉ ସମାଜର ରୂପାନ୍ତର; ଉଚ୍ଛେଦ କାହାରି କାମ୍ୟ ନୁହେଁ । କିନ୍ତୁ, ଆନ୍ଦୋଳନର ବାସ୍ତବ ଭିତ୍ତିକୁ ଅନାଇଲେ ଦିଶୁଚି, ଥିଲାବାଲା ଆଉ ନଥିଲାବାଲା ମଧ୍ୟରେ ଦ୍ୱନ୍ଦ୍ୱ ସବୁକାଳରେ ଥିଲା ଆଉ ରହିଚି; ମଝିରେ ମଝିରେ ସେ ଦ୍ୱନ୍ଦ୍ୱ ଶ୍ରେଣୀଯୁଦ୍ଧର ରୂପ ଧରେ, କାହିଁକିନା, ଧନବାଦୀ ସମାଜର ବିକାଶ ଏ ଯୁଦ୍ଧକୁ ଦେଇଦିଏ ଅବଧାରିତ ଆକାର । ଯିଏ ଏକଥା ବୁଝନ୍ତିନାହିଁ, ନଥିଲାବାଲାଙ୍କୁ ରାଜନୀତିକଭାବେ ପ୍ରସ୍ତୁତକରିବାକୁ ଚାହାଁନ୍ତିନାହିଁ, ବରଂ ନିରସ୍ତ୍ର କରିଦିଅନ୍ତି । ଫଳରେ କିନ୍ତୁ ଶକ୍ତିପରୀକ୍ଷା ଅଟକିଯାଏନା, କେବଳ ଦୁର୍ବଳ ଭିତ୍ତିଉପରେ ଛିଡ଼ାହୋଇ ସଂଗ୍ରାମ ଚଳାଇଯିବାକୁ ବାଧହୁଏ ନଥିଲାବାଲା । ସେଥିପାଇଁ ବାରମ୍ବାର ତାର ପରାଜୟ ଘଟେ । ଆଉ, ଅମଲାତନ୍ତ୍ର ହେଉ କି ସେନାବାହିନୀ, ଉଭୟ କୋଉହେଲେ ଶ୍ରେଣୀ ନୁହେଁ; ଧନବାଦୀ ରାଷ୍ଟ୍ରର ଏକ ସାମାଜିକ ସ୍ତର କେବଳ; ନିଜକୁ ସଂସ୍କାରକରିବାକୁ କିନ୍ତୁ ଅଯୋଗ୍ୟ । ଆତ୍ମସଂସ୍କାରର ଏଭଳି ଉଦାହରଣ ଇତିହାସରୁ ଦିଶୁନାହିଁ । କାରଣ ମନେହୁଏ, ଶିକ୍ଷା କି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ପରିଚାଳିତହେବ, ନିର୍ଭରକରେ ରାଷ୍ଟ୍ରର ଶ୍ରେଣୀଚରିତ୍ର ଉପରେ; ଆଇଡିୟଲଜିକ୍ୟାଲ୍ ଆପାରଟସ୍‌ର ନିରପେକ୍ଷତା ତେଣୁ ତର୍କାତୀତ ନୁହେଁ । ଅସଲ ପ୍ରଶ୍ନ ହେଲା, ରାଷ୍ଟ୍ରର ପ୍ରକୃତ କାମ କିରକମ ? ପ୍ରଶ୍ନଟା ଯଦି ଆଇଡିୟଲଜିକ୍ୟାଲ୍, ନିର୍ଭୁଲ୍ ଉତ୍ତର ହେବ : ତାର ଅସଲ କାମ ଶ୍ରେଣୀଶାସନର ଧାରାବାହିକତା ବଜାୟରଖି ସାମାଜିକ ଗଢ଼ଣର ପୁନରୁତ୍ପାଦନ ବା ପୁନଃପୁନଃ ସଂରକ୍ଷଣ । ଆଉ, କୋଅର୍‌ସିଭ୍ ଆପାରଟସ୍‌ର କାମ, ଆଇନ୍‌ର ଗଣ୍ଡିଭିତରେ ଥାଇ ବଳପ୍ରୟୋଗ । କିନ୍ତୁ ଧନବାଦୀ ରାଷ୍ଟ୍ରର ଆଇନ୍ ତ ଥିଲାବାଲାଙ୍କ ବ୍ୟକ୍ତିଗତ ସଂପତ୍ତିକୁ ସୁରକ୍ଷାଦେବାକୁ ତିଆରି; ନହେଲେ ଉତ୍ପାଦନବ୍ୟବସ୍ଥାର ସାମାଜିକୀକରଣ ବେଆଇନ୍ ହେବ କାହିଁକି ?

ମାତ୍ର, ପ୍ରଶ୍ନଗୁଡ଼ାକ ଯିଏ ପଚାରୁଚନ୍ତି ଜାତିରାଷ୍ଟ୍ରର ପରିଧିଭିତରେ, ସାମ୍ରାଜ୍ୟବାଦୀ କହୁଚନ୍ତି ତାଙ୍କୁ ଷ୍ଟେରିଓଟାଇପ୍; ମାନେ, ଗଣ୍ଡଗୋଳ କରିବାକୁ ଅଭ୍ୟସ୍ତ । ଅର୍ଥାତ୍, ନୂଆକିଛି କହିବା କି କରିବା ବୁଦ୍ଧିକୁ କୁଳାଉନାହିଁ । ପ୍ରତିବାଦକରିଚନ୍ତି ନୋମ୍ ଚମସ୍କି; କହିଚନ୍ତି, ଏମାନଙ୍କ ଦୂରଦୃଷ୍ଟି ପ୍ରଖର, କ୍ଷମତା ଆଗରେ ତେଣୁ ନତଜାନୁହେବାକୁ ଅନଭ୍ୟସ୍ତ । ନହେଲେ, ଲକ୍ଷ୍ୟ ତ ଏପରି ଏକ ପୃଥିବୀ ଯା ପୀଡ଼ନ-କଷଣରୁ ମୁକ୍ତ ନୈତିକ ଏକ ପରିସର ! ମୋ ଭଳି ଅଭାଜନ ଲୋକ କହିବ, ଲକ୍ଷ୍ୟ ଯେତେ ମହତ୍

ହେଉ, ଆଜିକୁ ୧୩୦ବର୍ଷ ଆଗରୁ ମାର୍କ୍ସ ଚାହିଁଥିଲେ ତାର ମୂଲ୍ୟାୟନ; ଅର୍ଥାତ୍ ବିମୂର୍ତ୍ତ ଚିନ୍ତାର ବୈଧତା-ପରୀକ୍ଷା । ଜଗତକୁ ରୂପାନ୍ତରିତ କରିବା କ୍ଷମତା ଅଭିଳାଷର କେତେ ନିକଟବର୍ତ୍ତୀ ତାର ବସ୍ତୁତାନ୍ତ୍ରିକ ବିଚାର । ଯୋଉ ବିମୂର୍ତ୍ତଚିନ୍ତା ଇନ୍ଦ୍ରିୟଗ୍ରାହ୍ୟ କୋଉହେଲେ ପରିବର୍ତ୍ତନ ସାଧନକରେନା, କେବଳ ସାହାଯ୍ୟକରେ ଉପଲବ୍ଧିକୁ, କର୍ମପ୍ରେରଣା ହୋଇପାରେନା ଜନବିକ୍ଷୋଭର । ଯେପରି, ଟମାସ୍ ମାନ୍‌ଙ୍କ *ଦି ମ୍ୟାଜିକ୍ ମାଉଣ୍ଟେନ୍* (କୁହୁକ କୈଳାସ) କିମ୍ବା ଏଲିୟଟ୍‌ଙ୍କ *ଦି ୱେଷ୍ଟ ଲ୍ୟାଣ୍ଡ* (ବନ୍ଧ୍ୟା ବସୁଧା) । ମଣିଷର ଭଗ୍ନଜାନୁ ଅବସ୍ଥା ପାଠକକୁ ବିଷର୍ଣ୍ଣକରେ; କ୍ରୋଧ ଉଦ୍ରେକକରେନା କି ଉଦ୍ୟମକୁ କରିପାରେନା ଉଜ୍ଜୀବିତ । ସେଇ ପରିମାପରେ ଦେଖିବାକୁ ପଡ଼ିବ ଆନ୍ତନିଓ ନେଗ୍ରୀଙ୍କୁ, ଯିଏ ଜେଲ୍‌ଖାନା ଭିତରୁ ଛାଡ଼ପାଇ ସୁଦ୍ଧା ସ୍ତିମିତ ହୋଇଯାଇ ନାହାନ୍ତି । କିନ୍ତୁ ପାଦ୍‌ଭା ବିଶ୍ୱବିଦ୍ୟାଳୟର କୃତବିଦ୍ୟ ଏଇ ଦର୍ଶନ-ଶିକ୍ଷକଙ୍କୁ ଜଣପାଇଁ ରାଷ୍ଟ୍ର ପଠାଇଥିଲା କାରାଗାରକୁ ? କାରଣ, ଇତାଲିର ବାମପନ୍ଥୀ ରାଜନୀତିରେ ଆଁ ଫାଁ ତେରିବ୍ଲ ବିବେଚିତ ଏଇ ଲୋକଟି ନେତୃତ୍ୱରେ ଯେହେତୁ ଗଢ଼ିଉଠିଚି 'ଅଟନମିୟା' ଆନ୍ଦୋଳନ । ମାର୍କ୍ସୀୟ ସମାଜଚିନ୍ତା ଚର୍ଚ୍ଚାରେ ଆନ୍ତନିଓ ଗ୍ରାମ୍‌ଶ୍ଚିଙ୍କ ପ୍ରାସଙ୍ଗିକତା ଆଜି ପ୍ରଶ୍ନାତୀତ; କିନ୍ତୁ ତାଙ୍କ ପଛକୁ ଖାଲି ଇଟାଲିରେ ନୁହେଁ, ଶ୍ରେଣୀସଂଗ୍ରାମ ଓ ତାର ପ୍ରୟୋଗକୁ କେନ୍ଦ୍ରକରି ତୁମୂଳ ହଟଗୋଳ ଉଠାଇଚନ୍ତି ଯୋଉ ନେଗ୍ରୀ ସାରା ପଶ୍ଚିମ ଗୋଲାର୍ଦ୍ଧରେ, ଆମପାଇଁ ରହିଚନ୍ତି ତଥାପି ଅପରିଚିତ । ଅଥଚ ଖାଲି ବହିଲେଖିବା କାରଣରୁ ଦୀର୍ଘକାଳ ଜେଲ୍‌ଖଟିଥିବା ବୁଦ୍ଧିଜୀବୀ ଇଉରୋପ୍‌ରେ ଅନ୍ତତଃ ସମକାଳରେ, ନେଗ୍ରୀ ହିଁ ଏକମାତ୍ର । ପଳାଇଯାଇ ଡେରା ପକାଇଚନ୍ତି ଫ୍ରାନ୍ସରେ, ସ୍ୱଦେଶକୁ ଫେରିଲେ ପୁନର୍ବାର କାରାକକ୍ଷଣ; ଅଥଚ ଫଟକରେ ଅଟକରହି ଲେଖିଚନ୍ତି ଯୋଉ *ମାର୍କ୍ସ ବିୟଣ୍ଡ ମାର୍କ୍ସ* ଇଉରୋପ୍ ତମାମ ହୋଇଚି ବେଷ୍ଟ୍‌ସେଲର୍ । ଶ୍ରେଣୀତତ୍ତ୍ୱର ସମସ୍ୟାପଟରେ ରହିଚନ୍ତି ଅବଶ୍ୟ ଛାତ୍ର ଆଉ ଶିଳ୍ପ-ଶ୍ରମିକ, କାହିଁକିନା, ୧୯୬୮ରେ ଯୋଉ ଆନ୍ଦୋଳନ ପଶ୍ଚିମ ଇଉରୋପ୍‌ର ମୂଳଦୁଆକୁ ହଲାଇଦେଇଥିଲା, ପୁରୋଭାଗରେ ରହିଥିଲେ ଏଇ ଛାତ୍ର ଆଉ ଶ୍ରମିକ । ଶ୍ରେଣୀତତ୍ତ୍ୱର ପ୍ରଥାଗତ ଉପସ୍ଥାପନକୁ ଆଘାତକାରିବା କାରଣ କମିଉନିଷ୍ଟ ପାର୍ଟିର ସଂଶୋଧନବାଦ । ତା ବିରୋଧରେ ନେଗ୍ରୀଙ୍କ ପ୍ରତିକ୍ରିୟା ବାମପନ୍ଥୀ ରାଜନୀତିକ୍ଷେତ୍ରରେ ହୋଇଚି ସମ୍ଭବତଃ ସୁଦୂରପ୍ରସାରୀ; ଛାତ୍ର ଓ ଶ୍ରମିକଙ୍କ ମିଳିତ ସାମ୍ମୁଖ୍ୟକୁ ଭାଙ୍ଗିଦେବାକୁ ଯଦିଓ ବେଶିଦିନ ଲାଗିନାହିଁ ରାଷ୍ଟ୍ରକୁ । ବ୍ୟତିକ୍ରମ କିନ୍ତୁ ଏକମାତ୍ର ଇଟାଲି । କାହିଁକିନା, ପୁରା ସତୁରିଦଶକଧରି ଇଟାଲିରେ ସକ୍ରିୟରହିଚି ପାର୍ଟି ଆଉ ଟ୍ରେଡ୍‌ଇଉନିୟନ୍ ବାହାରେ ଗୁରୁତ୍ୱପୂର୍ଣ୍ଣ ଏକ ସମାନ୍ତରାଳ ବିପ୍ଳବଧାରା । ଆଉ ସେ ଧାରାର ପ୍ରବର୍ତ୍ତକ ସ୍ୱୟଂ

ନେଗ୍ରୀ । ବିଶ୍ୱବିଦ୍ୟାଳୟରେ ଅଧ୍ୟାପନାକରିବା ସାଙ୍ଗକୁ ସଂପାଦନାକରିଚନ୍ତି *ଓ୍ୱର୍କର୍ସ ପାଓ୍ୱର୍* ପତ୍ରିକା । ସେଇ ପ୍ରତ୍ରିକାକୁ କେନ୍ଦ୍ରକରି ସେକାଳର ଉଜ୍ଜ୍ୱଳ ଯେତେ ଛାତ୍ରଛାତ୍ରୀ ଏକାଠି ହୋଇଚନ୍ତି ନେଗ୍ରୀଙ୍କ ତତ୍ତ୍ୱାବଧାନରେ । ପ୍ରତ୍ରିକା ତେଣୁ କାଳକ୍ରମେ ରୂପାନ୍ତରିତହୋଇଚି ପୁରାଦସ୍ତୁର୍ ରାଜନୀତିକ ସଂଗଠନକୁ; ଆଉ ସେତିକିବେଳେ କମିଉନିଷ୍ଟ୍ ଓ କ୍ରିଷ୍ଟାନ୍ ଡେମକ୍ର୍ୟାଟ୍‌ଙ୍କ ମିଳିତ ନେତୃତ୍ୱରେ ସରକାରଗଢ଼ିବା ସମ୍ଭାବନା ଦେଖାଦେଇଚି ଇଟାଲିରେ । ବାମପନ୍ଥୀ ରାଜନୀତିରେ ଅଭୂତପୂର୍ବ ଘଟଣା । ପାର୍ଟି ତାକୁ 'ଐତିହାସିକ ବୁଝାମଣା' ବୋଲି ପ୍ରଚାରକରେ; ଅଥଚ ଜନକଲ୍ୟାଣ ବାବଦ ବରାଦକୁ ହଠାତ୍ କମାଇଦିଏ ସରକାର, ଏବଂ ଅପରାପର ବୁର୍ଜୋୟା ପାର୍ଟି ସାଙ୍ଗରେ ଏକସ୍ୱରରେ କମିଉନିଷ୍ଟ୍ ବି ଶ୍ରମିକଶ୍ରେଣୀକୁ ଆବେଦନ କରନ୍ତି ଖର୍ଚ୍ଚକାଟକୁ ମାନିନେବାକୁ । ସେଇ ମଉକାରେ 'ଅଟୋନମିୟା' (=ଓ୍ୱର୍କର୍ସ ଅଟୋନମି) ଆନ୍ଦୋଳନର ସୂତ୍ରପାତ । ବିସ୍ଫୋରକ ଅବସ୍ଥା । ପାର୍ଟି-ବହିର୍ଭୁକ୍ତ ସମାନ୍ତରାଳ ଧାରାଟି, ମୂଳତଃ *ଓର୍କର୍ସ ପାଓ୍ୱର୍* ନେତୃତ୍ୱରେ ଧାରଣକରିଚି ସଂଗ୍ରାମର ରୂପଭେକ ।

ଉଦ୍ଦେଶ୍ୟ ଥିଲା, କଳକାରଖାନାର ତଥାକଥିତ ଟ୍ରେଡ୍‌ଇଉନିୟନ୍‌କୁ ବିରୋଧକରି ବିକଳ୍ପ ଶ୍ରମିକସଂଗଠନ ନିର୍ମାଣ; ଦାବିଥିଲା ମଜୁରିର ପରିମାଣ ସାଙ୍ଗରେ ଶ୍ରମର ପରିମାଣକୁ ନଯୋଡ଼ିବାକୁ; ଅର୍ଥାତ୍ କମ୍‌କାମ୍‌ପାଇଁ ବେଶି ମଜୁରୀ, ଯା ପ୍ରଥାଗତ ଟ୍ରେଡ୍‌ଇଉନିୟନ୍ ରୀତିର ସଂପୂର୍ଣ୍ଣ ବିପରୀତ । କାହିଁକିନା, କାମ ତ ପୁଞ୍ଜିବାଦୀ ଉତ୍ପାଦନପ୍ରକ୍ରିୟାରେ ଅନ୍ତର୍ଗତ ପରିଶ୍ରମ ! ଅଫିସିଆଲ୍ (ସରକାରୀ) ମାର୍କ୍ସବାଦ ଦୃଷ୍ଟିରେ, ଶ୍ରେଣୀସଂଗ୍ରାମର ଲକ୍ଷ୍ୟ, ଲିବରେସନ୍ ଅବ୍ ଓର୍କ୍, ପରିଶ୍ରମର ଶୃଙ୍ଖଳମୁକ୍ତି; କିନ୍ତୁ ନେଗ୍ରୀ କହିଲେ, ପରିଶ୍ରମର ମୁକ୍ତି ନୁହେଁ, *ପରିଶ୍ରମରୁ ମୁକ୍ତି*, ଲିବରେସନ୍ ଫ୍ରମ୍ ଓ୍ୱର୍କ୍; ମାନେ, ଉତ୍ପାଦନର ପୌତ୍ତଳିକତା ପାଖରୁ ଶ୍ରମଜୀବୀର ଜୀବନପ୍ରକ୍ରିୟାର ବନ୍ଧନମୁକ୍ତି । ତତ୍ତ୍ୱର ଗଠନ ଅବଶ୍ୟ ଜଟିଳ; ଯେପରି ମାର୍କ୍ସଙ୍କ ସର୍‌ପ୍ଲସ୍ ଭ୍ୟାଲିଉ (ଉଦ୍‌ବୃତ୍ତ ମୂଲ୍ୟ) ଅବରୋଧ । ନେଗ୍ରୀଙ୍କ ପରିଭାଷାରେ 'ଜିରୋ ଓର୍କ୍' (=କାମକରିବାକୁ ଅସ୍ୱୀକାର) ହିଁ ସଂଗ୍ରାମର ପ୍ରକୃତ ଆଭିମୁଖ୍ୟ । ଜିରୋ ଓର୍କ୍ କିନ୍ତୁ ବ୍ୟକ୍ତିବିଶେଷର ଅସ୍ୱୀକୃତି ନୁହେଁ, ସଂଘବଦ୍ଧ ସମବେତ ଅସ୍ୱୀକାର ସାଙ୍ଗକୁ ଅନ୍ତର୍ଘାତ । ଅର୍ଥାତ୍, ଶ୍ରମିକ କାମକୁ ଫାଙ୍କିଦେବନାହିଁ; ସୁପର୍‌ଭାଇଜର୍‌କୁ ଫାଙ୍କିଦେବ, ମ୍ୟାନେଜର୍‌କୁ ହଟହଟାକରିବ; କର୍ତ୍ତୃପକ୍ଷ ଯେପରିକି ସନ୍ତର୍ପଣରେ ରହିବେ ସର୍ବକ୍ଷଣ । ପ୍ରଖ୍ୟାତ ସାହିତ୍ୟିକ ଉମ୍‌ବେର୍ତୋ ଏକୋ ରଚିତ *ଟ୍ର୍ୟାଭେଲ୍ସ ଇନ୍ ହାଇପର୍ ରିଆଲିଟି* ଗ୍ରନ୍ଥରେ ଏଇ ଆନ୍ଦୋଳନ କଥା କୁହାଯାଇଚି ଏକାଧିକ ପ୍ରେକ୍ଷିତରେ, କାହିଁକିନା, ଆନ୍ଦୋଳନ ବସ୍ତୁତଃ ନିର୍ଦ୍ଧାରଣକରିଚି ଶ୍ରମିକଶ୍ରେଣୀର ନୂତନ ସଂଜ୍ଞା, ଯୋଉ ସଂଜ୍ଞାକୁ ଶ୍ରମପ୍ରକ୍ରିୟାରେ ପ୍ରତିଫଳିତ କରିଚି

'ଅଟୋନମିୟା' । ସେ ପ୍ରକ୍ରିୟା କାରଖାନା ଚୌହଦୀରେ କିନ୍ତୁ ସୀମାବଦ୍ଧ ନୁହେଁ; କାହିଁକିନା, ପୁଞ୍ଜିବାଦୀ ଉତ୍ପାଦନ-ସଂଗଠନ ବାହାରେ ତ ରହିଚନ୍ତି ଅସଂଖ୍ୟ ବେକାର, ଅଧାବେକାର, ଛାତ୍ରଛାତ୍ରୀଙ୍କ ସାଙ୍ଗକୁ 'ବ୍ଲାକ୍ ମନି' ବା କଳାବଜାର ସହିତ ଜଡ଼ିତ ପ୍ରାନ୍ତବାସୀ ବିପୁଳ ସଂଖ୍ୟକ ମଣିଷ ! ସମସ୍ତଙ୍କ ଶ୍ରେଣୀପରିଚୟ ତେଣୁ 'ଶ୍ରମିକ', କାହିଁକିନା, ଜନସଂଖ୍ୟାର ସର୍ବାଧିକ ଅଂଶକୁ ପ୍ରାନ୍ତିକ ଅବସ୍ଥାନକୁ ଫୋପାଡ଼ିଦେବା ଆଧୁନିକ ପୁଞ୍ଜିର ବୈଶିଷ୍ଟ୍ୟ । ଏବଂ, ଏ ପ୍ରାନ୍ତିକତା ଶତକଡ଼ା ଶହେ ରାଜନୀତିକ । କାହିଁକିନା, ପୁଞ୍ଜିର ସାମାଜିକ ପୁନରୁତ୍ପାଦନର ସମଗ୍ରତାକୁ ବୁଝିବାକୁ ଦରକାର ସଂଗଠିତ ଶ୍ରମଜୀବୀଙ୍କ ସାଙ୍ଗରେ ପ୍ରାନ୍ତିକ ଶ୍ରମଶକ୍ତିର ସଂମିଶ୍ରଣ । ମିଳିତଭାବେ ଏମାନେ କ୍ୟାପିଟାଲ୍‌ର 'ଦି ଅଦର୍' ବା ଅପର; ନେଗ୍ରୀଙ୍କ ପରିଭାଷାରେ, ସୋସାଲ୍ ଓ୍ୱର୍କର ।

ଶିଳ୍ପସଂସ୍ଥାର ତାଲିମ୍‌ପ୍ରାପ୍ତ କର୍ମୀ ତ ଆଗରୁ ସାମିଲ୍ ହୋଇସାରିଥିଲେ ସଂଗ୍ରାମରେ, ଏଥର ତାଙ୍କ ସାଙ୍ଗକୁ ଜୁଟିଗଲେ ପ୍ରାନ୍ତିକ ଅବସ୍ଥାନରେ ଇତର ହୋଇଯାଇଥିବା ଶ୍ରମଜୀବୀ । ଯେତେପ୍ରକାର ଶ୍ରମପ୍ରକ୍ରିୟା କାରଖାନାଭିତରେ କ୍ରିୟାଶୀଳ, ତହିଁରେ ଅନ୍ତର୍ଘାତ ସୃଷ୍ଟିକରିଚନ୍ତି କେବଳ ଶିଳ୍ପଶ୍ରମିକ; କାରଖାନା ବାହାରେ ପରିବ୍ୟାପ୍ତ ଯୋଉ ସାମାଜିକ ପଟଭୂମି, ସେଠି ମଧ୍ୟ ନାନାଦି ପ୍ରତିବାଦୀ ଓ ପ୍ରଥାବିରୁଦ୍ଧ କାର୍ଯ୍ୟକଳାପ ଜନ୍ମଦେଇଚି ଯୋଉ ଅଭୂତପୂର୍ବ ଉଦ୍ଦୀପନାକୁ, ଇଟାଲିର ରାଜନୀତିରେ ତାର ତାତ୍ପର୍ଯ୍ୟ ରହିଚି ସୁଦୂରପ୍ରସାରୀ । ମିଲାନ୍, ବୋଲୋନା ନେପ୍ଲସ୍—ସବୁଠି ସରକାରୀ ଆବାସନକୁ ବଳପୂର୍ବକ ଦଖଲକରିନେଇଚି ଗୃହହୀନ ପ୍ରାନ୍ତିକଜନତା । ସରକାରୀ ପରିବହନରେ ଯାତାୟାତ କଲାବେଳେ ଭଡ଼ାଦେଉଚନ୍ତି ଯତ୍‌କିଞ୍ଚିତ୍ । ଦୋକାନରୁ ଜିନିଷକିଣିବାକୁ ଯାଇ ଦାମ୍‌ଦେଇଚନ୍ତି ମନଇଚ୍ଛା । ପ୍ରଥାବିରୁଦ୍ଧ ଏ କାମଗୁଡ଼ିକୁ ନାଁଦେଇଚନ୍ତି 'ପଲିଟିକ୍ୟାଲ୍ ସପିଙ୍ଗ୍' । ଅର୍ଥାତ୍, ସାମାଜିକ ସ୍ତରରେ ପୁଞ୍ଜିର ପୁନରୁତ୍ପାଦନକୁ ସଂଘର୍ଷ ବାଟଦେଇ ପ୍ରତିରୋଧ । ଅଟୋନମିୟା-ଆନ୍ଦୋଳନର ରାଜନୀତିକ ମାତ୍ରା ପ୍ରତିବାଦ / ପ୍ରତିରୋଧର ଗତାନୁଗତିକ ଧାରା ଓ ଧାରଣାକୁ ଓଲଟପାଲଟ କରିଦେଇଚି । କମିଉନିଷ୍ଟ ପାର୍ଟି କିନ୍ତୁ ଆନ୍ଦୋଳନକୁ ବ୍ୟର୍ଥକରିଦେବାକୁ ଲଗାଇଦେଇଚି ନଖଦନ୍ତ; ଏପରିକି, ବେର୍‌ଲିଙ୍ଗର୍ ନିଜେ ବିପ୍ଲବୀଙ୍କୁ ଆଖ୍ୟା ଦେଉଚନ୍ତି 'ପ୍ଲେଗ୍‌ଜୀବାଣୁବାହୀ ମୂଷା', ଅଧାଲୁମ୍ପେନ୍, ପେଟିବୁର୍ଜୋୟା-ବୁଦ୍ଧିବାଦୀ । ଅଥଚ ବହୁ ପୂର୍ବରୁ ଗ୍ରାମ୍‌ସି ମଧ୍ୟ ଲକ୍ଷ୍ୟକରିଚନ୍ତି ସଂଗଠିତ ଶ୍ରମିକଶ୍ରେଣୀ ଆଉ ତା ଟ୍ରେଡ୍‌ଇଉନିୟନ୍‌କୁ ଆତ୍ମସାତ୍ କରିଚାଲିଚି କେମିତି ଆଧୁନିକ ପୁଞ୍ଜିର ଅଗ୍ରଗତି, ଏବଂ ପୁଞ୍ଜିର ସେଇ ସଂସ୍କରଣକୁ ନାମିତକରିଛନ୍ତି 'ଫୋର୍ଡ଼ିଜ୍ମ' । (ଏକ୍ଷଣି, ତଥ୍ୟପ୍ରଯୁକ୍ତି

କଲ୍ୟାଣରୁ ପୃଥିବୀର ଦୁର୍ଗମ କୋଣରେ ସୁଦ୍ଧା ଉତ୍ପାଦିତ ହେଉଚି ଯନ୍ତ୍ରାଂଶ, ଆସେମ୍ବ୍ଲିଲାଇନ୍ ହୋଇଯାଇଚି ମାନ୍ଧାତା ଅମଳର ପ୍ରତ୍ନବସ୍ତୁ) । ଫୋର୍ଡ଼ିଜ୍ମର ପ୍ରତିକ୍ରିୟାର ଚୂଡ଼ାନ୍ତ ରୂପ ଇଉରୋ-କମିଉନିଜ୍ମ ହୋଇଥିଲେ ସୁଦ୍ଧା, ଷାଠିଏଦଶକର ଛାତ୍ରଆନ୍ଦୋଳନ ସଂଗ୍ରାମକୁ କରିଦେଇଚି ସଶସ୍ତ୍ର । ଇଉରୋ-କମିଉନିଜ୍ମର ପୀଠସ୍ଥାନ ଅବଶ୍ୟ ଇଟାଲି, ଏବଂ ତାର ତତ୍ତ୍ୱପ୍ରକରଣର ପ୍ରଧାନ ସ୍ଥପତି ବେର୍‌ଲିଙ୍ଗର୍ । ଇଉରୋକମିଉନିଜ୍ମ ଯୋଉ କ୍ୟାପିଟାଲ୍‌କୁ ବିରୋଧ କରେ, ତା କେବଳ ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍; ସଂଗ୍ରାମୀ ଶ୍ରେଣୀ କହିଲେ, ସେ ତତ୍ତ୍ୱ ବୁଝେ ଏକେଲା ଶିଳ୍ପଶ୍ରମିକ; ମାତ୍ର ସାମାଜିକଭାବେ ଯିଏ ଇତର, ପ୍ରାନ୍ତିକ କିମ୍ବା କର୍ମହୀନ, ସେମାନେ ମଧ୍ୟ ପରିଶ୍ରମକରି ପେଟପୋଷନ୍ତି; ଅଥଚ ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍ ନଜରରେ ସେମାନେ ପର, ଦି ଅଦର୍ । ସଂଗ୍ରାମୀ-ଶ୍ରେଣୀର ଷ୍ଟ୍ରକ୍‌ଚର୍ ଭିତରେ ସେମାନଙ୍କୁ ସ୍ଥାନଦେଇଚନ୍ତି ନେଗ୍ରି ।

କାହିଁକିନା, ସାମାଜିକ ସ୍ତରରେ ପୁଞ୍ଜିର ପୁନରୁତ୍ପାଦନକୁ ସେମାନଙ୍କ ଅବଦାନ ସର୍ବାଧିକ; ତେଣୁ ପୁଞ୍ଜିର ଷ୍ଟ୍ରକ୍‌ଚର୍ ବାହାରେ ଅବଜ୍ଞାତହୋଇ ଯିଏ ରହିଥିଲେ ଏତେକାଳ, ନେଗ୍ରୀ ଦେଖିଲେ ସେଇ ଷ୍ଟ୍ରକ୍‌ଚର୍‌ରୁ ସେମାନେ କିନ୍ତୁ ଅବିଭାଜ୍ୟ । ତା ସାଙ୍ଗକୁ ପ୍ରାନ୍ତିକ ଜନଗଣଙ୍କୁ ଶ୍ରେଣୀସଂଗ୍ରାମ କେନ୍ଦ୍ରରେ ଆଣି ଥୋଇଦେବା କାମଟା, ତାତ୍ତ୍ୱିକ ଶୁଦ୍ଧତା ଦୃଷ୍ଟିରୁ ଅନ୍ତତଃ, ଇଉରୋକମିଉନିଜ୍ମର ପରିପନ୍ଥୀ । ଏପରିକି, ଭାରତରେ ମୁଦ୍ଧା, କମିଉନିଷ୍ଟ୍ ଚାହିଁବସିଚନ୍ତି, ଶିଳ୍ପ-ଉତ୍ପାଦନ ବିସ୍ତାର ଲାଭକଲେ ଯାଇ, ଆରମ୍ଭକରିବେ ଶ୍ରେଣୀସଂଗ୍ରାମ ! ଉତ୍ପାଦନଶୀଳତା ସହିତ ଶ୍ରମିକର ମଜୁରୀକୁ ଅଙ୍ଗାଙ୍ଗୀ ମନେକରିବା ପୁଞ୍ଜିର ଚିରାଚରିତ ଲକ୍ଷଣ; ସେଇ ଉପସର୍ଗରୁ ଗ୍ରାମ୍‌ଷ୍ଟି ବୁଝିଥିଲେ, ମଜୁରୀ କମାଇଦେଇ କିମ୍ବା ବଢ଼ାଇଦେଇ ଟ୍ରେଡ୍‌ଇଉନିୟନ୍‌କୁ ଆତ୍ମସାତ୍ କରିପାରେ ଇଣ୍ଡଷ୍ଟ୍ରିଆଲ୍ କ୍ୟାପିଟାଲ୍ । ଏବଂ ସେଇ ସୂତ୍ରରେ, ସମଗ୍ର ଶ୍ରମିକଶ୍ରେଣୀକୁ । ନେଗ୍ରୀଙ୍କ ସକାଶେ, ମଜୁରୀର ଗଢ଼ଣ ଉତ୍ପାଦନ ସାଙ୍ଗରେ ଯେତେ ନୁହେଁ, ରାଜନୀତି ସାଙ୍ଗରେ ତାଠୁଁ ବହୁଗୁଣ ବେଶି ଓତପ୍ରୋତ । ମଜୁରୀର ଅସଲ ପରିଚିତି ତେଣୁ 'ରାଜନୀତିକ ମଜୁରୀ' । ମାନେ, ମଜୁରୀ ମାଧ୍ୟମରେ ପୁଞ୍ଜି ଯଦି ଉତ୍ପାଦନଶୀଳତାକୁ ନିୟନ୍ତ୍ରଣକରିପାରେ, ଶ୍ରମ ଉପରେ ତାହେଲେ ପ୍ରତିଷ୍ଠାପାଏ ଟଙ୍କାର ହିଗେମନି (ପ୍ରଭୁତ୍ୱ) । ସେ ପଭୂତ୍ୱକୁ ପ୍ରତିଘାତକରିବାକୁ ଦରକାର କାମଦେହରୁ ମଜୁରୀକୁ ହଟାଇଦେବା । କାମକରି ନପାରିଲେ ବି ବଞ୍ଚିବାପାଇଁ ମଣିଷ ପଇସାପାଇବ; ସେ ପଇସା ସେଥିପାଇଁ 'ରାଜନୀତିକ ମଜୁରୀ' । ସମାଜର ଦାୟିତ୍ୱ ଯେହେତୁ ଯୋଗ୍ୟତା ଅନୁସାରେ ଲୋକଙ୍କୁ କାମ ଯୋଗାଇଦେବା ଏବଂ କାମକରିବାକୁ ଯେହେତୁ କେହିହେଲେ ଅସମ୍ମତନୁହେଁ, କାମ ନପାଇଲେ ଉପାସରେ ମରିବେନାହିଁ । ଦ୍ୱିତୀୟ

ମହାଯୁଦ୍ଧ ଉତାରୁ କର୍ମହୀନ ଲୋକଙ୍କ ପାଇଁ କେଇନ୍‌ସ୍‌, ସେଥିପାଇଁ, ଜନମଙ୍ଗଳ ନାଁରେ, ଏଇଭଳି ଏକ ରାଷ୍ଟ୍ରୀୟ ଉତ୍କୋଚବ୍ୟବସ୍ଥା ପ୍ରଚଳନ କରିଚନ୍ତି । ଭାରତ ବି କରିଚି, ଯା ଫଳରେ ରାଜନୀତିକ ମଜୁରୀ ଟଙ୍କାଏ ହେଲେ ଶ୍ରମିକ ପାଏ, ରାଜୀବ ଗାନ୍ଧିଙ୍କ ସ୍ୱୀକାରୋକ୍ତି ଅନୁସାରେ, ପନ୍ଦର ପଇସା । କିନ୍ତୁ ଗ୍ରାମ୍‌ଶି ପ୍ରୟାତ ହୋଇଚନ୍ତି ୧୯୩୭ରେ, ଓ୍ୱେଲ୍‌ଫେଆର୍ ଷ୍ଟେଟ୍‌ର ମୁହଁ ଦେଖିଯାଇ ପାରିନାହାଁନ୍ତି । ଜନମଙ୍ଗଳ କାୟଦାଟା କିନ୍ତୁ ଶ୍ରେଣୀସଂଗ୍ରାମକୁ ଆତ୍ମସାତ୍‌କରିବାକୁ ଉଦ୍ଦିଷ୍ଟ । ଏ ବାଟରେ ଯେ ଶ୍ରେଣୀ ହାତରୁ ସଂଗ୍ରାମକୁ ଛଡ଼ାଇନେଇପାରେ ପୁଞ୍ଜି, ବଂଚିଥିଲେ ନିଷ୍ଚୟ ବୁଝିଥାନ୍ତେ ଗ୍ରାମ୍‌ଶି, ଏବଂ ବୁଝିଥାନ୍ତେ, ପୁଞ୍ଜିର ଅସଲ ଅଭିପ୍ରେତ ରାଜନୀତିର ଅନ୍ତ୍ୟେଷ୍ଟି । ନେଗ୍ରୀଙ୍କ 'ରାଜନୀତିକ ମଜୁରୀ' କିନ୍ତୁ ରାଷ୍ଟ୍ରପ୍ରଦତ୍ତ ଉତ୍କୋଚ ନୁହେଁ; ଗୋଟାପଣେ ମଜୁରୀ, ସଂଗ୍ରାମ ବାଟଦେଇ ଅର୍ଜିତ ମଜୁରୀ । ତେଣୁ ଇତିହାସର ଇତି ନୁହେଁ ।

*ରୁକାବଟକେ ଲିୟେ ଖେଦ୍ ହେ*

ମଝିରେ ଅଟକିଯିବା କାରଣ, ଭାରତର ଦାରିଦ୍ର୍ୟ ପାଖରୁ ବ୍ରିଟିଶ୍‌ରାଜ ଯେମିତି ସଂଘବଦ୍ଧ କୋଉ ଅଭ୍ୟୁତ୍ଥାନ୍‌ର ସମ୍ମୁଖୀନହୋଇନାହିଁ, ସେମିତି ସଂଖ୍ୟାଲଘୁ କି ଜାତି ଉପଜାତି ପାଖରୁ । କାହିଁକି ? ଏମାନଙ୍କ ଦେଶପ୍ରେମ ନିଷ୍ଚୟ କମ୍ ନୁହେଁ । ଏବଂ ଗାନ୍ଧିଙ୍କ ସତ୍ୟାଗ୍ରହ-ଆନ୍ଦୋଳନ ନାନାଦି ହିନ୍ଦୁ-ପ୍ରତୀକକୁ ଅବଲମ୍ବନ କରିଥିଲେ ସୁଦ୍ଧା, ତାଙ୍କ ନେତୃତ୍ୱକୁ ମଧ୍ୟ କେହି ପ୍ରଶ୍ନକରିନାହିଁ । ନା ଜିନ୍ନା, ନା ଆମ୍ବେଡ୍‌କର୍, ନା ଜୟପାଳ ସିଂ । ଏକମାତ୍ର କାରଣ ବଞ୍ଚିତର ଯୋଉ ଅଣବିଶ୍ୱ, ତାକୁ ଆକ୍ରମଣ କରିନାହିଁ ବୁର୍ଜୋୟାର ଜାତୀୟତାବାଦ । ବ୍ରିଟିଶ୍ ଜାତୀୟତାବାଦ ଏକ ରାଜନୀତିକ ଅବବୋଧ; ଗାନ୍ଧିଙ୍କ ଜାତୀୟତାବାଦ କିନ୍ତୁ ଏକ ଆଧ୍ୟାତ୍ମିକ ପ୍ରତୀତି । କୋଉ ଗୋଟାକହେଲେ ଖଟିଖିଆ ମଣିଷର ଜୀବନନିର୍ବାହକୁ ହଲାଇ ପାରିନାହିଁ । ନମ୍ବୁଦିରିପଦ ସେଥିପାଇଁ ଲେଖିଚନ୍ତି ୧୯୩୬ ରେ, Once they were drawn into the movement, this new class, the peasantry, drew up its own forms of struggle, and its own form of organisation । କୋସ୍ୱାମୀ ମଧ୍ୟ ନେହରୁଙ୍କ *ଭାରତ ଆବିଷ୍କାର* କୁ ଉପଲକ୍ଷ୍ୟକରି ୧୯୪୬ରେ ଲେଖିଚନ୍ତି, *The Bourgeoisie comes of Age in India*, ଯୋଉଠି ମୁସଲ୍‌ମାନ୍‌ଙ୍କ ପ୍ରତି ଅବଜ୍ଞାକୁ କରାଯାଇଚି କଟାକ୍ଷ, ଆଉ ସେଇ ୧୯୪୬ ରେ ଆମ୍ବେଡ୍‌କର ଲେଖିଚନ୍ତି, *What Congress and Gandhi Have Done to the Untouchables* । ୧୯୩୬ରେ

ଅସହଯୋଗ ପ୍ଲାବନରେ ଦେଶ ଯେତେବେଳେ ଭାସୁଚି, ଜୟପ୍ରକାଶ ପୁଣି ଲେଖୁଚନ୍ତି, *Why Socialism* । ଏଥିରୁ ଯା ପ୍ରତ୍ୟକ୍ଷ, ତାକୁ ସଂକ୍ଷେପରେ କୁହାଯାଇପାରେ, ଜାତୀୟତାବାଦ ଊର୍ଦ୍ଧ୍ୱରେ ଦେଶର ବଞ୍ଚିତ-ଲାଞ୍ଛିତଙ୍କୁ ସାମାଜିକ ନ୍ୟାୟଦେବାର ଇଣ୍ଟେଲେକ୍ଚୁଆଲ୍ ପ୍ରୟାସ । ଯା'କୁ ଯଦି କୁହାଯାଏ ଉଦାରବାଦ, ୮୦-୯୦ ଦଶକରୁ ତାର ମିଆଦ ପୂରିଯାଇ ଆରମ୍ଭହୋଇଛି ନବ୍ୟ-ଉଦାରବାଦ (ଗ୍ଲୋବାଲାଇଜେସନ୍ + ପ୍ରାଇଭେଟାଇଜେସନ୍ + ମୁକ୍ତକଚ୍ଛ ମାର୍କେଟ୍) । ଫଳରେ, ଶାସନକରୁଥିବା କଂଗ୍ରେସ୍‌ଦଳ ପୂର୍ବାଚରିତ ସାମାଜିକ ରାଜନୀତିକ ଦାୟବଦ୍ଧତାକୁ ଜଳାଞ୍ଜଳି ଦେଇ ମାର୍କିନ୍ ଯୁକ୍ତରାଷ୍ଟ୍ରକୁ ଅଭିଭାବକ ମାନିନେଇଚି । ତା ଫଳରେ ଯୋଉ ଗୋଟିଏ ଶ୍ରେଣୀ ଉତ୍‌ଫୁଲ୍ଲ ହୋଇଚି, ଅନ୍ୟ କେହି ନୁହେଁ, ମଧ୍ୟବିତ୍ତ । କାହିଁକିନା, ମଧ୍ୟବିତ୍ତହିଁ ଏକ୍ଷଣି ଦେଶର ଶାସକଶ୍ରେଣୀ ।

ରାଜବଂଶର ପ୍ରାୟ ସମସ୍ତ ଚରିତ୍ରଲକ୍ଷଣ ମଧ୍ୟବିତ୍ତ ଯେହେତୁ ଆତ୍ମସାତ୍ କରିସାରିଚି ଏଇ ପଚିଶ-ତିରିଶ ବର୍ଷ ଭିତରେ, ହୋଇଯାଇଚି ଏକ୍ଷଣି କ୍ଷମତାର ପ୍ରଧାନ ଅବଲମ୍ବନ । ସେ ଲକ୍ଷଣକୁ ଗୋଟିଏ ଶବ୍ଦରେ କୁହାଯାଉଚି 'କର୍‌ପସନ୍'; ସଂକ୍ରାମକ ବ୍ୟାଧି ପରି ତାର ବ୍ୟାପିକାଶକ୍ତି । ଯେପରି ସୋଭିଏଟ୍ ଋଷିଆ ଅନ୍ନରେ ରାଜୀବଗାନ୍ଧିଙ୍କ ପରିବାରର ପ୍ରତିପାଳନ । ପରିବାର କହିଲେ, ପତ୍ନୀ ସନିଆ, ପୁତ୍ର ରାହୁଲ ଆଉ ଶାଶୁ ପାଓଲା ମାଇନୋ । ମାର୍କିନ୍ ଡଲାର୍‌ରେ ଏ ଟଙ୍କା ରାଜବଂଶ ପାଇଆସୁଚି ୧୯୭୧ରୁ । ଏବଂ ସେତେବେଳେ ମାତା ଇନ୍ଦିରା ଗାନ୍ଧି ଥିଲେ ଦେଶର ସର୍ବେସର୍ବା । ନଭେମ୍ବର୍ ୧୯୯୧ରେ ସୁଇଜର୍‌ଲ୍ୟାଣ୍ଡ୍‌ରୁ ବିଖ୍ୟାତ ପତ୍ରିକା Schweitzer Illustrate କହିଦିଏ ଯେ, ସେ ଦେଶର କୌଣସି ବ୍ୟାଙ୍କ୍‌ରେ ରାଜୀବ ରଖୁଚନ୍ତି ଦୁଇ ବିଲିଅନ୍ ମାର୍କିନ୍ ଡଲାର୍ । ୨୦୦୭ ଜାନୁଆରୀ ମାସରେ ପୁନାର ଘୋଡ଼ାବେପାରୀ ହସନ୍ ଅଲି ଖାଁର ଅଫିସ୍ ଚଢ଼ାଉକରି ଇନ୍‌କମ୍ ଟ୍ୟାକ୍ସ ଡିପାଟ୍‌ମେଣ୍ଟ୍ ପ୍ରମାଣପାଏ, ଜୁରିଖ୍ ସହରରେ ନିର୍ଦ୍ଦିଷ୍ଟ ଏକ ବ୍ୟାଙ୍କ୍‌ରେ ରଖୁଚି ଆଠବିଲିଅନ୍ ମାର୍କିନ୍ ଡଲାର୍ । ପରେ ସନିଆ ଗାନ୍ଧିଙ୍କ ରାଜନୀତିକ ସଚିବ ଅହମଦ ପଟେଲ୍ ବମ୍ବେଯାଇ ତାକୁ ଆଶ୍ୱସ୍ତକରି ଆସିଚନ୍ତି ଏବଂ ମହାରାଷ୍ଟ୍ର ସରକାର ଅ୍ୟାସେମ୍ବ୍ଲିରେ ମଧ୍ୟ ଏ ସାକ୍ଷାସାକ୍ଷାତ୍‌କୁ ସ୍ୱୀକାରକରିଚନ୍ତି । ଆନୁପୂର୍ବିକ ଏଇ କାରଚୁବି ଜାନୁୟାରୀ ୨୨,୧୯୯୦ ରେ ବୁଫର୍ସ୍ ବନ୍ଧୁକକିଣାକୁ ନେଇ ଯୋଉ ତଦନ୍ତ ହୋଇଥିଲା, ତା ମୂଳରେ ଥିଲା ରାଷ୍ଟ୍ରଦୂତ ଭୂପତ୍ ଓଝା, ସ୍ୱେଡେନ୍‌ରୁ ପଠାଇଥିବା ରିପୋର୍ଟ, while payments had indeed been made in connection with the Bofors deal, they were not made for winning the contract । ବୋଲିବା

ବାହୁଲ୍ୟ, ରାଜୀବ ଗାନ୍ଧି ଥିଲେ ସେତେବେଳେ ପ୍ରତିରକ୍ଷା ମନ୍ତ୍ରୀ । ପତ୍ନୀ ସନିଆ ନିଶ୍ଚୟ ପ୍ରସବକରିନାହାନ୍ତି ଏତେଗୁଡ଼ାକ କର୍‌ପ୍‌ସନ୍, ପାଇଚନ୍ତି କେବଳ ଉତ୍ତରାଧିକାର ସୂତ୍ରରେ । କେଜିବି ପାଖରୁ ଚାହିଁନାହାନ୍ତି ଭାଡିଆ; ରସିଆ ଦେଇଛି ଯେହେତୁ ଭାରତକୁ ଶାସନକରୁଚି ଯୋଉ ରାଜବଂଶ ସନିଆ ସେଇ ଏକାନ୍ନବର୍ତ୍ତୀ ପରିବାରର କର୍ତ୍ତ୍ରୀ । ତାଙ୍କର ଦୋଷ ନାହିଁ, କାହିଁକିନା ସ୍ୱୟଂ ଜବାହରଲାଲ୍ ସୋଭିଏଟ୍ ଇଉନଅନ୍‌ରୁ ଟଙ୍କା ନେଇଚନ୍ତି ବହିର ରୟାଲ୍‌ଟି କହି, ଇନ୍‌କମ୍ ଟ୍ୟାକ୍ସ ଡିପାଟମେଣ୍ଟ ଅଗୋଚରରେ ଏ ଟଙ୍କା ରଖାଯାଇଥିଲା ଚୀନ୍‌ର ଏକ ବିଦେଶୀ ବ୍ୟାଙ୍କ୍‌ରେ; ଚୀନ୍ ସାଙ୍ଗରେ ୧୯୬୨ରେ ଯୁଦ୍ଧ ହେବାରୁ କଲିକତାରେ ଥିବା ସେଇ ବ୍ୟାଙ୍କ୍‌କୁ ସରକାର ଦଖଲକରିନେଲେ; ସେତେବେଳେ ଜଣାପଡିଲା, ଲୁଟ୍‌ତରାଜ୍ ନୂଆ କୋଉ ଲକ୍ଷଣ ନୁହେଁ; ଆରମ୍ଭ ହୋଇଯାଇଚି କ୍ଷମତା-ହସ୍ତାନ୍ତର ଅବ୍ୟବହିତରେ ।

ରାଜବଂଶ ଆଉ ତାର ପାରିଷଦମାନଙ୍କୁ କଣପାଇଁ ପ୍ରଶ୍ନକରୁନାହିଁ ମଧ୍ୟବିତ୍ତ ? ତେଲେଙ୍ଗାନାର କୃଷକବିଦ୍ରୋହକୁ ନେହ୍‌ରୁ ଯେତେବେଳେ ଦମନକଲେ, ସର୍ବପ୍ରଥମ ନିର୍ବାଚିତ ବାମପନ୍ଥୀ ରାଜ୍ୟସରକାରକୁ ବଳପୂର୍ବକ ଭାଙ୍ଗିଦେଲେ, କି ଇନ୍ଦିରାଗାନ୍ଧୀ ଇମର୍‌ଜେନ୍ସି ଜାରିକରି ନକ୍ସଲ-ସଂହାର ସାଙ୍ଗକୁ ବସ୍ତିଭାଙ୍ଗିଲେ କି ଲୋକଙ୍କୁ ଜବରଦସ୍ତିକରି ଖାସୁକଲେ, କି ରାଜୀବ ଯେତେବେଳେ ଦେଶବ୍ୟାପୀ ଘଟାଇଦେଲେ ଶିଖ୍‌ନିଧନ ଯଜ୍ଞ, ମଧ୍ୟବିତ୍ତ ଚୁପ୍‌ହୋଇ ବସିରହିନାହିଁ । ଏପରିକି, ସତ୍ୟଜିତ୍ ରାୟ ଫିଲ୍ମ ତିଆରିକରି *ସୀମାବଦ୍ଧ* ରେ ଦେଖାଇଚନ୍ତି, ଗଡ଼ପଡ଼ତା ଯୁବକଯୁବତୀଙ୍କ ତୁଳନାରେ ନକ୍ସଲ୍ ବା ବିପ୍ଳବୀ ଜଣେ ଉନ୍ନତ-ମାନବ । ମହାଶ୍ୱେତା ଦେବୀ ଲେଖିଚନ୍ତି *ହାଜାର ଚୁରାଶିର ମା* । ବିଶ୍ୱବିଦ୍ୟାଳୟର ସବୁଠୁଁ ଉଜ୍ଜ୍ୱଳ ଛାତ୍ରଛାତ୍ରୀ ବନ୍ଧୁକ ହାତରେ ବାହାରି ଯାଇଚନ୍ତି ବଂଶଜଙ୍ଗଲକୁ । ଏଇ କେତେଟା ବର୍ଷ ବ୍ୟବଧାନରେ କଣପାଇଁ ତାହେଲେ ମଧ୍ୟବିତ୍ତର ଏଇ ମେରୁକରଣ ବା ମେଣ୍ଢାକରଣ ? କାହିଁକିନା, କୌଣସି ଗଣଆନ୍ଦୋଳନ ଆରମ୍ଭ ହେଲା ମାତ୍ରକେ ରାଷ୍ଟ୍ର କହୁଚି, ପରିବର୍ତ୍ତନ ବା ପ୍ରତିକାର, ଯଦି ଦରକାର, ପାର୍ଲାମେଣ୍ଟ ଆଇନ୍‌କରି କରିବ; ସେ ଅଧିକାର ସିଭିଲ୍ ସୋସାଇଟି ଅପହରଣ କରିପାରେନା । ତାହେଲେ, ଅମ୍ବାନି କେମିତି ଜୟପାଳ ରେଡ୍ଡି ହାତରୁ ପେଟ୍ରୋଲିଅମ୍ ମନ୍ତ୍ରକ କାଢ଼ିନେଇପାରୁଚି କି ନୀରା ରାଡ଼ିଆ ଠିକ୍‌କରିଦେଉଚି ଏ.ରାଜା କୋଉ ମନ୍ତ୍ରକ ଦାୟିତ୍ୱ ପାଇବ ? ଏମାନେ କଣ ସିଭିଲ୍ ସୋସାଇଟି ବହିର୍ଭୂତ ନର-ନାରୀ ? ରାଜବଂଶ-ପରିଚାଳିତ ରାଷ୍ଟ୍ର ଯଦି ସ୍ଥିରକରିବ ସୁଶୀଳ ସମାଜ କଣ କହିବ କି କରିବ, ତେବେ ସିଭିଲ୍ ସୋସାଇଟିକୁ ନପଚାରି ବ୍ରିଟିଶ୍ ଯୋଉ Land Acquisiton Act. 1894, କି Indian Penal Code, 1860, ପ୍ରବର୍ତ୍ତନକରିଥିଲା, ସେଗୁଡ଼ିକୁ ନ

ବଦଳାଇ ରାଷ୍ଟ୍ର କେମିତି ଜୋରଜବରଦସ୍ତି ଲୋକଙ୍କ ପାଖରୁ ଜମି ଛଡ଼ାଇ ନେଉଚି କି ବିନାୟକ ସେନ୍ ଭଳି ଡାକ୍ତରକୁ ଦେଶଦ୍ରୋହୀ କହି ପୁରାଇଦେଉଚି ଜେଲ୍ ଖାନାରେ ? ମଧ୍ୟବିତ୍ତ, ଯା ହାତରେ ଅଛି ଶିକ୍ଷା, ନିୟମିତ ଉପାର୍ଜନ, ସମାଜରେ ମାନ୍ୟତା , ପଚାରୁନାହିଁ କାହିଁକି ଏଇ ସଙ୍କଟ ମୁହୂର୍ତ୍ତରେ ? ସ୍ପଷ୍ଟତଃ, ମଧ୍ୟବିତ୍ତ ପାଲଟିଯାଇଚି ବୁର୍ଜୋୟା । ତାଙ୍କୁ ବି ଦରକାର ଆହୁରି ବେଶି ଧନ, ଆହୁରି ବେଶି ଭୋଗସଂଭୋଗ, ଆହୁରି ବେଶି କର୍ତ୍ତୃତ୍ୱ; ଯୋଉଁ ବାଟରେ ହେଉ, ସେ ବନ୍ଦୋବସ୍ତ ଯିଏ କରିଦେଇପାରିବ, ସେଇ ତାର ଆଦର୍ଶ; ଆଉ ଯିଏ ପ୍ରତିରୋଧ କରିବ କି କରିପାରେ, ସେ ଶଳା ହେଡ଼ାଖିଆ ଯାଉ ନରକକୁ ! ପ୍ରତିନିଧିମୂଳକ ଏଇ ଗଣତନ୍ତ୍ରକୁ ଦରିଦ୍ର ପ୍ରତି ପ୍ରତାରଣା (ପାର୍ଲାମେଣ୍ଟର ଅଧିକାଂଶ ସଦସ୍ୟ ଯେହେତୁ କୋଟିପତି କିମ୍ବା କ୍ରିମିନ୍ୟାଲ୍) ବୋଲି ଜାଣିସୁଦ୍ଧା ମଧ୍ୟବିତ୍ତ ଯେତେବେଳେ ଆଗ୍ନେୟଗିରି ଉପରେ ବସି ପିକ୍‌ନିକ୍ କରିବାକୁ ବ୍ୟସ୍ତ, ବିଦ୍ରୋହୀ ଅବଶ୍ୟ ପ୍ରତ୍ୟାଶାକରିବେ ଇଣ୍ଟେଲେକ୍‌ଚୁଆଲ୍‌ର ହସ୍ତକ୍ଷେପ; ଯେପରି ପ୍ରଖ୍ୟାତ ସାମ୍ବାଦିକ ସାମ୍ ରାଜାପ୍ପା ଲେଖିଚନ୍ତି ଏପ୍ରିଲ୍ ୧୯୧୦ରେ There is direct, credible incriminating information about Chidambaram's intimate relationship with the Vendanta group which has the biggest stake in the acquisition of India's tribal territory. A lot of information is contained in Rohit Poddar's book titled *Vedanta's Billion's,* first published in California in 2006, but banned for distribution in India. If Chidambaram is not removed from home ministry and a person without such conflict of interest is appointed in his place, and if the Government persists with Operation Green Hunt to turn the 'red corridor' into a corporate Corridor, there is every likelihood of the nation heading for civil war.

* * * * * * *

ବିରତି ଉତାରୁ ସନିଆଙ୍କ ମାତୃଭୂମି-ପ୍ରସୂତ ଆନ୍ତନିୟ ନେଗ୍ରିଙ୍କ ପ୍ରସଙ୍ଗକୁ ମନଦିଆଯାଉ । ପ୍ରାନ୍ତିକତା ବା ମାର୍ଜିନ୍ୟାଲିଟି କିନ୍ତୁ ନେଗ୍ରୀଙ୍କ ଆବିଷ୍କାର ନୁହେଁ; ଉତ୍ତର-ଆଧୁନିକତାର ମୁଗ୍ଧ ଉଦ୍‌ଭାବନ ବି ନୁହେଁ; ଆସିଚି ମିଶେଲ୍ ଫୁକୋଙ୍କ ଚିନ୍ତାଧାରାରୁ। ଫୁକୋ କିନ୍ତୁ ଇତିହାସର ଛାତ୍ର; ମାତ୍ର ଫରାସୀ ନୈରାଜ୍ୟବାଦୀ (ଆ୍ୟନାର୍କିଷ୍ଟ) ଆଁନ୍ଦ୍ରେ ଗୋର୍ଜ୍ ଦୁଇଟି କୃଶକାୟ ବହି, *ଫ୍ର. ଫେଆରୱେଲ୍ ଟୁ ଦି ୱର୍କିଙ୍ଗ୍‌କ୍ଲାସ୍* ଏବଂ *ପାଥ୍‌ସ୍ ଟୁ ପ୍ୟାରାଡାଇସ୍* ରେ ବିସ୍ଫୋରକ କିଛି ତତ୍ତ୍ୱ ଶୁଣାଇଚନ୍ତି

ପ୍ରାନ୍ତିକ ଜନସମଷ୍ଟିର ତାତ୍ପର୍ଯ୍ୟ ସଂପର୍କରେ । କହିଚନ୍ତି, ସଂଗଠିତ ପୁଞ୍ଜିବାଦୀ ଉତ୍ପାଦନ ପ୍ରକ୍ରିୟା ବିଶେଷ ହେଲେସୁଦ୍ଧା, ଔଜ୍ଜ୍ୱଲ୍ୟରେ ଆଖିଝଲସାଇଦେବା ଭଳି ନାଟକ; ଶ୍ରମିକ ଓ ବୁର୍ଜୋୟା ତାର ନଟନଟୀ, ପ୍ରାନ୍ତିକ ଜନସାଧାରଣ ଦର୍ଶକ ମାତ୍ର । ମାତ୍ର ଶ୍ରେଣୀହୀନ ଏଇ ଅ-ଶ୍ରମିକର ଇଣ୍ଡଷ୍ଟ୍ରିଆଲ୍‌ରୁ ପୋଷ୍ଟ୍-ଇଣ୍ଡଷ୍ଟ୍ରିଆଲ୍‌କୁ ଉତ୍ତରଣ ସଂଗ୍ରାମର ଅସଲ ଅଭିନେତା । ଗୋର୍ଜଙ୍କ ଭାଷାରେ, ସୈନିକ । ସେଇ ସେନାବାହିନୀ ପକ୍ଷରୁ ଇଣ୍ଡଷ୍ଟ୍ରିଆଲ୍ ଶ୍ରମିକଶ୍ରେଣୀ ପାଖରୁ ବିଦାୟମାଗିଚନ୍ତି, 'ଆଦିୟ ଓ ପ୍ରଲେତାରିୟ !' ହେଲେସୁଦ୍ଧା ପ୍ରଚଳିତ ମାର୍କ୍ସବାଦର ଅଭିନବ ପାଠୋଦ୍ଧାର ଭିତରଦେଇ ପ୍ରାନ୍ତିକତାକୁ ଆଣି ଶ୍ରେଣୀସଂଗ୍ରାମ କେନ୍ଦ୍ରରେ ଅଧିଷ୍ଠିତକରିବା କୃତିତ୍ୱ ଏକମାତ୍ର ଆନ୍ତନିୟ ନେଗ୍ରୀଙ୍କର । ଏବଂ ସେ କାମର ପ୍ରାସଙ୍ଗିକତା ତଥାକଥିତ ତୃତୀୟବିଶ୍ୱ ପାଇଁ ଗୁରୁତର । 'ତଥାକଥିତ' କହୁଚି, କାହିଁକିନା, ଭିନ୍ନ ଭିନ୍ନ ଜାତୀୟତାବାଦରେ ପର୍ଯ୍ୟୁଦସ୍ତ ତୃତୀୟବିଶ୍ୱ କୋଉ ନିଚୋଳ ପ୍ରତ୍ୟୟ କେବେହେଲେ ନଥିଲା କି ଏବେମଧ ନାହିଁ । ତଥାପି, ପୁଞ୍ଜିବାଦ ସେଠି ଯୋଉ ରୂପଭେକରେ ବିରାଜମାନ, ତା ବାହାରେ ଅଗଣିତ ମଣିଷ ନାନାଦି ଉଞ୍ଛ ବୃତ୍ତି ଅଙ୍ଗୀକରିବାକୁ ବାଧହୁଅନ୍ତି ଖାଲି ପିଣ୍ଡରେ ପ୍ରାଣଧରି ବଞ୍ଚିବା ସକାଶେ; ଯଦିଓ ସେମାନେ କେହି ଯଥାର୍ଥ କୃଷକ କି ସଂଗଠିତ ଶ୍ରମିକ ନୁହେଁ, ଏପରିକି, ପେଟିବୁର୍ଜୋୟା ସୁଦ୍ଧା ନୁହେଁ, ମାର୍କ୍ସକଥିତ 'ରିଜର୍ଭ ଆର୍ମି' ତ ବିଲ୍‌କୁଲ୍ ନୁହେଁ । ସେଥିପାଇଁ, ପ୍ରାନ୍ତିକ ଜନତାର ବାହୁଲ୍ୟ, ବିଶେଷତଃ ଭାରତ ଭଳି ଜନବହୁଳ ଅଞ୍ଚଳରେ ବାରମ୍ବାର ନିର୍ଦ୍ଦେଶକରିଚି *ଦାସ୍ କ୍ୟାପିଟାଲ୍* ର ସୀମାବଦ୍ଧତା, ତତ୍ତ୍ୱଗଠନର ସୀମାନ୍ତବିନ୍ଦୁ । ପ୍ରାନ୍ତିକତାର ତାତ୍ପର୍ଯ୍ୟକୁ ମର୍ଯ୍ୟାଦା ନଦେଲେ, ଅନ୍ତତଃ ତତ୍ତ୍ୱ ସ୍ତରରେ, ହିଗେମନି-କାଉଣ୍ଟର୍ ହିଗେମନି ଦ୍ୱନ୍ଦ୍ୱକୁ ବେଶିଦୂର ନେଇହେବନାହିଁ ।

ବିଶୁଦ୍ଧ ମାର୍କ୍ସବାଦୀ, ମାନେ, ସରକାରୀ ସ୍ୱୀକୃତିପ୍ରାପ୍ତ ମାର୍କ୍ସବାଦୀ ଭାବିଚନ୍ତି, ତତ୍ତ୍ୱନିର୍ମାଣ କ୍ଷେତ୍ରରେ ନିଜ ଅଭିନବତ୍ୱକୁ ପ୍ରଦର୍ଶନ ସକାଶେ ମାର୍କ୍ସଙ୍କ ପ୍ରତି ବିଶ୍ୱସ୍ତ ରହିନାହାଁନ୍ତି ନେଗ୍ରୀ । ସ୍ୱୟଂ ନେଗ୍ରୀ କିନ୍ତୁ କହିଚନ୍ତି, ବାରମ୍ବାର କହିଚନ୍ତି, କେବଳ ଭିନ୍ନରୀତିରେ ପଢ଼ିଚନ୍ତି ମାର୍କ୍ସଙ୍କୁ । ମାର୍କ୍ସ ହୁଏତ ଏକାକଥା କହିଥାନ୍ତେ, ଯେହେତୁ ଯୌବନକାଳରେ ଲେଖିଥବା *ଗ୍ରୁନ୍‌ଡ୍ରିସ୍* ପରିଣତିପାଇଚି ପରିଣତ ବୟସରେ ରଚନା *ଦାସ୍ କ୍ୟାପିଟାଲ୍‌ରେ* । ଏ ବ୍ୟାଖ୍ୟା ନେଗ୍ରୀ ମାନନ୍ତିନାହିଁ । ମାନନ୍ତିନାହିଁ, କାହିଁକିନା, *ଦାସ୍ କ୍ୟାପିଟାଲ୍‌ର* ଗଢ଼ଣ ଭିତରଦେଇ ଏକ ବିଶେଷ ଧରଣର ଝୁଙ୍କି କର୍ମରତ; ଏବଂ ସେଥିପାଇ *ଗ୍ରୁନ୍‌ଡ୍ରିସ୍* ର କିଛି ଗୁରୁତ୍ୱପୂର୍ଣ୍ଣ ମାତ୍ରା ରହିଯାଇଚି ସେଠି ଉପେକ୍ଷିତ । ଖାସ୍ *ଗ୍ରୁନ୍‌ଡ୍ରିସ୍*‌କୁ ମଝିରେ ରଖି ତତ୍ତ୍ୱଗଠନ ଯେହେତୁ ନେଗ୍ରୀଙ୍କ ଅଭିପ୍ରାୟ, ନିଜ ରଚନାକୁ କହିଚନ୍ତି *ମାର୍କ୍ସ ବିୟଣ୍ଡ୍ ମାର୍କ୍ସ* ।

ସନ୍ଦେହ ନାହିଁ, କୋଉହେଲେ 'ପାର୍ଟି', ସେ ରସିଆ ଚୀନ୍ ଫ୍ରାନ୍ସ ଇଟାଲି ଯୋଉଠି ହେଉ, ମାର୍କ୍ସଙ୍କୁ କେମିତି ପଢ଼ିବାକୁ ହେବ, ସେ ବିଧାନ ବତାଇବାକୁ ମୌରସି ପଟା ପାଇନାହିଁ । ପାଇନାହିଁ ବୋଲି, 'ସ୍ୱତଃସ୍ଫୂର୍ତ୍ତ' କୃଷକବିଦ୍ରୋହ ଭିତରୁ ଚେତନାର ଏକ ବିଶେଷ ଗଢ଼ଣ ଆବିଷ୍କାରକରିଚନ୍ତି ଭାରତରେ ରଣଜିତ୍ ଗୁହ, ଏବଂ ସମାଜର ଅ-ଶ୍ରେଣୀ ନିମ୍ନବର୍ଗର ପ୍ରତିବାଦ-ପ୍ରତିରୋଧ ତାଙ୍କ ଇତିହାସଚର୍ଚ୍ଚାର ମୂଳକଥା ବୋଲି, ସେ ଚର୍ଚ୍ଚାକୁ କୁହାଯାଉଚି 'ସବ୍ଲଟନ୍ ଷ୍ଟଡିଜ୍' । ନେଗ୍ରୀ ବହୁଆଗରୁ କହିଚନ୍ତି, 'ସୋସାଲ୍ ୱର୍କର୍' 'ଜିରୋ ୱର୍କ' ଓ ତାଙ୍କ ନିଜ କଳ୍ପିତ ଅନ୍ତର୍ଘାତ, ନିର୍ଦ୍ଦେଶକରେ କେବଳ ଶ୍ରମଜୀବୀ ଆନ୍ଦୋଳନର ନିମ୍ନବର୍ଗୀୟ ଚେତନା; ଏବଂ ସେଥିପାଇଁ, ଅଟୋନମିୟା ବସ୍ତୁତଃ 'ୱର୍କର୍ସ ମୁଭ୍‌ମେଣ୍ଟ୍ ଫ୍ରମ୍ ବିଲୋ' । କହିବା ବାହୁଲ୍ୟ, ବିଶୁଦ୍ଧତାବାଦୀ ସ୍ୱତଃସ୍ଫୂର୍ତ୍ତତାର ବୈପ୍ଳବିକ ମୂଲ୍ୟ ବିଷୟରେ ସନ୍ଦୀହାନ୍, ଏବଂ ସେଥିପାଇଁ, ଅଟୋନମିୟା ପାର୍ଟିଭିତ୍ତିକ କୋଉ ଆନ୍ଦୋଳନ ନୁହେଁ, ସ୍ୱତଃସ୍ଫୂର୍ତ୍ତତା ହିଁ ତାର ବୈଶିଷ୍ଟ୍ୟ । ନେଗ୍ରୀଙ୍କ ପରିଭାଷାରେ, ସ୍ୱତଃସ୍ଫୂର୍ତ୍ତତା ହେଉଚି 'ଷ୍ଟ୍ରକ୍‌ଚର୍‌ଡ୍ ସ୍ପନ୍‌ଟେନିଇଟି' । 'ଷ୍ଟ୍ରକ୍‌ଚର୍‌ଡ୍', କାହିଁକିନା, ତାର ମୂଳ-ମଝି-ଅଗ ଭଳି ତିନିଟି ଅଂଶ ରହିଚି: ଯେପରି, ମୂଳରେ ରହିଚି ଲଢ଼ାଇର ଉଦ୍ଦେଶ୍ୟ, ମଝିରେ ରଣକୌଶଳ, ଅଗରେ ରେଭୋଲିଉସନାରୀ ପ୍ୟାଟ୍ରୋଲ୍ । ପ୍ୟାଟ୍ରୋଲ୍ ମାନେ ପର୍ଯ୍ୟବେକ୍ଷଣ, ଆଉ ଆତ୍ମରକ୍ଷା ସକାଶେ ବିଭିନ୍ନ ଶିବିର ମଧ୍ୟରେ ଆନ୍ତଃସଂପର୍କ ସ୍ଥାପନ । ନେଗ୍ରୀ 'ଶିବିର' ଲେଖିନାହାନ୍ତି; ଲେଖିଚନ୍ତି, 'ଗ୍ୟାରିସନ୍' । ଶ୍ରମିକର ସଚେତନତା ବୁଝାଇବାକୁ କୌଣସି 'ପାର୍ଟି'ର ଶବ୍ଦଭଣ୍ଡାର ଭିତରେ ଏ ଉପାଦାନ ଖୋଜିଲେ ମିଳିବନାହିଁ, କାହିଁକିନା, ନିମ୍ନବର୍ଗ (ସବ୍ଲଟନ୍)କୁ 'ଶ୍ରେଣୀ' ବିବେଚନାକରିବାକୁ ପାର୍ଟି କୁଣ୍ଠିତ । ଭାରତରେ ସବ୍ଲଟନ୍ ଷ୍ଟଡିଜ୍‌ର ସୂତ୍ରପାତ ୧୯୮୨ ବେଳକୁ; ନେଗ୍ରୀଙ୍କ ବହି ବାହାରିଚି ୧୯୭୭ରେ; ମାତ୍ର ପ୍ରବକ୍ତାମାନେ ନେଗ୍ରୀଙ୍କ ନାଁଧରିନାହାଁନ୍ତି ଥରେହେଲେ । ଧରିଥିଲେ, ଠାଇଁ ମିଳିନଥାନ୍ତା ମାର୍କିନ୍ ମୁଲୁକର ବିଶ୍ୱବିଦ୍ୟାଳୟ ଚତ୍ୱରରେ; ମିଳିଚି, କାହିଁକିନା, ନିମ୍ନବର୍ଗ ସଂପର୍କରେ ଜାଣିବାକୁ, ଅର୍ଥାତ୍ ତାର ବିପ୍ଳବଚେତନାର ଆକାର-ପ୍ରକାର ବୁଝିବାକୁ, ସେଠି ଚାହିଦା ବଢ଼ିଚି ଇଦାନୀଂ ।

କ୍ରିଷ୍ଟାନ୍-ଡେମୋକ୍ର୍ୟାଟ୍ ଆଉ କମିଉନିଷ୍ଟଙ୍କ 'ଐତିହାସିକ ବୁଝାମଣା'କୁ ଭଣ୍ଡୁର୍ କରିଦେବାକୁ ଯିଏ ଲାଗିପଡ଼ିଥିଲେ, ସେମାନେ ଏକ ସନ୍ତ୍ରାସବାଦୀ ସଂଗଠନ, ରେଡ୍ ବ୍ରିଗେଡ୍ । ଗୋପନ ସଂଗଠନ, ମାତ୍ର ଦାବିକରିଚନ୍ତି ନିଜକୁ ମାର୍କ୍ସବାଦୀ-ଲେନିନ୍‌ବାଦୀ । ସନ୍ତ୍ରାସ ବାଟଦେଇ ରାଷ୍ଟ୍ରକ୍ଷମତା ଦଖଲ, ସଂଗଠନର ସୁଦୂର ସ୍ୱପ୍ନ । ଗୋଡ଼ତଳେ ଯୋଉ ମଣିଷଗୁଡ଼ାକ, ସେମାନେ ମଧ୍ୟ ବିପ୍ଳବୀ ପରି ନିଃସଙ୍ଗ । ତାଙ୍କ

ପ୍ରତିରୋଧ, କ୍ଷୀଣସ୍ୱର, ପରାଜିତ ପ୍ରେମ, ମଳୀନ ସଂସ୍କାର, ନିର୍ମମ ଯୌନତା— ସବୁଗୁଡ଼ାକ ଗୋଳେଇଘାଣ୍ଟିହୋଇ ସ୍ୱପ୍ନର ଜାଲ, ଜାଲ୍ ସ୍ୱପ୍ନର ଜାଲ । କିନ୍ତୁ ଦାରିଦ୍ର୍ୟ ଯେତେ ଭୟାବହ ହେଉ, ଖାଲି ସେତିକି ଦ୍ୱାରା ତାକୁ ନତଶିର ଭଗ୍ନଜାନୁ ବୋଲି ଚିହ୍ନଟକଲେ ମଣିଷକୁ ମର୍ଯ୍ୟାଦା ଦିଆଯାଏନା । ଚେହେରାଟାକୁ ଅସ୍ପଷ୍ଟକରାଯାଏ କେବଳ । କରୁଣା ଅନୁକମ୍ପା ସୌଖୀନ୍ ମାୟା ମମତା ମନୁଷ୍ୟତ୍ୱକୁ କରିଦିଏ କ୍ୟାରିକେଚର୍ । ଗୋଡ଼ତଳେ ରଖି ରାଷ୍ଟ୍ର ତାଙ୍କୁ ଇତର କରିଦେଇଥିଲେ ସୁଦ୍ଧା, ଜଗତରେ ନିଜ ଜାଗା କୋଉଠି, ଆଉ କାହିଁକି ସିଏ ରହିଚନ୍ତି ସେଠି ଯୁଗଯୁଗାନ୍ତର, ଏକ୍‌ଜିଷ୍ଟେନ୍‌ସିଆଲ୍‌ର ଏଇ ପ୍ରଶ୍ନ ମଧ୍ୟ ବେବେବେଳେ ସେମାନଙ୍କୁ ବିବ୍ରତକରେ; କିନ୍ତୁ ଶାସ୍ତ୍ରପୁରାଣ ଗ୍ରହନକ୍ଷତ୍ର, କେହିହେଲେ ଦେଇପାରନ୍ତିନାହିଁ ଉତ୍ତର; ଯୋଉ ଉତ୍ତର ମିଳେ, ସେଗୁଡ଼ାକୁ ସେ ଆଗରୁ ଜାଣିସାରିଚି; ବାକି ଆଉକିଛି ନାହିଁ । ମନୁଷ୍ୟେତର ପ୍ରାଣୀ କିନ୍ତୁ ଉତ୍ତରଗୁଡ଼ାକ ଜାଣିପାରେନା, ତୁଚ୍ଛାଟାରେ ମରିଯାଏ । ପ୍ରଶ୍ନ ତେଣୁ ଉତ୍ତରଠୁଁ ବଡ଼ । ଅସଲ ସ୍ୱପ୍ନଠୁଁ ବଡ଼ ଜାଲ୍‌ସ୍ୱପ୍ନ । କ୍ରିଷ୍ଟାନ୍-ଡେମୋକ୍ର୍ୟାଟ୍ ନେତା ଆଲ୍‌ଦୋ ମୋରୋ-ଙ୍କୁ ଅପହରଣକରିଚି ରେଡ୍ ବ୍ରିଗେଡ୍, ୧୯୭୭ରେ । ମାସେକାଳ ରୁଦ୍ଧଶ୍ୱାସ-ନାଟକର ଯବନିକା ପକାଇ ମୋରୋଙ୍କୁ ସଂହାର-କରିଚନ୍ତି ସନ୍ତ୍ରାସବାଦୀ; ଏବଂ ସ୍ୱାଭାବିକ ରୀତିରେ, ଜିହାଦ୍ ଘୋଷଣକରିଚି ରାଷ୍ଟ୍ର, ବିବାକ ସଂଗ୍ରାମୀ ସଂଗଠନ ବିପକ୍ଷରେ । ଲାଗିଯାଇଚି ବ୍ୟାପକ ଧରପକଡ଼ । ଅଟୋନମିୟାର ପ୍ରାୟ ସବୁଯାକ ନେତା ଗିରଫ୍‌ହୋଇ ବିନା ବିଚାରରେ ସଢ଼ିଚନ୍ତି ଜେଲ୍‌ଖାନାରେ । ଏ ଦମନନୀତିକୁ କିନ୍ତୁ ପ୍ରଚ୍ଛନ୍ନ ସମର୍ଥନଜଣାଇଚି କମିଉନିଷ୍ଟ ପାର୍ଟି; ଏତେ ତୀବ୍ର ଅଲଟ୍ରାଲେଫ୍ଟ ପ୍ରତି ବାମପନ୍ଥୀଙ୍କ ସମର୍ଥନ ଲିଭିଯାଇଚି । 'ଐତିହାସିକ ବୁଝାମଣା'କୁ ବଞ୍ଚାଇରଖିବା ତଥାପି ସମ୍ଭବହୋଇନାହିଁ । ସେଇ ମଉକାରେ ଭୁଲ ଆଲ୍‌ଥୁସାର୍ ପ୍ୟାରିସ୍ ଯିବାକୁ ଆମନ୍ତ୍ରଣ ଜଣାଇଚନ୍ତି ନେଗ୍ରୀଙ୍କୁ । ଏକୋଲ୍ ନର୍‌ମାଲ୍‌ରେ ଗୋଟାଏ ସିରିଜ୍ ଭାଷଣଦେବାକୁ ପଡ଼ିବ ମାର୍କ୍ସଙ୍କ ଚିନ୍ତାଧାରା ସମ୍ବନ୍ଧରେ । ସେଇ ବକ୍ତୃତାମାଳାରେ 'ଜିରୋ ୱର୍କ୍' ଆଉ 'ୱର୍କିଙ୍ଗ୍‌କ୍ଲାସ୍ ସବ୍‌ଜେକ୍ଟିଭିଟି' ଭଳି ତତ୍ତ୍ୱ ଆହରଣକରିଚି ପରିଶୀଳିତ ରୂପ, ଏବଂ ଅଚିରେ ବହି ହୋଇ ବାହାରିଚି, *ମାର୍କ୍ସ ବିୟଣ୍ଡ ମାର୍କ୍ସ* । ଦୁଇବର୍ଷ ଉତାରୁ ୧୯୭୯ରେ ଦେଶକୁ ଫେରିଆସିବା ମାତ୍ରକେ ଗିରଫ୍‌ହୋଇଚନ୍ତି ନେଗ୍ରି । ଆଲ୍‌ଦୋ ମୋରୋଙ୍କ ବିଧବା ପ୍ରକାଶକରିଚନ୍ତି ଯେ ସ୍ୱାମୀଙ୍କୁ ମୁକୁଳାଇ ଆଣିବାକୁ ରେଡ୍ ବିଗ୍ରେଡ୍‌ର ଲୋକଙ୍କ ସାଙ୍ଗରେ ଯେତେବେଳେ କଥାବାର୍ତ୍ତାକରିଚନ୍ତି ଟେଲିଫୋନ୍‌ରେ, କଥାକହୁଥିବା ସନ୍ତ୍ରାସବାଦୀଙ୍କ ପଛଆଡୁ ଆଉଜଣେ କେହି କଥାକହିଚି, ସେ କଣ୍ଠସ୍ୱର ଆନ୍ତନିୟ ନେଗ୍ରି ଛଡ଼ା ଆଉକାହାରି ହୋଇପାରେନା ।

ମୋରୋଙ୍କ ଅପହରଣ ସାଙ୍ଗକୁ ତେଣୁ ଆଉଗୋଟିଏ ଅଭିଯୋଗ ଯୋଖାହୋଇଥିଲା: ନେଗ୍ରି ରାଷ୍ଟ୍ରଦ୍ରୋହୀ, କାହିଁକିନା, ରେଡ୍ ବ୍ରିଗେଡ୍‌ର ଦୀକ୍ଷାଗୁରୁ ତାଙ୍କଛଡ଼ା ଆଉକେହି ହୋଇପାରେନା । ଭୟାନକ ରକମ ଏଇ ଦୁଇ ଅଭିଯୋଗରୁ ଖାରିଜ୍‌ହୋଇଯାଇଚି ପ୍ରଥମଟି, ପ୍ରମାଣ ଅଭାବରୁ । ପ୍ରମାଣ ମାନେ ଶ୍ରୀମତୀ ମୋରୋ ଯୋଉ କଣ୍ଠସ୍ୱରକୁ ନେଗ୍ରିଙ୍କ ଉପରେ ଲଦିଦେଇଥିଲେ, ତାର ନିର୍ଦ୍ଦିଷ୍ଟତା । ସେଥିପାଇଁ ଆଲ୍‌ଦୋ ମୋରୋଙ୍କ ଅପହରଣ ସାଙ୍ଗରେ ନେଗ୍ରିଙ୍କୁ ଆଉ ଜଡ଼ିତ କରାଯାଇନାହିଁ । ମାତ୍ର ରାଷ୍ଟ୍ର ବିରୋଧରେ ସଶସ୍ତ୍ର ଅଭ୍ୟୁତ୍ଥାନ ଅଭିଯୋଗକୁ ଅପ୍ରମାଣ କରିବାକୁ ନେଗ୍ରି ବ୍ୟର୍ଥହୋଇଚନ୍ତି । ରାଷ୍ଟ୍ର ଅଟକକରି ରଖିଚି ବନ୍ଦିଶାଳାରେ । ଦୀର୍ଘ ଚାରିବର୍ଷ ।

ସେତେବେଳେ ସୁଦ୍ଧା, ନେଗ୍ରୀ ଅକର୍ମଣ୍ୟ ହୋଇଯାଇ ନାହାଁନ୍ତି, କାହିଁକିନା, ୧୯୮୩ରେ ଜେଲ୍‌ଭିତରୁ ନିର୍ବାଚନ ଲଢ଼ିଚନ୍ତି ର୍‌ୟାଡିକାଲ୍ ପାର୍ଟି ତରଫରୁ । କିନ୍ତୁ ତାଙ୍କ ଭଳି ବିଚକ୍ଷଣଲୋକ ପକ୍ଷରେ ବୁଝିବାକୁ କଣ ବାକିରହିଥିଲା ଯେ ସଂସଦୀୟ ଗଣତନ୍ତ୍ର କଦାପି ପ୍ରସବକରିପାରେନା ବାଞ୍ଛିତ ସୁଫଳ ? ଜଣାପଡ଼ିଲା, ଇଟାଲିର ବିଧିବ୍ୟବସ୍ଥା ପାର୍ଲାମେଣ୍ଟ୍‌ସଭ୍ୟଙ୍କୁ ବିନା ବିଚାରରେ ଜେଲ୍‌ରେ ରହିବାକୁ ଦିଏନା; ସୁଯୋଗନେଇଥିଲେ ନେଗ୍ରି । ନିର୍ବାଚନରେ ଲଢ଼ିଥିଲେ, ଏବଂ ବିପୁଳ ଭୋଟ୍‌ରେ ଜିତିଥିଲେ; ସରକାର ବାଧ୍ୟହୋଇଚି ତେଣୁ ମୁକୁଳାଇଦେବାକୁ । ଛାଡ଼ି ତ ଦେଲା, କିନ୍ତୁ ଚେଷ୍ଟାଚାଲିଲା ଆଇନ୍ ସଂଶୋଧନକରି ପୁନର୍ବାର ଜେଲ୍‌କୁ ପଠାଇବାକୁ । ଫେର୍ ପଳାଇଗଲେ ଫ୍ରାନ୍ସ, ଆଉ ଫେରିନାହାଁନ୍ତି ଅଦ୍ୟାବଧି । ଫେରିନାହାଁନ୍ତି କାହିଁକିନା, ତାଙ୍କ ଅନୁପସ୍ଥିତିରେ ଅଦାଲତ ଘୋଷଣାକରିଚି ତିରିଶବର୍ଷ କାରାଦଣ୍ଡ । କିନ୍ତୁ ନିର୍ବାସନରେ ବି ବିରସ ହୋଇନାହାଁନ୍ତି ନେଗ୍ରି; ପ୍ୟାରିସ୍‌ରେ ବସି ଲେଖିଚନ୍ତି, *ପଲିଟିକ୍ସ ଆଣ୍ଡ୍ ସବ୍‌ଭରସନ୍;* ଆମେରିକାରୁ ବାହାରିଚି *ଏମ୍ପାୟାର୍* ଆଉ *ମଲ୍‌ଟିଉଡ୍* । ଲକ୍ଷ୍ୟକରିବା କଥା, ଗ୍ଲୋବାଲାଇଜେସନ୍‌କୁ ଯେମିତି ଚିହ୍ନିତକରିଚନ୍ତି ପୁଞ୍ଜିର ନବ-ସାମ୍ରାଜ୍ୟବାଦ, ତାର ଭିକ୍ଟିମ୍ ବା ଶିକାରକୁ ସେମିତି ସାରା ପୃଥିବୀର ଜନସାଧାରଣ, ମଲ୍‌ଟିଉଡ୍; କୋଉ ନିର୍ଦ୍ଦିଷ୍ଟ ଜାତିରାଷ୍ଟ୍ରର ନାଗରିକ ନୁହେଁ ।

କିନ୍ତୁ ରାଜଦ୍ରୋହ ବିଚାରବେଳେ ରାଷ୍ଟ୍ରକୁ କି ଜବାବ ଦେଇଥିଲେ ନେଗ୍ରୀ ଆତ୍ମପକ୍ଷ ସମର୍ଥନକରିବା ଛଳରେ ? ବିଶେଷତଃ, ଜଜ୍ ଓ ପବ୍ଲିକ୍-ପ୍ରସିକ୍ୟୁଟର୍ ଥିଲେ ଯେହେତୁ କମିଉନିଷ୍ଟ୍ କିମ୍ବା 'ପାର୍ଟି'ର ନିକଟତମ ପରିଜନ । ଅର୍ଥାତ୍, ଅଭିଯୋଗ କରିଚି ଯୋଉ ରାଷ୍ଟ୍ର, ସେ ରାଷ୍ଟ୍ର କେବଳ ପୁଞ୍ଜିର ପ୍ରତିନିଧିତ୍ୱ କରେନା, ସଂଗଠିତ ଶ୍ରମିକଙ୍କ ନେତୃତ୍ୱ ପୁଣି ସେଇ ରାଷ୍ଟ୍ରର କର୍ଣ୍ଣଧାର । ତେଣୁ ସଂଗଠିତ ପୁଞ୍ଜି ଆଉ ସଂଗଠିତ ଶ୍ରମିକ, ଉଭୟଙ୍କର ଅଦ୍ୱୈତ ରୂପ ସେଇ ରାଷ୍ଟ୍ର । ମଲ୍ଟିଟିଉଡ୍ ଯେହେତୁ

ସଂଘର୍ଷପ୍ରବଣ, ଯେକୌଣସି ପ୍ରତିବାଦୀ ଆନ୍ଦୋଳନକୁ, ଏଇ ରାଷ୍ଟ୍ର, ଗୋପନସଂନ୍ତ୍ରାସ ବିବେଚନା କରିବା ସ୍ୱାଭାବିକ । ସ୍ୱାଭାବିକ, କାହିଁକିନା, ଏ ଅଦ୍ୱୈତ ରୂପର ଦୃଢ଼ ବିଶ୍ୱାସ, ଭାଓଲେନ୍ସର କୋଉହେଲେ ଗଣଭିତ୍ତି ଥାଇପାରେନା । ଏଇ ବିନ୍ଦୁରେ ବୁର୍ଜୋୟା ଆଉ ସରକାରୀ କମିଉନିଷ୍ଟ୍ ପରସ୍ପର ଠାରୁ ଅଭେଦ । କେତେ ପ୍ରଗାଢ଼ ସେଇ ଅଭେଦ୍ୟତା, ଅଦାଲତରେ ନେଗ୍ରିଙ୍କ ସଓ୍ୱାଲ୍-ଜବାବରୁ ଅନୁମାନ କରାଯାଉ-

ଜଜ୍- ଅଧ୍ୟାପକ ନେଗ୍ରୀ, ସଶସ୍ତ୍ରସଂଗ୍ରାମୀ ବିଷୟରେ ନିଜେ ଯା ଲେଖିଚନ୍ତି, ସେ ବିଷୟରେ ଆମକୁ କିଛି କହନ୍ତୁ ।

ନେଗ୍ରୀ- *ଥାର୍ଟିଥ୍ରୀ ଲେସନ୍ସ୍ ଅନ୍ ଲେନିନ୍* ବହିରେ ସଶସ୍ତ୍ରସଂଗ୍ରାମ ବିଷୟରେ ମୋ ଦୃଷ୍ଟିଭଙ୍ଗୀ ସ୍ପଷ୍ଟକରି ବୁଝାଇ ଦିଆଯାଇଚି । ଲେନିନ୍‌ଙ୍କ ଚିନ୍ତାଧାରାକୁ ନୂଆକରି ବିବେଚନାକଲେ, ନିଃସନ୍ଦେହହେବା ସମ୍ଭବ ଯେ, ଗଣସଂଗ୍ରାମ ହେଉ କି ଶ୍ରେଣୀସଂଗ୍ରାମ, ସଶସ୍ତ୍ର ପ୍ରତିରୋଧ ତାର ଅବିଚ୍ଛେଦ୍ୟ ଅଂଶ । ଏକଥା ମଧ୍ୟ ଆପଣଙ୍କୁ ସ୍ମରଣ କରାଇଦେବାକୁ ଚାହେଁ ଯେ, ବିନା ବ୍ୟତିକ୍ରମରେ, ପ୍ରତ୍ୟେକ ପବ୍ଲିକ୍ ଷ୍ଟେଟ୍‌ମେଣ୍ଟ୍‌ରେ ଦ୍ୟର୍ଥହୀନ ଭାଷାରେ କହିଚି, ସଶସ୍ତ୍ରସଂଗ୍ରାମ୍ ନାଁରେ ଗୋପନ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ମୁଁ ସମର୍ଥନକରେନା ।

ଜଜ୍- ତାହାହେଲେ, ଆପଣ କହୁଚନ୍ତି 'ଓର୍କର୍ସ ପାଓ୍ୱର୍'ର ଅଧିକାଂଶ ଲଢୁଆ ଲୋକ ଗୋପନ ସନ୍ତ୍ରାସକୁ ବିରୋଧକରନ୍ତି ! ମାତ୍ର ଯୋଡ଼ାଏ ଡକ୍ୟୁମେଣ୍ଟ୍ ଦେଖାଉଚି । ଗୋଟାକରେ ଆପଣ ଅଭିନନ୍ଦନ ଜଣାଇଚନ୍ତି ସେଇ କମ୍ରେଡ୍‌ମାନଙ୍କୁ ଯାହାଙ୍କୁ ଗିରଫ କରାଯାଇଚି ମଲୋଟୋଭ୍ କକ୍‌ଟେଲ୍ ଧରି ରାସ୍ତାରେ ବୁଲୁଥିଲେ ଯେତେବେଳେ । ଅନ୍ୟ ଡକ୍ୟୁମେଣ୍ଟ୍‌ଟି ଅବଶ୍ୟ ଦୁଇଜଣ କର୍ପରେଟ୍ ମ୍ୟାନେଜର୍‌ଙ୍କ ସଂପର୍କରେ । ଇଦାଲଗୋ ମାସିଆରିଣୀ ଆଉ ରବର୍ଟ ନେଗ୍ରେତେ ସମ୍ପର୍କରେ । ଏମାନେ ଯଥାକ୍ରମେ ମିଲାନ୍‌ର ସିଟ୍-ସିମେନ୍ ଆଉ ପ୍ୟାରିସ୍-ର ରେନୋ କମ୍ପାନୀର ମ୍ୟାନେଜର୍ । ଉଭୟଙ୍କୁ ଅପହରଣ କରିଚନ୍ତି ସନ୍ତ୍ରାସବାଦୀ । ଆପଣଙ୍କ କାଗଜରେ ଅବଶ୍ୟ ବ୍ୟାଖ୍ୟାକରାଯାଇଚି କଣପାଇଁ ଏ ଦୁହିଁଙ୍କୁ ବିପ୍ଳବୀ ଅଦାଲତରେ ବିଚାର କରାଯିବ; କିନ୍ତୁ ରେଡ୍ ବ୍ରିଗେଡ୍ ପ୍ରକାଶ୍ୟରେ ଦାବିକରିଚି, ମାସିଆରିଣିଙ୍କୁ ଅପହରଣ କରିଚନ୍ତି ସେମାନେ ନିଜେ । ମନେପକାଇ ଦେବାକୁ ଆପଣଙ୍କୁ କଥାଟା କହୁଚି ।

ନେଗ୍ରି- ଏ ଯୋଉ ଲିଫ୍‌ଲେଟ୍ ଆପଣ ଦେଖାଉଚନ୍ତି, ୬୮ ସାଲର ଯେକୌଣସି

ସଂଗଠନର ଫାଇଲ୍ ଖୋଲିଲେ, ଅନେକ ମିଳିବ । ତାକୁ ହିଁ ଗଣ୍ଡିକରି 'ୱର୍କର୍ସ ପାୱର୍'ର ରାଜନୀତି ସମ୍ବନ୍ଧରେ ସ୍ଥିର କୋଉ ସିଦ୍ଧାନ୍ତରେ ପହଞ୍ଚିଯିବା ଠିକ୍‌ନୁହେଁ; ବରଂ ତାକୁ କୁହାଯାଇପାରେ ତତ୍କାଳୀନ ମାନସିକତାର ଏକପ୍ରକାର ଅଭିବ୍ୟକ୍ତି, ଯୋଉ ମାନସିକତାରେ ଆକ୍ରାନ୍ତହେବା କାରଣରୁ, ବାଛବିଚାର ନକରି, ଯେକୌଣସି ଲଢୁଆ ଆନ୍ଦୋଳନକୁ ସେତେବେଳେ ସ୍ୱାଗତଜଣାଇଛୁଁ ।

ପବ୍ଲିକ୍ ପ୍ରସିକ୍ୟୁଟର୍- ଆପଣ ନିଜେ, କେବେ କାହାକୁ, ଏଭଳି ଲିଫ୍‌ଲେଟ୍ ଦେଇଚନ୍ତି କି ?

ନେଗ୍ରି- ଦଶବର୍ଷ ହେଲାଣି ବୋଧହୁଏ, ୧୯୭୦ ପାଖରୁ ପ୍ରଚାରପତ୍ର ବାଣ୍ଟିବା ମୁଁ ଛାଡ଼ିଦେଇଚି ।

ଜଜ୍- ଠିକ୍ ଅଛି । ଏଥର ଏଇ ଟାଇପ୍‌ହୋଇଥିବା କିଛି କାଗଜ ଆପଣ ଦେଖନ୍ତୁ; ମାର୍ଜିନ୍‌ରେ ଆପଣ ନିଜହାତରେ କିଛି ମନ୍ତବ୍ୟ ଲେଖିଚନ୍ତି; ବିଷୟବସ୍ତୁ ସମ୍ବନ୍ଧରେ ଆପଣଙ୍କ ମତାମତ ଏକ୍ଷଣି କିରକମ ?

ନେଗ୍ରୀ- ମତାମତ ନୁହେଁ, ସାଂପ୍ରତିକ ଅର୍ଥନୀତିକ ଓ ରାଜନୀତିକ ପରିସ୍ଥିତର ବିଶ୍ଳେଷଣ । ଲେଖିଚି ଅବଶ୍ୟ ମୁଁ ନିଜେ, କିନ୍ତୁ ଯା ଲେଖିଚି, ସାଂଗଠନିକ ସ୍ତରରେ ମୋର ବ୍ୟକ୍ତିଗତ ଅନୁମୋଦନ ରହିଚି ବୋଲି କହିବା ଠିକ୍ ହେବନାହିଁ । ସଂକ୍ଷେପରେ କହିହେବ, ଯୋଉ ଶ୍ରେଣୀସଂପର୍କ ପାରସ୍ପରିକ ଚୂଡ଼ାନ୍ତ ବିରୋଧଦ୍ୱାରା ଏକ୍ଷଣି ଚିହ୍ନିତ, ତାହାରି କଥା କୁହାଯାଇଚି; ଏବଂ ସେଇ ସୂତ୍ରରେ, 'ଭିଏତ୍‌ନାମୀ' ରଣକୌଶଳର ଅବତାରଣା, ଆନ୍ଦୋଳନ ପାଇଁ ରଣକୌଶଳ ଯେହେତୁ ପ୍ରାସଙ୍ଗିକ । ପ୍ରକୃତ ପ୍ରସ୍ତାବରେ, ସାଂପ୍ରତିକ ପରିସ୍ଥିତିରେ ବିପ୍ଳବୀ-ଗଣଆନ୍ଦୋଳନ କିରକମ ଆକାରପ୍ରକାର ଧାରଣକରିପାରେ, ତାର ମୂଳ ଖୁଣ୍ଟିଗୁଡ଼ାକୁ ଚିହ୍ନଟକରିବାକୁ ଚାହିଁଥିଲୁଁ; ଏବଂ ସେଇ ପ୍ରେକ୍ଷିତରେ ଅନ୍ତତଃ ଚାରିଟି କଥା ମୋ ମନକୁ ଆସିଚି: (୧) ଅଧିକ ମଜୁରୀ, ଅଳ୍ପ କାମ; (୨) ସରକାରୀ ବ୍ୟୟବ୍ୟବସ୍ଥା; (୩) ପାରମାଣବିକ ଅସ୍ତ୍ର; ଆଉ (୪) ରାଷ୍ଟ୍ରଦ୍ୱାରା ପରିଚାଳିତ ସନ୍ତ୍ରାସ । ଏଥିରୁ ସ୍ପଷ୍ଟ ବୁଝାପଡ଼ିବ ଯେ ସଶସ୍ତ୍ର ସଂଗ୍ରାମର ମୂଳ ପ୍ରତ୍ୟୟ ଯୋଉ ଆର୍ଥ-ସାମାଜିକ ବସ୍ତୁଭିତ୍ତିରୁ ଉଠିଆସୁଚି, ସେଇ ବସ୍ତୁଭିତ୍ତି ତିଆରିକରିଚି ଶୋଷକ-ଶୋଷିତ ସଂପର୍କ । ଉତ୍ପାଦନ-ସଂପର୍କ ତେଣୁ ଉତ୍ପାଦନ ସହିତ ବିଶେଷଭାବେ ଅଙ୍ଗାଙ୍ଗୀ ଶୋଷକ-ଶୋଷିତ ସଂପର୍କ । ପ୍ରଚଳିତ ସାମାଜିକ ସଂପର୍କ । ପ୍ରତ୍ୟକ୍ଷ

ପୁଞ୍ଜିବାଦୀ ଉତ୍ପାଦନ-ପ୍ରକ୍ରିୟା ବାହାରେ ଯିଏ ରହିଯାଇଚନ୍ତି, ରହିଯାଇଚନ୍ତି ପ୍ରାନ୍ତିକ ଅବସ୍ଥାନରେ; ଯେପରି, ବେକାର ଅଧାବେକାର, ଛାତ୍ର ଆଉ ବେଆଇନୀ ଅର୍ଥନୀତି ସହିତ ଜଡ଼ିତ ହଜାର ହଜାର ମଣିଷ । ଉତ୍ପାଦନ ଓ ପୁନରୁତ୍ପାଦନର ବିସ୍ତୃତତର ଏଇ ସାମାଜିକ ପଟ୍ଟଭୂମି ଭିନ୍ନ ଭିନ୍ନ ସାମାଜିକ-ଶ୍ରେଣୀ ମଧ୍ୟରେ ଯୋଉ ସଂପର୍କକୁ ନିର୍ଦ୍ଦିଷ୍ଟ କରିଚି, ତା ଚୂଡ଼ାନ୍ତ ବିରୋଧର ସଂପର୍କ । ସେଇ ଅର୍ଥରେ, ସଂଗ୍ରାମ କହିଲେ ବୁଝାଇବ ଶ୍ରେଣୀସଂଗ୍ରାମ । ମାତ୍ର ଗଣସଂଗ୍ରାମ ଭିତରେ ରହିଚି, ସ୍ୱାଭାବିକ ଭାବରେ, ଗୃହଯୁଦ୍ଧର ମାତ୍ରା । ତା ହେଲେ, ଆପଣ ନିଶ୍ଚୟ ବୁଝିପାରୁଚନ୍ତି, ଆମ ରାଜନୀତି ଆଉ ରେଡ୍ ବିଗ୍ରେଡ୍‌ର ସନ୍ତ୍ରାସ ଭିତରେ ମୌଳିକ ପାର୍ଥକ୍ୟ ଠିକ୍ କୋଉ ଜାଗାରେ ?

ଜଜ୍- ମୌଳିକ କୋଉହେଲେ ପାର୍ଥକ୍ୟ, ମୁଁ ଅନ୍ତତଃ, ଦେଖିପାରୁନାହିଁ ।

ନେଗ୍ରୀ- ଶ୍ରେଣୀ କ୍ଷମତାର ପୁନର୍ବିନ୍ୟାସ ଆଉ ରାଷ୍ଟ୍ରଶକ୍ତିର ବିପର୍ଯ୍ୟୟ, ଦୁଇଟା ଅଲଗା ଜିନିଷ । ସେଇଠି ରହିଚି ପାର୍ଥକ୍ୟ । ରାଷ୍ଟ୍ରଶକ୍ତିକୁ ବିପର୍ଯ୍ୟସ୍ତକରିବା ମଧ୍ୟ ଜରୁରୀ; ସେକାମକୁ କରିବାକୁ ହେବ କିନ୍ତୁ ସାମାଜିକ ପୁନରୁତ୍ପାଦନ ପ୍ରକ୍ରିୟାରୁ ଶୋଷଣସଂପର୍କକୁ ବିଧ୍ୱସ୍ତକରି ।ବିପ୍ଳବ ପ୍ରକ୍ରିୟାଟାକୁ ଏଇ ଭାବରେ ବୁଝେଁ, ଯେ ଏକାବେଳକେ ପୁଞ୍ଜିର ସର୍ବବ୍ୟାପୀ ପ୍ରଭୁତ୍ୱକୁ ଭାଙ୍ଗିବ ଆଉ ସମ୍ଭବକରିବ ପ୍ରଲେତାରିଏତ୍‌ର ଆତ୍ମନିୟନ୍ତ୍ରଣ । ଶୋଷଣକୁ ବିଧ୍ୱସ୍ତକରିବା ବାଟଦେଇ ପରିଶେଷରେ ରାଷ୍ଟ୍ରଶକ୍ତିର ବିପର୍ଯ୍ୟୟ । ଶ୍ରେଣୀକ୍ଷମତାରେ ବଳୀୟାନ ନହୋଇ ରାଷ୍ଟ୍ରକ୍ଷମତା ସହିତ ଲଢ଼ିବା ସମ୍ଭବପର ନୁହେଁ । ବିପ୍ଳବପ୍ରକ୍ରିୟାକୁ ମୁଁ ସେଇ ଭାବରେ ବୁଝେଁ । ଯୋଉ ବିପ୍ଳବ ଏକାବେଳକେ ଭାଙ୍ଗିପାରିବ ପୁଞ୍ଜିର ସର୍ବମୟ କର୍ତ୍ତୃତ୍ୱ ଆଉ ପ୍ରଲେତାରିଏତ୍‌କୁ ଦେଇପାରିବ ଆତ୍ମନିୟନ୍ତ୍ରଣ ସ୍ୱାଧିକାର । ସମାଜରୁ ଶୋଷଣସମ୍ପର୍କକୁ ଧ୍ୱଂସକରିବା ଶେଷପର୍ଯ୍ୟାୟରେ ଆସିବ ରାଷ୍ଟ୍ରବ୍ୟବସ୍ଥା ବିରୋଧରେ ଅଭ୍ୟୁତ୍ଥାନ । କାହିଁକିନା, ଶୋଷଣ ସଂପର୍କର ବିଲୋପ ଏପରି ଏକ ପ୍ରକ୍ରିୟା ଯା ଆର୍ଥ-ସାମାଜିକ ଶୃଙ୍ଖଳାକୁ ଭାଙ୍ଗିପକାଏ, ଏବଂ ସେଇ ସୂତ୍ରରେ, ଶ୍ରେଣୀଦ୍ୱନ୍ଦ୍ୱ କ୍ଷେତ୍ରରେ ଘଟାଇଦିଏ ବିସ୍ଫୋରଣ, ଅନ୍ତତଃ ଗୋଟାଏ ସ୍ତରରେ । ଆଉ ସେତେବେଳେ, ରାଷ୍ଟ୍ର ଆଉ ଶୋଷକଶ୍ରେଣୀ ପାଇଁ ଏକମାତ୍ର ସନ୍ତ୍ରାସକୁ ଭରସାକରିବା ଛଡ଼ା ବାଟ ରହିବନାହିଁ । ବାଟ ରହିବନାହିଁ, କାହିଁକିନା, ଉଦ୍‌ବୃତ୍ତ ଉତ୍ପାଦନ କରିନପାରିଲେ, ରାଜନୀତିରେ ବୁର୍ଜୋୟା ଶ୍ରେଣୀର ବିଲୋପଘଟିବା ଅବଧାରିତ ।

ପବ୍ଲିକ୍‌ପ୍ରସିକ୍ୟୁଟର୍: ଏତେକଥା ଶୁଣିବା ପରେ କିନ୍ତୁ ବୁଝାପଡ଼ିଲା ନାହିଁ ରେଡ୍‌ବିଗ୍ରେଡ୍ ସହିତ ଆପଣଙ୍କ ପ୍ରଭେଦ ।

ନେଗ୍ରୀ– ପ୍ରଭେଦ ମୂଳତଃ ମତାଦର୍ଶରେ; ଧରନ୍ତୁ, ସଂଗଠନର ଧାରଣା । ରେଡ୍‌ବିଗ୍ରେଡ୍ ପାର୍ଟିରେ ବିଶ୍ୱାସକରେ । ପାର୍ଟି ମାନେ ଚୂଡ଼ାନ୍ତ କେନ୍ଦ୍ରୀଭୂତ ସଂଗଠନ । ଆଉ, ରାଷ୍ଟ୍ର ବିରୋଧରେ ଲଢ଼ାଇକରିବାକୁ ପାର୍ଟିକୁ ମନେକରେ ଅଦ୍ୱିତୀୟ ହତିଆର୍ । ଗଣଆନ୍ଦୋଳନର ଗୁରୁତ୍ୱ ମଧ୍ୟ ସ୍ୱୀକାରକରେ; ମାତ୍ର ପାର୍ଟିର ସର୍ବମୟ ନେତୃତ୍ୱ ବାହାରେ ଗଣଆନ୍ଦୋଳନର ବୈପ୍ଳବିକ ମୂଲ୍ୟକୁ ଗୁରୁତ୍ୱଦିଏନା । ଏଟା ଅବଶ୍ୟ ପରିଚିତ ତୃତୀୟ ଇଣ୍ଟରନ୍ୟାସନାଲ୍‌ର ଲାଇନ୍ । ଅଟୋନମିୟା କିନ୍ତୁ ଯୋଉ କର୍ମଧାରା ଅନୁସରଣକରେ ତା ଇଟାଲିରେ ମାର୍କ୍ସବାଦର ବୈପ୍ଳବିକ ଐତହ୍ୟ; ଏବଂ ଅନୁସରଣକରେ ବୋଲି, ମନେକରେ ଏକମାତ୍ର ଗଣଆନ୍ଦୋଳନ ହିଁ ଫାଟ ଧରାଇଦେଇପାରେ ପୁଞ୍ଜିର ସାମାଜିକ ଉତ୍ପାଦନ-ପୁନରୁତ୍ପାଦନ ନିରନ୍ଧ୍ର ପ୍ରକ୍ରିୟା ଦେହରେ । ଏବଂ ସେଇ ଫାଟ ବିସ୍ତାରିତ ଓ ବିସ୍ଫୋରିତ ହୁଏ, ଆନ୍ଦୋଳନ ଶକ୍ତି ସଂଚୟକରିବା ସଙ୍ଗେସଙ୍ଗେ ଏବଂ ଶେଷକୁ ଘଟିଯାଇପାରେ ଅଭ୍ୟୁତ୍ଥାନ, ଅର୍ଥାତ୍ ବୈପ୍ଳବିକ ପରିବର୍ତ୍ତନ । ରାଷ୍ଟ୍ରର ଭୂମିକା, ଏ ଚିନ୍ତାଧାରାରେ, ଅପେକ୍ଷାକୃତ ଗୌଣ । ଉଦ୍ଦେଶ୍ୟ ନିଶ୍ଚୟ ରାଷ୍ଟ୍ରର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍‌କୁ ଆକ୍ରମଣ; ମାତ୍ର ସେଭଳି ପ୍ରତିଘାତ ଫଳପ୍ରଦହୁଏ ସମାଜ ମଧ୍ୟସ୍ଥ ଶୋଷଣସଂପର୍କ ବିରୋଧରେ, କ୍ରମାଗତ ଲଢ଼ାଇ ଭିତରଦେଇ । ଦ୍ୱିତୀୟ ପ୍ରଭେଦ, କ୍ଷମତାଦଖଲ ପ୍ରତି ଦୃଷ୍ଟିଭଙ୍ଗୀ । ରେଡ୍‌ବିଗ୍ରେଡ୍ ମନେକରେ ଗଣ-ଅଭ୍ୟୁତ୍ଥାନର ଏକମାତ୍ର ଲକ୍ଷ୍ୟ ରାଷ୍ଟ୍ରକ୍ଷମତା ଦଖଲ । ଅଥଚ କେବଳମାତ୍ର ରାଷ୍ଟ୍ରକ୍ଷମତା ଦଖଲକୁ ଅଟୋନମିଆ ମନେକରେ ଅର୍ଥହୀନ ପ୍ରୟାସ । ଦୁଇଟି କାରଣରୁ, (୧) ରାଷ୍ଟ୍ର ଯୋଉ ମୂଳଦୁଆ ଉପରେ ଛିଡ଼ାହୋଇଚି, ତା ସାମାଜିକ ଉତ୍ପାଦନର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍; ସେଇ ନିର୍ଦ୍ଦିଷ୍ଟ ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ ବାହାରେ ରାଷ୍ଟ୍ରର ଅସ୍ତିତ୍ୱ ଚିନ୍ତାକରି ହେବନାହିଁ; (୨) ଉନ୍ନତତର ଉତ୍ପାଦନ-ସଂପର୍କ ବିଷୟରେ ସ୍ୱଷ୍ଟଚିନ୍ତା; ଆଉ ସେ ଚିନ୍ତାର ଅନ୍ତତଃ ଆଂଶିକ ବାସ୍ତବାୟନ ପରିଦୃଷ୍ଟ ନହେବା ପର୍ଯ୍ୟନ୍ତ ବିପ୍ଳବର ସ୍ୱପ୍ନ ଦିଶିବ ଅବାସ୍ତବ । କାହିଁକିନା, ରାଷ୍ଟ୍ରସଂଲଗ୍ନ ପ୍ରତିଷ୍ଠାନଗୁଡ଼ାକୁ ଘାଏଲ୍‌କରି, ଖାଲି ଘାଏଲ୍‌କରି, ରାଷ୍ଟ୍ରଯନ୍ତ୍ରର ଆମୂଳ ଉତ୍ପାଟନ ସମ୍ଭବପର ନୁହେଁ । ଏଇକଥା ବିଶ୍ୱାସକରେ ଅଟୋନମିଆ । ନାନାଦି ସ୍ରୋତରେ ବିକ୍ଷିପ୍ତ ଆମ ମୁଭ୍‌ମେଣ୍ଟ୍‌ର ଆଭିମୁଖ୍ୟ । କିନ୍ତୁ ଅଭିନ୍ନ । ସେ ଆଭିମୁଖ୍ୟ, ପ୍ରଲେତାରିଏତ୍‌ର

ଜୀବନଚର୍ଯ୍ୟାରେ ନିହିତ ଯୋଉ ବିପ୍ଳବୀମାତ୍ରା, ତାକୁ ଉଦ୍‌ଭିନ୍ନକରି ଆଗେଇ ନେଇଯିବା । ଅନ୍ୟ ପକ୍ଷରେ, ରେଡ୍ ବିଗ୍ରେଡ୍‌ର ଧାରଣା, ଆଗେ ରାଷ୍ଟ୍ରକ୍ଷମତାକୁ ଦଖଲକରି ନପାରିଲେ, ପ୍ରଲେତାରିଏତ୍‌ର ପ୍ରମୁକ୍ତି ଦୂର୍‌ଅସ୍ତ୍ର ।

ଜଜ୍- ଟ୍ରେଡ୍ ଇଉନିଅନ୍ ସଂପର୍କିତ ଆଉ କେତୋଟି ଦସ୍ତାବେଜ୍ ଦେଖାଉଚି । 'ଆକ୍ରମଣ', 'ଦଖଲ' ଭଳି କଥାର ଘନଘନ ଉଲ୍ଲେଖ ରହିଚି । ମୁଁ ଯେତେଦୂର ଜାଣେଁ, ରେଡ୍ ବିଗ୍ରେଡ୍ ମଧ୍ୟ ଏଇଭଳି ଶବ୍ଦ ବ୍ୟବହାରକରିବାକୁ ଅଭ୍ୟସ୍ତ ।

ନେଗ୍ରି- ଆମ ସଂଗଠନର ପତ୍ରିକାରେ ଏଗୁଡ଼ାକ ଛପାହୋଇଥିଲା । ଛପାହୋଇଥିଲା, ପ୍ରଥାଗତ ଟ୍ରେଡ୍‌ଇଉନିଅନ୍‌ର ନେତୃତ୍ୱକୁ ଆକ୍ରମଣ କରିବା ସକାଶେ । ପ୍ରଥାଗତ ଧାରଣାଗୁଡ଼ାକୁ ଆଘାତକରି ଭାଙ୍ଗିଦେବା ଥିଲା ଅଟୋନମିଆର ରାଜନୀତିକ ଲାଇନ୍ । ସମାଜରେ ବିବିଧ ରକମ ରାଜନୀତିକ ଶକ୍ତିର ସହାବସ୍ଥାନ ପ୍ରେକ୍ଷିତରେ, ମୋର ଧାରଣା, ଏଇ ଲାଇନ୍ ଥିଲା ଯଥାର୍ଥ । ଚିରାଚରିତ ବିଧାନ ମାନି ତିଆରିହେଇଥିବା ଟ୍ରେଡ୍‌ଇଉନିୟନ୍‌ର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍‌କୁ ଭାଙ୍ଗିଦେବା କଥା କହିଛୁଁ ଯେତେବେଳେ, ବସ୍ତୁତଃ ଯା କରିଛୁଁ, ତା ଏଇ ଷ୍ଟ୍ରକ୍‌ଚର୍‌ଗୁଡ଼ାକ ବିରୋଧରେ ଜନଗଣଙ୍କ କ୍ଷୋଭର ପ୍ରତିନିଧିତ୍ୱ । ଅର୍ଥାତ୍, ଉତ୍ପାଦନ କ୍ଷେତ୍ରରେ ପ୍ରଥାଗତ ଇଉନିୟନ୍‌ର କ୍ଷମତାକୁ ଖର୍ବକରି ଶ୍ରମଜୀବୀ ଜନସାଧାରଣଙ୍କ ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ । ତଫାତ୍ ତେଣୁ ଶ୍ରମଜୀବୀର ଅଧିକାରକୁ ସର୍ବାଧିକ ଗୁରୁତ୍ୱ ।

ଜଜ୍- ହେଲେସୁଦ୍ଧା, ରେଡ୍ ବିଗ୍ରେଡ୍‌ର ଉଦ୍ଦେଶ୍ୟ ଆଉ ଆପଣଙ୍କ ଉଦ୍ଦେଶ୍ୟ ଭିତରେ ବିଶେଷ କି ତଫାତ୍, ଏବେ ବି ବୁଝିପାରିଲିନାହିଁ ।

ନେଗ୍ରୀ- ଆମ ଇଉନିୟନ୍-ବିରୁଦ୍ଧ ରାଜନୀତି ସହିତ ରେଡ୍ ବିଗ୍ରେଡ୍‌ର ସନ୍ତ୍ରାସବାଦର ସିଧାସଳଖ କୋଉ ଯୋଗାଯୋଗ ରହିଚି କହିଲେ, ଖୁବ୍ ବେଠିକ୍ କଥା କୁହାଯିବ ।

ଜଜ୍- ଆଚ୍ଛା, ଆପଣ ଲେଖିଥିବା ଅନ୍ୟ ଗୋଟିଏ କାଗଜ ଦେଖାଉଚି । ଆପଣଙ୍କ ଲେଖାର ଶୀର୍ଷକ; ଦି ପ୍ରଲେଟାରିଆନ୍ ପ୍ୟାଟ୍ରୋଲ୍, ଦି ବିଗ୍ରେଡ୍, ଦି ରେଡ୍‌ଗାର୍ଡ ଇନ୍ ଟ୍ରେନିଙ୍ଗ୍ ଶୁସ୍ । ସେଥିରେ କହିଚନ୍ତି, ବିସ୍ତୀର୍ଣ୍ଣ ଅଂଚଳବ୍ୟାପୀ ପ୍ରଲେତାରିଆନ୍ ପ୍ୟାଟ୍ରଲ୍ କାମକରୁଚି, ଏବଂ, କାମକରୁଚି ମାନେ ସୁଯୋଗପାଇବା ମାତ୍ରକେ ଶ୍ରେଣୀଶତ୍ରୁକୁ ନିପାତକରିବ ।

ନେଗ୍ରୀ- ଏଇ ଦୁର୍ଦ୍ଦିନରେ, ମୋର ମନେହୁଏ, ପ୍ରଲେତାରିଏତ୍ ସକାଶେ

ପ୍ରଲେତାରିଆନ୍ ପ୍ୟାଟ୍ରଲିଙ୍ଗ୍ ଅପରିହାର୍ଯ୍ୟ ସାଂଗଠନିକ ହତିଆର । ଏଇ ସମୟରେ ପ୍ରଲେତାରିଏତ୍, ମୁଁ କହୁଚି ସୋସାଲ୍ ୱର୍କର୍, କଳକାରଖାନା ବାହାରେ ଯୋଉ ବିସ୍ତୀର୍ଣ୍ଣ ଅଂଚଳ, ସବୁଠି ବ୍ୟାପିରହିଚନ୍ତି । କଳାଟଙ୍କାର ଅର୍ଥନୀତିରେ ଖାଲି ନୁହେଁ; ହରେକ ରକମ ଇନ୍‌ଫର୍ମାଲ୍ ସର୍ଭିସ୍ ସେକ୍ଟର୍‌କୁ ଚଳାଉଚନ୍ତି ସେଇମାନେ । ଆପାତଃ-ବିଚ୍ଛିନ୍ନ ଏଇ ଅଂଶଗୁଡ଼ାକୁ, ଏଇ ପରିସ୍ଥିତିରେ ଏକତ୍ୱସୂତ୍ରରେ ଆବଦ୍ଧକରି ସମଗ୍ରତା ସ୍ଥାପନକରିପାରେ ଏକମାତ୍ର ସେଇ ପ୍ୟାଟ୍ରଲ୍ । ଏବଂ ଶ୍ରେଣୀସଂଗ୍ରାମକୁ, ଏଇ ଭାବରେ କେବଳ, ପରିଣତ ଗୋଟାଏ ଅବସ୍ଥାକୁ ଅଣାଯାଇପାରେ । କଳକାରଖାନା ଚଉହଦୀ ଭିତରେ ସବୁଯାକ ଶ୍ରମିକଙ୍କୁ ପାଇଲେ, ପ୍ୟାଟ୍ରଲ୍ ହୁଏତ ଦରକାର ହୁଅନ୍ତାନାହିଁ; ଦରକାର ହେଉଚି, ଉତ୍ପାଦନପ୍ରକ୍ରିୟାର ବିଭିନ୍ନ ସ୍ତରରେ ବିକ୍ଷିପ୍ତ ଏଇ ଅଫ୍-ଦି-ବୁକ୍ ପ୍ରଲେତାରିଏତ୍‌ର ପ୍ରତିନିଧିତ୍ୱ ଯେହେତୁ ଦରକାର ଉଭୟ ରାଜନୀତିକ ଓ ଅର୍ଥନୀତିକ ଅର୍ଥରେ ।

ଜଜ୍- ଆମର କିନ୍ତୁ ଧାରଣା, ଶ୍ରେଣୀସଂଗ୍ରାମକୁ ପରିଣତ ରୂପଦେବା କାମଟା ବେଆଇନୀ । ଏବଂ ହିଂସାଶ୍ରୟୀ କାର୍ଯ୍ୟକଳାପ ଦ୍ୱାରା ସେକାମ ସଂପାଦନକରିବାକୁ ତତ୍ପରଥିଲା ଏଇ ପ୍ୟାଟ୍ରଲ୍ ।

ନେଗ୍ରୀ- ବେଶିଭାଗ କ୍ଷେତ୍ରରେ କିନ୍ତୁ ବେଆଇନୀ କିମ୍ବା ହିଂସାଶ୍ରୟୀ କାର୍ଯ୍ୟପଦ୍ଧତି ଅନୁସରଣ କରିନାହିଁ ପ୍ୟାଟ୍ରଲ୍; ପ୍ରତିପକ୍ଷ ଉପରେ ଚାପ ସୃଷ୍ଟିକରିଚି ମାତ୍ର । ଦଙ୍ଗାହଙ୍ଗାମା କ୍ୱଚିତ୍-କଦାଚିତ୍ ହୋଇଚି ସତ; ମାତ୍ର ଅସଂଗଠିତ ଶ୍ରମିକକୁ ଇଉନିୟନ୍‌ର ସ୍ୱୀକୃତିପାଇବାକୁ ଦଙ୍ଗାହଙ୍ଗାମା କରିବାକୁ ପଡ଼ିଚି ଚିରକାଳ । ଶ୍ରେଣୀସଂଗ୍ରାମର ଇତିହାସ ଅନ୍ତତଃ ଭିନ୍ନକଥା କହେନା । ପୁଞ୍ଜିର ସନ୍ତ୍ରାସକୁ ମୁକାବିଲାକରିବାକୁ ଏଇ ପ୍ରତିକିୟା ।

ଜଜ୍- ଆପଣଙ୍କ ଫାଇଲ୍‌ରୁ ଆଉ କେତେଟା କାଗଜ ମିଳିଚି, ଦେଖନ୍ତୁ । ଆନ୍ଦୋଳନର ଯୁଦ୍ଧନୀତିର ବୟାନ । ଶତ୍ରୁକୁ ଆଘାତ, ଆତ୍ମରକ୍ଷା, ଲଢ଼ାଇଚଳାଇବାକୁ ପ୍ରଶିକ୍ଷଣ, ଦଖଲ—ଏଇସବୁ ପ୍ରସଙ୍ଗର ଆଲୋଚନା । ଶେଷକୁ ଆହ୍ୱାନକରାଯାଇଚି ଅସ୍ତ୍ରଶସ୍ତ୍ର ଆଉ ଟଙ୍କାପଇସା ଯୋଗାଡ଼କରିବାକୁ । କଣ କହିବେ ଆପଣ ?

ନେଗ୍ରୀ- ଯୋଉ ଫାଇଲ୍‌ରୁ ମିଳୁ, କାଗଜଗୁଡ଼ାକ ମୋର ନୁହେଁ କି ଆମ ଆନ୍ଦୋଳନ ସାଙ୍ଗରେ ତାର କିଛିହେଲେ ସଂପର୍କ ନାହିଁ । ମାର୍ଜିନ୍‌ରେ ଯୋଉ ମନ୍ତବ୍ୟ ଲେଖାଯାଇଚି, ତା ବି ମୋ ହାତଲେଖା ନୁହେଁ । ଆମ ଆନ୍ଦୋଳନ

ମିଲାନ୍‌ରେ ଚାଲିଥିଲା ଯେତେବେଳେ ସନ୍ତ୍ରାସନୀତିର ସମର୍ଥକ କେତେଜଣ ଏଗୁଡ଼ାକ ପ୍ରକାଶ୍ୟରେ ବଣ୍ଟାବଣ୍ଟି କରିଥିଲେ ।

ଜଜ୍- ସେମାନଙ୍କ ପରିଚୟ ?

ନେଗ୍ରୀ- ନାଁଗୁଡ଼ାକ ଠିକ୍‌ଠାକ୍ କହିପାରିବିନାହିଁ । ଅଟୋନମିଆ ମିଟିଙ୍ଗ୍‌କୁ ଆସୁଥିଲେ, ସଂଗଠନର ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ ବିଷୟରେ କଥାବାର୍ତ୍ତା କରୁଥିଲେ; ମାତ୍ର ଏ କାଗଜଗୁଡ଼ାକରେ ସଂଗଠନର ଗଢ଼ଣ ସମ୍ବନ୍ଧରେ ଯା ଲେଖାଯାଇଚି, ପୁରାପୁରି ସନ୍ତ୍ରାସବାଦ । ଏଇକଥାକୁ ନେଇ ୧୯୭୬ରେ ବେଜାଏ ତର୍କ-ବିତର୍କ ହୋଇଚି ଆମ ଭିତରେ । ଆମେ କିନ୍ତୁ ଏସବୁ ପ୍ରସ୍ତାବର ତୀବ୍ର ସମାଲୋଚନା କରିଥିଲୁଁ ।

ଜଜ୍- ଅନୁମୋଦନ ପ୍ରତ୍ୟାଶାରେ ଏତେଗୁଡ଼ାକ କାଗଜପତ୍ର ଯିଏ ଦେଇଥିଲେ ଆପଣଙ୍କୁ, ତାଙ୍କ ପରିଚୟ କଣ ଆପଣ ଏକେବାରେ ଜାଣନ୍ତିନାହିଁ ?

ନେଗ୍ରୀ- ପୁନର୍ବାର କହୁଚି, ଏ ପ୍ରଶ୍ନର ଉତ୍ତରଦେବା ମୋ ପକ୍ଷରେ ସମ୍ଭବ ନୁହେଁ । ଉଗ୍ରବାଦୀ ନିଜକୁ କେବେ ପରିଚିତକରାନ୍ତିନାହିଁ । ପ୍ରକାଶ୍ୟ ସଭାରେ ଏଗୁଡ଼ାକ ବାଣ୍ଟିଥିଲେ । କିଏ ବା କେଉଁମାନେ ବାଣ୍ଟିଥିଲେ, ନଜାଣିବା ମୋ ପକ୍ଷରେ ତ ସ୍ୱାଭାବିକ ।

ପବ୍ଲିକ୍ ପ୍ରସିକ୍ୟୁଟର୍- ଯେତେବେଳେ ଉତ୍ତେଜିତହୋଇ ଆପଣ କିଛିକହନ୍ତି, ମନେପଡ଼ିଯାଏ ସେଇ କଣ୍ଠସ୍ୱର, ଯୋଉ କଣ୍ଠସ୍ୱର ଶ୍ରୀମତୀ ମୋରୋ ଶୁଣିବାକୁ ପାଇଥିଲେ ରେଡ୍ ବିଗ୍ରେଡ୍‌ର ଖୁଣୀଙ୍କ ସାଙ୍ଗରେ ଟେଲିଫୋନ୍‌ରେ କଥାକହିବା ବେଳେ ।

ନେଗ୍ରୀ- ପ୍ରମାଣ ନଦେଖାଇ, ଏ ଧରଣର କଥାକହିବା ଅଧିକାର ଆପଣଙ୍କର ବିଲ୍‌କୁଲ୍ ନାହିଁ । ମୋତେ ଆପଣ ଅପମାନ କରୁଚନ୍ତି ।

ନେଗ୍ରୀଙ୍କ ଓକିଲ- କଥାଗୁଡ଼ାକ ରେକଡ଼ କରାଯାଉ !

ଜଜ୍- ବିବାକ କଥାବାର୍ତ୍ତା ରେକଡ଼ରେ ରହିବ; ମାତ୍ର ଉତ୍ତେଜିତହେବା ଦରକାର ନାହିଁ । ଏକ୍ଷଣି ଅଧ୍ୟାପକ ନେଗ୍ରୀଙ୍କୁ ତାଙ୍କ ବିରୋଧରେ ଆନୀତ ଏଇ ଅଭିଯୋଗ ଗୁଡ଼ିକର ଅସତ୍ୟତା ପ୍ରମାଣକରିବାକୁ ଆହ୍ୱାନକରୁଚି : (୧) ଆନ୍ତନିୟ ନେଗ୍ରୀ ରେଡ୍‌ବିଗ୍ରେଡ୍‌ର ସନ୍ତ୍ରାସବାଦୀ କର୍ମକାଣ୍ଡକୁ ନିଜେ ସଂଗଠିତ କରିଚନ୍ତି; ଏବଂ ଅଟୋନମିୟା ସହିତ ରେଡ୍ ବିଗ୍ରେଡ୍‌ର ଯୋଗସୂତ୍ର ମଧ୍ୟ ସ୍ଥାପନକରିଚନ୍ତି । ସେଇ ବାଟରେ ଅଟୋନମିୟାକୁ ରେଡ୍ ବିଗ୍ରେଡ୍‌ର ଗଣଭିତ୍ତି ଭାବରେ ବ୍ୟବହାରକରିଚନ୍ତି । ଏକଥା ରେଡ୍‌ବିଗ୍ରେଡ୍‌ର ଜଣେ

ମେମ୍ବର୍ ପୁଲିସ୍‌ପାଖରେ ସ୍ୱୀକାରକରିଚନ୍ତି, ଧରାପଡ଼ିବା ଉତାରୁ ।
(୨) ଆନ୍ଦୋଳନ ସକାଶେ ଯୁଯୁତ୍ସୁହେବା କଣପାଇଁ ଦରକାର, ସଂଗଠନର ସଭ୍ୟମାନଙ୍କୁ ସେ ତତ୍ତ୍ୱରେ ଦୀକ୍ଷିତକରିଚନ୍ତି । ସେଇ ତତ୍ତ୍ୱରେ, ଯୁଯୁତ୍ସୁହେବା ମାନେ କଳକାରଖାନା ଅଭ୍ୟନ୍ତରରେ ନାନାବିଧ ଅନ୍ତର୍ଘାତ, ସୁପର୍‌ଭାଇଜର୍‌ଙ୍କୁ ମାରଧର, କାରଖାନାର ସଂପତ୍ତି ଦଖଲ, ଟ୍ରେଡ୍‌ଇଉନିଅନ୍‌ର ନେତା, କାରଖାନାର ମ୍ୟାନେଜର୍ ଓ ଶୃଙ୍ଖଳାରକ୍ଷାକାରୀ ମ୍ୟାଜିଷ୍ଟ୍ରେଟ୍‌ଙ୍କୁ ବଳପୂର୍ବକ ଅପହରଣ, ଏବଂ ଦ୍ୟର୍ଥହୀନ ଭାଷାରେ ଘୋଷଣାକରିଚନ୍ତି, କ୍ଷମତା ଦଖଲକରିବାକୁ ଯୁଯୁତ୍ସୁହେବା ଅପରିହାର୍ଯ୍ୟ ।
(୩) ୱ୍ୱର୍କର୍ସ ପାୱ୍ୱର, ପାଦ୍‌ଭାରେ ଅନ୍ତତଃ, କେବଳ ବିସ୍ଫୋରକ ଓ ଅସ୍ତ୍ରଶସ୍ତ୍ର ଯୋଗାଡ଼କରିନାହିଁ, ମିଲିଟାରିଟ୍ରେନିଙ୍ଗ୍ ଦେଇଚି ସଂଗଠନର ସଭ୍ୟମାନଙ୍କୁ ।
(୪) ଆନ୍ତନିୟ ନେଗ୍ରୀ ନିଜ ଦଳଭୁକ୍ତ ଲୋକଙ୍କୁ ମଲୋଟୋଭ୍ କକ୍‌ଟେଲ୍ ବନାଇବା କାୟଦାକାନୁନ୍ ମଧ୍ୟ ଶିଖାଇଚନ୍ତି ।

ନେଗ୍ରୀ- ଶୁଣି ତାଟକା ଲାଗୁଚି, କାହିଁକିନା, କଥାଗୁଡ଼ାକ ଖାଲି ଅସତ୍ୟ ନୁହେଁ, ଅବାନ୍ତର । ଅବାନ୍ତର କାହିଁକିନା, ୱ୍ୱର୍କର୍ସ ପାୱ୍ୱର ଆଉ ଅଟୋନମିଆ ସହିତ ସଂଶ୍ଲିଷ୍ଟଥିବାବେଳେ ଯେତେଯାହା କରିଚି କି କହିଚି, ଅଭିଯୋଗଗୁଡ଼ାକ ତାର ସଂପୂର୍ଣ୍ଣ ବିରୁଦ୍ଧାଚରଣ । ଅଟୋନମିୟା ଓ ରେଡ୍‌ବିଗ୍ରେଡ୍ ଯେ ବିପରୀତ ରାଜନୀତିରେ ବିଶ୍ୱାସୀ, ସେମାନଙ୍କ ପାରସ୍ପରିକ ସମାଲୋଚନାରୁ ତା ସ୍ପଷ୍ଟ ଆଉ ସ୍ୱଚ୍ଛ । ଆଉ, ମଲୋଟୋଭ୍ କକ୍‌ଟେଲ୍ କେମିତି ତିଆରିକରିବାକୁ ହୁଏ, ନିଜେ ଯେତେବେଳେ ଜାଣେନା, ଅନ୍ୟକୁ ବା ଶିଖାଇବି କେମିତି ? ଆଉ, ଅଟୋନମିୟା ଓ ରେଡ୍ ବିଗ୍ରେଡ୍ ମଧ୍ୟରେ ସାଂଗଠିକ ସଂପର୍କ ଗଢ଼ିବା ସକାଶେ କେବେ କିଛି କହିନାହିଁ । ଅଭିଯୋଗ ତେଣୁ ଆଦ୍ୟନ୍ତ ମନଗଢ଼ା ।

ଜଜ୍- ନା, ଆମ ହୃଦ୍‌ବୋଧ ହେଉଚି, ନିଜ ଲେଖାଲେଖି ବାଟଦେଇ ସଶସ୍ତ୍ର ସଂଗ୍ରାମ ଜରିଆରେ ଶ୍ରମିକଶ୍ରେଣୀର ଏକନାୟକତ୍ୱ ପ୍ରତିଷ୍ଠାକରିବା କଥା ଆପଣ ବରାବର କହିଚନ୍ତି ।

ନେଗ୍ରୀ- କଣ ଲେଖିଚି, ଖାଲି ତାକୁହିଁ ଗଣ୍ଡିକରି ମୋତେ ଗିରଫକରିବା ଅଧିକାର କାହାରିହେଲେ ନାହିଁ । ଯା ଯେତେବେଳେ ଲେଖିଚି, ସବୁଗୁଡ଼ାକ, ବିନା ବ୍ୟତିକ୍ରମରେ, ତତ୍ତ୍ୱବିଚାର—ତା ସାଙ୍ଗରେ ସଂଗଠନର ବିନ୍ଦୁମାତ୍ର ସଂଯୋଗ ନାହିଁ । ମୁଁ ଜଣେ ଇଣ୍ଟେଲେକ୍‌ଚୁଆଲ୍- ବହିଲେଖିବା ମୋର କାମ ।

ଜଜ୍- ଆପଣ କହିଚନ୍ତି, ସନ୍ତ୍ରାସବାଦକୁ ଜମାରୁ ସମର୍ଥନ କରିନାହାନ୍ତି; ଅଥଚ

ନିଜେ ଲେଖିଚନ୍ତି ଯେ, ରେଡ୍ ବ୍ରିଗ୍ରେଡ୍‌ନର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ବିପ୍ଳବୀ ବାମପନ୍ଥୀ ଆନ୍ଦୋଳନର ଟିପ୍ ଅବ୍ ଦ୍ୟ ଆଇସ୍‌ବର୍ଗ (=ବିଶାଳ ହିମବାହର ଚୂଡ଼ା ମାତ୍ର)

ନେଗ୍ରୀ- ଖାଲି ରେଡ୍‌ବିଗ୍ରେଡ୍ କାହିଁକି, ଯେକୌଣସି ସନ୍ତ୍ରାସବାଦୀ ସଂଗଠନର କାମକୁ ଆନ୍ଦୋଳନ–ହିମବାହର ଚୂଡ଼ା ଭାବରେ ମାନ୍ୟତାଦେବା ପ୍ରୟୋଜନ ନିଶ୍ଚୟ ରହିଚି - - ତେବେ, ସ୍ୱୀକୃତିଦେବା ମାନେ ସମର୍ଥନ ନୁହେଁ । ମୁଁ ତ ଏବେ ବି କହୁଚି, ଯା କରିଚନ୍ତି, ଭୁଲ୍‌କରିଚନ୍ତି । ଅଟୋନମିଆର ଅସଂଖ୍ୟ କମ୍ରେଡ୍ ବି ଏକାକଥା କହିବେ । କିନ୍ତୁ ବ୍ୟାପାରଟା ପରିଷ୍କାର କରିଦେବାକୁ ଚାହେଁ । ଏବଂ ତା ସାଙ୍ଗକୁ ଏକଥା ବି କହିରଖେଁ ଯେ ରେଡ୍‌ବିଗ୍ରେଡ୍‌ର କମ୍ରେଡ୍‌ମାନଙ୍କୁ ମୁଁ ଶ୍ରଦ୍ଧାକରେଁ । କମିଉନିଜ୍ମ ପାଇଁ ଯିଏ ବି ଲଢ଼ାଇକରୁ, ମୁଁ ତାକୁ ଶ୍ରଦ୍ଧାକରିବି–ତାର ପଥ ଓ ପଦ୍ଧତି ହୁଏତ ମୋ ବାଟ ସାଙ୍ଗରେ ମିଳେନା । ଫେଲିସ୍ ଅର୍‌ସିନିଙ୍କ ପ୍ରତି ମାର୍କ୍ସଙ୍କର ବି ଶ୍ରଦ୍ଧା ଥିଲା । ମୋର ଧାରଣା, ଏକମାତ୍ର ଗଣସଂଗ୍ରାମ ଭିତରେ ରହି ଥାଇ ସଂନ୍ତ୍ରାସବାଦକୁ ମୁକାବିଲା କରାଯାଇପାରେ ।

**ଅଳମତି ବିସ୍ତରେଣ । ଇତି ନିୟତି ସହିତ ଅଭିସାର !**

□□□

# ଶ୍ରୀଯୁକ୍ତ ରବୀନ୍ଦ୍ର ପ୍ରସାଦ ପଣ୍ଡାଙ୍କର
## କେତେକ ସାରସ୍ୱତ କୃତି

**ଲର୍ଣ୍ଣ୍ ଆଣ୍ଡ୍ ସୃଷ୍ଟ** ପ୍ରକାଶିତ

| | | |
|---|---|---|
| **ସୋକ୍ରଟିଜ (ଖ୍ରୀ.ପୂ.୪୬୯-୩୯୯)** | | |
| (ଇଉରୋପୀୟ ଜ୍ଞାନଚର୍ଚ୍ଚାର ଭିତ୍ତିପତନ) | ଟ. | ୭୫.୦୦ |
| **ପ୍ଲାଟୋ (ଖ୍ରୀ.ପୂ.୪୨୯-୩୪୮)** | | |
| (ଇଉଟୋପିଆର ଆବିର୍ଭାବ) | ଟ. | ୭୫.୦୦ |
| **ଆରିଷ୍ଟୋଟ୍ଲ (ଖ୍ରୀ.ପୂ.୩୪୪-୩୨୨)** | | |
| (ଜିଜ୍ଞାସାର ବୟଃସନ୍ଧି) | ଟ. | ୭୫.୦୦ |
| **ଗାଲିଲେଓ (ଖ୍ରୀ.୧୫୬୪-୧୬୪୨)** | | |
| (ଆଦିକଳ୍ପର ରୂପାନ୍ତର : ଭୂକେନ୍ଦ୍ରିକତାରୁ ଗଗନ-କେନ୍ଦ୍ରିକତା) | ଟ. | ୧୨୦.୦୦ |
| **ଡାରଉଇନ୍ (ଖ୍ରୀ.୧୮୦୯-୧୮୮୨)** | | |
| (ଜୀବନବୃକ୍ଷର ମୂଳ ସନ୍ଧାନ) | ଟ. | ୯୦.୦୦ |
| **ଫ୍ରୟଡ୍ (ଖ୍ରୀ.୧୮୫୬-୧୯୩୯)** | | |
| (ଅଚେତନର ଉନ୍ମୋଚନ) | ଟ. | ୧୨୦.୦୦ |
| **ଯା ମନେ ପଡ଼େ** (ଆତ୍ମଚରିତ) | | |
| ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି (ଖ୍ରୀ.୧୮୫୯-୧୯୫୬) | ଟ. | ୨୩୦.୦୦ |
| (ଅନୁବାଦ, ତର୍ଜମା ଓ ସମ୍ପାଦନା) | | |
| **ବାଟ ହୁଡ଼ି, ବାଟ ଖୋଜି** | | |
| (ଶ୍ରେଣୀ ଚେତନା, ସମାଜ ରୂପାନ୍ତର, ବୁଦ୍ଧିଜୀବୀ) | ଟ. | ୩୦୦.୦୦ |
| **ଚଉଦ୍ୱାର ଜେଲରେ ପାଞ୍ଚରାତି** | | |
| (ବନ୍ଦୀର ସ୍ୱଦେଶ ଚିନ୍ତା) | ଟ. | ୪୦.୦୦ |
| **ନିୟତି ସହିତ ଅଭିସାର** | | |
| (ପ୍ରତିବାଦ-ଚେତନାର ଇତିବୃତ୍ତି) | ଟ. | ୪୦୦.୦୦ |

---

**ବିଦ୍ୟାପୁରୀ** ପ୍ରକାଶିତ

**ସନାତନ (ହିନ୍ଦୁ ଧର୍ମ)**
**ହଜରତ୍ ମହମ୍ମଦ**
**ଯୀଶୁଖ୍ରୀଷ୍ଟ**
**ଗୌତମ ବୁଦ୍ଧ**
**ଗୋରା (ରବୀନ୍ଦ୍ରନାଥ - ଅନୁବାଦ)**
**ଗଳ୍ପ ଗୁଚ୍ଛ (ରବୀନ୍ଦ୍ରନାଥ - ଅନୁବାଦ)**
**ମଧ୍ୟବିତ୍ତର ଆତ୍ମ ବିଚାର**

---

**ଭାରତ ଭାରତୀ** ପ୍ରକାଶିତ

**ଅନ୍ତର୍ଜଳି ଈଶ୍ୱର ଓ କବିର ଅନ୍ତ୍ୟେଷ୍ଟି**

□□□

ପ୍ରଚଳିତ ଅର୍ଥରେ ଇତିହାସ ନୁହେଁ; ବରଂ ମାର୍କ୍ସ *କ୍ୟାପିଟାଲ୍* ଗ୍ରନ୍ଥକୁ ଯୋଉ ଅର୍ଥରେ କହିଚନ୍ତି Critique of Political Economy, ଅବିକଳ ସେଇ ବ୍ୟଞ୍ଜନାରେ ଭାରତର ଇତିହାସ କିମ୍ବା ଅର୍ଥନୀତିର ବିଶ୍ଳେଷଣ କରାଯାଇ ନଥିଲେ ସୁଦ୍ଧା ଭାବାଦର୍ଶ ପ୍ରେକ୍ଷିତରେ ଏ ବହି ଏକ Critique। ହୁଏତ ଶେଷପର୍ଯ୍ୟନ୍ତ ପରିଦୃଷ୍ଟ ହେବ ଯେ କାର୍ଯ୍ୟକ୍ଷେତ୍ରରେ କୌଣସି ବିଶେଷ ଭାବାଦର୍ଶଦ୍ୱାରା ସାମାନ୍ୟ ଅଗ୍ରଗତି କି ଅଧୋଗତି ପରିଚାଳିତ ହେଇନାହିଁ; ମାତ୍ର ଯୋଉ କଥାଟିରେ ଦ୍ୱିମତର ଅବକାଶ ନାହିଁ, ତା ଏକମାତ୍ର ଭାରତୀୟ ଜନମାନସରେ ପ୍ରତିବାଦ / ପ୍ରତିରୋଧର ଚେତନା; ବହମାନ ଓ ନିରବଚ୍ଛିନ୍ନ ଏକ ଚେତନା ଯାହା ଇତିହାସ ଦ୍ୱାରା ପୁଷ୍ଟ ହେଇଚି ସିନା, ପ୍ରତିହତ ହେଇନାହିଁ କଦାପି। ଆନୁଷ୍ଠାନିକ ଶିକ୍ଷା ଏ ଚେତନାକୁ ପୁଷ୍ଟ କରିନାହିଁ। କାହିଁକିନା, ଦେଶର ଅଧିକାଂଶ ଲୋକ ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଅଥବା ନିରକ୍ଷର। କୋଉହେଲେ ସାଂସ୍କୃତିକ ଅଭ୍ୟୁତ୍ଥାନ ମଧ୍ୟ ଚେତନାର ଉର୍ଦ୍ଧ୍ୱ ବା ଅଗ୍ରଗତିର ସହାୟକ ହେଇନାହିଁ; କାହିଁକିନା, ଦେଶର ସାଂସ୍କୃତିକ ଭାବଜଗତ ବହୁଧା ବିବଦମାନ ଓ ବିଦୀର୍ଣ୍ଣ। ଏଇ ଅବସ୍ଥା ବୁଦ୍ଧିଜୀବୀ ସଂପ୍ରଦାୟ ପ୍ରତି ଏକ ନୈତିକ ଆହ୍ୱାନ; ମାତ୍ର ବୁଦ୍ଧିଜୀବୀ ଏଠି ପରାଙ୍ଗପୁଷ୍ଟ ବୃହନ୍ନଳାର ପଟୁଆର, କେହି କେହି ସନ୍ନ୍ୟାସୀ କି ସନ୍ଥ ହେବା ସତ୍ତ୍ୱେ। ସେଥିପାଇଁ, ଅପ୍ରାସଙ୍ଗିକ ମନେହୋଇପାରେ ଜାଣି ସୁଦ୍ଧା, କାର୍ଲ ମାର୍କ୍ସ ବା ଆନ୍ତୋନିୟ ନେଗ୍ରୀଙ୍କ ଉଲ୍ଲେଖ ସୁବିସ୍ତର କରାଯାଇଛି।

ହୋଇପାରେ, ଏଇ ବହିଟାକୁ ଉପଲକ୍ଷ୍ୟ କରି ଆଉରି ଢେର ବହି ଅନତିବିଳମ୍ବେ ଲେଖାଯିବ ଓ ଆଉରି ଯୋଗ୍ୟତର ଲୋକଙ୍କ ହାତରେ ସେଗୁଡ଼ିକର ଉଦ୍ଦୀପନା ପ୍ରକଟ କରିବ ଇତିହାସର ପ୍ରେକ୍ଷିତ ସହିତ ଆଇଡ଼ିଆ ଗୁଡ଼ାକର ଆନ୍ତର୍ସଂପର୍କ।